# ଶ୍ରୀମଦ୍ ଭଗବଦ୍ଗୀତା ।

ପଦଚ୍ଛେଦ, ଅନ୍ୱୟ, ଶ୍ରୀଧର ସ୍ୱାମି ସଂସ୍କୃତ ସୁବୋଧିନୀ ଟୀକା,
ଉତ୍କଳ ଭାଷାରେ ପଦବ୍ୟାଖ୍ୟା, ଅନୁବାଦ
ଓ ବିଶଦବ୍ୟାଖ୍ୟା ସହିତ


৺ ବିହାରୀ ଲାଲ ପଣ୍ଡିତଙ୍କ ଦ୍ୱାରା ସମ୍ପାଦିତ
ସର୍ବାଧିକାରୀ—ବିହାରୀଲାଲ ପଣ୍ଡିତଙ୍କ ପୌତ୍ର,
ଶ୍ରୀ ମୋତିଲାଲ ପଣ୍ଡିତଙ୍କ ଅନୁମତି କ୍ରମେ



ପ୍ରକାଶକ - ଧର୍ମଗ୍ରନ୍ଥ ଷ୍ଟୋର
ପ୍ରୋପ୍ରାଇଟର—ଶ୍ରୀ ବିଦ୍ୟାଧର ସାହୁ
ଅଲିଶା ବଜାର, କଟକ-୨


ବେଦେଷୁ ପୌରୁଷଂ ସୂକ୍ତଂ, ପୁରାଣେଷୁ ଚ ବୈଷ୍ଣବଂ ॥
ଭାରତେ ଭଗବଦ୍‌ଗୀତା ସ୍ୱୟଂ ତ୍ରୈଲୋକ୍ୟ ଦୁର୍ଲ୍ଲଭଂ ।


ପ୍ରଥମ ସଂସ୍କରଣ ଶକାବ୍ଦ ୧୮୧୬ / ୨ୟ ସଂସ୍କରଣ ୧୮୯୦
ପ୍ରଥମ ସଂସ୍କରଣ ସାଲ ୧୩୦୨ / ୨ୟ ସଂସ୍କରଣ ୧୩୭୬
ପ୍ରଥମ ସଂସ୍କରଣ ଶ୍ରୀ ମୁକୁନ୍ଦ ଦେବ ମହାରାଜାଙ୍କ ଅ ୧୬ଙ୍କ
୨ୟ ସଂସ୍କରଣ ଶ୍ରୀ ଶ୍ରୀ ବୀର କିଶୋରଦେବ ମହାରାଜାଙ୍କ ଅ୧୫ଙ୍କ

ପ୍ରଥମ ସଂସ୍କରଣ ଖ୍ରୀଃ ୧୮୯୫
୨ୟ ସଂସ୍କରଣ ଖ୍ରୀଃ ୧୯୬୯

ବନ୍ଧାଇ ଖର୍ଚ୍ଚ ସ୍ୱତନ୍ତ୍ର ଛଅଟଙ୍କା



Digitized by PPRACHIN, SOA



( ୩ ) ଶ୍ରୀ ଚକ୍ରଧର ଆଚାର୍ଯ୍ୟ ( ୪ ) ବାବୁ ବଦ୍ଧରୀଲାଲ ପଣ୍ଡିତ
( ୨ ) ଶ୍ରୀ ଅଭିନ୍ନ ନାୟକ ( ୫ ) ପଣ୍ଡିତ ରାମଚନ୍ଦ୍ର ନନ୍ଦ
( ୧ ) ପଣ୍ଡିତ ଧର୍ମ୍ମେଶ୍ୱର ଶତପଥି ( ୬ ) ପଣ୍ଡିତ ନୀଳମ୍ବଣ ଦାସ

Digitized by PPRACHIN, SOA

ଦ୍ୱିତୀୟ ସଂସ୍କରଣର

# ଭୂମିକା

ବହୁବର୍ଷ ପରେ ଗୀତାପ୍ରେମୀ ସରଳହୃଦୟ ଉତ୍କଳୀୟ ପାଠକ ବୃନ୍ଦଙ୍କ ନିକଟରେ ମଦୀୟ ପିତାମହ ସ୍ୱର୍ଗତଃ ବହାରୀଲାଲ ପଣ୍ଡିତଙ୍କ ସଂପାଦିତ ଓ ପ୍ରକାଶିତ ସନାତନ ଆର୍ଯ୍ୟ ଧର୍ମର ସର୍ବଶ୍ରେଷ୍ଠ ଧର୍ମଗ୍ରନ୍ଥ ଶ୍ରୀମଦ୍ ଭଗବଦ୍ ଗୀତାର ଦ୍ୱିତୀୟ ସଂସ୍କରଣଟି ପ୍ରଥମ ପ୍ରକାଶର ସଂପୂର୍ଣ୍ଣ କଳେବର ପ୍ରକାଶ କରିବାକୁ ପ୍ରୟାସୀ ହେଉଅଛୁ ।

ସ୍ୱର୍ଗତ ବିହାରୀଲାଲ ପଣ୍ଡିତଙ୍କର ସଂପାଦିତ ଶ୍ରୀମଦ୍ ଭଗବଦ୍ ଗୀତା ଉତ୍କଳାକ୍ଷରରେ ସନ୧୩୦୨ ସାଲ ୧୮୯୫ ଖ୍ରୀଷ୍ଟାବ୍ଦରେ ପ୍ରଥମପ୍ରକାଶ ହୋଇଥିଲା । ଆଜକୁ ପ୍ରାୟ ବର୍ଷ ଅତିକ୍ରାନ୍ତହୋଇଥିଲେହେଁ ଏହାର ପୁନଃମୁଦ୍ରଣ ମୋ ପକ୍ଷରେ ସମ୍ଭବପର ହୋଇନାହିଁ । ଉତ୍କଳର ମୁଦ୍ରଣାଳୟରେ ଏହି ବିଶାଳ ଗ୍ରନ୍ଥକୁ ନିର୍ଭୁଲଭାବରେ ଦ୍ୱିତୀୟ ସଂସ୍କରଣ ପାଇଁ ସାହସୀ ହୋଇ ପାରି ନ ଥିଲୁ ।

ସ୍ୱର୍ଗତ ପିତାମହଙ୍କର ଅମର ଆତ୍ମା, ସମ୍ଭବତଃ ସ୍ୱୀୟ ସଂପାଦିତ ଭଗବଦ୍-ଗୀତାର ପୁନଃ ମୁଦ୍ରଣର ପ୍ରୟାସୀ । ସେସବୁ ଯାହାହେଉ ମୋର ହୃଦୟ କମଳରେ ଯାହାକି କଳ୍ପନାତୀତ ଥିଲା ତାହାସେ ରୂପାୟିତ ହେଉଅଛି, ଏହା କିଛି କମ୍ ସୌଭାଗ୍ୟର ବିଷୟ ନୁହେଁ ।

ଧର୍ମଗ୍ରନ୍ଥ ଷ୍ଟୋର ପ୍ରୋପ୍ରାଇଟର ଧର୍ମପ୍ରାଣ ଭକ୍ତ ବିଦ୍ୟାଧର ସାହୁ ଏ ଗ୍ରନ୍ଥଟିକୁ ସ୍ୱତଃ ସ୍ୱୀକୃତହୋଇ ନିର୍ଭୁଲ ଭାବରେ ପୁନଃ ମୁଦ୍ରଣ ଓ ପ୍ରକାଶ କରିବାର ସାହସୀ ହୋଇଅଛନ୍ତି । ଆଉମଧ ପ୍ରକାଶସଂସ୍କରଣ ମୁଦ୍ରିତ ଶୁଦ୍ଧିପତ୍ରାକାରରେ ପ୍ରକାଶିତ କେତେକ ଶବ୍ଦକୁ ସଂଶୋଧନ କରି ଅଛନ୍ତି ତାହାପ୍ରତ୍ୟେକଙ୍କର ସମାଦୃତ ଯୋଗ୍ୟ । ଏହାଦ୍ୱାରା ଉତ୍କଳୀୟ ଭାଷାର ଏକ ଦୁଷ୍ପ୍ରାପ୍ୟ, ସର୍ବ ଜନାହୃତ ଅମୂଲ୍ୟ ଗ୍ରନ୍ଥରସେ ସୁରକ୍ଷା ହୋଇ ପାରିବ, ଏହା ନିଃସନ୍ଦେହ । ଧର୍ମଗ୍ରନ୍ଥଷ୍ଟୋର ମାଲିକଙ୍କର ଏତାଦୃଶ ମହାନୁଭବ ବାସ୍ତବିକ ପ୍ରଶଂସନୀୟ ।

ବିଶେଷତଃ ଏହି ଅମୂଲ୍ୟ ଗ୍ରନ୍ଥର ପ୍ରଥମ ପ୍ରକାଶ ସମୟରେ କୌଣସି ନିର୍ଦ୍ଦିଷ୍ଟ ମୂଲ୍ୟରେଖା ଯାଇନଥିଲା । ଦ୍ୱିତୀୟ ପ୍ରକାଶ ସମୟ ଅତି ଦୁଷ୍ପ୍ରାପ୍ୟ ଓ ଅତି ଦୁର୍ମୂଲ୍ୟ ସମୟ ଥିବା ଁ ଲବ୍ଧାଂଶ ଶ୍ରୀ ଶ୍ରୀ ଜଗନ୍ନାଥ ଜୀଉଙ୍କ ସେବାର୍ଥେ ପ୍ରଦାନ କରିବା ଷ୍ଟୋର

Digitized by PPRACHIN, SOA

ଆକାଂକ୍ଷା ଥିବାରୁ ବିନା ମୂଲ୍ୟରେ ବିତରଣ କରିବାର ସମ୍ଭବପର ହୋଇନାହିଁ; ଏଣୁ ମୁଦ୍ରଣ ବ୍ୟୟ ସମେତ ସ୍ୱଳ୍ପାଧିକ ମୂଲ୍ୟରଖି ଶତକରା ଦଶଟଙ୍କା ହାରରେ ଶ୍ରୀ ଶ୍ରୀ ଜଗନ୍ନାଥଙ୍କ କୋଠ ଭଣ୍ଡାରରେ ଜମା ଦେଇ ମୋତେ ଅବଗତ କରାଇ ଏହି ଗ୍ରନ୍ଥକୁ ପାଠକ ବୃନ୍ଦଙ୍କ ଠାରେ ଉପସ୍ଥାପିତ କରିବାର ସ୍ଥିର କରାଯାଇ ଅଛି ।

ଗ୍ରନ୍ଥଟିରେ ପୂର୍ବରୁ ଯାହା କିଛି ମୁଦ୍ରଣ ପ୍ରମାଦ ଥିଲା ତନ୍ମଧ୍ୟରୁ ବହୁଶବ୍ଦ ସଂଶୋଧନ କରାଯାଇଅଛି । ତଥାପି କେତେକ ଶବ୍ଦର ପ୍ରମାଦ ପରିଦୃଷ୍ଟ ହେବାରୁ ପୁନଃ ଶୁଦ୍ଧିପତ୍ର ସଂଯୋଜିତ ହୋଇଅଛି । ଅମ୍ଭର ଦୃଷ୍ଟିର ଅନ୍ତରାଳରେ ରହିଯାଇ ଥିବା କୌଣସି ମୁଦ୍ରଣ ଜନିତ ପ୍ରମାଦ ଯଦି କୌଣସି ଶୁଦ୍ଧି ପାଠକଙ୍କର ଦୃଷ୍ଟି ପଥାରୂଢ ହୁଏ, ଅନୁରୋଧ ସେ ଗୁଡ଼ିକୁ ପ୍ରସଙ୍ଗାନୁସରଣରେ ସଂଶୋଧନ ପୂର୍ବକ ଗ୍ରହଣ କରିନେବେ । ପରି ଶେଷରେ ଏହି ଗ୍ରନ୍ଥଟି ପୂର୍ବବତ୍ ଧର୍ମାନୁରାଗୀ ଉତ୍କଳୀୟ ପାଠକ ପାଠିକା ବୃନ୍ଦଙ୍କ ଠାରେ ଆଦୃତହୋଇ ପାରିଲେ ଆମ୍ଭ ସହିତ ପ୍ରକାଶକ ମହାଶୟଙ୍କର ଶ୍ରମ ସାର୍ଥକ ହେବ ବୋଲି ମନେକରିବୁ । ଇତି ।

ଗୃଦ୍ଧର୍ମା ଗୌକ କଟକ-୨
ମକର ଦି ୧୬ ନ ୧୩୭୬ ସାଲ
ତା ୨୮ । ୧ । ୧୯୬୯

**ଶ୍ରୀ ମୋତିଲାଲ ପଣ୍ଡିତ**

Digitized by PPRACHIN, SOA

# ଭୂମିକା ।

ଖ୍ରୀଷ୍ଟୀୟ ଊନବିଂଶଶତାବ୍ଦୀର ଶେଷଭାଗରେ ଯେପରି ଶିଳ୍ପ, ବାଣିଜ୍ୟ, ଚିକିତ୍ସା, ଓ ବିଜ୍ଞାନ ଆଦି ବିବିଧ ବିଷୟରେ ବିବିଧ ପ୍ରକାର ଆଲୋଚନା ହେଉଅଛି, ସେହିପରି ଭିନ୍ନ ଭିନ୍ନ ଧର୍ମ ମଧ୍ୟ, ନାନା ପ୍ରକାରେ ଆଲୋଚିତ ହେଉଅଛି । କେତେ ପ୍ରକାର ନୂତନ ଧର୍ମ ଓ ଉପଧର୍ମର ସୃଷ୍ଟି, ପୁରାତନର ସଂସ୍କାର ଓ ନୂତନ ନୂତନ ବ୍ୟାଖ୍ୟା ମତ ଓ ବିତଣ୍ଡା-ବାଦର ପ୍ରଚାର ହେଉଅଛି । କିନ୍ତୁ ଯେପରି କ୍ରୀଡାକାରର ହସ୍ତରୁ ସୂତ୍ରବଦ୍ଧ ପାରଣୀ ( ଚକେଇ ) ବିମୁକ୍ତ ହୋଇ ଯେତେଦୂର ଯାଉ ପଛକେ, ତାକୁ ପୁନର୍ବାର ସେହି କ୍ରୀଡାକାରର ହସ୍ତକୁ ଫେରି ଆସିବାକୁ ହୁଏ, ସେହିପରି ଆର୍ଯ୍ୟଶାସ୍ତ୍ରରେ ନିହିତ ଧର୍ମର ମୂଳ-ସୂତ୍ର ଯେତେ ଲୋକେ ଆପଣା ଆପଣାର ରୁଚି ଅନୁସାରେ ନାନାପ୍ରକାର ବ୍ୟାଖ୍ୟା ଓ ମତ ପ୍ରଚାର କରି-ବାଦଦ୍ୱାରା ଆର୍ଯ୍ୟଶାସ୍ତ୍ରରୁ ବହୁଦୂରକୁ ଟାଣି ନେଇ ଚମତ୍କାର ଦେଖାନ୍ତି ଶେଷରେ ସେହି ଆର୍ଯ୍ୟଧର୍ମକୁ ପ୍ରତ୍ୟାବର୍ତ୍ତିତ କରନ୍ତି । ଗବେଷଣାପ୍ରିୟ ଜର୍ମାନ ଓ ଆମେରିକା ବାସିମାନେ ବର୍ତ୍ତମାନ ଧର୍ମର ମୂଳସୂତ୍ର ସେହି ଆର୍ଯ୍ୟଶାସ୍ତ୍ରର ମହତ୍ତ୍ୱ ବୁଝି ପାରିଅଛନ୍ତି । ସେମାନଙ୍କ ମୁଖରୁ ଆର୍ଯ୍ୟଶାସ୍ତ୍ରର ପ୍ରଶଂସା ଶୁଣି ଆଜି କାଲି ଦେଶୀୟ ଅନେକଲୋକ ତାହା ଆଲୋଚନା କରିବାକୁ ଇଚ୍ଛୁକ ହୋଇଅଛନ୍ତି । ମାତ୍ର ଆର୍ଯ୍ୟଶାସ୍ତ୍ରର ମୂଳ ବେଦ, ଓ ତାହା ଏପରି ଦୁର୍ବୋଧ ଏବଂ ବିସ୍ତୃତ, ଯେ ତାହା ସମୁଦାୟ ପାଠ କରି ତତ୍ତ୍ୱ ଗ୍ରହଣ କରିବାକୁ ମନୁଷ୍ୟଙ୍କୁ ଉପଯୁକ୍ତ ଗୁରୁ ସନ୍ନିକଟରେ ମିଳିବ ନାହିଁ ଏବଂ ମନୁଷ୍ୟଙ୍କ ପରମାୟୁ ଏତେ ଅଳ୍ପ ଓ ଅନିଶ୍ଚିତ, ଯେ ତାହାଦ୍ୱାରା ଗୁରୁ ନିକଟରେ ବିଧିମତେ ଶ୍ରବଣ ମନନାଦି କରି ତତ୍ତ୍ୱଜ୍ଞାନ ଲାଭ କରିବା, ଏକ ପ୍ରକାର ଅସମ୍ଭବ ବ୍ୟାପାର ଅଟେ । ଏହି କାରଣରୁ ମହାତ୍ମା ବ୍ୟାସଦେବ ବେଦକୁ କର୍ମ, ଉପାସନା, ଜ୍ଞାନ ଏବଂ ଚିକିତ୍ସା ଏହି ଚାରିଭାଗରେ ବିଭକ୍ତ କଲେ । ତନ୍ମଧ୍ୟରୁ ଚିକିତ୍ସାଦି ନିକୃଷ୍ଟ ବିଷୟର ଆଧିକ୍ୟ ଥିବା ଅଥର୍ବବେଦକୁ ଅପେକ୍ଷାକୃତ ନିକୃଷ୍ଟ ଜ୍ଞାନ କରି ପୃଥକ୍ କରି ଦେଲେ ଓ କର୍ମ ଉପାସନା ଏବଂ ଜ୍ଞାନ ବିଷୟକ ଶ୍ରେଷ୍ଠାଂଶକୁ ଯଜୁଃ, ସାମ ଓ ଋକ୍‌ବେଦ ନାମରେ ପ୍ରଚାର କଲେ । ସେହି ଶ୍ରେଷ୍ଠ ତିନିଭାଗର ସାଧାରଣ ନାମ 'ତ୍ରୟୀ' ଅଟେ । ବେଦ ପାଠରେ ଶୂଦ୍ର ଓ ସ୍ତ୍ରୀ ପ୍ରଭୃତି ସାଧାରଣ ଲୋକେ ନାନା କାରଣରୁ ଅଧିକାରୀ ହୋଇ ନ ପାରିବାରୁ ଜାଣି ବେଦର ସମସ୍ତ ଜ୍ଞାତବ୍ୟ ବିଷୟକୁ 'ନିଷଠ୍' ଅର୍ଥାତ୍ ଅଷ୍ଟାଦଶପର୍ବରୂପୀ ମହାଭା-

Digitized by PPRACHIN, SOA

ଚରିତରେ ଅତି ଉପାଦେୟରୂପେ ବର୍ଣ୍ଣନା କଲେ । ସେହି ହେତୁରୁ ମହାଭାରତକୁ 'ପଞ୍ଚମବେଦ' ବୋଲାଯାଏ । ପୁଣି ନକ୍ଷତ୍ରମଣ୍ଡଳ ମଧ୍ୟବର୍ତ୍ତୀ ପୂର୍ଣ୍ଣ ଶଶଧର ପରି, ମହାଭାରତର ଭୀଷ୍ମପର୍ବ ମଧ୍ୟରେ କୃଷ୍ଣାର୍ଜ୍ଜୁନ ସମ୍ବାଦରୂପ ଭଗବଦ୍ଗୀତାକୁ ସଂସ୍ଥାପିତ କରିଅଛନ୍ତି । ସେହି ଭଗବଦ୍ଗୀତା ସମସ୍ତ ଆର୍ଯ୍ୟଧର୍ମର ସାର ଓ ଜଗତର ଯାବଦୀୟ ଧର୍ମର ମୂଳ ଅଟେ ।

ଯେଉଁମାନେ ବେଦପାଠ କରି ନ ପାରିବେ, ଅଥବା ସ୍ମୃତି ଓ ଧାରଣାଶକ୍ତିର ଅଭାବ ହେତୁରୁ ମହାଭାରତନିହିତ ଧର୍ମତତ୍ତ୍ୱର ସାମଞ୍ଜସ୍ୟ କରି ନ ପାରିବେ, ସେମାନେ କେବଳ 'ଗୀତା' ଉତ୍ତମରୂପେ ପାଠ କଲେ, ଆର୍ଯ୍ୟଧର୍ମର ସକଳ ତତ୍ତ୍ୱ ଅବଗତ ହୋଇ ପାରିବେ । ଯଜୁଃ, ସାମ ଓ ଋକ୍ ଏହି ବେଦତ୍ରୟରେ ଯେପରି ଯଥାକ୍ରମେ କର୍ମ ଉପାସନା ଓ ଜ୍ଞାନ ମୁଖ୍ୟରୂପେ ବର୍ଣ୍ଣିତ ହୋଇଅଛି, ସେହିପରି ଭଗବଦ୍ଗୀତାର ପ୍ରଥମ ଷଟ୍କରେ କର୍ମ, ଦ୍ୱିତୀୟ ଷଟ୍କରେ ଉପାସନା (ଭକ୍ତି) ଓ ତୃତୀୟ ଷଟ୍କରେ ଜ୍ଞାନ ପ୍ରଧାନତଃ ବର୍ଣ୍ଣିତ ହୋଇଅଛି ।

ବଙ୍ଗଦେଶର ସର୍ବଶ୍ରେଷ୍ଠ ଲେଖକ ଚିନ୍ତାଶୀଳ ବାବୁ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ ବଙ୍ଗଳାଭାଷାରେ ଭଗବଦ୍ଗୀତାର ଏକ ଟୀକା ପ୍ରସ୍ତୁତ କରି ଗୀତାସମ୍ବନ୍ଧରେ କହିଅଛନ୍ତି, ଯେ "ଯେବେ କେହି ମନୁଷ୍ୟଦେହ ଧାରଣ କରି ଧର୍ମର ସମ୍ପୂର୍ଣ୍ଣ ଅବୟବ ହୃଦୟରେ ଧ୍ୟାନ ଏବଂ ମନୁଷ୍ୟଲୋକରେ ପ୍ରଚରିତ କରିବାକୁ ସକ୍ଷମ ହୋଇଥାଏ, ତେବେ, ସେ ଶ୍ରୀମଦ୍‌ଭଗବଦ୍ଗୀତାକାର । * * ଯଦି କୌଣସିଠାରେ ଧର୍ମର ସମ୍ପୂର୍ଣ୍ଣ ପ୍ରକୃତ ବ୍ୟକ୍ତ ଓ ପରିସ୍ଫୁଟ ହୋଇଥାଏ ତେବେ ତାହା ଶ୍ରୀମଦ୍‌ଭଗବଦ୍ଗୀତାରେ । ଏହି ଗୀତୋକ୍ତ ଧର୍ମ, ସମସ୍ତ ମନୁଷ୍ୟଙ୍କ ନିମିତ୍ତ । ଯେ ଜନ୍ମାନ୍ତରରେ ବିଶ୍ୱାସ କରେ, ତାହା ପକ୍ଷରେ ଏହା ଶ୍ରେଷ୍ଠଧର୍ମ, ଓ ଯେ ନ କରେ, ତାହା ପକ୍ଷରେ ମଧ୍ୟ, ଏହା ଶ୍ରେଷ୍ଠ ଧର୍ମ । ଯେ ଶ୍ରୀକୃଷ୍ଣଙ୍କଠାରେ ଭକ୍ତି କରେ, ତାହା ପକ୍ଷରେ ଏହା ଶ୍ରେଷ୍ଠଧର୍ମ ଓ ଯେ ନ କରେ, ତାହା ପକ୍ଷରେ ମଧ୍ୟ, ଏହା ଶ୍ରେଷ୍ଠଧର୍ମ । ଯେ ଈଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସ କରେ, ତାହା ପକ୍ଷରେ ଏହା ଶ୍ରେଷ୍ଠ ଧର୍ମ ଓ ଯେ ନ କରେ, ତାହା ପକ୍ଷରେ ମଧ୍ୟ, ଏହା ଶ୍ରେଷ୍ଠ ଧର୍ମ । କାହିଁକି ନା ଚିତ୍ତଶୁଦ୍ଧି ଓ ଇନ୍ଦ୍ରିୟସଂଯମ ଈଶ୍ୱରବାଦୀ ଓ ଅନୀଶ୍ୱରବାଦୀ ଉଭୟଙ୍କ ପକ୍ଷରେ ଶ୍ରେଷ୍ଠ ଧର୍ମ । ସେହି ଚିତ୍ତ ଶୁଦ୍ଧିହିଁ ଗୀତାର ଉଦ୍ଦେଶ୍ୟ । ଏପରି ସର୍ବଲୌକିକ ଓ ସର୍ବବ୍ୟାପକଧର୍ମ ଆଉ କେବେ ପୃଥିବୀରେ ପ୍ରଚରିତ ହୋଇ ନାହିଁ । ଯାହାର ଯେତିକରେ ଅଧିକାର, ସେ ସେତିକ ଗ୍ରହଣ କରିବେ । ଯାହାର ଯହିଁରେ ବିଶ୍ୱାସ ନାହିଁ, ସେ ସେଥିରେ ଅନଧିକାରୀ । ଯାହାର ଯହିଁରେ ଅଧିକାର, ସେ ଏଥିରେ (ଗୀତାରେ) ତାହା ପାଇବେ" ; ଇତ୍ୟାଦି ।

ଗୀତାରେ ଏହି ଅମୂଲ୍ୟ ଗୁଣଅଛି ବୋଲି, ପୃଥିବୀର ପ୍ରାୟ ସମସ୍ତ ଲିଖିତ ଭାଷାରେ ବହୁକାଳରୁ ଆରମ୍ଭ କରି ଅଦ୍ୟଯାଏ ଏହାର କେତେପ୍ରକାର ଅନୁବାଦ, ଯେ ପ୍ରକାଶିତ ହୋଇଅଛି, * ତାହାର ସୀମା ନାହିଁ । ତଥାପି କେତେ ଶିକ୍ଷିତ ବ୍ୟକ୍ତି ଗମ୍ଭୀରଭାବରେ

* ୧୫୮୪ ଖ୍ରୀ; ଅକବର ବାଦଶାହଙ୍କ ଅମଳରେ 'ଫଇଜୀ' ମହାଭାରତର ପାରସ୍ୟ ଅନୁବାଦ କରିଥିଲେ, ତାହାର ନାମ 'ରଜନାମା' ଅର୍ଥାତ୍ ରଣାଖ୍ୟାନ ; ତହିଁରେ ଗୀତା-

Digitized by PPRACHIN, SOA

ପ୍ରଶ୍ନ କରନ୍ତି, ଯେ 'ଅର୍ଜ୍ଜୁନ ଜ୍ଞାତି କୁଟୁମ୍ବାଦି ବଧରୁ ପାପଜନକ କର୍ମ ମନେ କରି ତହିଁରୁ ନିବୃତ୍ତ ହେଉଥିଲେ, ଶ୍ରୀକୃଷ୍ଣ ତାହାଙ୍କୁ ଗୀତାର ଉପଦେଶ ଦେଇ ଯୁଦ୍ଧରେ ପ୍ରବୃତ୍ତ କରାଇଲେ ଏବଂ ସେହି ହେତୁରୁ ଭାରତ ବୀରଶୂନ୍ୟ ହେଲା । ସୁତରାଂ ଭାରତଯୁଦ୍ଧର, ତ ତହିଁରେ ଭାରତ ବୀରଶୂନ୍ୟ ହୋଇ ବର୍ତ୍ତମାନ କାଳର ଦୁର୍ଦ୍ଦଶାରେ ପତିତ ହେବାର ମୂଳକାରଣ ଏକମାତ୍ର ଶ୍ରୀକୃଷ୍ଣ ଅଟନ୍ତି । ଅତଏବ ସେହି ଶ୍ରୀକୃଷ୍ଣଙ୍କ କଥିତ ଗୀତାର୍ **ଧର୍ମ** କିପରି ଶ୍ରେଷ୍ଠଧର୍ମ ହୋଇ ପାରେ ?' ଇତ୍ୟାଦି ।

ଏହାର ଉତ୍ତର ଦେବାକୁ ହେଲେ, ମହାଭାରତରେ ଶ୍ରୀକୃଷ୍ଣଙ୍କ ଚରିତ୍ର ଯେପରି ଅଙ୍କିତ ହୋଇଅଛି, ତାହା ସୂକ୍ଷ୍ମରୂପେ ପର୍ଯ୍ୟାଲୋଚନା କରିବା ଆବଶ୍ୟକ । ଏହି କ୍ଷୁଦ୍ର ଭୂମିକାରେ ତହିଁପ୍ରତି ଅଧିକ ସ୍ଥାନ ଦିଆ ଯାଇ ନ ପାରେ, ତେବେ ସଂକ୍ଷେପରେ ଏତିକି କୁହାଯାଇପାରେ, ଯେ ଶ୍ରୀକୃଷ୍ଣ ଯୁଦ୍ଧ ଅପେକ୍ଷା, ଶାନ୍ତିର ଅଧିକ ପକ୍ଷପାତୀ ଥିଲେ । ଯୁଦ୍ଧ ନ ହୋଇ କୌରବ ଓ ପାଣ୍ଡବଙ୍କର ବିବାଦ ଯେପରି ଆପଣା ମଧ୍ୟରେ ମୀମାଂସିତ ହୁଏ, ସେଥିପାଇଁ ସେ ଯଥାସାଧ୍ୟ ଚେଷ୍ଟା କରିଥିଲେ, ଧୃତରାଷ୍ଟ୍ର ଓ ଦୁର୍ଯ୍ୟୋଧନଙ୍କୁ ବୁଝାଇବାକୁ କେତେ ଲୋକଙ୍କୁ 'ମଧ୍ୟସ୍ଥ' କରି ପଠାଇ କୃତକାର୍ଯ୍ୟ ନ ହୋଇ ସେ ନିଜେ ମଧ୍ୟସ୍ଥ ହୋଇ ଯାଇଥିଲେ । ସେଠାରୁ ଅକୃତକାର୍ଯ୍ୟ ହୋଇ ପ୍ରତ୍ୟାବର୍ତ୍ତନ କଲାବେଳେ ମାର୍ଗରେ କର୍ଣ୍ଣଙ୍କୁ ଦେଖି ଯୁଦ୍ଧରୁ ନିବୃତ୍ତ ହେବାପାଇଁ ଅନୁରୋଧ କରିଥିଲେ । ସେ ଯଦି ଯୁଦ୍ଧର ପକ୍ଷପାତୀ ହୋଇଥାନ୍ତେ, ତେବେ ଶାନ୍ତିସ୍ଥାପନ ନିମନ୍ତେ ଏତେ ଚେଷ୍ଟା କରନ୍ତେ କାହିଁକି ?

---

ନୁବାଦ ଅଛି । ୧୭୮୪ ଖ୍ରୀଃ, ଚାର୍ଲସ ଉଇଲକିନ୍ସ (Charles Wilkins) ଗୀତାର ଇଂରାଜୀ ଅନୁବାଦ କରି ତାହାଙ୍କ ଲାଟସାହେବ ଓଆରେନ୍ ହେଷ୍ଟିଂସଙ୍କୁ ଉପହାର ଦେଇଥିଲେ । ବଡ଼ଲାଟ ତତ୍ପାଠରେ ମୋହିତ ହୋଇ କୋର୍ଟ ଅଫ ଡାଇରେକ୍ଟରଙ୍କ ଅଧ୍ୟକ୍ଷଙ୍କୁ ଜଣାଇ ୧୭୮୫ ଖ୍ରୀଷ୍ଟାବ୍ଦରେ ତାହା ମୁଦ୍ରିତ କରିଥିଲେ । ସେହି ଉଇଲକିନ୍ସ ସାହେବ ବଙ୍ଗଳା ଟାଇପ (ଅକ୍ଷର) ପ୍ରସ୍ତୁତ କରି ସର୍ବାଦୌ ଗୀତା ସେହି ଅକ୍ଷରରେ ଛପାଇଥିଲେ ।

୧୮୫୫ ଖ୍ରୀଷ୍ଟାବ୍ଦରେ ଟମ୍ସନ୍ ଓ ୧୮୮୨ ଖ୍ରୀଷ୍ଟାବ୍ଦରେ (John Davis) ଡେଭିସ ସାହେବ ସ୍ୱୀୟ ମନ୍ତବ୍ୟ ଓ ଟିପ୍ପଣୀ ସହିତ ଗୀତା ଅନୁବାଦ ଇଂରେଜୀ ଗଦ୍ୟରେ ପ୍ରକାଶିତ କରିଥିଲେ । ବିଖ୍ୟାତ କବି ଏଡ୍ୱିନ୍ ଆର୍ଣ୍ଣୋଲ୍ଡ ଗୀତାର ଇଂରେଜୀ ପଦ୍ୟାନୁବାଦ ପ୍ରକାଶ କରିଅଛନ୍ତି ।

ଭାରତବାସୀ କାଶୀନାଥ ତ୍ର୍ୟମ୍ବକ-ତେଲଙ୍ଗ ଓ ମୋହିନୀମୋହନ ଚଟ୍ଟ ଇଂରାଜୀ ଭାଷାରେ ଅନୁବାଦ କରିଥିଲେ । ମୋହିନୀ ବାବୁଙ୍କ ଅନୁବାଦ ଆମେରିକାରେ ବିଶେଷ ସମାଦୃତ ।

୧୮୨୩ ମସିହାରେ ଜର୍ମାନ ପଣ୍ଡିତ (A. W Schlegel) ସ୍ଲେଗଲ ସାହେବ ଦେବନାଗର ଅକ୍ଷରରେ ଗୀତାର ମୂଳ ଓ ଲାଟିନ ଭାଷାରେ ତାହାର ଅନୁବାଦ ପ୍ରକାଶିତ କଲେ । ସ୍ଲେଗଲ ସାହେବ ଦେବନାଗର ଅକ୍ଷର ପାରି ନଗରରେ ପ୍ରଥମେ ପ୍ରସ୍ତୁତ କରାଇ ଉକ୍ତ ଗୀତା ଛପାଇଥିଲେ ।

୧୮୪୯ ମସିହାରେ ସ୍ଲେଗଲ ସାହେବଙ୍କ କର୍ତ୍ତୃକ ସଂଶୋଧିତ ମୂଳ ଓ ଲାସେନ ସାହେ-

ଯେତେବେଳେ ମନୁଷ୍ୟୋଚିତ ସମସ୍ତ ଚେଷ୍ଟା ବିଫଳ ହେଲା, ଉଭୟପକ୍ଷ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇ ଅନ୍ୟ ରାଜାମାନଙ୍କୁ ନିମନ୍ତ୍ରଣ କରି ସ୍ୱଦଳ ଭୁକ୍ତ କଲେ, ଯୁଦ୍ଧକ୍ଷେତ୍ରରେ ସଶସ୍ତ୍ର ଓ ସବଳ ହୋଇ ଉପସ୍ଥିତ ହେଲେ, ସେତେବେଳେ ଯୁଦ୍ଧ କରିବା ଓ ଧରିତ୍ରୀକୁ ବୀରଶୂନ୍ୟ କରିବା ବିଷୟରେ ଯେହ୍ନ କୌରବ ଓ ପାଣ୍ଡବ ଉଭୟଦଳ ଦାୟୀ ଅଟନ୍ତି, ଭଗବାନ୍ ଶ୍ରୀକୃଷ୍ଣ କଦାପି ଦାୟୀ ନୁହନ୍ତି । ମାତ୍ର ଗୀତାରେ ଶ୍ରୀକୃଷ୍ଣ, ଯେ ଅର୍ଜୁନଙ୍କୁ "ଯୁଧ୍ୟସ୍ୱ ବିଗତଜ୍ୱରଃ" "ତସ୍ମାଦୁତ୍ତିଷ୍ଠ କୌନ୍ତେୟ, ଯୁଦ୍ଧାୟ କୃତନିଶ୍ଚୟଃ" ଓ "ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ" ଇତ୍ୟାଦି ବଚନଦ୍ୱାରା ଯୁଦ୍ଧରେ ପ୍ରବୃତ୍ତ ହେବାକୁ କହିଅଛନ୍ତି, ତାହାର ଅର୍ଥ ସ୍ୱତନ୍ତ୍ର ପ୍ରକାର ଅଟେ । ତାହା ଗୋଟିଏ ଲୌକିକ କାର୍ଯ୍ୟର ଉଦାହରଣ ଦେଇ ନିମ୍ନରେ ସ୍ପଷ୍ଟରୂପେ ବୁଝାଉଅଛୁଁ ।

ମନେ କର, ଜଣେ ବ୍ୟକ୍ତି ତୁମ୍ଭ ଗୃହରେ ଅତିଥି ହୋଇ ଆହାର ପ୍ରାର୍ଥନା କଲେ । ତୁମ୍ଭେ ଅତି ଆଦରରେ ପରମାନ୍ନ ପ୍ରସ୍ତୁତ କରି ତାହାଙ୍କୁ ଆହାର କରିବାକୁ ଦେଲ । ଅତିଥି କେବେହେଁ ପରମାନ୍ନ ଖାଇ ନାହାନ୍ତି । ତୁମ୍ଭ ଦତ୍ତ ପରମାନ୍ନ ଆହାର କରିବାକୁ ବସି ଦେଖିଲେ, ଯେ ଉହିଁରେ ଲମ୍ବା୨ ଓ କଳା୨ କି ଦ୍ରବ୍ୟ ପଡ଼ିଅଛି । ଅତିଥି ତାହାକୁ କୌଣସି ପ୍ରକାର ଅଭକ୍ଷ୍ୟ ମନେ କରି ଭୋଜନ ନ କରି ବସି ରହିଲେ । ତୁମ୍ଭେ ନିକଟରେ ବସିଥିଲ, ଅତିଥିଙ୍କର ସନ୍ଦେହ ବୁଝିପାରି କହିଲ, ମହାଶୟ ! ଆପଣ କିଛି ସନ୍ଦେହ କର

---

ବଙ୍କ କୃତ ଅନୁବାଦ ସହିତ ଗୀତା, ପ୍ୟାରେଟ ସାହେବ ପ୍ରକାଶିତ କଲେ । ସେଥିରେ ପ୍ୟାରେଟଙ୍କ କୃତ କଣାଡ଼ୀ ଭାଷାରେ ଗୀତାର ଅନୁବାଦ ମଧ୍ୟ ଅଛି ।

ବିଖ୍ୟାତ ପଣ୍ଡିତ ଉଇଲ୍‌ସନ ସାହେବ ( H. H. Wilson ) ଲଣ୍ଡନ ଏସିଆଟିକ ସୋସାଇଟିରେ ୧୮୫୨ ସାଲରେ ଯେଉଁ ପ୍ରବନ୍ଧ ପାଠ କରିଥିଲେ, ସେଥିରୁ ପ୍ରକାଶ, ଯେ ଡିମେଟ୍ରିୟା (Galenus Demetrius) ନାମକ ଜଣେ ଗ୍ରୀକଦେଶୀୟ ବ୍ୟକ୍ତି, ଯେ କି କାଶୀଧାମରେ ରହି ସଂସ୍କୃତ ଶିକ୍ଷା କରିଥିଲେ, ସେ ଗ୍ରୀକ ଭାଷାରେ ଗୀତା ଅନୁବାଦ କରିଥିଲେ, ତାହା ଲଣ୍ଡନର ଇଣ୍ଡିଆ ଲାଇବ୍ରେରୀରେ ଅଛି ।

୧୮୨୫ ମସିହାରେ ବହୁ-ଭାଷା-ପଣ୍ଡିତ ବର୍ନୁଫ ସାହେବ ( Eugene Burnouf ) ଯେ କି ଫରାସି ଭାଷାରେ ଶ୍ରୀମଦ୍ ଭାଗବତ ଅନୁବାଦ କରିଅଛନ୍ତି, ସେ ଗୀତାର ଫରାସି ଅନୁବାଦ ପ୍ରକାଶ କଲେ ।

( Fauche ) ଫୋସେ ସାହେବ ସମସ୍ତ ମହାଭାରତ ଫରାସି ଭାଷାରେ ଅନୁବାଦ କରିବାକୁ ସଙ୍କଳ୍ପ କରି ୧୮୬୩ ଠାରୁ ୧୮୭୨ ଯାଏ ଦଶବର୍ଷରେ ଆଦିପର୍ବଠାରୁ କର୍ଣ୍ଣପର୍ବ ଯାଏ ଶେଷ କରି କାଳଗ୍ରାସରେ ପତିତ ହେଲେ । ତାଙ୍କ ଅନୁବାଦରେ ଗୀତାର ଅନୁବାଦ ଯଥାସ୍ଥାନରେ ପ୍ରକାଶିତ ଅଛି ।

ଡାକ୍ତର ଲରିଞ୍ଜର ସାହେବ ( Dr. F Lorinser ) ୧୮୬୯ ମସିହାରେ ଜର୍ମାନ ଭାଷାରେ ବହୁ ମନ୍ତବ୍ୟ ସହିତ ଗୀତାନୁବାଦ ପ୍ରକାଶ କରିଅଛନ୍ତି ।

Digitized by PPRACHIN, SOA

ବେ କାହିଁ—ସେ କଳା୨ ଦ୍ରବ୍ୟଗୁଡିକ ଲବଙ୍ଗ ଅଟେ, କୌଣସି ପ୍ରକାର ଅଭକ୍ଷ୍ୟ ନୁହେ, "ଆପଣ ଭୋଜନ କରନ୍ତୁ"। ଏହା ଶୁଣି ଅତିଥି ସେ ଗୁଡିକ ହାତରେ ନେଇ ଦେଖିଲେ, ଯେ ତାହା ପ୍ରକୃତ ଲବଙ୍ଗ ଅଟେ। ପୁଣି ମୁଠାଏ ଅନ୍ନ ଗ୍ରହଣ କରି ଦେଖିଲେ, ଯେ କ୍ଷୁଦ୍ର୨ ଡିମ୍ବାକୃତ କୃଷ୍ଣବର୍ଣ୍ଣ କ ଦ୍ରବ୍ୟ ତହିଁରେ ପଡିଅଛି। ଅତିଥି ସନ୍ଦେହପୂର୍ଣ୍ଣ ଦୃଷ୍ଟିରେ ତୁମ୍ଭ ଆଡକୁ ଚାହିଁଲେ। ତୁମ୍ଭେ ତାଙ୍କର ଅଭିପ୍ରାୟ ବୁଝିପାରି କହିଲ କି ମହାଶୟ! ସେ ସେ ଏଲାଇଚ-ଦାନା, ଅଭକ୍ଷ୍ୟ ନୁହେ "ଆପଣ ନିଃଶଙ୍କ ଚିତ୍ତରେ ଭୋଜନ କରନ୍ତୁ"। ଅତିଥି ପୁନର୍ବାର ପରମାନ୍ନ ହାତରେ ନେଇ ଦେଖିଲେ, ଯେ ସେଥିରେ ଈଷତ୍ ରକ୍ତବର୍ଣ୍ଣ ଅନ୍ୟ କିଛି କୋମଳ ପଦାର୍ଥ ମିଶିଅଛି। ସୁତରାଂ ଭୋଜନରୁ ନିବୃତ୍ତ ହୋଇ ବସି ରହିଲେ। ତୁମ୍ଭେ ତାଙ୍କର ସନ୍ଦେହର କାରଣ ବୁଝିପାରି ସେଗୁଡିକ କିସମିସ୍ ଥିବାର ବୁଝାଇ ଦେଇ ଭୋଜନ କରିବାକୁ କହିଲ! ଏହିପରି ପରମାନ୍ନର ଭିନ୍ନ୨ ମସଲା ଦେଖି, ଅତିଥିଙ୍କର ଯେତେଥର ସନ୍ଦେହ ହେଲା, ତାହା ଭଞ୍ଜନ କରି ପ୍ରତିଥର 'ଭୋଜନ କର' ବୋଲି, ଯେ କହିଲ, ତହିଁରେ କି ତୁମ୍ଭେ ଅତିଥିଙ୍କୁ ତୁମ୍ଭ ଘରର ଅନ୍ନ ଖାଇବାକୁ ପ୍ରବୃତ୍ତ କରାଇଲ ? ଓ ତାଙ୍କର ଜାତି ନଷ୍ଟ କଲ ? ତାହା କେବେ ନୁହେ। କାହିଁକି ନା ଅତିଥି ନିଜେ ପ୍ରାର୍ଥନା କରି ଅନ୍ନ ଗ୍ରହଣ କରିଅଛନ୍ତି। କେବଳ ସେ ବସ୍ତୁଦର୍ଶିତା ଅଭାବରେ ବୃଥାରେ ସନ୍ଦେହଯୁକ୍ତ ହୋଇ ପ୍ରାର୍ଥନାପ୍ରାପ୍ତ ଅନ୍ନ ଭୋଜନ କରୁ ନ ଥିଲେ ବୋଲି ତୁମ୍ଭେ ତାଙ୍କର ସନ୍ଦେହ ଭଞ୍ଜନ କରିଦେଇ 'ଭୋଜନ କର'୨ ବୋଲି

---

ଇଟାଲିର ଷ୍ଟାନିସଲସ ଗାଟି ( Stanislas Gatti ) ସାହେବ ଇଟାଲି ଭାଷାରେ ଗୀତାନୁବାଦ କରିଅଛନ୍ତି। ଲଣ୍ଡନର ଇଣ୍ଡିଆ ଅଫିସରେ ତାହା ଅଛି।

ପୂର୍ବୋକ୍ତ ପଧାରେଟ ସାହେବଙ୍କ ଅନୁବାଦର ଭୂମିକାରେ ପ୍ରକାଶ, ଯେ ଗୀତା ରୁଷ-ଭାଷାରେ ମଧ୍ୟ ଅନୁବାଦିତ ହୋଇଅଛି।

ଯାବା ଦ୍ୱୀପର ନିକଟବର୍ତ୍ତୀ ବାଲିଦ୍ୱୀପରେ 'କବ' ନାମକ ଏକ ପ୍ରାଚୀନ ଭାଷାରେ ମହାଭାରତର ଅନେକ ଅଂଶ ଅନୁବାଦିତ ହୋଇଅଛି, ସେଥିରେ ସମ୍ଭବତଃ ଗୀତାର ଅନୁବାଦ ମଧ୍ୟ, ଅଛି।

କାଶ୍ମୀର ଦେଶ ତତ୍ତ୍ୱାନ୍ୱେଷୀ ସନ୍ନ୍ୟାସୀ ତାରକବ୍ରହ୍ମଗିରିଙ୍କ କହିବାରୁ ପ୍ରକାଶ, ଯେ ସେ ଚୀନ ଭାଷାରେ 'ଫଷନ୍ଜା' ନାମରେ ଗୀତାନୁବାଦ, ଜଣେ ଚୀନ ପରିବ୍ରାଜକ ନିକଟରେ ଦେଖିଅଛନ୍ତି।

ଅମେରିକାରେ ଇଉରୋପୀୟ ନାନା ଭାଷାରେ ଗୀତାନୁବାଦ ମିଳେ। ଜଣେ କୃତ-ବିଦ୍ୟ ବଙ୍ଗାଳୀ ଯୁବକ ନିଉୟର୍କ ନଗରରେ ଇଂରାଜୀ ଭାଷାରେ ଟୀକା ଟିପ୍ପଣୀସହିତ ଯେଉଁ ଗୀତାନୁବାଦ କରିଅଛନ୍ତି, ତାହା ଅମେରିକାରେ ମହାସମାଦରରେ ଗୃହୀତ ହୋଇଅଛି।

ଭାରତବର୍ଷୀୟ ପ୍ରାୟ ସମୁଦାୟ ଭାଷାରେ ଗୀତାର ମୂଳ ଓ ଅନୁବାଦର ହସ୍ତଲିଖିତ ଓ ମୁଦ୍ରିତ ପୁସ୍ତକ ମିଳେ। ତଦ୍ଭିନ୍ନ, ନାନା ଭାଷାରେ ନାନା ଲୋକେ ଗୀତାଲୋଚନା, ଗୀତାତତ୍ତ୍ୱର[illegible], ଗୀତାର ଗୂଢତତ୍ତ୍ୱ, ଗୀତାର ବିଶଦଭାବ ଓ ଗୀତାମାହାତ୍ମ୍ୟ ଇତ୍ୟାଦି ପ୍ରଚାର କରିଅଛନ୍ତି।

Digitized by PPRACHIN, SOA

କହିଲି । ତୁମ୍ଭ ଘରେ ଅନ୍ନ ଭକ୍ଷଣ କରିବା ହେତୁ ଅତିଥିଙ୍କର ଯଦ୍ୟ ଜାତି ନଷ୍ଟ ହୋଇଥାଏ ତେବେ ତହିଁର ଦାୟୀ ଅତିଥି ନିଜେ, ତୁମ୍ଭେ ଦାୟୀ ହୋଇ ନ ପାର । ସେହିପରି ମହାଭାରତ ଯୁଦ୍ଧର ଆୟୋଜନ ଶ୍ରୀକୃଷ୍ଣ ନିଜେ କରି ନାହାନ୍ତି । ତାହା ଯେପରି ଘଟିଅଛି ତାହାର ବିବରଣ ଏହି, ଯେ — କପଟ ପାଶକ୍ରୀଡାଦ୍ୱାରା ଦୁର୍ଯ୍ୟୋଧନ, ଯୁଧିଷ୍ଠିରଙ୍କର ସର୍ବସ୍ୱ ହରଣ କଲେ । ଦୁଃଶାସନ ସଭାମଧ୍ୟରେ ପାଣ୍ଡବମାନଙ୍କ ସମକ୍ଷରେ ଦ୍ରୌପଦୀଙ୍କୁ ବିବସ୍ତ୍ରା କରିବାରେ ପ୍ରବୃତ୍ତ ହେଲେ । ପାଣ୍ଡବମାନେ ବନବାସରେ ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ଅସହ୍ୟ କ୍ଳେଶ ସହ୍ୟ କଲେ । ତତ୍ପରେ ଆପଣାର ନ୍ୟାଯ୍ୟ ରାଜ୍ୟାଂଶ ପାଇବାକୁ ବିନୀତ ପ୍ରାର୍ଥନା କରି ଅନେକ ଦୂତ ପଠାଇଲେ, ମାତ୍ର କୌଣସି ସଦୁତ୍ତର ପାଇଲେ ନାହିଁ । ଅବଶେଷରେ ଶ୍ରୀକୃଷ୍ଣ ସ୍ୱୟଂ ଦୌତ୍ୟ କାର୍ଯ୍ୟରେ ନିଯୁକ୍ତ ହୋଇ ଦୁର୍ଯ୍ୟୋଧନଙ୍କ ନିକଟକୁ ଗଲେ । ତହିଁରେ ଦୁର୍ଯ୍ୟୋଧନ କହିଲେ, ହେ କେଶବ ! ତୀକ୍ଷ୍ଣ ସୂଚ୍ୟଗ୍ର ଦ୍ୱାରା ପୃଥିବୀର ଯେତେ ସ୍ଥାନ ବିଦ୍ଧ ହୋଇପାରେ, ତାହା ମଧ୍ୟ, ବିନା ଯୁଦ୍ଧରେ ଦେବ ନାହିଁ । ତହୁଁ ପାଣ୍ଡବମାନେ ଯୁଦ୍ଧ କରିବାକୁ କୃତନିଶ୍ଚୟ ହେଲେ, ଓ ଉଭୟ ପକ୍ଷରୁ ଯୁଦ୍ଧର ଆୟୋଜନ ହେଲା । ଶ୍ରୀକୃଷ୍ଣଙ୍କୁ ଆମନ୍ତ୍ରଣ କରି ନିଜ ଦଳଭୁକ୍ତ କରିବାପାଇଁ ଦୁର୍ଯ୍ୟୋଧନ ଓ ଅର୍ଜୁନ ଉଭୟେ ଦ୍ୱାରକା ଗମନ କଲେ । ଶ୍ରୀକୃଷ୍ଣଙ୍କ ଶୟନମନ୍ଦିରରେ ପ୍ରଥମେ ଦୁର୍ଯ୍ୟୋଧନ ଓ ପରେ ଅର୍ଜୁନ ପ୍ରବେଶ କଲେ । ତାହାଙ୍କୁ ନିଦ୍ରିତ ଦେଖି ନିଦ୍ରାଭଙ୍ଗ ଅପେକ୍ଷାରେ ତାହାଙ୍କ ଉପଧାନ (ତକିଆ) ନିକଟବର୍ତ୍ତୀ ବହୁମୂଲ୍ୟ ଆସନରେ ଦୁର୍ଯ୍ୟୋଧନ ଉପବିଷ୍ଟ ହେଲେ, ଓ ଅର୍ଜୁନ କୃତାଞ୍ଜଳିପୁଟରେ ତାହାଙ୍କ (ଶ୍ରୀକୃଷ୍ଣଙ୍କ) ଚରଣତଳେ ବସି ରହିଲେ । ଶ୍ରୀକୃଷ୍ଣଙ୍କ ନିଦ୍ରାଭଙ୍ଗ ହେବାରୁ ସେ, ପ୍ରଥମେ ଅର୍ଜୁନଙ୍କୁ ଓ ପରେ ଦୁର୍ଯ୍ୟୋଧନଙ୍କୁ ଦେଖି ସ୍ୱାଗତ ପ୍ରଶ୍ନ କଲେ, ଉଭୟେ ଯଥା ରୀତି ଅଭିବାଦ କଲା ଉତ୍ତାରୁ ଶ୍ରୀକୃଷ୍ଣ ସେମାନଙ୍କ ଆଗମନର କାରଣ ଜିଜ୍ଞାସା କଲେ । ତହିଁରେ ନୀତିଜ୍ଞ ଦୁର୍ଯ୍ୟୋଧନ ଆଗମନର କାରଣ ଜଣାଇ କହିଲେ, ଯେ ଆପଣଙ୍କୁ ବରଣ କରିବାକୁ ଆମ୍ଭେ ଦୁଇଜଣ ଆସିଅଛୁଁ ସତ, ମାତ୍ର ମୁଁ ପ୍ରଥମରେ ଆସିଥିବାରୁ ଆପଣଙ୍କର ଉଚିତ, ଯେ ମୋହର ପକ୍ଷ ଅବଲମ୍ବନ କରିବେ । ତହିଁରେ ଶ୍ରୀକୃଷ୍ଣ ଉତ୍ତର କଲେ, ଯେ ତୁମ୍ଭେ ପ୍ରଥମରେ ଆସିଅଛ ସନ୍ଦେହ ନାହିଁ, ମାତ୍ର ଆମ୍ଭେ ପ୍ରଥମରେ ଅର୍ଜୁନଙ୍କୁ ଦେଖିଅଛୁଁ । ଅତଏବ ତୁମ୍ଭେ ପ୍ରଥମରେ ଆସିଥିବା ଓ ଆମ୍ଭେ ପ୍ରଥମରେ ଅର୍ଜୁନଙ୍କୁ ଦେଖିଥିବାରୁ ଦୁହିଁଙ୍କୁ ସମାନ ଭାବରେ ସାହାଯ୍ୟ କରିବୁଁ । କିନ୍ତୁ ବାଳକଙ୍କୁ ପ୍ରଥମେ ପ୍ରାର୍ଥିତ ପ୍ରଦାନ କରିବାର ବିଧି ଥିବା ଓ ଅର୍ଜୁନ ତୁମ୍ଭ ଅପେକ୍ଷା ଅଳ୍ପ ବୟସ୍କ ଥିବାରୁ ପ୍ରଥମରେ ତାହାଙ୍କ-ପ୍ରାର୍ଥନା ପୂରଣ କରିବା ଉଚିତ । ଏହା କହି ଅର୍ଜୁନଙ୍କୁ ପ୍ରଶ୍ନ କଲେ, ହେ କିରୀଟି । ଆମ୍ଭର ଅତି ପରାକ୍ରମୀ ଗୋପଜାତୀୟ ଏକ ଅର୍ବୁଦ ନାରାୟଣୀ ସେନା ଅଛନ୍ତି । ସେମାନେ ସଶସ୍ତ୍ର ହୋଇ ଏକ ପକ୍ଷରେ ରହିବେ ଓ ଆମ୍ଭେ ଅସ୍ତ୍ରଧାରଣ ନ କରି ଅପର ପକ୍ଷରେ ରହିବୁଁ । ତୁମ୍ଭେ

---

ବିଷ୍ଣୁ, ଗରୁଡ, ପଦ୍ମ ଓ ବରାହ ପ୍ରଭୃତି ପୁରାଣରେ, ବୈଷ୍ଣବୀୟ ତନ୍ତ୍ରାଦିରେ, ଶ୍ରୀମଦ୍ଭାଗବତରେ, ଅନୁଗୀତା ଓ ଉତ୍ତରଗୀତାରେ ଏବଂ କୌଣସି କୌଣସି ଉପନିଷଦ, ବିଶେଷତଃ ଶ୍ୱେତାଶ୍ୱତର ଉପନିଷଦରେ ଗୀତାର ଅନେକ ଭାବ ଦେଖାଯାଏ । (ଶବ୍ଦକୋଷ ଦେଖ)

Digitized by PPRACHIN, SOA

କେଉଁ ପକ୍ଷ ଗ୍ରହଣ କରିବାକୁ ପ୍ରସ୍ତୁତ ? ଅର୍ଜ୍ଜୁନ ବଶୀଭାବରେ ନିରସ୍ତ୍ର କୃଷ୍ଣଙ୍କୁ ଗ୍ରହଣ କରିବାକୁ ସ୍ୱୀକୃତ ହେବାରୁ, ଅର୍ବୁଦସଂଖ୍ୟକ ନାରାୟଣୀ ସେନାଙ୍କୁ ଦୁର୍ଯ୍ୟୋଧନ ଗ୍ରହଣ କରି, ଶ୍ରୀକୃଷ୍ଣଙ୍କୁ ଅପହୃତ ଓ ଅର୍ଜ୍ଜୁନଙ୍କୁ ପରାଜିତ ବୋଲି ମନେ କଲେ । ତତ୍ପରେ ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ ଆପଣାର ସାରଥି ପଦରେ ନିଯୁକ୍ତ କରି ରଥାରୂଢ଼ ହୋଇ ନିଜର ସୈନ୍ୟଦଳ ସହିତ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେଲେ, ଓ ଉଭୟ ସୈନ୍ୟଙ୍କ ମଧ୍ୟସ୍ଥଳରେ ରଥ ସ୍ଥାପନ କରିବାକୁ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କଲେ । ରଥ ମଧ୍ୟସ୍ଥଳରେ ଉପସ୍ଥିତ ହେବାରୁ ଅର୍ଜ୍ଜୁନ ଦେଖିଲେ, ଯେ ପିତୃବ୍ୟ, ପିତାମହ, ମାତୁଳ, ଶ୍ୱଶୁର, ଶ୍ୟାଳକ ଓ ଭ୍ରାତୃଷ୍ପୁତ୍ର ଆଦି ଆତ୍ମୀୟ ପ୍ରଭୃତି ଆତ୍ମୀୟ ଲୋକମାନେ ଅର୍ଜ୍ଜୁନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ଉପସ୍ଥିତ ଅଛନ୍ତି । ଏହା ଦେଖି ଧର୍ମକ୍ଷେତ୍ରରୂପ କୁରୁକ୍ଷେତ୍ରର ସ୍ଥାନ ପ୍ରଭାବରେ କ୍ଷତ୍ରିୟସ୍ୱଭାବର ବିରୋଧୀ ବ୍ରାହ୍ମଣସ୍ୱଭାବୋଚିତ ବୈରାଗ୍ୟର ଆଭାସ ଅର୍ଜ୍ଜୁନଙ୍କ ହୃଦୟରେ ସମୁଦିତ ହେଲା । ମାତ୍ର ଅର୍ଜ୍ଜୁନ ତତ୍ପୂର୍ବରୁ ଜାଣିଥିଲେ, ଯେ ଯୁଦ୍ଧ ହେଲେ, ସେହି ପୂର୍ବୋକ୍ତ ଆତ୍ମୀୟ ଲୋକମାନଙ୍କ ବିପକ୍ଷରେ ତାହାଙ୍କୁ ଅସ୍ତ୍ର ଚାଳନା କରିବାକୁ ହେବ । ଏହା ଜାଣି କରିସୁଦ୍ଧା, ସେ ଯୁଦ୍ଧାର୍ଥ ପ୍ରସ୍ତୁତ ହୋଇ ଆସିଥିଲେ । କେବଳ ସ୍ଥାନ ପ୍ରଭାବରେ ତାଙ୍କ ସ୍ୱଭାବର ବିରୋଧୀ ଅନ୍ୟ ଭାବର ଛାୟା ମାତ୍ର ତାହାଙ୍କ ବୁଦ୍ଧି ଉପରେ ପତିତ ହେବାରୁ ସେ ସନ୍ଦିଗ୍ଧ ହୋଇ 'ଅତଥିଙ୍କର ପରମାନ୍ନ ଅହାର ପରିତ୍ୟାଗ' ପରି ଯୁଦ୍ଧ ତ୍ୟାଗ କରିବାକୁ ବସିଥିଲେ ଓ ଯୁଦ୍ଧ ନ କରିବାର କାରଣରୂପେ ସେହି ସନ୍ଦେହଗୁଡ଼ିକ ବ୍ୟକ୍ତ କଲେ । ଭଗବାନ୍ ଶ୍ରୀକୃଷ୍ଣ, ତାହାଙ୍କର ସେହି ସନ୍ଦେହଗୁଡ଼ିକ ଏକାଦିକ୍ରମେ ଯୁକ୍ତିସଙ୍ଗତ ଓ ହୃଦୟଗ୍ରାହୀ ଉତ୍ତରଦ୍ୱାରା ଖଣ୍ଡନ କରି ପ୍ରତିଥର ଯୁଦ୍ଧ କରିବାକୁ କହିଥିଲେ । ତାହାଦ୍ୱାରା ଅର୍ଜ୍ଜୁନଙ୍କୁ ଯୁଦ୍ଧରେ ପ୍ରବୃତ୍ତ କରାଗଲା କିପରି ? କାହିଁକି ନା ଅର୍ଜ୍ଜୁନତ ତାହା ପୂର୍ବରୁ ସ୍ୱୟଂ ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ । ଅତଏବ ଭାରତ ଯୁଦ୍ଧ, ଓ ତାହା ହେତୁ ଭାରତ ବୀରଶୂନ୍ୟ ହେବା, ଏବଂ ବର୍ତ୍ତମାନ କାଳର ଦୁର୍ଦ୍ଦଶାରେ ପତିତ ହେବାର କାରଣ ଶ୍ରୀକୃଷ୍ଣ ନୁହନ୍ତି । ସୁତରାଂ ସେଥି ସକାଶେ ଶ୍ରୀକୃଷ୍ଣୋକ୍ତ ଗୀତାଧର୍ମ ନିକୃଷ୍ଟ ହୋଇ ନ ପାରେ । ବରଂ ଏକଥା କୁହାଯାଇପାରେ, ଯେ ଗୀତୋକ୍ତ ନିଷ୍କାମ ଧର୍ମ୍ମର ସମ୍ପୂର୍ଣ୍ଣ ଅନୁଶୀଳନ ନ ହେବାରୁ ଭାରତର ଏପରି ଦୁର୍ଦ୍ଦଶା ହୋଇଅଛି । ଭାରତର ଉନ୍ନତି କିପରି ଗୀତୋକ୍ତ ଧର୍ମର ସମ୍ପୂର୍ଣ୍ଣ ଅନୁଶୀଳନସାପେକ୍ଷ, ତାହାର ଯୁକ୍ତି ୰ବାବୁ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ କୃତ 'ଅନୁଶୀଳନତତ୍ତ୍ୱରେ' ବିଶଦରୂପେ ଲେଖା ଅଛି, ଆବଶ୍ୟକ ହେଲେ ପାଠକମାନେ ଦେଖି ପାରନ୍ତି ।

ଦେଶବିଦେଶରେ ଆଦରସମାଦୃତ ଏହି ଗୀତାର ସମ୍ୟକ୍ ପରିଚୟ ଏ କ୍ଷୁଦ୍ର ଭୂମିକାରେ ପ୍ରକାଶ କରିବା ଅସମ୍ଭବ । ବ୍ୟାଖ୍ୟା ସହିତ ଗୀତାର ସମସ୍ତ ଅଂଶ ଉତ୍ତମରୂପେ ପାଠ କଲେ, ପାଠକ ତାହା ଅବଶ୍ୟ ବୁଝି ପାରିବେ ।

ଗୀତାରେ ଧର୍ମର ସମସ୍ତ ସାରକଥା ବର୍ଣ୍ଣିତ ହୋଇଥିବାରୁ ଓ ତାହା ସଂସ୍କୃତ ପଦ୍ୟରେ ଲେଖା ହୋଇଥିବାରୁ ସମସ୍ତଙ୍କର ସୁବୋଧ୍ୟ ନୁହେ । ପୂଜ୍ୟପାଦ ମହାତ୍ମା ଶଙ୍କରାଚାର୍ଯ୍ୟ, ଆନନ୍ଦଗିରି, ରାମାନୁଜ, ଶ୍ରୀଧରସ୍ୱାମୀ, ମଧୁସୂଦନ ସରସ୍ୱତୀ ଓ ପଣ୍ଡିତ ନୀଳକଣ୍ଠ ଚତୁର୍ଦ୍ଧୁରୀ,

Digitized by PPRACHIN, SOA

ବିଶ୍ୱନାଥ ଚକ୍ରବର୍ତ୍ତୀ ପ୍ରଭୃତି ଅନେକ ସଂସ୍କୃତଜ୍ଞ ମହାପଣ୍ଡିତମାନେ ସଂସ୍କୃତ ଭାଷାରେ ଭାଷ୍ୟ, ଟୀକା ଓ ଟିପ୍ପଣୀ ପ୍ରଭୃତି ଲେଖିଅଛନ୍ତି । ଭାରତର ନାନା ଭାଷାରେ ଭାଷାନୁବାଦ ମଧ୍ୟ, ପ୍ରଚ୍ଚରିତ ହୋଇଅଛି । ଭାଷ୍ୟକାର ଓ ଟୀକାକାରମାନଙ୍କ ମଧ୍ୟରୁ ନିଜର ରୁଚି ଅନୁସାରେ କେହି ବା କର୍ମଯୋଗର, କେହି ଭକ୍ତିର ଓ କେହି ଜ୍ଞାନର ଶ୍ରେଷ୍ଠତା ପ୍ରତିପାଦନ କରିଅଛନ୍ତି, କେହି ଅବା ଅଧିକାରୀଭେଦରେ କର୍ମ, ଭକ୍ତି ଓ ଜ୍ଞାନର ବିଷୟ ବର୍ଣ୍ଣିତ ହୋଇଥିବାର ପ୍ରମାଣ କରିଅଛନ୍ତି ।

ସେହି ସର୍ବଗୁଣାଧାର ଗୀତାର ଭଲ ଅନୁବାଦ ଏପର୍ଯ୍ୟନ୍ତ ଉତ୍କଳ ଭାଷାରେ ପ୍ରକାଶିତ ହୋଇ ନ ଥିବାରୁ ଅମ୍ଭେ ପୂର୍ବୋକ୍ତ ଭାଷ୍ୟ ଓ ଟୀକା ଏବଂ ହିନ୍ଦୀ ଓ ବଙ୍ଗଳା ଭାଷାରେ ହୋଇଥିବା କେତେକ ଅନୁବାଦ ପର୍ଯ୍ୟାଲୋଚନା କରି ଉତ୍କଳ ଭାଷାରେ ଅନୁବାଦ ଓ ବିଶଦ-ବ୍ୟାଖ୍ୟା ସହିତ ସେହି ଗୀତାକୁ ମୁଦ୍ରିତ କରାଇ ଜନସାଧାରଣରେ ପ୍ରକାଶିତ କରିବାକୁ ସାହସୀ ହେଲୁଁ

ଏହି ମୁଦ୍ରଣରେ 'ଇଙ୍ଗ୍ଲିଶବଡି'* ଓ 'ସ୍ମଲପାଇକା'† ଏହି ଦୁଇ ପ୍ରକାର ଅକ୍ଷର ବ୍ୟବହାର କରା ହୋଇଅଛି ଓ ପ୍ରତିଶ୍ଳୋକରେ ଶ୍ଳୋକ, ଅନ୍ୱୟ, ଟୀକା, ପଦବ୍ୟାଖ୍ୟା, ଅନୁବାଦ ଓ ବିଶଦବ୍ୟାଖ୍ୟା, ଏହି ଛଅଟି ବିଭାଗ ଅଛି । ତନ୍ମଧ୍ୟରୁ 'ଶ୍ଳୋକ,' 'ଅନୁବାଦ' ଓ 'ବିଶଦ-ବ୍ୟାଖ୍ୟା' ଏହି ତିନୋଟି ବିଭାଗ 'ଇଙ୍ଗ୍ଲିଶବଡିରେ' ଏବଂ 'ଅନ୍ୱୟ,' 'ଟୀକା' ଓ 'ପଦବ୍ୟାଖ୍ୟା' ଏହି ତିନୋଟି ବିଭାଗ 'ସ୍ମଲପାଇକା' ଅକ୍ଷରରେ ମୁଦ୍ରିତ ହୋଇଅଛି ।

ଗୀତାରେ ଅନେକ ପ୍ରକାର ଭାଷ୍ୟ ଓ ଟୀକା ଥିଲେ ସୁଦ୍ଧା, ଶ୍ରୀଧର ସ୍ୱାମିଙ୍କ 'ସୁବୋଧିନୀ' ଟୀକା ସଂକ୍ଷିପ୍ତ, ପ୍ରାଞ୍ଜଳ ଓ ସର୍ବତ୍ର ସମାଦୃତ ବୋଲି ଏ ମୁଦ୍ରଣରେ ସେହି ଟୀକା କେବଳ ଦିଆ ଯାଇଅଛି । ବିଶଦବ୍ୟାଖ୍ୟା ସବୁ ସ୍ଥଳରେ ଶ୍ରୀଧରସ୍ୱାମିଙ୍କ ଟୀକା ଅନୁସାରିଣୀ ହୋଇ ନାହିଁ । ଅନ୍ୟାନ୍ୟ ଭାଷ୍ୟ ଓ ଟୀକା ପର୍ଯ୍ୟାଲୋଚନା କରି ନିଜ ବୁଦ୍ଧିରେ ଯେଉଁ ମତ ଯୁକ୍ତିସଙ୍ଗତ ବୋଲି ବୋଧ ହୋଇଅଛି, ତାହାହିଁ ବିଶଦବ୍ୟାଖ୍ୟାରେ ପ୍ରକାଶିତ କରା ଯାଇଅଛି । ପ୍ରଥମ ଅଧ୍ୟାୟର କେତେକ ଶ୍ଳୋକରେ ଅନାବଶ୍ୟକ ବୋଧ ହେବାରୁ, ବିଶଦବ୍ୟାଖ୍ୟା ଦିଆ ଯାଇ ନାହିଁ ।

ପାଠକମାନଙ୍କ ସୁବିଧା ପାଇଁ ଶ୍ଳୋକ ଉପରେ ପ୍ରାଚୀନ ରୀତି ଅନୁସାରେ ପଦଚ୍ଛେଦ ଚିହ୍ନ ଦିଆ ଯାଇଅଛି ଓ ପଦବ୍ୟାଖ୍ୟାର ସୃଷ୍ଟି କରା ଯାଇଅଛି । ପଦବ୍ୟାଖ୍ୟାରେ ସଂସ୍କୃତ ବାକ୍ୟ ଲମ୍ବା ପଦମାନଙ୍କୁ ବିଶ୍ଳେଷଣ କରା ଯାଇ ତାହାର ପ୍ରାଞ୍ଜଳ ଅର୍ଥ ଭାଷାରେ ସନ୍ନିବେଶିତ କରା ହୋଇଅଛି । ଅନ୍ୱୟ ଅନୁସାରେ ସଂସ୍କୃତ ପଦମାନଙ୍କର ଭାଷାର୍ଥକୁ ଏକତ୍ର ନିବନ୍ଧ କଲେ, ଅନୁବାଦର ଭାବ ପ୍ରକାଶିତ ହେବ । ମୂଳ ସଂସ୍କୃତରେ ନ ଥିବା କୌଣସି ପଦ ଭାଷାର ଲାଳିତ୍ୟ ରକ୍ଷା ନିମିତ୍ତ ଯେଉଁ ସ୍ଥାନରେ ଅନୁବାଦରେ ବା ଅନ୍ୱୟରେ ଦିଆ ଯାଇଅଛି, ତାହା ପ୍ରାୟ

* ବଡ଼ ଅକ୍ଷର ।

† ଛୋଟ ଅକ୍ଷର ।

Digitized by PPRACHIN, SOA

ବନ୍ଧନୀ ( ) ମଧ୍ୟରେ ଦିଆ ଯାଇଅଛି । ଯେଉଁ ସବୁ ସଂସ୍କୃତ ପଦର ଠିକ ପ୍ରତିଶବ୍ଦ ମିଳିବ ନାହିଁ, ତାହା ଅବିକଳ ଅନୁବାଦରେ ଦିଆ ଯାଇଅଛି ଓ ବିଶଦବ୍ୟାଖ୍ୟାରେ ତାହାର ବ୍ୟାଖ୍ୟା କରି ଯାଇ ଅବିକଳ ପଦକୁ ଉଦ୍ଧାର ଚିହ୍ନ " " ' ' ମଧ୍ୟରେ ସଂସ୍ଥାପିତ କରି ଯାଇଅଛି । ଯେଉଁ ସବୁ ଶବ୍ଦର ଏକରୁ ଅଧିକ ପ୍ରତିଶବ୍ଦ ଦିଆ ଯାଇଅଛି, ସେଥିରେ 'ଅର୍ଥାତ୍' ଏପରି ଶବ୍ଦ ବାରମ୍ବାର ପ୍ରୟୋଗ ନ କରି ଅନେକ ସ୍ଥଳରେ 'ଡ୍ୟାଶ୍' — ଦିଆ ଯାଇଅଛି ।

ବିଶଦବ୍ୟାଖ୍ୟାରେ ପ୍ରସଙ୍ଗକ୍ରମେ ଅନେକ ସ୍ଥଳେ ଅନ୍ୟ ସଂସ୍କୃତ ଗ୍ରନ୍ଥର ବଚନ ଉଦ୍ଧୃତ କରି ଯାଇଅଛି ଓ କୌଣସି କୌଣସି ସ୍ଥଳରେ ଅନ୍ୟ ଭାଷା ଗ୍ରନ୍ଥରୁ ଅଥବା ଏହି ଗୀତାର ପୂର୍ବ-ବର୍ତ୍ତୀ ଅଂଶର ଅନୁବାଦ ବା ବିଶଦବ୍ୟାଖ୍ୟାର ଅଂଶ ତୋଳି ଦିଆ ଯାଇଅଛି । ସଂସ୍କୃତ ବାକ୍ୟମାନ ପ୍ରାୟ " " ଏହିପରି ଚିହ୍ନ ମଧ୍ୟରେ ଓ ଭାଷା ବାକ୍ୟମାନ ' ' ଏହି ଚିହ୍ନ ମଧ୍ୟରେ ଲେଖା ହୋଇଅଛି । ଏହା ଭିନ୍ନ, ଅନେକ ସ୍ଥଳରେ ଅନେକ ପ୍ରକାର ଚିହ୍ନ ବ୍ୟବହାର କରି ଯାଇଅଛି, ପାଠକମାନେ ଯଥାସ୍ଥାନରେ ସେ ସବୁ ଦେଖି ପାରିବେ ।

ଅନୁବାଦ ଓ ବିଶଦବ୍ୟାଖ୍ୟାରେ, ଅର୍ଜୁନ ନିଜକୁ 'ମୁଁ' ଶବ୍ଦଦ୍ୱାରା ଓ ଶ୍ରୀକୃଷ୍ଣଙ୍କୁ 'ଆପଣ' ଶବ୍ଦଦ୍ୱାରା ପ୍ରକାଶ କରିଅଛନ୍ତି ଏବଂ ଶ୍ରୀକୃଷ୍ଣ ଆପଣାକୁ 'ଆମ୍ଭେ' ଓ ଅର୍ଜୁନଙ୍କୁ 'ତୁମ୍ଭେ' ଶବ୍ଦ-ଦ୍ୱାରା ପ୍ରକାଶ କରିଥିବାର ନିୟମ ରକ୍ଷା କରି ଯାଇଅଛି ।

ଅନ୍ୟାନ୍ୟ ମୁଦ୍ରିତ ପୁସ୍ତକରେ କୌଣସି କୌଣସି ସ୍ଥାନରେ ଛ ପାଦରେ ଓ କୌଣସି କୌଣସି ସ୍ଥାନ-ରେ ତିନି ପାଦରେ ଏକ ଏକ ଶ୍ଳୋକ ହୋଇଅଛି । ଟୀକାମାନ ସେହି ଅନୁସାରେ ଲେଖାଅଛି । ମାତ୍ର ଏ ପୁସ୍ତକରେ ପ୍ରତ୍ୟେକ ଶ୍ଳୋକକୁ ଚାରି ପାଦବିଶିଷ୍ଟ କରି ଯାଇଅଛି ଓ ଟୀକାର ଯେଉଁ ଅଂଶ ଯେଉଁ ଶ୍ଳୋକର ଉପଯୋଗୀ, ସେହି ପର୍ଯ୍ୟନ୍ତ ସେ ଶ୍ଳୋକରେ ଦିଆ ଯାଇଅଛି । ପାଠକ-ମାନେ ଅନ୍ୟ କୌଣସି ମୁଦ୍ରିତ ପୁସ୍ତକ ସହିତ ଟୀକା ମିଳାଇ କରି ଦେଖିଲେ ଏ କଥା ସ୍ମରଣ ରଖିବେ ।

ଗୀତାର ଯେଉଁ ଶ୍ଳୋକଗୁଡ଼ିକ ପ୍ରଧାନ ଓ ଯାହା ଅନେକେ ମୁଖସ୍ଥ କରିଥାନ୍ତି, ସେ ଶ୍ଳୋକ ଗୁଡ଼ିକ ପ୍ରାୟ * ନକ୍ଷତ୍ରଦ୍ୱାରା ଚିହ୍ନିତ କରି ଯାଇଅଛି । ଭୁଲକ୍ରମେ କେତେକ ପ୍ରଧାନ ଶ୍ଳୋକରେ ନକ୍ଷତ୍ର ଚିହ୍ନ ଦିଆ ଯାଇ ପାରି ନ ଥିଲା, ମାତ୍ର ପ୍ରଧାନ ଶ୍ଳୋକର ଯେଉଁ ତାଲିକା ଗ୍ରନ୍ଥର ଅଗ୍ରରେ ଦିଆ ଯାଇଅଛି, ତାହାଦ୍ୱାରା ସେ ଅଭାବ ପୂରଣ କରି ହୋଇଅଛି ।

ଏ ଗ୍ରନ୍ଥ ମୁଦ୍ରିତ କରିବା ବିଷୟରେ କଟକର ପ୍ରାୟ ସମସ୍ତ ପଣ୍ଡିତମାନେ ଆମ୍ଭଙ୍କୁ ଅଂଶିକ ସାହାଯ୍ୟ କରିଅଛନ୍ତି । ମାତ୍ର ପଣ୍ଡିତ ଶ୍ରୀ ନାରାୟଣ ଦାସ, ପଣ୍ଡିତ ଶ୍ରୀ ରାମଚନ୍ଦ୍ର ନନ୍ଦ, ଓ ପଣ୍ଡିତ ଶ୍ରୀ ଚକ୍ରଧର ଆଚାର୍ଯ୍ୟ ଓ ପଣ୍ଡିତ ଶ୍ରୀ ଧନେଶ୍ୱର ଶତପଥୀ ଏବଂ ଶ୍ରୀ ଅଭିନ୍ନ ନାୟକ ବିଶେଷ ସାହାଯ୍ୟ କରିଅଛନ୍ତି । ସେଥିପାଇଁ ସେମାନଙ୍କର ପ୍ରତିମୂର୍ତ୍ତି ଆମ୍ଭର ପ୍ରତିମୂର୍ତ୍ତିସହିତ ଏ ଗ୍ରନ୍ଥର ମୂଳରେ ସନ୍ନିବେଶିତ କରି ହୋଇଅଛି । ବାବୁ ଶ୍ରୀ ଗୋପାଳବଲ୍ଲଭ ଦାସ ଏହାର ସୂଚୀପତ୍ର

Digitized by PPRACHIN, SOA

(Index) ଲେଖିବାରେ ଆମ୍ଭଙ୍କୁ ବିଶେଷ ସାହାଯ୍ୟ କରି ଅଛନ୍ତି, ସେଥିପାଇଁ ସେ ଆମ୍ଭର ଆନ୍ତରିକ ଧନ୍ୟବାଦର ପାତ୍ର ଅଟନ୍ତି ।

ଓଡ଼ିଶାରେ ବିଶୁଦ୍ଧ ଛାପା ହେବାଭଳି ସମୟ ଆଜି ଯାଏ ଉପସ୍ଥିତ ହୋଇ ନାହିଁ । ସେହି ହେତୁରୁ ପ୍ରୁଫ ଦେଖିବା ବିଷୟରେ ଯଥୋଚିତ ଯତ୍ନ କରି ଯାଇଥିଲେ ସୁଦ୍ଧା, କେତେକ ଅଶୁଦ୍ଧ ଗ୍ରନ୍ଥ ମଧ୍ୟରେ ରହି ଗଲା । ଯେଉଁ ସବୁ ଅଶୁଦ୍ଧ ସଂଶୋଧିତ ନ ହେଲେ, ପାଠକଙ୍କର ବିଶେଷ ଭ୍ରମ ଘଟିବାର ସମ୍ଭାବନା, ସେ ସମସ୍ତର ଗୋଟିଏ ଶୁଦ୍ଧିପତ୍ର ଏହି ଗ୍ରନ୍ଥର ଶେଷରେ ଦିଆ ଗଲା । ପାଠକମାନଙ୍କୁ ଅନୁରୋଧ, ସେ ପାଠ ସମୟରେ ଶୁଦ୍ଧିପତ୍ର ସହିତ ମିଳାଇ ପାଠ କରିବେ ।

ଆମ୍ଭେ ଯଥୋଚିତ ସମୟ ଓ ଅର୍ଥର ବ୍ୟୟ, ଏବଂ ସମଧିକ ଶ୍ରମ ସହକାରେ ଏହି ପୁସ୍ତକର ଅନୁବାଦ ଓ ବ୍ୟାଖ୍ୟା ପ୍ରସ୍ତୁତ କରାଇ, ବିନାମୂଲ୍ୟରେ ପାଠକମାନଙ୍କ ନିକଟରେ ଅର୍ପଣ କଲୁଁ । ଯେଉଁ ପାଠକ ମନୋଯୋଗ କରି ଏହାର ଆଦ୍ୟରୁ ଶେଷ ପର୍ଯ୍ୟନ୍ତ ଥରେ ପାଠ କରିବେ, ସେ, ଏହାର ମୂଲ୍ୟ ପ୍ରଦାନ କଲେ ବୋଲି ଜାଣିବୁଁ, ଆଉ ଯେ, ତାହା ନ କରି ପୁସ୍ତକଟିକୁ ଆଲମାରିର ଶୋଭା ବୃଦ୍ଧି ନିମିତ୍ତ ରଖି ଦେବେ, ସେ ଧର୍ମତଃ ଆମ୍ଭ ନିକଟରେ ଋଣୀ ରହିବେ ।

ଶ୍ରୀ ହ୍ୱାବୀଙ୍ଗଲ ପଣ୍ଡିତ ।

Digitized by PPRACHIN, SOA

## ଭଗବଦ୍‌ଗୀତା ଅନ୍ତର୍ଗତ ପ୍ରଧାନ ଶ୍ଳୋକମାନ, ଯାହାକୁ ସାଧାରଣରେ ପ୍ରଚଳିତ ଅଛି ଓ ସମସ୍ତେ ମୁଖସ୍ଥ କରିଥାନ୍ତି, ଏବଂ ଯେଉଁ ସବୁ ଶ୍ଳୋକର ବିଶଦବ୍ୟାଖ୍ୟାରେ ଅନ୍ୟାନ୍ୟ ଶାସ୍ତ୍ରର ବଚନ ଉଦ୍ଧୃତ ହୋଇଅଛି, ସେ ସବୁ ଶ୍ଳୋକର ସୂଚିପତ୍ର ।

---

### ପ୍ରଥମ ଅଧ୍ୟାୟଃ । ସୈନ୍ୟଦର୍ଶନଯୋଗଃ ।
### ଶ୍ଳୋକ ୪୭, ପୃ ୧—୩୩ ପୃଷ୍ଠା ।



---

### ଦ୍ୱିତୀୟ ଅଧ୍ୟାୟଃ । ସାଙ୍ଖ୍ୟଯୋଗଃ ।
### ଶ୍ଳୋକ, ୭୨, ପୃ ୩୪—୧୦୯ ।



---

### ତୃତୀୟ ଅଧ୍ୟାୟଃ । କର୍ମଯୋଗଃ ।
### ଶ୍ଳୋକ ୪୩, ପୃ ୧୧୦—୧୬୪ ପୃଷ୍ଠା ।



* ଚିହ୍ନିତ ଶ୍ଳୋକମାନଙ୍କର ବିଶଦବ୍ୟାଖ୍ୟା ଅଧିକ ଓ ତହିଁରେ ଶିକ୍ଷଣୀୟ ବିଷୟ ଅଛି ।

Digitized by PPRACHIN, SOA

## ଚତୁର୍ଥ ଅଧ୍ୟାୟଃ । ଜ୍ଞାନଯୋଗଃ ।

## ଶ୍ଲୋକ ୪୨, ପୃ ୧୫୫—୧୯୭ ସ୍ତା ।



## ପଞ୍ଚମ ଅଧ୍ୟାୟଃ । ସନ୍ନ୍ୟାସଯୋଗଃ ।

## ଶ୍ଲୋକ ୨୯, ପୃ ୧୯୮—୨୨୫ ସ୍ତା ।



## ଷଷ୍ଠ ଅଧ୍ୟାୟଃ । ଧ୍ୟାନଯୋଗଃ ।

## ଶ୍ଲୋକ ୪୭, ପୃ ୨୨୬—୨୭୭ ସ୍ତା ।



Digitized by PPRACHIN, SOA

---

ସପ୍ତମ ଅଧ୍ୟାୟଃ । ଜ୍ଞାନଯୋଗଃ ।

ଶ୍ଲୋକ ୩୦, ପୃ ୨୬୯—୩୦୯ ଷ୍ଠା ।



---

ଅଷ୍ଟମ ଅଧ୍ୟାୟଃ । ତାରକବ୍ରହ୍ମଯୋଗଃ ।

ଶ୍ଲୋକ ୨୮, ପୃ ୩୧୦—୩୪୨ ଷ୍ଠା ।



---

ନବମ ଅଧ୍ୟାୟଃ । ରାଜଗୁହ୍ୟ-ଯୋଗଃ ।

ଶ୍ଲୋକ ୩୪, ପୃ ୩୪୩—୩୮୧ ଷ୍ଠା ।



---

ଦଶମ ଅଧ୍ୟାୟଃ । ବିଭୂତିଯୋଗଃ ।

ଶ୍ଲୋକ ୪୨, ପୃ ୩୮୨—୪୨୨ ଷ୍ଠା ।



---

Digitized by PPRACHIN, SOA

## ଏକାଦଶ ଅଧ୍ୟାୟଃ । ବିଶ୍ୱରୂପ-ଦର୍ଶନଂ ।

### ଶ୍ଳୋକ ୫୫, ପୃ ୪୨୩—୪୭୭ ଷ୍ଠା ।



---

## ଦ୍ୱାଦଶ ଅଧ୍ୟାୟଃ । ଭକ୍ତିଯୋଗଃ ।

### ଶ୍ଳୋକ ୨୦, ପୃ ୪୭୭—୪୯୭ ଷ୍ଠା ।



---

## ତ୍ରୟୋଦଶ ଅଧ୍ୟାୟଃ । ପ୍ରକୃତିପୁରୁଷ-ବିବେକ-ଯୋଗଃ ।

### ଶ୍ଳୋକ ୩୪, ପୃ ୪୯୯—୫୩୬ ଷ୍ଠା ।



Digitized by PPRACHIN, SOA

## ଚତୁର୍ଦ୍ଦଶ ଅଧ୍ୟାୟଃ । ଗୁଣତ୍ରୟ-ବିଭାଗ-ଯୋଗଃ ।

### ଶ୍ଲୋକ ୨୭, ପୃ ୪୩୭—୪୬୨ ଷ୍ଠା ।



## ପଞ୍ଚଦଶ ଅଧ୍ୟାୟଃ । ପୁରୁଷୋତ୍ତମଯୋଗଃ ।

### ଶ୍ଲୋକ ୨୦, ପୃ ୪୬୩—୪୮୭ ଷ୍ଠା ।



ଓ

## ଷୋଡ଼ଶ ଅଧ୍ୟାୟଃ । ଦୈବାସୁରସମ୍ପଦ୍ବିଭାଗ-ଯୋଗଃ ।

### ଶ୍ଲୋକ ୨୪, ପୃ ୪୮୮—୫୧୪ ଷ୍ଠା ।



## ସପ୍ତଦଶ ଅଧ୍ୟାୟଃ । ଶ୍ରଦ୍ଧାତ୍ରୟବିଭାଗଯୋଗଃ ।

### ଶ୍ଲୋକ ୨୮, ପୃ ୫୧୫—୫୪୪ ଷ୍ଠା ।



Digitized by PPRACHIN, SOA

---

## ଅଷ୍ଟାଦଶ ଅଧ୍ୟାୟଃ । ମୋକ୍ଷ-ଯୋଗଃ ।

### ଶ୍ଳୋକ ୭୮, ପୃ ୭୪୫—୮୪୪ ପର୍ଯ୍ୟନ୍ତ ।

# ସୂଚୀପତ୍ର ।

—୦୦୦—

## ଅ



* ଶୁଦ୍ଧିପତ୍ରରେ ବ୍ୟବହୃତ ସାଙ୍କେତିକ ଚିହ୍ନ ଏଥିରେ ମଧ୍ୟ ବ୍ୟବହାର୍ଯ୍ୟ ଓ ଅ = ଅଧ୍ୟାୟ, ଶ୍ଳୋ-ବି = ଶ୍ଳୋକର ବିବୃତି ।

Digitized by PPRACHIN, SOA

Digitized by PPRACHIN, SOA

Digitized by PPRACHIN, SOA

Digitized by PPRACHIN, SOA

## ଈ



Digitized by PPRACHIN, SOA

Digitized by PPRACHIN, SOA

## ଉ



## ଊ



## ଋ



## ଓ



Digitized by PPRACHIN, SOA

Digitized by PPRACHIN, SOA

Digitized by PPRACHIN, SOA

Digitized by PPRACHIN, SOA

Digitized by PPRACHIN, SOA

## ଖ



## ଗ



Digitized by PPRACHIN, SOA

ଘ ।



ଚ ।



ଛ ।



ଜ ।



Digitized by PPRACHIN, SOA

Digitized by PPRACHIN, SOA

## ତ



Digitized by PPRACHIN, SOA

Digitized by PPRACHIN, SOA

## ଧ ।



## ନ



Digitized by PPRACHIN, SOA

Digitized by PPRACHIN, SOA

Digitized by PPRACHIN, SOA

Digitized by PPRACHIN, SOA

## ଭ ।



Digitized by PPRACHIN, SOA

Digitized by PPRACHIN, SOA

## ଯ ।



Digitized by PPRACHIN, SOA

Digitized by PPRACHIN, SOA

## ଶ ।



Digitized by PPRACHIN, SOA

Digitized by PPRACHIN, SOA

Digitized by PPRACHIN, SOA

ଓଁ ନମୋନାରାୟଣାୟ ।




## ପ୍ରଥମୋଽଧ୍ୟାୟଃ ।

### ଶ୍ଳୋକଃ ।

ଧୃତରାଷ୍ଟ୍ର ଉବାଚ ।—ଧର୍ମ୍ମକ୍ଷେତ୍ରେ କୁରୁକ୍ଷେତ୍ରେ, ସମବେତା ଯୁଯୁତ୍ସବଃ ।
ମାମକାଃ ପାଣ୍ଡବାଶ୍ଚୈବ, କିମକୁର୍ବତ ସଞ୍ଜୟ ! ।୧।

### ଅନ୍ୱୟଃ ।

ଧୃତରାଷ୍ଟ୍ରଃ ଉବାଚ । ହେ ସଞ୍ଜୟ ! ମାମକାଃ ଚ ପାଣ୍ଡବାଃ ଏବ ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ଯୁଯୁତ୍ସବଃ ସମବେତାଃ (ସନ୍ତଃ) କିଂ ଅକୁର୍ବତ ? ।୧।

### ଶ୍ରୀଧରସ୍ୱାମିକୃତ ଟୀକା ।

( ଉପକ୍ରମଣିକା । )

ଶେଷାଶେଷମୁଖବ୍ୟାଖ୍ୟାଚାତୁର୍ଯ୍ୟଂ ତ୍ୱେକବକ୍ତ୍ରତଃ ।
ଦଧାନମଦ୍ଭୁତଂ ବନ୍ଦେ ପରମାନନ୍ଦମାଧବଂ ।୧।
ଶ୍ରୀମାଧବଂ ପ୍ରଣମ୍ୟୋମାଧବଂ ବିଶ୍ୱେଶମାଦରାତ୍ ।
ତଦ୍ଭକ୍ତିଯନ୍ତ୍ରିତଃ କୁର୍ବେ ଗୀତାବ୍ୟାଖ୍ୟାଂ ସୁବୋଧିନୀଂ ।୨।
ଭାଷ୍ୟକାରମତଂ ସମ୍ୟକ୍ ତଦ୍ବ୍ୟାଖ୍ୟାତୃଗିରସ୍ତଥା ।
ଯଥାମତି ସମାଲୋକ୍ୟ ଗୀତାବ୍ୟାଖ୍ୟାଂ ସମାରଭେ ।୩।
ଗୀତା ବ୍ୟାଖ୍ୟାୟତେ ଯସ୍ୟାଃ ପାଠମାତ୍ରପ୍ରୟତ୍ନତଃ ।
ସେୟଂ ସୁବୋଧିନୀ ଟୀକା ସଦା ଧ୍ୟେୟା ମନୀଷିଭିଃ ।୪।

ଅଥ ଖଳୁ ସକଳଲୋକହିତାବତାରଃ ପରମକାରୁଣିକୋଭଗବାନ୍ ଦେବକୀନନ୍ଦନସ୍ତତ୍ତ୍ୱଜ୍ଞାନବର୍ଜ୍ଜିତଶୋକମୋହଭ୍ରଂଶିତବିବେକତୟା ନିଜଧର୍ମପରିତ୍ୟାଗପୂର୍ବକ ପରଧର୍ମାଭିସନ୍ଧାନମର୍ଜ୍ଜୁନଂ ଧର୍ମଜ୍ଞାନ ରହସ୍ୟୋପଦେଶପ୍ଳବେନ

Digitized by PPRACHIN, SOA

ତସ୍ମାଚ୍ଛୋକମୋହସାଗରାଦୁଦ୍ଧାର ତମେବ ଭଗବାନୁପଦିଷ୍ଟମର୍ଥଂ କୃଷ୍ଣଦ୍ୱୈପାୟନଃ ସପ୍ତଭିଃ ଶ୍ଲୋକଶତୈରୁପନିବବନ୍ଧ ତତ୍ର ଚ ପ୍ରାୟଶଃ ଶ୍ରୀକୃଷ୍ଣମୁଖାଦ୍ବିନିଃସୃତାନେବଶ୍ଲୋକାନଲିଖତ୍ କାଂଶ୍ଚିତ୍ ତତ୍ସଙ୍ଗତୟେ ସ୍ୱୟଂ ଚ ବ୍ୟରଚୟତ୍ ଯଥୋକ୍ତଂ ଗୀତାମାହାତ୍ମ୍ୟେ ।—ଗୀତା ସୁଗୀତା କର୍ତ୍ତବ୍ୟା କିମନ୍ୟୈଃ ଶାସ୍ତ୍ରବିସ୍ତରୈଃ । ଯା ସ୍ୱୟଂ ପଦ୍ମନାଭସ୍ୟ ମୁଖପଦ୍ମାଦ୍ବିନିଃ-ସୃତେତ୍ୟାଦି । ଅତ୍ର ତାବଦ୍ଧର୍ମକ୍ଷେତ୍ରେ ଇତ୍ୟାଦିନା ବସୀଦନ୍ତିଦମଗ୍ରାଦତ୍ୟନ୍ତେନ ଗ୍ରନ୍ଥେନ ଶ୍ରୀକୃଷ୍ଣାର୍ଜୁନସମ୍ବାଦପ୍ରସ୍ତାବାୟ କଥା ନିରୂପ୍ୟତେ । ଧୃତରାଷ୍ଟ୍ର ଉବାଚ । ଧର୍ମକ୍ଷେତ୍ର ଇତି । ଭୋଃ ସଞ୍ଜୟ ! ଧର୍ମଭୂମୌ କୁରୁକ୍ଷେତ୍ରେ, ଧର୍ମକ୍ଷେତ୍ର ଇତି କୁରୁକ୍ଷେତ୍ରବିଶେଷଣଂ, ଏଷାମାଦିପୁରୁଷଃ କଶ୍ଚିତ୍ କୁରୁନାମା ବଭୂବ, ତସ୍ୟ କୁରୋର୍ଧର୍ମସ୍ଥାନେ ମାମକାଃ ମତ୍ପୁତ୍ରାଃ ପାଣ୍ଡୁପୁତ୍ରାଶ୍ଚ ଯୁଯୁତ୍ସବୋ ଯୋଦ୍ଧୁମିଚ୍ଛନ୍ତଃ ସମବେତା ମିଳିତାଃ ସନ୍ତଃ କିମକୁର୍ବତ କିଂ କୃତବନ୍ତଃ । ୧ ।

## ପଦବ୍ୟାଖ୍ୟା ।

ଧର୍ମକ୍ଷେତ୍ରେ—ଧର୍ମର ସ୍ଥାନ, କୁରୁକ୍ଷେତ୍ରେ—କୁରୁବଂଶୀୟଙ୍କର ଅଧିକୃତ ସ୍ଥାନରେ ସମବେତାଃ—ମିଳିତ, ଯୁଯୁତ୍ସବଃ—ଯୁଦ୍ଧ କରିବାକୁ ଇଚ୍ଛୁକ ମାମକାଃ—ଆମ୍ଭର ପୁତ୍ରମାନେ ପାଣ୍ଡବାଶ୍ଚୈବ—ଏବଂ ପାଣ୍ଡୁପୁତ୍ରମାନେ, କିମକୁର୍ବତ—କଣ କଲେ, ସଞ୍ଜୟ—ହେ ସଞ୍ଜୟ ! । ୧ ।

## ଅନୁବାଦ ।

ରାଜା ଧୃତରାଷ୍ଟ୍ର କହିଲେ, ହେ ସଞ୍ଜୟ ! ଧର୍ମଭୂମି କୁରୁକ୍ଷେତ୍ରରେ ଆମ୍ଭର ଓ ପାଣ୍ଡୁଙ୍କର ପୁତ୍ରମାନେ ଯୁଦ୍ଧ କରିବା ଇଚ୍ଛାରେ ମିଳିତ ହୋଇ କି କର୍ମ କଲେ ? । ୧ ।

## ବିଶଦବ୍ୟାଖ୍ୟା ।

କୃଷ୍ଣ ଓ ବିଦୁରଙ୍କ ମଧ୍ୟସ୍ଥତାରେ ସୁଦ୍ଧା ଦୁର୍ଯ୍ୟୋଧନ ପାଣ୍ଡବଙ୍କୁ 'ସୂଚ୍ୟଗ୍ରପରିମିତ' ସ୍ଥାନ ଦେବାକୁ ଅସ୍ୱୀକୃତ ହେବାରୁ ଉଭୟପକ୍ଷ ସୈନ୍ୟସାମନ୍ତ ଘେନି ରଣକ୍ଷେତ୍ରରେ ଉପସ୍ଥିତ ହୋଇଅଛନ୍ତି, ଶଙ୍ଖନାଦ ଓ ସିଂହନାଦରେ ରଣକ୍ଷେତ୍ର କମ୍ପିତ ହେଉଅଛି, ଏପରି ସ୍ଥଳେ ଧୃତରାଷ୍ଟ୍ର 'କିପରି ଯୁଦ୍ଧ ହେଉଅଛି ?' ଏହା ନ ପଚାରି 'ଆମ୍ଭର ପୁତ୍ରମାନେ ଓ ପାଣ୍ଡୁପୁତ୍ରମାନେ କଣ କଲେ ?' ଏପରି ପ୍ରଶ୍ନ କଲେ କାହିଁକି ? ଆପାତତଃ ଏ ପ୍ରଶ୍ନ ଅସଙ୍ଗତ ବୋଲି ବୋଧ ହେଉଅଛି ସତ, କିନ୍ତୁ ମନୋଯୋଗ କରି ବୁଝିଲେ ଭ୍ରମ ଦୂର ହେବ ।

କୁରୁକ୍ଷେତ୍ର 'ଧର୍ମକ୍ଷେତ୍ର' ଥିବାରୁ ଧୃତରାଷ୍ଟ୍ରଙ୍କର ଏପରି ସନ୍ଦେହ ହେଲା କି, ସେହି ଧର୍ମକ୍ଷେତ୍ରପ୍ରଭାବରେ ଅଧର୍ମୀମାନଙ୍କର ଧର୍ମଭାବ ଉଦୟ ହୁଏ, କିମ୍ବା ଧର୍ମକ୍ଷେତ୍ରପ୍ରଭାବରେ ଧର୍ମାତ୍ମା ଯୁଧିଷ୍ଠିରଙ୍କର ଧର୍ମଭାବ ବୃଦ୍ଧି ହେଲେ ଅଥବା ଦୁରାତ୍ମା ଦୁର୍ଯ୍ୟୋଧନର ସାତ୍ତ୍ୱିକଗୁଣ ପ୍ରକାଶ ହେଲେ ମହାପ୍ରାଣିକ୍ଷୟକାରୀ ଯୁଦ୍ଧ ନ କରି ପରସ୍ପର ମିତ୍ରତା କରି ପାରନ୍ତି । ଅତଏବ ଉଭୟପକ୍ଷ ଯୁଦ୍ଧ କଲେ କି-ସନ୍ଧି କଲେ ଏହା ଜାଣିବାପାଇଁ ସେ 'କି କର୍ମ କଲେ ?' ଏହା ପଚାରିଥିଲେ ।

ଧୃତରାଷ୍ଟ୍ରଙ୍କର ଆଶଙ୍କା ଅମୂଳକ ନୁହେଁ । ଭୀଷ୍ମ 'ପିତାମହ' ଓ ଦ୍ରୋଣାଚାର୍ଯ୍ୟ 'ଗୁରୁ' ଏବଂ କୌରବଗଣ 'ଭ୍ରାତା' ଏ କଥା ଅର୍ଜ୍ଜୁନ ଚିରକାଳ ଜାଣିଥିଲେ ଓ ଜାଣିକରି ମଧ୍ୟ ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ । ମାତ୍ର ଧର୍ମକ୍ଷେତ୍ରରେ ଉପସ୍ଥିତ ହେଲାକ୍ଷଣି ସ୍ଥାନପ୍ରଭାବରେ ତାଙ୍କର ସତ୍ତ୍ୱଗୁଣ ବୃଦ୍ଧି ହୋଇ ବୈରାଗ୍ୟୋଦୟ ହେଲା । ଅର୍ଜ୍ଜୁନଙ୍କ ରଥରେ ଶ୍ରୀକୃଷ୍ଣ ସାରଥିରୂପରେ ବିରାଜମାନ ଥିବାରୁ ଧର୍ମକ୍ଷେତ୍ରର ପ୍ରଭାବ ତାଙ୍କଠାରେ ଯେପରି ସମ୍ପୂର୍ଣ୍ଣ

Digitized by PPRACHIN, SOA

ହେଲେ, ଅର୍ଜ୍ଜୁନଙ୍କ ରଥର ପଶ୍ଚାଦ୍‌ଭାଗରେ ଅବସ୍ଥିତ ପାଣ୍ଡବସୈନ୍ୟମାନଙ୍କର ଶ୍ରୀକୃଷ୍ଣଦର୍ଶନ ଅଭାବରୁ ଏବଂ ସମ୍ମୁଖସ୍ଥିତ ଦୁର୍ଯ୍ୟୋଧନପକ୍ଷୀୟ ସେନା ଶତ୍ରୁଭାବରେ ଶ୍ରୀକୃଷ୍ଣଙ୍କୁ ଦେଖୁଥିବାରୁ 'ଧର୍ମ୍ମକ୍ଷେତ୍ର' ସେମାନଙ୍କଠାରେ ତାଦୃଶ ପ୍ରଭାବ ପ୍ରକାଶ କରି ପାରିଲା ନାହିଁ ।

ଯାବାଲୋପନିଷଦରେ କୁରୁକ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣିତ ଅଛି । ଯଥା—

"ଯଦନୁକୁରୁକ୍ଷେତ୍ରଂ ଦେବାନାଂ ଦେବଯଜନଂ ସର୍ବେଷାଂ ଭୂତାନାଂ ବ୍ରହ୍ମସଦନଂ" ।

ଅର୍ଥାତ୍ କୁରୁକ୍ଷେତ୍ର, ଦେବତାମାନଙ୍କର ଦେବଯଜନସ୍ଥାନ ଓ ପ୍ରାଣିମାନଙ୍କର ବ୍ରହ୍ମ ଅର୍ଥାତ୍ ମୋକ୍ଷଲାଭର ନିକେତନ ଅଟେ ।

ପୁତ୍ରସ୍ନେହବଶଂବଦ ଧୃତରାଷ୍ଟ୍ର, 'ମାମକାଃ ପାଣ୍ଡବାଶ୍ଚ' ଅର୍ଥାତ୍ 'ଆମ୍ଭ ପୁତ୍ରମାନେ ଓ ପାଣ୍ଡୁପୁତ୍ରମାନେ' ଏପରି ପ୍ରଶ୍ନ କରିବାରୁ ଯୁଧିଷ୍ଠିରାଦିଙ୍କଠାରେ ତାଙ୍କର ଭେଦଭାବ ଓ ଶତ୍ରୁତା ଥିବାର ଜଣାଯାଏ । ନିକଟବର୍ତ୍ତୀ କୌଣସି ବ୍ୟକ୍ତିଙ୍କୁ କିଛି ପ୍ରଶ୍ନ କଲେ ତାହାର ନାମୋଲ୍ଲେଖ ନ କଲେ ମଧ୍ୟ ଚଳେ । ମାତ୍ର ବ୍ୟାକୁଳଚିତ୍ତ ଧୃତରାଷ୍ଟ୍ର, 'ସଞ୍ଜୟ' । ଅର୍ଥାତ୍ ହେ ରାଗ-ଦ୍ୱେଷ-ଜୟକାରିନ୍ ! ଏପରି ନାମୋଲ୍ଲେଖ କରି ସମ୍ବୋଧନ କରିବାରେ ପକ୍ଷପାତଶୂନ୍ୟ ହୋଇ ଯଥାର୍ଥ ବିଷୟ ବର୍ଣ୍ଣନା କରିବାକୁ ସଞ୍ଜୟଙ୍କୁ ଉତ୍ତେଜିତ କରିଅଛନ୍ତି ।

ଧର୍ମ୍ମକ୍ଷେତ୍ରପ୍ରଭାବରେ ଅର୍ଜ୍ଜୁନଙ୍କର ସତ୍ତ୍ୱଗୁଣ ବୃଦ୍ଧି ହେତୁରୁ 'ଯୁଦ୍ଧାଦି' କ୍ଷତ୍ରିୟଧର୍ମ୍ମରେ ବ୍ୟାଘାତ ହେବାରୁ ଚକ୍ରଚୂଡ଼ାମଣି ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଆତ୍ମଜ୍ଞାନର ଉପଦେଶ ଦେଇ ତ୍ରିଗୁଣ-ବନ୍ଧନ ଛେଦନ କଲେ । ଅର୍ଜ୍ଜୁନ ଗୁଣାତୀତ ହୋଇ ବର୍ଣ୍ଣାଶ୍ରମିକ ବାହ୍ୟଧର୍ମ୍ମର ଅନୁଷ୍ଠାନ କଲେ । ୧ ।

ଶ୍ଳୋକଃ ।

ସଞ୍ଜୟ ଉବାଚ ।—ଦୃଷ୍ଟ୍ୱା ତୁ ପାଣ୍ଡବାନୀକଂ, ବ୍ୟୂଢ଼ଂ ଦୁର୍ଯ୍ୟୋଧନସ୍ତଦା ।

ଆଚାର୍ଯ୍ୟମୁପସଙ୍ଗମ୍ୟ, ରାଜା ବଚନମବ୍ରବୀତ୍ । ୨ ।

ଅନ୍ୱୟଃ ।

ସଞ୍ଜୟଃ ଉବାଚ । ରାଜା ଦୁର୍ଯ୍ୟୋଧନଃ ତୁ ପାଣ୍ଡବାନୀକଂ ବ୍ୟୂଢ଼ଂ ଦୃଷ୍ଟ୍ୱା ତଦା ଆଚାର୍ଯ୍ୟଂ ଉପସଙ୍ଗମ୍ୟ ବଚନଂ ଅବ୍ରବୀତ୍ । ୨ ।

ଟୀକା ।

ସଞ୍ଜୟ ଉବାଚ । ଦୃଷ୍ଟ୍ୱେତ୍ୟାଦି । ପାଣ୍ଡବାନାମନୀକଂ ସୈନ୍ୟଂ ବ୍ୟୂଢ଼ଂ ବ୍ୟୂହରଚନୟାଧିଷ୍ଠିତଂ ଦୃଷ୍ଟ୍ୱା ଦ୍ରୋଣାଚାର୍ଯ୍ୟସମୀପଂ ଗତ୍ୱା ରାଜା ଦୁର୍ଯ୍ୟୋଧନଃ ବକ୍ଷ୍ୟମାଣଂ ବଚନମୁବାଚ । ୨ ।

ପଦବ୍ୟାଖ୍ୟା ।

ଦୃଷ୍ଟ୍ୱା—ଦେଖିକରି, ତୁ—ପୁଣି, ପାଣ୍ଡବାନୀକଂ—ପାଣ୍ଡବମାନଙ୍କର ସୈନ୍ୟଙ୍କୁ, ବ୍ୟୂଢ଼ଂ—ବ୍ୟୂହରଚନାରେ ଅବସ୍ଥିତ (ଯୁଦ୍ଧରେ ସୈନ୍ୟମାନଙ୍କୁ ସଜ୍ଜିତ କରି ସ୍ଥାପନ କରିବାର ପ୍ରଣାଳୀବିଶେଷକୁ 'ବ୍ୟୂହ' ବୋଲାଯାଏ; ସେହି ବ୍ୟୂହ, ଦଣ୍ଡ, ଚକ୍ର ଓ ପଦ୍ମାଦି ଭେଦରେ ନାନାପ୍ରକାର ଅଛି), ଦୁର୍ଯ୍ୟୋଧନସ୍ତଦା—ଦୁର୍ଯ୍ୟୋଧନ ସେତେବେଳେ,

Digitized by PPRACHIN, SOA

ଆଚାର୍ଯ୍ୟଂ—ଦ୍ରୋଣାଚାର୍ଯ୍ୟଙ୍କୁ, ଉପସଙ୍ଗମ୍ୟ—ପ୍ରାପ୍ତ ହୋଇ, ଅର୍ଥାତ୍ ଦ୍ରୋଣାଚାର୍ଯ୍ୟଙ୍କ ନିକଟକୁ ଯାଇ, ରାଜା—ନରପତି, ବଚନଂ—କଥା, ଅବ୍ରବୀତ୍—କହିଲେ । ୨ ।

## ଅନୁବାଦ ।

ସଞ୍ଜୟ କହିଲେ, ରାଜା ଦୁର୍ଯ୍ୟୋଧନ ପାଣ୍ଡବଙ୍କ ସୈନ୍ୟଙ୍କୁ ବ୍ୟୂହରଚନାରେ ଅବସ୍ଥିତ ଦେଖି ଦ୍ରୋଣାଚାର୍ଯ୍ୟଙ୍କ ନିକଟକୁ ଯାଇ କହିଲେ । ୨ ।

## ଶ୍ଳୋକଃ ।

ପଶ୍ୟୈତାଂ ପାଣ୍ଡୁପୁତ୍ରାଣାମାଚାର୍ଯ୍ୟ ମହତୀଂ ଚମୂଂ ।
ବ୍ୟୂଢାଂ ଦ୍ରୁପଦପୁତ୍ରେଣ, ତବ ଶିଷ୍ୟେଣ ଧୀମତା । ୩ ।

## ଅନ୍ୱୟଃ ।

ହେ ଆଚାର୍ଯ୍ୟ! ଧୀମତା ତବ ଶିଷ୍ୟେଣ ଦ୍ରୁପଦପୁତ୍ରେଣ ବ୍ୟୂଢାଂ ପାଣ୍ଡୁପୁତ୍ରାଣାଂ ଏତାଂ ମହତୀଂ ଚମୂଂ ପଶ୍ୟ । ୩ ।

## ଟୀକା ।

ତଦେବ ବଚନମାହ । ପଶ୍ୟୈତାମିତ୍ୟାଦି ନବଭିଃ ଶ୍ଳୋକୈଃ । ପଶ୍ୟେତ୍ୟାଦି । ହେ ଆଚାର୍ଯ୍ୟ ! ପାଣ୍ଡବାନାଂ ମହତୀଂ ବିତତାଂ ଚମୂଂ ସେନାଂ ପଶ୍ୟ । ତବ ଶିଷ୍ୟେଣ ଦ୍ରୁପଦପୁତ୍ରେଣ ଧୃଷ୍ଟଦ୍ୟୁମ୍ନେନ ବ୍ୟୂଢାଂ ବ୍ୟୂହରଚନୟାଧିଷ୍ଠିତାଂ । ୩ ।

## ପଦବ୍ୟାଖ୍ୟା ।

ପଶ୍ୟ—ଦେଖ, ଏତାଂ—ଏହି, ପାଣ୍ଡୁପୁତ୍ରାଣାଂ—ପାଣ୍ଡୁପୁତ୍ରମାନଙ୍କର, ଆଚାର୍ଯ୍ୟ—ହେ ଦ୍ରୋଣାଚାର୍ଯ୍ୟ, ମହତୀଂ ଚମୂଂ—ବହୁସଂଖ୍ୟକ ସୈନ୍ୟଙ୍କୁ, ବ୍ୟୂଢାଂ—ବ୍ୟୂହରଚନାଦ୍ୱାରା ସୁସଜ୍ଜିତ, ଦ୍ରୁପଦପୁତ୍ରେଣ—ଧୃଷ୍ଟଦ୍ୟୁମ୍ନଙ୍କଦ୍ୱାରା, ତବ ଶିଷ୍ୟେଣ—ତୁମ୍ଭ ଶିଷ୍ୟ, ଧୀମତା—ବୁଦ୍ଧିମାନ୍ । ୩ ।

## ଅନୁବାଦ ।

ହେ ଆଚାର୍ଯ୍ୟ ! ତୁମ୍ଭର ବୁଦ୍ଧିମାନ୍ ଶିଷ୍ୟ ଦ୍ରୁପଦପୁତ୍ର-ଧୃଷ୍ଟଦ୍ୟୁମ୍ନଙ୍କଦ୍ୱାରା ବ୍ୟୂହରଚନାରେ ସୁସଜ୍ଜିତ ପାଣ୍ଡବମାନଙ୍କର ଏହି ବହୁସଂଖ୍ୟକ ସୈନ୍ୟଙ୍କୁ ଅବଲୋକନ କର । ୩ ।

## ଭାବବ୍ୟାଖ୍ୟା ।

'ତୁମ୍ଭର ବୁଦ୍ଧିମାନ୍ ଶିଷ୍ୟ' ଏ କଥା କହିବାର ଅର୍ଥ ଏହି ଯେ ଧୃଷ୍ଟଦ୍ୟୁମ୍ନ ନିଜପିତା ଦ୍ରୁପଦରାଜାଙ୍କପ୍ରତି ଦ୍ରୋଣଙ୍କର ପୂର୍ବକୃତ ଅପମାନର ପ୍ରତିଶୋଧ ନେବା ଇଚ୍ଛାରେ ସେହି ଦ୍ରୋଣଙ୍କଠାରୁ ବିଦ୍ୟାଶିକ୍ଷା କରି ବର୍ତ୍ତମାନ ଯୁଦ୍ଧ ନିମିତ୍ତ ପ୍ରସ୍ତୁତ ଅଛନ୍ତି ଅଥବା 'ଶିଷ୍ୟ ଅପେକ୍ଷା ଗୁରୁଙ୍କର ସାମର୍ଥ୍ୟ ଅଧିକ' ଏହା ସ୍ୱତଃସିଦ୍ଧ କଥା ଥିବାରୁ କାଳେ ଦ୍ରୋଣାଚାର୍ଯ୍ୟ ଅବଜ୍ଞା କରନ୍ତେ ଏଥିପାଇଁ 'ବୁଦ୍ଧିମାନ୍' ଶବ୍ଦ ଦିଆ ଯାଇଅଛି କି ତାକୁ ଉପେକ୍ଷା ନ କରି ଶୀଘ୍ର ପ୍ରତୀକାର କରିବାକୁ ଦ୍ରୋଣାଚାର୍ଯ୍ୟ ପ୍ରସ୍ତୁତ ହେବେ । ୩ ।

## ଶ୍ଳୋକଃ ।

ଅତ୍ର ଶୂରା ମହେଷ୍ୱାସା, ଭୀମାର୍ଜ୍ଜୁନସମା ଯୁଧି ।
ଯୁଯୁଧାନୋ ବିରାଟଶ୍ଚ, ଦ୍ରୁପଦଶ୍ଚ ମହାରଥଃ । ୪ ।

Digitized by PPRACHIN, SOA

## ଅନ୍ୱୟଃ ।

ଅତ୍ର ଯୁଧି ଭୀମାର୍ଜ୍ଜୁନସମାଃ ମହେଷ୍ୱାସାଃ ଶୂରାଃ ଯୁଯୁଧାନଃ ଚ ବିରାଟଃ ମହାରଥଃ ଦ୍ରୁପଦଃ ଚ (ସନ୍ତି) । ୪ ।

## ଟୀକା ।

ଅତ୍ରେତ୍ୟାଦି । ଅତ୍ରାସ୍ୟାଂ ତସ୍ୟାଂ ଇଷବୋ ବାଣା ଅସ୍ୟନ୍ତେ କ୍ଷିପ୍ୟନ୍ତେ ଏଭିରିତି ଇଷ୍ୱାସାଃ ଧନୂଂଷି । ମହାନ୍ତ ଇଷ୍ୱାସା ଯେଷାଂ ତେ ମହେଷ୍ୱାସାଃ । ଭୀମାର୍ଜ୍ଜୁନୌ ତାବଦତ୍ରାତିପ୍ରସିଦ୍ଧୌ ଯୋଦ୍ଧାରୌ ତାଭ୍ୟାଂ ସମାଃ ଶୂରାଃ ସନ୍ତି ତାନେବ ନାମଭିର୍ନିର୍ଦ୍ଦିଶତି । ଯୁଯୁଧାନ ଇତି । ଯୁଯୁଧାନଃ ସାତ୍ୟକିଃ । ୪ ॥

## ପଦବ୍ୟାଖ୍ୟା ।

ଅତ୍ର—ଏହି ସୈନ୍ୟମଧ୍ୟରେ, ଶୂରାଃ—ପରାକ୍ରମୀ, ମହେଷ୍ୱାସାଃ—ମହାଧନୁର୍ଦ୍ଧର ଭୀମାର୍ଜ୍ଜୁନସମାଃ—ଭୀମ ଓ ଅର୍ଜ୍ଜୁନଙ୍କ ତୁଲ୍ୟ, ଯୁଧି—ଯୁଦ୍ଧରେ, ଯୁଯୁଧାନଃ—ସାତ୍ୟକି, ବିରାଟଶ୍ଚ— ଓ ବିରାଟରାଜା ଦ୍ରୁପଦଶ୍ଚ ମହାରଥଃ—ଏବଂ ମହାରଥ ଦ୍ରୁପଦରାଜା । ୪ ।

## ଅନୁବାଦ ।

ଏହି ସୈନ୍ୟସମୂହମଧ୍ୟରେ ଯୁଦ୍ଧରେ ଭୀମାର୍ଜ୍ଜୁନ ସମାନ ମହାଧନୁର୍ଦ୍ଧର ଓ ପରାକ୍ରମୀ ସାତ୍ୟକି, ବିରାଟ ଓ ମହାରଥ ଦ୍ରୁପଦ (ଅଛନ୍ତି) । ୪ ।

## ଶ୍ଳୋକଃ ।

ଧୃଷ୍ଟକେତୁଶ୍ଚେକିତାନଃ, କାଶୀରାଜଶ୍ଚ ବୀର୍ଯ୍ୟବାନ୍ ।
ପୁରୁଜିତ୍ କୁନ୍ତିଭୋଜଶ୍ଚ, ଶୈବ୍ୟଶ୍ଚ ନରପୁଙ୍ଗବଃ । ୫ ।

## ଅନ୍ୱୟଃ ।

ଧୃଷ୍ଟକେତୁଃ, ଚେକିତାନଃ, ବୀର୍ଯ୍ୟବାନ୍ କାଶୀରାଜଃ, ଚ ପୁରୁଜିତ୍, କୁନ୍ତିଭୋଜଃ, ନରପୁଙ୍ଗବଃ ଶୈବ୍ୟଃ ଚ (ସନ୍ତି) । ୫ ।

## ଟୀକା ।

କିଞ୍ଚ ଧୃଷ୍ଟକେତୁରିତି । ଚେକିତାନୋ ନାମ ଏକୋ ରାଜା ନରପୁଙ୍ଗବଃ ନରଶ୍ରେଷ୍ଠଃ ଶୈବ୍ୟଃ । ୫ ।

## ପଦବ୍ୟାଖ୍ୟା ।

ବୀର୍ଯ୍ୟବାନ୍—ପରାକ୍ରମୀ, ନରପୁଙ୍ଗବଃ—ମନୁଷ୍ୟଶ୍ରେଷ୍ଠ, (ଅନ୍ୟାନ୍ୟ ପଦମାନ ଏକ ୨ ରାଜାଙ୍କର ନାମବାଚକ) । ୫ ।

## ଅନୁବାଦ ।

ଧୃଷ୍ଟକେତୁ, ଚେକିତାନ, ପରାକ୍ରମୀ କାଶୀରାଜ, ପୁରୁଜିତ୍ ଓ କୁନ୍ତିଭୋଜ ଏବଂ ନରଶ୍ରେଷ୍ଠ ଶୈବ୍ୟ (ଅଛନ୍ତି) । ୫ ।

## ଶ୍ଳୋକଃ ।

ଯୁଧାମନ୍ୟୁଶ୍ଚ ବିକ୍ରାନ୍ତ, ଉତ୍ତମୌଜାଶ୍ଚ ବୀର୍ଯ୍ୟବାନ୍ ।
ସୌଭଦ୍ରୋ ଦ୍ରୌପଦେୟାଶ୍ଚ, ସର୍ବ ଏବ ମହାରଥାଃ । ୬ ।

Digitized by PPRACHIN, SOA

### ଅନ୍ୱୟଃ ।

ବିକ୍ରାନ୍ତଃ ଯୁଧାମନ୍ୟୁଃ, ଚ ବୀର୍ଯ୍ୟବାନ୍ ଉତ୍ତମୌଜାଃ ସୌଭଦ୍ରଃ, ଦ୍ରୌପଦେୟାଃ ଚ ସର୍ବେ ମହାରଥାଃ ଏବ । ୬ ।

### ଟୀକା ।

ଯୁଧାମନ୍ୟୁରିତି । ବିକ୍ରାନ୍ତୋ ଯୁଧାମନ୍ୟୁର୍ବୀର୍ଯ୍ୟବାନୁତ୍ତମୌଜାଃ ସୌଭଦ୍ରୋଽଭିମନ୍ୟୁଃ ଦ୍ରୌପଦେୟାଃ ଦ୍ରୌପଦ୍ୟାଂ ପଞ୍ଚଭ୍ୟୋ ଯୁଧିଷ୍ଠିରାଦିଭ୍ୟୋ ଜାତାଃ ପୁତ୍ରାଃ ପ୍ରତିବିନ୍ଧ୍ୟାଦୟଃ ପଞ୍ଚ । ମହାରଥାନାଂ ଲକ୍ଷଣଂ ।

ଏକୋ ଦଶସହସ୍ରାଣି ଯୋଧୟେଦ୍ୟସ୍ତୁ ଧନ୍ୱିନାଂ ।
ଶସ୍ତ୍ରଶାସ୍ତ୍ରପ୍ରବୀଣଶ୍ଚ ମହାରଥ ଇତି ସ୍ମୃତଃ ।
ଅମିତାନ୍ ଯୋଧୟେଦ୍ୟସ୍ତୁ ସମ୍ପ୍ରୋକ୍ତୋଽତିରଥସ୍ତୁ ସଃ ।
ରଥୀ ଚୈକେନ ଯୋ ଯୋଦ୍ଧା ତନ୍ନ୍ୟୂନୋଽର୍ଦ୍ଧରଥଃ ସ୍ମୃତଃ । ୬ ।

### ପଦବ୍ୟାଖ୍ୟା ।

ଯୁଧାମନ୍ୟୁଶ୍ଚ—ଯୁଧାମନ୍ୟୁନାମକ ରାଜା, ବିକ୍ରାନ୍ତଃ—ପରାକ୍ରମୀ, ଉତ୍ତମୌଜାଶ୍ଚ—ଉତ୍ତମ ଓଜ (ବଳ) ଶାଳୀ, ବୀର୍ଯ୍ୟବାନ୍—ଶକ୍ତିମାନ୍, ସୌଭଦ୍ରଃ—ସୁଭଦ୍ରାନନ୍ଦନ (ଅଭିମନ୍ୟୁ), ଦ୍ରୌପଦେୟାଶ୍ଚ—ଦ୍ରୌପଦୀଙ୍କର ପୁତ୍ରମାନେ (ପ୍ରତିବିନ୍ଧ୍ୟ, ଶ୍ରୁତସୋମ, ଶ୍ରୁତକର୍ମା, ଶତାନୀକ, ଓ ଶ୍ରୁତସେନ), ସର୍ବେ—ସମସ୍ତେ, ଏବ—ନିଶ୍ଚୟ, ମହାରଥାଃ—ଶସ୍ତ୍ରଶାସ୍ତ୍ରନିପୁଣ ଓ ଦଶସହସ୍ର ଧନୁର୍ଦ୍ଧରସୈନ୍ୟଙ୍କ ସହିତ ଯୁଦ୍ଧ କରିବାକୁ ସମର୍ଥ । ୬ ।

### ଅନୁବାଦ ।

ପରାକ୍ରମୀ ଯୁଧାମନ୍ୟୁ, ଶକ୍ତିମାନ୍ ଓ କ୍ଷମତାଶାଳୀ ସୁଭଦ୍ରାନନ୍ଦନ ଅଭିମନ୍ୟୁ ଏବଂ ଦ୍ରୌପଦୀଙ୍କର ପ୍ରତିବିନ୍ଧ୍ୟାଦି ପଞ୍ଚପୁତ୍ର (ଅଛନ୍ତି) ଏମାନେ ସମସ୍ତେ ମହାରଥ ଅଟନ୍ତି ।

### ବିଶେଷବ୍ୟାଖ୍ୟା ।

ଯୋଦ୍ଧାମାନଙ୍କ ମଧ୍ୟରେ ମହାରଥ, ଅତିରଥ, ରଥୀ ଓ ଅର୍ଦ୍ଧରଥ ଏପରି ଚାରିଗୋଟି ଶ୍ରେଣୀବିଭାଗ ଅଛି । ଯଥା—ଯେଉଁ ବୀର ଶସ୍ତ୍ର ଓ ଶାସ୍ତ୍ରବିଦ୍ୟାରେ ନିପୁଣ ହୋଇ ଦଶସହସ୍ର ଧନୁର୍ଦ୍ଧରସୈନ୍ୟଙ୍କ ସହିତ ଏକାକୀ ଯୁଦ୍ଧ କରିବାକୁ ସମର୍ଥ ତାଙ୍କୁ 'ମହାରଥ'; ଯେ ଶସ୍ତ୍ର-ଶାସ୍ତ୍ରରେ ଅତି ନିପୁଣ ଅଥଚ ଅସଂଖ୍ୟ ଶୂରବୀରଙ୍କ ସଙ୍ଗରେ ଏକାକୀ ଯୁଦ୍ଧ କରିବାକୁ ସମର୍ଥ ତାଙ୍କୁ 'ଅତିରଥ' ଓ ଯେ ଏକାକୀ କେବଳ ଏକଜଣ ବୀର ସହିତ ଯୁଦ୍ଧ କରି ପାରେ ତାଙ୍କୁ 'ରଥୀ' ଏବଂ ଯେ ରଥୀ ଅପେକ୍ଷା ହୀନବଳ ତାଙ୍କୁ 'ଅର୍ଦ୍ଧରଥ' ବୋଲାଯାଏ ।

ଯୁଯୁଧାନଠାରୁ ଦ୍ରୌପଦୀନନ୍ଦନ ପର୍ଯ୍ୟନ୍ତ ଯେଉଁ ବୀରମାନଙ୍କ ନାମ ଲେଖା ହୋଇଅଛି, ନାମ, ବିଶେଷଣ ଓ ସ୍ଥାନ ପ୍ରଭୃତିଦ୍ୱାରା ସେମାନଙ୍କର ବୀରତ୍ୱ ଏକପ୍ରକାର ପ୍ରକାଶ କରା ହୋଇଅଛି । ୬ ।

### ଶ୍ଳୋକଃ ।

ଅସ୍ମାକନ୍ତୁ ବିଶିଷ୍ଟା ଯେ, ତାନ୍ନିବୋଧ ଦ୍ୱିଜୋତ୍ତମ ।
ନାୟକା ମମ ସୈନ୍ୟସ୍ୟ, ସଂଜ୍ଞାର୍ଥଂ ତାନ୍ ବ୍ରବୀମି ତେ । ୭ ।

### ଅନ୍ୱୟଃ ।

ହେ ଦ୍ୱିଜୋତ୍ତମ ! ଯେ ଅସ୍ମାକଂ ବିଶିଷ୍ଟାଃ ତୁ ମମ ସୈନ୍ୟସ୍ୟ ନାୟକାଃ ତାନ୍ ନିବୋଧ । ତାନ୍ ତେ ସଂଜ୍ଞାର୍ଥଂ ବ୍ରବୀମି । ୭ ।

Digitized by PPRACHIN, SOA

ଟୀକା ।

ଅସ୍ମାକମିତି । ନିବୋଧ ବୁଧ୍ୟସ୍ୱ ନାୟକାଃ ନେତାରଃ ସଂଜ୍ଞାର୍ଥଂ ସମ୍ୟକ୍ ଜ୍ଞାନାର୍ଥମିତ୍ୟର୍ଥଃ । ୭ ।

ପଦବ୍ୟାଖ୍ୟା ।

ଅସ୍ମାକଂ—ଆମ୍ଭମାନଙ୍କର, ତୁ—ପୁଣି, ବିଶିଷ୍ଟାଃ—ଶ୍ରେଷ୍ଠ, ଯେ—ଯେଉଁମାନେ, ତାନ୍—ସେମାନଙ୍କ, ନିବୋଧ—ବୁଝ, (ତାନ୍ ନିବୋଧ)—(ସେମାନଙ୍କ କଥା ଶୁଣ), ଦ୍ୱିଜୋତ୍ତମ—ହେ ବ୍ରାହ୍ମଣଶ୍ରେଷ୍ଠ, ନାୟକାଃ—ସେନାପତିମାନେ, ମମ ସୈନ୍ୟସ୍ୟ—ଅମ୍ଭ ସୈନ୍ୟର, ସଂଜ୍ଞାର୍ଥଂ—ସମ୍ପୂର୍ଣ୍ଣରୂପରେ ଜାଣିବା ନିମିତ୍ତ, ତାନ୍—ସେମାନଙ୍କ, ବ୍ରବୀମି—କହୁଅଛୁଁ, (ତାନ୍ ବ୍ରବୀମି)—(ସେମାନଙ୍କର ନାମ କହୁଅଛୁଁ), ତେ—ତୁମ୍ଭଙ୍କୁ । ୭ ।

ଅନୁବାଦ ।

ହେ ବ୍ରାହ୍ମଣଶ୍ରେଷ୍ଠ ! ଯେଉଁମାନେ ଅମ୍ଭ ସୈନ୍ୟ ମଧ୍ୟରେ ଶ୍ରେଷ୍ଠ ଓ ଆମ୍ଭର ସେନାପତି, ସେମାନଙ୍କୁ ସମ୍ପୂର୍ଣ୍ଣରୂପେ ଜାଣିବାନିମିତ୍ତ ତାଙ୍କ ନାମ ତୁମ୍ଭଙ୍କୁ କହୁଅଛୁଁ ଶ୍ରବଣ କର । ୭ ।

ବିଶଦବ୍ୟାଖ୍ୟା ।

ପାଣ୍ଡବସୈନ୍ୟର ପ୍ରଧାନଯୋଦ୍ଧାଙ୍କ ନାମ ଶୁଣି ଦ୍ରୋଣାଚାର୍ଯ୍ୟ କାଳେ ଏପରି ଭାବିଥିବେ ଯେ "ଯେବେ ତୁମ୍ଭେ ପ୍ରବଳ ଶତ୍ରୁସୈନ୍ୟ ଦେଖି ଭୟ କରୁଅଛ ତେବେ ମିଳି ନ ଯାଇ ଯୁଦ୍ଧରେ ପ୍ରବୃତ୍ତ ହେବାର ପ୍ରୟୋଜନ କଣ ?" ସେଥିପାଇଁ ଦୁର୍ଯ୍ୟୋଧନ କହିଲେ କି "ଅମ୍ଭ ସୈନ୍ୟର ପ୍ରଧାନ ନାୟକମାନଙ୍କର ପରିଚୟ ନିଅ । ଆମ୍ଭେ ସେମାନଙ୍କର ନାମ ଜଣାଉଅଛୁଁ ।"

ପାଣ୍ଡବମାନଙ୍କ ସୁଚାରୁ ସୈନ୍ୟରଚନାରେ ମୁଗ୍ଧ ହୋଇ କାଳେ ଦ୍ରୋଣାଚାର୍ଯ୍ୟ ଆପଣାର ସେନାପତିମାନଙ୍କର ବଳାବଳ ବିସ୍ମୃତ ହୋଇ ଯାଇଥିବେ, ତାଙ୍କର ସେହି ଆତ୍ମବିସ୍ମୃତି ନିବାରଣପାଇଁ 'ସଂଜ୍ଞାର୍ଥଂ' ପଦ ଦିଆ ହୋଇଅଛି ଅର୍ଥାତ୍ ଦ୍ରୋଣାଚାର୍ଯ୍ୟଙ୍କର ସଂଜ୍ଞା (ସମ୍ୟକ୍ ଜ୍ଞାନ) ଜନ୍ମାଇବା ପାଇଁ ଆପଣା ସୈନ୍ୟମାନଙ୍କର ନାମ ଉଲ୍ଲେଖ କରୁଅଛନ୍ତି ଓ ସେହି ନାମୋଲ୍ଲେଖ କରିବାଦ୍ୱାରା ଦ୍ରୋଣାଚାର୍ଯ୍ୟଙ୍କୁ ଭୀତ ନ ହେବାପାଇଁ ମଧ୍ୟ ଇଙ୍ଗିତ କରା ହୋଇଅଛି । ୭ ।

ଶ୍ଲୋକଃ ।

ଭବାନ୍ ଭୀଷ୍ମଶ୍ଚ କର୍ଣ୍ଣଶ୍ଚ, କୃପଶ୍ଚ ସମିତିଞ୍ଜୟଃ ।
ଅଶ୍ୱତ୍ଥାମା ବିକର୍ଣ୍ଣଶ୍ଚ, ସୌମଦତ୍ତିର୍ଜୟଦ୍ରଥଃ । ୮ ।

ଅନ୍ୱୟଃ ।

ଭବାନ୍, ଭୀଷ୍ମଃ, ଚ କର୍ଣ୍ଣଃ, ଚ ସମିତିଞ୍ଜୟଃ କୃପଃ, ଚ ଅଶ୍ୱତ୍ଥାମା, ବିକର୍ଣ୍ଣଃ, ଚ ସୌମଦତ୍ତିଃ, ଜୟଦ୍ରଥଃ । ୮ ।

ଟୀକା ।

ତାନେବାହ, ଭବାନିତିଦ୍ୱାଭ୍ୟାଂ । ଭବାନ୍ ଦ୍ରୋଣଃ, ସମିତିଂ ସଂଗ୍ରାମଂ ଜୟତୀତି ତଥା, ସୌମଦତ୍ତିଃ ସୋମଦତ୍ତସ୍ୟ ପୁତ୍ରୋଭୂରିଶ୍ରବାଃ । ୮ ।

ପଦବ୍ୟାଖ୍ୟା ।

ଏ ଶ୍ଲୋକରେ ଆଠଗୋଟି ମହାବୀରଙ୍କର ନାମୋଲ୍ଲେଖ ଅଛି । ଯଥା,—

ଭବାନ୍—ଆପଣ ଅର୍ଥାତ୍ ଦ୍ରୋଣାଚାର୍ଯ୍ୟ (୧), ଭୀଷ୍ମଶ୍ଚ—ଓ ପାଣ୍ଡୁଙ୍କ ପିତୃବ୍ୟ ଭୀଷ୍ମଦେବ (୨) କର୍ଣ୍ଣଶ୍ଚ—

Digitized by PPRACHIN, SOA

ଓ କୁନ୍ତୀଙ୍କ କନ୍ୟାକାଳୀନ ପୁତ୍ର (୩), କୃପଶ୍ଚ—କୃପାଚାର୍ଯ୍ୟ (୪), ସମିତିଞ୍ଜୟଃ—ରଣଜୟୀ, ଅଶ୍ୱତ୍ଥାମା—ଦ୍ରୋଣାଚାର୍ଯ୍ୟଙ୍କ ପୁତ୍ର (୫), ବିକର୍ଣ୍ଣଶ୍ଚ—ଦୁର୍ଯ୍ୟୋଧନଙ୍କ ସର୍ବକନିଷ୍ଠଭ୍ରାତା (୬), ସୌମଦତ୍ତିଃ—ସୋମଦତ୍ତଙ୍କ ପୁତ୍ର ଭୂରିଶ୍ରବା (୭), ଜୟଦ୍ରଥଃ—ଦୁର୍ଯ୍ୟୋଧନଙ୍କର ଭଗିନୀପତି (୮) । ୮ ।

## ଅନୁବାଦ ।

ଆପଣ, ଭୀଷ୍ମଦେବ, କର୍ଣ୍ଣ, ରଣଜୟୀ କୃପାଚାର୍ଯ୍ୟ, ଅଶ୍ୱତ୍ଥାମା, ବିକର୍ଣ୍ଣ ଓ ସୋମଦତ୍ତ-ପୁତ୍ର ଭୂରିଶ୍ରବା ଏବଂ ଜୟଦ୍ରଥ (ଅଛନ୍ତି) । ୮ ।

## ବିଶଦବ୍ୟାଖ୍ୟା ।

ଦ୍ରୋଣାଚାର୍ଯ୍ୟଙ୍କ ସନ୍ତୋଷ ନିମିତ୍ତ, ଭୀଷ୍ମ ଓ କର୍ଣ୍ଣଙ୍କ ଆଦ୍ୟରେ ତାଙ୍କ ନାମ ଓ ବିକର୍ଣ୍ଣାଦିଙ୍କ ଆଦ୍ୟରେ ତାଙ୍କ ପୁତ୍ର ଅଶ୍ୱତ୍ଥାମାଙ୍କ ନାମ ଦିଆ ଯାଇଅଛି ଏବଂ କର୍ଣ୍ଣଙ୍କ ପରେ ଦ୍ରୋଣାଚାର୍ଯ୍ୟଙ୍କ ଶ୍ୟାଳକ କୃପାଚାର୍ଯ୍ୟଙ୍କ ନାମ ଥିବାରୁ କାଳେ ତାଙ୍କର ଅପମାନ ହେବ ଏହି ଆଶଙ୍କା କରି 'ସମିତିଞ୍ଜୟ' (ରଣଜୟୀ) ବିଶେଷଣ ପଦ ବ୍ୟବହୃତ ହୋଇଅଛି । ୮ ।

## ଶ୍ଳୋକଃ ।

ଅନ୍ୟେ ଚ ବହବଃ ଶୂରା, ମଦର୍ଥେ ତ୍ୟକ୍ତଜୀବିତାଃ ।
ନାନାଶସ୍ତ୍ରପ୍ରହରଣାଃ, ସର୍ବେ ଯୁଦ୍ଧବିଶାରଦାଃ । ୯ ।

## ଅନ୍ୱୟଃ ।

ମଦର୍ଥେ ତ୍ୟକ୍ତଜୀବିତାଃ, ନାନାଶସ୍ତ୍ରପ୍ରହରଣାଃ ଅନ୍ୟେ ଚ ବହବଃ ଶୂରାଃ ( ସନ୍ତି ) ସର୍ବେ ଯୁଦ୍ଧବିଶାରଦାଃ । ୯

## ଟୀକା ।

ମଦର୍ଥେ—ମତ୍ପ୍ରୟୋଜନାର୍ଥଂ ଜୀବିତଂ ତ୍ୟକ୍ତୁମଧ୍ୟବସିତା ଇତ୍ୟର୍ଥଃ । ନାନା ଅନେକାନି ଶସ୍ତ୍ରାଣି ପ୍ରହରଣସାଧନାନି ଯେଷାଂ ତେ । ଯୁଦ୍ଧେ ବିଶାରଦାଃ ନିପୁଣାଃ । ୯ ।

## ପଦବ୍ୟାଖ୍ୟା ।

ଅନ୍ୟେ ଚ—ଅନ୍ୟର, ବହବଃ—ଅନେକ, ଶୂରାଃ—ବୀରମାନେ, ମଦର୍ଥେ—ଆମ୍ଭ ନିମିତ୍ତ, ତ୍ୟକ୍ତଜୀବିତାଃ—ପ୍ରାଣତ୍ୟାଗ କରିବାକୁ କୃତନିଶ୍ଚୟ, ନାନାଶସ୍ତ୍ରପ୍ରହରଣାଃ—ନାନାପ୍ରକାର ଶସ୍ତ୍ର ବ୍ୟବହାରକ୍ଷମ, ସର୍ବେ—ସମସ୍ତେ, ଯୁଦ୍ଧବିଶାରଦାଃ—ସଂଗ୍ରାମନିପୁଣ । ୯ ।

## ଅନୁବାଦ ।

ଅନ୍ୟର ଆମ୍ଭପାଇଁ ପ୍ରାଣତ୍ୟାଗ କରିବାକୁ ପ୍ରସ୍ତୁତ, ନାନାଶସ୍ତ୍ରଚାଳନସମର୍ଥ ଅନେକ ବୀର ( ଅଛନ୍ତି ) ସେମାନେ ସମସ୍ତେ ରଣପଣ୍ଡିତ । ୯ ।

## ଶ୍ଳୋକଃ ।

ଅପର୍ଯ୍ୟାପ୍ତଂ ତଦସ୍ମାକଂ, ବଳଂ ଭୀଷ୍ମାଭିରକ୍ଷିତଂ ।
ପର୍ଯ୍ୟାପ୍ତଂ ତ୍ୱିଦମେତେଷାଂ, ବଳଂ ଭୀମାଭିରକ୍ଷିତଂ । ୧୦ ।

Digitized by PPRACHIN, SOA

### ଅନ୍ୱୟଃ ।

ଅସ୍ମାକଂ ( ଯତ୍ ) ବଳଂ, ଭୀଷ୍ମାଭିରକ୍ଷିତଂ, ତତ୍ ଅପର୍ଯ୍ୟାପ୍ତଂ, ତୁ ଏତେଷାଂ ଇଦଂ ଭୀମାଭିରକ୍ଷିତଂ ବଳଂ ପର୍ଯ୍ୟାପ୍ତଂ (ଦୃଶ୍ୟତେ ) । ୧୦ ।

### ଟୀକା ।

ତତଃ କିମତ ଆହ, ଅପର୍ଯ୍ୟାପ୍ତମିତ୍ୟାଦ । ତତ୍ତଥାଭୂତୈଃ ବୀରୈଃ ଯୁକ୍ତମପି ଭୀଷ୍ମେଣାଭିରକ୍ଷିତମପି, ଅସ୍ମାକଂ ବଳଂ ସୈନ୍ୟଂ ଅପର୍ଯ୍ୟାପ୍ତଂ, ତୈଃ ସହ ଯୋଦ୍ଧୁମସମର୍ଥଂ ଭାତ ଇଦନ୍ତ୍ୱେତେଷାଂ 'ପାଣ୍ଡବାନାଂ ବଳଂ ଭୀମାଭିରକ୍ଷିତଂ ସୈନ୍ୟଂ ପର୍ଯ୍ୟାପ୍ତଂ ସମର୍ଥଂ ଭାତ । ୧୦ ।

### ପଦବ୍ୟାଖ୍ୟା ।

ଅପର୍ଯ୍ୟାପ୍ତଂ—( ଅପରିମିତ ବା ) ଅସମର୍ଥ, ତତ୍—ତାହା, ଅସ୍ମାକଂ—ଅମ୍ଭମାନଙ୍କର, ବଳଂ—ସେନା, ଭୀଷ୍ମାଭିରକ୍ଷିତଂ—ଭୀଷ୍ମଦେବଙ୍କଦ୍ୱାରା ରକ୍ଷିତ, ପର୍ଯ୍ୟାପ୍ତଂ—(ପରିମିତ ବା) ସମର୍ଥ, ତୁ—କିନ୍ତୁ, ଇଦଂ—ଏହି, ଏତେଷାଂ ବଳଂ—ଏମାନଙ୍କର ସେନା, ଭୀମାଭିରକ୍ଷିତଂ—ଭୀମସେନଙ୍କଦ୍ୱାରା ରକ୍ଷିତ । ୧୦ ।

### ଅନୁବାଦ ।

ଭୀଷ୍ମଙ୍କଦ୍ୱାରା ରକ୍ଷିତ ଆମ୍ଭମାନଙ୍କର ସେନାମାନେ ଅସମର୍ଥ; କିନ୍ତୁ ଭୀମସେନଙ୍କଦ୍ୱାରା ରକ୍ଷିତ ଏମାନଙ୍କର ଏହି ସୈନ୍ୟ ସମର୍ଥ ବୋଲି ବୋଧ ହେଉଅଛି । ୧୦ ।

### ବିଶଦବ୍ୟାଖ୍ୟା ।

ପାଣ୍ଡବସୈନ୍ୟର ଆଧିକ୍ୟ ଦର୍ଶନରେ ସ୍ୱୀୟ ହୃଦୟଜାତ ଭୟକୁ ଲୁଚାଇବା ଅଭିପ୍ରାୟରେ ଦୁର୍ଯ୍ୟୋଧନ କହିଲେ କି ବିଖ୍ୟାତନାମା ମହାବୀର ଭୀଷ୍ମଙ୍କଦ୍ୱାରା ରକ୍ଷିତ ଆମ୍ଭମାନଙ୍କ ସୈନ୍ୟ 'ଅପରିମିତ' ଅର୍ଥାତ୍ ଅଧିକ, ମାତ୍ର ଚଞ୍ଚଳବୁଦ୍ଧି ଓ ଅଳସୁଆ ଭୀମଙ୍କଦ୍ୱାରା ରକ୍ଷିତ ପାଣ୍ଡବସୈନ୍ୟ 'ପର୍ଯ୍ୟାପ୍ତ'—ପରିମିତ ଅର୍ଥାତ୍ ଅଳ୍ପ । ସୁତରାଂ ଆମ୍ଭମାନଙ୍କର ଜୟ ସୁନିଶ୍ଚିତ । ପକ୍ଷାନ୍ତରେ—ପଞ୍ଚମ ଓ ଷଷ୍ଠ ଶ୍ଳୋକରେ ପାଣ୍ଡବସୈନ୍ୟମାନଙ୍କ ମଧ୍ୟରୁ ତେରଜଣ 'ମହାରଥ' ସେନାପତିଙ୍କର ନାମ ଉଲ୍ଲେଖ କରି ଅଷ୍ଟମ ଶ୍ଳୋକରେ ଆପଣାର ପ୍ରଧାନ ସେନାପତିମାନଙ୍କ ମଧ୍ୟରୁ କେବଳ ନଅଜଣଙ୍କର ନାମୋଲ୍ଲେଖ କରିବାଦ୍ୱାରା ଆପଣା ସୈନ୍ୟର ନିକୃଷ୍ଟତା ପ୍ରମାଣ କରି କହିଲେ କି ମହାବୀର ଭୀଷ୍ମଙ୍କଦ୍ୱାରା ରକ୍ଷିତ ଅମ୍ଭ ସୈନ୍ୟ 'ଅପର୍ଯ୍ୟାପ୍ତ' ଅର୍ଥାତ୍ ଅସମର୍ଥ । ଭୀମଙ୍କଦ୍ୱାରା ରକ୍ଷିତ ପାଣ୍ଡବସୈନ୍ୟ 'ପର୍ଯ୍ୟାପ୍ତ' ଅର୍ଥାତ୍ ଯୁଦ୍ଧ କରିବା ବିଷୟରେ ଯଥେଷ୍ଟ ବା ସମର୍ଥ ବୋଲି ବୋଧ ହେଉଅଛି ଏବଂ ଏହି ଶେଷାର୍ଥଟି ପୂର୍ବ ଓ ପରବର୍ତ୍ତୀ ଶ୍ଳୋକ ସହିତ ସଙ୍ଗତ ( ଥିବାରୁ ଅନୁବାଦରେ ଦିଆ ଯାଇଅଛି ) । ୧୦ ।

### ଶ୍ଳୋକଃ ।

ଅୟନେଷୁ ଚ ସର୍ବେଷୁ, ଯଥାଭାଗମବସ୍ଥିତାଃ ।
ଭୀଷ୍ମମେବାଭିରକ୍ଷନ୍ତୁ, ଭବନ୍ତଃ ସର୍ବ ଏବ ହି । ୧୧ ।

Digitized by PPRACHIN, SOA

### ଅନ୍ୱୟଃ ।

( ଅତଃ ) ଭବନ୍ତଃ ସର୍ବେ ଏବ ହି ସର୍ବେଷୁ ଚ ଅୟନେଷୁ ଯଥାଭାଗଂ ଅବସ୍ଥିତାଃ ( ସନ୍ତଃ ) ଭୀଷ୍ମଂ ଏବ ଅଭିରକ୍ଷନ୍ତୁ । ୧୧ ।

### ଟୀକା ।

ତସ୍ମାଦ୍ଭବଦ୍ଭିରେବଂ କର୍ତ୍ତବ୍ୟମିତ୍ୟାହ । ଅୟନେଷ୍ୱିତି । ଅୟନେଷୁ ବ୍ୟୂହପ୍ରବେଶମାର୍ଗେଷୁ ଯଥାଭାଗଂ ବିଭକ୍ତାଂ ସ୍ୱାଂ ସ୍ୱାଂ ରଣଭୂମିଂ ଅପରିତ୍ୟଜ୍ୟାବସ୍ଥିତାଃ ସନ୍ତୋ ଭୀଷ୍ମମେବାଭିରକ୍ଷନ୍ତୁ । ଯଥା ଅନ୍ୟୈର୍ଯୁଧ୍ୟମାନଃ ପୃଷ୍ଠତଃ କୈଶ୍ଚିନ୍ନ ହନ୍ୟେତ, ତଥା ରକ୍ଷନ୍ତୁ । ଭୀଷ୍ମବଲେନୈବାସ୍ମାକଂ ଜୀବନମିତି ଭାବଃ । ୧୧ ।

### ପଦବ୍ୟାଖ୍ୟା ।

ଅୟନେଷୁ ଚ—ବ୍ୟୂହଦ୍ୱାରମାନଙ୍କରେ, ସର୍ବେଷୁ—ସମସ୍ତ, ଯଥାଭାଗଂ—ବିଭାଗ ଅନୁସାରେ, ଅବସ୍ଥିତାଃ ( ସନ୍ତଃ )—ସ୍ଥିତ ହୋଇ, ଭୀଷ୍ମଂ ଏବ—ଭୀଷ୍ମଦେବଙ୍କୁ କେବଳ, ଅଭିରକ୍ଷନ୍ତୁ—ସର୍ବତୋଭାବରେ ରକ୍ଷା କରନ୍ତୁ, ଭବନ୍ତଃ ସର୍ବେ—ଆପଣମାନେ ସମସ୍ତେ, ଏବ ହି—ନିଶ୍ଚୟ । ୧୧ ।

### ଅନୁବାଦ ।

ଆପଣମାନେ ସମସ୍ତେ ସବୁ ବ୍ୟୂହଦ୍ୱାରରେ ବିଭାଗ ଅନୁସାରେ ଅବସ୍ଥିତ ହୋଇ ଭୀଷ୍ମଦେବଙ୍କୁ କେବଳ ସର୍ବତୋଭାବରେ ରକ୍ଷା କରନ୍ତୁ । ୧୧ ।

### ବିଶଦବ୍ୟାଖ୍ୟା ।

ଭୀଷ୍ମଦେବ ଆମ୍ଭ ସୈନ୍ୟ ମଧ୍ୟରେ ସର୍ବପ୍ରଧାନ ଥିବାରୁ ପାଣ୍ଡବଙ୍କର କୌଣସି ସେନାପତି ସହିତ ସମ୍ମୁଖଯୁଦ୍ଧରେ ପ୍ରବୃତ୍ତ ଥିବା ସମୟରେ କାଳେ କେହି ଅନ୍ୟଦିଗରୁ ତାଙ୍କୁ ବିନାଶ କରିବ, ଅତଏବ ଆପଣମାନେ ସମସ୍ତେ ଯଥାସ୍ଥାନରେ ରହି ସେହି ଭୀଷ୍ମଦେବଙ୍କୁ କେବଳ ରକ୍ଷା କରନ୍ତୁ, ତାହାହେଲେ ଆମ୍ଭମାନଙ୍କର ଜୟ ହେବାର ସମ୍ଭାବନା । ୧୧ ।

### ଶ୍ଳୋକଃ ।

ତସ୍ୟ ସଞ୍ଜନୟନ୍ ହର୍ଷଂ, କୁରୁବୃଦ୍ଧଃ ପିତାମହଃ ।
ସିଂହନାଦଂ ବିନଦ୍ୟୋଚ୍ଚୈଃ, ଶଙ୍ଖଂ ଦଧ୍ମୌ ପ୍ରତାପବାନ୍ । ୧୨ ।

### ଅନ୍ୱୟଃ ।

ପ୍ରତାପବାନ୍ କୁରୁବୃଦ୍ଧଃ ପିତାମହଃ ତସ୍ୟ ହର୍ଷଂ ସଞ୍ଜନୟନ୍ ଉଚ୍ଚୈଃ ସିଂହନାଦଂ ବିନଦ୍ୟ ଶଙ୍ଖଂ ଦଧ୍ମୌ । ୧୨ ।

### ଟୀକା ।

ତଦେବ ବହୁମାନଯୁକ୍ତଂ ରାଜବାକ୍ୟଂ ଶ୍ରୁତ୍ୱା ଭୀଷ୍ମଃ କିଂ କୃତବାନ୍ ତଦାହ । ତସ୍ୟେତ୍ୟାଦି । ତସ୍ୟ ରାଜ୍ଞୋ ହର୍ଷଂ କୁର୍ବନ୍ ପିତାମହୋ ଭୀଷ୍ମଃ ଉଚ୍ଚୈର୍ମହାନ୍ତଂ ସିଂହନାଦଂ କୃତ୍ୱା ଶଙ୍ଖଂ ଦଧ୍ମୌ ବାଦିତବାନ୍ । ୧୨ ।

### ପଦବ୍ୟାଖ୍ୟା ।

ତସ୍ୟ—ତାଙ୍କର ଅର୍ଥାତ୍ ରାଜା ଦୁର୍ଯ୍ୟୋଧନଙ୍କର, ସଞ୍ଜନୟନ୍—ଜନ୍ମାଇବାପାଇଁ, ହର୍ଷଂ—ଆନନ୍ଦକୁ, କୁରୁବୃଦ୍ଧଃ

Digitized by PPRACHIN, SOA

—କୁରୁବଂଶ ମଧ୍ୟରେ ପ୍ରାଚୀନ, ପିତାମହଃ—ଦୁର୍ଯ୍ୟୋଧନଙ୍କ ପିତାଙ୍କର ପିତୃବ୍ୟ ଅର୍ଥାତ୍ ଭୀଷ୍ମଦେବ, ସିଂହନାଦଂ ବିନଦ୍ୟ—ସିଂହଧ୍ୱନି କରି, ଉଚ୍ଚୈଃ—ଉଚ୍ଚରେ, ଶଙ୍ଖଂ—ଶଙ୍ଖକୁ, ଦଧ୍ମୌ—ବଜାଇଲେ, ପ୍ରତାପବାନ୍—ପ୍ରଭାବଶାଳୀ । ୧୨ ।

### ଅନୁବାଦ ।

ପ୍ରତାପଶାଳୀ କୁରୁକୁଳବୃଦ୍ଧପିତାମହ (ଭୀଷ୍ମ) ରାଜା ଦୁର୍ଯ୍ୟୋଧନଙ୍କର ଆନନ୍ଦ ଜନ୍ମାଇବାପାଇଁ ମହାସିଂହନାଦ କରି ଶଙ୍ଖ ବଜାଇଲେ । ୧୨ ।

### ବିଶଦବ୍ୟାଖ୍ୟା ।

"ପ୍ରଥମରେ ଭୀଷ୍ମଦେବଙ୍କୁ ସେନାପତିପଦରେ ବରଣ କରି ବର୍ତ୍ତମାନ ପାଣ୍ଡବସୈନ୍ୟ ଦର୍ଶନରେ ଭୀତ ଦୁର୍ଯ୍ୟୋଧନ ମତେ ପ୍ରତାରଣା କରିବାକୁ ଆସିଅଛି" ଏହା ଭାବି ଦ୍ରୋଣାଚାର୍ଯ୍ୟ କିଛି ପ୍ରତ୍ୟୁତ୍ତର ନ ଦେବାରୁ ମର୍ମବ୍ୟଥିତ ଦୁର୍ଯ୍ୟୋଧନଙ୍କର ଉତ୍ସାହ ଓ ହର୍ଷ ବଢ଼ାଇବାପାଇଁ ଭୀଷ୍ମଦେବ, ସିଂହନାଦ ଓ ଶଙ୍ଖଧ୍ୱନି କଲେ । ଏ ଶ୍ଳୋକରେ 'କୁରୁବୃଦ୍ଧ' 'ପିତାମହ' ଓ 'ପ୍ରତାପବାନ୍' ଏହି ତିନି ବିଶେଷଣ ଦେବାର ତାତ୍ପର୍ଯ୍ୟ ଏହି ଯେ ଭୀଷ୍ମଦେବ 'କୁଳବୃଦ୍ଧ' ଥିବାରୁ ରାଜା ଓ ଦ୍ରୋଣଙ୍କର ଅଭିପ୍ରାୟ ବୁଝି ପାରିଲେ, 'ପିତାମହ' ଥିବାରୁ ଦ୍ରୋଣଙ୍କ ପରି ଉପେକ୍ଷା ନ କରି ଦୁର୍ଯ୍ୟୋଧନପ୍ରତି ବିଶେଷ ସହାୟ ହେଲେ ଓ 'ପ୍ରତାପବାନ୍' ଥିବାରୁ ସିଂହନାଦ ଓ ଶଙ୍ଖଧ୍ୱନି କଲେ । ୧୨ ।

### ଶ୍ଳୋକଃ ।

ତତଃ ଶଙ୍ଖାଶ୍ଚ ଭେର୍ଯ୍ୟଶ୍ଚ, ପଣବାନକଗୋମୁଖାଃ ।
ସହସୈବାଭ୍ୟହନ୍ୟନ୍ତ, ସଶବ୍ଦସ୍ତୁମୁଲୋଽଭବତ୍ । ୧୩ ।

### ଅନ୍ୱୟଃ ।

ତତଃ ଶଙ୍ଖାଃ ଚ ଭେର୍ଯ୍ୟଃ ଚ ପଣବାନକଗୋମୁଖାଃ ସହସା ଏବ ଅଭ୍ୟହନ୍ୟନ୍ତ । ସଃ ଶବ୍ଦଃ ତୁମୁଲଃ ଅଭବତ୍ ।୧୩

### ଟୀକା ।

ତଦେବ ସେନାପତେଃ ଭୀଷ୍ମସ୍ୟ ଯୁଦ୍ଧୋତ୍ସବମାଲୋକ୍ୟ ସର୍ବତୋଯୁଦ୍ଧୋତ୍ସବଃ ପ୍ରବୃତ୍ତ ଇତ୍ୟାହ । ତତ ଇତ୍ୟାଦିନା । ପଣବା—ମର୍ଦ୍ଦଳାଃ, ଆନକା-ଗୋମୁଖାସ୍ତୁ ବାଦ୍ୟବିଶେଷାଃ, ସହସା ତତ୍‌କ୍ଷଣାଦେବ ଅଭ୍ୟହନ୍ୟନ୍ତ ବାଦିତାଃ, ସ ଶବ୍ଦଃ ଶଙ୍ଖାଦି ଶବ୍ଦଃ ତୁମୁଲୋ ମହାନ୍ ଅଭୂତ୍ । ୩ ।

### ପଦବ୍ୟାଖ୍ୟା ।

ତତଃ—ତଦନନ୍ତର, ଶଙ୍ଖାଃ—ଶଙ୍ଖ ସବୁ, ଚ—ଆଉ, ଭେର୍ଯ୍ୟଃ—ବଡଢାଳ ସବୁ, ପଣବାନକଗୋମୁଖାଃ—ମୃଦଙ୍ଗ, ନାଗରା, ଶିଙ୍ଗା ପ୍ରଭୃତି, ସହସା ଏବ—ହଠାତ୍, ଅଭ୍ୟହନ୍ୟନ୍ତ—ଅହତ ଅର୍ଥାତ୍ ବାଦିତ ହେଲେ, ସଃ ଶବ୍ଦଃ—ସେହି ବାଦ୍ୟଧ୍ୱନି, ତୁମୁଲଃ—ଘୋର, ଅଭବତ୍—ହେଲା । ୧୩ ।

### ଅନୁବାଦ ।

ତହୁଁ ଉତ୍ତାରୁ ଶଙ୍ଖ, ଭେରୀ, ମୃଦଙ୍ଗ, ନାଗରା ଓ ଶିଙ୍ଗା ହଠାତ୍ ବାଜି ଉଠିଲା ଓ ସେ ଶବ୍ଦ ଘୋରତର ହେଲା । ୧୩ ।

Digitized by PPRACHIN, SOA

ଶ୍ଲୋକଃ ।

ତତଃ ଶ୍ୱେତୈର୍ହୟୈର୍ଯୁକ୍ତେ, ମହତି ସ୍ୟନ୍ଦନେ ସ୍ଥିତୌ ।
ମାଧବଃ ପାଣ୍ଡବଶ୍ଚୈବ, ଦିବ୍ୟୌ ଶଙ୍ଖୌ ପ୍ରଦଧ୍ମତୁଃ । ୧୪ ।

ଅନ୍ୱୟଃ ।

ତତଃ ଶ୍ୱେତୈଃ ହୟୈଃ ଯୁକ୍ତେ ମହତି ସ୍ୟନ୍ଦନେ ସ୍ଥିତୌ ମାଧବଃ ପାଣ୍ଡବଶ୍ଚ ( ଉଭୌ ) ଏବ ଦିବ୍ୟୌ ଶଙ୍ଖୌ ପ୍ରଦଧ୍ମତୁଃ । ୧୪ ।

ଟୀକା ।

ତତଃ ପାଣ୍ଡବସୈନ୍ୟେ ପ୍ରବୃତ୍ତଂ ଯୁଦ୍ଧୋତ୍ସବମାହ । ତତ ଇତ୍ୟାଦି ପଞ୍ଚଭିଃ । ସ୍ୟନ୍ଦନେ ରଥେ ସ୍ଥିତୌ ସନ୍ତୌ ଶ୍ରୀକୃଷ୍ଣାର୍ଜ୍ଜୁନୌ ଶଙ୍ଖୌ ପ୍ରକର୍ଷେଣ ଦଧ୍ମତୁଃ ବାଦୟାମାସତୁଃ । ୧୪ ।

ପଦବ୍ୟାଖ୍ୟା ।

ତତଃ—ତହୁଁ ଉତ୍ତାରୁ, ଶ୍ୱେତୈର୍ହୟୈର୍ଯୁକ୍ତେ—ଧବଳଘୋଟକଯୁକ୍ତ, ମହତି—ବଡ଼, ସ୍ୟନ୍ଦନେ—ରଥରେ, ସ୍ଥିତୌ—ସ୍ଥିତ ବା ଅସୀନ ହୋଇ, ମାଧବଃ—ଶ୍ରୀକୃଷ୍ଣ, ପାଣ୍ଡବଶ୍ଚ—ଓ ଅର୍ଜ୍ଜୁନ, ଏବ—କେବଳ, ଦିବ୍ୟୌ—ଅଲୌକିକ, ଶଙ୍ଖୌ—ଶଙ୍ଖ ଦୁଇ, ପ୍ରଦଧ୍ମତୁଃ—ମହାଶବ୍ଦରେ ବଜାଇଲେ । ୧୪ ।

ଅନୁବାଦ ।

ତହୁଁ ଉତ୍ତାରୁ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ ଏ ଦୁହେଁ ଶ୍ୱେତଘୋଟକଯୁକ୍ତ ମହାରଥରେ ବସି ଅପୂର୍ବ ଶଙ୍ଖଦ୍ୱୟ ବଜାଇଲେ । ୧୪ ।

ବିଶଦବ୍ୟାଖ୍ୟା ।

ଭୀଷ୍ମାଦିଙ୍କ ଶଙ୍ଖବାଦନପରେ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ ଶଙ୍ଖ ବଜାଇଲେ । ଦୁର୍ଯ୍ୟୋଧନପକ୍ଷୀୟମାନେ ପ୍ରଥମେ ଦ୍ରୋହାଚରଣ କଲେ ଓ ଭାରତବର୍ଷକୁ ନରଶୋଣିତରେ କଳଙ୍କିତ କରିବାରେ ପ୍ରବୃତ୍ତ ହେଲେ । ପାଣ୍ଡବମାନେ ଆତ୍ମାଧିକାର ରକ୍ଷାପାଇଁ ଉପାୟାନ୍ତର ନ ଦେଖି ଅଗତ୍ୟା ଯୁଦ୍ଧରେ ପ୍ରବୃତ୍ତ ହେଲେ । ୧୪ ।

ଶ୍ଲୋକଃ ।

ପାଞ୍ଚଜନ୍ୟଂ ହୃଷୀକେଶୋ, ଦେବଦତ୍ତଂ ଧନଞ୍ଜୟଃ ।
ପୌଣ୍ଡ୍ରଂ ଦଧ୍ମୌ ମହାଶଙ୍ଖଂ, ଭୀମକର୍ମ୍ମା ବୃକୋଦରଃ । ୧୫ ।

ଅନ୍ୱୟଃ ।

ହୃଷୀକେଶଃ ପାଞ୍ଚଜନ୍ୟଂ (ଦଧ୍ମୌ), ଧନଞ୍ଜୟଃ ଦେବଦତ୍ତଂ (ଦଧ୍ମୌ), ଭୀମକର୍ମ୍ମା ବୃକୋଦରଃ ମହାଶଙ୍ଖଂ ପୌଣ୍ଡ୍ରଂ ଦଧ୍ମୌ । ୧୫ ।

ଟୀକା ।

ତଦେବ ବିସ୍ତରେଣ ଦର୍ଶୟନ୍ନାହ । ପାଞ୍ଚଜନ୍ୟମିତି । ପାଞ୍ଚଜନ୍ୟାଦୀନି ନାମାନି ଶ୍ରୀକୃଷ୍ଣାଦିଶଙ୍ଖାନାଂ । ଭୀମଂ ଘୋରଂ କର୍ମ ଯସ୍ୟ ସଃ । ୧୫ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ପାଞ୍ଚଜନ୍ୟଂ—(ପଞ୍ଚଜନ ନାମକ ଅସୁରକୁ ବଧ କରି ପ୍ରାପ୍ତ ହୋଇଥିବାରୁ) ଶ୍ରୀକୃଷ୍ଣଙ୍କ ଶଙ୍ଖର ନାମ (ପାଞ୍ଚଜନ୍ୟ ହୋଇଅଛି), ହୃଷୀକେଶଃ—ଇନ୍ଦ୍ରିୟମାନଙ୍କର ସ୍ୱାମୀ ଅର୍ଥାତ୍ ଅନ୍ତର୍ଯ୍ୟାମୀ ଶ୍ରୀକୃଷ୍ଣ, ଦେବଦତ୍ତଂ—ଦେବରାଜଙ୍କଦ୍ୱାରା ଦତ୍ତ ଅର୍ଜ୍ଜୁନଙ୍କ ଶଙ୍ଖ, ଧନଞ୍ଜୟଃ—ଅର୍ଜ୍ଜୁନ (ସେ ଦଗ୍ବିଜୟ ସମୟରେ ରାଜାମାନଙ୍କୁ ଜୟ କରି ଧନ ସଂଗ୍ରହ କରିଥିଲେ), ପୌଣ୍ଡ୍ରଂ—ପୌଣ୍ଡ୍ର ଦେଶରୁ ପ୍ରାପ୍ତ ଭୀମସେନଙ୍କ ଶଙ୍ଖ, ଦଧ୍ମୌ—ବଜାଇଲେ, ମହାଶଙ୍ଖଂ—ବଡଶଙ୍ଖ, ଭୀମକର୍ମ୍ମା—ଯାହାଙ୍କର କାର୍ଯ୍ୟ ଭୟଙ୍କର, ବୃକୋଦରଃ—ଭୀମ (ଯାହାଙ୍କ ଉଦରରେ ଜଠରାଗ୍ନି ପ୍ରବଳ ଥିଲା) । ୧୫ ।

ଅନୁବାଦ ।

ଶ୍ରୀକୃଷ୍ଣ ପାଞ୍ଚଜନ୍ୟ ଶଙ୍ଖ, ଅର୍ଜ୍ଜୁନ ଦେବଦତ୍ତ ଶଙ୍ଖ ଓ ଭୟାନକକର୍ମ୍ମା ଭୀମସେନ ପୌଣ୍ଡ୍ର ନାମକ ମହାଶଙ୍ଖ ବଜାଇଲେ । ୧୫ ।

ଶ୍ଳୋକଃ ।

ଅନନ୍ତବିଜୟଂ ରାଜା, କୁନ୍ତୀପୁତ୍ରୋ ଯୁଧିଷ୍ଠିରଃ ।
ନକୁଲଃ ସହଦେବଶ୍ଚ, ସୁଘୋଷମଣିପୁଷ୍ପକୌ । ୧୬ ।

ଅନ୍ୱୟଃ ।

କୁନ୍ତୀପୁତ୍ରଃ ରାଜା ଯୁଧିଷ୍ଠିରଃ ଅନନ୍ତବିଜୟଂ (ଶଙ୍ଖଂ ଦଧ୍ମୌ) ନକୁଲଃ ସହଦେବଶ୍ଚ ସୁଘୋଷମଣିପୁଷ୍ପକୌ (ଶଙ୍ଖୌ ଦଧ୍ମତୁଃ) । ୧୬ ।

ଟୀକା ।

ଅନନ୍ତେତି । ନକୁଲଃ ସୁଘୋଷଂ ନାମ ଶଙ୍ଖଂ ଦଧ୍ମୌ ସହଦେବୋ ମଣିପୁଷ୍ପକଂ ନାମ । ୧୬ ।

ପଦବ୍ୟାଖ୍ୟା ।

ଅନନ୍ତବିଜୟଂ—ଅନନ୍ତବିଜୟନାମକ ଶଙ୍ଖକୁ, ରାଜା—ନରପତି, କୁନ୍ତୀପୁତ୍ରୋଯୁଧିଷ୍ଠିରଃ—କୁନ୍ତୀଙ୍କ ପୁତ୍ର ଯୁଧିଷ୍ଠିର, ନକୁଲଃ ସହଦେବଶ୍ଚ—ନକୁଳ ଓ ସହଦେବ, ସୁଘୋଷମଣିପୁଷ୍ପକୌ—ସୁଘୋଷ ଓ ମଣିପୁଷ୍ପକ ଶଙ୍ଖଦ୍ୱୟକୁ । ୧୬ ।

ଅନୁବାଦ ।

କୁନ୍ତୀପୁତ୍ର ରାଜା ଯୁଧିଷ୍ଠିର ଅନନ୍ତବିଜୟ ନାମକ ଶଙ୍ଖ ଓ ନକୁଳ ସୁଘୋଷ ନାମକ ଶଙ୍ଖ ଏବଂ ସହଦେବ ମଣିପୁଷ୍ପ ନାମକ ଶଙ୍ଖ (ବଜାଇଲେ) । ୧୬ ।

ବିଶଦବ୍ୟାଖ୍ୟା ।

ପଞ୍ଚଦଶ ଓ ଷୋଡ଼ଶ ଦୁଇ ଶ୍ଳୋକରେ ସ୍ୱନାମପ୍ରସିଦ୍ଧ ଶଙ୍ଖମାନଙ୍କର ନାମୋଲ୍ଲେଖ କରିବାଦ୍ୱାରା ପାଣ୍ଡବମାନଙ୍କ ଉତ୍କର୍ଷ ଓ ଦୁର୍ଯ୍ୟୋଧନସୈନ୍ୟମାନଙ୍କର ପ୍ରସିଦ୍ଧନାମା ଶଙ୍ଖ ନ ଥିବାରୁ ଅପକର୍ଷ ସୂଚିତ ହେଉଅଛି । ପୁଣି 'ହୃଷୀକେଶ' ଶବ୍ଦଦ୍ୱାରା ଅନ୍ତର୍ଯ୍ୟାମୀ ଶ୍ରୀକୃଷ୍ଣ ପାଣ୍ଡବଙ୍କର ସହାୟ ଥିବା ଓ 'ଧନଞ୍ଜୟ' ପଦଦ୍ୱାରା ଦଗ୍ବିଜୟ ସମୟରେ ଧନ ସଞ୍ଚୟ କରିଥିବା ହେତୁ ଅର୍ଜ୍ଜୁନ 'ଅଜେୟ' ଥିବା ଓ 'କୁନ୍ତୀପୁତ୍ର' ପଦଦ୍ୱାରା ପାଣ୍ଡବମାନେ କୁନ୍ତୀଙ୍କ ତପସ୍ୟାରେ ପ୍ରୀତ-ଦେବତାମାନଙ୍କର ପୁତ୍ର ଥିବା ଏବଂ 'ଯୁଧିଷ୍ଠିର' ପଦଦ୍ୱାରା ପାଣ୍ଡବରାଜାଙ୍କର ଯୁଦ୍ଧଜୟ ପର୍ଯ୍ୟନ୍ତ ସ୍ଥିର ରହି ପାରିବା ଆଦି ଉତ୍କୃଷ୍ଟ ଗୁଣମାନ ସୂଚିତ ହୋଇଅଛି । ୧୬ ।

Digitized by PPRACHIN, SOA

ଶ୍ଳୋକଃ ।

କାଶ୍ୟଶ୍ଚ ପରମେଷ୍ୱାସଃ, ଶିଖଣ୍ଡୀ ଚ ମହାରଥଃ ।
ଧୃଷ୍ଟଦ୍ୟୁମ୍ନୋ ବିରାଟଶ୍ଚ, ସାତ୍ୟକିଶ୍ଚାପରାଜିତଃ । ୧୭ ।

ଅନ୍ୱୟଃ ।

ପରମେଷ୍ୱାସଃ କାଶ୍ୟଃ ଚ ମହାରଥଃ ଶିଖଣ୍ଡୀ ଚ ଧୃଷ୍ଟଦ୍ୟୁମ୍ନଃ, ବିରାଟଃ ଚ ଅପରାଜିତଃ ସାତ୍ୟକିଃ ଚ । ୧୭ ।

ଟୀକା ।

କାଶ୍ୟଶ୍ଚେତି । କାଶ୍ୟଃ କାଶୀରାଜଃ କଥଂଭୂତଃ? ପରମଃ ଶ୍ରେଷ୍ଠଃ ଇଷ୍ୱାସୋ ଧନୁର୍ଯସ୍ୟ ସଃ । ୧୭ ।

ପଦବ୍ୟାଖ୍ୟା ।

କାଶ୍ୟଃ—କାଶୀରାଜ, ଚ—ଏବଂ, ପରମେଷ୍ୱାସଃ—ଉତ୍କୃଷ୍ଟ ଧନୁର୍ଦ୍ଧର, ଶିଖଣ୍ଡୀ ଚ—ଦ୍ରୁପଦପୁତ୍ର, ମହାରଥଃ—ଦଶସହସ୍ର ଧନୁର୍ଦ୍ଧରଯୋଦ୍ଧାସହିତ ସଂଗ୍ରାମ କରିବାକୁ ସମର୍ଥ, ଧୃଷ୍ଟଦ୍ୟୁମ୍ନୋବିରାଟଶ୍ଚ—ଧୃଷ୍ଟଦ୍ୟୁମ୍ନ ଓ ବିରାଟ, ସାତ୍ୟକିଶ୍ଚ—ଓ ସାତ୍ୟକି ନାମକ ରାଜା, ଅପରାଜିତଃ—ଯେ ଅନ୍ୟଦ୍ୱାରା ପରାସ୍ତ ହୋଇ ନାହିଁ । ୧୭ ।

ଅନୁବାଦ ।

ଶ୍ରେଷ୍ଠଧନୁର୍ଦ୍ଧର କାଶୀରାଜ, ମହାରଥ ଶିଖଣ୍ଡୀ, ଧୃଷ୍ଟଦ୍ୟୁମ୍ନ, ବିରାଟ ଓ ଅପରାଜିତ ସାତ୍ୟକି (ପୃଥକ୍ ୨ ଶଙ୍ଖ ବଜାଇଲେ) । ୧୭ ।

ଶ୍ଳୋକଃ ।

ଦ୍ରୁପଦୋ ଦ୍ରୌପଦେୟାଶ୍ଚ, ସର୍ବଶଃ ପୃଥିବୀପତେ ।
ସୌଭଦ୍ରଶ୍ଚ ମହାବାହୁଃ, ଶଙ୍ଖାନ୍ ଦଧ୍ମୁଃ ପୃଥକ୍ ପୃଥକ୍ । ୧୮ ।

ଅନ୍ୱୟଃ ।

ହେ ପୃଥିବୀପତେ ! ଦ୍ରୁପଦଃ, ଦ୍ରୌପଦେୟାଃ ଚ ମହାବାହୁଃ ସୌଭଦ୍ରଃ ସର୍ବଶଃ (ଇମେ ସର୍ବେ) ପୃଥକ୍ ପୃଥକ୍ ଶଙ୍ଖାନ୍ ଦଧ୍ମୁଃ । ୧୮ ।

ଟୀକା ।

ଦ୍ରୁପଦ ଇତି । ହେ ପୃଥିବୀପତେ! ଧୃତରାଷ୍ଟ୍ର! । ୧୮ ।

ପଦବ୍ୟାଖ୍ୟା ।

ଦ୍ରୁପଦଃ—ଦ୍ରୁପଦରାଜା, ଦ୍ରୌପଦେୟାଶ୍ଚ—ଦ୍ରୌପଦୀଙ୍କର ପ୍ରତିବିନ୍ଧ୍ୟାଦି ପଞ୍ଚପୁତ୍ର, ସର୍ବଶଃ—ସମସ୍ତେ, ପୃଥିବୀପତେ—ହେ ଭୂପତେ ଧୃତରାଷ୍ଟ୍ର!, ସୌଭଦ୍ରଶ୍ଚ—ସୁଭଦ୍ରାପୁତ୍ର—ଅଭିମନ୍ୟୁ, ମହାବାହୁଃ—ଦୀର୍ଘଜାନୁବାହୁ ଅଥବା ପରାକ୍ରମୀ, ଶଙ୍ଖାନ୍—ଶଙ୍ଖମାନଙ୍କୁ, ଦଧ୍ମୁଃ—ବଜାଇଲେ, ପୃଥକ୍ ପୃଥକ୍—ଭିନ୍ନ ଭିନ୍ନ । ୧୮ ।

ଅନୁବାଦ ।

ହେ ପୃଥିବୀପତେ ! ( ଧୃତରାଷ୍ଟ୍ର ! ) ରାଜା ଦ୍ରୁପଦ ଓ ଦ୍ରୌପଦୀଙ୍କର ପୁତ୍ରମାନେ ଏବଂ ମହାବାହୁ ସୁଭଦ୍ରାନନ୍ଦନ ଅଭିମନ୍ୟୁ ଏମାନେ ସମସ୍ତେ ଭିନ୍ନ ୨ ଶଙ୍ଖ ବଜାଇଲେ । ୧୮ ।

Digitized by PPRACHIN, SOA

ଶ୍ଳୋକଃ ।

ସ ଘୋଷୋ ଧାର୍ତ୍ତରାଷ୍ଟ୍ରାଣାଂ, ହୃଦୟାନି ବ୍ୟଦାରୟତ୍ ।
ନଭଶ୍ଚ ପୃଥିବୀଂ ଚୈବ, ତୁମୁଲୋଽଭ୍ୟନୁନାଦୟନ୍ । ୧୯ ।

ଅନ୍ୱୟଃ ।

ସଃ ତୁମୁଲଃ ଘୋଷଃ ନଭଃ ଚ ପୃଥିବୀଂ ଚ ଏବ ଅଭ୍ୟନୁନାଦୟନ୍ ଧାର୍ତ୍ତରାଷ୍ଟ୍ରାଣାଂ ହୃଦୟାନି ବ୍ୟଦାରୟତ୍ । ୧୯ ।

ଟୀକା ।

ସ ଚ ଶଙ୍ଖାନାଂ ନାଦସ୍ତ୍ୱଦୀୟାନାଂ ମହାଭୟଂ ଜନୟାମାସେତ୍ୟାହ । ସଘୋଷ ଇତ୍ୟାଦି । ଧାର୍ତ୍ତରାଷ୍ଟ୍ରାଣାଂ ତ୍ୱଦୀୟାନାଂ ହୃଦୟାନି ବିଦାରିତବାନ୍ । କିଂ କୁର୍ବନ୍ ? ନଭଶ୍ଚ ପୃଥିବୀଂ ଚାଭ୍ୟନୁନାଦୟନ୍ ପ୍ରତିଧ୍ୱନିଭିରାପୂରୟନ୍ । ୧୯ ।

ପଦବ୍ୟାଖ୍ୟା ।

ସଃ ଘୋଷଃ—ସେହି ଶଙ୍ଖନାଦ, ଧାର୍ତ୍ତରାଷ୍ଟ୍ରାଣାଂ—ଧୃତରାଷ୍ଟ୍ରପକ୍ଷୀୟ ଦୁର୍ଯ୍ୟୋଧନାଦିଙ୍କର, ହୃଦୟାନି—ଅନ୍ତଃକରଣମାନଙ୍କୁ, ବ୍ୟଦାରୟତ୍—ବିଦାରଣ କଲା, ନଭଶ୍ଚ—ଆକାଶକୁ, ପୃଥିବୀଂ ଚୈବ—ପୃଥିବୀକୁ ମଧ, ତୁମୁଲଃ—ମହାନ୍, ଅଭ୍ୟନୁନାଦୟନ୍—ପ୍ରତିଧ୍ୱନିତ କରି । ୧୯ ।

ଅନୁବାଦ ।

ସେହି ଘୋରତର ଶଙ୍ଖନାଦ, ଆକାଶ ଓ ପୃଥିବୀକୁ ପ୍ରତିଧ୍ୱନିତ କରି ଧୃତରାଷ୍ଟ୍ରପକ୍ଷୀୟ ଦୁର୍ଯ୍ୟୋଧନାଦିଙ୍କର ହୃଦୟକୁ ବିଦାରଣ କଲା । ୧୯ ।

ବିଶଦବ୍ୟାଖ୍ୟା ।

ପାଣ୍ଡବସୈନ୍ୟଙ୍କ ଶଙ୍ଖନାଦ ଏପରି ତୀବ୍ର ହେଲା ଯେ ଦୁର୍ଯ୍ୟୋଧନାଦିଙ୍କର ହୃଦୟରେ ବିଦାରଣ ତୁଲ୍ୟ ବ୍ୟଥା ଜାତ କଲା, ମାତ୍ର ଭୀଷ୍ମାଦିଙ୍କ ଶଙ୍ଖଧ୍ୱନି ଘୋରତର ହେଲେ ସୁଦ୍ଧା ( ୧୩ ଶ ଶ୍ଳୋକ ଦେଖ ) ପାଣ୍ଡବଙ୍କର କିଛିମାତ୍ର ଉଦ୍ବେଗ ଜନ୍ମାଇ ପାରିଲା ନାହିଁ । ଏହାଦ୍ୱାରା ପାଣ୍ଡବମାନଙ୍କର ପ୍ରବଳତା ଓ ଦୁର୍ଯ୍ୟୋଧନାଦିଙ୍କର ଦୁର୍ବଳତା ସୂଚିତ ହେଉଅଛି । ୧୯ ।

ଶ୍ଳୋକଃ ।

ଅଥ ବ୍ୟବସ୍ଥିତାନ୍ ଦୃଷ୍ଟ୍ୱା, ଧାର୍ତ୍ତରାଷ୍ଟ୍ରାନ୍ କପିଧ୍ୱଜଃ ।
ପ୍ରବୃତ୍ତେ ଶସ୍ତ୍ରସମ୍ପାତେ, ଧନୁରୁଦ୍ୟମ୍ୟ ପାଣ୍ଡବଃ । ୨୦ ।

ଅନ୍ୱୟଃ ।

( ହେ ମହୀପତେ ! ) ଅଥ ଧାର୍ତ୍ତରାଷ୍ଟ୍ରାନ୍ ପ୍ରବୃତ୍ତେ ଶସ୍ତ୍ରସମ୍ପାତେ ବ୍ୟବସ୍ଥିତାନ୍ ଦୃଷ୍ଟ୍ୱା କପିଧ୍ୱଜଃ ପାଣ୍ଡବଃ ଧନୁଃ ଉଦ୍ୟମ୍ୟ । ୨୦ ।

ଟୀକା ।

ଏତସ୍ମିନ୍ ସମୟେ ଶ୍ରୀକୃଷ୍ଣମର୍ଜ୍ଜୁନୋ ବିଜ୍ଞାପୟାମାସ ଇତ୍ୟାହ । ଅଥେତ୍ୟାଦି ଚତୁର୍ଭିଃ ଶ୍ଳୋକୈଃ । ଅଥେତି । ଅଥାନନ୍ତରଂ ମହାଶବ୍ଦାନନ୍ତରଂ, ବ୍ୟବସ୍ଥିତାନ୍ ଯୁଦ୍ଧୋଦ୍ୟୋଗେନାବସ୍ଥିତାନ୍, କପିଧ୍ୱଜୋଽର୍ଜ୍ଜୁନଃ । ୨୦ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଅଥ—ଏଥି ଉତ୍ତାରୁ, ବ୍ୟବସ୍ଥିତାନ୍—ଯୁଦ୍ଧଉଦ୍ୟୋଗରେ ସ୍ଥିତ, ଦୃଷ୍ଟ୍ୱା—ଦେଖିକରି, ଧାର୍ତ୍ତରାଷ୍ଟ୍ରାନ୍—ଧୃତରାଷ୍ଟ୍ରପକ୍ଷୀୟମାନଙ୍କୁ, କପିଧ୍ୱଜଃ—ଅର୍ଜୁନ ( ଯାହାଙ୍କ ରଥଧ୍ୱଜରେ ଅନୁଗ୍ରହ କରି ହନୁମାନ୍ ଅଛନ୍ତି ) ପ୍ରବୃତ୍ତେ—ପ୍ରୟୋଗାରମ୍ଭ, ଶସ୍ତ୍ରସମ୍ପାତେ—ଶସ୍ତ୍ରସମୂହରେ, ଧନୁଃ—ଧନୁକୁ, ଉଦ୍ୟମ୍ୟ—ଉଠାଇ, ପାଣ୍ଡବଃ—ପାଣ୍ଡୁପୁତ୍ର । ୨୦ ।

ଅନୁବାଦ ।

ଧୃତରାଷ୍ଟ୍ରପକ୍ଷୀୟମାନଙ୍କୁ ଶସ୍ତ୍ରସମୂହ ପ୍ରୟୋଗରେ ଉଦ୍ୟୋଗୀ ଦେଖି କପିଧ୍ୱଜ ଅର୍ଜ୍ଜୁନ ଧନୁ ଉତ୍ତୋଳନ କରି— । ୨୦ ।

ଶ୍ଲୋକଃ ।

ହୃଷୀକେଶଂ ତଦାବାକ୍ୟମିଦମାହ ମହୀପତେ ।
ସେନୟୋରୁଭୟୋର୍ମଧ୍ୟେ, ରଥଂ ସ୍ଥାପୟ ମେଽଚ୍ୟୁତ । ୨୧ ।

ଅନ୍ୱୟଃ ।

ହେ ମହୀପତେ ! ତଦା ହୃଷୀକେଶଂ ଇଦଂ ବାକ୍ୟଂ ଆହ । ହେ ଅଚ୍ୟୁତ ! ଉଭୟୋଃ ସେନୟୋଃ ମଧ୍ୟେ ମେ ରଥଂ ସ୍ଥାପୟ । ୨୧ ।

ଟୀକା ।

ତଦେବ ବାକ୍ୟମାହ, ସେନୟୋରିତ୍ୟାଦି । ୨୧ ।

ପଦବ୍ୟାଖ୍ୟା ।

ହୃଷୀକେଶଂ—(ହୃଷୀକ = ଇନ୍ଦ୍ରିୟ, ଈଶ = ପ୍ରଭୁ—ରକ୍ଷକ) ଇନ୍ଦ୍ରିୟମାନଙ୍କ ରକ୍ଷକ ଅର୍ଥାତ୍ ଶ୍ରୀକୃଷ୍ଣଙ୍କୁ, ତଦା—ସେହି ସମୟରେ, ବାକ୍ୟଂ—କଥା, ଇଦଂ—ଏହି, ଆହ—କହିଲେ, ମହୀପତେ—ହେ ପୃଥିବୀପତି !, ସେନୟୋରୁଭୟୋର୍ମଧ୍ୟେ—ଦୁଇ ସେନାଙ୍କ ମଧ୍ୟରେ, ରଥଂ—ରଥକୁ, ସ୍ଥାପୟ—ସ୍ଥାପନ କରନ୍ତୁ, ମେ—ମୋହର, ଅଚ୍ୟୁତ—ଯାହାଙ୍କର ବିକାର ଓ ବିନାଶ ନାହିଁ ଅର୍ଥାତ୍ ହେ ଶ୍ରୀକୃଷ୍ଣ ! । ୨୧ ।

ଅନୁବାଦ ।

ହେ ପୃଥ୍ୱୀପତି ଧୃତରାଷ୍ଟ୍ର ! ସେକାଳରେ ( ଅର୍ଜ୍ଜୁନ ) ଶ୍ରୀକୃଷ୍ଣଙ୍କୁ ଏହି କଥା କହିଲେ " ହେ ଅଚ୍ୟୁତ ! ଉଭୟ ସେନା ମଧ୍ୟରେ ମୋହର ରଥ ସ୍ଥାପନ କରନ୍ତୁ " । ୨ ।

ବିଶଦବ୍ୟାଖ୍ୟା ।

ଭଗବାନ୍ ଶ୍ରୀକୃଷ୍ଣଙ୍କପ୍ରତି ଏ ପ୍ରକାର ଆଦେଶ କରିବା ଅର୍ଜ୍ଜୁନଙ୍କ ପକ୍ଷରେ ଉଚିତ ନୁହେ ବୋଲି ବୋଧ ହେଉଅଛି ସତ, ମାତ୍ର ଶ୍ଲୋକମଧ୍ୟରେ ' ଅଚ୍ୟୁତ ' ପଦ ଦେବାଦ୍ୱାରା ସେ ଦୋଷ ଖଣ୍ଡିତ ହୋଇଅଛି । କାହିଁକି ନା, ଭଗବାନ୍ 'ଅଚ୍ୟୁତ' ଅର୍ଥାତ୍ ବିକାରଶୂନ୍ୟ ଓ ବିନାଶଶୂନ୍ୟ ଥିବାରୁ ଅର୍ଜ୍ଜୁନଙ୍କ ଆଦେଶ ପାଳନରେ ଅପମାନ ବୋଧ କରିବେ ନାହିଁ । ପୁଣି ଉଭୟ ସେନା ମଧ୍ୟରେ ରଥ ସ୍ଥାପନ କଲେ ସୁଦ୍ଧା ଅସ୍ତ୍ର ଶସ୍ତ୍ର ପ୍ରହାରଦ୍ୱାରା ତାଙ୍କର କେହି କିଛି ଅନିଷ୍ଟ କରି ପାରିବ ନାହିଁ । ୨୧ ।

Digitized by PPRACHIN, SOA

ଶ୍ଳୋକଃ ।

ଯାବଦେତାନ୍ନିରୀକ୍ଷେଽହଂ, ଯୋଦ୍ଧୁକାମାନବସ୍ଥିତାନ୍ ।
କୈର୍ମୟା ସହ ଯୋଦ୍ଧବ୍ୟ,ମସ୍ମିନ୍ ରଣସମୁଦ୍ୟମେ । ୨୨ ।

ଅନ୍ୱୟଃ ।

ଯାବତ୍ ଅହଂ ଏତାନ୍ ଯୋଦ୍ଧୁକାମାନ୍ ଅବସ୍ଥିତାନ୍ ନିରୀକ୍ଷେ । ଅସ୍ମିନ୍ ରଣସମୁଦ୍ୟମେ ମୟା କୈଃ ସହ ଯୋଦ୍ଧବ୍ୟଂ । ୨୨ ।

ଟୀକା ।

ନନୁ ତ୍ୱଂ ଯୋଦ୍ଧା, ନତୁ ଯୁଦ୍ଧପ୍ରେକ୍ଷକସ୍ତତ୍ରାହ । କୈର୍ମୟେତ୍ୟାଦି । କୈଃ ସହ ମୟା ଯୋଦ୍ଧବ୍ୟଂ । ୨୨ ।

ପଦବ୍ୟାଖ୍ୟା ।

ଯାବତ୍—ଯେତେବେଳ ପର୍ଯ୍ୟନ୍ତ, ଏତାନ୍—ଏମାନଙ୍କୁ, ନିରୀକ୍ଷେ—ଦେଖିବ, ଅହଂ—ମୁଁ, ଯୋଦ୍ଧୁକାମାନ୍—ଯୁଦ୍ଧଅଭିଳାଷୀ, ଅବସ୍ଥିତାନ୍—ଉପସ୍ଥିତ, କୈର୍ମୟା ସହ ଯୋଦ୍ଧବ୍ୟଂ—କେଉଁମାନଙ୍କ ସହିତ ମୁଁ ଯୁଦ୍ଧ କରିବ, ଅସ୍ମିନ୍-ରଣସମୁଦ୍ୟମେ—ଏହି ଯୁଦ୍ଧଉଦ୍ୟୋଗରେ । ୨୨ ।

ଅନୁବାଦ ।

( ହେ ଭଗବନ୍ ! ଉଭୟ ସୈନ୍ୟ ମଧ୍ୟରେ ମୋହର ରଥ ସେ ପର୍ଯ୍ୟନ୍ତ ସ୍ଥାପନ କରନ୍ତୁ ) ଯେ ପର୍ଯ୍ୟନ୍ତ ଏହି ସମରଉଦ୍ୟୋଗରେ ଉପସ୍ଥିତ ଯୁଦ୍ଧାଭିଳାଷୀ ଏହି ବୀରମାନଙ୍କୁ ମୁଁ ଦେଖିବ, ଯେ କେଉଁମାନଙ୍କ ସହିତ ମୁଁ ଯୁଦ୍ଧ କରିବ । ୨୨ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ "ଉଭୟ ସେନା ମଧ୍ୟରେ ରଥ ସ୍ଥାପନ କରନ୍ତୁ" ବୋଲି କହିଥିଲେ, ତାହାର ପ୍ରୟୋଜନ ଏ ଶ୍ଳୋକରେ କହିଲେ ଅର୍ଥାତ୍ ଯୁଦ୍ଧାର୍ଥ ସମୁପସ୍ଥିତ ସମସ୍ତଙ୍କୁ ମୁଁ ଦେଖିବା ପର୍ଯ୍ୟନ୍ତ ଉଭୟ ସେନା ମଧ୍ୟରେ ରଥ ସ୍ଥାପନ କରନ୍ତୁ । ସମସ୍ତେ ଆତ୍ମୀୟ ବାନ୍ଧବ ଥିବା ସ୍ଥଳେ ମୁଁ କାହା ସହିତ ଯୁଦ୍ଧ କରିବ, ଅଥବା ମୋହର ସମକକ୍ଷ ଯୋଦ୍ଧା କିଏ ତାହା ଦେଖିବ । ୨୨ ।

ଶ୍ଳୋକଃ ।

ଯୋତ୍ସ୍ୟମାନାନବେକ୍ଷେଽହଂ, ଯ ଏତେଽତ୍ର ସମାଗତାଃ ।
ଧାର୍ତ୍ତରାଷ୍ଟ୍ରସ୍ୟ ଦୁର୍ବୁଦ୍ଧେ,ର୍ଯୁଦ୍ଧେ ପ୍ରିୟଚିକୀର୍ଷବଃ । ୨୩ ।

ଅନ୍ୱୟଃ ।

ଦୁର୍ବୁଦ୍ଧେଃ ଧାର୍ତ୍ତରାଷ୍ଟ୍ରସ୍ୟ ଯୁଦ୍ଧେ ପ୍ରିୟଚିକୀର୍ଷବଃ ଯେ ଏତେ ଅତ୍ର ସମାଗତାଃ,ତାନ୍ ଯୋତ୍ସ୍ୟମାନାନ୍ ( ଯାବତ୍ ) ଅହଂ ଅବେକ୍ଷେ । ୨୩ ।

ଟୀକା ।

ଯୋତ୍ସ୍ୟମାନାନିତି । ଧାର୍ତ୍ତରାଷ୍ଟ୍ରସ୍ୟ ଦୁର୍ଯ୍ୟୋଧନସ୍ୟ ପ୍ରିୟଂ କର୍ତ୍ତୁମିଚ୍ଛନ୍ତୋ ଯ ଇହ ସମାଗତାସ୍ତାନହଂ ଦ୍ରକ୍ଷ୍ୟାମି ଯାବତ ତାବଦୁଭୟୋଃ ସେନୟୋର୍ମଧ୍ୟେ ମେ ରଥଂ ସ୍ଥାପୟେତ୍ୟନ୍ୱୟଃ । ୨୩ ।

Digitized by PPRACHIN, SOA

ପଦଦ୍ୱ୍ୟାଖ୍ୟା ।

ଯୋତ୍ସ୍ୟମାନାନ୍—ଯୁଦ୍ଧରେ ଇଚ୍ଛୁକ ବ୍ୟକ୍ତିମାନଙ୍କୁ, ଅବେକ୍ଷେ—ଦେଖିବି, ଅହଂ—ମୁଁ, ଯଏତେଽତ୍ର ସମାଗତାଃ—ଯେଉଁମାନେ ଏଠାରେ ଉପସ୍ଥିତ ଅଛନ୍ତି, ଧାର୍ତ୍ତରାଷ୍ଟ୍ରସ୍ୟ—ଧୃତରାଷ୍ଟ୍ରପୁତ୍ର ଦୁର୍ଯ୍ୟୋଧନଙ୍କର, ଦୁର୍ବୁଦ୍ଧେଃ—ମନ୍ଦବୁଦ୍ଧି, ଯୁଦ୍ଧେ ପ୍ରିୟଚିକୀର୍ଷବଃ—ଯୁଦ୍ଧରେ ପ୍ରିୟକାର୍ଯ୍ୟ କରିବାକୁ ଇଚ୍ଛା କରନ୍ତି । ୨୩ ।

ଅନୁବାଦ ।

ଦୁର୍ବୁଦ୍ଧି ଦୁର୍ଯ୍ୟୋଧନର ହିତକାମନାରେ ଯେଉଁମାନେ ଏହି ଯୁଦ୍ଧରେ ଉପସ୍ଥିତ ହୋଇଅଛନ୍ତି ସେହି ଯୁଦ୍ଧାଭିଳାଷିମାନଙ୍କୁ ମୁଁ ଦେଖିବି । ୨୩ ।

ବିଶଦବ୍ୟାଖ୍ୟା ।

ଦୁର୍ଯ୍ୟୋଧନର ମନ୍ଦବୁଦ୍ଧି ନଷ୍ଟ ନ କରି ଅର୍ଥାତ୍ ତାକୁ ପାଣ୍ଡବଙ୍କ ସହିତ ମିତ୍ରତା-ପାଶରେ ଆବଦ୍ଧ ନ କରି ଯେଉଁମାନେ ଯୁଦ୍ଧଦ୍ୱାରା ତାହାର ହିତକାମନା କରୁଅଛନ୍ତି, ସେହି ଯୋଦ୍ଧାମାନଙ୍କୁ ଦେଖିବା ପର୍ଯ୍ୟନ୍ତ ଉଭୟ ସେନା ମଧ୍ୟରେ ରଥ ସ୍ଥାପନ କରନ୍ତୁ । ୨୩ ।

ଶ୍ଲୋକଃ ।

ସଞ୍ଜୟ ଉବାଚ ।—ଏବମୁକ୍ତୋ ହୃଷୀକେଶୋ, ଗୁଡାକେଶେନ ଭାରତ ।
ସେନୟୋରୁଭୟୋର୍ମଧ୍ୟେ, ସ୍ଥାପୟିତ୍ୱା ରଥୋତ୍ତମଂ । ୨୪ ।

ଅନ୍ୱୟଃ ।

ସଞ୍ଜୟଃ ଉବାଚ । ହେ ଭାରତ । ଗୁଡାକେଶେନ ଏବ ଉକ୍ତଃ ହୃଷୀକେଶଃ ଉଭୟୋଃ ସେନୟୋଃ ମଧ୍ୟେ ରଥୋତ୍ତମଂ ସ୍ଥାପୟିତ୍ୱା—। ୨୪ ।

ଟୀକା ।

ତତଃ କିଂ ବୃତ୍ତମିତ୍ୟପେକ୍ଷାୟାଂ ସଞ୍ଜୟ ଉବାଚ । ଏବମୁକ୍ତ ଇତ୍ୟାଦି । ଗୁଡାକା ନିଦ୍ରା, ତସ୍ୟାଃ ଈଶେନ ଜିତନିଦ୍ରେଣାର୍ଜ୍ଜୁନେନ, ଏବମୁକ୍ତଃ ସନ୍, ହେ ଭାରତ ହେ ଧୃତରାଷ୍ଟ୍ର । । ୨୪ ।

ପଦବ୍ୟାଖ୍ୟା ।

ଏବମୁକ୍ତଃ—ଏପରି କହିବାରୁ, ହୃଷୀକେଶଃ—ଶ୍ରୀକୃଷ୍ଣଙ୍କୁ, ଗୁଡାକେଶେନ—ନିଦ୍ରାଜୟକାରୀ ଅର୍ଥାତ୍ ଅର୍ଜ୍ଜୁନ, ଭାରତ—ହେ ଭରତବଂଶଜ ଧୃତରାଷ୍ଟ୍ର । ସେନୟୋରୁଭୟୋର୍ମଧ୍ୟେ—ଦୁଇ ସେନାଙ୍କ ମଧ୍ୟରେ, ସ୍ଥାପୟିତ୍ୱା—ସ୍ଥାପନ କରି, ରଥୋତ୍ତମଂ—ଶ୍ରେଷ୍ଠରଥକୁ । ୨୪ ।

ଅନୁବାଦ ।

ସଞ୍ଜୟ କହିଲେ—ହେ ଧୃତରାଷ୍ଟ୍ର ! ଅର୍ଜ୍ଜୁନ ଏପରି କହନ୍ତେ, ଶ୍ରୀକୃଷ୍ଣ ଉଭୟ ସୈନ୍ୟ ମଧ୍ୟରେ ଶ୍ରେଷ୍ଠରଥକୁ ସ୍ଥାପନ କରି—। ୨୪ ।

ଶ୍ଲୋକଃ ।

ଭୀଷ୍ମଦ୍ରୋଣପ୍ରମୁଖତଃ, ସର୍ବେଷାଂ ଚ ମହୀକ୍ଷିତାଂ ।
ଉବାଚ ପାର୍ଥ ପଶ୍ୟୈତାନ୍, ସମବେତାନ୍ କୁରୁନିତି । ୨୫ ।

Digitized by PPRACHIN, SOA

## ଅନ୍ୱୟଃ ।

ଭୀଷ୍ମଦ୍ରୋଣପ୍ରମୁଖତଃ ସର୍ବେଷାଂ ମହୀକ୍ଷିତାଂ ଚ (ପ୍ରମୁଖତଃ) "ହେ ପାର୍ଥ ! ସମବେତାନ୍ ଏତାନ୍ କୁରୂନ୍ ପଶ୍ୟ" ଇତି ଉବାଚ । ୨୫ ।

## ଟୀକା ।

ଭୀଷ୍ମେତି । ମହୀକ୍ଷିତାଂ ରାଜ୍ଞାଂ ଚ ପ୍ରମୁଖତଃ ସମ୍ମୁଖେ ରଥଂ ସ୍ଥାପୟିତ୍ୱା ହେ ପାର୍ଥ! ଏତାନ୍ କୁରୂନ୍ ପଶ୍ୟ ଇତି ଶ୍ରୀଭଗବାନୁବାଚ । ୨୫ ।

## ପଦବ୍ୟାଖ୍ୟା ।

ଭୀଷ୍ମଦ୍ରୋଣପ୍ରମୁଖତଃ—ଭୀଷ୍ମ ଓ ଦ୍ରୋଣଙ୍କ ସମ୍ମୁଖରେ , ସର୍ବେଷାଂ ଚ ମହୀକ୍ଷିତାଂ—ଓ ସମସ୍ତ ରାଜାମାନଙ୍କର, ଉବାଚ—କହିଲେ, ପାର୍ଥ—ପୃଥା ( କୁନ୍ତୀ )ଙ୍କ ପୁତ୍ର, (ପୃଥା ବା କୁନ୍ତୀ ଶ୍ରୀକୃଷ୍ଣଙ୍କର 'ପିଉସୀ' ଅଟନ୍ତି), ପଶ୍ୟ—ଦେଖ, ଏତାନ୍ ସମବେତାନ୍ କୁରୂନ୍—ଏହି ମିଳିତ କୁରୁବଂଶୀୟମାନଙ୍କୁ, ଇତି—ଏହା । ୨୫ ।

## ଅନୁବାଦ ।

ଭୀଷ୍ମ ଦ୍ରୋଣ ଓ ଅନ୍ୟାନ୍ୟ ରାଜାମାନଙ୍କ ସମ୍ମୁଖରେ ( ଶ୍ରୀକୃଷ୍ଣ ) ଏହା କହିଲେ "ହେ ପାର୍ଥ ! ଏହି ମିଳିତ କୁରୁବଂଶୀୟମାନଙ୍କୁ ଦେଖ" । ୨୫ ।

## ଶ୍ଳୋକଃ ।

ତତ୍ରାପଶ୍ୟତ୍ ସ୍ଥିତାନ୍ ପାର୍ଥଃ, ପିତୃନଥ ପିତାମହାନ୍ ।
ଆଚାର୍ଯ୍ୟାନ୍ ମାତୁଲାନ୍ ଭ୍ରାତୃନ୍, ପୁତ୍ରାନ୍ ପୌତ୍ରାନ୍ ସଖୀଂସ୍ତଥା । ୨୬ ।

## ଅନ୍ୱୟଃ ।

ଅଥ ପାର୍ଥଃ ତତ୍ର ସ୍ଥିତାନ୍ ପିତୃନ୍, ପିତାମହାନ୍, ଆଚାର୍ଯ୍ୟାନ୍, ମାତୁଲାନ୍, ଭ୍ରାତୃନ୍, ପୁତ୍ରାନ୍, ପୌତ୍ରାନ୍ ତଥା ସଖୀନ୍ ଅପଶ୍ୟତ୍ । ୨୬ ।

## ଟୀକା ।

ତତଃ କିଂ ବୃତ୍ତମିତ୍ୟାହ । ତତ୍ରେତ୍ୟାଦି । ପିତୃନ୍ ପିତୃବ୍ୟାନିତ୍ୟର୍ଥଃ । ପୁତ୍ରାନ୍ ପୌତ୍ରାନ୍ ଇତି ଦୁର୍ଯ୍ୟୋଧନାଦୀନାଂ ଯେ ପୁତ୍ରାଃ ପୌତ୍ରାସ୍ତାନିତ୍ୟର୍ଥଃ ସଖୀନ୍ ମିତ୍ରାଣି ଚ ଅପଶ୍ୟତ୍ । ୨୬ ।

## ପଦବ୍ୟାଖ୍ୟା ।

ତତ୍ର—ରଣକ୍ଷେତ୍ରରେ, ଅପଶ୍ୟତ୍—ଦେଖିଲେ, ସ୍ଥିତାନ୍—( ଯୁଦ୍ଧଭୂମିରେ ସଜ୍ଜୀଭୂତ ହୋଇ ) ଉପସ୍ଥିତ, ପାର୍ଥଃ—ଅର୍ଜୁନ, ପିତୃନ୍—ଭୂରିଶ୍ରବାଆଦି ପିତୃବ୍ୟଗଣଙ୍କୁ, ପିତାମହାନ୍—ଭୀଷ୍ମ ଓ ସୋମଦତ୍ତାଦିଙ୍କୁ, ଆଚାର୍ଯ୍ୟାନ୍—ଗୁରୁ ଦ୍ରୋଣାଚାର୍ଯ୍ୟାଦିଙ୍କୁ, ମାତୁଲାନ୍—ମାମୁ ଶୈଲ୍ୟ ଓ ଶକୁନି ପ୍ରଭୃତିଙ୍କୁ , ଭ୍ରାତୃନ୍—ଭାଇ ଦୁର୍ଯ୍ୟୋଧନାଦିଙ୍କୁ, ପୁତ୍ରାନ୍—ପ୍ରତିବିନ୍ଧ୍ୟାଦି ଓ ଲକ୍ଷ୍ମଣ, ଅଭିମନ୍ୟୁ ପ୍ରଭୃତି ପୁଅମାନଙ୍କୁ, ପୌତ୍ରାନ୍—ଲକ୍ଷ୍ମଣାଦିଙ୍କର ପୁତ୍ରଗଣଙ୍କୁ, ସଖୀନ୍—ଅଶ୍ୱତ୍ଥାମା ଜୟଦ୍ରଥ ପ୍ରଭୃତି ମିତ୍ରଗଣଙ୍କୁ, ତଥା—ସେହିପରି ( ଦେଖିଲେ ) । ୨୬ ।

## ଅନୁବାଦ ।

ଅନନ୍ତର ଅର୍ଜୁନ ଉଭୟ ସେନା ମଧ୍ୟରେ ଉପସ୍ଥିତ ଆପଣାର ପିତୃ, ପିତାମହ, ଗୁରୁ, ମାତୁଳ, ଭ୍ରାତୃ, ପୁତ୍ର, ପୌତ୍ର ଓ ମିତ୍ରମାନଙ୍କୁ ଦେଖିଲେ । ୨୬ ।

Digitized by PPRACHIN, SOA

ଶ୍ଳୋକଃ ।

ଶ୍ୱଶୁରାନ୍ ସୁହୃଦଶ୍ଚୈବ, ସେନୟୋରୁଭୟୋରପି ।
ତାନ୍ ସମୀକ୍ଷ୍ୟ ସ କୌନ୍ତେୟଃ, ସର୍ବାନ୍ ବନ୍ଧୂନବସ୍ଥିତାନ୍ । ୨୭ ।

ଅନ୍ୱୟଃ ।

ସଃ କୌନ୍ତେୟଃ ଉଭୟୋଃ ଅପି ସେନୟୋଃ ଅବସ୍ଥିତାନ୍ ଶ୍ୱଶୁରାନ୍ ସୁହୃଦଃ ଚ ଏବ ସର୍ବାନ୍ ତାନ୍ ବନ୍ଧୂନ୍ ସମୀକ୍ଷ୍ୟ—। ୨୭ ।

ଟୀକା ।

ଶ୍ୱଶୁରାନିତି । ସୁହୃଦଃ କୃତୋପକାରାଂସ୍ତାପଶ୍ୟତ୍ । ତତଃ କିଂ କୃତବାନିତ୍ୟାହ ତାନିତି । ୨୭ ।

ପଦବ୍ୟାଖ୍ୟା ।

ଶ୍ୱଶୁରାନ୍—ଦ୍ରୁପଦାଦି ଶ୍ୱଶୁରମାନଙ୍କୁ, ସୁହୃଦଶ୍ଚୈବ—ଯଥାର୍ଥ ମିତ୍ରମାନଙ୍କୁ ମଧ୍ୟ, ସେନୟୋରୁଭୟୋରପି—ଦୁଇ ସୈନ୍ୟ ମଧ୍ୟରେ, ତାନ୍ ସମୀକ୍ଷ୍ୟ—ସେମାନଙ୍କୁ ଉତ୍ତମରୂପେ ଦେଖିକରି, ସ କୌନ୍ତେୟଃ—ସେହି କୁନ୍ତୀପୁତ୍ର ଅର୍ଜ୍ଜୁନ, ସର୍ବାନ୍ ବନ୍ଧୂନ୍—ସବୁ ବନ୍ଧୁମାନଙ୍କୁ, ଅବସ୍ଥିତାନ୍—ଶ୍ରେଣୀବଦ୍ଧ ହୋଇ ସ୍ଥିତ । ୨୭ ।

ଅନୁବାଦ ।

ସେ ଅର୍ଜ୍ଜୁନ ଉଭୟ ସୈନ୍ୟ ମଧ୍ୟରେ ଶ୍ୱଶୁର ଓ ସୁହୃଦ ଆଉ ସେହି (ପୂର୍ବୋକ୍ତ) ବନ୍ଧୁମାନଙ୍କୁ ଉପସ୍ଥିତ ଦେଖି—। ୨୭ ।

ବିଶଦବ୍ୟାଖ୍ୟା

ସ୍ଥାନପ୍ରଭାବରେ ସତ୍ତ୍ୱଗୁଣ ବୃଦ୍ଧି ହେବାରୁ ଅର୍ଜ୍ଜୁନ କୌରବପକ୍ଷୀୟ ସମସ୍ତଙ୍କୁ ଶତ୍ରୁଭାବରେ ନ ଦେଖି ମିତ୍ରଭାବରେ ଦେଖିଲେ ଆଉ ଆପଣାପକ୍ଷୀୟମାନଙ୍କ ମଧ୍ୟରେ ତ ସମସ୍ତେ ଆତ୍ମୀୟ ! ଅତଏବ ଉଭୟ ସେନା ମଧ୍ୟରେ ସମସ୍ତଙ୍କୁ ଆତ୍ମୀୟଲୋକ ଦେଖି (ଦୁଃଖିତ ହେଲେ, ପର ଶ୍ଳୋକରେ ଦେଖ) । ୨୭ ।

ଶ୍ଳୋକଃ ।

କୃପୟା ପରୟାବିଷ୍ଟୋ, ବିଷୀଦନ୍ନିଦମବ୍ରବୀତ୍ ।
ଅର୍ଜ୍ଜୁନ ଉବାଚ ।—ଦୃଷ୍ଟ୍ୱେମାନ୍ ସ୍ୱଜନାନ୍ କୃଷ୍ଣ, ଯୁଯୁତ୍ସୂନ୍ ସମୁପସ୍ଥିତାନ୍ । ୨୮ ।

ଅନ୍ୱୟଃ ।

ପରୟା କୃପୟା ଆବିଷ୍ଟଃ ବିଷୀଦନ୍ ଇଦଂ ଅବ୍ରବୀତ୍ । ଅର୍ଜ୍ଜୁନଃ ଉବାଚ । ହେ କୃଷ୍ଣ ! ଯୁଯୁତ୍ସୂନ୍ ସମୁପସ୍ଥିତାନ୍ ଇମାନ୍ ସ୍ୱଜନାନ୍ ଦୃଷ୍ଟ୍ୱା—। ୨୮ ।

ଟୀକା ।

ସେନୟୋରୁଭୟୋରେବ ସମୀକ୍ଷ୍ୟ କୃପୟା ମହତ୍ୟା ଗୃହୀତୋ ବିଷଣ୍ଣଃ ସନ୍ ଇଦମର୍ଜ୍ଜୁନୋଽବ୍ରବୀତ୍ ଇତ୍ୟୁତ୍ତରସ୍ୟାଦ୍ଧଶ୍ଳୋକବାକ୍ୟାର୍ଥଃ । ଆବିଷ୍ଟୋ ବ୍ୟାପ୍ତଃ । କିମବ୍ରବୀଦିତ୍ୟପେକ୍ଷାୟାମାହ । ଦୃଷ୍ଟ୍ୱେମାନିତ୍ୟାଦି ଯାବଦଧ୍ୟାୟସମାପ୍ତି । ହେ କୃଷ୍ଣ ! ଯୋଦ୍ଧୁମିଚ୍ଛତଃ ପୁରତଃ ସମ୍ୟଗବସ୍ଥିତାନ୍ ସ୍ୱଜନାନ୍ ବନ୍ଧୁଜନାନ୍ ଦୃଷ୍ଟ୍ୱା—। ୨୮ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

କୃପୟା — ଦୟାଦ୍ୱାରା, ପରୟା — ଅତ୍ୟନ୍ତ, ଆବିଷ୍ଟଃ — ଯୁକ୍ତ, ବିଷୀଦନ୍ — ଦୁଃଖିତ ହୋଇ, ଇଦମବ୍ରବୀତ୍ — ଏହା କହିଲେ, ଦୃଷ୍ଟ୍ୱା — ଦେଖି, ଇମାନ୍ ସ୍ୱଜନାନ୍ — ଏହି ଆତ୍ମୀୟଜନମାନଙ୍କୁ, କୃଷ୍ଣ — ହେ ଶ୍ରୀକୃଷ୍ଣ !, ଯୁୟୁତ୍ସୂନ୍ — ଯୁଦ୍ଧଇଚ୍ଛୁକ, ସମୁପସ୍ଥିତାନ୍ — ଉପସ୍ଥିତ । ୨୮ ।

ଅନୁବାଦ ।

ଅତ୍ୟନ୍ତ କୃପାଯୁକ୍ତ ଅର୍ଜ୍ଜୁନ ଦୁଃଖିତ ହୋଇ ଏହି କଥା କହିଲେ କି—ହେ କୃଷ୍ଣ ! ଏହି ଆତ୍ମୀୟଜନମାନଙ୍କୁ ଯୁଦ୍ଧଇଚ୍ଛାରେ ଉପସ୍ଥିତ ଦେଖି— । ୨୮ ।

ଶ୍ଳୋକଃ ।

ସୀଦନ୍ତି ମମ ଗାତ୍ରାଣି, ମୁଖଂ ଚ ପରିଶୁଷ୍ୟତି ।
ବେପଥୁଶ୍ଚ ଶରୀରେ ମେ, ରୋମହର୍ଷଶ୍ଚ ଜାୟତେ । ୨୯ ।

ଅନ୍ୱୟଃ ।

ମମ ଗାତ୍ରାଣି ସୀଦନ୍ତି ଚ ମୁଖଂ ପରିଶୁଷ୍ୟତି, ମେ ଶରୀରେ ବେପଥୁଃ ଚ ରୋମହର୍ଷଃ ଚ ଜାୟତେ । ୨୯ ।

ଟୀକା ।

ସୀଦନ୍ତୀତି । ମଦୀୟାନି ଗାତ୍ରାଣି କରଚରଣାଦୀନି ସୀଦନ୍ତି ବିଶୀର୍ଯ୍ୟନ୍ତେ । ବେପଥୁଃ କମ୍ପଃ । ରୋମହର୍ଷୋ-ରୋମାଞ୍ଚଃ । ୨୯ ।

ପଦବ୍ୟାଖ୍ୟା ।

ସୀଦନ୍ତି—ଅବଶ ଅର୍ଥାତ୍ ଶିଥିଳ ହେଉଅଛନ୍ତି, ମମ ଗାତ୍ରାଣି—ମୋହର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ, ମୁଖଂ ଚ ପରି-ଶୁଷ୍ୟତି—ମୁଖ ମଧ୍ୟ ଶୁଖି ଯାଉଅଛି, ବେପଥୁଶ୍ଚ—କମ୍ପ ମଧ୍ୟ, ଶରୀରେ—ଦେହରେ, ମେ—ମୋହର, ରୋମହର୍ଷଶ୍ଚ ଜାୟତେ—ରୋମାଞ୍ଚ ମଧ୍ୟ ଜାତ ହେଉଅଛି । ୨୯ ।

ଅନୁବାଦ ।

ମୋହର ଅଙ୍ଗ ପ୍ରତ୍ୟଙ୍ଗ ଶିଥିଳ ହେଉଅଛି ଓ ମୁଖ ଶୁଖି ଯାଉଅଛି ଏବଂ ମୋହ ଦେହରେ କମ୍ପ ଓ ରୋମାଞ୍ଚ ଜାତ ହେଉଅଛି । ୨୯ ।

ଶ୍ଳୋକଃ ।

ଗାଣ୍ଡୀବଂ ସ୍ରଂସତେ ହସ୍ତାତ୍, ତ୍ୱକ୍ ଚୈବ ପରିଦହ୍ୟତେ ।
ନ ଚ ଶକ୍ନୋମ୍ୟବସ୍ଥାତୁଂ, ଭ୍ରମତୀବ ଚ ମେ ମନଃ । ୩୦ ।

ଅନ୍ୱୟଃ ।

ହସ୍ତାତ୍ ଗାଣ୍ଡୀବଂ ସ୍ରଂସତେ, ତ୍ୱକ୍ ଚ ଏବ ପରିଦହ୍ୟତେ, ଚ ଅବସ୍ଥାତୁଂ ନ ଶକ୍ନୋମି, ଚ ମେ ମନଃ ଭ୍ରମତ ଇବ । ୩୦ ।

ଟୀକା ।

କିଞ୍ଚ ଗାଣ୍ଡୀବମିତି । ସ୍ରଂସତେ ନିପତତି । ପରିଦହ୍ୟତେ ସର୍ବତଃ ସନ୍ତପ୍ୟତେ । ୩୦ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଗାଣ୍ଡୀବଂ—ଅର୍ଜ୍ଜୁନଙ୍କ ଧନୁର ନାମ, ସ୍ରଂସତେ—ଖସି ପଡୁଅଛି, ହସ୍ତାତ୍—ହସ୍ତରୁ, ତ୍ୱକ୍ ଚୈବ—ଦେହର ଚର୍ମ୍ମ ମଧ୍ୟ, ପରିଦହ୍ୟତେ—ଦଗ୍ଧ ହେଲା ପରି ହୋଇଯାଉଛି ଅର୍ଥାତ୍ ଅତ୍ୟନ୍ତ ଉତ୍ତପ୍ତ ହେଉଅଛି, ନ ଚ ଶକ୍ନୋମି—ଆଉ ପାରୁ ନାହିଁ, ଅବସ୍ଥାତୁଂ—ସ୍ଥିର ରହିବାକୁ, ଭ୍ରମତୀବ ଚ—ଭ୍ରମିଲା ପରି ମଧ୍ୟ ହେଉଅଛି, ମେ ମନଃ—ମୋହର ମନ । ୩୦ ।

ଅନୁବାଦ ।

ଗାଣ୍ଡୀବ ଧନୁ ହସ୍ତରୁ ଖସି ପଡୁଅଛି, ଦେହର ଚର୍ମ୍ମ ଦଗ୍ଧ ପ୍ରାୟ ହେଉଅଛି, ମୁଁ ସ୍ଥିର ହୋଇ ରହି ପାରୁ ନାହିଁ ଓ ମୋହର ମନ ମଧ୍ୟ ବିଚଳିତ ହେଲା ପରି ହେଉଅଛି । ୩୦ ।

ଶ୍ଳୋକଃ ।

ନିମିତ୍ତାନି ଚ ପଶ୍ୟାମି, ବିପରୀତାନି କେଶବ ।

ନ ଚ ଶ୍ରେୟୋଽନୁପଶ୍ୟାମି, ହତ୍ୱା ସ୍ୱଜନମାହବେ । ୩୧ ।

ଅନ୍ୱୟଃ ।

ହେ କେଶବ ! ବିପରୀତାନି ନିମିତ୍ତାନି ଚ ପଶ୍ୟାମି, ଆହବେ ସ୍ୱଜନଂ ହତ୍ୱା ଶ୍ରେୟଃ ଚ ନ ଅନୁପଶ୍ୟାମି । ୩୧ ।

ଟୀକା ।

ଅପିଚ ନିମିତ୍ତାନିତି । ବିପରୀତାନି ନିମିତ୍ତାନି ଅନିଷ୍ଟସୂଚକାନି ଶକୁନାଦୀନି ପଶ୍ୟାମି । ଆହବେ ଯୁଦ୍ଧେ ସ୍ୱଜନଂ ହତ୍ୱା ଶ୍ରେୟଃ ଫଳଂ ନ ପଶ୍ୟାମି । ୩୧ ।

ପଦବ୍ୟାଖ୍ୟା ।

ନିମିତ୍ତାନି ଚ—ଶକୁନମାନଙ୍କୁ ମଧ୍ୟ, ପଶ୍ୟାମି—ଦେଖୁଅଛି, ବିପରୀତାନି—ଓଲଟା ଅର୍ଥାତ୍ ଅନିଷ୍ଟସୂଚକ, କେଶବ—ହେ ଶ୍ରୀକୃଷ୍ଣ !, ନ ଚ—ନାହିଁ, ଶ୍ରେୟଃ—ଫଳ, ଅନୁପଶ୍ୟାମି—ଦେଖୁଅଛି, ହତ୍ୱା—ମାରିଲେ, ସ୍ୱଜନଂ—ଆତ୍ମୀୟମାନଙ୍କୁ, ଆହବେ—ଯୁଦ୍ଧରେ । ୩୧ ।

ଅନୁବାଦ ।

ହେ କେଶବ ! ମୁଁ ବିପରୀତ ଲକ୍ଷଣସବୁ ଦେଖୁଅଛି; ଏଣୁ ଯୁଦ୍ଧରେ ଆତ୍ମୀୟ ଜନମାନଙ୍କୁ ବିନାଶ କଲେ କି ଫଳ ହେବ ତାହା ଦେଖୁ ନାହିଁ । ୩୧ ।

ବିଶଦବ୍ୟାଖ୍ୟା ।

ଯୁଦ୍ଧରେ ଜୟଲାଭ କରିବାର ପୂର୍ବଚିହ୍ନ ଯେ ଦକ୍ଷିଣଚକ୍ଷୁ ଓ ଦକ୍ଷିଣବାହୁ ସ୍ପନ୍ଦନ ପ୍ରଭୃତି ତାହା ବିପରୀତ ହେବାର ଦେଖୁଅଛି ଅର୍ଥାତ୍ ମୋହର ବାମଚକ୍ଷୁ ଓ ବାମବାହୁ ସ୍ପନ୍ଦିତ ହେଉଅଛି ଏବଂ ପଶୁ-ପକ୍ଷିମାନଙ୍କର ଅଶୁଭସୂଚକ ଶବ୍ଦାଦି ଶୁଣା ଯାଉଅଛି, ଅତଏବ ଆତ୍ମୀୟ ଲୋକମାନଙ୍କୁ ଯୁଦ୍ଧରେ ବିନାଶ କଲେ କି ଫଳ ହେବ ତାହା ମୁଁ ବୁଝି ପାରୁ ନାହିଁ ।

ଏ ଶ୍ଳୋକରେ ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ 'କେଶବ' ପଦଦ୍ୱାରା ସମ୍ବୋଧନ କରି ଏହି ପ୍ରାର୍ଥନା କଲେ ଯେ ମୁଁ କ୍ଷତ୍ରିୟ, ମୋହର ପ୍ରକୃତି ରଜୋଗୁଣଯୁକ୍ତ, ସେଥିରେ ହଠାତ୍

Digitized by PPRACHIN, SOA

ପ୍ରାକ୍‌ପ୍ରସ୍ତାବରେ ବ୍ରାହ୍ମଣର ଉକ୍ତ ସତ୍ତ୍ୱଗୁଣର ଆବିର୍ଭାବ ହେବାରୁ ମୋହର ମନ ଅସ୍ଥିର ହେଉ-ଅଛି, ତାହାକୁ ସ୍ଥିର କରିବା ହେତୁରୁ । ଆପଣଙ୍କ ଭିନ୍ନ ତାହା ଆଉ କେହି କରି ପାରିବେ ନାହିଁ । ଆପଣ 'କେଶବ' ଅର୍ଥାତ୍ କ=ବ୍ରହ୍ମା—ସୃଷ୍ଟିକର୍ତ୍ତା, ଓ ଈଶ=ରୁଦ୍ର—ସଂହାର-କର୍ତ୍ତା, ବ=ଏ ଦୁହିଙ୍କ ପ୍ରତି ଅନୁଗ୍ରହ କରି ଆପଣ ଜଗତର ରକ୍ଷକ ଅର୍ଥାତ୍ ସ୍ଥିତିକାରକ-ରୂପରେ ବର୍ତ୍ତମାନ—( କେଶୌ ବାତି ଅନୁକମ୍ପ୍ୟତୟା ଗଚ୍ଛତି ଇତି କେଶବଃ ) ଅର୍ଥାତ୍ ସୃଷ୍ଟି ଓ ବିନାଶର ସମତାସାଧକ; ଅତଏବ ମୋହ ମନରେ ସାତ୍ତ୍ୱିକଗୁଣର ସୃଷ୍ଟି ଓ ରଜୋଗୁଣର ବିନାଶ ହେତୁରୁ ଯେଉଁ ଅସ୍ଥିରତା ଜନ୍ମିଅଛି ତାହାର ସମତା ବିଧାନ କରନ୍ତୁ । ୩୧ ।

ଶ୍ଲୋକଃ ।

ନ କାଂକ୍ଷେ ବିଜୟଂ କୃଷ୍ଣ, ନ ଚ ରାଜ୍ୟଂ ସୁଖାନି ଚ ।
କିଂ ନୋ ରାଜ୍ୟେନ ଗୋବିନ୍ଦ, କିଂ ଭୋଗୈର୍ଜୀବିତେନ ବା । ୩୨ ।

ଅନ୍ୱୟଃ ।

ହେ କୃଷ୍ଣ ! ବିଜୟଂ, ରାଜ୍ୟଂ ଚ ସୁଖାନି ଚ ନ କାଂକ୍ଷେ । ହେ ଗୋବିନ୍ଦ ! ନଃ ରାଜ୍ୟେନ କିଂ ? ଭୋଗୈଃ, ଜୀବିତେନ ବା କିଂ ? । ୩୨ ।

ଟୀକା ।

କିଂ ଚ ବିଜୟାଦିକଂ ଫଲଂ ନ ପଶ୍ୟାମି ତେନ ତନ୍ନାହଂ । ନ କାଂକ୍ଷାମି । ଏତଦେବ ପ୍ରପଞ୍ଚୟତି କିଂ ନୋ ରାଜ୍ୟେନେତ୍ୟାଦି ସାର୍ଦ୍ଧଦ୍ୱୟେନ । ୩୨ ।

ପଦବ୍ୟାଖ୍ୟା ।

ନ କାଂକ୍ଷେ—ମୁଁ ଇଚ୍ଛା କରୁ ନାହିଁ, ବିଜୟଂ—ଯୁଦ୍ଧରେ ଜୟ, କୃଷ୍ଣ—ହେ ଶ୍ରୀକୃଷ୍ଣ !, ନ ଚ ରାଜ୍ୟଂ—ଆଉ ରାଜ୍ୟକୁ ଇଚ୍ଛା କରୁ ନାହିଁ, ସୁଖାନି ଚ—ସୁଖମାନଙ୍କୁ ମଧ୍ୟ, କିଂ—କି ପ୍ରୟୋଜନ ?, ନଃ—ଆମ୍ଭମାନଙ୍କର, ରାଜ୍ୟେନ—ରାଜ୍ୟରେ, ଗୋବିନ୍ଦ—ହେ ଅନ୍ତର୍ଯ୍ୟାମିନ୍ !, କିଂ ଭୋଗୈଃ—ଭୋଗରେ କି ପ୍ରୟୋଜନ ?, ଜୀବିତେନ—ଜୀବନରେ, ବା—କିଂବା । ୩୨ ।

ଅନୁବାଦ ।

ହେ ଶ୍ରୀକୃଷ୍ଣ! ମୁଁ ଜୟ, ରାଜ୍ୟ ଓ ସୁଖ ଇଚ୍ଛା କରୁ ନାହିଁ । ହେ ଗୋବିନ୍ଦ! ଆମ୍ଭ-ମାନଙ୍କର ଆଉ ରାଜ୍ୟରେ, ସୁଖଭୋଗରେ ଅଥବା ପ୍ରାଣରେ କି ପ୍ରୟୋଜନ ଅଛି ?। ୩୨ ।

ଶ୍ଲୋକଃ ।

ଯେଷାମର୍ଥେ କାଂକ୍ଷିତଂ ନୋ, ରାଜ୍ୟଂ ଭୋଗାଃ ସୁଖାନି ଚ ।
ତ ଇମେଽବସ୍ଥିତା ଯୁଦ୍ଧେ, ପ୍ରାଣାଂସ୍ତ୍ୟକ୍ତ୍ୱା ଧନାନି ଚ । ୩୩ ।

ଅନ୍ୱୟଃ ।

ଯେଷାଂ ଅର୍ଥେ ନଃ ରାଜ୍ୟଂ କାଂକ୍ଷିତଂ, ଭୋଗାଃ ( କାଂକ୍ଷିତାଃ ) ସୁଖାନି ଚ ( କାଂକ୍ଷିତାନି ) ତେ ଇମେ ପ୍ରାଣାନ୍ ଧନାନି ଚ ତ୍ୟକ୍ତ୍ୱା ଯୁଦ୍ଧେ ଅବସ୍ଥିତାଃ । ୩୩ ।

Digitized by PPRACHIN, SOA

### ଟୀକା ।

ଯେଷାମିତି । ଯଦର୍ଥମସ୍ମାକଂ ରାଜ୍ୟାଦିକମପେକ୍ଷିତଂ ତେ ଏତେ ପ୍ରାଣଧନାଦି-ତ୍ୟାଗମଙ୍ଗୀକୃତ୍ୟ ଯୁଦ୍ଧାର୍ଥମବସ୍ଥିତାଃ । ଅତଃ କିମସ୍ମାକଂ ରାଜ୍ୟାଦିଭିଃ କୃତ୍ୟମିତ୍ୟର୍ଥଃ । ୩୩ ।

### ପଦବ୍ୟାଖ୍ୟା ।

ଯେଷାମର୍ଥେ—ଯେଉଁମାନଙ୍କ ନିମିତ୍ତ, କାଂକ୍ଷିତଂ—ବାଞ୍ଛିତ, ନଃ—ଆମ୍ଭମାନଙ୍କର, ରାଜ୍ୟଂ—ରାଜପଣ, ଭୋଗାଃ—ବିଷୟଭୋଗ, ସୁଖାନି ଚ—ସୁଖସବୁ ମଧ୍ୟ, ତେ ଇମେ—ସେହିମାନେ, ଅବସ୍ଥିତାଃ—ଉପସ୍ଥିତ ଅଛନ୍ତି, ଯୁଦ୍ଧେ—ଯୁଦ୍ଧରେ, ପ୍ରାଣାଂସ୍ତ୍ୟକ୍ତ୍ୱା—ପ୍ରାଣର ଆଶା ପରିତ୍ୟାଗ କରି, ଧନାନି ଚ—ଧନମାନଙ୍କୁ ମଧ୍ୟ । ୩୩ ।

### ଅନୁବାଦ ।

ଯେଉଁମାନଙ୍କ ପାଇଁ ରାଜ୍ୟ, ସୁଖ ଓ ଭୋଗ ଆମ୍ଭମାନଙ୍କର ବାଞ୍ଛିତ, ସେମାନେ ଧନ ଓ ପ୍ରାଣର ଆଶା ପରିତ୍ୟାଗ କରି ଯୁଦ୍ଧରେ ଉପସ୍ଥିତ ଅଛନ୍ତି । ୩୩ ।

### ଶ୍ଳୋକଃ ।

ଆଚାର୍ଯ୍ୟାଃ ପିତରଃ ପୁତ୍ରାସ୍ତଥୈବ ଚ ପିତାମହାଃ ।
ମାତୁଲାଃ ଶ୍ୱଶୁରାଃ ପୌତ୍ରାଃ, ଶ୍ୟାଲାଃ ସମ୍ବନ୍ଧିନସ୍ତଥା । ୩୪ ।

### ଅନ୍ୱୟଃ ।

ଆଚାର୍ଯ୍ୟାଃ, ପିତରଃ, ପୁତ୍ରାଃ ତଥା ଏବ ପିତାମହାଃ, ମାତୁଲାଃ, ଶ୍ୱଶୁରାଃ, ପୌତ୍ରାଃ, ଶ୍ୟାଲାଃ ତଥା ସମ୍ବନ୍ଧିନଃ (ଅବସ୍ଥିତାଃ) । ୩୪ ।

### ଟୀକା ।

ଆଚାର୍ଯ୍ୟା ଇତି । ସ୍ପଷ୍ଟାର୍ଥଃ । ୩୪ ।

### ପଦବ୍ୟାଖ୍ୟା ।

ଆଚାର୍ଯ୍ୟାଃ—ଗୁରୁ ବା ଉପଦେଶଦାତା, ପିତରଃ—ପିତୃତୁଲ୍ୟ ମାନ୍ୟବ୍ୟକ୍ତିମାନେ, ପୁତ୍ରାଃ—ପୁତ୍ର ଓ ପୁତ୍ରତୁଲ୍ୟମାନେ, ତଥୈବ ଚ—ସେହିପରି ଆଉ, ପିତାମହାଃ—ପିତୃପିତା ଭୀଷ୍ମ ପ୍ରଭୃତି, ମାତୁଲାଃ—ମାମୁଁ, ଶ୍ୱଶୁରାଃ—ଶ୍ୱଶୁରମାନେ, ପୌତ୍ରାଃ—ନାତି, ଶ୍ୟାଲାଃ—ଶଳା, ସମ୍ବନ୍ଧିନଃ—ଆପଣା ସମ୍ପର୍କୀୟ ବନ୍ଧୁମାନେ । ୩୪ ।

### ଅନୁବାଦ ।

ଗୁରୁ, ପିତୃ, ପୁତ୍ର, ପିତାମହ, ମାତୁଳ, ଶ୍ୱଶୁର, ନାତି ଓ ଶଳା ଏବଂ ସେହିପରି ଅନ୍ୟାନ୍ୟ ସମ୍ପର୍କୀୟମାନେ ( ଯୁଦ୍ଧରେ ଉପସ୍ଥିତ ଅଛନ୍ତି ) । ୩୪ ।

### ବିଶଦବ୍ୟାଖ୍ୟା ।

ଲୋକେ ରାଜ୍ୟ ବା ସୁଖଭୋଗ ଇଚ୍ଛା କରନ୍ତି,—ଆପଣାର ଗୁରୁଜନ, ପିତୃ, ପିତାମହ, ପୁତ୍ର ନାତି, ମାମୁଁ, ଶ୍ୱଶୁର ଓ ଶଳା ଏମାନଙ୍କ ପାଇଁ; ଯେବେ ଏମାନେ ଧନ ଓ ପ୍ରାଣର ଆଶା ତ୍ୟାଗ କରି ଯୁଦ୍ଧପାଇଁ ଉପସ୍ଥିତ ଏବଂ ଯୁଦ୍ଧ ହେଲେ ଏମାନଙ୍କର ମୃତ୍ୟୁ ନିଶ୍ଚିତ, ତେବେ ଆଉ ସେ ରାଜ୍ୟ ବା ସୁଖଲାଭରେ କି ପ୍ରୟୋଜନ ? । ୩୪ ।

Digitized by PPRACHIN, SOA

ଶ୍ଳୋକଃ ।

ଏତାନ୍ନ ହନ୍ତୁମିଚ୍ଛାମି, ଘ୍ନତୋଽପି ମଧୁସୂଦନ ।
ଅପି ତ୍ରୈଲୋକ୍ୟରାଜ୍ୟସ୍ୟ, ହେତୋଃ କିଂ ନୁ ମହୀକୃତେ । ୩୫ ।

ଅନ୍ୱୟଃ ।

ହେ ମଧୁସୂଦନ ! ଘ୍ନତଃ ଅପି ଏତାନ୍ ତ୍ରୈଲୋକ୍ୟରାଜ୍ୟସ୍ୟ ଅପି ହେତୋଃ ହନ୍ତୁଂ ନ ଇଚ୍ଛାମି ମହୀକୃତେ କିଂ ନୁ ? । ୩୫ ।

ଟୀକା ।

ନନୁ ଯଦି କୃପୟା ତ୍ୱମେତାନ୍ନ ହଂସି ତର୍ହି ତ୍ୱାମେତେ ରାଜ୍ୟଲୋଭେନ ହନିଷ୍ୟନ୍ତ୍ୟେବ । ଅତସ୍ତ୍ୱମେବୈତାନ୍ ହତ୍ୱା ରାଜ୍ୟଂ ଭୁଂକ୍ଷ୍ୱ ଇତ ଅତ୍ରାହ । ଏତାନ୍ନିତ୍ୟାଦି ସାର୍ଦ୍ଧେନ । ଘ୍ନତୋଽପି ଅସ୍ମାନ୍ ମାରୟତୋଽପି ଏତାନ୍ ତ୍ରୈଲୋକ୍ୟରାଜ୍ୟସ୍ୟାପି ହେତୋଃ ତତ୍ ପ୍ରାପ୍ତ୍ୟର୍ଥମପି ହନ୍ତୁଂ ନେଚ୍ଛାମି କିଂ ପୁନର୍ମହୀମାତ୍ର ପ୍ରାପ୍ତୟେ ଇତ୍ୟର୍ଥଃ । ୩୫ ।

ପଦବ୍ୟାଖ୍ୟା ।

ଏତାନ୍—ଏମାନଙ୍କୁ, ନ—ନାହିଁ, ହନ୍ତୁଂ—ମାରିବାକୁ, ଇଚ୍ଛାମି—ଇଚ୍ଛା କରୁଅଛି, ଘ୍ନତୋଽପି—ମାଇଲେ ମଧ୍ୟ, ମଧୁସୂଦନ—ହେ ମଧୁନାମକ-ଅସୁର-ବିନାଶକ !, ଅପି ତ୍ରୈଲୋକ୍ୟରାଜ୍ୟସ୍ୟ ହେତୋଃ—ତ୍ରିଲୋକରାଜ୍ୟନିମିତ୍ତ ମଧ୍ୟ, କିଂ ନୁ—କି ଗର, ମହୀକୃତେ—ମହୀନିମିତ୍ତ । ୩୫ ।

ଅନୁବାଦ ।

ହେ ମଧୁସୂଦନ ! ଏମାନେ ମତେ ବିନାଶ କଲେ ସୁଦ୍ଧା ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଏହି ତ୍ରିଲୋକ ପ୍ରାପ୍ତି ନିମିତ୍ତ ମଧ୍ୟ ମୁଁ ଏମାନଙ୍କୁ ମାରିବି ନାହିଁ, ସାମାନ୍ୟ ମହୀ କଥା କିଏ ପଚାରେ ? । ୩୫ ।

ବିଶଦବ୍ୟାଖ୍ୟା ।

ଏ ଶ୍ଳୋକରେ 'ମଧୁସୂଦନ' ସମ୍ବୋଧନପଦ ଅର୍ଜ୍ଜୁନ ବ୍ୟବହାର କରିବାରୁ ଏହା ପ୍ରକାଶିତ ହେଉଅଛି କି—ଆପଣ କେବଳ ଶତ୍ରୁବିନାଶକ ଅଟନ୍ତି, କିନ୍ତୁ ଆପଣାସମ୍ପର୍କୀୟ କୁଟୁମ୍ବ ଓ ମିତ୍ରମାନଙ୍କର ଘାତକ ନୁହନ୍ତି, ତେବେ ମୁଁ କିପରି କୁଟୁମ୍ବ ଓ ମିତ୍ର ବଧ କରିବି ? । ୩୫ ।

ଶ୍ଳୋକଃ ।

ନିହତ୍ୟ ଧାର୍ତ୍ତରାଷ୍ଟ୍ରାନ୍ନଃ, କା ପ୍ରୀତିଃ ସ୍ୟାଜ୍ଜନାର୍ଦ୍ଦନ ।
ପାପମେବାଶ୍ରୟେଦସ୍ମାନ୍, ହତ୍ୱୈତାନାତତାୟିନଃ । ୩୬ ।

ଅନ୍ୱୟଃ ।

ହେ ଜନାର୍ଦ୍ଦନ ! ଧାର୍ତ୍ତରାଷ୍ଟ୍ରାନ୍ ନିହତ୍ୟ ନଃ କା ପ୍ରୀତିଃ ସ୍ୟାତ୍ । ଏତାନ୍ ଆତତାୟିନଃ ହତ୍ୱା ଅସ୍ମାନ୍ ପାପଂ ଏବ ଆଶ୍ରୟେତ୍ । ୩୬ ।

ଟୀକା ।

ନିହତ୍ୟେତି । ନନୁ ଚ,—ଅଗ୍ନିଦୋ ଗରଦଶ୍ଚୈବ ଶସ୍ତ୍ରପାଣିର୍ଧନାପହଃ । କ୍ଷେତ୍ରଦାରାପହାରୀ ଚ ଷଡେତେ ଆତ

-ତାୟିନଃ । ଇତି ସ୍ମରଣାତ୍ ଅଗ୍ନିଦାହାଦୟଃ ଷଡ୍‌ଭିଃ ହେତୁଭିଃ ଏତେ ତାବଦାତତାୟିନଃ । ଆତତାୟିନାଂ ଚ ବଧୋ-ଯୁକ୍ତ ଏବ । ଅତତାୟିନମାୟାନ୍ତଂ ହନ୍ୟାଦେବାବିଚାରୟନ୍ । ନାତତାୟିବଧେ ଦୋଷୋହନ୍ତୁର୍ଭବତି କଶ୍ଚନେତିବଚନାତ୍ । ତତ୍ରାହ ପାପମେବେତ୍ୟାଦି ସାର୍ଦ୍ଧେନ । ଆତତାୟିନମାୟାନ୍ତମିତ୍ୟାଦିକମର୍ଥଶାସ୍ତ୍ରଂ ତଚ୍ଚ ଧର୍ମଶାସ୍ତ୍ରାତ୍ ଦୁର୍ବ୍ବଲଂ । ଯଥୋକ୍ତଂ ଯାଜ୍ଞବଲ୍କ୍ୟେନ । ସ୍ମୃତ୍ୟୋର୍ବ୍ବିରୋଧେ ନ୍ୟାୟସ୍ତୁ ବଲବାନ୍ ବ୍ୟବହାରତଃ । ଅର୍ଥଶାସ୍ତ୍ରାତ୍ତୁ ବଲବତ୍ ଧର୍ମଶାସ୍ତ୍ରମିତି ସ୍ଥିତଃ ଇତି । ତସ୍ମାଦାତତାୟିନାମପ୍ୟେତେଷାମାଚାର୍ଯ୍ୟାଦୀନାଂ ବଧେଽସ୍ମାକଂ ପାପମେବ ଭବେତ୍ । ୩୬ ।

ପଦବ୍ୟାଖ୍ୟା ।

ନିହତ୍ୟ—ମାଇଲେ, ଧାର୍ତ୍ତରାଷ୍ଟ୍ରାନ୍—ଧୃତରାଷ୍ଟ୍ରଙ୍କ ପକ୍ଷୀୟମାନଙ୍କୁ, ନଃ—ଅମ୍ଭମାନଙ୍କର, କା ପ୍ରୀତିଃ ସ୍ୟାତ୍—କଅଣ ଭଲ ହେବ?, ବା ମନର କି ପ୍ରସନ୍ନତା ହେବ?, ଜନାର୍ଦ୍ଦନ—ହେ ଜନାର୍ଦ୍ଦନ, ପାପମେବ—ପାପ କେବଳ, ଆଶ୍ରୟେତ୍—ଆଶ୍ରୟ କରିବ, ଅସ୍ମାନ୍—ଆମ୍ଭମାନଙ୍କୁ, ହତ୍ୱା—ମାଇଲେ, ଏତାନାତତାୟିନଃ—ଏହି ଆତତାୟିମାନଙ୍କୁ । ୩୬ ।

ଅନୁବାଦ ।

ହେ ଜନାର୍ଦ୍ଦନ ! ଧୃତରାଷ୍ଟ୍ରପକ୍ଷୀୟମାନଙ୍କୁ ମାଇଲେ ଅମ୍ଭମାନଙ୍କର କି ମଙ୍ଗଳ ହେବ ? ବରଂ ଏହି ଆତତାୟିମାନଙ୍କୁ ମାରିଲେ ଅମ୍ଭମାନଙ୍କୁ କେବଳ ପାପ ସ୍ପର୍ଶ କରିବ । ୩୬ ।

ବିଶଦବ୍ୟାଖ୍ୟା ।

ଆତତାୟୀ ଅର୍ଥାତ୍ ଅନିଷ୍ଟକାରୀ, ଶାସ୍ତ୍ର ଅନୁସାରେ ଛ ପ୍ରକାର ହୁଅନ୍ତି । ଯଥା,—(୧) ଯେ ଘର ପୋଡି ଦିଏ, (୨) ଯେ ବିଷ ଖାଇବାକୁ ଦିଏ, (୩) ଯେ ଶସ୍ତ୍ର ଘେନି ଯୁଦ୍ଧ କରିବାକୁ ଉପସ୍ଥିତ ହୁଏ, (୪) ଯେ ଧନ ହରଣ କରେ, (୫) ଯେ ଭୂମି ହରଣ କରେ, (୬) ଯେ ସ୍ତ୍ରୀ ହରଣ କରେ । ଅର୍ଥଶାସ୍ତ୍ର ଅନୁସାରେ ଏମାନେ ବଧଯୋଗ୍ୟ ଅର୍ଥାତ୍ ଆତ-ତାୟିଙ୍କୁ ଆସିବାର ଦେଖିଲେ କିଛି ବିଚାର ନ କରି ବଧ କରିବ, ଏହା ଅର୍ଥଶାସ୍ତ୍ରରେ ଲେଖାଅଛି । ପୁଣି ଧୃତରାଷ୍ଟ୍ରପକ୍ଷୀୟମାନେ ଜତୁଗୃହଦାହ, ଭୀମସେନପ୍ରତି ବିଷପ୍ରୟୋଗ, ଯୁଦ୍ଧନିମିତ୍ତ ଶସ୍ତ୍ରଧାରଣ, ପଶାଖେଳଦ୍ୱାରା ସମସ୍ତ ଧନ ଓ ଭୂମି ହରଣ ଏବଂ ଦ୍ରୌପଦୀଙ୍କର କେଶାକର୍ଷଣ ପ୍ରଭୃତି କରିବାଦ୍ୱାରା ସବୁପ୍ରକାର ଆତତାୟିର କାର୍ଯ୍ୟ କରିଅଛନ୍ତି, ତଥାପି ଅର୍ଜୁନ ଏମାନଙ୍କୁ ବଧ କରିବାକୁ ଅନିଚ୍ଛୁକ; କାରଣ ଯାଜ୍ଞବଲ୍କ୍ୟ କହନ୍ତି ଯେ, ଯେଉଁଠାରେ ଅର୍ଥଶାସ୍ତ୍ର ଓ ନ୍ୟାୟର ବିରୋଧ ହେବ ସେଠାରେ ନ୍ୟାୟ ପ୍ରଧାନ ଏବଂ ଯେଉଁଠାରେ ଅର୍ଥ ଶାସ୍ତ୍ର ଓ ଧର୍ମଶାସ୍ତ୍ରର ବିରୋଧ ହେବ ସେଠାରେ ଧର୍ମଶାସ୍ତ୍ର ବଳବାନ୍ ହେବ । ଧର୍ମଶାସ୍ତ୍ରରେ ପ୍ରାଣିହିଂସା ଅନୁମୋଦିତ ନୁହେ, ବରଂ (ଧର୍ମଶାସ୍ତ୍ରରେ) କୁଳନାଶକ ଅତିପାପିଷ୍ଠ ବୋଲି ଲେଖାଅଛି । "ସଏବ ପାପିଷ୍ଠତମୋୟଃ କୁର୍ଯ୍ୟାତ୍ କୁଳନାଶନଂ" ! ବେଦରେ ପ୍ରାଣିହିଂସା ବାରଣ କରି ହୋଇଅଛି, "ମା ହିଂସ୍ୟାତ୍ ସର୍ବ୍ବଭୂତାନି" ଅର୍ଥାତ୍ କୌଣସି ପ୍ରାଣିକୁ ନାଶ କରିବ ନାହିଁ, ଏହି ହେତୁରୁ ଅର୍ଜୁନ କହିଲେ ଯେ "ଏ ଆତତାୟିମାନଙ୍କୁ ମାଇଲେ ଅମ୍ଭମାନଙ୍କୁ କେବଳ ପାପ ସ୍ପର୍ଶ କରିବ" ଇତ୍ୟାଦି । ୩୬ ।

ଶ୍ଳୋକଃ ।

ତସ୍ମାନ୍ନାର୍ହାବୟଂ ହନ୍ତୁଂ, ଧାର୍ତ୍ତରାଷ୍ଟ୍ରାନ୍ ସ୍ୱବାନ୍ଧବାନ୍ ।
ସ୍ୱଜନଂ ହି କଥଂ ହତ୍ୱା, ସୁଖିନଃ ସ୍ୟାମ ମାଧବ । ୩୭ ।

Digitized by PPRACHIN, SOA

### ଅନ୍ୱୟଃ ।

ତସ୍ମାତ୍ ସ୍ୱବାନ୍ଧବାନ୍ ଧାର୍ତ୍ତରାଷ୍ଟ୍ରାନ୍ ହନ୍ତୁଂ ବୟଂ ନ ଅର୍ହାଃ । ହେ ମାଧବ ! ହି ସ୍ୱଜନଂ ହତ୍ୱା (ବୟଂ) କଥଂ ସୁଖିନଃ ସ୍ୟାମ । ୩୭ ।

### ଟୀକା ।

ଅନ୍ୟାଯ୍ୟତ୍ୱାତ୍ ଅଧର୍ମତ୍ୱାଚ୍ଚ ଏତଦ୍ବଧସ୍ୟାମୁତ୍ର ବେହ ବା ନ ସୁଖଂ ସ୍ୟାଦିତ୍ୟାହ । ତସ୍ମାଦିତି । ୩୭ ।

### ପଦବ୍ୟାଖ୍ୟା ।

ତସ୍ମାତ୍—ସେହି ହେତୁରୁ, ନାର୍ହାଃ—ଯୋଗ୍ୟ ନୋହୁଁ, ବୟଂ—ଆମ୍ଭେମାନେ, ହନ୍ତୁଂ—ବିନାଶ କରିବାକୁ, ଧାର୍ତ୍ତରାଷ୍ଟ୍ରାନ୍—ଧୃତରାଷ୍ଟ୍ରଙ୍କ ପକ୍ଷୀୟ ଦୁର୍ଯ୍ୟୋଧନ ଭୀଷ୍ମାଦିଙ୍କୁ, ସ୍ୱବାନ୍ଧବାନ୍—ଆପଣାର ବନ୍ଧୁ, ସ୍ୱଜନଂ—ଆତ୍ମୀୟ ଲୋକଙ୍କୁ, ହି—ଯେହେତୁ, କଥଂ—କିପରି, ହତ୍ୱା—ମାରିକରି ଅବା ମାରିଲେ, ସୁଖିନଃ ସ୍ୟାମ—ସୁଖୀ ହେବୁଁ, ମାଧବ—ହେ ଶ୍ରୀପତେ ! । ୩୭ ।

### ଅନୁବାଦ ।

ହେ ମାଧବ ! ସେହି ହେତୁରୁ ଆପଣାର ବନ୍ଧୁ ଧୃତରାଷ୍ଟ୍ରପକ୍ଷୀୟମାନଙ୍କୁ ମାରିବା ଆମ୍ଭମାନଙ୍କର ଉଚିତ ନୁହେ । ଯେହେତୁ ଆପଣା ବନ୍ଧୁମାନଙ୍କୁ ମାରିଲେ କିପରି ସୁଖୀ ହେବା ? । ୩୭ ।

### ବିଶେଷପଦବ୍ୟାଖ୍ୟା ।

ଏ ଶ୍ଲୋକରେ ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ ‘ ମାଧବ ’ ପଦଦ୍ୱାରା ସମ୍ବୋଧନ କରିବାର ତାତ୍ପର୍ଯ୍ୟ ଏହି ଯେ ( ମା=ଲକ୍ଷ୍ମୀ—ଶ୍ରୀ, ଧବଃ=ପତିଃ ) ଆପଣ ଶ୍ରୀପତି ହୋଇ ‘ ବିଶ୍ରୀ ’ ହତ୍ୟାକାଣ୍ଡରେ କିପରି ଆମ୍ଭମାନଙ୍କୁ ପ୍ରବର୍ତ୍ତାଉଅଛନ୍ତି ? । ୩୭ ।

### ଶ୍ଲୋକଃ ।

ଯଦ୍ୟପ୍ୟେତେ ନ ପଶ୍ୟନ୍ତି, ଲୋଭୋପହତଚେତସଃ ।
କୁଲକ୍ଷୟକୃତଂ ଦୋଷଂ, ମିତ୍ରଦ୍ରୋହେ ଚ ପାତକଂ । ୩୮ ।

### ଅନ୍ୱୟଃ ।

ଯଦ୍ୟପି ଏତେ ଲୋଭୋପହତଚେତସଃ ( ସନ୍ତଃ ) କୁଲକ୍ଷୟକୃତଂ ଦୋଷଂ, ମିତ୍ରଦ୍ରୋହେ ଚ ପାତକଂ ନ ପଶ୍ୟନ୍ତି— । ୩୮ ।

### ଟୀକା ।

ନନୁ ତୈରେଷାମପି ବନ୍ଧୁବଧଦୋଷେ ସମାନେ ଯଥୈବୈତେ ବନ୍ଧୁବଧମଙ୍ଗୀକୃତ୍ୟାପି ଯୁଦ୍ଧେ ପ୍ରବର୍ତ୍ତନ୍ତେ ତଥୈବ ଭବାନପି ପ୍ରବର୍ତ୍ତତାଂ କିମନେନ ବିଷାଦେନେତ୍ୟାହ । ଯଦ୍ୟପୀତି ଦ୍ୱାଭ୍ୟାଂ । ରାଜ୍ୟଲୋଭେନୋପହତଂ ଭ୍ରଷ୍ଟବିବେକଂ ଚେତୋ ଯେଷାଂ ତେ ଏତେ ଦୁର୍ଯ୍ୟୋଧନାଦୟୋ ଯଦ୍ୟପି ଦୋଷଂ ନ ପଶ୍ୟନ୍ତି— । ୩୮ ।

### ପଦବ୍ୟାଖ୍ୟା ।

ଯଦ୍ୟପ୍ୟେତେ ନ ପଶ୍ୟନ୍ତି—ଯଦ୍ୟପି ଏମାନେ ନ ଦେଖନ୍ତି , ଲୋଭୋପହତଚେତସଃ—ଲୋଭରେ ବିବେଚନାଭ୍ରଷ୍ଟ ହୋଇ , କୁଲକ୍ଷୟକୃତଂ—ବଂଶନାଶଜନିତ, ଦୋଷଂ—ଅପରାଧକୁ , ମିତ୍ରଦ୍ରୋହେ ଚ—ବନ୍ଧୁହିଂସାରେ, ପାତକଂ—ପାପକୁ । ୩୮ ।

ଅନୁବାଦ ।

ଯଦ୍ୟପି ଏମାନେ ଲୋଭଦ୍ୱାରା ବିବେକଭ୍ରଷ୍ଟ ହୋଇ ବଂଶନାଶଜନିତ ଦୋଷ ଓ ବନ୍ଧୁବିରୋଧଜାତ ପାପକୁ ନ ଦେଖନ୍ତି — । ୩୮ ।

ଶ୍ଳୋକଃ ।

କଥଂ ନ ଜ୍ଞେୟମସ୍ମାଭିଃ, ପାପାଦସ୍ମାନ୍ନିବର୍ତ୍ତିତୁଂ ।
କୁଳକ୍ଷୟକୃତଂ ଦୋଷଂ, ପ୍ରପଶ୍ୟଦ୍ଭିର୍ଜନାର୍ଦ୍ଦନ । ୩୯ ।

ଅନ୍ୱୟଃ ।

ହେ ଜନାର୍ଦ୍ଦନ ! କୁଳକ୍ଷୟକୃତଂ ଦୋଷଂ ପ୍ରପଶ୍ୟଦ୍ଭିଃ ଅସ୍ମାଭିଃ, ଅସ୍ମାତ୍ ପାପାତ୍ ନିବର୍ତ୍ତିତୁଂ କଥଂ ନ ଜ୍ଞେୟଂ । ୩୯ ।

ଟୀକା ।

କଥମିତି । ତଥାପ୍ୟସ୍ମାଭିର୍ଦୋଷଂ ପ୍ରପଶ୍ୟଦ୍ଭିରସ୍ମାତ୍ ପାପାତ୍ ନିବର୍ତ୍ତିତୁଂ କଥଂ ନ ଜ୍ଞେୟଂ ନିବୃତ୍ତାବେବ ବୁଦ୍ଧିଃ କର୍ତ୍ତବ୍ୟେତ୍ୟର୍ଥଃ । ୩୯ ।

ପଦବ୍ୟାଖ୍ୟା

କଥଂ—କିପରି ? , ନ ଜ୍ଞେୟଂ—ନ ଜାଣିବୁଁ , ଅସ୍ମାଭିଃ—ଆମ୍ଭେମାନେ, ପାପାତ୍ ଅସ୍ମାତ୍ ନିବର୍ତ୍ତିତୁଂ—ଏହି ପାପରୁ କ୍ଷାନ୍ତ ହେବାକୁ, କୁଳକ୍ଷୟକୃତଂ ପାପଂ ପ୍ରପଶ୍ୟଦ୍ଭିଃ—ବଂଶନାଶଜନିତ ଦୋଷ ଜାଣୁଜାଣୁ, ଜନାର୍ଦ୍ଦନ—ହେ ଶ୍ରୀକୃଷ୍ଣ ! । ୩୯ ।

ଅନୁବାଦ ।

ହେ ଶ୍ରୀକୃଷ୍ଣ ! ( ତଥାପି ) ଅମ୍ଭେମାନେ ବଂଶନାଶଜନିତ ଦୋଷକୁ ଜାଣି ଏ ପାପରୁ ନିବୃତ୍ତ ହେବାର ବିଚାର କିପରି ନ କରିବା ? । ୩୯ ।

ଶ୍ଳୋକଃ ।

କୁଳକ୍ଷୟେ ପ୍ରଣଶ୍ୟନ୍ତି, କୁଳଧର୍ମାଃ ସନାତନାଃ ।
ଧର୍ମେ ନଷ୍ଟେ କୁଳଂ କୃତ୍ସ୍ନମଧର୍ମୋଽଭିଭବତ୍ୟୁତ । ୪୦ ।

ଅନ୍ୱୟଃ ।

କୁଳକ୍ଷୟେ ( ସତି ) ସନାତନାଃ କୁଳଧର୍ମାଃ ପ୍ରଣଶ୍ୟନ୍ତି, ଉତ ଧର୍ମେ ନଷ୍ଟେ (ସତି) ଅଧର୍ମଃ କୃତ୍ସ୍ନଂ କୁଳଂ ଅଭିଭବତି । ୪୦ ।

ଟୀକା ।

ତମେବ ଦୋଷଂ ଦର୍ଶୟତି । କୁଳକ୍ଷୟ ଇତ୍ୟାଦି । ସନାତନାଃ ପରମ୍ପରାପ୍ରାପ୍ତାଃ । ଉତ ଅପି । ଅବଶିଷ୍ଟଂ କୃତ୍ସ୍ନମପି କୁଳଂ ଅଧର୍ମୋଽଭିଭବତି ବ୍ୟାପ୍ନୋତୀତ୍ୟର୍ଥଃ । ୪୦ ।

ପଦବ୍ୟାଖ୍ୟା ।

କୁଳକ୍ଷୟେ—ବଂଶ ନାଶ ହେଲେ, ପ୍ରଣଶ୍ୟନ୍ତି—ନଷ୍ଟ ହୁଅନ୍ତି, କୁଳଧର୍ମାଃ—କୁଳଧର୍ମମାନ, ସନାତନାଃ— 'ବଂଶ' ପରମ୍ପରାପ୍ରାପ୍ତ, ଧର୍ମେ ନଷ୍ଟେ—ଧର୍ମ ନଷ୍ଟ ହେଲେ, କୁଳଂ—ବଂଶକୁ, କୃତ୍ସ୍ନଂ—ସମସ୍ତ, ଅଧର୍ମଃ—ପାପ , ଅଭିଭବତି—ବ୍ୟାପେ, ଉତ—ପାଦପୂରଣାର୍ଥ । ୪୦ ।

Digitized by PPRACHIN, SOA

ଅନୁବାଦ ।

ବଂଶ ନାଶ ହେଲେ, ପରମ୍ପରାଗତ କୁଳଧର୍ମ ବିନଷ୍ଟ ହୁଏ; ଆଉ ଧର୍ମ ନଷ୍ଟ ହେଲେ ଅବଶିଷ୍ଟ ସମୁଦାୟ ବଂଶକୁ ଅଧର୍ମ ବ୍ୟାପେ । ୪୦ ।

ଶ୍ଳୋକଃ ।

ଅଧର୍ମାଭିଭବାତ୍ କୃଷ୍ଣ, ପ୍ରଦୁଷ୍ୟନ୍ତି କୁଳସ୍ତ୍ରିୟଃ ।
ସ୍ତ୍ରୀଷୁ ଦୁଷ୍ଟାସୁ ବାର୍ଷ୍ଣେୟ, ଜାୟତେ ବର୍ଣ୍ଣସଙ୍କରଃ । ୪୧ ।

ଅନ୍ୱୟଃ ।

ହେ କୃଷ୍ଣ ! ଅଧର୍ମାଭିଭବାତ୍ କୁଳସ୍ତ୍ରିୟଃ ପ୍ରଦୁଷ୍ୟନ୍ତି. ହେ ବାର୍ଷ୍ଣେୟ ! ସ୍ତ୍ରୀଷୁ ଦୁଷ୍ଟାସୁ ( ସତୀଷୁ ) ବର୍ଣ୍ଣସଙ୍କରଃ ଜାୟତେ । ୪୧ ।

ଟୀକା ।

ତତଶ୍ଚାଧର୍ମାଭିଭବାଦିତ୍ୟାହ ( ଶ୍ଳୋକାର୍ଥଃ ) । ୪୧ ।

ପଦବ୍ୟାଖ୍ୟା ।

ଅଧର୍ମାଭିଭବାତ୍—ଅଧର୍ମ ବ୍ୟାପିବାରୁ, କୃଷ୍ଣ—ହେ କୃଷ୍ଣ, ପ୍ରଦୁଷ୍ୟନ୍ତି—ଦୋଷଗ୍ରସ୍ତ ହୁଅନ୍ତି, କୁଳସ୍ତ୍ରିୟଃ—କୁଳକାମିନୀମାନେ, ସ୍ତ୍ରୀଷୁ ଦୁଷ୍ଟାସୁ—ସ୍ତ୍ରୀମାନେ ଦୋଷଗ୍ରସ୍ତ ହେଲେ, ବାର୍ଷ୍ଣେୟ—ହେ ବୃଷ୍ଣିବଂଶଦୌହିତ୍ର !, ଜାୟତେ—ଜାତ ହୁଏ, ବର୍ଣ୍ଣସଙ୍କରଃ—ବର୍ଣ୍ଣଜାତିସ୍ୱ-ମିଶ୍ର । ୪୧ ।

ଅନୁବାଦ ।

ହେ କୃଷ୍ଣ ! ଅଧର୍ମ ବ୍ୟାପିଲେ କୁଳସ୍ତ୍ରୀମାନେ କଳଙ୍କିତ ହୁଅନ୍ତି । ହେ ବୃଷ୍ଣିବଂଶ-ଦୌହିତ୍ର କୃଷ୍ଣ ! ସ୍ତ୍ରୀମାନେ ଭ୍ରଷ୍ଟା ହେଲେ ବର୍ଣ୍ଣସଙ୍କର ଜାତ ହୁଏ । ୪୧ ।

ବିଶଦବ୍ୟାଖ୍ୟା ।

ଏ ଶ୍ଳୋକରେ ' ବାର୍ଷ୍ଣେୟ ' ସମ୍ବୋଧନପଦଦ୍ୱାରା ଅର୍ଜ୍ଜୁନ ଏହି କଥା ସଙ୍କେତରେ କହିଲେ କି—ଯେପରି ଆପଣଙ୍କ ପିତୃକୁଳ ଯାଦବ ଓ ମାତୃକୁଳ 'ବୃଷ୍ଣି' ଉଭୟ ବିଶୁଦ୍ଧ ଅଟେ, ସେହିପରି ଆମ୍ଭର କୁଳ ବିଶୁଦ୍ଧ ରହିବା ଉଚିତ । ୪୧ ।

ଶ୍ଳୋକଃ ।

ସଙ୍କରୋ ନରକାୟୈବ, କୁଳଘ୍ନାନାଂ କୁଳସ୍ୟ ଚ ।
ପତନ୍ତି ପିତରୋ ହ୍ୟେଷାଂ, ଲୁପ୍ତପିଣ୍ଡୋଦକକ୍ରିୟାଃ । ୪୨ ।

ଅନ୍ୱୟଃ ।

ସଙ୍କରଃ କୁଳଘ୍ନାନାଂ କୁଳସ୍ୟ ଚ ନରକାୟ ଏବ । ହି ଏଷାଂ ପିତରଃ ଲୁପ୍ତପିଣ୍ଡୋଦକକ୍ରିୟାଃ ପତନ୍ତି । ୪୨ ।

ଟୀକା ।

ଏବ ସତ, ସଙ୍କର ଇତ୍ୟାଦି । ଏଷାଂ କୁଳଘ୍ନାନାଂ ପିତରଃ ପତନ୍ତି, ହି ଯସ୍ମାତ୍ ଲୁପ୍ତାଃ ପିଣ୍ଡୋଦକକ୍ରିୟାଃ ଯେଷାଂ ତେ ତଥା । ୪୨ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ସଙ୍କରଃ—ବର୍ଣ୍ଣସଙ୍କର, ନରକାୟୈବ—କେବଳ ନରକ ନିମନ୍ତେ, କୁଳଘ୍ନାନାଂ—କୁଳନାଶକମାନଙ୍କର, କୁଳସ୍ୟ ଚ—ବଂଶର ମଧ୍ୟ, ପତନ୍ତି—ନରକରେ ପଡନ୍ତି, ପିତରଃ—ପିତୃଗଣ, ହି—ଯେହେତୁ, ଏଷାଂ—ଏମାନଙ୍କର, ଲୁପ୍ତପିଣ୍ଡୋଦକକ୍ରିୟାଃ—ମରଣାନନ୍ତର ସେମାନଙ୍କର ପିଣ୍ଡ ତର୍ପଣାଦି କର୍ମ ଲୋପ ହେବାରୁ । ୪୨ ।

ଅନୁବାଦ ।

ବର୍ଣ୍ଣସଙ୍କର, କୁଳନାଶକମାନଙ୍କର ଓ ନିଜକୁଳର ନରକପତନର ହେତୁ ହୁଏ । ଏମାନଙ୍କର ପିତୃଗଣ ପିଣ୍ଡ ତର୍ପଣାଦି କାର୍ଯ୍ୟ ଲୋପ ହେବାରୁ ନରକରେ ପତିତ ହୁଅନ୍ତି । ୪୨ ।

ବିଶଦବ୍ୟାଖ୍ୟା ।

ପରଶୁରାମ ଏକବିଂଶତିବାର କ୍ଷତ୍ରିୟବୀରବର୍ଗଙ୍କୁ ବଧ କଲେ । ସେହି ବିଧବା କ୍ଷତ୍ରିୟା ରମଣୀମାନଙ୍କ ଗର୍ଭରେ ବ୍ରାହ୍ମଣପୁରୁଷଙ୍କ ଔରସରେ ଯେଉଁ ସବୁ ସନ୍ତାନ ଜନ୍ମିଥିଲେ ସେମାନେ, ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁର ଏମାନେ ବର୍ଣ୍ଣସଙ୍କର ତାହା ସମସ୍ତଙ୍କୁ ଜଣାଅଛି ।

ସେହି ସ୍ତ୍ରୀରୂପ କ୍ଷେତ୍ରରେ ବୀଜ-ପତିଦ୍ୱାରା ଉତ୍ପନ୍ନ ପୁତ୍ରମାନେ ଯେଉଁ ପିଣ୍ଡ ପ୍ରଦାନ କରନ୍ତି, ଯଦି ତଦ୍ୱାରା ମୃତ କ୍ଷତ୍ରିୟବୀରବର୍ଗଙ୍କର ଓ ଧୃତରାଷ୍ଟ୍ରାଦିଙ୍କଦ୍ୱାରା ତତ୍ପିତୃଗଣଙ୍କର ସଦ୍ଗତି ହୋଇପାରେ, ତେବେ ବର୍ଣ୍ଣସଙ୍କର ହେଲେ ପିଣ୍ଡାଦି ବ୍ୟର୍ଥ ହେବ କିପରି? ଏହି ଆଶଙ୍କା ନିବାରଣପାଇଁ ଶ୍ଳୋକ ମଧ୍ୟରେ 'ହି' ଶବ୍ଦର ପ୍ରୟୋଗ କରି ହୋଇଅଛି । 'ହି' ଦ୍ୱାରା ବୈଦିକପଦ୍ଧତି ଲକ୍ଷିତ ହୋଇଅଛି । ବେଦମତରେ ବୀଜପତି ପିଣ୍ଡର ଭାଗୀ ହେବ, କ୍ଷେତ୍ରପତି ତାହା ପାଇବେ ନାହିଁ । ଯଥା—"ନ ଶେଷୋଅଗ୍ନେ ଅନ୍ୟଜାତମସ୍ତି" ଶ୍ରୁତିଃ । ହେ ଅଗ୍ନି ! ଅନ୍ୟଦ୍ୱାରା ଉତ୍ପନ୍ନ ସୁତ ପୁତ୍ର ନୁହେ । ଯାସ୍କ ମଧ୍ୟ କହିଅଛନ୍ତି, ଯଥା—"ଅନ୍ୟୋଦର୍ଯ୍ୟୋମନସାପି ନ ମନ୍ତବ୍ୟୋମମାୟଂ ପୁତ୍ରଃ" ଇତି । ଅନ୍ୟର ଉତ୍ପାଦିତ ପୁତ୍ରକୁ ପୁତ୍ର ବୋଲି ମନେ କରିବା ଉଚିତ ନୁହେ । "ଯେ ଯଜାମହେ" ଇତି । "ଯୋଽହମସ୍ମିନ୍ ସନ୍ ଯଜେ" ଇତି । ଆମ୍ଭେ ବ୍ରାହ୍ମଣ କି ଅବ୍ରାହ୍ମଣ ତାହା ଜାଣୁନା, ଆମ୍ଭେ ଯାହା ହେଉଁ ପଛକେ ଯଜନ କରୁଅଛୁଁ । ଏ ଆମ୍ଭର ପିତା କି ଅନ୍ୟ ବ୍ୟକ୍ତି ଆମ୍ଭର ପିତା ଏହି ସଂଶୟରେ ଏପରି କଥିତ ହେଲା । ଯେ ଜନ୍ମଦାତା ସେ ପିଣ୍ଡ ଫଳଭାଗୀ ହେଉନ୍ତୁ ଏହାହିଁ ଶ୍ରୁତିସିଦ୍ଧାନ୍ତ ।

ସ୍ମୃତି ଇତ୍ୟାଦିରେ ଯେ କ୍ଷେତ୍ରପତିର ଅଧିକାର ଲେଖାଅଛି, ଇହଲୋକରେ ବଂଶ-ପରମ୍ପରା ସ୍ଥାପନ ଓ ଉତ୍ତରାଧିକାରୀ ନିଶ୍ଚୟ କରିବାହିଁ ସେ ସବୁର ଉଦ୍ଦେଶ୍ୟ; କିନ୍ତୁ ପାରଲୌକିକ ଫଳ ବିଧାନାର୍ଥ ନୁହେ । ଅତଏବ ବର୍ଣ୍ଣସଙ୍କରଦ୍ୱାରା ସ୍ୱର୍ଗୀୟ ପିତୃଗଣଙ୍କର ପତନ, ଶ୍ରୁତିସିଦ୍ଧାନ୍ତ ମୂଳକଅଟେ । ୪୨ ।

ଶ୍ଳୋକଃ ।

ଦୋଷୈରେତୈଃ କୁଳଘ୍ନାନାଂ, ବର୍ଣ୍ଣସଙ୍କରକାରକୈଃ ।
ଉତ୍ସାଦ୍ୟନ୍ତେ ଜାତିଧର୍ମାଃ, କୁଳଧର୍ମାଶ୍ଚ ଶାଶ୍ୱତାଃ । ୪୩ ।

Digitized by PPRACHIN, SOA

अन्वयः । ଅନ୍ୱୟଃ ।

ବର୍ଣ୍ଣସଙ୍କରକାରକୈଃ ଏତୈଃ ଦୋଷୈଃ କୁଳଘ୍ନାନାଂ ଶାଶ୍ୱତାଃ ଜାତିଧର୍ମାଃ କୁଳଧର୍ମାଃ ଚ ଉତ୍ସାଦ୍ୟନ୍ତେ । ୪୩ ।

ଟୀକା ।

ଉକ୍ତଦୋଷମୁପସଂହରତି । ଦୋଷୈରିତ୍ୟାଦି ଦ୍ୱାଭ୍ୟାଂ । ଉତ୍ସାଦ୍ୟନ୍ତେ ଲୁପ୍ୟନ୍ତେ, ଜାତିଧର୍ମା ବର୍ଣ୍ଣଧର୍ମାଃ କୁଳଧର୍ମା-ଶ୍ଚେତି । ଚକାରାଦାଶ୍ରମଧର୍ମାଦୟୋଽପି ଗୃହ୍ୟନ୍ତେ । ୪୩ ।

ପଦବ୍ୟାଖ୍ୟା ।

ଦୋଷୈଃ ଏତୈଃ—ଏହି ଦୋଷମାନଙ୍କଦ୍ୱାରା, କୁଳଘ୍ନାନାଂ—କୁଳନାଶକ ବ୍ୟକ୍ତିମାନଙ୍କର, ବର୍ଣ୍ଣସଙ୍କରକାରକୈଃ—ବର୍ଣ୍ଣସଙ୍କର ଉତ୍ପତ୍ତିକାରକ, ଉତ୍ସାଦ୍ୟନ୍ତେ—ମୂଳୋତ୍ପାଟିତ ହୁଅନ୍ତି, ଜାତିଧର୍ମାଃ—ଜାତିଧର୍ମସବୁ, କୁଳଧର୍ମାଃ—ବଂଶାନୁକ୍ରମିକ ଧର୍ମସବୁ, ଚ—ଅପର ଅର୍ଥାତ୍ ଆଶ୍ରମଧର୍ମାଦି, ଶାଶ୍ୱତାଃ—ପୂର୍ବପୁରୁଷାଗତ । ୪୩ ।

ଅନୁବାଦ ।

କୁଳଘାତକମାନଙ୍କର ଏହି ବର୍ଣ୍ଣସଙ୍କର ଉତ୍ପତ୍ତିକାରକ ଦୋଷରେ ସନାତନ କୁଳଧର୍ମ ଓ ଜାତିଧର୍ମାଦି ଉତ୍ସନ୍ନ ହୁଏ ।

ଶ୍ଳୋକଃ ।

ଉତ୍ସନ୍ନକୁଳଧର୍ମାଣାଂ, ମନୁଷ୍ୟାଣାଂ ଜନାର୍ଦ୍ଦନ ।
ନରକେ ନିୟତଂ ବାସୋ, ଭବତୀତ୍ୟନୁଶୁଶ୍ରୁମ । ୪୪ ।

ଅନ୍ୱୟଃ ।

ହେ ଜନାର୍ଦ୍ଦନ ! ଉତ୍ସନ୍ନକୁଳଧର୍ମାଣାଂ ମନୁଷ୍ୟାଣାଂ ନରକେ ନିୟତଂ ବାସଃ ଭବତି ଇତି ଅନୁଶୁଶ୍ରୁମ । ୪୪ ।

ଟୀକା ।

ଉତ୍ସନ୍ନେତି । ଉତ୍ସନ୍ନାଃ କୁଳଧର୍ମା ଯେଷାଂ ଇତି ଉତ୍ସନ୍ନଜାତିଧର୍ମାଦୀନାମପ୍ୟୁପଲକ୍ଷଣଂ ଅନୁଶୁଶ୍ରୁମ ଶ୍ରୁତବନ୍ତୋ-ବୟଂ । ପ୍ରାୟଶ୍ଚିତ୍ତମକୁର୍ବାଣାଃ ପାପେଷୁ ରତା ନରାଃ । ଅପଶ୍ଚାତ୍ତାପିନଃ ପାପାନ୍ନିରୟାନ୍ ଯାନ୍ତି ଦାରୁଣାନ୍ ଇତ୍ୟାଦି ବଚନେଭ୍ୟଃ । ୪୪ ।

ପଦବ୍ୟାଖ୍ୟା ।

ଉତ୍ସନ୍ନକୁଳଧର୍ମାଣାଂ—କୁଳଧର୍ମ ନଷ୍ଟ ହୋଇଥିବା, ମନୁଷ୍ୟାଣାଂ—ମନୁଷ୍ୟମାନଙ୍କର, ଜନାର୍ଦ୍ଦନ—ହେ ଶ୍ରୀକୃଷ୍ଣ !, ନରକେ—ନରକରେ, ନିୟତଂ—ସର୍ବଦା, ବାସଃ—ସ୍ଥିତି, ଭବତି—ହୁଏ, ଇତି—ଏହା, ଅନୁଶୁଶ୍ରୁମ—ଶୁଣିଅଛୁଁ । ୪୪ ।

ଅନୁବାଦ ।

ହେ ଜନାର୍ଦ୍ଦନ ! "କୁଳଧର୍ମ ବିନାଶ ହୋଇଥିବା ମନୁଷ୍ୟମାନଙ୍କର ସର୍ବଦା ନରକରେ ବାସ ହୁଏ" ଏହା ଆମ୍ଭେମାନେ ଶୁଣିଅଛୁଁ । ୪୪ ।

ଶ୍ଳୋକଃ ।

ଅହୋ ବତ ମହତ୍ପାପଂ, କର୍ତ୍ତୁଂ ବ୍ୟବସିତା ବୟଂ ।
ଯଦ୍ରାଜ୍ୟସୁଖଲୋଭେନ ହନ୍ତୁଂ, ସ୍ୱଜନମୁଦ୍ୟତାଃ । ୪୫ ।

Digitized by PPRACHIN, SOA

## ଅନ୍ୱୟଃ ।

ଅହୋ ବତ ବୟଂ ମହତ୍‌ପାପଂ କର୍ତ୍ତୁଂ ବ୍ୟବସିତାଃ ଯତ୍ ରାଜ୍ୟସୁଖଲୋଭେନ ସ୍ୱଜନଂ ହନ୍ତୁଂ ଉଦ୍ୟତାଃ । ୪୫ ।

## ଟୀକା ।

ବନ୍ଧୁବଧାଧ୍ୟବସାୟେନ ସନ୍ତପ୍ୟମାନ ଆହ । ଅହୋ ବତେତ୍ୟାଦି । ସ୍ୱଜନଂ ହନ୍ତୁଂ ଉଦ୍ୟତା ଇତି ଯଦେତନ୍ମହତ୍‌ପାପଂ କର୍ତ୍ତୁମଧ୍ୟବସାୟାତ୍ କୃତବନ୍ତୋ ବୟଂ ଅହୋ ବତ ବୃହତ୍‌କଷ୍ଟମିତ୍ୟର୍ଥଃ । ୪୫ ।

## ପଦବ୍ୟାଖ୍ୟା ।

ଅହୋ—ଓହୋ, ବତ—ଦୁଃଖ, ମହତ୍‌ପାପଂ—ମହାପାପକୁ, କର୍ତ୍ତୁଂ—କରିବାକୁ, ବ୍ୟବସିତାଃ—ଉଦ୍ୟୋଗ କରୁଅଛୁଁ, ବୟଂ—ଆମ୍ଭେମାନେ, ଯତ୍—ଯାହା ବା ଯେହେତୁ, ରାଜ୍ୟସୁଖଲୋଭେନ—ରାଜ୍ୟସୁଖ ଲୋଭରେ, ହନ୍ତୁଂ—ନାଶ କରିବାକୁ, ସ୍ୱଜନଂ—ଆତ୍ମୀୟମାନଙ୍କୁ, ଉଦ୍ୟତାଃ—ଉଦ୍ୟୋଗୀ । ୪୫ ।

## ଅନୁବାଦ ।

ଓହୋ ! କି ଦୁଃଖ ! ଆମ୍ଭେମାନେ ମହାପାପ କରିବାକୁ ବସିଅଛୁଁ, ଯେହେତୁ ରାଜ୍ୟସୁଖ ଲୋଭରେ ଆତ୍ମୀୟମାନଙ୍କୁ ମାରିବାକୁ ଉଦ୍ୟତ ହୋଇଅଛୁଁ । ୪୫ ।

## ଶ୍ଲୋକଃ ।

ଯଦି ମାମପ୍ରତୀକାରମଶସ୍ତ୍ରଂ ଶସ୍ତ୍ରପାଣୟଃ ।
ଧାର୍ତ୍ତରାଷ୍ଟ୍ରା ରଣେ ହନ୍ୟୁସ୍ତନ୍ମେ କ୍ଷେମତରଂ ଭବେତ୍ । ୪୬ ।

## ଅନ୍ୱୟଃ ।

ଶସ୍ତ୍ରପାଣୟଃ ଧାର୍ତ୍ତରାଷ୍ଟ୍ରାଃ ଅଶସ୍ତ୍ରଂ ଅପ୍ରତୀକାରଂ ମାଂ ଯଦି ରଣେ ହନ୍ୟୁଃ ତତ୍ ମେ କ୍ଷେମତରଂ ଭବେତ୍ । ୪୬ ।

## ଟୀକା ।

ଏବଂ ସନ୍ତପ୍ତଃ ସନ୍ ମୃତ୍ୟୁମେବାଶଂସମାନ ଆହ । ଯଦି ମାମିତ୍ୟାଦି । ଅକୃତପ୍ରତୀକାରଂ ତୁଷ୍ଣୀମୁପବିଷ୍ଟଂ ମାଂ ଯଦି ହନିଷ୍ୟନ୍ତି ତର୍ହି ତଦ୍ଧନନଂ ମମ କ୍ଷେମତରଂ ଅତ୍ୟନ୍ତହିତଂ ଭବେତ୍ ପାପାନିଷ୍ପତ୍ତେଃ । ୪୬ ।

## ପଦବ୍ୟାଖ୍ୟା ।

ଯଦି—ଯେବେ, ମାଂ—ମତେ, ଅପ୍ରତୀକାରଂ—ପ୍ରତୀକାରରହିତ, ଅଶସ୍ତ୍ରଂ—ଶସ୍ତ୍ରହୀନ, ଶସ୍ତ୍ରପାଣୟଃ—ଶସ୍ତ୍ରଧାରୀ, ଧାର୍ତ୍ତରାଷ୍ଟ୍ରାଃ—ଧୃତରାଷ୍ଟ୍ରପକ୍ଷୀୟମାନେ, ରଣେ—ଯୁଦ୍ଧରେ, ହନ୍ୟୁଃ—ବଧ କରିବେ, ତତ୍—ତାହା, ମେ—ମୋହର, କ୍ଷେମତରଂ—ଅତିଶୟ ହିତ, ଭବେତ୍—ହେବ । ୪୬ ।

## ଅନୁବାଦ ।

ଶସ୍ତ୍ରଧାରୀ ଧୃତରାଷ୍ଟ୍ରପକ୍ଷୀୟମାନେ ମତେ ଶସ୍ତ୍ର ଓ ଉଦ୍ୟମଶୂନ୍ୟ ଦେଖି, ଯେବେ ଯୁଦ୍ଧରେ ବିନାଶ କରନ୍ତି (ତେବେ) ତାହା ମୋହର ଅତ୍ୟନ୍ତ ମଙ୍ଗଳଜନକ ହେବ । ୪୬ ।

## ଶ୍ଲୋକଃ ।

ସଞ୍ଜୟ ଉବାଚ ।—ଏବମୁକ୍ତ୍ୱାର୍ଜ୍ଜୁନଃ ସଂଖ୍ୟେ, ରଥୋପସ୍ଥ ଉପାବିଶତ୍ ।
ବିସୃଜ୍ୟ ସଶରଂ ଚାପଂ, ଶୋକସଂବିଗ୍ନମାନସଃ । ୪୭ ।

Digitized by PPRACHIN, SOA

ଇତି ଶ୍ରୀମହାଭାରତେ ଶ ତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସମ୍ବାଦେ ସୈନ୍ୟଦର୍ଶନୋନାମ ପ୍ରଥମୋଽଧ୍ୟାୟଃ ।

ଅନ୍ୱୟଃ ।

ସଞ୍ଜୟଃ ଉବାଚ । ଶୋକସଂବିଗ୍ନମାନସଃ ଅର୍ଜ୍ଜୁନଃ ସଂଖ୍ୟେ ଏବ ଉକ୍ତ୍ୱା, ସଶରଂ ଚାପଂ ବିସୃଜ୍ୟ, ରଥୋପସ୍ଥେ ଉପାବିଶତ୍ । ୪୭ ।

ଇତି ଶ୍ରୀମଦ୍ଭଗବଦ୍ଗୀତାୟାଂ ଅନ୍ୱୟେ ପ୍ରଥମୋଽଧ୍ୟାୟଃ ।

ଟୀକା ।

ତତଃ କିଂ ବୃତ୍ତମିତ୍ୟପେକ୍ଷାୟାଂ ସଞ୍ଜୟ ଉବାଚ । ଏବମୁକ୍ତ୍ୱେତ୍ୟାଦି । ସଂଖ୍ୟେ ସଂଗ୍ରାମେ , ରଥୋପସ୍ଥେ ରଥସ୍ୟୋପରି , ଉପାବିଶତ୍ ଉପବିବେଶ , ଶୋକେନ ସଂବିଗ୍ନଂ ପ୍ରକମ୍ପିତଂ ମାନସଂ ଚିତ୍ତଂ ଯସ୍ୟ ସ ତଥା । ୪୭ ।

ଇତି ଶ୍ରୀ ଭଗବଦ୍ଗୀତା ସ୍ୱାମିକୃତଟୀକାୟାଂ ସୈନ୍ୟଦର୍ଶନୋନାମ ପ୍ରଥମୋଽଧ୍ୟାୟଃ ।

ପଦବ୍ୟାଖ୍ୟା ।

ଏବମୁକ୍ତ୍ୱା—ଏପରି କହି, ଅର୍ଜ୍ଜୁନଃ—ଅର୍ଜ୍ଜୁନ, ସଂଖ୍ୟେ—ଯୁଦ୍ଧଭୂମିରେ, ରଥୋପସ୍ଥେ—ରଥଉପରେ, ଉପାବିଶତ୍—ବସିଲେ, ବିସୃଜ୍ୟ—ତ୍ୟାଗ କରି, ସଶରଂ—ଶରସହିତ, ଚାପଂ—ଧନୁ, ଶୋକସଂବିଗ୍ନମାନସଃ—ଶୋକଦ୍ୱାରା ଆକୁଳଚିତ୍ତ ହୋଇ । ୪୭ ।

ଇତି ଶ୍ରୀମଦ୍ଭଗବଦ୍ଗୀତା-ପଦବ୍ୟାଖ୍ୟାୟାଂ ପ୍ରଥମୋଽଧ୍ୟାୟଃ ସମାପ୍ତଃ ।

ଅନୁବାଦ ।

ସଞ୍ଜୟ କହିଲେ—ଶୋକାକୁଳଚିତ୍ତ ଅର୍ଜୁନ ଏହିପରି କହି ଯୁଦ୍ଧକ୍ଷେତ୍ରରେ ଧନୁଃଶର ତ୍ୟାଗ କରି ରଥ ଉପରେ ଉପବିଷ୍ଟ ହେଲେ । ୪୭ ।

ଇତି ଶ୍ରୀଭଗବଦ୍ଗୀତାର ଉତ୍କଳ ଅନୁବାଦରେ ପ୍ରଥମ ଅଧ୍ୟାୟ ସମାପ୍ତ ।

Digitized by PPRACHIN, SOA

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ଦ୍ୱିତୀୟୋଽଧ୍ୟାୟଃ ।

ଶ୍ଳୋକଃ ।

ସଞ୍ଜୟ ଉବାଚ ।—ତଂ ତଥା କୃପୟାବିଷ୍ଟ,ମଶ୍ରୁପୂର୍ଣ୍ଣାକୁଳେକ୍ଷଣଂ ।
ବିଷୀଦନ୍ତମିଦଂ ବାକ୍ୟ,ମୁବାଚ ମଧୁସୂଦନଃ । ୧ ।

ଅନ୍ୱୟଃ ।

ସଞ୍ଜୟଃ ଉବାଚ । ତଥା କୃପୟା ଆବିଷ୍ଟଂ ଅଶ୍ରୁପୂର୍ଣ୍ଣାକୁଳେକ୍ଷଣଂ ବିଷୀଦନ୍ତଂ ତଂ, ମଧୁସୂଦନଃ ଇଦଂ ବାକ୍ୟଂ ଉବାଚ । ୧ ।

ଟୀକା ।

ଦ୍ୱିତୀୟେ ଶୋକସଂତପ୍ତମର୍ଜୁନଂ ବ୍ରହ୍ମବିଦ୍ୟୟା । ପ୍ରତିବୋଧ୍ୟ ହରିଶ୍ଚକ୍ରେ ସ୍ଥିତପ୍ରଜ୍ଞସ୍ୟ ଲକ୍ଷଣଂ । ତତଃ କିଂ ବୃତ୍ତମିତ୍ୟପେକ୍ଷାୟାଂ ସଞ୍ଜୟ ଉବାଚ । ତମିତ୍ୟାଦି । ଅଶ୍ରୁଭିଃ ପୂର୍ଣ୍ଣେ ଆକୁଳେ ଈକ୍ଷଣେ ଯସ୍ୟ ତଂ ତଥା ଉକ୍ତ-ପ୍ରକାରେଣ ବିଷୀଦନ୍ତମର୍ଜୁନଂ ପ୍ରତି ମଧୁସୂଦନ ଇଦଂ ବାକ୍ୟଂ ଉବାଚ । ୧ ।

ପଦବ୍ୟାଖ୍ୟା ।

ତଂ—ସେହି ଅର୍ଜୁନଙ୍କୁ, ତଥା—ସେହିପରି, କୃପୟାବିଷ୍ଟଂ—ଦୟାରେ ପୂର୍ଣ୍ଣ, ଅଶ୍ରୁପୂର୍ଣ୍ଣାକୁଳେକ୍ଷଣଂ—ଲୋତକରେ ପୂର୍ଣ୍ଣ ହେବାରୁ ଆକୁଳଚକ୍ଷୁ, ବିଷୀଦନ୍ତଂ—ବିଷାଦଯୁକ୍ତ, ଇଦଂ ବାକ୍ୟଂ—ଏହି କଥାକୁ, ଉବାଚ—କହିଲେ, ମଧୁସୂଦନଃ—ଶ୍ରୀକୃଷ୍ଣ । ୧ ।

ଅନୁବାଦ ।

ସଞ୍ଜୟ କହିଲେ,—ସେ ପ୍ରକାର ଦୟାଯୁକ୍ତ ଓ ଲୋତକପୂର୍ଣ୍ଣ (ହେବାରୁ) ଆକୁଳଚକ୍ଷୁ ଏବଂ ବିଷାଦଯୁକ୍ତ ଅର୍ଜୁନଙ୍କୁ ଶ୍ରୀମଧୁସୂଦନ ଏହି କଥା କହିଲେ । ୧ ।

ବିଶଦବ୍ୟାଖ୍ୟା ।

ପ୍ରଥମ ଅଧ୍ୟାୟରେ ସଞ୍ଜୟଙ୍କ ଉକ୍ତିରୁ ଧୃତରାଷ୍ଟ୍ର ମନେ ୨ ସ୍ଥିର କଲେ ଯେ, ଦୁର୍ଯ୍ୟୋଧନାଦିଙ୍କର ରାଜ୍ୟଲାଭ ତେବେ ନିଶ୍ଚୟ ହେଲା । କାହିଁକି ନା ଅର୍ଜୁନଭିନ୍ନ, ଭୀଷ୍ମଦ୍ରୋଣାଦିଙ୍କୁ ସମ୍ମୁଖରଣରେ ଜୟ କରିପାରିବା ଭଳି ବୀର ପାଣ୍ଡବସେନା ମଧ୍ୟରେ ଆଉ କେହି ନାହାନ୍ତି । ଅର୍ଜୁନତ ଯୁଦ୍ଧବିମୁଖ, ତେବେ ଆଉ ଭାବନା କଣ ? ଧୃତରାଷ୍ଟ୍ରଙ୍କର ଏହି ଭାବ-

Digitized by PPRACHIN, SOA

ପ୍ରାୟ ବୁଦ୍ଧି ପାଇ ସଞ୍ଜୟ ତନ୍ନିବାରଣାର୍ଥେ, ଭଗବାନ୍ ଶ୍ରୀକୃଷ୍ଣ, ଅର୍ଜ୍ଜୁନଙ୍କୁ ଯାହା୨ କହିଲେ ତାହାର ଅବତାରଣା କରୁଅଛନ୍ତି । ଶ୍ଳୋକରେ 'ମଧୁସୂଦନ' ପଦ ଦେବାର ତାତ୍ପର୍ଯ୍ୟ ଏହି ଯେ ଦୁଷ୍ଟ ମଧୁନାମା ଅସୁରକୁ ଯେ ବିନାଶ କରିଥିଲେ ସେ ଦୁଷ୍ଟ ଦୁର୍ଯ୍ୟୋଧନାଦିଙ୍କୁ ବୃଥାରେ ଛାଡ଼ ଦେବାକୁ ଅର୍ଜ୍ଜୁନଙ୍କୁ ଉପଦେଶ ଦେଲେ ନାହିଁ । ୧ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ—କୁତସ୍ତ୍ୱା କଶ୍ମଳମିଦଂ, ବିଷମେ ସମୁପସ୍ଥିତଂ ।
ଅନାର୍ଯ୍ୟଜୁଷ୍ଟମସ୍ୱର୍ଗ୍ୟ,ମକୀର୍ତ୍ତିକରମର୍ଜ୍ଜୁନ । ୨ ।

ଅନ୍ୱୟଃ ।

ଶ୍ରୀ ଭଗବାନ୍ ଉବାଚ । ହେ ଅର୍ଜ୍ଜୁନ ! ଅନାର୍ଯ୍ୟଜୁଷ୍ଟଂ ଅସ୍ୱର୍ଗ୍ୟଂ ଅକୀର୍ତ୍ତିକରଂ ଇଦଂ କଶ୍ମଳଂ କୁତଃ ବିଷମେ ତ୍ୱା ସମୁପସ୍ଥିତଂ । ୨ ।

ଟୀକା ।

ତଦେବ ବାକ୍ୟମାହ । କୁତଇତି । କୁତୋହେତୋଃ ତ୍ୱା ତ୍ୱାଂ ବିଷମେ ଶଙ୍କଟେ ଇଦଂ କଶ୍ମଳମୁପସ୍ଥିତମସ୍ୱଂ ମୋହଃ ପ୍ରାପ୍ତଃ । ଯତ୍ ଅନାର୍ଯ୍ୟୈ ରସେବିତମସ୍ୱର୍ଗ୍ୟମଧର୍ମ୍ୟମଯଶସ୍କରଂ ଚ । ୨ ।

ପଦବ୍ୟାଖ୍ୟା ।

କୁତଃ—କେଉଁ ହେତୁରୁ, ତ୍ୱା—ତୁମ୍ଭଙ୍କୁ, କଶ୍ମଳଂ—ମୋହ, ଇଦଂ—ଏହି, ବିଷମେ—ବିପତ୍ତିକାଳରେ, ସମୁପସ୍ଥିତଂ—ପ୍ରାପ୍ତ ହେଲା, ଅନାର୍ଯ୍ୟଜୁଷ୍ଟଂ—ପୂଜ୍ୟବ୍ୟକ୍ତିମାନଙ୍କଦ୍ୱାରା ଅନାଦରଣୀୟ, ଅସ୍ୱର୍ଗ୍ୟଂ—ସ୍ୱର୍ଗପ୍ରତିବନ୍ଧକ, ଅକୀର୍ତ୍ତିକରଂ—ନିନ୍ଦାଜନକ, ଅର୍ଜ୍ଜୁନ—ହେ ଅର୍ଜ୍ଜୁନ । । ୨ ।

ଅନୁବାଦ ।

ଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ସଜ୍ଜନମାନଙ୍କର ଅନାଦରଣୀୟ, ସ୍ୱର୍ଗଗତିରୋଧକ ଓ ନିନ୍ଦାକର ଏହି ମୋହ, ବିପଦସମୟରେ କାହିଁକି ତୁମ୍ଭର ଉପସ୍ଥିତ ହେଲା ? । ୨ ।

ବିଶଦବ୍ୟାଖ୍ୟା ।

ଯାହାର ଯାହା କର୍ତ୍ତବ୍ୟ ଓ ପ୍ରକୃତିସିଦ୍ଧ, ସେ ତାହାର ବିପରୀତ ଆଚରଣ କଲେ ଜାଣିବାକୁ ହେବ ଯେ, ତାହାର 'ମୋହ' ଉପସ୍ଥିତ । ଅର୍ଜ୍ଜୁନଙ୍କର କ୍ଷତ୍ରିୟପ୍ରକୃତିର ବିରୁଦ୍ଧ ସାତ୍ତ୍ୱିକ ବ୍ରାହ୍ମଣପ୍ରକୃତି ଦେଖି ଶ୍ରୀ ଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ତୁମ୍ଭର ଏ ସ୍ୱଧର୍ମବିରୁଦ୍ଧ ବୁଦ୍ଧି ଉଦୟ ହେଲା କାହିଁକି ?, ନିଜ ବର୍ଣ୍ଣାଶ୍ରମିକ ଧର୍ମ ଯେତେ ନିକୃଷ୍ଟ ହେଉ ପଛକେ, ତାକୁ ଛାଡ଼ି ଅନ୍ୟ ବର୍ଣ୍ଣାଶ୍ରମିକ ଧର୍ମ ଆଚରଣ କଲେ ସ୍ୱର୍ଗ କି କୀର୍ତ୍ତି କି ମୁକ୍ତି କିଛି ମିଳେ ନାହିଁ । ତୁମ୍ଭେ କ୍ଷତ୍ରିୟର ବିଶେଷଧର୍ମ ଏହି ଯୁଦ୍ଧରୁ ନିବୃତ୍ତ ହେଲେ ତୁମ୍ଭର ସ୍ୱର୍ଗଲାଭ ହେବ ନାହିଁ କି ପ୍ରଶଂସା ମଧ୍ୟ ହେବ ନାହିଁ । ଆଉ ମୋକ୍ଷାଭିଳାଷିମାନେ ପ୍ରଥମେ ନିଜ୨ ବର୍ଣ୍ଣାଶ୍ରମ ଧର୍ମ ଯଥାବିଧି ପାଳନ କରି ପରଶେଷରେ ବିଶୁଦ୍ଧ ଅନ୍ତଃକରଣ ହୋଇ ସନ୍ନ୍ୟାସ ଗ୍ରହଣ

କରନ୍ତୁ ; କିନ୍ତୁ ତୁମ୍ଭେ ବର୍ଣ୍ଣାଶ୍ରମ ଧର୍ମ ପାଳନ ନ କରି ସନ୍ନ୍ୟାସ ଗ୍ରହଣ କଲେ ଯେବେ ତୁମ୍ଭର ମୋକ୍ଷାଭିଳାଷ ମଧ୍ୟ ସିଦ୍ଧ ହୋଇ ପାରିବ ନାହିଁ, ତେବେ ତୁମ୍ଭର ଏ ମୋହ କାହିଁକି ହେଲା ?

ଏ ଶ୍ଳୋକର ଆରମ୍ଭରେ 'ଶ୍ରୀ ଭଗବାନ୍ କହିଲେ' ଏପରି ବାକ୍ୟଦ୍ୱାରା ସଞ୍ଜୟ ଧୃତରାଷ୍ଟ୍ରଙ୍କୁ ଏହି କଥା ସଙ୍କେତରେ ଜଣାଇଲେ ଯେ, ମନ୍ତ୍ରଣାଦୋଷରେ, ବା ସାମର୍ଥ୍ୟ ଅଭାବରେ , କିମ୍ବା ଅଜ୍ଞତା ଦୋଷରୁ ପାଣ୍ଡବମାନେ ଯୁଦ୍ଧରେ ପଶ୍ଚାତ୍ପଦ ହେବେ ନାହିଁ । କାହିଁକିନା ଶ୍ରୀ ଭଗବାନ୍ ନିଜେ ଉପଦେଶଦାତା । "ଉତ୍ପତ୍ତିଂ ଚ ବିନାଶଂ ଚ ଭୂତାନାମାଗତିଂ ଗତିଂ । ବେତ୍ତି ବିଦ୍ୟାମବିଦ୍ୟାଂ ଚ ସବାଚ୍ୟୋ ଭଗବାନିତି" । ଯେ, ସମସ୍ତ ଭୂତର ଉତ୍ପତ୍ତି ଓ ବିନାଶ, ଆଗତି ଓ ଗତି , ବିଦ୍ୟା ଓ ଅବିଦ୍ୟା ଜାଣନ୍ତି ସେହି ସର୍ବଜ୍ଞ ପୁରୁଷଙ୍କୁ "ଭଗବାନ୍" କୁହାଯାଏ । ୨ ।

ଶ୍ଳୋକଃ ।

ମା କ୍ଲୈବ୍ୟଂ ଗଚ୍ଛ କୌନ୍ତେୟ, ନୈତତ୍ତ୍ୱୟ୍ୟୁପପଦ୍ୟତେ ।
କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ, ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ । ୩ ।

ଅନ୍ୱୟଃ ।

ହେ କୌନ୍ତେୟ ! କ୍ଲୈବ୍ୟଂ ମା ଗଚ୍ଛ । ଏତତ୍ ତ୍ୱୟି ନ ଉପପଦ୍ୟତେ । ହେ ପରନ୍ତପ ! କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ ତ୍ୟକ୍ତ୍ୱା ଉତ୍ତିଷ୍ଠ । ୩ ।

ଟୀକା ।

ମା କ୍ଲୈବ୍ୟମିତି । ତସ୍ମାତ୍ ହେ ପାର୍ଥ ! କ୍ଲୈବ୍ୟଂ କାତର୍ଯ୍ୟଂ ମା ଗଚ୍ଛ ନ ପ୍ରାପ୍ନୁହି, ଯତଃ ତ୍ୱୟ୍ୟେତନ୍ନୋପପଦ୍ୟତେ ଯୋଗ୍ୟଂ ନ ଭବତି 'କ୍ଷୁଦ୍ରଂ ତୁଚ୍ଛଂ ହୃଦୟଦୌର୍ବଲ୍ୟଂ କାତର୍ଯ୍ୟଂ ତ୍ୟକ୍ତ୍ୱା ଯୁଦ୍ଧାୟ ଉତ୍ତିଷ୍ଠ । ହେ ପରନ୍ତପ ହେ ଶତ୍ରୁତାପନ ! । ୩ ।

ପଦବ୍ୟାଖ୍ୟା ।

ମା କ୍ଲୈବ୍ୟଂ ଗଚ୍ଛ—ବୀର୍ଯ୍ୟଶୂନ୍ୟତା ଅର୍ଥାତ୍ କାତରତା ପ୍ରାପ୍ତ ହୁଅନା, କୌନ୍ତେୟ—ହେ କୁନ୍ତୀପୁତ୍ର !, ନ—ନାହିଁ, ଏତତ୍—ଏହା, ତ୍ୱୟି—ତୁମ୍ଭଠାରେ, ଉପପଦ୍ୟତେ—ଉପଯୁକ୍ତ ହୁଏ, କ୍ଷୁଦ୍ରଂ—ତୁଚ୍ଛ, ହୃଦୟଦୌର୍ବଲ୍ୟଂ—କାତରତାକୁ, ତ୍ୟକ୍ତ୍ୱା—ତ୍ୟାଗ କରି, ଉତ୍ତିଷ୍ଠ—ଉଠ, ପରନ୍ତପ—ହେ ଶତ୍ରୁତାପନ ! । ୩ ।

ଅନୁବାଦ ।

ହେ କୌନ୍ତେୟ ! କାତରତା ପ୍ରାପ୍ତ ହୁଅ ନାହିଁ, ଏହା ତୁମ୍ଭର ଉପଯୁକ୍ତ ନୁହେ । ହେ ଶତ୍ରୁତାପନ ! ତୁଚ୍ଛ ହୃଦୟଦୁର୍ବଳତା ତ୍ୟାଗ କରି ( ଯୁଦ୍ଧ ନିମିତ୍ତ ) ଉଠ । ୩ ।

ବିଶଦବ୍ୟାଖ୍ୟା ।

ଅର୍ଜୁନଙ୍କୁ ଧର୍ମଭାବରେ ଉତ୍ତେଜିତ କରିବା ଅଭିଳାଷରେ "କୌନ୍ତେୟ !" ପଦଦ୍ୱାରା ସମ୍ବୋଧନ କରି ହୋଇଅଛି ଅର୍ଥାତ୍ ଶ୍ରୀ ଭଗବାନ୍ ସଙ୍କେତଦ୍ୱାରା ଜଣାଇଲେ ଯେ କୁନ୍ତୀ ତପସ୍ୟାପ୍ରଭାବରେ ଦେବତାଙ୍କୁ ବଶ କରି ତୁମ୍ଭଙ୍କୁ ଜାତ କରିଅଛନ୍ତି, ସୁତରାଂ ଦେ-

Digitized by PPRACHIN, SOA

ବାଂଶରୁ ଜାତ ହୋଇ ତୁମ୍ଭର କାତରତା ପ୍ରାପ୍ତହେବା ଉଚିତ ନୁହେ, କର୍ମାଯ୍ୟଲୋକ ପର କରୁଦ୍ୟମ ରହିବା ତୁମ୍ଭ ପକ୍ଷରେ ଅସୁନ୍ଦର । ପୁଣି 'ତ୍ୱୟି' ଅର୍ଥାତ୍ ତୁମ୍ଭଠାରେ ଏହା ଉପଯୁକ୍ତ ନୁହେ, ଏହା କହିବାଦ୍ୱାରା ଏହି ଭାବ ପ୍ରକାଶ କରୁଅଛନ୍ତି ଯେ ନକୁଳ, ସହଦେବ ବା ଯୁଧିଷ୍ଠିର ପ୍ରଭୃତି ଏପରି କାତରତା ଦେଖାଇଥିଲେ କେହି ବର୍ଣ୍ଣିତ ହୁଅନ୍ତେ ନାହିଁ, ମାତ୍ର ତୁମ୍ଭେ ଯୁଦ୍ଧରେ ଦେବାଧିଦେବ ମହାଦେବଙ୍କୁ ଜୟ କରି ପାଶୁପତାଦି ଅସ୍ତ୍ର ଲାଭ କରିଅଛ ଓ ଖାଣ୍ଡବବନ ଦହନରେ ସ୍ୱୟଂ ଇନ୍ଦ୍ରଙ୍କୁ ଜୟ କରିଅଛ, ଏପରି ବୀର ଯେ ତୁମ୍ଭେ ତୁମ୍ଭଠାରେ ଏ କାତରତା ନିତାନ୍ତ ଲଜ୍ଜାକର ସନ୍ଦେହ ନାହିଁ, ଅତଏବ ତାହା ତ୍ୟାଗ କର ।

ଯଦି ଅର୍ଜ୍ଜୁନ କହିବେ ଯେ, "ମୋହର ମନ ଅସ୍ଥିର ହେବାରୁ ମୁଁ ଉଠି ପାରୁ ନାହିଁ", ତାହା ନିବାରଣପାଇଁ ଅର୍ଜ୍ଜୁନଙ୍କୁ ପୁନର୍ବାର 'ପରନ୍ତପ' ଅର୍ଥାତ୍ 'ଶତ୍ରୁତାପନ' ନାମରେ ସମ୍ବୋଧନ କରୁଅଛନ୍ତି ଅର୍ଥାତ୍ କ୍ଷୁଦ୍ରମନା ଲୋକପରି ତୁମ୍ଭର ବସି ରହିବା ଭଲ ଦିଶୁ ନାହିଁ—ତୁମ୍ଭେ ଶତ୍ରୁ ବିନାଶକାରୀ, ଅତଏବ ଯୁଦ୍ଧ କରିବାକୁ ଉଠ, ଆଉ ବିଲମ୍ବ କର ନାହିଁ । ୩ ।

ଶ୍ଳୋକଃ ।

ଅର୍ଜ୍ଜୁନ ଉବାଚ ।—କଥଂ ଭୀଷ୍ମମହଂ ସଙ୍ଖ୍ୟେ, ଦ୍ରୋଣଂ ଚ ମଧୁସୂଦନ ।
ଇଷୁଭିଃ ପ୍ରତିଯୋତ୍ସ୍ୟାମି, ପୂଜାର୍ହାବରିସୂଦନ । ୪ ।

ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ । ହେ ମଧୁସୂଦନ ! ଅହଂ ସଙ୍ଖ୍ୟେ ଭୀଷ୍ମଂ ଦ୍ରୋଣଂ ଚ ଇଷୁଭିଃ କଥଂ ପ୍ରତିଯୋତ୍ସ୍ୟାମି । ହେ ଅରିସୂଦନ ! ( ଇମୌ ) ପୂଜାର୍ହୌ । ୪ ।

ଟୀକା ।

ନାହଂ କାତରତ୍ୱେନ ଯୁଦ୍ଧାଦୁପରତୋଽସ୍ମି, କିନ୍ତୁ ଯୁଦ୍ଧସ୍ୟାନ୍ୟାଯ୍ୟତ୍ୱାଦଧର୍ମତ୍ୱାଚ୍ଚେତ୍ୟାହ । ଅର୍ଜ୍ଜୁନଉବାଚ । କଥମିତ୍ୟାଦି । ଭୀଷ୍ମଦ୍ରୋଣୌ ପୂଜାର୍ହୌ, ପୂଜାକୁସୁମର୍ହୌ ଯୋଗ୍ୟୌ, ତୌ ପ୍ରତି କଥମହଂ ଯୋତ୍ସ୍ୟାମି ତତ୍ରାପୀଷୁଭିଃ । ଯତ୍ରବାଗପି ଯୋତ୍ସ୍ୟାମୀତି ବକ୍ତୁମନୁଚିତଂ ତତ୍ର ବାଣୈଃ କଥଂ ଯୋତ୍ସ୍ୟାମୀତ୍ୟର୍ଥଃ । ହେ ଅରିସୂଦନ ଶତ୍ରୁମର୍ଦ୍ଦନ ! । ୪ ।

ପଦବ୍ୟାଖ୍ୟା ।

କଥଂ—କିପରି, ଭୀଷ୍ମଂ—ଭୀଷ୍ମଙ୍କୁ, ଅହଂ—ମୁଁ, ସଙ୍ଖ୍ୟେ—ଯୁଦ୍ଧରେ, ଦ୍ରୋଣଂ ଚ—ଦ୍ରୋଣଙ୍କୁ ମଧ୍ୟ, ମଧୁସୂଦନ—ହେ ମଧୁଦୈତ୍ୟବିନାଶକ !, ଇଷୁଭିଃ—ବାଣଦ୍ୱାରା, ପ୍ରତିଯୋତ୍ସ୍ୟାମି—ସମ୍ମୁଖରେ ଯୁଦ୍ଧ କରିବି, ପୂଜାର୍ହୌ—ପୂଜାଯୋଗ୍ୟ, ଅରିସୂଦନ—ହେ ଶତ୍ରୁମର୍ଦ୍ଦନ ! । ୪ ।

ଅନୁବାଦ ।

ଅର୍ଜ୍ଜୁନ କହିଲେ, ହେ ମଧୁସୂଦନ ! ଯୁଦ୍ଧକ୍ଷେତ୍ରରେ ଭୀଷ୍ମ ଓ ଦ୍ରୋଣଙ୍କ ସହିତ ମୁଁ କିପରି ବାଣଦ୍ୱାରା ପ୍ରତିଯୁଦ୍ଧ କରିବି ? ହେ ଶତ୍ରୁମର୍ଦ୍ଦନ ! ଏ ଦୁହେଁ ଯେ ପୂଜାଯୋଗ୍ୟ । । ୪ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ କହିଲେ, ହେ ମଧୁସୂଦନ ! ଭୀଷ୍ମ, କୁଳବୃଦ୍ଧ ପିତାମହ ଓ ଦ୍ରୋଣ, ଧନୁ-

Digitized by PPRACHIN, SOA

ବିଦ୍ୟାର ଗୁରୁ, ଏମାନଙ୍କୁ ଭକ୍ତିରେ ପୁଷ୍ପ ଚନ୍ଦନାଦ ଦେଇ ପୂଜା କରିବା ମୋହର ଉଚିତ । ଯେଉଁମାନଙ୍କ ସହିତ ବାଗ୍‌ଯୁଦ୍ଧରେ ଅର୍ଥାତ୍ ତର୍କବିତର୍କରେ ପ୍ରବୃତ୍ତ ହେବା ନୀତି ଓ ଧର୍ମ-ବିରୁଦ୍ଧ, ସେମାନଙ୍କ ସହିତ ତୀକ୍ଷ୍ଣ ବାଣଦ୍ୱାରା ମୁଁ କିପରି ଯୁଦ୍ଧ କରିବି ?

'ମଧୁସୂଦନ' ଓ 'ଅରିସୂଦନ' ଦୁଇଟି ସମ୍ବୋଧନ ଏକ ଶ୍ଳୋକରେ ଥିବାରୁ ଅର୍ଜ୍ଜୁନଙ୍କର ବ୍ୟାକୁଳତା ପ୍ରକାଶ ପାଉଅଛି ଅଥବା 'ମଧୁସୂଦନ' ପଦଦ୍ୱାରା ଦୁଷ୍ଟଦଳନ ଓ 'ଅରିସୂଦନ' ପଦଦ୍ୱାରା ଦୁଷ୍ଟ ନ ହୋଇ ପଛକେ ଶତ୍ରୁ ହେଲେହେଁ ତାକୁ ଦଳନ କରିବାର ପ୍ରକାଶ ପାଉ-ଅଛି, ଅର୍ଥାତ୍ ଆପଣ କେବଳ ଦୁଷ୍ଟଲୋକଙ୍କୁ ଓ ଶିଷ୍ଟଶତ୍ରୁକୁ ମଧ୍ୟ ବିନାଶ କରନ୍ତା ଅଟନ୍ତି, ମାତ୍ର ଭୀଷ୍ମ ଓ ଦ୍ରୋଣ ଏମାନେ ମୋହର ପୂଜନୀୟ ଥିବାରୁ କୌଣସି ପ୍ରକାରେ ବଧଯୋଗ୍ୟ ନୁହନ୍ତି, ଅତଏବ ମତେ କାହିଁକି ସେଥିରେ ପ୍ରବୃତ୍ତ କରଉଅଛନ୍ତି ? । ୪ ।

ଶ୍ଳୋକଃ ।

ଗୁରୂନହତ୍ୱା ହି ମହାନୁଭାବାନ୍, ଶ୍ରେୟୋଭୋକ୍ତୁଂ ଭୈକ୍ଷ୍ୟମପୀହଲୋକେ ।
ହତ୍ୱାର୍ଥକାମାଂସ୍ତୁ ଗୁରୂନିହୈବ, ଭୁଞ୍ଜୀୟ ଭୋଗାନ୍ ରୁଧିରପ୍ରଦିଗ୍ଧାନ୍ । ୫ ।

ଅନ୍ୱୟଃ ।

ଇହଲୋକେ ମହାନୁଭାବାନ୍ ଗୁରୂନ୍ ହି ଅହତ୍ୱା ଭୈକ୍ଷ୍ୟଂ ଅପି ଭୋକ୍ତୁଂ ଶ୍ରେୟଃ । ତୁ ଅର୍ଥକାମାନ୍ ଗୁରୂନ୍ ହତ୍ୱା, ଇହ ଏବ ରୁଧିରପ୍ରଦିଗ୍ଧାନ୍ ଭୋଗାନ୍ ଭୁଞ୍ଜୀୟ । ୫ ।

ଟୀକା ।

ତର୍ହି ପରାନହତ୍ୱା ଦେହଯାତ୍ରାପି କର୍ତ୍ତୁମଶକ୍ୟେତି ଚେତ୍ତତ୍ରାହ । ଗୁରୂନିତି । ଗୁରୂନ୍ ଦ୍ରୋଣାଚାର୍ଯ୍ୟାଦୀନ୍ ଅହତ୍ୱା ଗୁରୁବଧମକୃତ୍ୱା ଇହଲୋକେ ଭିକ୍ଷାନ୍ନମପି ଭୋକ୍ତୁଂ ଶ୍ରେୟଃ ଉଚିତଂ ବିପକ୍ଷେତୁ ନ କେବଳଂ ପରତ୍ର ଦୁଃଖଂ କିନ୍ତୁ ଇହୈବ ଚ ନରକଦୁଃଖମନୁଭବେୟମିତ୍ୟାହ । ହତ୍ୱେତି । ଗୁରୂନ୍ ହତ୍ୱା ଇହୈବ ରୁଧିରେଣ ପ୍ରଦିଗ୍ଧାନ୍ ପ୍ରକର୍ଷେଣ ଲିପ୍ତାନ୍ ଅର୍ଥକାମାତ୍ମକାନ୍ ଭୋଗାନ୍ ଅହଂ ଭୁଞ୍ଜୀୟ ଅଶ୍ନୀୟାଂ ଯଦ୍ୱା ଅର୍ଥକାମାନିତି ଗୁରୂଣାଂ ବିଶେଷଣଂ ଅର୍ଥଲୁବ୍ଧାକୁଳ ଦ୍ୱାଚେତରେ ଭାବଦ୍ଗୁରବାନ୍ନ ନବର୍ତ୍ତେରଂସ୍ତସ୍ମାଦେନଦ୍ବଧଃ ପ୍ରସକ୍ତୋଽପୀତିବେତ୍ୟର୍ଥଃ । ତଥାଚ ଯୁଧିଷ୍ଠିରଂ ପ୍ରତି ଭୀଷ୍ମେଣୋକ୍ତଂ "ଅର୍ଥସ୍ୟ ପୁରୁଷୋଦାସୋ ଦାସସ୍ତ୍ୱର୍ଥୋନ କସ୍ୟଚିତ୍ । ଇତି ସତ୍ୟଂ ମହାରାଜ ବଦ୍ଧୋଽସ୍ମ୍ୟର୍ଥେନ କୌରବୈରିତି" । ୫ ।

ପଦବ୍ୟାଖ୍ୟା ।

ଗୁରୂନ୍—ଦ୍ରୋଣାଚାର୍ଯ୍ୟାଦଙ୍କୁ, ଅହତ୍ୱା—ନ ମାରି, ହି—ନିଶ୍ଚେ, ମହାନୁଭାବାନ୍—ବେଦପାଠ ଓ ଧର୍ମାଚରଣ-ନିରତ, (ଅଥବା) ହିମହାନୁଭାବାନ୍—(ହିମ-ତୁଷାର-କୁହୁଡି, ହା = ବିନାଶକାରୀ; ଅନୁଭାବାନ୍ = ସମର୍ଥ) ଅଜ୍ଞାନରୂପ ତୁଷାର ନାଶବିଷୟରେ ଅଗ୍ନି ବା ସୂର୍ଯ୍ୟପରି ସମର୍ଥ, ଶ୍ରେୟଃ—ଉତ୍ତମ, ଭୋକ୍ତୁଂ—ଭୋଗ କରିବାକୁ, ଭୈକ୍ଷ୍ୟଂ—ଭିକ୍ଷାଲବ୍ଧ ଅନ୍ନ, ଅପି—ମଧ୍ୟ, ଇହ ଲୋକେ—ଏହି ଲୋକରେ, ହତ୍ୱା—ମାରିଲେ, ଅର୍ଥକାମାନ୍—ଧନାଭିଳାଷୀ; ତୁ—ପୁଣି, ଗୁରୂନ୍—ଶ୍ରେଷ୍ଠବ୍ୟକ୍ତିଙ୍କୁ, ଇହୈବ—ଏହି ଲୋକରେ କେବଳ, ଭୁଞ୍ଜୀୟ—ଭୋଗ କରିବି, ଭୋଗାନ୍—ଭୋଗ୍ୟବସ୍ତୁ-ମାନଙ୍କୁ, ରୁଧିରପ୍ରଦିଗ୍ଧାନ୍—ରକ୍ତଲିପ୍ତ । ୫ ।

ଅନୁବାଦ ।

ମହାତ୍ମା ଶ୍ରେଷ୍ଠବ୍ୟକ୍ତିମାନଙ୍କୁ ବଧ ନ କରି ବରଂ ଏହି ସଂସାରରେ ଭିକ୍ଷା ମାଗି

Digitized by PPRACHIN, SOA

ଖାଇବା ଉଚିତ, କିନ୍ତୁ ଅର୍ଥାଭିଳାଷି-ଗୁରୁଜନଙ୍କୁ ବିନାଶ କଲେ, ଇହଲୋକରେ ରକ୍ତମିଶ୍ରିତ ବିଷୟସୁଖ ଭୋଗ କରିବାକୁ ହେବ । ୫ ।

ବିଶଦବ୍ୟାଖ୍ୟା ।

କାଳେ ଭଗବାନ୍ କହିବେ ଯେ ଭୀଷ୍ମ ଦ୍ରୋଣାଦିମାନେ ଗୁରୁ ସତ, ମାତ୍ର ସେମାନଙ୍କ କାର୍ଯ୍ୟ ଦେଖିଲେ ସେମାନଙ୍କୁ ଗୁରୁ ବୋଲି ଗ୍ରହଣ କରିବାକୁ ଇଚ୍ଛା ହେବ ନାହିଁ, ଯେହେତୁ ଶାସ୍ତ୍ରରେ ବିଧି ଅଛି ଯେ "ଗୁରୋରପ୍ୟବଲିପ୍ତସ୍ୟ କାର୍ଯ୍ୟାକାର୍ଯ୍ୟମଜାନତଃ । ଉତ୍ପଥଂ ପ୍ରତି-ପନ୍ନସ୍ୟ ପରିତ୍ୟାଗୋ ବିଧୀୟତେ ।" ଅର୍ଥାତ୍ ଅହଂକାରାଦି ଦୋଷଯୁକ୍ତ, ଶାସ୍ତ୍ରର ବିଧି ନିଷେଧ ବିଷୟରେ ଅଜ୍ଞ ଓ କୁପଥଗାମୀ ଗୁରୁଙ୍କୁ, ଶିଷ୍ୟ ପରିତ୍ୟାଗ କରିବ । ଭଗବାନଙ୍କର ଏହି ଆଶଙ୍କା ନିବାରଣ ନିମିତ୍ତ, ଅର୍ଜୁନ କହିଲେ ଯେ "ମହାନୁଭବ" ଅର୍ଥାତ୍ ଶ୍ରବଣ, ଅଧ୍ୟୟନ, ତପଃ ଓ ଆଚାରାଦି ମହତ୍ ଗୁଣରେ ବିଭୂଷିତ ଗୁରୁ ପରିତ୍ୟାଗର ଯୋଗ୍ୟ ନୁହନ୍ତି ।

"ଏମାନଙ୍କୁ ବଧ ନ କଲେ ରାଜ୍ୟ ପାଇବାର ଆଉ ଉପାୟ ନାହିଁ" ଶ୍ରୀକୃଷ୍ଣଙ୍କର କାଳେ ଏପରି ଅଭିପ୍ରାୟ ହୋଇଥିବ ଏଥିଯୋଗୁଁ ଅର୍ଜୁନ କହିଲେ "ଏମାନଙ୍କୁ ନ ମାରିଲେ ଯଦି ମତେ ଭିକ୍ଷା ଅବଲମ୍ବନ କରିବାକୁ ହୁଏ ତାହା ମଧ୍ୟ ମୋହର ଶ୍ରେୟଃ;" ଯେହେତୁ ଶାସ୍ତ୍ରରେ ବିଧି ଅଛି ଯେ "ଅକୃତ୍ୱା ପରସନ୍ତାପମଗତ୍ୱା ଖଳମନ୍ଦିରଂ । ଅକ୍ଲେଶୟିତ୍ୱା ଚାତ୍ମାନଂ ଯଦଳ୍ପମପି ତଦ୍ବହୁ" ଅର୍ଥାତ୍ ପରପୀଡ଼ନ ନ କରି, ବେଦବିରୋଧୀ ନାସ୍ତିକ ଦୁଷ୍ଟ ଦୁର୍ଜନଙ୍କ ଗୃହକୁ ନ ଯାଇ ଓ ଆତ୍ମାକୁ କ୍ଳେଶ ନ ଦେଇ ଯେଉଁ ଅଳ୍ପ ଭୋଗ୍ୟବସ୍ତୁ ମିଳେ ତାହାକୁ ବହୁତ ବୋଲି ସ୍ୱୀକାର କରିବା ଉଚିତ ।

"ଭୀଷ୍ମାଦିମାନେ ଅର୍ଥଲୋଭୀ ଅର୍ଥାତ୍ ଧନଲାଳସାରେ ଦୁଷ୍ଟବୁଦ୍ଧି ଦୁର୍ଯ୍ୟୋଧନର ସହାୟତା କରିବାକୁ ଆସିଅଛନ୍ତି । ଯେହେତୁ ଭୀଷ୍ମଦେବ ନିଜେ ଯୁଧିଷ୍ଠିରଙ୍କୁ କହିଥିଲେ ଯେ "ଅର୍ଥସ୍ୟ ପୁରୁଷୋଦାସୋ ଦାସସ୍ତ୍ୱର୍ଥୋ ନ କସ୍ୟଚିତ୍ । ଇତି ସତ୍ୟଂ ମହାରାଜ ବଦ୍ଧୋଽସ୍ମ୍ୟର୍ଥେନ କୌରବୈଃ" ଅର୍ଥାତ୍ ମନୁଷ୍ୟ ଅର୍ଥର ଦାସ, ଅର୍ଥ କାହାର ଦାସ ନୁହେ ଏହା ସତ୍ୟ । ହେ ମହାରାଜ ! ମୁଁ ଧନଦ୍ୱାରା ଦୁର୍ଯ୍ୟୋଧନାଦିଙ୍କ ନିକଟରେ ଆବଦ୍ଧ ଅଛି ଇତ୍ୟାଦି । ସୁତରାଂ ଅର୍ଥକାମନାରୂପ ଦୋଷଯୁକ୍ତ ଗୁରୁ ପରିତ୍ୟାଗର ଯୋଗ୍ୟ" ଭଗବାନଙ୍କର ଏପରି ଆଶଙ୍କା ନିବାରଣ ନିମିତ୍ତ ଅର୍ଜୁନ, "ହିମହାନୁଭାବାନ୍" ପଦ ବ୍ୟବହାର କରିଅଛନ୍ତି । (ହିମଂ ଜାଡ୍ୟଂ ହନ୍ତୀତି ହିମହା ଆଦିତ୍ୟୋଽଗ୍ନିର୍ବା ତସ୍ୟ ଇବ ଅନୁଭାବଃ ସାମର୍ଥ୍ୟଂ ଯେଷାଂ ତେ) ଅର୍ଥାତ୍ ଯେଉଁମାନେ ଜଡ଼ତାରୂପ ହିମନାଶକ-ସୂର୍ଯ୍ୟ ବା ଅଗ୍ନିପରି ସାମର୍ଥ୍ୟଯୁକ୍ତ ସେମାନଙ୍କୁ କ୍ଷୁଦ୍ର ଦୋଷ ସବୁ ସ୍ପର୍ଶ କରି ପାରେ ନାହିଁ । ଯଥା "ଧର୍ମବ୍ୟତିକ୍ରମୋ ଦୃଷ୍ଟ ଈଶ୍ୱରାଣାଂ ଚ ସାହସଂ । ତେଜୀୟସାଂ ନ ଦୋଷାୟ ବହ୍ନେଃ ସର୍ବଭୁଜୋ ଯଥା" । ଯେପରି ଅଗ୍ନି ଶୁଦ୍ଧ ଓ ଅଶୁଦ୍ଧ ସବୁପ୍ରକାର ଦ୍ରବ୍ୟ ଭସ୍ମସାତ୍ କଲେ ସୁଦ୍ଧା ସେହି 'ପାବକ' ଅର୍ଥାତ୍ ପବିତ୍ର ଭିନ୍ନ ଅପବିତ୍ର ହୁଅନ୍ତି ନାହିଁ, ସେହିପରି ଈଶ୍ୱରଭାବାପନ୍ନ ପୁରୁଷମାନଙ୍କଠାରେ ଧର୍ମବିରୁଦ୍ଧ ଦୋଷ ଦେଖା ଦେଲେ ସୁଦ୍ଧା ସେମାନଙ୍କର ତେଜଃପ୍ରଭାବରେ ସେମାନେ ପବିତ୍ର ଥାନ୍ତି । ଅତଏବ ଭୀଷ୍ମା-

Digitized by PPRACHIN, SOA

ହନ୍ତାରେ ଧନକାମନାରୂପ ସାମାନ୍ୟଦୋଷ ଥିଲେ ସୁଦ୍ଧା ସେମାନେ ତ୍ୟାଗର ଯୋଗ୍ୟ ନୁହନ୍ତି । ସୁତରାଂ ସେମାନଙ୍କୁ ବଧ କରିବାଦ୍ୱାରା ମୁଁ ଧର୍ମବିରୁଦ୍ଧ କାର୍ଯ୍ୟ କରିବି ନାହିଁ, କାହିଁକି ନା ତାହା କଲେ ବିଷୟସୁଖଭୋଗ, ମୋ ପକ୍ଷରେ ଗୁରୁରୁଧିରମିଶ୍ରିତ ଭୋଗପରି ବୋଧ ହେବ । ୫ ।

ଶ୍ଳୋକଃ ।

ନ ଚୈତଦ୍ୱିଦ୍ମଃ କତରନ୍ନୋଗରୀୟୋ, ଯଦ୍ୱା ଜୟେମ ଯଦିବା ନୋ ଜୟେୟୁଃ ।
ଯାନେବ ହତ୍ୱା ନ ଜିଜୀବିଷାମ,ସ୍ତେଽବସ୍ଥିତାଃ ପ୍ରମୁଖେ ଧାର୍ତ୍ତରାଷ୍ଟ୍ରାଃ । ୬ ।

ଅନ୍ୱୟଃ ।

ଯଦ୍ୱା ବା ଜୟେମ, ନଃ ଯଦି ବା ଜୟେୟୁଃ, ନଃ କତରତ୍ ଗରୀୟଃ ଏତତ୍ ଚ ନ ବିଦ୍ମଃ । ଯାନ୍ ହତ୍ୱା ବୟଂ ନ ଜିଜୀବିଷାମଃ, ତେ ଏବ ଧାର୍ତ୍ତରାଷ୍ଟ୍ରାଃ ପ୍ରମୁଖେ ଅବସ୍ଥିତାଃ । ୬ ।

ଟୀକା ।

କିଞ୍ଚ ଯଦ୍ୟଧର୍ମମଙ୍ଗୀକରିଷ୍ୟାମଃ ତଥାପି କିମସ୍ମାକଂ ଜୟଃ ପରାଜୟୋ ବା ଗରୀୟାନ୍ ଭବେଦେତ ନ ଜ୍ଞାୟତ ଇତ୍ୟାହ । ନ ଚୈତଦିତ୍ୟାଦି । ଦ୍ୱୟୋର୍ମଧ୍ୟେ କୋଽସ୍ମାକଂ କତରତ୍ କିଂ ନାମ ଗରୀୟୋଽଧିକତରଂ ଭବିଷ୍ୟତୀତି ନ ବିଦ୍ମଃ । ତଦେବ ଦ୍ୱୟଂ ଦର୍ଶୟତି । ଯଦ୍ୱେତି । ଯଦ୍ୱା ଏତାନ୍ ବୟଂ ଜୟେମ ଜେଷ୍ୟାମଃ ଯଦିବା ନୋଽସ୍ମାନେତେ ଜୟେୟୁଃ ଜେଷ୍ୟନ୍ତୀତି । କିଞ୍ଚାସ୍ମାକଂ ଜୟୋଽପି ଫଳତଃ ପରାଜୟ ଏବେତ୍ୟାହ । ଯାନିତି । ଯାନେବ ହତ୍ୱା ଜୀବିତୁଂ ନେଚ୍ଛାମସ୍ତ ଏବୈତେ ସମ୍ମୁଖେଽବସ୍ଥିତାଃ । ୬ ।

ପଦବ୍ୟାଖ୍ୟା ।

ନ ଚ — ନାହିଁ, ଏତତ୍ — ଏହା, ବିଦ୍ମଃ — ଜାଣୁ, କତରତ୍ — କିଏ, ନଃ — ଅସ୍ମମାନଙ୍କର, ଗରୀୟଃ — ଅଧିକ, ଯଦ୍ୱା ଜୟେମ — ଯଦବା ଅମ୍ଭେମାନେ ଜୟ କରୁଁ, ଯଦିବା ନଃ ଜୟେୟୁଃ — ଯଦବା ସେମାନେ ଆମ୍ଭମାନଙ୍କୁ ଜୟ କରିବେ, ଯାନେବ — ଯେଉଁମାନଙ୍କୁ, ହତ୍ୱା — ବଧ କରି, ନ ଜିଜୀବିଷାମଃ — ଜୀଇବାକୁ ଇଚ୍ଛୁକ ନୋହୁଁ, ତେ — ସେମାନେ, ଅବସ୍ଥିତାଃ — ଉପସ୍ଥିତ ହୋଇଅଛନ୍ତି, ପ୍ରମୁଖେ — ସମ୍ମୁଖରେ, ଧାର୍ତ୍ତରାଷ୍ଟ୍ରାଃ — ଧୃତରାଷ୍ଟ୍ରଙ୍କ ପକ୍ଷୀୟମାନେ । ୬ ।

ଅନୁବାଦ ।

ଅମ୍ଭେମାନେ ଜିତିବା ବା ଆମ୍ଭମାନଙ୍କୁ ଜିତିବେ ( ଏ ଦୁହିଙ୍କ ମଧ୍ୟରେ ) କେଉଁଟି ଅଧିକ ଗୌରବସୂଚକ, ତାହା ଅମ୍ଭେମାନେ ଜାଣି ପାରୁ ନାହୁଁ । ଯେଉଁମାନଙ୍କୁ ବିନାଶ କରି ଅମ୍ଭେମାନେ ଜୀବିତ ରହିବାକୁ ଅନିଚ୍ଛୁକ, ସେହି ଧୃତରାଷ୍ଟ୍ରପକ୍ଷୀୟମାନେ ସମ୍ମୁଖରେ ରହିଅଛନ୍ତି । ୬ ।

ବିଶଦବ୍ୟାଖ୍ୟା ।

ଶାସ୍ତ୍ରାନୁସାରେ ଭିକ୍ଷାନ୍ନଭୋଜନ, କ୍ଷତ୍ରିୟ-ଧର୍ମ-ବିରୁଦ୍ଧ, ଯୁଦ୍ଧାଦି ସେମାନଙ୍କର ବିହିତ ଧର୍ମ, ଭଗବାନଙ୍କର ଏହି ଆପତ୍ତି ପରିହାର ନିମନ୍ତେ ଅର୍ଜୁନ କହିଲେ ଯେ ଯୁଦ୍ଧ ନ କଲେ ଭିକ୍ଷା ଅବଲମ୍ବନ କରିବାକୁ ହେବ । ଯୁଦ୍ଧ କଲେ ଜୟ ପରାଜୟ କାହାର ହେବ ତାହା ନିଶ୍ଚିତରୂପେ କୁହା ଯାଇ ନ ପାରେ । ଆମ୍ଭର ଜୟ ହେଲେ ଅର୍ଥାତ୍ ଧୃତରାଷ୍ଟ୍ରପକ୍ଷୀୟ ହତ

Digitized by PPRACHIN, SOA

ହେଲେ ଆମ୍ଭେମାନେ ମୃତବତ୍ ହେବୁଁ ଓ କୁଳରେ ବର୍ଣ୍ଣସଙ୍କର ଜାତ ହେବେ ଏବଂ ଆମ୍ଭର ପରାଜୟ ହେଲେ ମୃତ୍ୟୁ ବା ଭିକ୍ଷା ଅବଲମ୍ବନ କରିବାକୁ ହେବ, ଅର୍ଥାତ୍ ଯେ କୌଣସି ପ୍ରକାରେ ଦେଖିଲେ ଏ ଯୁଦ୍ଧରେ ଆମ୍ଭମାନଙ୍କର ଲାଭ ନାହିଁ । ୬ ।

ଶ୍ଲୋକଃ ।

କାର୍ପଣ୍ୟଦୋଷୋପହତସ୍ୱଭାବଃ, ପୃଚ୍ଛାମି ତ୍ୱାଂ ଧର୍ମସଂମୂଢଚେତାଃ ।
ଯଚ୍ଛ୍ରେୟଃ ସ୍ୟାନ୍ନିଶ୍ଚିତଂ ବ୍ରୂହି ତନ୍ମେ, ଶିଷ୍ୟସ୍ତେଽହଂ ଶାଧି ମାଂ ତ୍ୱାଂ ପ୍ରପନ୍ନଂ । ୭ ।

ଅନ୍ୱୟଃ ।

କାର୍ପଣ୍ୟଦୋଷୋପହତସ୍ୱଭାବଃ ଧର୍ମସଂମୂଢଚେତାଃ (ଅହଂ) ତ୍ୱାଂ ପୃଚ୍ଛାମି, ମେ ଯତ୍ ନିଶ୍ଚିତଂ ଶ୍ରେୟଃ ସ୍ୟାତ୍ ତତ୍ ବ୍ରୂହି, ଅହଂ ତେ ଶିଷ୍ୟଃ, (ଅତଃ) ତ୍ୱାଂ ପ୍ରପନ୍ନଂ ମାଂ ଶାଧି । ୭ ।

ଟୀକା ।

କାର୍ପଣ୍ୟେତ୍ୟାଦି । ତସ୍ମାଦେତାନ୍ ହତ୍ୱା କଥଂ ଜୀବିଷ୍ୟାମ ଇତି କାର୍ପଣ୍ୟଂ, ଦୋଷଶ୍ଚ କୁଳକ୍ଷୟକୃତଃ ତାଭ୍ୟାମୁପହତୋଽଭିଭୂତଃ ସ୍ୱଭାବଃ ଶୌର୍ଯ୍ୟଲକ୍ଷଣୋଯସ୍ୟ ସୋଽହଂ ତ୍ୱାଂ ପୃଚ୍ଛାମି, ତଥା ଧର୍ମେ ସଂମୂଢଂ ଚେତୋଯସ୍ୟ ସଃ । ଯୁଦ୍ଧଂ ତ୍ୟକ୍ତ୍ୱା ଭିକ୍ଷାଟନମପି କ୍ଷତ୍ରିୟସ୍ୟ ଧର୍ମୋଽଧର୍ମୋବେତି ସନ୍ଦିଗ୍ଧଚିତ୍ତଃସନ୍ନିତ୍ୟର୍ଥଃ । ଅତୋମେ ଯନ୍ନିଶ୍ଚିତଂ ଶ୍ରେୟଃ ସ୍ୟାତ୍ତଦ୍‌ବ୍ରୂହି । କିଂ ଚ ତେଽହଂ ଶିଷ୍ୟଃ ଶାସନାର୍ହଃ ଅତସ୍ତ୍ୱାଂ ପ୍ରପନ୍ନଂ ଶରଣଂ ଗତଂ ମାଂ ଶାଧି ଶିକ୍ଷୟ । ୭ ।

ପଦବ୍ୟାଖ୍ୟା ।

କାର୍ପଣ୍ୟଦୋଷୋପହତସ୍ୱଭାବଃ—ଆତ୍ମୀୟଲୋକଙ୍କ ବିନାଶ ବିଷୟରେ ମନରେ ଜାତ ହେଉଥିବା ଆତ୍ମଗ୍ଲାନିରୂପ କୃପଣତା ଓ ଭାବୀ କୁଳକ୍ଷୟଜନିତ 'ଦୋଷ' ଏ ଉଭୟଦ୍ୱାରା ଯାହାର ସ୍ୱଭାବ ଆଚ୍ଛନ୍ନ ହୋଇଅଛି । ପୃଚ୍ଛାମି—ପଚାରୁଅଛି, ତ୍ୱାଂ—ଆପଣଙ୍କୁ, ଧର୍ମସଂମୂଢଚେତାଃ—ଧର୍ମବିଷୟରେ ଯାହାର ମନ ସନ୍ଦେହଯୁକ୍ତ, ଯତ୍—ଯାହା, ଶ୍ରେୟଃ ସ୍ୟାତ୍—ହିତ ହେବ, ନିଶ୍ଚିତଂ—ନିଶ୍ଚୟ କରି, ବ୍ରୂହି—କହିବା ହେଉନ୍ତୁ, ତନ୍ମେ—ତାହା ମତେ, ଶିଷ୍ୟସ୍ତେଽହଂ—ମୁଁ ଆପଣଙ୍କ ଶିଷ୍ୟ, ଶାଧି—ଶିକ୍ଷା ଦିଅନ୍ତୁ, ମାଂ—ମତେ, ତ୍ୱାଂ ପ୍ରପନ୍ନଂ—ଆପଣଙ୍କଠାରେ ଶରଣାଗତ । ୭ ।

ଅନୁବାଦ ।

(ଆତ୍ମୀୟ-ବିନାଶଜନିତ-ଗ୍ଲାନିରୂପ) କାର୍ପଣ୍ୟ ଓ (ଭାବୀ କୁଳକ୍ଷୟଜନିତ) ଦୋଷଦ୍ୱାରା ମୋହର ସ୍ୱାଭାବିକ ଶୌର୍ଯ୍ୟାଦିଗୁଣ ନଷ୍ଟ ଓ ଅନ୍ତଃକରଣ ଧର୍ମବିଷୟରେ ସନ୍ଦେହଯୁକ୍ତ ହେବାରୁ ଆପଣଙ୍କୁ ପଚାରୁଅଛି କି, ଯାହା ମୋ ପକ୍ଷରେ ହିତ ହେବ ତାହା ନିଶ୍ଚୟ କରି ମତେ କହିବା ହେଉନ୍ତୁ । ମୁଁ ଆପଣଙ୍କର ଶିଷ୍ୟ ଓ ଶରଣାପନ୍ନ ହୋଇଅଛି, ମତେ ଉପଦେଶ ଦେବା ହେଉନ୍ତୁ । ୭ ।

ବିଶଦବ୍ୟାଖ୍ୟା ।

"ଯୋବା ଏତଦକ୍ଷରଂ ଗାର୍ଗ୍ୟବିଦିତ୍ୱାସ୍ମାଲ୍ଲୋକାତ୍ ପ୍ରୈତି ସ କୃପଣଃ" ଶ୍ରୁତିଃ ।

ହେ ଗାର୍ଗି! ଅଧିକାରୀ ମନୁଷ୍ୟଦେହ ପ୍ରାପ୍ତ ହୋଇ ସୁଦ୍ଧା ଯେ ଏହି 'ଅକ୍ଷର' ଆତ୍ମାକୁ ଜାଣି ନ ପାରି ଇହଲୋକ ପରିତ୍ୟାଗ କରେ ସେହି ଅଜ୍ଞାନୀ ପୁରୁଷକୁ 'କୃପଣ' ବୋଲାଯାଏ । ସ୍ମୃତିରେ ମଧ୍ୟ ଉଲ୍ଲେଖ ଅଛି ଯେ "କୃପଣୋଽଜିତେନ୍ଦ୍ରିୟଃ" ଅର୍ଥାତ୍ ଅଜିତେନ୍ଦ୍ରିୟ ପୁରୁଷ, କୃପଣ

Digitized by PPRACHIN, SOA

ଅଟେ । ଫଳକଥା ଏହି କି ଦେହାଦିରେ ଆତ୍ମ ବୁଦ୍ଧି ଏବଂ ଏ ପର ଓ ସେ ଆତ୍ମୀୟ ଇତ୍ୟାଦି ଅଜ୍ଞାନତାର ନାମ 'କାର୍ପଣ୍ୟ' ଏବଂ ଏହି କୁଳକ୍ଷୟଜନିତ ପାତକକୁ 'ଦୋଷ' ବୋଲି ଏସ୍ଥଳରେ ଉଲ୍ଲେଖ କରି ହୋଇଅଛି । ଜ୍ଞାନପ୍ରସ୍ତାବରେଁ ଅର୍ଜୁନଙ୍କର ସତ୍ତ୍ୱଗୁଣର ଉଦୟ ହୋଇଅଛି ସତ, କିନ୍ତୁ କାର୍ପଣ୍ୟ ଦୋଷ ହେତୁ ଆତ୍ମାର ଭେଦଜ୍ଞାନ ନଷ୍ଟ ହୋଇ ନାହିଁ । ପୁଣି କ୍ଷତ୍ରିୟର ସ୍ୱଭାବଧର୍ମ ୧ ଶୂରତା, ୨ ତେଜ, ୩ ଧୃତି, ୪ ଚତୁରତା, ୫ ଅପଳାୟନ, ୬ ଦାନ ଓ ୭ ଈଶ୍ୱରଭାବ ପ୍ରଭୃତି ଗୁଣ ଦୁର୍ବଳ ହୋଇଅଛି । ବର୍ଣ୍ଣାଶ୍ରମବୃତ୍ତିର ଏହିପରି ଉପଦ୍ରବ ହେବାରୁ ଅର୍ଜୁନ ଧର୍ମ ଅଧର୍ମରେ ସନ୍ଦେହଯୁକ୍ତ ହୋଇ କର୍ତ୍ତବ୍ୟ ନିରୂପଣ କରି ପାରୁ ନାହାନ୍ତି । ଏଣୁ କରି ଅର୍ଜୁନ ଜଗଦ୍‌ଗୁରୁ ଶ୍ରୀକୃଷ୍ଣଙ୍କର ସର୍ବାଂଶଭାବ ଶୁଦ୍ଧ ଶିଷ୍ୟତ୍ୱ ଗ୍ରହଣ କରି ପରମପୁରୁଷାର୍ଥରୂପ ଶ୍ରେୟଃ ଉପଦେଶ ପ୍ରାର୍ଥନା କଲେ । କାହିଁକି ନା ପୂର୍ବଭାବଯୁକ୍ତ ନା ଶିଷ୍ୟ ହୋଇ ନ ପଚାରିଲେ ବ୍ରହ୍ମବିଦ୍ୟା ଉପଦେଶ ଦେବାର ଶ୍ରୁତିରେ ନିୟମ ନାହିଁ ।

ଯଥା "ତଦ୍‌ବିଜ୍ଞାନାର୍ଥଂ ସ ଗୁରୁମେବାଭିଗଚ୍ଛେତ୍ ସମିତ୍ପାଣିଃ ଶ୍ରୋତ୍ରିୟଂ ବ୍ରହ୍ମନିଷ୍ଠଂ ଇତି" ଶ୍ରୁତିଃ ।

ଅର୍ଥାତ୍ ବ୍ରହ୍ମପଦାର୍ଥଜ୍ଞାନ ନିମନ୍ତେ ଅଧିକାରୀ ପୁରୁଷ ସମିଧ ହସ୍ତରେ ଘେନି ଶ୍ରୋତ୍ରିୟ ବ୍ରହ୍ମନିଷ୍ଠ ଗୁରୁଙ୍କ ନିକଟକୁ ଗମନ କରିବ ।

କେବଳ ଶିଷ୍ୟ ହେଲେ କି ଗୁରୁ ବ୍ରହ୍ମବିଦ୍ୟାର ଉପଦେଶ ଦେବେ ? ତାହା ନୁହେ, ଶିଷ୍ୟର ବର୍ଣ୍ଣାଶ୍ରମ ଧର୍ମରେ ନିପୁଣତା ଓ ଶମ, ଦମ, ନିର୍ଲୋଭିତା, ତିତିକ୍ଷା ପ୍ରଭୃତି ସଦ୍‌ଗୁଣରେ ଭୂଷିତ ହୋଇ ବ୍ରହ୍ମଜ୍ଞାନରେ ଅଧିକାରୀ ହେବା ଆବଶ୍ୟକ । ଏବେ ଦେଖା ଯାଉ ଅର୍ଜୁନଙ୍କର ଉକ୍ତ ସଦ୍‌ଗୁଣମାନ ଅଛି କି ନାହିଁ ।

୧ମଅଧ୍ୟାୟରୁ ଦ୍ୱିତୀୟ ଅଧ୍ୟାୟର ୫ମ ଶ୍ଳୋକ ପର୍ଯ୍ୟନ୍ତ ଅର୍ଜୁନଙ୍କ ଉକ୍ତିରେ ସଂସାରର ନାନାପ୍ରକାର ଦୋଷ ଓ ବର୍ଣ୍ଣାଶ୍ରମିମାନଙ୍କର ଧର୍ମାଧିକାରଭେଦ ବର୍ଣ୍ଣିତ ହୋଇଥିବାରୁ 'ବର୍ଣ୍ଣାଶ୍ରମ ଧର୍ମରେ' ନିପୁଣତା, "ନ ଚ ଶ୍ରେୟୋଽନୁପଶ୍ୟାମି" (୧ମ ଅଧ୍ୟାୟ ୩୧ ଶ୍ଳୋକ) ଇତ୍ୟାଦି ବଚନଦ୍ୱାରା 'ନିତ୍ୟ ଅନିତ୍ୟ ପଦାର୍ଥ ବିବେକ,' "ନ କାଂକ୍ଷେ ବିଜୟଂ କୃଷ୍ଣ" (୧ମ ଅଧ୍ୟାୟ ୩୨ ଶ୍ଳୋକ) ଇତ୍ୟାଦି ଦ୍ୱାରା 'ସଂସାରର ବିଷୟ ସୁଖରେ ବୈରାଗ୍ୟ', "ଅପି ତ୍ରୈଲୋକ୍ୟରାଜ୍ୟସ୍ୟ" (୧ମ ଅଧ୍ୟାୟ ୩୫ ଶ୍ଳୋକ) ଦ୍ୱାରା 'ସ୍ୱର୍ଗାଦି ସୁଖରେ' ମଧ୍ୟ ବୈରାଗ୍ୟ, "ନରକେ ନିୟତଂ ବାସଃ" (୧ମ ଅଧ୍ୟାୟ ୪୪ ଶ୍ଳୋକ)ଦ୍ୱାରା 'ଦେହ ଓ ଆତ୍ମା'ର ପ୍ରଭେଦଜ୍ଞାନ, "କିଂ ନୋ ରାଜ୍ୟେନ ଗୋବିନ୍ଦ" (୧ମ ଅ, ୩୨)ବାକ୍ୟଦ୍ୱାରା ମନୋନିଗ୍ରହରୂପ 'ଶମ' ଏବଂ "କିଂ ଭୋଗୈର୍ଜୀବିତେନ ବା" (୧ମ ଅ ୩୨) ଦ୍ୱାରା ବାହ୍ୟେନ୍ଦ୍ରିୟ ନିଗ୍ରହରୂପ 'ଦମ', "ଯଦ୍ୟପ୍ୟେତେ ନ ପଶ୍ୟନ୍ତି" (୧ମ ୩୮) ଦ୍ୱାରା 'ନିର୍ଲୋଭିତା' "ତନ୍ମେ କ୍ଷେମତରଂ" (୧ମ ୪୬) ଦ୍ୱାରା 'ତିତିକ୍ଷା' "ଶ୍ରେୟୋ ଭୋକ୍ତୁଂ" (ଦ୍ୱିତୀୟ ଅଧ୍ୟାୟ ୫ମ ଶ୍ଳୋକ) ବାକ୍ୟଦ୍ୱାରା 'ସନ୍ନ୍ୟାସ' ପ୍ରଦର୍ଶିତ ହୋଇଅଛି । ଏଣୁକରି ବ୍ରହ୍ମସାକ୍ଷାତ୍କାର ପାଇଁ ଯେଉଁ ୨ ଗୁଣ ଆବଶ୍ୟକ ତାହା ଅର୍ଜୁନଙ୍କର ଥିବାରୁ ସେ ଶିଷ୍ୟତ୍ୱ ସ୍ୱୀକାର କରି ଜଗଦ୍‌ଗୁରୁ ଶ୍ରୀକୃଷ୍ଣଙ୍କ ନିକଟରେ ଉପଦେଶ ପ୍ରାର୍ଥନା କଲେ । ୭ ।

Digitized by PPRACHIN, SOA

### ଶ୍ଲୋକଃ ।

ନ ହି ପ୍ରପଶ୍ୟାମି ମମାପନୁଦ୍ୟାଦ୍ୟଚ୍ଛୋକମୁଚ୍ଛୋଷଣମିନ୍ଦ୍ରିୟାଣାଂ ।
ଅବାପ୍ୟ ଭୂମାବସପତ୍ନମୃଦ୍ଧଂ, ରାଜ୍ୟଂ ସୁରାଣାମପି ଚାଧିପତ୍ୟଂ । ୮ ।

### ଅନ୍ୱୟଃ ।

ଭୂମୌ ଅସପତ୍ନଂ ଋଦ୍ଧଂ ରାଜ୍ୟଂ, ସୁରାଣାଂ ଅପି ଆଧିପତ୍ୟଂ ଚ ଅବାପ୍ୟ ଯତ୍ (କର୍ମ) ମମ ଇନ୍ଦ୍ରିୟାଣାଂ ଉଚ୍ଛୋଷଣଂ ଶୋକଂ ଅପନୁଦ୍ୟାତ୍ ( ତତ୍ କର୍ମ ) ହି ନ ପ୍ରପଶ୍ୟାମି । ୮ ।

### ଟୀକା ।

ତ୍ୱମେବ ବିମୃଶ୍ୟ ଯଦ୍ୟୁକ୍ତଂ ତତ୍ କୁର୍ବିତି ଚେତ୍ ତତ୍ରାହ । ନ ହି ପ୍ରପଶ୍ୟାମୀତି । ଇନ୍ଦ୍ରିୟାଣାମୁଚ୍ଛୋଷଣମତିଶୋଷକରଂ ମଦୀୟଂ ଶୋକଂ ଯତ୍ କର୍ମାପନୁଦ୍ୟାତ୍ ଅପନୟେତ୍ ତଦହଂ ନ ପଶ୍ୟାମୀତି । ଯଦ୍ୟପି ଭୂମୌ ନିଷ୍କଣ୍ଟକଂ ସମୃଦ୍ଧଂ ରାଜ୍ୟଂ ପ୍ରାପ୍ସ୍ୟାମି ତଥା ସୁରେନ୍ଦ୍ରତ୍ୱମପି ଯଦି ପ୍ରାପ୍ସ୍ୟାମି ଏବମଖିଳଂ ତତ୍ସର୍ବମବାପ୍ୟାପି ଶୋକାପନୋଦନୋପାୟଂ ନ ପ୍ରପଶ୍ୟାମୀତ୍ୟନ୍ୱୟଃ । ୮ ।

### ପଦବ୍ୟାଖ୍ୟା ।

ନ ହି ପ୍ରପଶ୍ୟାମି—ମୁଁ ଦେଖୁ ନାହିଁ, ମମ—ମୋହର, ଅପନୁଦ୍ୟାତ୍—ବିନାଶ କରିବ, ଯତ୍—ଯାହା, ଶୋକଂ—ଶୋକକୁ, ଉଚ୍ଛୋଷଣମିନ୍ଦ୍ରିୟାଣାଂ—ଇନ୍ଦ୍ରିୟମାନଙ୍କର ଗ୍ଲାନିକର, ଅବାପ୍ୟ—ପାଇକରି, ଭୂମୌ—ଭୂମିରେ, ଅସପତ୍ନଂ—ନିଷ୍କଣ୍ଟକ, ଋଦ୍ଧଂ—ଧନଶାଳୀ, ରାଜ୍ୟଂ—ରାଜ୍ୟକୁ, ସୁରାଣାମପି ଚ—ଦେବତାମାନଙ୍କର ମଧ୍ୟ, ଆଧିପତ୍ୟଂ—ଅଧିପତି ହେବାର । ୮ ।

### ଅନୁବାଦ ।

ସମସ୍ତ ପୃଥିବୀରେ ଧନଶାଳୀ ଓ ନିଷ୍କଣ୍ଟକ ରାଜ୍ୟ ଏବଂ ସ୍ୱର୍ଗରେ ଦେବତାମାନଙ୍କର ଆଧିପତ୍ୟ ( ଅର୍ଥାତ୍ ଇନ୍ଦ୍ରପଦ ) ପାଇଲେ ମଧ୍ୟ ଏ ପ୍ରକାର କୌଣସି ଉପାୟ ଦେଖୁ ନାହିଁ ଯାହା କି ମୋହର ଇନ୍ଦ୍ରିୟଗ୍ଲାନିକର ଶୋକ ବିନାଶ କରିବ । ୮ ।

### ବିଶଦବ୍ୟାଖ୍ୟା ।

ଅର୍ଜୁନ ସର୍ବଶାସ୍ତ୍ରବେତ୍ତା ହେଲେ ସୁଦ୍ଧା ଭଗବାନଙ୍କ ନିକଟରେ ଶିଷ୍ୟପରି ନିଜର ବୁଦ୍ଧି ଅଦୂରଦର୍ଶିତା ଓ ଅଜ୍ଞାନତାର ପରିଚୟ ପ୍ରଦାନ କରିବାକୁ ଇନ୍ଦ୍ରିୟଗ୍ଲାନିକର ଶୋକର ବିନାଶକ କୌଣସି ଉପାୟ ଦେଖି ପାରୁ ନ ଥିବାର କହିଲେ । ଅତି ଶାସ୍ତ୍ରରେ ବିଶେଷ ପାରଦର୍ଶୀ ହେଲେ ଯେ ଶୋକ ସନ୍ତାପରୁ ହସ୍ତରୁ ନିସ୍ତାର ପାଇବେ ତାହା ନୁହେଁ । କାହିଁକି, ନା ସର୍ବଶାସ୍ତ୍ରଜ୍ଞ ଦେବର୍ଷି ନାରଦ ମଧ୍ୟ ଏକସମୟରେ ସନତ୍କୁମାରଙ୍କୁ ଏହିପରି କହିଥିଲେ ।—

ଯଥା—"ସୋଽହଂ ଭଗବନ୍ ଶୋଚାମି ତଂ ମାଂ ଭଗବା-
ଞ୍ଛୋକସ୍ୟ ପାରଂ ତାରୟତୁ" ଇତି ।

ଅର୍ଥାତ୍ ହେ ଭଗବନ୍ ! ମୁଁ ଆପଣଙ୍କ ସଦୃଶ ମହାତ୍ମା ବ୍ୟକ୍ତିଙ୍କଠାରୁ ଶୁଣିଅଛି, ଯେ ଆତ୍ମଜ୍ଞାନିମାନେ ଶୋକରୁ ନିସ୍ତାର ଲାଭ କରନ୍ତି, କିନ୍ତୁ ମୁଁ ଶୋକସନ୍ତପ୍ତ ଓ ଆତ୍ମବୋଧହୀନ, ଆପଣ ମୋହର ଶୋକ ବିନାଶ କରନ୍ତୁ ଇତ୍ୟାଦି ।

Digitized by PPRACHIN, SOA

ଅର୍ଜ୍ଜୁନଙ୍କର ମନସ୍ତାପ ସାମାନ୍ୟ ନୁହେ । ଏହା ବିପୁଳ ସମ୍ପତ୍ତି ରାଜ୍ୟ ବା ସ୍ୱର୍ଗପ୍ରାପ୍ତି ଆଦି କୌଣସି ଅନିତ୍ୟ ସୁଖଦ୍ୱାରା ନିବୃତ୍ତ ହେବାର ନୁହେ । ଶ୍ରୁତିରେ ଉଲ୍ଲେଖ ଅଛି ଯେ "ତଦ୍ୟଥେହ କର୍ମଜିତୋ ଲୋକଃ କ୍ଷୀୟତେ ଏବମେବାମୁତ୍ର ପୁଣ୍ୟଜିତୋ ଲୋକଃ କ୍ଷୀୟତେ" ଅର୍ଥାତ୍ ଇହଲୋକରେ କର୍ମ୍ମଫଳରୁ ପ୍ରାପ୍ତ ବିଷୟସୁଖ ଯେପରି ବିନାଶଶୀଳ, ପୁଣ୍ୟଲବ୍ଧ ସ୍ୱର୍ଗାଦି ଫଳ ମଧ୍ୟ ସେହିପରି ବିନାଶଶୀଳ । ଯୁଦ୍ଧରେ ଜୟ କଲେ ରାଜ୍ୟଲକ୍ଷ୍ମୀ ମିଳୁ ଅଥବା ସମ୍ମୁଖରେ ମରିବାହେତୁ ସ୍ୱର୍ଗଲାଭ ହେଉ ତଥାପି ଅର୍ଜ୍ଜୁନଙ୍କର ଏ ଶୋକ କୌଣସି ପ୍ରକାର (ଫଳରେ) ନିବୃତ୍ତ ହେବାର ନୁହେ । ଅତଏବ ସେ ଇନ୍ଦ୍ରିୟଗ୍ଲାନିକର ଶୋକର ବିନାଶ ନିମିତ୍ତ ଉପାୟ ଦେଖାଇ ଦେବାକୁ (ଆତ୍ମଜ୍ଞାନ ଉପଦେଶ ପାଇବାକୁ) ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କଲେ । ୮ ।

### ଶ୍ଲୋକଃ ।

ସଞ୍ଜୟ ଉବାଚ ।—ଏବମୁକ୍ତ୍ୱା ହୃଷୀକେଶଂ, ଗୁଡ଼ାକେଶଃ ପରନ୍ତପଃ ।
ନ ଯୋତ୍ସ୍ୟଇତି ଗୋବିନ୍ଦମୁକ୍ତ୍ୱା ତୂଷ୍ଣୀଂ ବଭୂବ ହ । ୯ ।

### ଅନ୍ୱୟଃ ।

ସଞ୍ଜୟଃ ଉବାଚ । ପରନ୍ତପଃ ଗୁଡ଼ାକେଶଃ ହୃଷୀକେଶଂ ଏବ ଉକ୍ତ୍ୱା ହ (ପ୍ରସିଦ୍ଧଂ) ନ ଯୋତ୍ସ୍ୟେ ଇତି ଗୋବିନ୍ଦଂ ଉକ୍ତ୍ୱା ତୂଷ୍ଣୀଂ ବଭୂବ । ୯ ।

### ଟୀକା ।

ଏବମୁକ୍ତ୍ୱାର୍ଜ୍ଜୁନଃ କିଂ କୃତବାନ୍ ଇତ୍ୟପେକ୍ଷାୟାଂ ସଞ୍ଜୟଉବାଚ । ଏବମିତ୍ୟାଦି । ୯ ।

### ପଦବ୍ୟାଖ୍ୟା ।

ଏବମୁକ୍ତ୍ୱା—ଏପ୍ରକାର କହି, ହୃଷୀକେଶଂ—ଶ୍ରୀକୃଷ୍ଣଙ୍କୁ, ଗୁଡ଼ାକେଶଃ—ନିଦ୍ରାଜୟକାରୀ (ଅର୍ଜ୍ଜୁନ), ପରନ୍ତପଃ—ଶତ୍ରୁସନ୍ତାପକାରୀ, ନ ଯୋତ୍ସ୍ୟେ—ଯୁଦ୍ଧ କରିବି ନାହିଁ, ଇତି—ଏହା, ଗୋବିନ୍ଦଂ—(ଗୋ = ଇନ୍ଦ୍ରିୟମାନଙ୍କର, ବିନ୍ଦ = ଅଧିଷ୍ଠାତୃ ଦେବତା, ଅଥବା ଗୋ = ବେଦରୂପା ବାଣୀର, ବିନ୍ଦ = ଜ୍ଞାତା, କିମ୍ବା—ଗୋ = ବେଦବାକ୍ୟ, ବିନ୍ଦ = ପ୍ରାପ୍ୟ ଅର୍ଥାତ୍ ଯାହାଙ୍କୁ ବେଦବାକ୍ୟଦ୍ୱାରା ପାଇବାକୁ ହୁଏ, ଅଥବା ଗୋ = ଦୃକ୍—ଜ୍ଞାନେନ୍ଦ୍ରିୟ, ବିନ୍ଦ = ଲଭ୍ୟ ଅର୍ଥାତ୍ ଯାହାଙ୍କୁ ଜ୍ଞାନେନ୍ଦ୍ରିୟଦ୍ୱାରା ଲାଭକରାଯାଏ) ଶ୍ରୀକୃଷ୍ଣଙ୍କୁ, ଉକ୍ତ୍ୱା—କହି, ତୂଷ୍ଣୀଂ ବଭୂବ—ତୁନି ହେଲେ, ହ—ପ୍ରସିଦ୍ଧ । ୯ ।

### ଅନୁବାଦ ।

ସଞ୍ଜୟ କହିଲେ, ଶତ୍ରୁତାପନ ନିଦ୍ରାଜୟକାରୀ ଅର୍ଜ୍ଜୁନ, ସର୍ବାନ୍ତର୍ଯ୍ୟାମୀ ଭଗବାନ୍ ଶ୍ରୀକୃଷ୍ଣଙ୍କୁ 'ମୁଁ ଯୁଦ୍ଧ କରିବି ନାହିଁ' ଏହା କହି ମୌନ ହେଲେ । ୯ ।

### ବିଶଦବ୍ୟାଖ୍ୟା ।

ଜିତନିଦ୍ର ଅର୍ଥାତ୍ ପରମ ଉଦ୍ୟମୀ ଓ ଶତ୍ରୁତାପନକାରୀ ଅର୍ଜ୍ଜୁନ, ସାତ୍ତ୍ୱିକଗୁଣ ପ୍ରଭାବରେ ବାହ୍ୟେନ୍ଦ୍ରିୟ ନିଗ୍ରହ କରି ମୁଁ 'ଯୁଦ୍ଧ କରିବି ନାହିଁ' କହିଲେ; ମାତ୍ର ଏ ଶ୍ଲୋକରେ ହୃଷୀକେଶ ଓ ଗୋବିନ୍ଦ ଏ ଦୁଇପଦ ବ୍ୟବହାର କରିବାଦ୍ୱାରା ସଞ୍ଜୟ ସଙ୍କେତରେ ଧୃତରା-

Digitized by PPRACHIN, SOA

ଷ୍ଟ୍ରଙ୍କୁ ଏହି କଥା ଜଣାଇଲେ, ଯେ ଅର୍ଜ୍ଜୁନ ଇନ୍ଦ୍ରିୟନିଗ୍ରହ କଲେ କି ହେବ ? ସର୍ବ ଇନ୍ଦ୍ରିୟର ଅଧିଷ୍ଠାତା ଓ ସର୍ବଶକ୍ତିମାନ୍ ଭଗବାନ୍ ଅର୍ଜ୍ଜୁନଙ୍କର ଇନ୍ଦ୍ରିୟରେ ଇଚ୍ଛାମାତ୍ରକେ ଶକ୍ତି ସଞ୍ଚାର କରାଇ ତାଙ୍କର ଶୋକଜନିତ ମୌନଭାବ ଦୂର କରିବେ, ଅର୍ଥାତ୍ ଯୁଦ୍ଧରେ ପ୍ରବୃତ୍ତ କରାଇବେ ଓ ଆତ୍ମଜ୍ଞାନ ଉପଦେଶରେ ଶୋକ ବିନାଶ କରିବେ । ୯ ।

ଶ୍ଳୋକଃ ।

ତମୁବାଚ ହୃଷୀକେଶଃ, ପ୍ରହସନ୍ନିବ ଭାରତ ।
ସେନୟୋରୁଭୟୋର୍ମଧ୍ୟେ, ବିଷୀଦନ୍ତମିଦଂ ବଚଃ । ୧୦ ।

ଅନ୍ୱୟଃ ।

ହେ ଭାରତ ! ଉଭୟୋଃ ସେନୟୋଃ ମଧ୍ୟେ ବିଷୀଦନ୍ତଂ ତଂ ପ୍ରହସନ୍ ଇବ ହୃଷୀକେଶଃ ଇଦଂ ବଚଃ ଉବାଚ । ୧୦ ।

ଟୀକା ।

ତତଃ କିଂ ବୃତ୍ତମିତ୍ୟତ ଆହ । ତମୁବାଚେତି । ପ୍ରସନ୍ନମୁଖଃ ସନ୍ ଇତ୍ୟର୍ଥଃ । ୧୦ ।

ପଦବ୍ୟାଖ୍ୟା ।

ତଂ—ସେହି ଅର୍ଜ୍ଜୁନଙ୍କୁ, ଉବାଚ—କହିଲେ, ହୃଷୀକେଶଃ—ଶ୍ରୀକୃଷ୍ଣ, ପ୍ରହସନ୍ନିବ—ହସିଲା ପରି ହୋଇ, ଅର୍ଥାତ୍ ପ୍ରସନ୍ନମୁଖ ହୋଇ ବା ( ଅର୍ଜ୍ଜୁନଙ୍କୁ ଲଜ୍ଜିତ କରିବାକୁ ) ଉପହାସ କଲାପରି, ଭାରତ—ହେ ଭରତବଂଶଜ !, ସେନୟୋରୁଭୟୋର୍ମଧ୍ୟେ—ସେନା ଦୁହିଙ୍କ ମଧ୍ୟରେ, ବିଷୀଦନ୍ତଂ—ଦୁଃଖିତ ବା ମୋହପ୍ରାପ୍ତ, ଇଦଂ ବଚଃ—ଏହି ବାକ୍ୟଟି । ୧୦ ।

ଅନୁବାଦ ।

ହେ ଧୃତରାଷ୍ଟ୍ର ! ଦୁଇ ସେନା ମଧ୍ୟରେ ଦୁଃଖିତ ଅର୍ଜ୍ଜୁନଙ୍କୁ, ହସିଲାପରି ହୋଇ ଶ୍ରୀକୃଷ୍ଣ ଏହି କଥା କହିଲେ— । ୧୦ ।

ବିଶଦବ୍ୟାଖ୍ୟା ।

ଯୁଦ୍ଧରେ ବିଜୟଲାଭ କରିବା ପାଇଁ ଯେଉଁ ଅର୍ଜ୍ଜୁନ ବନବାସ ଆଦି କ୍ଳେଶ ସହ୍ୟ କରି ପାଶୁପତାସ୍ତ୍ର ପ୍ରଭୃତି ସଂଗ୍ରହ କରିଥିଲେ, ସେହି ବୀରକେଶରୀ ଅର୍ଜ୍ଜୁନଙ୍କୁ, ଯୁଦ୍ଧ ହେବା ପୂର୍ବରୁ ନିବୃତ୍ତ ନ ହୋଇ ଯୁଦ୍ଧକ୍ଷେତ୍ରରେ ଉଭୟ ସେନା ଯୁଦ୍ଧ କରିବାକୁ ପ୍ରବୃତ୍ତ ହେଲା ପରେ ନିବୃତ୍ତ ହେବାର ଦେଖି, ଭଗବାନ୍ ଶ୍ରୀକୃଷ୍ଣ ନ ହସି ରହି ପାରିଲେ ନାହିଁ, ଅଥବା ହୃଷୀକେଶ ଅର୍ଥାତ୍ ସର୍ବଇନ୍ଦ୍ରିୟର ସ୍ୱାମୀ ଅନ୍ତର୍ଯ୍ୟାମୀ ହାସ୍ୟଯୁକ୍ତ ଅର୍ଥାତ୍ ପ୍ରସନ୍ନ ହେଲେ ଅର୍ଜ୍ଜୁନଙ୍କର ବିଷଣ୍ଣ ମନରେ ତେଜର ଓ ହୃଦୟରେ ସାମର୍ଥ୍ୟର ସଞ୍ଚାର ହେବ ଏଥିପାଇଁ ହସିଲା ପରି ହୋଇ କହିଲେ— । ୧୦ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—ଅଶୋଚ୍ୟାନନ୍ୱଶୋଚସ୍ତ୍ୱଂ, ପ୍ରଜ୍ଞାବାଦାଂଶ୍ଚ ଭାଷସେ ।
ଗତାସୂନଗତାସୂଂଶ୍ଚ, ନାନୁଶୋଚନ୍ତି ପଣ୍ଡିତାଃ । ୧୧ ।

Digitized by PPRACHIN, SOA

## ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । (ହେ ଅର୍ଜୁନ ! ) ତ୍ୱଂ ଅଶୋଚ୍ୟାନ୍ ଅନ୍ୱଶୋଚଃ ଚ ପ୍ରଜ୍ଞାବାଦାନ୍ ଭାଷସେ । ପଣ୍ଡିତାଃ ଗତାସୂନ୍ ଚ ଅଗତାସୂନ୍ ନ ଅନୁଶୋଚନ୍ତି । ୧୧ ।

## ଟୀକା ।

ଦେହାତ୍ମନୋ ରବିବେକାଦସ୍ୟୈବ ଶୋକୋଦ୍ଭବଇତି ତଦ୍ବିବେକପ୍ରଦର୍ଶନାର୍ଥଂ ଶ୍ରୀଭଗବାନୁବାଚ । ଅଶୋଚ୍ୟାନିତ୍ୟାଦି । ଶୋକସ୍ୟାବିଷୟୀଭୂତାନ୍ ଏବ ବନ୍ଧୂନ୍ ଅନ୍ୱଶୋଚଃ ଶୋଚିତବାନ୍ ଅସି ; ଦୃଷ୍ଟ୍ୱେମାନ୍ ସ୍ୱଜନାନ୍ କୃଷ୍ଣେତ୍ୟାଦିନା । ତତ୍ର କୁତସ୍ତ୍ୱା କଶ୍ମଲମିଦଂ ବିଷମେ ସମୁପସ୍ଥିତମିତ୍ୟାଦିନା ମୟା ପ୍ରବୋଧିତୋଽପି ପୁନଶ୍ଚ ପ୍ରଜ୍ଞାବତାଂ ପଣ୍ଡିତାନାଂ ବାଦାନ୍ ଶବ୍ଦାନ୍ କଥଂ ଭୀଷ୍ମମହଂ ସଂଖ୍ୟେ ଇତ୍ୟାଦୀନ୍ କେବଳଂ ଭାଷସେ ନତୁ ପଣ୍ଡିତୋଽସି ଯତଃ ପଣ୍ଡିତା ଗତାସୂନ୍ ଗତପ୍ରାଣାନ୍ ବନ୍ଧୂନ୍ ଅଗତାସୂଂଶ୍ଚ ଜୀବତୋଽପି ବନ୍ଧୁହୀନା ଏତେ କଥଂ ଜୀବିଷ୍ୟନ୍ତୀତି ନାନୁଶୋଚନ୍ତି ପଣ୍ଡିତା ବିବେକିନଃ । ୧୧ ।

## ପଦବ୍ୟାଖ୍ୟା ।

ଅଶୋଚ୍ୟାନ୍—ଯେଉଁମାନେ ଶୋକର ଯୋଗ୍ୟ ନୁହନ୍ତି ସେମାନଙ୍କୁ, ଅନ୍ୱଶୋଚଃ—ବାରମ୍ବାର ଶୋଚନା କରୁଅଛ, ତ୍ୱଂ—ତୁମ୍ଭେ, ପ୍ରଜ୍ଞାବାଦାଂଶ୍ଚ ଭାଷସେ—ପଣ୍ଡିତମାନଙ୍କ ପରି କଥା କହୁଅଛ ( ମାତ୍ର ପଣ୍ଡିତ ନୁହ ), ଗତାସୂନ୍—ଯେଉଁମାନଙ୍କର ପ୍ରାଣ ଗତ ହୋଇଅଛି , ଅଗତାସୂଂଶ୍ଚ—ଯେଉଁମାନଙ୍କର ପ୍ରାଣ ଗତ ହୋଇ ନାହିଁ ଅର୍ଥାତ୍ ଯେଉଁମାନେ ଜୀବିତ ଅଛନ୍ତି ସେମାନଙ୍କୁ ମଧ୍ୟ , ନାନୁଶୋଚନ୍ତି—ବାରମ୍ବାର ଶୋଚନା କରନ୍ତି ନାହିଁ , ପଣ୍ଡିତାଃ—ପଣ୍ଡିତମାନେ । ୧୧ ।

## ଅନୁବାଦ ।

ଶ୍ରୀଭଗବାନ୍ କହିଲେ — (ହେ ଅର୍ଜୁନ !) ଯାହାଙ୍କୁ ଶୋଚନା କରିବା ଉଚିତ ନୁହେ ତୁମ୍ଭେ ସେମାନଙ୍କୁ ବାରମ୍ବାର ଶୋଚନା କରୁଅଛ ଏବଂ ପଣ୍ଡିତମାନଙ୍କ ପରି କଥା କହୁଅଛ (ମାତ୍ର) ପଣ୍ଡିତମାନେ ମୃତ ଆଉ ଜୀବିତ ଲୋକଙ୍କୁ ଶୋଚନା କରନ୍ତି ନାହିଁ । ୧୧ ।

## ବିଶଦବ୍ୟାଖ୍ୟା ।

ହେ ଅର୍ଜୁନ ! "ନରକେ ନିୟତଂ ବାସଃ" ଇତ୍ୟାଦି ଶ୍ଳୋକରେ ତୁମ୍ଭେ ଶରୀରଠାରୁ ଆତ୍ମାର ପ୍ରଭେଦ ସ୍ୱୀକାର କରି ପାଣ୍ଡିତ୍ୟ ଦେଖାଉଅଛ, ମାତ୍ର ସ୍ଥୂଳଦେହ ବିନାଶରେ ଆତ୍ମାର ବିନାଶ ହୁଏନାହିଁ, ଏହା ବୁଝି ସୁଦ୍ଧା ବନ୍ଧୁବିୟୋଗ ପାଇଁ ଶୋକ କରୁଥିବାରୁ ତୁମ୍ଭେ ପଣ୍ଡିତ ନୁହ ବୋଲି ଜଣାଯାଉଅଛି, କାହିଁକିନା ମୃତ ଆତ୍ମୀୟମାନେ କିପରି କେଉଁଠାରେ ଅଛନ୍ତି ଏବଂ ତାଙ୍କ ଅଭାବରେ ଜୀବିତ ଆତ୍ମୀୟମାନଙ୍କର କିଛି କ୍ଲେଶ ହେଉଅଛି କି ନାହିଁ ଇତ୍ୟାଦି ବୃଥାଚିନ୍ତା ପଣ୍ଡିତ ଅର୍ଥାତ୍ ବିବେକିଲୋକମାନେ କରନ୍ତି ନାହିଁ । ୧୧ ।

## ଶ୍ଳୋକଃ ।

ନ ତ୍ୱେବାହଂ ଜାତୁ ନାସଂ, ନ ତ୍ୱଂ ନେମେ ଜନାଧିପାଃ ।
ନ ଚୈବ ନ ଭବିଷ୍ୟାମଃ, ସର୍ବେ ବୟମତଃପରଂ । ୧୨ ।

Digitized by PPRACHIN, SOA

### ଅନ୍ୱୟଃ ।

"ଅହଂ ଜାତୁ ନ ଆସଂ, ତ୍ୱଂ ନ (ଆସୀଃ) ଇମେ ଜନାଧିପାଃ ନ (ଆସନ୍)" ନ ତୁ ଏବ । ଅତଃପରଂ ବୟଂ ସର୍ବେ 'ନ ଭବିଷ୍ୟାମଃ' ନ ଚ ଏବ । ୧୨ ।

### ଟୀକା ।

ଅଶୋଚ୍ୟତ୍ୱେ ହେତୁମାହ । ନତ୍ୱେବାହମିତି । ଯଥା ଅହଂ ପରମେଶ୍ୱରୋ ଜାତୁ କଦାଚିତ୍ ଲୀଳାବିଗ୍ରହସ୍ୟାବିର୍ଭାବତିରୋଭାବତୋ ନାସଂ ଇତି ତୁ ନୈବ ଅପିତ୍ୱାସମେବ ଅନାଦିତ୍ୱାତ୍ , ନ ଚ ତ୍ୱଂ ନାସୀର୍ନାଭୂଃ ଅପିତ୍ୱାସୀରେବ, ଇମେ ଚ ଜନାଧିପାଃ ନୃପାଃ ନାସନ୍ନିତି ତୁ ନ, ଅପିତ୍ୱାସନ୍ନେବ, ମଦଂଶତ୍ୱାତ୍ ତଥା ଅତଃପରଂ ଇତଉପର୍ଯ୍ୟପି ନ ଭବିଷ୍ୟାମୋ ନଷ୍ଟାସ୍ୟାମଃ ଇତି ଚ ନୈବ ଅପି ତୁ ସ୍ଥାସ୍ୟାମ ଏବେତି; ଜନ୍ମମରଣଶୂନ୍ୟତ୍ୱାତ୍ ଅଶୋଚ୍ୟା ଇତ୍ୟର୍ଥଃ । ୧୨ ।

### ପଦବ୍ୟାଖ୍ୟା ।

ନ ତୁ ଏବ—ଏହା ନୁହେ, ଅହଂ ଜାତୁ ନାସଂ—ଆମ୍ଭେ କେବେ ନ ଥିଲୁଁ, ନ—ନ ଥିଲ, ତ୍ୱଂ—ତୁମ୍ଭେ, ନ—ନ ଥିଲେ, ଇମେ—ଏହି, ଜନାଧିପାଃ—ରାଜାମାନେ, ନ ଚୈବ—ନୁହେ ନିଶ୍ଚୟ, ନ ଭବିଷ୍ୟାମଃ—ନ ଥିବା, ସର୍ବେ ବୟଂ—ସମସ୍ତେ ଆମ୍ଭେମାନେ, ଅତଃପରଂ—ଏଥି ଉତ୍ତାରୁ । ୧୨ ।

### ଅନୁବାଦ ।

ଆମ୍ଭେ, ତୁମ୍ଭେ ଆଉ ଏ ରାଜାମାନେ ଯେ କେବେ ନ ଥିଲୁଁ ଏହା ନୁହେ ଆଉ ଏଥି ଉତ୍ତାରୁ ଆମ୍ଭେମାନେ ସମସ୍ତେ ଯେ ନ ହେବା ତାହା ମଧ୍ୟ ନୁହେ । ୧୨ ।

### ସ୍ୱପଦବ୍ୟାଖ୍ୟା ।

ଭଗବାନ୍ ବର୍ତ୍ତମାନ ବାସୁଦେବରୂପରେ ଆବିର୍ଭୂତ ଓ ଅର୍ଜ୍ଜୁନ କୁନ୍ତୀପୁତ୍ର ହୋଇ ଜାତ ଏବଂ ଭୀଷ୍ମ ଗାଙ୍ଗେୟ ବୋଲି ପରିଚିତ ସତ, ମାତ୍ର ଏ ଦେହର ପୂର୍ବରେ ଭଗବାନ୍ ଅବଶ୍ୟ ଅନ୍ୟ କୌଣସି ଅବତାର ଗ୍ରହଣ କରିଥିଲେ ଓ ଅର୍ଜ୍ଜୁନ ଏବଂ ଭୀଷ୍ମ ଅନ୍ୟ ବ୍ୟକ୍ତିର ସତ୍ତ୍ୱାନ୍ତର ପରିଗ୍ରହ କରିଥିଲେ ଏବଂ ଏ ଦେହର ବିନାଶ ପରେ ପୁନର୍ବାର ଅନ୍ୟ କୌଣସି ଅବସ୍ଥାରେ ପ୍ରକାଶିତ ହେବେ ଏଥିରେ ସନ୍ଦେହ ନାହିଁ । ଭଗବାନ୍ ଓ ଅର୍ଜ୍ଜୁନ ଏବଂ ଅନ୍ୟାନ୍ୟ ରାଜାମାନେ ପୂର୍ବରେ ଥିଲେ ଏହାଦ୍ୱାରା ସେମାନଙ୍କର ପ୍ରାଗଭାବ ନ ଥିବା ଅର୍ଥାତ୍ ପୂର୍ବରେ ଅବିଦ୍ୟମାନତା ନ ଥିବାର ଏବଂ ଏ ଦେହର ବିନାଶପରେ ଏମାନେ ଅନ୍ୟ ଅବସ୍ଥାରେ ରହିବେ ଏହାଦ୍ୱାରା ସେମାନଙ୍କର 'ପ୍ରଧ୍ୱଂସାଭାବ' ନ ଥିବା ଅର୍ଥାତ୍ ବିନାଶଶୀଳତା ନ ଥିବାର ପ୍ରମାଣ ହେଲା । ପୁଣି ସମସ୍ତେ ବର୍ତ୍ତମାନ୍ ଦୃଶ୍ୟମାନ ଥିବାରୁ ବିଦ୍ୟମାନ ଭାବ ମଧ୍ୟ ପ୍ରତିପନ୍ନ ହେଲା । ଫଳକଥା ଏହି କି ଆତ୍ମା ଯେ ନିତ୍ୟ ତାହା ସ୍ୱୀକୃତ ହେଲା ।

ଆତ୍ମାର ନିତ୍ୟତା ପ୍ରମାଣିତ ହେବାରୁ "ତତ୍ତ୍ୱମସି" ମହାବାକ୍ୟର ଏକତା ସମ୍ପାଦିତ ହେଲା ଅର୍ଥାତ୍ ତତ୍ = ଈଶ୍ୱର, ତ୍ୱଂ = ଜୀବ, ଏ ଦୁହେଁ ନିତ୍ୟ ଅଟନ୍ତି, ଅତଏବ ଏକ ଅଟନ୍ତି । ୧୨ ।

### ଶ୍ଳୋକଃ ।

ଦେହିନୋଽସ୍ମିନ୍ ଯଥା ଦେହେ, କୌମାରଂ ଯୌବନଂ ଜରା ।
ତଥା ଦେହାନ୍ତରପ୍ରାପ୍ତିର୍ଧୀରସ୍ତତ୍ର ନ ମୁହ୍ୟତି । ୧୩ ।

Digitized by PPRACHIN, SOA

### ଅନ୍ୱୟଃ ।

ଦେହିନଃ ଅସ୍ମିନ୍ ଦେହେ କୌମାରଂ ଯୌବନଂ ଜରା ଯଥା, ଦେହାନ୍ତରପ୍ରାପ୍ତିଃ ତଥା । ତତ୍ର ଧୀରଃ ନ ମୁହ୍ୟତି । ୧୩ ।

### ଟୀକା ।

ନନ୍ୱୀଶ୍ୱରସ୍ୟ ତବ ଜନ୍ମାଦଶୂନ୍ୟତ୍ୱଂ ସତ୍ୟମେବ, ଜୀବାନାଂ ତୁ ଜନ୍ମମରଣେ ପ୍ରସିଦ୍ଧେ ଇତ୍ୟାହ । ଦେହିନ ଇତ୍ୟାଦି । ଦେହିନୋ ଦେହାଭିମାନିନୋ ଜୀବସ୍ୟ ଯଥାଽସ୍ମିନ୍ ସ୍ଥୂଲଦେହେ କୌମାରାଦ୍ୟବସ୍ଥାଃ ସ୍ୱଦେହନିବନ୍ଧନା ଏବ ନ ତୁ ସ୍ୱତଃ, ପୂର୍ବାବସ୍ଥାନାଶେଽବସ୍ଥାନ୍ତରୋତ୍ପତ୍ତାବପି ସ ଏବାହମିତି ପ୍ରତ୍ୟଭିଜ୍ଞାନାତ୍ । ତଥୈବ ଏତଦ୍ଦେହନାଶେ ଦେହାନ୍ତରପ୍ରାପ୍ତିରପି ଲିଙ୍ଗଦେହନିବନ୍ଧନୈବ ନ ତାବଦାତ୍ମନୋ ନାଶଃ ଜାତମାତ୍ରସ୍ୟ ପୂର୍ବସଂସ୍କାରେଣ ସ୍ତନ୍ୟପାନାଦୌ ପ୍ରବୃତ୍ତିଦର୍ଶନାତ୍ ଅତୋ ଧୀରଃ ଧୀମାନ୍ ତତ୍ର ତୟୋର୍ଦେହନାଶୋତ୍ପତ୍ତ୍ୟୋର୍ନ ମୁହ୍ୟତି ଆତ୍ମୈବ ମୃତୋ ଜାତଶ୍ଚେତି ନ ମନ୍ୟତେ । ୧୩

### ପଦବ୍ୟାଖ୍ୟା ।

ଦେହିନଃ—ଦେହାଭିମାନୀ ଜୀବର, ଅସ୍ମିନ୍—ଏହି, ଯଥା—ଯେପରି, ଦେହେ—ସ୍ଥୂଳଶରୀରରେ, କୌମାରଂ—ବାଲ୍ୟାବସ୍ଥା, ଯୌବନଂ—ଯୌବନ ଅବସ୍ଥା, ଜରା—ବୃଦ୍ଧାବସ୍ଥା, ତଥା—ସେହିପରି, ଦେହାନ୍ତରପ୍ରାପ୍ତିଃ—ପୁନଃ ଦେହପ୍ରାପ୍ତି, ଧୀରଃ—ବୁଦ୍ଧିମାନ୍ ଲୋକ, ତତ୍ର—ସେଥିରେ ଅର୍ଥାତ୍ ଦେହର ନାଶ ଓ ଉତ୍ପତ୍ତି ବିଷୟରେ, ନ ମୁହ୍ୟତି—ମୁଗ୍ଧ ହୁଅନ୍ତି ନାହିଁ । ୧୩ ।

### ଅନୁବାଦ ।

ଯେପରି ଜୀବାତ୍ମାର ଏହି ଦେହରେ ବାଲ୍ୟ-ଯୌବନ ଓ ବୃଦ୍ଧାବସ୍ଥା ହୁଏ ସେହିପରି ଅନ୍ୟ-ଦେହ-ପ୍ରାପ୍ତି ମଧ୍ୟ ହୁଏ । ବିଜ୍ଞଲୋକେ ସେହି ଜନ୍ମ ମରଣ ବିଷୟରେ ମୁଗ୍ଧ ହୁଅନ୍ତି ନାହିଁ । ୧୩ ।

### ବିଶଦବ୍ୟାଖ୍ୟା ।

ଦେବଦତ୍ତ ଜନ୍ମିଲେ, ଦେବଦତ୍ତ ମଲେ, ଇତ୍ୟାଦି ଲୋକ ପ୍ରଚଳିତ କଥା ଅନୁସାରେ 'ଦେହସହିତ ଆତ୍ମାର ଜନ୍ମ ଓ ମୃତ୍ୟୁ ହୁଏ' ବୋଲି ଅର୍ଜୁନଙ୍କର ଏପରି ଭ୍ରମ ହୋଇଥିବ, ତାହା ନିବାରଣ ପାଇଁ ଶ୍ରୀଭଗବାନ୍ କହିଲେ ଯେ—ଯେପରି ବାଲ୍ୟ, ଯୌବନ ଓ ବୃଦ୍ଧତ୍ୱ ଏହି ଦେହରେ ହୁଏ ଅର୍ଥାତ୍ ଯୌବନ ଅବସ୍ଥା ହେଲେ ବାଲ୍ୟ ଅବସ୍ଥାର ଅଦର୍ଶନ ହେତୁ ଅଥବା ବୃଦ୍ଧ ଅବସ୍ଥାରେ ବାଲ୍ୟ ଓ ଯୌବନର ଅଦର୍ଶନ ହେତୁ ଜୀବ ଆପଣାକୁ ମୃତ ବୋଲି ମନେ କରେ ନା, ଅର୍ଥାତ୍ ବାଲ୍ୟକାଳରେ ଯେଉଁ ଜୀବ ଥିଲା ଯୁବା ଅବସ୍ଥାରେ ସେହି ଅଛି ଓ ବୃଦ୍ଧ ଅବସ୍ଥାରେ ସେହି ଥିବ ଏହା ମନେ କରେ; ଦେହାନ୍ତରପ୍ରାପ୍ତିରେ ମଧ୍ୟ ତାହାହିଁ ମନେ କରିବା ଉଚିତ ଅର୍ଥାତ୍ ଅନ୍ୟ ଦେହରେ ଯେଉଁ ଆତ୍ମା ଥିଲା ଏ ଦେହରେ ମଧ୍ୟ ସେହି ଆତ୍ମା ଅଛି ଏହାହିଁ ବୁଝିବା ଉଚିତ । କାହିଁକିନା ବାଳକ ଜନ୍ମ ହେଲାକ୍ଷଣି ପୂର୍ବ ଜନ୍ମର ଅଭ୍ୟାସ ଅନୁସାରେ ମାତାର ସ୍ତନ୍ୟପାନ କରେ, ଏବଂ ପୂର୍ବଜନ୍ମ କର୍ମ ଅନୁସାରେ ସୁଖ ଦୁଃଖ ଓ ହର୍ଷ ଶୋକ ଇତ୍ୟାଦି ଭୋଗ କରେ । ଯଦି ଧନବାନ୍ ଓ କୁଳୀନ ଘରେ ଜନ୍ମ ଗ୍ରହଣ କରି ବିନା ପରିଶ୍ରମରେ ଆରୋଗ୍ୟ ଓ ସୁଖ ଏବଂ ଧନ ଓ ମହତ୍ତ୍ୱ ଭୋଗ କରେ, ତେବେ ଜାଣିବାକୁ ହେବ, ଯେ ତାହାର ପୂର୍ବଜନ୍ମସୁକୃତର ଫଳ, ଆଉ ଯଦି ଦରିଦ୍ରଘରେ ଜନ୍ମଗ୍ରହଣ କରି ବିନା ଅପରାଧରେ ଦରିଦ୍ର ଓ ଚିରରୋଗୀ ବା ଅନ୍ଧ, କୁଜ, ଖଞ୍ଜ ପ୍ରଭୃତି ହୁଏ ତେବେ

Digitized by PPRACHIN, SOA

ତାହାର ପୂର୍ବଜନ୍ମ ଦୁଷ୍କୃତର ଫଳ ବୋଲି ନିଶ୍ଚୟ କରାଯାଏ । ପଶୁମାନେ ମଧ୍ୟ ଇହଜନ୍ମରେ ପାପ ବା ପୁଣ୍ୟ ନ କରି ଦୁଃଖ ବା ସୁଖ ଭୋଗ କରୁଥିବାର ଦେଖାଯାଏ, ସେ ସ୍ଥଳେ ସେମାନଙ୍କର ପୂର୍ବଜନ୍ମର ସୁକୃତ ବା ଦୁଷ୍କୃତର ଫଳ ବୋଲି ସ୍ଥିର କରାଯାଏ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ ବର୍ତ୍ତମାନ କାଳରେ ବିଦ୍ୟମାନ ଥିବା ଆତ୍ମା ପୂର୍ବରେ ଥିଲା ଓ ଇହଜନ୍ମର ପାପ ପୁଣ୍ୟର ଫଳଭୋଗ କରିବାକୁ ଭବିଷ୍ୟତରେ ମଧ୍ୟ ଅନ୍ୟ ଦେହ ପାଇ ରହିବ । ୧୩ ।

ଶ୍ଳୋକଃ ।

ମାତ୍ରାସ୍ପର୍ଶାସ୍ତୁ କୌନ୍ତେୟ, ଶୀତୋଷ୍ଣସୁଖଦୁଃଖଦାଃ ।

ଆଗମାପାୟିନୋଽନିତ୍ୟା,ସ୍ତାଂସ୍ତିତିକ୍ଷସ୍ୱ ଭାରତ । ୧୪ ।

ଅନ୍ୱୟଃ ।

ହେ କୌନ୍ତେୟ ! ମାତ୍ରାସ୍ପର୍ଶାସ୍ତୁ ଶୀତୋଷ୍ଣସୁଖଦୁଃଖଦାଃ (ଭବନ୍ତି) । ହେ ଭାରତ ! (ତେ) ଆଗମାପାୟିନଃ ଅନିତ୍ୟାଃ ତାନ୍ ତିତିକ୍ଷସ୍ୱ । ୧୪ ।

ଟୀକା ।

ନନୁ ତାନହଂ ନ ଶୋଚାମି କିନ୍ତୁ ତଦ୍ବିୟୋଗାଦ୍ ଦୁଃଖଭାଜଂ ମାମେବେତି ଚେତ୍ତତ୍ରାହ । ମାତ୍ରାସ୍ପର୍ଶା ଇତି । ମୀୟନ୍ତେ ଜ୍ଞାୟନ୍ତେ ବିଷୟା ଆଭିରିତି ମାତ୍ରା ଇନ୍ଦ୍ରିୟବୃତ୍ତୟଃ ତାସାଂ ସ୍ପର୍ଶା ବିଷୟୈଃ ସହ ସମ୍ବନ୍ଧାଃ ତେ ଶୀତୋଷ୍ଣାଦିପ୍ରଦା ଭବନ୍ତି । ତେ ତ୍ୱାଗମାପାୟିତ୍ୱାଦନିତ୍ୟା ଅସ୍ଥିରା, ଅତସ୍ତାନ୍ ତିତିକ୍ଷସ୍ୱ ସହସ୍ୱ । ଯଥା ଜଳାତପାଦିସଂସର୍ଗାସ୍ତତ୍ତତ୍କାଳକୃତାଃ ସ୍ୱଭାବତଃ ଶୀତୋଷ୍ଣାଦି ପ୍ରୟଚ୍ଛନ୍ତି, ଏବମିଷ୍ଟସଂୟୋଗବିୟୋଗା ଅପି ସୁଖଦୁଃଖାଦି ପ୍ରୟଚ୍ଛନ୍ତି. ତେଷାଂ ଚାସ୍ଥିରତ୍ୱାତ୍ ସହନଂ ତବ ଧୀରସ୍ୟୋଚିତଂ ନତୁ ତନ୍ନିମିତ୍ତହର୍ଷବିଷାଦପାରବଶ୍ୟମିତ୍ୟର୍ଥଃ । ୧୪ ।

ପଦବ୍ୟାଖ୍ୟା ।

ମାତ୍ରାସ୍ପର୍ଶାଃ—ଇନ୍ଦ୍ରିୟବୃତ୍ତିମାନଙ୍କ ସହିତ ବିଷୟମାନଙ୍କ ସମ୍ବନ୍ଧ, ତୁ—କିନ୍ତୁ, କୌନ୍ତେୟ—ହେ କୁନ୍ତୀପୁତ୍ର (ଅର୍ଜ୍ଜୁନ !), ଶୀତୋଷ୍ଣସୁଖଦୁଃଖଦାଃ—ଶୀତ, ଉଷ୍ଣ, ସୁଖ ଓ ଦୁଃଖାଦିଜନକ, ଆଗମାପାୟିନଃ—ଉତ୍ପତ୍ତି ଓ ବିନାଶଯୁକ୍ତ, ଅନିତ୍ୟାଃ—ଅଚିରସ୍ଥାୟୀ, ତାନ୍—ସେମାନଙ୍କୁ, ତିତିକ୍ଷସ୍ୱ—ସହ୍ୟ କର. ଭାରତ—ହେ ଭରତବଂଶଜ (ଅର୍ଜ୍ଜୁନ)।

ଅନୁବାଦ ।

ହେ କୁନ୍ତୀପୁତ୍ର ଶବ୍ଦସ୍ପର୍ଶାଦି ବିଷୟ ସହିତ ଇନ୍ଦ୍ରିୟମାନଙ୍କ ବୃତ୍ତିର ଯେ ସଂଯୋଗ ସେ ଶୀତ, ଉଷ୍ଣ ଓ ସୁଖ ଦୁଃଖାଦିର କାରଣ ଅଟେ । କିନ୍ତୁ ହେ ଭରତବଂଶଜ ! ସେହି ସଂଯୋଗର ସମୟାନୁସାରେ ଉତ୍ପତ୍ତି ଓ ବିନାଶ ହୁଏ; ଅତଏବ ସେମାନେ ଅନିତ୍ୟ ଅଟନ୍ତି, ସେମାନଙ୍କୁ ତୁମ୍ଭେ ସହ୍ୟ କର । ୧୪ ।

ବିଶଦବ୍ୟାଖ୍ୟା ।

ଯାହାଦ୍ୱାରା ବିଷୟ ଜଣାଯାଏ ତାହାକୁ 'ମାତ୍ରା' କହନ୍ତି । 'ମାତ୍ରା' ଶବ୍ଦଦ୍ୱାରା ଇନ୍ଦ୍ରିୟଶକ୍ତି ଅର୍ଥାତ୍ ଇନ୍ଦ୍ରିୟବୃତ୍ତିମାନଙ୍କୁ ଲକ୍ଷ୍ୟ କରା ଯାଉଅଛି । ଇନ୍ଦ୍ରିୟବୃତ୍ତିର ସହିତ ବିଷୟଧର୍ମକୁ 'ମାତ୍ରାସ୍ପର୍ଶ' ବୋଲାଯାଏ ଅର୍ଥାତ୍ ନେତ୍ରାଦି ଇନ୍ଦ୍ରିୟଶକ୍ତିର ବିଷୟ ସହିତ ମିଶିବାର ନାମ ମାତ୍ରାସ୍ପର୍ଶ ଅଟେ । ସେଥିରୁ ସୁଖ ଦୁଃଖ ଉତ୍ପନ୍ନ ହୁଏ । ଯେପରି ଚର୍ମଇନ୍ଦ୍ରିୟର ବୃତ୍ତି ସହିତ

Digitized by PPRACHIN, SOA

ବାୟୁର ସ୍ପର୍ଶ ହୋଇ ଶୀତୋଷ୍ଣାଦି ଅନୁଭୂତ ହୁଏ, ସେହି ଶୀତୋଷ୍ଣାଦି ଚର୍ମେନ୍ଦ୍ରିୟର ମାତ୍ରାସ୍ପର୍ଶରୁ ଜାତ ଅଟେ (ସେହିପରି ଅନ୍ୟାନ୍ୟ ଇନ୍ଦ୍ରିୟର ମାତ୍ରାସ୍ପର୍ଶ ଜାଣିବ) । ସେ ସମସ୍ତ ମାତ୍ରାସ୍ପର୍ଶ (ଆଗମ) = ଉତ୍ପତ୍ତି ଓ (ଅପାୟ) = ବିନାଶଯୁକ୍ତ । ଏଥିପାଇଁ ଶୀତୋଷ୍ଣାଦି, ହର୍ଷଶୋକାଦି ଓ ଇଷ୍ଟ ଅନିଷ୍ଟାଦି ସମସ୍ତହିଁ ଅନିତ୍ୟ । ସଙ୍ଗ ଓ ବିଚ୍ଛେଦ ମଧ୍ୟ ସେହିପରି ଅନିତ୍ୟ । ସୁତରାଂ ଭୀଷ୍ମାଦିଙ୍କ ସଙ୍ଗବିଚ୍ଛେଦଜନିତ ଦୁଃଖ ମଧ୍ୟ ଅନିତ୍ୟ । ଅତଏବ ସେଥିପାଇଁ ତୁମ୍ଭର ଶୋକ କରିବା ଉଚିତ ନୁହେଁ, ତୁମ୍ଭେ ତାହା ସହ୍ୟ କର । ଏ ଶ୍ଲୋକରେ 'କୌନ୍ତେୟ' ଓ 'ଭାରତ' ଦୁଇ ସମ୍ବୋଧନ ଦେବାର ତାତ୍ପର୍ଯ୍ୟ ଏହି ଯେ ତୁମ୍ଭେ ମହାଜ୍ଞାନୀ ଭରତଙ୍କର କୁଳଜାତ ହୋଇ କେବଳ 'କୁନ୍ତୀ'ଙ୍କ ପରି ସ୍ତ୍ରୀସ୍ୱଭାବସୂଚକ ଶୋକରେ ଗ୍ରସ୍ତ ହେଉଅଛ କାହିଁକି ? । ୧୪ ।

ଶ୍ଲୋକଃ ।

ଯଂ ହି ନ ବ୍ୟଥୟନ୍ତ୍ୟେତେ, ପୁରୁଷଂ ପୁରୁଷର୍ଷଭ ।
ସମଦୁଃଖସୁଖଂ ଧୀରଂ, ସୋଽମୃତତ୍ୱାୟ କଳ୍ପତେ । ୧୫ ।

ଅନ୍ୱୟଃ ।

ହେ ପୁରୁଷର୍ଷଭ ! ସମଦୁଃଖସୁଖଂ ଯଂ ଧୀରଂ ପୁରୁଷଂ ହି ଏତେ ନ ବ୍ୟଥୟନ୍ତି ସଃ ଅମୃତତ୍ୱାୟ କଳ୍ପତେ । ୧୫ ।

ଟୀକା ।

ତତ୍ ପ୍ରତୀକାର ପ୍ରଯତ୍ନାଦପି ତତ୍ ସହନମେବୋଚିତଂ ମହାଫଳତ୍ୱାତ୍ ଇତ୍ୟାହ । ଯଂ ହୀତ୍ୟାଦି । ଏତେ ମାତ୍ରାସ୍ପର୍ଶା ଯଂ ପୁରୁଷଂ ନ ବ୍ୟଥୟନ୍ତି ନାଭିଭବନ୍ତି, ସମେ ଦୁଃଖସୁଖେ ଯସ୍ୟ ତଂ ସ ତୈରବିକ୍ଷିପ୍ୟମାଣୋଧର୍ମଜ୍ଞାନଦ୍ୱାରା ଅମୃତତ୍ୱାୟ ମୋକ୍ଷାୟ କଳ୍ପତେ ଯୋଗ୍ୟୋଭବତି । ୧୫ ।

ପଦବ୍ୟାଖ୍ୟା ।

ଯଂ—ଯେଉଁ, ହି—ନିଶ୍ଚୟ କରି, ନ ବ୍ୟଥୟନ୍ତି—ସନ୍ତପ୍ତ ନ କରନ୍ତି, ଏତେ—ଏହିମାନେ ଅର୍ଥାତ୍ 'ମାତ୍ରାସ୍ପର୍ଶ'ମାନେ, ପୁରୁଷଂ—ପୁରୁଷଙ୍କୁ, ପୁରୁଷର୍ଷଭ—ହେ ପୁରୁଷଶ୍ରେଷ୍ଠ ! , ସମଦୁଃଖସୁଖଂ—ଦୁଃଖ ଓ ସୁଖରେ ଯାହାର ସମାନ ଜ୍ଞାନ ଅର୍ଥାତ୍ ଅହଂକାରରହିତ, ଧୀରଂ—ବୁଦ୍ଧିମାନ୍‌ବ୍ୟକ୍ତି, ସଃ—ସେ, ଅମୃତତ୍ୱାୟ—ମୋକ୍ଷନିମିତ୍ତ, କଳ୍ପତେ—ଯୋଗ୍ୟ ହୁଅନ୍ତି ଅର୍ଥାତ୍ ମୋକ୍ଷରେ ଅଧିକାରୀ ହୁଅନ୍ତି । ୧୫ ।

ଅନୁବାଦ ।

ହେ ପୁରୁଷଶ୍ରେଷ୍ଠ ! ଏହି 'ମାତ୍ରାସ୍ପର୍ଶ' ସବୁ (ଇନ୍ଦ୍ରିୟ ଶକ୍ତିର ସହିତ ବିଷୟସଂଯୋଗମାନ) ଯେଉଁ ଧୀରପୁରୁଷଙ୍କୁ ସନ୍ତପ୍ତ ନ କରନ୍ତି ଓ ଯାହାଙ୍କର ସୁଖ ଦୁଃଖରେ ସମାନ ଜ୍ଞାନ, ସେହି ବ୍ୟକ୍ତି ମୁକ୍ତିର ଯୋଗ୍ୟ ହୁଅନ୍ତି । ୧୫ ।

ବିଶଦବ୍ୟାଖ୍ୟା ।

ଏ ଶ୍ଲୋକରେ (ପୁରୁଷର୍ଷଭ) ହେ ପୁରୁଷଶ୍ରେଷ୍ଠ ! ଏପରି ସମ୍ବୋଧନ ଅଛି । ପୁରରେ ବାସ କରିବା ବ୍ୟକ୍ତିଙ୍କୁ 'ପୁରୁଷ' ବୋଲାଯାଏ । 'ପୁର' ଶବ୍ଦର ଅର୍ଥ ନିମ୍ନଲିଖିତ ଶ୍ଲୋକରୁ ବୁଝାଯିବ । ଯଥା;—

Digitized by PPRACHIN, SOA

"କର୍ମେନ୍ଦ୍ରିୟାଣି ଖଲୁ ପଞ୍ଚ ତଥାପରାଣି, ଜ୍ଞାନେନ୍ଦ୍ରିୟାଣି ମନଆଦି ଚତୁଷ୍ଟୟଂ ଚ ।
ପ୍ରାଣାଦି ପଞ୍ଚକମଥୋବିୟଦାଦିକଂ ଚ, କାମଶ୍ଚ କର୍ମ ଚ ତମଃ ପୁନରଷ୍ଟମୀପୂଃ ।"

୧ କର୍ମେନ୍ଦ୍ରିୟ (ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ), ୨ ଜ୍ଞାନେନ୍ଦ୍ରିୟ (ଶ୍ରୋତ୍ର, ନେତ୍ର, ନାସା, ଜିହ୍ୱା ଓ ଚର୍ମ), ୩ ଅନ୍ତଃକରଣ (ମନ, ବୁଦ୍ଧି, ଚିତ୍ତ ଓ ଅହଂକାର), ୪ ପ୍ରାଣ (ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ), ୫ ଭୂତ (କ୍ଷିତି, ଅପ୍, ତେଜ, ବାୟୁ ଓ ଆକାଶ), ୬ କାମ, ୭ କର୍ମ, ୮ ତମଃ (ଅବିଦ୍ୟା), ଏହି ଅଷ୍ଟ ପ୍ରକାର ପଦାର୍ଥନିର୍ମିତ ପୁରରେ ଅର୍ଥାତ୍ ଶରୀରରେ ଯେ ବାସ କରନ୍ତି ତାହାଙ୍କ ନାମ 'ପୁରୁଷ' ଅର୍ଥାତ୍ ଆତ୍ମା । ସେହି ଆତ୍ମା ସେ ଅଷ୍ଟପୁରରୁ ପୃଥକ୍ । ଯେପରି ରକ୍ତବର୍ଣ୍ଣ ଜବାପୁଷ୍ପ (ମନ୍ଦାର) ନିର୍ମଳ ସ୍ଫଟିକ ନିକଟରେ ରହିଲେ ମନ୍ଦାରର ରକ୍ତବର୍ଣ୍ଣ ସ୍ଫଟିକରେ ପ୍ରତିବିମ୍ବିତ ହେବାରୁ ସ୍ଫଟିକ ରକ୍ତବର୍ଣ୍ଣ ଦିଶେ, ସେହିପରି ସୁଖଦୁଃଖରୂପ ଅନ୍ତଃକରଣର ଧର୍ମ, ସ୍ୱଚ୍ଛ ଓ ଗୁଣ କର୍ମବିବର୍ଜିତ ଆତ୍ମାରେ ଭ୍ରମବଶରୁ ଆରୋପିତ ହୁଏ ଅର୍ଥାତ୍ ଆତ୍ମା ସୁଖ ବା ଦୁଃଖ ଭୋଗ କରେ ବୋଲି ଲୋକଙ୍କର ପ୍ରତୀତି ଜନ୍ମେ, କିନ୍ତୁ ବାସ୍ତବରେ ତାହା ନୁହେ । ପ୍ରମାଣ ଯଥା;—

"ସୂର୍ଯ୍ୟୋଯଥା ସର୍ବଲୋକସ୍ୟ ଚକ୍ଷୁର୍ନ ଲିପ୍ୟତେ ଚକ୍ଷୁଷୈର୍ବାହ୍ୟଦୋଷୈଃ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା, ନ ଲିପ୍ୟତେ ଲୋକଦୁଃଖେନ ବାହ୍ୟଃ" ଶ୍ରୁତିଃ ।

ସୂର୍ଯ୍ୟ ଯେପରି ଜଗତର ପ୍ରକାଶକ ହେଲେ ସୁଦ୍ଧା ଜଗତର ଚକ୍ଷୁଷ ବାହ୍ୟଦୋଷରେ ଲିପ୍ତ ନୁହନ୍ତି ଅର୍ଥାତ୍ ଚକ୍ଷୁର ଦର୍ଶନଜନିତ ଗୁଣଦୋଷରେ ସୂର୍ଯ୍ୟ ଭାଗୀ ନୁହନ୍ତି, ସେହିପରି ଏକ ଅଦ୍ୱିତୀୟ ସର୍ବଭୂତରେ ବିଦ୍ୟମାନ ଆତ୍ମା ସୁଖଦୁଃଖାଦି ଅନ୍ତଃକରଣର ବାହ୍ୟଦୋଷରେ ଲିପ୍ତ ହୁଅନ୍ତି ନାହିଁ ।

ଏ ଶ୍ଲୋକରେ 'ପୁରୁଷର୍ଷଭ' ପଦଦ୍ୱାରା ଅର୍ଜ୍ଜୁନଙ୍କୁ ସମ୍ବୋଧନ କରିବାରେ, ଭଗବାନ୍ ଏହା ସୂଚନା କଲେ ଯେ, ତୁମ୍ଭେ ସ୍ୱପ୍ରକାଶ, ଚୈତନ୍ୟସ୍ୱରୂପ ଓ ପରମାନନ୍ଦରୂପ ଶ୍ରେଷ୍ଠତାପୂର୍ଣ୍ଣ ଅଟ । ତୁମ୍ଭର ସୁଖଦୁଃଖାଦି ଦ୍ୱନ୍ଦ୍ୱ କଳ୍ପନା କରିବା ଉଚିତ ନୁହେ । ୧୫ ।

ଶ୍ଲୋକଃ ।

ନାସତୋ ବିଦ୍ୟତେ ଭାବୋ, ନାଭାବୋ ବିଦ୍ୟତେ ସତଃ ।
ଉଭୟୋରପି ଦୃଷ୍ଟୋଽନ୍ତ, ସ୍ତ୍ୱନୟୋସ୍ତତ୍ତ୍ୱଦର୍ଶିଭିଃ । ୧୬ ।

ଅନ୍ୱୟଃ ।

ଅସତଃ ଭାବଃ ନ ବିଦ୍ୟତେ, ସତଃ ଅଭାବଃ ନ (ବିଦ୍ୟତେ) ତୁ ତତ୍ତ୍ୱଦର୍ଶିଭିଃ ଅନୟୋଃ ଉଭୟୋଃ ଅପି ଅନ୍ତଃ ଦୃଷ୍ଟଃ । ୧୬ ।

## ଟୀକା ।

ନନୁ ତଥାପି ଶୀତୋଷ୍ଣାଦିକମତଦୁଃସହଂ କଥଂ ସୋଢ଼ବ୍ୟଂ ଅତ୍ୟନ୍ତଂ ତତ୍ସହନେ ଚ କଦାଚିତ୍ ଆତ୍ମନୋନାଶଃ ସ୍ୟାଦିତ୍ୟାଶଂକ୍ୟ ତତ୍ତ୍ୱବିଚାରତଃ ସର୍ବଂ ସୋଢ଼ୁଂ ଶକ୍ୟମିତ୍ୟାଶୟେନାହ, ନାସତୋବିଦ୍ୟତେ ଇତି ଅସତୋଽନାତ୍ମଧର୍ମତ୍ୱାଦବିଦ୍ୟମାନସ୍ୟ ଶୀତୋଷ୍ଣାଦେରାତ୍ମନି ଭାବଃ ସତ୍ତା ନ ବିଦ୍ୟତେ । ତଥା ସତଃ ସତ୍ସ୍ୱଭାବସ୍ୟାତ୍ମନୋଽଭାବୋ ବିନାଶୋ-

ନ ବିଦ୍ୟତେ । ଏବମୁଭୟୋଃ ସଦସତୋରନ୍ତୋ ନିର୍ଣ୍ଣୟୋ ଦୃଷ୍ଟଃ, କୈଃ ତତ୍ତ୍ୱଦର୍ଶିଭିଃ ବସ୍ତୁଯାଥାର୍ଥ୍ୟବେଦିଭିଃ ଏବଂଭୂତଦବେ-ଦେନ ସହସ୍ରେତ୍ୟର୍ଥଃ । ୧୬ ।

### ପଦବ୍ୟାଖ୍ୟା ।

ନ—ନାହିଁ, ଅସତଃ—ଅନିତ୍ୟ ପଦାର୍ଥର, ବିଦ୍ୟତେ—ଅଛି, ଭାବଃ—ସ୍ଥିତି ଅର୍ଥାତ୍ ରହିବା, ନ—ନାହିଁ, ଅଭାବଃ—ନାଶ, ବିଦ୍ୟତେ—ଅଛି, ସତଃ—ନିତ୍ୟପଦାର୍ଥର, ଉଭୟୋରପି—ଦୁହିଙ୍କର ମଧ, ଦୃଷ୍ଟଃ—ଦେଖିଅଛନ୍ତି, ଅନ୍ତଃ—ନିର୍ଣ୍ଣୟରୂପ—ସୀମାରୂ, ତୁ—ପୁଣି, ଅନୟୋଃ—ଏହି, ତତ୍ତ୍ୱଦର୍ଶିଭିଃ—ତତ୍ତ୍ୱଜ୍ଞାନିମାନେ । ୧୬ ।

### ଅନୁବାଦ ।

ଅସତ୍‌ପଦାର୍ଥର ସତ୍ତା ନାହିଁ ଓ ସତ୍‌ପଦାର୍ଥର ବିନାଶ ନାହିଁ । ତତ୍ତ୍ୱଦର୍ଶିପୁରୁଷମାନେ ସତ୍ ଅସତ୍ ଏ ଦୁହିଙ୍କର ସୀମା ଦେଖିଅଛନ୍ତି ଅର୍ଥାତ୍ ନିର୍ଣ୍ଣୟ କରିଅଛନ୍ତି । ୧୬ ।

### ବିଶଦବ୍ୟାଖ୍ୟା ।

ଏପରି ଆଶଙ୍କା ହୋଇପାରେ—ଯଦି ସତ୍‌ସ୍ୱରୂପ ଆତ୍ମା ଏକ ହେଲା ତେବେ ସେହି ସତ୍‌ସ୍ୱରୂପ ଆତ୍ମାରେ ପ୍ରତିଭାସମାନ ଏହି ସଂସାର ମଧ୍ୟ ସତ୍ୟ ଏବଂ ଏହି ସଂସାରରେ ବିଦ୍ୟମାନ ସୁଖ ଦୁଃଖ ଶୀତୋଷ୍ଣାଦି ଅବଶ୍ୟ ଭୋଗ କରିବାକୁ ହେବ । ଏହା ଜ୍ଞାନଦ୍ୱାରା କିପରି ନିବୃତ୍ତ ହେବ? କାହିଁକିନା ତାହାହେଲେ ଜ୍ଞାନଦ୍ୱାରା ଆତ୍ମାର ମଧ୍ୟ ନିବୃତ୍ତି ହୋଇ ଯାଇ ପାରେ । ଏହାର ସମାଧାନପାଇଁ ଶ୍ରୀଭଗବାନ୍ ଏହିପରି ସଙ୍କେତ କଲେ ଯେ, ଶୁକ୍ତିରେ ରଜତଜ୍ଞାନ ଯେପରି କଳ୍ପିତ ଆରୋପମାତ୍ର, ପ୍ରକୃତ ସେଥିରେ ରଜତତ୍ୱ ନାହିଁ; ସେହିପରି ଏ ଜଗତ୍ ପ୍ରପଞ୍ଚ ସତ୍ ଆତ୍ମାରେ କଳ୍ପନା ମାତ୍ର । ଜ୍ଞାନଦ୍ୱାରା ଆତ୍ମାର ଓ ସଂସାରର ସ୍ୱରୂପ ଜଣା ଗଲେ ସଂସାରର ସତ୍ୟତାରୂପ ଭ୍ରମ ନିବୃତ୍ତ ହୁଏ । ଆଉ କାଳେ ଅର୍ଜ୍ଜୁନଙ୍କର ଏପରି ସଂଶୟ ହୁଏ ଯେ ଆତ୍ମା ଓ ଅନାତ୍ମା (ଜଗତ୍) ଏ ଦୁହିଙ୍କର ଯଦି ସ୍ୱରୂପ ଜଣା ହୁଏ ତେବେ ଆତ୍ମା ଓ ଜଗତ୍ ଉଭୟହିଁ ସତ୍ୟ ଅଥବା ଉଭୟହିଁ ଅସତ୍ୟ ନ ହେବେ କାହିଁକି ? ଏଥିପାଇଁ ଭଗବାନ୍ କହୁଅଛନ୍ତି ଯେ ଯାହା ଦେଶ, କାଳ ଓ ବସ୍ତୁପରିଚ୍ଛେଦର ଅଧୀନ ତାହା 'ଅସତ୍' ।

ଯାହା ଅନ୍ୟ ସ୍ଥାନରେ ନାହିଁ ଏଠାରେ ଅଛି ଦେଶପରିଚ୍ଛେଦ ହେତୁ ତାହା ଅସତ୍ । ଯାହା ପୂର୍ବରେ ନ ଥିଲା ବର୍ତ୍ତମାନ ଅଛି ଓ ପରେ ରହିବ ନାହିଁ ତାହା କାଳପରିଚ୍ଛେଦର ଅଧୀନ ହେବାରୁ 'ଅସତ୍' । ବସ୍ତୁପରିଚ୍ଛେଦ ପୁଣି ତିନିପ୍ରକାର । ଯଥା—ସଜାତୀୟ ଭେଦ, ବିଜାତୀୟ ଭେଦ ଓ ସ୍ୱଗତ ଭେଦ । ଆମ୍ର ଓ ଜମ୍ବୁବୃକ୍ଷ ମଧ୍ୟରେ ଯେଉଁ ଭେଦ ତାହା ସଜାତୀୟ ଭେଦ, ପାଷାଣ ଓ ବୃକ୍ଷ ମଧ୍ୟରେ ଯେଉଁ ଭେଦ ତାହା ବିଜାତୀୟ ଏବଂ ବୃକ୍ଷର ଶାଖା, ପତ୍ର ଓ ପୁଷ୍ପାଦି ମଧ୍ୟରେ ଯେ ପ୍ରଭେଦ ତାହା ସ୍ୱଗତ ଭେଦ । ଅଥବା ଜୀବ ଓ ଈଶ୍ୱର ମଧ୍ୟରେ (ସଜାତୀୟ) ଭେଦ, ଜୀବ ଓ ଜଗତର (ବିଜାତୀୟ) ଭେଦ, ଜୀବ ମଧ୍ୟରେ ପରସ୍ପର (ସ୍ୱଗତ) ଭେଦ, ଈଶ୍ୱର ଓ ଜଗତ୍ ମଧ୍ୟରେ (ବିଜାତୀୟ) ଭେଦ, ଜଗତର ପରସ୍ପର (ସ୍ୱଗତ) ଭେଦ, ଏହି ପଞ୍ଚପ୍ରକାର ଭେଦର ନାମ ବସ୍ତୁପରିଚ୍ଛେଦ । ଉକ୍ତ ଭେଦମାନଙ୍କ ମଧ୍ୟରୁ କୌଣସି ଏକପ୍ରକାର ଭେଦ ଯେଉଁ ପଦାର୍ଥରେ ଦେଖାଯାଏ ତାହା ଅସତ୍ । ଏହି ଲକ୍ଷଣ ଅନୁ-

Digitized by PPRACHIN, SOA

ଯାରେ ଜଗତ୍ ଅସତ୍ ଏହା ସିଦ୍ଧ ହେଲା, କିନ୍ତୁ ସମସ୍ତ କାରଣର କାରଣରୂପରେ ବିଦ୍ୟମାନ ବିଶୁଦ୍ଧସତ୍ତା (ଈଶ୍ୱର) କେବଳ ସତ୍ ଓ ତହିଁରେ ଅବସ୍ଥା ଅନୁସାରେ ଅନୁଭବଦ୍ୱାରା ଜ୍ଞାତ, ଓ ସମୟବିଶେଷରେ ଆଉ ଦେଶ ବା ପାତ୍ରବିଶେଷରେ ପ୍ରକାଶିତ ସମସ୍ତ ବ୍ୟାପାର ଅସତ୍ । ଯଥା —ଜଳ ସତ୍ କିନ୍ତୁ ଜଳର ତରଙ୍ଗ ଅବସ୍ଥାବିଶେଷରେ ପ୍ରକାଶିତ ହେଲେ ସୁଦ୍ଧା, ସବୁ ସମୟରେ ତରଙ୍ଗ ହୋଇ ନ ଥିବାରୁ, କାଳପରିଚ୍ଛେଦ ହେତୁରୁ ତାହା ଅସତ୍ । ଈଷତ୍ ଅନ୍ଧକାର 'ସମୟ'ରେ ରଜ୍ଜୁରେ ସର୍ପ ଭ୍ରମ ଅସତ୍ । କାହିଁକି ନା ସେହି ସର୍ପଭ୍ରମ ଅନ୍ଧକାର ନ ଥିବା ସମୟରେ ରହିପାରେ ନାହିଁ । ସେହିପରି ଭିନ୍ନ ଦେଶରେ ପ୍ରଚଳିତ ଦେଶାଚାର ଦେଶ-ପରିଚ୍ଛେଦ ହେତୁ ଅସତ୍ ଏବଂ ନୀଳ ବା ରକ୍ତବର୍ଣ୍ଣ 'ପାତ୍ର'ରେ ଜଳ ରଖିଲେ ଜଳର ବର୍ଣ୍ଣ ନୀଳ ବା ରକ୍ତ ଦିଶେ, ମାତ୍ର ସେହି ନୀଳ ବା ରକ୍ତବର୍ଣ୍ଣ ଦେଶପରିଚ୍ଛେଦ ହେତୁରୁ ଅସତ୍ । ସତ୍ ପଦାର୍ଥରେ ଆରୋପିତ ଅସତ୍‌ଭାବ ନିବୃତ୍ତ ହେଲେ ସେହି ସତ୍‌ପଦାର୍ଥର ସ୍ୱରୂପ ଜଣା ହୁଏ । ସେହିପରି ଆତ୍ମାରେ ଆରୋପିତ ଦେହାଦି ବା 'ଅହଂ' 'ମମ' ପ୍ରଭୃତି ଅଭିମାନ ନିବୃତ୍ତ ହେଲେ ଆତ୍ମାର ସ୍ୱରୂପ ଜଣାଯାଏ । ଅନାତ୍ମ ପଦାର୍ଥର ସ୍ୱରୂପ ଜାଣିବାର ଅର୍ଥ ଏହି ଯେ ତାହା (ଅନାତ୍ମ ପଦାର୍ଥ) ଭ୍ରମାତ୍ମକ । ସୁତରାଂ ଅନାତ୍ମ ପଦାର୍ଥର ସ୍ୱରୂପ ଜଣା ଗଲେ ତାହା ସତ୍ୟ ହେବ କିପରି? ଆଉ ଅବିନାଶୀ ଆତ୍ମା ବା ଅସତ୍ୟ ହେବ କିପରି? ତତ୍ତ୍ୱଦର୍ଶୀ ପୁରୁଷମାନେ ସତ୍ ଓ ଅସତ୍ ପଦାର୍ଥର ସ୍ୱରୂପ ଏହିପରି ନିରୂପଣ କରିଅଛନ୍ତି । ୧୬ ।

ଶ୍ଳୋକଃ ।

ଅବିନାଶି ତୁ ତଦ୍ୱିଦ୍ଧି, ଯେନ ସର୍ବମିଦଂ ତତଂ ।
ବିନାଶମବ୍ୟୟସ୍ୟାସ୍ୟ, ନ କଶ୍ଚିତ୍ କର୍ତ୍ତୁମର୍ହତି । ୧୭ ।

ଅନ୍ୱୟଃ ।

ଯେନ ଇଦଂ ସର୍ବଂ ତତଂ ତତ୍ ଅବିନାଶି ବିଦ୍ଧି । ଅସ୍ୟ ଅବ୍ୟୟସ୍ୟ ବିନାଶଂ କର୍ତ୍ତୁଂ କଶ୍ଚିତ୍ ନ ଅର୍ହତି । ୧୭ ।

ଟୀକା ।

ତତ୍ର ସତ୍‌ସ୍ୱଭାବମବିନାଶିବସ୍ତୁ ସାମାନ୍ୟେନୋକ୍ତଂ ବିଶେଷତୋଦର୍ଶୟତି । ଅବିନାଶୀତି । ଯେନ ସର୍ବମିଦ-ମାଗମାପାୟଧର୍ମାତ୍ମକଂ ଦେହାଦି ତତଂ ସାକ୍ଷିତ୍ୱେନ ବ୍ୟାପ୍ତଂ ତତ୍ ଆତ୍ମସ୍ୱରୂପଂ ଅବିନାଶି ବିନାଶଶୂନ୍ୟଂ ବିଦ୍ଧି, ଜାନୀହି, ତତ୍ର ହେତୁମାହ । ବିନାଶମିତି । ୧୭ ।

ପଦବ୍ୟାଖ୍ୟା ।

ଅବିନାଶି—ଯାହାଙ୍କର ବିନାଶ ନାହିଁ, ତୁ—ନିଶ୍ଚୟରୂପେ, ତଦ୍ୱିଦ୍ଧି—ତାହାଙ୍କୁ ଜାଣ, ଯେନ—ଯାହାଙ୍କଦ୍ୱାରା, ସର୍ବଂ—ସମସ୍ତ, ଇଦଂ—ଏହି ସଂସାର, ତତଂ—ବ୍ୟାପ୍ତ ହୋଇଅଛି, ବିନାଶଂ—ନିଧନ ବା ମୃତ୍ୟୁ, ଅବ୍ୟୟସ୍ୟ—କ୍ଷୟରହିତ, ଅସ୍ୟ—ଏହାଙ୍କର, ନ—ନାହିଁ, କଶ୍ଚିତ୍—କେହି, କର୍ତ୍ତୁଂ—କରିବାକୁ ଅର୍ହତି—ଯୋଗ୍ୟ ହୁଏ । ୧୭ ।

ଅନୁବାଦ ।

ଯେ ସବୁଠାରେ ବ୍ୟାପିଅଛନ୍ତି ସେହି ଆତ୍ମାଙ୍କୁ 'ଅବିନାଶୀ' ବୋଲି ଜାଣ । କୌଣସି ବ୍ୟକ୍ତି ସେହି ଅବିନାଶୀ ପୁରୁଷଙ୍କର ବିନାଶ କରିବାକୁ ସମର୍ଥ ହୁଏ ନାହିଁ । ୧୭ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଯଦି ସତ୍‌ସ୍ୱରୂପର ପ୍ରକାଶରେ ଜଗତର ଅସ୍ତିତ୍ୱ ସ୍ୱୀକାର କରାଯାଏ ତେବେ ଜଗତର ଦେଶ କାଳ ଓ ବସ୍ତୁପରିଚ୍ଛେଦରୂପ ବିନାଶଧର୍ମ ସତ୍‌ସ୍ୱରୂପରେ ଆରୋପିତ ନ ହେବ କାହିଁକି ? ଅର୍ଜ୍ଜୁନଙ୍କର ଏହି ଭ୍ରାନ୍ତି ନିବାରଣପାଇଁ ଭଗବାନ୍ ଏ ଶ୍ଲୋକର ଅବତାରଣା କଲେ । ଈଷତ୍ ଅନ୍ଧକାରଚ୍ଛନ୍ନ ସ୍ଥାନରେ ରଜ୍ଜୁକୁ ସର୍ପ ବା ଦଣ୍ଡ ବୋଲି ପ୍ରତୀତ ହୁଏ । ରଜ୍ଜୁ କିନ୍ତୁ ସେଠାରେ ପ୍ରକୃତରେ ସର୍ପ ବା ଦଣ୍ଡରେ ପରିଣତ ହୋଇ ନାହିଁ । କେବଳ ଦର୍ଶକର ଚକ୍ଷୁର ଦୋଷରେ ତାହା ସେପରି ଦିଶୁଅଛି । ସେହିପରି ସର୍ବଥା ପରିଚ୍ଛେଦରହିତ ସଦ୍‌ବସ୍ତୁରୂପ ପ୍ରକାଶରେ ଯେଉଁ କଳ୍ପିତ ଉତ୍ପତ୍ତି ଓ ବିନାଶଧର୍ମ ଆରୋପିତ ହୁଏ ତାହା ଇନ୍ଦ୍ରିୟମାନଙ୍କର ବିଷୟବୃତ୍ତି ସହିତ ସଂଯୋଗ ବା ବିଯୋଗରୁ ଜାତ ହୁଏ, ପ୍ରକୃତରେ ସତ୍‌ରୂପ ପ୍ରକାଶର ଉତ୍ପତ୍ତି ବା ବିନାଶ ନାହିଁ । ନିଦ୍ରା ସମୟରେ ଅନ୍ତଃକରଣର କ୍ରିୟାକଳାପ ନିରୁଦ୍ଧ ହେଲେ ଏହି ପରିଚ୍ଛେଦମୟ ଜଗତ୍ ପ୍ରପଞ୍ଚ ସମ୍ବନ୍ଧରେ ତିଳମାତ୍ର ଜ୍ଞାନ ନ ଥାଏ, କିନ୍ତୁ ସଦ୍‌ବସ୍ତୁର ଅସ୍ତିତ୍ୱ ବିଷୟରେ କିଞ୍ଚିତ୍‌ମାତ୍ର ବ୍ୟାଘାତ ଜନ୍ମେ ନାହିଁ । ନିଦ୍ରାକାଳରେ ଆତ୍ମସତ୍ତାର ଯେବେ ବିନାଶ ହେଉଥାନ୍ତା ତେବେ ଜୀବ ଜାଗ୍ରତ ହୋଇ 'ମୁଁ ଏତେବେଳ ଯାଏ ଶୋଇଥିଲି' ଏହା କେବେ ଅନୁଭବ କରି ପାରନ୍ତା ନାହିଁ ଏବଂ ନିଦ୍ରା ପୂର୍ବରେ ଯେଉଁ 'ମୁଁ' ଥିଲି ପୁନର୍ବାର ଜାଗ୍ରଦଦଶାରେ ମଧ୍ୟ ସେହି 'ମୁଁ' ଅଛି ଏହା ବୁଝିବାକୁ ସମର୍ଥ ହୁଅନ୍ତା ନାହିଁ । ଅତଏବ ଆତ୍ମାର ଅର୍ଥାତ୍ ଚିତ୍‌ପ୍ରକାଶରୂପ ଅନନ୍ତସତ୍ତାର କେବେ ବିନାଶ ନାହିଁ । ଆତ୍ମାରେ ଅନ୍ତଃକରଣର କ୍ରିୟାଶକ୍ତି ପ୍ରତିବିମ୍ବିତ ହୋଇ ଏହି ପ୍ରପଞ୍ଚ ଜଗତର କଳ୍ପନା କରୁଅଛି । ଏହି କଳ୍ପନା ଅସତ୍ ଏବଂ ଏହା ଯେ ପରିଚ୍ଛେଦହୀନ ହୋଇ ସର୍ବଦା ରହିବ ତାହା କେବେହେଁ ସମ୍ଭବ ନୁହେଁ । ଯାହା ସତ୍ ତାହା ନିତ୍ୟ, ଅବ୍ୟୟ ଓ ଅନନ୍ତ । ବିନାଶ ବା ଉତ୍ପତ୍ତି ସଦ୍‌ବସ୍ତୁର ଧର୍ମ ନୁହେଁ, ଏହା ରଜ୍ଜୁରେ ସର୍ପଜ୍ଞାନ ପରି ଔପାଧିକ ଅର୍ଥାତ୍ କାଳ୍ପନିକମାତ୍ର । ୧୭ ।

ଶ୍ଲୋକଃ ।

ଅନ୍ତବନ୍ତ ଇମେ ଦେହା, ନିତ୍ୟସ୍ୟୋକ୍ତାଃ ଶରୀରିଣଃ ।
ଅନାଶିନୋଽପ୍ରମେୟସ୍ୟ, ତସ୍ମାଦ୍ୟୁଧ୍ୟସ୍ୱ ଭାରତ । ୧୮ ।

ଅନ୍ୱୟଃ ।

ଅନାଶିନଃ ଅପ୍ରମେୟସ୍ୟ ନିତ୍ୟସ୍ୟ ଶରୀରିଣଃ ଇମେ ଦେହାଃ ଅନ୍ତବନ୍ତଃ ଉକ୍ତାଃ ହେ ଭାରତ ! ତସ୍ମାତ୍ ଯୁଧ୍ୟସ୍ୱ । ୧୮ ।

ଟୀକା ।

ଅତଃ ସ୍ୱଧର୍ମଂ ପରିତ୍ୟଜ୍ୟ । ଅନ୍ତବନ୍ତ ଇତି । ନିତ୍ୟସ୍ୟ ସର୍ବଦୈକରୂପସ୍ୟ ଅତଏବାନାଶିନଃ ଅପ୍ରମେୟସ୍ୟା ପରିଚ୍ଛିନ୍ନସ୍ୟାତ୍ମନ ଇମେ ସୁଖଦୁଃଖାଦିଧର୍ମକାଦେହା ଉକ୍ତାଃ ତତ୍ତ୍ୱଦର୍ଶିଭିଃ । ଯସ୍ମାଦେବାତ୍ମନୋନ ବିନାଶଃ ନ ଚ ସୁଖଦୁଃଖାଦିସମ୍ବନ୍ଧଃ ତସ୍ମାନ୍ମୋହଜଂ ଶୋକଂ ତ୍ୟକ୍ତ୍ୱା ଯୁଧ୍ୟସ୍ୱ ସ୍ୱଧର୍ମଂ ମାତ୍ୟାକ୍ଷୀରିତ୍ୟର୍ଥଃ । ୧୮ ।

ପଦବ୍ୟାଖ୍ୟା ।

ଅନ୍ତବନ୍ତଃ—ବିନାଶବିଶିଷ୍ଟ, ଇମେ ଦେହାଃ—ଏହି ଶରୀରମାନେ, ନିତ୍ୟସ୍ୟ—ସର୍ବଦା ଏକରୂପ, ଉକ୍ତାଃ—କଥିତ-

ଅଛି, ଶରୀରଣଃ—ଆତ୍ମାର, ଅନାଶିନଃ—ବିନାଶରହିତ, ଅପ୍ରମେୟସ୍ୟ—ଜ୍ଞାନାତୀତ, ତସ୍ମାତ୍—ସେହିକାରଣରୁ, ଯୁଧ୍ୟସ୍ୱ—ଯୁଦ୍ଧକର, ଭାରତ—ହେ ଭରତବଂଶଜ ! (ଅର୍ଜ୍ଜୁନ) । ୧୮ ।

ଅନୁବାଦ ।

ନିତ୍ୟ, ଅବିନାଶୀ ଓ ଜ୍ଞାନାତୀତ ଆତ୍ମାର ଏହି ଦେହସବୁ ଅନିତ୍ୟ ବୋଲି କଥିତ ଅଛି; ଅତଏବ ହେ ଭରତବଂଶଜ! (ତୁମ୍ଭେ) ଯୁଦ୍ଧ କର । ୧୮ ।

ବିଶଦବ୍ୟାଖ୍ୟା ।

ସ୍ଥୂଳବୁଦ୍ଧି ଜଡ଼ବାଦୀମାନେ ମନେ କରନ୍ତି ;—ଯେପରି ଚୂନ ଏବଂ ଖଇରର ଏକତ୍ରିତ ହେଲେ ସ୍ୱଭାବତଃ ରକ୍ତବର୍ଣ୍ଣର ସଞ୍ଚାର ହୁଏ, ସେହିପରି ପଞ୍ଚଭୂତର ସମଷ୍ଟିରେ ଦେହ ଗଠିତ ହେଲେ ଭୌତିକ ସ୍ୱଭାବରୁ ଚୈତନ୍ୟ (ଆତ୍ମସ୍ଫୁରଣ)ର ପ୍ରକାଶ ହୁଏ । କାଳେ ଅର୍ଜ୍ଜୁନ ଏହି ଭ୍ରମର ବଶବର୍ତ୍ତୀ ହୁଅନ୍ତି ସେଥିପାଇଁ ଭଗବାନ୍ ଏଥିପୂର୍ବରୁ ଷୋଡ଼ଶ ଶ୍ଳୋକରେ "ନାସତୋ ବିଦ୍ୟତେ ଭାବୋ" ଇତ୍ୟାଦି କହି ପୁନର୍ବାର ଏ ଶ୍ଳୋକରେ ବିଶେଷ କରି ବ୍ୟାଖ୍ୟା କରୁଅଛନ୍ତି ।

ଏହି ଶ୍ଳୋକରେ 'ଦେହାଃ' ଏହି ବହୁବଚନାନ୍ତ ପଦଦ୍ୱାରା ଭଗବାନ୍ ସ୍ଥୂଳ, ସୂକ୍ଷ୍ମ ଓ କାରଣରୂପ ସମସ୍ତ ଶରୀରକୁ ଲକ୍ଷ୍ୟ କରିଅଛନ୍ତି । ପଞ୍ଚକୋଷ ମଧ୍ୟ ଶରୀରତ୍ରୟର ଅନ୍ତର୍ଗତ । ଅନ୍ନମୟ କୋଷ ସ୍ଥୂଳଶରୀରର; ପ୍ରାଣମୟ, ମନୋମୟ ଓ ବିଜ୍ଞାନମୟ କୋଷ ସୂକ୍ଷ୍ମଶରୀରର ଏବଂ ଆନନ୍ଦମୟ କୋଷ କାରଣଶରୀରର ଅନ୍ତର୍ଗତ, ଅଥବା ତ୍ରିଲୋକ ମଧ୍ୟରେ ଯେତେ ପ୍ରକାର ପ୍ରାଣିଦେହ ଅଛି ସେ ସମସ୍ତ ଜ୍ୟୋତିଃସ୍ୱରୂପ ଏକ ଆତ୍ମାର ଅଧିଷ୍ଠାନଭୂମି ଏହିପରି ଲକ୍ଷିତ ହୋଇଅଛି । ଯାହା 'ଚିରକାଳ' ଥାଏ ତାହା 'ନିତ୍ୟ' କିନ୍ତୁ ଯଦି ଏପରି ଘଟନା ହୁଏ ଯେ 'କାଳ' ମଧ୍ୟ ଧ୍ୱଂସପ୍ରାପ୍ତ ହୁଏ ତାହା ହେଲେ ଚୈତନ୍ୟର ମଧ୍ୟ 'ବିନାଶ' ଆଶଙ୍କା ହୋଇ ପାରେ, ଏହି ନିମିତ୍ତ ଭଗବାନ୍ ଏ ଶ୍ଳୋକରେ ସଦ୍‌ବସ୍ତୁ 'ନିତ୍ୟ' ଓ 'ଅବିନାଶୀ' ଏହି ବିଶେଷଣଦ୍ୱୟ ଦେଇଅଛନ୍ତି । ଘଟପଟାଦିଙ୍କର ପ୍ରମାଣାଦି ପାଇଁ ଯେପରି ସୂର୍ଯ୍ୟ ପ୍ରକାଶାଦି ପ୍ରୟୋଜନୀୟ ହୁଏ, କିନ୍ତୁ ସୂର୍ଯ୍ୟ ଅନ୍ୟର ଅପେକ୍ଷା ନ କରି ସ୍ୱୟଂ ପ୍ରକାଶିତ ହୁଅନ୍ତି, ସେହିପରି ଚୈତନ୍ୟସ୍ୱରୂପ ଆତ୍ମା ପ୍ରମାଣ ପ୍ରମେୟାଦିର ଅପେକ୍ଷା କରନ୍ତି ନାହିଁ, ଏହି ହେତୁରୁ ସେ 'ଅପ୍ରମେୟ' ।

ଏହି ସ୍ୱପ୍ରକାଶ ଅପ୍ରମେୟ ଆତ୍ମାରେ 'ଅସତ୍' ଭାବ କଦାପି ସମ୍ଭବ ନୁହେ । ଚୈତନ୍ୟ ଜଡ଼ଠାରୁ ଉତ୍ପନ୍ନ ହୁଅନ୍ତି ନାହିଁ ବରଂ ସ୍ୱପ୍ରକାଶ ଚୈତନ୍ୟ ଥିବାରୁ ଜଡ଼ଜଗତର ପ୍ରତୀତ ହୁଏ । ଆତ୍ମସ୍ଫୁରଣ ହେଲେ ଅନ୍ତଃକରଣବୃତ୍ତିସହଯୋଗରେ ଜଗତ୍ ଦେଖାଯାଏ । ଅନ୍ତଃକରଣବୃତ୍ତିସମୂହର ପ୍ରକାଶକ ଆତ୍ମା, ଆତ୍ମା ନିତ୍ୟ, ଅବିନାଶୀ ଓ ସର୍ବବ୍ୟାପୀ । ଆତ୍ମାର ବିନାଶଶଙ୍କାରେ ତୁମ୍ଭେ ଯୁଦ୍ଧରୁ ପରାଙ୍ମୁଖ ହୁଅନା । ଭୀଷ୍ମ ଦ୍ରୋଣଙ୍କର ସ୍ଥୂଳଦେହତ ଅନିତ୍ୟ ଏହା ଅବଶ୍ୟ ବିନଷ୍ଟ ହେବ । ତେବେ ଏତାଦୃଶ ଦେହ ବିଷୟରେ ବୃଥା ନିବୃତ୍ତ ହୋଇ କାହିଁକି ସ୍ୱକୀୟ ଧର୍ମ ନଷ୍ଟ କରୁଅଛ ?

ଏ ଶ୍ଳୋକରେ ଯେ 'ଯୁଧ୍ୟସ୍ୱ' ପଦ ବ୍ୟବହାର କରି ହୋଇଅଛି, ଭଗବାନ୍ ଏହାକୁ

Digitized by PPRACHIN, SOA

'କ୍ଷତ୍ରିୟଧର୍ମ'ର ଦୃଷ୍ଟିବାକ୍ୟ ବୋଲି ବ୍ୟବହାର କର ନାହାନ୍ତି, କାହିଁକନା ଆତ୍ମଜ୍ଞାନ ଉପଦେଶ-ବେଳେ 'ବିଧି ନିଷେଧ' କଥା ହୋଇ ନ ପାରେ । ଅର୍ଜୁନ ପ୍ରଥମେ ଯୁଦ୍ଧରେ ପ୍ରବୃତ୍ତ ହୋଇ ରଣକ୍ଷେତ୍ରକୁ ଆସିଅଛନ୍ତି, ଭଗବାନ୍ କେବଳ ସେହି କାର୍ଯ୍ୟର ପୁନରୁଲ୍ଲେଖ କଲେ । ଯେପରି ଭୂମିକାରେ ପରମାତ୍ମ ଲକ୍ଷଣର ଉଦାହରଣ ଦିଆ ହୋଇଅଛି । ୧୮ ।

ଶ୍ଳୋକଃ ।

ଯ ଏନଂ ବେତ୍ତି ହନ୍ତାରଂ, ଯଶ୍ଚୈନଂ ମନ୍ୟତେ ହତଂ ।
ଉଭୌ ତୌ ନ ବିଜାନୀତୋ, ନାୟଂ ହନ୍ତି ନ ହନ୍ୟତେ । ୧୯ ।

ଅନ୍ୱୟଃ ।

ଯଃ ଏନଂ ହନ୍ତାରଂ ବେତ୍ତି ଚ ଯଃ ଏନଂ ହତଂ ମନ୍ୟତେ, ତୌ ଉଭୌ ନ ବିଜାନୀତଃ ଅୟଂ ନ ହନ୍ତି ନ ହନ୍ୟତେ । ୧୯ ।

ଟୀକା ।

ତଦେବ ଭୀଷ୍ମାଦି-ମୃତ୍ୟୁନିମିତ୍ତଶୋକୋ ନିବାରିତଃ । ଯତ୍ତୁ ଆତ୍ମନୋ ହନ୍ତୃତ୍ୱନିମିତ୍ତଂ ଦୁଃଖମୁକ୍ତଂ ଏତାନ୍ନ ହନ୍ତୁମିଚ୍ଛାମୀତ୍ୟାଦିନା ତଦପି ତଦ୍ୱଦେବ ନିର୍ନିମିତ୍ତମିତ୍ୟାହ ଯ ଏନମିତ୍ୟାଦି । ଏନମାତ୍ମାନଂ ଅତ୍ମନୋ ହନନକ୍ରିୟାୟାଂ କର୍ମତ୍ୱବତ୍ କର୍ତ୍ତୃତ୍ୱମପି ନାସ୍ତୀତ୍ୟର୍ଥଃ । ତତ୍ର ହେତୁର୍ନାୟମିତି । ୧୯ ।

ପଦବ୍ୟାଖ୍ୟା ।

ଯଃ—ଯେ, ଏନଂ—ଏହି ଆତ୍ମାଙ୍କୁ, ବେତ୍ତି—ଜାଣେ, ହନ୍ତାରଂ—ବଧକାରୀ, ଯଶ୍ଚ—ଯେ ପୁଣି, ଏନଂ—ଏହାଙ୍କୁ, ମନ୍ୟତେ—ଜାଣେ, ହତଂ—ହନାଶିତ, ଉଭୌ ତୌ—ସେ ଦୁହେଁ, ନ ବିଜାନୀତଃ—ନିଶ୍ଚୟ କରି ଜାଣନ୍ତି ନାହିଁ, ନାୟଂ ହନ୍ତି—ଏ ମାରନ୍ତି ନାହିଁ, ନ ହନ୍ୟତେ—ମରନ୍ତି ନାହିଁ । ୧୯ ।

ଅନୁବାଦ ।

ଯେ ଏହି ଆତ୍ମାଙ୍କୁ 'ମାରଲା' ବୋଲି ଜାଣେ ଓ ଯେ ଏହାଙ୍କୁ 'ମଲା' ବୋଲି ଜାଣେ ସେ ଦୁହେଁ ଜାଣନ୍ତି ନାହିଁ । କାହିଁକି ନା ଆତ୍ମା କାହାରିକି ମାରନ୍ତି ନାହିଁ କି କାହାରଦ୍ୱାରା ମରନ୍ତି ନାହିଁ । ୧୯ ।

ବିଶଦବ୍ୟାଖ୍ୟା ।

କାଳେ ଅର୍ଜୁନ ମନେ କରିବେ, ଯେ ପୂର୍ବଶ୍ଳୋକମାନଙ୍କରେ 'ଶୋକ କରିବା ଉଚିତ ନୁହେ' ଏପରି ଉପଦେଶ ଦିଆ ଯାଇଅଛି ସତ, ମାତ୍ର କାହାରିକି ବଧ କଲେ ଯେ 'ପାପ' ହେବ ନାହିଁ ସେପରି କୌଣସି ଉପଦେଶ ଏପର୍ଯ୍ୟନ୍ତ ଦିଆ ଯାଇ ନାହିଁ ; ତେବେ ଯୁଦ୍ଧ କରିବା ଅନୁଚିତ, ଅଥବା ଜୀବହତ୍ୟା କରିବା ଯେପରି 'ପାପ', ଜୀବହତ୍ୟା କରିବାକୁ ଉପଦେଶ ଦେବା ମଧ୍ୟ ସେହିପରି 'ପାପ', ଅତଏବ ଭଗବାନଙ୍କର ଉପଦେଶ ଦେବା ମଧ୍ୟ ଉଚିତ ନୁହେ । ଏଥିପାଇଁ ଭଗବାନ୍ କହିଲେ, ଯେ ଆତ୍ମାକୁ ମାରଲା ବା ମଲା ବୋଲି ମନେ କରେ ସେ ଅଜ୍ଞାନୀ, କାହିଁକନା ଆତ୍ମା କାହାରିକି ମାରନ୍ତି ନାହିଁ ଓ କାହାରଦ୍ୱାରା ମରନ୍ତି ନାହିଁ । ଆତ୍ମା-

Digitized by PPRACHIN, SOA

ନିତ୍ୟ ଅଚ୍ଛେଦ୍ୟ ଓ ଅବିନାଶୀ ଅଟନ୍ତି । ଯେବେ ଆତ୍ମାଙ୍କର ବିନାଶ ନାହିଁ ତେବେ ମାରିଲା ଲୋକର ବା ମାରିବାକୁ ଉପଦେଶ ଦେବା ବ୍ୟକ୍ତିର ଆଉ ପାପ ହେବ କିପରି ? । ୧୯ ।

ଶ୍ଳୋକଃ ।

ନ ଜାୟତେ ମ୍ରିୟତେ ବା କଦାଚିତ୍, ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ ।
ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ, ନ ହନ୍ୟତେ ହନ୍ୟମାନେ ଶରୀରେ ।୨୦।

ଅନ୍ୱୟଃ ।

ଅୟଂ ( ଆତ୍ମା ) କଦାଚିତ୍ ନ ଜାୟତେ ବା ନ ମ୍ରିୟତେ । ଭୂତ୍ୱା ଭୂୟଃ ନ ଭବିତା । ଅୟଂ ଅଜଃ ନିତ୍ୟଃ ଶାଶ୍ୱତଃ ପୁରାଣଃ, ଶରୀରେ ହନ୍ୟମାନେ ନ ହନ୍ୟତେ । ୨୦ ।

ଟୀକା ।

ନ ହନ୍ୟତ ଇତ୍ୟେତଦେବ ଷଡ୍‌ଭାବବିକାରଶୂନ୍ୟତ୍ୱେନ ଦ୍ରଢୟତି । ନେତି । ନ ଜାୟତ ଇତି ଜନ୍ମପ୍ରତିଷେଧଃ, ନ ମ୍ରିୟତେ ଇତି ବିନାଶପ୍ରତିଷେଧଃ, ବା ଶବ୍ଦୌ ଚାର୍ଥେ । ନ ଚାୟଂ ଭୂତ୍ୱା ଉତ୍ପଦ୍ୟ ଭବିତା ଭବତି ଅସ୍ତିତ୍ୱଂ ଭଜତେ କିନ୍ତୁ ପ୍ରାଗେବ ସ୍ୱତଃ ସଦ୍ରୂପ ଇତି ଜନ୍ମାନନ୍ତରାସ୍ତିତ୍ୱ—ଲକ୍ଷଣ ଦ୍ୱିତୀୟବିକାରପ୍ରତିଷେଧଃ ତତ୍ର ହେତୁଃ ଯସ୍ମାଦଜଃ, ଯୋହି ଜାୟତେ ସ ଜନ୍ମାନନ୍ତରମସ୍ତିତ୍ୱଂ ଭଜତେ ନ ତୁ ଯଃ ସ୍ୱୟମେବାସ୍ତି ସ ଭୂୟୋଽପ୍ୟନ୍ୟଦସ୍ତିତ୍ୱଂ ଭଜତ ଇତ୍ୟର୍ଥଃ । ନିତ୍ୟଃ ସର୍ବଦୈକରୂପ ଇତି ବୃଦ୍ଧିପ୍ରତିଷେଧଃ । ଶାଶ୍ୱତଃ ଶଶ୍ୱଦ୍ଭବ ଇତ୍ୟପକ୍ଷୟପ୍ରତିଷେଧଃ । ପୁରାଣ ଇତି ପରିଣାମପ୍ରତିଷେଧଃ ପୁରାପି ନବ ଏବ ନ ତୁ ପରିଣାମତୋ ରୂପାନ୍ତରଂ ପ୍ରାପ୍ୟ ନବୋ ଭବତୀତ୍ୟର୍ଥଃ । ଯଦ୍ୱା ଭବତେର୍ୟାସ୍କାନୁସାରେଣ ବୃଦ୍ଧ୍ୟର୍ଥକଂ ଯଥା ଭବତି ତଥା ନ ଭବତୀତି ବୃଦ୍ଧିପ୍ରତିଷେଧଃ, ଅଜୋ ନିତ୍ୟ ଇତି ଶ୍ରେୟସ୍ତ୍ୱବ୍ୟାଖ୍ୟାନେ ହେତୁରିତି ନ ପୌନରୁକ୍ତ୍ୟଂ । ତଦେବଂ ଜାୟତେ, ଅସ୍ତି, ବର୍ଦ୍ଧତେ, ବିପରିଣମତେ, ଅପକ୍ଷୀୟତେ ନଶ୍ୟତୀତ୍ୟେବଂ ଯାସ୍କାଦିଭିରୁକ୍ତାଃ ଷଡ୍‌ଭାବବିକାରା ନିରସ୍ତାଃ, ଯଦର୍ଥମେତେ ବିକାରା ନିରସ୍ତାସ୍ତଂ ପ୍ରସ୍ତୁତଂ ବିନାଶାଭାବମୁପସଂହରତି ନ ହନ୍ୟତେ ହନ୍ୟମାନେ ଶରୀରେ ଇତି । ୨୦ ।

ପଦବ୍ୟାଖ୍ୟା ।

ନ ଜାୟତେ—ଜନ୍ମ ହୁଅନ୍ତି ନାହିଁ, ମ୍ରିୟତେ—ମରନ୍ତି, ବା—ଅଥବା, କଦାଚିତ୍—କେବେହେଁ, ନ—ନାହିଁ, ଅୟଂ ଭୂତ୍ୱା—ଏ ହୋଇ, ଭବିତା—ଅସ୍ତିତ୍ୱ ପ୍ରାପ୍ତ ହେବେ, ବା—ଅଥବା, ନ—ନାହିଁ, ଭୂୟଃ—ବାରମ୍ବାର, ଭବିତା ନ ଭୂୟଃ—ବୃଦ୍ଧିପ୍ରାପ୍ତ ହୁଅନ୍ତି ନାହିଁ, ଅଜଃ—ଜନ୍ମରହିତ, ନିତ୍ୟଃ—ସର୍ବଦା ଏକରୂପ, ଶାଶ୍ୱତଃ—କ୍ଷୟରହିତ ବର୍ଦ୍ଧମାନ ଅଛନ୍ତି, ପୁରାଣଃ—ପ୍ରାଚୀନ, ନ ହନ୍ୟତେ—କାହାରିଦ୍ୱାରା ହତ ହୁଅନ୍ତି ନାହିଁ, ହନ୍ୟମାନେ ଶରୀରେ—ଶରୀରର ନାଶ ହେଲେ ସୁଦ୍ଧା । ୨୦ ।

ଅନୁବାଦ ।

ଆତ୍ମା ଜନ୍ମ ହୁଅନ୍ତି ନାହିଁ କି ମରନ୍ତି ନାହିଁ, ଏ କଦାପି ଜାତ ହୋଇ ଅସ୍ତିତ୍ୱ ବା ବୃଦ୍ଧିପ୍ରାପ୍ତ ହୁଅନ୍ତି ନାହିଁ । ଏ ଅନାଦି, ସର୍ବଦା ଏକରୂପ, କ୍ଷୟରହିତ ଓ ପରିଣାମହୀନ ଅଟନ୍ତି । ଶରୀରର ବିନାଶ ହେଲେ ମଧ୍ୟ ଏହାଙ୍କର ବିନାଶ ହୁଏ ନାହିଁ । ୨୦ ।

ବିଶଦବ୍ୟାଖ୍ୟା ।

ଜନ୍ମ, ଅସ୍ତିତ୍ୱ, ବୃଦ୍ଧି, ପରିଣାମ, ଅପକ୍ଷୟ ଓ ବିନାଶ ଏହି ଛ ପ୍ରକାର 'ବିକାର' ଶାସ୍ତ୍ର-ରେ ଅଛି । ଆତ୍ମା ଯେ ଏ ଛ ପ୍ରକାର ବିକାରରହିତ ଅଟନ୍ତି ଏ ଶ୍ଳୋକରେ ତାହା ପ୍ରଦର୍ଶିତ

Digitized by PPRACHIN, SOA

ହେଲା । ଯାହା ପୂର୍ବରେ ନ ଥିଲା ବର୍ତ୍ତମାନ ଅଛି, ତାହାର ଜନ୍ମ ହୋଇଅଛି ଏବଂ ଯାହା ବର୍ତ୍ତମାନ ଅଛି ପରେ ରହିବନାହିଁ ତାହାର ବିନାଶ ହେବ ଏହା ସ୍ୱୀକାର କରାଯାଏ । ଆତ୍ମାଙ୍କର ଆଦି ଓ ଅନ୍ତ ନ ଥିବାରୁ ସେ ଜନ୍ମ ଓ ମରଣରୂପ ବିକାରରହିତ ।

ଉତ୍ପତ୍ତିକାଳଠାରୁ ମରଣକାଳ ପର୍ଯ୍ୟନ୍ତ (ସାମୟିକ) ସ୍ଥିତିକୁ 'ଅସ୍ତିତ୍ୱ' ବୋଲାଯାଏ । ଆତ୍ମାଙ୍କର ଜନ୍ମ ଓ ମରଣ ନ ଥିବାରୁ ଅଥବା ସେ ସତ୍‌ସ୍ୱରୂପରେ ସର୍ବଦା ବିଦ୍ୟମାନ ଥିବାରୁ ତାଙ୍କର ପୂର୍ବୋକ୍ତ 'ଅସ୍ତିତ୍ୱ' ରୂପ ବିକାର ନାହିଁ । ଆତ୍ମା 'ନିତ୍ୟ' ଅର୍ଥାତ୍ ସର୍ବଦା ଏକରୂପ ଥିବାରୁ ବୃଦ୍ଧିରୂପ ବିକାର ସେଠାରେ ସମ୍ଭବ ନୁହେ, 'ଶାଶ୍ୱତ' ଅର୍ଥାତ୍ ନିରନ୍ତର ବିଦ୍ୟମାନ ଥିବାରୁ ତାଙ୍କର କ୍ଷୟ ଅସମ୍ଭବ, ପୁଣି ସେ 'ପୁରାଣ' ଅର୍ଥାତ୍ ବହୁକାଳରୁ ଏକଭାବରେ ଥିବାରୁ ନୂତନ ରୂପ ଧାରଣ ପ୍ରଭୃତି 'ପରିଣାମ' ନାମକ ବିକାର ତାହାଙ୍କଠାରେ କାହୁଁ ଆସିବ? ଏହିପରି ଆତ୍ମା ସର୍ବପ୍ରକାର ବିକାରବର୍ଜିତ ଅଟନ୍ତି । କୌଣସି ପ୍ରକାର କର୍ତ୍ତୃତ୍ୱ ବା କର୍ମତ୍ୱ ତାହାଙ୍କଠାରେ ଆରୋପିତ ହୋଇ ନ ପାରେ । ଏ ଶରୀର ଅସ୍ତ୍ରଶସ୍ତ୍ର ଓ ରୋଗାଦି ଯେ କୌଣସି ଉପାୟଦ୍ୱାରା ବିନଷ୍ଟ ହେଲେ ସୁଦ୍ଧା ଆତ୍ମା କଦାପି ବିନଷ୍ଟ ହୁଅନ୍ତି ନାହିଁ । ଯେହେତୁ 'ବିନାଶ' ରୂପ ବିକାର ତାଙ୍କଠାରେ ନାହିଁ । ୨୦ ।

ଶ୍ଲୋକଃ ।

ବେଦାବିନାଶିନଂ ନିତ୍ୟଂ, ଯ ଏନମଜମବ୍ୟୟଂ ।
କଥଂ ସ ପୁରୁଷଃ ପାର୍ଥ, କଂ ଘାତୟତି ହନ୍ତି କଂ । ୨୧ ।

ଅନ୍ୱୟଃ ।

ଯଃ ଏନଂ ଅଜଂ ଅବ୍ୟୟଂ ନିତ୍ୟଂ ଅବିନାଶିନଂ ବେଦ, ହେ ପାର୍ଥ! ସଃ ପୁରୁଷଃ କଂ କଥଂ ଘାତୟତି କଂ (କଥଂ) ହନ୍ତି । ୨୧ ।

ଟୀକା ।

ଅତଏବ ହନ୍ତୃତ୍ୱାଭାବୋଽପି ପୂର୍ବୋକ୍ତଃ ସିଦ୍ଧଃ ଇତ୍ୟାହ । ବେଦାବିନାଶିନମିତି । ନିତ୍ୟଂ ବୃଦ୍ଧିଶୂନ୍ୟଂ ଅବ୍ୟୟମପକ୍ଷୟଶୂନ୍ୟଂ ଅଜଂ ଅବିନାଶିନଂ ଚ ଯୋ ବେଦ ସ ପୁରୁଷଃ କଂ ହନ୍ତି କଥଂ ବା ହନ୍ତି ଏବଂଭୂତସ୍ୟ ବଧେ ସାଧନାଭାବାତ୍, ତଥା ସ୍ୱୟଂ ପ୍ରୟୋଜକୋଭୂତ୍ୱାନ୍ୟେନ କଂ ଘାତୟତି କଥଂ ବା ଘାତୟତି ନ କଞ୍ଚଦପି କଥଞ୍ଚିଦପୀତ୍ୟର୍ଥଃ, ଅନେନ ମଦ୍ୟପି ପ୍ରୟୋଜକତ୍ୱଦୋଷ ଦୃଷ୍ଟିଂ ମାକାର୍ଷୀରିତ୍ୟୁକ୍ତଂ ଭବତି । ୨୧ ।

ପଦବ୍ୟାଖ୍ୟା ।

ବେଦ—ଜାଣେ, ଅବିନାଶିନଂ—ବିନାଶରହିତ, ନିତ୍ୟଂ—ସର୍ବଦା ଏକରୂପ, ଯଃ—ଯେ, ଏନଂ—ଏହାଙ୍କୁ, ଅଜଂ—ଜନ୍ମରହିତ, ଅବ୍ୟୟଂ—ଗୁଣ ଓ ବିକାରହୀନ ବୋଲି ଅପକ୍ଷୟରହିତ, କଥଂ—କିପରି, ସଃ—ସେହି, ପୁରୁଷଃ—ବ୍ୟକ୍ତି ପାର୍ଥ—ହେ ଅର୍ଜୁନ !, କଂ ଘାତୟତି—କାହାକୁ ମାରିବାକୁ ଆଦେଶ ଦିଏ? ହନ୍ତି—ମାରେ, କଂ—କାହାକୁ । ୨୧ ।

ଅନୁବାଦ ।

ଯେ ଏହାଙ୍କୁ ଅବିନାଶୀ, ନିତ୍ୟ, ଅଜ ଓ ଅବ୍ୟୟ ବୋଲି ଜାଣେ, ହେ ଅର୍ଜୁନ! ସେ କିପରି କାହାକୁ ବଧ କରାଇବ ବା ବଧ କରିବ । ୨୧ ।



Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

"ଶାସ୍ତ୍ର ଦ୍ରୋଣାଦି ବଧ, ମୁଁ ବଧକର୍ତ୍ତା ଓ ସେହି ବଧସାଧନରେ ଭଗବାନ୍ ପ୍ରବର୍ତ୍ତକ" ବୋଲି ଅର୍ଜୁନଙ୍କର ଏପରି ଭ୍ରମ ହେବ, ସେଥିପାଇଁ ଭଗବାନ୍ କହିଲେ, କି ଶାସ୍ତ୍ର ବା ଗୁରୁ ଉପଦେଶଦ୍ୱାରା ଯେ ଏହାଙ୍କୁ (ଆତ୍ମାଙ୍କୁ) ଅବିନାଶୀ, ସର୍ବଦା ସର୍ବତ୍ର ବ୍ୟାପକ, ଅନାଦି ଓ ଅବ୍ୟୟ ବୋଲି ଜାଣେ, ସେହି ବିଦ୍ୱାନ୍ ପୁରୁଷ, ଯେତେବେଳେ ସବୁଠାରେ ଏକ ଆତ୍ମାଙ୍କର ବିଦ୍ୟମାନତା ଭିନ୍ନ ଆଉ କିଛି ଥିବାର ବୋଧ କରି ପାରେ ନାହିଁ, ସେତେବେଳେ ସେ କାହାର କାହାକୁ ବିନାଶ କରିବ ବା କାହାକୁ କାହାଦ୍ୱାରା ବିନାଶ କରାଇବ । ଅତଏବ ଆତ୍ମାଙ୍କର କ୍ରିୟାବତ୍ତ୍ୱ ଓ ସର୍ବବ୍ୟାପକତ୍ୱ ବୁଦ୍ଧି ଯାହା ଭ୍ରମ ଦୂର କର । ୨୧ ।

ଶ୍ଳୋକଃ ।

* ବାସାଂସି ଜୀର୍ଣ୍ଣାନି ଯଥା ବିହାୟ, ନବାନି ଗୃହ୍ଣାତି ନରୋଽପରାଣି ।
ତଥା ଶରୀରାଣି ବିହାୟ ଜୀର୍ଣ୍ଣା-ନ୍ୟନ୍ୟାନି ସଂଯାତି ନବାନି ଦେହୀ । ୨୨ ।

ଅନ୍ୱୟଃ ।

ନରଃ ଯଥା ଜୀର୍ଣ୍ଣାନି ବାସାଂସି ବିହାୟ ନବାନି ଅପରାଣି ଗୃହ୍ଣାତି, ତଥା ଦେହୀ ଜୀର୍ଣ୍ଣାନି ଶରୀରାଣି ବିହାୟ ନବାନି ଅନ୍ୟାନି ସଂଯାତି । ୨୨ ।

ଟୀକା ।

ନନୁ ଆତ୍ମନୋଽବିନାଶେଽପି ତଦୀୟଶରୀରନାଶଂ ପର୍ଯ୍ୟାଲୋଚ୍ୟ ଶୋଚାମୀତି ଚେତ୍ତତ୍ରାହ । ବାସାଂସୀତି । କର୍ମନି-ବନ୍ଧାନାଂ ଦେହାନାମବଶ୍ୟମ୍ଭାବିତ୍ୱାତ୍ ଜୀର୍ଣ୍ଣଦେହନାଶେ ନ ଶୋକାବକାଶ ଇତ୍ୟର୍ଥଃ । ୨୨ ।

ପଦବ୍ୟାଖ୍ୟା ।

ବାସାଂସି—ବସ୍ତ୍ରମାନ, ଜୀର୍ଣ୍ଣାନି—ପୁରୁଣା, ଯଥା—ଯେପ୍ରକାର, ବିହାୟ—ତ୍ୟାଗ କରି, ନବାନି—ନୂତନ, ଗୃହ୍ଣାତି—ଗ୍ରହଣ କରେ, ନରଃ—ମନୁଷ୍ୟ, ଅପରାଣି—ଅନ୍ୟ, ତଥା—ସେହିପରି, ଶରୀରାଣି—ଦେହମାନଙ୍କୁ, ବିହାୟ—ତ୍ୟାଗ କରି, ଜୀର୍ଣ୍ଣାନି—ପୁରୁଣା, ଅନ୍ୟାନି—ଅନ୍ୟ, ସଂଯାତି—ପ୍ରାପ୍ତ ହୁଅନ୍ତି, ନବାନି—ନୂତନ, ଦେହୀ—ଆତ୍ମା । ୨୨ ।

ଅନୁବାଦ ।

ମନୁଷ୍ୟ ଯେପରି ପୁରାତନ ବସ୍ତ୍ର ପରିତ୍ୟାଗ କରି ଅପର ନୂତନବସ୍ତ୍ର ଗ୍ରହଣ କରେ, ସେହିପରି ଜୀବାତ୍ମା ପୁରାତନ ଶରୀର ପରିତ୍ୟାଗ କରି ଅନ୍ୟ ନୂତନ ଶରୀର ଧାରଣ କରନ୍ତି । ୨୨ ।

ବିଶଦବ୍ୟାଖ୍ୟା ।

ଯାହା ଅର୍ଜୁନ ମନେ କରିବେ, ଯେ "ଶ୍ରୁତି ପ୍ରମାଣାଦିଦ୍ୱାରା ବୁଝାଗଲା, କି ଆତ୍ମା ଅବିନାଶୀ ଓ ଶରୀର ନଶ୍ୱର, ମାତ୍ର ଭୀଷ୍ମାଦିଙ୍କର ଏହି ନଶ୍ୱରଦେହ ଅନେକ ମହତ୍ ଓ ସଦନୁଷ୍ଠାନର ସାଧକ ଅଟେ । ଯୁଦ୍ଧରେ ଯଦି ସେ ସତ୍କର୍ମର ସାଧକସ୍ୱରୂପ ଦେହର ବିନାଶ ହେବ ତେବେ ସେ ଯୁଦ୍ଧ କର୍ତ୍ତବ୍ୟ ନୁହେଁ" । ସେଥିପାଇଁ ଭଗବାନ୍ କହିଲେ, ଯେ ଭୀଷ୍ମାଦିଙ୍କର

* ଏ ପ୍ରକାର ଚିହ୍ନଯୁକ୍ତ ଶ୍ଳୋକଗୁଡ଼ିକ ଅତି ପ୍ରସିଦ୍ଧ ।

Digitized by PPRACHIN, SOA

ଶରୀର ତପସ୍ୟା ପ୍ରଭୃତିଦ୍ୱାରା ଓ ବୟସଗୁଣରେ ଜୀର୍ଣ୍ଣ ହୋଇଅଛି । ଯେପରି ମନୁଷ୍ୟ ଜୀର୍ଣ୍ଣବସ୍ତ୍ର ପରିତ୍ୟାଗ କରି ନୂତନବସ୍ତ୍ର ଗ୍ରହଣରେ କିଛିମାତ୍ର ଦୁଃଖ ଅନୁଭବ କରେ ନାହିଁ, ସେହିପରି ଜୀର୍ଣ୍ଣ-ଦେହ ତ୍ୟାଗରେ ଭୀଷ୍ମାଦିଙ୍କର କ୍ଳେଶ ହେବାତ ଦୂରର କଥା, ବରଂ ତପସ୍ୟାଦି ଫଳଦ୍ୱାରା ଏହା ଅପେକ୍ଷା ଉତ୍ତମ ନୂତନ ଶରୀର ପ୍ରାପ୍ତ ହୋଇ ସେ ସୁଖୀ ହେବେ । ଅତଏବ ଅନିତ୍ୟ ଜୀର୍ଣ୍ଣଶରୀର ବିନାଶ ବିଷୟରେ ଶଙ୍କା କର ନାହିଁ । ୨୨ ।

ଶ୍ଳୋକଃ ।

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି, ନୈନଂ ଦହତି ପାବକଃ ।
ନ ଚୈନଂ କ୍ଳେଦୟନ୍ତ୍ୟାପୋ, ନ ଶୋଷୟତି ମାରୁତଃ । ୨୩ ।

ଅନ୍ୱୟଃ ।

ଶସ୍ତ୍ରାଣି ଏନଂ ନ ଛିନ୍ଦନ୍ତି । ପାବକଃ ଏନଂ ନ ଦହତି । ଚ ଅପଃ ଏନଂ ନ କ୍ଳେଦୟନ୍ତି । ମାରୁତଃ ନ ଶୋଷୟତି । ୨୩ ।

ଟୀକା ।

କଥଂ ହନ୍ତୀତ୍ୟନେନୋକ୍ତଂ ବଧସାଧନାଭାବ ଦର୍ଶୟନ୍ନବିନାଶିତ୍ୱମାତ୍ମନଃ ସ୍ଫୁଟୀ କରୋତି । ନୈନମିତି । ଅପୋ, ନ କ୍ଳେଦୟନ୍ତି ମୃଦୂକରଣେନ ଶିଥିଲଂ ନ କୁର୍ବନ୍ତି । ୨୩ ।

ପଦବ୍ୟାଖ୍ୟା ।

ନ—ନାହିଁ, ଏନଂ—ଏହି ଆତ୍ମାଙ୍କୁ, ଛିନ୍ଦନ୍ତି—ଛେଦନ କରନ୍ତି, ଶସ୍ତ୍ରାଣି—ସର୍ବପ୍ରକାର ଶସ୍ତ୍ର, ନ—ନାହିଁ, ଏନଂ—ଏହି ଆତ୍ମାଙ୍କୁ, ଦହତି—ଦାହ କରେ, ପାବକଃ—ଅଗ୍ନି, ନ ଚ—ନାହିଁ, ଏନଂ—ଏହି ଆତ୍ମାଙ୍କୁ, କ୍ଳେଦୟନ୍ତି—ଆର୍ଦ୍ର କରିପାରେ, ଅପଃ—ଜଳ, ନ—ନାହିଁ, ଶୋଷୟତି—ଶୁଷ୍କ କରେ, ମାରୁତଃ—ପବନ । ୨୩ ।

ଅନୁବାଦ ।

ଏହି ଆତ୍ମାଙ୍କୁ ଶସ୍ତ୍ର ଛେଦନ କରି ପାରେ ନାହିଁ, ଅଗ୍ନି ଦଗ୍ଧ କରି ପାରେ ନାହିଁ, ଜଳ ମଧ୍ୟ ଆର୍ଦ୍ର କରି ପାରେ ନାହିଁ ଏବଂ ପବନ ଶୁଷ୍କ କରି ପାରେ ନାହିଁ । ୨୩ ।

ବିଶଦବ୍ୟାଖ୍ୟା

ଏ ଶ୍ଳୋକରୁ ଜୀବାତ୍ମା ସର୍ବଦା ଏକପ୍ରକାର ଥିବାର ଜଣା ହେଉଅଛି, କାହିଁକି ନା ସେ ଅଗ୍ନି, ଜଳ ଓ ବାୟୁ ଏମାନଙ୍କଦ୍ୱାରା କୌଣସି ବିକାର ପ୍ରାପ୍ତ ହୁଅନ୍ତି ନାହିଁ । ୨୩ ।

ଶ୍ଳୋକଃ ।

ଅଚ୍ଛେଦ୍ୟୋଽୟମଦାହ୍ୟୋଽୟ,ମକ୍ଳେଦ୍ୟୋଽଶୋଷ୍ୟ ଏବ ଚ ।
ନିତ୍ୟଃ ସର୍ବଗତଃ ସ୍ଥାଣୁ,ରଚଲୋଽୟଂ ସନାତନଃ । ୨୪ ।

ଅନ୍ୱୟଃ ।

( ଅତଃ ) ଅୟଂ ଅଚ୍ଛେଦ୍ୟଃ ଅୟଂ ଅଦାହ୍ୟଃ ଅୟଂ ଅକ୍ଳେଦ୍ୟଃ ଚ ଅୟଂ ଅଶୋଷ୍ୟଃ ଅୟଂ ନିତ୍ୟଃ, ସର୍ବଗତଃ, ସ୍ଥାଣୁଃ, ଅଚଳଃ, ସନାତନଃ । ୨୪ ।

Digitized by PPRACHIN, SOA

ଟୀକା ।

ତତ୍ର ହେତୁମାହ ଅଚ୍ଛେଦ୍ୟ ଇତ୍ୟାଦିନା ସାର୍ଦ୍ଧେନ । ନିରବୟବତ୍ୱାଦଚ୍ଛେଦ୍ୟୋଽକ୍ଲେଦ୍ୟଶ୍ଚ । ଅମୂର୍ତ୍ତତ୍ୱାଦଦାହ୍ୟଃ ଦ୍ରବତ୍ୱାଭାବାଦଶୋଷ୍ୟଇତି ; ଇତଶ୍ଚ—ଛେଦାଦିଯୋଗ୍ୟୋ ନ ଭବତି, ଯତୋ ନିତ୍ୟଃ ଅବିନାଶୀ ସର୍ବଗତଃ ସର୍ବତ୍ରଗଃ ସ୍ଥାଣୁଃ ସ୍ଥିରସ୍ୱଭାବଃ ରୂପାନ୍ତରାପତ୍ତିଶୂନ୍ୟଃ, ଅଚଳଃ ପୂର୍ବରୂପାପରିତ୍ୟାଗୀ ସନାତନୋଽନାଦିଃ । ୨୪ ।

ପଦବ୍ୟାଖ୍ୟା ।

ଅଚ୍ଛେଦ୍ୟଃ—ଛେଦନର ଯୋଗ୍ୟ ନୁହନ୍ତି , ଅୟଂ—ଏହି ଜୀବାତ୍ମା, ଅଦାହ୍ୟଃ—ଦହନର ଯୋଗ୍ୟ ନୁହନ୍ତି, ଅଶୋଷ୍ୟଃ—ଶୁଖିବାର ଯୋଗ୍ୟ ନୁହନ୍ତି, ଏବ—ନିଶ୍ଚୟ ଚ—ପୁଣି, ନିତ୍ୟଃ—ନାଶରହିତ, ସର୍ବଗତଃ—ସର୍ବତ୍ରବ୍ୟାପକ, ସ୍ଥାଣୁଃ—ବିକାରରହିତ ଅର୍ଥାତ୍ ଆପଣା ନିଜରୂପରେ ସ୍ଥିତ, ଅଚଳଃ—ଯେ ପୂର୍ବରୂପକୁ ପରିତ୍ୟାଗ ନ କରନ୍ତି ଅର୍ଥାତ୍ ଯଥାସ୍ଥିତ ରହନ୍ତି, ଅୟଂ—ଏହି, ସନାତନଃ—ସର୍ବଦା ଏକାକାର ଅଟନ୍ତି । ୨୪ ।

ଅନୁବାଦ ।

ଏହି ଜୀବାତ୍ମା, ଛେଦନ, ଦାହ, ମଜ୍ଜନ ଅର୍ଥାତ୍ ବୁଡ଼ିବା ଓ ଶୋଷଣର ଯୋଗ୍ୟ ନୁହନ୍ତି । କାରଣ ସେ ନିତ୍ୟ, ସର୍ବଗତ, ସ୍ଥିରସ୍ୱଭାବ, ଅଚଳ ଓ ଅନାଦି ଅଟନ୍ତି । ୨୪ ।

ବିଶଦବ୍ୟାଖ୍ୟା ।

ଯେ ଅବୟବଶୂନ୍ୟ ଓ ସର୍ବବ୍ୟାପୀ ତାହାଙ୍କୁ ଶସ୍ତ୍ରାଦିଦ୍ୱାରା କିପରି ଛେଦନ କରାଯିବ ? ଯେ ଭୂତନିର୍ମିତ ନୁହନ୍ତି ଅଗ୍ନି ତାହାଙ୍କୁ କିପରି ଦଗ୍ଧ କରିବ , ଜଳ ବା ତାହାଙ୍କୁ କିପରି ଆର୍ଦ୍ର କରିବ, ଯେ ଜଳପରି ତରଳ ନୁହନ୍ତି ବାୟୁ ତାହାଙ୍କୁ କିପରି ଶୁଷ୍କ କରିବ ? ଅର୍ଥାତ୍ ଜୀବାତ୍ମାଙ୍କର, ଯେ କୌଣସିରୂପେ ବିକାର ହୋଇ ନ ପାରେ ଏହି ସବୁ ବିଶେଷଣଦ୍ୱାରା ଏହାହିଁ ବୁଝା ଯାଉଅଛି । ୨୪ ।

ଶ୍ଳୋକଃ ।

ଅବ୍ୟକ୍ତୋଽୟମଚିନ୍ତ୍ୟୋଽୟମବିକାର୍ଯ୍ୟୋଽୟମୁଚ୍ୟତେ ।
ତସ୍ମାଦେବଂ ବିଦିତ୍ୱୈନଂ, ନାନୁଶୋଚିତୁମର୍ହସି । ୨୫ ।

ଅନ୍ୱୟଃ ।

ଅୟଂ ଅବ୍ୟକ୍ତଃ, ଅୟଂ ଅଚିନ୍ତ୍ୟଃ, ଅୟଂ ଅବିକାର୍ଯ୍ୟଃ ଉଚ୍ୟତେ, ତସ୍ମାତ୍ ଏନଂ ଏବଂ ବିଦିତ୍ୱା ଅନୁଶୋଚିତୁଂ ନ ଅର୍ହସି । ୨୫ ।

ଟୀକା ।

ଅବ୍ୟକ୍ତ ଇତି । ଅବ୍ୟକ୍ତଶ୍ଚକ୍ଷୁରାଦ୍ୟବିଷୟଃ ଅଚିନ୍ତ୍ୟୋ ମନସୋଽପ୍ୟବିଷୟଃ ଅବିକାର୍ଯ୍ୟଃ କର୍ମ୍ମେନ୍ଦ୍ରିୟାଣାମପ୍ୟଗୋଚର ଇତ୍ୟର୍ଥଃ । ଉଚ୍ୟତ ଇତି ନିତ୍ୟତ୍ୱାଦିଷୂକ୍ତୋକ୍ତିଂ ପ୍ରମାଣୟତି । ଉପସଂହରତି ତସ୍ମାଦେବମିତି । ତଦେବମାତ୍ମନୋ ଜନ୍ମବିନାଶାଭାବାନ୍ନ ଶୋକଃ କାର୍ଯ୍ୟ ଇତ୍ୟୁକ୍ତଂ । ୨୫ ।

ପଦବ୍ୟାଖ୍ୟା ।

ଅବ୍ୟକ୍ତଃ—ଚକ୍ଷୁ ପ୍ରଭୃତି ଇନ୍ଦ୍ରିୟମାନଙ୍କର ଅଗୋଚର, ଅୟଂ—ଏହି, ଅଚିନ୍ତ୍ୟଃ—ଯାହାଙ୍କୁ ମନରେ ଚିନ୍ତା କରି ଯାଇ ନ ପାରେ ଅୟଂ—ଏହି, ଅବିକାର୍ଯ୍ୟଃ—ଷଡ଼୍‌ଭାବବିକାରରହିତ, ଉଚ୍ୟତେ—କଥିତ ହୁଅନ୍ତି , ଅୟଂ—ଏହି,

Digitized by PPRACHIN, SOA

ତସ୍ମାତ୍—ସେହି କାରଣରୁ , ଏବ—ଏପ୍ରକାର, ବିଦିତ୍ୱା—ଜାଣିକରି, ଏନଂ—ଏହାଙ୍କୁ, ନ—ନାହିଁ, ଅନୁଶୋଚିତୁଂ—ବାରମ୍ବାର ଶୋକ କରିବାକୁ , ଅର୍ହସି—ତୁମ୍ଭେ ଯୋଗ୍ୟ ହୁଅ । ୨୪ ।

ଅନୁବାଦ ।

ଏହି ଆତ୍ମା ଚକ୍ଷୁରାଦି ଜ୍ଞାନେନ୍ଦ୍ରିୟମାନଙ୍କର ଅଗୋଚର, ମନର ଅଗମ୍ୟ ଆଉ ଅବିକାର୍ଯ୍ୟ (ଅର୍ଥାତ୍ କର୍ମେନ୍ଦ୍ରିୟମାନଙ୍କର ଅଗୋଚର) ବୋଲି କଥିତ ଅଛି, ଅତଏବ ତୁମ୍ଭେ ଏହାଙ୍କୁ ଏପରି ଜାଣି ବାରମ୍ବାର ଶୋକ କର ନାହିଁ । ୨୫ ।

ବିଶଦବ୍ୟାଖ୍ୟା ।

ଆତ୍ମା ଚକ୍ଷୁରାଦି ଜ୍ଞାନେନ୍ଦ୍ରିୟମାନଙ୍କର, ହସ୍ତ ପଦାଦି କର୍ମେନ୍ଦ୍ରିୟମାନଙ୍କର ଏବଂ ମନର ସୁଦ୍ଧା ଅଗୋଚର । କାହିଁକିନା ଶ୍ରୁତିରେ ପ୍ରମାଣ ଅଛି ଯେ "ଯଃ ପୃଥିବ୍ୟାଂ ତିଷ୍ଠନ୍ ପୃଥିବ୍ୟାଂ ଅନ୍ତରୋଯୋଽପ୍ସୁ ତିଷ୍ଠନ୍ନଦ୍ଭ୍ୟୋଽନ୍ତରୋଯସ୍ତେଜସି ତିଷ୍ଠଂ ସ୍ତେଜସୋଽନ୍ତରୋଯୋବାୟୌ ତିଷ୍ଠନ୍ ବାୟୋରନ୍ତରଃ" ଇତି, ଅର୍ଥାତ୍ ଯେ ପୃଥିବୀରେ ଥାଇ ସୁଦ୍ଧା ପୃଥିବୀରୁ ଅନ୍ତର, ଜଳରେ ଥିଲେ ସୁଦ୍ଧା ଜଳରୁ ଭିନ୍ନ ଓ ଅଗ୍ନିରେ ଥିଲେ ମଧ୍ୟ ଅଗ୍ନିରୁ ପୃଥକ୍ ଏବଂ ବାୟୁରେ ଥିଲେ ମଧ୍ୟ ବାୟୁଠାରୁ ସ୍ୱତନ୍ତ୍ର ଅଟନ୍ତି, ଏପରି ଆତ୍ମାଙ୍କ ନିମିତ୍ତ ତୁମ୍ଭର ବାରମ୍ବାର ଶୋକ କରିବା ଉଚିତ ନୁହେଁ । ୨୫ ।

ଶ୍ଳୋକଃ ।

ଅଥ ଚୈନଂ ନିତ୍ୟଜାତଂ, ନିତ୍ୟଂ ବା ମନ୍ୟସେ ମୃତଂ ।
ତଥାପି ତ୍ୱଂ ମହାବାହୋ, ନୈନଂ ଶୋଚିତୁମର୍ହସି । ୨୬ ।

ଅନ୍ୱୟଃ ।

ହେ ମହାବାହୋ ! ଅଥ ଏନଂ ନିତ୍ୟଜାତଂ ଚ ନିତ୍ୟଂ ମୃତଂ ବା ମନ୍ୟସେ, ତଥାପି ତ୍ୱଂ ଏନଂ ଶୋଚିତୁଂ ନ ଅର୍ହସି । ୨୬ ।

ଟୀକା ।

ଇଦାନୀଂ ଦେହେନ ସହ ଅନ୍ୟନୋଽକଲ୍ପ ତଦ୍‌ବିନାଶେ ଚ ବିନାଶମଙ୍ଗୀକୃତ୍ୟାପି ଶୋକୋ ନ କାର୍ଯ୍ୟ ଇତ୍ୟାହ । ଅଥ ଚୈନମିତି । ଅଥ ଯଦ୍ୟପ୍ୟେନମାତ୍ମାନଂ ନିତ୍ୟଂ ସର୍ବଦା ତତ୍ତଦ୍ଦେହେ ଜାତେ ଜାତଂ ମନ୍ୟସେ ତଥା ତତ୍ତଦ୍ଦେହେ ମୃତେ ମୃତଂ ଚ ମନ୍ୟସେ, ପୁଣ୍ୟପାପୟୋସ୍ତତ୍ଫଳଭୂତୟୋଶ୍ଚ ଜନ୍ମମରଣୟୋରୟୋଗମିତ୍ୟାତ୍ ତଥାପି ତ୍ୱଂ ଶୋଚିତୁଂ ନାର୍ହସି । ୨୬ ।

ପଦବ୍ୟାଖ୍ୟା ।

ଅଥଚ—ଆଉ ଯେବେ, ଏନଂ—ଏ ଆତ୍ମାଙ୍କୁ, ନିତ୍ୟଜାତଂ—ସର୍ବଦା ଜାତ, ନିତ୍ୟଂ—ସଦା, ବା—ଅଥବା, ମନ୍ୟସେ—ଜାଣୁଅଛ, ମୃତଂ—ବିନଷ୍ଟ, ତଥାପି—ତେବେ ମଧ୍ୟ, ତ୍ୱଂ—ତୁମ୍ଭେ, ମହାବାହୋ—ହେ ବିଶାଳଭୁଜ !, ନ—ନାହିଁ, ଏନଂ—ଏହାଙ୍କୁ, ଶୋଚିତୁଂ—ଶୋକ କରିବାକୁ, ଅର୍ହସି—ଯୋଗ୍ୟ ଅଟ । ୨୬ ।

ଅନୁବାଦ ।

ଆଉ ଯେବେ ଏହି ଆତ୍ମା ସର୍ବଦା ଜାତ ଓ ମୃତ ହେଉଅଛନ୍ତି ବୋଲି ଜ୍ଞାନ କର ତଥାପି ହେ ମହାବାହୋ ! ଏହାଙ୍କୁ ଶୋକ କରିବା ତୁମ୍ଭ ପକ୍ଷରେ ଉଚିତ ନୁହେଁ । ୨୬ ।

Digitized by PPRACHIN, SOA

### ବିଶଦବ୍ୟାଖ୍ୟା ।

ଶ୍ରୀ ଭଗବାନ୍ ଆତ୍ମାଙ୍କର ଅବିନାଶିତା ସମ୍ବନ୍ଧରେ ଏତେ ଉପଦେଶ ଦେଇ ଅର୍ଜ୍ଜୁନଙ୍କୁ କହିଲେ,—ଯଦି ତୁମ୍ଭେ ଆମ୍ଭ କଥାର ବିପରୀତ ମତ ଗ୍ରହଣ କର ଅର୍ଥାତ୍ ଆତ୍ମା ନିତ୍ୟଜାତ ଓ ନିତ୍ୟମୃତ ବୋଲି ମନେ କର, ତଥାପି ତୁମ୍ଭର 'ପାପର' ଶୋଚନା କରିବା ଉଚିତ ନୁହେ । କାହିଁକିନା ଶରୀର ତ୍ୟାଗ ପରେ ପାପ ପୁଣ୍ୟର ଫଳ ଆତ୍ମା ଭୋଗ କରନ୍ତି, ଶରୀର ସହିତ ଆତ୍ମାଙ୍କର ଯଦି ମୃତ୍ୟୁ ହେବ ତେବେ ଆଉ ପାପ ପୁଣ୍ୟର ଫଳ କିଏ ଭୋଗ କରିବ ? । ୨୬ ।

### ଶ୍ଲୋକଃ ।

* ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ ।
ତସ୍ମାଦପରିହାର୍ଯ୍ୟେଽର୍ଥେ, ନ ତ୍ୱଂ ଶୋଚିତୁମର୍ହସି । ୨୭ ।

### ଅନ୍ୱୟଃ ।

ଜାତସ୍ୟ ହି ମୃତ୍ୟୁଃ ଧ୍ରୁବଃ, ମୃତସ୍ୟ ଜନ୍ମ ଧ୍ରୁବଂ, ତସ୍ମାତ୍ ଅପରିହାର୍ଯ୍ୟେ ଅର୍ଥେ ତ୍ୱଂ ଶୋଚିତୁଂ ନ ଅର୍ହସି । ୨୭ ।

### ଟୀକା ।

କୁତଇତ୍ୟତ ଆହ ଜାତସ୍ୟ ହୀତି । ହି ଯସ୍ମାଜ୍ଜାତସ୍ୟ ପ୍ରାରମ୍ଭକକର୍ମକ୍ଷୟେ ମୃତ୍ୟୁର୍ଧ୍ରୁବୋ ନିଶ୍ଚିତଃ, ମୃତସ୍ୟ ଚ ତଦ୍ଦେହକୃତେନ କର୍ମଣା ଜନ୍ମାପି ଧ୍ରୁବମେବ, ତସ୍ମାଦେବମପରିହାର୍ଯ୍ୟେଽର୍ଥେଽବଶ୍ୟମ୍ଭାବିନି ଜନ୍ମମରଣଲକ୍ଷଣେ ଅର୍ଥେ ତ୍ୱଂ ବିଦ୍ୱାନ୍ ଶୋଚିତୁଂ ଯୋଗ୍ୟୋ ନ ଭବସି । ୨୭ ।

### ପଦବ୍ୟାଖ୍ୟା ।

ଜାତସ୍ୟ—ଜାତ ପ୍ରାଣିର, ହି—ଯେଉଁ ହେତୁରୁ, ଧ୍ରୁବଃ—ନିଶ୍ଚୟ, ମୃତ୍ୟୁଃ—ମରଣ, ଧ୍ରୁବଂ—ନିଶ୍ଚୟ, ଜନ୍ମ—ଦେହ ପାଇବା, ମୃତସ୍ୟ—ମରିବା ପ୍ରାଣିର, ଚ—ପୁଣି, ତସ୍ମାତ୍—ସେହି କାରଣରୁ, ଅପରିହାର୍ଯ୍ୟେ—ନିବାରଣର ଅଯୋଗ୍ୟ, ଅର୍ଥେ—ବିଷୟରେ, ନ—ନାହିଁ, ତ୍ୱଂ—ତୁମ୍ଭେ, ଶୋଚିତୁଂ—ଶୋକ କରିବାକୁ, ଅର୍ହସି—ଯୋଗ୍ୟ ହୁଅ । ୨୭ ।

### ଅନୁବାଦ ।

ଯେହେତୁ ଜାତ ହୋଇଥିବା ପ୍ରାଣିର ମରଣ ନିଶ୍ଚୟ ଓ ମୃତ ପ୍ରାଣିର ଜନ୍ମ ମଧ୍ୟ ନିଶ୍ଚୟ ହେବ, ସେହି କାରଣରୁ ଏ ଅନିବାର୍ଯ୍ୟ ବିଷୟରେ ତୁମ୍ଭର ଶୋକ କରିବା ଉଚିତ ନୁହେ । ୨୭ ।

### ବିଶଦବ୍ୟାଖ୍ୟା ।

ଜୀବାତ୍ମା ଜନ୍ମ ଓ ମୃତ୍ୟୁର ଅଧୀନ ହେଲେ ମୃତ୍ୟୁ ପରେ ପ୍ରାରବ୍ଧ ଅନୁସାରେ ତାହାଙ୍କର ପୁନର୍ବାର ଜନ୍ମ ହେବ ଓ ଜନ୍ମ ହେଲେ ନିଶ୍ଚେ ମରଣ ହେବ, ଏହା କୌଣସି ପ୍ରକାରେ ବାରଣ କରି ହେବ ନାହିଁ । ତୁମ୍ଭେ ଯୁଦ୍ଧ ନ କଲେ ମଧ୍ୟ ଏମାନେ ସମୟ ଅନୁସାରେ ମରିବେ ଓ ପୁଣି ଜନ୍ମଗ୍ରହଣ କରିବେ । ଏହି କାରଣରୁ ତୁମ୍ଭର ଯୁଦ୍ଧ ତ୍ୟାଗ କରି ଶୋକ କରିବା ଉଚିତ ନୁହେ । ୨୭ ।

Digitized by PPRACHIN, SOA

ଶ୍ଳୋକଃ ।

ଅବ୍ୟକ୍ତାଦୀନି ଭୂତାନି, ବ୍ୟକ୍ତମଧ୍ୟାନି ଭାରତ ।
ଅବ୍ୟକ୍ତନିଧନାନ୍ୟେବ, ତତ୍ର କା ପରିଦେବନା । ୨୮ ।

ଅନ୍ୱୟଃ ।

ହେ ଭାରତ ! ଭୂତାନି ଅବ୍ୟକ୍ତାଦୀନି ବ୍ୟକ୍ତମଧ୍ୟାନି ଅବ୍ୟକ୍ତନିଧନାନି ଏବ, ତତ୍ର ପରିଦେବନା କା ? ।୨୮ ।

ଟୀକା ।

କିଞ୍ଚ ଦେହାଦୀନାଂ ସ୍ୱଭାବଂ ପର୍ଯ୍ୟାଲୋଚ୍ୟ ତଦୁପାଧିକେ ଅତ୍ମନୋ ଜନ୍ମମରଣେ ଶୋକୋ ନ କାର୍ଯ୍ୟ ଇତ୍ୟତ ଆହ । ଅବ୍ୟକ୍ତାଦୀନୀତି । ଅବ୍ୟକ୍ତଂ ପ୍ରଧାନଂ ତଦେବ ଆଦି ଉତ୍ପତ୍ତେଃ ପୂର୍ବରୂପଂ ଯେଷାଂ ତାନି ଅବ୍ୟକ୍ତାଦୀନି ଭୂତାନି ଶରୀରାଣି କାରଣାତ୍ମନାସ୍ଥିତାନାମେବୋତ୍ପତ୍ତେଃ ତଥା ବ୍ୟକ୍ତଂ ଅଭିବ୍ୟକ୍ତଂ ମଧ୍ୟଂ ଜନ୍ମମରଣାନ୍ତରାଳଂ ସ୍ଥିତଲକ୍ଷଣଂ ଯେଷାଂ ତାନି ବ୍ୟକ୍ତମଧ୍ୟାନି, ଅବ୍ୟକ୍ତେ ନିଧନଂ ଲୟୋ ଯେଷାଂ ତାନି ତମାନ୍ୟେବଭୂତାନ୍ୟେବ ତତ୍ର ତେଷୁ କା ପରିଦେବନା ? କଃ ଶୋକନିମିତ୍ତୋବିଲାପଃ । ପ୍ରତିବୁଦ୍ଧସ୍ୟ ସ୍ୱପ୍ନଦୃଷ୍ଟବସ୍ତୁଷ୍ୱିବ ଶୋକୋ ନ ଯୁଜ୍ୟତ ଇତ୍ୟର୍ଥଃ । ୨୮ ।

ପଦବ୍ୟାଖ୍ୟା ।

ଅବ୍ୟକ୍ତାଦୀନି—ଆଦ୍ୟରେ ପ୍ରକାଶରହିତ , ଅଥବା ( ଅବ୍ୟକ୍ତ = ମାୟା ) ଯାହାର ଉତ୍ପତ୍ତିପୂର୍ବରେ ମାୟା ବିଦ୍ୟମାନ, ଭୂତାନି—ଶରୀରମାନ, ବ୍ୟକ୍ତମଧ୍ୟାନି—ମଧ୍ୟରେ ସ୍ୱରୂପଯୁକ୍ତ, ଭାରତ—ହେ ଭରତବଂଶଜ ! (ଅର୍ଜୁନ), ଅବ୍ୟକ୍ତନିଧନାନି—ମୃତ୍ୟୁ ପରେ ସ୍ୱରୂପରହିତ, ଅଥବା ( ଅବ୍ୟକ୍ତ = ମାୟା ) ମୃତ୍ୟୁ ହେଲେ ଯାହା ମାୟାରେ ଲୀନ ହୁଏ, ଏବ—ନିଶ୍ଚୟ, ତତ୍ର—ସେ ବିଷୟରେ, କା—କଣ, ପରିଦେବନା—ବିଳାପ—ଶୋକ । ୨୮ ।

ଅନୁବାଦ ।

ହେ ଅର୍ଜୁନ ! ଏହି ସମସ୍ତ ଶରୀର ନିଶ୍ଚୟ ଆଦ୍ୟରେ ସ୍ୱରୂପରହିତ, ମଧ୍ୟରେ ସ୍ୱରୂପଯୁକ୍ତ ଓ ଶେଷରେ ସ୍ୱରୂପରହିତ ଅଟେ । ଅତଏବ ସେ ବିଷୟରେ ଚିନ୍ତା କଣ ? । ୨୮ ।

ବିଶଦବ୍ୟାଖ୍ୟା ।

ସ୍ୱପ୍ନ ଏବଂ ଭାନୁମତୀ କ୍ରୀଡାର ପ୍ରଥମ ଓ ଶେଷରେ ସ୍ୱପ୍ନଗତ ବା କ୍ରୀଡାଗତ ବସ୍ତୁମାନ ସତ୍ୟତା ଦେଖାଯାଏ ନାହିଁ; କେବଳ ମଧ୍ୟେ ମଧ୍ୟେ ଏକ ଏକ ଚମତ୍କାର ଘଟନା ଦେଖାଯାଏ, ସେହିପରି ଏ ଶରୀର ଆଦ୍ୟରେ ଅପ୍ରକାଶିତ ଥିଲା ଓ ଶେଷରେ ଅପ୍ରକାଶିତ ରହିବ, କେବଳ ମଧ୍ୟରେ ଅର୍ଥାତ୍ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ସମୟ ମଧ୍ୟରେ ପ୍ରକାଶିତ ହୋଇ ନାନାପ୍ରକାର ଘଟନାର ବିଷୟ ହୁଏ, ଅତଏବ ଏ ପ୍ରକାର ପଦାର୍ଥପ୍ରତି ବିଳାପ କରିବା ଉଚିତ ନୁହେ ।

ଅଥବା 'ଭୂତ ଯେ ଆକାଶାଦି ପଞ୍ଚମହାଭୂତ' ଏପ୍ରକାର ଅର୍ଥ କଲେ ଆକାଶାଦି ପ୍ରପଞ୍ଚ ଆଦିରେ ଅବ୍ୟକ୍ତ ଅର୍ଥାତ୍ ଅପ୍ରକାଶ ଥିଲା, ଅଥବା ଅବ୍ୟକ୍ତ = ମାୟାରେ ଥିଲା, ମଧ୍ୟରେ—ସୃଷ୍ଟିକାଳରେ ପ୍ରକାଶିତ ହେଲା, ପୁଣି ବିନଷ୍ଟ ହେଲେ ଆପଣାର କାରଣଭୂତ ଅବ୍ୟକ୍ତ ଅବସ୍ଥାରେ ରହିବ ଅର୍ଥାତ୍ ମାୟାରେ ଲୀନ ହେବ । ଯେପରି ଘଟର ବିନାଶ ହେଲେ ସେ ତାହାର କାରଣସ୍ୱରୂପ ମୃତ୍ତିକାରେ ପରିଣତ ହୁଏ । ଅତଏବ ଏରୂପ ଭୂତ ବିନାଶରେ ଚିନ୍ତା କରିବାର କି ପ୍ରୟୋଜନ ? । ୨୮ ।

Digitized by PPRACHIN, SOA

ଶ୍ଳୋକଃ ।

* ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନ, ମାଶ୍ଚର୍ଯ୍ୟବଦ୍ବଦତି ତଥୈବ ଚାନ୍ୟଃ ।
ଆଶ୍ଚର୍ଯ୍ୟବଚ୍ଚୈନମନ୍ୟଃ ଶୃଣୋତି, ଶ୍ରୁତ୍ୱାପ୍ୟେନଂ ବେଦ ନ ଚୈବ କଶ୍ଚିତ୍ । ୨୯ ।

ଅନ୍ୱୟଃ ।

କଶ୍ଚିତ୍ ଏନଂ ଆଶ୍ଚର୍ଯ୍ୟବତ୍ ପଶ୍ୟତି, ଚ ତଥା ଏବ ଅନ୍ୟଃ ଆଶ୍ଚର୍ଯ୍ୟବତ୍‌ବଦତି; ଚ ଅନ୍ୟଃ ଏନଂ ଆଶ୍ଚର୍ଯ୍ୟବତ୍ ଶୃଣୋତି ଚ କଶ୍ଚିତ୍ ଏନଂ ଶ୍ରୁତ୍ୱା ଅପି ନ ବେଦ ଏବ । ୨୯ ।

ଟୀକା ।

କୁତସ୍ତର୍ହି ବିଦ୍ୱାଂସୋଽପି ଲୋକେ ଶୋଚନ୍ତି, ଆତ୍ମାଜ୍ଞାନାଦେବେତ୍ୟାଶୟେନାତ୍ମନୋ ଦୁର୍ବିଜ୍ଞେୟତାମାହ । ଆଶ୍ଚର୍ଯ୍ୟବଦିତି । କଶ୍ଚିଦେନମାତ୍ମାନଂ ଶାସ୍ତ୍ରାଚାର୍ଯ୍ୟୋପଦେଶାଭ୍ୟାଂ ପଶ୍ୟନ୍ନାଶ୍ଚର୍ଯ୍ୟବତ୍ ପଶ୍ୟତି, ସର୍ବଗତସ୍ୟ ନିତ୍ୟଜ୍ଞାନାନନ୍ଦସ୍ୱଭାବସ୍ୟାତ୍ମନୋଽଲୌକିକତ୍ୱାଦୈନ୍ଦ୍ରଜାଲିକବଦ୍‌ଘଟମାନଂ ପଶ୍ୟନ୍ନିବ ବିସ୍ମୟେନ ପଶ୍ୟତି ଅସମ୍ଭାବନାଭିଭୂତତ୍ୱାତ୍ । ତଥା ଆଶ୍ଚର୍ଯ୍ୟବଦେବାନ୍ୟୋ ବଦତି, ଶୃଣୋତି ଚାନ୍ୟଃ କଶ୍ଚିତ୍ ପୁନର୍ବିପରୀତଭାବନାଭିଭୂତଃ ଶ୍ରୁତ୍ୱାପି ନୈବ ବେଦ, ଚ ଶବ୍ଦାଦୁକ୍ତ୍ୱାପି, ଦୃଷ୍ଟ୍ୱାପି ନ ସମ୍ୟକ୍ ବେଦେତି ଦ୍ରଷ୍ଟବ୍ୟଂ । ୨୯ ।

ପଦବ୍ୟାଖ୍ୟା ।

ଆଶ୍ଚର୍ଯ୍ୟବତ୍—ଆଶ୍ଚର୍ଯ୍ୟତୁଲ୍ୟ, ପଶ୍ୟତି—ଦେଖଇ, କଶ୍ଚିତ୍—କେହି, ଏନଂ—ଏହି ଆତ୍ମାଙ୍କୁ, ଆଶ୍ଚର୍ଯ୍ୟବତ୍—ଆଶ୍ଚର୍ଯ୍ୟ ପରି, ବଦତି—କହଇ, ତଥୈବଚ—ସେହିପରି, ଅନ୍ୟଃ—ଅନ୍ୟବ୍ୟକ୍ତି, ଆଶ୍ଚର୍ଯ୍ୟବତ୍—ଆଶ୍ଚର୍ଯ୍ୟ ପରି, ଚ—ପୁଣି, ଏନଂ—ଏହି ଆତ୍ମାଙ୍କୁ, ଅନ୍ୟଃ—ଅନ୍ୟବ୍ୟକ୍ତି, ଶୃଣୋତି—ଶୁଣଇ, ଶ୍ରୁତ୍ୱାପି—ଶୁଣିକରି ମଧ୍ୟ, ଏନଂ—ଏହି ଆତ୍ମାଙ୍କୁ, ବେଦ—ଜାଣେ, ନ—ନାହିଁ, ଚ—ପୁଣି, ଅର୍ଥାତ୍ ଦେଖିକରି ଏବଂ କହିକରି ମଧ୍ୟ, ଏବ—ନିଶ୍ଚୟ, କଶ୍ଚିତ୍—କେହି ବ୍ୟକ୍ତି । ୨୯ ।

ଅନୁବାଦ ।

କେହି ଏହି ଆତ୍ମାଙ୍କୁ ଆଶ୍ଚର୍ଯ୍ୟପରି ଦେଖେ ଓ ସେହିପରି କେହି ଆଶ୍ଚର୍ଯ୍ୟପ୍ରକାର ବର୍ଣ୍ଣନ କରେ । କେହି ଆଶ୍ଚର୍ଯ୍ୟ ପରି ଶୁଣେ ଆଉ କେହି ବା ଶୁଣିଲେ ମଧ୍ୟ ଆତ୍ମାଙ୍କୁ ଜାଣି ପାରେ ନାହିଁ । ୨୯ ।

ବିଶଦବ୍ୟାଖ୍ୟା ।

ଏ ଶ୍ଳୋକରେ 'ଏନଂ' କର୍ମ, 'ପଶ୍ୟତି' 'ବଦତି' ଓ ଶୃଣୋତି' କ୍ରିୟା ଏବଂ 'କଶ୍ଚିତ୍' କର୍ତ୍ତା, ଏପରି ପାଞ୍ଚପଦର ବିଶେଷଣ—'ଆଶ୍ଚର୍ଯ୍ୟବତ୍' । ଅଥବା (ଏନଂ) ଆତ୍ମା, (ପଶ୍ୟତି) ଆତ୍ମତତ୍ତ୍ୱଦର୍ଶନ, (ବଦତି) ଆତ୍ମତତ୍ତ୍ୱ ବ୍ୟାଖ୍ୟା ଓ (ଶୃଣୋତି) ଆତ୍ମତତ୍ତ୍ୱ ଶ୍ରବଣ ଏବଂ (କଶ୍ଚିତ୍) ଆତ୍ମଦର୍ଶୀ, ଆତ୍ମତତ୍ତ୍ୱର ଉପଦେଶକ ଓ ଆତ୍ମତତ୍ତ୍ୱଶ୍ରୋତା ଏ ସମସ୍ତେ "ଆଶ୍ଚର୍ଯ୍ୟବତ୍" ।

'ଏନଂ' ପଦଦ୍ୱାରା ଆତ୍ମାଙ୍କୁ ଲକ୍ଷ୍ୟ କରା ହୋଇଅଛି । ଆତ୍ମା କାହିଁକି 'ଆଶ୍ଚର୍ଯ୍ୟବତ୍' ପ୍ରଥମରେ ତାହା ବ୍ୟାଖ୍ୟା କରା ହେଉଅଛି । ଅବିଦ୍ୟାର କଳ୍ପନା ହେତୁରୁ ଆତ୍ମାଙ୍କଠାରେ ପରସ୍ପର ବିରୋଧୀ କେତେକ ଗୁଣ ଥିବାର ବୋଧ ହୁଏ । ଯଥା—ଆତ୍ମା ଚୈତନ୍ୟସ୍ୱରୂପ ହେଲେହେଁ ଜଡ଼ବତ୍, ନିତ୍ୟ ହୋଇ ସୁଦ୍ଧା ଅନିତ୍ୟ ତୁଲ୍ୟ, ଆନନ୍ଦସ୍ୱରୂପ ଅଥଚ ମହାଦୁଃଖୀ ପରି ପ୍ରତୀତ ହେଉଅଛନ୍ତି । ଆତ୍ମା ନିର୍ବିକାର ହୋଇ ମଧ୍ୟ ସ୍ଥୂଳଦୃଷ୍ଟିରେ ବିକାରବାନ୍, ସ୍ୱୟଂ ପ୍ରକା-

Digitized by PPRACHIN, SOA

ଶସ୍ୱରୂପ ହୋଇ ସୁଦ୍ଧା ଅପ୍ରକାଶିତ ଥିଲା, ବ୍ରହ୍ମରୂ ଅଭିନ୍ନ ହେଲେହେଁ ଭିନ୍ନବତ୍, ପୁଂ ସଦା-ମୁକ୍ତ ଅଥଚ ଆବଦ୍ଧ ପ୍ରାପ୍ତ ଓ ଏକସ୍ୱରୂପ ହେଲେ ଅନେକ ବୋଲି ପ୍ରତୀତ ଏବଂ ସର୍ବତ୍ର ସ୍ଥିତ, ପୁଣି ସର୍ବଠାରୁ ପୃଥକ୍ ବୋଲି ଜଣା ଯାଉଅଛନ୍ତି । ଅତଏବ ଏରୂପ ଆତ୍ମା;—'ଆଶ୍ଚର୍ଯ୍ୟବତ୍' ।

ଦ୍ୱିତୀୟରେ (ପଶ୍ୟତି) କ୍ରିୟା ଆତ୍ମତତ୍ତ୍ୱଦର୍ଶନ;—'ଆଶ୍ଚର୍ଯ୍ୟବତ୍' । କାହିଁକନା ଜ୍ଞାନ ଅନ୍ତଃକରଣର ଏକପ୍ରକାର ବୃତ୍ତି ଥିବାରୁ ମିଥ୍ୟା ବା ଅସତ୍ ହେଲେ ମଧ୍ୟ ସତ୍ୟସ୍ୱରୂପ ଆତ୍ମାର ପ୍ରକାଶକ ଓ ଅବିଦ୍ୟାର କାର୍ଯ୍ୟ ହୋଇ ସୁଦ୍ଧା ଅବିଦ୍ୟାନାଶକ, ପୁଣି (ସ୍ୱୟଂ ଅବିଦ୍ୟାର କାର୍ଯ୍ୟ ଥିବାରୁ) ଅବିଦ୍ୟାରୂପ କାରଣ ବିନାଶ କରିବାଦ୍ୱାରା ଆପଣାର ବିନାଶକାରୀ, ଏପରି ଜ୍ଞାନ ବା ଦୃଷ୍ଟି (ପଶ୍ୟତି) କ୍ରିୟା ଯେ 'ଆଶ୍ଚର୍ଯ୍ୟବତ୍' ସେଥିରେ କି ଆଉ ସନ୍ଦେହ ଅଛି ?

ତୃତୀୟରେ ଆତ୍ମତତ୍ତ୍ୱ-ଉପଦେଶ ଦାନ (ବଦତି) କ୍ରିୟା ;—'ଆଶ୍ଚର୍ଯ୍ୟବତ୍' । କାହିଁକନା ବେଦରେ ପ୍ରମାଣ ଅଛି ଯେ "ଯତୋବାଚୋନିବର୍ତ୍ତନ୍ତେ ଅପ୍ରାପ୍ୟ ମନସାସହ" ଅର୍ଥାତ୍ ମନ-ସହିତ ବଚନ ଯାହାଙ୍କୁ ପ୍ରାପ୍ତ ନ ହୋଇ ନିବୃତ୍ତ ହୋଇ ଆସେ । ଅତଏବ ସମସ୍ତ ଶବ୍ଦଦ୍ୱାରା ଅକଥନୀୟ ବା ଅପ୍ରକାଶ୍ୟ ଯେ ଆତ୍ମତତ୍ତ୍ୱ ତାହାର ବ୍ୟାଖ୍ୟା 'ଆଶ୍ଚର୍ଯ୍ୟବତ୍' ନୁହେଁତ ଆଉ କଅଣ ?

ଚତୁର୍ଥରେ ଆତ୍ମତତ୍ତ୍ୱଶ୍ରବଣ (ଶୃଣୋତି) କ୍ରିୟା ;—'ଆଶ୍ଚର୍ଯ୍ୟବତ୍' । ଯେହେତୁ ଆତ୍ମତତ୍ତ୍ୱ ଶ୍ରୁତିର ଅଗମ୍ୟ । ପୁଣି ଶ୍ରୋତା ଜନ୍ମଜନ୍ମାନ୍ତର ତପସ୍ୟା ଫଳରେ ଆପଣାର ଚିତ୍ତ ନିର୍ମଳ ନ କଲେ ଆତ୍ମତତ୍ତ୍ୱର ଉପଦେଶ ଶୁଣିବ କପରି ବା ଶୁଣିଲେ ବୁଝିବ କପରି ? ଅତଏବ ଆତ୍ମତତ୍ତ୍ୱ-ଶ୍ରବଣ ଯେ 'ଆଶ୍ଚର୍ଯ୍ୟବତ୍' ତାହା ପ୍ରମାଣିତ ହେଲା ।

ପଞ୍ଚମରେ ଆତ୍ମତତ୍ତ୍ୱଦର୍ଶୀ (କଶ୍ଚିତ୍) ପୁରୁଷ ମଧ୍ୟ 'ଆଶ୍ଚର୍ଯ୍ୟବତ୍' । କାହିଁକନା ସେ ଆତ୍ମଜ୍ଞାନ ଲାଭଦ୍ୱାରା ଅବିଦ୍ୟାରୂପ ଅନ୍ଧକାରରୁ ଓ ଅବିଦ୍ୟାର କାର୍ଯ୍ୟରୂପ ପାପରୁ ବିମୁକ୍ତ ହେଲେ ସୁଦ୍ଧା ପ୍ରାରବ୍ଧ କର୍ମର ପ୍ରବଳତା ହେତୁରୁ ଅଜ୍ଞାନୀ ପରି ବ୍ୟବହାର କରନ୍ତି । ସର୍ବଦା ସମାଧିଯୁକ୍ତ ହୋଇ ମଧ୍ୟ କେବେ୨ ସମାଧି ଭଙ୍ଗ କରନ୍ତି ଓ ପୁଣି ସମାଧିଯୁକ୍ତ ହୁଅନ୍ତି । ଏଣୁ-କରି ଆତ୍ମଦର୍ଶୀ;—'ଆଶ୍ଚର୍ଯ୍ୟବତ୍' ।

ପୁଣି ଆତ୍ମତତ୍ତ୍ୱର ଉପଦେଶକ (କଶ୍ଚିତ୍) ପୁରୁଷ 'ଆଶ୍ଚର୍ଯ୍ୟବତ୍' । କାହିଁକନା ଆତ୍ମାର ସାକ୍ଷାତ୍ ଜ୍ଞାନଯୁକ୍ତ ପୁରୁଷ ସର୍ବଦା ସମାଧିଯୁକ୍ତ । ସେ କପରି ଧ୍ୟାନଭଙ୍ଗ କରି ଉପଦେଶବାକ୍ୟ କହିବେ ? କହିଲେତ ସମାଧିଭଙ୍ଗ (ବ୍ୟୁତ୍ଥାନଦୋଷ) ହେବ । ନ କହିଲେ ଉପଦେଶଦାନ ବା ହେବ କପରି ? ପୁଣି ଉପଦେଶ ଦେବାଦ୍ୱାରା ଆତ୍ମଜ୍ଞାନ ବ୍ୟକ୍ତି କୌଣସି ପ୍ରୟୋଜନ ସାଧନର ଇଚ୍ଛୁକ ନୁହନ୍ତି; କେବଳ ଦୟା ଓ ଅନୁଗ୍ରହ କରି ଉପଦେଶ ଦେବେ । ଏପରି ଦୟାଳୁ ଈଶ୍ୱରତୁଲ୍ୟ ବ୍ରହ୍ମନିଷ୍ଠ ଗୁରୁ ଅତି ଦୁର୍ଲ୍ଲଭ । ଅତଏବ ଆତ୍ମତତ୍ତ୍ୱଉପଦେଶକ ;—'ଆଶ୍ଚର୍ଯ୍ୟବତ୍' ।

ସେହିପରି ଆତ୍ମତତ୍ତ୍ୱଶ୍ରୋତା (କଶ୍ଚିତ୍) ପୁରୁଷ ମଧ୍ୟ 'ଆଶ୍ଚର୍ଯ୍ୟବତ୍' । ଉପଦେଶକ ନ ଥିଲେ ଶ୍ରୋତା ଶୁଣିବ କାହାଠାରୁ ? ଉପଦେଶକ ଯେ ଦୁର୍ଲ୍ଲଭ ତାହା ବୁଝାଇ ଦିଆ ଯାଇ-

Digitized by PPRACHIN, SOA

ଅଛନ୍ତି । ପୁଣି ଗୁରୁବାକ୍ୟ ଓ ଶାସ୍ତ୍ରାଦିରେ ଅଟଳଶ୍ରଦ୍ଧା ନ ଥିଲେ ଉପଦେଶରେ କିଛି ଫଳ ହୁଏ ନାହିଁ । ସେ ସବୁ ଗୁଣ ଶ୍ରୋତାପକ୍ଷରେ ଦୁର୍ଲଭ । ଏଣୁକରି ଆତ୍ମତତ୍ତ୍ୱଶ୍ରୋତା;—'ଆଶ୍ଚର୍ଯ୍ୟବତ୍' ।

କାଳେ ଅର୍ଜୁନ କହିବେ ଯେ ଅନେକ ବୁଦ୍ଧିମାନ୍ ଓ ବିଦ୍ୱାନ୍ ଲୋକତ ଶୋକ ପରିତ୍ୟାଗ କରି ପାରନ୍ତି ନାହିଁ, ମୁଁ ଶୋକ କଲି ବୋଲି ଆପଣ କାହିଁକି ମତେ ଦୋଷୀ କରୁଅଛନ୍ତି । ଆଉ ଯଦି ଆପଣଙ୍କଠାରୁ ଏତେ ଉପଦେଶ ଶୁଣିକରି ମଧ୍ୟ ମୋହର ଶୋକ ନିବୃତ୍ତି ନ ହେଲା ସେ ଦୋଷତ ମୋହର ନୁହେ । କାହିଁକିନା ଶ୍ରୋତା ବୁଝି ନ ପାରିଲେ ବକ୍ତାର ଦୋଷ । ଏହାର ନିବୃତ୍ତିପାଇଁ ଶ୍ରୀଭଗବାନ୍ କହିଲେ ଯେ ଆତ୍ମତତ୍ତ୍ୱ ବଡ଼ କଠିନ କଥା । ତାହା ଜାଣିବା, କହିବା ଓ ଶୁଣିବା ଆଶ୍ଚର୍ଯ୍ୟ କଥା । ତାହା କେହି ଜାଣେ ନାହିଁ, ଜାଣିଲେ ମଧ୍ୟ କହେ ନାହିଁ, କହିଲେ କେହି ଶୁଣେ ନାହିଁ ଓ ଶୁଣିଲେ ମଧ୍ୟ କେହି ବୁଝେ ନାହିଁ । ୨୯ ।

ଶ୍ଳୋକଃ ।

ଦେହୀ ନିତ୍ୟମବଧ୍ୟୋଽୟଂ, ଦେହେ ସର୍ବସ୍ୟ ଭାରତ ।
ତସ୍ମାତ୍ ସର୍ବାଣି ଭୂତାନି, ନ ତ୍ୱଂ ଶୋଚିତୁମର୍ହସି । ୩୦ ।

ଅନ୍ୱୟଃ ।

ହେ ଭାରତ । ସର୍ବସ୍ୟ ଦେହେ ଅୟଂ ଦେହୀ ନିତ୍ୟଂ ଅବଧ୍ୟଃ । ତସ୍ମାତ୍ ତ୍ୱଂ ସର୍ବାଣି ଭୂତାନି ଶୋଚିତୁଂ ନ ଅର୍ହସି । ୩୦ ।

ଟୀକା ।

ତଦେବମବଧ୍ୟତ୍ୱମାତ୍ମନଃ ସଂକ୍ଷେପେଣୋପଦିଶନ୍ନଶୋଚ୍ୟତ୍ୱ ମୁପସଂହରତି । ଦେହୀତି ସ୍ପଷ୍ଟାର୍ଥଃ । ୩୦ ।

ପଦବ୍ୟାଖ୍ୟା ।

ଦେହୀ—ଦେହଧାରୀ ଅର୍ଥାତ୍ ଜୀବାତ୍ମା, ନିତ୍ୟଂ—ସର୍ବଦା, ଅବଧ୍ୟଃ—ବଧର ଯୋଗ୍ୟ ନୁହନ୍ତି, ଅୟଂ—ଏହି, ଦେହେ—ଶରୀରରେ, ସର୍ବସ୍ୟ—ସମସ୍ତଙ୍କର, ଭାରତ—ହେ ଅର୍ଜୁନ !, ତସ୍ମାତ୍—ସେହି କାରଣରୁ, ସର୍ବାଣି ଭୂତାନି—ସମସ୍ତପ୍ରାଣିମାନଙ୍କୁ, ନ—ନାହିଁ, ତ୍ୱଂ—ତୁମ୍ଭେ, ଶୋଚିତୁଂ—ଶୋଚନା କରିବାକୁ, ଅର୍ହସି—ଯୋଗ୍ୟ ହଅ । ୩୦ ।

ଅନୁବାଦ ।

ହେ ଅର୍ଜୁନ । ଦେହଧାରୀ ଜୀବାତ୍ମା ସମସ୍ତଙ୍କ ଶରୀରରେ ଅବଧ୍ୟରୂପରେ ସର୍ବଦା ବିଦ୍ୟମାନ ଅଛନ୍ତି, ଅତଏବ ସମସ୍ତ ପ୍ରାଣିମାନଙ୍କ ନିମିତ୍ତ ତୁମ୍ଭର ଶୋକ କରିବା ଉଚିତ ନୁହେ । ୩୦ ।

ବିଶଦବ୍ୟାଖ୍ୟା ।

ଯେପରି ଘଟ ନଷ୍ଟ ହେଲେ ଘଟ ମଧ୍ୟସ୍ଥିତ ଆକାଶ ନଷ୍ଟ ହୁଏ ନାହିଁ, ଅଥବା ଜଳାଶୟର ଜଳ ଶୁଖିଗଲେ ପ୍ରତିବିମ୍ବିତ ଚନ୍ଦ୍ର ନଷ୍ଟ ହୁଏ ନାହିଁ, ସେହିପରି ଜୀବାତ୍ମା ଏ ଦେହରେ 'ଅବଧ୍ୟ' ରୂପରେ ସର୍ବଦା ବିଦ୍ୟମାନ ଥିବାରୁ ଏ ଦେହର ବିନାଶ ହେଲେ

Digitized by PPRACHIN, SOA

ମଧ୍ୟ ତାଙ୍କର ବିନାଶ ହୁଏ ନାହିଁ । ଭୀଷ୍ମାଦିଙ୍କ ଦେହ ବିନଷ୍ଟ ହେଲେ ଭୀଷ୍ମାଦିଙ୍କର ଜୀବାତ୍ମା କଦାପି ବିନଷ୍ଟ ହେବେ ନାହିଁ । ଅତଏବ ହେ ଅର୍ଜୁନ ! ତୁମ୍ଭେ ସମସ୍ତ ପ୍ରାଣିମାନଙ୍କ ନିମିତ୍ତ ଶୋକ କର ନାହିଁ । ୩୦ ।

ଶ୍ଳୋକଃ ।

ସ୍ୱଧର୍ମମପି ଚାବେକ୍ଷ୍ୟ, ନ ବିକମ୍ପିତୁମର୍ହସି ।
ଧର୍ମ୍ୟାଦ୍ଧି ଯୁଦ୍ଧାଚ୍ଛ୍ରେୟୋଽନ୍ୟତ୍, କ୍ଷତ୍ରିୟସ୍ୟ ନ ବିଦ୍ୟତେ । ୩୧ ।

ଅନ୍ୱୟଃ ।

ସ୍ୱଧର୍ମଂ ଚ ଅପି ଅବେକ୍ଷ୍ୟ ତ୍ୱଂ ବିକମ୍ପିତୁଂ ନ ଅର୍ହସି । କ୍ଷତ୍ରିୟସ୍ୟ ଧର୍ମ୍ୟାତ୍ ଯୁଦ୍ଧାତ୍ ଅନ୍ୟତ୍ ଶ୍ରେୟଃ ହି ନ ବିଦ୍ୟତେ । ୩୧ ।

ଟୀକା ।

ଯଚ୍ଚୋକ୍ତମର୍ଜୁନେନ ବେପଥୁଶ୍ଚ ଶରୀରେ ମେ ଇତ୍ୟାଦି ତତ୍ପର୍ୟୁକ୍ତମିତ୍ୟାହ । ସ୍ୱଧର୍ମମପୀତି । ଆତ୍ମନୋ ନାଶାଭାବାଦେବୈତେଷାଂ ହନନେଽପି ବିକମ୍ପିତୁଂ ନାର୍ହସି, କିନ୍ତୁ ସ୍ୱଧର୍ମମପ୍ୟବେକ୍ଷ୍ୟ ବିକମ୍ପିତୁଂ ନାର୍ହସୀତି ସମ୍ବନ୍ଧଃ । ଯଚ୍ଚୋକ୍ତଂ ନ ଚ ଶ୍ରେୟୋଽନୁପଶ୍ୟାମି ହତ୍ୱା ସ୍ୱଜନମାହବେ ଇତି ତତ୍ରାହ ଧର୍ମ୍ୟାଦିତି । ଧର୍ମାଦନପେତାତ୍ ନ୍ୟାଯ୍ୟାଦ୍ୟୁଦ୍ଧାଦନ୍ୟତ୍ । ୩୧ ।

ପଦବ୍ୟାଖ୍ୟା ।

ସ୍ୱଧର୍ମଂ—ଆପଣା କ୍ଷତ୍ରିୟଧର୍ମକୁ, ଅପି—ମଧ୍ୟ, ଚ—ପୁନର୍ବାର, ଅବେକ୍ଷ୍ୟ—ଦେଖି, ନ—ନାହିଁ, ବିକମ୍ପିତୁଂ—କମ୍ପିତ ହେବାକୁ—ଥରିବାକୁ, ଅର୍ହସି—ଯୋଗ୍ୟ ହୁଅ, ଧର୍ମ୍ୟାତ୍—ଧର୍ମଯୁକ୍ତ, ହି—ଯେହେତୁ, ଯୁଦ୍ଧାତ୍—ଯୁଦ୍ଧ ଅପେକ୍ଷା ଶ୍ରେୟଃ—ପରମକଲ୍ୟାଣକର, ଅନ୍ୟତ୍—ଅନ୍ୟ କିଛି, କ୍ଷତ୍ରିୟସ୍ୟ—କ୍ଷତ୍ରିୟର, ନ ବିଦ୍ୟତେ—ନାହିଁ । ୩୧ ।

ଅନୁବାଦ ।

ଆପଣାର ଧର୍ମପ୍ରତି ଦୃଷ୍ଟିପାତ କଲେ ମଧ୍ୟ ତୁମ୍ଭର ଭୟ କରିବା ଉଚିତ ନୁହେ । ଯେହେତୁ ଧର୍ମଯୁଦ୍ଧ ଅପେକ୍ଷା କ୍ଷତ୍ରିୟର ଆଉ କୌଣସି କର୍ମ କଲ୍ୟାଣଦାୟକ ନୁହେ । ୩୧ ।

ବିଶଦବ୍ୟାଖ୍ୟା ।

ପ୍ରଥମ ଅଧ୍ୟାୟର ୨୯ ଶ୍ଳୋକରେ ଅର୍ଜୁନ କହିଥିଲେ ଯେ "ବେପଥୁଶ୍ଚ ଶରୀରେ ମେ" ଅର୍ଥାତ୍ 'ମୋହର ଦେହ କମ୍ପୁଅଛି'; ଏ ଶ୍ଳୋକରେ ଭଗବାନ୍ ତହିଁ ପ୍ରତି କଟାକ୍ଷ କରି କହୁଅଛନ୍ତି ଯେ ଆତ୍ମଜ୍ଞାନ ଉଦୟ ହେଲେ ଶୋକ ଯେ ଉଚିତ ନୁହେ ତାହା ତ ବୁଝି ପାରିବ, ସ୍ୱଧର୍ମ ଆଡକୁ ଦୃଷ୍ଟି କଲେ ମଧ୍ୟ ତୁମ୍ଭର ଭୟରେ କମ୍ପିତ ହେବା ଉଚିତ ନୁହେ । କାହିଁକିନା ଯୁଦ୍ଧରୁ ପଳାଇ ନଯିବା କ୍ଷତ୍ରିୟର ଧର୍ମ ଏବଂ ତାହା ଅପେକ୍ଷା ଅଉ ଶ୍ରେୟସ୍କର କର୍ମ କ୍ଷତ୍ରିୟ ପକ୍ଷରେ କିଛି ନାହିଁ । ଆଉ ଅର୍ଜୁନ କହିଥିଲେ ଯେ 'ସ୍ୱଜନମାନଙ୍କୁ ଯୁଦ୍ଧରେ ହତ କଲେ ମୋହର କି ମଙ୍ଗଳ ହେବ ତାହା ମୁଁ ବୁଝି ପାରୁ ନାହିଁ' ଏ ଶ୍ଳୋକରେ ଭଗବାନ୍ 'ଅର୍ଜୁନଙ୍କର ସେପ୍ରକାର ଉକ୍ତି ଶାସ୍ତ୍ର ଓ ଧର୍ମସଙ୍ଗତ ନ ଥିବାର ପ୍ରମାଣ କଲେ ଅର୍ଥାତ୍ ଧର୍ମଯୁଦ୍ଧ କ୍ଷତ୍ରିୟର ପ୍ରକୃତ ଧର୍ମ ଓ ଯୁଦ୍ଧରୁ ପଳାୟନ ପ୍ରକୃତ ପାପ ଏହା ବୁଝାଇ ଦେଲେ । ୩୧ ।

Digitized by PPRACHIN, SOA

ଶ୍ଲୋକଃ ।

ଯଦୃଚ୍ଛୟା ଚୋପପନ୍ନଂ, ସ୍ୱର୍ଗଦ୍ୱାରମପାବୃତଂ ।
ସୁଖିନଃ କ୍ଷତ୍ରିୟାଃ ପାର୍ଥ, ଲଭନ୍ତେ ଯୁଦ୍ଧମୀଦୃଶଂ । ୩୨ ।

ଅନ୍ୱୟଃ ।

ହେ ପାର୍ଥ ! ଯଦୃଚ୍ଛୟା ଉପପନ୍ନଂ ଚ ଅପାବୃତଂ ସ୍ୱର୍ଗଦ୍ୱାରଂ ଈଦୃଶଂ ଯୁଦ୍ଧଂ ସୁଖିନଃ କ୍ଷତ୍ରିୟାଃ ଲଭନ୍ତେ । ୩୨ ।

ଟୀକା ।

କିଞ୍ଚ ମହତ ଶ୍ରେୟସି ସ୍ୱୟମେବୋପସ୍ଥିତେ ଭୂତୋ ବଦତ୍ୟେ ଇତ୍ୟାହ । ଯଦୃଚ୍ଛୟେତି । ଯଦୃଚ୍ଛୟା ଅପ୍ରାର୍ଥିତମେବୋପପନ୍ନଂ ପ୍ରାପ୍ତମୀଦୃଶଂ ଯୁଦ୍ଧଂ ସୁଖିନଃ ଭାଗ୍ୟା ଏବ ଲଭନ୍ତେ । ଯତୋଽନିବାରଣଂ ସ୍ୱର୍ଗଦ୍ୱାରମେବୈତତ୍ । ଯଦ୍ୱା ଯଦନ୍ୟଦର୍ଥଂ ଯୁଦ୍ଧଂ ଲଭନ୍ତେ ତଏବ ସୁଖିନଃ ଇତ୍ୟର୍ଥଃ । ଏତେନ ସ୍ୱଜନଂ ହି କଥଂ ହତ୍ୱା ସୁଖିନଃ ସ୍ୟାମ ମାଧବେତି ଯଦୁକ୍ତଂ ତନ୍ନିରସ୍ତଂ ଭବତି । ୩୨ ।

ପଦବ୍ୟାଖ୍ୟା ।

ଯଦୃଚ୍ଛୟା—ଆପଣା ଇଚ୍ଛାରେ—ବିନା ଯତ୍ନରେ, ଚ—ଆଉ, ଉପପନ୍ନଂ—ଉପସ୍ଥିତ, ସ୍ୱର୍ଗଦ୍ୱାରଂ—ସ୍ୱର୍ଗଦ୍ୱାରସ୍ୱରୂପ, ଅପାବୃତଂ—ଅନାବୃତ—ଖୋଲା, ସୁଖିନଃ—ଭାଗ୍ୟବନ୍ତ, କ୍ଷତ୍ରିୟାଃ—କ୍ଷତ୍ରିୟମାନେ, ପାର୍ଥ—ହେ ଅର୍ଜ୍ଜୁନ, ଲଭନ୍ତେ—ପ୍ରାପ୍ତ ହୁଅନ୍ତି, ଯୁଦ୍ଧଂ—ଯୁଦ୍ଧକୁ, ଈଦୃଶଂ—ଏ ପ୍ରକାର । ୩୨ ।

ଅନୁବାଦ ।

ହେ ପାର୍ଥ ! ଅନାୟାସପ୍ରାପ୍ତ ସ୍ୱର୍ଗର ମୁକ୍ତଦ୍ୱାର ସ୍ୱରୂପ ଏ ପ୍ରକାର ଯୁଦ୍ଧକୁ ଭାଗ୍ୟବନ୍ତ କ୍ଷତ୍ରିୟମାନେ ପ୍ରାପ୍ତ ହୁଅନ୍ତି । ୩୨ ।

ବିଶଦବ୍ୟାଖ୍ୟା ।

ହେ ଅର୍ଜୁନ ! ଏ ଯୁଦ୍ଧ ଘଟାଇବାକୁ ତୁମ୍ଭେ କିଛି ଚେଷ୍ଟା କରି ନାହଁ, ଦୁଷ୍ଟବୁଦ୍ଧି କୌରବଙ୍କ ଉଦ୍ୟମରେ ଏହା ଉପସ୍ଥିତ ହୋଇଛି । ଏ ଯୁଦ୍ଧରେ ଜୟଲାଭ କଲେ ଯଶଃ ଓ ରାଜ୍ୟଲାଭ ହେବ ଆଉ ସମ୍ମୁଖସମରରେ ପ୍ରାଣ ହରାଇଲେ ସ୍ୱର୍ଗଲାଭ ହେବ । ଭାଗ୍ୟବନ୍ତ କ୍ଷତ୍ରିୟମାନେ ଏପରି ଯୁଦ୍ଧ ପ୍ରାପ୍ତ ହୁଅନ୍ତି । ତୁମ୍ଭେ ଏଥିରୁ ନିରସ୍ତ ହୋଇ ରାଜ୍ୟ ଓ ଯଶଲାଭରୁ ଅଥବା ସ୍ୱର୍ଗଲାଭରୁ ବଞ୍ଚିତ ହୁଅନା । ସ୍ମୃତିରେ ପ୍ରମାଣ ଅଛି ଯେ "ଆହବେଷୁ ମିଥୋଽନ୍ୟୋଽନ୍ୟଂ ଜିଘାଂସନ୍ତୋ ମହୀକ୍ଷିତଃ । ଯୁଦ୍ଧ୍ୟମାନାଃ ପରଂ ଶକ୍ତ୍ୟା ସ୍ୱର୍ଗଂ ଯାନ୍ତ୍ୟପରାଙ୍ମୁଖାଃ" ମନୁଃ । ଅର୍ଥାତ୍ ପରସ୍ପର ବିନାଶକାମୀ କ୍ଷତ୍ରିୟମାନେ ଶକ୍ତି ଅନୁସାରେ ଯୁଦ୍ଧ କରି ଯୁଦ୍ଧରୁ ପରାଙ୍ମୁଖ ନ ହେଲେ ସ୍ୱର୍ଗଲାଭ କରନ୍ତି ।

ଭୀଷ୍ମ ଦ୍ରୋଣାଦି ତୁମ୍ଭର ଗୁରୁଜନ ହେଲେ ସୁଦ୍ଧା ତୁମ୍ଭର ଆତତାୟୀ (ଆତତାୟୀ କାହାକୁ କୁହାଯାଏ ୧ମ ଅଧ୍ୟାୟର ୩୬ ଶ୍ଲୋକରେ ତାହା ବୁଝାଇ ଦିଆ ଯାଇଅଛି) । ଆତତାୟିଙ୍କୁ ବଧ କଲେ ଧର୍ମଶାସ୍ତ୍ର ଅନୁସାରେ ପାପ ନାହିଁ । ଯଥା;—"ଗୁରୁଂ ବା ବାଲବୃଦ୍ଧୌ ବା ବ୍ରାହ୍ମଣଂ ବା ବହୁଶ୍ରୁତଂ । ଆତତାୟିନମାୟାନ୍ତମପି ବେଦାନ୍ତଗଂ ରଣେ । ଆତତାୟିନମାୟାନ୍ତଂ ହନ୍ୟାଦେବା ବିଚାରୟନ୍ । ଜିଘାଂସନ୍ତଂ ଜିଘାଂସୀୟାନ୍ନ ତେନ ବ୍ରହ୍ମହା ଭବେତ୍" ।

ଅର୍ଥାତ୍ ଗୁରୁ ହେଉନ୍ତୁ ବା ବାଳକ ହେଉନ୍ତୁ କିମ୍ବା ବୃଦ୍ଧ ହେଉନ୍ତୁ, ବ୍ରାହ୍ମଣ ହେଉନ୍ତୁ ବା ବହୁଶାସ୍ତ୍ରଜ୍ଞାନୀ ହେଉନ୍ତୁ, ଅଥବା ବେଦାନ୍ତୀ ହେଉନ୍ତୁ ଆତତାୟୀ ହେଲେ ସମ୍ମୁଖରେ ଉପସ୍ଥିତମାତ୍ରକେ ପାପ ପୁଣ୍ୟର ବିଚାର ନ କରି ତାଙ୍କୁ ବଧ କରିବା ଉଚିତ । ଯେ ମାରିବା ଇଚ୍ଛାରେ ଉପସ୍ଥିତ, ତାଙ୍କୁ ମାରିଲେ ବ୍ରହ୍ମହତ୍ୟା ପାପ ହେବ ନାହିଁ ।

ଅର୍ଜୁନ ୧ମ ଅଧ୍ୟାୟର ୩୭ ଶ୍ଳୋକରେ 'ହେ ମାଧବ ! ଆତ୍ମୀୟ ଲୋକଙ୍କୁ ଯୁଦ୍ଧରେ ବିନାଶ କରି କିପରି ସୁଖୀ ହେବୁଁ' ବୋଲି ଯାହା ପଚାରି ଥିଲେ ଏ ଶ୍ଳୋକରେ ଭଗବାନ୍ 'ଏପରି ଯୁଦ୍ଧ ସୁଖୀ ବା ଭାଗ୍ୟବନ୍ତ କ୍ଷତ୍ରିୟମାନେ ପ୍ରାପ୍ତ ହୁଅନ୍ତି' ବୋଲି ତାହାର ଉତ୍ତର ଦେଲେ ।

ଆଧ୍ୟାତ୍ମିକ ବ୍ୟାଖ୍ୟା ।

ଅଥବା ଜୀବାତ୍ମାର ଇଚ୍ଛା ଓ ଯତ୍ନ ନ ଥିଲେ ସୁଦ୍ଧା ଇନ୍ଦ୍ରିୟମାନଙ୍କର ବିଷୟ ଓ କାମ କ୍ରୋଧାଦିଙ୍କ ସହିତ ଯୁଦ୍ଧ ଆପଣା ଇଚ୍ଛାରେ ଉପସ୍ଥିତ ହୋଇଅଛି, ଏ ଯୁଦ୍ଧରେ ପ୍ରବୃତ୍ତ ହେଲେ ମୁକ୍ତିର ଦ୍ୱାର ଫିଟି ଯିବ । ଏପରି ଯୁଦ୍ଧ ସୁଖୀ ଅର୍ଥାତ୍ ସୁକୃତି ଜୀବାତ୍ମା କେବଳ ପ୍ରାପ୍ତ ହୁଏ । ୩୨ ।

ଶ୍ଳୋକଃ ।

ଅଥଚେତ୍ତ୍ୱମିମଂ ଧର୍ମ୍ୟଂ, ସଂଗ୍ରାମଂ ନ କରିଷ୍ୟସି ।
ତତଃ ସ୍ୱଧର୍ମଂ କୀର୍ତ୍ତିଂ ଚ, ହିତ୍ୱା ପାପମବାପ୍ସ୍ୟସି । ୩୩ ।

ଅନ୍ୱୟଃ ।

ଅଥ ତ୍ୱଂ ଇମଂ ଧର୍ମ୍ୟଂ ସଂଗ୍ରାମଂ ନ କରିଷ୍ୟସି ଚେତ୍ ତତଃ ସ୍ୱଧର୍ମଂ କୀର୍ତ୍ତିଂ ଚ ହିତ୍ୱା ପାପଂ ଅବାପ୍ସ୍ୟସି । ୩୩ ।

ଟୀକା ।

ବିପର୍ଯ୍ୟୟେ ଦୋଷମାହ । ଅଥଚେଦିତି । ୩୩ ।

ପଦବ୍ୟାଖ୍ୟା ।

ଅଥଚେତ୍—ଯେବେ, ତ୍ୱଂ—ତୁମ୍ଭେ, ଇମଂ—ଏହି, ଧର୍ମ୍ୟଂ ସଂଗ୍ରାମଂ—ଧର୍ମ ଯୁଦ୍ଧକୁ, ନ କରିଷ୍ୟସି—ନ କରିବ ତତଃ—ତେବେ, ସ୍ୱଧର୍ମଂ—ଆପଣାର ଧର୍ମକୁ, କୀର୍ତ୍ତିଂ ଚ—ଯଶକୁ ମଧ, ହିତ୍ୱା—ତ୍ୟାଗ କରି, ପାପଂ—ପାପକୁ, ଅବାପ୍ସ୍ୟସି—ପ୍ରାପ୍ତ ହେବ । ୩୩ ।

ଅନୁବାଦ ।

ଯେବେ ତୁମ୍ଭେ ଏହି ଧର୍ମ ଯୁଦ୍ଧ ନ କରିବ ତେବେ ଆପଣାର ଧର୍ମ ଓ ଯଶ ନାଶ କରି ପାପକୁ ପ୍ରାପ୍ତ ହେବ । ୩୩ ।

ବିଶଦବ୍ୟାଖ୍ୟା ।

ଯେଉଁ ଯୁଦ୍ଧରେ ପ୍ରାଣିହତ୍ୟାଜନିତ ପାପ ନାହିଁ, ତାହା ଯଦି ତୁମ୍ଭେ ନ କର ତେବେ ତୁମ୍ଭର କୀର୍ତ୍ତି ନାଶ ହେବ ଓ ଧର୍ମ ନାଶ ହେବ । ସୁତରାଂ ତୁମ୍ଭେ ପାପୀ ହେବ । ଯୁଦ୍ଧ-

Digitized by PPRACHIN, SOA

ରେ କେବଳ କମ୍ପଲିଖିତ ବ୍ୟକ୍ତିମାନଙ୍କୁ ବଧ କଲେ ପାପ ହୁଏ ବୋଲି ଧର୍ମଶାସ୍ତ୍ରରେ ଲେଖାଅଛି; ଯଥା ।—

ନ ଚ ହନ୍ୟାତ୍ ସ୍ଥଳାରୂଢ଼ଂ ନ କ୍ଲୀବଂ ନ କୃତାଞ୍ଜଳିଂ
ନ ମୁକ୍ତକେଶମାସୀନଂ ନ ତବାସ୍ମୀତି ବାଦନଂ ।
ନ ସୁପ୍ତଂ ନ ବସନ୍ନାହଂ ନ ନଗ୍ନଂ ନ କରାଯୁଧଂ
ନାଯୁଧ୍ୟମାନଂ ପଶ୍ୟନ୍ତଂ ନାପରେଣ ସମାଗତଂ ।
ନାୟୁଧବ୍ୟସନପ୍ରାପ୍ତଂ ନାର୍ତ୍ତଂ ନାତିପରକ୍ଷତଂ
ନ ଭୀତଂ ନ ପରାବୃତ୍ତଂ ସତାଂ ଧର୍ମମନୁସ୍ମରନ୍ ।
ନ କୂଟୈରାୟୁଧୈର୍ହନ୍ୟାତ୍ ଯୁଧ୍ୟମାନୋରଣେ ରିପୂନ୍
ନାକର୍ଣ୍ଣିଭର୍ନାପିଦଗ୍ଧୈର୍ନାଗ୍ନିଜ୍ୱଳିତତେଜନୈଃ ।

ମନୁଃ ।

ଅର୍ଥାତ୍ ଯାହାର ରଥାଦି ଯାନ ଭଗ୍ନ ହୋଇଥିବାରୁ ଯେ ସ୍ଥଳଗାମୀ, ଯେ ନପୁଂସକ, ଯେ ହାତଯୋଡ଼ି କ୍ଷମା ପ୍ରାର୍ଥନା କରେ, ଯାହାର ବାଳ ଫିଟି ଯାଇଥାଏ, ଯେ ସ୍ତମ୍ଭିତ ହୋଇ ବସିଥାଏ, ଯେ କହେ 'ମୁଁ ଶରଣ ପଶିଲି,' ଯେ ଶୋଇଥାଏ, ଯାହାର କବଚ ଅର୍ଥାତ୍ ସାଞ୍ଜୁ ନ ଥାଏ, ଯେ ଉଲଙ୍ଗ, ଯେ ଶସ୍ତ୍ରାସ୍ତ୍ରହୀନ, ଯେ ଯୁଦ୍ଧ କରିବାକୁ ପ୍ରସ୍ତୁତ ନ ଥାଏ, ଯେ ଯୁଦ୍ଧ ଦେଖିବାକୁ ଅସିଥାଏ, ଯେ ଅନ୍ୟଲୋକ ସହିତ ଯୁଦ୍ଧ କରୁଥାଏ, ଯେ ରୋଗୀ, ଯାହା ଦେହରେ ବହୁତ କ୍ଷତ (ଘା) ହୋଇଥାଏ, ଯେ ଭୀତ, ଯେ ପଳାଇ ଯାଉଥାଏ, ସେମାନଙ୍କୁ ଯୁଦ୍ଧରେ ବିନାଶ କରିବ ନାହିଁ ।

ବିଷାକ୍ତ ଶସ୍ତ୍ରାସ୍ତ୍ର, ଅଗ୍ନିରେ ତପ୍ତ ହୋଇଥିବା ଅସ୍ତ୍ର (ଯେପରି ବନ୍ଧୁକ ଓ ତୋପ) ଯୁଦ୍ଧରେ ବ୍ୟବହାର କରିବା ବୀରମାନଙ୍କର ଅନୁଚିତ । ଯେବେ କେହି ବ୍ୟବହାର କରେ ତେବେ ତାହାର ପାପ ହେବ ।

ମାତ୍ର ତୁମ୍ଭର ଶତ୍ରୁ ଭୀଷ୍ମ ଦ୍ରୋଣାଦିଙ୍କର ଯାନ ଭଗ୍ନ ହୋଇ ନ ଥିବା ବା ତାଙ୍କଠାରେ କ୍ଲୀବତାଦି ଦୋଷ ନ ଥିବାରୁ ତାଙ୍କୁ ବଧ କରିବାରେ ତୁମ୍ଭର ପାପ ହେବ ନାହିଁ, ଅତଏବ ଏ ଧର୍ମଯୁଦ୍ଧ ତ୍ୟାଗ କର ନା । ତ୍ୟାଗ କଲେ ତୁମ୍ଭର ରାଜ୍ୟ-ନାଶ ହେବ, କୀର୍ତ୍ତି ଲୋପ ହେବ ଓ ପାପ ହେବ । ଅଥବା (ଆଧ୍ୟାତ୍ମିକବ୍ୟାଖ୍ୟା) କାମ କ୍ରୋଧାଦି, ଜୀବର ପ୍ରଧାନ ଶତ୍ରୁ ଓ ପ୍ରାଣର ଘାତକି ଅଟନ୍ତି । ଏମାନଙ୍କ ସହିତ ଯୁଦ୍ଧ ନ କରିବା ପାପ । ଅତଏବ ଶମ ଦମ ଜ୍ଞାନ ଓ ବୈରାଗ୍ୟାଦି ରୂପ ଶସ୍ତ୍ରଅସ୍ତ୍ର ହାତରେ ନେଇ ଏମାନଙ୍କ ସହିତ ଯୁଦ୍ଧ କରିବା ଧର୍ମର କାର୍ଯ୍ୟ ଅଟେ । ୩୩ ।

ଶ୍ଳୋକଃ ।

ଅକୀର୍ତ୍ତିଂ ଚାପି ଭୂତାନି, କଥୟିଷ୍ୟନ୍ତି ତେଽବ୍ୟୟାଂ ।
ସମ୍ଭାବିତସ୍ୟ ଚାକୀର୍ତ୍ତିର୍ମରଣାଦତିରିଚ୍ୟତେ । ୩୪ ।

### ଅନ୍ୱୟଃ ।

ଭୂତାନି ଚ ତେ ଅବ୍ୟୟାଂ ଅକୀର୍ତ୍ତିଂ ଅପି କଥୟିଷ୍ୟନ୍ତି, ସମ୍ଭାବିତସ୍ୟ ଚ ଅକୀର୍ତ୍ତିଃ ମରଣାତ୍ ଅତିରିଚ୍ୟତେ । ୩୪ ।

### ଟୀକା ।

କିଞ୍ଚାକୀର୍ତ୍ତିମିତ୍ୟାହ । ଅବ୍ୟୟାଂ ଶାଶ୍ୱତୀଂ, ସମ୍ଭାବିତସ୍ୟ ବହୁମତସ୍ୟ, ଅତିରିଚ୍ୟତେ ଅଧିକା ଭବତି । ୩୪ ।

### ପଦବ୍ୟାଖ୍ୟା ।

ଅକୀର୍ତ୍ତିଂ—ଅଖ୍ୟାତିକୁ, ଚ—ପୁନର୍ବାର, ଅପି—ମଧ୍ୟ, ଭୂତାନି—ପ୍ରାଣିମାନେ, କଥୟିଷ୍ୟନ୍ତି, କହିବେ, ତେ—ତୁମ୍ଭର, ଅବ୍ୟୟାଂ—ଚିରସ୍ଥାୟିନୀ ଅର୍ଥାତ୍ ଯାହା ଚିରକାଳ ପର୍ଯ୍ୟନ୍ତ ରହେ, ସମ୍ଭାବିତସ୍ୟ—ଯଶସ୍ୱି ପୁରୁଷର, ଅକୀର୍ତ୍ତିଃ—ଅଯଶଃ, ମରଣାତ୍—ମରଣଠାରୁ, ଅତିରିଚ୍ୟତେ—ଅଧିକ ହୁଏ । ୩୪ ।

### ଅନୁବାଦ ।

ପ୍ରାଣିମାନେ ଚିରକାଳ ତୁମ୍ଭର ଅକୀର୍ତ୍ତି ଘୋଷଣା କରିବେ । ଯଶସ୍ୱି ଲୋକର ଅଯଶ ମରଣ ଅପେକ୍ଷା ମଧ୍ୟ ଅଧିକ ଅଟେ । ୩୪ ।

### ବିଶଦବ୍ୟାଖ୍ୟା ।

ଶ୍ଲୋକର ପ୍ରଥମ ପାଦରେ 'ଚ' 'ଅପି' ଦୁଇଟି ଅବ୍ୟୟ ପଦ ଥିବାରେ ପୂର୍ବଶ୍ଲୋକ ସହିତ ସମ୍ବନ୍ଧ ବ୍ୟାଖ୍ୟା କରା ହୋଇଅଛି ଅର୍ଥାତ୍ ଯୁଦ୍ଧରୁ ନିବୃତ୍ତ ହେଲେ କେବଳ ଯେ ତୁମ୍ଭର ଧର୍ମ ନାଶ ଓ କୀର୍ତ୍ତି ଲୋପ ହେବ ତାହା ନୁହେ, ସମସ୍ତ ପ୍ରାଣୀ ତୁମ୍ଭର ଅକୀର୍ତ୍ତି ବା ନିନ୍ଦା ଚିରକାଳ ଘୋଷଣା କରୁଥିବେ । ଯେବେ କହ ଯେ ଯୁଦ୍ଧରେ ପ୍ରାଣ ବିନାଶର ଆଶଙ୍କା ଅଛି, ଆତ୍ମରକ୍ଷା ସର୍ବପ୍ରକାର ଶ୍ରେୟଃ, ତହିଁରେ ଅକୀର୍ତ୍ତି ହେଲେ ହେଉ ପଛକେ କ୍ଷତି କଣ ? ତହିଁରେ ଏହି ଉତ୍ତର ଦିଆ ଯାଇ ପାରେ ଯେ, ଯେ ଧର୍ମାତ୍ମା, ଅତିଶୟ ଶୂର, ବୀର ଓ ନାନା ଗୁଣବିଭୂଷିତ ସେହି ଶ୍ରେଷ୍ଠ ପୁରୁଷକୁ 'ସମ୍ଭାବିତ' ବୋଲାଯାଏ । ସମ୍ଭାବିତ ପୁରୁଷମାନଙ୍କର ଅକୀର୍ତ୍ତି ମରଣ ଅପେକ୍ଷା ଅଧିକ କ୍ଲେଶକର । ସେମାନେ ଅକୀର୍ତ୍ତି ଅପେକ୍ଷା ମୃତ୍ୟୁକୁ ଅଧିକ ମଙ୍ଗଳକର ବୋଲି ମନେ କରନ୍ତି । ଧର୍ମନିଷ୍ଠା, ଶୌର୍ଯ୍ୟ, ବୀର୍ଯ୍ୟ ଓ ବିବିଧ ଗୁଣରେ ତୁମ୍ଭେ 'ସମ୍ଭାବିତ' ବ୍ୟକ୍ତି । ତୁମ୍ଭେ ଅତଃପର ଅକୀର୍ତ୍ତି କଥା ସହ୍ୟ କରି ପାରିବ ନାହିଁ ।

ଅଥବା (ଆଧ୍ୟାତ୍ମିକବ୍ୟାଖ୍ୟା) ଜୀବାତ୍ମା ଅହଂକାର, କାମକ୍ରୋଧାଦି ଏବଂ ଇନ୍ଦ୍ରିୟମାନଙ୍କ ବିଷୟର ବଶ୍ୟ ହେଲେ ଅଯଶ ହୁଏ । ଆଉ ଇହଲୋକରେ ଜ୍ଞାନବୈରାଗ୍ୟରୁ ରହିତ ହେଲେ ତାହା ମୃତ୍ୟୁଠାରୁ ଅଧିକ ହୁଏ । ୩୪ ।

### ଶ୍ଲୋକଃ ।

ଭୟାଦ୍ରଣାଦୁପରତଂ, ମଂସ୍ୟନ୍ତେ ତ୍ୱାଂ ମହାରଥାଃ ।
ଯେଷାଂ ଚ ତ୍ୱଂ ବହୁମତୋ, ଭୂତ୍ୱା ଯାସ୍ୟସି ଲାଘବଂ । ୩୫ ।

### ଅନ୍ୱୟଃ ।

ଯେଷାଂ ତ୍ୱଂ ବହୁମତଃ ଭୂତ୍ୱା ଲାଘବଂ ଯାସ୍ୟସି (ତେ) ଚ ମହାରଥାଃ ତ୍ୱାଂ ଭୟାତ୍ ରଣାତ୍ ଉପରତଂ ମଂସ୍ୟନ୍ତେ । ୩୫ ।

Digitized by PPRACHIN, SOA

ଟୀକା ।

କିଞ୍ଚ ଭୟାଦିତି । ଯେଷାଂ ବହୁଗୁଣତ୍ୱେନ, ତ୍ୱଂ ପୂର୍ବଂ ସମ୍ମତୋଽଭୂଃ ତଏବ ଭୟାତ୍ ସଂଗ୍ରାମାତ୍ ତ୍ୱାଂ ନିବୃତ୍ତଂ ମଂସ୍ୟନ୍ତେ, ତତଶ୍ଚ ପୂର୍ବଂ ବହୁମତୋଭୂତ୍ୱା ଲାଘବଂ ଲଘୁତାଂ ଯାସ୍ୟସି । ୩୫ ।

ପଦବ୍ୟାଖ୍ୟା ।

ଭୟାତ୍—ଭୟ ହେତୁରୁ, ରଣାତ୍—ଯୁଦ୍ଧରୁ, ଉପରତଂ—ନିବୃତ୍ତ, ମଂସ୍ୟନ୍ତେ—ଜ୍ଞାନ କରିବେ, ତ୍ୱାଂ—ତୁମ୍ଭଙ୍କୁ, ମହାରଥାଃ—ଭୀଷ୍ମ ଦ୍ରୋଣ ଓ ଦୁର୍ଯ୍ୟୋଧନାଦି ମହାରଥମାନେ, ଯେଷାଂ ଚ ତ୍ୱଂ—ଯେଉଁମାନଙ୍କର ମଧ୍ୟ ତୁମ୍ଭେ, ବହୁମତୋଭୂତ୍ୱା—ବହୁ ଆଦରଣୀୟ ହୋଇ କରି, ଯାସ୍ୟସି—ପ୍ରାପ୍ତ ହେବ, ଲାଘବଂ—ଲଘୁତାକୁ । ୩୫ ।

ଅନୁବାଦ ।

ମହାରଥମାନେ 'ତୁମ୍ଭେ ଭୟ ହେତୁରୁ ଯୁଦ୍ଧରୁ ନିବୃତ୍ତ ହେଲ' ବୋଲି ମନେ କରିବେ । ଆଉ ତୁମ୍ଭେ ଯେଉଁମାନଙ୍କର ଆଦରଣୀୟ ହୋଇଥିଲ ସେମାନଙ୍କ ନିକଟରେ ଲଘୁତା ପ୍ରାପ୍ତ ହେବ । ୩୫ ।

ବିଶଦବ୍ୟାଖ୍ୟା ।

ତୁମ୍ଭେ ଯୁଦ୍ଧ ନ କଲେ ଭୀଷ୍ମାଦି ମହାରଥମାନେ ମନେ କରିବେ, ଯେ ତୁମ୍ଭେ ଭୟ ହେତୁରୁ ଯୁଦ୍ଧରୁ ନିବୃତ୍ତ ହେଲ । ତୁମ୍ଭେ ଧର୍ମଭୟହେତୁରୁ ଯୁଦ୍ଧରୁ ନିବୃତ୍ତ ହେବାର କେହି ବିଶ୍ୱାସ କରିବେ ନାହିଁ । ଆଉ ଯେଉଁମାନେ ପୂର୍ବେ ତୁମ୍ଭଙ୍କୁ ଶୂରତା ଓ ବୀରତ୍ୱ ହେତୁ ପ୍ରଶଂସା କରୁଥିଲେ, ସେହିମାନେ ତୁମ୍ଭଙ୍କୁ ତୁଚ୍ଛଜ୍ଞାନ କରିବେ । ଅଥବା ତୁମ୍ଭେ ଇନ୍ଦ୍ରିୟମାନଙ୍କ ଦମନ ଇଚ୍ଛା ତ୍ୟାଗ କଲେ ମହାତ୍ମା ଲୋକମାନେ ଜାଣିବେ, ଯେ ଅର୍ଜୁନ ଅହଂକାର ନିବୃତ୍ତ କରିବା ପରିଶ୍ରମକୁ ଭୟ କରି ଏ ଯୁଦ୍ଧରୁ ନିବୃତ୍ତ ହେଲେ । ଆଉ ଇନ୍ଦ୍ରିୟାଦିମାନେ (ଯେ କି ପୂର୍ବରୁ ତୁମ୍ଭର ଅଧୀନ ଥିଲେ) ତୁମ୍ଭଙ୍କୁ ଲଘୁଜ୍ଞାନ କରି ଆପଣା୨ର ବିଷୟକୁ ଆକର୍ଷଣ କରିବେ । ଅତଏବ ଏ ଯୁଦ୍ଧରୁ ବିରତ ହେବା ତୁମ୍ଭର ଉଚିତ ନୁହେ । ୩୫ ।

ଶ୍ଳୋକଃ ।

ଅବାଚ୍ୟବାଦାଂଶ୍ଚ ବହୂନ୍, ବଦିଷ୍ୟନ୍ତି ତବାହିତାଃ ।
ନିନ୍ଦନ୍ତସ୍ତବ ସାମର୍ଥ୍ୟଂ, ତତୋ ଦୁଃଖତରଂ ନୁ କିଂ । ୩୬ ।

ଅନ୍ୱୟଃ ।

ତବ ଅହିତାଃ ତବ ସାମର୍ଥ୍ୟଂ ନିନ୍ଦନ୍ତଃ (ସନ୍ତଃ) ବହୂନ୍ ଅବାଚ୍ୟବାଦାନ୍ ଚ ବଦିଷ୍ୟନ୍ତି, ତତଃ କିଂ ନୁ ଦୁଃଖତରଂ (ଅସ୍ତି ?) । ୩୬ ।

ଟୀକା ।

କିଂ ଚ ଅବାଚ୍ୟବାଦାଂଶ୍ଚେତ୍ୟାଦି । ଅବାଚ୍ୟାନ୍ ବାଦାନ୍ ବଚନାନର୍ହାନ୍ ଶବ୍ଦାନ୍ ତବାହିତାସ୍ତ୍ୱଚ୍ଛତ୍ରବୋ ବଦିଷ୍ୟନ୍ତି । ୩୬ ।

ପଦବ୍ୟାଖ୍ୟା ।

ଅବାଚ୍ୟବାଦାନ୍—ଅବକ୍ତବ୍ୟ କଥାମାନଙ୍କୁ, ଚ—ପୁଣି, ବହୂନ୍—ଅନେକ, ବଦିଷ୍ୟନ୍ତି—କହିବେ, ତବାହିତାଃ

Digitized by PPRACHIN, SOA

—ତୁମ୍ଭର ଶତ୍ରୁମାନେ, ନିନ୍ଦନ୍ତଃ—ନିନ୍ଦା କରି, ତବ—ତୁମ୍ଭର, ସାମର୍ଥ୍ୟଂ—ପରାକ୍ରମକୁ, ତତଃ—ତାହା ଅପେକ୍ଷା, ଦୁଃଖତରଂ—ଅଧିକ ଦୁଃଖ, ନୁ କିଂ—ଆଉ କଅଣ ? । ୩୬ ।

## ଅନୁବାଦ ।

ତୁମ୍ଭ ଶତ୍ରୁମାନେ ତୁମ୍ଭର ସାମର୍ଥ୍ୟକୁ ନିନ୍ଦା କରି ଅନେକ ଅକଥ୍ୟ କଥା କହିବେ । ତାହାଠାରୁ ଅଧିକ ଦୁଃଖର କଥା ଆଉ କଅଣ ଅଛି ? । ୩୬ ।

## ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନ ମନେ କରିବେ ଯେ ଏ ଯୁଦ୍ଧରୁ ନିବୃତ୍ତ ହେଲେ ଭୀଷ୍ମ ଦ୍ରୋଣାଦିମାନେ ନିନ୍ଦା କଲେ ମଧ୍ୟ ଦୁର୍ଯ୍ୟୋଧନାଦି ସନ୍ତୁଷ୍ଟ ହୋଇ ଆମ୍ଭଙ୍କୁ ପ୍ରଶଂସା କରିବେ—କାହିଁକିନା ଆମ୍ଭେ ଯୁଦ୍ଧ ନ କଲେ ସେମାନେ ଅକ୍ଲେଶରେ ରାଜ୍ୟଭୋଗ କରିବେ । ଏହି ଭ୍ରମ ନିବାରଣ ପାଇଁ ଶ୍ରୀଭଗବାନ୍ କହିଲେ, ଯେ ତୁମ୍ଭର ଅହିତ ଅର୍ଥାତ୍ ଶତ୍ରୁ ଦୁର୍ଯ୍ୟୋଧନାଦି, ତୁମ୍ଭର ପ୍ରଶଂସା କରିବାତ ଦୂରର କଥା ବରଂ ତୁମ୍ଭର ପ୍ରଶଂସାଯୋଗ୍ୟ ବୀରତ୍ୱକୁ ନିନ୍ଦା କରି ନାନାପ୍ରକାର କଟୁକଥା କହିବେ ।

ଭୀଷ୍ମାଦିଙ୍କ ମରଣରେ ତୁମ୍ଭ ମନରେ ଯେଉଁ ଦୁଃଖ ଉଦୟ ହେବ ତାହା ଅପେକ୍ଷା ଏ ଲୋକନିନ୍ଦା ଅଧିକ । କାହିଁକିନା ଆତ୍ମୀୟ ଲୋକର ବିନାଶଜନିତ ଦୁଃଖ କ୍ରମେ୨ ମନରୁ ଲୋପ ହୋଇ ପାରେ, ମାତ୍ର ଲୋକନିନ୍ଦା ପ୍ରତିଦିନ ଘୋଷିତ ହେଲେ ମନ ଦୁଃଖାଗ୍ନିରେ ଦଗ୍ଧ ହେଉଥାଏ । ତାହାଠାରୁ ଆଉ ଅଧିକ ଦୁଃଖ କି ଅଛି ? । ୩୬ ।

## ଶ୍ଳୋକଃ ।

ହତୋବା ପ୍ରାପ୍ସ୍ୟସି ସ୍ୱର୍ଗଂ, ଜିତ୍ୱା ବା ଭୋକ୍ଷ୍ୟସେ ମହୀଂ ।
ତସ୍ମାଦୁତ୍ତିଷ୍ଠ କୌନ୍ତେୟ, ଯୁଦ୍ଧାୟ କୃତନିଶ୍ଚୟଃ । ୩୭ ।

## ଅନ୍ୱୟଃ ।

ହେ କୌନ୍ତେୟ ! ହତଃ ବା ସ୍ୱର୍ଗଂ ପ୍ରାପ୍ସ୍ୟସି, ଜିତ୍ୱା ବା ମହୀଂ ଭୋକ୍ଷ୍ୟସେ, ତସ୍ମାତ୍ ଯୁଦ୍ଧାୟ କୃତନିଶ୍ଚୟଃ (ସନ୍) ଉତ୍ତିଷ୍ଠ । ୩୭ ।

## ଟୀକା ।

ଯଦୋକ୍ତଂ ନ ଚୈତଦ୍ୱିଦ୍ମ ଇତ୍ୟାଦି ତତ୍ରାହ ହତୋବେତି । ପକ୍ଷଦ୍ୱୟେଽପି ତବ ଲାଭ ଏବେତ୍ୟର୍ଥଃ । ୩୭ ।

## ପଦବ୍ୟାଖ୍ୟା ।

ହତୋବା—ମଲେ ମଧ୍ୟ, ପ୍ରାପ୍ସ୍ୟସି—ପାଇବ, ସ୍ୱର୍ଗଂ—ସ୍ୱର୍ଗକୁ, ଜିତ୍ୱା ବା—ଜୟ କଲେ ମଧ୍ୟ, ଭୋକ୍ଷ୍ୟସେ—ଭୋଗ କରିବ, ମହୀଂ—ପୃଥିବୀ—ରାଜ୍ୟକୁ, ତସ୍ମାତ୍—ସେହି କାରଣରୁ, ଉତ୍ତିଷ୍ଠ—ଉଠି ଠିଆ ହୁଅ । କୌନ୍ତେୟ—ହେ କୁନ୍ତୀପୁତ୍ର !, ଯୁଦ୍ଧାୟ—ଯୁଦ୍ଧ କରିବାକୁ, କୃତନିଶ୍ଚୟଃ—ନିଶ୍ଚୟ କରି । ୩୭ ।

## ଅନୁବାଦ ।

ଯୁଦ୍ଧରେ ମଲେ ସ୍ୱର୍ଗପ୍ରାପ୍ତ ହେବ ଅଥବା ଜୟ କଲେ ରାଜ୍ୟଭୋଗ କରିବ । ଅତଏବ ହେ କୁନ୍ତୀପୁତ୍ର ! ଯୁଦ୍ଧ କରିବାକୁ ନିଶ୍ଚୟ କରି ଉଠ । ୩୭ ।

Digitized by PPRACHIN, SOA

ବଶଦବ୍ୟାଖ୍ୟା ।

ଏହି ଅଧ୍ୟାୟର ଷଷ୍ଠ ଶ୍ଳୋକରେ ଅର୍ଜୁନ କହିଥିଲେ, ଯେ 'ଏ ଯୁଦ୍ଧରେ ଆମ୍ଭେମାନେ ଜିତିବୁଁ ବା ଆମ୍ଭମାନଙ୍କୁ ଜିତିବେ ଏ ଦୁଇ କଥା ମଧ୍ୟରେ କେଉଁଟି ଅଧିକ ଗୌରବସୂଚକ ତାହା ଆମ୍ଭେମାନେ ବୁଝି ପାରୁ ନାହୁଁ'। ଏ ଶ୍ଳୋକରେ ଭଗବାନ୍ ତାହାର ଉତ୍ତର ଦେଉ-ଅଛନ୍ତି, ଯେ ଏ ଯୁଦ୍ଧରେ ତୁମ୍ଭେ ଜିତିଲେ ଲାଭ ଓ ହାରିଲେ ଲାଭ ଅର୍ଥାତ୍ ଜିତିବା ଓ ହାରିବା ଦୁଇ କଥାହିଁ ଲାଭଜନକ । କାହିଁକିନା ଯୁଦ୍ଧରେ ମଲେ ସ୍ୱର୍ଗଲାଭ ହେବ ଜିତି-ଲେ ନିଷ୍କଣ୍ଟକ ରାଜ୍ୟଲାଭ ହେବ । ଅତଏବ ଏ ଯୁଦ୍ଧ କରିବାକୁ ନିଶ୍ଚୟ କର ଉଠ । ଅଥବା (ଆଧ୍ୟାତ୍ମିକ) ସମ୍ପୂର୍ଣ୍ଣ ଯୋଗସିଦ୍ଧି ନ ହେଉଣୁ ମୃତ୍ୟୁ ହେଲେ ସ୍ୱର୍ଗପ୍ରାପ୍ତି ହୁଏ ଓ ଇନ୍ଦ୍ରିୟାଦି-ମାନଙ୍କ ଦମନ ଓ ଅହଂଭାବ ଓ ମମତାର ନାଶ କରି ପାରିଲେ ଜୀବନ୍ମୁକ୍ତି ଲାଭ ହୁଏ । ଏହି କାରଣରୁ ଇନ୍ଦ୍ରିୟ ଓ କାମକ୍ରୋଧାଦି ଶତ୍ରୁଗଣ ସହିତ ଯୁଦ୍ଧ କରିବାକୁ କଣ୍ଟଯୁକ୍ତ କର ଉଦ୍ୟୋଗୀ ହୁଅ । ୩୭ ।

ଶ୍ଳୋକଃ ।

ସୁଖଦୁଃଖେ ସମେ କୃତ୍ୱା, ଲାଭାଲାଭୌ ଜୟାଜୟୌ ।
ତତୋ ଯୁଦ୍ଧାୟ ଯୁଜ୍ୟସ୍ୱ, ନୈବଂ ପାପମବାପ୍ସ୍ୟସି । ୩୮ ।

ଅନ୍ୱୟଃ ।

ସୁଖଦୁଃଖେ, ସମେ, ଲାଭାଲାଭୌ, ଜୟାଜୟୌ, (ସମୌ) କୃତ୍ୱା ତତଃ ଯୁଦ୍ଧାୟ ଯୁଜ୍ୟସ୍ୱ ଏବ ପାପଂ ନ ଅବାପ୍ସ୍ୟସି ।୩୮।

ଟୀକା ।

ଯଦପ୍ୟୁକ୍ତଂ ପାପମେବାଶ୍ରୟେଦସ୍ମାଦିତି ତତ୍ରାହ । ସୁଖଦୁଃଖେ ଇତି । ସୁଖଦୁଃଖେ ସମେ କୃତ୍ୱା ତଥା ତୟୋଃ କାରଣଭୂତୌ ଲାଭାଲାଭାବପି ତୟୋରପି କାରଣଭୂତୌ ଜୟାଜୟାବପି ସମୌ କୃତ୍ୱା ଏତେଷାଂ ସମତ୍ୱେ କାରଣଂ ହର୍ଷବିଷାଦରାହିତ୍ୟଂ, ଯୁଜ୍ୟସ୍ୱ ସନ୍ନଦ୍ଧୋ ଭବ ସୁଖଦୁଃଖାଦ୍ୟଭିଲାଷଂ ହିତ୍ୱା ସ୍ୱଧର୍ମବୁଦ୍ଧ୍ୟା ଯୁଧ୍ୟମାନଃ ପାପଂ ନ ପ୍ରାପ୍ସ୍ୟସୀତ୍ୟର୍ଥଃ । ୩୮ ।

ପଦବ୍ୟାଖ୍ୟା ।

ସୁଖଦୁଃଖେ—ସୁଖ ଓ ଦୁଃଖକୁ, ସମେ କୃତ୍ୱା—ସମାନ ଜ୍ଞାନ କରି, ଲାଭାଲାଭୌ—ଲାଭ ଓ ହାନିକୁ, ଜୟାଜୟୌ—ଜୟ ଓ ପରାଜୟକୁ, ତତଃ—ତହିଁ ଉତ୍ତାରୁ, ଯୁଦ୍ଧାୟ—ଯୁଦ୍ଧ ନିମିତ୍ତ, ଯୁଜ୍ୟସ୍ୱ—ଉଦ୍ୟୋଗ କର, ନ—ନାହିଁ, ଏବ—ଏ ପ୍ରକାର, ପାପମବାପ୍ସ୍ୟସି—ପାପକୁ ପ୍ରାପ୍ତ ହେବ । ୩୮ ।

ଅନୁବାଦ ।

ସୁଖଦୁଃଖ, ହାନିଲାଭ ଓ ଜୟ ପରାଜୟ ଏମାନଙ୍କୁ ସମାନ ଜ୍ଞାନ କରି ଯୁଦ୍ଧରେ ପ୍ରବୃତ୍ତ ହୁଅ । ଏପରି କଲେ ତୁମ୍ଭେ ପାପଭାଗୀ ହେବ ନାହିଁ । ୩୮ ।

ବଶଦବ୍ୟାଖ୍ୟା ।

ଅର୍ଜୁନ ପ୍ରଥମ ଅଧ୍ୟାୟ ୩୬ ଶ୍ଳୋକରେ 'ଏ ଆତତାୟିମାନଙ୍କୁ ବଧ କଲେ ଆମ୍ଭଙ୍କୁ କେବଳ ପାପ ସ୍ପର୍ଶ କରିବ' ଇତ୍ୟାଦି ଯାହା କହିଥିଲେ ଭଗବାନ୍ ଶ୍ରୀକୃଷ୍ଣ ଏ ଶ୍ଳୋକରେ

Digitized by PPRACHIN, SOA

ତାହାର ଉତ୍ତର ଦେଉଅଛନ୍ତି, କି ଜୟ ପରାଜୟ ଓ ତହିଁରୁ ଯେଉଁ ଲାଭ ହାନି ଏବଂ ସେଥିରୁ ଯେଉଁ ସୁଖ ଦୁଃଖ ହୁଏ, ସେ ସବୁକୁ ସମାନ ଜ୍ଞାନ କର, ଅର୍ଥାତ୍ ଜୟ ଇଚ୍ଛା କିମ୍ବା ପରାଜୟ ଭୟ, ଅବା ଲାଭ କାମନା କି ହାନି ଆଶଙ୍କା, ଅଥବା ସୁଖ ଲୋଭ କି ଦୁଃଖର ଭୟ କରନା । କେବଳ ସ୍ୱଧର୍ମବୁଦ୍ଧିରେ ଯୁଦ୍ଧ କର, ସେଥିରେ ତୁମ୍ଭର ପାପ ହେବ ନାହିଁ । ଫଳକାମନାରେ ଯେଉଁ ସତ୍ ବା ଅସତ୍ କର୍ମ କରାଯାଏ ସେଥିରେ କେବଳ ପୁଣ୍ୟ ବା ପାପ ହୁଏ, ଫଳକାମନା-ରହିତ ହୋଇ କୌଣସି କର୍ମ ଅନୁଷ୍ଠାନ କଲେ ସେଥିରେ ପାପ ବା ପୁଣ୍ୟ ହୁଏ ନାହିଁ ।

ପୂର୍ବ ଶ୍ଳୋକରେ ଯେ 'ଯୁଦ୍ଧରେ ମଲେ ସ୍ୱର୍ଗପ୍ରାପ୍ତି ହେବ ଅଥବା ଜୟ କଲେ ରାଜ୍ୟ ଭୋଗ କରିବ' ଇତ୍ୟାଦି ଅମ୍ଭେ କହିଥିଲୁଁ ତାହା କେବଳ ଆନୁଷଙ୍ଗିକ ବୋଲି ଜାଣିବ । ଯେପରି ଲୋକେ କେବଳ ଆମ୍ରଫଳକାମନାରେ ଆମ୍ରବୃକ୍ଷ ରୋପଣ କରନ୍ତି, ମାତ୍ର ତାହା ସଙ୍ଗେ ସଙ୍ଗେ ସୁଗନ୍ଧ ଓ ଛାୟା ଅତିରିକ୍ତରୂପେ ପ୍ରାପ୍ତ ହୁଅନ୍ତି, ସେହିପରି ତୁମ୍ଭେ ସ୍ୱଧର୍ମପାଇଁ ଉଚିତ ଜ୍ଞାନରେ ଯୁଦ୍ଧ କରିବ, ସ୍ୱର୍ଗ ବା ରାଜ୍ୟଲାଭ ତାହାର ଆନୁଷଙ୍ଗିକ (ଯାହା ଆଶା କରା ଯାଇ ନ ଥାଏ ଅନ୍ୟ କାର୍ଯ୍ୟର ଫଳସହିତ ଆପଣାଛାଏଁ ମିଳେ ସେହି) ଫଳ ବୋଲି ଜାଣିବ । ୩୮ ।

ଶ୍ଳୋକଃ ।

ଏଷା ତେଽଭିହିତା ସାଂଖ୍ୟେ, ବୁଦ୍ଧିର୍ଯୋଗେ ତ୍ୱିମାଂ ଶୃଣୁ ।
ବୁଦ୍ଧ୍ୟା ଯୁକ୍ତୋ ଯୟା ପାର୍ଥ, କର୍ମବନ୍ଧଂ ପ୍ରହାସ୍ୟସି । ୩୯ ।

ଅନ୍ୱୟଃ ।

ହେ ପାର୍ଥ ! ଏଷା ବୁଦ୍ଧିଃ ତେ ସାଂଖ୍ୟେ ଅଭିହିତା, ଯୋଗେ ତୁ ଇମାଂ ଶୃଣୁ । ଯୟା ବୁଦ୍ଧ୍ୟା ଯୁକ୍ତଃ ତ୍ୱଂ କର୍ମବନ୍ଧଂ ପ୍ରହାସ୍ୟସି । ୩୯ ।

ଟୀକା ।

ଉପଦିଷ୍ଟଂ ଜ୍ଞାନଯୋଗମୁପସଂହରନ୍ ତତ୍ସାଧନଂ କର୍ମଯୋଗଂ ପ୍ରସ୍ତୌତି । ଏଷେତି । ସମ୍ୟକ୍ ଖ୍ୟାୟତେ ପ୍ରକାଶ୍ୟତେ ବସ୍ତୁତତ୍ତ୍ୱମନୟେତି ସଂଖ୍ୟା—ସମ୍ୟଗ୍‌ଜ୍ଞାନଂ, ତସ୍ୟାଂ ପ୍ରକାଶମାନମାତ୍ମତତ୍ତ୍ୱଂ ସାଂଖ୍ୟଂ, ତସ୍ମିନ୍ କରଣୀୟା ବୁଦ୍ଧିରେଷା ତବାଭିହିତା । ଏବମଭିହିତାୟାମପି ତବ ଚେଦାତ୍ମତତ୍ତ୍ୱମପରୋକ୍ଷଂ ନ ଭବତି ତର୍ହ୍ୟନ୍ତଃକରଣଶୁଦ୍ଧିଦ୍ୱାରାତ୍ମତତ୍ତ୍ୱାପରୋକ୍ଷାର୍ଥଂ କର୍ମଯୋଗେ ତ୍ୱିମାଂ ବୁଦ୍ଧିଂ ଶୃଣୁ, ଯୟା ବୁଦ୍ଧ୍ୟା ଯୁକ୍ତଃ ପରମେଶ୍ୱରାର୍ପିତକର୍ମଯୋଗେନ ଶୁଦ୍ଧାନ୍ତଃକରଣଃ ସନ୍ ତତ୍ପ୍ରସାଦ-ଲବ୍ଧାପରୋକ୍ଷଜ୍ଞାନେନ କର୍ମାତ୍ମକଂ ବନ୍ଧଂ ପ୍ରକର୍ଷେଣ ହାସ୍ୟସି ତ୍ୟକ୍ଷ୍ୟସି । ୩୯ ।

ପଦବ୍ୟାଖ୍ୟା ।

ଏଷା—ଏହି, ତେ—ତୁମ୍ଭଙ୍କୁ, ଅଭିହିତା—କୁହାଗଲା, ସାଂଖ୍ୟେ—ଆତ୍ମଜ୍ଞାନ ଶାସ୍ତ୍ରରେ; ବୁଦ୍ଧିଃ—ବୁଦ୍ଧି, ଯୋଗେ—କର୍ମଯୋଗରେ, ତୁ—ପୁଣି, ଇମାଂ—ଏହି ବୁଦ୍ଧିକୁ, ଶୃଣୁ—ଶୁଣ, ବୁଦ୍ଧ୍ୟା—ବୁଦ୍ଧି ଯୋଗରେ ଯୁକ୍ତଃ—ଯୁକ୍ତ ହୋଇ, ଯୟା—ଯେଉଁ, ପାର୍ଥ—ହେ ପୃଥାପୁତ୍ର (ଅର୍ଜୁନ) !, କର୍ମବନ୍ଧଂ—ପ୍ରାରବ୍ଧନାମରେ ଖ୍ୟାତ କର୍ମବନ୍ଧନକୁ, ପ୍ରହାସ୍ୟସି—ତ୍ୟାଗ କରିବ । ୩୯ ।

ଅନୁବାଦ ।

ହେ ଅର୍ଜୁନ ! ଏହି ସାଂଖ୍ୟଯୋଗ ନାମକ ତତ୍ତ୍ୱଜ୍ଞାନ ତୁମ୍ଭଙ୍କୁ କହିଲୁଁ, ଏବେ କର୍ମଯୋଗ ଶୁଣ, ଯାହା ପ୍ରାପ୍ତ ହେଲେ କର୍ମବନ୍ଧନରୁ ମୁକ୍ତ ହେବ । ୩୯ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଲୋକରେ ସୁଖଦୁଃଖ ଓ ଜୟ ପରାଜୟକୁ ସମାନ ଜ୍ଞାନ କରି ଫଳକାମନା-ରହିତ ହୋଇ କର୍ମ ଅନୁଷ୍ଠାନ କଲେ ପାପ ହେବ ନାହିଁ ଇତ୍ୟାଦି ବଚନଦ୍ୱାରା ଯେଉଁ ନିଷ୍କାମ କର୍ମଯୋଗର ସୂଚନାମାତ୍ର ପ୍ରକାଶ କରି ହୋଇଥିଲା, ତାହା ବିସ୍ତାରିତରୂପେ ଏଣିକି ବ୍ୟାଖ୍ୟା କରି ହେଉଅଛି । ମାତ୍ର ପ୍ରଥମରେ "ନତ୍ୱେବାହଂ ଜାତୁ ନାସଂ" ଅର୍ଥାତ୍ 'ଆମ୍ଭେ ଯେ କେବେ ନ ଥିଲୁଁ ତାହା ନୁହେଁ' ଇତ୍ୟାଦି ଶ୍ଲୋକଠାରୁ "ଦେହୀ ନିତ୍ୟମବଧ୍ୟୋଽୟଂ" ଅର୍ଥାତ୍ 'ଦେହଧାରୀ ଆତ୍ମା ସମସ୍ତଙ୍କ ଶରୀରରେ ସର୍ବଦା ଅବଧ୍ୟରୂପରେ ବିଦ୍ୟମାନ ଅଛନ୍ତି' ଇତ୍ୟାଦି ଶ୍ଲୋକ ପର୍ଯ୍ୟନ୍ତ (୨ୟ ଅଧ୍ୟାୟର ୧୨ ଶ୍ଲୋକଠାରୁ ୩୦ ଶ୍ଲୋକ ପର୍ଯ୍ୟନ୍ତ) ଊନଶୋ-ଇଶ ଶ୍ଲୋକରେ ଆତ୍ମଜ୍ଞାନର ଉପଦେଶ ଦେଲା ପରେ ବର୍ତ୍ତମାନ କର୍ମଯୋଗର ଉପଦେଶ ଦେଖି କେହି୨ ଆଶଙ୍କା କରି ପାରନ୍ତି, ଯେ 'ଆତ୍ମଜ୍ଞାନ ଲାଭ ହେଲେ ଆଉ ସକାମ ବା ନିଷ୍କାମ କୌଣସି କର୍ମ କରିବା ଉଚିତ ନୁହେ ଇତ୍ୟାଦି କଥା ପରବର୍ତ୍ତୀ ଅଧ୍ୟାୟରେ କୁହା ଯାଇ-ଥିବା ସ୍ଥଳେ ଏଠାରେ ଆତ୍ମଜ୍ଞାନର ଉପଦେଶ ଉତ୍ତାରୁ ଇତର କର୍ମଯୋଗ ବ୍ୟାଖ୍ୟା କରି ହେଉଅଛି ?' ମାତ୍ର ଏଠାରେ କର୍ମଯୋଗ ବ୍ୟାଖ୍ୟା କରିବାର ଉଦ୍ଦେଶ୍ୟ ଏହି, ଯେ ଅର୍ଜୁନ-ଙ୍କର ଆତ୍ମଜ୍ଞାନ ଉପଦେଶରେ ଜ୍ଞାନ ଲାଭ ହୋଇ ପାରଲା ନାହିଁ । ଯେହେତୁ କର୍ମକାଣ୍ଡ (ବହିରଙ୍ଗ ବ୍ୟାପାର) ସାଧନ ବ୍ୟତିରେକେ ଆତ୍ମଜ୍ଞାନ (ଅନ୍ତରଙ୍ଗ) ସାଧନର ଉପଦେଶ ଧାରଣା ହୋଇ ପାରେ ନାହିଁ । କର୍ମଯୋଗ ବ୍ୟାଖ୍ୟାଦ୍ୱାରା ଅର୍ଜୁନଙ୍କୁ ଆତ୍ମଜ୍ଞାନ ଲାଭର ଅଧିକାରୀ କରିବା ଇଚ୍ଛାରେ ଏଠାରେ ଭଗବାନ୍ କର୍ମଯୋଗ ବ୍ୟାଖ୍ୟା କରି କହୁଅଛନ୍ତି କି ଆତ୍ମଜ୍ଞାନର କଥା ତୁମ୍ଭଙ୍କୁ କହିଲୁଁ ବର୍ତ୍ତମାନ କର୍ମଯୋଗ କଥା ଶୁଣ । କର୍ମଯୋଗ ଜାଣିଲେ ଓ କର୍ମ କରି ପରମେଶ୍ୱରଙ୍କଠାରେ ଅର୍ପଣ କଲେ ତୁମ୍ଭର ଅନ୍ତଃକରଣ ଶୁଦ୍ଧ ହେବ ଏବଂ ପରମେଶ୍ୱର ପ୍ରସନ୍ନ ହୋଇ ତୁମ୍ଭଙ୍କୁ ପ୍ରାରବ୍ଧାତ୍ମକ କର୍ମବନ୍ଧନରୁ ମୁକ୍ତ କରିବେ । ୩୯ ।

ଶ୍ଲୋକଃ ।

ନେହାଭିକ୍ରମନାଶୋଽସ୍ତି, ପ୍ରତ୍ୟବାୟୋ ନ ବିଦ୍ୟତେ ।
ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ, ତ୍ରାୟତେ ମହତୋଭୟାତ୍ । ୪୦ ।

ଅନ୍ୱୟଃ ।

ଇହ ଅଭିକ୍ରମନାଶଃ ନ ଅସ୍ତି, ପ୍ରତ୍ୟବାୟଃ ନ ବିଦ୍ୟତେ । ଅସ୍ୟ ଧର୍ମସ୍ୟ ସ୍ୱଳ୍ପଂ ଅପି ମହତଃ ଭୟାତ୍ ତ୍ରାୟତେ । ୪୦ ।

ଟୀକା ।

ନନୁ କୃଷ୍ୟାଦିବତ୍ କର୍ମଣାଂ କଦାଚିତ୍ ବିଘ୍ନବାହୁଲ୍ୟେନ ଫଳେ ବ୍ୟଭିଚାରାତ୍ ମନ୍ତ୍ରାଦ୍ୟଙ୍ଗବୈଗୁଣ୍ୟେନ ଚ ପ୍ରତ୍ୟ-ବାୟସମ୍ଭବାତ୍ କୁତଃ କର୍ମଯୋଗେନ କର୍ମବନ୍ଧପ୍ରହାଣଂ ତତ୍ରାହ । ନେହେତ୍ୟାଦି । ଇହ ନିଷ୍କାମକର୍ମଯୋଗେଽଭିକ୍ରମସ୍ୟ ପ୍ରାରମ୍ଭସ୍ୟ ନାଶୋ ନିଷ୍ଫଳତ୍ୱଂ ନାସ୍ତି, ପ୍ରତ୍ୟବାୟଶ୍ଚ ନ ବିଦ୍ୟତେ, ଈଶ୍ୱରୋଦ୍ଦେଶେନୈବ ତଦ୍‌ବୈଗୁଣ୍ୟାଦ୍ୟସମ୍ଭବାତ୍, କିଞ୍ଚାସ୍ୟ ଧର୍ମସ୍ୟ ଈଶ୍ୱରାରାଧନାର୍ଥକର୍ମଯୋଗସ୍ୟ ସ୍ୱଳ୍ପମପିକୃତଂ ମହତୋଭୟାତ୍ ସଂସାରଲକ୍ଷଣାତ୍ତ୍ରାୟତେ ରକ୍ଷତି, ନତୁ କାମ୍ୟକର୍ମବତ୍ କିଞ୍ଚିଦଙ୍ଗବୈଗୁଣ୍ୟାଦିନା ନୈଷ୍ଫଲ୍ୟମସ୍ୟେତ୍ୟର୍ଥଃ । ୪୦ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ନ—ନାହିଁ, ଇହ—ଏହି ନିଷ୍କାମକର୍ମରେ, ଅଭିକ୍ରମନାଶଃ—ଆରମ୍ଭର ନିଷ୍ଫଳତ୍ୱ, ଅସ୍ତି—ଅଛି, ପ୍ରତ୍ୟବାୟଃ—ପାପ, ନ ବିଦ୍ୟତେ—ନାହିଁ, ସ୍ୱଳ୍ପମପି—ଅତ୍ୟଳ୍ପ ମଧ୍ୟ, ଅସ୍ୟ ଧର୍ମସ୍ୟ—ଏହି ଧର୍ମର, ତ୍ରାୟତେ—ରକ୍ଷା କରେ, ମହତୋଭୟାତ୍—ମହାଭୟରୁ । ୪୦ ।

ଅନୁବାଦ ।

ଏହି ନିଷ୍କାମକର୍ମଯୋଗରେ ଆରମ୍ଭର ନିଷ୍ଫଳ ଆଶଙ୍କା ନାହିଁ କି (ଶେଷ ନ କଲେ) ପାପ ନାହିଁ । ଏହି ଧର୍ମର ଅଳ୍ପଅଂଶ ମଧ୍ୟ ମହାଭୟରୁ ରକ୍ଷା କରେ । ୪୦ ।

ବିଶଦବ୍ୟାଖ୍ୟା ।

ଶ୍ରୁତିରେ ପ୍ରମାଣ ଅଛି, ଯେ ଯଜ୍ଞଦାନାଦି କାମ୍ୟକର୍ମ ଭୋଗଶେଷରେ ନଷ୍ଟ ହୁଏ, ବର୍ତ୍ତମାନ ନିଷ୍କାମକର୍ମଯୋଗ କଥା ଶୁଣି କାଳେ ଅର୍ଜ୍ଜୁନଙ୍କ ମନରେ କର୍ମଫଳର ସେହି ଅନିତ୍ୟତା କଥା ଉଦୟ ହେବ ଏଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, କି ନିଷ୍କାମକର୍ମଯୋଗର 'ଅଭିକ୍ରମ' ଅର୍ଥାତ୍ ଆରମ୍ଭରେ ଫଳହାନିର ଆଶଙ୍କା ନାହିଁ, ଏଥିରେ ଚିତ୍ତଶୁଦ୍ଧିଭିନ୍ନ ଅନିତ୍ୟ ସ୍ୱର୍ଗଲାଭାଦି ଫଳ ନାହିଁ । ଅଗ୍ନି ତୃଣଶ୍ରେଣୀକୁ ଭସ୍ମ କରି ଯାଇ ଆପେ ନିଭିଗଲାପରି ନିଷ୍କାମକର୍ମ ମନୁଷ୍ୟର ମନର କଳୁଷ ବିନାଶ କରି ଆପେ ନିବୃତ୍ତ ହୋଇଯାଏ । ଯଜ୍ଞ ଦାନାଦି ସକାମ-କର୍ମରେ ଅପ୍ରୟୋଜନର ନ୍ୟୂନାଧିକ ହେତୁରୁ, ବା ମନ୍ତ୍ରାଦି ଅଙ୍ଗବିକଳତା ହେତୁରୁ ଯେଉଁ ପ୍ରତ୍ୟବାୟ (ଦୋଷ) ହୁଏ, ନିଷ୍କାମକର୍ମଯୋଗରେ ତାହା ମଧ୍ୟ ହୁଏ ନାହିଁ । କାହିଁକିନା ଏଥିରେ ଫଳକାମନା ନ ଥିବାରୁ ଫଳନାଶର ଆଶଙ୍କା କୁଆଡୁ ହେବ ? ବରଂ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଯେ କର୍ମ କରାଯାଉଥିବାରୁ ତାହାର କିଞ୍ଚିନ୍ମାତ୍ର ଅଂଶ ଅନୁଷ୍ଠିତ ହେଲେ ଅଧିକାରୀ ବ୍ୟକ୍ତି ନରକଗମନରୂପ ମହାଭୟରୁ ରକ୍ଷା ପାଆନ୍ତି । ୪୦ ।

ଶ୍ଳୋକଃ ।

ବ୍ୟବସାୟାତ୍ମିକା ବୁଦ୍ଧିରେକେହ କୁରୁନନ୍ଦନ ।
ବହୁଶାଖା ହ୍ୟନନ୍ତାଶ୍ଚ ବୁଦ୍ଧୟୋଽବ୍ୟବସାୟିନାଂ । ୪୧ ।

ଅନ୍ୱୟଃ ।

ହେ କୁରୁନନ୍ଦନ ! ଇହ ବ୍ୟବସାୟାତ୍ମିକା ବୁଦ୍ଧିଃ ଏକା ଚ (ଇହ) ଅବ୍ୟବସାୟିନାଂ ବୁଦ୍ଧୟଃ ବହୁଶାଖାଃ ହି ଅନନ୍ତାଃ (ଭବନ୍ତି) । ୪୧ ।

ଟୀକା ।

କୁତ ଇତ୍ୟପେକ୍ଷାୟାମୁଭୟୋର୍ବୈଷମ୍ୟମାହ । ବ୍ୟବସାୟାତ୍ମିକେତି । ଇହ ଈଶ୍ୱରାରାଧନଲକ୍ଷଣେ କର୍ମଯୋଗେ ବ୍ୟବସାୟାତ୍ମିକା ପରମେଶ୍ୱରଭକ୍ତ୍ୟୈବ ଧ୍ରୁବଂ ତରିଷ୍ୟାମୀତି ନିଶ୍ଚୟାତ୍ମିକା ଏକୈବ ଏକନିଷ୍ଠୈବ ବୁଦ୍ଧିର୍ଭବତି । ଅବ୍ୟବସାୟିନାଂ ତୁ ଈଶ୍ୱରାରାଧନବହିର୍ମୁଖାଣାଂ କାମିନାଂ କାମାନାମାନନ୍ତ୍ୟାଦନନ୍ତାସ୍ତତ୍ରାପି କର୍ମଫଳଗୁଣଫଳାଦି ପ୍ରକାରଭେଦାଦ୍ବହୁଶାଖାଶ୍ଚ ବୁଦ୍ଧୟୋ ଭବନ୍ତି, ଈଶ୍ୱରାରାଧନାର୍ଥଂ ତୁ ନିତ୍ୟଂ ନୈମିତ୍ତିକଂ ଚ କର୍ମ କିଞ୍ଚିଦଙ୍ଗବୈଗୁଣ୍ୟେଽପି ନ ନଶ୍ୟତି ଯଥା ଶକ୍ତ୍ୟନୁଷ୍ଠିତାର୍ଥୋଦିତ ହି ତଦ୍ବିଧୀୟତେ । ନ ଚ ବୈଗୁଣ୍ୟମପି ଈଶ୍ୱରୋଦ୍ଦେଶେନୈବ ବୈଗୁଣ୍ୟୋପଶମାତ୍ ନତୁ ତଥା କାମ୍ୟଂ କର୍ମ, ଅତୋ ମହଦ୍ବୈଷମ୍ୟମିତି ଭାବଃ । ୪୧ ।

Digitized by PPRACHIN, SOA

## ପଦବ୍ୟାଖ୍ୟା ।

ବ୍ୟବସାୟାତ୍ମିକା ବୁଦ୍ଧିଃ—ନିଶ୍ଚୟ ସ୍ୱଭାବ ବୁଦ୍ଧି କିମ୍ବା ସତ୍ୟ କରିବା ବୁଦ୍ଧି, ଏକା—ଏକନିଷ୍ଠ, ଇହ—କର୍ମଯୋଗରେ, କୁରୁନନ୍ଦନ—ହେ କୁରୁବଂଶଜ (ଅର୍ଜ୍ଜୁନ)!, ବହୁଶାଖାଃ—ଅନେକ ଶାଖା ଅର୍ଥାତ୍ ମତଭେଦଯୁକ୍ତ, ହି—ନିଶ୍ଚୟ, ଅନନ୍ତାଶ୍ଚ—ଅସଂଖ୍ୟ ମଧ୍ୟ, ବୁଦ୍ଧୟଃ—ବୁଦ୍ଧିସବୁ, ଅବ୍ୟବସାୟିନାଂ—ବ୍ୟବସାୟ ନ ଜାଣିବା ଲୋକମାନଙ୍କର ( ଈଶ୍ୱରାରାଧନାରେ ବିମୁଖ କାମିମାନଙ୍କର ) । ୪୧ ।

## ଅନୁବାଦ ।

ହେ ଅର୍ଜ୍ଜୁନ! ଏହି ନିଷ୍କାମକର୍ମଯୋଗରେ ନିଯୁକ୍ତ ବୁଦ୍ଧି ଏକରୂପ ହୁଏ ଏବଂ ଏଥିରେ ନିଯୁକ୍ତ ନ ହେବା ବ୍ୟକ୍ତିମାନଙ୍କର ବୁଦ୍ଧିସବୁ ଅନେକ ମତଭେଦ ହେତୁରୁ ଅସଂଖ୍ୟ ହୁଏ । ୪୧ ।

## ବିଶଦବ୍ୟାଖ୍ୟା ।

ଯଜ୍ଞଦାନାଦି ସକାମକର୍ମ ଓ ଏହି ନିଷ୍କାମକର୍ମ ଏ ଦୁହିଙ୍କ ମଧ୍ୟରେ ପ୍ରଭେଦ ବ୍ୟାଖ୍ୟା କରି ହେଉଅଛି । ପୂର୍ବ ଶ୍ଳୋକରେ ସକାମକର୍ମରେ ଫଳନାଶ ଓ ମନ୍ତ୍ରାଦି ବିଗୁଣତା ହେତୁରୁ ପ୍ରତ୍ୟବାୟ ଅର୍ଥାତ୍ ପାପ ଥିବା ଏବଂ ନିଷ୍କାମକର୍ମରେ ସେ ସବୁ ଭୟ ନ ଥିବାର କୁହା ଯାଇଅଛି । ଏ ଶ୍ଳୋକରେ କୁହା ଯାଉଅଛି ଯେ ସକାମକର୍ମର ଅନୁଷ୍ଠାନରେ ଫଳକାମନା ହେତୁ ବୁଦ୍ଧି ଚଞ୍ଚଳ ହୋଇ ଏଥିରେ ଅଧିକ ଫଳ ହେବ, ଅମୁକ କର୍ମରେ ତାହା ଅପେକ୍ଷା ଅଧିକ ହେବ ଇତ୍ୟାଦି ବହୁପ୍ରକାର ଚିନ୍ତାରେ ଆକୁଳିତ ହୁଏ, କିନ୍ତୁ ନିଷ୍କାମକର୍ମଯୋଗରେ ଭଗବନ୍ନିଷ୍ଠା ହେତୁରୁ ବୁଦ୍ଧିର ନିର୍ମଳତା ଓ ଏକାଗ୍ରତା ଜାତ ହୁଏ ଏବଂ ସେହି ନିର୍ମଳ ଏକାଗ୍ର ବୁଦ୍ଧି ତତ୍ତ୍ୱଜ୍ଞାନର ଅନୁଗାମିନୀ ହୁଏ । ଫଳକଥା ଏହି କି ସକାମକର୍ମ ଅପେକ୍ଷା ନିଷ୍କାମକର୍ମ ସର୍ବପ୍ରକାରେ ଶ୍ରେଷ୍ଠ ଅଟେ । ୪୧ ।

## ଶ୍ଳୋକଃ ।

ଯାମିମାଂ ପୁଷ୍ପିତାଂ ବାଚଂ, ପ୍ରବଦନ୍ତ୍ୟବିପଶ୍ଚିତଃ ।
ବେଦବାଦରତାଃ ପାର୍ଥ, ନାନ୍ୟଦସ୍ତୀତି ବାଦିନଃ । ୪୨ ।

## ଅନ୍ୱୟଃ ।

ହେ ପାର୍ଥ ! ବେଦବାଦରତାଃ ଅନ୍ୟତ୍ ନ ଅସ୍ତି ଇତି ବାଦିନଃ ଅବିପଶ୍ଚିତଃ ଯାଂ ଇମାଂ ପୁଷ୍ପିତାଂ ବାଚଂ ପ୍ରବଦନ୍ତି— । ୪୨ ।

## ଟୀକା ।

ନନୁ କାମିନୋଽପି କସ୍ମାତ୍ କାମାନ୍ ବିହାୟ ବ୍ୟବସାୟାତ୍ମିକାମେବ ବୁଦ୍ଧିଂ କିମିତି ନ କୁର୍ବନ୍ତି ତତ୍ରାହ । ଯାମିମାମିତି । ଯାମିମାଂ ପୁଷ୍ପିତାଂ ବିଷଲତାବତ୍ ଆପାତତୋ ରମଣୀୟାଂ ପ୍ରକୃଷ୍ଟାଂ ପରମାର୍ଥ ଫଳପରାମେବ ବଦନ୍ତି ବାଚଂ ସ୍ୱର୍ଗାଦି ଫଳଶ୍ରୁତିଂ ତେଷାଂ ତୟା ବାଚାପହୃତଚେତସାଂ ବ୍ୟବସାୟାତ୍ମିକା ବୁଦ୍ଧିର୍ନସମାଧୌ ବିଧୀୟତ ଇତି ତୃତୀୟେନାନ୍ୱୟଃ । କିମିତି ତଥା ବଦନ୍ତି ଯତୋଽବିପଶ୍ଚିତୋ ମୂଢାଃ ତତ୍ର ହେତୁର୍ବେଦବାଦରତା ଇତି, ବେଦେ ଯେ ବାଦା ଅର୍ଥବାଦାଃ ଅକ୍ଷଯ୍ୟଂ ହ ବୈ ଚାତୁର୍ମ୍ମାସ୍ୟଯାଜିନଃ ସୁକୃତଂ ଭବତି ତଥା ଅପାମସୋମମମୃତା ଅଭୂମେତ୍ୟାଦୟଃ ତେଷ୍ୱେବ ରତାଃ ପ୍ରୀତାଃ ଅତଏବାତଃ ପରମନ୍ୟଦୀଶ୍ୱରତତ୍ତ୍ୱଂ ପ୍ରାପ୍ୟଂ ନାସ୍ତୀତି ବଦନଶୀଳାଃ । ୪୨ ।

Digitized by PPRACHIN, SOA

### ପଦବ୍ୟାଖ୍ୟା ।

ଯାଂ – ଯେଉଁ, ଇମାଂ – ଏହି, ପୁଷ୍ପିତାଂ ବାଚଂ – ଆପାତତଃ ମନୋହର ବଚନକୁ, ପ୍ରବଦନ୍ତି – କହନ୍ତି, ଅବିପଶ୍ଚିତଃ – ଅଜ୍ଞାନମାନେ, ବେଦବାଦରତାଃ – ବେଦର ଫଳଶ୍ରୁତିରେ ଅସକ୍ତ, ପାର୍ଥ – ହେ ପୃଥାପୁତ୍ର (ଅର୍ଜୁନ)!, ନାନ୍ୟଦସ୍ତି – ଅନ୍ୟ କିଛି ନାହିଁ ଇତି ବାଦିନଃ – ଏହା କହନ୍ତି । ୪୨ ।

### ଅନୁବାଦ ।

ହେ ଅର୍ଜୁନ! କର୍ମଫଳର ପ୍ରଶଂସାବାଚକ ବେଦବାକ୍ୟରେ ଆସକ୍ତ ହୋଇ ତାହାଠାରୁ ଆଉ କିଛି ଶ୍ରେଷ୍ଠ ନାହିଁ ବୋଲି ଅଜ୍ଞାନଲୋକମାନେ ଯେଉଁ ମନୋହର ବଚନ କହନ୍ତି । ୪୨ ।

### ବିଶଦବ୍ୟାଖ୍ୟା ।

ବେଦରେ କର୍ମକାଣ୍ଡର ପ୍ରଶଂସାସୂଚକ କଥାଗୁଡ଼ିକ ଗନ୍ଧହୀନ ପଳାଶପୁଷ୍ପ ପରି ଦୂରରୁ ଦେଖିବାକୁ ସୁନ୍ଦର ସତ, ମାତ୍ର ଯେଉଁମାନେ ତାହାର ଗନ୍ଧହୀନତା ଜାଣନ୍ତି ସେମାନେ ସେଥିରେ ମୁଗ୍ଧ ହୁଅନ୍ତି ନାହିଁ । ନ ଜାଣିଲା ଲୋକେ କହନ୍ତି ଏହାଠାରୁ ବଳି ଆଉ ଭଲ ପଦାର୍ଥ ନାହିଁ । ସେହିପରି ବେଦର କର୍ମକାଣ୍ଡ ପ୍ରଶଂସାବଚନ ଶୁଣିବାକୁ ଅତି ମନୋହର ଓ ସେଥିରେ ଆସକ୍ତ ହେବା ଅଜ୍ଞାନଲୋକ ତାହାଠାରୁ ବଳି ଆଉ କିଛି ଭଲ ନାହିଁ ବୋଲି କହନ୍ତି । ମାତ୍ର ଜ୍ଞାନିଲୋକ କର୍ମଫଳ ଯେ ଅନିତ୍ୟ ଏବଂ ଜନ୍ମମରଣର ହେତୁ ଅଟେ ତାହା ଜାଣି ସେଥିରେ ମୁଗ୍ଧ ହୁଅନ୍ତି ନାହିଁ । ୪୨ ।

### ଶ୍ଳୋକଃ ।

କାମାତ୍ମାନଃ ସ୍ୱର୍ଗପରା, ଜନ୍ମକର୍ମଫଳପ୍ରଦାଂ ।
କ୍ରିୟାବିଶେଷବହୁଳାଂ, ଭୋଗୈଶ୍ୱର୍ଯ୍ୟଗତିଂ ପ୍ରତି । ୪୩ ।

### ଅନ୍ୱୟଃ ।

ସ୍ୱର୍ଗପରାଃ କାମାତ୍ମାନଃ ଜନ୍ମକର୍ମଫଳପ୍ରଦାଂ ଭୋଗୈଶ୍ୱର୍ଯ୍ୟଗତିଂ ପ୍ରତି କ୍ରିୟାବିଶେଷବହୁଳାଂ (ଯାଂ ପ୍ରବଦନ୍ତି) । ୪୩ ।

### ଟୀକା ।

ଅତଏବ କାମାତ୍ମାନଃ । କାମାତ୍ମାନଃ କାମାକୁଳଚିତ୍ତାଃ ଅତଃ ସ୍ୱର୍ଗ ଏବ ପରଃ ପୁରୁଷାର୍ଥୋ ଯେଷାଂ ତେ, ତ, ତତ୍ର କର୍ମାଣି ତତ୍ଫଳାନି ଚ ପ୍ରଦଦାତୀତି ତଥା ତାଂ ଭୋଗୈଶ୍ୱର୍ଯ୍ୟୟୋର୍ଗତିଂ ପ୍ରାପ୍ତିଂ ପ୍ରତି ସାଧନଭୂତା ଯେ କ୍ରିୟାବିଶେଷାସ୍ତୈର୍ବହୁଳା ଯସ୍ୟାଂ ତାଂ ପ୍ରବଦନ୍ତୀତି ପୂର୍ବେଣାନ୍ୱୟଃ । ୪୩ ।

### ପଦବ୍ୟାଖ୍ୟା ।

କାମାତ୍ମାନଃ—ଯେଉଁମାନଙ୍କର ଅନ୍ତଃକରଣ କାମନାଯୁକ୍ତ, ସ୍ୱର୍ଗପରାଃ—ସ୍ୱର୍ଗକୁ ଯେଉଁମାନେ ପରମପଦ ବୋଲି ମାନନ୍ତି, ଜନ୍ମ-କର୍ମ-ଫଳ-ପ୍ରଦାଂ—ଜନ୍ମରୂପ କର୍ମଫଳଦାୟିନୀ, ଅଥବା ଜନ୍ମ, କର୍ମ ଓ ଫଳଦାୟିନୀ, କ୍ରିୟାବିଶେଷବହୁଳାଂ—ଯହିଁରେ ନାନାବିଧ ବିଶେଷ କ୍ରିୟା କରିବାର ଅଧିକ ଦେଖା ଯାଏ, ଭୋଗୈଶ୍ୱର୍ଯ୍ୟଗତିଂ ପ୍ରତି—ସ୍ୱର୍ଗର ଐଶ୍ୱର୍ଯ୍ୟ ଓ ଅମୃତାଦି ଭୋଗ ଏବ ଦେବଙ୍କ ସ୍ଥାପନ ପ୍ରାପ୍ତି ବିଷୟରେ । ୪୩ ।

### ଅନୁବାଦ ।

ସ୍ୱର୍ଗକୁ ପରମପୁରୁଷାର୍ଥ ମଣୁଥିବା କାମନାଯୁକ୍ତ ବ୍ୟକ୍ତିମାନେ ( ସେହି ପୁଷ୍ପିତ ବଚନ

Digitized by PPRACHIN, SOA

କହନ୍ତି ତାହା) ଜନ୍ମ-କର୍ମ-ଫଳ-ପ୍ରଦ ଏବଂ ସେ ଭୋଗ ଐଶ୍ୱର୍ଯ୍ୟପ୍ରାପ୍ତି ବିଷୟରେ ଭିନ୍ନ ୨ କ୍ରିୟା କରିବାକୁ ବହୁତ ଉପଦେଶଯୁକ୍ତ ଅଟେ । ୪୩ ।

ବିଶଦବ୍ୟାଖ୍ୟା ।

କାମିଲୋକମାନେ ସ୍ୱର୍ଗସୁଖକୁ ସର୍ବାପେକ୍ଷା ଶ୍ରେଷ୍ଠ ବୋଲି ମନେ କରନ୍ତି ଏବଂ ସ୍ୱର୍ଗରେ ଅମୃତପାନ, ଉର୍ବଶୀ ଆଦି ଅପ୍ସରା ସହବାସ, ପାରିଜାତ ବୃକ୍ଷର ସୁଗନ୍ଧ ପୁଷ୍ପ ଓ ଛାୟା ପ୍ରଭୃତି ଭୋଗ, ଏବଂ ଦେବଲୋକରେ ପ୍ରଭୁତ୍ୱରୂପ ଐଶ୍ୱର୍ଯ୍ୟ ପାଇବା ପାଇଁ ଗୃହ୍ୟମୀଯ୍ୟ ଯଜ୍ଞ, ଦର୍ଶ ପୌର୍ଣ୍ଣମାସ, ଅଗ୍ନିହୋତ୍ର ଓ ଜ୍ୟୋତିଷ୍ଟୋମାଦି କ୍ରିୟା ବିସ୍ତାରିତରୂପେ ବେଦର ଯେଉଁ ଅଂଶରେ ବର୍ଣ୍ଣିତ ଅଛି ତାହା କହନ୍ତି । ଅର୍ଥାତ୍ ବେଦର ସକାମ କର୍ମ କାଣ୍ଡକୁ ନାନାପ୍ରକାର ବ୍ୟାଖ୍ୟା କରି ସେହି ୨ କର୍ମ କରିବାକୁ ଲୋକମାନଙ୍କୁ ପ୍ରବୃତ୍ତ କରାନ୍ତି । ସେହି ବଚନ ଅନୁସାରେ ଲୋକମାନେ କର୍ମରେ ପ୍ରବୃତ୍ତ ହୋଇ କର୍ମର ଫଳସ୍ୱରୂପ ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି ଓ ପୁନର୍ବାର କର୍ମ କରନ୍ତି ଏବଂ ପୁଣି ତାହାର ଫଳ ଭୋଗ କରନ୍ତି । ଫଳକଥା ଏହି କି କୌଣସି ପ୍ରକାରେ ସଂସାରବନ୍ଧନରୁ ମୁକ୍ତ ହୋଇ ପାରନ୍ତି ନାହିଁ । ୪୩ ।

ଶ୍ଲୋକଃ ।

* ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାଂ, ତୟାପହୃତଚେତସାଂ ।
ବ୍ୟବସାୟାତ୍ମିକା ବୁଦ୍ଧିଃ, ସମାଧୌ ନ ବିଧୀୟତେ । ୪୪ ।

ଅନ୍ୱୟଃ ।

ତୟା ଅପହୃତଚେତସାଂ ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାଂ ବ୍ୟବସାୟାତ୍ମିକା ବୁଦ୍ଧିଃ ସମାଧୌ ନ ବିଧୀୟତେ । ୪୪ ।

ଟୀକା ।

ତତସ୍ତ ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାମିତ । ଭୋଗୈଶ୍ୱର୍ଯ୍ୟୟୋଃ ପ୍ରସକ୍ତାନାମଭିନିବିଷ୍ଟାନାଂ ତୟା ପୁଷ୍ପିତୟା ବାଚା ଅପହୃତମାକୃଷ୍ଟଂ ଚେତୋଯେଷାଂ ସମାଧିଶ୍ଚିତ୍ତୈକାଗ୍ର୍ୟଂ ପରମେଶ୍ୱରାଭିମୁଖତ୍ୱମିତ ଯାବତ୍ ତସ୍ମିନ୍ ନିଶ୍ଚୟାତ୍ମିକା ବୁଦ୍ଧିର୍ନବିଧୀୟତେ, କର୍ମକର୍ତ୍ତରି ପ୍ରୟୋଗଃ ସା ନୋତ୍ପଦ୍ୟତ ଇତ୍ୟର୍ଥଃ । ୪୪ ।

ପଦବ୍ୟାଖ୍ୟା ।

ଭୋଗୈଶ୍ୱର୍ଯ୍ୟପ୍ରସକ୍ତାନାଂ—ଭୋଗ ଓ ଐଶ୍ୱର୍ଯ୍ୟରେ ଅସକ୍ତ, ତୟା—ସେହି ପୁଷ୍ପିତବଚନରେ, ଅପହୃତଚେତସାଂ—ଯାହାଙ୍କର ଚିତ୍ତ ଆକୃଷ୍ଟ ହୋଇଅଛି, ବ୍ୟବସାୟାତ୍ମିକା ବୁଦ୍ଧିଃ—ନିଶ୍ଚୟାତ୍ମିକା ବୁଦ୍ଧି, ସମାଧୌ—ସମାଧିରେ, ନ ବିଧୀୟତେ—ଉତ୍ପନ୍ନ ହୁଏ ନାହିଁ ।

ଅନୁବାଦ ।

ସୁଖଭୋଗ ଓ ଐଶ୍ୱର୍ଯ୍ୟରେ ଆସକ୍ତ ବ୍ୟକ୍ତିମାନେ ସେହି (ପୂର୍ବୋକ୍ତ) ପୁଷ୍ପିତ ବଚନରେ ବିମୋହିତ ହେବାରୁ ଯୋଗରେ ସେମାନଙ୍କର ବୁଦ୍ଧି ସ୍ଥିର ହୁଏ ନାହିଁ । ୪୪ ।

ବିଶଦବ୍ୟାଖ୍ୟା ।

ଭୋଗ ଏବଂ ଐଶ୍ୱର୍ଯ୍ୟରେ ଯେଉଁମାନଙ୍କର ମନ ଆସକ୍ତ ସେମାନେ ଆପଣା ମନଅନୁଯାୟୀ ବେଦର ବଚନ ଶୁଣିଲେ ସମାଧିରେ କି ଆଉ ସେମାନଙ୍କର ମନ ସ୍ଥିର ହେବ ? ବେଦର

Digitized by PPRACHIN, SOA

ଉକ୍ତ ବଚନ ସବୁ ଯେ ମିଥ୍ୟା ତାହା ନୁହେଁ, ମାତ୍ର ସ୍ୱର୍ଗାଦି ସୁଖର ଅନିତ୍ୟତା ଓ ଯଜ୍ଞାଦି କର୍ମ ସାଧନର କଠିନତା ଏବଂ ଅନୁଷ୍ଠାନର ତ୍ରୁଟିରେ ବା ମନ୍ତ୍ରାଦି ଅଙ୍ଗ ବିଗୁଣତା ଦୋଷ ଘଟିଲେ ହିତରେ ବିପରୀତ ଅର୍ଥାତ୍ ନାନାପ୍ରକାର ଅନିଷ୍ଟ ଓ ପାପ ଇତ୍ୟାଦି ହେବାରି ସମ୍ପୂର୍ଣ୍ଣ ସମ୍ଭାବନା ଅଛି । ଏହା ସବୁ ନ ବୁଝି ଅଜ୍ଞାନଲୋକ ବେଦର ଉକ୍ତ ବଚନ ଉପରେ ନିର୍ଭର କରି ସ୍ୱର୍ଗାଦି ସୁଖକୁ ସର୍ବାପେକ୍ଷା ଶ୍ରେଷ୍ଠ ମନେ କରି ଆପେ ତହିଁରେ ପ୍ରବୃତ୍ତ ହୁଅନ୍ତି ଓ ଅନ୍ୟକୁ ପ୍ରବୃତ୍ତ କରନ୍ତି । ଏବଂ ଐଶ୍ୱର୍ଯ୍ୟଭୋଗାଭିଳାଷିମାନେ ତାଙ୍କର ମନୋହର ବଚନ ଶୁଣି ଓ ଆପଣା ମନଅନୁଯାୟୀ ଦେଖି ସମାଧି ବା ଯୋଗରେ ବୁଦ୍ଧି ସ୍ଥିର ରଖି ପାରନ୍ତି ନାହିଁ । ୪୪ ।

## ଶ୍ଳୋକଃ ।

ତ୍ରୈଗୁଣ୍ୟବିଷୟା ବେଦା, ନିସ୍ତ୍ରୈଗୁଣ୍ୟୋଭବାର୍ଜୁନ ।
ନିର୍ଦ୍ୱନ୍ଦ୍ୱୋ ନିତ୍ୟସତ୍ତ୍ୱସ୍ଥୋ, ନିର୍ଯୋଗକ୍ଷେମ ଆତ୍ମବାନ୍ । ୪୫ ।

## ଅନ୍ୱୟଃ ।

ହେ ଅର୍ଜୁନ ! ବେଦାଃ ତ୍ରୈଗୁଣ୍ୟବିଷୟାଃ, ତ୍ୱଂ ନିସ୍ତ୍ରୈଗୁଣ୍ୟଃ, ନିର୍ଦ୍ୱନ୍ଦ୍ୱଃ, ନିତ୍ୟସତ୍ତ୍ୱସ୍ଥଃ, ନିର୍ଯୋଗକ୍ଷେମଃ, ଆତ୍ମବାନ୍ ଭବ । ୪୫ ।

## ଟୀକା ।

ନନୁ ସ୍ୱର୍ଗାଦିକଂ ପରମଂ ଫଳଂ ଯଦି ନ ଭବତି, ତର୍ହି କିମିତି ବେଦୈସ୍ତତ୍‌ସାଧନତୟା କର୍ମାଣି ବିଧୀୟନ୍ତେ ତତ୍ରାହ । ତ୍ରୈଗୁଣ୍ୟବିଷୟା ଇତି । ତ୍ରିଗୁଣାତ୍ମକାଃ ସକାମା ଯେଽଧିକାରିଣସ୍ତଦ୍ୱିଷୟାଃ କର୍ମଫଳସମ୍ବନ୍ଧପ୍ରତିପାଦକା ବେଦାଃ ତ୍ୱନ୍ତୁ ନିସ୍ତ୍ରୈଗୁଣ୍ୟୋନିଷ୍କାମୋ ଭବ । ତତ୍ରୋପାୟ ମାହ । ନିର୍ଦ୍ୱନ୍ଦ୍ୱଃ ସୁଖଦୁଃଖ ଶୀତୋଷ୍ଣାଦି ଯୁଗଳାନି ଦ୍ୱନ୍ଦ୍ୱାନି ତଦ୍ରହିତୋ ଭବ ତାନି ସହସ୍ୱେତ୍ୟର୍ଥଃ । କଥମିତ୍ୟତଆହ ନିତ୍ୟ ସତ୍ତ୍ୱସ୍ଥଃ ସନ୍ ଧୈର୍ଯ୍ୟମବଲମ୍ବ୍ୟେତ୍ୟର୍ଥଃ । ତଥା ନିର୍ଯୋଗ-କ୍ଷେମଃ ଅପ୍ରାପ୍ତସ୍ୱୀକାରୋଯୋଗଃ ପ୍ରାପ୍ତପାଳନଂ କ୍ଷେମସ୍ତଦ୍ରହିତଃ, ଆତ୍ମବାନ୍-ଅପ୍ରମତ୍ତଃ, ନହି ଦ୍ୱନ୍ଦ୍ୱାକୁଳସ୍ୟ ଯୋଗକ୍ଷେମ ବ୍ୟାପୃତସ୍ୟଚ ପ୍ରମାଦିନସ୍ତ୍ରୈଗୁଣ୍ୟାତିକ୍ରମଃ ସମ୍ଭବତୀତି । ୪୫ ।

## ପଦବ୍ୟାଖ୍ୟା ।

ତ୍ରୈଗୁଣ୍ୟବିଷୟାଃ—ତ୍ରିଗୁଣାତ୍ମକ ଅର୍ଥାତ୍ ସକାମଲୋକମାନଙ୍କର କର୍ମଫଳ ସିଦ୍ଧିକାରକ, ବେଦାଃ—ତିନି-ବେଦ, ନିସ୍ତ୍ରୈଗୁଣ୍ୟଃ—ତ୍ରିଗୁଣରହିତ ଅର୍ଥାତ୍ ନିଷ୍କାମ, ଭବ—ହୁଅ, ଅର୍ଜୁନ—ହେ ଅର୍ଜୁନ, ନିର୍ଦ୍ୱନ୍ଦ୍ୱଃ—ସୁଖ ଓ ଦୁଃଖ ଶୀତ ଓ ଉଷ୍ଣ ଇତ୍ୟାଦିକୁ ଦ୍ୱନ୍ଦ୍ୱ ଅର୍ଥାତ୍ ଦୁଇ ମନେ ନ କରି ଏକ ବୋଲି—ସମାନ ବୋଲି ଜାଣ ଅର୍ଥାତ୍ ସହ୍ୟ କର, ନିତ୍ୟସତ୍ତ୍ୱସ୍ଥଃ— ସବୁ କାଳରେ ଧୈର୍ଯ୍ୟ ଅବଲମ୍ବନ କରି ସନ୍ତୋଷ ଓ ଆନନ୍ଦଯୁକ୍ତ ହୁଅ, ନିର୍ଯୋଗକ୍ଷେମଃ—ନ ମିଳିବା ପଦାର୍ଥ ପ୍ରାପ୍ତିର ନାମ 'ଯୋଗ' ଓ ପ୍ରାପ୍ତ ପଦାର୍ଥର ରକ୍ଷଣକୁ 'କ୍ଷେମ' କୁହା ଯାଏ, ତୁମ୍ଭେ ଏ ଦୁଇ ବିଷୟର ବାସନା ତ୍ୟାଗ କର, ଆତ୍ମବାନ୍—ସାବଧାନ ହୋଇ ଈଶ୍ୱରଙ୍କପ୍ରତି ସବୁ ନିର୍ଭର କର । ୪୫ ।

## ଅନୁବାଦ ।

ଏହି କର୍ମକାଣ୍ଡରୂପ ବେଦ ତ୍ରିଗୁଣମୟ ( ଅର୍ଥାତ୍ ସକାମ କର୍ମଫଳ ପ୍ରଦାୟକ )। ଅତ-ଏବ ତୁମ୍ଭେ ନିର୍ଦ୍ୱନ୍ଦ୍ୱ, ନିତ୍ୟ ସତ୍ତ୍ୱଭାବରେ ଅବସ୍ଥିତ, ପୁଣି ଯୋଗ ଓ କ୍ଷେମରହିତ ହୋଇ ଆତ୍ମାର ଅନୁସରଣ କର ଓ ନିଷ୍କାମ ହୁଅ । ୪୫ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନଙ୍କର ଏପରି ଅଶଙ୍କା ହେବ, ଯେ ବେଦୋକ୍ତ ଅଗ୍ନିହୋତ୍ରାଦି କର୍ମତ ନିଜସ୍ୱଭାବ ଅନୁସାରେ ଅବଶ୍ୟ ସ୍ୱର୍ଗାଦି ଫଳ ପ୍ରସବ କରିବ ଏବଂ କର୍ମାନୁଷ୍ଠାନୀ ପୁରୁଷର କର୍ମାନୁସାରେ ଫଳ ପ୍ରାପ୍ତି ହେବ । ଫଳ ପାଇଲେ ତାହା ଭୋଗ କରିବାକୁ ଜନ୍ମଗ୍ରହଣ କରିବାକୁ ପଡ଼ିବ, ତେବେ ଆଉ କର୍ମ କଲେ ମୁକ୍ତି ହେବ କିପରି ? ଅର୍ଜ୍ଜୁନଙ୍କର ସେହି ଅଶଙ୍କା ନିବାରଣ ପାଇଁ ଶ୍ରୀ ଭଗବାନ୍ କହୁଅଛନ୍ତି କି କର୍ମକାଣ୍ଡପ୍ରକାଶକ ବେଦସବୁ ତ୍ରିଗୁଣମୟ ଅର୍ଥାତ୍ କେବଳ ସକାମ କର୍ମକର୍ତ୍ତାମାନଙ୍କର ଫଳଦାୟକ ଅଟେ । ତୁମ୍ଭେ ତ୍ରିଗୁଣହୀନ ହୁଅ ଅର୍ଥାତ୍ କାମନା ତ୍ୟାଗ କର । ତାହା ହେଲେ ତୁମ୍ଭର ଫଳ ହେବାର ସମ୍ଭବ ନ ଥିବ । ନିଷ୍କାମ ହେବାକୁ ହେଲେ ଶୀତ ଉଷ୍ଣ, ସୁଖ ଦୁଃଖ ପ୍ରଭୃତି ଦ୍ୱନ୍ଦ୍ୱହୀନ ହେବା ଅବଶ୍ୟକ । ଉକ୍ତ ଶୀତ ଉଷ୍ଣାଦି ଦ୍ୱନ୍ଦ୍ୱସବୁକୁ ସମାନ ଜ୍ଞାନ କରି ସହିବାକୁ ଧୈର୍ଯ୍ୟର ପ୍ରୟୋଜନ । ତୁମ୍ଭେ ବିଶୁଦ୍ଧ ସତ୍ତ୍ୱରୂପ ଅଟଳ ଧୈର୍ଯ୍ୟ ଅବଲମ୍ବନ କର । କ୍ଷୁଧା ତୃଷ୍ଣା ନିବାରଣପାଇଁ ଅନ୍ନାଦି ସଂଗ୍ରହ ଓ ସଂଗୃହୀତ ଅନ୍ନାଦି ରକ୍ଷା କରିବାପାଇଁ ଯତ୍ନ ଅବଶ୍ୟକ । ମାତ୍ର ତୁମ୍ଭେ ଯୋଗ (ଅପ୍ରାପ୍ତ ପଦାର୍ଥର ପ୍ରାପ୍ତି) ଓ କ୍ଷେମ (ପ୍ରାପ୍ତ ପଦାର୍ଥର ରକ୍ଷା) ରୂପ ଯତ୍ନ ତ୍ୟାଗ କର । କିନ୍ତୁ ଏପ୍ରକାର ଯତ୍ନ ତ୍ୟାଗ କଲେ ଜୀବନ ନାଶର ସମ୍ଭାବନା, ଏଥିପାଇଁ ଭଗବାନ୍ କହୁଅଛନ୍ତି ଯେ ତୁମ୍ଭେ ଆତ୍ମବାନ ହୁଅ ଅର୍ଥାତ୍ ସର୍ବାନ୍ତର୍ଯ୍ୟାମୀ ପରମେଶ୍ୱର ସର୍ବଦା ସର୍ବତ୍ର ବିଦ୍ୟମାନ ଥାଇ ମୋହପାଇଁ ଆହାରାଦିର ବ୍ୟବସ୍ଥା କରିବେ ଏପରି ବିଶ୍ୱାସ କର । ସମସ୍ତ କାମନା ପରିତ୍ୟାଗ କରି ଭକ୍ତିଯୁକ୍ତ ଚିତ୍ତରେ ଈଶ୍ୱର ଆରାଧନା କଲେ ଗ୍ରାସାଚ୍ଛାଦନ ନିମିତ୍ତ ଆଉ ଭାବନା କରିବାକୁ ହେବ ନାହିଁ, ତୁମ୍ଭେ ତୁମ୍ଭର ଅନ୍ତଃକରଣକୁ ଏହି ପ୍ରକାର ନିଶ୍ଚୟ ବୁଦ୍ଧି ଦ୍ୱାରା ପରିଶୁଦ୍ଧ କର । ତାହା ହେଲେ ନିଷ୍କାମ ହେବା ସହଜ ହେବ । ୪୫ ।

ଶ୍ଳୋକଃ ।

ଯାବାନର୍ଥ ଉଦପାନେ, ସର୍ବତଃ ସଂପ୍ଲୁତୋଦକେ ।
ତାବାନ୍ ସର୍ବେଷୁ ବେଦେଷୁ, ବ୍ରାହ୍ମଣସ୍ୟ ବିଜାନତଃ । ୪୬ ।

ଅନ୍ୱୟଃ ।

ଉଦପାନେ ଯାବାନ୍ ଅର୍ଥଃ ସର୍ବତଃ ସଂପ୍ଲୁତୋଦକେ ତାବାନ୍ (ଯଥା) (ତଥା) ସର୍ବେଷୁ ବେଦେଷୁ (ଯାବାନ୍) ବିଜାନତଃ ବ୍ରାହ୍ମଣସ୍ୟ (ତାବାନ୍ ଅର୍ଥଃ ଭବତି) । ୪୬ ।

ଟୀକା ।

ନନୁ ବେଦୋକ୍ତ ନାନାଫଳତ୍ୟାଗେନ, ନିଷ୍କାମତୟେଶ୍ୱରାଧନବିଷୟେ ବ୍ୟବସାୟାତ୍ମିକା ବୁଦ୍ଧିଃ କୁବୁଦ୍ଧିରେବେତ୍ୟାଶଙ୍କ୍ୟାହ ଯାବାନିତି । ଉଦକଂ ପୀୟତେ ଯସ୍ମିନ୍ ତଦୁଦପାନଂ ବାପୀ କୂପ ତଡ଼ାଗାଦି, ତସ୍ମିନ୍ ସ୍ୱଳ୍ପୋଦକେ ଏକତ୍ର କୃତ୍ସ୍ନାର୍ଥସ୍ୟାସମ୍ଭବାତ୍ତତ୍ର ତତ୍ର ପରିଭ୍ରମଣେନ ବିଭାଗଶୋ ଯାବାନ୍ ସ୍ନାନପାନାଦିରର୍ଥଃ ପ୍ରୟୋଜନଂ ଭବତି, ତାବାନ୍ ସର୍ବୋଽପ୍ୟର୍ଥଃ ସର୍ବତଃସଂପ୍ଲୁତୋଦକେ ମହାହ୍ରଦେ, ଏକତ୍ରୈବ ଯଥାଭବତି, ଏବ ଯାବାନ୍ ସର୍ବେଷୁ ବେଦେଷୁ ତତ୍ତତ୍ କର୍ମଫଲରୂପୋଽର୍ଥସ୍ତାବାନ୍ ସର୍ବୋଽପି ବିଜାନତୋବ୍ୟବସାୟାତ୍ମିକାବୁଦ୍ଧିଯୁକ୍ତସ୍ୟ ବ୍ରାହ୍ମଣସ୍ୟ ବ୍ରହ୍ମନିଷ୍ଠସ୍ୟ ଭବତ୍ୟେବ, ବ୍ରହ୍ମାନନ୍ଦେ କ୍ଷୁଦ୍ରା

Digitized by PPRACHIN, SOA

ତଦାନାମନ୍ତର୍ଭାବାତ୍ ଏତସ୍ୟୈବାନନ୍ଦସ୍ୟାନ୍ୟାନି ଭୂତାନି ମାତ୍ରାମୁପଜୀବନ୍ତୀତି ଶ୍ରୁତେଃ, ତସ୍ମାଦସ୍ମେବ ବୁଦ୍ଧିଃ ସୁବୁଦ୍ଧି-ରିତ୍ୟର୍ଥଃ । ୪୬ ।

## ପଦବ୍ୟାଖ୍ୟା ।

ଯାବାନ୍—ଯେତେ, ଅର୍ଥଃ—ପ୍ରୟୋଜନ, ଉଦପାନେ—କ୍ଷୁଦ୍ର ଜଳାଶୟରେ, ସର୍ବତଃସଂପ୍ଲୁତୋଦକେ—ମହାହ୍ରଦରେ, ତାବାନ୍—ତେତେ, ସର୍ବେଷୁବେଦେଷୁ—ସମସ୍ତ ବେଦରେ, ବ୍ରାହ୍ମଣସ୍ୟ—ବ୍ରହ୍ମନିଷ୍ଠ, ବିଜାନତଃ—(ପରମାର୍ଥତତ୍ତ୍ୱ) ଜାଣିବା ବ୍ୟକ୍ତିଙ୍କର । ୪୬ ।

## ଅନୁବାଦ ।

(ଯେପରି) କ୍ଷୁଦ୍ର୨ ଜଳାଶୟରେ ପୃଥକ୍୨ ରୂପେ ଯେଉଁ ପ୍ରୟୋଜନ ସିଦ୍ଧି ହୁଏ, ମହାହ୍ରଦରେ ଏକତ୍ରରେ ତାହା ସିଦ୍ଧି ହୁଏ; ସେହିପରି ବେଦର ସମସ୍ତ କର୍ମକାଣ୍ଡରେ ଯେଉଁ ପୃଥକ୍୨ ସୁଖ ହୁଏ, ଏକାଗ୍ର ବୁଦ୍ଧିଯୁକ୍ତ ବ୍ରହ୍ମନିଷ୍ଠ ବ୍ୟକ୍ତିଙ୍କର ସେ ସମସ୍ତ ସୁଖ ଏକତ୍ରରେ ହୁଏ । ୪୬ ।

## ବିଶଦବ୍ୟାଖ୍ୟା ।

ପୂର୍ବରେ କୁହା ଯାଇଅଛି, ଯେ କାମନା ନ ଥିଲେ ଫଳ ହୁଏ ନାହିଁ, ଯେବେ ନିଷ୍କାମ-କର୍ମ କଲେ ବେଦୋକ୍ତ ସମସ୍ତ କର୍ମଫଳରୁ ବଞ୍ଚିତ ହେବାକୁ ହେବ, ତେବେ କେଉଁ ବୁଦ୍ଧିମାନ୍ ଲୋକ ନିଷ୍କାମକର୍ମ କରିବାକୁ ପ୍ରବୃତ୍ତ ହେବ ? ଅର୍ଜୁନଙ୍କର କାଳେ ଏପରି ଆଶଙ୍କା ହୋଇ-ଥିବ, ତାହା ନିବାରଣ ପାଇଁ ଶ୍ରୀ ଭଗବାନ୍ କହିଲେ, ଯେ ଯେପରି କ୍ଷୁଦ୍ର୨ ଜଳାଶୟରେ ସ୍ନାନପାନାଦି ଯେତେ କର୍ମ ପୃଥକ୍୨ ରୂପେ କରାଯାଏ ଅର୍ଥାତ୍ କୂପରୁ ଜଳପାନ, ବାପୀରେ ସ୍ନାନ ଓ ତଡ଼ାଗରେ ବସ୍ତ୍ରାଦି ଧୋଇବା ଓ ପୁଷ୍କରିଣୀରେ ପଶୁପ୍ରଭୃତିର ସ୍ନାନ କରାଇବା ଇତ୍ୟାଦି ଯେତେ କର୍ମ ହୁଏ, ଏକମାତ୍ର ବଡ଼ ହ୍ରଦରେ ସେ ସମସ୍ତ କାର୍ଯ୍ୟ ହୋଇପାରେ । କାହିଁକିନା ପ୍ରତ୍ୟେକ କ୍ଷୁଦ୍ର୨ ଜଳାଶୟର ଜଳପରିମାଣ, ବୃହତ୍ ଜଳାଶୟ ବା ମହାହ୍ରଦର ଜଳର ଏକାଂଶ ମାତ୍ର । ସେହିପରି ବେଦରେ ଯେତେପ୍ରକାର କାମ୍ୟକର୍ମର ଫଳଅଛି; ଅର୍ଥାତ୍ ଅଶ୍ୱ-ମେଧ ଯାଗରେ ସ୍ୱର୍ଗ, ପୁତ୍ରେଷ୍ଟି ଯଜ୍ଞରେ ପୁତ୍ର, ଅଗ୍ନିହୋତ୍ର ଓ ଜ୍ୟୋତିଷ୍ଟୋମ ଯାଗରେ ଐଶ୍ୱ-ର୍ଯ୍ୟଲାଭ ଇତ୍ୟାଦି ସାଂସାରିକ ଯେତେପ୍ରକାର ସୁଖଲାଭର କଥା ଅଛି, ନିଷ୍କାମକର୍ମ କରିବା ବ୍ରହ୍ମନିଷ୍ଠ ଏକାଗ୍ର ବୁଦ୍ଧିଯୁକ୍ତ ବ୍ୟକ୍ତି, ବ୍ରହ୍ମାନନ୍ଦ ପ୍ରାପ୍ତ ହେବାରୁ ସେ ସମସ୍ତ ସୁଖଲାଭ କରନ୍ତି । କାହିଁକିନା ଜଗତର ସମୁଦାୟ ସୁଖ ବ୍ରହ୍ମାନନ୍ଦ ରୂପ ସୁଖର ଏକ୨ ଅଂଶମାତ୍ର । ଅତଏବ ନିଷ୍କାମ କର୍ମ ସର୍ବାପେକ୍ଷା ଶ୍ରେଷ୍ଠ । ୪୬ ।

## ଶ୍ଳୋକଃ ।

କର୍ମଣ୍ୟେ ବାଧିକାରସ୍ତେ,ମା ଫଳେଷୁ କଦାଚନ ।
ମା କର୍ମଫଳହେତୁର୍ଭୂ,ର୍ମାତେ ସଙ୍ଗୋଽସ୍ତ୍ୱ କର୍ମଣି । ୪୭ ।

## ଅନ୍ୱୟଃ ।

ତେ କର୍ମଣି ଏବ ଅଧିକାରଃ (ଅସ୍ତୁ) ଫଳେଷୁ କଦାଚନ ମା (ଅସ୍ତୁ) ତ୍ୱଂ କର୍ମଫଳ ହେତୁଃ ମା ଭୂଃ ତେ ଅକର୍ମଣି ସଙ୍ଗଃ ମା ଅସ୍ତୁ । ୪୭ ।

Digitized by PPRACHIN, SOA

### ଟୀକା ।

ତର୍ହି ସର୍ବାଣି କର୍ମଫଳାନି ପରମେଶ୍ୱରାରାଧନାଦେବ ଭବିଷ୍ୟନ୍ତୀତ୍ୟଭିସନ୍ଧାୟ ପ୍ରବର୍ତ୍ତିତ ତ୍ୱଂ କର୍ମଣ୍ୟଧ୍ୟାଶଙ୍କ୍ୟ ତଦ୍ୱାରୟନ୍ନାହ କର୍ମଣ୍ୟେବେତି । ତେ ତବ ତତ୍ତ୍ୱଜ୍ଞାନାର୍ଥିନଃ କର୍ମଣ୍ୟେବାଧିକାରସ୍ତତ୍ଫଳେଷୁ ବନ୍ଧହେତୁଷୁ ଅଧିକାରଃ କାମୋ ମାସ୍ତୁ । ନନୁ କର୍ମଣି କୃତେ ତତ୍ ଫଳଂ ସ୍ୟାଦେବ, ଭୋଜନେ କୃତେ ତୃପ୍ତିବଦିତ୍ୟାଶଙ୍କ୍ୟାହ ମେତି । ମା କର୍ମଫଳ ହେତୁର୍ଭୂଃ କର୍ମଫଳଂ ପ୍ରବୃତ୍ତିହେତୁର୍ଯସ୍ୟ ସ ତଥାଭୂତୋ ମାଭୂଃ କାମ୍ୟମାନସ୍ୟୈବ ସ୍ୱର୍ଗାଦେର୍ନିୟୋଜ୍ୟ ବିଶେଷଣତ୍ୱେନ ଫଳତ୍ୱାଦକାମିତଂଫଳଂ ନସ୍ୟାଦିତି ଭାବଃ, ଅତଏବ ଫଳଂବନ୍ଧକଂ ଭବିଷ୍ୟତୀତି ମତ୍ୱା ଅକର୍ମଣି କର୍ମାକରଣେଽପି ତବ ସଙ୍ଗୋନିଷ୍ଠା ମାସ୍ତୁ । ୪୭ ।

### ପଦବ୍ୟାଖ୍ୟା ।

କର୍ମଣି—କର୍ମରେ, ଏବ—କେବଳ, ଅଧିକାରଃ—କାମନା ହେଉ, ତେ—ତୁମ୍ଭର, ମା—ନ ହେଉ, ଫଳେଷୁ—ଫଳମାନଙ୍କରେ, କଦାଚନ—କେବେହେଁ, ମା କର୍ମଫଳ ହେତୁର୍ଭୂଃ—କର୍ମଫଳ ତୁମ୍ଭର କର୍ମପ୍ରବୃତ୍ତିର କାରଣ ନ ହେଉ, ମା—ନ ହେଉ, ତେ—ତୁମ୍ଭର, ସଙ୍ଗଃ—ନିଷ୍ଠା-ଇଚ୍ଛା, ଅସ୍ତୁ—ହେଉ, ଅକର୍ମଣି—କର୍ମ ନ କରିବାରେ । ୪୭ ।

### ଅନୁବାଦ ।

ତୁମ୍ଭର କର୍ମରେ କାମନା ହେଉ କିନ୍ତୁ କର୍ମଫଳରେ କଦାପି ନୋହୁ । କର୍ମଫଳ ତୁମ୍ଭର କର୍ମପ୍ରବୃତ୍ତିର ପ୍ରତି କାରଣ ନୋହୁ ଏବଂ ଅକର୍ମରେ ତୁମ୍ଭର ଆସକ୍ତି ନୋହୁ । ୪୭ ।

### ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନ ମନେ କରିବେ, ଯେ ଭକ୍ତିଭାବରେ ଈଶ୍ୱରଆରାଧନା କଲେତ ସବୁଫଳ ମିଳିବ ତେବେ ଆଉ କର୍ମ କରିବାର ପ୍ରୟୋଜନ କି ? ସେହି ଆଶଙ୍କା ନିବାରଣ ପାଇଁ ଶ୍ରୀ ଭଗବାନ୍ କହିଲେ, ଯେ ତୁମ୍ଭର କର୍ମରେ ଅଧିକାର ( କାମନା ) ହେଉ ଅର୍ଥାତ୍ ତୁମ୍ଭେ କର୍ମସବୁ କର ମାତ୍ର କର୍ମଫଳରେ କଦାପି କାମନା ନ ହେଉ ଅର୍ଥାତ୍ ଫଳ ପାଇବା ଇଚ୍ଛାରେ କର୍ମ ନ କର ।

କାଳେ ଏପରି ଆଶଙ୍କା ହେବ, ଯେ ଯେପରି ଭୋଜନ କଲେ କ୍ଷୁଧା ନିବୃତ୍ତି ହୁଏ ସେହିପରି କୌଣସି କର୍ମ କଲେ ତାହାର ଫଳ ନିଶ୍ଚେ ହେବ । ଆଉ ସେହି ଫଳତ ଜନ୍ମମରଣର କାରଣ ଅଟେ ! ସେଥିପାଇଁ ଭଗବାନ୍ କହୁଅଛନ୍ତି, ଯେ ତୁମ୍ଭେ କାମନା ରହିତ ହୋଇ କର୍ମ କର ଅର୍ଥାତ୍ ନିଷ୍କାମ କର୍ମ କର । କାମନା ନ ଥିଲେ ଫଳଲାଭ ହେବ ନାହିଁ ।

ଏଥିରେ ଏପରି ଆଶଙ୍କା ହୋଇପାରେ, ଯେ ଯଦି କାମନା ନ କଲେ ଫଳ ହେବ ନାହିଁ, ତେବେ କର୍ମ କରିବାର ପ୍ରୟୋଜନ କି ? ସେଥିପାଇଁ ଶ୍ରୀକୃଷ୍ଣ କହିଲେ, ଯେ ଫଳ ନାହିଁ ବୋଲି ତୁମ୍ଭେ କର୍ମ ନ କରିବାରେ ଆସକ୍ତ ହୁଅନା, କାହିଁକି ନା ତତ୍ତ୍ୱଜ୍ଞାନାର୍ଥିଙ୍କର ଚିତ୍ତ ନିର୍ମଳହେବା ନିତାନ୍ତ ପ୍ରୟୋଜନ, ସେହି ଚିତ୍ତ ନିର୍ମଳତା ନିଷ୍କାମ କର୍ମ ଭିନ୍ନ କଦାପି ହୋଇ ନ ପାରେ, ଅତଏବ ତୁମ୍ଭେ କାମନା ରହିତ ହୋଇ କର୍ମ କର । ୪୭ ।

### ଶ୍ଳୋକଃ ।

* ଯୋଗସ୍ଥଃ କୁରୁ କର୍ମାଣି, ସଙ୍ଗଂ ତ୍ୟକ୍ତ୍ୱା ଧନଞ୍ଜୟ ।
ସିଦ୍ଧ୍ୟସିଦ୍ଧ୍ୟୋଃ ସମୋଭୂତ୍ୱା, ସମତ୍ୱଂ ଯୋଗ ଉଚ୍ୟତେ । ୪୮ ।

Digitized by PPRACHIN, SOA

### ଅନ୍ୱୟଃ ।

ହେ ଧନଞ୍ଜୟ ! ସିଦ୍ଧ୍ୟସିଦ୍ଧ୍ୟୋଃ ସମଃ ଭୂତ୍ୱା ଯୋଗସ୍ଥଃ ( ସନ୍ ) ସଙ୍ଗଂ ତ୍ୟକ୍ତ୍ୱା କର୍ମାଣି କୁରୁ । (ସିଦ୍ଧ୍ୟସିଦ୍ଧ୍ୟୋଃ) ସମତ୍ୱଂ ଯୋଗଃ ଉଚ୍ୟତେ । ୪୮ ।

### ଟୀକା ।

ତର୍ହିକଂ ଯୋଗସ୍ଥ ଇତି । ଯୋଗଃ ପରମେଶ୍ୱରୈକପରତା ତତ୍ସ୍ଥିତଃ କର୍ମାଣି କୁରୁ, ତଥା ସଙ୍ଗଂ କର୍ତ୍ତୃତ୍ୱାଭିନିବେଶଂ ତ୍ୟକ୍ତ୍ୱା କେବଲମୀଶ୍ୱରାଶ୍ରୟେଣୈବ କୁରୁ, ତତ୍ଫଲସ୍ୟ ଜ୍ଞାନସ୍ୟାପି ସିଦ୍ଧ୍ୟସିଦ୍ଧ୍ୟୋଃ ସମୋଭୂତ୍ୱା କେବଲମୀଶ୍ୱରାର୍ପଣେନୈବ କୁରୁ , ଯତ ଏବମ୍ଭୂତଂ ସମତ୍ୱମେବ ଯୋଗ ଉଚ୍ୟତେ ସଦ୍ଭିଶ୍ଚିତ୍ତସମାଧାନରୂପତ୍ୱାତ୍ । ୪୮ ।

### ପଦବ୍ୟାଖ୍ୟା ।

ଯୋଗସ୍ଥଃ— ଯୋଗରେ ନିଶ୍ଚଳ ହୋଇ, କୁରୁ— କର, କର୍ମାଣି— କର୍ମସବୁ, ସଙ୍ଗଂତ୍ୟକ୍ତ୍ୱା— (ମୁଁ କରୁଅଛି ବୋଲି ଯେ ଅଭିନିବେଶ )— କାମନା ତ୍ୟାଗ କରି, ଧନଞ୍ଜୟ— ହେ ଅର୍ଜ୍ଜୁନ !, ସିଦ୍ଧ୍ୟସିଦ୍ଧ୍ୟୋଃ— ( କର୍ମଫଳ ଓ ଜ୍ଞାନରୂପ) ସିଦ୍ଧି ଓ ଅସିଦ୍ଧି ଏ ଦୁଇ ବିଷୟରେ, ସମୋଭୂତ୍ୱା— ସମାନ ହୋଇ, ସମତ୍ୱଂଯୋଗଉଚ୍ୟତେ— ଏହି ସମତାକୁ ପଣ୍ଡିତମାନେ 'ଯୋଗ' କହନ୍ତି । ୪୮ ।

### ଅନୁବାଦ ।

ହେ ଅର୍ଜ୍ଜୁନ ! ତୁମ୍ଭେ ଫଳକାମନା ପରିତ୍ୟାଗ ପୂର୍ବକ ଏକାନ୍ତ ଈଶ୍ୱରପରାୟଣ ହୋଇ କର୍ମର ସିଦ୍ଧି ଓ ଅସିଦ୍ଧିରେ ସମାନ ଜ୍ଞାନ କରି କର୍ମ ଅନୁଷ୍ଠାନ କର । (କର୍ମର ସିଦ୍ଧି ଓ ଅସିଦ୍ଧିରେ) ସମାନଜ୍ଞାନକୁ ଯୋଗ ବୋଲାଯାଏ । ୪୮ ।

### ବିଶଦବ୍ୟାଖ୍ୟା ।

କର୍ମଫଳ ପ୍ରାପ୍ତିକୁ 'ସିଦ୍ଧି' ଓ ଅପ୍ରାପ୍ତିକୁ 'ଅସିଦ୍ଧି' ବୋଲାଯାଏ, ସେହି ଦୁଇ ବିଷୟକୁ ସମାନ ଜାଣି ଅର୍ଥାତ୍ ହର୍ଷ ଓ ବିଷାଦକୁ ସମାନଜ୍ଞାନ କରି କର୍ମ କର । ସେହି ସମାନଜ୍ଞାନକୁ ଯୋଗ ବୋଲାଯାଏ । ୪୮ ।

### ଶ୍ଳୋକଃ ।

ଦୂରେଣ ହ୍ୟବରଂ କର୍ମ, ବୁଦ୍ଧିଯୋଗାଦ୍ଧନଞ୍ଜୟ ।
ବୁଦ୍ଧୌ ଶରଣମନ୍ୱିଚ୍ଛ, କୃପଣାଃ ଫଳହେତବଃ । ୪୯ ।

### ଅନ୍ୱୟଃ ।

ହେ ଧନଞ୍ଜୟ ! ବୁଦ୍ଧିଯୋଗାତ୍ ( ଅନ୍ୟତ୍ ) କର୍ମ ଦୂରେଣ ହି ଅବରଂ । ବୁଦ୍ଧୌ ଶରଣଂ ଅନ୍ୱିଚ୍ଛ । ଫଳ ହେତବଃ କୃପଣାଃ । ୪୯ ।

### ଟୀକା ।

କାମ୍ୟନ୍ତୁ କର୍ମାତିନିକୃଷ୍ଟମିତ୍ୟାହ । ଦୂରେଣେତି । ବୁଦ୍ଧ୍ୟା ବ୍ୟବସାୟାତ୍ମିକୟା କୃତଃ କର୍ମଯୋଗୋ ବୁଦ୍ଧିଯୋଗୋ ବୁଦ୍ଧିସାଧନଭୂତୋ ବା ତସ୍ମାତ୍ ସକାଶାତ୍ ଅନ୍ୟତ୍ ସାଧନଭୂତଂ କାମ୍ୟଂ କର୍ମ ଦୂରେଣାବରମତ୍ୟନ୍ତମପକୃଷ୍ଟଂ ଯସ୍ମାଦେବ ତସ୍ମାତ୍ ବୁଦ୍ଧୌ ଜ୍ଞାନେ ଶରଣମାଶ୍ରୟଂ କର୍ମଯୋଗମନ୍ୱିଚ୍ଛ ଅନୁତିଷ୍ଠ, ଯଦ୍ୱା ବୁଦ୍ଧୌ ଶରଣଂ ତ୍ରାତାରମୀଶ୍ୱରମାଶ୍ରୟେତ୍ୟର୍ଥଃ, ଫଳହେତବସ୍ତୁ ସକାମାଃ ନରାଃ କୃପଣାଃ ଦୀନାଃ ଯୋ ବା ଏତଦକ୍ଷରମବିଦିତ୍ୱା ଗାର୍ଗ୍ୟସ୍ମାଲ୍ଲୋକାତ୍ ପ୍ରୈତି ସ କୃପଣ ଇତି ଶ୍ରୁତେଃ । ୪୯ ।

Digitized by PPRACHIN, SOA

## ପଦବ୍ୟାଖ୍ୟା ।

ଦୂରେଣ—ଅତ୍ୟନ୍ତ, ହି—ନିଶ୍ଚୟ, ଅବରଂ—ନିକୃଷ୍ଟ, କର୍ମ—ସକାମକର୍ମ, ବୁଦ୍ଧିଯୋଗାତ୍—ନିଷ୍କାମବୁଦ୍ଧି ଯୋଗ ଅପେକ୍ଷା, ଧନଞ୍ଜୟ—ହେ ଅର୍ଜ୍ଜୁନ!, ବୁଦ୍ଧୌ—ନିଷ୍କାମିକା ବୁଦ୍ଧିରେ, ଶରଣଂ—ଆଶ୍ରୟକୁ, ଅନ୍ୱିଚ୍ଛ—ପ୍ରାପ୍ତ ହୁଅ, କୃପଣାଃ—ଦୀନ—କୃପାର ପାତ୍ର, ଫଳହେତବଃ—ଫଳକାମନା କରିବା ବ୍ୟକ୍ତିମାନେ । ୪୯ ।

## ଅନୁବାଦ ।

ହେ ଅର୍ଜ୍ଜୁନ ! ଜ୍ଞାନଯୋଗଠାରୁ କର୍ମଯୋଗ ଅତ୍ୟନ୍ତ ନିକୃଷ୍ଟ । ତୁମ୍ଭେ ଜ୍ଞାନ ନିମିତ୍ତ ଈଶ୍ୱରଙ୍କର ଆଶ୍ରୟ ଇଚ୍ଛା କର । ଫଳକାମନା କରିବା ବ୍ୟକ୍ତିମାନେ କୃପଣ ଅଟନ୍ତି । ୪୯ ।

## ବିଶଦବ୍ୟାଖ୍ୟା ।

ନିଷ୍କାମକର୍ମଯୋଗକୁ 'ବୁଦ୍ଧିଯୋଗ' କୁହାଯାଏ । କାମ୍ୟ କର୍ମରେ ଜନ୍ମମରଣରୂପ ଫଳ ଥିବାରୁ ତାହା ନିଷ୍କାମକର୍ମଯୋଗ ଅପେକ୍ଷା ଅତ୍ୟନ୍ତ ନିକୃଷ୍ଟ । ପରମାର୍ଥବିଷୟକ ବୁଦ୍ଧିଦ୍ୱାରା ସମସ୍ତ ଅନର୍ଥର ନିବୃତ୍ତି ହୁଏ, ଅତଏବ ତୁମ୍ଭେ ନିଷ୍ଠାପରତ୍ୱରେ ନିଷ୍କାମକର୍ମଯୋଗର ଅଭିଳାଷୀ ହୁଅ । ଯେଉଁମାନେ ସ୍ୱର୍ଗାଦି ଫଳକାମନା କରନ୍ତି ସେମାନେ ଜନ୍ମମରଣରୂପ ଚକ୍ରରେ ପଡି ସର୍ବଦା ଭ୍ରମଣ କରି କରି ନାନାପ୍ରକାର ଦୁଃଖଭୋଗ କରନ୍ତି । ପରମାତ୍ମାଙ୍କୁ ଜାଣି ନ ଥିବାରୁ ସେମାନେ କୃପଣ ନାମରେ ଖ୍ୟାତ ହୁଅନ୍ତି । ଶ୍ରୁତିରେ ପ୍ରମାଣ ଅଛି ଯେ "ଯୋବାଏତଦକ୍ଷରଂ ଗାର୍ଗ୍ୟବିଦିତ୍ୱାସ୍ମାଲ୍ଲୋକାତ୍ ପ୍ରୈତି ସ କୃପଣଃ ।" ଅର୍ଥାତ୍ ହେ ଗାର୍ଗି! ଯେଉଁ ବ୍ୟକ୍ତି ଇହଲୋକରେ ଜନ୍ମଗ୍ରହଣ କରି ଅକ୍ଷୟ ପରମାତ୍ମାଙ୍କୁ ନ ଜାଣି ଇହଲୋକରୁ ଲୋକାନ୍ତରକୁ ଗମନ କରେ ସେ କୃପଣ ।

କୃପଣ ବ୍ୟକ୍ତି ନାନାପ୍ରକାର କଷ୍ଟରେ ଅର୍ଥ ଉପାର୍ଜନ କରେ ସତ, ମାତ୍ର ଆପଣାର ସୁଖପାଇଁ ଗୋଟିଏ ପଇସା ସୁଦ୍ଧା ଖର୍ଚ୍ଚ କରି ପାରେ ନାହିଁ । ସେହିପରି ଫଳକାମୀ ବ୍ୟକ୍ତି ନାନାପ୍ରକାର କଷ୍ଟସାଧ୍ୟ କର୍ମ କରି ସ୍ୱର୍ଗାଦି ଫଳ ପାଏ ସତ, ମାତ୍ର ପ୍ରକୃତ ସୁଖ (ବ୍ରହ୍ମାନନ୍ଦ-ସୁଖ) ପାଇବାକୁ ସାମାନ୍ୟ ସ୍ୱର୍ଗାଦି ଫଳକାମନା ଛାଡି ପାରେ ନାହିଁ । ଏଥିପାଇଁ ଭଗବାନ୍ ଫଳକାମୀ ପୁରୁଷମାନଙ୍କୁ କୃପଣ ବୋଲି କହିଅଛନ୍ତି । ୪୯ ।

## ଶ୍ଳୋକଃ ।

ବୁଦ୍ଧିଯୁକ୍ତୋ ଜହାତୀହ, ଉଭେ ସୁକୃତଦୁଷ୍କୃତେ ।
ତସ୍ମାତ୍ ଯୋଗାୟ ଯୁଜ୍ୟସ୍ୱ, ଯୋଗଃ କର୍ମସୁ କୌଶଳଂ । ୫୦ ।

## ଅନ୍ୱୟଃ ।

ବୁଦ୍ଧିଯୁକ୍ତଃ ଇହ ଉଭେ ସୁକୃତଦୁଷ୍କୃତେ ଜହାତି ତସ୍ମାତ୍ ଯୋଗାୟ ଯୁଜ୍ୟସ୍ୱ । କର୍ମସୁ କୌଶଳଂ ଯୋଗଃ । ୫୦ ।

## ଟୀକା ।

ବୁଦ୍ଧିଯୋଗଯୁକ୍ତସ୍ୟ ଶ୍ରେଷ୍ଠତ୍ୱମାହ । ବୁଦ୍ଧିଯୁକ୍ତ ଇତି । ସୁକୃତଂ ସ୍ୱର୍ଗାଦି ପ୍ରାପକଂ, ଦୁଷ୍କୃତଂ ନରକାଦିପ୍ରାପକଂ ତେ ଉଭେ ଇହୈବ ଜନ୍ମନି ପରମେଶ୍ୱରପ୍ରସାଦେନ ତ୍ୟଜତି । ତସ୍ମାତ୍ତଦର୍ଥାୟ କର୍ମଯୋଗାୟ ଯୁଜ୍ୟସ୍ୱ-ଘଟସ୍ୱ ଯତଃ କର୍ମସୁ ଯତ୍କୌଶଳଂ ବନ୍ଧକାନାମପି ତେଷାମୀଶ୍ୱରାରାଧନେନ ମୋକ୍ଷପରତ୍ୱସମ୍ପାଦକଚାତୁର୍ଯ୍ୟଂ ସ ଏବ ଯୋଗଃ । ୫୦ ।

Digitized by PPRACHIN, SOA

### ପଦବ୍ୟାଖ୍ୟା ।

ବୁଦ୍ଧିଯୁକ୍ତଃ—ନିଶ୍ଚୟାତ୍ମକ ବୁଦ୍ଧିମାନ୍ ଅର୍ଥାତ୍ ଏକାଗ୍ରଚିତ୍ତ, ଜହାତି—ତ୍ୟାଗ କରନ୍ତି, ଇହ—ଏହି ଜନ୍ମରେ, ଉଭେ—ଦୁହିଁଙ୍କୁ, ସୁକୃତଦୁଷ୍କୃତେ—ପୁଣ୍ୟ ଓ ପାପ, ତସ୍ମାତ୍—ସେହି ହେତୁରୁ, ଯୋଗାୟ—ଯୋଗ କରିବାକୁ, ଯୁଜ୍ୟସ୍ୱ—ଯତ୍ନବାନ୍ ହୁଅ, ଯୋଗଃ—ଯୋଗ ବୋଲିଏ, କର୍ମସୁ କୌଶଳଂ—ଜନ୍ମମରଣର ହେତୁ ଭୂତ କର୍ମକୁ ମୋକ୍ଷର ଉପାୟ କରି ନେବା ଚତୁରତା । ୫୦ ।

### ଅନୁବାଦ ।

ନିଶ୍ଚୟାତ୍ମିକା ବୁଦ୍ଧିଯୁକ୍ତ ବ୍ୟକ୍ତି ଏହି ଜନ୍ମରେ ପାପ ଓ ପୁଣ୍ୟ ଦୁହିଙ୍କି ତ୍ୟାଗ କରନ୍ତି । ସେହି-ହେତୁରୁ ତୁମ୍ଭେ ଯୋଗ କରିବାକୁ ଯତ୍ନବାନ୍ ହୁଅ । କର୍ମକୁ ମୋକ୍ଷସାଧନର ଉପାୟ-ସ୍ୱରୂପ କରି ନେବା ଚତୁରତାକୁ ଯୋଗ ବୋଲାଯାଏ । ୫୦ ।

### ବିଶଦବ୍ୟାଖ୍ୟା ।

ସୁକୃତଦ୍ୱାରା ଲୋକ ସ୍ୱର୍ଗାଦି ପ୍ରାପ୍ତ ହୁଏ ଓ ଦୁଷ୍କୃତଦ୍ୱାରା ନରକଗାମୀ ହୁଏ । ମାତ୍ର ସୁଖ ଓ ଦୁଃଖରେ ବା ପୁଣ୍ୟ ଓ ପାପରେ ସମତାରୂପ ବୁଦ୍ଧିଯୁକ୍ତ ବ୍ୟକ୍ତି ଏହି ଜନ୍ମରେ ସେହି ଉଭୟକୁ ତ୍ୟାଗ କରନ୍ତି । କର୍ମ ସବୁ ସକାମ ହେଲେ ସ୍ୱର୍ଗାଦି ପ୍ରାପ୍ତିରୂପ ସଂସାର ବନ୍ଧନର ହେତୁ ହୁଏ ସତ, ମାତ୍ର ସେହି କର୍ମ ନିଷ୍କାମ ହେଲେ ମୋକ୍ଷର ସହାୟତା କରେ । କର୍ମକୁ ନିଷ୍କାମଭାବରେ ସମ୍ପନ୍ନ କରି ମୋକ୍ଷର ଅନୁକୂଳ କରିନେବା କୌଶଳକୁ ଯୋଗ ବୋଲାଯାଏ ତୁମ୍ଭେ ସେହି ଯୋଗ କରିବା ନିମିତ୍ତ ଯତ୍ନବାନ୍ ହୁଅ ଅର୍ଥାତ୍ ନିଷ୍କାମଭାବରେ କର୍ମ କର । ୫୦ ।

### ଶ୍ଳୋକଃ ।

କର୍ମଜଂ ବୁଦ୍ଧିଯୁକ୍ତା ହି ଫଳଂ ତ୍ୟକ୍ତ୍ୱା ମନୀଷିଣଃ ।
ଜନ୍ମବନ୍ଧବିନିର୍ମୁକ୍ତାଃ, ପଦଂ ଗଚ୍ଛନ୍ତ୍ୟନାମୟଂ । ୫୧ ।

### ଅନ୍ୱୟଃ ।

ବୁଦ୍ଧିଯୁକ୍ତାଃ ମନୀଷିଣଃ ହି କର୍ମଜଂ ଫଳଂ ତ୍ୟକ୍ତ୍ୱା ଜନ୍ମବନ୍ଧ ବିନିର୍ମୁକ୍ତାଃ (ସନ୍ତଃ) ଅନାମୟଂ ପଦଂ ଗଚ୍ଛନ୍ତି । ୫୧ ।

### ଟୀକା ।

କର୍ମଣାଂ ମୋକ୍ଷସାଧନତ୍ୱ ପ୍ରକାରମାହ । କର୍ମଜମିତି । କର୍ମଜଂ ଫଳଂ ତ୍ୟକ୍ତ୍ୱା କେବଳ ମୀଶ୍ୱରାରାଧନାର୍ଥଂ କର୍ମକୁର୍ବାଣାଃ ମନୀଷିଣୋ ଜ୍ଞାନିନୋଭୂତ୍ୱା ଜନ୍ମରୂପେଣ ବନ୍ଧେନ ବିନିର୍ମୁକ୍ତାଃ ସନ୍ତୋଽନାମୟଂ ସର୍ବୋପଦ୍ରବରହିତଂ ବିଷ୍ଣୋଃ ପଦଂ ମୋକ୍ଷାଖ୍ୟଂ ଗଚ୍ଛନ୍ତି । ୫୧ ।

### ପଦବ୍ୟାଖ୍ୟା ।

କର୍ମଜଂ—କର୍ମରୁ ଉତ୍ପନ୍ନ, ବୁଦ୍ଧିଯୁକ୍ତାଃ—ନିଷ୍କାମ ବୁଦ୍ଧିଯୁକ୍ତ, ହି—ନିଶ୍ଚୟ, ଫଳଂ—ଫଳକୁ, ତ୍ୟକ୍ତ୍ୱା—ତ୍ୟାଗ କରି, ମନୀଷିଣଃ—ଜ୍ଞାନିଲୋକମାନେ, ଜନ୍ମବନ୍ଧବିନିର୍ମୁକ୍ତାଃ—ଜନ୍ମବନ୍ଧନରୁ ସମ୍ପୂର୍ଣ୍ଣରୂପେ ମୁକ୍ତ ହୋଇ, ପଦଂ—ମୋକ୍ଷପଦକୁ, ଗଚ୍ଛନ୍ତି—ପ୍ରାପ୍ତ ହୁଅନ୍ତି, ଅନାମୟଂ—ସବୁ ପ୍ରକାର ଉପଦ୍ରବ ରହିତ । ୫୧ ।

### ଅନୁବାଦ ।

ଶୁଦ୍ଧବୁଦ୍ଧିଯୁକ୍ତ ଜ୍ଞାନିମାନେ କର୍ମଜନିତ ଫଳ ତ୍ୟାଗ କରି ଜନ୍ମବନ୍ଧନରୁ ସମ୍ପୂର୍ଣ୍ଣରୂପେ ମୁକ୍ତ ହୋଇ ଉପଦ୍ରବଶୂନ୍ୟ ମୁକ୍ତି ପଦକୁ ପ୍ରାପ୍ତ ହୁଅନ୍ତି । ୫୧ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

କର୍ମଫଳ କେବଳ ଜନ୍ମବନ୍ଧନର ହେତୁ । ଶୁଦ୍ଧବୁଦ୍ଧି ବ୍ୟକ୍ତି ସେହି କର୍ମଫଳ ତ୍ୟାଗ କରିବାରୁ ଅର୍ଥାତ୍ କେବଳ ଈଶ୍ୱର ଆରାଧନା ନିମିତ୍ତ କର୍ମ କରିବାରୁ ଜନ୍ମବନ୍ଧନରୁ ମୁକ୍ତ ହୋଇ ଦୁଃଖଶୋକାଦି ଉପଦ୍ରବଶୂନ୍ୟ ମୋକ୍ଷପଦକୁ ପ୍ରାପ୍ତ ହୁଅନ୍ତି । ସେହି ପଦକୁ ବିଷ୍ଣୁଙ୍କର ପରମପଦ ବୋଲି ଶାସ୍ତ୍ରକାରମାନେ କହନ୍ତି । ୫୦ ।

ଶ୍ଲୋକଃ ।

* ଯଦା ତେ ମୋହକଲିଲଂ, ବୁଦ୍ଧିର୍ବ୍ୟତିତରିଷ୍ୟତି ।

ତଦା ଗନ୍ତାସି ନିର୍ବେଦଂ, ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ । ୫୨ ।

ଅନ୍ୱୟଃ ।

ଯଦା ତେ ବୁଦ୍ଧିଃ ମୋହକଲିଲଂ ବ୍ୟତିତରିଷ୍ୟତି ତଦା ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ ନିର୍ବେଦଂ ଗନ୍ତାସି । ୫୨ ।

ଟୀକା ।

କଦାହଂ ତତ୍ପଦଂ ପ୍ରାପ୍ସ୍ୟାମୀତ୍ୟପେକ୍ଷାୟାମାହ । ଯଦେତି ଦ୍ୱାଭ୍ୟାଂ । ମୋହୋଦେହାଦିଷ୍ୱାତ୍ମବୁଦ୍ଧିଃ ତଦେବ କଲିଲଂ ଗହନଂ, କଲିଲଂ ଗହନଂ ବିଦୁଃ ଇତ୍ୟଭିଧାନକୋଷଦ୍ଧୃତେଃ । ତତଶ୍ଚାୟମର୍ଥଃ, ଏବଂ ପରମେଶ୍ୱରାରାଧନେ କ୍ରିୟମାଣେ ଯଦା ତତ୍ପ୍ରସାଦେନ ତବ ବୁଦ୍ଧିର୍ଦେହାଭିମାନଲକ୍ଷଣଂ ମୋହମୟଂ ଗହନଂ ଦୁର୍ଗଂ ବିଶେଷେଣାତିତରିଷ୍ୟତି ତଦା ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚାର୍ଥସ୍ୟ ନିର୍ବେଦଂ ବୈରାଗ୍ୟଂ ଗନ୍ତାସି ପ୍ରାପ୍ସ୍ୟସି, ତୟୋରନୁପାଦେୟତ୍ୱେନ ଜିଜ୍ଞାସାଂ ନ କରିଷ୍ୟସୀତ୍ୟର୍ଥଃ । ୫୨ ।

ପଦବ୍ୟାଖ୍ୟା ।

ଯଦା—ଯେତେବେଳେ, ତେ—ତୁମ୍ଭର, ମୋହକଲିଲଂ—ମୋହରୂପ ଦୁର୍ଗ ଅର୍ଥାତ୍ ଗଡକୁ, ବୁଦ୍ଧିଃ—ମତି, ବ୍ୟତିତରିଷ୍ୟତି—ପାର ହେବ, ତଦା—ସେହି ସମୟରେ, ଗନ୍ତାସି—ପ୍ରାପ୍ତ ହେବ, ନିର୍ବେଦଂ—ବୈରାଗ୍ୟକୁ, ଶ୍ରୋତବ୍ୟସ୍ୟ—ଯାହା ଶୁଣିବାକୁ ଇଚ୍ଛା କରୁଅଛ, ଶ୍ରୁତସ୍ୟ ଚ—ଆଉ ଯାହା ଶୁଣିଅଛ ତାହାର । ୫୨ ।

ଅନୁବାଦ ।

ଯେତେବେଳେ ତୁମ୍ଭର ବୁଦ୍ଧି ମୋହରୂପ ଦୁର୍ଗକୁ ପାର ହେବ, ତେତେବେଳେ ଯାହା ଶୁଣିବାକୁ ଇଚ୍ଛା କରୁଅଛ ଓ ଯାହା ଶୁଣିଅଛ ସେଥିରୁ ତୁମ୍ଭେ ବୈରାଗ୍ୟପ୍ରାପ୍ତ ହେବ । ୫୨ ।

ବିଶଦବ୍ୟାଖ୍ୟା ।

ଏହିପରି ନିଷ୍କାମକର୍ମ କଲେ କେତେଦିନେ ବିଷ୍ଣୁଙ୍କର ପରମପଦ ମତେ ମିଳିବ ? ଅର୍ଜ୍ଜୁନଙ୍କର ଏହି ପ୍ରକାର ଅଭିପ୍ରାୟ ଜାଣି ଶ୍ରୀଭଗବାନ୍ କହିଲେ, ଯେ କେତେଦିନେ ବା କେଉଁଦିନ ମିଳିବ ତାହାର ନିଶ୍ଚୟ ନାହିଁ । ତେବେ ନିଷ୍କାମକର୍ମ କରୁ କରୁ ଯେତେବେଳେ ତୁମ୍ଭର 'ମୁଁ ଓ ମୋହର' ଇତ୍ୟାଦି ଅଭିମାନରୂପ ଅବିବେକ ଅନ୍ଧକାର ଦୂର ହେବ ଅର୍ଥାତ୍ ଯେତେବେଳେ ତୁମ୍ଭେ ରଜଃ ଓ ତମୋଗୁଣକୁ ସମ୍ପୂର୍ଣ୍ଣରୂପେ ଛାଡି ଶୁଦ୍ଧ ସତ୍ତ୍ୱଭାବକୁ ପ୍ରାପ୍ତ ହେବ ତେତେବେଳେ ପୂର୍ବରୁ ଶୁଣିଥିବା ଓ ବର୍ତ୍ତମାନ ଶୁଣିବାକୁ ଇଚ୍ଛା କରୁଥିବା ସ୍ୱର୍ଗାଦି ଫଳରେ ତୁମ୍ଭର ବୈରାଗ୍ୟ ଜନ୍ମିବ ଅର୍ଥାତ୍ ସ୍ୱର୍ଗାଦି ଫଳ ଯେ ଅନିତ୍ୟ ତାହା ବୁଝି ପାରି ତହିଁରୁ ତୁମ୍ଭର ତୃଷ୍ଣା ନିବୃତ୍ତ ହେବ ଏବଂ ତାହାହେଲେ ତୁମ୍ଭେ ସେହି ପରମପଦ ପ୍ରାପ୍ତ ହେବ । ୫୨ ।

Digitized by PPRACHIN, SOA

ଶ୍ଳୋକଃ ।

ଶ୍ରୁତିବିପ୍ରତିପନ୍ନା ତେ, ଯଦା ସ୍ଥାସ୍ୟତି ନିଶ୍ଚଳା ।
ସମାଧାବଚଳା ବୁଦ୍ଧି,ସ୍ତଦା ଯୋଗମବାପ୍ସ୍ୟସି । ୫୩ ।

ଅନ୍ୱୟଃ ।

ଶ୍ରୁତିବିପ୍ରତିପନ୍ନା ତେ ବୁଦ୍ଧିଃ ଯଦା ସମାଧୌ ନିଶ୍ଚଳା ଅଚଳା ସ୍ଥାସ୍ୟତି ତଦା ଯୋଗଂ ଅବାପ୍ସ୍ୟସି । ୫୩ ।

ଟୀକା ।

ତତଶ୍ଚ ଶ୍ରୁତୀତି । ଶ୍ରୁତିଭିର୍ନାନାଲୌକିକ ବୈଦିକାର୍ଥ ଶ୍ରବଣୈର୍ବିପ୍ରତିପନ୍ନା ଇତଃ ପୂର୍ବଂ ବିକ୍ଷିପ୍ତା ସତୀ ତବ ବୁଦ୍ଧି-ର୍ଯଦା ସମାଧୌ ସ୍ଥାସ୍ୟତି, ସମାଧୀୟତେ ଚିତ୍ତମସ୍ମିନ୍ନିତି ସମାଧିଃ ପରମେଶ୍ୱରସ୍ତସ୍ମିନ୍ନିଶ୍ଚଳାବିଷୟାନ୍ତରୈରିତାକୃଷ୍ଟା ଅତଏ-ବାଚଳା ଅଭ୍ୟାସପାଟବେନ ତତ୍ରୈବ ସ୍ଥିରା ଚ ସତୀ ତଦା ଯୋଗଂ ଯୋଗଫଳଂ ତତ୍ତ୍ୱଜ୍ଞାନମବାପ୍ସ୍ୟସି । ୫୩ ।

ପଦବ୍ୟାଖ୍ୟା ।

ଶ୍ରୁତିବିପ୍ରତିପନ୍ନା—ବେଦରୁ ଓ ଲୋକଙ୍କଠାରୁ ଫଳପ୍ରାପ୍ତି ବିଷୟରେ ନାନାପ୍ରକାର କଥା ଶୁଣି ପୂର୍ବରୁ ବିଚଳିତ, ତେ—ତୁମ୍ଭର, ଯଦା—ଯେବେ, ସ୍ଥାସ୍ୟତି—ରହିବ, ନିଶ୍ଚଳା—ଅନ୍ୟ ପଦାର୍ଥରେ ବିଚଳିତ ନୋହି, ସମାଧୌ—ପରମେଶ୍ୱରଙ୍କଠାରେ, ଅଚଳା—ସ୍ଥିର, ବୁଦ୍ଧିଃ—ମତି, ତଦା—ସେହି ସମୟରେ, ଯୋଗଂ—ଯୋଗଫଳକୁ ଅର୍ଥାତ୍ ତତ୍ତ୍ୱଜ୍ଞାନକୁ, ଅବାପ୍ସ୍ୟସି—ପ୍ରାପ୍ତ ହେବ । ୫୩ ।

ଅନୁବାଦ ।

ବେଦୋକ୍ତ ଫଳରେ ଭ୍ରମୁଥିବା ତୁମ୍ଭର ବୁଦ୍ଧି ଯେତେବେଳେ ଏକାନ୍ତ ହୋଇ ସମା-ଧିରେ ସ୍ଥିର ହେବ, ସେତେବେଳେ ତୁମ୍ଭେ ଯୋଗଫଳ ପ୍ରାପ୍ତ ହେବ । ୫୩ ।

ବିଶଦବ୍ୟାଖ୍ୟା ।

ତୁମ୍ଭର ଯେଉଁ ବୁଦ୍ଧି ବେଦରୁ ଓ ଲୋକଙ୍କଠାରୁ ନାନାପ୍ରକାର ଫଳ ପାଇବାର କଥା ଶୁଣି ପୂର୍ବରୁ ବିକ୍ଷିପ୍ତ—ବିଚଳିତ ହୋଇଅଛି, ସେହି ବୁଦ୍ଧି ଯେତେବେଳେ 'ନିଶ୍ଚଳା' ଅର୍ଥାତ୍ ଅନ୍ୟ ବିଷୟରେ ଆସକ୍ତ ନ ହୋଇ ଏକାଗ୍ର ହେବ ଏବଂ ସମାଧିରେ—(ଯାହାଙ୍କଠାରେ ଚିତ୍ତ ସ୍ଥିର କରାଯାଏ) ଅର୍ଥାତ୍ ପରମେଶ୍ୱରଙ୍କଠାରେ 'ଅଚଳା'— ଅର୍ଥାତ୍ ସ୍ଥିର - ଗାଢ଼ନିଦ୍ରା ବା ମୂର୍ଚ୍ଛା ସମସ୍ତ ପରି ନିସ୍ତବ୍ଧ ହେବ, ସେତେବେଳେ ତୁମ୍ଭେ ଯୋଗଫଳ ଅର୍ଥାତ୍ ଆତ୍ମଜ୍ଞାନ ଲାଭ କରିବ । ଆତ୍ମଜ୍ଞାନ ଲାଭ ହେଲେ ତୁମ୍ଭର ପରମପଦପ୍ରାପ୍ତି ହେବ । ୫୩ ।

ଶ୍ଳୋକଃ ।

ଅର୍ଜ୍ଜୁନଉବାଚ ।—ସ୍ଥିତପ୍ରଜ୍ଞସ୍ୟ କା ଭାଷା, ସମାଧିସ୍ଥସ୍ୟ କେଶବ ।
ସ୍ଥିତଧୀଃ କିଂ ପ୍ରଭାଷେତ, କିମାସୀତ ବ୍ରଜେତ କିଂ । ୫୪ ।

ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ ।—ହେ କେଶବ ! ସମାଧିସ୍ଥସ୍ୟ ସ୍ଥିତପ୍ରଜ୍ଞସ୍ୟ କା ଭାଷା, ସ୍ଥିତଧୀଃ କିଂ ପ୍ରଭାଷେତ, କିଂ ଆସୀତ, କିଂ ବ୍ରଜେତ । ୫୪ ।

Digitized by PPRACHIN, SOA

ଟୀକା ।

ପୂର୍ବଶ୍ଲୋକୋକ୍ତସ୍ୟାତ୍ମତତ୍ତ୍ୱଜ୍ଞସ୍ୟ ଲକ୍ଷଣଂ ଜିଜ୍ଞାସୁରର୍ଜ୍ଜୁନ ଉବାଚ । ସ୍ଥିତପ୍ରଜ୍ଞସ୍ୟ କା ଭାଷେତି । ହେ କେଶବ, ସମାଧୌ ସ୍ଥିତସ୍ୟ ଅତଏବ ସ୍ଥିରା ନିଶ୍ଚଳା ପ୍ରଜ୍ଞା ବୁଦ୍ଧିର୍ଯସ୍ୟ ତସ୍ୟ କା ଭାଷା, ଭାଷ୍ୟତେ ଅନୟେତି ଭାଷା ଲକ୍ଷଣମିତି ଯାବତ୍ ସ କେନ ଲକ୍ଷଣେନ ସ୍ଥିତପ୍ରଜ୍ଞ ଉଚ୍ୟତେ ଇତ୍ୟର୍ଥଃ; ତଥା ସ୍ଥିତଧୀଃ କିଂ କଥଂ ଭାଷଣମାସନଂ ବ୍ରଜନଞ୍ଚ ଲକ୍ଷଣମିତ୍ୟର୍ଥଃ । ୫୪ ।

ପଦବ୍ୟାଖ୍ୟା ।

ସ୍ଥିତପ୍ରଜ୍ଞସ୍ୟ—ଆତ୍ମଜ୍ଞାନରେ ସ୍ଥିରବୁଦ୍ଧି ବ୍ୟକ୍ତିଙ୍କର, କା ଭାଷା—ଲକ୍ଷଣ କଣ?, ସମାଧିସ୍ଥସ୍ୟ—ପରମେଶ୍ୱରଙ୍କ-ଠାରେ ଏକାଗ୍ରବୁଦ୍ଧି ବ୍ୟକ୍ତିଙ୍କର, କେଶବ—ହେ ଶ୍ରୀକୃଷ୍ଣ!, ସ୍ଥିତଧୀଃ—ସ୍ଥିରବୁଦ୍ଧି, କିଂ ପ୍ରଭାଷେତ—କିପ୍ରକାର କଥା କହନ୍ତି, କିମାସୀତ—କିପ୍ରକାରେ ରହନ୍ତି, ବ୍ରଜେତ କିଂ—କିପ୍ରକାର ଗତି କରନ୍ତି । ଅର୍ଥାତ୍ କିପରି ବିଷୟରେ ଲିପ୍ତ ଥାନ୍ତି । ୫୪ ।

ଅନୁବାଦ ।

ଅର୍ଜ୍ଜୁନ କହିଲେ, ହେ କେଶବ! ଯାହାଙ୍କର ବୁଦ୍ଧି ସମାଧିରେ ନିଶ୍ଚଳ ଅଛି, ସେହି ସ୍ଥିରବୁଦ୍ଧି ବ୍ୟକ୍ତିଙ୍କର ଲକ୍ଷଣ କଣ? ଓ (ସମାଧିରୁ ଉତ୍ଥିତ) ସ୍ଥିରବୁଦ୍ଧି ବ୍ୟକ୍ତି କିପ୍ରକାର କଥା କହନ୍ତି ଓ କିପରି ରହନ୍ତି ଏବଂ କିପରି ବିଷୟରେ ଲିପ୍ତ ଥାନ୍ତି? । ୫୪ ।

ବିଶଦବ୍ୟାଖ୍ୟା ।

ସମାଧିରେ ଯାହାଙ୍କର ବୁଦ୍ଧି ସ୍ଥିର ହୋଇଅଛି ତାହାଙ୍କୁ ସ୍ଥିତପ୍ରଜ୍ଞ ବା ସ୍ଥିରବୁଦ୍ଧି କୁହାଯାଏ । ଅର୍ଜ୍ଜୁନ ପଚାରିଲେ, ହେ କେଶବ! ଆପଣ କହିଲେ, ଯେ ସମାଧିରେ ବୁଦ୍ଧି ସ୍ଥିର ହେଲେ ପରମପଦ ଲାଭ ହୁଏ; ମାତ୍ର ସମାଧିରେ ସ୍ଥିରବୁଦ୍ଧି ବ୍ୟକ୍ତିର ଲକ୍ଷଣ କଣ? ଅର୍ଥାତ୍ ସାଧାରଣ ଲୋକଙ୍କ ସହିତ ସ୍ଥିରବୁଦ୍ଧି ଲୋକଙ୍କର କି ପ୍ରଭେଦ? ପୁଣି ସମାଧିରୁ ଉତ୍ଥିତ ହେଲେ ସେହି ସ୍ଥିରବୁଦ୍ଧି ବ୍ୟକ୍ତି କିପରି କଥାବାର୍ତ୍ତା କରନ୍ତି? ଅର୍ଥାତ୍ ସେ ବ୍ୟକ୍ତି ସ୍ତୁତି ବା ନିନ୍ଦାରେ ସାଧାରଣ ବ୍ୟକ୍ତିଙ୍କ ପରି ହର୍ଷ ବା ବିଷାଦଯୁକ୍ତ ହୋଇ କଥାବାର୍ତ୍ତା କରନ୍ତି ନା ଅନ୍ୟ କୌଣସି ପ୍ରକାରେ କହନ୍ତି? ସେ କିପରି ରହନ୍ତି ଅର୍ଥାତ୍ ଚିତ୍ତଶାନ୍ତି ପାଇଁ ବାହ୍ୟ ଇନ୍ଦ୍ରିୟାଦିକୁ କିପରି ସଂଯମିତ କରନ୍ତି ଏବଂ କିପରି ଗତି କରନ୍ତି ଅର୍ଥାତ୍ କିପ୍ରକାର ବିଷୟରେ ଲିପ୍ତ ଥାନ୍ତି? । ସର୍ବାନ୍ତର୍ଯାମୀ ଭିନ୍ନ ଏପ୍ରକାର ପ୍ରଶ୍ନର ଉତ୍ତର ଦେବା ସହଜ ନୁହଇ ଏଥିପାଇଁ ଅର୍ଜ୍ଜୁନ ଏ ଶ୍ଳୋକରେ ଶ୍ରୀଭଗବାନଙ୍କୁ 'କେଶବ' ନାମରେ ସମ୍ବୋଧନ କରିଅଛନ୍ତି । କ = ବ୍ରହ୍ମା, ଅ = ବିଷ୍ଣୁ, ଓ ଈଶ = ଶିବ, ବ = ଧ୍ୟାନଯୋଗ୍ୟ ଅର୍ଥାତ୍ ଯେ ସର୍ବଦେବ ନମସ୍କରଣୀୟ ଅଥବା କ = ବାୟୁ, ଈଶ = ଶ୍ରେଷ୍ଠ, ଏରୂପେ କେଶ = ପ୍ରାଣବାୟୁ; ବ = ପ୍ରାପ୍ତ ଅର୍ଥାତ୍ ଯେ ସମସ୍ତଙ୍କର ପ୍ରାଣବାୟୁରୂପରେ ବିଦ୍ୟମାନ ଅଛନ୍ତି, ସୁତରାଂ ସର୍ବାନ୍ତର୍ଯାମୀ । ୫୪ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—ପ୍ରଜହାତି ଯଦା କାମାନ୍, ସର୍ବାନ୍ ପାର୍ଥ ମନୋଗତାନ୍ ।
ଆତ୍ମନ୍ୟେବାତ୍ମନା ତୁଷ୍ଟଃ, ସ୍ଥିତପ୍ରଜ୍ଞସ୍ତଦୋଚ୍ୟତେ । ୫୫ ।

Digitized by PPRACHIN, SOA

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ହେ ପାର୍ଥ! ଯଦା ଆତ୍ମନ ଏବ ଆତ୍ମନା ତୁଷ୍ଟଃ (ସନ୍) ମନୋଗତାନ୍ ସର୍ବାନ୍ କାମାନ୍ ପ୍ରଜହାତି ତଦା ସ୍ଥିତପ୍ରଜ୍ଞଃ ଉଚ୍ୟତେ । ୫୫ ।

ଟୀକା ।

ଅତଃ ଯାନ ସାଧକସ୍ୟ ଜ୍ଞାନସାଧନାନ ତାନ୍ୟେବ ସ୍ୱାଭାବିକାନ ସିଦ୍ଧସ୍ୟ ଲକ୍ଷଣାନ, ଅତଃ ସିଦ୍ଧସ୍ୟ ଲକ୍ଷ୍ୟସ୍ୟ ଲକ୍ଷଣାନ କଥୟନ୍ନେବାନ୍ତରଙ୍ଗାନ ଜ୍ଞାନସାଧନାନ୍ୟାହ ଯାବଦଧ୍ୟାୟ ସମାପ୍ତି । ତତ୍ର ପ୍ରଥମ ପ୍ରଶ୍ନସ୍ୟୋତ୍ତରମାହ ପ୍ରଜହାତୀତି ଦ୍ୱାଭ୍ୟାଂ । ମନସି ସ୍ଥିତାନ୍ କାମାନ୍ ଯଦା ପ୍ରକର୍ଷେଣ ଜହାତି, ତ୍ୟାଗେ ହେତୁମାହ ଆତ୍ମନୀତି । ଆତ୍ମନ୍ୟେବ ସ୍ୱସ୍ମିନ୍ନେବ ପରମାନନ୍ଦସ୍ୱରୂପ ଆତ୍ମନା ସ୍ୱୟମେବ ତୁଷ୍ଟଃ ଇତ୍ୟାତ୍ମାରାମଃ ସନ୍ ଯଦା କ୍ଷୁଦ୍ରବିଷୟାଭିଲାଷାଂସ୍ତ୍ୟଜତି ତଦା ତେନ ଲକ୍ଷଣେନ ମୁନିଃ ସ୍ଥିତପ୍ରଜ୍ଞ ଉଚ୍ୟତେ । ୫୫ ।

ପଦବ୍ୟାଖ୍ୟା ।

ପ୍ରଜହାତି—ସମ୍ପୂର୍ଣ୍ଣରୂପେ ତ୍ୟାଗ କରନ୍ତି, ଯଦା—ଯେତେବେଳେ, କାମାନ୍—କାମନାମାନଙ୍କୁ, ସର୍ବାନ୍—ସମସ୍ତ, ପାର୍ଥ—ହେ ଅର୍ଜ୍ଜୁନ !, ମନୋଗତାନ୍—ମନରେ ଥିବା, ଆତ୍ମନ ଏବ—ଆପଣା ଆତ୍ମାରେ କେବଳ, ଆତ୍ମନା—ପରମାନନ୍ଦ-ଦ୍ୱାରା, ତୁଷ୍ଟଃ—ସନ୍ତୁଷ୍ଟ ହୁଅନ୍ତି, ସ୍ଥିତପ୍ରଜ୍ଞଃ—ସ୍ଥିରବୁଦ୍ଧି, ତଦା—ସେତେବେଳେ, ଉଚ୍ୟତେ—କଥିତ ହୁଅନ୍ତି । ୫୫ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ଯେତେବେଳେ ପ୍ରାଣୀ ମନୋଗତ ସମସ୍ତ କାମନା ସମ୍ପୂର୍ଣ୍ଣରୂପେ ତ୍ୟାଗ କରନ୍ତି ଓ ପରମାନନ୍ଦଦ୍ୱାରା ଆପଣା ଆତ୍ମାରେ ତୃପ୍ତ ହୁଅନ୍ତି, ସେତେବେଳେ ତାହାଙ୍କୁ ସ୍ଥିତପ୍ରଜ୍ଞ ବୋଲାଯାଏ । ୫୫ ।

ବିଶଦବ୍ୟାଖ୍ୟା ।

କାମନା ଓ ସଙ୍କଳ୍ପ ଏ ସବୁ ମନର ଧର୍ମ, ଆତ୍ମାର ଧର୍ମ ନୁହେ । ଏ ସବୁ ଯେବେ ଆତ୍ମାର ଧର୍ମ ହୋଇଥାନ୍ତା ତେବେ ଆତ୍ମା ନିତ୍ୟ ବୋଲି ତାହାର ଏ ଧର୍ମଗୁଡ଼ିକ ନିତ୍ୟ ହୋଇଥାନ୍ତା । ଯେପରି ଅଗ୍ନି ଥିଲେ ତାହାର ଉତ୍ତାପ ଥାଏ—ଅଗ୍ନି ଥିବା ପର୍ଯ୍ୟନ୍ତ ତାହାର ଉତ୍ତାପ ନ ଥିବା ଅସମ୍ଭବ ହୁଏ, ସେହିପରି ଆତ୍ମା ଥାଉଁ ଥାଉଁ ତାହାର କାମନା ଆଦି ଧର୍ମବିନାଶ ହେବା ଅସମ୍ଭବ ହୁଅନ୍ତା । ଅତଏବ ପ୍ରମାଣିତ ହେଲା, ଯେ ସଙ୍କଳ୍ପ ଓ କାମନା ଆତ୍ମାର ଧର୍ମ ନୁହେ—ମନର ଧର୍ମ । ଏହାଦ୍ୱାରା ନ୍ୟାୟଶାସ୍ତ୍ରରେ ବୁଦ୍ଧି, ସୁଖ, ଦୁଃଖ, ଇଚ୍ଛା, ଦ୍ୱେଷ, ପ୍ରଯତ୍ନ, ଧର୍ମ ଓ ଅଧର୍ମ ଏହି ଆଠଟି ଆତ୍ମାର ଧର୍ମ ବୋଲି ଯାହା ଲେଖା ଅଛି ତାହା ମଧ୍ୟ ଖଣ୍ଡିତ ହେଲା ।

ସମାଧି କାଳରେ ମନ ଲୟପ୍ରାପ୍ତ ହୁଏ, ସେହି ସଙ୍ଗେ ସଙ୍ଗେ କାମନା ସଙ୍କଳ୍ପ ପ୍ରଭୃତି ମନର ଧର୍ମ ଆପଣାଛଏଁ ଲୁପ୍ତ ହୁଏ ।

ସମାଧିସ୍ଥ ବ୍ୟକ୍ତିଙ୍କର ମୁଖ ପ୍ରସନ୍ନ ବୋଧ ହୁଏ, ତାହାଙ୍କ ଅନ୍ତଃକରଣରେ ସନ୍ତୋଷ ନ ଥିଲେ ଏପରି ପ୍ରସନ୍ନଭାବ ହୁଅନ୍ତା ନାହିଁ, ଯଦି ସନ୍ତୋଷ ଥିବାର ପ୍ରମାଣ ହେଲା ତେବେ ମନୋବୃତ୍ତିର ଲୟପାଇବା ଠିକ ହେଲା କିପରି ? ଏହି ଆଶଙ୍କା ନିବାରଣ ପାଇଁ ଶ୍ରୀଭଗବାନ୍ କହିଲେ, ଯେ ସମାଧିସ୍ଥ ପୁରୁଷ ପରମାନନ୍ଦସ୍ୱରୂପ ସ୍ୱପ୍ରକାଶ ଚୈତନ୍ୟରୂପ ଆତ୍ମାଦ୍ୱାରା ପ୍ରସନ୍ନ ଦେଖାଯାନ୍ତି, ମନୋବୃତ୍ତିର ବଶୀଭୂତ କୌଣସି ପଦାର୍ଥଦ୍ୱାରା ସନ୍ତୋଷଲାଭ କରନ୍ତି

Digitized by PPRACHIN, SOA

ନାହିଁ । ଫଳକଥା ଏହି କି କାମନାର ସମ୍ପୂର୍ଣ୍ଣ ଅଭାବ ଓ ଆତ୍ମାନନ୍ଦ ଉପଭୋଗ ଏ ଦୁଇଟି ସମାଧିସ୍ଥ ସ୍ଥିରବୁଦ୍ଧି ପୁରୁଷର ଲକ୍ଷଣ ଅଟେ । ୫୫ ।

### ଶ୍ଲୋକଃ ।

* ଦୁଃଖେଷ୍ୱନୁଦ୍ୱିଗ୍ନମନାଃ, ସୁଖେଷୁ ବିଗତସ୍ପୃହଃ ।
ବୀତରାଗଭୟକ୍ରୋଧଃ, ସ୍ଥିତଧୀର୍ମୁନିରୁଚ୍ୟତେ । ୫୬ ।

### ଅନ୍ୱୟଃ ।

ଦୁଃଖେଷୁ ଅନୁଦ୍ୱିଗ୍ନମନାଃ ସୁଖେଷୁ ବିଗତସ୍ପୃହଃ ବୀତରାଗ-ଭୟ-କ୍ରୋଧଃ ମୁନିଃ ସ୍ଥିତଧୀଃ ଉଚ୍ୟତେ । ୫୬ ।

### ଟୀକା ।

କିଞ୍ଚ ଦୁଃଖେଷ୍ୱିତି । ଦୁଃଖେଷୁ ପ୍ରାପ୍ତେଷୁ ଅପି ଅନୁଦ୍ୱିଗ୍ନମକ୍ଷୁଭିତଂ ମନୋ ଯସ୍ୟ ସଃ, ସୁଖେଷୁ ବିଗତା ସ୍ପୃହା ଯସ୍ୟ ସଃ ତତ୍ର ହେତୁର୍ବୀତାଃ ଅପଗତା ରାଗଭୟକ୍ରୋଧାଃ ଯସ୍ମାତ୍, ତତ୍ର ରାଗଃ ପ୍ରୀତିଃ, ସ ମୁନିଃ ସ୍ଥିତଧୀରୁଚ୍ୟତେ । ୫୬ ।

### ପଦବ୍ୟାଖ୍ୟା ।

ଦୁଃଖେଷୁ—(ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ) ଦୁଃଖମାନଙ୍କରେ, ଅନୁଦ୍ୱିଗ୍ନମନାଃ—କାତର ହୁଅନ୍ତି ନାହିଁ, ସୁଖେଷୁ—ସୁଖମାନଙ୍କରେ, ବିଗତସ୍ପୃହଃ—ଇଚ୍ଛାରହିତ, ବୀତରାଗଭୟକ୍ରୋଧଃ—ଯାହାଙ୍କର ରାଗ, (ପ୍ରୀତି) ଭୟ ( ଭୀତ ) ଓ କ୍ରୋଧ ( ଦ୍ୱେଷ ) ବୀତ ( ରହିତ ) ହୋଇଅଛି, ସ୍ଥିତଧୀଃ—ସ୍ଥିରବୁଦ୍ଧି, ମୁନିଃ—ଯେ ମନନଶୀଳ ଅର୍ଥାତ୍ ସମାଧିରୁ ଉତ୍ଥିତ, ଉଚ୍ୟତେ—କଥିତ ହୁଅନ୍ତି । ୫୬ ।

### ଅନୁବାଦ ।

ଯାହାଙ୍କ ମନ ଦୁଃଖରେ କାତର ନ ହୁଏ ଓ ଯେ ସୁଖର ଇଚ୍ଛା ନ କରନ୍ତି ଏବଂ ଯାହାଙ୍କର ସ୍ନେହ, ଭୟ ଓ କ୍ରୋଧ ବିଗତ ହୋଇଅଛି, ସେହି ମୁନିବ୍ୟକ୍ତିଙ୍କୁ ସ୍ଥିରବୁଦ୍ଧି କୁହାଯାଏ । ୫୬ ।

### ବିଶଦବ୍ୟାଖ୍ୟା ।

ପୂର୍ବଶ୍ଲୋକରେ ସମାଧିସ୍ଥ ସ୍ଥିତପ୍ରଜ୍ଞଙ୍କର ଲକ୍ଷଣ କୁହା ଯାଇଅଛି, ଏ ଶ୍ଲୋକରେ ସମାଧିରୁ ଉତ୍ଥିତ ସ୍ଥିରବୁଦ୍ଧି ବ୍ୟକ୍ତିଙ୍କର ଲକ୍ଷଣ କୁହା ଯାଉଅଛି । ଦୁଃଖ ତିନିପ୍ରକାର ; ଯଥା — ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ । ଆଧ୍ୟାତ୍ମିକ ପୁଣି ଶାରୀରିକ ଓ ମାନସିକ ଭେଦରେ ଦୁଇ ପ୍ରକାର । ଅର୍ଶ, ଜ୍ୱର, ଅଜୀର୍ଣ୍ଣ ପ୍ରଭୃତି ବ୍ୟାଧିଜନିତ ଶାରୀରିକ ପୀଡାକୁ ଓ ଶୋକ ମୋହଜନିତ ମାନସିକପୀଡାକୁ ଆଧ୍ୟାତ୍ମିକ ଦୁଃଖ କୁହାଯାଏ । ସର୍ପ, ବ୍ୟାଘ୍ର ଓ ବୃଶ୍ଚିକାଦିଜନିତ ଦୁଃଖ ଆଧିଭୌତିକ, ଆଉ ଅତିବୃଷ୍ଟି, ଅଗ୍ନି ଓ ଗ୍ରହବୈଗୁଣ୍ୟାଦିଜନିତ ଦୁଃଖ ଆଧିଦୈବିକ ନାମରେ କଥିତ ହୁଏ । ପାପିଲୋକମାନେ ଏସବୁ ସନ୍ତାପ ଭୋଗ କରନ୍ତି । ମାତ୍ର କୌଣସି ବ୍ୟକ୍ତିର ଶରୀର କେବଳ ପାପ ବା କେବଳ ପୁଣ୍ୟରେ ବିରଚିତ ହୋଇ ନାହିଁ । ମୁନି ଋଷିମାନଙ୍କର ଶରୀର ମଧ୍ୟ ପାପ ଓ ପୁଣ୍ୟ ଉଭୟ କର୍ମଫଳରୁ ଉତ୍ପନ୍ନ । କିନ୍ତୁ ସାଧାରଣ ଲୋକମାନେ ସ୍ୱ-ପ୍ରାରବ୍ଧଜନିତ ଦୁଃଖଭୋଗରେ ଯେପରି ଉଦ୍ୱିଗ୍ନ ବା ବିକଳଚିତ୍ତ ହୁଅନ୍ତି, ଯୋଗିମାନେ ସେପରି

Digitized by PPRACHIN, SOA

ନ ହୋଇ ଧୈର୍ଯ୍ୟ ଅବଲମ୍ବନ କରି ତାହା ସହ୍ୟ କରନ୍ତି । ଅଜ୍ଞାନରୁ କେବଳ ଦୁଃଖରୂପ ଭ୍ରମବୁଦ୍ଧି ଜାତ ହୁଏ । ସ୍ଥିରବୁଦ୍ଧି ବ୍ୟକ୍ତିଙ୍କର ଅଜ୍ଞାନ ବିନାଶ ହୋଇଥିବାରୁ ଦୁଃଖରୂପ ଭ୍ରମ ହେବାର ସମ୍ଭାବନା ନାହିଁ ।

ସୁଖ ମଧ୍ୟ ଆଧ୍ୟାତ୍ମିକାଦି ଭେଦରେ ତିନି ପ୍ରକାର । ତ୍ରିଗୁଣବହିର୍ଭୂତ ଓ ପଞ୍ଚଭୂତପରିଣାମର ଅଭିମାନଅଦି ଜନିତ ସୁଖକୁ ଆଧ୍ୟାତ୍ମିକ, ସ୍ତ୍ରୀ, ପୁତ୍ର ଓ ମିତ୍ରାଦିଙ୍କଠାରୁ ପ୍ରାପ୍ତ ସୁଖକୁ ଆଧିଭୌତିକ ଏବଂ ବସନ୍ତବାୟୁ ସେବନ ପ୍ରଭୃତିରୁ ପ୍ରାପ୍ତ ସୁଖକୁ ଆଧିଦୈବିକ ବୋଲାଯାଏ । ସ୍ଥିରବୁଦ୍ଧି ବ୍ୟକ୍ତି ନିଷ୍କାମ ହେତୁରୁ, କର୍ମଜନିତ ସୁଖର ଇଚ୍ଛା ତାଙ୍କର ନ ଥାଏ । ଯାହାଙ୍କର ମନ ବିଷୟରୁ ନିବୃତ୍ତ ହୋଇଅଛି ତାଙ୍କର ଆଉ କେଉଁ ପଦାର୍ଥରେ ଉପରି ରାଗ (ସ୍ନେହ) ହେବ ? ଯାହାଙ୍କର ଚିତ୍ତ ସକଳପଦାର୍ଥକୁ ଆନନ୍ଦ ବ୍ରହ୍ମରୂପରେ ଦର୍ଶନ କରୁଅଛି ତାଙ୍କର ଆଉ କାହାକୁ ଦେଖି ଭୟ ହେବ ? ଆଉ ଯେ ସମସ୍ତଙ୍କୁ ଆତ୍ମବତ୍ ମନେ କରନ୍ତି ସେ ବା କାହାଉପରି କ୍ରୋଧ ପ୍ରକାଶ କରି ପାରନ୍ତି ? ଏଥିପାଇଁ ସ୍ଥିରବୁଦ୍ଧି ବ୍ୟକ୍ତିଙ୍କର ଅନ୍ତଃକରଣରେ ରାଗ, ଭୟ ଓ କ୍ରୋଧ ସ୍ଥାନ ପ୍ରାପ୍ତ ହୁଏ ନାହିଁ, ଅର୍ଥାତ୍ ସମାଧିରୁ ଉତ୍ଥିତ ସ୍ଥିରବୁଦ୍ଧି ବ୍ୟକ୍ତିଙ୍କର ଲକ୍ଷଣ ଏହି ଯେ ସେ ଦୁଃଖରେ ଉଦ୍ୱିଗ୍ନ ହୁଅନ୍ତି ନାହିଁ କି ସୁଖ ଲୋଡନ୍ତି ନାହିଁ ଏବଂ ସ୍ନେହ, ଭୟ ଓ କ୍ରୋଧ କରନ୍ତି ନାହିଁ । ୫୬ ।

ଶ୍ଳୋକଃ ।

ଯଃ ସର୍ବତ୍ରାନଭିସ୍ନେହସ୍ତତ୍ତତ୍ପ୍ରାପ୍ୟ ଶୁଭାଶୁଭଂ ।
ନାଭିନନ୍ଦତି ନ ଦ୍ୱେଷ୍ଟି, ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୫୭ ।

ଅନ୍ୱୟଃ ।

ଯଃ ସର୍ବତ୍ର ଅନଭିସ୍ନେହଃ (ସନ୍) ତତ୍ତତ୍ ଶୁଭାଶୁଭଂ ପ୍ରାପ୍ୟ ନ ଅଭିନନ୍ଦତି, ନ ଦ୍ୱେଷ୍ଟି, ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୫୭ ।

ଟୀକା ।

କଥଂ ଭାଷେତେତ୍ୟସ୍ୟୋତ୍ତରମାହ ଯଇତି । ଯଃ ସର୍ବତ୍ର ପୁତ୍ର-ମିତ୍ରାଦିଷ୍ୱପି ଅନଭିସ୍ନେହଃ ସ୍ନେହଶୂନ୍ୟଃ ଅତଏବ ବାଧିତାନୁବୃତ୍ତ୍ୟା ତତ୍ତତ୍ ଶୁଭମନୁକୂଳଂ ପ୍ରାପ୍ୟ ନାଭିନନ୍ଦତି ନ ପ୍ରଶଂସତି, ଅଶୁଭଂ ପ୍ରତିକୂଳଂ ପ୍ରାପ୍ୟ ନ ଦ୍ୱେଷ୍ଟି ନ ନିନ୍ଦତି କିନ୍ତୁ କେବଳମୁଦାସୀନ ଏବ ଭାଷତେ ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତେତ୍ୟର୍ଥଃ । ୫୭ ।

ପଦବ୍ୟାଖ୍ୟା ।

ଯଃ—ଯେ, ସର୍ବତ୍ର—ସବୁପଦାର୍ଥରେ, ଅନଭିସ୍ନେହଃ—ପ୍ରୀତିରହିତ, ତତ୍ତତ୍ପ୍ରାପ୍ୟ—ସେହି ସେହି ପଦାର୍ଥକୁ ପାଇ, ଶୁଭାଶୁଭଂ—ଶୁଭ ଓ ଅଶୁଭ, ନାଭିନନ୍ଦତି—ପ୍ରଶଂସା କରନ୍ତି ନାହିଁ, ନ ଦ୍ୱେଷ୍ଟି—ନିନ୍ଦା କରନ୍ତି ନାହିଁ, ତସ୍ୟ—ତାହାଙ୍କର, ପ୍ରଜ୍ଞା—ବୁଦ୍ଧି, ପ୍ରତିଷ୍ଠିତା—ପ୍ରଶସ୍ତ । ୫୭ ।

ଅନୁବାଦ ।

ଯେ ସବୁ ପଦାର୍ଥରେ ସ୍ନେହଶୂନ୍ୟ ହୋଇ ଭଲପଦାର୍ଥ ପାଇଲେ ପ୍ରଶଂସା କରନ୍ତି ନାହିଁ ବା ମନ୍ଦ ପଦାର୍ଥ ପାଇଲେ ନିନ୍ଦା କରନ୍ତି ନାହିଁ ତାହାଙ୍କର ବୁଦ୍ଧି ପ୍ରତିଷ୍ଠିତ ଅର୍ଥାତ୍ ସେ ସ୍ଥିରବୁଦ୍ଧି ଅଟନ୍ତି । ୫୭ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଯେ ସର୍ବଦା ଆତ୍ମାରାମ ସେ ପୁତ୍ର ମିତ୍ର ପ୍ରଭୃତିଙ୍କ ଦେହାଦିରୂପ ଅନାତ୍ମପଦାର୍ଥରେ କିପରି ସ୍ନେହ କରିବେ ? ଆଉ ସେହି ଅନିତ୍ୟ ଦେହାଦିର ସଂଯୋଗ ବିୟୋଗରେ ଅର୍ଥାତ୍ ଜନ୍ମ ବା ମରଣରେ କିପରି ସୁଖ ବା ଦୁଃଖ ଅନୁଭବ କରିବେ ? ଅର୍ଥାତ୍ ଅଜ୍ଞାନପୁରୁଷମାନେ ପୁଣ୍ୟକର୍ମରୂପ ପ୍ରାରବ୍ଧ ବଳରେ ସୁନ୍ଦରୀ ସ୍ତ୍ରୀ ବା ବିପୁଳ ସମ୍ପତ୍ତି ପାଇ ଯେପରି ହର୍ଷପ୍ରାପ୍ତ ହୋଇ ପ୍ରଶଂସା ଏବଂ ମନ୍ଦକର୍ମର ଫଳରୂପ ବିପତ୍ତି ପ୍ରାପ୍ତ ହେଲେ ଯେପରି ତାହାର ନିନ୍ଦା କରନ୍ତି, ଆତ୍ମଜ୍ଞାନୀ ଲୋକ ସେପରି ସୁଖଲାଭରେ ଆନନ୍ଦିତ ବା ଦୁଃଖପ୍ରାପ୍ତିରେ ବିଷାଦପ୍ରାପ୍ତ ହୁଅନ୍ତି ନାହିଁ, ଅର୍ଥାତ୍ ଅଜ୍ଞାନୀ ଲୋକ ପରି ଇଷ୍ଟପ୍ରାପ୍ତିରେ ପ୍ରଶଂସାବାକ୍ୟ କହନ୍ତି ନାହିଁ କି ଇଷ୍ଟନାଶରେ ନିନ୍ଦାବାକ୍ୟ କହନ୍ତି ନାହିଁ । ସବୁ ଅବସ୍ଥାରେ ଅବିଚଳିତ ଥାନ୍ତି । ଯାହାଙ୍କର ଏହି ପ୍ରକାର ଅବସ୍ଥା ତାହାଙ୍କର ପ୍ରଜ୍ଞା ସ୍ଥିର ବୋଲି ପ୍ରତିଷ୍ଠିତ ହୁଏ । ଏ ଶ୍ଳୋକରେ ଅର୍ଜୁନଙ୍କର 'ସ୍ଥିରବୁଦ୍ଧି ବ୍ୟକ୍ତି କିପରି କଥା କହନ୍ତି,' ଏହି ପ୍ରଶ୍ନର ଉତ୍ତର ଦିଆଗଲା । ୫୭ ।

ଶ୍ଳୋକଃ ।

ଯଦା ସଂହରତେ ଚାୟଂ, କୂର୍ମୋଽଙ୍ଗାନୀବ ସର୍ବଶଃ ।
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୫୮ ।

ଅନ୍ୱୟଃ ।

କୂର୍ମଃ ଅଙ୍ଗାନି ଇବ ଅୟଂ ଚ ଯଦା ଇନ୍ଦ୍ରିୟାର୍ଥେଭ୍ୟଃ ଇନ୍ଦ୍ରିୟାଣି ସର୍ବଶଃ ସଂହରତେ ତଦା ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୫୮ ।

ଟୀକା ।

କିଂ ଚ ଯଦେତି । ଯଦା ଚାୟଂ ଯୋଗୀ ଇନ୍ଦ୍ରିୟାର୍ଥେଭ୍ୟଃ ଶବ୍ଦାଦିଭ୍ୟଃ ସକାଶାତ୍ ଇନ୍ଦ୍ରିୟାଣି ସଂହରତେ ପ୍ରତ୍ୟାହରତି ଧନାୟାସେନ ସଂହାରେ ଦୃଷ୍ଟାନ୍ତମାହ— କୂର୍ମ ଇତି । ଅଙ୍ଗାନି କରଚରଣାଦୀନି କୂର୍ମୋଯଥା ସ୍ୱଭାବେନୈବାକର୍ଷତି ତଦ୍ୱତ୍ । ୫୮ ।

ପଦବ୍ୟାଖ୍ୟା ।

ଯଦା—ଯେବେ, ସଂହରତେ—ଉତ୍ତମରୂପେ ସଙ୍କୁଚିତ କରି ନଥାନ୍ତି, ଚ—ଆଉ, ଅୟଂ—ଏହି ଯୋଗୀ, କୂର୍ମଃ—କଚ୍ଛପ, ଅଙ୍ଗାନିବ—ଯେପରି ଅଙ୍ଗମାନଙ୍କୁ, ସର୍ବଶଃ—ସମସ୍ତ, ଇନ୍ଦ୍ରିୟାଣି—ଇନ୍ଦ୍ରିୟମାନଙ୍କୁ, ଇନ୍ଦ୍ରିୟାର୍ଥେଭ୍ୟଃ—ବିଷୟମାନଙ୍କରୁ, ତସ୍ୟ—ତାହାଙ୍କର, ପ୍ରଜ୍ଞା—ବୁଦ୍ଧି, ପ୍ରତିଷ୍ଠିତା—ଖ୍ୟାତିପ୍ରାପ୍ତ । ୫୮ ।

ଅନୁବାଦ ।

ଯେପରି କଚ୍ଛପ ଆପଣାର ଅଙ୍ଗମାନଙ୍କୁ ସଙ୍କୁଚିତ କରେ, ସେହିପରି ଏହି ଯୋଗୀ ଯେବେ ଆପଣାର ଇନ୍ଦ୍ରିୟମାନଙ୍କୁ ସମସ୍ତ ବିଷୟରୁ ଆକର୍ଷଣ କରନ୍ତି ତେବେ ତାହାଙ୍କର ବୁଦ୍ଧି ପ୍ରତିଷ୍ଠିତ ହୁଏ । ୫୮ ।

ବିଶଦବ୍ୟାଖ୍ୟା ।

ଅର୍ଜୁନଙ୍କର ତୃତୀୟ ପ୍ରଶ୍ନ 'କିମାସୀତ' ଅର୍ଥାତ୍ ସ୍ଥିରବୁଦ୍ଧି ବ୍ୟକ୍ତି କିପରି ରହନ୍ତି ? ଏହାର

Digitized by PPRACHIN, SOA

ଉତ୍ତର ଏହିଠାରୁ ଆରମ୍ଭ କରି ଏ ଅଧ୍ୟାୟର ୬୧ ଶ୍ଳୋକ ଯାଏ ବୁଝାଉଅଛନ୍ତି — ଆତ୍ମାରାମ ହେବାକୁ ହେଲେ ଅର୍ଥାତ୍ ଆତ୍ମାଙ୍କଠାରେ ପ୍ରୀତି କରିବାକୁ ହେଲେ, ମନକୁ ଅନ୍ତର୍ବୃତ୍ତି ଅର୍ଥାତ୍ ହୃଦୟ ଆଡ଼କୁ ଘେନି ଯିବା ଉଚିତ । ମନ ବହିର୍ବୃତ୍ତି ଆଡ଼େ ବିଚରଣ କଲେ ତତ୍ତ୍ୱଜ୍ଞାନ ଲାଭ କରି ହୁଏ ନାହିଁ । ଇନ୍ଦ୍ରିୟମାନଙ୍କୁ ବିଷୟରୁ ଫେରାଇ ନେବାକୁ ହେଲେ ମନକୁ ଅନ୍ତର୍ବୃତ୍ତି ଆଡ଼କୁ ଚାଳିତ କରିବାକୁ ହେବ, ତାହା ହେଲେ ଅର୍ଥାତ୍ ମନ ବହିରିନ୍ଦ୍ରିୟ ସହିତ ଯୁକ୍ତ ନ ହେଲେ ଇନ୍ଦ୍ରିୟମାନେ ଆପଣା ଆପଣାର ରୂପ, ରସ, ଗନ୍ଧ, ପ୍ରଭୃତି ବିଷୟ ଗ୍ରହଣ କରି ପାରିବେ ନାହିଁ । କୂର୍ମ ଆପଣା ଇଚ୍ଛାରେ ହସ୍ତ ପଦାଦିକୁ ସଙ୍କୁଚିତ କଲାପରି ଯେ ବ୍ୟକ୍ତି ସହଜରେ ଅଭ୍ୟାସ ବଳରେ ମନକୁ ଅନ୍ତର୍ବୃତ୍ତି ଆଡ଼କୁ ଚାଳିତ କରି ପାରନ୍ତି ତାହାଙ୍କର ବୁଦ୍ଧି ସ୍ଥିର ଅଟେ । ୫୮ ।

## ଶ୍ଳୋକଃ ।

ବିଷୟା ବିନିବର୍ତ୍ତନ୍ତେ, ନିରାହାରସ୍ୟ ଦେହିନଃ ।
ରସବର୍ଜ୍ଜଂ ରସୋଽପ୍ୟସ୍ୟ, ପରଂ ଦୃଷ୍ଟ୍ୱା ନିବର୍ତ୍ତତେ । ୫୯ ।

## ଅନ୍ୱୟଃ ।

ନିରାହାରସ୍ୟ ଦେହିନଃ ରସବର୍ଜ୍ଜଂ ବିଷୟାଃ ବିନିବର୍ତ୍ତନ୍ତେ, ଅସ୍ୟ ରସଃ ଅପି ପରଂ ଦୃଷ୍ଟ୍ୱା ନିବର୍ତ୍ତତେ । ୫୯ ।

## ଟୀକା ।

ନନୁ ନେନ୍ଦ୍ରିୟାଣାଂ ବିଷୟେଷ୍ୱପ୍ରବୃତ୍ତିଃ ସ୍ଥିତପ୍ରଜ୍ଞସ୍ୟ ଲକ୍ଷଣଂ ଜଡ଼ାନାମାତୁରାଣାମୁପବାସପରାଣାଞ୍ଚ ବିଷୟେଷ୍ୱପ୍ରବୃତ୍ତେରବିଶେଷାତ୍ତତ୍ରାହ । ବିଷୟା ଇତି । ଇନ୍ଦ୍ରିୟୈର୍ବିଷୟାଣାମାହରଣଂ ଗ୍ରହଣମାହାରଃ ନିରାହାରସ୍ୟ ଇନ୍ଦ୍ରିୟୈର୍ବିଷୟଗ୍ରହଣମକୁର୍ବତୋ ଦେହିନୋ ଦେହାଭିମାନିନୋଽଜ୍ଞସ୍ୟ ବିଷୟାଃ ପ୍ରାୟଶୋ ବିନିବର୍ତ୍ତନ୍ତେ ତଦନୁଭବୋ ନିବର୍ତ୍ତତ ଇତ୍ୟର୍ଥଃ । କିନ୍ତୁ ରସୋ ରାଗୋଽଭିଲାଷସ୍ତଦ୍ୱର୍ଜ୍ଜଂ ଅଭିଲାଷସ୍ତୁ ନ ନିବର୍ତ୍ତତ ଇତ୍ୟର୍ଥଃ । ରସୋଽପି ରାଗୋଽପି ପରଂ ପରମାତ୍ମାନଂ ଦୃଷ୍ଟ୍ୱାସ୍ୟ ସ୍ଥିତପ୍ରଜ୍ଞସ୍ୟ ନିବର୍ତ୍ତତେ ନଶ୍ୟତୀତ୍ୟର୍ଥଃ । ଯଦ୍ୱା ନିରାହାରସ୍ୟ ଉପବାସପରସ୍ୟ ବିଷୟାଃ ପ୍ରାୟଶୋ ନିବର୍ତ୍ତନ୍ତେ କ୍ଷୁଧାସନ୍ତପ୍ତସ୍ୟ ଶବ୍ଦସ୍ପର୍ଶାଦ୍ୟପେକ୍ଷାଭାବାତ୍ କିନ୍ତୁ ରସବର୍ଜ୍ଜଂ ରସାପେକ୍ଷା ତୁ ନ ନିବର୍ତ୍ତତ ଇତ୍ୟର୍ଥଃ । ଶେଷଂ ସମାନଂ । ୫୯ ।

## ପଦବ୍ୟାଖ୍ୟା ।

ବିଷୟାଃ—ଇନ୍ଦ୍ରିୟଗ୍ରାହ୍ୟ ଗୁଣମାନେ, ବିନିବର୍ତ୍ତନ୍ତେ—ଊଣା ହୋଇଯାନ୍ତି, ନିରାହାରସ୍ୟ—ଉପବାସୀ ବା ଇନ୍ଦ୍ରିୟଦ୍ୱାରା ବିଷୟ ଗ୍ରହଣ ନ କରିବା ବ୍ୟକ୍ତି, ଦେହିନଃ—ପୁରୁଷର ବା ଦେହାଭିମାନୀ ଅଜ୍ଞଲୋକର, ରସବର୍ଜ୍ଜଂ—ଅନୁରାଗ, ବା କାମନାକୁ ଛାଡ଼ି, ରସଃ—କାମନା, ଅପି—ମଧ୍ୟ, ଅସ୍ୟ—ଏହି ସ୍ଥିରବୁଦ୍ଧି ବ୍ୟକ୍ତିଙ୍କର, ପରଂ—ପରମାତ୍ମାଙ୍କୁ, ଦୃଷ୍ଟ୍ୱା—ଦେଖି କରି, ନିବର୍ତ୍ତତେ—ଦୂର ହୋଇଯାଏ । ୫୯ ।

## ଅନୁବାଦ ।

ପୁରୁଷ ନିରାହାର ହେଲେ ତାହାର ଶବ୍ଦସ୍ପର୍ଶାଦି ଗ୍ରହଣ କରିବା ଶକ୍ତି ନିବୃତ୍ତ ହୋଇଯାଏ ସତ, ମାତ୍ର ତାହାର କାମନା ନିବୃତ୍ତ ହୁଏ ନାହିଁ । କିନ୍ତୁ ସ୍ଥିରବୁଦ୍ଧି ବ୍ୟକ୍ତିଙ୍କର ଆତ୍ମସାକ୍ଷାତ୍କାର ହେବାରୁ କାମନା ମଧ୍ୟ ନିବୃତ୍ତ ହୋଇଯାଏ । ୫୯ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଇନ୍ଦ୍ରିୟଦ୍ୱାରା ବିଷୟ ଗ୍ରହଣ (ଆହରଣ) କରିବାକୁ 'ଆହାର' ବୋଲାଯାଏ । ଯେଉଁ ପୁରୁଷ ଇନ୍ଦ୍ରିୟଦ୍ୱାରା ବିଷୟ ଗ୍ରହଣ କରି ନ ପାରେ ତାକୁ 'ନିରାହାର' କୁହାଯାଏ, ଯେପରି ଅନ୍ଧ, ବଧିର, ମୂକ, ରୋଗୀ, ବାଳକ ଇତ୍ୟାଦି । ସେମାନଙ୍କର ରୂପ ଶବ୍ଦ ବା ରସ ପ୍ରଭୃତି ଗୋଟିଏ ଗୋଟିଏ ବିଷୟ ଗ୍ରହଣ କରିବାର ଶକ୍ତି ଊଣା ହୋଇଅଛି ସତ, ଅଥବା 'ନିରାହାର' ଅର୍ଥାତ୍ ଉପବାସ କରୁଥିବା ବ୍ୟକ୍ତିର କ୍ଷୁଧା ପ୍ରବଳତାରୁ ଅନ୍ୟ ଅନ୍ୟ ବିଷୟ ଗ୍ରହଣ କରିବାର ଶକ୍ତି ନ ଥାଏ ସତ, ମାତ୍ର 'ରସ' ଅର୍ଥାତ୍ ଅନୁରାଗ ବା କାମନାକୁ ସେମାନେ ଛାଡି ପାରନ୍ତି ନାହିଁ; କିନ୍ତୁ ସ୍ଥିରବୁଦ୍ଧି ଲୋକ ଆତ୍ମସାକ୍ଷାତ୍କାର ଲଭିବାରୁ ଅର୍ଥାତ୍ ସମସ୍ତ ଜଗତ୍ ଏକ ଆତ୍ମମୟ ବୋଲି ଜାଣିବାରୁ ତାହାଙ୍କର କାମନା ମଧ୍ୟ ନିବୃତ୍ତ ହୋଇଯାଏ । ଫଳକଥା ଏହି କି କେବଳ ଇନ୍ଦ୍ରିୟମାନଙ୍କର ବିଷୟଗ୍ରହଣରେ ଅପ୍ରବୃତ୍ତି ହେଲେ କେହି ସ୍ଥିରବୁଦ୍ଧି ହେବ ନାହିଁ । କାମନାରହିତ ହେବା ମଧ୍ୟ ପ୍ରୟୋଜନ । ୫୯ ।

ଶ୍ଳୋକଃ ।

* ଯତତୋହ୍ୟପି କୌନ୍ତେୟ, ପୁରୁଷସ୍ୟ ବିପଶ୍ଚିତଃ ।
ଇନ୍ଦ୍ରିୟାଣି ପ୍ରମାଥୀନି, ହରନ୍ତି ପ୍ରସଭଂ ମନଃ । ୬୦ ।

ଅନ୍ୱୟଃ ।

ହେ କୌନ୍ତେୟ ! ଯତତଃ ଅପି ହି, ବିପଶ୍ଚିତଃ ପୁରୁଷସ୍ୟ ମନଃ ଅପି ପ୍ରମାଥୀନି ଇନ୍ଦ୍ରିୟାଣି ପ୍ରସଭଂ ହରନ୍ତି । ୬୦ ।

ଟୀକା ।

ଇନ୍ଦ୍ରିୟସଂଯମଂ ବିନା ସ୍ଥିତପ୍ରଜ୍ଞତା ନ ସମ୍ଭବତି, ଅତଃ ସାଧକାବସ୍ଥାୟାଂ ତତ୍ର ମହାନ୍ ପ୍ରଯତ୍ନଃ କର୍ତ୍ତବ୍ୟ ଇତ୍ୟାହ । ଯତତୋଽପୀତି ଦ୍ୱାଭ୍ୟାଂ । ଯତତୋ ମୋକ୍ଷାର୍ଥଂ ପ୍ରଯତମାନସ୍ୟ ବିପଶ୍ଚିତୋ ବିବେକିନୋଽପି ମନ ଇନ୍ଦ୍ରିୟାଣି ପ୍ରସଭଂ ବଳାତ୍ ହରନ୍ତି । ଯତଃ ପ୍ରମାଥୀନି ପ୍ରମଥନଶୀଳାନି କ୍ଷୋଭକାଣୀତ୍ୟର୍ଥଃ । ୬୦ ।

ପଦବ୍ୟାଖ୍ୟା ।

ଯତତଃ—ମୋକ୍ଷନିମିତ୍ତ ଯତ୍ନକାରୀ, ହି—ନିଶ୍ଚୟ, ଅପି—ମଧ୍ୟ, କୌନ୍ତେୟ—ହେ ଅର୍ଜୁନ ! ପୁରୁଷସ୍ୟ—ଜନର, ବିପଶ୍ଚିତଃ—ବିବେକୀ, ଇନ୍ଦ୍ରିୟାଣି—ଇନ୍ଦ୍ରିୟମାନେ, ପ୍ରମାଥୀନି—କ୍ଷୋଭଜନକ ଓ ବିଭ୍ରମକାରୀ, ହରନ୍ତି—ହରଣ କରିନିଅନ୍ତି, ପ୍ରସଭଂ—ବଳାତ୍କାରରେ, ମନଃ—ମନକୁ । ୬୦ ।

ଅନୁବାଦ ।

ହେ ଅର୍ଜୁନ ! ମୋକ୍ଷନିମିତ୍ତ ଯତ୍ନ କରୁଥିବା ବିବେକୀପୁରୁଷର ମନକୁ ମଧ୍ୟ ମଥନକାରୀ ପ୍ରବଳ ଇନ୍ଦ୍ରିୟମାନେ ବଳପୂର୍ବକ ହରଣ କରନ୍ତି । ୬୦ ।

ବିଶଦବ୍ୟାଖ୍ୟା ।

ବିବେକୀପୁରୁଷ ବିଷୟମାନଙ୍କର ଦୋଷ ବିଚାର କରି ତହିଁରୁ ଇନ୍ଦ୍ରିୟମାନଙ୍କୁ ସଙ୍କୁଚିତ କରି ଆଣନ୍ତି ସତ, ମାତ୍ର ସେ ଇନ୍ଦ୍ରିୟମାନେ ଏପରି ବଳଶାଳୀ ଓ ବିଭ୍ରମକାରୀ, ଯେ ବିବେକବଳକୁ ପରାଜୟ କରି ମନକୁ ବଳପୂର୍ବକ ଆପଣା ବିଷୟ ଆଡକୁ ଆକର୍ଷଣ କରି ନିଅନ୍ତି ।

Digitized by PPRACHIN, SOA

ଆଉ ଅବିବେକିବ୍ୟକ୍ତିଙ୍କ ଉପରେ ଏହିସବୁ ଇନ୍ଦ୍ରିୟମାନେ ଯେ କିପରି ଅଧିକାର ପ୍ରକାଶ କରନ୍ତି ତାହା କାହାରିକି ଅବିଦିତ ନାହିଁ । ଜଣେ ସ୍ମୃତିକାର କବି କହିଅଛନ୍ତି, ଯେ "କୁରଙ୍ଗ-ମାତଙ୍ଗ-ପତଙ୍ଗ-ଭୃଙ୍ଗ-ମୀନା ହତାଃ ପଞ୍ଚଭିରେବ ପଞ୍ଚ । ଏକଃ ପ୍ରମାଦୀ ସ କଥଂ ନ ହନ୍ୟତେ, ଯଃ ସେବତେ ପଞ୍ଚଭିରେବ ପଞ୍ଚ" ଅର୍ଥାତ୍ କୁରଙ୍ଗ କେବଳ ଶ୍ରୋତ୍ରେନ୍ଦ୍ରିୟଦ୍ୱାରା ସଙ୍ଗୀତଶବ୍ଦ ଶ୍ରବଣ କରି ବ୍ୟାଧହସ୍ତରେ ହତ ହୁଏ, ହସ୍ତିନୀର ସ୍ପର୍ଶଜନିତ ସୁଖପାଇଁ ବ୍ୟାକୁଳ ହୋଇ ହସ୍ତୀ ବନ୍ଧନଦଶା ପ୍ରାପ୍ତ ହୁଏ, ପତଙ୍ଗ, ରୂପରେ ମୋହିତ ହୋଇ ପ୍ରଜ୍ୱଳିତ ଅଗ୍ନିରେ ପ୍ରାଣ-ତ୍ୟାଗ କରେ, ଭ୍ରମର କାଷ୍ଠାଦି ଭେଦନରେ ସମର୍ଥ ହେଲେ ସୁଦ୍ଧା ସୁଗନ୍ଧଲୋଭରେ ପଦ୍ମ-ପୁଷ୍ପରେ ବନ୍ଦୀ ହୁଏ ଓ ସେହିପରି ମୀନ ରସଲୋଭରେ ପଡ଼ି ବଡ଼ିଶରେ ପ୍ରାଣ ହରାଏ । ଏ ପାଞ୍ଚଟି ଜୀବ ଗୋଟିଏ ୨ ଇନ୍ଦ୍ରିୟର ବିଷୟ ଗ୍ରହଣରେ ଲୋଭ ପ୍ରକାଶ କରି ପ୍ରାଣ ହରାଉଥିବାର ସମସ୍ତେ ଦେଖୁଅଛନ୍ତି, ଯେଉଁ ବ୍ୟକ୍ତି ପ୍ରମତ୍ତ ହୋଇ ପଞ୍ଚ ଜ୍ଞାନେନ୍ଦ୍ରିୟଦ୍ୱାରା ଶବ୍ଦସ୍ପର୍ଶାଦି ପଞ୍ଚ ବିଷୟ ଗ୍ରହଣ କରେ ତାହାର ଯେ ବନ୍ଧନଦଶା ହେବ ଏଥିରେ ସନ୍ଦେହ କଣ ? ଅତଏବ ଇନ୍ଦ୍ରିୟମାନଙ୍କୁ ବିଷୟରୁ ସଂଯତ କରିବାକୁ ହେଲେ ପ୍ରଥମେ ମନକୁ ଅନ୍ତର୍ବୃତ୍ତି ଆଡ଼କୁ ଚାଳିତ କରିବା ଉଚିତ । ୬୦ ।

ଶ୍ଳୋକଃ ।

* ତାନି ସର୍ବାଣି ସଂଯମ୍ୟ, ଯୁକ୍ତ ଆସୀତ ମତ୍ପରଃ ।
ବଶେ ହି ଯସ୍ୟେନ୍ଦ୍ରିୟାଣି, ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୬୧ ।

ଅନ୍ୱୟଃ ।

ଯୁକ୍ତଃ ତାନି ସର୍ବାଣି ସଂଯମ୍ୟ ମତ୍ପରଃ ଆସୀତ । ଇନ୍ଦ୍ରିୟାଣି ହି ଯସ୍ୟ ବଶେ (ସନ୍ତି) ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୬୧ ।

ଟୀକା ।

ଯସ୍ମାଦେବଂ ତସ୍ମାତ୍ ତାନୀତି । ଯୁକ୍ତୋ ଯୋଗୀ ତାନୀନ୍ଦ୍ରିୟାଣି ସଂଯମ୍ୟ ମତ୍ପରଃ ସନ୍ନାସୀତ । ଯସ୍ୟ ବଶେ ବଶବର୍ତ୍ତୀନୀନ୍ଦ୍ରିୟାଣି, ଏତେନ ଚ କଥମାସୀତେତି ପ୍ରଶ୍ନସ୍ୟ ବଶୀକୃତେନ୍ଦ୍ରିୟଃ ସନ୍ନାସୀତେତ୍ୟୁତ୍ତରଂ ଭବତି । ୬୧ ।

ପଦବ୍ୟାଖ୍ୟା ।

ତାନି ସର୍ବାଣି—ସେହି ସବୁ ଇନ୍ଦ୍ରିୟମାନଙ୍କୁ, ସଂଯମ୍ୟ—ଉତ୍ତମରୂପେ ଦମନ କରି, ଯୁକ୍ତଃ—ଯୋଗାଭ୍ୟାସୀ, ଆସୀତ—ବସିବ, ମତ୍ପରଃ—ଆମ୍ଭଠାରେ ମନୋନିବେଶ କରି, ବଶେ—ବଶରେ, ହି—ନିଶ୍ଚୟ, ଯସ୍ୟ—ଯାହାଙ୍କର, ଇନ୍ଦ୍ରିୟାଣି—ଇନ୍ଦ୍ରିୟମାନେ, ତସ୍ୟ—ତାହାଙ୍କର, ପ୍ରଜ୍ଞା—ବୁଦ୍ଧି, ପ୍ରତିଷ୍ଠିତା—ଖ୍ୟାତିପ୍ରାପ୍ତ ହୁଏ । ୬୧ ।

ଅନୁବାଦ ।

ଯୋଗୀ ବ୍ୟକ୍ତି ସେହି ଇନ୍ଦ୍ରିୟମାନଙ୍କୁ ସମ୍ପୂର୍ଣ୍ଣରୂପେ ଦମନ କରି ଆମ୍ଭଠାରେ ଭକ୍ତିଭାବରେ ରହନ୍ତୁ । ଇନ୍ଦ୍ରିୟମାନେ ଯାହାଙ୍କର ବଶୀଭୂତ, ତାହାଙ୍କର ବୁଦ୍ଧି ପ୍ରତିଷ୍ଠିତ ଅର୍ଥାତ୍ ସେ ସ୍ଥିରବୁଦ୍ଧି । ୬୧ ।

ବିଶଦବ୍ୟାଖ୍ୟା ।

ଇନ୍ଦ୍ରିୟମାନେ ଅତ୍ୟନ୍ତ ପ୍ରବଳ ଓ ଦୁର୍ଜ୍ଜୟ ହେଲେ ମଧ୍ୟ ସର୍ବାନ୍ତର୍ଯ୍ୟାମୀ ସର୍ବଶକ୍ତିମାନ୍

Digitized by PPRACHIN, SOA

ପରମେଶ୍ୱରଙ୍କଠାରେ ଯେ ଭକ୍ତି କରନ୍ତି ତାହାଙ୍କଠାରେ ସେମାନେ ବଳ ପ୍ରକାଶ କରି ନ ପାରି ବଶୀଭୂତ ହୋଇ ରହନ୍ତି । ଯେଉଁମାନେ କେବଳ ନିଜ ନିଜ ବିବେକ, ଜ୍ଞାନ ବା ବିଚାର ବୁଦ୍ଧି ରେ ଇନ୍ଦ୍ରିୟମାନଙ୍କୁ ପରାସ୍ତ କରିବାକୁ ଇଚ୍ଛା କରନ୍ତି, ସେମାନେ କୃତକାର୍ଯ୍ୟ ହୋଇ ପାରନ୍ତି ନାହିଁ; କିନ୍ତୁ ଯେଉଁମାନେ ଏକାଗ୍ରଚିତ୍ତରେ ଭଗବାନ୍‌ଙ୍କଠାରେ ଭକ୍ତି କରି ଶରଣ ପଶନ୍ତି ପ୍ରବଳ ଇନ୍ଦ୍ରିୟମାନେ ସେମାନଙ୍କଠାରେ ବଶୀଭୂତ ରହନ୍ତି । ହିନ୍ଦିରେ ଗୋଟିଏ ଦୋହା ପ୍ରଚଳିତ ଅଛି ଯେ ;—

"ଯୋ ଜାକୋ ଶରଣ ଲିୟେ ସୋ ରଖେ ତାକୋ ଲାଜ୍ ।
ଉଲ୍‌ଟାଜଲେ ମଛଲି ଚଲେ ବହିଯାୟ୍ ଗଜରାଜ୍ ।"

ଅର୍ଥାତ୍ ଯେ ଯାହାଠାରେ ଶରଣାଗତ ହୁଏ, ତାହାର ଲାଜ ସେ ରକ୍ଷା କରେ । ଯେପରି କ୍ଷୁଦ୍ର କ୍ଷୁଦ୍ର ମାଛଗୁଡ଼ିକ ଜଳସ୍ରୋତର ବିପରୀତ ଦିଗକୁ ଅକ୍ଳେଶରେ ପହଁରି ଯାଇପାରନ୍ତି ମାତ୍ର ବଳିଷ୍ଠ ଗଜରାଜ ଉଜାଣି ଉଠି ନ ପାରି ଅନେକଦୂର ତଳକୁ ଘୁସିଯାଏ । ସେହିପରି ଭଗବାନଙ୍କଠାରେ ଆଶ୍ରିତ ଭକ୍ତମାନେ ସହଜରେ ଇନ୍ଦ୍ରିୟ ଦମନ କରି ପାରନ୍ତି—ମାତ୍ର ବିବେକବ୍ୟକ୍ତି ନିଜ ବିବେକବଳରେ ଦମନ କରିବାକୁ ଯାଇ ସହଜରେ ପାରନ୍ତି ନାହିଁ ।

ଅର୍ଜ୍ଜୁନ ଯେ ପଚାରିଥିଲେ 'ସ୍ଥିରବୁଦ୍ଧି ବ୍ୟକ୍ତି କିପରି ରହେ' ତହିଁର ଉତ୍ତରରେ ଶ୍ରୀଭଗବାନ୍ କହିଲେ, ଯେ 'ସମସ୍ତ ଇନ୍ଦ୍ରିୟମାନଙ୍କୁ ଦମନ କରି ଆମ୍ଭଠାରେ ଏକାନ୍ତଭକ୍ତି କରି ରହେ' । ୬୧ ।

ଶ୍ଳୋକଃ ।

* ଧ୍ୟାୟତୋ ବିଷୟାନ୍ ପୁଂସଃ, ସଙ୍ଗସ୍ତେଷୂପଜାୟତେ ।
ସଙ୍ଗାତ୍ ସଞ୍ଜାୟତେ କାମଃ, କାମାତ୍ କ୍ରୋଧୋଽଭିଜାୟତେ । ୬୨ ।

ଅନ୍ୱୟଃ ।

ବିଷୟାନ୍ ଧ୍ୟାୟତଃ ପୁଂସଃ ତେଷୁ ସଙ୍ଗଃ ଉପଜାୟତେ, ସଙ୍ଗାତ୍ କାମଃ ସଞ୍ଜାୟତେ, କାମାତ୍ କ୍ରୋଧଃ ଅଭିଜାୟତେ । ୬୨ ।

ଟୀକା ।

ବାହ୍ୟେନ୍ଦ୍ରିୟସଂଯମାଭାବେ ଦୋଷମୁକ୍ତ୍ୱା ମନଃସଂଯମାଭାବେ ଦୋଷମାହ ଧ୍ୟାୟତ ଇତି ଦ୍ୱାଭ୍ୟାଂ । ଗୁଣବୁଦ୍ଧ୍ୟା ବିଷୟାନ୍ ଧ୍ୟାୟତଃ ପୁଂସସ୍ତେଷୁ ସଙ୍ଗଃ ଆସକ୍ତିର୍ଭବତି, ଆସକ୍ତ୍ୟା ତ ତେଷ୍ୱଧିକଃ କାମୋଭବତ କାମାଚ୍ଚ କେନଚିଦ୍ପ୍ରତିହତାତ୍ କ୍ରୋଧୋଭବତ । ୬୨ ।

ପଦବ୍ୟାଖ୍ୟା ।

ଧ୍ୟାୟତଃ—ଧ୍ୟାନ କରୁଥିବା, ବିଷୟାନ୍—ବିଷୟମାନଙ୍କୁ, ପୁଂସଃ—ପୁରୁଷର, ସଙ୍ଗଃ—ଆସକ୍ତି, ତେଷୁ—ସେହି ବିଷୟମାନଙ୍କରେ, ଉପଜାୟତେ—ଉତ୍ପନ୍ନ ହୁଏ, ସଙ୍ଗାତ୍—ଆସକ୍ତିରୁ, ସଞ୍ଜାୟତେ—ଜାତ ହୁଏ, କାମଃ—କାମନା, କାମାତ୍—କାମନାରୁ, କ୍ରୋଧଃ—କ୍ରୋଧ—ରୋଷ, ଅଭିଜାୟତେ—ଜାତ ହୁଏ । ୬୨ ।

Digitized by PPRACHIN, SOA

ଅନୁବାଦ ।

ବିଷୟମାନଙ୍କୁ ଧ୍ୟାନ କରୁଥିବା ପୁରୁଷର ସେ ସବୁରେ ଆସକ୍ତି ଜାତ ହୁଏ । ଆସକ୍ତିରୁ କାମନା ଓ କାମନାରୁ କ୍ରୋଧ ଜାତ ହୁଏ । ୬୨ ।

ବିଶଦବ୍ୟାଖ୍ୟା ।

ଚକ୍ଷୁ ଶ୍ରୋତ୍ରାଦି ବାହ୍ୟ ଇନ୍ଦ୍ରିୟମାନଙ୍କୁ ନିରୁଦ୍ଧ କଲେ ସୁଦ୍ଧା ମନେ୨ ଯେବେ ରୂପ ଓ ଶବ୍ଦାଦି ବିଷୟ ଚିନ୍ତା କରାଯାଏ ତେବେ ସେହି ପଦାର୍ଥପ୍ରତି ଆସକ୍ତି ଅର୍ଥାତ୍ ତାହା ପାଇବାର ଇଚ୍ଛା ହୁଏ । ତାହାହେଲେ ସେ ପଦାର୍ଥ କେବେ କେଉଁଠାରେ କିପରି ମିଳିବ ଇତ୍ୟାଦି କାମନା ହୁଏ । ଏହି କାମନାସିଦ୍ଧି ବିଷୟରେ ବାଧା ଉପସ୍ଥିତ ହେଲେ କ୍ରୋଧ ଉତ୍ପନ୍ନ ହୁଏ । ୬୨ ।

ଶ୍ଳୋକଃ ।

* କ୍ରୋଧାଦ୍ ଭବତି ସମ୍ମୋହଃ, ସମ୍ମୋହାତ୍ ସ୍ମୃତିବିଭ୍ରମଃ ।
ସ୍ମୃତିଭ୍ରଂଶାଦ୍ ବୁଦ୍ଧିନାଶୋ, ବୁଦ୍ଧିନାଶାତ୍ ପ୍ରଣଶ୍ୟତି । ୬୩ ।

ଅନ୍ୱୟଃ ।

କ୍ରୋଧାତ୍ ସମ୍ମୋହଃ, ସମ୍ମୋହାତ୍ ସ୍ମୃତିବିଭ୍ରମଃ, ସ୍ମୃତିଭ୍ରଂଶାତ୍ ବୁଦ୍ଧିନାଶଃ ଭବତି ବୁଦ୍ଧିନାଶାତ୍ ପ୍ରଣଶ୍ୟତି । ୬୩ ।

ଟୀକା ।

କିଞ୍ଚ କ୍ରୋଧାଦିତି । କ୍ରୋଧାତ୍ ସମ୍ମୋହଃ କାର୍ଯ୍ୟାକାର୍ଯ୍ୟବିବେକାଭାବଃ ତତଃ ଶାସ୍ତ୍ରାଚାର୍ଯ୍ୟୋପଦିଷ୍ଟାର୍ଥ—ସ୍ମୃତେର୍ବିଭ୍ରମୋବିଚଳନଂ ଭ୍ରଂଶଃ ତତୋବୁଦ୍ଧେରଚେତନାୟାଃ ନାଶଃ ବୃକ୍ଷାଦିର୍ବିବାଭିଭବଃ ତତଃ ପ୍ରଣଶ୍ୟତି ମୃତତୁଲ୍ୟୋଭବତି । ୬୩ ।

ପଦବ୍ୟାଖ୍ୟା ।

କ୍ରୋଧାତ୍—କ୍ରୋଧରୁ, ଭବତି—ହୁଏ, ସମ୍ମୋହଃ—କାର୍ଯ୍ୟାକାର୍ଯ୍ୟ ବିଚାରରେ ଅକ୍ଷମତା, ସମ୍ମୋହାତ୍—ମୋହରୁ, ସ୍ମୃତିବିଭ୍ରମଃ—ସ୍ମରଣଶକ୍ତିର ହ୍ରାସ ହୁଏ, ସ୍ମୃତିଭ୍ରଂଶାତ୍—ସ୍ମରଣ ବିନାଶରୁ, ବୁଦ୍ଧିନାଶଃ—ବୁଦ୍ଧିର ନାଶ ହୁଏ, ବୁଦ୍ଧିନାଶାତ୍—ବୁଦ୍ଧି ନାଶରୁ ପ୍ରଣଶ୍ୟତି—ନଷ୍ଟ ହୁଏ ଅର୍ଥାତ୍ ମୃତବତ୍ ନଷ୍ଟଚେଷ୍ଟ ହୁଏ । ୬୩ ।

ଅନୁବାଦ ।

କ୍ରୋଧରୁ ମୋହ, ମୋହରୁ ସ୍ମରଣଶକ୍ତି ବିନାଶ ଓ ସ୍ମରଣଶକ୍ତି ବିନାଶରୁ ବୁଦ୍ଧିନାଶ ହୁଏ । ବୁଦ୍ଧିନାଶ ହେଲେ ପ୍ରାଣୀ ମୃତପରି ନଷ୍ଟଚେଷ୍ଟ ହୁଏ । ୬୩ ।

ବିଶଦବ୍ୟାଖ୍ୟା ।

କ୍ରୋଧିବ୍ୟକ୍ତିର କାର୍ଯ୍ୟାକାର୍ଯ୍ୟ ବିଚାର ରହି ପାରେ ନାହିଁ, ସୁତରାଂ ମୋହ ଉପସ୍ଥିତ ହୁଏ । ମୋହଯୁକ୍ତ ପୁରୁଷର ସ୍ମୃତି-ବିନାଶ ହୁଏ ଅର୍ଥାତ୍ ସେ ଗୁରୁଙ୍କଠାରୁ ଓ ଶାସ୍ତ୍ରରୁ ପ୍ରାପ୍ତ ଉପଦେଶ ମନେ ରଖି ପାରେ ନାହିଁ । ସ୍ମୃତି ବିନଷ୍ଟ ହେଲେ ଆତ୍ମଜ୍ଞାନରୂପ ବୁଦ୍ଧି ବିନଷ୍ଟ ହୁଏ । ଉକ୍ତ ପ୍ରକାର ବୁଦ୍ଧିବିହୀନ ପୁରୁଷ ଆଉ କେଉଁଠାରୁ ଅମରତ୍ୱ ଲାଭ କରିବ? ସୁତରାଂ ସେ ମୃତ୍ୟୁର ଆଶ୍ରୟ ଗ୍ରହଣ କରେ ।

Digitized by PPRACHIN, SOA

ଫଳକଥା ଏହି କି ମନ ଏବଂ ଇନ୍ଦ୍ରିୟଗଣଙ୍କୁ ସଂଯତ ନ କରି ପାରିଲେ ବୁଦ୍ଧି ପ୍ରତିଷ୍ଠିତ ହୋଇ ପାରେ ନାହିଁ । ଅତଏବ ମନକୁ ଇନ୍ଦ୍ରିୟଗଣଙ୍କ ସହିତ ଦମନ କରିବା ଆବଶ୍ୟକ । ୬୩ ।

ଶ୍ଳୋକଃ ।

ରାଗଦ୍ୱେଷବିମୁକ୍ତୈସ୍ତୁ, ବିଷୟାନିନ୍ଦ୍ରିୟୈଶ୍ଚରନ୍ ।
ଆତ୍ମବଶ୍ୟୈର୍ବିଧେୟାତ୍ମା, ପ୍ରସାଦମଧିଗଚ୍ଛତି । ୬୪ ।

ଅନ୍ୱୟଃ ।

ବିଧେୟାତ୍ମା ପୁରୁଷଃ ରାଗଦ୍ୱେଷବିମୁକ୍ତୈଃ ତୁ ଆତ୍ମବଶ୍ୟୈଃ ଇନ୍ଦ୍ରିୟୈଃ ବିଷୟାନ୍ ଚରନ୍ ପ୍ରସାଦଂ ଅଧିଗଚ୍ଛତି । ୬୪ ।

ଟୀକା ।

ନନ୍ୱିନ୍ଦ୍ରିୟାଣାଂ ବିଷୟପ୍ରବଣସ୍ୱଭାବାନାଂ ନିରୋଦ୍ଧୁମଶକ୍ୟତ୍ୱାଦୟଂ ଦୋଷୋ ଦୁଷ୍ପରିହର ଇତି ସ୍ଥିତପ୍ରଜ୍ଞତ୍ୱଂ କଥଂ ସ୍ୟାଦିତ୍ୟାଶଙ୍କ୍ୟାହ, ରାଗଦ୍ୱେଷ ଇତି ଦ୍ୱାଭ୍ୟାଂ । ରାଗଦ୍ୱେଷରହିତୈର୍ନିର୍ଗତଦର୍ପୈରିନ୍ଦ୍ରିୟୈର୍ବିଷୟାଂଶ୍ଚରନ୍ନୁପଭୁଞ୍ଜାନୋଽପି ପ୍ରସାଦଂ ଶାନ୍ତିଂ ପ୍ରାପ୍ନୋତି । ରାଗଦ୍ୱେଷରାହିତ୍ୟମେବାହ, ଆତ୍ମେତି, ଆତ୍ମନୋ ମନସୋ ବଶ୍ୟୈରିନ୍ଦ୍ରିୟୈର୍ବିଧେୟୋ ବଶବର୍ତ୍ତୀ ଆତ୍ମା ମନୋ ଯସ୍ୟେତି, ଅନେନୈବ କଥଂ ବ୍ରଜେତେତ୍ୟସ୍ୟ ଚତୁର୍ଥପ୍ରଶ୍ନସ୍ୟ ସ୍ୱାଧୀନୈରିନ୍ଦ୍ରିୟୈର୍ବିଷୟାନ୍ ଗଚ୍ଛତୀତ୍ୟୁତ୍ତରମୁକ୍ତଂ ଭବତି । ୬୪ ।

ପଦବ୍ୟାଖ୍ୟା ।

ରାଗଦ୍ୱେଷବିମୁକ୍ତୈଃ ତୁ—ସ୍ନେହ ଓ ଶତ୍ରୁତାରହିତ, ବିଷୟାନ୍—ଭୋଗମାନଙ୍କୁ, ଇନ୍ଦ୍ରିୟୈଃ—ଇନ୍ଦ୍ରିୟମାନଙ୍କଦ୍ୱାରା, ଚରନ୍—ବ୍ୟବହାର ବା ଭୋଗ କଲେ ମଧ୍ୟ, ଆତ୍ମବଶ୍ୟୈଃ—ମନର ବଶୀଭୂତ, ବିଧେୟାତ୍ମା—ଯାହାଙ୍କର ମନ ବଶୀଭୂତ ହୋଇଅଛି, ପ୍ରସାଦଂ—ଶାନ୍ତିକୁ, ଅଧିଗଚ୍ଛତି—ପାନ୍ତି । ୬୪ ।

ଅନୁବାଦ ।

ଇନ୍ଦ୍ରିୟମାନେ ମନର ବଶୀଭୂତ । ମନକୁ ବଶୀଭୂତ କରିଥିବା ବ୍ୟକ୍ତି ରାଗଦ୍ୱେଷହୀନ ହୋଇ ଇନ୍ଦ୍ରିୟଦ୍ୱାରା ବିଷୟ ଭୋଗ କଲେ ସୁଦ୍ଧା ଆତ୍ମପ୍ରସାଦରୂପ ଶାନ୍ତି ପ୍ରାପ୍ତ ହୁଅନ୍ତି । ୬୪ ।

ବିଶଦବ୍ୟାଖ୍ୟା ।

ମନକୁ ବଶୀଭୂତ ନ କରି କେବଳ ଇନ୍ଦ୍ରିୟ ଦମନ କଲେ ଯେଉଁ ୨ ଦୋଷ ହୁଏ ତାହା ପୂର୍ବ ଦୁଇ ଶ୍ଳୋକରେ ବୁଝାଇ ଦିଆ ଯାଇଅଛି । ବର୍ତ୍ତମାନ କେବଳ ମନ ବଶୀଭୂତ ହେଲେ ଅନ୍ୟ ଇନ୍ଦ୍ରିୟମାନେ ବଶୀଭୂତ ନ ହେଲେ ମଧ୍ୟ ଯେ କିଛି ଦୋଷ ହୁଏ ନାହିଁ ତାହା ବ୍ୟାଖ୍ୟା କରି ଯାଉଅଛି ।

ମନକୁ ବଶୀଭୂତ କରିଥିବା ବ୍ୟକ୍ତିର ଇନ୍ଦ୍ରିୟଦମନ କରିବାକୁ ଆଉ କିଛି କ୍ଳେଶ ହୁଏ ନାହିଁ, କାହିଁକି ନା ମନ ଇନ୍ଦ୍ରିୟମାନଙ୍କର ରାଜା—ସେ ବଶୀଭୂତ ହେଲେ ତାହାର ଅଧୀନସ୍ଥ ଇନ୍ଦ୍ରିୟମାନେ କି ଆଉ ବିରୋଧୀ ହେବେ ? ମନ ଅନୁରାଗ ଓ ବୈରଶୂନ୍ୟ ହେଲେ ଇନ୍ଦ୍ରିୟମାନେ ସେହିପରି ସ୍ନେହ ଓ ଶତ୍ରୁତାରହିତ ହେବେ; ଏପରି ବଶୀଭୂତ ଇନ୍ଦ୍ରିୟମାନଙ୍କଦ୍ୱାରା ମନଃସଂଯମିଲୋକ ଶାସ୍ତ୍ରବିହିତ ଖାଦ୍ୟ ବିଷୟ ଗ୍ରହଣ କରନ୍ତି ବୋଲି ତହିଁରେ ତାଙ୍କର କିଛିମାତ୍ର ଦୋଷ ହୁଏ ନାହିଁ, ବରଂ ତାହାଙ୍କର ଆତ୍ମଜ୍ଞାନରୂପ ପ୍ରସାଦ ବା ଶାନ୍ତିଲାଭ ହୁଏ ।

Digitized by PPRACHIN, SOA

ଏହିଠାରୁ ଆରମ୍ଭ କରି ଏ ଅଧ୍ୟାୟର ୭୧ ଶ୍ଳୋକ ଯାଏ ଅର୍ଜୁନଙ୍କର 'ବ୍ରଜେତ କିଂ' ଏହି ଚତୁର୍ଥ ପ୍ରଶ୍ନର ଉତ୍ତର ଦିଆ ଯାଉଅଛି । ୬୪ ।

ଶ୍ଳୋକଃ ।

ପ୍ରସାଦେ ସର୍ବଦୁଃଖାନାଂ, ହାନିରସ୍ୟୋପଜାୟତେ ।
ପ୍ରସନ୍ନଚେତସୋହ୍ୟାଶୁ, ବୁଦ୍ଧିଃ ପର୍ଯ୍ୟବତିଷ୍ଠତେ । ୬୫ ।

ଅନ୍ୱୟଃ ।

ପ୍ରସାଦେ (ସତି) ଅସ୍ୟ ସର୍ବଦୁଃଖାନାଂ ହାନିଃ ଉପଜାୟତେ ହି ପ୍ରସନ୍ନଚେତସୋବୁଦ୍ଧିଃ ଆଶୁ ପର୍ଯ୍ୟବତିଷ୍ଠତେ । ୬୫ ।

ଟୀକା ।

ପ୍ରସାଦେ ସତି କିଂସ୍ୟାଦିତ୍ୟାହ ପ୍ରସାଦ ଇତି । ପ୍ରସାଦେ ସତି ସର୍ବଦୁଃଖନାଶଃ ତତଶ୍ଚ ପ୍ରସନ୍ନଚେତସୋବୁଦ୍ଧିଃ ପ୍ରତିଷ୍ଠିତା ଭବତୀତ୍ୟର୍ଥଃ । ୬୫ ।

ପଦବ୍ୟାଖ୍ୟା ।

ପ୍ରସାଦେ—ପ୍ରସାଦ ଲାଭ ହେଲେ, ସର୍ବଦୁଃଖାନାଂ—ସମସ୍ତ ଦୁଃଖର, ହାନିଃ—ବିନାଶ, ଅସ୍ୟ—ଏହାଙ୍କର ଉପଜାୟତେ—ଉତ୍ପନ୍ନ ହୁଏ, ପ୍ରସନ୍ନଚେତସଃ—ଯାହାଙ୍କର ମନ ପ୍ରସାଦପ୍ରାପ୍ତ ହୋଇଅଛି, ହି—ନିଶ୍ଚୟ, ଆଶୁ—ଶୀଘ୍ର, ବୁଦ୍ଧିଃ—ମତି, ପର୍ଯ୍ୟବତିଷ୍ଠତେ—ପ୍ରତିଷ୍ଠିତ ହୁଏ । ୬୫ ।

ଅନୁବାଦ ।

ପ୍ରସନ୍ନତା ଜାତ ହେଲେ ସମସ୍ତ ଦୁଃଖ ବିନଷ୍ଟ ହୁଏ । ମନ ପ୍ରସନ୍ନ ଥିବା ବ୍ୟକ୍ତିଙ୍କର ବୁଦ୍ଧି ଶୀଘ୍ର ସ୍ଥିର ହୁଏ । ୬୫ ।

ବିଷଦବ୍ୟାଖ୍ୟା ।

ଚିତ୍ତ ପ୍ରସନ୍ନ ଅର୍ଥାତ୍ ନିର୍ମଳ ହେଲେ ସବୁ ପଦାର୍ଥର ପ୍ରକୃତ ପ୍ରତିବିମ୍ବ ତହିଁରେ ପଡେ ଅର୍ଥାତ୍ କେଉଁ ପଦାର୍ଥ ହିତକାରୀ, କିଏ ଅହିତକର, କିଏ ସତ୍ୟ, କିଏ ମିଥ୍ୟା ତାହା ଚିତ୍ତ ବୁଝି ପାରେ । ସୁତରାଂ କୌଣସି ପ୍ରକାର ଦୁଃଖକର ପଦାର୍ଥ ସେ ଗ୍ରହଣ କରେ ନାହିଁ । ଅତଏବ ତାହାର ସମସ୍ତ ଦୁଃଖ ବିନଷ୍ଟ ହୁଏ । ଆଉ ସେହି ନିର୍ମଳବୁଦ୍ଧି, ମାୟାଯୁକ୍ତ ପଦାର୍ଥରେ ଅରୁଚି ହେତୁରୁ ତାହା ଗ୍ରହଣ ନ କରି ଶୀଘ୍ର ଆତ୍ମାରେ ଅବସ୍ଥିତ କରେ । ୬୫ ।

ଶ୍ଳୋକଃ ।

* ନାସ୍ତି ବୁଦ୍ଧିରଯୁକ୍ତସ୍ୟ, ନ ଚାଯୁକ୍ତସ୍ୟ ଭାବନା ।
ନ ଚାଭାବୟତଃ ଶାନ୍ତି,ରଶାନ୍ତସ୍ୟ କୁତଃ ସୁଖଂ । ୬୬ ।

ଅନ୍ୱୟଃ ।

ଅଯୁକ୍ତସ୍ୟ ବୁଦ୍ଧିଃ ନାସ୍ତି, ଅଯୁକ୍ତସ୍ୟ ଭାବନା ଚ ନ (ଅସ୍ତି) । ଅଭାବୟତଃ ଶାନ୍ତିଃ ଚ ନ, ଅଶାନ୍ତସ୍ୟ ସୁଖଂ କୁତଃ । ୬୬ ।

ଟୀକା ।

ଇନ୍ଦ୍ରିୟଜୟସ୍ୟ ସ୍ଥିତପ୍ରଜ୍ଞତା ସାଧନତ୍ୱଂ ବ୍ୟତିରେକମୁଖେନୋପପାଦୟତି । ନାସ୍ତୀତି । ଅଯୁକ୍ତସ୍ୟାବଶୀକୃତେ-

ନ୍ଦ୍ରିୟସ୍ୟ ନାସ୍ତି ବୁଦ୍ଧିଃ ଶାସ୍ତ୍ରାଚାର୍ଯ୍ୟୋପଦେଶାଭ୍ୟାମାତ୍ମବିଷୟବୁଦ୍ଧିଃ ପ୍ରଜ୍ଞୈବ ନୋତ୍ପଦ୍ୟତେ, କୁତସ୍ତସ୍ୟାଃ ପ୍ରତିଷ୍ଠାବାର୍ତ୍ତା ଇତ୍ୟତ୍ରାହ ନ ଚେତି । ନ ଚାଯୁକ୍ତସ୍ୟ ଭାବନାଧ୍ୟାନଂ ଭାବନସ୍ତୁ ହି ବୁଦ୍ଧେର୍ଦୃଢ଼ତ୍ୱେନ ପ୍ରତିଷ୍ଠା ଭବତି ସା ଚାଯୁକ୍ତସ୍ୟ ଯତୋ ନାସ୍ତି ନ ଚାଭାବୟତଃ ଆତ୍ମଧ୍ୟାନମକୁର୍ବତଃ ଶାନ୍ତିରାତ୍ମନ ଉପରମଃ ଅଶାନ୍ତସ୍ୟ କୁତଃ ସୁଖଂ ମୋକ୍ଷାନନ୍ଦଃ ଇତ୍ୟର୍ଥଃ ।୬୬ ।

ପଦବ୍ୟାଖ୍ୟା ।

ନାସ୍ତି—ନାହିଁ, ବୁଦ୍ଧିଃ—ନିଶ୍ଚୟାତ୍ମିକା ବା ଆତ୍ମଜ୍ଞାନରୂପ ବୁଦ୍ଧି, ଅଯୁକ୍ତସ୍ୟ—ଧ୍ୟାନଯୋଗରହିତ ବ୍ୟକ୍ତିର ଅଥବା ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରି ପାରି ନ ଥିବା ବ୍ୟକ୍ତିର, ନ ଚ—ନାହିଁ, ଅଯୁକ୍ତସ୍ୟ—(ଉପରୋକ୍ତବ୍ୟକ୍ତିର); ଭାବନା—ଧ୍ୟାନ, ନ ଚ—ନାହିଁ, ଅଭାବୟତଃ—ଧ୍ୟାନ ନ କରୁଥିବା ବ୍ୟକ୍ତିର, ଶାନ୍ତିଃ—ଆତ୍ମାରେ ଚିତ୍ତର ନିବୃତ୍ତି ଅର୍ଥାତ୍ ବିଷୟାନ୍ତରରେ ପ୍ରବୃତ୍ତ ନ ହୋଇ ଆତ୍ମନିଷ୍ଠ ହେବାରୂପ ସୁଖ, ଅଶାନ୍ତସ୍ୟ—ଶାନ୍ତିହୀନ ପୁରୁଷର, କୁତଃ ସୁଖଂ—ମୋକ୍ଷାନନ୍ଦରୂପ ସୁଖ କେଉଁଠାରୁ ହେବ ? । ୬୬ ।

ଅନୁବାଦ ।

ଇନ୍ଦ୍ରିୟ ବଶ କରି ପାରି ନ ଥିବା ବ୍ୟକ୍ତିର ବୁଦ୍ଧି ନାହିଁ ଓ ତାହାର ଆତ୍ମଭାବନା ମଧ୍ୟ ନାହିଁ । ଆତ୍ମଭାବନା ନ କରିବା ବ୍ୟକ୍ତିର ଶାନ୍ତି ନାହିଁ ଆଉ ଶାନ୍ତି ନ ଥିବା ବ୍ୟକ୍ତିର ସୁଖ ବା କେଉଁଠାରୁ ହେବ ? । ୬୬ ।

ବିଶଦବ୍ୟାଖ୍ୟା ।

ଇନ୍ଦ୍ରିୟମାନଙ୍କର ନେତା ମନକୁ ଜୟ କରି ନ ପାରିଲେ ଶ୍ରବଣ-ମନନରୂପ ବେଦାନ୍ତ-ବାକ୍ୟର ବୁଦ୍ଧିର ଉଦୟ ହୁଏ ନାହିଁ, ଏ ପ୍ରକାର ବୁଦ୍ଧି ନ ଥିଲେ ଧ୍ୟାନ ବା ଆତ୍ମଭାବନା ହୁଏ ନାହିଁ । ଧ୍ୟାନଶୂନ୍ୟ ବ୍ୟକ୍ତିର ବ୍ରହ୍ମସାକ୍ଷାତ୍କାରରୂପ ଶାନ୍ତିଲାଭ ହୁଏ ନାହିଁ । ଶାନ୍ତିହୀନ-ପୁରୁଷର ବ୍ରହ୍ମାନନ୍ଦରୂପ ସୁଖ କେଉଁଠାରୁ ହେବ ? ।୬୬ ।

ଶ୍ଳୋକଃ ।

* ଇନ୍ଦ୍ରିୟାଣାଂ ହି ଚରତାଂ, ଯନ୍ମନୋଽନୁବିଧୀୟତେ ।
ତଦସ୍ୟ ହରତି ପ୍ରଜ୍ଞାଂ, ବାୟୁର୍ନାବମିବାମ୍ଭସି । ୬୭ ।

ଅନ୍ୱୟଃ ।

ହି ଚରତାଂ ଇନ୍ଦ୍ରିୟାଣାଂ ଯତ୍ ମନଃ ଅନୁବିଧୀୟତେ ତତ୍ ଅମ୍ଭସି ନାବଂ ବାୟୁଃ ଇବ ଅସ୍ୟ ପ୍ରଜ୍ଞାଂ ହରତି । ୬୭ ।

ଟୀକା ।

ନାସ୍ତି ବୁଦ୍ଧିରଯୁକ୍ତସ୍ୟେତ୍ୟତ୍ର ହେତୁମାହ ଇନ୍ଦ୍ରିୟାଣାମିତି । ଇନ୍ଦ୍ରିୟାଣାମବଶୀକୃତାନାଂ ସ୍ୱୈରଂ ବିଷୟେଷୁ ଚରତାଂ ମଧ୍ୟେ ଯଦେକମିନ୍ଦ୍ରିୟଂ ମନୋଽନୁବିଧୀୟତେ ଅବଶୀକୃତଂ ସଦିନ୍ଦ୍ରିୟେଣ ସହ ଗଚ୍ଛତି ତଦେକମିନ୍ଦ୍ରିୟମସ୍ୟ ମନସଃ ପୁରୁଷସ୍ୟ ବା ପ୍ରଜ୍ଞାଂ ହରତି ବିଷୟବିକ୍ଷିପ୍ତାଂ କରୋତି । କିମୁ ବକ୍ତବ୍ୟଂ ବହୂନି ପ୍ରଜ୍ଞାଂ ହରନ୍ତୀତି ଯଥା ପ୍ରମତ୍ତସ୍ୟ କର୍ଣ୍ଣଧାରସ୍ୟ ନାବଂ ବାୟୁଃ ସମୁଦ୍ରେ ସର୍ବତଃ ପରିଭ୍ରାମୟତି ତଦ୍ୱଦିତି । ୬୭ ।

ପଦବ୍ୟାଖ୍ୟା ।

ଇନ୍ଦ୍ରିୟାଣାଂ—ବଶୀଭୂତ ନୋହିଥିବା ଇନ୍ଦ୍ରିୟମାନଙ୍କ ମଧ୍ୟରେ, ହି—ନିଶ୍ଚୟ, ଚରତାଂ—ଆପଣା ବିଷୟରେ ବିଚରଣ କରୁଥିବା, ଯନ୍ମନଃ ଅନୁବିଧୀୟତେ—ଯାହାକୁ ମନ ଅନୁଗମନ କରେ, ତତ୍—ସେହି ଇନ୍ଦ୍ରିୟ, ଅସ୍ୟ—ଏହି ବ୍ୟକ୍ତିର, ହରତି—ହରଣ କରେ, ପ୍ରଜ୍ଞାଂ—ବୁଦ୍ଧିକୁ, ବାୟୁଃ—ପବନ, ନାବମିବ—ନୌକାତୁଲ୍ୟ, ଅମ୍ଭସି—ଜଳରେ । ୬୭ ।

ଅନୁବାଦ ।

ଯାହାର ମନ ସ୍ୱେଚ୍ଛାଗ୍ରସ୍ତ ଇନ୍ଦ୍ରିୟମାନଙ୍କ ମଧ୍ୟରୁ କୌଣସି ଗୋଟିକର ଅନୁଗମନ କରେ ତାହାର ବୁଦ୍ଧିକୁ ସେହି ଇନ୍ଦ୍ରିୟ ହରଣ କରେ । ଯେପରି ବାୟୁ ଜଳସ୍ଥିତ ନୌକାକୁ ସ୍ଥାନାନ୍ତରକୁ ଘେନିଯାଏ । ୬୭ ।

ବିଶଦବ୍ୟାଖ୍ୟା ।

ଇନ୍ଦ୍ରିୟକୁ ବଶ କରି ପାରି ନ ଥିବା ବ୍ୟକ୍ତିର ବୁଦ୍ଧି ନାହିଁ ବୋଲି ଯେ ପୂର୍ବଶ୍ଳୋକରେ କୁହା ଯାଇଥିଲା ତାହାର କାରଣ ଏ ଶ୍ଳୋକରେ ବୁଝାଇ ଦିଆ ଯାଉଅଛି । ବଶ ନୋହିଥିବା ମନ ଯଦି ଗୋଟିଏ ମାତ୍ର ସ୍ୱେଚ୍ଛାଗ୍ରସ୍ତ ଇନ୍ଦ୍ରିୟକୁ ଅବଲମ୍ବନ କରି ଚଳେ ତାହାହେଲେ ସେହି ଇନ୍ଦ୍ରିୟ ତାହାର ବୁଦ୍ଧିକୁ ହରଣ କରେ ଅର୍ଥାତ୍ ଆତ୍ମଜ୍ଞାନ ଲାଭର ପ୍ରକୃତ ମାର୍ଗରେ ଚଳାଇ ଦିଏ ନାହିଁ । ଯେପରି ପବନ ଅସାବଧାନ ନାବିକର ନୌକାକୁ ଏଆଡେ ସେଆଡେ ଘେନିଯାଏ । ଗୋଟିଏ ସ୍ୱେଚ୍ଛାଗ୍ରସ୍ତ ଇନ୍ଦ୍ରିୟକୁ ମନ ଅବଲମ୍ବନ କଲେତ ଏପରି ଦଶା ହୁଏ ଯେଉଁମାନଙ୍କର ସମସ୍ତ ଇନ୍ଦ୍ରିୟମାନେ ସ୍ୱେଚ୍ଛାଗ୍ରସ୍ତ ଓ ମନ ସେହି ଇନ୍ଦ୍ରିୟମାନଙ୍କୁ ଆଶ୍ରୟ କରି ଚଳେ ତାଙ୍କର ଦଶା ଯେ କି ଭୟଜନକ ତାହା ସହଜରେ ବୁଝା ଯାଇପାରେ । ୬୭ ।

ଶ୍ଳୋକଃ ।

* ତସ୍ମାଦ୍ୟସ୍ୟ ମହାବାହୋ, ନିଗୃହୀତାନି ସର୍ବଶଃ ।
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଭ୍ୟସ୍ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୬୮ ।

ଅନ୍ୱୟଃ ।

ହେ ମହାବାହୋ ! ତସ୍ମାତ୍ ଯସ୍ୟ ଇନ୍ଦ୍ରିୟାଣି ଇନ୍ଦ୍ରିୟାର୍ଥେଭ୍ୟଃ ସର୍ବଶଃ ନିଗୃହୀତାନି, ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା । ୬୮ ।

ଟୀକା ।

* ଇନ୍ଦ୍ରିୟସଂଯମସ୍ୟ ସ୍ଥିତପ୍ରଜ୍ଞତ୍ୱେ ସାଧନତ୍ୱଂ ଲକ୍ଷଣତ୍ୱଂ ଚୈକ୍ରମୁପସଂହରତି ତସ୍ମାଦିତି । ସାଧକତ୍ୱୋପସଂହାରେ ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ଭବତୀତ୍ୟର୍ଥଃ । ଲକ୍ଷଣତ୍ୱୋପସଂହାରେ ତସ୍ୟ ପ୍ରଜ୍ଞା ପ୍ରତିଷ୍ଠିତା ଜ୍ଞାତବ୍ୟେତ୍ୟର୍ଥଃ । ମହାବାହୋ ଇତି ସମ୍ବୋଧୟନ୍ ବୈରିନିଗ୍ରହେ ସମର୍ଥସ୍ୟ ତବାତ୍ରାପି ସାମର୍ଥ୍ୟଂ ଭବେଦିତି ସୂଚୟତି । ୬୮ ।

ପଦବ୍ୟାଖ୍ୟା ।

ତସ୍ମାତ୍—ସେହି କାରଣରୁ, ଯସ୍ୟ—ଯାହାଙ୍କର, ମହାବାହୋ—ହେ ଆଜାନୁଲମ୍ବି ଭୁଜ !, ନିଗୃହୀତାନି—ବଶୀଭୂତ, ସର୍ବଶଃ—ସବୁ, ଇନ୍ଦ୍ରିୟାଣି—ମନସହିତ ଇନ୍ଦ୍ରିୟମାନେ, ଇନ୍ଦ୍ରିୟାର୍ଥେଭ୍ୟଃ—ଇନ୍ଦ୍ରିୟମାନଙ୍କ ବିଷୟରୁ, ତସ୍ୟ—ତାହାଙ୍କର, ପ୍ରଜ୍ଞା—ବୁଦ୍ଧି, ପ୍ରତିଷ୍ଠିତା—ଖ୍ୟାତିପ୍ରାପ୍ତ ଅଟେ । ୬୮ ।

ଅନୁବାଦ ।

ସେହି (ପୂର୍ବୋକ୍ତ) କାରଣରୁ ହେ ମହାବାହୋ ! ଯାହାଙ୍କର ସମସ୍ତ ଇନ୍ଦ୍ରିୟମାନେ ଆପଣା୨ ବିଷୟମାନଙ୍କରୁ ନିବୃତ୍ତ ହୋଇଅଛନ୍ତି, ତାହାଙ୍କର ବୁଦ୍ଧି ପ୍ରତିଷ୍ଠିତ ଅର୍ଥାତ୍ ସେ ସ୍ଥିରବୁଦ୍ଧି ଅଟନ୍ତି । ୬୮ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଯାହାଙ୍କର ମନ ଓ ଇନ୍ଦ୍ରିୟମାନେ ସମ୍ପୂର୍ଣ୍ଣରୂପେ ଆପଣା ଆପଣା ବିଷୟରୁ ନିବୃତ୍ତ, ସେହି ସିଦ୍ଧବ୍ୟକ୍ତିଙ୍କର ଆତ୍ମବିଷୟକ ବୁଦ୍ଧି ସ୍ଥିର ଅଟେ ଓ ଯେଉଁ ମୋକ୍ଷାଭିଳାଷିବ୍ୟକ୍ତି ମନର ସହିତ ସମସ୍ତ ଇନ୍ଦ୍ରିୟମାନଙ୍କୁ ସମ୍ପୂର୍ଣ୍ଣରୂପେ ନିଗ୍ରହ କରି ପାରିବେ ତାଙ୍କର ବୁଦ୍ଧି ସ୍ଥିର ହେବ ।

ଏ ଶ୍ଳୋକରେ "ମହାବାହୋ" ସମ୍ବୋଧନଦ୍ୱାରା ଏହି କଥା ସୂଚିତ ହେଉଅଛି, ଯେ ତୁମ୍ଭର ବୈରିଜୟ କରିବାର କ୍ଷମତା ଥିବାରୁ ଇନ୍ଦ୍ରିୟଦମନରେ ଓ ବୁଦ୍ଧି ସ୍ଥିର କରିବାରେ ମଧ୍ୟ ସାମର୍ଥ୍ୟ ହେବ । ୬୮ ।

ଶ୍ଳୋକଃ ।

* ଯା ନିଶା ସର୍ବଭୂତାନାଂ, ତସ୍ୟାଂ ଜାଗର୍ତ୍ତି ସଂଯମୀ ।
ଯସ୍ୟାଂ ଜାଗ୍ରତି ଭୂତାନି, ସା ନିଶା ପଶ୍ୟତୋମୁନେଃ । ୬୯ ।

ଅନ୍ୱୟଃ ।

ସର୍ବଭୂତାନାଂ ଯା ନିଶା, ସଂଯମୀ ତସ୍ୟାଂ ଜାଗର୍ତ୍ତି । ଯସ୍ୟାଂ ସର୍ବଭୂତାନି ଜାଗ୍ରତି, ପଶ୍ୟତଃ ମୁନେଃ ସା ନିଶା । ୬୯ ।

ଟୀକା ।

ନନୁ କ କଶ୍ଚିଦପି ପ୍ରସୁପ୍ତ ଇବ ଦର୍ଶନାଦିବ୍ୟାପାରଶୂନ୍ୟଃ ସର୍ବାତ୍ମନା ନିଗୃହୀତେନ୍ଦ୍ରିୟୋ ଲୋକେ ଦୃଶ୍ୟତେ, ଅତୋଽସମ୍ଭାବିତମିଦଂ ଲକ୍ଷଣମିତ୍ୟାଶଙ୍କ୍ୟାହ, ଯା ନିଶେତି । ସର୍ବେଷାଂ ଭୂତାନାଂ ଯା ନିଶା ନିଶେବ ନିଶା ଆତ୍ମନିଷ୍ଠା ଅଜ୍ଞାନଧ୍ୱାନ୍ତାବୃତମତୀନାଂ ତସ୍ୟାଂ ଦର୍ଶନାଦିବ୍ୟାପାରାଭାବାତ୍ ତସ୍ୟାମାତ୍ମନିଷ୍ଠାୟାଂ ସଂଯମୀ ନିଗୃହୀତେନ୍ଦ୍ରିୟୋ ଜାଗର୍ତ୍ତି ପ୍ରବୁଧ୍ୟତେ ଯସ୍ୟାନ୍ତୁ ବିଷୟନିଷ୍ଠାୟାଂ ଭୂତାନି ଜାଗ୍ରତି ପ୍ରବୁଧ୍ୟନ୍ତେ ସା ଆତ୍ମତତ୍ତ୍ୱଂ ପଶ୍ୟତୋମୁନେର୍ନିଶା ତସ୍ୟାଂ ଦର୍ଶନାଦିବ୍ୟାପାରସ୍ତସ୍ୟ ନାସ୍ତୀତ୍ୟର୍ଥଃ । ଏତଦୁକ୍ତଂ ଭବତି ଯଥା ଦିବାନ୍ଧାନାମୁଲୂକାଦୀନାଂ ରାତ୍ରାବେବ ଦର୍ଶନଂ ନତୁ ଦିବସେ ଏବ ବ୍ରହ୍ମକସ୍ୟୋନ୍ମୀଲିତାକ୍ଷସ୍ୟାପି ବ୍ରହ୍ମଣ୍ୟେବ ଦୃଷ୍ଟିର୍ନତୁ ବିଷୟେଷୁ ଅତୋନାସମ୍ଭାବିତମିଦଂ ଲକ୍ଷଣମିତି । ୬୯ ।

ପଦବ୍ୟାଖ୍ୟା ।

ଯା—ଯେ, ନିଶା—ରାତ୍ରି, ସର୍ବଭୂତାନାଂ—ସମସ୍ତପ୍ରାଣିମାନଙ୍କର, ତସ୍ୟାଂ—ସେହି ରାତ୍ରିରେ, ଜାଗର୍ତ୍ତି—ଜାଗ୍ରତ ଥାନ୍ତି, ସଂଯମୀ—ଜିତେନ୍ଦ୍ରିୟବ୍ୟକ୍ତି, ଯସ୍ୟାଂ—ଯହିଁରେ, ଜାଗ୍ରତି—ଜାଗ୍ରତ ହୁଅନ୍ତି, ଭୂତାନି—ପ୍ରାଣିମାନେ, ସା—ସେହି, ନିଶା—ରାତ୍ରି, ପଶ୍ୟତଃ—ଦେଖୁଥିବା, ମୁନେଃ—ମୁନିଙ୍କର । ୬୯ ।

ଅନୁବାଦ ।

ଅବିବେକିପ୍ରାଣିମାନଙ୍କର ଯାହା ରାତ୍ରିସ୍ୱରୂପ ଅର୍ଥାତ୍ ଅନ୍ଧକାରମୟ, ଜିତେନ୍ଦ୍ରିୟବ୍ୟକ୍ତି ତହିଁରେ ଜାଗ୍ରତ ଥାନ୍ତି । ଆଉ ଅବିବେକିପ୍ରାଣିମାନେ ଯହିଁରେ ଜାଗ୍ରତ ଥାନ୍ତି ଆତ୍ମଦର୍ଶିବ୍ୟକ୍ତିପକ୍ଷରେ ତାହା ରାତ୍ରିସ୍ୱରୂପ ଅଟେ । ୬୯ ।

ବିଶଦବ୍ୟାଖ୍ୟା ।

ଏପରି ଆଶଙ୍କା ହୋଇପାରେ, ଯେ ଚକ୍ଷୁ କର୍ଣ୍ଣ ପ୍ରଭୃତି ଇନ୍ଦ୍ରିୟ ଆଉ ଆଉ ଦର୍ଶନ, ଶ୍ରବଣ ଆଦି ବ୍ୟାପାରଶୂନ୍ୟ ମନୁଷ୍ୟ ଏ ସଂସାରରେ ଦୁର୍ଲ୍ଲଭ । ତେବେ ସମସ୍ତ ଇନ୍ଦ୍ରିୟଙ୍କୁ ସଂଯତ କରିବା ଅସମ୍ଭବ । ସେହି ଆଶଙ୍କା ନିବାରଣ ପାଇଁ ଶ୍ରୀଭଗବାନ୍ କହିଲେ, କି ଆତ୍ମନିଷ୍ଠା ଅବି-

Digitized by PPRACHIN, SOA

ବେଦଜ୍ଞପ୍ରାଣିମାନଙ୍କ ପକ୍ଷରେ ରାତ୍ରିସ୍ୱରୂପ ଅର୍ଥାତ୍ ରାତ୍ରିରେ ଅନ୍ଧକାର ହେତୁ ଯେପରି ଲୋକମାନେ ଗମନାଗମନ ବା ଦର୍ଶନାଦି କରି ପାରନ୍ତି ନାହିଁ, ସେହିପରି ଆତ୍ମନିଷ୍ଠାରୂପ ବ୍ୟାପାରରେ ଅବିବେକିବ୍ୟକ୍ତିମାନେ କିଛି ଦେଖି ପାରନ୍ତି ନାହିଁ କି ଗତିବିଧି କରି ପାରନ୍ତି ନାହିଁ, ମାତ୍ର ସଂଯମୀ ଅର୍ଥାତ୍ ଜିତେନ୍ଦ୍ରିୟ ବ୍ୟକ୍ତି ଅବିବେକିମାନଙ୍କର ରାତ୍ରିସ୍ୱରୂପ ଆତ୍ମନିଷ୍ଠାରେ ଜାଗ୍ରତ ଥାଇ ଆତ୍ମନିଷ୍ଠାସମ୍ବନ୍ଧୀୟ ସମସ୍ତ କର୍ମ ଅକ୍ଳେଶରେ ସମ୍ପାଦନ କରନ୍ତି । ଅବିବେକିବ୍ୟକ୍ତିମାନେ ଯହିଁରେ ଜାଗ୍ରତ ଥାନ୍ତି ଅର୍ଥାତ୍ ଯେଉଁ ବିଷୟବ୍ୟାପାରରେ ସର୍ବଦା ରତ ଥାନ୍ତି, ଆତ୍ମତତ୍ତ୍ୱଦର୍ଶୀ ମୁନିଙ୍କ ପକ୍ଷରେ ତାହା ରାତ୍ରିସ୍ୱରୂପ ଅର୍ଥାତ୍ ସେ ସେହି ବିଷୟବ୍ୟାପାରରୁ ନିବୃତ୍ତ ଥାନ୍ତି । ଫଳକଥା ଏହି କି ସେ ସର୍ବଦା ଆତ୍ମତତ୍ତ୍ୱ ଚିନ୍ତାରେ ରତ ଥିବାରୁ ବିଷୟବ୍ୟାପାର ତାଙ୍କୁ କିଛି ମାତ୍ର ଦିଶେ ନାହିଁ । ୬୯ ।

## ଶ୍ଳୋକଃ ।

* ଆପୂର୍ଯ୍ୟମାଣମଚଳପ୍ରତିଷ୍ଠଂ, ସମୁଦ୍ରମାପଃ ପ୍ରବିଶନ୍ତି ଯଦ୍ୱତ୍ ।
ତଦ୍ୱତ୍ କାମା ଯଂ ପ୍ରବିଶନ୍ତି ସର୍ବେ, ସ ଶାନ୍ତିମାପ୍ନୋତି ନ କାମକାମୀ । ୭୦ ।

## ଅନ୍ୱୟଃ ।

ଯଦ୍ୱତ୍ ଆପୂର୍ଯ୍ୟମାଣଂ ଅଚଳପ୍ରତିଷ୍ଠଂ ସମୁଦ୍ରଂ ଆପଃ ପ୍ରବିଶନ୍ତି ତଦ୍ୱତ୍ ଯଂ ସର୍ବେ କାମାଃ ପ୍ରବିଶନ୍ତି ସଃ ଶାନ୍ତିଂ ଆପ୍ନୋତି, କାମକାମୀ ନ । ୭୦ ।

## ଟୀକା ।

ନନୁ ବିଷୟେଷୁ ଦୃଶ୍ୟମାନେଷୁ କଥମସୌ ତାନ୍ ଭୁଙ୍କ୍ତେ ଇତ୍ୟପେକ୍ଷାୟାମାହ, ଆପୂର୍ଯ୍ୟମାଣମିତି । ନାନା ନଦୀନଦୀଭିରାପୂର୍ଯ୍ୟମାଣମପ୍ୟଚଳପ୍ରତିଷ୍ଠମନତିକ୍ରାନ୍ତମର୍ଯ୍ୟାଦମେବ ସମୁଦ୍ରଂ ପୁନରପ୍ୟନ୍ୟା ଆପୋ ଯଥା ପ୍ରବିଶନ୍ତି, ତଥା କାମା ବିଷୟାଃ ଯଂ ମୁନିମନ୍ତର୍ଦୃଷ୍ଟିଂ ଭୋଗୈରବିକ୍ରିୟମାଣମେବ ପ୍ରାରବ୍ଧକର୍ମଭିରାକ୍ଷିପ୍ତାଃ ସନ୍ତଃ ପ୍ରବିଶନ୍ତି ସ ଶାନ୍ତିଂ କୈବଲ୍ୟଂ ପ୍ରାପ୍ନୋତି ନ ତୁ କାମକାମୀ—ଭୋଗକାମନାଶୀଳଃ । ୭୦ ।

## ପଦବ୍ୟାଖ୍ୟା ।

ଆପୂର୍ଯ୍ୟମାଣଂ—ପୂର୍ଣ୍ଣ ହୋଇଥିବା, ଅଚଳପ୍ରତିଷ୍ଠଂ—ମର୍ଯ୍ୟାଦା ଅତିକ୍ରମ କରି ନ ଥିବା, ସମୁଦ୍ରଂ—ସାଗରକୁ, ଆପଃ—ଜଳ, ପ୍ରବିଶନ୍ତି—ପ୍ରବେଶ କରେ, ଯଦ୍ୱତ୍—ଯେପରି, ତଦ୍ୱତ୍—ସେହିପରି, କାମାଃ—ଇନ୍ଦ୍ରିୟମାନଙ୍କର ବିଷୟ ଓ ଭୋଗକାମନା ସବୁ, ଯଂ—ଯେଉଁ ବ୍ୟକ୍ତିଙ୍କୁ, ପ୍ରବିଶନ୍ତି—(ପ୍ରାରବ୍ଧ ହେତୁରୁ) ପ୍ରାପ୍ତ ହୁଅନ୍ତି, ସର୍ବେ—ସମସ୍ତ, ସଃ—ସେହି ବ୍ୟକ୍ତି, ଶାନ୍ତିଂ—ମୁକ୍ତିକୁ, ଆପ୍ନୋତି—ପ୍ରାପ୍ତ ହୁଅନ୍ତି, ନ କାମକାମୀ—ଭୋଗ କାମନା କରୁଥିବା ବ୍ୟକ୍ତି ପ୍ରାପ୍ତ ହୁଏ ନାହିଁ । ୭୦ ।

## ଅନୁବାଦ ।

ପରିପୂର୍ଣ୍ଣ ସମୁଦ୍ରରେ ଅନ୍ୟ ଜଳ ପ୍ରବେଶ କଲେ ସୁଦ୍ଧା, ସେ କୂଳ ଲଙ୍ଘେ ନାହିଁ, ସେହିପରି ଇନ୍ଦ୍ରିୟଭୋଗ୍ୟ ବିଷୟସବୁ ପ୍ରାରବ୍ଧବଶରୁ ପ୍ରାପ୍ତ ହେଲେ ସୁଦ୍ଧା ଯେଉଁ ବ୍ୟକ୍ତି ବିଚଳିତ ନ ହୁଅନ୍ତି ସେ ଶାନ୍ତି ଲାଭ କରନ୍ତି, ମାତ୍ର ଭୋଗାଭିଲାଷୀ ବ୍ୟକ୍ତି ସେ ଶାନ୍ତି ପ୍ରାପ୍ତ ହୁଏ ନାହିଁ । ୭୦ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ନଦନଦୀମାନଙ୍କ ଜଳଧାରା ପରିପୂର୍ଣ୍ଣ ସମୁଦ୍ରରେ ବର୍ଷାର ଧାରା ପଡ଼ିଲେ ମଧ୍ୟ ସେ ଯେପ୍ରକାର ସୀମା ଲଙ୍ଘେ ନାହିଁ ବା ଚଞ୍ଚଳ ହୁଏ ନାହିଁ, ସେହିପରି ପ୍ରାରବ୍ଧବଶରୁ ଭୋଗ ସବୁ ଆତ୍ମଜ୍ଞାନିବ୍ୟକ୍ତିଙ୍କୁ ମିଳିଲେ ସୁଦ୍ଧା ତାଙ୍କର ମନ ଚଞ୍ଚଳ ହୁଏ ନାହିଁ, ସୁତରାଂ ସେ ଶାନ୍ତି-ସୁଖ ଭୋଗ କରନ୍ତି, ମାତ୍ର ଯେଉଁ ବ୍ୟକ୍ତି ଭୋଗ କାମନା କରେ ସେ ଏପରି ଶାନ୍ତି ପାଇ ପାରେ ନାହିଁ । ୭୦ ।

ଶ୍ଲୋକଃ ।

ବିହାୟ କାମାନ୍ ଯଃ ସର୍ବାନ୍, ପୁମାଂଶ୍ଚରତି ନିସ୍ପୃହଃ ।
ନିର୍ମମୋ ନିରହଂକାରଃ, ସ ଶାନ୍ତିମଧିଗଚ୍ଛତି । ୭୧ ।

ଅନ୍ୱୟଃ ।

ଯଃ ପୁମାନ୍ ସର୍ବାନ୍ କାମାନ୍ ବିହାୟ ନିସ୍ପୃହଃ ସନ୍ ଚରତି ନିର୍ମମଃ ନିରହଙ୍କାରଃ ସଃ ଶାନ୍ତିଂ ଅଧିଗଚ୍ଛତି । ୭୧ ।

ଟୀକା ।

ଯସ୍ମାଦେବଂ ତସ୍ମାଦ୍ବିହାୟେତି । ପ୍ରାପ୍ତାନ୍ କାମାନ୍ ବିହାୟ ତ୍ୟକ୍ତ୍ୱା ଉପେକ୍ଷ୍ୟ ଅପ୍ରାପ୍ତେଷୁ ଚ ନିସ୍ପୃହଃ ଯତୋନିର-ହଙ୍କାରଃ, ଅତଏବ ତଦ୍ଭୋଗସାଧନେଷୁ ନିର୍ମମଃ ସନ୍ନନ୍ତର୍ଦୃଷ୍ଟିର୍ଭୂତ୍ୱା ଯଶ୍ଚରତି ପ୍ରାରବ୍ଧବଶେନ ଭୋଗାନ୍ ଭୁଂକ୍ତେ ଯତ୍ର-କୁତ୍ରାପି ଗଚ୍ଛତି ବା ସ ଶାନ୍ତିଂ ପ୍ରାପ୍ନୋତି । ୭୧ ।

ପଦବ୍ୟାଖ୍ୟା ।

ବିହାୟ—ତ୍ୟାଗକରି, କାମାନ୍—କାମନାମାନଙ୍କୁ, ଯଃ—ଯେଉଁ, ସର୍ବାନ୍—ସମସ୍ତ, ପୁମାନ୍—ପୁରୁଷ, ଚରତି—ଭ୍ରମଣ କରନ୍ତି, ନିସ୍ପୃହଃ—ବାଞ୍ଛାଶୂନ୍ୟ, ନିର୍ମମଃ—ମମତାରହିତ, ନିରହଙ୍କାରଃ—ଅହଙ୍କାରରହିତ, ସଃ—ସେହି ବ୍ୟକ୍ତି, ଶାନ୍ତିଂ—ମୁକ୍ତିକୁ, ଅଧିଗଚ୍ଛତି—ପ୍ରାପ୍ତ ହୁଅନ୍ତି । ୭୧ ।

ଅନୁବାଦ ।

ଯେଉଁ ପୁରୁଷ ସମସ୍ତ କାମନା ପରିତ୍ୟାଗପୂର୍ବକ ନିସ୍ପୃହ ଅର୍ଥାତ୍ ଅଭିଲାଷଶୂନ୍ୟ ଏବଂ ମମତା ଓ ଅହଙ୍କାରରହିତ ହୋଇ ବିଷୟ ଭୋଗ କରନ୍ତି ସେ ଶାନ୍ତି ପ୍ରାପ୍ତ ହୁଅନ୍ତି । ୭୧ ।

ବିଶଦବ୍ୟାଖ୍ୟା ।

ଯେଉଁ ପୁରୁଷ ଇନ୍ଦ୍ରିୟଜନିତ ସୁଖର ଅଭିଳାଷୀ ନୁହନ୍ତି ଓ ପ୍ରାରବ୍ଧବଶରୁ ଇନ୍ଦ୍ରିୟ-ସୁଖକର ଭୋଗ୍ୟପଦାର୍ଥ ପ୍ରାପ୍ତ ହେଲେ ସୁଦ୍ଧା ଆସକ୍ତି ଅଭାବରୁ ସହଜରେ ତ୍ୟାଗ କରିପାରନ୍ତି, ଯାହାଙ୍କର ଦେହରେ ମମତା ନାହିଁ ଓ ଯାହାଙ୍କର ଦେହରେ ଆତ୍ମାଭିମାନ ନାହିଁ, ସେହି ସୁବୁଦ୍ଧି ପୁରୁଷ ଅବିଦ୍ୟାନିବୃତ୍ତିରୂପ ଶାନ୍ତି ଅର୍ଥାତ୍ ମୁକ୍ତି ଲାଭ କରନ୍ତି ।

ଏପର୍ଯ୍ୟନ୍ତ ସ୍ଥିତପ୍ରଜ୍ଞ ପୁରୁଷଙ୍କର ଲକ୍ଷଣ କୁହାଗଲା ଅର୍ଥାତ୍ ସ୍ଥିରବୁଦ୍ଧି ବ୍ୟକ୍ତି କିପରି ବିଷୟରେ ଲିପ୍ତ ଥାନ୍ତି, ତାହା ଏହି ଅଧ୍ୟାୟର ୬୪ ଶ୍ଲୋକଠାରୁ ଏପର୍ଯ୍ୟନ୍ତ ବୁଝାଇ ଦିଆଗଲା । ମୁମୁକ୍ଷୁ ବ୍ୟକ୍ତିଙ୍କର ଏ ସବୁ ଲକ୍ଷଣ ଅଭ୍ୟାସ କରିବା ଉଚିତ । ୭୧ ।

Digitized by PPRACHIN, SOA

ଶ୍ଳୋକଃ ।

ଏଷା ବ୍ରାହ୍ମୀ ସ୍ଥିତିଃ ପାର୍ଥ, ନୈନାଂ ପ୍ରାପ୍ୟ ବିମୁହ୍ୟତି ।
ସ୍ଥିତ୍ୱାସ୍ୟାମନ୍ତକାଲେଽପି, ବ୍ରହ୍ମନିର୍ବାଣମୃଚ୍ଛତି । ୭୨ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀମଦ୍ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସମ୍ବାଦେ ସାଂଖ୍ୟଯୋଗୋ ନାମ ଦ୍ୱିତୀୟୋଽଧ୍ୟାୟଃ ।

ଅନ୍ୱୟଃ ।

ହେ ପାର୍ଥ ! ଏଷା ବ୍ରାହ୍ମୀ ସ୍ଥିତିଃ ଏନାଂ ପ୍ରାପ୍ୟ ( ନରଃ ) ନ ବିମୁହ୍ୟତି, ଅସ୍ୟାଂ ଅନ୍ତକାଲେ ଅପିସ୍ଥିତ୍ୱା ବ୍ରହ୍ମନିର୍ବାଣ ଋଚ୍ଛତି । ୭୨ ।

ଇତି ଶ୍ରୀଭଗବଦ୍‌ଗୀତା ଅନ୍ୱୟେ ଦ୍ୱିତୀୟୋଽଧ୍ୟାୟଃ ।

ଟୀକା ।

ଉକ୍ତାଂ ଜ୍ଞାନନିଷ୍ଠାଂ ସ୍ତୁବନ୍ନୁପସଂହରତି । ଏଷେତି । ବ୍ରାହ୍ମୀ ସ୍ଥିତିଃ ବ୍ରହ୍ମଜ୍ଞାନେ ନିଷ୍ଠା ଏଷା, ଏବଂବିଧା, ଏନାଂ ପରମେଶ୍ୱରାରାଧନେନ ବିଶୁଦ୍ଧାନ୍ତଃକରଣଃ ପୁମାନ୍ ପ୍ରାପ୍ୟ ନ ବିମୁହ୍ୟତି, ପୁନଃ ସଂସାରମୋହଂ ନ ପ୍ରାପ୍ନୋତି,ଯତୋଽନ୍ତ୍ୟେଽପିକାଲେ ମୃତ୍ୟୁସମୟେଽପି ଅସ୍ୟାଂ କ୍ଷଣମାତ୍ରଂ ସ୍ଥିତ୍ୱା ବ୍ରହ୍ମନିର୍ବାଣଂ ବ୍ରହ୍ମଣି ଲୟମୃଚ୍ଛତି, ପ୍ରାପ୍ନୋତି କିଂ ପୁନର୍ବକ୍ତବ୍ୟଂ ବାଲ୍ୟମାରଭ୍ୟ ସ୍ଥିତ୍ୱା ପ୍ରାପ୍ନୋତୀତି ।

ଶୋକପଙ୍କନିମଗ୍ନଂ ଯଃ ସାଂଖ୍ୟଯୋଗୋପଦେଶତଃ ।
ଉଜ୍ଜହାରାର୍ଜୁନଂ ଭକ୍ତଂ ସ କୃଷ୍ଣଃ ଶରଣଂ ମମ । ୭୨ ।

ଇତି ଶ୍ରୀଭଗବଦ୍‌ଗୀତା ସ୍ୱାମିକୃତଟୀକାୟାଂ ସାଂଖ୍ୟଯୋଗୋନାମ ଦ୍ୱିତୀୟୋଽଧ୍ୟାୟଃ ।

ପଦବ୍ୟାଖ୍ୟା ।

ଏଷା—ଏ ପ୍ରକାର, ବ୍ରାହ୍ମୀ ସ୍ଥିତିଃ—ବ୍ରହ୍ମଜ୍ଞାନରେ ନିଷ୍ଠା, ପାର୍ଥ—ହେ ଅର୍ଜୁନ !, ନ—ନାହିଁ, ଏନାଂ—ଏହାକୁ, ପ୍ରାପ୍ୟ—ପ୍ରାପ୍ତ ହୋଇ, ବିମୁହ୍ୟତି—ମାୟାମୋହରେ ଲିପ୍ତ ହୁଅନ୍ତି, ସ୍ଥିତ୍ୱା—ସ୍ଥିର ହୋଇ, ଚ—ପୁଣି, ଅସ୍ୟାଂ—ଏହି ବ୍ରହ୍ମଜ୍ଞାନନିଷ୍ଠାରେ, ଅନ୍ତକାଲେଽପି—ମରଣ ସମୟରେ ମଧ, ବ୍ରହ୍ମନିର୍ବାଣଂ—ମୁକ୍ତିକୁ, ଋଚ୍ଛତି—ପ୍ରାପ୍ତ ହୁଅନ୍ତି । ୭୨ ।

ଇତି ଶ୍ରୀଭଗବଦ୍‌ଗୀତା ପଦବ୍ୟାଖ୍ୟାୟାଂ ଦ୍ୱିତୀୟୋଽଧ୍ୟାୟଃ ସମାପ୍ତଃ ।

ଅନୁବାଦ ।

ହେ ପାର୍ଥ ! ଏହାକୁ ବ୍ରହ୍ମଜ୍ଞାନନିଷ୍ଠା ବୋଲାଯାଏ । ଏହା ପ୍ରାପ୍ତି ହେଲେ ଲୋକ ଅଜ୍ଞାନରେ ମୋହିତ ହୁଅନ୍ତି ନାହିଁ । ମରଣ ସମୟରେ ମଧ୍ୟ ଏ ଅବସ୍ଥାରେ କ୍ଷଣକାଳପାଇଁ ସ୍ଥିତ ହୋଇପାରିଲେ ବ୍ରହ୍ମରେ ଲୟପ୍ରାପ୍ତ ହୁଅନ୍ତି । ୭୨ ।

ଇତି ଶ୍ରୀଭଗବଦ୍‌ଗୀତାର ଉତ୍କଳାନୁବାଦରେ ଦ୍ୱିତୀୟ ଅଧ୍ୟାୟ ସମାପ୍ତ ।

ବିଷଦବ୍ୟାଖ୍ୟା ।

ଆତ୍ମା ଓ ବ୍ରହ୍ମରେ ଭିନ୍ନଜ୍ଞାନ ନ ରହିଲେ ଅର୍ଥାତ୍ ଆତ୍ମା ଓ ବ୍ରହ୍ମକୁ ଏକ ବୋଲି ଜାଣିଲେ ବୁଦ୍ଧି ପ୍ରତିଷ୍ଠିତ ହୁଏ । ସେହି ଅଭେଦଜ୍ଞାନକୁ 'ବ୍ରାହ୍ମୀ ସ୍ଥିତି' ଅର୍ଥାତ୍ ବ୍ରହ୍ମଜ୍ଞାନନିଷ୍ଠା ବୋଲାଯାଏ । ଏହା ପ୍ରାପ୍ତ ହେବା ଲୋକଙ୍କର ପୁନର୍ବାର ଅଜ୍ଞାନ ଉଦୟ ହେବାର ସମ୍ଭା-

Digitized by PPRACHIN, SOA

ବନା ନାହିଁ । ସୁତରାଂ ସେ ଅନିର୍ବାଚ୍ୟବୃତ୍ତିରୂପ ଶାନ୍ତି—ମୁକ୍ତି ଲାଭ କରନ୍ତି । ମରଣ ସମୟ-ରେ ମଧ୍ୟ ଯେଉଁ ବ୍ୟକ୍ତି କ୍ଷଣକାଳପାଇଁ ଏ ଅବସ୍ଥାରେ ସ୍ଥିତ ହୋଇ ପାରନ୍ତି ସେ ବ୍ରହ୍ମନି-ର୍ବାଣ ଅର୍ଥାତ୍ ମୁକ୍ତି ପ୍ରାପ୍ତ ହୁଅନ୍ତି । ଆଉ ଯେଉଁ ବ୍ୟକ୍ତି ବାଲ୍ୟ ବା ଯୌବନକାଳରୁ ଏହି ବ୍ରାହ୍ମୀ ସ୍ଥିତି ଲାଭ କରିବାର ସାଧନାରେ ପ୍ରବୃତ୍ତ ଅର୍ଥାତ୍ ଯେ ବ୍ରହ୍ମଚର୍ଯ୍ୟଠାରୁ ବାନପ୍ରସ୍ଥ ପର୍ଯ୍ୟନ୍ତ ପ୍ରତିଆଶ୍ରମରେ ବ୍ରହ୍ମଜ୍ଞାନନିଷ୍ଠା ପାଇବାର ସାଧନା କରନ୍ତି ତାଙ୍କର ମୁକ୍ତି ବିଷୟରେ କ ସନ୍ଦେହ ହୋଇପାରେ ? । ୭୨ ।

ଇତି ଶ୍ରୀଭଗବଦ୍ଗୀତାର ବଙ୍ଗଦବ୍ୟାଖ୍ୟାରେ ଦ୍ୱିତୀୟ ଅଧ୍ୟାୟ ସମାପ୍ତ ।

Digitized by PPRACHIN, SOA

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ତୃତୀୟୋଽଧ୍ୟାୟଃ ।

### କର୍ମଯୋଗ ।

ଶ୍ଳୋକଃ ।

ଅର୍ଜ୍ଜୁନଉବାଚ ।—ଜ୍ୟାୟସୀ ଚେତ୍ କର୍ମଣସ୍ତେ, ମତା ବୁଦ୍ଧି ର୍ଜନାର୍ଦ୍ଦନ ।
ତତ୍ କିଂ କର୍ମଣି ଘୋରେ ମାଂ, ନିୟୋଜୟସି କେଶବ । ୧ ।

ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ ।—ହେ ଜନାର୍ଦ୍ଦନ ! କର୍ମଣଃ ବୁଦ୍ଧିଃ ତେ ଜ୍ୟାୟସୀ ମତା ଚେତ୍ ତତ୍ ହେ କେଶବ ! ଘୋରେ କର୍ମଣି ମାଂ କିଂ ନିୟୋଜୟସି । ୧ ।

ଟୀକା ।

ଏବଂ ତାବଦଶୋଚ୍ୟାନନ୍ୱଶୋଚସ୍ତ୍ୱମିତ୍ୟାଦିନା ପ୍ରଥମଂ ମୋକ୍ଷସାଧନତ୍ୱେନ ଦେହାତ୍ମବିବେକବୁଦ୍ଧିରୁକ୍ତା ତଦନନ୍ତରମେଷା ତେଽଭିହିତା ସାଂଖ୍ୟେ ବୁଦ୍ଧିର୍ଯୋଗେ ତ୍ୱିମାଂ ଶୃଣୁ ଇତ୍ୟାଦିନା କର୍ମଯୋଗଶ୍ଚ ନ ତୁ ତୟୋର୍ଗୁଣପ୍ରଧାନଭାବଃ ସ୍ପଷ୍ଟଂ ଦର୍ଶିତଃ । ତତ୍ର ବୁଦ୍ଧିଯୁକ୍ତସ୍ୟ ସ୍ଥିତପ୍ରଜ୍ଞସ୍ୟ ନିଷ୍କ୍ରିୟସ୍ୟ ନିଃସ୍ପୃହସ୍ୟ ନିରହଂକାରତ୍ୱାଦ୍ୟଭିଧାନାଦେଷା ବ୍ରାହ୍ମୀ ସ୍ଥିତିଃ ପାର୍ଥେତି ସପ୍ରଶଂସମୁପସଂହାରାଚ୍ଚ ବୁଦ୍ଧିକର୍ମଣୋର୍ମଧ୍ୟେ ବୁଦ୍ଧେଃ ଶ୍ରେଷ୍ଠତ୍ୱଂ ଭଗବତୋଽଭିପ୍ରେତଂ ମନ୍ୱାନୋଽର୍ଜ୍ଜୁନ ଉବାଚ ଜ୍ୟାୟସୀ ଚେଦିତି । କର୍ମଣଃ ସକାଶାନ୍ମୋକ୍ଷେଽନ୍ତରଙ୍ଗତ୍ୱେନ ବୁଦ୍ଧିର୍ଜ୍ୟାୟସୀ ଅଧିକତରା ଶ୍ରେଷ୍ଠା ଚେତ୍ତବ ସମ୍ମତା ତର୍ହି କିମର୍ଥଂ ତସ୍ମାଦ୍ୟୁଧ୍ୟସ୍ୱେତି ତସ୍ମାଦୁତ୍ତିଷ୍ଠେତି ଚ ବାରଂ ବାରଂ ବଦନ୍ ଘୋରେ ହିଂସାତ୍ମକେ କର୍ମଣି ମାଂ ପ୍ରବର୍ତ୍ତୟସି । ୧ ।

ପଦବ୍ୟାଖ୍ୟା ।

ଜ୍ୟାୟସୀ—ଶ୍ରେଷ୍ଠତର, ଚେତ୍—ଯେବେ, କର୍ମଣଃ—କର୍ମ ଅପେକ୍ଷା, ତେ—ଆପଣଙ୍କର, ମତା—ସମ୍ମତ, ବୁଦ୍ଧିଃ—ଆତ୍ମଜ୍ଞାନ, ଜନାର୍ଦ୍ଦନ—ହେ ଶ୍ରୀକୃଷ୍ଣ !, ତତ୍—ତେବେ, କିଂ—କାହିଁକି, କର୍ମଣି—ଯୁଦ୍ଧକାର୍ଯ୍ୟରେ, ଘୋରେ—ଭୟାନକ 'ହିଂସାତ୍ମକ', ମାଂ—ମତେ, ନିଯୋଜୟସି—ନିଯୁକ୍ତ କରୁଅଛନ୍ତି, କେଶବ—ହେ ଶ୍ରୀକୃଷ୍ଣ ! । ୧ ।

ଅନୁବାଦ ।

ଅର୍ଜ୍ଜୁନ କହିଲେ ହେ ଜନାର୍ଦ୍ଦନ! ଯେବେ ଆପଣଙ୍କ ମତରେ କର୍ମଯୋଗ ଅପେକ୍ଷା ଜ୍ଞାନଯୋଗ ଶ୍ରେଷ୍ଠ, ତେବେ ହେ କେଶବ! ହିଂସାତ୍ମକ ଯୁଦ୍ଧକାର୍ଯ୍ୟରେ ମୋତେ କାହିଁକି ପ୍ରବୃତ୍ତ କରୁଅଛନ୍ତି ? । ୧ ।

ବିଶଦବ୍ୟାଖ୍ୟା ।

ଭଗବାନ୍ ଦ୍ୱିତୀୟ ଅଧ୍ୟାୟର ଏକାଦଶ ଶ୍ଳୋକରେ 'ଯାହାଙ୍କପାଇଁ ଶୋକ କରିବା

ଅନାବଶ୍ୟକ ତାଙ୍କପାଇଁ ତୁମ୍ଭେ ବାରମ୍ବାର ଶୋକ କରୁଅଛ' ଇତ୍ୟାଦି ବଚନଦ୍ୱାରା ଦେହ ଓ ଆତ୍ମାର ପ୍ରଭେଦ ବ୍ୟାଖ୍ୟା କରି, ସେହି ଅଧ୍ୟାୟର ୩୯ ଶ୍ଲୋକଠାରୁ ପୁଣି କର୍ମଯୋଗର ବ୍ୟାଖ୍ୟା କରିଅଛନ୍ତି । ସ୍ଥିରବୁଦ୍ଧି ବ୍ୟକ୍ତିର ଲକ୍ଷଣ ନିର୍ଦ୍ଦେଶ ସମୟରେ ଜିତେନ୍ଦ୍ରିୟତା, ଅହଂ-କାରଶୂନ୍ୟତା ଓ ନିଷ୍କାମକର୍ମ ପ୍ରଭୃତିର ଉଲ୍ଲେଖ କରିଅଛନ୍ତି । ଅଧିକ ୪୯ ଶ୍ଲୋକରେ ବୁଦ୍ଧିଯୋଗଠାରୁ କାମ୍ୟକର୍ମଯୋଗ ଯେ ନିତାନ୍ତ ଅପକୃଷ୍ଟ ତାହା ମଧ୍ୟ ବିଶେଷରୂପେ ଦେଖାଇ ଦେଇଅଛନ୍ତି ଓ ୭୨ ଶ୍ଲୋକରେ ଜ୍ଞାନଫଳର ପ୍ରଶଂସା କରି ଉପସଂହାର କରିଅଛନ୍ତି । ଏହି ସବୁ କାରଣରୁ ଅର୍ଜ୍ଜୁନ ବୁଝିଲେ, ଯେ 'କର୍ମଯୋଗଠାରୁ ଜ୍ଞାନଯୋଗ ଶ୍ରେଷ୍ଠ' ଏହା ଭଗବାନ-ଙ୍କର ଅଭିପ୍ରାୟ । ମାତ୍ର ୩୭ ଶ୍ଲୋକରେ ପୁନର୍ବାର "ତସ୍ମାଦୁତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟ କୃତ-ନିଶ୍ଚୟଃ" ଅର୍ଥାତ୍ ହେ ଅର୍ଜ୍ଜୁନ ! ତୁମ୍ଭେ ଯୁଦ୍ଧ କରିବାକୁ ସ୍ଥିରନିଶ୍ଚୟ ହୋଇ ଉଠ ଇତ୍ୟାଦି କହିଥିବାରୁ ଅର୍ଜ୍ଜୁନ ସନ୍ଦିଗ୍ଧମନା ହୋଇ ପଚାରିଲେ ହେ କେଶବ ! ଆପଣଙ୍କ ମତରେ ଯଦି କର୍ମଯୋଗ ଅପେକ୍ଷା ଜ୍ଞାନଯୋଗ ଶ୍ରେଷ୍ଠ ତେବେ ପ୍ରାଣିହିଂସାକର-ଯୁଦ୍ଧରେ ମତେ କାହିଁକି (ଆପଣ) ପ୍ରବୃତ୍ତ କରାଉଅଛନ୍ତି ?

ଏ ଶ୍ଲୋକରେ 'ଜନାର୍ଦ୍ଦନ !' ସମ୍ବୋଧନପଦଦ୍ୱାରା (ଜନୈରର୍ଦ୍ଦ୍ୟତେ—ପ୍ରାର୍ଥ୍ୟତେ ଇତି ଜନାର୍ଦ୍ଦନଃ) ଭଗବାନଙ୍କର ପ୍ରାର୍ଥନାକାରୀକୁ ବାଞ୍ଛିତଫଳ ପ୍ରଦାନ କରିବାର ଶକ୍ତି ଅଥବା (ଜନଂ ଜନନଂ, ତତ୍କାରଣମଜ୍ଞାନଞ୍ଚ ସ୍ୱସାକ୍ଷାତ୍କାରେଣ ଅର୍ଦ୍ଦୟତି ଇତି ଜନାର୍ଦ୍ଦନଃ) ଯାହାଙ୍କ ଦର୍ଶନରେ ଜନ୍ମ ଓ ତାହାର କାରଣ ଅଜ୍ଞାନ ବିନଷ୍ଟ ହୁଏ ତାହା ସୂଚିତ ହେଉଅଛି । ପୁଣି 'କେଶବ' ସମ୍ବୋଧନଦ୍ୱାରା ସର୍ବଦେବବନ୍ଦନୀୟତା ଓ ଅନ୍ତର୍ଯ୍ୟାମିତ୍ୱ ସୂଚିତ ହେଉଅଛି । ଫଳ-କଥା ଏହି କି ଅର୍ଜ୍ଜୁନ ବ୍ୟାକୁଳଚିତ୍ତରେ କହିଲେ ହେ ବାଞ୍ଛାଫଳଦାୟକ ! ହେ ଜନ୍ମମରଣ-ନିବାରକ ! ହେ ସର୍ବାନ୍ତର୍ଯ୍ୟାମିନ୍ ! ହେ ସର୍ବଦେବନମସ୍କରଣୀୟ ! ଆପଣ ମତେ ପ୍ରକୃତ ଜ୍ଞାନ-ଉପଦେଶ ନ ଦେଇ ଯୁଦ୍ଧ ନିମିତ୍ତ ବାରମ୍ବାର ପ୍ରବୃତ୍ତ କରଉଅଛନ୍ତି କାହିଁକି ? । ୧ ।

ଶ୍ଲୋକଃ ।

ବ୍ୟାମିଶ୍ରେଣେବ ବାକ୍ୟେନ, ବୁଦ୍ଧିଂ ମୋହୟସୀବ ମେ ।
ତଦେକଂ ବଦ ନିଶ୍ଚିତ୍ୟ, ଯେନ ଶ୍ରେୟୋଽହମାପ୍ନୁୟାଂ । ୨ ।

ଅନ୍ୱୟଃ ।

ବ୍ୟାମିଶ୍ରେଣ ଇବ ବାକ୍ୟେନ ମେ ବୁଦ୍ଧିଂ ମୋହୟସି ଇବ, ତତ୍ ଏକଂ ନିଶ୍ଚିତ୍ୟ ବଦ ଯେନ ଅହଂ ଶ୍ରେୟଃ ଆପ୍ନୁୟାଂ । ୨ ।

ଟୀକା ।

ନନୁ ଧର୍ମ୍ୟାଦ୍ଧି ଯୁଦ୍ଧାଚ୍ଛ୍ରେୟୋଽନ୍ୟତ୍ କ୍ଷତ୍ରିୟସ୍ୟ ନ ବିଦ୍ୟତ ଇତ୍ୟାଦିନା କର୍ମଣୋଽପି ଶ୍ରେଷ୍ଠତ୍ୱମୁକ୍ତମେବେତ୍ୟାଶଙ୍କ୍ୟାହ ବ୍ୟାମିଶ୍ରେଣେତି । କ୍ୱଚିତ୍ କର୍ମପ୍ରଶଂସା କ୍ୱଚିଜ୍ଜ୍ଞାନପ୍ରଶଂସେତ୍ୟେବଂ ବ୍ୟାମିଶ୍ରଂ ସନ୍ଦେହୋତ୍ପାଦକମିବ ଯତ୍ତ୍ୱାକ୍ୟଂ ତେନ ମେ ମତିମୁଭୟତ୍ର ଦୋଲାୟିତାଂ କୁର୍ବନ୍ ମୋହୟସୀବ, ପରମକାରୁଣିକସ୍ୟ ତବ ମୋହକତ୍ୱଂ ନାସ୍ତ୍ୟେବ ତଥାପି ଭ୍ରାନ୍ତ୍ୟା ମମୈବଂ ଭାତି ଇତି ଇବ ଶବ୍ଦେନୋକ୍ତଂ ଅତ ଉଭୟୋର୍ମଧ୍ୟେ ଯଦ୍ଭଦ୍ରଂ ତଦେକଂ ନିଶ୍ଚିତ୍ୟ ବଦେତି । ଯଦ୍ୱା ଅହଂ ଇଦମେବ

ଶ୍ରେୟଃସାଧନମିତି ନିଶ୍ଚିତ୍ୟ ଯେନାନୁଷ୍ଠିତେନ ଶ୍ରେୟୋ ମୋକ୍ଷମହମାପ୍ନୁୟାଂ ପ୍ରାପ୍ସ୍ୟାମି ତଦେବୈକଂ ନିଶ୍ଚିତ୍ୟ ବଦେତ୍ୟର୍ଥଃ । ୨ ।

ପଦବ୍ୟାଖ୍ୟା ।

ବ୍ୟାମିଶ୍ରେଣ—ମିଶ୍ରିତ, ଇବ—ସଦୃଶ, ବାକ୍ୟେନ—ବଚନଦ୍ୱାରା, ବୁଦ୍ଧିଂ—ବୁଦ୍ଧିକୁ, ମୋହୟସୀବ—ମୋହିତ ପରି କରୁଅଛନ୍ତି ଅର୍ଥାତ୍ ମୋହର ବୁଦ୍ଧିକୁ ଆପଣ ମୋହିତ କରୁଅଛନ୍ତି ବୋଲି ବୋଧ ହେଉଅଛି, ମେ—ମୋହର ତତ୍—ତାହା, ଏକଂ—ଗୋଟିକୁ, ବଦ—କହନ୍ତୁ, ନିଶ୍ଚିତ୍ୟ—ନିଶ୍ଚୟ କରି, ଯେନ—ଯାହାଦ୍ୱାରା, ଶ୍ରେୟଃ—ମଙ୍ଗଳ—ମୁକ୍ତି, ଅହଂ—ମୁଁ, ଆପ୍ନୁୟାଂ—ପ୍ରାପ୍ତ ହେବ । ୨ ।

ଅନୁବାଦ ।

ଆପଣ (କେତେବେଳେ ଜ୍ଞାନଯୋଗ ଓ କେତେବେଳେ କର୍ମଯୋଗର ପ୍ରଶଂସା କରି) ମିଶ୍ରିତ ବଚନଦ୍ୱାରା ମୋହର ବୁଦ୍ଧିକୁ ମୋହିତ ପରି କରୁଅଛନ୍ତି । ଗୋଟିଏ କଥା ନିଶ୍ଚୟ କରି କହନ୍ତୁ ଯାହାଦ୍ୱାରା ମୁଁ ଶ୍ରେୟଃ ଅର୍ଥାତ୍ ମୁକ୍ତି ପାଇବ । ୨ ।

ବିଶଦବ୍ୟାଖ୍ୟା ।

"ଦୂରେଣହ୍ୟବରଂ କର୍ମ" (୨ୟ ଅଃ ୪୯ ଶ୍ଳୋକ) ଇତ୍ୟାଦି ବଚନଦ୍ୱାରା ଜ୍ଞାନଯୋଗର ଓ "ଧର୍ମ୍ୟାଦ୍ଧି ଯୁଦ୍ଧାତ୍ ଶ୍ରେୟୋଽନ୍ୟତ୍" (୨ୟ ଅଃ ୩୧ ଶ୍ଳୋକଃ) ପ୍ରଭୃତି ବାକ୍ୟଦ୍ୱାରା କର୍ମଯୋଗର ପ୍ରଶଂସା କରିବାରୁ ଆପଣଙ୍କର ବଚନମାନ ମିଶ୍ରିତ ପରି ବୋଧ ହେଉଅଛି ଏବଂ ତଦ୍ଦ୍ୱାରା ଆପଣ ମୋହର ବୁଦ୍ଧିକୁ ମୋହିତ କରୁଅଛନ୍ତି ବୋଲି ମୋହର ବୋଧ ହେଉଅଛି । ଆପଣ ପରମଜ୍ଞାନୀ ଓ ପରମକାରୁଣିକ ଏପରି ସ୍ଥଳେ ଆପଣଙ୍କ ବଚନ ଯେ ମିଶ୍ରିତ ଏବଂ ଆପଣ ଯେ ଆଶ୍ରିତଲୋକଙ୍କୁ ମାୟାମୁଗ୍ଧ କରିବେ ତାହା କେବେହେଁ ନୁହେଁ, କେବଳ ମୋହର ବୁଝିବା ଦୋଷରୁ ଆପଣଙ୍କର ବଚନ ବମିଶ୍ରିତ (ଇବ) ପରି ଏବଂ ଆପଣ ମତେ (ମୋହୟସି) ମୋହିତ କରୁଅଛନ୍ତି ବୋଲି ବୋଧ ହେଉଅଛି । ବର୍ତ୍ତମାନ ମୋହର ପ୍ରାର୍ଥନା ଏହି ଯେ ଜ୍ଞାନଯୋଗ ଓ କର୍ମଯୋଗ ଏ ଦୁହିଙ୍କ ମଧ୍ୟରୁ ଗୋଟିଏ ନିଶ୍ଚୟ କରି କହନ୍ତୁ ଯେ ତାହା ଦ୍ୱାରା ମୁଁ ମୁକ୍ତିଲାଭ କରି ପାରିବ ଅର୍ଥାତ୍ ମୁଁ ଜ୍ଞାନଯୋଗକୁ ଅବଲମ୍ବନ କରିବ କି କର୍ମଯୋଗର ଆଶ୍ରୟ ଗ୍ରହଣ କରିବ ତାହା ମୋତେ ନିଶ୍ଚୟ କରି କହିବା ହେଉନ୍ତୁ । ୨ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—ଲୋକେଽସ୍ମିନ୍ ଦ୍ୱିବିଧା ନିଷ୍ଠା, ପୁରା ପ୍ରୋକ୍ତା ମୟାନଘ ।
ଜ୍ଞାନଯୋଗେନ ସାଂଖ୍ୟାନାଂ, କର୍ମଯୋଗେନ ଯୋଗିନାଂ । ୩ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ହେ ଅନଘ ! ଅସ୍ମିନ୍ ଲୋକେ ପୁରା ମୟା ଦ୍ୱିବିଧା ନିଷ୍ଠା ପ୍ରୋକ୍ତା, ସାଂଖ୍ୟାନାଂ ଜ୍ଞାନଯୋଗେନ, (ଚ) ଯୋଗିନାଂ କର୍ମଯୋଗେନ । ୩ ।

ଟୀକା ।

ଅତ୍ରୋତ୍ତରଂ ଶ୍ରୀଭଗବାନୁବାଚ । ଲୋକେଽସ୍ମିନ୍ନିତି । ଅୟମର୍ଥଃ ଯଦି ମୟା ପରସ୍ପରନିରପେକ୍ଷଂ ମୋକ୍ଷସାଧନତ୍ୱେନ କର୍ମଜ୍ଞାନଯୋଗରୂପଂ ନିଷ୍ଠାଦ୍ୱୟମୁକ୍ତଂ ସ୍ୟାତ୍ତର୍ହି ଦ୍ୱୟୋର୍ମଧ୍ୟେ ଯଦ୍ଭଦ୍ରଂ ସ୍ୟାତଦେକଂ ବଦେତି ବ୍ରୂୟାସ୍ତ୍ୱଂ ନ ତ୍ୱେତଦସ୍ତି

ନନୁ ମୟା ତଥୋକ୍ତଂ କିନ୍ତୁ ଦ୍ୱାଭ୍ୟାଂ ଏକୈବ ବ୍ରହ୍ମନିଷ୍ଠୋକ୍ତା ଗୁଣପ୍ରଧାନଭୂତୟୋସ୍ତୟୋଃ ସ୍ୱାତନ୍ତ୍ର୍ୟାନୁପପତ୍ତେଃ । ଏକସ୍ୟ ଏବ ତୁ ପ୍ରକାରଭେଦମାତ୍ରମଧିକାରିଭେଦେନୋକ୍ତମିତି ଅସ୍ମିନ୍ ଶୁଦ୍ଧାନ୍ତଃକରଣତୟା ଦ୍ୱିବିଧେ ଲୋକେଽଧିକାରିଜନେ ହେ ଅନଘେ ପ୍ରକାରୌ ଯସ୍ୟାଃ ସା ଦ୍ୱିବିଧା ନିଷ୍ଠା ମୋକ୍ଷପରତା ପୁରା ପୂର୍ବାଧ୍ୟାୟେ ମୟା ସର୍ବଜ୍ଞେନ ପ୍ରୋକ୍ତା ସ୍ପଷ୍ଟମେବୋକ୍ତା ପ୍ରକାରଦ୍ୱୟମେବ ନିର୍ଦ୍ଦିଶତି, ସାଂଖ୍ୟାନାଂ ଶୁଦ୍ଧାନ୍ତଃକରଣାନାଂ ଜ୍ଞାନଭୂମିକାମାରୂଢ଼ାନାଂ ଜ୍ଞାନପରିପାକାର୍ଥଂ ଜ୍ଞାନଯୋଗେନ ଧ୍ୟାନାଦିନା ନିଷ୍ଠା ବ୍ରହ୍ମପରତୋକ୍ତା ତାନି ସର୍ବାଣି ସଂଯମ୍ୟ ଯୁକ୍ତ ଆସୀତ ମତ୍ପର ଇତ୍ୟାଦିନା ସାଂଖ୍ୟଭୂମିକାମନାରୂଢ଼ାନାଂ ତୁ ଅନ୍ତଃକରଣଶୁଦ୍ଧିଦ୍ୱାରା ତଦାରୋହାର୍ଥଂ ତଦୁପାୟଭୂତକର୍ମଯୋଗାଧିକାରିଣାଂ ଯୋଗିନାଂ କର୍ମଯୋଗେନ ନିଷ୍ଠୋକ୍ତା ଧର୍ମ୍ୟାଦ୍ଧି ଯୁଦ୍ଧାଚ୍ଛ୍ରେୟୋଽନ୍ୟତ୍ କ୍ଷତ୍ରିୟସ୍ୟ ନ ବିଦ୍ୟତେ ଇତ୍ୟାଦିନା ଅତଏବ ତବ ଚିତ୍ତଶୁଦ୍ଧ୍ୟଶୁଦ୍ଧିରୂପାବସ୍ଥାଭେଦେନ ଦ୍ୱିବିଧାପି ନିଷ୍ଠୋକ୍ତା ଏଷା ତେଽଭିହିତା ସାଂଖ୍ୟେ ବୁଦ୍ଧିର୍ଯୋଗେ ତ୍ୱିମାଂ ଶୃଣୁ ଇତି । ୩ ।

ପଦବ୍ୟାଖ୍ୟା ।

ଲୋକେ—ଲୋକରେ, ଅସ୍ମିନ୍—ଏହି, ଦ୍ୱିବିଧା ନିଷ୍ଠା—ଦୁଇପ୍ରକାର ନିଷ୍ଠା, ପୁରା—ପୂର୍ବ ଅଧ୍ୟାୟରେ, ପ୍ରୋକ୍ତା—କହିଅଛୁଁ, ମୟା—ଆମ୍ଭେ, ଅନଘ—ହେ ନିଷ୍ପାପ ଅର୍ଜ୍ଜୁନ !, ଜ୍ଞାନଯୋଗେନ—ଜ୍ଞାନ ଯୋଗରେ, ସାଂଖ୍ୟାନାଂ—ଶୁଦ୍ଧାନ୍ତଃକରଣ ବ୍ରହ୍ମଜ୍ଞାନେଚ୍ଛୁ ବ୍ୟକ୍ତିମାନଙ୍କର, କର୍ମଯୋଗେନ—କର୍ମଯୋଗରେ, ଯୋଗିନାଂ—କର୍ମାଧିକାରିଯୋଗିମାନଙ୍କର । ୩ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ହେ ପାପରହିତ ! ଏ ଜଗତରେ ବ୍ରହ୍ମନିଷ୍ଠା ଦୁଇପ୍ରକାର ବୋଲି ଆମ୍ଭେ ପୂର୍ବରେ କହିଅଛୁଁ, ଅର୍ଥାତ୍ ଜ୍ଞାନାଧିକାରିଙ୍କ ପକ୍ଷରେ ଜ୍ଞାନଯୋଗ ଓ କର୍ମାଧିକାରିଙ୍କ ପକ୍ଷରେ କର୍ମଯୋଗ ପ୍ରଶସ୍ତ ଅଟେ । ୩ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନଙ୍କ ପ୍ରଶ୍ନ ଶୁଣି ଶ୍ରୀଭଗବାନ୍ କହିଲେ, ଯେ ଏହି ଜଗତରେ ସମସ୍ତଙ୍କର ଅନ୍ତଃକରଣ ଏପରି ବିଶୁଦ୍ଧ ନୁହେ, ଯେ ସେମାନେ ତତ୍ତ୍ୱଜ୍ଞାନର ବା ଜ୍ଞାନଯୋଗର ଅଧିକାରୀ ହୋଇ ପାରିବେ । ସେଥିପାଇଁ ପୂର୍ବ ଅଧ୍ୟାୟରେ ଆମ୍ଭେ ଦୁଇପ୍ରକାର ବ୍ରହ୍ମନିଷ୍ଠା କହିଅଛୁଁ । ଯେଉଁମାନଙ୍କର ଅନ୍ତଃକରଣ ଶମ-ଦମାଦି ଅଭ୍ୟାସଦ୍ୱାରା ବିଶୁଦ୍ଧ ହୋଇଅଛି ସେମାନଙ୍କ ପକ୍ଷରେ ଜ୍ଞାନଯୋଗ ଓ ଯେଉଁମାନଙ୍କର ଅନ୍ତଃକରଣ ବିଶୁଦ୍ଧ ହୋଇ ନାହିଁ ସେମାନଙ୍କ ପକ୍ଷରେ ଚିତ୍ତଶୁଦ୍ଧିର ଉପାୟସ୍ୱରୂପ ନିଷ୍କାମକର୍ମଯୋଗର ଉଲ୍ଲେଖ କରି ହୋଇଅଛି, କେବଳ ଅଧିକାରିଭେଦରେ ଦୁଇପ୍ରକାର ବ୍ରହ୍ମନିଷ୍ଠାର କଥା କୁହା ହୋଇଅଛି ।

ଏ ଶ୍ଳୋକରେ 'ଅନଘ' (ନିଷ୍ପାପ) ପଦଦ୍ୱାରା ଅର୍ଜ୍ଜୁନଙ୍କୁ ସମ୍ବୋଧନ କରିବାରେ, ଶ୍ରୀଭଗବାନ୍ ସଙ୍କେତରେ ଏହି କଥା ଇଙ୍ଗିତ କଲେ, ଯେ ତୁମ୍ଭେ ବ୍ରହ୍ମବିଦ୍ୟା ବା ଜ୍ଞାନଯୋଗର ଅଧିକାରୀ ଅଟ, କାହିଁକିନା "ଜ୍ଞାନମୁତ୍ପଦ୍ୟତେ ପୁଂସାଂ କ୍ଷୟାତ୍ ପାପସ୍ୟ କର୍ମଣଃ" ପାପକର୍ମ କ୍ଷୟ ହେଲେ ଅର୍ଥାତ୍ ନିଷ୍ପାପ ହେଲେ ମନୁଷ୍ୟ ଜ୍ଞାନାଧିକାରୀ ହୁଏ ; ଅତଏବ ତୁମ୍ଭର ଆଉ ଗ୍ଲାନିଯୁକ୍ତ ହେବା ଉଚିତ ନୁହେ । ୩ ।

ଶ୍ଳୋକଃ ।

ନ କର୍ମଣାମନାରମ୍ଭାନ୍ନୈଷ୍କର୍ମ୍ୟଂ ପୁରୁଷୋଽଶ୍ନୁତେ ।
ନ ଚ ସନ୍ନ୍ୟସନାଦେବ, ସିଦ୍ଧିଂ ସମଧିଗଚ୍ଛତି । ୪ ।



Digitized by PPRACHIN, SOA

## ଅନ୍ୱୟଃ ।

କର୍ମଣାଂ ଅନାରମ୍ଭାତ୍ ପୁରୁଷଃ ନୈଷ୍କର୍ମ୍ୟଂ ନ ଅଶ୍ନୁତେ, ଚ ସନ୍ନ୍ୟସନାତ୍ ଏବ ସିଦ୍ଧିଂ ନ ସମଧିଗଚ୍ଛତି । ୪ ।

## ଟୀକା ।

ଅତଃ ସମ୍ୟକ୍ ଚିତ୍ତଶୁଦ୍ଧ୍ୟର୍ଥଂ ଜ୍ଞାନୋତ୍ପତ୍ତିପର୍ଯ୍ୟନ୍ତଂ ବର୍ଣ୍ଣାଶ୍ରମୋଚିତାନି କର୍ମାଣି କର୍ତ୍ତବ୍ୟାନି । ଅନ୍ୟଥା ଚିତ୍ତଶୁଦ୍ଧ୍ୟଭାବେନ ଜ୍ଞାନାନୁତ୍ପତ୍ତେରିତ୍ୟାହ । ନ କର୍ମଣାମିତି । କର୍ମଣାଂ ଅନାରମ୍ଭାତ୍ ଅକରଣାନ୍ନୈଷ୍କର୍ମ୍ୟଂ ଜ୍ଞାନଂ ନାଶ୍ନୁତେ ନ ପ୍ରାପ୍ନୋତି ନନୁ ଚୈତମେବ ପ୍ରବ୍ରାଜିନୋ ଲୋକମିଚ୍ଛନ୍ତଃ ପ୍ରବ୍ରଜନ୍ତୀତି ଶ୍ରୁତ୍ୟା ସନ୍ନ୍ୟାସସ୍ୟ ମୋକ୍ଷାଙ୍ଗତ୍ୱଶ୍ରୁତେଃ ସନ୍ନ୍ୟାସାଦେବ ମୋକ୍ଷୋ ଭବିଷ୍ୟତି କିଂ କର୍ମଭିରିତ୍ୟାଶଙ୍କ୍ୟାହ ନ ଚେତି । ନ ଚ ଚିତ୍ତଶୁଦ୍ଧିଂ ବିନା କୃତାତ୍ ସନ୍ନ୍ୟସନାଦେବ ଜ୍ଞାନଶୂନ୍ୟାତ୍ ସିଦ୍ଧିଂ ମୋକ୍ଷଂ ସମଧିଗଚ୍ଛତି ମୋକ୍ଷଂ ପ୍ରାପ୍ନୋତି । ୪ ।

## ପଦବ୍ୟାଖ୍ୟା ।

ନ—ନାହିଁ, କର୍ମଣାଂ—କର୍ମମାନଙ୍କୁ, ଅନାରମ୍ଭାତ୍—ଆରମ୍ଭ ନ କଲେ, ନୈଷ୍କର୍ମ୍ୟଂ—ତତ୍ତ୍ୱଜ୍ଞାନକୁ, ପୁରୁଷଃ—ବ୍ୟକ୍ତି, ଅଶ୍ନୁତେ—ପ୍ରାପ୍ତ ହୁଏ, ନ—ନାହିଁ, ଚ—ଏବଂ, ସନ୍ନ୍ୟସନାତ୍—କର୍ମ ପରିତ୍ୟାଗ କଲେ, ଏବ—କେବଳ, ସିଦ୍ଧିଂ—ମୁକ୍ତିକୁ, ସମଧିଗଚ୍ଛତି—ଉତ୍ତମରୂପେ ପ୍ରାପ୍ତ ହୁଏ । ୪ ।

## ଅନୁବାଦ ।

ପୁରୁଷ କର୍ମ ଆରମ୍ଭ ନ କଲେ ତତ୍ତ୍ୱଜ୍ଞାନ ପ୍ରାପ୍ତ ହୁଏ ନାହିଁ ଏବଂ (ଜ୍ଞାନ ନ ହେଲେ) କର୍ମ ପରିତ୍ୟାଗ କଲେ ମଧ୍ୟ ସିଦ୍ଧି ଲାଭ କରି ପାରେ ନାହିଁ । ୪ ।

## ବିଶଦବ୍ୟାଖ୍ୟା ।

ନିଷ୍କାମଭାବରେ କର୍ମ ନ କଲେ ଚିତ୍ତଶୁଦ୍ଧି ହୁଏ ନାହିଁ, ଚିତ୍ତଶୁଦ୍ଧି ନ ହେଲେ ଆତ୍ମଜ୍ଞାନ ଉଦୟ ହେବ କିପରି ? କାଳେ ଅର୍ଜୁନ ମନେ କରିବେ, ଯେ ସର୍ବକର୍ମ ପରିତ୍ୟାଗ କଲେ ତତ୍ତ୍ୱଜ୍ଞାନ ଉଦୟ ହେବ, ଯେହେତୁ ଶ୍ରୁତି ଓ ସ୍ମୃତିରେ ପ୍ରମାଣ ଅଛି, ଯେ "ଏତମେବ ପ୍ରବ୍ରାଜିନୋ ଲୋକମିଚ୍ଛନ୍ତଃ ପ୍ରବ୍ରଜନ୍ତି ଇତି, ନ କର୍ମଣା ନ ପ୍ରଜୟା ନ ଧନେନ ତ୍ୟାଗେନୈକେନାମୃତତ୍ୱମାନଶୁଃ" ଅର୍ଥାତ୍ ସନ୍ନ୍ୟାସିମାନେ ଅଦ୍ୱିଜୀସ୍ ବ୍ରହ୍ମଲୋକ ପ୍ରାପ୍ତ ହୁଅନ୍ତି । ବ୍ରହ୍ମଲାଭାଭିଳାଷିମାନେ ସନ୍ନ୍ୟାସ ଗ୍ରହଣ କରନ୍ତି । ଅଗ୍ନିହୋତ୍ରାଦି କର୍ମ, ପୁତ୍ର, କିମ୍ବା ଧନାଦିଦ୍ୱାରା ବ୍ରହ୍ମଲାଭ କରାଯାଏ ନାହିଁ । କେବଳ ସର୍ବକର୍ମ ପରିତ୍ୟାଗ ଅମୃତତ୍ୱ ପ୍ରାପ୍ତିର ଏକମାତ୍ର କାରଣ । ଅଥବା "ଦଣ୍ଡଗ୍ରହଣମାତ୍ରେଣ ନରୋ ନାରାୟଣୋ ଭବେତ୍" ଅର୍ଥାତ୍ 'କେବଳ ଦଣ୍ଡ ଗ୍ରହଣ କଲେ ମନୁଷ୍ୟ ନାରାୟଣସ୍ୱରୂପ ହୁଏ' ଅର୍ଜୁନଙ୍କର ଏପରି ଆଶଙ୍କା ନିବାରଣପାଇଁ ଶ୍ରୀଭଗବାନ୍ କହିଲେ, ଯେ କର୍ମାନୁଷ୍ଠାନଦ୍ୱାରା ଚିତ୍ତଶୁଦ୍ଧି ନ ହେବାଯାଏ କର୍ମ ପରିତ୍ୟାଗ କଲେ ସୁଦ୍ଧା ଜୀବର ମୁକ୍ତି ହୁଏ ନାହିଁ, କାରଣ ଶ୍ରୁତିରେ ପ୍ରମାଣ ଅଛି, ଯେ "ଯଦହରେବ ବିରଜେତ୍ ତଦହରେବ ପ୍ରବ୍ରଜେତ୍" ଅର୍ଥାତ୍ ମନୁଷ୍ୟର ଯେଉଁଦିନ ସମସ୍ତ ବିଷୟସୁଖରେ ବୈରାଗ୍ୟ ଜନ୍ମିବ ସେହିଦିନ ସେ ସନ୍ନ୍ୟାସ ଗ୍ରହଣ କରିବ । ଅତଏବ ପ୍ରଥମେ କର୍ମ ନିଷ୍କାମ ଭାବରେ କରିବା ଉଚିତ, କାରଣ କର୍ମ ନ କଲେ ( ଅର୍ଥାତ୍ କୌଣସି ପଦାର୍ଥ ଗ୍ରହଣ ନ କଲେ ) ତ୍ୟାଗ କରିବ କଣ ? । ୪ ।

Digitized by PPRACHIN, SOA

### ଶ୍ଳୋକଃ ।

ନ ହି କଶ୍ଚିତ୍ କ୍ଷଣମପି, ଜାତୁ ତିଷ୍ଠତ୍ୟକର୍ମକୃତ୍ ।
କାର୍ଯ୍ୟତେ ହ୍ୟବଶଃ କର୍ମ, ସର୍ବଃ ପ୍ରକୃତିଜୈର୍ଗୁଣୈଃ । ୫ ।

### ଅନ୍ୱୟଃ ।

ହି କଶ୍ଚିତ୍ ଅପି ଜାତୁ ଅକର୍ମକୃତ୍ କ୍ଷଣଂ ନ ତିଷ୍ଠତି, ହି ସର୍ବଃ ପ୍ରକୃତିଜୈଃ ଗୁଣୈଃ ଅବଶଃ କର୍ମ କାର୍ଯ୍ୟତେ । ୫ ।

### ଟୀକା ।

କର୍ମଣାଂ ଚ ସନ୍ନ୍ୟାସସ୍ତ୍ୱେଷ୍ଟୁନାସକ୍ତିମାତ୍ରଂ, ନତୁ ସ୍ୱରୂପେଣାଶକ୍ୟତ୍ୱାଦିତ୍ୟାହ । ନ ହି କଶ୍ଚିଦିତି । ଜାତୁ କସ୍ୟାଂଚିଦପ୍ୟବସ୍ଥାୟାଂ କ୍ଷଣମାତ୍ରମପି କଶ୍ଚିଦପି ଜ୍ଞାନୀ ଅଜ୍ଞୋ ବା ଅକର୍ମକୃତ୍ କର୍ମାଣ୍ୟକୁର୍ବାଣୋ ନ ତିଷ୍ଠତି । ଅତ୍ର ହେତୁଃ ପ୍ରକୃତିଜୈଃ ସ୍ୱଭାବପ୍ରଭବୈ ରାଗଦ୍ୱେଷାଦିଭିର୍ଗୁଣୈଃ ସର୍ବୋଽପି ଜନଃ କର୍ମ କାର୍ଯ୍ୟତେ ଅବଶୋଽସ୍ୱତନ୍ତ୍ରଃ ସନ୍ । ୫ ।

### ପଦବ୍ୟାଖ୍ୟା ।

ନ ହି—ନାହିଁ, କଶ୍ଚିତ୍—କୌଣସି ବ୍ୟକ୍ତି, କ୍ଷଣମପି—କ୍ଷଣମାତ୍ର ମଧ୍ୟ, ଜାତୁ—କଦାଚିତ୍, ତିଷ୍ଠତି—ରହେ, ଅକର୍ମକୃତ୍—କର୍ମବର୍ଜିତ ହୋଇ, କାର୍ଯ୍ୟତେ—କରାଏ, ହି—ନିଶ୍ଚୟ, ଅବଶଃ—ପରାଧୀନ କରି, କର୍ମ—କାର୍ଯ୍ୟକୁ, ସର୍ବଃ—ସମସ୍ତଙ୍କୁ, ପ୍ରକୃତିଜୈଃ ଗୁଣୈଃ—ସ୍ୱାଭାବିକ ଗୁଣ ସମସ୍ତ । ୫ ।

### ଅନୁବାଦ ।

କୌଣସି ବ୍ୟକ୍ତି କର୍ମ ନ କରି କେବେହେଁ କ୍ଷଣମାତ୍ର ରହି ନ ପାରେ । ସ୍ୱାଭାବିକ ଗୁଣସବୁ ସମସ୍ତଙ୍କୁ ଅନାୟତ୍ତ କରି କର୍ମ କରାଏ । ୫ ।

### ବିଶଦବ୍ୟାଖ୍ୟା ।

ଯେ ମନକୁ ବଶୀଭୂତ କରି ନାହିଁ ସେ ସତ୍ତ୍ୱ, ରଜଃ ଓ ତମଃ ଏହି ଗୁଣତ୍ରୟର ଅଧୀନ ହୋଇ ପାନ-ଭୋଜନାଦି ଲୌକିକ ଓ ଅଗ୍ନିହୋତ୍ରାଦି ବୈଦିକ କ୍ରିୟା ନ କରି ରହି ପାରେ ନାହିଁ । ଅତଏବ ମଳିନଚିତ୍ତବ୍ୟକ୍ତିର ସନ୍ନ୍ୟାସ ଅସମ୍ଭବ । ପୁଣି ଜିତେନ୍ଦ୍ରିୟ ହେଲେ ଯେ କର୍ମଶୂନ୍ୟ ହୋଇ ପାରିବ ତାହା ନୁହେ । କେବଳ କର୍ମଫଳରେ ତାହାର ଶ୍ରଦ୍ଧା ନ ଥିବାରୁ ଅର୍ଥାତ୍ ସେ ଫଳକାମନାରେ କର୍ମ କରୁ ନ ଥିବାରୁ କର୍ମଜନିତଦୋଷ ତାହାର ହୋଇ ପାରେ ନାହିଁ । ଫଳକାମନାରହିତ ହୋଇ ଯେଉଁ ଜିତେନ୍ଦ୍ରିୟ ବ୍ୟକ୍ତି କର୍ମ କରି ଆପଣାର ଚିତ୍ତକୁ ବିଶୁଦ୍ଧ କରି ପାରନ୍ତି ତାଙ୍କର କେବଳ ସନ୍ନ୍ୟାସ ଗ୍ରହଣ ସମ୍ଭବ । ୫ ।

### ଶ୍ଳୋକଃ ।

କର୍ମେନ୍ଦ୍ରିୟାଣି ସଂଯମ୍ୟ, ଯ ଆସ୍ତେ ମନସା ସ୍ମରନ୍ ।
ଇନ୍ଦ୍ରିୟାର୍ଥାନ୍ ବିମୂଢାତ୍ମା, ମିଥ୍ୟାଚାରଃ ସ ଉଚ୍ୟତେ । ୬ ।

### ଅନ୍ୱୟଃ ।

ଯଃ କର୍ମେନ୍ଦ୍ରିୟାଣି ସଂଯମ୍ୟ ଇନ୍ଦ୍ରିୟାର୍ଥାନ୍ ମନସା ସ୍ମରନ୍ ଆସ୍ତେ ସଃ ବିମୂଢାତ୍ମା ମିଥ୍ୟାଚାରଃ ଉଚ୍ୟତେ । ୬ ।

Digitized by PPRACHIN, SOA

ଟୀକା ।

ଅତୋଽଜ୍ଞଂ କର୍ମତ୍ୟାଗିନଂ ନିନ୍ଦତି । କର୍ମେନ୍ଦ୍ରିୟାଣୀତି । ବାକ୍‌ପାଣ୍ୟାଦୀନି କର୍ମେନ୍ଦ୍ରିୟାଣି ସଂଯମ୍ୟ ନିଗୃହ୍ୟ ଯୋ- ମନସା ଭଗବଦ୍ଧ୍ୟାନଚ୍ଛଲେନ ଇନ୍ଦ୍ରିୟାର୍ଥାନ୍ ବିଷୟାନ୍ ସ୍ମରନ୍ନାସ୍ତେଽବିଶୁଦ୍ଧତୟା ମନସା ଅସ୍ୟ ସ୍ଥୈର୍ଯ୍ୟାଭାବାତ୍ ସ ମିଥ୍ୟା- ଚାରଃ କପଟାଚାରୋ ଦାମ୍ଭିକ ଉଚ୍ୟତ ଇତ୍ୟର୍ଥଃ । ୭ ।

ପଦବ୍ୟାଖ୍ୟା ।

କର୍ମେନ୍ଦ୍ରିୟାଣି—କର୍ମେନ୍ଦ୍ରିୟମାନଙ୍କୁ, ସଂଯମ୍ୟ—ଉତ୍ତମରୂପେ ଦମନ କରି, ଯଃ ଆସ୍ତେ—ଯେ ରହେ, ମନସା ସ୍ମରନ୍—ମନରେ ସ୍ମରଣ କରି, ଇନ୍ଦ୍ରିୟାର୍ଥାନ୍—ବିଷୟମାନଙ୍କୁ, ବିମୂଢାତ୍ମା—ମୂର୍ଖ, ମିଥ୍ୟାଚାରଃ—କପଟାଚାରୀ, ସଃ—ତାହାକୁ, ଉଚ୍ୟତେ—କୁହାଯାଏ । ୭ ।

ଅନୁବାଦ ।

ଯେଉଁ ବ୍ୟକ୍ତି କର୍ମେନ୍ଦ୍ରିୟମାନଙ୍କୁ ଦମନ କରି ମନରେ ବିଷୟସୁଖ ସବୁ ସ୍ମରଣ କରେ ସେହି ମୂର୍ଖକୁ କପଟାଚାରୀ ବୋଲାଯାଏ । ୬ ।

ବିଶଦବ୍ୟାଖ୍ୟା ।

କେବଳ କର୍ମେନ୍ଦ୍ରିୟମାନଙ୍କୁ ଦମନ କଲେ ସନ୍ନ୍ୟାସ ହୁଏ ନାହିଁ, ମନର ସହିତ ଜ୍ଞାନେ- ନ୍ଦ୍ରିୟମାନଙ୍କୁ ମଧ୍ୟ ଦମନ କରିବା ଉଚିତ । ଯେଉଁମାନେ ବାହାରେ କର୍ମେନ୍ଦ୍ରିୟ ସଂଯମ କରି ଅଥବା କର୍ମ ତ୍ୟାଗ କରି, ମନେ ମନେ ରୂପ, ରସ, ଗନ୍ଧ ପ୍ରଭୃତି ବିଷୟଭୋଗମାନ ସ୍ମରଣ କରନ୍ତି ସେମାନେ କପଟାଚାରୀ ଅଟନ୍ତି ଏବଂ ସେମାନେ ତତ୍ତ୍ୱବିଚାରରେ ଅସମର୍ଥ ଥିବାରୁ ଲୋକଙ୍କୁ ଦେଖାଇବାକୁ ସନ୍ନ୍ୟାସ ଗ୍ରହଣ କଲେ ସୁଦ୍ଧା, ସେମାନଙ୍କର ଅଧଃପତନ ହୁଏ । ଯେହେତୁ ଧର୍ମଶାସ୍ତ୍ରରେ ଉଲ୍ଲେଖ ଅଛି, ଯେ—

ତ୍ୱଂ ପଦାର୍ଥବିବେକାୟ, ସନ୍ନ୍ୟାସଃ ସର୍ବକର୍ମଣାଂ ।
ଶ୍ରୁତ୍ୟେହ ବିହିତୋ ଯସ୍ମାତ୍ତତ୍ତ୍ୟାଗୀ ପତିତୋ ଭବେତ୍ ।

ଅର୍ଥାତ୍ ତ୍ୱଂ (ଆତ୍ମ) ପଦାର୍ଥର ବିଚାରନିମିତ୍ତ ସର୍ବକର୍ମ ତ୍ୟାଗ କରିବା ଶ୍ରୁତିସିଦ୍ଧ ନିୟମ, ତାହା ନ କଲେ ପତିତ ହେବାକୁ ହୁଏ । ଅତଏବ ଅଜିତେନ୍ଦ୍ରିୟ ବ୍ୟକ୍ତି ସନ୍ନ୍ୟାସୀ ହେଲେ ମଧ୍ୟ ମୁକ୍ତି ଲାଭ କରି ପାରେ ନାହିଁ । ୬ ।

ଶ୍ଲୋକଃ ।

ଯସ୍ତ୍ୱିନ୍ଦ୍ରିୟାଣି ମନସା, ନିୟମ୍ୟାରଭତେଽର୍ଜ୍ଜୁନ ।
କର୍ମେନ୍ଦ୍ରିୟୈଃ କର୍ମଯୋଗ,ମସକ୍ତଃ ସ ବିଶିଷ୍ୟତେ । ୭ ।

ଅନ୍ୱୟଃ ।

ହେ ଅର୍ଜ୍ଜୁନ ! ଯଃ ମନସା ଇନ୍ଦ୍ରିୟାଣି ସଂଯମ୍ୟ ତୁ କର୍ମେନ୍ଦ୍ରିୟୈଃ କର୍ମଯୋଗଂ ଆରଭତେ ସଃ ଅସକ୍ତଃ ବିଶି- ଷ୍ୟତେ । ୭ ।

ଟୀକା ।

ଏତଦ୍ୱିପରୀତଃ କର୍ମକର୍ତ୍ତା ତୁ ଶ୍ରେଷ୍ଠ ଇତ୍ୟାହ ଯସ୍ତ୍ୱିନ୍ଦ୍ରିୟାଣୀତି । ଯସ୍ତୁ ଜ୍ଞାନେନ୍ଦ୍ରିୟାଣି ମନସା ନିୟମ୍ୟ ଈଶ୍ୱରପରାଣି

Digitized by PPRACHIN, SOA

କୃତ୍ୱା କର୍ମେନ୍ଦ୍ରିୟୈଃ କର୍ମରୂପଯୋଗମୁପାୟମାରଭତେଽନୁତିଷ୍ଠତି ଅସକ୍ତଃ ଫଳାଭିଳାଷରହିତଃ ସ ବିଶିଷ୍ୟତେ ବିଶିଷ୍ଟୋ-ଭବତି ତତଶ୍ଚ ସର୍ବଥା ଜ୍ଞାନବାନ୍ ଭବତୀତ୍ୟର୍ଥଃ । ୭ ।

### ପଦବ୍ୟାଖ୍ୟା ।

ଯଃ—ଯେ, ତୁ—ପୁଣି, ଇନ୍ଦ୍ରିୟାଣି—ଇନ୍ଦ୍ରିୟମାନଙ୍କୁ, ମନସା—ମନରେ, ନିୟମ୍ୟ—ଦମନ କରି, ଆରଭତେ—ଆରମ୍ଭ କରନ୍ତି, ଅର୍ଜ୍ଜୁନ—ହେ ଅର୍ଜ୍ଜୁନ !, କର୍ମେନ୍ଦ୍ରିୟୈଃ—କର୍ମେନ୍ଦ୍ରିୟମାନଙ୍କଦ୍ୱାରା, କର୍ମଯୋଗଂ—କର୍ମଯୋଗକୁ, ଅସକ୍ତଃ—ଫଳଇଚ୍ଛାରହିତ, ସଃ—ସେ, ବିଶିଷ୍ୟତେ—ଜ୍ଞାନବିଶିଷ୍ଟ ଅଟନ୍ତି । ୭ ।

### ଅନୁବାଦ ।

ହେ ଅର୍ଜ୍ଜୁନ! ଯେଉଁ ଲୋକ ମନରେ ଜ୍ଞାନେନ୍ଦ୍ରିୟମାନଙ୍କୁ ଦମନ କରି ଫଳକାମନା-ରହିତ ହୋଇ କର୍ମେନ୍ଦ୍ରିୟମାନଙ୍କଦ୍ୱାରା କର୍ମଯୋଗର ଅନୁଷ୍ଠାନ କରନ୍ତି, ସେ ଜ୍ଞାନବାନ୍ ଅଟନ୍ତି । ୭ ।

### ବିଶଦବ୍ୟାଖ୍ୟା ।

ନିଷ୍କାମଭାବରେ ହେଉ ବା ସକାମଭାବରେ ହେଉ କର୍ମ କରିବାକୁ ହେଲେ କର୍ମେନ୍ଦ୍ରିୟମାନଙ୍କର ସମାନ ପରିଶ୍ରମ ହୁଏ, କିନ୍ତୁ କେବଳ ମନର ଶୁଦ୍ଧ ବା ଅଶୁଦ୍ଧ ଅବସ୍ଥା ଅନୁସାରେ ଜୀବର ମୁକ୍ତି ବା ବନ୍ଧନ ହୁଏ; ଅତଏବ ମନକୁ ଦମନ କରି କର୍ମ ଅନୁଷ୍ଠାନ କଲେ ଅର୍ଥାତ୍ ନିଷ୍କାମଭାବରେ କର୍ମ କଲେ ପ୍ରକୃତ ସନ୍ନ୍ୟାସ ହୁଏ । ସେହିପ୍ରକାର ସନ୍ନ୍ୟାସ ଅବଲମ୍ବନ କରିବା ବ୍ୟକ୍ତି ପ୍ରକୃତ ଚତୁର ଓ ମହାନ୍ ଅଟନ୍ତି । ୭ ।

### ଶ୍ଳୋକଃ ।

ନିୟତଂ କୁରୁ କର୍ମ ତ୍ୱଂ, କର୍ମ ଜ୍ୟାୟୋ ହ୍ୟକର୍ମଣଃ ।
ଶରୀରଯାତ୍ରାପି ଚ ତେ, ନ ପ୍ରସିଦ୍ଧ୍ୟେଦକର୍ମଣଃ । ୮ ।

### ଅନ୍ୱୟଃ ।

ତ୍ୱଂ ନିୟତଂ କର୍ମ କୁରୁ, ଚ ଅକର୍ମଣଃ ହି କର୍ମ ଜ୍ୟାୟଃ, ଅକର୍ମଣଃ ତେ ଶରୀରଯାତ୍ରା ଅପି ନ ପ୍ରସିଦ୍ଧ୍ୟେତ୍ । ୮ ।

### ଟୀକା ।

ନିୟତମିତି । ଯସ୍ମାଦେବଂ ତସ୍ମାନ୍ନିୟତଂ ନିତ୍ୟଂ କର୍ମ ସନ୍ଧ୍ୟୋପାସନାଦି କୁରୁ ହି ଯସ୍ମାତ୍ ଅକର୍ମଣଃ ସର୍ବକର୍ମ-ଣୋଽକରଣାତ୍ ସକାଶାତ୍ କର୍ମକରଣଂ ଜ୍ୟାୟୋଽଧିକତରଂ । ଅନ୍ୟଥା ଅକର୍ମଣଃ ସର୍ବକର୍ମଶୂନ୍ୟସ୍ୟ ତବ ଶରୀରନିର୍ବା-ହୋଽପି ନ ଭବେତ୍ । ୮ ।

### ପଦବ୍ୟାଖ୍ୟା ।

ନିୟତଂ—ପ୍ରତିଦିନ, କୁରୁ—କର, କର୍ମ—ସନ୍ଧ୍ୟା ଉପାସନାଦି କ୍ରିୟା, ତ୍ୱଂ—ତୁମ୍ଭେ, କର୍ମ—ଉକ୍ତ କାର୍ଯ୍ୟ, ଜ୍ୟାୟଃ—ଅଧିକତର, ହି—ଯେହେତୁ, ଅକର୍ମଣଃ—କର୍ମ ନ କରିବାଠାରୁ, ଶରୀରଯାତ୍ରା—ଦେହନିର୍ବାହ ଅର୍ଥାତ୍ ପ୍ରାଣଧାରଣାଦି, ଅପି—ମଧ୍ୟ, ଚ—ପୁଣି, ତେ—ତୁମ୍ଭର, ନ ପ୍ରସିଦ୍ଧ୍ୟେତ୍—ସମ୍ପନ୍ନ ହେବ ନାହିଁ, ଅକର୍ମଣଃ—କର୍ମ ନ କଲେ । ୮ ।

Digitized by PPRACHIN, SOA

ଅନୁବାଦ ।

(ଅତଏବ) ତୁମ୍ଭେ ନିତ୍ୟ କର୍ମ କର, ଯେହେତୁ କର୍ମ ନ କରିବାଠାରୁ କର୍ମ କରିବା ଶ୍ରେଷ୍ଠତର । ଆଉ କର୍ମ ନ କଲେ ତୁମ୍ଭର ଶରୀରନିର୍ବାହ ମଧ୍ୟ ହେବ ନାହିଁ । ୮ ।

ବିଶଦବ୍ୟାଖ୍ୟା ।

ତୁମ୍ଭେ ଚକ୍ଷୁଃ କର୍ଣ୍ଣ-ଆଦି ଜ୍ଞାନେନ୍ଦ୍ରିୟମାନଙ୍କୁ ସ୍ୱ ସ୍ୱ ବିଷୟରେ ଆସକ୍ତ ନ କରି କର ଚରଣ ଆଦି କର୍ମେନ୍ଦ୍ରିୟଦ୍ୱାରା ନିତ୍ୟନୈମିତ୍ତିକ କାର୍ଯ୍ୟ କର । କର୍ମ ନ କଲେ ଅନ୍ତଃକରଣ ଶୁଦ୍ଧି ହୁଏ ନାହିଁ; ଅତଏବ କର୍ମ କରିବା ନିତାନ୍ତ ଆବଶ୍ୟକ । କର୍ମ ନ କରିବାଠାରୁ ଫଳକାମନାରହିତ ହୋଇ କର୍ମ କରିବା ଶ୍ରେଷ୍ଠତର । ଆଉ କର୍ମ ନ କଲେ ଅର୍ଥାତ୍ ପାନ ଭୋଜନାଦି ନ କଲେ ତୁମ୍ଭର ଶରୀରରକ୍ଷା ହେବ କିପରି ? ଶରୀରରକ୍ଷା ଓ ଅନ୍ୟାନ୍ୟ କାରଣରେ କର୍ମ କରିବାକୁ ହେବ, କେବଳ ଫଳକାମନା କରିବ ନାହିଁ । ୮ ।

ଶ୍ଳୋକଃ ।

ଯଜ୍ଞାର୍ଥାତ୍ କର୍ମଣୋଽନ୍ୟତ୍ର, ଲୋକୋଽୟଂ କର୍ମବନ୍ଧନଃ ।
ତଦର୍ଥଂ କର୍ମ କୌନ୍ତେୟ, ମୁକ୍ତସଙ୍ଗଃ ସମାଚର । ୯ ।

ଅନ୍ୱୟଃ ।

ହେ କୌନ୍ତେୟ! ଯଜ୍ଞାର୍ଥାତ୍ କର୍ମଣଃ ଅନ୍ୟତ୍ର ଅୟଂ ଲୋକଃ କର୍ମବନ୍ଧନଃ (ଭବତି) ତଦର୍ଥଂ ତ୍ୱଂ ମୁକ୍ତସଙ୍ଗଃ (ସନ୍) କର୍ମ ସମାଚର । ୯ ।

ଟୀକା ।

ସାଙ୍ଖ୍ୟାସ୍ତୁ ସର୍ବମପି କର୍ମ ବନ୍ଧକତ୍ୱାନ୍ନ କାର୍ଯ୍ୟମିତ୍ୟାହୁସ୍ତନ୍ନିରାକୁର୍ବନ୍ନାହ ଯଜ୍ଞାର୍ଥାଦିତି । ଯଜ୍ଞୋ ବୈ ବିଷ୍ଣୁରିତି ଶ୍ରୁତେଃ । ତଦାରାଧନାର୍ଥାତ୍ କର୍ମଣୋଽନ୍ୟତ୍ର ତଦେକଂ ବିନା ଲୋକୋଽୟଂ କର୍ମବନ୍ଧନଃ କର୍ମଭିର୍ବଧ୍ୟତେ ନତ୍ୱୀଶ୍ୱରାରାଧନାର୍ଥେନ କର୍ମଣା ଅତସ୍ତଦର୍ଥଂ ବିଷ୍ଣୁପ୍ରୀତ୍ୟର୍ଥଂ ମୁକ୍ତସଙ୍ଗୋ ନିଷ୍କାମଃ ସନ୍ କର୍ମ ସମ୍ୟଗାଚର । ୯ ।

ପଦବ୍ୟାଖ୍ୟା ।

ଯଜ୍ଞାର୍ଥାତ୍—ବିଷ୍ଣୁଙ୍କ ଆରାଧନା ନିମିତ୍ତ, ଅଥବା 'ଯଜ୍ଞ'—ପରମେଶ୍ୱର ସ୍ମରଣ ଓ ଜପ ଆଦି କର୍ମ, 'ଅର୍ଥ'—ଆରାଧନା ଅର୍ଥାତ୍ ଉପାସନା, କର୍ମଣଃ—କର୍ମରୁ, ଅନ୍ୟତ୍ର—ଅନ୍ୟ କର୍ମରେ, ଲୋକଃ—ଜଗତ୍, ଅୟଂ—ଏହି, କର୍ମବନ୍ଧନଃ—କର୍ମଦ୍ୱାରା ଆବଦ୍ଧ, ତଦର୍ଥଂ—ସେହି ପରମେଶ୍ୱର ଆରାଧନା ନିମିତ୍ତ, କର୍ମ—ନିତ୍ୟନୈମିତ୍ତିକ କାର୍ଯ୍ୟ, କୌନ୍ତେୟ—ହେ କୁନ୍ତୀପୁତ୍ର ଅର୍ଜୁନ!, ମୁକ୍ତସଙ୍ଗଃ—କାମନାରହିତ ହୋଇ, ସମାଚର—ଉତ୍ତମରୂପେ ଆଚରଣ କର । ୯ ।

ଅନୁବାଦ ।

ହେ ଅର୍ଜୁନ ! ବିଷ୍ଣୁ ଆରାଧନା ଭିନ୍ନ ଅନ୍ୟ କର୍ମରେ ଲୋକଙ୍କର ବନ୍ଧନ ହୁଏ; ଅତଏବ ତୁମ୍ଭେ କାମନାଶୂନ୍ୟ ହୋଇ ସେହି ବିଷ୍ଣୁଙ୍କ ଉଦ୍ଦେଶ୍ୟରେ କର୍ମାନୁଷ୍ଠାନ କର । ୯ ।

ବିଶଦବ୍ୟାଖ୍ୟା ।

କାଳେ ଅର୍ଜୁନଙ୍କ ମନରେ ଏପରି ଆଶଙ୍କା ହେବ, ଯେ "କର୍ମଣା ବଧ୍ୟତେ ଜନ୍ତୁର୍ବିଦ୍ୟୟା ଚ ବିମୁଚ୍ୟତେ" ଅର୍ଥାତ୍ 'ଜୀବ କର୍ମଦ୍ୱାରା ସଂସାରବନ୍ଧନଦଶା ପ୍ରାପ୍ତ ହୁଏ ଓ ଜ୍ଞାନଦ୍ୱାରା

Digitized by PPRACHIN, SOA

ତହିଁରୁ ମୁକ୍ତି ଲାଭ କରେ'; ଅତଏବ କର୍ମତ୍ୟାଗ ଉଚିତ । ତାହା ନିବାରଣପାଁଇ ଶ୍ରୀଭଗବାନ୍ କହୁଲେ, ଯେ ଯଜ୍ଞ ଅର୍ଥାତ୍ ବିଷ୍ଣୁ (ଯଜ୍ଞୋ ବୈ ବିଷ୍ଣୁରିତି ଶ୍ରୁତେଃ) ଙ୍କ ଉଦ୍ଦେଶ୍ୟରେ କର୍ମ ନ କରି ଅନ୍ୟପ୍ରକାରେ ଅର୍ଥାତ୍ କାମନାଯୁକ୍ତ ହୋଇ କର୍ମ କଲେ ଜୀବର ବନ୍ଧନ ହୁଏ, ମାତ୍ର ବିଷ୍ଣୁଙ୍କ ଉଦ୍ଦେଶ୍ୟରେ କର୍ମ କଲେ, ଫଳକାମନା ନ ଥିବାରୁ ତହିଁରେ ଜୀବର ବନ୍ଧନ ହୁଏ ନାହିଁ; ଅତଏବ ତୁମ୍ଭେ ଫଳକାମନା ତ୍ୟାଗ କରି କେବଳ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ନିତ୍ୟ-ନୈମିତ୍ତିକ ସନ୍ଧ୍ୟା ବନ୍ଦନାଦି ଓ ଶ୍ରାଦ୍ଧାଦି କର୍ମ କର, ଅର୍ଥାତ୍ ଆଶ୍ରମାନୁଯାୟୀ କର୍ମ କର । ୯ ।

ଶ୍ଳୋକଃ ।

ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା, ପୁରୋବାଚ ପ୍ରଜାପତିଃ ।
ଅନେନ ପ୍ରସବିଷ୍ୟଧ୍ୱମେଷ ବୋଽସ୍ତ୍ୱିଷ୍ଟକାମଧୁକ୍ । ୧୦ ।

ଅନ୍ୱୟଃ ।

ପୁରା ପ୍ରଜାପତିଃ ସହଯଜ୍ଞାଃ ପ୍ରଜାଃ ସୃଷ୍ଟ୍ୱା ଉବାଚ । (ଯୂୟଂ) ଅନେନ ପ୍ରସବିଷ୍ୟଧ୍ୱଂ ଏଷଃ ବଃ ଇଷ୍ଟକାମଧୁକ୍ ଅସ୍ତୁ । ୧୦ ।

ଟୀକା ।

ପ୍ରଜାପତିବଚନାଦପି କର୍ମକର୍ତ୍ତବ୍ୟମିତ୍ୟାହ । ସହଯଜ୍ଞା ଇତି ଚତୁର୍ଭିଃ । ଯଜ୍ଞେନ ସହ ବର୍ତ୍ତନ୍ତ ଇତି ସହଯଜ୍ଞା ଯଜ୍ଞାଧିକୃତା ବ୍ରାହ୍ମଣାଦ୍ୟାଃ ପ୍ରଜାଃ ପୁରା ସର୍ଗାଦୌ ସୃଷ୍ଟ୍ୱେଦମୁବାଚ ବ୍ରହ୍ମା । ଅନେନ ଯଜ୍ଞେନ ପ୍ରସବିଷ୍ୟଧ୍ୱଂ ପ୍ରସବୋ-ବୃଦ୍ଧିଃ ଉତ୍ତରୋତ୍ତରାମଭିବୃଦ୍ଧିଂ ଲଭଧ୍ୱମିତ୍ୟର୍ଥଃ ତତ୍ର ହେତୁଃ ଏଷଯଜ୍ଞୋ ବୋ ଯୁଷ୍ମାକମିଷ୍ଟକାମଧୁକ୍ ଇଷ୍ଟାନ୍ କାମାନ୍ ଦୋଗ୍ଧୀତି ତଥା ଅଭୀଷ୍ଟଭୋଗପ୍ରଦୋଽସ୍ତ୍ୱିତ୍ୟର୍ଥଃ । ଅତ୍ର ଚ ଯଜ୍ଞଗ୍ରହଣମାବଶ୍ୟକକର୍ମୋପଲକ୍ଷଣାର୍ଥଂ କାମ୍ୟକର୍ମପ୍ରଶଂସା ତୁ ପ୍ରକରଣେଽସଙ୍ଗତାପି ସାମାନ୍ୟତୋଽକର୍ମଣଃ କର୍ମଶ୍ରେଷ୍ଠମିତ୍ୟେତଦର୍ଥମିତ୍ୟଦୋଷଃ । ୧୦ ।

ପଦବ୍ୟାଖ୍ୟା ।

ସହଯଜ୍ଞାଃ — ଯଜ୍ଞର ସହିତ ବା ଯଜ୍ଞାଧିକାରୀ, ପ୍ରଜାଃ — (ବ୍ରାହ୍ମଣାଦି) ପ୍ରଜାମାନଙ୍କୁ, ସୃଷ୍ଟ୍ୱା — ଉତ୍ପାଦନ କରି, ପୁରା — ସୃଷ୍ଟିର ପ୍ରଥମରେ, ଉବାଚ — କହିଥିଲେ, ପ୍ରଜାପତିଃ — ବ୍ରହ୍ମା, ଅନେନ — ଏହି ଯଜ୍ଞଦ୍ୱାରା, ପ୍ରସବିଷ୍ୟଧ୍ୱଂ — ବୃଦ୍ଧି ପାଇବ, ଏଷଃ — ଏହି ଯଜ୍ଞ, ବଃ — ତୁମ୍ଭମାନଙ୍କର, ଅସ୍ତୁ — ହେଉ, ଇଷ୍ଟକାମଧୁକ୍ — ଇଷ୍ଟକାମଦାତା । ୧୦ ।

ଅନୁବାଦ ।

ବ୍ରହ୍ମା ସୃଷ୍ଟି ଆଦ୍ୟରେ ଯଜ୍ଞାଧିକାରୀ ପ୍ରଜାମାନଙ୍କୁ ସୃଷ୍ଟି କରି କହିଥିଲେ;—'ଏହି ଯଜ୍ଞଦ୍ୱାରେ ତୁମ୍ଭେମାନେ ବୃଦ୍ଧିପ୍ରାପ୍ତ ହୁଅ, ଏହି ଯଜ୍ଞ ତୁମ୍ଭମାନଙ୍କର ଅଭୀଷ୍ଟଫଳପ୍ରଦ ହେଉ' । ୧୦ ।

ବିଶଦବ୍ୟାଖ୍ୟା ।

ସହଯଜ୍ଞ ଅର୍ଥାତ୍ ଅଧିକାରୀ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟଙ୍କୁ ସମ୍ବୋଧନ କରି ବ୍ରହ୍ମା ଯାହା କହିଥିଲେ, ସେଥିରୁ କାମ୍ୟକର୍ମ ଅର୍ଥାତ୍ ସକାମକର୍ମ କରିବାକୁ ହେବ ଏପରି କିଛି ପ୍ରକାଶ ହେଉ ନାହିଁ । ଗୀତାରେ ମଧ୍ୟ ସକାମକର୍ମର କଥା କୌଣସି ଠାରେ ଉଲ୍ଲେଖ ନାହିଁ, ବରଂ ସକାମକର୍ମ ଯେ ନିକୃଷ୍ଟ ତାହା "ଯାମିମାଂ ପୁଷ୍ପିତାଂ ବାଚଂ" ଇତ୍ୟାଦି ଶ୍ଳୋକରେ ପରିଷ୍କାରରୂପେ ବୁଝାଇ ଦିଆ ଯାଇଅଛି । ଏ ଶ୍ଳୋକରେ ବ୍ରହ୍ମାଙ୍କର ଉକ୍ତିର ଅର୍ଥ ଏହି କ

ନିଷ୍କାମଭାବରେ କର୍ତ୍ତବ୍ୟକର୍ମ କର, ସେହି କର୍ମର ଅଲୌକିକ ଦିବ୍ୟଶକ୍ତି ପ୍ରଭାବରେ ତୁମ୍ଭେମାନେ ଯେତେବେଳେ ଯାହା ଇଚ୍ଛା କରିବ ତେତେବେଳେ ତାହା ସିଦ୍ଧ ହୋଇଥିବ ଅର୍ଥାତ୍ ନିଷ୍କାମଭାବରେ କର୍ମ କଲେ ବ୍ରହ୍ମାନନ୍ଦରୂପ ପୂର୍ଣ୍ଣସୁଖ ପ୍ରାପ୍ତ ହେବ । ବ୍ରହ୍ମାଣ୍ଡର ଯାବତୀୟ ଭିନ୍ନ ୨ ସୁଖ ସେହି ବ୍ରହ୍ମାନନ୍ଦରୂପ ପୂର୍ଣ୍ଣସୁଖର ଏକ ୨ ଅଂଶ ମାତ୍ର । ୧୦ ।

### ଶ୍ଳୋକଃ ।

ଦେବାନ୍ ଭାବୟତାନେନ, ତେ ଦେବା ଭାବୟନ୍ତୁ ବଃ ।
ପରସ୍ପରଂ ଭାବୟନ୍ତଃ, ଶ୍ରେୟଃ ପରମବାପ୍ସ୍ୟଥ । ୧୧ ।

### ଅନ୍ୱୟଃ ।

ଅନେନ ଦେବାନ୍ ଭାବୟତ, ତେ ଦେବାଃ ବଃ ଭାବୟନ୍ତୁ । ପରସ୍ପରଂ ଭାବୟନ୍ତଃ ପରଂ ଶ୍ରେୟଃ ଅବାପ୍ସ୍ୟଥ ।୧୧।

### ଟୀକା ।

କଥମିଷ୍ଟକାମଦୋଗ୍ଧା ଯଜ୍ଞୋଭବେଦିତ୍ୟତ୍ରାହ, ଦେବାନିତି । ଅନେନ ଯଜ୍ଞେନ ଯୂୟଂ ଦେବାନ୍ ଭାବୟତ ହବିର୍ଭାଗୈଃ ସମ୍ବର୍ଦ୍ଧୟତ, ତେ ଚ ଦେବା ବୋ ଯୁଷ୍ମାନ୍ ସମ୍ବର୍ଦ୍ଧୟନ୍ତୁ, ବୃଷ୍ଟ୍ୟାଦିନାନ୍ନୋତ୍ପତ୍ତିଦ୍ୱାରେଣ, ଏବମନ୍ୟୋଽନ୍ୟଂ ସମ୍ବର୍ଦ୍ଧୟନ୍ତୋ ଦେବାଶ୍ଚ ଯୂୟଂ ଚ ପରସ୍ପରଂ ଶ୍ରେୟୋଽଭୀଷ୍ଟମର୍ଥଂ ପ୍ରାପ୍ସ୍ୟଥ । ୧୧ ।

### ପଦବ୍ୟାଖ୍ୟା ।

ଦେବାନ୍—ଦେବତାମାନଙ୍କୁ, ଭାବୟତ—ସନ୍ତୁଷ୍ଟ କର, ଅନେନ—ଏହି ଯଜ୍ଞଦ୍ୱାରା, ତେ ଦେବାଃ—ସେହି ଦେବତାମାନେ, ଭାବୟନ୍ତୁ—ସନ୍ତୁଷ୍ଟ କରନ୍ତୁ, ବଃ—ତୁମ୍ଭମାନଙ୍କୁ, ପରସ୍ପରଂ ଭାବୟନ୍ତଃ—ଅନ୍ୟୋଽନ୍ୟକୁ ସନ୍ତୁଷ୍ଟ କରି, ଶ୍ରେୟଃ—ମଙ୍ଗଳ, ପରଂ—ଉତ୍କୃଷ୍ଟ, ଅବାପ୍ସ୍ୟଥ—ପ୍ରାପ୍ତ ହେବ । ୧୧ ।

### ଅନୁବାଦ ।

ଏହି ଯଜ୍ଞଦ୍ୱାରା ତୁମ୍ଭେମାନେ ଦେବତାମାନଙ୍କୁ ସନ୍ତୁଷ୍ଟ କର, ଦେବତାମାନେ ତୁମ୍ଭମାନଙ୍କୁ ସନ୍ତୁଷ୍ଟ କରନ୍ତୁ । ଏହିପରି ପରସ୍ପର ସନ୍ତୋଷସାଧନଦ୍ୱାରା ତୁମ୍ଭେମାନେ ପରମକଲ୍ୟାଣ ପ୍ରାପ୍ତ ହେବ । ୧୧ ।

### ବିଶଦବ୍ୟାଖ୍ୟା ।

ଯଜ୍ଞର ହବିର୍ଭାଗଦ୍ୱାରା ତୁମ୍ଭେମାନେ ଇନ୍ଦ୍ରାଦି ଦେବତାଙ୍କୁ ପରିତୃପ୍ତ କଲେ, ସେମାନେ ବୃଷ୍ଟିଦ୍ୱାରା ପୃଥିବୀକୁ ଶସ୍ୟଶାଳିନୀ କରିବେ, ସେଥିରେ ତୁମ୍ଭେମାନେ ତୃପ୍ତ ହେବ । ଏହିପରି ତୁମ୍ଭମାନଙ୍କର ଯଜ୍ଞାଦି କାର୍ଯ୍ୟରେ ଦେବତାମାନଙ୍କର ଓ ସେମାନଙ୍କର ବୃଷ୍ଟ୍ୟାଦି କାର୍ଯ୍ୟରେ ତୁମ୍ଭମାନଙ୍କର ମନୋରଥ ପୂର୍ଣ୍ଣ ହେବ । ୧୧ ।

### ଶ୍ଳୋକଃ ।

ଇଷ୍ଟାନ୍ ଭୋଗାନ୍ ହି ବୋ ଦେବା, ଦାସ୍ୟନ୍ତେ ଯଜ୍ଞଭାବିତାଃ ।
ତୈର୍ଦତ୍ତାନପ୍ରଦାୟୈଭ୍ୟୋ, ଯୋ ଭୁଙ୍କ୍ତେ ସ୍ତେନ ଏବ ସଃ । ୧୨ ।

Digitized by PPRACHIN, SOA

ଅନ୍ୱୟଃ ।

ଯଜ୍ଞଭାବିତାଃ ଦେବାଃ ବଃ ଇଷ୍ଟାନ୍ ଭୋଗାନ୍ ହି ଦାସ୍ୟନ୍ତେ ତୈଃ ଦତ୍ତାନ୍ ଏଭ୍ୟଃ ଅପ୍ରଦାୟ ଯଃ ଭୁଂକ୍ତେ ସଃ ସ୍ତେନଃ ଏବ । ୧୨ ।

ଟୀକା ।

ଏତଦେବ ସ୍ପଷ୍ଟୀକୁର୍ବନ୍ କର୍ମାକରଣେ ଦୋଷମାହ, ଇଷ୍ଟାନିତି । ଯଜ୍ଞୈର୍ଭାବିତା ଦେବା ବୃଷ୍ଟ୍ୟାଦିଦ୍ୱାରେଣ ବୋଯୁଷ୍ମଭ୍ୟଂ ଭୋଗାନ୍ ଦାସ୍ୟନ୍ତେ ହି ଅତୋ ଦେବୈର୍ଦତ୍ତାନନ୍ନାଦୀନ୍ ଏଭ୍ୟୋ ଦେବେଭ୍ୟ ପଞ୍ଚଯଜ୍ଞାଦିଭିରଦତ୍ତ୍ୱା ଯୋ-ଭୁଂକ୍ତେ ସତୁ ଚୌର ଏବ ଜ୍ଞେୟଃ । ୧୨ ।

ପଦବ୍ୟାଖ୍ୟା ।

ଇଷ୍ଟାନ୍ ଭୋଗାନ୍—ବାଞ୍ଛିତ ଭୋଗ୍ୟ ପଦାର୍ଥମାନଙ୍କୁ, ହି—ନିଶ୍ଚିତ, ବଃ—ତୁମ୍ଭମାନଙ୍କୁ, ଦେବାଃ—ଦେବତାମାନେ, ଦାସ୍ୟନ୍ତେ—ଦେବେ, ଯଜ୍ଞଭାବିତାଃ—ଯଜ୍ଞରେ ପରିତୃପ୍ତ, ତୈଃ—ସେମାନଙ୍କଦ୍ୱାରା, ଦତ୍ତାନ୍—ପ୍ରଦତ୍ତ, ଅପ୍ରଦାୟ—ନ ଦେଇ, ଏଭ୍ୟଃ—ଏମାନଙ୍କୁ, ଯଃ ଭୁଂକ୍ତେ—ଯେ ଭୋଜନ କରେ, ସ୍ତେନଃ—ଚୋର, ଏବ—କେବଳ, ସଃ—ସେ । ୧୨ ।

ଅନୁବାଦ ।

ଦେବତାମାନେ ଯଜ୍ଞରେ ତୃପ୍ତ ହୋଇ ତୁମ୍ଭମାନଙ୍କୁ ବାଞ୍ଛିତ ସୁଖଭୋଗ ପ୍ରଦାନ କରିବେ । ସେହି ଦେବତାଦତ୍ତ ଅନ୍ନାଦି ସେମାନଙ୍କୁ ନ ଦେଇ ଯେ ଭୋଗ କରେ ସେ ଚୋର ଅଟେ ।

ବିଶଦବ୍ୟାଖ୍ୟା ।

ଯଜ୍ଞଦ୍ୱାରା ଦେବତାମାନେ ସନ୍ତୁଷ୍ଟ ହେଲେ ବୃଷ୍ଟ୍ୟାଦିଦ୍ୱାରା ପୃଥିବୀକୁ ଶସ୍ୟ ପୂର୍ଣ୍ଣ କରନ୍ତି ସେହି ଶସ୍ୟଦ୍ୱାରା ମନୁଷ୍ୟମାନେ ଅନ୍ନ, ପଶୁ, ସୁବର୍ଣ୍ଣ ଓ ବାଞ୍ଛିତ ଭୋଗ୍ୟ ଦ୍ରବ୍ୟ ପ୍ରାପ୍ତ ହୁଅନ୍ତି । ଏ ସବୁ ଭୋଗ୍ୟ ବସ୍ତୁକୁ ଦେବଦତ୍ତ ଋଣ ବୋଲି ମନେ କରିବାକୁ ହେବ । ସେହି ଦେବତା-ମାନଙ୍କର ସନ୍ତୋଷ ବିଧାନ ପାଇଁ ବ୍ରୀହି, ଯବାଦି ଦ୍ୱାରା ବୈଶ୍ୱଦେବ, ଅଗ୍ନିହୋତ୍ର, ଜାତେଷ୍ଟି ଓ ଅତିଥିପୂଜା ପ୍ରଭୃତି କରିବା ମନୁଷ୍ୟ ମାତ୍ରରଇ ଉଚିତ । ଯେଉଁମାନେ କେବଳ ଫଳମୂଳ ଆହାର କରନ୍ତି ସେମାନେ ମଧ୍ୟ (ଦେବଦତ୍ତ ବୃଷ୍ଟି ଆଦିରୁ ଫଳମୂଳର ଉତ୍ପତ୍ତି ଓ ବୃଦ୍ଧି ହେଉଥିବାରୁ ) ଦେବାଂଶ ପ୍ରଦାନ କରିବେ । ଯେଉଁ ବ୍ୟକ୍ତି ଏ ପ୍ରକାର ନ କରି ଦେବ-ଦତ୍ତ ଅନ୍ନାଦି କେବଳ ଆପେ ଭୋଗ କରେ ସେ ପରଧନ ହରଣକାରୀ କୃତଘ୍ନ ଚୋର ଅଟେ । ଫଳ କଥା ଏହିକି ଯାହାକୁ ଯାହା ମିଳେ ସେ ତହିଁରୁ ଦେବାଂଶ ନ ଦେଲେ ଅର୍ଥାତ୍ ବୈଶ୍ୱ-ଦେବାଦି କର୍ତ୍ତବ୍ୟ କର୍ମ ନ କଲେ ଚୋର ବୋଲି କଥିତ ହେବ । ୧୨ ।

ଶ୍ଳୋକଃ ।

ଯଜ୍ଞଶିଷ୍ଟାଶିନଃ ସନ୍ତୋ, ମୁଚ୍ୟନ୍ତେ ସର୍ବକିଲ୍ବିଷୈଃ ।
ଭୁଞ୍ଜତେ ତେ ତ୍ୱଘଂ ପାପା, ଯେ ପଚନ୍ତ୍ୟାତ୍ମକାରଣାତ୍ । ୧୩ ।

ଅନ୍ୱୟଃ ।

ଯଜ୍ଞଶିଷ୍ଟାଶିନଃ ସନ୍ତଃ ସର୍ବକିଲ୍ବିଷୈଃ ମୁଚ୍ୟନ୍ତେ । ଯେ ପାପାଃ ଆତ୍ମକାରଣାତ୍ ପଚନ୍ତି ତେ ତୁ ଅଘଂ ଭୁଞ୍ଜତେ । ୧୩ ।

## ଟୀକା ।

ଇତଶ୍ଚ ଯଜନ୍ତ ଏବ ଶ୍ରେଷ୍ଠା ନେତର ଇତ୍ୟାହ, ଯଜ୍ଞଶିଷ୍ଟାଶିନ ଇତି । ବୈଶ୍ୱଦେବାଦିଯଜ୍ଞାବଶିଷ୍ଟଂ ଯେଽଶ୍ନନ୍ତି ତେ ପଞ୍ଚସୂନାକୃତୈଃ ସର୍ବୈଃ କିଲ୍ବିଷୈଃ ମୁଚ୍ୟନ୍ତେ । ପଞ୍ଚସୂନାଶ୍ଚ ସ୍ମୃତାବୁକ୍ତାଃ ।

କଣ୍ଡନୀ ପେଷଣୀ ଚୁଲ୍ଲୀ ଉଦକୁମ୍ଭୀ ଚ ମାର୍ଜ୍ଜନୀ ।

ପଞ୍ଚସୂନା ଗୃହସ୍ଥସ୍ୟ ତାଭିଃ ସ୍ୱର୍ଗଂ ନ ଗଚ୍ଛତି ।

ଯେତ୍ୱାତ୍ମନୋ ଭୋଜନାର୍ଥମେବ ପଚନ୍ତି ନତୁ ବୈଶ୍ୱଦେବାଦ୍ୟର୍ଥଂ ତେ ପାପା ଦୁରାତ୍ମାନ ଅଘମେବ ଭୁଞ୍ଜତେ । ୧୩ ।

## ପଦବ୍ୟାଖ୍ୟା ।

ଯଜ୍ଞଶିଷ୍ଟାଶିନଃ—ଯଜ୍ଞାବଶିଷ୍ଟ ଅନ୍ନଭୋଜୀ, ସନ୍ତଃ—ସଜ୍ଜନଗଣ, ମୁଚ୍ୟନ୍ତେ—ମୁକ୍ତ ହୁଅନ୍ତି, ସର୍ବକିଲ୍ବିଷୈଃ—ସମସ୍ତ ପାପରୁ, ଭୁଞ୍ଜତେ—ଭୋଗ କରନ୍ତି, ତେ—ସେମାନେ, ତୁ—ପୁଣି ବା କିନ୍ତୁ, ଅଘଂ—ପାପକୁ, ପାପାଃ—ପାପାତ୍ମାମାନେ, ଯେ—ଯେଉଁମାନେ, ପଚନ୍ତି—ପାକ କରନ୍ତି, ଆତ୍ମକାରଣାତ୍—ଆପଣା ନିମିତ୍ତ । ୧୩ ।

## ଅନୁବାଦ ।

ବୈଶ୍ୱଦେବାଦି ଯଜ୍ଞର ଅବଶିଷ୍ଟାନ୍ନଭୋଜୀ ସାଧୁବ୍ୟକ୍ତିମାନେ ସମସ୍ତ ପାପରୁ ମୁକ୍ତ ହୁଅନ୍ତି, କିନ୍ତୁ ଯେଉଁ ପାପାତ୍ମାମାନେ କେବଳ ଆପଣା ନିମିତ୍ତ ଅନ୍ନାଦି ପାକ କରନ୍ତି ସେମାନେ ପାପ ଭୋଗ କରନ୍ତି । ୧୩ ।

## ବିଶଦବ୍ୟାଖ୍ୟା ।

ଯେଉଁମାନେ ଶ୍ରଦ୍ଧାପୂର୍ବକ ବେଦବିହିତ ଯଜ୍ଞାଦିର ଅନୁଷ୍ଠାନ କରି ଦେବତାଙ୍କୁ ନିବେଦିତ ପ୍ରସାଦ ଭୋଜନ କରନ୍ତି ସେମାନେ ନିଷ୍ପାପ ଓ ପବିତ୍ର ହୁଅନ୍ତି । ଯେଉଁମାନେ କେବଳ ନିଜର ଉଦର ଭରଣ ନିମିତ୍ତ ଭୋଜନର ଆୟୋଜନ କରନ୍ତି ସେମାନେ ପଞ୍ଚସୂନାଦି ପାପର ଭାଗୀ ହୁଅନ୍ତି । ଗୃହସ୍ଥମାନଙ୍କର ଢିଙ୍କି, ଚକି, ଚୁଲ୍ଲୀ, ଜଳକୁମ୍ଭ ଓ ଝାଡୁଣୀ ଏହି ପଞ୍ଚସ୍ଥାନରେ ପ୍ରାୟ ଜୀବହିଂସା ହୁଏ, ଏହି ସବୁ ପାପକୁ 'ପଞ୍ଚସୂନା' କୁହାଯାଏ । ପଞ୍ଚସୂନା ପାପ ହେତୁରୁ ସ୍ୱର୍ଗଲାଭ ହୋଇ ପାରେ ନାହିଁ । ସେହି ପଞ୍ଚସୂନା ପାପ ନିବାରଣପାଇଁ ଗୃହସ୍ଥଙ୍କର ପଞ୍ଚଯଜ୍ଞ କରିବା ଉଚିତ । ଯଥା—"ଋଷିଯଜ୍ଞଂ ଦେବଯଜ୍ଞଂ ଭୂତଯଜ୍ଞଂ ଚ ସର୍ବଦା, ନୃଯଜ୍ଞଂ ପିତୃଯଜ୍ଞଂଚ ଯଥାଶକ୍ତି ନ ହାପୟେତ୍ ।" ବେଦାଧ୍ୟୟନ ଓ ସନ୍ଧ୍ୟା ଉପାସନାଦିକୁ 'ଋଷିଯଜ୍ଞ' ଅଗ୍ନିହୋତ୍ରାଦିକୁ 'ଦେବଯଜ୍ଞ' ବୈଶ୍ୱଦେବାଦିକୁ 'ଭୂତଯଜ୍ଞ' ଓ ଅନ୍ନାଦିଦ୍ୱାରା ଅତିଥିସତ୍କାରକୁ 'ନୃଯଜ୍ଞ' ଏବଂ ଶ୍ରାଦ୍ଧ ତର୍ପଣାଦିକୁ 'ପିତୃଯଜ୍ଞ' ବୋଲାଯାଏ । ଏହିପ୍ରକାର ଯଜ୍ଞ କରି ଅବଶିଷ୍ଟ ଅନ୍ନ ଭୋଜନ କଲେ ନିଷ୍ପାପ ହୁଅନ୍ତି, କିନ୍ତୁ ଏପରି ଯଜ୍ଞ ନ କରି କେବଳ ଆପଣାର ପେଟ ନିମିତ୍ତ ଯେଉଁମାନେ ପାକ କରନ୍ତି ସେମାନେ ପଞ୍ଚସୂନାଦି ପାପ ଭୋଗ କରନ୍ତି । ୧୩ ।

## ଶ୍ଳୋକଃ ।

ଅନ୍ନାଦ୍‌ଭବନ୍ତି ଭୂତାନି, ପର୍ଜ୍ଜନ୍ୟାଦନ୍ନସମ୍ଭବଃ ।

ଯଜ୍ଞାଦ୍‌ଭବତି ପର୍ଜ୍ଜନ୍ୟୋ, ଯଜ୍ଞଃ କର୍ମସମୁଦ୍ଭବଃ । ୧୪ ।

Digitized by PPRACHIN, SOA

## ଅନ୍ୱୟଃ ।

ଅନ୍ନାତ୍ ଭୂତାନି ଭବନ୍ତି, ପର୍ଜ୍ଜନ୍ୟାତ୍ ଅନ୍ନସମ୍ଭବଃ (ଭବତି) ପର୍ଜ୍ଜନ୍ୟଃ ଯଜ୍ଞାତ୍ ଭବତି, ଯଜ୍ଞଃ କର୍ମସମୁଦ୍ଭବଃ (ଭବତି) । ୧୪ ।

## ଟୀକା ।

ଜଗଚ୍ଚକ୍ରପ୍ରବୃତ୍ତିହେତୁତ୍ୱାଦପି କର୍ମ କର୍ତ୍ତବ୍ୟମିତ୍ୟାହ, ଅନ୍ନାଦିତି ତ୍ରିଭିଃ । ଅନ୍ନାଚ୍ଛୁକ୍ରଶୋଣିତରୂପେଣ ପରିଣତାଦ୍ଭୂତାନି ପ୍ରାଣିନ ଉତ୍ପଦ୍ୟନ୍ତେ, ଅନ୍ନସ୍ୟ ଚ ସମ୍ଭବଃ ପର୍ଜ୍ଜନ୍ୟାଦ୍ବୃଷ୍ଟେଃ, ସଚ ପର୍ଜ୍ଜନ୍ୟୋ ଯଜ୍ଞାଦ୍ଭବତି ସଚ ଯଜ୍ଞଃ କର୍ମସମୁଦ୍ଭବଃ କର୍ମଣା ଯଜମାନାଦିବ୍ୟାପାରେଣ ସମ୍ୟକ୍ ସମ୍ପଦ୍ୟତ ଇତ୍ୟର୍ଥଃ । ଅଗ୍ନୌ ପ୍ରାସ୍ତାହୁତିଃ ସମ୍ୟଗାଦିତ୍ୟମୁପତିଷ୍ଠତେ ଆଦିତ୍ୟାଜ୍ଜାୟତେ ବୃଷ୍ଟି ର୍ବୃଷ୍ଟେରନ୍ନଂ ତତଃ ପ୍ରଜା ଇତି ଶ୍ରୁତେଃ । ୧୪ ।

## ପଦବ୍ୟାଖ୍ୟା ।

ଅନ୍ନାତ୍—ଅନ୍ନରୁ, ଭବନ୍ତି—ଉତ୍ପନ୍ନ ହୁଅନ୍ତି, ଭୂତାନି—ପ୍ରାଣିମାନେ, ପର୍ଜ୍ଜନ୍ୟାତ୍—ବୃଷ୍ଟିରୁ, ଅନ୍ନସମ୍ଭବଃ—ଅନ୍ନର ଉତ୍ପତ୍ତି, ଯଜ୍ଞାତ୍—ଯଜ୍ଞରୁ, ଭବତି—ହୁଏ, ପର୍ଜ୍ଜନ୍ୟଃ—ବୃଷ୍ଟି, ଯଜ୍ଞଃ—ଯାଗ, କର୍ମସମୁଦ୍ଭବଃ—କର୍ମଦ୍ୱାରା ସମ୍ପନ୍ନ । ୧୪ ।

## ଅନୁବାଦ ।

ଅନ୍ନରୁ ପ୍ରାଣିମାନେ ଉତ୍ପନ୍ନ ହୁଅନ୍ତି, ବୃଷ୍ଟିରୁ ଅନ୍ନର ଉତ୍ପତ୍ତି ହୁଏ, ବୃଷ୍ଟି ଯଜ୍ଞରୁ ହୁଏ ଓ ଯଜ୍ଞ କର୍ମଦ୍ୱାରା ସମ୍ପନ୍ନ ହୁଏ । ୧୪ ।

## ବିଶଦବ୍ୟାଖ୍ୟା ।

ଖାଦ୍ୟ ପଦାର୍ଥ ପରିପକ୍ୱ ହୋଇ ଦେହର ମାଂସ, ଚର୍ମ, ଅସ୍ଥି, ରକ୍ତ ଓ ଶୁକ୍ରାଦି ରୂପରେ ପରିଣତ ହୁଏ । ସ୍ତ୍ରୀପୁରୁଷଙ୍କର ଅନ୍ନଜାତ ଶୋଣିତ ଓ ଶୁକ୍ରଦ୍ୱାରା ସନ୍ତାନ ( ପ୍ରାଣୀ ) ଜାତ ହୁଏ । ସେହି ଅନ୍ନ (ବ୍ରୀହି ଗୋଧୂମାଦି) ବୃଷ୍ଟି ହେତୁରୁ ବୃଦ୍ଧିପ୍ରାପ୍ତ ହୁଏ । ମନ୍ତ୍ରପୂତ ଘୃତାଦି-ପଦାର୍ଥର ଅଣୁ ମିଶ୍ରିତ ହୋଇଥିବାରୁ ଅଧିକ ପୁଷ୍ଟିକର ଯେଉଁ ଯଜ୍ଞଜନିତ ଧୂମ, ତାହାଦ୍ୱାରା ପର୍ଜ୍ଜନ୍ୟ (ବୃଷ୍ଟି) ଜାତ ହୁଏ । ଆଉ ସେହି ଯଜ୍ଞ ଯଜମାନର ଇଷ୍ଟି ଆଦି ନିତ୍ୟ ଓ ନୈମିତ୍ତିକ କର୍ମଦ୍ୱାରା ସମ୍ପନ୍ନ ହୁଏ । ୪ ।

## ଶ୍ଳୋକଃ ।

କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି, ବ୍ରହ୍ମାକ୍ଷରସମୁଦ୍ଭବଂ ।
ତସ୍ମାତ୍ ସର୍ବଗତଂ ବ୍ରହ୍ମ, ନିତ୍ୟଂ ଯଜ୍ଞେ ପ୍ରତିଷ୍ଠିତଂ । ୧୫ ।

## ଅନ୍ୱୟଃ ।

କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି, ବ୍ରହ୍ମ ଅକ୍ଷରସମୁଦ୍ଭବ, ତସ୍ମାତ୍ ସର୍ବଗତଂ ବ୍ରହ୍ମ-ଯଜ୍ଞେ ନିତ୍ୟଂ ପ୍ରତିଷ୍ଠିତଂ ( ଅସ୍ତି ) । ୧୫ ।

## ଟୀକା ।

ତଥା କର୍ମେତି । ତଚ୍ଚ ଯଜମାନାଦିବ୍ୟାପାରରୂପଂ କର୍ମ ବ୍ରହ୍ମୋଦ୍ଭବଂ ବିଦ୍ଧି, ବ୍ରହ୍ମ ବେଦସ୍ତସ୍ମାତ୍ ପ୍ରବୃତ୍ତଂ ଜାନୀହି, ତଚ୍ଚ ବେଦାଖ୍ୟଂ ବ୍ରହ୍ମ ଅକ୍ଷରାତ୍ ପରବ୍ରହ୍ମଣଃ ସମୁଦ୍ଭୂତଂ ଜାନୀହି ଅସ୍ୟ ମହତୋ ଭୂତସ୍ୟ ନିଶ୍ୱସିତମେତଦ୍ୟଦୃଗ୍ବେଦୋ ଯଜୁର୍ବେଦଃ ସାମବେଦ ଇତି ଶ୍ରୁତେଃ, ଯତଏବମକ୍ଷରାଦେବ ଯଜ୍ଞପ୍ରବର୍ତ୍ତକଂ ବ୍ରହ୍ମ ପ୍ରବୃତ୍ତଂ ତସ୍ମାତ୍ ସର୍ବଗତମପ୍ୟ-

କ୍ଷରଂ ବ୍ରହ୍ମ ନିତ୍ୟଂ ସର୍ବଦା ଯଜ୍ଞେ ପ୍ରତିଷ୍ଠିତଂ ଯଜ୍ଞେନୋପାୟଭୂତେନ ପ୍ରାପ୍ୟତ ଇତ ଯଜ୍ଞେ ପ୍ରତିଷ୍ଠିତମୁଚ୍ୟତ ଇତ ଉଦ୍ୟମସ୍ତା ସଦା ଲକ୍ଷ୍ମୀରୁତବତ୍ । ଯଦ୍ବା ଯସ୍ମାଜ୍ଜଗଚ୍ଚକ୍ରସ୍ୟ ମୂଳଂ କର୍ମ ତସ୍ମାତ୍ ସର୍ବଗତଂ ମନ୍ତ୍ରାର୍ଥବାଦୈଃ ସର୍ବେଷୁ ଭୂତାର୍ଥାଖ୍ୟାନାଦସ୍ତୁ ଗତଂ ସ୍ଥିତମପି ବେଦାଖ୍ୟଂ ବ୍ରହ୍ମ ସର୍ବଦା ଯଜ୍ଞେ ତାତ୍ପର୍ଯ୍ୟେଣ ପ୍ରତିଷ୍ଠିତଂ ଅତୋ ଯଜ୍ଞାଦିକର୍ମ କର୍ତ୍ତବ୍ୟମିତ୍ୟର୍ଥଃ । ୧୫ ।

## ପଦବ୍ୟାଖ୍ୟା ।

କର୍ମ—ଯଜ୍ଞାଦ, ବ୍ରହ୍ମୋଦ୍ଭବଂ—ବେଦରୁ ଜାତ, ବିଦ୍ଧି—ଜାଣ, ବ୍ରହ୍ମ—ବେଦ, ଅକ୍ଷରସମୁଦ୍ଭବଂ—ପରମେଶ୍ୱରଙ୍କଠାରୁ ଜାତ, ତସ୍ମାତ୍—ସେହି ହେତୁରୁ, ସର୍ବଗତଂ—ସର୍ବବ୍ୟାପକ, ବ୍ରହ୍ମ—ପରମେଶ୍ୱର, ନିତ୍ୟଂ—ସର୍ବଦା, ଯଜ୍ଞେ—ଯଜ୍ଞରେ, ପ୍ରତିଷ୍ଠିତଂ—ଅବସ୍ଥିତ । ୧୫ ।

## ଅନୁବାଦ ।

ଯଜ୍ଞାଦ କର୍ମ ବେଦରୁ ଓ ବେଦ ପରମାତ୍ମାଙ୍କଠାରୁ ଉତ୍ପନ୍ନ ବୋଲି ଜାଣ । ଅତଏବ ବ୍ରହ୍ମ ସର୍ବବ୍ୟାପି ହେଲେ ମଧ୍ୟ ସର୍ବଦା ଯଜ୍ଞରେ ପ୍ରତିଷ୍ଠିତ ହୋଇଅଛନ୍ତି । ୧୫ ।

## ବିଶଦବ୍ୟାଖ୍ୟା ।

ବେଦର ଗୋଟିଏ ନାମ 'ବ୍ରହ୍ମ' । କର୍ମ—ଯଜ୍ଞାଦିକାର୍ଯ୍ୟ ସବୁ, ବ୍ରହ୍ମୋଦ୍ଭବ ଅର୍ଥାତ୍ ବେଦବିହିତ । ସେହି ବେଦ,—ଅକ୍ଷର ଅର୍ଥାତ୍ ପରମେଶ୍ୱରଙ୍କଠାରୁ ଉତ୍ପନ୍ନ, ସୁତରାଂ ଭ୍ରମ ଓ ପ୍ରମାଦଶୂନ୍ୟ । ବେଦରେ ଯଜ୍ଞାଦ ଅଧିକ ପରିମାଣରେ ବର୍ଣ୍ଣିତ ହୋଇଥିବାରୁ ତାହା ପରମେଶ୍ୱରଙ୍କର ଆଦରଣୀୟ । ସେହିହେତୁରୁ ଅର୍ଥାତ୍ ଯଜ୍ଞାଦ ପରମେଶ୍ୱରଙ୍କର ଆଦରଣୀୟ ଥିବାରୁ ସେ ଯଜ୍ଞରେ ବିଦ୍ୟମାନ ଆନ୍ତି ଅର୍ଥାତ୍ ଯଜ୍ଞଦ୍ୱାରା ତାହାଙ୍କୁ ଲାଭ କରଯାଏ । ଫଳକଥା ଏହି କି ନିଷ୍କାମ ହୋଇ ଭକ୍ତିଭାବରେ ଯଜ୍ଞାଦ ଅନୁଷ୍ଠାନ କଲେ ବ୍ରହ୍ମ ପ୍ରାପ୍ତି ହୁଏ । ୧୫ ।

## ଶ୍ଲୋକଃ ।

ଏବଂ ପ୍ରବର୍ତ୍ତିତଂ ଚକ୍ରଂ, ନାନୁବର୍ତ୍ତୟତୀହ ଯଃ ।
ଅଘାୟୁରିନ୍ଦ୍ରିୟାରାମୋ, ମୋଘଂ ପାର୍ଥ ସ ଜୀବତି । ୧୬ ।

## ଅନ୍ୱୟଃ ।

ଇହ ଏବ ପ୍ରବର୍ତ୍ତିତଂ ଚକ୍ରଂ ଯଃ ନ ଅନୁବର୍ତ୍ତୟତି ହେ ପାର୍ଥ! ସଃ ଇନ୍ଦ୍ରିୟାରାମଃ ଅଘାୟୁଃ ମୋଘଂ ଜୀବତି । ୧୬ ।

## ଟୀକା ।

ଯସ୍ମାଦେବଂ ପରମେଶ୍ୱରେଣୈବ ଭୂତାନାଂ ପୁରୁଷାର୍ଥସିଦ୍ଧୟେ କର୍ମାଦିଚକ୍ରଂ ପ୍ରବର୍ତ୍ତିତଂ ତସ୍ମାତ୍ତଦନୁବର୍ତ୍ତୋ ବୃଥୈବ ଜୀବତମିତ୍ୟାହ, ଏବମିତ । ପରମେଶ୍ୱରବାକ୍ୟଭୂତାଦ୍ବେଦାଖ୍ୟବ୍ରହ୍ମଣଃ ପୁରୁଷାଣାଂ କର୍ମଣି ପ୍ରବୃତ୍ତିସ୍ତତଃ ପର୍ଜ୍ଜନ୍ୟସ୍ତତୋଽନ୍ନଂ ତତୋ ଭୂତାନ ଭୂତାନାଂ ପୁନସ୍ତଥୈବ କର୍ମପ୍ରବୃତ୍ତିରିତ୍ୟେବଂ ପ୍ରବର୍ତ୍ତିତଂ ଚକ୍ରଂ ଯୋନାନୁବର୍ତ୍ତୟତ ନାନୁତିଷ୍ଠତ ଅଘଂ ପାପରୂପମାୟୁର୍ଯସ୍ୟ ସଃ ଯତ ଇନ୍ଦ୍ରିୟୈର୍ବିଷୟେଷ୍ୱେବାରମତ ନତ୍ୱୀଶ୍ୱରାରାଧନାର୍ଥେ କର୍ମଣି, ଅତୋ ମୋଘଂ ବ୍ୟର୍ଥଂ ସଜୀବତ । ୧୬ ।

## ପଦବ୍ୟାଖ୍ୟା ।

ଏବ—ଏହିପରି, ପ୍ରବର୍ତ୍ତିତଂ—ପ୍ରବର୍ତ୍ତିତ—ପ୍ରଚଳିତ, ଚକ୍ରଂ—ଚକ୍ର—କର୍ମସମୂହ, ନ—ନାହିଁ, ଅନୁବର୍ତ୍ତୟତ—ଅନୁସରଣ କରେ, ଇହ—ଏ ସଂସାରରେ, ଯଃ—ଯେ, ଅଘାୟୁଃ—ପାପୀ, ଇନ୍ଦ୍ରିୟାରାମଃ—ଇନ୍ଦ୍ରିୟ ସୁଖର ବଶସ୍ଥ ଭୋଗୀ, ମୋଘଂ—ବୃଥା, ପାର୍ଥ—ହେ ଅର୍ଜ୍ଜୁନ, ସଃ—ସେ, ଜୀବତ—ଜୀବନଧାରଣ କରେ । ୧୬ ।

Digitized by PPRACHIN, SOA

## ଅନୁବାଦ ।

ହେ ପାର୍ଥ! ଏହି ସଂସାରରେ ଯେଉଁ ବ୍ୟକ୍ତି ଏପ୍ରକାର ପ୍ରଚଳିତ କର୍ମଚକ୍ରର ଅନୁଗାମୀ ନ ହୁଏ ସେହି ଇନ୍ଦ୍ରିୟାସକ୍ତ ପାପିର ଜୀବନଧାରଣ ବୃଥା । ୧୬ ।

## ବିଶଦବ୍ୟାଖ୍ୟା ।

ପରମେଶ୍ୱରଙ୍କ ବାଣୀସ୍ୱରୂପ ବେଦରୁ କର୍ମବୁଦ୍ଧିର ଉତ୍ପତ୍ତି, କର୍ମଅନୁଷ୍ଠାନରୁ ବୃଷ୍ଟି, ବୃଷ୍ଟିରୁ ଶସ୍ୟ ଓ ଶସ୍ୟରୁ ପ୍ରାଣିଗଣ, ପୁଣି ପ୍ରାଣିଗଣଙ୍କର କର୍ମବୁଦ୍ଧି ଇତ୍ୟାଦି ପୁନଃପୁନଃ ଆବର୍ତ୍ତନ (ଭ୍ରମଣ) କୁ କର୍ମଚକ୍ର ବୋଲାଯାଏ । ଯେଉଁ ବ୍ୟକ୍ତି ଇନ୍ଦ୍ରିୟାସକ୍ତ ହୋଇ ଏହି କର୍ମଚକ୍ରର ଅନୁବର୍ତ୍ତୀ ନ ହୁଏ ଅର୍ଥାତ୍ କର୍ମ ନ କରେ ସେ ବ୍ୟକ୍ତିର ଜୀବନ ବୃଥା ଅର୍ଥାତ୍ ସେ କ୍ରମେ୨ ନୀଚଯୋନିରେ ଜାତ ହୋଇ ନାନାପ୍ରକାର ଯାତନା ଭୋଗ କରେ । ଫଳକଥା ଏହି କି ଜିତେନ୍ଦ୍ରିୟ ବ୍ରହ୍ମଜ୍ଞାନୀ ବ୍ୟକ୍ତିଭିନ୍ନ ଆଉ ସମସ୍ତଙ୍କର ଶାସ୍ତ୍ରମୋଦିତ କର୍ମ ଅନୁଷ୍ଠାନଦ୍ୱାରା ଈଶ୍ୱରଆରାଧନା କରି ଜୀବନଧାରଣ କରିବା ଉଚିତ । ୧୬ ।

## ଶ୍ଲୋକଃ ।

ଯସ୍ତ୍ୱାତ୍ମରତିରେବ ସ୍ୟାଦାତ୍ମତୃପ୍ତଶ୍ଚ ମାନବଃ ।
ଆତ୍ମନ୍ୟେବ ଚ ସନ୍ତୁଷ୍ଟସ୍ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ । ୧୭ ।

## ଅନ୍ୱୟଃ ।

ଯଃ ମାନବଃ ଆତ୍ମରତିଃ ଏବ ସ୍ୟାତ୍ ଚ ଆତ୍ମତୃପ୍ତଃ ଚ ଆତ୍ମନି ଏବ ସନ୍ତୁଷ୍ଟଃ, ତସ୍ୟ କାର୍ଯ୍ୟଂ ନ ବିଦ୍ୟତେ । ୧୭ ।

## ଟୀକା ।

ତଦେବଂ ନ କର୍ମଣାମନାରମ୍ଭାଦିତ୍ୟାଦିନା ଅଜ୍ଞସ୍ୟାନ୍ତଃକରଣଶୁଦ୍ଧ୍ୟର୍ଥଂ କର୍ମଯୋଗମୁକ୍ତ୍ୱା ଜ୍ଞାନିନଃ କର୍ମାନୁପଯୋଗମାହ, ଯସ୍ତ୍ୱିତି ଦ୍ୱାଭ୍ୟାଂ । ଆତ୍ମନ୍ୟେବ ରତିଃ ପ୍ରୀତିର୍ଯସ୍ୟ ସଃ ତତଶ୍ଚାତ୍ମନ୍ୟେବ ତୃପ୍ତଃ ସ୍ୱାନନ୍ଦାନୁଭବେନ ନିର୍ବୃତଃ ଅତଏବାତ୍ମନ୍ୟେବ ସନ୍ତୁଷ୍ଟୋ ଭୋଗାପେକ୍ଷାରହିତୋ ଯସ୍ତସ୍ୟ କର୍ତ୍ତବ୍ୟଂ କର୍ମ ନାସ୍ତୀତି । ୧୭ ।

## ପଦବ୍ୟାଖ୍ୟା ।

ଯଃ—ଯେଉଁ, ତୁ—ପୁଣି, ଆତ୍ମରତିଃ—ଆତ୍ମାରେ ପ୍ରୀତିଯୁକ୍ତ, ଏବ—କେବଳ, ସ୍ୟାତ୍—ହୁଏ, ଆତ୍ମତୃପ୍ତଃ—ଆତ୍ମାରେ ତୃପ୍ତ, ମାନବଃ—ମନୁଷ୍ୟ, ଆତ୍ମନି ଏବ—ଆତ୍ମାରେ କେବଳ, ଚ—ପୁଣି, ସନ୍ତୁଷ୍ଟଃ—ସନ୍ତୋଷପ୍ରାପ୍ତ, ତସ୍ୟ—ତାହାର, କାର୍ଯ୍ୟଂ—କର୍ତ୍ତବ୍ୟକର୍ମ, ନ ବିଦ୍ୟତେ—ନାହିଁ (ଅଥବା ଆତ୍ମତୃପ୍ତଃ—ଆତ୍ମଜ୍ଞାନ ସୁଖରେ ମଗ୍ନ) । ୧୭ ।

## ଅନୁବାଦ ।

ଯାହାର କେବଳ ଆତ୍ମାରେ ପ୍ରୀତି, ଆତ୍ମାରେ ତୃପ୍ତି ଓ ଆତ୍ମାରେ ସନ୍ତୋଷ, ତାହାର କର୍ମାନୁଷ୍ଠାନରେ ଆବଶ୍ୟକ ନାହିଁ । ୧୭ ।

## ବିଶଦବ୍ୟାଖ୍ୟା ।

ବିଷୟାସକ୍ତ ବ୍ୟକ୍ତି, ଯୁବତୀ ସ୍ତ୍ରୀ ମାଳା ଚନ୍ଦନ ପ୍ରଭୃତି ଭୋଗ୍ୟବସ୍ତୁରେ ପ୍ରୀତି, ଉତ୍ତମ ଖାଦ୍ୟାଦିରେ ତୃପ୍ତି ଓ ନୀରୋଗଶରୀର, ଧନ ଓ ପଶୁ ଏବଂ ପୁତ୍ରାଦିରେ ତୁଷ୍ଟି ଲାଭ କରନ୍ତି । ସେହି ଯୁବତୀ ସ୍ତ୍ରୀ ମାଳା ଚନ୍ଦନ ପ୍ରଭୃତି ପ୍ରୀତିକର ଦ୍ରବ୍ୟ ଓ ଉତ୍ତମ ଅନ୍ନ-ପାନାଦି ତୃପ୍ତିସାଧକ

Digitized by PPRACHIN, SOA

ପଦାର୍ଥ ଏବଂ ଧନ ପୁତ୍ର ପଶୁ ପ୍ରଭୃତି ତୁଷ୍ଟିଜନକ ବସ୍ତୁସମୂହ ପାଇବାଲାଗି ବିଷୟାସକ୍ତ ବ୍ୟକ୍ତି ନାନାପ୍ରକାର କର୍ମ କରନ୍ତି, ମାତ୍ର ଇନ୍ଦ୍ରିୟସୁଖକର ଭୋଗ୍ୟବସ୍ତୁସବୁ ଅନିତ୍ୟ ଓ କ୍ଷଣବିଧ୍ୱଂସି ବୋଲି-ବ୍ରହ୍ମଜ୍ଞାନୀ ତହିଁରୁ ପ୍ରୀତି, ତୃପ୍ତି ଓ ତୁଷ୍ଟିଲାଭ କରିବାକୁ ଇଚ୍ଛୁକ ନୁହନ୍ତି । ସେମାନେ ନିତ୍ୟ ଅବିନାଶୀ ଓ ଆନନ୍ଦମୟ ଆତ୍ମାରେ କେବଳ ପ୍ରୀତି, ତୃପ୍ତି ଓ ତୁଷ୍ଟି ଅନୁଭବ କରନ୍ତି । ସୁତରାଂ ସେମାନଙ୍କର ଅନିତ୍ୟଫଳପ୍ରଦ କୌଣସି କାମ୍ୟକର୍ମ କରିବାରେ ପ୍ରବୃତ୍ତି ଓ ପ୍ରୟୋଜନ ହୁଏ ନାହିଁ । ୧୭ ।

ଶ୍ଳୋକଃ ।

ନୈବ ତସ୍ୟ କୃତେନାର୍ଥୋ, ନାକୃତେନେହ କଶ୍ଚନ ।
ନ ଚାସ୍ୟ ସର୍ବଭୂତେଷୁ, କଶ୍ଚିଦର୍ଥବ୍ୟପାଶ୍ରୟଃ । ୧୮ ।

ଅନ୍ୱୟଃ ।

ଇହ କୃତେନ ଚ ଅକୃତେନ ତସ୍ୟ କଶ୍ଚନ ଅର୍ଥଃ ନ ଏବ ( ଅସ୍ତି ) ଚ ସର୍ବଭୂତେଷୁ ଅସ୍ୟ କଶ୍ଚିତ୍ ଅର୍ଥବ୍ୟପାଶ୍ରୟଃ ନ ବିଦ୍ୟତେ । ୧୮ ।

ଟୀକା ।

ତତ୍ର ହେତୁମାହ, ନୈବେତି । କୃତେନ କର୍ମଣା ତସ୍ୟାର୍ଥଃ ପୁଣ୍ୟଂ ନୈବାସ୍ତି ନ ଚାକୃତେନ କଶ୍ଚନ କୋଽପି ପ୍ରତ୍ୟବାୟୋଽସ୍ତି ନିରହଂକାରତ୍ୱେନ ବିଧିନିଷେଧାତୀତତ୍ୱାତ୍ । ତଥାପି ତଦେଷାଂ ନ ପ୍ରିୟଂ ଯଦେତନ୍ମନୁଷ୍ୟା ବିଦୁରିତି ଶ୍ରୁତେଃ, ମୋକ୍ଷେ ଦେବକୃତବିଘ୍ନସମ୍ଭବାତ୍ତତ୍ପରିହାରାର୍ଥଂ କର୍ମଭିର୍ଦେବାଃ ସେବ୍ୟା ଇତ୍ୟାଶଙ୍କ୍ୟୋକ୍ତଂ ସର୍ବଭୂତେଷୁ ବ୍ରହ୍ମାଦିସ୍ଥାବରାନ୍ତେଷୁ କଶ୍ଚିଦପ୍ୟର୍ଥବ୍ୟପାଶ୍ରୟଃ ଆଶ୍ରୟଏବ ବ୍ୟପାଶ୍ରୟଃ ଅର୍ଥେ ମୋକ୍ଷେ ଆଶ୍ରୟଣୀୟୋଽସ୍ୟ ନାସ୍ତୀତ୍ୟର୍ଥଃ, ବିଘ୍ନାଭାବସ୍ୟ ଶ୍ରୁତ୍ୟୈବୋକ୍ତତ୍ୱାତ୍ । ତଥାଚ ଶ୍ରୁତିଃ । ତସ୍ୟ ହ ନ ଦେବାଶ୍ଚ ନାଭୂତ୍ୟା ଈଶତେ ଆତ୍ମା ହ୍ୟେଷାଂ ସ ଭବତୀତି । ହନ୍ତେତ୍ୟବ୍ୟୟମପ୍ୟର୍ଥେ, ଦେବା ଅପି ତସ୍ୟାତ୍ମତତ୍ତ୍ୱଜ୍ଞସ୍ୟ ଅଭୂତ୍ୟୈ ବ୍ରହ୍ମଭାବପ୍ରତିବନ୍ଧାୟ ନେଶତେ ନ ଶକ୍ନୁବନ୍ତୀତି ଶ୍ରୁତେରର୍ଥଃ । ଦେବକୃତାସ୍ତୁ ବିଘ୍ନାଃ ସମ୍ୟକ୍ ଜ୍ଞାନୋତ୍ପତ୍ତେଃ ପ୍ରାଗେବ ଯଦେତଦ୍‌ବ୍ରହ୍ମ ମନୁଷ୍ୟା ବିଦୁସ୍ତଦେଷାଂ ଦେବାନାଂ ନ ପ୍ରିୟମିତି ଶ୍ରୁତ୍ୟା ବ୍ରହ୍ମଜ୍ଞାନସ୍ୟୈବାପ୍ରିୟତ୍ୱୋକ୍ତ୍ୟା ତତ୍ରୈବ ବିଘ୍ନକର୍ତ୍ତୃତ୍ୱସ୍ୟ ସୂଚିତତ୍ୱାତ୍ । ୧୮ ।

ପଦବ୍ୟାଖ୍ୟା ।

ନ—ନାହିଁ, ଏବ—କେବଳ, ତସ୍ୟ—ତାହାର, କୃତେନ—ଆଚରଣରେ, ଅର୍ଥଃ—ପୁଣ୍ୟ, ନ—ନାହିଁ, ଅକୃତେନ—ଆଚରଣ ନ କଲେ, ଇହ—ଏହି ସଂସାରରେ, କଶ୍ଚନ—କୌଣସି, ନ—ନାହିଁ, ଚ—ଆଉ, ଅସ୍ୟ—ଏହାର, ସର୍ବଭୂତେଷୁ—ସମସ୍ତ ଜଗତରେ, କଶ୍ଚିତ୍—କୌଣସି, ଅର୍ଥବ୍ୟପାଶ୍ରୟଃ—ମୋକ୍ଷ ବିଷୟରେ ଆଶ୍ରୟ । ୧୮ ।

ଅନୁବାଦ ।

ତାଙ୍କର (ଜ୍ଞାନୀ ବ୍ୟକ୍ତିଙ୍କର) କର୍ମ କରିବାରେ ପୁଣ୍ୟ ଅଥବା ନ କରିବାରେ ପାପ ହୁଏ ନାହିଁ ଓ ମୁକ୍ତି ବିଷୟରେ ସେ ସମସ୍ତ ଜଗତରେ କାହାର ଆଶ୍ରୟ ଗ୍ରହଣ କରନ୍ତି ନାହିଁ । । ୧୮ ।

ବିଶଦବ୍ୟାଖ୍ୟା ।

ଜ୍ଞାନୀ ବ୍ୟକ୍ତି ଅହଙ୍କାରରହିତ ବୋଲି ‘ ଅମୁକ କାର୍ଯ୍ୟ କରିବା ବିଧି ଓ ଅମୁକ କାର୍ଯ୍ୟ ନିଷେଧ ’ ଇତ୍ୟାଦି ନିୟମର ଅଧୀନ ନୁହନ୍ତି । ସେହି ହେତୁରୁ କର୍ମ କଲେ ତାଙ୍କର

Digitized by PPRACHIN, SOA

କୌଣସି ପୁଣ୍ୟ ନାହିଁ ବା କର୍ମ ନ କଲେ ପାପ ନାହିଁ, ଅର୍ଥାତ୍ କୌଣସି ପ୍ରୟୋଜନ-ସାଧନପାଇଁ ଅଥବା ପାପାଦି ନିବାରଣପାଇଁ ତାଙ୍କର କର୍ମ କରିବା ଆବଶ୍ୟକ ହୁଏ ନାହିଁ ।

କେହି୨ ଏପରି କହି ପାରନ୍ତି, ଯେ ମୋକ୍ଷମାର୍ଗରେ ଦେବତାମାନେ ନାନାପ୍ରକାର ବିଘ୍ନ ଘଟାନ୍ତି, ସେହି ବିଘ୍ନ ନିବାରଣପାଇଁ କର୍ମଦ୍ୱାରା ଦେବତା ସେବା କରିବା ଉଚିତ । ମାତ୍ର ସେ ଉକ୍ତି ଖଣ୍ଡନ ନିମିତ୍ତ ଶ୍ରୀଭଗବାନ୍ କହୁଅଛନ୍ତି, କି ଜ୍ଞାନୀ ବ୍ୟକ୍ତି ମୋକ୍ଷ ବିଷୟରେ ସମସ୍ତ ଜଗତରେ କାହାର ଆଶ୍ରୟ ଗ୍ରହଣ କରନ୍ତି ନାହିଁ ଅର୍ଥାତ୍ ସାମାନ୍ୟ ତୃଣଠାରୁ ବ୍ରହ୍ମ ପର୍ଯ୍ୟନ୍ତ କୌଣସି ପଦାର୍ଥର ବା କୌଣସି ଦେବତାଙ୍କର ସହାୟତା ଲୋଡନ୍ତି ନାହିଁ । ଦେବତାମାନେ ଲୋକଙ୍କର ଜ୍ଞାନ ଜନ୍ମିବା ପୂର୍ବରୁ ସାଧନାଦିରେ ବିଘ୍ନ ଉତ୍ପାଦନ କରି ପାରନ୍ତି ସତ, ମାତ୍ର ଆତ୍ମଜ୍ଞାନିବ୍ୟକ୍ତିର ମୋକ୍ଷମାର୍ଗରେ ବାଧା ଦେଇ ପାରନ୍ତି ନାହିଁ । ଶ୍ରୁତିରେ ପ୍ରମାଣ ଅଛି, ଯେ "ତସ୍ୟ ହ ନ ଦେବାଶ୍ଚ ନାଭୂତ୍ୟା ଈଶତେ ଆତ୍ମା ହ୍ୟେଷାଂ ସମ୍ଭବତୀତି" ଅର୍ଥାତ୍ 'ଆତ୍ମ-ତତ୍ତ୍ୱଜ୍ଞ ବ୍ୟକ୍ତିର ମୋକ୍ଷାଦିରେ ବାଧା ଦେବାକୁ ଦେବତାମାନେ ମଧ୍ୟ ସମର୍ଥ ନୁହନ୍ତି' । ଜ୍ଞାନିବ୍ୟକ୍ତିର ମୋକ୍ଷମାର୍ଗରେ ଯେବେ ଦେବତାମାନଙ୍କର ବିଘ୍ନ ଉତ୍ପାଦନ କରିବାର କ୍ଷମତା ନାହିଁ ତେବେ ବିଘ୍ନ ନିବାରଣପାଇଁ ଦେବପୂଜାରୂପ କର୍ମାନୁଷ୍ଠାନର କି ଆବଶ୍ୟକ ଅଛି ?

ବ୍ରହ୍ମଜ୍ଞାନିବ୍ୟକ୍ତି ଜ୍ଞାନସାଧନ ସମୟରେ ସପ୍ତପ୍ରକାର ଭୂମିକା ଅତିକ୍ରମ କରନ୍ତି । ସେହି ଭୂମିକାମାନଙ୍କର ନାମ ଓ ଲକ୍ଷଣ ନିମ୍ନରେ ପ୍ରକାଶିତ କରାଗଲା । ଯଥା—୧ମ ଶୁଭେଚ୍ଛା, ୨ୟ ବିଚାରଣା, ୩ୟ ତନୁମାନସା, ୪ର୍ଥ ସତ୍ତ୍ୱାପତ୍ତି, ୫ମ ଅସଂସକ୍ତି, ୬ଷ୍ଠ ପଦାର୍ଥା-ଭାବନୀ ଓ ୭ମ ତୁରୀୟାବସ୍ଥା । ଏ ବିଷୟରେ ଯୋଗବାଶିଷ୍ଠରେ ପ୍ରମାଣ ଅଛି; ଯଥା —

ଜ୍ଞାନଭୂମିଃ ଶୁଭେଚ୍ଛାଖ୍ୟା ପ୍ରଥମା ପରିକୀର୍ତ୍ତିତା ।
ବିଚାରଣା ଦ୍ୱିତୀୟା ସ୍ୟାତ୍ ତୃତୀୟା ତନୁମାନସା ।
ସତ୍ତ୍ୱାପତ୍ତିଶ୍ଚତୁର୍ଥୀ ସ୍ୟାତ୍ ତତୋଽସଂସକ୍ତି ନାମିକା ।
ପଦାର୍ଥାଭାବନୀ ଷଷ୍ଠୀ ସପ୍ତମୀ ତୂର୍ଯ୍ୟଗା ସ୍ମୃତା । ଇତି ।

ନିତ୍ୟ ଓ ଅନିତ୍ୟ ପଦାର୍ଥର ବିଚାର କରୁ୨ ମୋକ୍ଷ ନାମକ ନିତ୍ୟ ପଦାର୍ଥରେ ଯେଉଁ ଇଚ୍ଛା ଜାତ ହୁଏ ତାକୁ 'ଶୁଭେଚ୍ଛା' ବା ପ୍ରଥମଭୂମିକା ବୋଲାଯାଏ । ତହିଁ ଉତ୍ତାରୁ ଗୁରୁଙ୍କ ନିକଟରେ ଉପସ୍ଥିତ ହୋଇ ବେଦାନ୍ତ ବାକ୍ୟର ଶ୍ରବଣ* ଓ ମନନଦ୍ୱାରା ତତ୍ତ୍ୱନିଶ୍ଚୟକୁ 'ବି-ଚାରଣା' ବା ଦ୍ୱିତୀୟଭୂମିକା ବୋଲାଯାଏ । ପୁଣି 'ନିଦିଧ୍ୟାସନ' ( ସୂକ୍ଷ୍ମପଦାର୍ଥରେ ନିଶ୍ଚଳ-ଭାବରେ ମନୋନିବେଶ ) ନାମକ ଯୋଗାଙ୍ଗ ଅଭ୍ୟାସଦ୍ୱାରା ଏକାଗ୍ରମନରେ ସୂକ୍ଷ୍ମ ପଦା-ର୍ଥର ଗ୍ରହଣରୂପ ଯୋଗ 'ତନୁମାନସା' ବା ତୃତୀୟଭୂମିକା ନାମରେ ପରିଚିତ ।

---

* ବେଦାନ୍ତବାକ୍ୟ ଶ୍ରବଣଦ୍ୱାରା ତତ୍ତ୍ୱନିର୍ଣ୍ଣୟର ଛ ପ୍ରକାର ଚିହ୍ନ ଅଛି । ଯଥା,—୧ମ ଉପକ୍ରମ ଓ ଉପସଂହାର, ୨ୟ ଅଭ୍ୟାସ, ୩ୟ ଅପୂର୍ବତା, ୪ର୍ଥ ଫଳ, ୫ମ ଅର୍ଥବାଦ ଓ ୬ଷ୍ଠ ଉପପତ୍ତି । ତାହା ନିମ୍ନରେ ବୁଝାଇ ଦିଆ ଯାଉଅଛି ।

ଶାସ୍ତ୍ରର ଏକ୨ ଅଂଶର ନାମ ପ୍ରକରଣ । ପ୍ରକରଣରେ ଯେଉଁ ବିଷୟ ପ୍ରମାଣ କରିବାକୁ ହୁଏ ସେହି ବିଷୟ ସେ ପ୍ରକରଣର ପ୍ରତିପାଦ୍ୟ । ଯେପରି 'ବ୍ରହ୍ମନିର୍ଣ୍ଣୟ' ଛାନ୍ଦୋଗ୍ୟ ଉପନିଷଦ୍ ଷଷ୍ଠ ପ୍ରକରଣର 'ପ୍ରତିପାଦ୍ୟ' ବିଷୟ ଅଟେ ।

Digitized by PPRACHIN, SOA

ଯୋଗର ସାଧନସ୍ୱରୂପ ଏହି ଭୂମିକାତ୍ରୟକୁ ଯୋଗିର 'ଜାଗ୍ରତାବସ୍ଥା' ବୋଲି କୁହାଯାଏ । କାହିଁକନା ଏତେବେଳ ଯାଏ ଯୋଗିବ୍ୟକ୍ତିର ଜଗତ୍ ଓ ବ୍ରହ୍ମରେ ଭେଦଜ୍ଞାନ ଜାଗ୍ରତ ଥାଏ । ଯଥା, "ଭୂମିକାତ୍ରିତୟନ୍ତ୍ୱେତଦ୍ରାମଜାଗ୍ରଦବସ୍ଥିତଂ । ଯଥାବଦ୍ଭେଦବୁଦ୍ଧ୍ୟେଦଂ ଜଗତ୍ ଜାଗ୍ରତି ଦୃଶ୍ୟତେ" ଇତି ।

ତହିଁ ଉତ୍ତାରୁ ବେଦାନ୍ତବାକ୍ୟ ଅନୁସାରେ 'ନିର୍ବିକଳ୍ପ' ଅର୍ଥାତ୍ ଅଦ୍ୱୈତ ଜ୍ଞାନର ଦୃଢ଼ତା ଜନ୍ମିଲେ ବ୍ରହ୍ମପଦାର୍ଥର 'ସତ୍ତା' ଉପଲବ୍ଧି ହୁଏ, ସେହି ଅବସ୍ଥା ବା ଚତୁର୍ଥ ଭୂମିକାକୁ ଯୋଗିମାନେ 'ସତ୍ତାପତ୍ତି' ବୋଲି କହନ୍ତି । ଏହି ସତ୍ତାପତ୍ତି ଅବସ୍ଥାରେ ପୂର୍ବରୁ ସତ୍ୟ ବୋଲି ଜଣା ଥିବା-ଜଗତ୍ ମିଥ୍ୟା ବୋଲି ଜଣାଯାଏ । ସେଥିପାଇଁ ଉକ୍ତ ଅବସ୍ଥାକୁ ଯୋଗିଙ୍କର 'ସ୍ୱପ୍ନାବସ୍ଥା' ବୋଲିଯାଏ । ଯଥା,—"ଅଦ୍ୱୈତେ ସ୍ଥୈର୍ଯ୍ୟମାୟାତେ ଦ୍ୱୈତେ ପ୍ରଶମମାଗତେ ।
ପଶ୍ୟନ୍ତି ସ୍ୱପ୍ନବଲ୍ଲୋକଂ ଚତୁର୍ଥୀଂ ଭୂମିକାମିତାଃ" ।

ଅର୍ଥାତ୍ ଚତୁର୍ଥ ଭୂମିକା ଅଥବା ସତ୍ତାପତ୍ତି ଅବସ୍ଥାରେ ପହୁଞ୍ଚିବା ଯୋଗିମାନଙ୍କର ଦ୍ୱୈତଭାବ ନିରସ୍ତ ଓ ଅଦ୍ୱୈତଭାବ ଦୃଢ଼ ହେବାରୁ ସେମାନେ ଜଗତକୁ ସ୍ୱପ୍ନପରି ମନେ କରନ୍ତି । ଏହି

---

ଯେଉଁ ପ୍ରକରଣରେ ଯାହା ପ୍ରମାଣିତ ହେବ ସେହି ପ୍ରକରଣର ଆଦ୍ୟ ଓ ଅନ୍ତରେ ସେହି ବିଷୟର ସଂକ୍ଷେପ ବର୍ଣ୍ଣନକୁ ଯଥାକ୍ରମେ ଉପକ୍ରମ ଓ ଉପସଂହାର ବୋଲିଯାଏ, ଅର୍ଥାତ୍ ଆଦ୍ୟରେ ଥିବା ବର୍ଣ୍ଣନକୁ 'ଉପକ୍ରମ' ଓ ଅନ୍ତରେ ଥିବା ବର୍ଣ୍ଣନକୁ 'ଉପସଂହାର' ବୋଲିଯାଏ । ଯେପରି ଛାନ୍ଦୋଗ୍ୟ ଉପନିଷଦର ଷଷ୍ଠ ପ୍ରକରଣର ଆଦ୍ୟରେ ଲେଖାଅଛି ଯେ "ଏକମେବା ଦ୍ୱିତୀୟଂ" ଅର୍ଥାତ୍ ବ୍ରହ୍ମ ଏକ ଓ ଅଦ୍ୱିତୀୟ, ତାହା 'ଉପକ୍ରମ' ଅଟେ, ପୁଣି ସେହି ପ୍ରକରଣର ଶେଷରେ ଲେଖାଅଛି ଯେ "ଐତଦାତ୍ମ୍ୟମିଦଂ" ଅର୍ଥାତ୍ 'ଏହି ବ୍ରହ୍ମ ଜଗନ୍ମୟ' ଏହାହିଁ ଉପସଂହାର । ଫଳକଥା ଏହି କି ବ୍ରହ୍ମଙ୍କର ଅଦ୍ୱିତୀୟତା, ପ୍ରକରଣର ଆଦ୍ୟ ଓ ଅନ୍ତରେ ବର୍ଣ୍ଣିତ ହୋଇଅଛି ।

ଯେଉଁ ପ୍ରକରଣରେ ଯାହା ପ୍ରମାଣ କରିବାକୁ ହେବ, ସେହି ପ୍ରକରଣଭିନ୍ନ ତାହାର ଅନ୍ୟ ପ୍ରମାଣ ନାହିଁ ଏପ୍ରକାର ସିଦ୍ଧାନ୍ତକୁ 'ଅପୂର୍ବତ୍ୱ' ବୋଲିଯାଏ । ଯେପରି ଉକ୍ତ ଉପନିଷଦର ଉକ୍ତ ପ୍ରକରଣରେ "ତନ୍ତ୍ୱୌପନିଷଦଂ ପୁରୁଷଂ ପୃଚ୍ଛାମି" ଅର୍ଥାତ୍ ସେହି ଉପନିଷଦ ପ୍ରତିପାଦ୍ୟ ପୁରୁଷ ବ୍ରହ୍ମଙ୍କୁ ପଚାରୁ ଅଛି ଇତ୍ୟାଦି ବଚନଦ୍ୱାରା ଏହା ପ୍ରମାଣିତ ହେଉଅଛି, ଯେ ଉପନିଷଦଭିନ୍ନ ଅନ୍ୟ କୌଣସି ପୂର୍ବବର୍ତ୍ତୀ ଶାସ୍ତ୍ରରେ ବ୍ରହ୍ମପଦର ପ୍ରମାଣ ନାହିଁ ।

ପ୍ରକରଣରେ ଯେଉଁ ବିଷୟ ପ୍ରତିପାଦ୍ୟ, ସେହି ବିଷୟ ଅନୁଷ୍ଠାନର ପ୍ରୟୋଜନକୁ 'ଫଳ' ବୋଲିଯାଏ । ଯେପରି ପୂର୍ବୋକ୍ତ ପ୍ରପାଠକ (ପ୍ରକରଣ) ରେ ବ୍ରହ୍ମଜ୍ଞାନ ଅନୁଷ୍ଠାନ କଲେ 'ବ୍ରହ୍ମ ପ୍ରାପ୍ତିରୂପ ଫଳ' ହୁଏ ବୋଲି ଲେଖାଅଛି ।

ଯେଉଁ ପ୍ରକରଣରେ ଯେଉଁ ବିଷୟ ପ୍ରମାଣ କରିବାକୁ ହେବ ସେହି ବିଷୟର ପ୍ରଶଂସା ସେହି ପ୍ରକରଣରେ କରାଗଲେ ତାକୁ 'ଅର୍ଥବାଦ' ବୋଲିଯାଏ । ଯେପରି ପୂର୍ବୋକ୍ତ ପ୍ରପାଠକରେ "ଉତମାଦେଶମପ୍ରାକ୍ଷ୍ୟୋ ଯେନାଶ୍ରୁତଂ ଶ୍ରୁତଂଭବତ୍ୟମତଂ ମତମବିଜ୍ଞାତଂ ବିଜ୍ଞାତମିତି" ଅର୍ଥାତ୍ ହେ ଶିଷ୍ୟ ତୁମ୍ଭେ ଆମ୍ଭକୁ ଯାହା ପଚାରି ଅଛ ତାହା ଜାଣିଲେ ଅଶ୍ରୁତ କଥା ଶୁଣା ଯାଏ ସ୍ମରଣ ନ ଥିବା କଥାର ସ୍ମରଣ ହୁଏ ଓ ଅଜଣା ପଦାର୍ଥ ଜଣାଯାଏ ଇତ୍ୟାଦି ବଚନଦ୍ୱାରା ବ୍ରହ୍ମଜ୍ଞାନର ପ୍ରଶଂସା କରା ଯାଇଅଛି ।

ପ୍ରକରଣପ୍ରତିପାଦ୍ୟ ବିଷୟର ସାଧନ ନିମିତ୍ତ ପ୍ରକରଣ ମଧ୍ୟଗତ ଯୁକ୍ତି ପ୍ରୟୋଗକୁ 'ଉପପତ୍ତି' ବୋଲିଯାଏ । ଯେପରି ସେହି ପୂର୍ବୋକ୍ତ ପ୍ରପାଠକରେ "ଯଥାସୌମ୍ୟୈକେନ ମୃତ୍ପିଣ୍ଡେନ ସର୍ବଂ ମୃଣ୍ମୟଂ ବିଜ୍ଞାତଂ ସ୍ୟାତ୍ ବାଚାରମ୍ଭଣଂ ବିକାରୋ ନାମଧେୟଂ ମୃତ୍ତିକେତ୍ୟେବ ସତ୍ୟଂ ଇତି" ଅର୍ଥାତ୍ ହେ ସୌମ୍ୟ ଯେପରି ଗୋଟିଏ ମୃତ୍ତିକାପିଣ୍ଡ ଯଥାର୍ଥରୂପେ ଜଣା ଗଲେ, ସମସ୍ତ ମୃଣ୍ମୟ ବସ୍ତୁ ଜଣାଯାଏ, ସେହି ମୃତ୍ତିକାର ନାନାପ୍ରକାର ବିକୃତିରେ ଘଟ-କପାଳ-ଭଣ୍ଡ ପ୍ରଭୃତି ଯେଉଁ ନାମ ହୁଏ ତାହା ବାକ୍ୟମାତ୍ର, କେବଳ ମୃତ୍ତିକା ଯଥାର୍ଥ ସତ୍ୟ ଅଟେ, ସେହିପରି ପରଂବ୍ରହ୍ମ ସତ୍ୟ ଓ ତଦ୍ଭିନ୍ନ ଅନ୍ୟ ସବୁ ପଦାର୍ଥ ବାକ୍ୟମାତ୍ର, ଇତ୍ୟାଦି ଯୁକ୍ତି ପ୍ରୟୋଗ କରା ଯାଇଅଛି । ଇତ୍ୟାଦି ।

ଏ ବିଷୟର ବିଶେଷ ବିବରଣ ଜାଣିବାକୁ ଇଚ୍ଛା କଲେ ବେଦାନ୍ତ ଓ ଉପନିଷଦ୍ ପାଠ କରିବା ଉଚିତ ।

ଅବସ୍ଥାପ୍ରାପ୍ତ ଯୋଗିଙ୍କୁ 'ବ୍ରହ୍ମବିତ୍' ଅର୍ଥାତ୍ ବ୍ରହ୍ମଜ୍ଞାନୀ ବୋଲାଯାଏ । ଏପ୍ରକାର ଅବସ୍ଥା ହେବାଯାଏ ଯୋଗୀ ସବିକଳ୍ପ ସମାଧି ଅବଲମ୍ବନ କରନ୍ତି ଅର୍ଥାତ୍ ଯୋଗୀ ଆପଣାକୁ 'ଜ୍ଞାତା' ଓ ଈଶ୍ୱରଙ୍କୁ 'ଜ୍ଞେୟ' ବୋଲି ଜାଣି ସମାଧିନାମକ ଯୋଗାଙ୍ଗ ଅଭ୍ୟାସ କରୁଥାନ୍ତି । ଚତୁର୍ଥ ଭୂମିକା ଅବା ସତ୍ତ୍ୱାପତ୍ତି ଅବସ୍ଥାରେ ତାଙ୍କର ବ୍ରହ୍ମଜ୍ଞାନ ଲାଭ ହେବାରୁ ସବିକଳ୍ପ ସମାଧିରେ ଯେଉଁ ବହିର୍ଦ୍ଧଭାବ ଅର୍ଥାତ୍ ଆସକ୍ତିର ଅଭାବ ଜାତ ହୁଏ ତାହା 'ଅସଂସକ୍ତି' ବା ପଞ୍ଚମ ଭୂମିକା ନାମରେ ବିଖ୍ୟାତ । ଏ ଅବସ୍ଥାକୁ ଯୋଗିଙ୍କର 'ସାମାନ୍ୟ ସୁଷୁପ୍ତି ଅବସ୍ଥା' ବୋଲି ଯାଇପାରେ । ଯେହେତୁ ଏ ଅବସ୍ଥାରେ ଯୋଗୀ ନିର୍ବିକଳ୍ପ ସମାଧିରୁ ଆପେ ବ୍ୟୁତ୍ଥିତ ହୋଇ ପାରନ୍ତି ଅର୍ଥାତ୍ ସମାଧି ଭଙ୍ଗ କରି ପାରନ୍ତି, ଏ ଅବସ୍ଥାପନ୍ନ ଯୋଗିଙ୍କୁ 'ବ୍ରହ୍ମବିଦ୍ବର' ବୋଲି ଯାଏ ।

ନିର୍ବିକଳ୍ପ ସମାଧିର ଅଭ୍ୟାସ ପରିପାକରେ ଯେଉଁ ଚିରକାଳସ୍ଥାୟିନୀ ସମାଧି ଅବସ୍ଥା ଜନ୍ମେ ତାକୁ 'ପଦାର୍ଥାଭାବନୀ' ବା ଷଷ୍ଠ ଭୂମିକା ବୋଲାଯାଏ । ସେ ଅବସ୍ଥାରେ ଯୋଗିବ୍ୟକ୍ତି ବ୍ରହ୍ମ-ସାକ୍ଷାତ୍କାର-ଜନିତ ସୁଖରେ ଏପରି ପ୍ରମତ୍ତ ଥାନ୍ତି, ଯେ 'ଦେହାଦି' ପଦାର୍ଥ ଆଉ ଭାବିବାକୁ ଅବକାଶ ପାଆନ୍ତି ନାହିଁ । ଏହି ଅବସ୍ଥାକୁ ଯୋଗିଙ୍କର 'ଗାଢସୁଷୁପ୍ତି ଅବସ୍ଥା' ବୋଲି ଯାଇ ପାରେ । କାହିଁକନା ଅନ୍ୟ ବ୍ୟକ୍ତିର ବହୁ ଯତ୍ନରେ ସେ ସମାଧିର ବ୍ୟୁତ୍ଥାନ ଅର୍ଥାତ୍ ଭଙ୍ଗ ହୁଏ ନାହିଁ । ଏ ଅବସ୍ଥାପ୍ରାପ୍ତ ଯୋଗିଙ୍କୁ 'ବ୍ରହ୍ମବିଦ୍ବରୀୟାନ୍' ବୋଲାଯାଏ ।

ନିର୍ବିକଳ୍ପ ସମାଧିର ଅତ୍ୟନ୍ତ ଅଭ୍ୟାସଦ୍ୱାରା ଯେତେବେଳେ ଯୋଗିଙ୍କର ଏପରି ଅବସ୍ଥା ହେବ, ଯେ ନିଜଦ୍ୱାରା ବା ପରଦ୍ୱାରା ଆଉ ବ୍ୟୁତ୍ଥାନ ଅର୍ଥାତ୍ ସମାଧିଭଙ୍ଗର ସମ୍ଭାବନା ନ ଥିବ, କେବଳ ଈଶ୍ୱରପ୍ରେରିତ ଓ ଅଦୃଷ୍ଟସଂସ୍କାରଜ ପ୍ରାଣବାୟୁଦ୍ୱାରା ଶ୍ୱାସ-ପ୍ରଶ୍ୱାସ କାର୍ଯ୍ୟମାତ୍ର ଚଳୁଥିବ ଓ ଅନ୍ୟାନ୍ୟ ସ୍ନାନାଦି ଶାରୀରିକ କର୍ମ ପରଦ୍ୱାରା ନିର୍ବାହିତ ହେଉ ବା ନ ହେଉ ସେ ବିଷୟରେ ଅପେକ୍ଷା ନ ରଖି ସର୍ବପ୍ରକାର ଭେଦରହିତ ହେବାରୁ 'ତନ୍ମୟ'—ବ୍ରହ୍ମମୟ ହୋଇ ପରିପୂର୍ଣ୍ଣ ପରମାନନ୍ଦ ଅବସ୍ଥାରେ ସ୍ଥିତ ହେବେ, ସେତେବେଳେ ଯୋଗିଙ୍କର ସେହି ଅବସ୍ଥାକୁ 'ତୁରୀୟାବସ୍ଥା' ବା ସପ୍ତମ ଭୂମିକା ବୋଲି ଯିବ । ଏହାହିଁ ଯୋଗର ଶେଷ ଭୂମିକା ଅଟେ । ଏ ଅବସ୍ଥାପ୍ରାପ୍ତ ଯୋଗିଙ୍କୁ 'ବ୍ରହ୍ମବିଦ୍ବରିଷ୍ଠ' ବୋଲାଯାଏ ।

ଏହି ସପ୍ତଭୂମିକା ମଧ୍ୟରୁ ପ୍ରଥମତ୍ରୟକୁ 'ସାଧନ ଅବସ୍ଥା' ଓ ଚତୁର୍ଥକୁ 'ଜ୍ଞାନ ଅବସ୍ଥା' ଏବଂ ପଞ୍ଚମ, ଷଷ୍ଠ ଓ ସପ୍ତମକୁ 'ଜୀବନ୍ମୁକ୍ତାବସ୍ଥା' ବୋଲାଯାଏ । ଯଥା,—

"ଚତୁର୍ଥୀ ଭୂମିକା ଜ୍ଞାନଂ ତିସ୍ରଃ ସ୍ୟୁଃ ସାଧନଂ ପୁରା ।
ଜୀବନ୍ମୁକ୍ତେରବସ୍ଥାସ୍ତୁ ପରାସ୍ତିସ୍ରଃ ପ୍ରକୀର୍ତ୍ତିତାଃ ।"

ଏଥିରେ କେବଳ ପ୍ରଥମ ତିନି ଅବସ୍ଥାରେ ଆରୂଢବ୍ୟକ୍ତି କର୍ମାଧିକାରୀ, ମାତ୍ର ଚତୁର୍ଥ ଅବସ୍ଥାଠାରୁ ଅର୍ଥାତ୍ ଜ୍ଞାନ ଜନ୍ମିଲାରୁ ଆଉ କର୍ମର ପ୍ରୟୋଜନ ନାହିଁ ।

କାହାରି ମତରେ ଜ୍ଞାନର ସତରଗୋଟି ସୋପାନ ଅଛି । ଯଥା,—ପ୍ରଥମ ଜ୍ଞାନ, ୨ୟ ବୈରାଗ୍ୟ, ୩ୟ ବିବେକ ଓ ୪ର୍ଥ ବିଜ୍ଞାନ । ଯଥା,—ଯାହାଦ୍ୱାରା ଆନ୍ତରିକ ଓ ବାହ୍ୟିକ ତାବତୀୟ ପଦାର୍ଥ ମଧ୍ୟରୁ କିଏ ସତ୍ ଓ କିଏ ଅସତ୍ ତାହା ଜଣାଯାଏ ତାହାକୁ 'ଜ୍ଞାନ' ବୋଲି

ଯାଏ । ସତ୍ ଓ ଅସତ୍ ଏ ଦୁଇ ପଦାର୍ଥ ଜଣା ଗଲାରୁ ଅସତ୍ ପଦାର୍ଥରେ ଯେଉଁ ବିରାଗ ଅର୍ଥାତ୍ ବିରକ୍ତି ଜନ୍ମେ ତାହାକୁ ବୈରାଗ୍ୟ ବୋଲାଯାଏ । ତହୁଁ ଉତ୍ତାରୁ ସତ୍ ପଦାର୍ଥରେ ଯେଉଁ ନିର୍ବିକଳ୍ପ ଅର୍ଥାତ୍ ସନ୍ଦେହଶୂନ୍ୟ ଦୃଢପ୍ରତୀତି ଜନ୍ମେ ତାହା 'ବିବେକ' ନାମରେ ପରିଚିତ । ଜ୍ଞାନଦ୍ୱାରା ସ୍ୱୀକୃତ, ବୈରାଗ୍ୟଦ୍ୱାରା ଅନୁମୋଦିତ ଏବଂ ବିବେକଦ୍ୱାରା ନିଶ୍ଚିତ ଯେ ସତ୍ ପଦାର୍ଥ, ତାହାର ସମ୍ପୂର୍ଣ୍ଣ ଅନୁଭବକୁ ଅର୍ଥାତ୍ ତନ୍ମୟତାକୁ 'ବିଜ୍ଞାନ' ବୋଲାଯାଏ ।

ମନଃସଂଯୋଗ କରି ଦେଖିଲେ ଜଣା ଯିବ, ଯେ ପ୍ରଥମୋକ୍ତ ସାତ ପ୍ରକାର ଭୂମିକା ମଧ୍ୟରୁ ସାଧନରୂପ ଭୂମିକାତ୍ରୟକୁ ଛାଡି ଦେଲେ, ଚତୁର୍ଥ ବା ସତ୍ତ୍ୱାପତ୍ତି ଭୂମିକାକୁ 'ଜ୍ଞାନ', ପଞ୍ଚମ ବା ଅସଂସକ୍ତି ଭୂମିକାକୁ 'ବୈରାଗ୍ୟ' ଓ ଷଷ୍ଠ ବା 'ପଦାର୍ଥାଭାବନୀ' ଭୂମିକାକୁ 'ବିବେକ' ଏବଂ ସପ୍ତମ ବା ତୁରୀୟ ଅବସ୍ଥାକୁ 'ବିଜ୍ଞାନ' ବୋଲି ଯାଇ ପାରେ । ୧୮ ।

### ଶ୍ଳୋକଃ ।

* ତସ୍ମାଦସକ୍ତଃ ସତତଂ, କାର୍ଯ୍ୟଂ କର୍ମ ସମାଚର ।
ଅସକ୍ତୋହ୍ୟାଚରନ୍ କର୍ମ, ପରମାପ୍ନୋତି ପୂରୁଷଃ । ୧୯ ।

### ଅନ୍ୱୟଃ ।

ତସ୍ମାତ୍ ଅସକ୍ତଃ (ସନ୍) ସତତଂ କାର୍ଯ୍ୟଂ କର୍ମ ସମାଚର । ହି ଅସକ୍ତଃ (ସନ୍) କର୍ମ ଆଚରନ୍ ପୂରୁଷଃ ପରଂ ଆପ୍ନୋତି । ୧୯ ।

### ଟୀକା ।

ଯସ୍ମାଦେବମ୍ଭୂତସ୍ୟ ଜ୍ଞାନିନ ଏବ କର୍ମାନୁପଯୋଗୋ ନାନ୍ୟସ୍ୟ ତସ୍ମାତ୍ତ୍ୱଂ କର୍ମ କୁର୍ବ୍ବିତ୍ୟାହ, ତସ୍ମାଦିତି । ଅସକ୍ତଃ ଫଳସଙ୍ଗରହିତଃ ସନ୍ କାର୍ଯ୍ୟମବଶ୍ୟକର୍ତ୍ତବ୍ୟତୟା ବିହିତଂ ନିତ୍ୟଂ ନୈମିତ୍ତିକଂ କର୍ମ ସମ୍ୟଗାଚର, ହି ଯସ୍ମାଦସକ୍ତଃ କର୍ମାଚରନ୍ ପୂରୁଷଃ ପରଂ ମୋକ୍ଷଂ ଚିତ୍ତଶୁଦ୍ଧିଦ୍ୱାରା ପ୍ରାପ୍ନୋତି । ୧୯ ।

### ପଦବ୍ୟାଖ୍ୟା ।

ତସ୍ମାତ୍—ସେହିହେତୁରୁ, ଅସକ୍ତଃ—ଆସକ୍ତି ରହିତ ହୋଇ, ସତତଂ—ସର୍ବଦା, କାର୍ଯ୍ୟଂ—କରିବାଯୋଗ୍ୟ, କର୍ମ—କାର୍ଯ୍ୟକୁ, ସମାଚର—ଉତ୍ତମରୂପେ ଆଚରଣ କର, ଅସକ୍ତଃ—ଫଳକାମନାରହିତ, ହି—ନିଶ୍ଚୟ, ଆଚରନ୍—ଆଚରଣ କଲେ, କର୍ମ—କର୍ମକୁ, ପରଂ—ମୁକ୍ତିକୁ, ଆପ୍ନୋତି—ପ୍ରାପ୍ତ ହୁଏ, ପୂରୁଷଃ—ମନୁଷ୍ୟ । ୧୯ ।

### ଅନୁବାଦ ।

ଅତଏବ ଫଳକାମନାରହିତ ହୋଇ ତୁମ୍ଭେ କର୍ତ୍ତବ୍ୟକର୍ମ ଅନୁଷ୍ଠାନ କର । କାହିଁକିନା ଫଳକାମନାରହିତ ହୋଇ କର୍ମ କଲେ ପୁରୁଷ ମୁକ୍ତି ପ୍ରାପ୍ତ ହୁଏ । ୧୯ ।

### ବିଶଦବ୍ୟାଖ୍ୟା ।

ତତ୍ତ୍ୱଜ୍ଞାନ ନ ହେବା ଯାଏ କର୍ମ କରିବା ଉଚିତ । ନିଷ୍କାମଭାବରେ ଅର୍ଥାତ୍ ଫଳକାମନାରହିତ ହୋଇ କର୍ମ କଲେ ଅନ୍ତଃକରଣ ଶୁଦ୍ଧି ହେବାରୁ ମୁକ୍ତିର ମାର୍ଗ ପରିଷ୍କୃତ ହୁଏ । ଅତଏବ ହେ ଅର୍ଜ୍ଜୁନ ! ତୁମ୍ଭେ ଫଳକାମନାରହିତ ହୋଇ କର୍ମ କର । ୧୯ ।

Digitized by PPRACHIN, SOA

### ଶ୍ଳୋକଃ ।

କର୍ମଣୈବ ହି ସଂସିଦ୍ଧି,ମାସ୍ଥିତା ଜନକାଦୟଃ ।
ଲୋକସଂଗ୍ରହମେବାପି, ସଂପଶ୍ୟନ୍ କର୍ତ୍ତୁମର୍ହସି । ୨୦ ।

### ଅନ୍ୱୟଃ ।

ହି ଜନକାଦୟଃ କର୍ମଣା ଏବ ସଂସିଦ୍ଧିଂ ଆସ୍ଥିତାଃ । ଲୋକସଂଗ୍ରହଂ ଅପି ସଂପଶ୍ୟନ୍ (କର୍ମ) କର୍ତ୍ତୁଂ ଏବ ଅର୍ହସି । ୨୦ ।

### ଟୀକା ।

ଅତ୍ର ସଦାଚାରଂ ପ୍ରମାଣୟତି । କର୍ମଣୈବେତି । କର୍ମଣୈବ ଶୁଦ୍ଧସତ୍ତ୍ୱାଃ ସନ୍ତଃ ସଂସିଦ୍ଧିଂ ସମ୍ୟଗ୍‌ଜ୍ଞାନଂ ପ୍ରାପ୍ତା ଇତ୍ୟର୍ଥଃ । ଯଦ୍ୟପି ତ୍ୱଂ ସମ୍ୟଗ୍‌ଜ୍ଞାନିନମେବାତ୍ମାନଂ ମନ୍ୟସେ ତଥାପି କର୍ମାଚରଣଂ ଭଦ୍ରମେବେତ୍ୟାହ । ଲୋକସଂଗ୍ରହମିତ୍ୟାଦି । ଲୋକସ୍ୟ ସଂଗ୍ରହଃ ସ୍ୱଧର୍ମେ ପ୍ରବର୍ତ୍ତନଂ ମୟା କର୍ମଣି କୃତେ ଜନଃ ସର୍ବୋଽପି କରିଷ୍ୟତି ଅନ୍ୟଥା ଜ୍ଞାନିଦୃଷ୍ଟାନ୍ତେନାଜ୍ଞୋ ନିଜଧର୍ମଂ ନିତ୍ୟଂ କର୍ମ ତ୍ୟଜନ୍ ପତେଦିତ୍ୟେବଂ ଲୋକରକ୍ଷଣମପି ତାବତ୍ ପ୍ରୟୋଜନଂ ପଶ୍ୟନ୍ କର୍ମ କର୍ତ୍ତୁମେବାର୍ହସି ନ ତ୍ୟକ୍ତୁମିତ୍ୟର୍ଥଃ । ୨୦ ।

### ପଦବ୍ୟାଖ୍ୟା ।

କର୍ମଣା—କର୍ମଦ୍ୱାରା, ଏବ—କେବଳ, ହି—ନିଶ୍ଚୟ, ସଂସିଦ୍ଧିଂ—ସମ୍ୟକ୍ ଜ୍ଞାନକୁ, ଆସ୍ଥିତାଃ—ପ୍ରାପ୍ତ ହୋଇଅଛନ୍ତି, ଜନକାଦୟଃ—ଜନକମୁନି ଆଦି, ଲୋକସଂଗ୍ରହଂ—ଲୋକମାନଙ୍କୁ ସ୍ୱ ସ୍ୱ ଧର୍ମରେ ପ୍ରବର୍ତ୍ତାଇବା, ଏବ—ନିଶ୍ଚୟ, ଅପି—ମଧ୍ୟ, ସଂପଶ୍ୟନ୍—ଉତ୍ତମରୂପେ ଦେଖି କରି, କର୍ତ୍ତୁଂ ଅର୍ହସି—କରିବାକୁ ଯୋଗ୍ୟ ହେଉଅଛ । ୨୦ ।

### ଅନୁବାଦ ।

ଜନକାଦି ମହାତ୍ମାମାନେ କେବଳ କର୍ମାନୁଷ୍ଠାନଦ୍ୱାରା ଜ୍ଞାନଲାଭ କରିଅଛନ୍ତି । (ଆଉ) ମନୁଷ୍ୟମାନଙ୍କର ସ୍ୱଧର୍ମରେ ପ୍ରବୃତ୍ତି ଜନ୍ମାଇବାପାଇଁ ସୁଦ୍ଧା ତୁମ୍ଭର କର୍ମାନୁଷ୍ଠାନ କରିବା ଉଚିତ । ୨୦ ।

### ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନ ମନେ କରିବେ, ଯେ ଜ୍ଞାନବ୍ୟକ୍ତିର ଯେବେ କର୍ମାଚରଣ ଅପ୍ରୟୋଜନୀୟ, ତେବେ ମୁଁ ଜ୍ଞାନାଭିଳାଷୀ, ମୋହର ଆଉ କର୍ମ କରିବାରେ କି ପ୍ରୟୋଜନ ? ଆଉ ଜ୍ଞାନାଭିଳାଷିମାନଙ୍କୁ ଯେ ନିଶ୍ଚୟ କର୍ମ କରିବାକୁ ହୁଏ ତହିଁରେ ବା ପ୍ରମାଣ କଣ ? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ରାଜା ଜନକ, ଅଜାତଶତ୍ରୁ, ଅଶ୍ୱପତି ଓ ଭଗୀରଥ ପ୍ରଭୃତି ମହାତ୍ମାମାନେ କର୍ମର ଅନୁଷ୍ଠାନଦ୍ୱାରା ଜ୍ଞାନଲାଭ କରିଥିଲେ, ସେମାନେ ଜ୍ଞାନାଭିଳାଷୀ ଥିଲାବେଳେ କର୍ମତ୍ୟାଗ କରି ନ ଥିଲେ । ଅତଏବ ତୁମ୍ଭର କର୍ମତ୍ୟାଗ ବିଧେୟ ନୁହେଁ । ଆଉ ଯଦି ତୁମ୍ଭେ ଜ୍ଞାନାଭିଳାଷୀ ନ ହୋଇ ଜ୍ଞାନୀ ହୁଅ ତେବେ ତୁମ୍ଭର ନିଜପାଇଁ କୌଣସି କର୍ମ କରିବା ଆବଶ୍ୟକ ନ ଥିଲେ ସୁଦ୍ଧା ଲୋକସଂଗ୍ରହପାଇଁ ତୁମ୍ଭର କର୍ମ କରିବା ଉଚିତ ।

ଲୋକଙ୍କୁ ନିଜ୨ ଧର୍ମରେ ପ୍ରବର୍ତ୍ତିତ କରିବା ଏବଂ ସେମାନଙ୍କୁ ସ୍ୱ ସ୍ୱ ଧର୍ମତ୍ୟାଗଜାତ ଅଧର୍ମରୁ ରକ୍ଷା କରିବାକୁ 'ଲୋକସଂଗ୍ରହ' ବୋଲାଯାଏ । ସେହି ଲୋକସଂଗ୍ରହରୂପ ପ୍ରୟୋଜନ ଦୃଷ୍ଟିରେ ତୁମ୍ଭର କର୍ମ ଅନୁଷ୍ଠାନ କରିବା ଉଚିତ ଅର୍ଥାତ୍ ତୁମ୍ଭେ ସ୍ୱଧର୍ମ ପାଳନ କରୁଥିବାର

Digitized by PPRACHIN, SOA

ଦେଖି ଲୋକମାନେ ନିଜ ୨ ଧର୍ମ ପାଳନ କରିବେ, କିନ୍ତୁ ତୁମ୍ଭେ ଜ୍ଞାନୀ ହୋଇଅଛ ବୋଲି କର୍ମ ତ୍ୟାଗ କଲେ ସେମାନେ ଅଜ୍ଞାନୀ ହୋଇ ମଧ୍ୟ ତୁମ୍ଭର ଅନୁଗମନ କରି କର୍ମ ତ୍ୟାଗ କରିବେ । ଅତଏବ ତୁମ୍ଭର କର୍ମତ୍ୟାଗ ଉଚିତ ନୁହେ, କର୍ମ ଅନୁଷ୍ଠାନ କର୍ତ୍ତବ୍ୟ । ଫଳକଥା ଏହିକି ତୁମ୍ଭେ ଅଜ୍ଞାନୀ ହୁଅ ଅବା ଜ୍ଞାନୀ ହୁଅ କର୍ମାନୁଷ୍ଠାନ ଅବଶ୍ୟ କରିବାକୁ ହେବ । ୨୦ ।

ଶ୍ଳୋକଃ ।

ଯଦ୍ୟଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନଃ ।
ସ ଯତ୍ ପ୍ରମାଣଂ କୁରୁତେ, ଲୋକସ୍ତଦନୁବର୍ତ୍ତତେ । ୨୧ ।

ଅନ୍ୱୟଃ ।

ଶ୍ରେଷ୍ଠଃ ଯତ୍ ଯତ୍ ଆଚରତି ଇତରଃ ଜନଃ ତତ୍ ତତ୍ ଏବ (ଆଚରତି) । ସଃ ଯତ୍ ପ୍ରମାଣଂ କୁରୁତେ ଲୋକଃ ତତ୍ ଅନୁବର୍ତ୍ତତେ । ୨୧ ।

ଟୀକା ।

କର୍ମକରଣେ ଲୋକସଂଗ୍ରହୋ ଯଥା ସ୍ୟାତ୍ତଦାହ । ଯଦ୍ୟଦିତି । ଇତରଃ ପ୍ରାକୃତୋଽପି ଜନସ୍ତତ୍ତଦେବାଚରତି ସ ଶ୍ରେଷ୍ଠୋ ଜନଃ କର୍ମଶାସ୍ତ୍ରଂ ନିବୃତ୍ତିଶାସ୍ତ୍ରଂ ବା ଯତ୍ ପ୍ରମାଣଂ ମନ୍ୟତେ ତଦେବ ଲୋକୋଽପ୍ୟନୁସରତି । ୨୧ ।

ପଦବ୍ୟାଖ୍ୟା ।

ଯତ୍ ଯତ୍ (କର୍ମ)—ଯେଉଁ ୨ କର୍ମ, ଆଚରତି—ଆଚରଣ କରନ୍ତି, ଶ୍ରେଷ୍ଠଃ—ପ୍ରଧାନ ବ୍ୟକ୍ତି, ତତ୍ ତତ୍ (କର୍ମ)—ସେହି ୨ କର୍ମକୁ, ଏବ—ନିଶ୍ଚୟ, ଇତରୋ ଜନଃ—ଇତରଲୋକ, ସଃ—ସେ, ଯତ୍—ଯାହା, ପ୍ରମାଣଂ କୁରୁତେ—ପ୍ରମାଣ କରନ୍ତି, ଲୋକଃ—ମନୁଷ୍ୟ, ତତ୍—ତାହାକୁ, ଅନୁବର୍ତ୍ତତେ—ଅନୁଗମନ କରନ୍ତି । ୨୧ ।

ଅନୁବାଦ ।

ଶ୍ରେଷ୍ଠବ୍ୟକ୍ତି ଯେଉଁ କର୍ମ ଆଚରଣ କରନ୍ତି, ଇତରଲୋକମାନେ ସେହି ୨ କର୍ମ କରନ୍ତି ଓ ଶ୍ରେଷ୍ଠଲୋକ ଯାହାକୁ ପ୍ରମାଣ ବୋଲି କହନ୍ତି, ଅନ୍ୟ ଲୋକମାନେ ତାହାର ଅନୁଗମନ କରନ୍ତି । ୨୧ ।

ବିଶଦବ୍ୟାଖ୍ୟା ।

ରାଜା, ମହାରାଜ ଓ ଚକ୍ରବର୍ତ୍ତୀ ଆଦି ପ୍ରଧାନ ବ୍ୟକ୍ତିମାନେ ଯେଉଁ କର୍ମ କରନ୍ତି ଅନ୍ୟ ଲୋକମାନେ ତାହାହିଁ କରନ୍ତି । ରାଜା ମହାରାଜ ଆଦି ବ୍ୟକ୍ତିମାନେ ବୁଦ୍ଧିମାନ୍, ବିଦ୍ୟାବାନ୍, ଓ କ୍ଷମତାବାନ୍ ଅଟନ୍ତି ଏବଂ ନାନାପ୍ରକାର ପଣ୍ଡିତମଣ୍ଡଳଙ୍କ ସହବାସରେ ରହୁଥିବାରୁ ଅବଶ୍ୟ ଶାସ୍ତ୍ରର ବିଧି ଅନୁସାରେ କର୍ମ କରୁଥିବେ, ଏହା ଅନ୍ୟାନ୍ୟ ଲୋକଙ୍କର ବିଶ୍ୱାସ । ପୁଣି ରାଜା ଆଦି ପ୍ରଧାନ ବ୍ୟକ୍ତିମାନେ ଯେଉଁ କଥାକୁ ପ୍ରମାଣ ବୋଲି ସ୍ୱୀକାର କରନ୍ତି, ତାହା ଶାସ୍ତ୍ରର ଚୂଡ଼ାନ୍ତ ନିଷ୍ପତ୍ତି ବୋଲି ସାଧାରଣ ଲୋକେ ବିଶ୍ୱାସ କରନ୍ତି । ଅତଏବ ହେ ଅର୍ଜ୍ଜୁନ ! ତୁମ୍ଭେ କର୍ମ ପରିତ୍ୟାଗ କଲେ, ଇତରଲୋକମାନଙ୍କର ତତ୍ତ୍ୱଜ୍ଞାନ ଉଦୟ ହୋଇ ନ ଥିଲେ ସୁଦ୍ଧା, ରାଜା କର୍ମ ତ୍ୟାଗ କରିଅଛନ୍ତି ବୋଲି ସେମାନେ କର୍ମ ତ୍ୟାଗ କରିବେ । ସେମାନେ ଅନଧିକାରୀ ଅବସ୍ଥାରେ କର୍ମ ତ୍ୟାଗ କରିବାରୁ ପାପୀ ହେବେ ଏବଂ ତୁମ୍ଭେ ସେମା-

Digitized by PPRACHIN, SOA

ନଙ୍କ କର୍ମତ୍ୟାଗର ପ୍ରବର୍ତ୍ତକ ବା କାରଣ ହେବାରୁ ତୁମ୍ଭର ମଧ୍ୟ ପାପ ହେବ । ଅତଏବ ଲୋକଶିକ୍ଷା ନିମିତ୍ତ ତୁମ୍ଭର କର୍ମ କରିବା ଉଚିତ । ୨୧ ।

ଶ୍ଳୋକଃ ।

ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ, ତ୍ରିଷୁ ଲୋକେଷୁ କିଞ୍ଚନ ।
ନାନବାପ୍ତମବାପ୍ତବ୍ୟଂ, ବର୍ତ୍ତଏବ ଚ କର୍ମଣି । ୨୨ ।

ଅନ୍ୱୟଃ ।

ହେ ପାର୍ଥ ! (ଯତଃ) ତ୍ରିଷୁ ଲୋକେଷୁ ଅନବାପ୍ତଂ ଚ ଅବାପ୍ତବ୍ୟଂ ମେ ନ ଅସ୍ତି (ଅତଃ ମେ) କିଞ୍ଚନ କର୍ତ୍ତବ୍ୟଂ ନ ଅସ୍ତି ତଥାପି କର୍ମଣି ବର୍ତ୍ତେ ଏବ । ୨୨ ।

ଟୀକା ।

ଅତ୍ର ଶ୍ରୀହରିରେବ ଦୃଷ୍ଟାନ୍ତ ଇତ୍ୟାହ । ନ ମେ ଇତି ତ୍ରିଭିଃ । ହେ ପାର୍ଥ ! ମେ କର୍ତ୍ତବ୍ୟଂ ନାସ୍ତି ଯତସ୍ତ୍ରିଷ୍ୱପି ଲୋକେଷୁ ଅନବାପ୍ତମପ୍ରାପ୍ତଂ ଅବାପ୍ତବ୍ୟଂ ପ୍ରାପ୍ୟଂ ନାସ୍ତି ତଥାପି କର୍ମଣି ବର୍ତ୍ତ ଏବ କର୍ମ କରୋମ୍ୟେବେତ୍ୟର୍ଥଃ । ୨୨ ।

ପଦବ୍ୟାଖ୍ୟା ।

ନ—ନାହିଁ, ମେ—ଆମ୍ଭର, ପାର୍ଥ—ହେ ଅର୍ଜ୍ଜୁନ ! , ଅସ୍ତି—ଅଛି, କର୍ତ୍ତବ୍ୟଂ—କରିବାଯୋଗ୍ୟ, ତ୍ରିଷୁ ଲୋକେଷୁ—(ସ୍ୱର୍ଗ ମର୍ତ୍ତ୍ୟ ପାତାଳ) ତ୍ରିଲୋକରେ, କିଞ୍ଚନ—କିଛି, ନ—ନାହିଁ, ଅନବାପ୍ତଂ—ଅପ୍ରାପ୍ତ, ଅବାପ୍ତବ୍ୟଂ—ପ୍ରାପ୍ୟ, ବର୍ତ୍ତେ—ପ୍ରବୃତ୍ତ ଅଛି, ଏବ—କେବଳ, ଚ—ପୁଣି, କର୍ମଣି—କାର୍ଯ୍ୟରେ । ୨୨ ।

ଅନୁବାଦ ।

ହେ ଅର୍ଜ୍ଜୁନ ! ଏ ତିନିଭୁବନରେ ଆମ୍ଭର କୌଣସି କର୍ତ୍ତବ୍ୟକର୍ମ ନାହିଁ, ଯେହେତୁ ଆମ୍ଭର କୌଣସି ବସ୍ତୁର ଅଭାବ ବା ପ୍ରୟୋଜନ ନାହିଁ, ତଥାପି ଆମ୍ଭେ କର୍ମ କରୁଅଛୁଁ ।

ବିଶଦବ୍ୟାଖ୍ୟା ।

ଲୋକଶିକ୍ଷାପାଇଁ କର୍ମ କରିବା ଯେ ନିତାନ୍ତ ଆବଶ୍ୟକ ଶ୍ରୀଭଗବାନ୍ ନିଜର ଉଦାହରଣ ଦେଇ ତାହା ବୁଝାଇ ଦେଉଅଛନ୍ତି । ହେ ଅର୍ଜ୍ଜୁନ ! ଆମ୍ଭେ ଏ ଜଗତର ଏକମାତ୍ର ପ୍ରଭୁ, ସୁତରାଂ ଆମ୍ଭର କୌଣସି ବିଷୟର ଅଭାବ ବା ଆବଶ୍ୟକ ନାହିଁ, ଏପରି ସ୍ଥଳେ ଆମ୍ଭର କୌଣସି ପ୍ରକାର କର୍ମ କରିବାର ପ୍ରୟୋଜନ ନାହିଁ, ତଥାପି ଲୋକଶିକ୍ଷା ନିମିତ୍ତ ଆମ୍ଭେ ବେଦବିହିତ କର୍ମମାନ କରୁଅଛୁଁ । ୨୨ ।

ଶ୍ଳୋକଃ ।

ଯଦି ହ୍ୟହଂ ନ ବର୍ତ୍ତେୟଂ, ଜାତୁ କର୍ମଣ୍ୟତନ୍ଦ୍ରିତଃ ।
ମମ ବର୍ତ୍ମାନୁବର୍ତ୍ତନ୍ତେ, ମନୁଷ୍ୟାଃ ପାର୍ଥ ସର୍ବଶଃ । ୨୩ ।

ଅନ୍ୱୟଃ ।

ହେ ପାର୍ଥ ! ଯଦି ଅହଂ ଅତନ୍ଦ୍ରିତଃ (ସନ୍) ଜାତୁ କର୍ମଣି ନ ବର୍ତ୍ତେୟଂ (ତର୍ହି) ମନୁଷ୍ୟାଃ ମମ ବର୍ତ୍ମ ସର୍ବଶଃ ଅନୁବର୍ତ୍ତନ୍ତେ । ୨୩ ।

Digitized by PPRACHIN, SOA

### ଟୀକା ।

ଅକରଣେ ଲୋକସ୍ୟ ନାଶଂ ଦର୍ଶୟତି, ଯଦି ହ୍ୟହମିତି । ଜାତୁ କଦାଚିଦତନ୍ଦ୍ରିତୋଽନଲସଃ ସନ୍ ଯଦି କର୍ମଣି ନ ବର୍ତ୍ତେୟଂ କର୍ମ ନାନୁତିଷ୍ଠେୟଂ ତର୍ହି ମମୈବ ବର୍ତ୍ମ ମାର୍ଗଂ ମନୁଷ୍ୟାଃ ଅନୁବର୍ତ୍ତନ୍ତେ ଅନୁବର୍ତ୍ତେରନ୍ନିତ୍ୟର୍ଥଃ । ୨୩ ।

### ପଦବ୍ୟାଖ୍ୟା ।

ଯଦି—ଯେବେ, ହି—ନିଶ୍ଚୟ, ଅହଂ—ଆମ୍ଭେ, ନ—ନାହିଁ, ବର୍ତ୍ତେୟଂ—ପ୍ରବୃତ୍ତ ହେବୁଁ, ଜାତୁ—କଦାପି, କର୍ମଣି—କର୍ମରେ, ଅତନ୍ଦ୍ରିତଃ—ଆଳସ୍ୟବର୍ଜ୍ଜିତ ହୋଇ, ମମ—ଆମ୍ଭର, ବର୍ତ୍ମ—ମାର୍ଗକୁ, ଅନୁବର୍ତ୍ତନ୍ତେ—ପ୍ରବୃତ୍ତ ହେବେ, ମନୁଷ୍ୟାଃ—ଲୋକମାନେ, ପାର୍ଥ—ହେ ଅର୍ଜୁନ !, ସର୍ବଶଃ—ସକଳ ପ୍ରକାରରେ । ୨୩ ।

### ଅନୁବାଦ ।

ହେ ଅର୍ଜୁନ ! ଯଦି ଆମ୍ଭେ ଆଳସ୍ୟ ତ୍ୟାଗ କରି କଦାପି କର୍ମରେ ପ୍ରବୃତ୍ତ ନ ହେବୁଁ, (ତେବେ) ମନୁଷ୍ୟମାନେ ସକଳ ପ୍ରକାରରେ ଆମ୍ଭର ଅନୁଗାମୀ ହେବେ । ୨୩ ।

### ବିଶଦବ୍ୟାଖ୍ୟା ।

ଆମ୍ଭର କୌଣସି ପ୍ରକାର କର୍ମ କରିବାର ଆବଶ୍ୟକ ନ ଥିଲେ ମଧ୍ୟ ଆମ୍ଭେ ଯେବେ ଆଳସ୍ୟ ତ୍ୟାଗ କରି ବେଦୋକ୍ତ କର୍ମମାନ ନ କରୁଁ, ତେବେ ଲୋକମାନେ ଆମ୍ଭର ଅନୁଗାମୀ ହେବେ ଅର୍ଥାତ୍ କର୍ମ କରିବା ଯାହା ପକ୍ଷରେ ଉଚିତ ସେ ମଧ୍ୟ କର୍ମ କରିବ ନାହିଁ । ୨୩ ।

### ଶ୍ଲୋକଃ ।

ଉତ୍ସୀଦେୟୁରିମେ ଲୋକା, ନ କୁର୍ଯ୍ୟାଂ କର୍ମ ଚେଦହଂ ।
ସଙ୍କରସ୍ୟ ଚ କର୍ତ୍ତା ସ୍ୟା,ମୁପହନ୍ୟାମିମାଃ ପ୍ରଜାଃ । ୨୪ ।

### ଅନ୍ୱୟଃ ।

ଅହଂ କର୍ମ ନ କୁର୍ଯ୍ୟାଂ ଚେତ୍ ଇମେ ଲୋକାଃ ଉତ୍ସୀଦେୟୁଃ । (ଅହଂ) ସଙ୍କରସ୍ୟ କର୍ତ୍ତା ସ୍ୟାଂ ଚ ଇମାଃ ପ୍ରଜାଃ ଉପହନ୍ୟାଂ । ୨୪ ।

### ଟୀକା ।

ତତଃ କିମତ ଆହ, ଉତ୍ସୀଦେୟୁରିତି । ଉତ୍ସୀଦେୟୁଃ ଧର୍ମଲୋପେନ ନଶ୍ୟେୟୁଃ ତତଶ୍ଚ ଯୋ ବର୍ଣ୍ଣସଙ୍କରୋ ଭବେତ୍ତସ୍ୟାପ୍ୟହମେବ କର୍ତ୍ତା ସ୍ୟାଂ ଭବେୟଂ ଏବମହମେବ ପ୍ରଜା ଉପହନ୍ୟାଂ ମଳିନୀକୁର୍ଯ୍ୟାମିତି । ୨୪ ।

### ପଦବ୍ୟାଖ୍ୟା ।

ଉତ୍ସୀଦେୟୁଃ—ଉତ୍ସନ୍ନ ହେବେ ଅର୍ଥାତ୍ ଧର୍ମ ଲୋପ ହେବାରୁ ଭଲ ମନ୍ଦରେ ଦୃଷ୍ଟି ଦେବେ ନାହିଁ, ଇମେ ଲୋକାଃ—ଏହି ଲୋକମାନେ, ନ କୁର୍ଯ୍ୟାଂ—ନ କରୁଁ, କର୍ମ—ଶାସ୍ତ୍ରୋକ୍ତ କର୍ମକୁ, ଚେତ୍—ଯଦି, ଅହଂ—ଆମ୍ଭେ, ସଙ୍କରସ୍ୟ—ବର୍ଣ୍ଣସଙ୍କରର, ଚ—ପୁଣି, କର୍ତ୍ତା—ଉତ୍ପତ୍ତିର କାରଣ, ସ୍ୟାଂ—ହେବୁଁ, ଉପହନ୍ୟାଂ—ମଳିନ ଅର୍ଥାତ୍ ପାପିଷ୍ଠ କରୁଁ, ଇମାଃ ପ୍ରଜାଃ—ଏହି ପ୍ରଜାମାନଙ୍କୁ । ୨୪

### ଅନୁବାଦ ।

ଆମ୍ଭେ କର୍ମ ନ କଲେ ଏ ସମସ୍ତ ଲୋକେ ଉତ୍ସନ୍ନ ହେବେ । ଆମ୍ଭେ ବର୍ଣ୍ଣସଙ୍କର ଉତ୍ପତ୍ତିର କାରଣ ହେବୁଁ ଓ ପ୍ରଜାମାନଙ୍କୁ ପାପିଷ୍ଠ କରୁଁ । ୨୪ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଆମ୍ଭେ କର୍ମ ନ କଲେ ଏ ଲୋକମାନେ ବେଦବିହିତ କର୍ମ ନ କରି ଅଧର୍ମ ହେତୁରୁ ବିପଥଗାମୀ ହେବେ । କ୍ରମେ ବର୍ଣ୍ଣସଙ୍କର ଉତ୍ପତ୍ତି ହେବ , ଏହିପରି ପ୍ରଜାମାନଙ୍କର ସର୍ବନାଶ ହେବ ଓ ଆମ୍ଭେ ସେ ସମସ୍ତର କାରଣ ହେବୁଁ ଅର୍ଥାତ୍ ଆମ୍ଭ ହେତୁରୁ ବର୍ଣ୍ଣସଙ୍କର ଉତ୍ପତ୍ତି ଓ ପ୍ରଜାଙ୍କର ସର୍ବନାଶ ଘଟିବ, ଏହା ଉଚିତ ନୁହେ । ଅତଏବ ଆମ୍ଭେ କର୍ମ କରୁଅଛୁଁ, ତୁମ୍ଭେ ଆମ୍ଭର ସର୍ବଦା ଅନୁଗାମୀ ଅଟ, ଏହି ହେତୁରୁ ଆମ୍ଭର ଆଚରିତ କର୍ମ ତୁମ୍ଭର ଅବଶ୍ୟ ଆଚରଣ କରିବା ଉଚିତ । ୨୪ ।

ଶ୍ଲୋକଃ ।

* ସକ୍ତାଃ କର୍ମଣ୍ୟବିଦ୍ୱାଂସୋ, ଯଥା କୁର୍ବନ୍ତି ଭାରତ ।
କୁର୍ଯ୍ୟାଦ୍ୱିଦ୍ୱାଂସ୍ତଥାସକ୍ତ,ଶ୍ଚିକୀର୍ଷୁର୍ଲୋକସଂଗ୍ରହଂ । ୨୫ ।

ଅନ୍ୱୟଃ ।

ହେ ଭାରତ ! ଯଥା ଅବିଦ୍ୱାଂସଃ କର୍ମଣି ସକ୍ତାଃ (ସନ୍ତଃ କର୍ମ) କୁର୍ବନ୍ତି, ଲୋକସଂଗ୍ରହଂ ଚିକୀର୍ଷୁଃ ବିଦ୍ୱାନ୍ ଅସକ୍ତଃ ( ସନ୍ ) ତଥା (କର୍ମ) କୁର୍ଯ୍ୟାତ୍ । ୨୫ ।

ଟୀକା ।

ତସ୍ମାଦାତ୍ମବିଦାପି ଲୋକସଂଗ୍ରହାର୍ଥଂ ତତ୍କୃପୟା କର୍ମ କାର୍ଯ୍ୟମେବେତ୍ୟୁପସଂହରତି, ସକ୍ତାଇତି । କର୍ମଣି ସକ୍ତାଃ ଅଭିନିବିଷ୍ଟାଃ ସନ୍ତୋ ଯଥାଜ୍ଞାଃ କର୍ମାଣି କୁର୍ବନ୍ତି ଅସକ୍ତଃ ସନ୍ ବିଦ୍ୱାନପି ତଥୈବ କୁର୍ଯ୍ୟାଲ୍ଲୋକସଂଗ୍ରହଂ କର୍ତୁମିଚ୍ଛୁଃ । ୨୫ ।

ପଦବ୍ୟାଖ୍ୟା ।

ସକ୍ତାଃ—ଆସକ୍ତ ହୋଇ, କର୍ମଣି—କର୍ମଫଳରେ, ଅବିଦ୍ୱାଂସଃ—ମୂର୍ଖମାନେ, ଯଥା—ଯେପରି, କୁର୍ବନ୍ତି—କରନ୍ତି, ଭାରତ—ହେ ଭରତବଂଶଜ ! ଅଥବା (ଭା = ଜ୍ଞାନ, ରତ—ଆସକ୍ତ) ଜ୍ଞାନନିଷ୍ଠ !, କୁର୍ଯ୍ୟାତ୍—କରିବ, ବିଦ୍ୱାନ୍—ଜ୍ଞାନୀ, ତଥା—ସେହିପରି, ଅସକ୍ତଃ—ଫଳେଚ୍ଛାରହିତ, ଚିକୀର୍ଷୁଃ—କରିବାକୁ ଇଚ୍ଛୁକ, ଲୋକସଂଗ୍ରହଂ—ମନୁଷ୍ୟମାନଙ୍କର ଧର୍ମାଦି ରକ୍ଷା । ୨୫ ।

ଅନୁବାଦ ।

ହେ ଅର୍ଜୁନ ! ଅଜ୍ଞାନମାନେ କର୍ମଫଳରେ ଆସକ୍ତ ହୋଇ ଯେପରି କର୍ମ କରନ୍ତି, ଲୋକମାନଙ୍କ ଧର୍ମ ରକ୍ଷା କରିବାକୁ ଇଚ୍ଛୁକ ଜ୍ଞାନୀ ବ୍ୟକ୍ତି ସେହିପରି ଆସକ୍ତିରହିତ ହୋଇ କର୍ମ କରିବେ । ୨୫ ।

ବିଶଦବ୍ୟାଖ୍ୟା ।

କାଳେ ଅର୍ଜୁନ ମନେ କରନ୍ତେ, ଯେ ଶ୍ରୀ ଭଗବାନଙ୍କ ପକ୍ଷରେ ଅକର୍ତ୍ତା ବା ଅନାସକ୍ତ ହୋଇ କର୍ମ କରିବା ସମ୍ଭବ ହୋଇପାରେ, କାହିଁକନା ସେ ସର୍ବଶକ୍ତିମାନ୍, ମାତ୍ର ମୋହପରି କ୍ଷୁଦ୍ରବ୍ୟକ୍ତି ପକ୍ଷରେ ସେପରି କର୍ମ କରିବା ଅସମ୍ଭବ, ଏଥିପାଇଁ ଶ୍ରୀଭଗବାନ୍ ଅର୍ଜୁନଙ୍କୁ 'ଭାରତ' ଅର୍ଥାତ୍ ଜ୍ଞାନନିଷ୍ଠ ବୋଲି ସମ୍ବୋଧନ କରି ଏହା ଇଙ୍ଗିତ କଲେ, ଯେ ଅଜ୍ଞାନଲୋକ ଆସକ୍ତ ହୋଇ ଯେପରି କର୍ମ କରନ୍ତି ଜ୍ଞାନବ୍ୟକ୍ତି ଆସକ୍ତିରହିତ ହୋଇ

ସେହିପରି କର୍ମ କରିବେ । ତୁମ୍ଭେମାନେ ଜ୍ଞାନନିଷ୍ଠ, ତୁମ୍ଭ ପକ୍ଷରେ ଆସକ୍ତିରହିତ ହୋଇ କର୍ମ କରିବା ଅସମ୍ଭବ ନୁହେ, ଅତଏବ ତୁମ୍ଭେ ଆସକ୍ତି ରହିତ ହୋଇ କର୍ମ କର । ୨୫ ।

ଶ୍ଳୋକଃ ।

ନ ବୁଦ୍ଧିଭେଦଂ ଜନୟେଦଜ୍ଞାନାଂ କର୍ମସଙ୍ଗିନାଂ ।
ଯୋଜୟେତ୍ ସର୍ବକର୍ମାଣି, ବିଦ୍ୱାନ୍ ଯୁକ୍ତଃ ସମାଚରନ୍ । ୨୬ ।

ଅନ୍ୱୟଃ ।

ଅଜ୍ଞାନାଂ କର୍ମସଙ୍ଗିନାଂ ବୁଦ୍ଧିଭେଦଂ ନ ଜନୟେତ୍ (କିନ୍ତୁ) ଯୁକ୍ତଃ ବିଦ୍ୱାନ୍ ସର୍ବକର୍ମାଣି ସମାଚରନ୍ ଯୋଜୟେତ୍ । ୨୬ ।

ଟୀକା ।

ନନୁ କୃପୟା ତତ୍ତ୍ୱଜ୍ଞାନମେବୋପଦେଷ୍ଟୁଂ ଯୁକ୍ତଂ ନେତ୍ୟାହ । ନ ବୁଦ୍ଧିଭେଦମିତି । ଅଜ୍ଞାନାମତଏବ କର୍ମସଙ୍ଗିନାଂ କର୍ମାସକ୍ତାନାମକର୍ତ୍ରାତ୍ମୋପଦେଶେନ ବୁଦ୍ଧେର୍ଭେଦମନ୍ୟଥାତ୍ୱଂ ନ ଜନୟେତ୍, କର୍ମଣଃ ସକାଶାତ୍ ବୁଦ୍ଧିଚାଳନଂ ନ କୁର୍ଯ୍ୟାତ୍ ଅପି ତୁ ଯୋଜୟେତ୍ ସେବୟେତ୍ ଅଜ୍ଞାନ୍ କର୍ମାଣି କାରୟେଦିତ୍ୟର୍ଥଃ କଥଂ ଯୁକ୍ତୋଽବହିତୋଭୂତ୍ୱା ସ୍ୱୟମାଚରନ୍ ସନ୍ ବୁଦ୍ଧିଚାଳନେ କୃତେ ସତି କର୍ମସୁ ଶ୍ରଦ୍ଧାନିବୃତ୍ତେର୍ଜ୍ଞାନସ୍ୟ ଚାନୁତ୍ପତ୍ତେସ୍ତେଷାମୁଭୟଭ୍ରଂଶଃ ସ୍ୟାଦିତିଭାବଃ । ୨୬ ।

ପଦବ୍ୟାଖ୍ୟା ।

ନ—ନାହିଁ, ବୁଦ୍ଧିଭେଦଂ—ବୁଦ୍ଧିଭେଦକୁ, ଜନୟେତ୍—ଜନ୍ମାଇବ, ଅଜ୍ଞାନାଂ—ଅଜ୍ଞାନବ୍ୟକ୍ତିମାନଙ୍କର, କର୍ମସଙ୍ଗିନାଂ—ଫଳକାମନାରେ କର୍ମକାରୀ, ଯୋଜୟେତ୍—ନିଯୁକ୍ତ କରାଇବ, ସର୍ବକର୍ମାଣି—ଶାସ୍ତ୍ରବିହିତ ସକଳ କର୍ମମାନଙ୍କୁ, ବିଦ୍ୱାନ୍—ଜ୍ଞାନୀ, ଯୁକ୍ତଃ—ଯୋଗଯୁକ୍ତ (ସାବଧାନ) ହୋଇ, ସମାଚରନ୍—ଉତ୍ତମରୂପେ ଆଚରଣ କରି । ୨୬ ।

ଅନୁବାଦ ।

ଜ୍ଞାନୀମାନେ କର୍ମରେ ଆସକ୍ତ ମୂର୍ଖଲୋକମାନଙ୍କର (କର୍ମ ବିଷୟରେ) ମତଭେଦ ଜନ୍ମାଇବେ ନାହିଁ । ବରଂ ନିଜେ ଯୋଗଯୁକ୍ତ ହୋଇ ସକଳ କର୍ମର ଅନୁଷ୍ଠାନ କରି ସେମାନଙ୍କୁ (କର୍ମରେ) ପ୍ରବୃତ୍ତ କରାଇବେ । ୨୬ ।

ବିଶଦବ୍ୟାଖ୍ୟା ।

ଯାହେଲେ ଅର୍ଜ୍ଜୁନ ମନେ କରିବେ, ଯେ ଲୋକଶିକ୍ଷାପାଇଁ ନିଜେ କର୍ମ ନ କରି ସମସ୍ତଙ୍କୁ ତତ୍ତ୍ୱଜ୍ଞାନର ଉପଦେଶ ଦେଲେତ ଭଲ ହୁଅନ୍ତା ? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, କି ଯେଉଁମାନେ ଅଜ୍ଞ, ସୁତରାଂ କର୍ମର ଫଳକାମନାରେ ଆସକ୍ତ, ସେମାନଙ୍କୁ ତତ୍ତ୍ୱଜ୍ଞାନର ଉପଦେଶ ଦେଇ ଅର୍ଥାତ୍ ଆତ୍ମା ନିତ୍ୟ ଓ ସେ କିଛି କର୍ମ କରେ ନାହିଁ ବା କର୍ମର ଫଳଭୋଗ କରେ ନାହିଁ ଇତ୍ୟାଦି କହି, କର୍ମ ବିଷୟରେ ସେମାନଙ୍କର ମତଭେଦ ଜନ୍ମାଇବେ ନାହିଁ । କାହିଁକିନା ସେମାନଙ୍କର ଅନ୍ତଃକରଣ ଶୁଦ୍ଧି ହୋଇ ନ ଥିବାରୁ ଉକ୍ତ ଉପଦେଶରେ ତତ୍ତ୍ୱଜ୍ଞାନ ଲାଭ ହୁଏ ନାହିଁ, ବରଂ କର୍ମ ନ କରିବା ହେତୁ ପାପ ହୁଏ, ଯେହେତୁ ଧର୍ମଶାସ୍ତ୍ରର ବଚନ ଅଛି ଯେ—

"ଅଜ୍ଞସ୍ୟାର୍ଦ୍ଧପ୍ରବୁଦ୍ଧସ୍ୟ ସର୍ବଂ ବ୍ରହ୍ମେତି ଯୋବଦେତ୍ ।
ମହାନିରୟଜାଲେଷୁ ସ ତେନ ବିନିଯୋଜିତଃ ।"

ଅର୍ଥାତ୍ ଅଜ୍ଞାନୀ ବା ଅଳ୍ପ ଜ୍ଞାନବ୍ୟକ୍ତିଙ୍କୁ ଯେଉଁ ବ୍ୟକ୍ତି 'ଜଗତର ସମସ୍ତ ପଦାର୍ଥ ବ୍ରହ୍ମସ୍ୱରୂପ, ଅତଏବ କର୍ମ କରିବାର ଆବଶ୍ୟକ ନାହିଁ' ବୋଲି ଉପଦେଶ ଦିଅନ୍ତି, ସେହି ଉପଦେଶଦାତା ସେହି ଅଜ୍ଞାନୀ ବା ଅଳ୍ପଜ୍ଞାନବ୍ୟକ୍ତିଙ୍କୁ ମହାରୌରବ ନରକରେ ନିପାତିତ କରନ୍ତି । ଅତଏବ ବିଦ୍ୱାନ୍ ବ୍ୟକ୍ତି ଯୋଗଯୁକ୍ତ ହୋଇ ନିଜେ ସମସ୍ତ ଶାସ୍ତ୍ରୋକ୍ତ କର୍ମର ଅନୁଷ୍ଠାନ କରି ଅଜ୍ଞ ବ୍ୟକ୍ତିଙ୍କୁ କର୍ମରେ ପ୍ରବର୍ତ୍ତିତ କରାଇବେ । ୨୬ ।

ଶ୍ଳୋକଃ ।

* ପ୍ରକୃତେଃ କ୍ରିୟମାଣାନି, ଗୁଣୈଃ କର୍ମାଣି ସର୍ବଶଃ ।
ଅହଂକାରବିମୂଢ଼ାତ୍ମା, କର୍ତ୍ତାହମିତି ମନ୍ୟତେ । ୨୭ ।

ଅନ୍ୱୟଃ ।

ପ୍ରକୃତେଃ ଗୁଣୈଃ ସର୍ବଶଃ କର୍ମାଣି କ୍ରିୟମାଣାନି ( ଭବନ୍ତି ) ଅହଂକାର ବିମୂଢ଼ାତ୍ମା ଅହଂ କର୍ତ୍ତା ଇତି ମନ୍ୟତେ । । ୨୭ ।

ଟୀକା ।

ନନୁ ବିଦୁଷୋପି ଚେତ୍ କର୍ମ କର୍ତ୍ତବ୍ୟଂ ତର୍ହି ବିଦ୍ୱଦବିଦୁଷୋଃ କୋ ବିଶେଷ ଇତ୍ୟାଶଙ୍କ୍ୟୋଭୟୋର୍ବିଶେଷଂ ଦର୍ଶୟତି । ପ୍ରକୃତେରିତି ଦ୍ୱାଭ୍ୟାଂ । ପ୍ରକୃତେର୍ଗୁଣୈଃ ପ୍ରକୃତିକାର୍ଯ୍ୟୈରିନ୍ଦ୍ରିୟୈଃ ସର୍ବପ୍ରକାରେଣ କ୍ରିୟମାଣାନି କର୍ମାଣି, ତାନ୍ୟହମେବ କର୍ତ୍ତା କରୋମୀତି ମନ୍ୟତେ । ତତ୍ର ହେତୁଃ ଅହମିତି । ଅହଂକାରେଣେନ୍ଦ୍ରିୟାଦିଷ୍ୱାତ୍ମାଧ୍ୟାସେନ ବିମୂଢ଼ବୁଦ୍ଧିଃ ସନ୍ । ୨୭ ।

ପଦବ୍ୟାଖ୍ୟା ।

ପ୍ରକୃତେଃ—ମାୟାର, କ୍ରିୟମାଣାନି—ନିଷ୍ପାଦିତ, ଗୁଣୈଃ—ଗୁଣମାନଙ୍କ ଦ୍ୱାରା, କର୍ମାଣି—କର୍ମ ସବୁ, ସର୍ବଶଃ—ସର୍ବପ୍ରକାର, ଅହଂକାରବିମୂଢ଼ାତ୍ମା—ଯାହାର ବୁଦ୍ଧି ଅହଂକାର ଦ୍ୱାରା ବିଶେଷରେ ମୋହ ପ୍ରାପ୍ତ, କର୍ତ୍ତା—କାର୍ଯ୍ୟକାରୀ ବ୍ୟକ୍ତି, ଅହଂ—ଅମ୍ଭେ, ଇତି—ଏହା, ମନ୍ୟତେ—ମଣେ । ୨୭ ।

ଅନୁବାଦ ।

ମାୟାର ଗୁଣ ସ୍ୱରୂପ ଇନ୍ଦ୍ରିୟମାନଙ୍କଦ୍ୱାରା ସର୍ବପ୍ରକାର କର୍ମମାନ ସମ୍ପନ୍ନ ହୁଏ କିନ୍ତୁ ଅହଂକାର ବିମୂଢ଼ ବ୍ୟକ୍ତି 'ମୁଁ ସବୁ କର୍ମର କର୍ତ୍ତା ବୋଲି' ମନେ କରେ । ୨୭ ।

ବିଶଦବ୍ୟାଖ୍ୟା ।

'ଜ୍ଞାନମାନେ କର୍ମ ଅନୁଷ୍ଠାନ କଲେ ଜ୍ଞାନୀ ଓ ଅଜ୍ଞାନଙ୍କ ମଧ୍ୟରେ ଆଉ ପ୍ରଭେଦ ରହିଲା କେଉଁଠି ?' କାଳେ ଅର୍ଜୁନ ଏପରି ଆଶଙ୍କା କରିବେ, ତାହା ନିବାରଣ ପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, କି ମାୟାର ସତ୍ତ୍ୱ,ରଜଃ, ତମଃ ପ୍ରଭୃତି ଗୁଣଦ୍ୱାରା ଓ ମାୟାରୂପ ପ୍ରକୃତିର ବିକୃତି ଯେ ଦେହ, ମନ ଓ ଇନ୍ଦ୍ରିୟସମୂହ, ତାହାଦ୍ୱାରା ସକଳ କ୍ରିୟା ଅନୁଷ୍ଠିତ ହୁଏ । ଯେଉଁମାନେ ଅହଂକାର ବିମୂଢ଼ ଅର୍ଥାତ୍ ଦେହାଦିରେ ଯାହାଙ୍କର ଆତ୍ମବୁଦ୍ଧି ସେହିମାନେ ଆପଣାକୁ କର୍ମର କର୍ତ୍ତା ବୋଲି ମନେ କରନ୍ତି, କିନ୍ତୁ ବାସ୍ତବିକ ଦେଖିବାକୁ ଗଲେ ପ୍ରକୃତିର ଗୁଣ ଭିନ୍ନ କ୍ରିୟା ଅନୁଷ୍ଠାନ ଆଉ କେହି କରେ ନାହିଁ । ଆତ୍ମା ତ କ୍ରିୟାଶୂନ୍ୟ ସେ ଆଉ କର୍ମର କର୍ତ୍ତା ହେବ କିପରି ? ।

Digitized by PPRACHIN, SOA

ଫଳକଥା ଏହି କି ଜ୍ଞାନିମାନେ କର୍ମ କରି ଆପଣାକୁ କର୍ତ୍ତା ବୋଲି ମଣନ୍ତି ନାହିଁ । ଅଜ୍ଞାନିମାନେ ଆପଣାକୁ କର୍ମର କର୍ତ୍ତା ବୋଲି ମଣନ୍ତି । ଅତଏବ ଏ ଦୁହିଙ୍କ ମଧ୍ୟରେ ଯଥେଷ୍ଟ ପ୍ରଭେଦ ରହିଲା । ୨୭ ।

ଶ୍ଳୋକଃ ।

* ତତ୍ତ୍ୱବିତ୍ତୁ ମହାବାହୋ, ଗୁଣକର୍ମବିଭାଗୟୋଃ ।
ଗୁଣାଗୁଣେଷୁ ବର୍ତ୍ତନ୍ତ, ଇତି ମତ୍ୱା ନ ସଜ୍ଜତେ । ୨୮ ।

ଅନ୍ୱୟଃ ।

ହେ ମହାବାହୋ ! ତୁ ଗୁଣକର୍ମବିଭାଗୟୋଃ ତତ୍ତ୍ୱବିତ୍, ଗୁଣାଃ ଗୁଣେଷୁ ବର୍ତ୍ତନ୍ତେ ଇତି ମତ୍ୱା ନ ସଜ୍ଜତେ । ୨୮ ।

ଟୀକା ।

ବିଦ୍ୱାଂସ୍ତୁ ତଥା ନ ମନ୍ୟତ ଇତ୍ୟାହ, ତତ୍ତ୍ୱବିଦିତି । ନାହଂ ଗୁଣାତ୍ମକ ଇତି ଗୁଣେଭ୍ୟଃ ଆତ୍ମନୋ ବିଭାଗଃ, ନ ମେ କର୍ମାଣୀତି କର୍ମଭ୍ୟୋଽପ୍ୟାତ୍ମନୋ ବିଭାଗଃ, ତୟୋର୍ଗୁଣକର୍ମବିଭାଗୟୋର୍ଯସ୍ତତ୍ତ୍ୱଂ ବେତ୍ତି ସ ତୁ ନ ସଜ୍ଜତେ କର୍ତ୍ତୃତ୍ୱାଭିନିବେଶଂ ନ କରୋତି ତତ୍ର ହେତୁଃ, ଗୁଣା ଇତି । ଗୁଣା ଇନ୍ଦ୍ରିୟାଣି, ଗୁଣେଷୁ ବିଷୟେଷୁ ବର୍ତ୍ତନ୍ତେ ନାହମିତି ମତ୍ୱା । ୨୮ ।

ପଦବ୍ୟାଖ୍ୟା ।

ତତ୍ତ୍ୱବିତ୍—ତତ୍ତ୍ୱଜ୍ଞ, ତୁ—ପୁଣି, ମହାବାହୋ—ହେ ଦୀର୍ଘବାହୋ !, ଗୁଣକର୍ମବିଭାଗୟୋଃ—ଗୁଣ ଓ କର୍ମର ବିଭାଗର, ଗୁଣାଃ—ଇନ୍ଦ୍ରିୟମାନେ, ଗୁଣେଷୁ—ବିଷୟମାନଙ୍କରେ, ବର୍ତ୍ତନ୍ତେ—ରହନ୍ତି, ଇତି—ଏହା, ମତ୍ୱା—ମଣି କରି, ନ ସଜ୍ଜତେ—ଆବଦ୍ଧ ରହନ୍ତି ନାହିଁ । ୨୮ ।

ଅନୁବାଦ ।

ହେ ମହାବାହୋ ! ଗୁଣ କର୍ମ ବିଭାଗର ତତ୍ତ୍ୱଜ୍ଞାନୀ ପୁରୁଷ 'ଇନ୍ଦ୍ରିୟମାନଙ୍କ ଦ୍ୱାରା ବିଷୟମାନ ସମ୍ପାଦିତ ହେଉଅଛି' ଏହା ଜାଣି ଆପଣାକୁ କର୍ତ୍ତା ବୋଲି ଅଭିମାନ କରନ୍ତି ନାହିଁ । ୨୮ ।

ବିଶଦବ୍ୟାଖ୍ୟା ।

'ଅହଂ' ଏହି ଅଭିମାନର ବିଷୟ ସ୍ୱରୂପ ଯେ ଦେହ, ଓ ଇନ୍ଦ୍ରିୟ ଏବଂ ଅହଂକାର, ତାକୁ ଗୁଣ ବୋଲାଯାଏ । ସେହିପରି 'ମମ' ଏହି ଅଭିମାନର ବିଷୟ ସ୍ୱରୂପ ଯେ ଦେହ, ଇନ୍ଦ୍ରିୟ ଓ ଅନ୍ତଃକରଣର ବୃତ୍ତି, ତାକୁ କର୍ମ ବୋଲାଯାଏ । ଅଥବା ମାୟାର ଗୁଣ = ଇନ୍ଦ୍ରିୟ, ଓ କର୍ମ = ଇନ୍ଦ୍ରିୟଦ୍ୱାରା ଅନୁଷ୍ଠିତ କାର୍ଯ୍ୟ । ଆତ୍ମା ଏହି ଗୁଣ ଓ କର୍ମରୁ ପୃଥକ୍ । ଗୁଣ ଓ କର୍ମ ଏ ଦୁଇ କଥାରୁ ଆତ୍ମାର ବିଭାଗ ଅର୍ଥାତ୍ ପ୍ରଭେଦକୁ ଯେଉଁମାନେ ଜାଣନ୍ତି ଅର୍ଥାତ୍ ଦେହ ଓ ଇନ୍ଦ୍ରିୟ ଏବଂ ତାହାଦ୍ୱାରା ଅନୁଷ୍ଠିତ କାର୍ଯ୍ୟ, ଆତ୍ମା ନୁହେ ବୋଲି ଯେଉଁମାନେ ଜାଣନ୍ତି, ସେମାନେ ଆପଣାକୁ କୌଣସି କର୍ମର କର୍ତ୍ତା ବୋଲି ଅଭିମାନ କରନ୍ତି ନାହିଁ । କାହିଁକିନା ସେମାନେ ଜାଣନ୍ତି, ଯେ ବିଷୟ ଜ୍ଞାନ ଓ କର୍ମ ଏ ସବୁ କେବଳ ଇନ୍ଦ୍ରିୟମାନଙ୍କ ଦ୍ୱାରା ସମ୍ପନ୍ନ ହେଉଅଛି । ଆତ୍ମା ନିଷ୍କ୍ରିୟ ଓ ନିର୍ଲିପ୍ତ ଅର୍ଥାତ୍ ଆତ୍ମା କୌଣସି କର୍ମ କରେ ନାହିଁ ଅଥବା କର୍ମର କୌଣସି ଫଳ ଅର୍ଥାତ୍ ସୁଖ ବା ଦୁଃଖ ଭୋଗ କରେ ନାହିଁ ।

Digitized by PPRACHIN, SOA

ଏ ଶ୍ଳୋକରେ 'ମହାବାହୋ' ! ପଦଦ୍ୱାରା ଅର୍ଜୁନଙ୍କୁ ସମ୍ବୋଧନ କରିବାରେ ଶ୍ରୀଭଗବାନ୍ 'ସାମୁଦ୍ରିକ' ଶାସ୍ତ୍ର ଅନୁସାରେ ସଙ୍କେତ କଲେ, କି ତୁମ୍ଭେ ଆଜାନୁଲମ୍ବିତ ବାହୁ ଅଟ । ତୁମ୍ଭଠାରେ ମହାପୁରୁଷର ଲକ୍ଷଣ ଅଛି ଅର୍ଥାତ୍ ତୁମ୍ଭେ ତତ୍ତ୍ୱଜ୍ଞାନର ଉପଯୁକ୍ତ ପାତ୍ର ଅଟ ।

। ୨୮ ।

ଶ୍ଳୋକଃ ।

* ପ୍ରକୃତେର୍ଗୁଣସମ୍ମୂଢ଼ାଃ, ସଜ୍ଜନ୍ତେ ଗୁଣକର୍ମସୁ ।

ତାନକୃତ୍ସ୍ନବିଦୋମନ୍ଦାନ୍ କୃତ୍ସ୍ନବିନ୍ନ ବିଚାଳୟେତ୍ । ୨୯ ।

ଅନ୍ୱୟଃ ।

ପ୍ରକୃତେଃ ଗୁଣସମ୍ମୂଢ଼ାଃ ଗୁଣକର୍ମସୁ ସଜ୍ଜନ୍ତେ, ଅକୃତ୍ସ୍ନବିଦଃ ତାନ୍ ମନ୍ଦାନ୍ କୃତ୍ସ୍ନବିତ୍ ନ ବିଚାଳୟେତ୍ । ୨୯ ।

ଟୀକା ।

ନ ବୁଦ୍ଧିଭେଦମିତ୍ୟୁପସଂହରତି । ପ୍ରକୃତେରିତି । ଯେଃ ପ୍ରକୃତେର୍ଗୁଣୈଃ ସତ୍ତ୍ୱାଦିଭିଃ ସମ୍ମୂଢ଼ାଃ ସନ୍ତୋଗୁଣେଷ୍ୱିନ୍ଦ୍ରିୟେଷୁ ତତ୍କର୍ମସୁ ଚ ସଜ୍ଜନ୍ତେ ତାନକୃତ୍ସ୍ନବିଦୋ ମନ୍ଦମତୀନ୍ କୃତ୍ସ୍ନବିତ୍ ସର୍ବଜ୍ଞୋ ନ ବିଚାଳୟେତ୍ । ୨୯ ।

ପଦବ୍ୟାଖ୍ୟା ।

ପ୍ରକୃତେଃ—ମାୟାର, ଗୁଣସମ୍ମୂଢ଼ାଃ—ସତ୍ତ୍ୱ, ରଜ ଓ ତମ ଗୁଣଦ୍ୱାରା ମୋହପ୍ରାପ୍ତ, ସଜ୍ଜନ୍ତେ—ପ୍ରବୃତ୍ତ ହୁଅନ୍ତି, ଗୁଣକର୍ମସୁ—ଇନ୍ଦ୍ରିୟଗଣ ଓ ସେମାନଙ୍କ କାର୍ଯ୍ୟରେ, ତାନ୍—ସେହି, ଅକୃତ୍ସ୍ନବିଦଃ—ଅଳ୍ପଜ୍ଞାନୀ, ମନ୍ଦାନ୍—ମୂର୍ଖମାନଙ୍କୁ, କୃତ୍ସ୍ନବିତ୍—ସର୍ବଜ୍ଞ ବା ଆତ୍ମଜ୍ଞାନୀ, ନ—ନାହିଁ, ବିଚାଳୟେତ୍—ବିଚଳିତ କରିବେ । ୨୯ ।

ଅନୁବାଦ ।

ପ୍ରକୃତିର ଗୁଣଦ୍ୱାରା ମୁଗ୍ଧ ହୋଇ ଯେଉଁମାନେ ଇନ୍ଦ୍ରିୟ ଓ ବିଷୟରେ ଆସକ୍ତ, ସେହି ଅଳ୍ପଦର୍ଶୀ ମୂର୍ଖମାନଙ୍କୁ ତତ୍ତ୍ୱଜ୍ଞାନୀ ବ୍ୟକ୍ତି ବିଚଳିତ କରିବେ ନାହିଁ । ୨୯ ।

ବିଶଦବ୍ୟାଖ୍ୟା ।

ଯେ ପର୍ଯ୍ୟନ୍ତ ଅନ୍ତଃକରଣଶୁଦ୍ଧି ହୋଇ ନାହିଁ ସେ ପର୍ଯ୍ୟନ୍ତ ଜ୍ଞାନ ଉଦୟ ହେବ ନାହିଁ । ଅନ୍ତଃକରଣ ଶୁଦ୍ଧ ହେଲେ ଜ୍ଞାନ ଆପଣା ସ୍ୱୟଂ ଜନ୍ମିବ । ଜ୍ଞାନ ଜନ୍ମି ନ ଥିବାଯାଏ ପୁରୁଷ ଇନ୍ଦ୍ରିୟ ଓ ଇନ୍ଦ୍ରିୟମାନଙ୍କର ଭୋଗ୍ୟ ବିଷୟମାନଙ୍କରେ ଆସକ୍ତ ଥାଏ । ତତ୍ତ୍ୱଜ୍ଞାନୀ ବ୍ୟକ୍ତିଙ୍କର ସେ ଅବସ୍ଥାରେ ତାଙ୍କର ମନକୁ କର୍ମକାଣ୍ଡରୁ ବିଚଳିତ କରିବା ଉଚିତ ନୁହେ । କାହିଁକିନା କର୍ମକାଣ୍ଡରେ ସେମାନଙ୍କର ବିଶ୍ୱାସ ଥାଏ ଓ କର୍ମଫଳ ପାଇବାର କାମନା ଥାଏ ; କର୍ମମାର୍ଗରୁ ସେମାନଙ୍କର ମନ ବିଚଳିତ ହେଲେ କର୍ମଫଳ ମିଳିବ ନାହିଁ ଓ ଅନ୍ତଃକରଣ ଶୁଦ୍ଧି ହୋଇ ନ ଥିବାରୁ ତତ୍ତ୍ୱଜ୍ଞାନଲାଭ ମଧ୍ୟ ହେବ ନାହିଁ । ୨୯ ।

ଶ୍ଳୋକଃ ।

ମୟି ସର୍ବାଣି କର୍ମାଣି, ସନ୍ନ୍ୟସ୍ୟାଧ୍ୟାତ୍ମଚେତସା ।

ନିରାଶୀର୍ନିର୍ମମୋ ଭୂତ୍ୱା, ଯୁଧ୍ୟସ୍ୱ ବିଗତଜ୍ୱରଃ । ୩୦ ।

Digitized by PPRACHIN, SOA

### ଅନ୍ୱୟଃ ।

ଅଧ୍ୟାତ୍ମଚେତସା ମୟି ସର୍ବାଣି କର୍ମାଣି ସନ୍ନ୍ୟସ୍ୟ ନିରାଶୀଃ ନିର୍ମମଃ ଭୂତ୍ୱା ବିଗତଜ୍ୱରଃ ( ସନ୍ ) ଯୁଧ୍ୟସ୍ୱ । ୩୦ ।

### ଟୀକା ।

ତଦେବ ତତ୍ତ୍ୱବିଦାପି କର୍ମ କର୍ତ୍ତବ୍ୟଂ ଅଜ୍ଞସ୍ତୁ ତତ୍ତ୍ୱବିଦୋଽପି କର୍ମୈବ କୁର୍ବୀତ୍ୟାହ । ମୟୀତି । ସର୍ବାଣି କର୍ମାଣି ମୟି ସନ୍ନ୍ୟସ୍ୟ ସମର୍ପ୍ୟାଧ୍ୟାତ୍ମଚେତସାଽନ୍ତର୍ଯାମ୍ୟଧୀନୋଽହଂ କର୍ମ କରୋମୀତି ଦୃଷ୍ଟ୍ୟା ନିରାଶୀଃ ନିଷ୍କାମୋଽତଏବ ନିଷ୍ଫଳସାଧନଂ ମଦର୍ଥମିଦଂ କର୍ମେତ୍ୟେବ ମମତାଶୂନ୍ୟଶ୍ଚ ଭୂତ୍ୱା ବିଗତଜ୍ୱରସ୍ତ୍ୟକ୍ତଶୋକଶ୍ଚ ଭୂତ୍ୱା ଯୁଧ୍ୟସ୍ୱ । ୩୦ ।

### ପଦବ୍ୟାଖ୍ୟା ।

ମୟି—ଆମ୍ଭଠାରେ, ସର୍ବାଣି କର୍ମାଣି—ଲୌକିକ ବୈଦିକ ଓ ପାରମାର୍ଥିକାଦି ସମସ୍ତ କର୍ମକୁ, ସନ୍ନ୍ୟସ୍ୟ—ଅର୍ପଣ କରି, ଅଧ୍ୟାତ୍ମଚେତସା—ଅଧ୍ୟାତ୍ମ ଚିତ୍ତରେ, ନିରାଶୀଃ—ଫଳକାମନା ରହିତ, ନିର୍ମମଃ—ଅଭିମାନ ରହିତ, ଭୂତ୍ୱା—ହୋଇ, ଯୁଧ୍ୟସ୍ୱ—ଯୁଦ୍ଧ କର, ବିଗତଜ୍ୱରଃ—ଶୋକ ତ୍ୟାଗ କରି । ୩୦ ।

### ଅନୁବାଦ ।

ତୁମ୍ଭେ ଅଧ୍ୟାତ୍ମ ଜ୍ଞାନରେ ସମସ୍ତ କର୍ମ ଆମ୍ଭଠାରେ ଅର୍ପଣ କରି କାମନା, ମମତା ଓ ଶୋକ ରହିତ ହୋଇ ଯୁଦ୍ଧ କର । ୩୦ ।

### ବିଷଦବ୍ୟାଖ୍ୟା ।

ଆତ୍ମଜ୍ଞାନ ଉପଦେଶପୂର୍ଣ୍ଣ ବେଦାନ୍ତ ଉପନିଷଦାଦି ଶାସ୍ତ୍ରକୁ ଅଧ୍ୟାତ୍ମ ଶାସ୍ତ୍ର ବୋଲି-ଯାଏ । ସେହି ଶାସ୍ତ୍ରର ଅର୍ଥ ଜାଣିବାକୁ ଯେଉଁ ଚିତ୍ତ ପ୍ରସ୍ତୁତ ଥାଏ ତାକୁ ଅଧ୍ୟାତ୍ମଚେତଃ ବୋଲିଯାଏ । ତୁମ୍ଭେ ଅଧ୍ୟାତ୍ମ ଚିତ୍ତରେ ଅର୍ଥାତ୍ ବେଦାନ୍ତ ବା ଉପନିଷଦ ଆଦିଗ୍ରନ୍ଥର ମର୍ମ ଅନୁସାରେ ଆମ୍ଭଠାରେ ସମସ୍ତ କର୍ମ ଅର୍ପଣ କର । ଫଳତଃ 'ମୁଁ କର୍ତ୍ତା ନୁହେ—ସର୍ବାନ୍ତର୍ଯାମୀ ଶ୍ରୀଭଗବାନଙ୍କ ଉଦ୍ଦେଶ୍ୟରେ ଭୃତ୍ୟପରି କର୍ମ କରୁଅଛି' ଏହିପରି ଭାବ ମୋହଠାରେ ସମସ୍ତ କର୍ମ ଅର୍ପଣ କର । ଫଳକାମନା ରହିତ ହୁଅ । 'ଏ କର୍ମ ମୋହର ପାଇଁ ଅନୁଷ୍ଠିତ ହେଲା' ଏପ୍ରକାର ମମତା ତ୍ୟାଗ କର । ଏବଂ 'ଭାଇ ବନ୍ଧୁ କୁଟୁମ୍ବାଦିଙ୍କୁ କିପରି ମାରିବି' ଏପ୍ରକାର ଶୋକ ନ କରି ଯୁଦ୍ଧ କର । କାହିଁକିନା ଯେଉଁମାନେ ପ୍ରକୃତ ତତ୍ତ୍ୱଜ୍ଞାନୀ ସେମାନଙ୍କର ମଧ୍ୟ ନିଷ୍କାମଭାବରେ କର୍ମ କରିବା ଉଚିତ, ତୁମ୍ଭେତ ସମ୍ପୂର୍ଣ୍ଣରୂପେ ତତ୍ତ୍ୱଜ୍ଞାନ ଲାଭ କରି ନାହିଁ, ତେବେ ଆଉ କର୍ମତ୍ୟାଗ କରିବ କିପରି ? ଅତଏବ ଯୁଦ୍ଧ କର । ୩୦ ।

### ଶ୍ଳୋକଃ ।

* ଯେ ମେ ମତମିଦଂ ନିତ୍ୟ, ମନୁତିଷ୍ଠନ୍ତି ମାନବାଃ ।
ଶ୍ରଦ୍ଧାବନ୍ତୋଽନସୂୟନ୍ତୋ, ମୁଚ୍ୟନ୍ତେ ତେଽପି କର୍ମଭିଃ । ୩୧ ।

### ଅନ୍ୱୟଃ ।

ଶ୍ରଦ୍ଧାବନ୍ତଃ ଅନସୂୟନ୍ତଃ ଯେ ମାନବାଃ ମେ ଇଦଂ ମତଂ ନିତ୍ୟଂ ଅନୁତିଷ୍ଠନ୍ତି ତେ ଅପି କର୍ମଭିଃ ମୁଚ୍ୟନ୍ତେ । ୩୧ ।

### ଟୀକା ।

ଏବଂ କର୍ମାନୁଷ୍ଠାନେ ଗୁଣମାହ, ଯେ ମେ ଇତି । ମଦ୍ୱାକ୍ୟେ ଶ୍ରଦ୍ଧାବନ୍ତୋଽନସୂୟନ୍ତୋ ଦୁଃଖାତ୍ମକେ କର୍ମଣି ପ୍ରବ

ର୍ପ୍ୟତୀତ ଦୋଷଦୃଷ୍ଟିମକୁର୍ବନ୍ତସ୍ତୁ ଯେ ମଦୀୟମିଦଂ ମତମନୁତିଷ୍ଠନ୍ତି ତେଽପି ଶନୈଃ କର୍ମ କୁର୍ବାଣାଃ ସମ୍ୟକ୍ ଜ୍ଞାନବନ୍ତଃ କର୍ମଭିର୍ମୁଚ୍ୟନ୍ତେ । ୩୧ ।

### ପଦବ୍ୟାଖ୍ୟା ।

ଯେ—ଯେଉଁ  ମେ—ଆମ୍ଭର, ମତଂ—ମତକୁ, ଇଦଂ—ଏହି, ନିତ୍ୟ—ପ୍ରତିଦିନ, ଅନୁତିଷ୍ଠନ୍ତି—ଅନୁଷ୍ଠାନ କରନ୍ତି; ମାନବାଃ—ମନୁଷ୍ୟମାନେ, ଶ୍ରଦ୍ଧାବନ୍ତଃ—ଶାସ୍ତ୍ର ଓ ଅଗ୍ରଜଙ୍କ ଉପଦେଶରେ ଶ୍ରଦ୍ଧାଯୁକ୍ତ, ଅନସୂୟନ୍ତଃ—ଦୋଷ ଦୃଷ୍ଟିରେ ନ ଦେଖି, ମୁଚ୍ୟନ୍ତେ—ମୁକ୍ତ ହୁଅନ୍ତି, ତେ—ସେମାନେ, ଅପି—ମଧ୍ୟ, କର୍ମଭିଃ—କର୍ମରୁ । ୩୧ ।

### ଅନୁବାଦ ।

ଯେଉଁ ମନୁଷ୍ୟମାନେ ଆମ୍ଭର ଏହି ମତକୁ ଦୋଷଯୁକ୍ତ ନ ଭାବି ଶ୍ରଦ୍ଧାରେ ସର୍ବଦା ଏହାର ଅନୁଷ୍ଠାନ କରନ୍ତି, ସେମାନେ ମଧ୍ୟ ସମସ୍ତ କର୍ମରୁ ମୁକ୍ତ ହୁଅନ୍ତି । ୩୧ ।

### ବିଶଦବ୍ୟାଖ୍ୟା ।

ଈଶ୍ୱରଙ୍କଠାରେ ଫଳ ଅର୍ପଣ କରି ବେଦବିହିତ ଶୁଭକର୍ମର ଅନୁଷ୍ଠାନ କରିବ, ଏହା ଆମ୍ଭର ମତ । ଶ୍ରଦ୍ଧାରେ ଯେଉଁମାନେ ଏପରି କର୍ମର ଅନୁଷ୍ଠାନ କରନ୍ତି ସେମାନେ କ୍ରମେ୨ ନିର୍ମଳ ଚିତ୍ତ ହୋଇ କର୍ମବନ୍ଧନରୁ ମୁକ୍ତି ଲାଭ କରନ୍ତି । ଶ୍ରୁତିରେ ମଧ୍ୟ ପ୍ରମାଣ ଅଛି, ଯେ—

"ତସ୍ୟ ପୁତ୍ରାଦାୟମୁପଯାନ୍ତି ସୁହୃଦଃ ସାଧୁକୃତ୍ୟଂ ଦ୍ୱିଷନ୍ତଃ ପାପକୃତ୍ୟଂ" ।

ଅର୍ଥାତ୍ ଜ୍ଞାନି ବ୍ୟକ୍ତିର ଧନକୁ ପୁତ୍ର ଓ ଶିଷ୍ୟମାନେ, ସତ୍ କର୍ମର ଫଳକୁ ସୁହୃଦମାନେ ଏବଂ ମନ୍ଦକର୍ମର ଫଳକୁ ଶତ୍ରୁମାନେ ପ୍ରାପ୍ତ ହୁଅନ୍ତି । ଫଳ କଥା ଏହି କି ଜ୍ଞାନିବ୍ୟକ୍ତି କର୍ମ କଲେ ମଧ୍ୟ ଫଳରୂପ ବନ୍ଧନରେ ପଡନ୍ତି ନାହିଁ । ୩୧ ।

### ଶ୍ଳୋକଃ ।

* ଯେ ତ୍ୱେତଦଭ୍ୟସୂୟନ୍ତୋ, ନାନୁତିଷ୍ଠନ୍ତି ମେ ମତଂ ।
ସର୍ବଜ୍ଞାନବିମୂଢାଂସ୍ତାନ୍, ବିଦ୍ଧି ନଷ୍ଟାନଚେତସଃ । ୩୨ ।

### ଅନ୍ୱୟଃ ।

ଯେ ତୁ ଏତତ୍ ମେ ମତଂ ଅଭ୍ୟସୂୟନ୍ତଃ ନ ଅନୁତିଷ୍ଠନ୍ତି, ସର୍ବଜ୍ଞାନବିମୂଢାନ୍ ତାନ୍ ଅଚେତସଃ ନଷ୍ଟାନ୍ ବିଦ୍ଧି । ୩୨ ।

### ଟୀକା ।

ବିପକ୍ଷେ ଦୋଷମାହ, ଯେ ତ୍ୱେତଦିତି । ଯେ ତୁ ନାନୁତିଷ୍ଠନ୍ତି ତାନ୍ ଅଚେତସଃ ବିବେକଶୂନ୍ୟାନ୍ ଅତଏବ ସର୍ବସ୍ମିନ୍ କର୍ମଣି ବ୍ରହ୍ମବିଷୟେ ଚ ଯତ୍ ଜ୍ଞାନଂ, ତତ୍ର ବିମୂଢାନ୍ନଷ୍ଟାନ୍ ବିଦ୍ଧି । ୩୨ ।

### ପଦବ୍ୟାଖ୍ୟା ।

ଯେ—ଯେଉଁମାନେ, ତୁ—କିନ୍ତୁ, ଏତତ୍—ଏହି, ଅଭ୍ୟସୂୟନ୍ତଃ—ନିନ୍ଦା କରି, ନ ଅନୁତିଷ୍ଠନ୍ତି—ଅନୁଷ୍ଠାନ ନ କରନ୍ତି, ମେ—ଆମ୍ଭର, ମତଂ ମତକୁ, ସର୍ବଜ୍ଞାନବିମୂଢାନ୍—ସମସ୍ତ କର୍ମ ଓ ବ୍ରହ୍ମଜ୍ଞାନ ବିଷୟରେ ଅଯୋଗ୍ୟ, ତାନ୍—ସେମାନଙ୍କୁ, ବିଦ୍ଧି—ଜାଣ, ନଷ୍ଟାନ୍—ପୁରୁଷାର୍ଥ ଭ୍ରଷ୍ଟ, ଅଚେତସଃ—ବିବେକଶୂନ୍ୟ । ୩୨ ।

### ଅନୁବାଦ ।

କିନ୍ତୁ ଯେଉଁମାନେ ଆମ୍ଭର ଏହି ମତକୁ ନିନ୍ଦା କରି ଅନୁଷ୍ଠାନ ନ କରନ୍ତି, ସେମାନଙ୍କୁ ସମସ୍ତ ଜ୍ଞାନ ବିଷୟରେ ଅଯୋଗ୍ୟ, ଅବିବେକ ଏବଂ ପୁରୁଷାର୍ଥ ଭ୍ରଷ୍ଟ ବୋଲି ଜାଣ । ୩୨ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଈର୍ଷାରହିତ ହୋଇ ଶ୍ରଦ୍ଧା, ଭକ୍ତି ଓ ବିଶ୍ୱାସ ସହିତରେ ଏହି ମତର ଅନୁଷ୍ଠାନ କରିବା (ନିଷ୍କାମଭାବରେ ଈଶ୍ୱରଙ୍କଠାରେ ଫଳ ଅର୍ପଣ କରି କର୍ମ କରିବା) ସମସ୍ତଙ୍କର ଉଚିତ । ମାତ୍ର ଯେଉଁମାନେ ଈର୍ଷା ହେତୁରୁ ଏପରି ଭାବରେ କର୍ମାନୁଷ୍ଠାନ ନ କରନ୍ତି ସେହି ବିବେକଶୂନ୍ୟ ବ୍ୟକ୍ତିମାନେ କର୍ମମାର୍ଗର କି ଜ୍ଞାନମାର୍ଗର ଅଧିକାରୀ ନ ହୋଇ ପୁରୁଷାର୍ଥ ଭ୍ରଷ୍ଟ ହୁଅନ୍ତି ଅର୍ଥାତ୍ ଧର୍ମ, ଅର୍ଥ, କାମ ବା ମୋକ୍ଷ କିଛିହେଁ ଲାଭ କରି ପାରନ୍ତି ନାହିଁ । ୩୨ ।

ଶ୍ଳୋକଃ ।

ସଦୃଶଂ ଚେଷ୍ଟତେ ସ୍ୱସ୍ୟାଃ, ପ୍ରକୃତେର୍ଜ୍ଞାନବାନପି ।
ପ୍ରକୃତିଂ ଯାନ୍ତି ଭୂତାନି, ନିଗ୍ରହଃ କିଂ କରିଷ୍ୟତି । ୩୩ ।

ଅନ୍ୱୟଃ ।

ଜ୍ଞାନବାନ୍ (ପୁରୁଷଃ) ଅପି ସ୍ୱସ୍ୟାଃ ପ୍ରକୃତେଃ ସଦୃଶଂ ଚେଷ୍ଟତେ, ଭୂତାନି ପ୍ରକୃତିଂ ଯାନ୍ତି, ନିଗ୍ରହଃ କିଂ କରିଷ୍ୟତି ? । ୩୩ ।

ଟୀକା ।

ନନୁ ତର୍ହି ମହାଫଲତ୍ୱାଦିନ୍ଦ୍ରିୟାଣି ନିଗୃହ୍ୟ ନିଷ୍କାମାଃ ସନ୍ତଃ ସର୍ବେଽପି ସ୍ୱଧର୍ମମେବ କିଂ ନାନୁତିଷ୍ଠନ୍ତି ତତ୍ରାହ ସଦୃଶମିତି । ପ୍ରକୃତିଃ ପ୍ରାଚୀନକର୍ମସଂସ୍କାରାଧୀନଃ ସ୍ୱଭାବଃ ସ୍ୱସ୍ୟାଃ ସ୍ୱକୀୟାୟାଃ ପ୍ରକୃତେଃ ସ୍ୱଭାବସ୍ୟ ସଦୃଶମନୁରୂପମେବ ଗୁଣଦୋଷଂ ଜ୍ଞାନବାନପି ଚେଷ୍ଟତେ କିଂ ପୁନର୍ବକ୍ତବ୍ୟମଜ୍ଞଶ୍ଚେଷ୍ଟତ ଇତି, ଯସ୍ମାଦ୍ଭୂତାନି ସର୍ବେଽପି ପ୍ରାଣିନଃ ପ୍ରକୃତିଂ ଯାନ୍ତି ଅନୁବର୍ତ୍ତନ୍ତେ ଏବଞ୍ଚ ସତୀନ୍ଦ୍ରିୟନିଗ୍ରହଃ କିଂ କରିଷ୍ୟତି ପ୍ରକୃତେର୍ବଲୀୟସ୍ତ୍ୱାଦିତ୍ୟର୍ଥଃ । ୩୩ ।

ପଦବ୍ୟାଖ୍ୟା ।

ସଦୃଶଂ—ଅନୁରୂପ, ଚେଷ୍ଟତେ—ଚେଷ୍ଟା କରନ୍ତି, ସ୍ୱସ୍ୟାଃ—ସ୍ୱକୀୟ, ପ୍ରକୃତେଃ—ସ୍ୱଭାବର, ଜ୍ଞାନବାନ୍—ଜ୍ଞାନବ୍ୟକ୍ତି, ଅପି—ମଧ୍ୟ, ପ୍ରକୃତିଂ—ସ୍ୱଭାବକୁ, ଯାନ୍ତି—ପ୍ରାପ୍ତ ହୁଅନ୍ତି, ଭୂତାନି—ପ୍ରାଣିମାନେ, ନିଗ୍ରହଃ—ଇନ୍ଦ୍ରିୟମାନଙ୍କର ଅବରୋଧ, କିଂ କରିଷ୍ୟତି—କଣ କରିବ । ୩୩ ।

ଅନୁବାଦ ।

ଜ୍ଞାନବ୍ୟକ୍ତି ମଧ୍ୟ ସ୍ୱୀୟ ସ୍ୱଭାବର ଅନୁରୂପ ଚେଷ୍ଟା କରନ୍ତି । ପ୍ରାଣିମାତ୍ରହିଁ ସ୍ୱଭାବର ଅନୁବର୍ତ୍ତୀ (ଅତଏବ) ଇନ୍ଦ୍ରିୟନିଗ୍ରହ କଣ କରି ପାରେ ? । ୩୩ ।

ବିଶଦବ୍ୟାଖ୍ୟା ।

ଯଦି ଇନ୍ଦ୍ରିୟ ସଂଯମ କରି ନିଷ୍କାମଭାବରେ କର୍ମ କଲେ ମହାଫଳ ପ୍ରାପ୍ତି ହୁଏ, ତେବେ ସମସ୍ତେ କାହିଁକି ସେହିପରି କର୍ମ ଆଚରଣ କରୁ ନାହାନ୍ତି ? ଅର୍ଜ୍ଜୁନଙ୍କର ଏପରି ଆଶଙ୍କା ନିବାରଣପାଇଁ ଶ୍ରୀଭଗବାନ୍ କହିଲେ;—ଯେପରି ରାଜବିଧି ଲଙ୍ଘନ କଲେ ରାଜାଜ୍ଞାରେ ଦଣ୍ଡିତ ହେବାକୁ ହୁଏ ଏକଥା ସମସ୍ତେ ଜାଣିଲେ ସୁଦ୍ଧା ଲୋକେ ବିଧି ଲଙ୍ଘନ କରନ୍ତି, ସେହିପରି ଆମ୍ଭ କଥା ଅନୁସାରେ ଚାଲିଲେ ମହାଫଳ ଲାଭ ହେବ ଓ ତାହା ନ କଲେ ଦଣ୍ଡ ଭୋଗ କରିବାକୁ ହେବ, ଏକଥା ଜାଣିଲେ ମଧ୍ୟ ଲୋକମାନେ ଆପଣାର ପ୍ରକୃତି ଅନୁସାରେ କର୍ମ କରନ୍ତି ଅର୍ଥାତ୍ ଏ କାର୍ଯ୍ୟଟି ଭଲ ଅମୁକ କାର୍ଯ୍ୟଟି ମନ୍ଦ ଏକଥା ଜାଣିବା ବ୍ୟକ୍ତି ମଧ୍ୟ ନିଜ

Digitized by PPRACHIN, SOA

ସ୍ୱଭାବ ଅନୁସାରେ କର୍ମ କରନ୍ତି । ନ ଜାଣିବା ଲୋକଙ୍କର କଥା ଆଉ କଣ କହିବା । ଯେତେବେଳେ ସମସ୍ତେ ପ୍ରକୃତିର ଅନୁଗାମୀ, ସେତେବେଳେ ଇନ୍ଦ୍ରିୟନିଗ୍ରହ କଲେ କି ଫଳ ହେବ ? ପ୍ରକୃତି ଅର୍ଥାତ୍ ପୂର୍ବଜନ୍ମକୃତ-କର୍ମରୁ ଜାତ ଯେ ସ୍ୱଭାବ ସେ ଅତ୍ୟନ୍ତ ବଳବାନ୍ ତାକୁ ଲଙ୍ଘନ କରି ସତ୍‌କର୍ମ କରିବା ସହଜ ନୁହେ ଅର୍ଥାତ୍ ଅତି କଷ୍ଟସାଧ୍ୟ । ୩୩ ।

ଶ୍ଳୋକଃ ।

।ଉ ।୧ । । ।
ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟାର୍ଥେ, ରାଗଦ୍ୱେଷୌ ବ୍ୟବସ୍ଥିତୌ ।
। । ।୪ । । ।୧ । ।
ତୟୋର୍ନ ବଶମାଗଚ୍ଛେତ୍, ତୌ ହ୍ୟସ୍ୟ ପରିପନ୍ଥିନୌ । ୩୪ ।

ଅନ୍ୱୟଃ ।

ଇନ୍ଦ୍ରିୟସ୍ୟ ଇନ୍ଦ୍ରିୟସ୍ୟ ଅର୍ଥେ ରାଗଦ୍ୱେଷୌ ବ୍ୟବସ୍ଥିତୌ, ତୟୋଃ ବଶଂ ନ ଆଗଚ୍ଛେତ୍, ତୌ ହି ଅସ୍ୟ ପରିପନ୍ଥିନୌ (ଭବତଃ) । ୩୪ ।

ଟୀକା ।

ନନ୍ୱେବଂ ପ୍ରକୃତ୍ୟଧୀନୈବ ଚେତ୍ ପୁରୁଷସ୍ୟ ପ୍ରବୃତ୍ତିସ୍ତର୍ହି ବିଧିନିଷେଧ-ଶାସ୍ତ୍ରସ୍ୟ ବୈୟର୍ଥ୍ୟଂ ପ୍ରାପ୍ତମିତ୍ୟାଶଙ୍କ୍ୟାହ । ଇନ୍ଦ୍ରିୟସ୍ୟେତି । ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟେତି ବୀପ୍ସୟା ସର୍ବେଷାମିନ୍ଦ୍ରିୟାଣାଂ ପ୍ରତ୍ୟେକମିତ୍ୟୁକ୍ତଂ, ଅର୍ଥେ ସ୍ୱସ୍ୱ ବିଷୟେ ଅନୁକୂଲେ ରାଗଃ ପ୍ରତିକୂଲେ ଦ୍ୱେଷଃ ଇତ୍ୟେବଂ ରାଗଦ୍ୱେଷୌ ବ୍ୟବସ୍ଥିତୌ ଅବଶ୍ୟଂଭାବିନୌ । ତତଶ୍ଚ ତଦନୁରୂପା ପ୍ରବୃତ୍ତିରିତି ଭୂତାନାଂ ପ୍ରକୃତିଃ, ତଥାପି ତୟୋର୍ବଶବର୍ତ୍ତୀ ନ ଭବେଦିତି ଶାସ୍ତ୍ରେଣ ନିୟମ୍ୟତେ, ହି ଯସ୍ମାଦସ୍ୟ ମୁମୁକ୍ଷୋସ୍ତୌ ପରିପନ୍ଥିନୌ ପ୍ରତିପକ୍ଷୌ ଅୟଂଭାବଃ ବିଷୟସ୍ମରଣାଦିନା ରାଗଦ୍ୱେଷାବୁତ୍ପାଦ୍ୟାନର୍ଥହେତୁଂ ପୁରୁଷମନର୍ଥେ ଗମ୍ଭୀରେ ସ୍ରୋତସୀବ ପ୍ରକୃତେର୍ବଲାତ୍ ପ୍ରବର୍ତ୍ତୟିତି ଶାସ୍ତ୍ରଂ ତୁ ତତଃ ପ୍ରାଗେବ ବିଷୟେଷୁ ରାଗଦ୍ୱେଷପ୍ରତିବନ୍ଧକେ ପରମେଶ୍ୱରଭଜନାଦୌ ତଂ ପ୍ରବର୍ତ୍ତୟିତି ତତଶ୍ଚ ଗମ୍ଭୀରସ୍ରୋତଃପାତାତ୍ ପୂର୍ବମେବ ନାବମାଶ୍ରିତ ଇବ ନାନର୍ଥଂ ପ୍ରାପ୍ନୋତି ତଦେବଂ ସ୍ୱାଭାବିକୀଂ ପଶ୍ୱାଦିସଦୃଶୀଂ ପ୍ରବୃତ୍ତିଂ ତ୍ୟକ୍ତ୍ୱା ଧର୍ମେ ପ୍ରବର୍ତ୍ତିତବ୍ୟମିତ୍ୟୁକ୍ତଂ । ୩୪ ।

ପଦବ୍ୟାଖ୍ୟା ।

ଇନ୍ଦ୍ରିୟସ୍ୟ ଇନ୍ଦ୍ରିୟସ୍ୟ—ପ୍ରତ୍ୟେକ ଇନ୍ଦ୍ରିୟର, ଅର୍ଥେ—ସ୍ୱ ସ୍ୱ ବିଷୟରେ, ରାଗଦ୍ୱେଷୌ—ଅନୁରାଗ ଓ ଶତ୍ରୁତା, ବ୍ୟବସ୍ଥିତୌ—ବିଦ୍ୟମାନ ଅଛନ୍ତି, ତୟୋଃ—ସେହି ଦୁହିଙ୍କର (ଅନୁରାଗ ଓ ଶତ୍ରୁତାର), ନ—ନାହିଁ, ବଶଂ—ଅଧୀନତାକୁ, ଆଗଚ୍ଛେତ୍—ପ୍ରାପ୍ତ ହେବ, ତୌ—ସେ ଦୁହେଁ (ଅନୁରାଗ ଓ ଶତ୍ରୁତା), ହି—ନିଶ୍ଚୟ, ଅସ୍ୟ—ଏହାର (ମୋକ୍ଷାଭିଳାଷୀ ବ୍ୟକ୍ତିର), ପରିପନ୍ଥିନୌ—ପ୍ରତିବନ୍ଧକ ଅଟନ୍ତି ।

ଅନୁବାଦ ।

ପ୍ରତ୍ୟେକ ଇନ୍ଦ୍ରିୟର ନିଜ ନିଜ ବିଷୟରେ, (ଅନୁକୂଳ ଓ ପ୍ରତିକୂଳ ବିଷୟଭେଦରେ) ଶ୍ରଦ୍ଧା ଓ ଶତ୍ରୁତା ଅଛି । ସେ ଦୁହିଙ୍କର ବଶୀଭୂତ ହେବ ନାହିଁ, ଯେହେତୁ ସେ (ଶ୍ରଦ୍ଧା ଓ ଶତ୍ରୁତା) ଦୁହେଁ ମୋକ୍ଷାଭିଳାଷିର ପ୍ରତିବନ୍ଧକ ଅଟନ୍ତି । ୩୪ ।

ବିଶଦବ୍ୟାଖ୍ୟା ।

ଚକ୍ଷୁଃ, କର୍ଣ୍ଣ, ନାସା, ଜିହ୍ୱା ଓ ତ୍ୱକ୍ (ଚର୍ମ) ଏହି ପାଞ୍ଚଟି ଜ୍ଞାନେନ୍ଦ୍ରିୟ ଏବଂ ବାକ୍, ପାଦ, ହସ୍ତ, ଉପସ୍ଥ ଓ ପାୟୁ ଏହି ପାଞ୍ଚଟି କର୍ମେନ୍ଦ୍ରିୟ । ରୂପ, ଶବ୍ଦ, ଗନ୍ଧ, ରସ ଓ ସ୍ପର୍ଶ ଏହି ପାଞ୍ଚଟି ଯଥାକ୍ରମେ ପଞ୍ଚ ଜ୍ଞାନେନ୍ଦ୍ରିୟର ବିଷୟ ଏବଂ ବଚନ, ଗମନ, ଆଦାନ, ଆନନ୍ଦ ଓ ମଳତ୍ୟାଗ

Digitized by PPRACHIN, SOA

ଏହି ପାଞ୍ଚଟି ଯଥାକ୍ରମେ ପାଞ୍ଚ କର୍ମେନ୍ଦ୍ରିୟର ବିଷୟ । ପ୍ରତ୍ୟେକ ଇନ୍ଦ୍ରିୟର ବିଷୟ ଯେବେ ଅନୁକୂଳ ହୁଏ ତେବେ ଶ୍ରଦ୍ଧା (ରାଗ) ଆଉ ଯେବେ ପ୍ରତିକୂଳ ହୁଏ ତେବେ ଶତ୍ରୁତା (ଦ୍ୱେଷ) ଜାତ ହୁଏ । ମନେ କର ଜିହ୍ୱା-ଇନ୍ଦ୍ରିୟର ବିଷୟ ରସ, ମଧୁରରସ ଜିହ୍ୱାର ଅନୁକୂଳ ହେବାରୁ ତହିଁରେ ଶ୍ରଦ୍ଧା, ଓ କଟୁ ବା ତିକ୍ତରସ ପ୍ରତିକୂଳ ହେବାରୁ ତହିଁରେ ଶତ୍ରୁତା ହୁଏ; ମାତ୍ର ଏପ୍ରକାର ଶ୍ରଦ୍ଧା ବା ଶତ୍ରୁତାର ବଶୀଭୂତ ହେବା ଉଚିତ ନୁହେ ଅର୍ଥାତ୍ ମଧୁରରସ ପ୍ରାପ୍ତିରେ ଆନନ୍ଦିତ ବା କଟୁ-ତିକ୍ତାଦି ରସ ଆସ୍ୱାଦନରେ ଦୁଃଖିତ ହେବା ଉଚିତ ନୁହେ । କାରଣ ସେହି ଶ୍ରଦ୍ଧା ଓ ଶତ୍ରୁତା ମୋକ୍ଷାଭିଳାଷି ପକ୍ଷରେ ପ୍ରତିବନ୍ଧକ ଅଟେ ଅର୍ଥାତ୍ ମୋକ୍ଷାଭିଳାଷୀ ବ୍ୟକ୍ତି ଶାସ୍ତ୍ର ଓ ଆଚାର୍ଯ୍ୟଙ୍କ ଉପଦେଶଦ୍ୱାରା ଉକ୍ତ ପ୍ରକାର ଶ୍ରଦ୍ଧା ଓ ଶତ୍ରୁତାକୁ ତ୍ୟାଗ କରିବେ ଅବା ସମାନ ଜ୍ଞାନ କରିବେ । ୩୪ ।

* ଶ୍ରେୟାନ୍ ସ୍ୱଧର୍ମୋବିଗୁଣଃ, ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।

ସ୍ୱଧର୍ମେ ନିଧନଂ ଶ୍ରେୟଃ, ପରଧର୍ମୋଭୟାବହଃ । ୩୫ ।

ଅନ୍ୱୟଃ ।

ସ୍ୱନୁଷ୍ଠିତାତ୍ ପରଧର୍ମାତ୍ ବିଗୁଣଃ ସ୍ୱଧର୍ମଃ ଶ୍ରେୟାନ୍ । ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମଃ ଭୟାବହଃ । ୩୫ ।

ଟୀକା ।

ତର୍ହି ସ୍ୱଧର୍ମସ୍ୟ ଯୁଦ୍ଧାଦେର୍ଦୁଃଖରୂପସ୍ୟ ଯଥାବତ୍ କର୍ତ୍ତୁମଶକ୍ୟତ୍ୱାତ୍ ପରଧର୍ମସ୍ୟ ଅହିଂସାଦେଃ ସୁକରତ୍ୱାତ୍ ଧର୍ମତ୍ୱାଦବିଶେଷାଚ୍ଚ ତତ୍ର ପ୍ରବର୍ତ୍ତିତୁମିଚ୍ଛନ୍ତଂ ପ୍ରତ୍ୟାହ, ଶ୍ରେୟାନିତି । କିଞ୍ଚିଦଙ୍ଗହୀନୋଽପି ସ୍ୱଧର୍ମଃ ଶ୍ରେୟାନ୍ ପ୍ରଶସ୍ୟତରଃ ସ୍ୱନୁଷ୍ଠିତାତ୍ ସକଳାଙ୍ଗ ସମ୍ପୂର୍ତ୍ତ୍ୟା କୃତାଦପି ପରଧର୍ମାତ୍ ସକାଶାତ୍, ତତ୍ର ହେତୁଃ ସ୍ୱଧର୍ମେ ଯୁଦ୍ଧାଦୌ ପ୍ରବର୍ତ୍ତମାନସ୍ୟ ନିଧନଂ ମରଣମପି ଶ୍ରେଷ୍ଠଂ ସ୍ୱର୍ଗାଦିପ୍ରାପକତ୍ୱାତ୍, ପରଧର୍ମସ୍ତୁ ପରସ୍ୟ ଭୟାବହଃ ନିଷିଦ୍ଧତ୍ୱେନ ନରକପ୍ରାପକତ୍ୱାତ୍ । ୩୫ ।

ପଦବ୍ୟାଖ୍ୟା ।

ଶ୍ରେୟାନ୍—ଶ୍ରେଷ୍ଠ, ସ୍ୱଧର୍ମଃ—ନିଜ କୁଳଧର୍ମ, ବିଗୁଣଃ—ଅଙ୍ଗହୀନ, ପରଧର୍ମାତ୍—ପରଧର୍ମ ଅପେକ୍ଷା, ସ୍ୱନୁଷ୍ଠିତାତ୍—ଉତ୍ତମରୂପେ ଅନୁଷ୍ଠିତ, ସ୍ୱଧର୍ମେ—ନିଜ କୁଳଧର୍ମରେ, ନିଧନଂ—ମରଣ, ଶ୍ରେୟଃ—ମଙ୍ଗଳକର, ପରଧର୍ମଃ—ଅନ୍ୟକୁଳର ଧର୍ମ, ଭୟାବହଃ—ଭୟଦାୟକ । ୩୫ ।

ଅନୁବାଦ ।

ଉତ୍ତମରୂପେ ଅନୁଷ୍ଠିତ ପରଧର୍ମଠାରୁ ଅଙ୍ଗହୀନ ନିଜଧର୍ମ ଶ୍ରେଷ୍ଠ । କାହିଁକିନା ସ୍ୱଧର୍ମ ପାଳନରେ ମରଣ ମଧ୍ୟ ଉତ୍ତମ, କିନ୍ତୁ ପରଧର୍ମ ଭୟଙ୍କର ଅଟେ । ୩୫ ।

ବିଶଦବ୍ୟାଖ୍ୟା ।

ମନୁଷ୍ୟର ପ୍ରକୃତି ସାଧାରଣତଃ ଶ୍ରଦ୍ଧା ଓ ଶତ୍ରୁତାଯୁକ୍ତ । ଯୁଦ୍ଧାଦି କାର୍ଯ୍ୟରେ ସେହି ପ୍ରକୃତି ଅଧିକ ଉତ୍ତେଜିତ ହୁଏ, ଅତଏବ ଯୁଦ୍ଧାଦି ନ କରି ସନ୍ନ୍ୟାସ ଗ୍ରହଣପୂର୍ବକ ବିନାହିଂସାରେ ପ୍ରାପ୍ତ ଭିକ୍ଷାନ୍ନ ଭୋଜନ ଆଦି 'କର୍ମ'ଦ୍ୱାରା ଜୀବନ ଅତିବାହିତ କଲେ କ୍ଷତି କଣ ? ଜାଣେ ଅର୍ଜୁନ ଏପରି ଆଶଙ୍କା କରିବେ, ଏଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, କି ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଚାରିବର୍ଣ୍ଣର ପୃଥକ୍ ୨ ଆଶ୍ରମଧର୍ମ ନିରୂପିତ ଅଛି । ତଥାପି ବ୍ରାହ୍ମଣର 'ସ୍ୱ-

ଧର୍ମ, କ୍ଷତ୍ରିୟର ତାହା 'ସ୍ୱଧର୍ମ' ନୁହେ । ସେହିପରି ଯୁଦ୍ଧ କରିବା କ୍ଷତ୍ରିୟର 'ସ୍ୱଧର୍ମ' ବ୍ରାହ୍ମଣ ଓ ବୈଶ୍ୟାଦିଙ୍କ ପକ୍ଷରେ ତାହା 'ପରଧର୍ମ', ବ୍ରାହ୍ମଣ ଯଦି ତପସ୍ୟା, ଶମ, ଦମ, ଶୌଚ, ସନ୍ଧ୍ୟା-ନିଷ୍ଠା ପ୍ରଭୃତି ସମସ୍ତ କର୍ମ ଗୁଡ଼ିକ ବିଧି ଅନୁସାରେ ନ କରି ଅଙ୍ଗହୀନ ଭାବରେ କରେ, ତଥାପି ତାହା ଅନ୍ୟ ବ୍ରାହ୍ମଣଦ୍ୱାରା ସମ୍ପୂର୍ଣ୍ଣରୂପେ ଆଚରିତ କ୍ଷତ୍ରିୟଧର୍ମଠାରୁ ଶ୍ରେଷ୍ଠ । ସେହିପରି କ୍ଷତ୍ରିୟ ବୀରତ୍ୱ, ଶୂରତ୍ୱ, ଯୁଦ୍ଧରୁ ନ ପଳାଇବା, ଦାନ ଓ ସାହସ ପ୍ରଭୃତି ସମସ୍ତ କର୍ମ ବିଧିପୂର୍ବକ ପାଳନ ନ କରି ଯଦି ଅଙ୍ଗହୀନ ଭାବରେ କରେ, ତଥାପି ତାହା ସେହି କ୍ଷତ୍ରିୟର ସମ୍ୟକ୍ ଆଚରିତ ବ୍ରହ୍ମ-ଚର୍ଯ୍ୟ ପ୍ରଭୃତି ପରଧର୍ମଠାରୁ ଶ୍ରେଷ୍ଠ । ସ୍ୱଧର୍ମରେ ଅର୍ଥାତ୍ ବ୍ରାହ୍ମଣ ତପସ୍ୟା କରୁଁ କରୁଁ ବା କ୍ଷତ୍ରିୟ ଯୁଦ୍ଧାଦି କରୁଁ କରୁଁ ଅଥବା ବୈଶ୍ୟ ବାଣିଜ୍ୟ କରୁଁ କରୁଁ ଯଦି ମୃତ୍ୟୁପ୍ରାପ୍ତ ହୁଏ, ସେ ବରଂ ଭଲ, କାହିଁକନା ସେଥିରେ ସ୍ୱର୍ଗପ୍ରାପ୍ତି ହୁଏ ମାତ୍ର ପରଧର୍ମ ଆଚରଣ କଲେ ନରକଗତି ହୁଏ ବୋଲି ତାହା ଭୟଙ୍କର ଅଟେ । 'ବର୍ଣ୍ଣ ମଧ୍ୟରେ ଯେପରି ବ୍ରାହ୍ମଣ ଶ୍ରେଷ୍ଠ, ଧର୍ମ ମଧ୍ୟରେ ସେହିପରି ବ୍ରାହ୍ମଣ ଆଚରିତ ଶାଳଗ୍ରାମ-ପୂଜା ପ୍ରଭୃତି ଶ୍ରେଷ୍ଠ, ଅତଏବ ଶ୍ରେଷ୍ଠଧର୍ମ ଛାଡ଼ି ଆମ୍ଭେ କାହିଁକି ନିକୃଷ୍ଟ ଧର୍ମ ଅବଲମ୍ବନ କରିବା?' ଶୂଦ୍ର ଯଦି ଏହା ମନେକରେ ଏବଂ ସେହି ଅନୁସାରେ ଶାଳଗ୍ରାମ ପ୍ରଭୃତି ପୂଜା କରେ ତେବେ ତାହାର ତହିଁରେ ସ୍ୱର୍ଗାଦି ଲାଭତ ଦୂରର କଥା ବରଂ ଚଣ୍ଡାଳତ୍ୱ ପ୍ରାପ୍ତି ହୁଏ । ଯେହେତୁ ଧର୍ମଶାସ୍ତ୍ରରେ ପ୍ରମାଣ ଅଛି, ଯେ—

କପିଳାକ୍ଷୀରପାନାଚ୍ଚ ବ୍ରାହ୍ମଣୀଗମନେନ ଚ ।
ଶାଳଗ୍ରାମଶିଳାସ୍ପର୍ଶାଚ୍ଛୂଦ୍ରଶ୍ଚଣ୍ଡାଳତାଂ ବ୍ରଜେତ୍ ।

ଅର୍ଥାତ୍ କପିଳା ଗାଈର ଦୁଗ୍ଧପାନ, ବ୍ରାହ୍ମଣୀସହବାସ ଓ ଶାଳଗ୍ରାମ-ଶିଳା ସ୍ପର୍ଶ କଲେ ଶୂଦ୍ର ଚଣ୍ଡାଳତ୍ୱ ପ୍ରାପ୍ତ ହୁଏ ।

ବର୍ଣ୍ଣାଶ୍ରମ ସବୁ ପ୍ରକୃତି ଅନୁସାରେ ନିରୂପିତ ହୋଇଅଛି । ତାହା ଛାଡ଼ିଲେ ଫଳ ମନ୍ଦ ହୁଏ । ଯେପରି ଜଣଙ୍କୁ ପିତ୍ତାଧିକ ଜ୍ୱର ହୋଇଅଛି—ସେ ଯଦି ପିତ୍ତନାଶକ 'କ୍ଷେତ୍ରପର୍ପଟୀ' (ଘର-ପୋଡ଼ଆ) ରସ ପ୍ରଭୃତି ଔଷଧକୁ ସାମାନ୍ୟ ଅବା ନିକୃଷ୍ଟ ମନେ କରି ମୂଲ୍ୟବାନ୍ ବା ଉତ୍କୃଷ୍ଟ ବୋଧରେ 'ମକରଧ୍ୱଜ' ସେବନ କରେ ଅଥବା ଉତ୍କଟ ବାତବ୍ୟାଧିଗ୍ରସ୍ତ ବ୍ୟକ୍ତି 'ଛାଗଳାଦିଘୃତ' ପ୍ରଭୃତିକୁ ମୂଲ୍ୟବାନ୍ ବା କଷ୍ଟକର ମଣି ଯେବେ କଞ୍ଚାଦୁଧ ଓ ଜଳ ମିଶ୍ରିତ କରି ଖାଏ, ସେ-ଥିରେ ସେମାନଙ୍କର ହିତ ନ ହୋଇ ଯେପରି ଅହିତ ହୁଏ, ସେହିପରି କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଆପଣା ଆପଣା ଧର୍ମକୁ ନିକୃଷ୍ଟ ମନେ କରି ବ୍ରାହ୍ମଣଧର୍ମ ଅବଲମ୍ବନ କଲେ ଅଥବା ବ୍ରାହ୍ମଣାଦି ଆପଣା ଆପଣା ଧର୍ମକୁ କଷ୍ଟକର ମଣି, ପରର ଧର୍ମ ଅବଲମ୍ବନ କଲେ ତାଙ୍କର ହିତ ନ ହୋଇ ଅହିତ ହୁଏ । ଫଳକଥା ଏହି କି ନିଜର ବର୍ଣ୍ଣାଶ୍ରମୋଚିତ ଧର୍ମ ପାଳନ କରିବା ସର୍ବତୋ-ଭାବରେ କର୍ତ୍ତବ୍ୟ । ୩୫ ।

ଶ୍ଳୋକଃ ।

ଅର୍ଜ୍ଜୁନଉବାଚ ।—ଅଥ କେନ ପ୍ରଯୁକ୍ତୋଽୟଂ, ପାପଂ ଚରତି ପୂରୁଷଃ ।
ଅନିଚ୍ଛନ୍ନପି ବାର୍ଷ୍ଣେୟ , ବଳାଦିବ ନିଯୋଜିତଃ । ୩୬ ।

### ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ । ହେ ବାର୍ଷ୍ଣେୟ ! ଅଥ ଅୟଂ ପୂରୁଷଃ ଅନିଚ୍ଛନ୍ ଅପି ବଳାତ୍ ନିଯୋଜିତଃ ଇବ କେନ ପ୍ରଯୁକ୍ତଃ ପାପଂ ଚରତି ? । ୩୬ ।

### ଟୀକା ।

ତତ୍ସର୍ବ୍ବଂ ବଶମାଗଚ୍ଛେଦିତ୍ୟୁକ୍ତଂ ତଦେତଦଶକ୍ୟଂ ମନ୍ୱାନୋଽର୍ଜ୍ଜୁନଉବାଚ, ଅଥେତି । ବୃଷ୍ଣେର୍ବଂଶେଽବତୀର୍ଣ୍ଣୋବାର୍ଷ୍ଣେୟଃ ହେ ବାର୍ଷ୍ଣେୟ ! ଅନର୍ଥରୂପଂ ପାପଂ କର୍ତ୍ତୁମନିଚ୍ଛନ୍ନପି କେନ ପ୍ରଯୁକ୍ତଃ ପ୍ରେରିତୋଽୟଂ ପୁରୁଷଃ ପାପଂ ଚରତି । କାମକ୍ରୋଧୌ ବିବେକବଲେନ ନିରୁନ୍ଧତୋଽପି ପୁରୁଷସ୍ୟ ପୁନଃ ପାପେ ପ୍ରବୃତ୍ତିଦର୍ଶନାତ୍ ଅନ୍ୟୋଽପି ତତ୍ପ୍ରବର୍ତ୍ତକୋ ଭବେଦିତି ସମ୍ଭାବନୟା ପ୍ରଶ୍ନଃ । ୩୬ ।

### ପଦବ୍ୟାଖ୍ୟା ।

ଅର୍ଜ୍ଜୁନଃ ଉବାଚ—ଅର୍ଜ୍ଜୁନ କହିଲେ, ଅଥ—ଅନନ୍ତର, କେନ—କାହାଦ୍ୱାରା, ପ୍ରଯୁକ୍ତଃ—ପ୍ରେରିତ ହୋଇ, ଅୟଂ—ଏହି, ପାପଂ—ପାପକୁ, ଚରତି—ଆଚରଣ କରେ, ପୂରୁଷଃ—ବ୍ୟକ୍ତି, ଅନିଚ୍ଛନ୍ ଅପି—ଇଚ୍ଛା ନ କଲେ ମଧ୍ୟ, ବାର୍ଷ୍ଣେୟ !—ହେ ବୃଷ୍ଣିବଂଶପ୍ରସୂତ ଶ୍ରୀକୃଷ୍ଣ !, ବଳାତ୍—ବଳପୂର୍ବ୍ବକ, ଇବ—ପରି, ନିଯୋଜିତଃ—ଅନ୍ୟଦ୍ୱାରା ନିଯୁକ୍ତ ଅର୍ଥାତ୍ ଆଜ୍ଞାପ୍ରାପ୍ତ । ୩୬ ।

### ଅନୁବାଦ ।

ଅର୍ଜ୍ଜୁନ କହିଲେ, ହେ ବୃଷ୍ଣିବଂଶୋଦ୍ଭବ !, ମନୁଷ୍ୟ ପାପ କରିବାକୁ ଇଚ୍ଛା ନ କଲେ ସୁଦ୍ଧା କିଏ ତାହାକୁ ବଳପୂର୍ବ୍ବକ ପାପକର୍ମରେ ନିଯୁକ୍ତକରେ ? । ୩୬ ।

### ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ କହିଲେ, ମନୁଷ୍ୟ ଶିକ୍ଷା ଓ ଉପଦେଶ ଏବଂ ବିବେକବଳରେ କେଉଁ କର୍ମ ନିନ୍ଦାର ଯୋଗ୍ୟ ଓ କେଉଁ କର୍ମ ପ୍ରଶଂସାର ଯୋଗ୍ୟ ଏବଂ କାହିଁରେ ପାପ ଓ କାହିଁରେ ପୁଣ୍ୟ ହୁଏ ଏହା ବୁଝିପାରେ । ତଥାପି ସମୟ ସମୟରେ ମନୁଷ୍ୟ ବଳପୂର୍ବ୍ବକ କାହାରଦ୍ୱାରା ନିଯୁକ୍ତ ହେଲା ପରି ପାପର ଅନୁଷ୍ଠାନ କରେ । ଉକ୍ତ ପାପକାର୍ଯ୍ୟର ଅନୁଷ୍ଠାନ କରିବା ପୂର୍ବ୍ବରେ ଓ ପରେ ତାହା 'ପାପ' ବୋଲି ତାହାର ଯେପରି ଜ୍ଞାନ ଥାଏ, ଅନୁଷ୍ଠାନବେଳେ ତାହାର ସେ ଜ୍ଞାନ ନ ଥାଏ ଅଥବା ଜ୍ଞାନ ଥିଲେ ମଧ୍ୟ ନିବୃତ୍ତ ହେବାର କ୍ଷମତା ନ ଥାଏ । ମନୁଷ୍ୟକୁ ପାପରେ କିଏ ଏପରି ପ୍ରବୃତ୍ତ କରାଏ ତାହା ମତେ ବୁଝାଇ ଦେବା ହେଉନ୍ତୁ ।

ଏ ଶ୍ଲୋକରେ 'ବାର୍ଷ୍ଣେୟ' ସମ୍ବୋଧନଦ୍ୱାରା ଅର୍ଜ୍ଜୁନ ଆପଣା ସହିତ ଶ୍ରୀଭଗବାନଙ୍କର କୁଟୁମ୍ବିତା ଥିବାର ସୂଚନା କରି ସନ୍ଦେହଭଞ୍ଜନ କରିବାକୁ ପ୍ରାର୍ଥନା କରୁଅଛନ୍ତି । ୩୬ ।

### ଶ୍ଲୋକଃ ।

ଶ୍ରୀଭଗବାନୁବାଚ ।—କାମ ଏଷ କ୍ରୋଧ ଏଷ, ରଜୋଗୁଣସମୁଦ୍ଭବଃ ।
ମହାଶନୋମହାପାପ୍ମା, ବିଦ୍ଧ୍ୟେନମିହ ବୈରିଣଂ । ୩୭ ।

### ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ଏଷଃ କାମଃ ଏଷଃ କ୍ରୋଧଃ ରଜୋଗୁଣସମୁଦ୍ଭବଃ ମହାଶନଃ ମହାପାପ୍ମା । ଏନଂ ଇହ ବୈରିଣଂ ବିଦ୍ଧି । ୩୭ ।

Digitized by PPRACHIN, SOA

## ଟୀକା ।

ଅତ୍ରୋତ୍ତରଂ ଶ୍ରୀଭଗବାନ୍ ଉବାଚ । କାମଏଷ କ୍ରୋଧ ଏଷ ଇତ୍ୟାଦି । ଯସ୍ତ୍ୱୟା ପୃଷ୍ଟୋହେତୁରେଷଃ କାମ ଏବ, ନନୁକ୍ରୋଧୋଽପି ପୂର୍ବଂ ତ୍ୱୟୋକ୍ତ ଇନ୍ଦ୍ରିୟସ୍ୟେନ୍ଦ୍ରିୟସ୍ୟାର୍ଥେ ଇତ୍ୟତ୍ର ସତ୍ୟଂ, ନାସୌ ତତଃ ପୃଥକ୍ କିନ୍ତୁ କ୍ରୋଧୋଽପ୍ୟେଷ କାମ ଏବହି କେନଚିତ୍ ପ୍ରତିହତଃ କ୍ରୋଧାତ୍ମନାପରିଣମତେ ପୂର୍ବଂ ପୃଥକ୍‌ତ୍ୱେନୋକ୍ତୋଽପି କ୍ରୋଧଃ କାମଜଏବେତ୍ୟଭିପ୍ରାୟେଣୈକୀକୃତ୍ୟୋଚ୍ୟତେ; ରଜୋଗୁଣାତ୍ ସମୁଦ୍ଭବତୀତି ତଥା ଅନେନ ସତ୍ତ୍ୱବୃଦ୍ଧ୍ୟା ରଜସି କ୍ଷୟଂ ନୀତେ ସତି କାମୋନିବର୍ତ୍ତତ ଇତି ସୂଚିତଂ । ଏନଂ କାମମିହ ମୋକ୍ଷମାର୍ଗେ ବୈରିଣଂ ବିଦ୍ଧି । ଅୟଂ ଚ ବକ୍ଷ୍ୟମାଣକ୍ରମେଣ ହନ୍ତବ୍ୟଏବ ଯତୋନାସୌ ଦାନେନ ସନ୍ଧାତୁଂ ଶକ୍ୟଇତ୍ୟାହ ମହାଶନୋମହଦଶନଂ ଯସ୍ୟ ଦୁଷ୍ପୂର ଇତ୍ୟର୍ଥଃ ନ ଚ ସାମ୍ନା ସନ୍ଧାତୁଂ ଶକ୍ୟୋଯତୋମହାପାପ୍ମା ଅତ୍ୟୁଗ୍ରଃ । ୩୭ ।

## ପଦବ୍ୟାଖ୍ୟା ।

କାମଃ—ବିଷୟାଭିଳାଷ, ଏଷଃ—ଏହି, କ୍ରୋଧଃ—କ୍ରୋଧ, ଏଷଃ—ଏହି, ରଜୋଗୁଣସମୁଦ୍ଭବଃ—ରଜୋଗୁଣରୁ ଜାତ, ମହାଶନଃ—ଅତିଭୋଜୀ—ଅତୃପ୍ତ, ମହାପାପ୍ମା—ଅତ୍ୟନ୍ତ ଉଗ୍ର ଅର୍ଥାତ୍ ଯେ 'ସାମ' ନୀତିରେ ବଶୀଭୂତ ହୁଏ ନାହିଁ, ବିଦ୍ଧି—ଜାଣ, ଏନଂ—ଏହାକୁ, ବୈରିଣଂ—ଶତ୍ରୁ । ୩୭ ।

## ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ଏହା କାମ, ରଜୋଗୁଣରୁ ଉତ୍ପନ୍ନ, ଅତୃପ୍ତ ଓ ଅତ୍ୟୁଗ୍ର ଅଟେ । ଏହା (ସଫଳ ନ ହେଲେ) କ୍ରୋଧରୂପରେ ପରିଣତ ହୁଏ । ଅତଏବ ଏହାକୁ ମୁକ୍ତିମାର୍ଗର ଶତ୍ରୁ ବୋଲି ଜାଣ । ୩୭ ।

## ବିଶଦବ୍ୟାଖ୍ୟା ।

ଅର୍ଜୁନ ପ୍ରଶ୍ନ କରିଥିଲେ, ମନୁଷ୍ୟକୁ ବଳପୂର୍ବକ କିଏ ପାପ କର୍ମରେ ପ୍ରବୃତ୍ତ କରାଏ ? ତାହାର ଉତ୍ତରରେ ଶ୍ରୀଭଗବାନ୍ କହିଲେ, 'କାମ'; ସେହି କାମ ରଜୋଗୁଣରୁ ଉତ୍ପନ୍ନ ହୁଏ । ଯେତେଦିନ ଯାଏ ରଜୋଗୁଣର ବୃଦ୍ଧି ଥିବ, ଶିକ୍ଷା, ବିବେକ ବା ଉପଦେଶ କେହି କାମର ନିବୃତ୍ତି କରି ପାରିବେ ନାହିଁ । ସେହି କାମ ସଫଳ ନ ହେଲେ ( ଅଭିଳଷିତ ଦ୍ରବ୍ୟ ପ୍ରାପ୍ତ ନ ହେଲେ ) କ୍ରୋଧ ରୂପରେ ପରିଣତ ହୁଏ । ତାହାକୁ ସହଜରେ ପୂରଣ କରାଯାଇ ପାରେ ନାହିଁ । ଯେହେତୁ ତାହା 'ମହାଶନ' ଅର୍ଥାତ୍ ବହୁଭୋଜୀ ଅଟେ । ପ୍ରମାଣ ଅଛି, ଯେ—

"ନ ଜାତୁ କାମଃ କାମାନାମୁପଭୋଗେନ ଶାମ୍ୟତି ।
ହବିଷା କୃଷ୍ଣବର୍ତ୍ମେବ ଭୂୟ ଏବାଭିବର୍ଦ୍ଧତେ ।"

ଅର୍ଥାତ୍ କାମ୍ୟପଦାର୍ଥର ଉପଭୋଗଦ୍ୱାରା କାମର କଦାପି ଶାନ୍ତି ହୁଏ ନାହିଁ । ଘୃତଦ୍ୱାରା ଅଗ୍ନି ବୃଦ୍ଧିପ୍ରାପ୍ତ ହେଲାପରି ତାହା ବିଶେଷ ବୃଦ୍ଧିପ୍ରାପ୍ତ ହୁଏ ।

ପୁଣି ସେ କାମ ଅତି ଉଗ୍ର ଅଟେ, ତାହାକୁ କୌଣସି ପ୍ରକାରେ ବଶୀଭୂତ କରାଯାଇ ପାରେ ନାହିଁ । ଏହି ସବୁ କାରଣରୁ ସେ କାମକୁ ମୁକ୍ତି ମାର୍ଗର ଶତ୍ରୁ ବୋଲି ଜାଣ । ଫଳକଥା ଏହି କି ସତ୍ତ୍ୱଗୁଣର ବୃଦ୍ଧିଦ୍ୱାରା ରଜୋଗୁଣ ନିବୃତ୍ତ ନ ହେଲେ ତହିଁରୁ ଉତ୍ପନ୍ନ କାମ ଶାନ୍ତ ହେବାର ଅନ୍ୟ ଉପାୟ ନାହିଁ । ୩୭ ।

ଶ୍ଳୋକଃ ।

* ଧୂମେନାବ୍ରିୟତେ ବହ୍ନି,ର୍ଯଥାଦର୍ଶୋ ମଲେନ ଚ ।
ଯଥୋଲ୍ବେନାବୃତୋଗର୍ଭ, ସ୍ତଥା ତେନେଦମାବୃତଂ । ୩୮ ।

ଅନ୍ୱୟଃ ।

ଯଥା ବହ୍ନିଃ ଧୂମେନ, ଚ ଆଦର୍ଶଃ ମଲେନ ଆବ୍ରିୟତେ, ଯଥାଗର୍ଭଃ ଉଲ୍ବେନ ଆବୃତଃ ତଥା ତେନ ଇଦଂ ଆବୃତଂ । ୩୮ ।

ଟୀକା ।

କାମସ୍ୟ ବୈରିତ୍ୱଂ ଦର୍ଶୟତି । ଧୂମେନେତି । ଧୂମେନ ସହଜେନ ଯଥା ବହ୍ନିରାବ୍ରିୟତ ଆଚ୍ଛାଦ୍ୟତେ ଯଥା ଚାଦର୍ଶୋ ମଲେନ ଆଗନ୍ତୁକେନ ଯଥା ଚୋଲ୍ବେନ ଗର୍ଭବେଷ୍ଟନଚର୍ମଣା ଗର୍ଭଃ ସର୍ବତୋନିରୁଦ୍ଧ ଆବୃତସ୍ତଥା ପ୍ରକାରତ୍ରୟେଣାପି ତେନ କାମେନାବୃତମିଦଂ । ୩୮ ।

ପଦବ୍ୟାଖ୍ୟା ।

ଧୂମେନ—ଧୂମଦ୍ୱାରା, ଆବ୍ରିୟତେ—ଆବୃତଥାଏ, ବହ୍ନିଃ—ଅଗ୍ନି, ଯଥା—ଯେପରି, ଆଦର୍ଶଃ—ଦର୍ପଣ, ମଲେନ—ମଳଦ୍ୱାରା, ଚ—ପୁଣି, ଯଥା—ଯେପରି, ଉଲ୍ବେନ—ଜରାୟୁ ଦ୍ୱାରା, ଆବୃତଃ—ଆଚ୍ଛନ୍ନ, ଗର୍ଭଃ—ଉଦରସ୍ଥ ବାଳକ, ତଥା—ସେହିପରି, ତେନ—ତାହା (କାମ) ଦ୍ୱାରା, ଇଦଂ—ଏହି ( ଜ୍ଞାନ ), ଆବୃତଂ—ଆଚ୍ଛନ୍ନ । ୩୮ ।

ଅନୁବାଦ ।

ଯେପରି ଧୂମଦ୍ୱାରା ଅଗ୍ନି ଓ ମଳଦ୍ୱାରା ଦର୍ପଣ ଏବଂ ଜରାୟୁଦ୍ୱାରା ଗର୍ଭସ୍ଥ ସନ୍ତାନ ଆବୃତ ଥାଏ, ସେହିପରି ସେହି କାମଦ୍ୱାରା ଏହି ଜ୍ଞାନ ଆବୃତ ଥାଏ । ୩୮ ।

ବିଶଦବ୍ୟାଖ୍ୟା ।

ଜ୍ଞାନକୁ 'କାମ' ଯେପରି ଆବରଣ କରେ ତାହାର ତିନଗୋଟି ଉଦାହରଣ ଦିଆ ଯାଉଅଛି । ୧ମ ଧୂମ ଅଗ୍ନିକି ଆବରଣ କଲାପରି । ଅର୍ଥାତ୍ ଧୂମ ଅଗ୍ନି ସଙ୍ଗରେ ଥାଇ ଅଗ୍ନିକୁ କେବଳ ମଳିନ କରେ ଅଥବା ଧୂମ ଥିଲେ ମଧ୍ୟ ଅଗ୍ନିର ଦାହିକା ଶକ୍ତି ପ୍ରଭୃତି ନଷ୍ଟ ହୁଏ ନାହିଁ ଏବଂ ଅଗ୍ନି ଟିକିଏ ଅଧିକ ଜଳି ଉଠିଲେ ଧୂମ ଆପଣା ଛାଏଁ ଲୟ ପ୍ରାପ୍ତ ହୁଏ । ସେହି-ପରି ଶରୀର ଯାତ୍ରା ନିର୍ବାହ ପାଇଁ ଯେ କାମନା ଥାଏ ସେଥିରେ ସତ୍ତ୍ୱଗୁଣ ପ୍ରଧାନ ବ୍ୟକ୍ତିର ଗୁଣ କିଛି ମଳିନ ହୋଇପାରେ ସତ, ମାତ୍ର ଈଶ୍ୱର ନିଷ୍ଠା ପ୍ରଭୃତି କିଛି ନ୍ୟୂନ ହୁଏ ନାହିଁ । ବରଂ ସତ୍ତ୍ୱଗୁଣର ବୃଦ୍ଧି ହେଲେ କାମନା ସହଜରେ ନଷ୍ଟ ହୁଏ ।

ଦ୍ୱିତୀୟ । ମଳଦ୍ୱାରା ଦର୍ପଣ ଆବୃତ ହେଲାପରି । ଅର୍ଥାତ୍ ଧୂଳୀ ଯେପରି ଅନ୍ୟ ଅଙ୍ଗୁ ଊଣ ଅଛି ଦର୍ପଣର ସ୍ୱଚ୍ଛତା ଗୁଣର ହାନି କରେ ସେହିପରି ଦେହ ଯାତ୍ରାନିର୍ବାହ ପାଇଁ ଯେତିକି କାମନାର ଆବଶ୍ୟକ, ତାହା ଅପେକ୍ଷା ଅଧିକ ପଦାର୍ଥର କାମନା ଏକତ୍ରିତ ହୋଇ ରଜୋ-ଗୁଣିମାନଙ୍କର ଜ୍ଞାନର ସ୍ୱଚ୍ଛତା ବା ପ୍ରତିଭାକୁ ହାନି କରେ ଏବଂ ପରିଶ୍ରମ କରି ବସ୍ତ୍ରାଦିଦ୍ୱାରା ସେ ଧୂଳୀ ନ ପୋଛିଲେ ଯେପରି ଦର୍ପଣ ପରିଷ୍କାର ହୁଏ ନାହିଁ, ସେହିପରି ରଜୋଗୁଣ ବୃଦ୍ଧି ହୋଇଥିବାରୁ ବିଶେଷ ପରିଶ୍ରମ କରି କାମନା ତ୍ୟାଗ ନ କଲେ ଜ୍ଞାନର ପ୍ରତିଭା ପ୍ରକାଶ ହୁଏ ନାହିଁ ।

Digitized by PPRACHIN, SOA

ତୃତୀୟ । ଜରାୟୁଦ୍ୱାରା ଗର୍ଭସ୍ଥ ସନ୍ତାନପରି । ଅର୍ଥାତ୍ ଜରାୟୁ ଥିବା ହେତୁରୁ ଯେପରି ଗର୍ଭସ୍ଥ ସନ୍ତାନର ସ୍ୱରୂପ ଦେଖାଯାଏ ନାହିଁ, ସେହିପରି ତମୋଗୁଣିମାନଙ୍କର ଜ୍ଞାନ, କାମନାଦ୍ୱାରା ଏପରି ଆବୃତ ଥାଏ, ଯେ ସେଥିରେ ଜ୍ଞାନର ସ୍ୱରୂପ ପ୍ରକାଶ ହୁଏ ନାହିଁ । ଅର୍ଥାତ୍ ଜ୍ଞାନ ଥିବାର କୌଣସି ଚିହ୍ନ ପ୍ରକାଶ ପାଏ ନାହିଁ । ଉପଯୁକ୍ତ ସମୟ ହେଲେ ଗର୍ଭସ୍ଥ ସନ୍ତାନର ଦୁଃଖରେ ଓ ସ୍ତୁତିରେ ଦୟାଳୁ ପରମେଶ୍ୱର ସନ୍ତୁଷ୍ଟ ହୋଇ ଜରାୟୁ ମଧ୍ୟରୁ ଯେପରି ସନ୍ତାନକୁ ମୁକ୍ତ କରନ୍ତି, ସେହିପରି ଅନେକ ଜନ୍ମରେ ଜୀବ ନାନାପ୍ରକାର କଷ୍ଟ ପାଇ ମନେ ମନେ ଅନୁତପ୍ତ ହୋଇ ପରମେଶ୍ୱରଙ୍କଠାରେ ଶରଣ ପଶିଲେ ତାଙ୍କ ଦୟାରୁ ଅନେକ ଯୁଗରେ ମୁକ୍ତ ହୋଇପାରେ । ଫଳକଥା ଏହି କି ପ୍ରଥମ ଅବସ୍ଥାରେ ଅଥବା ସତ୍ତ୍ୱଗୁଣୀ ଲୋକଦ୍ୱାରା କାମ ସହଜରେ ବଶୀଭୂତ ହୋଇପାରେ, ଦ୍ୱିତୀୟ ଅବସ୍ଥାରେ ଅଥବା ରଜୋଗୁଣୀ ଲୋକର କାମକୁ ବଶୀଭୂତ କରିବା ଶ୍ରମସାଧ୍ୟ, ଏବଂ ତୃତୀୟ ଅବସ୍ଥାରେ ଅଥବା ତମୋଗୁଣୀ ଲୋକର କାମ ବଶୀଭୂତ କରିବା ଦୁଃସାଧ୍ୟ । ୩୮ ।

ଶ୍ଳୋକଃ ।

ଆବୃତଂ ଜ୍ଞାନମେତେନ, ଜ୍ଞାନିନୋ ନିତ୍ୟବୈରିଣା ।
କାମରୂପେଣ କୌନ୍ତେୟ, ଦୁଷ୍ପୂରେଣାନଲେନ ଚ । ୩୯ ।

ଅନ୍ୱୟଃ ।

ହେ କୌନ୍ତେୟ ! ଜ୍ଞାନିନଃ ନିତ୍ୟବୈରିଣା ଚ ଦୁଷ୍ପୂରେଣ ଚ ଅନଲେନ କାମରୂପେଣ ଏତେନ ଜ୍ଞାନଂ ଆବୃତଂ । ୩୦ ।

ଟୀକା ।

କିଞ୍ଚ ଶବ୍ଦାଦିଷ୍ଟଂ ଦର୍ଶୟନ୍ ବୈରିତ୍ୱଂ ସ୍ଫୁଟୟତି । ଆବୃତମିତି । ଇଦଂ ବିବେକଜ୍ଞାନଂ ଏତେନାବୃତଂ ଅଜ୍ଞସ୍ୟ ଖଲ୍ୱ ଭୋଗସମୟେ କାମଃ ସୁଖହେତୁରେବ ପରିଣାମେ ତୁ ବୈରିତ୍ୱଂ ପ୍ରତିପଦ୍ୟତେ । ଜ୍ଞାନିନସ୍ତୁ ତତ୍କାଲମପ୍ୟନର୍ଥାନୁସନ୍ଧାନାଦ୍ଦୁଃଖହେତୁରେବେତି ନିତ୍ୟବୈରିଣେତ୍ୟୁକ୍ତଂ । କିଂ ଚ ବିଷୟୈଃ ପୂର୍ଯ୍ୟମାଣୋଽପି ଯୋ ଦୁଷ୍ପୂରଃ ଅପୂର୍ଯ୍ୟମାଣସ୍ତୁ ଶୋକସନ୍ତାପହେତୁତ୍ୱାଦନଲତୁଲ୍ୟଃ ଅନେନ ସର୍ବାନ୍ ପ୍ରତି ବୈରିତ୍ୱମୁକ୍ତଂ । ୩୯ ।

ପଦବ୍ୟାଖ୍ୟା ।

ଆବୃତଂ—ଆଚ୍ଛନ୍ନ, ଜ୍ଞାନଂ—ଜ୍ଞାନ, ଏତେନ—ଏହି କାମଦ୍ୱାରା, ଜ୍ଞାନିନଃ—ଜ୍ଞାନୀର, ନିତ୍ୟବୈରିଣା—ଚିରଶତ୍ରୁ, କାମରୂପେଣ—କାମରୂପୀ, କୌନ୍ତେୟ—ହେ ଅର୍ଜୁନ !, ଦୁଷ୍ପୂରେଣ—ଅତୃପ୍ତ, ଅନଲେନ ଚ—ଅଗ୍ନି ତୁଲ୍ୟ । ୩୯ ।

ଅନୁବାଦ ।

ହେ ଅର୍ଜୁନ ! ଜ୍ଞାନିମାନଙ୍କର ଚିରଶତ୍ରୁ ଅତୃପ୍ତ ଅଗ୍ନିତୁଲ୍ୟ କାମ ଜ୍ଞାନକୁ ଆବୃତ କରି ରଖେ । ୩୯ ।

ବିଶଦବ୍ୟାଖ୍ୟା ।

କାମକୁ ଅଗ୍ନିସ୍ୱରୂପେ ବର୍ଣ୍ଣନା କରିବାର ତାତ୍ପର୍ଯ୍ୟ ଏହି, ଯେ ଅଗ୍ନି ଯେପରି ସମିଧ ଘୃତ ଆଦିଦ୍ୱାରା ତୃପ୍ତ ନ ହୋଇ ଜଳି ଉଠେ ଓ ଅତୃପ୍ତିସୂଚକ ଅଗ୍ନିକଣିକାମାନ ପ୍ରକାଶ କରେ, ସେହିପରି କାମନା, କାମ୍ୟବସ୍ତୁ ପ୍ରାପ୍ତିରେ ତୃପ୍ତ ନ ହୋଇ ଅଧିକ ଉତ୍ତେଜିତ ହୋଇ

Digitized by PPRACHIN, SOA

ଅତୃପ୍ତି ରୂପ ନୂତନ ନୂତନ ଆଶା ପ୍ରକାଶ କରେ । ଅଗ୍ନି ଯେପରି କେବଳ ସମିଧ ଆଦିକୁ ବାହାର କରି ନେଲେ ନିର୍ବାପିତ ହୁଏ, କାମ ସେହିପରି କାମ୍ୟ ବସ୍ତୁର ଉପଭୋଗ ଅଭାବରେ ନିର୍ବାପିତ ହୁଏ । ପୁଣି ଅଗ୍ନି ଯେପରି ପାକାଦି କାର୍ଯ୍ୟରେ ସାହାଯ୍ୟ କରୁଥିବାରୁ ଲୋକମାନଙ୍କର ସ୍ଥୂଳ ଦୃଷ୍ଟିରେ ସୁଖର କାରଣ ବୋଲି ପ୍ରତୀତ ହୁଏ, ମାତ୍ର ପରିଣାମରେ ଗୃହଦାହାଦି କରିବାରୁ ଦୁଃଖର କାରଣ ହୁଏ, ସେହିପରି କାମ ଅବିବେକ ମାନଙ୍କ ଚକ୍ଷୁରେ ସୁଖ ସେବ୍ୟ ହୁଏ ସତ, ମାତ୍ର ପରିଣାମରେ ଜ୍ଞାନର ପ୍ରତିବନ୍ଧକ ହୋଇ ନାନାପ୍ରକାର ଦୁଃଖର କାରଣ ହୁଏ । ସେହି ହେତୁରୁ କାମ ଜ୍ଞାନିମାନଙ୍କର ଚିରଶତ୍ରୁ ଅଟେ । ୩୯ ।

ଶ୍ଳୋକଃ ।

* ଇନ୍ଦ୍ରିୟାଣି ମନୋବୁଦ୍ଧି,ରସ୍ୟାଧିଷ୍ଠାନମୁଚ୍ୟତେ ।
ଏତୈର୍ବିମୋହୟତ୍ୟେଷ, ଜ୍ଞାନମାବୃତ୍ୟ ଦେହିନଂ । ୪୦ ।

ଅନ୍ୱୟଃ ।

ଇନ୍ଦ୍ରିୟାଣି ମନଃ ବୁଦ୍ଧିଃ ଅସ୍ୟ ଅଧିଷ୍ଠାନଂ ଉଚ୍ୟତେ । ଏଷଃ ଏତୈଃ ଜ୍ଞାନଂ ଆବୃତ୍ୟ ଦେହିନଂ ବିମୋହୟତି । ୪୦ ।

ଟୀକା ।

ଇଦାନୀଂ ତସ୍ୟାଧିଷ୍ଠାନଂ କଥୟନ୍ ଜୟୋପାୟମାହ, ଇନ୍ଦ୍ରିୟାଣୀତ୍ୟାଦ୍ୱାଭ୍ୟାଂ । ବିଷୟ-ଦର୍ଶନ-ଶ୍ରବଣାଦିଭିଃ ସଂକଳ୍ପେନାଧ୍ୟବସାୟେନ ଚ କାମସ୍ୟାବିର୍ଭାବାଦିନ୍ଦ୍ରିୟାଣି ଚ ମନଶ୍ଚ ବୁଦ୍ଧିଶ୍ଚାସ୍ୟାଧିଷ୍ଠାନମୁଚ୍ୟତେ ଏତୈରିନ୍ଦ୍ରିୟାଦିଭି-ର୍ଦର୍ଶନାଦିବ୍ୟାପାରବଦ୍ଭିରାଶ୍ରୟଭୂତୈ-ର୍ବିବେକଜ୍ଞାନମାବୃତ୍ୟ ଦେହିନଂ ବିମୋହୟତି । ୪୦ ।

ପଦବ୍ୟାଖ୍ୟା ।

ଇନ୍ଦ୍ରିୟାଣି—ଦଶ ଇନ୍ଦ୍ରିୟ, ମନଃ—ଚିତ୍ତ, ବୁଦ୍ଧିଃ—ବୁଝିବାର ଶକ୍ତି, ଅସ୍ୟ—ଏହାର (କାମର), ଅଧିଷ୍ଠାନଂ—ରହିବା ସ୍ଥାନ, ଉଚ୍ୟତେ—କଥିତ ହୁଏ, ଏତୈଃ—ଏମାନଙ୍କଦ୍ୱାରା, ବିମୋହୟତି—ବିମୋହିତ କରେ, ଏଷଃ—ଏହି (କାମ), ଜ୍ଞାନଂ—ଜ୍ଞାନକୁ, ଆବୃତ୍ୟ—ଆବୃତ କରି, ଦେହିନଂ—ଜୀବକୁ । ୪୦ ।

ଅନୁବାଦ ।

ଇନ୍ଦ୍ରିୟଗଣ, ମନ ଓ ବୁଦ୍ଧି କାମର ରହିବାସ୍ଥାନ ବୋଲି କଥିତ ହୁଏ । ଏହି କାମ, ଏମାନଙ୍କଦ୍ୱାରା ଜ୍ଞାନକୁ ଆବୃତ କରି, ଜୀବକୁ ବିମୋହିତ କରେ । ୪୦ ।

ବିଶଦବ୍ୟାଖ୍ୟା ।

ଦର୍ଶନ, ଶ୍ରବଣ, ସ୍ପର୍ଶ ପ୍ରଭୃତିଦ୍ୱାରା କାମର ଉତ୍ତେଜନା ହୁଏ ବୋଲି ଇନ୍ଦ୍ରିୟଗଣ କାମର ଅଧିଷ୍ଠାନ ଭୂମି । କାମ୍ୟବସ୍ତୁ ପାଇବାକୁ ମନେ ମନେ ସଂକଳ୍ପ କରାଯାଏ ଏବଂ ବୁଦ୍ଧିଦ୍ୱାରା ଅଧ୍ୟବସାୟ ବା କାମ୍ୟବସ୍ତୁ ପ୍ରାପ୍ତିର ଉପାୟ ସ୍ଥିର କରାଯାଏ ବୋଲି ମନ ଓ ବୁଦ୍ଧି ଏ ଦୁହେଁ ମଧ୍ୟ କାମର ଅଧିଷ୍ଠାନ ବା ରହିବା ଭୂମି । ସେହି ଇନ୍ଦ୍ରିୟ, ମନ ଓ ବୁଦ୍ଧିଦ୍ୱାରା କାମ ଜ୍ଞାନକୁ ଆବୃତ କରେ ଏବଂ ଦେହାଭିମାନୀ ଜୀବକୁ ବିମୋହିତ କରେ । ୪୦ ।

Digitized by PPRACHIN, SOA

ଶ୍ଲୋକଃ ।

* ତସ୍ମାତ୍ତ୍ୱମିନ୍ଦ୍ରିୟାଣ୍ୟାଦୌ, ନିୟମ୍ୟ ଭରତର୍ଷଭ ।
ପାପ୍ମାନଂ ପ୍ରଜହି ହ୍ୟେନଂ, ଜ୍ଞାନବିଜ୍ଞାନ-ନାଶନଂ । ୪୧ ।

ଅନ୍ୱୟଃ ।

ହେ ଭରତର୍ଷଭ ! ତସ୍ମାତ୍ ତ୍ୱଂ ଆଦୌ ଇନ୍ଦ୍ରିୟାଣି ନିୟମ୍ୟ ଏନଂ ଜ୍ଞାନବିଜ୍ଞାନ-ନାଶନଂ ପାପ୍ମାନଂ ହି ପ୍ରଜହି । ୪୧ ।

ଟୀକା ।

ଯସ୍ମାଦେବଂ ତସ୍ମାଦିତି । ତସ୍ମାଦାଦୌ ବିମୋହାତ୍ ପୂର୍ବମେବେନ୍ଦ୍ରିୟାଣି ମନୋବୁଦ୍ଧିଂ ଚ ନିୟମ୍ୟ ପାପ୍ମାନଂ ପାପରୂପମେନଂ କାମଂ ହି ସ୍ଫୁଟଂ ପ୍ରଜହି ପରିତ୍ୟଜ; ଜ୍ଞାନମାତ୍ମବିଷୟଂ, ବିଜ୍ଞାନଂ ଶାସ୍ତ୍ରୀୟଂ, ତୟୋର୍ନାଶନଂ ଯଦ୍ୱା ଜ୍ଞାନଂ ଶାସ୍ତ୍ରାଚାର୍ଯ୍ୟୋପଦେଶଜଂ, ବିଜ୍ଞାନଂ ନିଦିଧ୍ୟାସନଜଂ ତମେବ ଧୀରୋ ବିଜ୍ଞାୟ ପ୍ରଜ୍ଞାଂ କୁର୍ବୀତେତି ଶ୍ରୁତେଃ । ୪୧ ।

ପଦବ୍ୟାଖ୍ୟା ।

ତସ୍ମାତ୍—ସେହିହେତୁରୁ, ତ୍ୱଂ—ତୁମ୍ଭେ, ଇନ୍ଦ୍ରିୟାଣି—ଇନ୍ଦ୍ରିୟମାନଙ୍କୁ, ଆଦୌ—ପ୍ରଥମରେ, ନିୟମ୍ୟ—ଦମନ କରି, ଭରତର୍ଷଭ—ହେ ଅର୍ଜୁନ !, ପାପ୍ମାନଂ—ପାପଯୁକ୍ତ ବା ପାପସ୍ୱରୂପ, ପ୍ରଜହି—ବିନଷ୍ଟ କର, ହି—ନିଶ୍ଚୟ, ଏନଂ—ଏହାକୁ (କାମକୁ), ଜ୍ଞାନବିଜ୍ଞାନ-ନାଶନଂ—ଜ୍ଞାନ ଓ ବିଜ୍ଞାନର ବିନାଶକାରୀ । ୪୧ ।

ଅନୁବାଦ ।

ହେ ଅର୍ଜୁନ ! ସେହିହେତୁରୁ ତୁମ୍ଭେ ପ୍ରଥମେ ଇନ୍ଦ୍ରିୟମାନଙ୍କୁ ଦମନ କରି ଜ୍ଞାନ ଓ ବିଜ୍ଞାନର ବିନାଶକ ପାପସ୍ୱରୂପ କାମକୁ ବିନଷ୍ଟ କର । ୪୧ ।

ବିଶଦବ୍ୟାଖ୍ୟା ।

ଏ ଶ୍ଲୋକରେ 'ଭରତର୍ଷଭ' ପଦଦ୍ୱାରା ସମ୍ବୋଧନ କରି ଶ୍ରୀଭଗବାନ୍ ଅର୍ଜୁନଙ୍କୁ ମହାଶୌର୍ଯ୍ୟ ଓ ବୀର୍ଯ୍ୟବନ୍ତ ବଂଶଧର ବୋଲି ପ୍ରକାରାନ୍ତରରେ କାମରିପୁର ଦଳନ ବିଷୟରେ ଉତ୍ସାହିତ କଲେ । କାମର ଅଧିଷ୍ଠାନ ଭୂମି ବା ଦୁର୍ଗ ଅର୍ଥାତ୍ ଗଡ ଯେ ଇନ୍ଦ୍ରିୟ, ମନ ଓ ବୁଦ୍ଧି ତାହା ପୂର୍ବ ଶ୍ଲୋକରେ ବୁଝାଇ ଅଛନ୍ତି । ବର୍ତ୍ତମାନ କହୁଅଛନ୍ତି, ଯେ ତୁମ୍ଭେ ପ୍ରଥମରେ ଇନ୍ଦ୍ରିୟମାନଙ୍କୁ ଦମନ କରି ଅର୍ଥାତ୍ କାମର ପ୍ରଥମ ଓ ପ୍ରଧାନ ଦୁର୍ଗକୁ ଅଧିକାର କରି ସର୍ବ ପାପର ମୂଳ କାରଣ-କାମକୁ ବିନାଶ କର । ଇନ୍ଦ୍ରିୟ ଦମନ ହେଲେ ମନ ଓ ବୁଦ୍ଧି ସହଜରେ ବଶୀଭୂତ ହେବେ । କାହିଁକି ନା ବାହ୍ୟେନ୍ଦ୍ରିୟର ବୃତ୍ତିସହିତ ମନ ଓ ବୁଦ୍ଧି ମିଳିତ ହୋଇ ନାନା ଅନର୍ଥ ଘଟାନ୍ତି । ମନ ଓ ବୁଦ୍ଧି ବାହ୍ୟେନ୍ଦ୍ରିୟର ବଶୀଭୂତ ହେବାରୁ ଜ୍ଞାନ ଓ ବିଜ୍ଞାନ ନଷ୍ଟ ହୁଏ । ଜ୍ଞାନ ଅର୍ଥାତ୍ ଗୁରୁ ଉପଦେଶ ଓ ଶାସ୍ତ୍ରାଦି ପାଠଦ୍ୱାରା ଆତ୍ମାସମ୍ବନ୍ଧରେ ଯେଉଁ ଧାରଣା ଏବଂ ବିଜ୍ଞାନ ଅର୍ଥାତ୍ ଯୋଗାଦି ଅଭ୍ୟାସଦ୍ୱାରା ଆତ୍ମଦର୍ଶନ । ଯାହାର ମନ ଓ ବୁଦ୍ଧି ବାହ୍ୟେନ୍ଦ୍ରିୟର ବଶୀଭୂତ, ତାହାର ଜ୍ଞାନ ଓ ବିଜ୍ଞାନ ନଷ୍ଟ ହୁଏ । ଅତଏବ ପ୍ରଥମରେ ଇନ୍ଦ୍ରିୟମାନଙ୍କୁ ଦମନ କଲେ ମନ ଓ ବୁଦ୍ଧି ବଶୀଭୂତ ହେବେ ଏବଂ ମନ ଓ ବୁଦ୍ଧି ବଶୀଭୂତ ହେଲେ ଜ୍ଞାନବିଜ୍ଞାନର ବିନାଶକାରୀ କାମ ବିନଷ୍ଟ ହେବ । ସେଥିପାଇଁ ଶ୍ରୀଭଗବାନ୍ ପ୍ରଥମରେ ଇନ୍ଦ୍ରିୟମାନଙ୍କୁ ଦମନ କରିବାକୁ ଉପଦେଶ ଦେଲେ । ୪୧ ।

Digitized by PPRACHIN, SOA

### ଶ୍ଳୋକଃ ।

ଇନ୍ଦ୍ରିୟାଣି ପରାଣ୍ୟାହୁ, ରିନ୍ଦ୍ରିୟେଭ୍ୟଃ ପରଂ ମନଃ ।
ମନସସ୍ତୁ ପରା ବୁଦ୍ଧି, ର୍ଯୋ ବୁଦ୍ଧେଃ ପରତସ୍ତୁ ସଃ । ୪୨ ।

### ଅନ୍ୱୟଃ ।

ଇନ୍ଦ୍ରିୟାଣି ପରାଣି ଆହୁଃ, ଇନ୍ଦ୍ରିୟେଭ୍ୟଃ ମନଃ ପରଂ, ମନସଃ ବୁଦ୍ଧିଃ ତୁ ପରା, ଯଃ ତୁ ବୁଦ୍ଧେଃ ପରତଃ ସଃ । ୪୨ ।

### ଟୀକା ।

ଯତ୍ ତତ୍ପ୍ରଣିଧାନେନେନ୍ଦ୍ରିୟାଣି ନିୟନ୍ତୁଂ ଶକ୍ୟନ୍ତେ ତଦାତ୍ମସ୍ୱରୂପଂ ଦେହାଦିଭ୍ୟୋ ବିବିଚ୍ୟ ଦର୍ଶୟତି, ଇନ୍ଦ୍ରିୟାଣୀତି । ଇନ୍ଦ୍ରିୟାଣି ଦେହାଦିଭ୍ୟୋ ଗ୍ରାହ୍ୟେଭ୍ୟଃ ପରାଣି ଶ୍ରେଷ୍ଠାନ୍ୟାହୁଃ ସୂକ୍ଷ୍ମତ୍ୱାତ୍ ପ୍ରକାଶକତ୍ୱାଚ୍ଚ ଅତଏବ ତଦ୍ବ୍ୟତିରିକ୍ତତ୍ୱମର୍ଥାଦୁକ୍ତଂ ଭବତି, ଇନ୍ଦ୍ରିୟେଭ୍ୟଶ୍ଚ ସଂକଳ୍ପାତ୍ମକଂ ମନଃ ପରଂ, ତତ୍ପ୍ରବର୍ତ୍ତକତ୍ୱାତ୍, ମନସସ୍ତୁ ନିଶ୍ଚୟାତ୍ମିକା ବୁଦ୍ଧିଃ ପରା, ନିଶ୍ଚୟପୂର୍ବକତ୍ୱାତ୍ ସଂକଳ୍ପସ୍ୟ, ଯସ୍ତୁ ବୁଦ୍ଧେଃ ପରତସ୍ତତ୍ସାକ୍ଷିତ୍ୱେନାବସ୍ଥିତଃ ସର୍ବାନ୍ତରଃ ସ ଆତ୍ମା ତଂ ବିମୋହୟତି ଦେହିନମିତି ଦେହିଶବ୍ଦୋକ୍ତ ଆତ୍ମା ସ ଇତି ପରାମୃଶ୍ୟତେ । ୪୨ ।

### ପଦବ୍ୟାଖ୍ୟା ।

ଇନ୍ଦ୍ରିୟାଣି—ଇନ୍ଦ୍ରିୟମାନଙ୍କୁ, ପରାଣି—ଶ୍ରେଷ୍ଠ, ଆହୁଃ—କହନ୍ତି, ଇନ୍ଦ୍ରିୟେଭ୍ୟଃ—ସବୁ ଇନ୍ଦ୍ରିୟଅପେକ୍ଷା, ପରଂ—ଶ୍ରେଷ୍ଠ ମନଃ—ମନ, ମନସଃ—ମନଠାରୁ, ପରା—ଉତ୍କୃଷ୍ଟ, ବୁଦ୍ଧିଃ—ନିଶ୍ଚୟାତ୍ମିକାବୁଦ୍ଧି ବୁଦ୍ଧେଃ—ବୁଦ୍ଧିଠାରୁ, ଯଃ—ଯେ, ପରତଃ—ଶ୍ରେଷ୍ଠ, ତୁ—ପୁଣି, ସଃ—ସେ । ୪୨ ।

### ଅନୁବାଦ ।

ଦେହାଦି ଅପେକ୍ଷା ଇନ୍ଦ୍ରିୟ ଶ୍ରେଷ୍ଠ, ସକଳ ଇନ୍ଦ୍ରିୟ ଅପେକ୍ଷା ମନ ଶ୍ରେଷ୍ଠ, ମନ ଅପେକ୍ଷା ନିଶ୍ଚୟାତ୍ମିକା ବୁଦ୍ଧି ଶ୍ରେଷ୍ଠ, ପୁଣି ବୁଦ୍ଧି ଅପେକ୍ଷା ଆତ୍ମା ଶ୍ରେଷ୍ଠ ଅଟେ । ୪୨ ।

### ବିଶଦବ୍ୟାଖ୍ୟା ।

ଇନ୍ଦ୍ରିୟମାନଙ୍କର ଚେଷ୍ଟା ନ ହେଲେ ଶରୀର କିଛିମାତ୍ର କର୍ମ କରି ପାରିବ ନାହିଁ, ଏଥିପାଇଁ ସ୍ଥୂଳଶରୀରଠାରୁ ଇନ୍ଦ୍ରିୟମାନେ ଶ୍ରେଷ୍ଠ । ମନଃସଂଯୋଗ ନ ହେଲେ ଇନ୍ଦ୍ରିୟମାନେ ନିଜ ନିଜ କାର୍ଯ୍ୟ ଉତ୍ତମରୂପେ କରି ପାରନ୍ତି ନାହିଁ, ସୁତରାଂ ଇନ୍ଦ୍ରିୟମାନଙ୍କଠାରୁ ମନ ଶ୍ରେଷ୍ଠ । ବୁଦ୍ଧିର ସାହାଯ୍ୟ ନ ପାଇଲେ ମନରେ ସଂକଳ୍ପ ଉଦୟ ହୋଇ ପାରେ ନାହିଁ । କାହିଁକିନା ନିଶ୍ଚୟ ଜ୍ଞାନ ନ ହେଲେ ସଂକଳ୍ପ ଉଦୟ ହୁଏ ନାହିଁ, ସେହି ଜ୍ଞାନ ବୁଦ୍ଧିଦ୍ୱାରା ସ୍ଥିର ହୁଏ ଅତଏବ ବୁଦ୍ଧି ମନଠାରୁ ଶ୍ରେଷ୍ଠ ଏବଂ ଆତ୍ମାର ସତ୍ତା ଓ ପ୍ରକାଶ ନ ଥିଲେ ବୁଦ୍ଧିର ବିକାଶ ହେବାର ସମ୍ଭାବନା ନାହିଁ, ଅଥବା ଆତ୍ମା ବୁଦ୍ଧିର ଅଗମ୍ୟ ଅତଏବ ଆତ୍ମା ବୁଦ୍ଧି ଅପେକ୍ଷା ଶ୍ରେଷ୍ଠ । ଫଳକଥା ଏହି କି ଆତ୍ମାଠାରୁ ବଳି ଆଉ ଶ୍ରେଷ୍ଠ କଥା କିଛି ନାହିଁ । ବେଦରେ ମଧ୍ୟ ପ୍ରମାଣ ଅଛି ଯେ "ପୁରୁଷାନ୍ନ ପରଂ କିଞ୍ଚିତ୍" ଅର୍ଥାତ୍ ପରମାତ୍ମାଠାରୁ ଆଉ ଶ୍ରେଷ୍ଠ କିଛି ନାହିଁ । ୪୨ ।

Digitized by PPRACHIN, SOA

ଶ୍ଳୋକଃ ।

ଏବଂ ବୁଦ୍ଧେଃ ପରଂ ବୁଦ୍ଧ୍ୱା, ସଂସ୍ତଭ୍ୟାତ୍ମାନମାତ୍ମନା ।
ଜହି ଶତ୍ରୁଂ ମହାବାହୋ, କାମରୂପଂ ଦୁରାସଦଂ । ୪୩ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସମ୍ବାଦେ କର୍ମଯୋଗୋନାମ ତୃତୀୟୋଽଧ୍ୟାୟଃ । ୩ ।

---

ଅନ୍ୱୟଃ ।

ହେ ମହାବାହୋ ! ଏବ ବୁଦ୍ଧେଃ ପରଂ ବୁଦ୍ଧ୍ୱା, ଆତ୍ମାନଂ ଆତ୍ମନା ସଂସ୍ତଭ୍ୟ (ଏନଂ) କାମରୂପଂ ଦୁରାସଦଂ ଶତ୍ରୁଂ ଜହି ।

ଇତି ଶ୍ରୀଭଗବଦ୍ଗୀତାୟାଂ ଅନ୍ୱୟେ ତୃତୀୟୋଽଧ୍ୟାୟଃ । ୩ ।

---

ଟୀକା ।

ଉପସଂହରତି, ଏବମିତି । ବୁଦ୍ଧେରେବ ବିଷୟେନ୍ଦ୍ରିୟାଦିଜନ୍ୟାଃ କାମାଦୟଃ ବିକ୍ରିୟାଃ ଅତ୍ମା ତୁ ନିର୍ବ୍ବିକାରସ୍ତତ୍ସାକ୍ଷୀଭେଦ ବୁଦ୍ଧେଃ ପର-ମାତ୍ମାନଂ ବୁଦ୍ଧ୍ୱା ଅତ୍ମନା ଏବମ୍ଭୂତୟା ନିଶ୍ଚୟାତ୍ମିକୟା ବୁଦ୍ଧ୍ୟା ଆତ୍ମାନଂ ମନଃ ସଂସ୍ତଭ୍ୟ ନିଶ୍ଚଳଂ କୃତ୍ୱା କାମରୂପିଣଂ ଶତ୍ରୁଂ ଜହି ମାରୟ ଦୁରାସଦଂ ଦୁଃଖେନାସାଦନୀୟଂ ଦୁର୍ବ୍ବିଜ୍ଞେୟମିତ୍ୟର୍ଥଃ ।

ସ୍ୱଧର୍ମେଣ ଯମାରାଧ୍ୟ ଭକ୍ତ୍ୟା ମୁକ୍ତିମିତା ବୁଧାଃ ।
ତଂ କୃଷ୍ଣଂ ପରମାନନ୍ଦଂ ତୋଷୟେତ୍ ସର୍ବ୍ବକର୍ମଭିଃ । ୪୩ ।
ଇତି ସ୍ୱାମିକୃତଟୀକାୟାଂ ତୃତୀୟୋଽଧ୍ୟାୟଃ । ୩ ।

---

ପଦବ୍ୟାଖ୍ୟା ।

ଏବଂ—ଏପରି, ବୁଦ୍ଧେଃ—ବୁଦ୍ଧିଠାରୁ, ପରଂ—ଶ୍ରେଷ୍ଠ, ବୁଦ୍ଧ୍ୱା—ଜାଣି, ସଂସ୍ତଭ୍ୟ—ନିଶ୍ଚଳ କରି, ଆତ୍ମାନଂ—ମନକୁ ଆତ୍ମନା—ନିଶ୍ଚୟାତ୍ମକ ବୁଦ୍ଧିରେ, ଜହି—ବିନାଶ କର, ଶତ୍ରୁଂ—ବୈରୀକୁ, ମହାବାହୋ—ହେ ମହାଭୁଜ !, କାମରୂପଂ—କାମସ୍ୱରୂପ, ଦୁରାସଦଂ—କଷ୍ଟସାଧ୍ୟ । ୪୩ ।

ଇତି ଶ୍ରୀଭଗବଦ୍ଗୀତାର ପଦବ୍ୟାଖ୍ୟାରେ ତୃତୀୟ ଅଧ୍ୟାୟ ସମାପ୍ତ । ୩ ।

---

ଅନୁବାଦ ।

ହେ ମହାବାହୋ ! ଏ ପ୍ରକାରେ (ଅତ୍ମାକୁ) ବୁଦ୍ଧିଠାରୁ ଶ୍ରେଷ୍ଠ ଜ୍ଞାନ କରି ଓ ଏକାଗ୍ରତାବୁଦ୍ଧିଦ୍ୱାରା ମନକୁ ନିଶ୍ଚଳ କରି କାମରୂପ ଦୁର୍ଜ୍ଜୟ ଶତ୍ରୁକୁ ବିନାଶ କର । ୪୩ ।
ଇତି ଶ୍ରୀଭଗବଦ୍ଗୀତାର ଉତ୍କଳାନୁବାଦରେ ତୃତୀୟ ଅଧ୍ୟାୟ ସମାପ୍ତ । ୩ ।



Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଆତ୍ମା ବୁଦ୍ଧିଠାରୁ ଶ୍ରେଷ୍ଠ ଏହା ପୂର୍ବଶ୍ଳୋକ ଅନୁସାରେ ବୁଝି ଓ 'ଆତ୍ମା' ଅର୍ଥାତ୍ ସଂଶୟ-ବିହୀନ ବୁଦ୍ଧି ଦ୍ୱାରା 'ଆତ୍ମା' ଅର୍ଥାତ୍ ମନକୁ ନିଶ୍ଚଳ କଲେ କାମରିପୁକୁ ଜୟ କରାଯାଇ ପାରେ । ଯେତେଦିନ ପର୍ଯ୍ୟନ୍ତ ମନ ସ୍ଥିର ହୋଇ ଯାଉ ନାହିଁ, ତେତେଦିନଯାଏ ସଂକଳ୍ପ ବା ପ୍ରତିଜ୍ଞା ସ୍ଥିର ହେବ କିପରି ? ଏବଂ ତାହା ନ ହେଲେ ଆତ୍ମଜ୍ଞାନ ବା କିପରି ହେବ ? ଫଳକଥା ଏହି କି ଆତ୍ମଜ୍ଞାନ ଲାଭର ଉପାୟ ପ୍ରଥମେ ଇନ୍ଦ୍ରିୟଦମନ ଓ ପରେ ମନର ନିଶ୍ଚଳତା ସମ୍ପାଦନ ।

ତୃତୀୟ ଅଧ୍ୟାୟରେ ଚିତ୍ତଶୁଦ୍ଧିର ଉପାୟରୂପ କର୍ମଯୋଗକୁ ମୁଖ୍ୟରୂପେ ଓ କର୍ମଯୋଗର ଫଳସ୍ୱରୂପ ଜ୍ଞାନଯୋଗକୁ ଗୌଣରୂପେ ବ୍ୟାଖ୍ୟା କରି ହୋଇଅଛି । ୪୩ ।

ଇତି ଶ୍ରୀଭଗବଦ୍ଗୀତାର ବିଶଦବ୍ୟାଖ୍ୟାରେ ତୃତୀୟ ଅଧ୍ୟାୟ ସମାପ୍ତ । ୩ ।

Digitized by PPRACHIN, SOA

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ଚତୁର୍ଥୋଽଧ୍ୟାୟଃ ।

### ଜ୍ଞାନଯୋଗଃ ।

ଶ୍ଲୋକଃ ।

ଶ୍ରୀଭଗବାନୁବାଚ ।—ଇମଂ ବିବସ୍ୱତେ ଯୋଗଂ, ପ୍ରୋକ୍ତବାନହମବ୍ୟୟଂ ।
ବିବସ୍ୱାନ୍ ମନବେ ପ୍ରାହ, ମନୁରିକ୍ଷ୍ୱାକବେଽବ୍ରବୀତ୍ । ୧ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ଅହଂ ଇମଂ ଅବ୍ୟୟଂ ଯୋଗଂ ବିବସ୍ୱତେ ପ୍ରୋକ୍ତବାନ୍, ବିବସ୍ୱାନ୍ ମନବେ ପ୍ରାହ, ମନୁଃ ଇକ୍ଷ୍ୱାକବେ ଅବ୍ରବୀତ୍ । ୧ ।

ଟୀକା ।

ଆବର୍ତ୍ତିତଶ୍ରେଣିବାବାବଶଷ୍ଟର୍ଭୁଂ ସ୍ୱୟଂ ହରିଃ । ତତ୍ତ୍ୱଂପଦବିବେକାର୍ଥଂ କର୍ମଯୋଗଂ ପ୍ରଶଂସତି ।

ଏବଂ ତାବଦଧ୍ୟାୟଦ୍ୱୟେନ କର୍ମଯୋଗୋପାୟକ-ଜ୍ଞାନଯୋଗୋ ମୋକ୍ଷସାଧନତ୍ୱେନୋକ୍ତସ୍ତମେବ ବ୍ରହ୍ମାର୍ପଣାଦିଗୁଣ-ବିଧାନେନ ତତ୍ତ୍ୱଂପଦାର୍ଥବିବେକାଦନା ଚ ପ୍ରପଞ୍ଚୟିଷ୍ୟନ୍ ପ୍ରଥମଂ ତାବନ୍ତୁ ପରମ୍ପରାପ୍ରାପ୍ତତ୍ୱେନ ସ୍ତୁବନ୍ ଶ୍ରୀଭଗବାନୁବାଚ ଇମମିତି ତ୍ରିଭିଃ । ଅବ୍ୟୟଫଲତ୍ୱାଦବ୍ୟୟଂ ଇମଂ ଯୋଗଂ ପୂର୍ବଂ ଅହଂ ବିବସ୍ୱତେ ଆଦିତ୍ୟାୟ କଥିତବାନ୍ ସ ଚ ସ୍ୱପୁତ୍ରାୟ ମନବେ ଶ୍ରାଦ୍ଧଦେବାୟ ପ୍ରାହ ସ ଚ ମନୁଃ ସ୍ୱପୁତ୍ରାୟେକ୍ଷ୍ୱାକବେଽବ୍ରବୀତ୍ । ୧ ।

ପଦବ୍ୟାଖ୍ୟା ।

ଇମଂ—ଏହି (ଜ୍ଞାନଯୋଗ), ବିବସ୍ୱତେ—ସୂର୍ଯ୍ୟଙ୍କୁ, ଯୋଗଂ—ଯୋଗକୁ, ପ୍ରୋକ୍ତବାନ୍—କହିଥିଲୁଁ, ଅହଂ—ଅମ୍ଭେ, ଅବ୍ୟୟଂ—ନାଶରହିତ—ନିତ୍ୟ, ବିବସ୍ୱାନ୍—ସୂର୍ଯ୍ୟ, ମନବେ—ମନୁଙ୍କୁ, ପ୍ରାହ—କହିଥିଲେ, ମନୁଃ—ସୂର୍ଯ୍ୟପୁତ୍ର, ଇକ୍ଷ୍ୱାକବେ—ଇକ୍ଷ୍ୱାକୁ ନାମକ ରାଜାଙ୍କୁ, ଅବ୍ରବୀତ୍—କହିଥିଲେ । ୧ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ଏହି ନିତ୍ୟଯୋଗକୁ ଅମ୍ଭେ ସୂର୍ଯ୍ୟଙ୍କୁ କହିଥିଲୁଁ । ସୂର୍ଯ୍ୟ ମନୁଙ୍କୁ କହିଥିଲେ ଓ ମନୁ ଇକ୍ଷ୍ୱାକୁଙ୍କୁ କହିଥିଲେ । ୧ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଦ୍ୱିତୀୟ ଓ ତୃତୀୟ ଅଧ୍ୟାୟରେ ଶ୍ରୀଭଗବାନ୍ ଜ୍ଞାନଯୋଗ ଓ ତାହା ସାଧନର ଉପାୟ-ସ୍ୱରୂପ କର୍ମଯୋଗର ପ୍ରଶଂସା କରିଅଛନ୍ତି । ସେହି କର୍ମଯୋଗର ଫଳ ଆତ୍ମଜ୍ଞାନ ଲାଭ । ଆତ୍ମ-ଜ୍ଞାନ ଅର୍ଥାତ୍ ଜ୍ଞାନଯୋଗ, ଅବ୍ୟୟ ଓ ନିତ୍ୟ ଅଟେ । ଏହି ଯୋଗ, ଯେ ବହୁକାଳରୁ ପ୍ରଚଳିତ ଅଛି, ତାହା ପ୍ରମାଣ କରିବାକୁ ଶ୍ରୀଭଗବାନ୍ କହିଲେ, ଯେ ଏହି ଯୋଗକୁ ଆମ୍ଭେ ପ୍ରଥମେ ସୂର୍ଯ୍ୟଙ୍କୁ କହିଥିଲୁଁ । ପୁଣି ସେହି ଯୋଗକୁ ସୂର୍ଯ୍ୟ ଆପଣା ପୁତ୍ର ମନୁଙ୍କୁ କହିଥିଲେ, ମନୁ ନିଜ ପୁତ୍ର ଇକ୍ଷ୍ୱାକୁଙ୍କୁ କହିଲେ । ଏହି ଇକ୍ଷ୍ୱାକୁ ସୂର୍ଯ୍ୟବଂଶୀୟମାନଙ୍କ ମଧ୍ୟରୁ ପ୍ରଥମେ 'ରାଜା' ପଦ ପ୍ରାପ୍ତ ହୋଇଥିଲେ ବୋଲି ସୂର୍ଯ୍ୟବଂଶୀୟ କ୍ଷତ୍ରିୟମାନେ ପ୍ରାଚୀନତମ ରାଜବଂଶ ଅଟନ୍ତି । ଅତଏବ କ୍ଷତ୍ରିୟମାନେ ବହୁକାଳରୁ ଏହି ଯୋଗ ଅବଲମ୍ବନ କରି ଗୌରବପ୍ରାପ୍ତ ହୋଇଥିବା ଓ ଏ ଯୋଗ ଚିରକାଳରୁ ପ୍ରଚଳିତ ଥିବାର ସ୍ପଷ୍ଟ ଜଣା ଯାଉଅଛି । ୧ ।

ଶ୍ଳୋକଃ ।

ଏବଂ ପରମ୍ପରାପ୍ରାପ୍ତମିମଂ ରାଜର୍ଷୟୋ ବିଦୁଃ

ସ କାଳେନେହ ମହତା, ଯୋଗୋ ନଷ୍ଟଃ ପରନ୍ତପ । ୨ ।

ଅନ୍ୱୟଃ ।

ଏବଂ ପରମ୍ପରାପ୍ରାପ୍ତଂ ଇମଂ ରାଜର୍ଷୟଃ ବିଦୁଃ, ହେ ପରନ୍ତପ ! ସଃ ଯୋଗଃ ଇହ ମହତା କାଳେନ ନଷ୍ଟଃ । ୨ ।

ଟୀକା ।

ଏବମିତି । ଏବଂ ରାଜାନଶ୍ଚ ତେ ଋଷୟଶ୍ଚେତି ଅନ୍ୟେଽପି ରାଜର୍ଷୟୋ ନିମିପ୍ରମୁଖାଃ ସ୍ୱପିତ୍ରାଦିଭିରିକ୍ଷ୍ୱାକୁପ୍ରମୁଖୈଃ ପ୍ରୋକ୍ତମିମଂ ଯୋଗଂ ବିଦୁର୍ଜ୍ଜାନନ୍ତି ସ୍ମ ଅଦ୍ୟତନାନାମଜ୍ଞାନେ କାରଣମାହ, ହେ ପରନ୍ତପ ! ଶତ୍ରୁତାପନ ! ସ ଯୋଗଃ କାଳ-ବଶାଦିହ ଲୋକେ ନଷ୍ଟୋ ବିଚ୍ଛିନ୍ନଃ । ୨ ।

ପଦବ୍ୟାଖ୍ୟା ।

ଏବ—ଏପ୍ରକାର, ପରମ୍ପରାପ୍ରାପ୍ତଂ—ପୁରୁଷାନୁକ୍ରମେ ପ୍ରାପ୍ତ, ଇମଂ—ଏହାକୁ, ରାଜର୍ଷୟଃ ବିଦୁଃ—ନିମି ପ୍ରଭୃତି ରାଜର୍ଷିମାନେ ଜାଣିଥିଲେ, ସଃ—ସେହି, କାଳେନ—କାଳବଶରେ, ଇହ—ଏହି ଲୋକରେ, ମହତା—ଦୀର୍ଘ, ଯୋଗୋ ନଷ୍ଟଃ—ଯୋଗ ଲୋପ ପାଇଅଛି, ପରନ୍ତପ—ହେ ଶତ୍ରୁତାପନ (ଅର୍ଜ୍ଜୁନ) ! । ୨ ।

ଅନୁବାଦ ।

ରାଜର୍ଷିମାନେ ଏହି ଯୋଗକୁ ପୁରୁଷାନୁକ୍ରମେ ଉପଦେଶଦ୍ୱାରା ପ୍ରାପ୍ତ ହୋଇ ଜାଣିଥିଲେ । ହେ ପରନ୍ତପ ! କାଳକ୍ରମରେ ସେହି ଯୋଗ ଲୋପ ହୋଇଅଛି । ୨ ।

ବିଶଦବ୍ୟାଖ୍ୟା ।

ଇକ୍ଷ୍ୱାକୁଙ୍କଠାରୁ ନିମି ଓ ନିମିଙ୍କଠାରୁ ତାଙ୍କ ପୁତ୍ରାଦି ଏବଂ ତାଙ୍କଠାରୁ ପୌତ୍ରମାନେ, ଏହିପରି ପୁରୁଷାନୁକ୍ରମରେ ଏହି ଯୋଗକୁ ଶୁଣି ରାଜର୍ଷିମାନେ ଜାଣୁଥିଲେ । ମାତ୍ର ବହୁକାଳ ଏହିପରି ଗତ ହେବାରୁ, ଲୋକମାନେ କ୍ରମେ୨ କାମ କ୍ରୋଧାଦିର ବଶୀଭୂତ ହୋଇ

Digitized by PPRACHIN, SOA

ଯୋଗକୁ ଛାଡ଼ିଲେ । ଅର୍ଥାତ୍ ବର୍ତ୍ତମାନ ଆଉ ଛତ୍ରିୟ ନିଷ୍କାମକର୍ମଯୋଗର ଅନୁଷ୍ଠାନଦ୍ୱାରା ଜ୍ଞାନଯୋଗ ସାଧନ ପ୍ରଚଳିତ ନାହିଁ ।

'ପରନ୍ତପ' ଏହି ସମ୍ବୋଧନଦ୍ୱାରା ଶ୍ରୀଭଗବାନ୍ ଅର୍ଜୁନଙ୍କୁ ଏହି କଥା ଇଙ୍ଗିତ କଲେ, ଯେ ତୁମ୍ଭେ ଶତ୍ରୁତାପନ ଅର୍ଥାତ୍ କାମ କ୍ରୋଧାଦି ଅନ୍ତଃଶତ୍ରୁକୁ ଜୟ କରିଅଛ, ଯେହେତୁ ତୁମ୍ଭର ସ୍ୱର୍ଗରେ ଉର୍ବଶୀ ପ୍ରଭୃତି ଅପ୍ସରାଙ୍କୁ ଉପେକ୍ଷା କରିବାର କଥା ବିଖ୍ୟାତ ଅଛି । ଅତଏବ ତୁମ୍ଭେ ଏ ଯୋଗର ପ୍ରକୃତ ଅଧିକାରୀ । ୨ ।

ଶ୍ଳୋକଃ ।

ସ ଏବାୟଂ ମୟା ତେଽଦ୍ୟ, ଯୋଗଃ ପ୍ରୋକ୍ତଃ ପୁରାତନଃ ।
ଭକ୍ତୋଽସି ମେ ସଖା ଚେତି, ରହସ୍ୟଂ ହ୍ୟେତଦୁତ୍ତମଂ । ୩ ।

ଅନ୍ୱୟଃ ।

(ତ୍ୱଂ) ମେ ଭକ୍ତଃ ସଖା ଚ ଅସି ଇତି ସ ଏବ ଅୟଂ ପୁରାତନଃ ଯୋଗଃ ମୟା ତେ ଅଦ୍ୟ ପ୍ରୋକ୍ତଃ । ଏତତ୍ ହି ଉତ୍ତମଂ ରହସ୍ୟଂ । ୩ ।

ଟୀକା ।

ସ ଏବାୟମିତି । ସ ଏବାୟଂ ଯୋଗୋ ବଚ୍ଛିନ୍ନେ ସମ୍ପ୍ରଦାୟେ ସତି ପୁନଃ ମୟା ତେ ତୁଭ୍ୟମୁକ୍ତଂ ଯତସ୍ତ୍ୱଂ ମମ ଭକ୍ତୋଽସି ସଖା ଚ ଅନ୍ୟସ୍ମୈ ମୟା ନୋଚ୍ୟତେ ହି ଯସ୍ମାଦେତଦୁତ୍ତମଂ ରହସ୍ୟଂ । ୩ ।

ପଦବ୍ୟାଖ୍ୟା ।

ସଃ—ସେହି, ଏବ—କେବଳ, ଅୟଂ—ଏହି, ମୟା—ମୁଁ, ତେ—ତୁମ୍ଭଙ୍କୁ, ଅଦ୍ୟ—ଆଜ, ଯୋଗଃ—ଯୋଗକୁ, ପ୍ରୋକ୍ତଃ—କହିଲୁଁ, ପୁରାତନଃ—ପୁରୁଣା, ଭକ୍ତଃ ଅସି—ଭକ୍ତ ଅଛ, ମେ—ଆମ୍ଭର, ସଖା ଚ—ମିତ୍ର ମଧ୍ୟ, ଇତି—ଏହି ହେତୁରୁ, ରହସ୍ୟଂ—ଗୋପନୀୟ କଥା, ହି—ଯେହେତୁ, ଏତତ୍—ଏହା, ଉତ୍ତମଂ—ଉତ୍କୃଷ୍ଟ । ୩ ।

ଅନୁବାଦ ।

ତୁମ୍ଭେ ଆମ୍ଭର ଭକ୍ତ ଓ ସଖା ଅଛ ବୋଲି ସେହି ପୁରାତନ ଯୋଗକୁ ଆମ୍ଭେ ଆଜ ତୁମ୍ଭଙ୍କୁ କହିଲୁଁ । କାହିଁକନା ଏହା ଉତ୍ତମ ଓ ଗୋପନୀୟ ଅଟେ । ୩ ।

ବିଶଦବ୍ୟାଖ୍ୟା ।

ଏହି ପୁରାତନ ଜ୍ଞାନଯୋଗ ଅତ୍ୟନ୍ତ ଗୋପନୀୟ; ଏହା ଉପଯୁକ୍ତ ଅଧିକାରୀ ଶିଷ୍ୟ-ଭିନ୍ନ ଅଉ କାହାରିକି କୁହା ଯାଏ ନାହିଁ । ମାତ୍ର ତୁମ୍ଭେ ଆମ୍ଭର ଭକ୍ତ ଏବଂ ସଖା ଥିବାରୁ ଆମ୍ଭେ ଏହା ତୁମ୍ଭଙ୍କୁ କହିଲୁଁ । ପୂର୍ବରେ କେବଳ ସୂର୍ଯ୍ୟଙ୍କୁ କହିଥିଲୁଁ ।

ଏ ଶ୍ଳୋକରେ ଅର୍ଜୁନଙ୍କୁ 'ଭକ୍ତ' କହିବାଦ୍ୱାରା ଶ୍ରୀଭଗବାନ୍ ଏହି ସଙ୍କେତ କଲେ, ଯେ ତୁମ୍ଭେ ଆମ୍ଭର ଆଦେଶ ଅନୁସାରେ ଜ୍ଞାନଯୋଗର ସାଧନ କରିବ ଏବଂ 'ସଖା' କହି-ବାର ତାତ୍ପର୍ଯ୍ୟ ଏହି, ଯେ ଗୋପନୀୟ କଥା ସଖାକୁ କହିବାର ବିଧି ଅଛି । ଯଥା,—

ଦଦାତି ପ୍ରତିଗୃହ୍ଣାତି ଗୁହ୍ୟମାଖ୍ୟାତି ପୃଚ୍ଛତି ।
ଭୁଂକ୍ତେ ଭୋଜୟତେ ଚୈବ ଷଡ୍ବିଧଂ ପ୍ରୀତିଲକ୍ଷଣଂ ।

Digitized by PPRACHIN, SOA

ଅର୍ଥାତ୍ ପ୍ରକୃତ ବନ୍ଧୁ ସହିତ ଆଦାନ, ପ୍ରଦାନ, ଗୋପନୀୟ କଥା ପ୍ରକାଶ କରିବା ଓ ପଚାରିବା ଏବଂ ଖାଇବା ଓ ଖୁଆଇବା କର୍ମ ଚଳେ ।

ପୁଣି ଭକ୍ତ ବା ଅଧିକାରୀ ଶିଷ୍ୟ ଭିନ୍ନ ଅନ୍ୟକୁ ଯେ ଏ ଜ୍ଞାନଯୋଗର କଥା କହିବା ଉଚିତ ନୁହେଁ, ତାହା ବେଦରେ ପ୍ରମାଣ ଅଛି ଯଥା,—

"ବିଦ୍ୟାହବୈ ବ୍ରାହ୍ମଣମାଜଗାମ ଗୋପାୟମାଂଶେ ବଧିଷ୍ଟେଽହମସ୍ମି ।
ଅସୂୟକାୟାନୃଜବେଽଯତାୟ ନ ମାଂ ବ୍ରୂୟାଃ ଅବୀର୍ଯ୍ୟବତୀସ୍ତଥା ସ୍ୟାଂ"

ଅର୍ଥାତ୍ ଏକସମୟରେ ସ୍ୱୟଂ ବ୍ରହ୍ମବିଦ୍ୟା ବ୍ରହ୍ମଜ୍ଞାନୀ ବ୍ରାହ୍ମଣଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, ଯେ ତୁମ୍ଭେ ମତେ ଅତି ଗୋପନରେ ରଖିବ । ବିବେକ ଓ ବୈରାଗ୍ୟାଦିଯୁକ୍ତ ପ୍ରକୃତ ଅଧିକାରୀ ଭିନ୍ନ ହିଂସାଳୁ କୁଟିଳସ୍ୱଭାବ ଓ ଅଜିତେନ୍ଦ୍ରିୟ ବ୍ୟକ୍ତିଙ୍କୁ କଦାପି ସମର୍ପଣ କରିବ ନାହିଁ । ତାହା କଲେ ମୁଁ ଶୁଭଫଳ ପ୍ରସବ କରି ପାରିବି ନାହିଁ । ୩ ।

ଶ୍ଳୋକଃ ।

ଅର୍ଜୁନଉବାଚ—ଅପରଂ ଭବତୋଜନ୍ମ, ପରଂ ଜନ୍ମ ବିବସ୍ୱତଃ ।
କଥମେତଦ୍ୱିଜାନୀୟାଂ, ତ୍ୱମାଦୌ ପ୍ରୋକ୍ତବାନିତି । ୪ ।

ଅନ୍ୱୟଃ ।

ଅର୍ଜୁନଃ ଉବାଚ । ଭବତଃ ଜନ୍ମ ଅପରଂ ବିବସ୍ୱତଃ ଜନ୍ମ ପରଂ ତ୍ୱଂ ଆଦୌ ବିବସ୍ୱତେ ପ୍ରୋକ୍ତବାନ୍ ଇତି ଏତତ୍ କଥଂ ବିଜାନୀୟାଂ ? । ୪ ।

ଟୀକା ।

ଭଗବତୋବିବସ୍ୱନ୍ତଂ ପ୍ରତି ଯୋଗୋପଦେଶାସମ୍ଭବ ପଶ୍ୟନ୍ନର୍ଜୁନ ଉବାଚ । ଅପରମିତି । ଅପରଂ ଅର୍ବାଚୀନଂ ତବ ଜନ୍ମ ପରଂ ପ୍ରାକ୍କାଳୀନଂ ବିବସ୍ୱତୋଜନ୍ମ ତସ୍ମାତ୍‌ତ୍ୱମାଧୁନାତନଦ୍ୱାର୍ଚ୍ଚିରନ୍ତନାୟ ବିବସ୍ୱତେ ତ୍ୱମାଦୌ ଯୋଗଂ ପ୍ରୋକ୍ତବାନିତ୍ୟେତତ୍ କଥମହଂ ଜାନୀୟାଂ ଜ୍ଞାତୁଂ ଶକ୍ନୁୟାଂ । ୪ ।

ପଦବ୍ୟାଖ୍ୟା ।

ଅପରଂ—ଅଧୁନିକ ଅର୍ଥାତ୍ ଏହି କାଳରେ, ଭବତୋଜନ୍ମ—ଆପଣଙ୍କର ଜନ୍ମ, ପରଂ—ପୂର୍ବକାଳୀନ, ଜନ୍ମ—ଉତ୍ପତ୍ତି, ବିବସ୍ୱତଃ—ସୂର୍ଯ୍ୟଙ୍କର, କଥଂ—କିପରି, ଏତତ୍—ଏହା, ବିଜାନୀୟାଂ—ଜାଣି ପାରିବି, ତ୍ୱଂ—ଆପଣ, ଆଦୌ—ପ୍ରଥମରେ, ପ୍ରୋକ୍ତବାନ୍—କହିଥିଲେ, ଇତି—ଏହା । ୪ ।

ଅନୁବାଦ ।

ଅର୍ଜୁନ କହିଲେ, ଆପଣଙ୍କର ଜନ୍ମ ଆଧୁନିକ ଓ ସୂର୍ଯ୍ୟଙ୍କ ଜନ୍ମ ପ୍ରାଚୀନ । ତେବେ ଆପଣ ପ୍ରଥମରେ ସୂର୍ଯ୍ୟଙ୍କୁ କହିଥିଲେ ଏହା କିପରି ଜାଣି ପାରିବି ? । ୪ ।

ବିଶଦବ୍ୟାଖ୍ୟା ।

ପ୍ରଥମ ଶ୍ଳୋକରେ ଶ୍ରୀଭଗବାନ୍ କହିଥିଲେ, ଯେ 'ଏ ଯୋଗ ଆମ୍ଭେ ପ୍ରଥମେ ସୂର୍ଯ୍ୟଙ୍କୁ ଉପଦେଶ ଦେଇଥିଲୁ' । ଅର୍ଜୁନଙ୍କର ସେ କଥାରେ ସନ୍ଦେହ ହେବାରୁ ପ୍ରଶ୍ନ କଲେ, କି ଆପଣଙ୍କର ଜନ୍ମ ଆଧୁନିକ ଅର୍ଥାତ୍ ଆପଣ ଏହି ଦ୍ୱାପରଯୁଗର ଶେଷଭାଗରେ ଜନ୍ମଗ୍ରହଣ

Digitized by PPRACHIN, SOA

କରଅଛନ୍ତି, ସୂର୍ଯ୍ୟ ତ ସୃଷ୍ଟିର ଆଦକାଳରୁ ଜନ୍ମ ପରିଗ୍ରହ କରଅଛନ୍ତି, ଆପଣ ତାଙ୍କୁ ଯୋଗର ଉପଦେଶ ଦେଇଥିଲେ, ଏହା କପରି ସମ୍ଭବ ହୋଇପାରେ ? । ୪ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—ବହୂନି ମେ ବ୍ୟତୀତାନି, ଜନ୍ମାନି ତବ ଚାର୍ଜୁନ ।
ତାନ୍ୟହଂ ବେଦ ସର୍ବାଣି, ନ ତ୍ୱଂ ବେତ୍ଥ ପରନ୍ତପ । ୫ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ହେ ଅର୍ଜୁନ ! ମେ ତବ ଚ ବହୂନି ଜନ୍ମାନି ବ୍ୟତୀତାନି, ହେ ପରନ୍ତପ ! ତାନି ସର୍ବାଣି ଅହଂ ବେଦ ତ୍ୱଂ ନ ବେତ୍ଥ । ୫ ।

ଟୀକା ।

ତୂପାନ୍ତରେଣୋପଦେଷ୍ଟୃତ୍ୱାନତ୍ୟଭିପ୍ରାୟେଣୋତ୍ତରଂ ଶ୍ରୀଭଗବାନୁବାଚ । ବହୂନୀତି । ତାନ୍ୟହଂ ବେଦ ବେଦ୍ମି ଅଲୁପ୍ତବିଦ୍ୟାଶକ୍ତିତ୍ୱାତ୍ ତ୍ୱଂ ତୁ ନ ବେତ୍ଥ ବେତ୍ସି ଅବିଦ୍ୟାବୃତତ୍ୱାତ୍ । ୫ ।

ପଦବ୍ୟାଖ୍ୟା ।

ବହୂନି—ବହୁତ, ମେ—ଆମ୍ଭର, ବ୍ୟତୀତାନି—ଗତ ହୋଇଅଛି, ଜନ୍ମାନି—ଜନ୍ମ ସବୁ, ତବ ଚ—ତୁମ୍ଭର ମଧ, ଅର୍ଜୁନ—ହେ ଅର୍ଜୁନ !, ତାନି—ସେମାନଙ୍କୁ, ଅହଂ—ଆମ୍ଭେ, ବେଦ—ଜାଣୁଁ, ସର୍ବାଣି—ସମସ୍ତ, ନ—ନାହିଁ, ତ୍ୱଂ—ତୁମ୍ଭେ, ବେତ୍ଥ—ଜାଣ, ପରନ୍ତପ—ହେ ଶତ୍ରୁତାପନ ! । ୫ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜୁନ ! ଆମ୍ଭର ଓ ତୁମ୍ଭର ଅନେକ ଜନ୍ମ ଗତ ହୋଇ ଯାଇଅଛି । ହେ ପରନ୍ତପ ! ତାହା ସବୁ ଆମ୍ଭେ ଜାଣୁ, ମାତ୍ର ତୁମ୍ଭେ ଜାଣ ନାହିଁ । ୫ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ଯେ ହେ ଅର୍ଜୁନ ! ତୁମ୍ଭର ଏବଂ ଆମ୍ଭର ଅନେକ ଜନ୍ମ ଗତ ହୋଇଅଛି, ତାହା ତୁମ୍ଭେ ଜାଣି ପାରୁ ନାହଁ, କାହିଁକନା ତୁମ୍ଭେ ଅଜ୍ଞାନଦ୍ୱାରା ଆବୃତ ଅଛ । ମାତ୍ର ମାୟାଦ୍ୱାରା ଆମ୍ଭର ଶକ୍ତି କ୍ଷୟ ହୋଇ ନ ଥିବାରୁ ଅର୍ଥାତ୍ ଆମ୍ଭେ ମାୟାର ଅଧୀନରେ ନ ଥିବାରୁ ତୁମ୍ଭର ଓ ଆମ୍ଭର ଅନେକ ଜନ୍ମ ଗତ ହୋଇଥିବା କଥା ଅବଗତ ଅଛୁଁ । ତୁମ୍ଭର ସ୍ମରଣ ନ ରହିବାର କାରଣ ଅଜ୍ଞାନତା ଅଟେ । ରୋଗ, ଶୋକ, ଭୟ ଓ ଉପବାସ ପ୍ରଭୃତି ଦ୍ୱାରା, ଯେ ସ୍ମରଣ ଶକ୍ତିର ହ୍ରାସ ହୁଏ, ତାହା କାହାରିକୁ ଅବିଦିତ ନାହିଁ । ମରଣ ସମୟରେ ଉକ୍ତ କାରଣ ଓ ସ୍ମରଣଶକ୍ତି ହ୍ରାସକାରୀ ଅନ୍ୟାନ୍ୟ କାରଣମାନ ଏକାବେଳକେ ସଙ୍ଘଟିତ ହେଉଥିବାରୁ, ସେ ଜନ୍ମର କୌଣସି କଥା ସ୍ମରଣ ରହିବା ସମ୍ଭବ ନୁହେ । ୫ ।

ଶ୍ଳୋକଃ ।

ଅଜୋଽପି ସନ୍ନବ୍ୟୟାତ୍ମା, ଭୂତାନାମୀଶ୍ୱରୋଽପି ସନ୍ ।
ପ୍ରକୃତିଂ ସ୍ୱାମଧିଷ୍ଠାୟ, ସମ୍ଭବାମ୍ୟାତ୍ମମାୟୟା । ୬ ।

### ଅନ୍ୱୟଃ ।

ଅଜଃ ଅପି ଅବ୍ୟୟାତ୍ମା ସନ୍, ଭୂତାନାଂ ଅପି ଈଶ୍ୱରଃ ସନ୍ ସ୍ୱାଂ ପ୍ରକୃତିଂ ଅଧିଷ୍ଠାୟ ଆତ୍ମମାୟୟା ସମ୍ଭବାମି । ୬ ।

### ଟୀକା ।

ନନୁ ଅନାଦେସ୍ତ୍ୱଂ ଭବତୋ ଜନ୍ମ ଅବିନାଶିନସ୍ତ କଥଂ ପୁନଃ ପୁନର୍ଜନ୍ମ ଯେନ ବହୂନି ମେ ବ୍ୟତୀତାନି ଜନ୍ମାନ୍ୟୁଚ୍ୟତେ ଈଶ୍ୱରସ୍ୟ ତବ ପୁଣ୍ୟ-ପାପ-ବିହୀନସ୍ୟ କଥଂ ବା ଜୀବବଜ୍ଜନ୍ମେତ୍ୟତଆହ । ଅଜୋଽପୀତି । ସତ୍ୟମେବ ତଥାପି ଜନନଶୂନ୍ୟୋଽପି ସନ୍ନହଂ ତଥାଽବ୍ୟୟାତ୍ମାପି ଅନଶ୍ୱରସ୍ୱଭାବୋଽପି ସନ୍ ତଥା ଈଶ୍ୱରୋଽପି କର୍ମପାରତନ୍ତ୍ର୍ୟରହିତୋଽପି ସନ୍ ସ୍ୱମାୟୟା ସ. ସମ୍ୟଗପ୍ରଚ୍ୟୁତ-ଜ୍ଞାନବଲବୀର୍ଯ୍ୟାଦି-ଶକ୍ତ୍ୟୈବ ଭବାମି, ନନୁ ତଥାପି ଷୋଡ଼ଶକଲାତ୍ମକ-ଲିଙ୍ଗଦେହଶୂନ୍ୟସ୍ୟ ଚ କୁତୋ ଜନ୍ମ ଇତ୍ୟତଉକ୍ତଂ ସ୍ୱାଂ ଶୁଦ୍ଧସତ୍ତ୍ୱାତ୍ମିକାଂ ପ୍ରକୃତିମଧିଷ୍ଠାୟ ସ୍ୱୀକୃତ୍ୟ ବିଶୁଦ୍ଧୋର୍ଜିତସତ୍ତ୍ୱମୂର୍ତ୍ତ୍ୟା ସ୍ୱେଚ୍ଛୟାବତ ତାର୍ଥଃ । ୬ ।

### ପଦବ୍ୟାଖ୍ୟା ।

ଅଜୋଽପି ସନ୍—ଜନ୍ମରହିତ ହେଲେ ମଧ୍ୟ, ଅବ୍ୟୟାତ୍ମା—ଅବିନାଶୀ, ଭୂତାନାଂ—ପ୍ରାଣିମାନଙ୍କର, ଈଶ୍ୱରୋଽପି ସନ୍—ପ୍ରଭୁ ହେଲେ ମଧ୍ୟ, ପ୍ରକୃତିଂ—ପ୍ରକୃତିକୁ, ସ୍ୱାଂ—ସ୍ୱକୀୟ, ଅଧିଷ୍ଠାୟ—ଅଙ୍ଗୀକାର କରି, ସମ୍ଭବାମି—ଅବତାର ଗ୍ରହଣ କରୁଁ, ଆତ୍ମମାୟୟା—ନିଜ ମାୟାରେ । ୬ ।

### ଅନୁବାଦ ।

**ଆମ୍ଭେ ଜନ୍ମଶୂନ୍ୟ, ବିନାଶରହିତ ଓ ସମସ୍ତ ପ୍ରାଣିଙ୍କର ଈଶ୍ୱର ହୋଇ ମଧ୍ୟ ଆପଣା ପ୍ରକୃତିକୁ ଗ୍ରହଣ କରି ନିଜ ମାୟାରେ ଉତ୍ପନ୍ନ ହେଉଁ । ୬ ।**

### ବିଶଦବ୍ୟାଖ୍ୟା ।

**ଶ୍ରୀଭଗବାନ୍ ଅନାଦି, ତାଙ୍କର ଜନ୍ମ କୁଆଡୁ ଆସିବ ? ସେ ଅବିନାଶୀ, ତାଙ୍କର ମରଣ ବା ହେବ କିପରି ? ପୁଣି ସେ ସକାମଭାବରେ କର୍ମ ଅନୁଷ୍ଠାନ ନ କରୁଥିବା ସ୍ଥଳେ ଫଳଭୋଗର ଉପଯୋଗୀ ଦେହ ତାଙ୍କର ସମ୍ଭବେ କି ? ତେବେ ଶ୍ରୀଭଗବାନ୍ ଯେ କହିଲେ, ତୁମ୍ଭର ଓ ଆମ୍ଭର ଅନେକବାର ଜନ୍ମ ମରଣ ହୋଇଅଛୁ, ଏହା କିପରି ସମ୍ଭବ ଅର୍ଜୁନଙ୍କର ଏପରି ଆଶଙ୍କା ନିବାରଣପାଇଁ ଶ୍ରୀଭଗବାନ୍ କହିଲେ, ଯେ ଆମ୍ଭେ ଜନ୍ମଶୂନ୍ୟ, ଅବିନାଶୀ, ହେଲେ ମଧ୍ୟ ଏବଂ ପ୍ରାଣିମାନଙ୍କର ଈଶ୍ୱର ହେଲେ ସୁଦ୍ଧା ଅର୍ଥାତ୍ ଜନ୍ମ ମରଣ ନ ଥିବାର ସମସ୍ତ ଗୁଣ ଆମ୍ଭଠାରେ ଥିଲେ ସୁଦ୍ଧା, ନିଜ ମାୟାକୁ ଅଙ୍ଗୀକାର କରି ନିଜ ଇଚ୍ଛାରେ ଜନ୍ମ ଗ୍ରହଣ କରୁଁ । ଫଳକଥା ଏହି, ଯେ ଆମ୍ଭର ଜନ୍ମ ମରଣ ବିଷୟରେ ଆମ୍ଭର ଇଚ୍ଛା କେବଳ କାରଣ, ଅନ୍ୟ କିଛି କାରଣ ନାହିଁ । ୬ ।**

### ଶ୍ଳୋକଃ ।

**ଯଦା ଯଦା ହି ଧର୍ମସ୍ୟ, ଗ୍ଲାନିର୍ଭବତି ଭାରତ ।**
**ଅଭ୍ୟୁତ୍ଥାନମଧର୍ମସ୍ୟ, ତଦାତ୍ମାନଂ ସୃଜାମ୍ୟହଂ । ୭ ।**

### ଅନ୍ୱୟଃ ।

ହେ ଭାରତ ! ଯଦା ଯଦା ହି ଧର୍ମସ୍ୟ ଗ୍ଲାନିଃ ଅଧର୍ମସ୍ୟ ଅଭ୍ୟୁତ୍ଥାନଂ ଭବତି, ତଦା ଅହଂ ଆତ୍ମାନଂ ସୃଜାମି । ୭ ।

Digitized by PPRACHIN, SOA

ଟୀକା ।

କଦା ସ୍ୱସ୍ବସୀତ୍ୟପେକ୍ଷାୟାମାହ, ଯଦା ଯଦେତ । ଗ୍ଲାନହାନିଃ ଅଭ୍ୟୁତ୍ଥାନମାଧିକ୍ୟଂ । ୭ ।

ପଦବ୍ୟାଖ୍ୟା ।

ଯଦା ଯଦା—ଯେଉଁ ୨ ସମୟରେ, ହି—ନିଶ୍ଚୟ, ଧର୍ମସ୍ୟ—ଧର୍ମର, ଗ୍ଲାନିଃ—ଦୁର୍ବଳତା, ଭବତି—ହୁଏ, ଭାରତ—ହେ ଅର୍ଜ୍ଜୁନ !, ଅଭ୍ୟୁତ୍ଥାନଂ—ଆଧିକ୍ୟ, ଅଧର୍ମସ୍ୟ—ଅଧର୍ମର, ତଦା—ସେହି ସମୟରେ, ଆତ୍ମାନଂ—ଆପଣାକୁ, ସୃଜାମି—ଉତ୍ପନ୍ନ କରୁଁ, ଅହଂ—ଆମ୍ଭେ । ୭ ।

ଅନୁବାଦ ।

ହେ ଭାରତ ! ଯେଉଁ ୨ ସମୟରେ ଧର୍ମର ହ୍ରାସ ଓ ଅଧର୍ମର ବୃଦ୍ଧି ହୁଏ ସେହି ସମୟରେ ଆମ୍ଭେ ଅବତାର ଗ୍ରହଣ କରୁଁ । ୭ ।

ବିଶଦବ୍ୟାଖ୍ୟା ।

ଯେତେବେଳେ ଧର୍ମର ହାନି ହୁଏ, ଅର୍ଥାତ୍ (ଅଗ୍ନିହୋତ୍ରାଦ ପ୍ରବୃତ୍ତିଧର୍ମ) ଏବଂ ଇନ୍ଦ୍ରିୟଦମନ ଓ ତିତିକ୍ଷାଦ ନିବୃତ୍ତିଧର୍ମ ଆଉ ବ୍ରହ୍ମଚର୍ଯ୍ୟାଦ ଆଶ୍ରମଧର୍ମ ହୀନବଳ ହୋଇଯାଏ, ଏବଂ ଅଧର୍ମ ପ୍ରବଳ ହୁଏ, ସେହି ସମୟରେ ଆମ୍ଭେ ନିଜ ମାୟାପ୍ରଭାବରେ ଶରୀର ଧାରଣ କରୁଁ, ଅର୍ଥାତ୍ କେବଳ ନିରର୍ଥକ ଇଚ୍ଛାର ବଶୀଭୂତ ହୋଇ ଜନ୍ମଗ୍ରହଣ କରୁଁ ନାହିଁ, ଅଧର୍ମ ପ୍ରବଳ ଓ ଧର୍ମ ହୀନବଳ ହେଲେ ଧର୍ମର ସାହାଯ୍ୟ ନିମିତ୍ତ ଆମ୍ଭେ ଅବତାର ଗ୍ରହଣ କରୁଁ । ୭ ।

ଶ୍ଳୋକଃ ।

ପରିତ୍ରାଣାୟ ସାଧୂନାଂ, ବିନାଶାୟ ଚ ଦୁଷ୍କୃତାଂ ।
ଧର୍ମସଂସ୍ଥାପନାର୍ଥାୟ, ସମ୍ଭବାମି ଯୁଗେ ଯୁଗେ । ୮ ।

ଅନ୍ୱୟଃ ।

ସାଧୂନାଂ ପରିତ୍ରାଣାୟ ଦୁଷ୍କୃତାଂ ବିନାଶାୟ ଚ ଧର୍ମସଂସ୍ଥାପନାର୍ଥାୟ ଯୁଗେ ଯୁଗେ ସମ୍ଭବାମି । ୮ ।

ଟୀକା ।

କିମର୍ଥମିତ୍ୟପେକ୍ଷାୟାମାହ ପରିତ୍ରାଣାୟେତି । ସାଧୂନାଂ ସ୍ୱଧର୍ମବର୍ତ୍ତିନାଂ ରକ୍ଷଣାୟ, ଦୁଷ୍ଟଂ କର୍ମ କୁର୍ବନ୍ତୀତି ଦୁଷ୍କୃତଃ ତେଷାଂ ବଧାୟ ଚ ଏବଂ ଧର୍ମସଂସ୍ଥାପନାର୍ଥାୟ ସାଧୁରକ୍ଷଣେନ ଦୁଷ୍ଟବଧେନ ଚ ଧର୍ମଂ ସ୍ଥିରୀକର୍ତ୍ତୁଂ ଯୁଗେ ଯୁଗେ ତତ୍ତଦବସରେ ସମ୍ଭବାମୀତ୍ୟର୍ଥଃ ନ ଚୈବଂ ଦୁଷ୍ଟନିଗ୍ରହଂ କୁର୍ବତୋଽପି ନୈର୍ଘୃଣ୍ୟଂ ଶଙ୍କନୀୟଂ ଯଥାହୁଃ "ଲାଳନେ ତାଡନେ ମାତୁର୍ନାକାରୁଣ୍ୟଂ ଯଥାର୍ଭକେ । ତଦ୍ୱଦେବ ମହେଶସ୍ୟ ନିୟନ୍ତୁର୍ଗୁଣଦୋଷୟୋରିତି" । ୮ ।

ପଦବ୍ୟାଖ୍ୟା ।

ପରିତ୍ରାଣାୟ—ସମ୍ପୂର୍ଣ୍ଣ ରକ୍ଷା ନିମିତ୍ତ, ସାଧୂନାଂ—ଧର୍ମସାଧକମାନଙ୍କର, ବିନାଶାୟ ଚ—ବିନାଶ ନିମିତ୍ତ ମଧ୍ୟ, ଦୁଷ୍କୃତାଂ—ପାପିମାନଙ୍କର, ଧର୍ମସଂସ୍ଥାପନାର୍ଥାୟ—ଧର୍ମକୁ ଉତ୍ତମରୂପେ ସ୍ଥାପନ କରିବା ନିମିତ୍ତ, ସମ୍ଭବାମି—ଅବତାର ଗ୍ରହଣ କରୁଁ, ଯୁଗେ ଯୁଗେ—ପ୍ରତିଯୁଗରେ । ୮ ।



Digitized by PPRACHIN, SOA

ଅନୁବାଦ ।

ସାଧୁମାନଙ୍କର ରକ୍ଷା ଓ ପାପିମାନଙ୍କର ବଧ ନିମିତ୍ତ ଏବଂ ଧର୍ମକୁ ସ୍ଥାପିତ କରିବାପାଇଁ ଅମ୍ଭେ ପ୍ରତିଯୁଗରେ ଅବତାର ଧାରଣ କରୁଁ । ୮ ।

ବିଶଦବ୍ୟାଖ୍ୟା ।

ଯେଉଁମାନେ ବେଦବିହିତ ଧର୍ମକର୍ମର ଅନୁଷ୍ଠାନ କରନ୍ତି ଏବଂ କଦାପି ସ୍ୱଧର୍ମ ତ୍ୟାଗ ନ କରନ୍ତି, ସେମାନଙ୍କୁ 'ସାଧୁ' ବୋଲାଯାଏ । ଆଉ ଯେଉଁମାନେ ବିଷୟଭୋଗବିଳାସରେ ମତ୍ତ ହୋଇ ଦୁର୍ବୁଦ୍ଧି ହେତୁରୁ ଧର୍ମବିରୋଧିକର୍ମମାନ କରନ୍ତି, ସେମାନଙ୍କୁ 'ଦୁଷ୍କୃତ' କୁହାଯାଏ । ସାଧୁମାନଙ୍କୁ ରକ୍ଷା ଓ ଦୁଷ୍ଟମାନଙ୍କୁ ବିନାଶ ଏବଂ ତଦ୍ଦ୍ୱାରା ଧର୍ମକୁ ସ୍ଥିର କରିବାକୁ ଈଶ୍ୱର ଅବତୀର୍ଣ୍ଣ ହୁଅନ୍ତି । କେହି କେହି ଏପରି ଆପତ୍ତି କରି ପାରନ୍ତି, ଯେ 'ପରମେଶ୍ୱରତ ସର୍ବଶକ୍ତିମାନ୍ ଇଚ୍ଛାମୟ, ସେ ଦୁଷ୍ଟଙ୍କୁ ବିନାଶ ବା ସାଧୁଙ୍କୁ ରକ୍ଷା କରିବାପାଇଁ ଦେହଧାରଣ ଓ ସାମାନ୍ୟ ମନୁଷ୍ୟ ପରି ଅସ୍ୱାଦ ଗ୍ରହଣ କରନ୍ତି କାହିଁକି ? ପୁଣି ମନୁଷ୍ୟଦେହଧାରୀ ଶ୍ରୀରାମଚନ୍ଦ୍ର ଓ ଶ୍ରୀକୃଷ୍ଣ ପ୍ରଭୃତିଙ୍କୁ ପରମେଶ୍ୱରଙ୍କ ଅବତାର ବୋଲି ମାନିବାତ ଦୂରର କଥା, ସାଧୁ ସତ୍ପୁରୁଷ ବୋଲି ମାନିବାକୁ ଇଚ୍ଛା ହେଉ ନାହିଁ । କାହିଁକିନା ସାଧୁମାନେ ଦୁଷ୍ଟଲୋକଙ୍କୁ ସଦୁପଦେଶ ଦେଇ ସତ୍ପଥକୁ ଆଣନ୍ତି, ମାତ୍ର 'ବିନାଶ'ରୂପ ନିନ୍ଦିତକର୍ମ କରନ୍ତି ନାହିଁ, ଇତ୍ୟାଦି', ମାତ୍ର ଏହାର ଉତ୍ତରରେ ଏହି କଥା କୁହାଯାଇପାରେ, ଯେ ମାୟାମୁକ୍ତ ପରମେଶ୍ୱରଙ୍କ ଭିନ୍ନ, ସେ କାହିଁକି ଓ କିପରି ସୃଷ୍ଟି କଲେ ଏହା କୌଣସି ମାୟାଯୁକ୍ତ ବ୍ୟକ୍ତି କହି ପାରିବେ ନାହିଁ । ଦୟାଳୁ ପରମେଶ୍ୱର ରୋଗ ନିବାରଣପାଇଁ ଔଷଧ ସୃଷ୍ଟି କରିବାଠାରୁ ଯଦି ରୋଗର ସୃଷ୍ଟି ଆଦୌ କରି ନ ଥାନ୍ତେ ତେବେ ଭଲ ହୋଇଥାନ୍ତା, ତେବେ ସେ ରୋଗ ଓ ତାହାର ନିବାରଣପାଇଁ ଔଷଧ କଲେ କାହିଁକି ? ଏ ସବୁ ପ୍ରଶ୍ନର ଏକମାତ୍ର ଉତ୍ତର, ଯେ ଈଶ୍ୱର ଇଚ୍ଛାମୟ ଓ ଲୀଳାମୟ, ତାଙ୍କର ଇଚ୍ଛା ଓ ଲୀଳାର ମର୍ମ ଭେଦ କରିବା ସାମାନ୍ୟ ମନୁଷ୍ୟମାନଙ୍କର କାର୍ଯ୍ୟ ନୁହେ । ଆଉ 'ଦୁଷ୍କୃତ'ମାନଙ୍କୁ ବିନାଶ କରିବାଦ୍ୱାରା ତାଙ୍କର ଦୟାଗୁଣର କିଛିମାତ୍ର ହ୍ରାସ ହୁଏ ନାହିଁ, କାହିଁକିନା ସେ ଜୀବମାନଙ୍କର ମଙ୍ଗଳ ନିମିତ୍ତ ସେମାନଙ୍କର ମଳିନ ବସ୍ତ୍ର ତୁଲ୍ୟ ଶରୀରକୁ ଆତ୍ମାରୁ ଛଡ଼ାଇ ଦିଅନ୍ତି । ତଦ୍ଦ୍ୱାରା ଜୀବର କିଛି କ୍ଷତି ନ ହୋଇ ବରଂ ପାପମୁକ୍ତିରୂପ ଫଳ ଲାଭ ହୁଏ । ପୁଣି ବାଳକମାନଙ୍କୁ ତାଡ଼ନ କରିବାକୁ ପିତା, ମାତା ଓ ଶିକ୍ଷକ ଆଦି ଯେ ଦଣ୍ଡ ଦିଅନ୍ତି, ସେହି ଦଣ୍ଡ ପିତା ମାତାଦିଙ୍କର କି ନିର୍ଦ୍ଦୟତାର ଚିହ୍ନ ? ତାହା ନୁହେ, ସେମାନେ ବାଳକମାନଙ୍କର ଭବିଷ୍ୟତ ଶୁଭପାଇଁ ଦୟାଯୁକ୍ତ ହୋଇ ଦଣ୍ଡ ବିଧାନ କରନ୍ତି । ଧର୍ମଶାସ୍ତ୍ରରେ ଦିଆ ଅଛି, ଯେ "ଦଣ୍ଡଃ ଶାସ୍ତି ପ୍ରଜାଃ ସର୍ବାଦଣ୍ଡଏବାଭିରକ୍ଷତି । ଦଣ୍ଡଃ ସୁପ୍ତେଷୁ ଜାଗର୍ତ୍ତି ତସ୍ମାଦ୍ଦଣ୍ଡଂ ଜଗୁର୍ବୁଧାଃ" (ମନୁଃ), ଅର୍ଥାତ୍ ଦଣ୍ଡ ସମସ୍ତ ପ୍ରଜାଙ୍କୁ ଶାସନରେ ରଖେ, ରକ୍ଷା କରେ ଓ ଅଜ୍ଞାନ-ନିଦ୍ରାରେ ଅଚେତନ-ବ୍ୟକ୍ତିଙ୍କୁ ଜ୍ଞାନ ପ୍ରଦାନ କରି ଜାଗରିତ କରେ, ଅତଏବ ଦଣ୍ଡକୁ ଧର୍ମ ବୋଲି ଜାଣିବ ।

ଅଥବା ତୁମ୍ଭେ ଆମ୍ଭେ ଦେହାଭିମାନୀ ବୋଲି 'ବିନାଶ' କଥାଟା ଆମ୍ଭମାନଙ୍କ ଚକ୍ଷୁରେ ବଡ଼ ବୃହତ୍ ବ୍ୟାପାର ବୋଲି ବୋଧ ହୁଏ, ମାତ୍ର ସର୍ବଦର୍ଶୀ ପରମାତ୍ମାଙ୍କ ଚକ୍ଷୁରେ 'ବିନାଶ'

Digitized by PPRACHIN, SOA

ବୋଲି କୌଣସି ଘଟନା ଉପସ୍ଥିତ ହୁଏ ନାହିଁ, ଅର୍ଥାତ୍ ଆମ୍ଭେମାନେ ଦେହାଦି ପରିବର୍ତ୍ତନକୁ ବିନାଶ ବୋଲି ମନେ କରୁଁ, ମାତ୍ର ସେ କେବଳ ପରିବର୍ତ୍ତନ ବୋଲି ଜାଣନ୍ତି, ସେଥିରେ ତାଙ୍କର ବସ୍ତୁରି ହାନି ହେଲା କେଉଁଠାରେ ? । ୮ ।

ଶ୍ଳୋକଃ ।

ଜନ୍ମ କର୍ମ ଚ ମେ ଦିବ୍ୟମେବଂ ଯୋବେତ୍ତି ତତ୍ତ୍ୱତଃ ।
ତ୍ୟକ୍ତ୍ୱା ଦେହଂ ପୁନର୍ଜ୍ଜନ୍ମ, ନୈତିମାମେତି ସୋଽର୍ଜ୍ଜୁନ । ୯ ।

ଅନ୍ୱୟଃ ।

ହେ ଅର୍ଜ୍ଜୁନ ! ମେ ଦିବ୍ୟଂ ଜନ୍ମ ଚ କର୍ମ ଏବ ଯଃ ତତ୍ତ୍ୱତଃ ବେତ୍ତି ସଃ ଦେହଂ ତ୍ୟକ୍ତ୍ୱା ପୁନଃ ଜନ୍ମ ନ ଏତି ମାଂ ଏତି । ୯ ।

ଟୀକା ।

ଏବ ବଧାନାମୀଶ୍ୱର ଜନ୍ମକର୍ମଣାଂ ଜ୍ଞାନେ ଫଲମାହ, ଜନ୍ମେତି । ସ୍ୱେଚ୍ଛୟା କୃତଂ ମମ ଜନ୍ମ କର୍ମ ଚ ଧର୍ମପାଳନରୂପଂ ଦିବ୍ୟମଲୌକିକଂ ତତ୍ତ୍ୱତଃ ପରାନୁଗ୍ରହାର୍ଥମେବେତ ଯୋବେତ୍ତି ସ ଦେହାଭିମାନଂ ତ୍ୟକ୍ତ୍ୱା ପୁନର୍ଜ୍ଜନ୍ମ ସଂସାରଂ ନୈତି ନ ପ୍ରାପ୍ନୋତି, କିନ୍ତୁ ମାମେବ ପ୍ରାପ୍ନୋତି । ୯ ।

ପଦବ୍ୟାଖ୍ୟା ।

ଜନ୍ମ—ଉତ୍ପତ୍ତି, କର୍ମ ଚ—ଧର୍ମ ଆଚରଣ, ମେ—ଆମ୍ଭର, ଦିବ୍ୟଂ—ଅଲୌକିକ, ଏବଂ—ଏପ୍ରକାର, ଯୋବେତ୍ତି—ଯେ ଜାଣନ୍ତି, ତତ୍ତ୍ୱତଃ—ଯଥାର୍ଥରୂପେ, ତ୍ୟକ୍ତ୍ୱା—ତ୍ୟାଗ କରି, ଦେହଂ—ଦେହକୁ, ପୁନର୍ଜ୍ଜନ୍ମ—ଅନ୍ୟଜନ୍ମ, ନ ଏତି—ପାଆନ୍ତି ନାହିଁ, ମାଂ—ଆମ୍ଭଙ୍କୁ, ଏତି—ପ୍ରାପ୍ତ ହୁଅନ୍ତି, ସଃ—ସେହି ପୁରୁଷ, ଅର୍ଜ୍ଜୁନ—ହେ ଅର୍ଜ୍ଜୁନ ! । ୯ ।

ଅନୁବାଦ ।

ହେ ଅର୍ଜ୍ଜୁନ ! ଆମ୍ଭର ଅଲୌକିକ ଜନ୍ମ ଓ କର୍ମକୁ ଯେ ଏପ୍ରକାର ଉତ୍ତମରୂପେ ଜାଣନ୍ତି, ସେ ଦେହ ପରିତ୍ୟାଗ କଲେ ପୁନର୍ବାର ଜନ୍ମ ଗ୍ରହଣ କରନ୍ତି ନାହିଁ, ବରଂ ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି । ୯ ।

ବିଶଦବ୍ୟାଖ୍ୟା ।

ଈଶ୍ୱର ଜନ୍ମମରଣଶୂନ୍ୟ ହୋଇ ସୁଦ୍ଧା ଜୀବଙ୍କଠାରେ ଅନୁଗ୍ରହ ପ୍ରକାଶ କରି ନିଜ ମାୟାଦ୍ୱାରା ଦେହ ଧାରଣ କରନ୍ତି ଓ ସାଧାରଣ ଜୀବଙ୍କପରି (ଧର୍ମସ୍ଥାପନ ନିମିତ୍ତ) ବେଦବିହିତ କର୍ମର ଅନୁଷ୍ଠାନ କରନ୍ତି । ଏ ସବୁ ଅସାଧାରଣ ବା ଅଲୌକିକ ବ୍ୟାପାର ଅଟେ । କିନ୍ତୁ ସାଧାରଣ ଜୀବ ପରି ସେ ଜନ୍ମ, ମୃତ୍ୟୁ, ଶୋକ, ଜରା ଇତ୍ୟାଦିର ଅଧୀନ ନୁହନ୍ତି, କେବଳ ଲୀଳାମୟ—ଲୀଳା ପ୍ରଦର୍ଶନପାଇଁ ଜନ୍ମଗ୍ରହଣ କରନ୍ତି, ଏ ପ୍ରକାର ତାଙ୍କୁ ଯେ ନିଶ୍ଚୟ କରି ଜାଣନ୍ତି, ସଂକ୍ଷେପରେ କହିବାକୁ ହେଲେ, ଯେ ଆତ୍ମାର ତତ୍ତ୍ୱ ଜାଣନ୍ତି, ସେ ଦେହ ତ୍ୟାଗ କଲେ ପୁନର୍ବାର ଜନ୍ମଗ୍ରହଣ ନ କରି ଈଶ୍ୱରଙ୍କୁ ପ୍ରାପ୍ତ ହୁଅନ୍ତି, ଅର୍ଥାତ୍ ବ୍ରହ୍ମତ୍ୱ ଲାଭ କରନ୍ତି । ୯ ।

Digitized by PPRACHIN, SOA

ଶ୍ଳୋକଃ ।

* ବୀତରାଗଭୟକ୍ରୋଧା, ମନ୍ମୟା ମାମୁପାଶ୍ରିତାଃ ।
ବହବୋ ଜ୍ଞାନତପସା, ପୂତା ମଦ୍ଭାବମାଗତାଃ । ୧୦ ।

ଅନ୍ୱୟଃ ।

ବୀତରାଗଭୟକ୍ରୋଧାଃ ମନ୍ମୟାଃ ମାଂ ଉପାଶ୍ରିତାଃ ବହବଃ ଜ୍ଞାନତପସା ପୂତାଃ ମଦ୍ଭାବଂ ଆଗତାଃ । ୧୦ ।

ଟୀକା ।

କିଥଂ ଜନ୍ମକର୍ମଜ୍ଞାନେ ତ୍ୱତ୍ପ୍ରାପ୍ତିଃ ସ୍ୟାଦିତ୍ୟତ ଆହ । ବୀତରାଗେତି । ଅହଂ ଶୁଦ୍ଧସତ୍ତ୍ୱାବତାରୈର୍ଧର୍ମପାଳନଂ କରୋମୀତି ମଦୀୟଂ ପରମକାରୁଣିକତ୍ୱଂ ଜ୍ଞାତ୍ୱା ବୀତା ବିଗତା ରାଗଭୟକ୍ରୋଧା ଯେଭ୍ୟସ୍ତେ ତତ୍ତ୍ୱବିକ୍ଷେପାଭାବାନ୍ମନ୍ମୟା ମଦେକଚିତ୍ତା ଭୂତ୍ୱା ମାମେବୋପାଶ୍ରିତାଃ ସନ୍ତୋ ମତ୍ପ୍ରସାଦଲବ୍ଧଂ ଯଦାତ୍ମଜ୍ଞାନଂ ଚ ତପଶ୍ଚ, ତତ୍ ପରିପାକହେତୁଃ ସ୍ୱଧର୍ମଃ ତଦନ୍ୱୈକବଦ୍ଭାବଃ । ତେନ ଜ୍ଞାନତପସା ପୂତାଃ ଶୁଦ୍ଧା ନିରସ୍ତା ଜ୍ଞାନତତ୍କାର୍ଯ୍ୟମଳା, ମଦ୍ଭାବଂ ମତ୍ସାଯୁଜ୍ୟଂ ପ୍ରାପ୍ତା ବହବଃ ନତ୍ୱଧୁନୈବ ପ୍ରବୃତ୍ତୋଽୟଂ ମଦ୍ଭକ୍ତିମାର୍ଗ ଇତ୍ୟର୍ଥଃ । ତଦେବଂ ତାନ୍ୟହଂ ବେଦ ସର୍ବାଣୀତ୍ୟାଦିନା ବିଦ୍ୟାବିଦ୍ୟୋପାଧିଭ୍ୟାଂ ତତ୍ତ୍ୱଂ ପଦାର୍ଥାବୀଶ୍ୱରଜୀବୌ ପ୍ରଦର୍ଶ୍ୟ ଈଶ୍ୱରସ୍ୟ ଚ ବିଦ୍ୟାଭାବେନ ନିତ୍ୟ ଶୁଦ୍ଧତ୍ୱାଜ୍ଜୀବସ୍ୟ ଚେଶ୍ୱରପ୍ରସାଦଲବ୍ଧଜ୍ଞାନେନାଜ୍ଞାନନିବୃତ୍ତେଃ ଶୁଦ୍ଧସ୍ୟ ତ୍ୱଦଂଶେନ ତଦୈକ୍ୟମୁକ୍ତମିତି ଦ୍ରଷ୍ଟବ୍ୟଂ । ୧୦ ।

ପଦବ୍ୟାଖ୍ୟା ।

ବୀତରାଗଭୟକ୍ରୋଧାଃ—ପ୍ରୀତି ଭୟ ଓ କ୍ରୋଧକୁ ଦୂର କରି, ମନ୍ମୟା—କେବଳ ଆମ୍ଭଠାରେ ଚିତ୍ତ ସମର୍ପଣ କରି, ମାମୁପାଶ୍ରିତାଃ—ଆମ୍ଭଙ୍କୁ ଆଶ୍ରୟ କରନ୍ତି, ବହବଃ—ବହୁତ ଲୋକ, ଜ୍ଞାନତପସା—ଜ୍ଞାନ ଓ ତପସ୍ୟାଦ୍ୱାରା, ପୂତାଃ—ଶୁଦ୍ଧ ଓ ପବିତ୍ର, ମଦ୍ଭାବମାଗତାଃ—ଆମ୍ଭର ଭାବ ଅର୍ଥାତ୍ ସାଯୁଜ୍ୟ ମୁକ୍ତିକୁ ପ୍ରାପ୍ତ ହୋଇଅଛନ୍ତି । ୧୦ ।

ଅନୁବାଦ ।

ବିଷୟାସକ୍ତି, ଭୟ ଓ କ୍ରୋଧରହିତ ହୋଇ ଆମ୍ଭଠାରେ ଏକାଗ୍ରଚିତ୍ତ ଓ ଶରଣାଗତ, ଏରୂପ ଅନେକ ବ୍ୟକ୍ତି ଜ୍ଞାନ ଓ ତପସ୍ୟାଦ୍ୱାରା ପବିତ୍ର ହୋଇ ଆମ୍ଭ ସ୍ୱରୂପକୁ ପ୍ରାପ୍ତ ହୋଇଅଛନ୍ତି । ୧୦ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ କୁହା ଯାଇଅଛି, ଯେ ପରମେଶ୍ୱରଙ୍କର ଅଲୌକିକ ଜନ୍ମ ଓ କର୍ମକୁ ଯଥାର୍ଥରୂପରେ ଜାଣିବା ବ୍ୟକ୍ତି ମୁକ୍ତି ପ୍ରାପ୍ତ ହୁଅନ୍ତି । ଏ ଶ୍ଳୋକରେ କୁହା ଗଲା, ଯେ ଇନ୍ଦ୍ରିୟମାନଙ୍କର ଭୋଗ ବିଷୟରେ ଆସକ୍ତିରହିତ, ଭୟ ଓ କ୍ରୋଧଶୂନ୍ୟ, ପୁଣି ଆମ୍ଭଠାରେ ଏକାଗ୍ରଚିତ୍ତ ହୋଇ ଅର୍ଥାତ୍ "ତତ୍"=ବ୍ରହ୍ମ ଓ "ତ୍ୱଂ"=ଜୀବ, ଏ ଦୁହିଙ୍କି ଏକ ଜାଣି, ଅଥବା ଏକମାତ୍ର ଭଗବାନଙ୍କଠାରେ ମନ ସମର୍ପଣ କରି ଶରଣ ପଶି, ଜ୍ଞାନ ଓ ତପସ୍ୟାଦ୍ୱାରା ବା ଆତ୍ମଜ୍ଞାନରୂପ ତପସ୍ୟାଦ୍ୱାରା ବିଶୁଦ୍ଧ ହୋଇ (ପ୍ରହ୍ଲାଦ ପ୍ରଭୃତି ବହୁତ ବ୍ୟକ୍ତି) ଭଗବତ୍‌ସ୍ୱରୂପ ଅର୍ଥାତ୍ ସାରୂପ୍ୟମୁକ୍ତି ପ୍ରାପ୍ତ ହୋଇଅଛନ୍ତି । ଫଳକଥା ଏହି କି, ଭଗବାନଙ୍କର ଯେଉଁ ମତ ତାହା ନୂତନ ନୁହେ, ତାହା ଅନେକ ଦିନରୁ ପ୍ରଚଳିତ ଅଛି ଓ ସେହି ମତରେ କର୍ମ କରି ଅନେକ ବ୍ୟକ୍ତି ମୁକ୍ତିଲାଭ କରିଅଛନ୍ତି । ୧୦ ।



Digitized by PPRACHIN, SOA

## ଶ୍ଳୋକଃ ।

* ଯେ ଯଥା ମାଂ ପ୍ରପଦ୍ୟନ୍ତେ, ତାଂ ସ୍ତଥୈବ ଭଜାମ୍ୟହଂ ।
ମମ ବର୍ତ୍ମାନୁବର୍ତ୍ତନ୍ତେ, ମନୁଷ୍ୟାଃ ପାର୍ଥ ସର୍ବଶଃ । ୧୧ ।

## ଅନ୍ୱୟଃ ।

ହେ ପାର୍ଥ! ଯେ ମାଂ ଯଥା ପ୍ରପଦ୍ୟନ୍ତେ ଅହଂ ତାନ୍ ତଥା ଏବ ଭଜାମି । ମନୁଷ୍ୟାଃ ସର୍ବଶଃ ମମ ବର୍ତ୍ମ ଅନୁବର୍ତ୍ତନ୍ତେ । ୧୧ ।

## ଟୀକା ।

ନନୁ ତର୍ହି ଙ୍କ ତ୍ୱୟ୍ୟପି ବୈଷମ୍ୟମସ୍ତି ଯସ୍ମାଦେବଂ ତ୍ୱଦେକଶରଣାନାମେବାତ୍ମଭାବଂ ଦଦାସି ନାନ୍ୟେଷାଂ ସକାମାନାମିତ୍ୟତ ଆହ, ଯେ ଇତ । ଯଥା ଯେନ ପ୍ରକାରେଣ ସକାମତୟା ନିଷ୍କାମତୟା ବା ଯେ ମାଂ ଭଜନ୍ତ ତାନହଂ ତଥୈବ ତଦପେକ୍ଷିତ-ଫଳଦାନେନ ଭଜାମି ଅନୁଗୃହ୍ଣାମି ନତୁ ସକାମା ମାଂ ବିହାୟେନ୍ଦ୍ରାଦୀନେବ ଯେ ଭଜନ୍ତେ ତାନହମୁପେକ୍ଷ ଇତ ମନ୍ତବ୍ୟଂ, ଯତଃ ସର୍ବଶଃ ସର୍ବପ୍ରକାରୈରିନ୍ଦ୍ରାଦସେବକାଅପି ମମୈବ ବର୍ତ୍ମ ଭଜନମାର୍ଗମନୁବର୍ତ୍ତନ୍ତ ଇନ୍ଦ୍ରାଦ୍ୟରୂପେଣାପି ମମୈବ ସେବ୍ୟତ୍ୱାତ୍ । ୧୧ ।

## ପଦବ୍ୟାଖ୍ୟା ।

ଯେ—ଯେଉଁମାନେ, ଯଥା—ଯେପରି, ମାଂ—ଆମ୍ଭଙ୍କୁ, ପ୍ରପଦ୍ୟନ୍ତେ—ଭଜନ କରନ୍ତି, ତାନ୍—ସେମାନଙ୍କୁ, ତଥା ଏବ—ସେହିପରି, ଭଜାମି—ଅନୁଗ୍ରହ କରୁଁ, ଅହଂ—ଆମ୍ଭେ, ମମ—ଆମ୍ଭର, ବର୍ତ୍ମ—ମାର୍ଗକୁ, ଅନୁବର୍ତ୍ତନ୍ତେ—ଅବଲମ୍ବନ କରନ୍ତି, ମନୁଷ୍ୟାଃ—ମନୁଷ୍ୟମାନେ, ପାର୍ଥ—ହେ ଅର୍ଜୁନ !, ସର୍ବଶଃ—ସବୁ ପ୍ରକାର । ୧୧ ।

## ଅନୁବାଦ ।

ହେ ଅର୍ଜୁନ! ଯେ ଯେପରି ଆମ୍ଭର ଉପାସନା କରନ୍ତି, ଆମ୍ଭେ ସେମାନଙ୍କୁ ସେହିପରି କୃପା କରୁଁ । କାରଣ ମନୁଷ୍ୟମାନେ ସବୁ ପ୍ରକାରେ (ଇନ୍ଦ୍ରାଦି ଦେବତାଙ୍କର ପୂଜା କଲେ ମଧ୍ୟ) ଆମ୍ଭର ଉପାସନା କରନ୍ତି । ୧୧ ।

## ଭାବବ୍ୟାଖ୍ୟା ।

କାଳେ ଅର୍ଜୁନ ମନେ କରିବେ, ଯେ ଯଦି ଭଗବାନ୍ କେବଳ ତାଙ୍କଠାରେ ଶରଣାଗତ ବ୍ୟକ୍ତିଙ୍କୁ ମୁକ୍ତି ଦିଅନ୍ତି, ମାତ୍ର ସକାମଭାବରେ କର୍ମ କରିବା ବ୍ୟକ୍ତିଙ୍କୁ ତୁଚ୍ଛ ଫଳ ଦିଅନ୍ତି ନାହିଁ, ତେବେତ ତାଙ୍କଠାରେ ପକ୍ଷପାତ ଦୋଷ ଅଛି ? ଏହି ଆଶଙ୍କା ନିବାରଣପାଇଁ ଶ୍ରୀଭଗବାନ୍ କହିଲେ, ଯେ ଯେଉଁମାନେ ଆମ୍ଭଙ୍କୁ ଯେପରି ଭାବରେ ଡାକନ୍ତି, ଆମ୍ଭେ ତାଙ୍କୁ ସେହିପରି ଭାବରେ ଫଳ ଦେଉଁ, ଅର୍ଥାତ୍ କ୍ଷୁଧାର୍ତ୍ତ କାତରସ୍ୱରରେ 'ମା' ବୋଲି ଡାକିଲେ, ଆମ୍ଭେ 'ଅନ୍ନପୂର୍ଣ୍ଣାରୂପରେ ତାହାକୁ ଅନ୍ନ ପ୍ରଦାନ କରୁ'; ବିପନ୍ନ ବିପଦରୁ ଉଦ୍ଧାର ପାଇବାକୁ ଏକାଗ୍ରମନରେ ଡାକିଲେ, ଆମ୍ଭେ ଉଗ୍ରଚଣ୍ଡୀ, ତାରା ବା ଦୁର୍ଗାରୂପରେ ତାହାକୁ ବିପଦରୁ ରକ୍ଷା କରୁଁ; ସେହିପରି କେହି ବାତ୍ସଲ୍ୟଭାବରେ ଡାକିଲେ, ଆମ୍ଭେ ତାହା ନିକଟରେ ବାଳମୁକୁନ୍ଦମୂର୍ତ୍ତିରେ ଉପସ୍ଥିତ ଓ ଯେଉଁମାନେ ଇନ୍ଦ୍ର, ଅଗ୍ନି ଓ ଅଶ୍ୱିନୀକୁମାରଙ୍କର ଆରାଧନା କରନ୍ତି, ଆମ୍ଭେ ତାଙ୍କୁ ସେହି୨ ମୂର୍ତ୍ତିରେ ଅଭୀଷ୍ଟଫଳ ପ୍ରଦାନ କରୁଁ । ଫଳକଥା ଏହି କି, ଗୃହସ୍ଥ ବ୍ୟକ୍ତି କୁ

Digitized by PPRACHIN, SOA

ଯେପରି ତାହାର ପୁତ୍ର 'ପିତା' ବୋଲି, ଭୃତ୍ୟ 'ପ୍ରଭୁ' ବୋଲି, ସ୍ତ୍ରୀ 'ସ୍ୱାମୀ' ବୋଲି, ପିତା 'ପୁତ୍ର' ବୋଲି ଓ ଭ୍ରାତା 'ଭାଇ' ବୋଲି ଡାକେ ଅଥଚ ସେହି ଏକ ଗୃହସ୍ଥ ସେମାନଙ୍କୁ ସେହି ୨ ଭାବରେ ଉତ୍ତର ଦିଅନ୍ତି ଓ ସେମାନଙ୍କ ଅନୁରୂପ ବ୍ୟବହାର କରନ୍ତି, ସେହିପରି ଆମ୍ଭଙ୍କୁ ଯେ ଯେପରି ଭାବରେ ପୂଜା କରନ୍ତି, ଆମ୍ଭେ ତାଙ୍କୁ ସେହିପରି ଭାବରେ ଫଳ ପ୍ରଦାନ କରୁଁ । ସଂସାରରେ ଯେତେପ୍ରକାର ପୂଜାର ବିଧି ପ୍ରଚଳିତ ଅଛି, ସେ ସର୍ବପ୍ରକାର ପୂଜାର ପୂଜ୍ୟ ଆମ୍ଭେ ଅଟୁଁ, ଅର୍ଥାତ୍ ମନୁଷ୍ୟ ଯେ କୌଣସି ଦେବତାଙ୍କୁ ଯେ କୌଣସି ବିଧିରେ ପୂଜା କରନ୍ତୁ ପଛକେ, ତାହା ଆମ୍ଭେ ଗ୍ରହଣ କରୁଁ; କାହିଁକି ନା ଆମ୍ଭ ଭିନ୍ନ ଜଗତରେ ଆଉ କିଛି ନାହିଁ, କେବଳ ମନୁଷ୍ୟଙ୍କର ଭାବ ଅଶେଷ ପ୍ରକାର ହେବାରୁ ଆମ୍ଭେ ମଧ୍ୟ ଅଶେଷମୂର୍ତ୍ତିରେ ବିରାଜିତ ହେଉଁ । ୧୧।

ଶ୍ଲୋକଃ ।

* କାଂକ୍ଷନ୍ତଃ କର୍ମଣାଂ ସିଦ୍ଧିଂ, ଯଜନ୍ତ ଇହ ଦେବତାଃ ।
କ୍ଷିପ୍ରଂ ହି ମାନୁଷେ ଲୋକେ, ସିଦ୍ଧିର୍ଭବତି କର୍ମଜା । ୧୨ ।

ଅନ୍ୱୟଃ ।

କର୍ମଣାଂ ସିଦ୍ଧିଂ କାଂକ୍ଷନ୍ତଃ ଇହ ଦେବତାଃ ଯଜନ୍ତେ । ହି ମାନୁଷେ ଲୋକେ କର୍ମଜା ସିଦ୍ଧିଃ କ୍ଷିପ୍ରଂ ଭବତି । ୧୨ ।

ଟୀକା ।

ତର୍ହି ମୋକ୍ଷାର୍ଥମେବ କସ୍ମାତ୍ ସର୍ବେ ତ୍ୱାଂ ନ ଭଜନ୍ତୀତ୍ୟତ ଆହ, କାଂକ୍ଷନ୍ତ ଇତି । କର୍ମଣାଂ ସିଦ୍ଧିଂ କର୍ମଫଳଂ କାଂକ୍ଷନ୍ତଃ ପ୍ରାୟେଣେହ ମନୁଷ୍ୟଲୋକେ ଇନ୍ଦ୍ରାଦି ଦେବତା ଏବ ଯଜନ୍ତେ ନ ତୁ ସାକ୍ଷାନ୍ମାମେବ, ହି ଯସ୍ମାତ୍ କର୍ମଜା ସିଦ୍ଧିଃ କର୍ମଜଂ ଫଳଂ ଶୀଘ୍ରଂ ଭବତି ନ ତୁ ଜ୍ଞାନଫଳଂ କୈବଲ୍ୟଂ ଦୁଷ୍ପ୍ରାପ୍ୟତ୍ୱାତ୍ ଜ୍ଞାନସ୍ୟ । ୧୨ ।

ପଦବ୍ୟାଖ୍ୟା ।

କାଂକ୍ଷନ୍ତଃ—ଯେ ଇଚ୍ଛା କରନ୍ତି, କର୍ମଣାଂ ସିଦ୍ଧିଂ—କର୍ମମାନଙ୍କ ଫଳକୁ, ଯଜନ୍ତେ—ପୂଜା କରନ୍ତି, ଇହ—ଏହି ଲୋକରେ, ଦେବତାଃ—ଦେବତାମାନଙ୍କୁ, କ୍ଷିପ୍ରଂ—ଶୀଘ୍ର, ହି—ଯେହେତୁ, ମାନୁଷେ ଲୋକେ—ମର୍ତ୍ତ୍ୟଲୋକରେ, ସିଦ୍ଧିଃ ଭବତି—ସିଦ୍ଧି ହୁଏ, କର୍ମଜା—କର୍ମଜନିତ । ୧୨ ।

ଅନୁବାଦ ।

କର୍ମଫଳ-ଇଚ୍ଛୁକ ବ୍ୟକ୍ତିମାନେ ଇହଲୋକରେ ପ୍ରାୟ ଦେବତାପୂଜା କରନ୍ତି । କାହିଁକି ନା ମର୍ତ୍ତ୍ୟଲୋକରେ କର୍ମଜନିତ ଫଳସିଦ୍ଧି ଶୀଘ୍ର ହୁଏ । ୧୨ ।

ବିଶଦବ୍ୟାଖ୍ୟା ।

କାଳେ ଅର୍ଜୁନ ମନେ କରିବେ, ଯେ ଯଦି ଭଗବାନ୍ ସର୍ବପ୍ରକାର ଫଳ ପ୍ରଦାନ କରନ୍ତି, ତେବେ ସମସ୍ତ ମନୁଷ୍ୟମାନେ ମୁକ୍ତିନିମିତ୍ତ ଭଗବାନଙ୍କର ଆତ୍ମସ୍ୱରୂପର ଉପାସନା ନ କରି ଇନ୍ଦ୍ରାଦି ଦେବତାପୂଜା କରନ୍ତି କାହିଁକି ? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ମର୍ତ୍ତ୍ୟଲୋକରେ କର୍ମର ଫଳ ଶୀଘ୍ର ମିଳେ ବୋଲି ଲୋକମାନେ କର୍ମଫଳ ପ୍ରାପ୍ତିନିମିତ୍ତ ଦେବତାପୂଜା କରନ୍ତି । ଜ୍ଞାନଫଳ ବହୁଦିବସରେ ଲାଭ ହୁଏ ବୋଲି ଲୋକେ ତାହାର

Digitized by PPRACHIN, SOA

ଚେଷ୍ଟା କରନ୍ତି ନାହିଁ । ଚିତ୍ତଶୁଦ୍ଧି ନ ହେଲେ ଓ ମନ ନିଷ୍କାମ ନ ହେଲେ ଜ୍ଞାନର ଅଧିକାରୀ ହୋଇ ପାରିବେ ନାହିଁ ; ପୁଣି ଶୁଦ୍ଧଚିତ୍ତ ଓ ନିଷ୍କାମ ହେବାତ ସହଜ ନୁହେ ?

'ମାନୁଷେ ଲୋକେ' କହିବାର ତାତ୍ପର୍ଯ୍ୟ ଏହି, ଯେ ମର୍ତ୍ତ୍ୟଲୋକ ଭିନ୍ନ ବର୍ଣ୍ଣାଶ୍ରମୋଚିତ ଧର୍ମ ଅଥବା ଦେବତାପୂଜା (ଯଜ୍ଞାଦି) କରିବାର ସ୍ଥାନ ଆଉ କୌଣସି ଲୋକରେ ନାହିଁ । ୧୨ ।

ଶ୍ଳୋକଃ ।

* ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ, ଗୁଣକର୍ମ-ବିଭାଗଶଃ ।
ତସ୍ୟ କର୍ତ୍ତାରମପି ମାଂ, ବିଦ୍ଧ୍ୟକର୍ତ୍ତାରମବ୍ୟୟଂ । ୧୩ ।

ଅନ୍ୱୟଃ ।

ଗୁଣକର୍ମ-ବିଭାଗଶଃ ମୟା ଚାତୁର୍ବର୍ଣ୍ଣ୍ୟଂ ସୃଷ୍ଟଂ । ତସ୍ୟ କର୍ତ୍ତାରଂ ଅପି ମାଂ ଅକର୍ତ୍ତାରଂ ଅବ୍ୟୟଂ ବିଦ୍ଧି । ୧୩ ।

ଟୀକା ।

ନନୁ କେଚିତ୍ ସକାମତୟା ପ୍ରବର୍ତ୍ତନ୍ତେ, କେଚିତ୍ ନିଷ୍କାମତୟୈବ କର୍ମବୈଚିତ୍ର୍ୟଂ ତତ୍କର୍ତ୍ତୃଣାଂ ଚ ବ୍ରାହ୍ମଣାଦୀନାମୁତ୍ତମମଧ୍ୟମାଦି ବୈଚିତ୍ର୍ୟଂ କୁର୍ବତସ୍ତବ କଥଂ ବୈଷମ୍ୟଂ ନାସ୍ତୀତ୍ୟାଶଙ୍କ୍ୟାହ । ଚାତୁର୍ବର୍ଣ୍ଣ୍ୟମିତି । ଚତ୍ୱାରୋ ବର୍ଣ୍ଣା ଏବେତି ଚାତୁର୍ବର୍ଣ୍ଣ୍ୟଂ ସ୍ୱାର୍ଥେ ଷ୍ୟଞ୍ପ୍ରତ୍ୟୟଃ । ଅୟମର୍ଥଃ ସତ୍ତ୍ୱପ୍ରଧାନା ବ୍ରାହ୍ମଣାସ୍ତେଷାଂ ଶମଦମାଦୀନି କର୍ମାଣି, ସତ୍ତ୍ୱରଜଃପ୍ରଧାନାଃ କ୍ଷତ୍ରିୟାସ୍ତେଷାଂ ଶୌର୍ଯ୍ୟଯୁଦ୍ଧାଦୀନି କର୍ମାଣି, ରଜସ୍ତମଃପ୍ରଧାନାଃ ବୈଶ୍ୟାସ୍ତେଷାଂ ଚ କୃଷିବାଣିଜ୍ୟାଦୀନି କର୍ମାଣି, ତମଃପ୍ରଧାନାଃ ଶୂଦ୍ରାସ୍ତେଷାଂ ଚ ତ୍ରୈବର୍ଣ୍ଣିକଶୁଶ୍ରୂଷାଦୀନି କର୍ମାଣୀତ୍ୟେବଂ ଗୁଣାନାଂ କର୍ମଣାଂ ଚ ବିଭାଗୈଶ୍ଚାତୁର୍ବର୍ଣ୍ଣ୍ୟଂ ମୟୈବସୃଷ୍ଟମିତି ସତ୍ୟଂ ତଥାପ୍ୟେବ ତସ୍ୟ କର୍ତ୍ତାରମପି ଫଳତୋଽକର୍ତ୍ତାରମେବ ମାଂ ବିଦ୍ଧି ତତ୍ର ହେତୁରବ୍ୟୟଂ ଆସକ୍ତିରାହିତ୍ୟେନ ଶ୍ରମରହିତଂ । ୧୩ ।

ପଦବ୍ୟାଖ୍ୟା ।

ଚାତୁର୍ବର୍ଣ୍ଣ୍ୟଂ—ବ୍ରାହ୍ମଣ କ୍ଷତ୍ରିୟାଦି ଚାରି ବର୍ଣ୍ଣକୁ, ମୟା—ଆମ୍ଭେ, ସୃଷ୍ଟଂ—ସର୍ଜନା କରିଅଛୁଁ, ଗୁଣକର୍ମ-ବିଭାଗଶଃ—ଗୁଣ ଓ କର୍ମ ଏ ଦୁହିଁଙ୍କ ବିଭାଗଦ୍ୱାରା, ତସ୍ୟ—ସେହି ଚାତୁର୍ବର୍ଣ୍ଣ୍ୟର, କର୍ତ୍ତାରଂ ଅପି—କର୍ତ୍ତା ହେଲେ ମଧ୍ୟ, ମାଂ—ଆମ୍ଭଙ୍କୁ, ବିଦ୍ଧି—ଜାଣ, ଅକର୍ତ୍ତାରଂ—କର୍ତ୍ତା ନୋହୁଁ ବୋଲି, ଅବ୍ୟୟଂ—ଆସକ୍ତି ନ ଥିବାରୁ ଶ୍ରମରହିତ । ୧୩ ।

ଅନୁବାଦ ।

ଗୁଣ ଓ କର୍ମର ବିଭାଗ ଅନୁସାରେ ଆମ୍ଭେ ଚାତୁର୍ବର୍ଣ୍ଣ୍ୟ ସର୍ଜନା କରିଅଛୁଁ । ଅତଏବ ଆମ୍ଭେ ତାହାର କର୍ତ୍ତା ହେଲେ ମଧ୍ୟ ଆମ୍ଭଙ୍କୁ ଅକର୍ତ୍ତା ଓ ଅବ୍ୟୟ ବୋଲି ଜାଣ । ୧୩ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ସକାମ ଓ ନିଷ୍କାମଭେଦରେ ଅଧିକାରୀ ଦୁଇପ୍ରକାର ଥିବାର ବର୍ଣ୍ଣିତ ହୋଇଅଛି । ଏ ଶ୍ଳୋକରେ ବର୍ଣ୍ଣାଶ୍ରମଭେଦରେ ଅଧିକାରୀ ନିରୂପିତ କରି ଯାଉଅଛି । ମାତ୍ର ବର୍ଣ୍ଣାଶ୍ରମ ସବୁ ପ୍ରକୃତ ଅର୍ଥାତ୍ ସତ୍ତ୍ୱ ରଜଃ ତମଃ ଗୁଣତ୍ରୟ ଓ ତାହାର କର୍ମ ଏ ଦୁହିଁଙ୍କ ବିଭାଗ ଅନୁସାରେ ହୋଇଅଛି ଅର୍ଥାତ୍ ସତ୍ତ୍ୱଗୁଣ ଓ ତାହାର ସମ, ଦମ, ତିତିକ୍ଷା, ଶ୍ରଦ୍ଧା ଓ ବ୍ରହ୍ମନିଷ୍ଠା ପ୍ରଭୃତି କର୍ମ, ଏହି ଗୁଣ ଓ କର୍ମ ଅନୁସାରେ ଏକଶ୍ରେଣୀର ମନୁଷ୍ୟଙ୍କୁ 'ବ୍ରାହ୍ମଣ' ବୋଲାଯାଏ । ପୁଣି ସତ୍ତ୍ୱଗୁଣର ଅଳ୍ପ ଓ ରଜୋଗୁଣର ଅଧିକ ଅଂଶ ମିଶ୍ରିତ ହୋଇ ଏକପ୍ରକାର ଗୁଣ ଓ ଶୂରତା, ବୀର୍ଯ୍ୟ, ସାହସ ଓ ଦାନ ପ୍ରଭୃତି ତାହାର କର୍ମ, ଉକ୍ତ ପ୍ରକାର 'ଗୁଣ ଓ କର୍ମ' ଅନୁ-

Digitized by PPRACHIN, SOA

ଯାରେ ଏକଶ୍ରେଣୀର ମନୁଷ୍ୟଙ୍କୁ 'କ୍ଷତ୍ରିୟ' ବୋଲାଯାଏ । ସେହିପରି ରଜୋଗୁଣର ଅଧିକ ଓ ତମୋଗୁଣର ଅଳ୍ପଅଂଶ ମିଶ୍ରିତ ହୋଇ ଏକପ୍ରକାର ଗୁଣ ଓ କୃଷି ବାଣିଜ୍ୟ ଗୋପାଳନ ପ୍ରଭୃତି ତାହାର କର୍ମ, ସେହି ଗୁଣ ଓ କର୍ମ ଅନୁଯାୟୀ ଅପରଶ୍ରେଣୀକୁ ବୈଶ୍ୟ ଏବଂ ତମୋଗୁଣ ଓ ବ୍ରାହ୍ମଣାଦି ବର୍ଣ୍ଣତ୍ରୟର ସେବା ଓ ତଜନ୍ୟ ପ୍ରଭୃତି କର୍ମ, ଏହି ଗୁଣ ଓ କର୍ମ ଅନୁସାରେ ଅନ୍ୟ ଶ୍ରେଣୀକୁ 'ଶୂଦ୍ର' ବୋଲାଯାଏ । ଗୁଣ ଓ କର୍ମର ବିଭାଗ ଅନୁସାରେ ଏହି ଚତୁର୍ବର୍ଣ୍ଣକୁ ଭଗବାନ୍ ସୃଷ୍ଟି କରିଅଛନ୍ତି । ଏଥିରେ କାଳେ କେହି ଏପରି ଆପତ୍ତି କରିବେ, ଯେ ଭଗ-ବାନ ଏପରି ବିଭିନ୍ନଶ୍ରେଣୀର ଲୋକ ସୃଷ୍ଟି କରିବାଦ୍ୱାରା ପକ୍ଷପାତ କରିଅଛନ୍ତି, ସେଥିପାଁଇ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଆମ୍ଭେ ଉକ୍ତ ଚତୁର୍ବର୍ଣ୍ଣ ସୃଷ୍ଟିର କର୍ତ୍ତା ହେଲେ ମଧ୍ୟ ଆମ୍ଭଙ୍କୁ 'ଅକର୍ତ୍ତା' ବୋଲି ଜାଣ, ଅର୍ଥାତ୍ ଏ ସବୁ ପ୍ରକୃତି ଅନୁସାରେ ହୋଇଅଛି । ବିଶେଷତଃ ଆମ୍ଭେ ସୃଷ୍ଟି-ସ୍ଥିତି-ପ୍ରଳୟାଦି କାର୍ଯ୍ୟରେ ଅହଂଭାବବର୍ଜିତ ଓ ମମତାରହିତ ଏବଂ ଆସକ୍ତି-ଶୂନ୍ୟ ଥିବାରୁ କୌଣସି କାର୍ଯ୍ୟରେ ଲିପ୍ତ ନୋହୁଁ । ୧୩ ।

ଶ୍ଳୋକଃ ।

ନ ମାଂ କର୍ମାଣି ଲିମ୍ପନ୍ତି, ନ ମେ କର୍ମଫଳେ ସ୍ପୃହା ।
ଇତି ମାଂ ଯୋଽଭିଜାନାତି, କର୍ମଭିର୍ନ ସ ବଧ୍ୟତେ । ୧୪ ।

ଅନ୍ୱୟଃ ।

କର୍ମାଣି ମାଂ ନ ଲିମ୍ପନ୍ତି, ମେ କର୍ମଫଳେ ସ୍ପୃହା ନ (ଅସ୍ତି) ଇତି ଯଃ ମାଂ ଅଭିଜାନାତି ସଃ କର୍ମଭିଃ ନ ବଧ୍ୟତେ । ୧୪ ।

ଟୀକା ।

ତଦେବ ଦର୍ଶୟନ୍ନାହ, ନ ମାମିତି । କର୍ମାଣି ବିଶ୍ୱସୃଷ୍ଟ୍ୟାଦୀନ୍ୟପି ମାଂ ନ ଲିମ୍ପନ୍ତି, ଅସକ୍ତଂ ନ କୁର୍ବନ୍ତି ନିରହଙ୍କାରତ୍ୱା-ଦାପ୍ତକାମତ୍ୱେନ ମମ କର୍ମଫଳେ ସ୍ପୃହାଭାବାଚ୍ଚ ମାଂ ନ ଲିମ୍ପନ୍ତୀତି କିଂ ବକ୍ତବ୍ୟଂ ଯତଃ କର୍ମଲେପରହିତତ୍ୱେନ ମାଂ ଯୋଽଭିଜାନାତି ସୋଽପି କର୍ମଭିର୍ନ ବଧ୍ୟତେ ମମ ନିର୍ଲେପତ୍ୱେ କାରଣଂ ନିରହଙ୍କାରତ୍ୱନିସ୍ପୃହତ୍ୱାଦିକଂ ଜାନତସ୍ତସ୍ୟା-ପ୍ୟହଙ୍କାରାଦିଶୈଥିଲ୍ୟାତ୍ । ୧୪ ।

ପଦବ୍ୟାଖ୍ୟା ।

ନ—ନାହିଁ, ମାଂ—ଆମ୍ଭଙ୍କୁ, କର୍ମାଣି—କର୍ମମାନ, ଲିମ୍ପନ୍ତି—ସ୍ପର୍ଶ କରନ୍ତି, ନ—ନାହିଁ, ମେ—ଆମ୍ଭର, କର୍ମ-ଫଳେ—କର୍ମଫଳରେ, ସ୍ପୃହା—ଇଚ୍ଛା, ଇତି—ଏପ୍ରକାର, ମାଂ—ଆମ୍ଭଙ୍କୁ, ଯୋଽଭିଜାନାତି—ଯେ ନିଶ୍ଚୟରୂପେ ଜାଣନ୍ତି, କର୍ମଭିଃ—କର୍ମମାନ, ନ—ନାହିଁ, ସଃ—ତାହାଙ୍କୁ, ବଧ୍ୟତେ—ବାନ୍ଧନ୍ତି । ୧୪ ।

ଅନୁବାଦ ।

ଆମ୍ଭଙ୍କୁ କର୍ମସମୂହ ସ୍ପର୍ଶ କରେ ନାହିଁ, ଯେହେତୁ କର୍ମଫଳରେ ଆମ୍ଭର ଇଚ୍ଛା ନାହିଁ । ଯେଉଁ ବ୍ୟକ୍ତି ଆମ୍ଭଙ୍କୁ ଏ ପ୍ରକାର ଜାଣନ୍ତି, ସେ କର୍ମଜାଲରେ ଆବଦ୍ଧ ହୁଅନ୍ତି ନାହିଁ । ୧୪।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ନିରହଂକାର ଅର୍ଥାତ୍ 'ଆମ୍ଭେ ଏ କର୍ମ କରୁଁ' ଏପରି ଅଭିମାନ ତାଙ୍କର ନାହିଁ । ତେବେ ଆଉ କର୍ମ ତାହାଙ୍କୁ କିପରି ସ୍ପର୍ଶ କରିବ ? ଅର୍ଥାତ୍ ସେ କିପରି କର୍ମରେ ଲିପ୍ତ

Digitized by PPRACHIN, SOA

ହେବେ ? ଆଉ ତାଙ୍କର ସମସ୍ତ କାମନା ପୂର୍ଣ୍ଣ ଥିବାରୁ ଅର୍ଥାତ୍ କୌଣସି ବିଷୟର ଅଭାବ ନ ଥିବାରୁ କର୍ମଫଳରେ ସ୍ପୃହା ହେବ କିପରି ? ବେଦରେ ପ୍ରମାଣ ଅଛି, ଯେ 'ଆପ୍ତକାମସ୍ୟ କା ସ୍ପୃହା' ଅର୍ଥାତ୍ ଯାହାର ସମସ୍ତ କାମ୍ୟଫଳ ପ୍ରାପ୍ତି ହୋଇଅଛି ତାହାର ଆଉ କେଉଁ ପଦାର୍ଥରେ ଇଚ୍ଛା ହେବ ? ତେବେ ଲୋକେ ଯେ ତାହାଙ୍କୁ ସୃଷ୍ଟି, ସ୍ଥିତି ଓ ପ୍ରଳୟର କର୍ତ୍ତା ବୋଲି କହନ୍ତି, ସେ କେବଳ ଲୋକମାନଙ୍କ ବ୍ୟବହାରଦୃଷ୍ଟି, ମାତ୍ର ତତ୍ତ୍ୱଦୃଷ୍ଟିରେ ଦେଖିଲେ ସେ କାହିଁରେ ଲିପ୍ତ ନୁହନ୍ତି । ଏହି ସୃଷ୍ଟିଆଦି କାର୍ଯ୍ୟ ତାହାଙ୍କ ପ୍ରକୃତିସୁଲଭ ଲୀଳା ମାତ୍ର । ଯେ ଏ ପ୍ରକାର ତତ୍ତ୍ୱ ବୁଝି ପାରିଅଛନ୍ତି, ତାଙ୍କୁ ମଧ୍ୟ କର୍ମଫଳ ଆବଦ୍ଧ କରି ପାରେ ନାହିଁ । କାହିଁକିନା ସେ ତତ୍ତ୍ୱକଥା ଜାଣିଥିବାରୁ 'ମୁଁ କରୁଅଛି' ଏପରି ଅହଙ୍କାର ତାଙ୍କର ନ ଥାଏ । ୧୪ ।

### ଶ୍ଳୋକଃ ।

ଏବଂ ଜ୍ଞାତ୍ୱା କୃତଂ କର୍ମ, ପୂର୍ବୈରପି ମୁମୁକ୍ଷୁଭିଃ ।
କୁରୁ କର୍ମୈବ ତସ୍ମାତ୍ତ୍ୱଂ, ପୂର୍ବୈଃ ପୂର୍ବତରଂ କୃତଂ । ୧୫ ।

### ଅନ୍ୱୟଃ ।

ପୂର୍ବୈଃ ମୁମୁକ୍ଷୁଭିଃ ଅପି ଏବଂ ଜ୍ଞାତ୍ୱା କର୍ମ କୃତଂ, ତସ୍ମାତ୍ ତ୍ୱଂ ପୂର୍ବୈଃ ପୂର୍ବତରଂ କୃତଂ କର୍ମ ଏବ କୁରୁ । ୧୫ ।

### ଟୀକା ।

ଯେ ଯଥା ମାମିତ୍ୟାଦି-ଚତୁର୍ଭିଃ ଶ୍ଳୋକୈଃ ପ୍ରାସଙ୍ଗିକମୀଶ୍ୱରସ୍ୟ ବୈଷମ୍ୟଂ ପରିହୃତ୍ୟ ପୂର୍ବୋକ୍ତମେବ କର୍ମଯୋଗଂ ପ୍ରପଞ୍ଚୟିତୁମନୁସ୍ମାରୟତି, ଏବମିତି । ଅହଙ୍କାରାଦିରହିତ୍ୟେନ କୃତଂ କର୍ମବନ୍ଧକଂ ନ ଭବତୀତ୍ୟେବ ଜ୍ଞାତ୍ୱା ପୂର୍ବୈର୍ଜନକାଦିଭିରପି ମୁମୁକ୍ଷୁଭିଃ ସତ୍ତ୍ୱଶୁଦ୍ଧ୍ୟର୍ଥଂ ପୂର୍ବତରଂ ଯୁଗାନ୍ତରେଷ୍ୱପି କୃତଂ ତସ୍ମାତ୍ତ୍ୱମପି ପ୍ରଥମଂ କର୍ମୈବ କୁରୁ । ୧୫ ।

### ପଦବ୍ୟାଖ୍ୟା ।

ଏବଂ—ଏପ୍ରକାର, ଜ୍ଞାତ୍ୱା—ଜାଣି କରି, କୃତଂ—କରିଅଛନ୍ତି, କର୍ମ—କର୍ମକୁ, ପୂର୍ବୈଃ ଅପି—ପୂର୍ବର ଲୋକମାନେ (ଜନକାଦି) ମଧ୍ୟ, ମୁମୁକ୍ଷୁଭିଃ—ମୁକ୍ତି ଅଭିଳାଷୀ, କୁରୁ—କର, କର୍ମ-ଏବ—କେବଳ କର୍ମ, ତସ୍ମାତ୍—ସେହି କାରଣରୁ, ତ୍ୱଂ—ତୁମ୍ଭେ, ପୂର୍ବୈଃ—ପୁରାତନ ବ୍ୟକ୍ତିମାନେ, ପୂର୍ବତରଂ—ଯୁଗାନ୍ତରରେ (ଅତି ପୂର୍ବକାଳରେ), କୃତଂ—କରିଥିବା । ୧୫ ।

### ଅନୁବାଦ ।

(ଆତ୍ମା ଅକର୍ତ୍ତା ଓ ଅଭୋକ୍ତା) ଏପରି ଜାଣି ପୂର୍ବର ମୋକ୍ଷାଭିଳାଷିବ୍ୟକ୍ତିମାନେ କର୍ମ କରିଥିଲେ । ସେହିହେତୁରୁ ତୁମ୍ଭେ ପୂର୍ବଲୋକଙ୍କର ଯୁଗଯୁଗାନ୍ତରକୃତ କର୍ମ ଆଚରଣ କର । ୧୫ ।

### ବିଶଦବ୍ୟାଖ୍ୟା ।

ଦ୍ୱାପର ଯୁଗରେ ଯଯାତି, ଯଦୁ ଓ ତତ୍ପୂର୍ବରେ ଜନକ, ନିମି ପ୍ରଭୃତି ମୋକ୍ଷାଭିଳାଷି-ମହାତ୍ମାମାନେ ଆତ୍ମାକୁ ଅକର୍ତ୍ତା ଓ ଅଭୋକ୍ତା ଜାଣି ନିଷ୍କାମଭାବରେ କର୍ମ କରିଥିଲେ, ଅତଏବ ତୁମ୍ଭେ ମଧ୍ୟ ଅନ୍ତଃକରଣଶୁଦ୍ଧିପାଇଁ ପ୍ରଥମରେ ସେହିପରି କର୍ମ କର । ୧୫ ।

Digitized by PPRACHIN, SOA

## ଶ୍ଲୋକଃ ।

କିଂ କର୍ମ କିମକର୍ମେତି, କବୟୋଽପ୍ୟତ୍ର ମୋହିତାଃ ।
ତତ୍ତେ କର୍ମ ପ୍ରବକ୍ଷ୍ୟାମି, ଯଜ୍ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍ । ୧୬ ।

## ଅନ୍ୱୟଃ ।

କର୍ମ କିଂ ଅକର୍ମ କିଂ ଇତି ଅତ୍ର କବୟଃ ଅପି ମୋହିତାଃ, ତତ୍ କର୍ମ (ଅହଂ) ତେ ପ୍ରବକ୍ଷ୍ୟାମି ଯତ୍ ଜ୍ଞାତ୍ୱା ଅଶୁଭାତ୍ ମୋକ୍ଷ୍ୟସେ । ୧୬ ।

## ଟୀକା ।

ତଚ୍ଚ ତତ୍ତ୍ୱବିଦ୍ଭିଃ ସହ ବିଚାର୍ଯ୍ୟ କର୍ତ୍ତବ୍ୟଂ ନ ଲୋକପରମ୍ପରାମାତ୍ରେଣେତ୍ୟାହ, କିଂ କର୍ମେତି । କିଂ କର୍ମ କୀଦୃଶଂ କର୍ମକରଣଂ କିମକର୍ମ କୀଦୃଶଂ କର୍ମାକରଣଂ ଇତ୍ୟସ୍ମିନ୍ନର୍ଥେ ବିବେକିନୋଽପି ମୋହିତାଃ ଅତୋ ଯଜ୍ଜ୍ଞାତ୍ୱା ଯଦନୁଷ୍ଠାୟାଶୁଭାତ୍ସଂସାରାନ୍ମୋକ୍ଷ୍ୟସେ ମୁକ୍ତୋ ଭବିଷ୍ୟସି ତତ୍ କର୍ମାକର୍ମ ଚ ତୁଭ୍ୟମହଂ ପ୍ରବକ୍ଷ୍ୟାମି ତତ୍ ଶୃଣୁ । ୧୬ ।

## ପଦବ୍ୟାଖ୍ୟା ।

କିଂ—କଣ, କର୍ମ—କାର୍ଯ୍ୟ, କିଂ—କଣ, ଅକର୍ମ—ଅକାର୍ଯ୍ୟ, ଇତି—ଏହା, କବୟଃ ଅପି—ପଣ୍ଡିତ ଓ ବିବେକିମାନେ ମଧ୍ୟ, ଅତ୍ର—ଏ ବିଷୟରେ, ମୋହିତାଃ—ମୋହପ୍ରାପ୍ତ ହୋଇଅଛନ୍ତି, ତତ୍—ସେହି, ତେ—ତୁମ୍ଭଙ୍କୁ, କର୍ମ—କର୍ମକୁ, ପ୍ରବକ୍ଷ୍ୟାମି—କହିବୁଁ, ଯତ୍—ଯାହା, ଜ୍ଞାତ୍ୱା—ଜାଣିକରି ବା ଅନୁଷ୍ଠାନ କରି, ମୋକ୍ଷ୍ୟସେ—ମୁକ୍ତ ହୋଇଯିବ, ଅଶୁଭାତ୍—ଅଶୁଭରୁ ଅର୍ଥାତ୍ ସଂସାରବନ୍ଧନରୁ । ୧୬ ।

## ଅନୁବାଦ ।

କର୍ମ କଣ ଓ ଅକର୍ମ କଣ, ଏ ବିଷୟରେ ପଣ୍ଡିତମାନେ ମଧ୍ୟ ମୋହିତ ହୋଇଥାନ୍ତି, ଅତଏବ ଆମ୍ଭେ ତୁମ୍ଭଙ୍କୁ ସେହି କର୍ମର ବିଷୟ ଉତ୍ତମରୂପେ କହିବୁଁ, ଯାହା ଜାଣିଲେ ତୁମ୍ଭେ ଅଶୁଭରୁ ମୁକ୍ତ ହେବ । ୧୬ ।

## ବିଶଦବ୍ୟାଖ୍ୟା ।

କର୍ମ କାହାକୁ କହନ୍ତି ଏବଂ ଅକର୍ମ କାହାକୁ କହନ୍ତି, ତାହା ସ୍ଥିର କରିବାକୁ ପଣ୍ଡିତମାନେ ମଧ୍ୟ ଭ୍ରମରେ ପଡନ୍ତି । କୌଣସି ଶୀଘ୍ରଗାମୀ ନୌକାରେ ଆରୋହଣ କରି କୂଳକୁ ଚାହିଁଲେ, କୂଳସ୍ଥିତ ବୃକ୍ଷାଦି ଚଳିଲା ପରି ଓ ନୌକା ସ୍ଥିର ଥିଲା ପରି ଦେଖାଯାଏ, କିନ୍ତୁ ପ୍ରକୃତରେ ନୌକା ଚାଲୁଥାଏ ଓ ବୃକ୍ଷାଦି ସ୍ଥିର ଥାଏ । ଯେତେବେଳେ ସାମାନ୍ୟ ଲୌକିକ ବ୍ୟବହାରରେ ଏପରି ଭ୍ରମ ହେଉଅଛି, ସେତେବେଳେ ପାରମାର୍ଥିକ କର୍ମ ଓ ଅକର୍ମ ସ୍ଥିର କରିବା କି ସହଜ କଥା ? ଶାସ୍ତ୍ରରେ ଯେଉଁ ଅଧିକାରୀପାଇଁ ଯାହା କରିବାକୁ ଲେଖାଅଛି, ତାହାହିଁ କର୍ମ ଏବଂ ତାହା ତ୍ୟାଗ କରିବା ଅବା ତଦ୍ବିରୁଦ୍ଧ ଆଚରଣ କରିବାର ନାମ ଅକର୍ମ । ସେହି କର୍ମ ଓ ଅକର୍ମର ଉପଦେଶ ସ୍ୱୟଂ ଶ୍ରୀଭଗବାନଙ୍କଠାରୁ ଶ୍ରବଣ କଲେ, ଯେ ଭବବନ୍ଧନରୁ ମୁକ୍ତ ହେବ, ଏଥିରେ କି ଆଉ ସନ୍ଦେହ ଅଛି ? । ୧୬ ।

Digitized by PPRACHIN, SOA

## ଶ୍ଳୋକଃ ।

ଓଁ କର୍ମଣୋ ହ୍ୟପି ବୋଦ୍ଧବ୍ୟଂ, ବୋଦ୍ଧବ୍ୟଂ ଚ ବିକର୍ମଣଃ ।
ଅକର୍ମଣଶ୍ଚ ବୋଦ୍ଧବ୍ୟଂ, ଗହନା କର୍ମଣୋ ଗତିଃ । ୧୭ ।

## ଅନ୍ୱୟଃ ।

ହି କର୍ମଣଃ ଅପି ବୋଦ୍ଧବ୍ୟଂ ଚ ବିକର୍ମଣଃ ବୋଦ୍ଧବ୍ୟଂ, ଅକର୍ମଣଃ ଚ ବୋଦ୍ଧବ୍ୟଂ (ଯତଃ) କର୍ମଣଃ ଗତିଃ ଗହନା । ୧୭ ।

## ଟୀକା ।

ନନୁ ଲୋକପ୍ରସିଦ୍ଧମେବ କର୍ମ ଦେହାଦିବ୍ୟାପାରାତ୍ମକଂ ଅକର୍ମ ଚ ତଦବ୍ୟାପାରାତ୍ମକଂ ଅତଃ କଥମୁଚ୍ୟତେ କବୟୋଽପ୍ୟତ୍ର ମୋହିତଂ ପ୍ରାପ୍ତାଇତି ତତ୍ରାହ — କର୍ମଣଇତି । କର୍ମଣୋ ବିହିତବ୍ୟାପାରସ୍ୟାପି ତତ୍ତ୍ୱଂ ବୋଦ୍ଧବ୍ୟମସ୍ତି ନତୁ ଲୋକପ୍ରସିଦ୍ଧିମାତ୍ରମେବ, ଅକର୍ମଣୋଽବିହିତବ୍ୟାପାରସ୍ୟାପି ତତ୍ତ୍ୱଂ ବୋଦ୍ଧବ୍ୟମସ୍ତି ଯତଃ କର୍ମଣୋ ଗତିର୍ଗହନା କର୍ମ ତତ୍ତ୍ୱୋପଲକ୍ଷଣାର୍ଥଂ କର୍ମାକର୍ମବିକର୍ମଣାଂ ତତ୍ତ୍ୱଂ ଦୁର୍ବିଜ୍ଞେୟମିତ୍ୟର୍ଥଃ । ୧୭ ।

## ପଦବ୍ୟାଖ୍ୟା ।

କର୍ମଣଃ—କର୍ମର, ହି—ଯେହେତୁ, ଅପି—ମଧ୍ୟ, ବୋଦ୍ଧବ୍ୟଂ—ନିଷ୍ଠୟ କରି ଜାଣିବା ଉଚିତ, ବୋଦ୍ଧବ୍ୟଂ—ଜାଣିବା ଉଚିତ, ଚ—ପୁଣି, ବିକର୍ମଣଃ—ବିକର୍ମର, ଅକର୍ମଣଶ୍ଚ ବୋଦ୍ଧବ୍ୟଂ—ଅକର୍ମର (ତତ୍ତ୍ୱ) ମଧ୍ୟ ଜାଣିବା ଉଚିତ, ଗହନା—ଦୁର୍ଜ୍ଞେୟ ଅର୍ଥାତ୍ ସହଜରେ ଜଣା ଯାଏ ନାହିଁ, କର୍ମଣଃ—କର୍ମର, ଗତିଃ—ବିଧି ଅର୍ଥାତ୍ କର୍ମ, ବିକର୍ମ ଓ ଅକର୍ମ ଏମାନଙ୍କ ତତ୍ତ୍ୱ ବଡ଼ କଠିନ କଥା । ୧୭ ।

## ଅନୁବାଦ ।

ବିହିତକର୍ମ, ନିଷିଦ୍ଧକର୍ମ ଓ ଅକର୍ମର ଯଥାର୍ଥ ତତ୍ତ୍ୱ ଜାଣିବା ଉଚିତ । କାହିଁକିନା ଏ ସବୁ ତତ୍ତ୍ୱ ଅତ୍ୟନ୍ତ କଠିନ ଅଟେ । ୧୭ ।

## ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନ ମନେ କରିବେ, ଯେ ଇନ୍ଦ୍ରିୟଦ୍ୱାରା ଅନୁଷ୍ଠିତ କାର୍ଯ୍ୟର ନାମ କର୍ମ, ଏବଂ ସେ ସବୁ ତ୍ୟାଗ କରିବାର ଅକର୍ମ, ଏଥିରେ ଆଉ ଶ୍ରୀଭଗବାନ୍ ମତେ ବୁଝାଇବେ କଣ ? ଅର୍ଜ୍ଜୁନଙ୍କର ଏହି ଆଶଙ୍କା ନିବାରଣପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଶାସ୍ତ୍ର ଅର୍ଥାତ୍ ଶ୍ରୁତି ଓ ସ୍ମୃତିରେ ଯାହା୨ କରିବାକୁ ଉପଦେଶ ଅଛି ତାକୁ କର୍ମ ବୋଲାଯାଏ, ତାହାର ଯଥାର୍ଥ ତତ୍ତ୍ୱ ଜାଣିବା ଉଚିତ, କାହିଁକିନା ତାହା ନ ଜାଣିଲେ ତୁମ୍ଭର କର୍ମରେ ପ୍ରବୃତ୍ତି ହେବ କପରି ? ପୁଣି ଶାସ୍ତ୍ରରେ ଯେଉଁ୨ କର୍ମ କରିବାକୁ ନିଷେଧ ଅଛି ତାକୁ 'ବିକର୍ମ' କହନ୍ତି, ତାହାର ତତ୍ତ୍ୱ ନ ଜାଣିଲେ ତହିଁରୁ ନିବୃତ୍ତି ହେବ କପରି ? ସେହିପରି ସମସ୍ତ କର୍ମ ତ୍ୟାଗ କରିବାକୁ 'ଅକର୍ମ' ବୋଲାଯାଏ, ତାହାର ତତ୍ତ୍ୱ ନ ଜାଣିଲେ ଯେ ପଥଭ୍ରଷ୍ଟ ହେବାକୁ ହେବ; ଅତଏବ ସେ ସବୁର ପ୍ରକୃତ ତତ୍ତ୍ୱ ଜାଣିବା ଉଚିତ । ସେ ସବୁ ତତ୍ତ୍ୱ ଅତ୍ୟନ୍ତ ଦୁରୂହ ଅଥବା ଦୁର୍ଜ୍ଞେୟ ଅର୍ଥାତ୍ ତାହା ସହଜରେ ବୁଝା ଯାଏ ନାହିଁ । ୧୭ ।

Digitized by PPRACHIN, SOA

ଶ୍ଳୋକଃ ।

* କର୍ମଣ୍ୟକର୍ମ ଯଃ ପଶ୍ୟେଦକର୍ମଣି ଚ କର୍ମ ଯଃ ।
ସବୁଦ୍ଧିମାନ୍ ମନୁଷ୍ୟେଷୁ, ସଯୁକ୍ତଃ କୃତ୍ସ୍ନକର୍ମକୃତ୍ । ୧୮ ।

ଅନ୍ୱୟଃ ।

ଯଃ କର୍ମଣି ଅକର୍ମ ପଶ୍ୟେତ୍ ଯଃ ଅକର୍ମଣି ଚ କର୍ମ (ପଶ୍ୟେତ୍) ମନୁଷ୍ୟେଷୁ ସଃ ବୁଦ୍ଧିମାନ୍ ସଃ ଯୁକ୍ତଃ କୃତ୍ସ୍ନକର୍ମକୃତ୍ । ୧୮ ।

ଟୀକା ।

ତଦେବ କର୍ମାଦୀନାଂ ଦୁର୍ବିଜ୍ଞେୟତ୍ୱଂ ଦର୍ଶୟନ୍ନାହ । କର୍ମଣୀତି । ପରମେଶ୍ୱରାରାଧନଲକ୍ଷଣେ କର୍ମଣି କର୍ମବିଷୟେ ଅକର୍ମ କର୍ମେଦଂ ନ ଭବତୀତି ଯଃ ପଶ୍ୟେତ୍ତସ୍ୟ ଜ୍ଞାନହେତୁତ୍ୱେନ ବନ୍ଧକତ୍ୱାଭାବାତ୍, ଅକର୍ମଣି ଚ ବିହିତାକରଣେ କର୍ମ ଯଃ ପଶ୍ୟେତ୍ ପ୍ରତ୍ୟବାୟୋତ୍ପାଦକତ୍ୱେନ ବନ୍ଧହେତୁତ୍ୱାତ୍, ମନୁଷ୍ୟେଷୁ କର୍ମକୁର୍ବାଣେଷୁ ସବୁଦ୍ଧିମାନ୍ ବ୍ୟବସାୟାତ୍ମକବୁଦ୍ଧିମତ୍ତ୍ୱାଚ୍ଛ୍ରେଷ୍ଠଃ ତଂ ପ୍ରଶଂସତି ସଯୁକ୍ତୋଯୋଗୀ ତେନ କର୍ମଣା ଜ୍ଞାନଯୋଗାବାପ୍ତେଃ ସଏବ କୃତ୍ସ୍ନକର୍ମକର୍ତ୍ତା ଚ ସର୍ବତଃ ସଂପ୍ଳୁତୋଦକସ୍ଥାନୀୟେ ଚ ତସ୍ମିନ୍ କର୍ମଣି ସର୍ବକର୍ମଫଳାନାମନ୍ତର୍ଭାବାତ୍ । ଏତଦେବମାରୁରୁକ୍ଷୋଃ କର୍ମଯୋଗାଧିକାରାବସ୍ଥାୟାଂ ନ କର୍ମଣାମନାରମ୍ଭାଦିତ୍ୟାଦିନୋକ୍ତଏବ କର୍ମଯୋଗଃ ସ୍ତୁତିକୃତସ୍ତତ୍ପ୍ରପଞ୍ଚରୂପତ୍ୱାଚ୍ଚାସ୍ୟ ପ୍ରକରଣସ୍ୟ ନ ପୌନରୁକ୍ତ୍ୟଦୋଷଃ ଅତଏବୈବ ଯୋଗାରୂଢ଼ାବସ୍ଥାୟାଂ ଯସ୍ତ୍ୱାତ୍ମରତିରେବସ୍ୟାଦିତ୍ୟାଦିନା ଯଃ କର୍ମାନୁପଯୋଗଉକ୍ତସ୍ତସ୍ୟାପ୍ୟର୍ଥାତ୍ ପ୍ରପଞ୍ଚଃ କୃତୋବେଦିତବ୍ୟଃ ଯଦାରୁରୁକ୍ଷୋରପି କର୍ମବନ୍ଧକଂ ନ ଭବତି ତଦାରୂଢ଼ସ୍ୟ କୁତୋବନ୍ଧକଂ ସ୍ୟାଦିତ୍ୟପି ଶ୍ଳୋକୋକ୍ତ୍ୟୁଚ୍ୟତେ ଯଦ୍ୱା କର୍ମଣି ଦେହେନ୍ଦ୍ରିୟାଦିବ୍ୟାପାରେ ବର୍ତ୍ତମାନେଽପ୍ୟାତ୍ମନୋଦେହାଦିବ୍ୟତିରେକାନୁଭବେନ ଅକର୍ମ ସ୍ୱାଭାବିକଂ ନୈଷ୍କର୍ମ୍ୟମେବ ଯଃ ପଶ୍ୟେତ୍ ତଥା ଅକର୍ମଣି ଚ ଜ୍ଞାନରହିତେ ଦୁଃଖବୁଦ୍ଧ୍ୟା କର୍ମଣାଂ ତ୍ୟାଗେ କର୍ମ ଯଃ ପଶ୍ୟେତ୍ତସ୍ୟ ପ୍ରଯତ୍ନସାଧ୍ୟତ୍ୱେନ ମିଥ୍ୟାଚାରତ୍ୱାତ୍ ତଦୁକ୍ତଂ କର୍ମେନ୍ଦ୍ରିୟାଣି ସଂଯମ୍ୟେତ୍ୟାଦିନା ଯଏବମ୍ଭୂତଃ ସତୁ ସର୍ବେଷୁ ମନୁଷ୍ୟେଷୁ ବୁଦ୍ଧିମାନ୍ ପଣ୍ଡିତଃ ତତ୍ର ହେତୁର୍ଯତଃ କୃତ୍ସ୍ନାନି ସର୍ବାଣି ଯଦୃଚ୍ଛୟା ପ୍ରାପ୍ତାନି ଆହାରାଦୀନି କର୍ମାଣି କୁର୍ବନ୍ନପି ସଯୁକ୍ତ ଏବ ଅକର୍ତ୍ତ୍ରାତ୍ମଜ୍ଞାନେନ ସମାଧିସ୍ଥଏବେତ୍ୟର୍ଥଃ ଅନେନୈବ ଜ୍ଞାନିନଃ ସ୍ୱଭାବାଦାପନ୍ନଂ କଳଞ୍ଜଭକ୍ଷଣାଦିକଂ ନ ଦୋଷାୟ ଅଜ୍ଞସ୍ୟ ତୁ ରାଗତଃ କୃତଂ ଦୋଷାୟେତି ବିକର୍ମଣୋଽପି ତତ୍ତ୍ୱଂ ନିରୂପିତଂ ଦ୍ରଷ୍ଟବ୍ୟଂ । ୧୮ ।

ପଦବ୍ୟାଖ୍ୟା ।

କର୍ମଣି—କର୍ମରେ, ଅକର୍ମ—ଅକାର୍ଯ୍ୟ, ଯଃ—ଯେ, ପଶ୍ୟେତ୍—ଦେଖନ୍ତି, ଅକର୍ମଣି—ଅକର୍ମରେ, ଚ—ମଧ, କର୍ମ—କାର୍ଯ୍ୟ, ଯଃ—ଯେ, ସଃ—ସେ, ବୁଦ୍ଧିମାନ୍—ପଣ୍ଡିତ, ମନୁଷ୍ୟେଷୁ—ମନୁଷ୍ୟମାନଙ୍କ ମଧରେ, ସଃ—ସେ, ଯୁକ୍ତଃ—ଯୋଗୀ, କୃତ୍ସ୍ନକର୍ମକୃତ୍—ସମସ୍ତ କର୍ମ କରିଥିବା ବ୍ୟକ୍ତି । ୧୮ ।

ଅନୁବାଦ ।

ଯେ କର୍ମରେ ଅକର୍ମ ଓ ଅକର୍ମରେ କର୍ମ ଦର୍ଶନ କରନ୍ତି, ମନୁଷ୍ୟମାନଙ୍କ ମଧ୍ୟରେ ସେ ବୁଦ୍ଧିମାନ୍, ଯୋଗଯୁକ୍ତ ଓ ସର୍ବକର୍ମର ଅନୁଷ୍ଠାନକାରୀ ଅଟନ୍ତି । ୧୮ ।

ବିଶଦବ୍ୟାଖ୍ୟା ।

ଏ ଶ୍ଳୋକରେ 'କର୍ମ' ଓ 'ଅକର୍ମ'ର ଅନେକ ପ୍ରକାର ଅର୍ଥ ହୋଇପାରେ । ନିମ୍ନରେ କେତେଗୁଡ଼ିଏ ମାତ୍ର ଲେଖାଗଲା । ଯଥା—ଯେପରି ଶୀଘ୍ରଗାମୀ ନୌକାରେ ବସିବା ଲୋକ କୂଳସ୍ଥିତ ବୃକ୍ଷମାନଙ୍କୁ ସଚଳ ଓ ନୌକାକୁ ଅଚଳ ମନେ କରେ ଅଥବା ପୃଥିବୀ ଉପରେ ଥାଇ ଲୋକମାନେ ପୃଥିବୀକୁ ସ୍ଥିର ଓ ସୂର୍ଯ୍ୟଙ୍କୁ ଗତି କରୁଥିବାର ଅନୁମାନ କରନ୍ତି, ସେହିପରି ଇନ୍ଦ୍ରିୟମାନଙ୍କଦ୍ୱାରା ଅନୁଷ୍ଠିତ କର୍ମକୁ 'ଆମ୍ଭେ କରୁଅଛୁଁ' ବୋଲି କଳ୍ପିଥି ଆତ୍ମା-

Digitized by PPRACHIN, SOA

ରେ ଆରୋପ କରନ୍ତି ଓ ପ୍ରକୃତ ଇନ୍ଦ୍ରିୟାଦିରେ ଅକର୍ମ ବା କର୍ମର ଅଭାବ ଆରୋପ କରନ୍ତି । ଯେଉଁ ବ୍ୟକ୍ତି ଆତ୍ମାଠାରେ ମିଥ୍ୟାରେ ଆରୋପିତ ଏହି 'କର୍ମ'ରେ 'ଅକର୍ମ' ବା କର୍ମର ଅଭାବ ଦେଖନ୍ତି "ଅର୍ଥାତ୍ ଆତ୍ମା କର୍ମ କରେ ନାହିଁ ବୋଲି ଜାଣନ୍ତି ସେ ବୁଦ୍ଧିମାନ୍ । ସେହି-ପରି ଇନ୍ଦ୍ରିୟମାନେ କର୍ମ କରୁଥିବା ସ୍ଥଳେ ସେମାନେ କର୍ମ କରନ୍ତି ନାହିଁ ବୋଲି ମିଥ୍ୟାରେ ଆରୋପିତ 'ଅକର୍ମ'ରେ ଯେଉଁମାନେ 'କର୍ମ' ଅର୍ଥାତ୍ ଇନ୍ଦ୍ରିୟମାନେ 'କର୍ମ' କରୁଥିବାର ବୁଝି ପାରନ୍ତି ସେ ବୁଦ୍ଧିମାନ୍ ଓ ଯୋଗଯୁକ୍ତ ଅଥବା (ପକ୍ଷାନ୍ତରେ) ପ୍ରକୃତିଦ୍ୱାରା ରଚିତ ଏ ଜଗତ୍ ପ୍ରପଞ୍ଚ 'କର୍ମ' ଓ ଚୈତନ୍ୟସ୍ୱରୂପ ଆତ୍ମା 'ଅକର୍ମ' । ଯେଉଁ ବ୍ୟକ୍ତି 'କର୍ମ'ରେ ଅର୍ଥାତ୍ ଜଗତରେ 'ଅକର୍ମ' ଅବା ଚୈତନ୍ୟର ସତ୍ତା ଦେଖନ୍ତି ଓ 'ଅକର୍ମ' ଅର୍ଥାତ୍ ଆତ୍ମାରେ କର୍ମ ଅର୍ଥାତ୍ ଜଗତର ସ୍ଫୁରଣ ଦେଖନ୍ତି ସେ ବୁଦ୍ଧିମାନ୍ ଓ ଯୋଗଯୁକ୍ତ, ଅଥବା ଯେଉଁମାନେ ନିଷ୍କାମଭାବରେ ଅନୁଷ୍ଠିତ ଯଜ୍ଞାଦି କର୍ମରେ ସଂସାରବନ୍ଧନର ଅଭାବରୂପ 'ଅକର୍ମ' ଦେଖନ୍ତି ଓ ସେହି ଯଜ୍ଞାଦି ତ୍ୟାଗରୂପ 'ଅକର୍ମ'ରେ ପାପ ହେତୁରୁ ନରକରେ ପତନ ବା ସଂସାର-ବନ୍ଧନରୂପ 'କର୍ମ' ଦେଖନ୍ତି, ସେମାନେ ଯୋଗୀ ଓ ଶ୍ରେଷ୍ଠ ଅଟନ୍ତି ଏବଂ ସକଳ କର୍ମର କର୍ତ୍ତା ଅଟନ୍ତି । ୧୮ ।

ଶ୍ଳୋକଃ ।

ଯସ୍ୟ ସର୍ବେ ସମାରମ୍ଭାଃ, କାମସଙ୍କଳ୍ପବର୍ଜ୍ଜିତାଃ ।
ଜ୍ଞାନାଗ୍ନିଦଗ୍ଧକର୍ମାଣଂ, ତମାହୁଃ ପଣ୍ଡିତଂ ବୁଧାଃ । ୧୯ ।

ଅନ୍ୱୟଃ ।

ଯସ୍ୟ ସର୍ବେ ସମାରମ୍ଭାଃ କାମସଙ୍କଳ୍ପବର୍ଜ୍ଜିତାଃ (ସ୍ୟୁଃ) ଜ୍ଞାନାଗ୍ନିଦଗ୍ଧକର୍ମାଣଂ ତଂ ବୁଧାଃ ପଣ୍ଡିତଂ ଆହୁଃ । ୧୯ ।

ଟୀକା ।

କର୍ମଣି ଅକର୍ମ ଯଃ ପଶ୍ୟେଦିତ୍ୟନେନ ଶ୍ରୁତ୍ୟର୍ଥାର୍ଥାପତ୍ତିଭ୍ୟାଂ ଯଦୁକ୍ତମର୍ଥଦ୍ୱୟଂ ତଦେବ ସ୍ପଷ୍ଟୟତି, ଯସ୍ୟେତି ପଞ୍ଚଭିଃ । ସମ୍ୟଗାରଭ୍ୟନ୍ତେ ଇତି ସମାରମ୍ଭାଃ କର୍ମାଣି କାମ୍ୟତ ଇତି କାମଃ ଫଳଂ ତତ୍ସଙ୍କଳ୍ପେନ ବର୍ଜିତା ଯସ୍ୟ ଭବନ୍ତି ତଂ ପଣ୍ଡିତଂ ମାହୁଃ ଅତ୍ର ହେତୁର୍ଗର୍ଭିତଃ ସମାରମ୍ଭୈଃ ଶୁଦ୍ଧେ ଚିତ୍ତେ ସତି ଜାତେନ ଜ୍ଞାନାଗ୍ନିନା ଦଗ୍ଧାନି ଅକର୍ମତାଂ ନୀତାନି କର୍ମାଣି ଯସ୍ୟ ତଂ ଅରୂଢ଼ାବସ୍ଥାୟାଂ ତୁ କାମଃ ଫଳହେତୁଭୂତବାସନାଃ ତଦର୍ଥମିଦଂ କର୍ତ୍ତବ୍ୟମିତି କର୍ତ୍ତବ୍ୟବିଷୟଃ ସଙ୍କଳ୍ପସ୍ତାଭ୍ୟାଂ ବର୍ଜିତାଃ । ଶେଷଂ ସ୍ପଷ୍ଟଂ । ୧୯ ।

ପଦବ୍ୟାଖ୍ୟା ।

ଯସ୍ୟ—ଯାହାଙ୍କର, ସର୍ବେ—ସମସ୍ତ, ସମାରମ୍ଭାଃ—କର୍ମର ଆରମ୍ଭ, କାମସଙ୍କଳ୍ପବର୍ଜ୍ଜିତାଃ—ଫଳର ଇଚ୍ଛାରହିତ, ଜ୍ଞାନାଗ୍ନି ଦଗ୍ଧକର୍ମାଣଂ—ଜ୍ଞାନରୂପ ଅଗ୍ନିରେ ଯାହାଙ୍କର ସମସ୍ତ କର୍ମ ଦଗ୍ଧ ହୋଇଅଛି, ତଂ—ତାହାଙ୍କୁ, ଆହୁଃ—କହନ୍ତି, ପଣ୍ଡିତଂ—ଜ୍ଞାନୀ, ବୁଧାଃ—ପଣ୍ଡିତମାନେ । ୧୯ ।

ଅନୁବାଦ ।

ଯାହାଙ୍କର ସମସ୍ତ କର୍ମାରମ୍ଭ ଫଳକାମନାବର୍ଜ୍ଜିତ ଓ ଯାହାଙ୍କର ସମସ୍ତ କର୍ମ ଜ୍ଞାନ-ରୂପ ଅଗ୍ନି ଦ୍ୱାରା ଦଗ୍ଧ ହୋଇଅଛି, ସେହି ବ୍ୟକ୍ତିଙ୍କୁ ପଣ୍ଡିତମାନେ ଜ୍ଞାନୀ ବୋଲି କହନ୍ତି । ୧୯ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଜନ୍ମଜନ୍ମାନ୍ତରରେ ଭୋଗ କରିବାକୁ ହୁଏ ଯେଉଁ ସୁଖ-ଦୁଃଖ-ରୂପ ସଂସାରବନ୍ଧନ ତାହାର ବୀଜ 'ସଙ୍କଳ୍ପ' । ସେହି ସଙ୍କଳ୍ପ ଓ ଫଳକାମନାରହିତ ହୋଇ ଯେ କର୍ମାରମ୍ଭ କରନ୍ତି ଏବଂ ଚୈତନ୍ୟସ୍ୱରୂପ ପରମାତ୍ମା ସମସ୍ତ ଜଗତରେ ପୂର୍ଣ୍ଣ ରହିଅଛନ୍ତି, ଏ ପ୍ରକାର ଜ୍ଞାନରୂପ ଅଗ୍ନିଶିଖାଦ୍ୱାରା ଯେ ଆପଣାର ସମସ୍ତ କର୍ମ ଓ ତାହାର ଫଳମାନଙ୍କୁ ଭସ୍ମ କରିଅଛନ୍ତି, ସେହି ମହାତ୍ମା ବ୍ୟକ୍ତିଙ୍କୁ ତତ୍ତ୍ୱଦର୍ଶୀବ୍ୟକ୍ତିମାନେ ପଣ୍ଡିତ ବା ଜ୍ଞାନୀ ବୋଲି କହନ୍ତି ।

ଅନ୍ତଃକରଣର ଯେଉଁ ବୃତ୍ତିଦ୍ୱାରା ସର୍ବତ୍ର ବ୍ରହ୍ମଚୈତନ୍ୟ ବିରାଜିତ ଥିବାର ଅନୁଭବ ହୁଏ ଅଥବା ଯହିଁରେ ସତ୍ ଓ ଅସତ୍ ନିରୂପଣ କରାଯାଏ, ସେହି ବୃତ୍ତିକୁ ପଣ୍ଡା ବୋଲାଯାଏ, ସେପ୍ରକାର ବୃତ୍ତିବିଶିଷ୍ଟ ଲୋକଙ୍କୁ ପଣ୍ଡିତ ବୋଲାଯାଏ । ୧୯ ।

ଶ୍ଳୋକଃ ।

* ତ୍ୟକ୍ତ୍ୱା କର୍ମଫଳାସଙ୍ଗଂ, ନିତ୍ୟତୃପ୍ତୋ ନିରାଶ୍ରୟଃ ।
କର୍ମଣ୍ୟଭିପ୍ରବୃତ୍ତୋଽପି, ନୈବ କିଞ୍ଚିତ୍ କରୋତି ସଃ । ୨୦ ।

ଅନ୍ୱୟଃ ।

ଯଃ କର୍ମଫଳାସଙ୍ଗଂ ତ୍ୟକ୍ତ୍ୱା ନିତ୍ୟତୃପ୍ତଃ ନିରାଶ୍ରୟଃ, ସଃ କର୍ମଣି ଅଭିପ୍ରବୃତ୍ତଃ ଅପି କିଞ୍ଚିତ୍ ଏବ ନ କରୋତି । ୨୦ ।

ଟୀକା ।

କିଞ୍ଚ ତ୍ୟକ୍ତ୍ୱେତି । କର୍ମଣି ତତ୍ଫଳେ ଚ ସଙ୍ଗଂ ତ୍ୟକ୍ତ୍ୱା ନିତ୍ୟେନ ନିଜାନନ୍ଦେନ ତୃପ୍ତଃ ଅତଏବ ଯୋଗକ୍ଷେମାର୍ଥମାଶ୍ରୟଣୀୟରହିତଃ ଏବମ୍ଭୂତୋ ଯଃ ସ୍ୱାଭାବିକେ ବୈହିକେ ବା କର୍ମଣି ଅଭିତଃ ପ୍ରବୃତ୍ତୋଽପି କିଞ୍ଚିଦପି ନୈବ କରୋତି ତସ୍ୟ କର୍ମ ଅକର୍ମତାମାପଦ୍ୟତ ଇତ୍ୟର୍ଥଃ । ୨୦ ।

ପଦବ୍ୟାଖ୍ୟା ।

ତ୍ୟକ୍ତ୍ୱା—ତ୍ୟାଗ କରି, କର୍ମଫଳାସଙ୍ଗଂ—କର୍ମରେ କର୍ତ୍ତୃତ୍ୱାଭିମାନ ଓ ଫଳର ଭୋଗାଭିଳାଷକୁ, ନିତ୍ୟତୃପ୍ତଃ—ସର୍ବଦା ସନ୍ତୁଷ୍ଟ, ନିରାଶ୍ରୟଃ—ଆଶ୍ରୟରହିତ, କର୍ମଣି—କର୍ମରେ, ଅଭିପ୍ରବୃତ୍ତୋଽପି—ଲାଗି ରହିଥିଲେ ମଧ୍ୟ, ନୈବ—କେବେହେଁ ନୁହେ, କିଞ୍ଚିତ୍—କିଛି, କରୋତି—କରନ୍ତି, ସଃ—ସେ । ୨୦ ।

ଅନୁବାଦ ।

ଯେ କର୍ମରେ କର୍ତ୍ତୃତ୍ୱାଭିମାନ ଓ କର୍ମଫଳରେ ଆସକ୍ତି ପରିତ୍ୟାଗ କରି ସର୍ବଦା ସନ୍ତୁଷ୍ଟ ଓ ଅବଲମ୍ବନଶୂନ୍ୟ ଥାନ୍ତି, ସେ କର୍ମରେ ପ୍ରବୃତ୍ତ ଥିଲେ ମଧ୍ୟ କିଛିମାତ୍ର କରନ୍ତି ନାହିଁ । ୨୦ ।

ବିଶଦବ୍ୟାଖ୍ୟା ।

କୌଣସି କର୍ମର ଅନୁଷ୍ଠାନ ସମୟରେ 'ମୁଁ କରୁଅଛି' ଇତ୍ୟାଦି ଯେଉଁ ଅଭିମାନ ହୁଏ ତାହାକୁ 'କର୍ମସଙ୍ଗ' ବୋଲାଯାଏ । ଆଉ 'ଉକ୍ତ କର୍ମଫଳ ହେତୁରୁ ମୋହର ସ୍ୱର୍ଗାଦି ଫଳ ହେବ' ଇତ୍ୟାଦି ଫଳ-କାମନାକୁ 'ଫଳାସଙ୍ଗ' ବୋଲାଯାଏ । ଯେ ଏ ପ୍ରକାର କର୍ମର ଆସଙ୍ଗ ଓ କର୍ମ-ଫଳର ଆସଙ୍ଗକୁ ତ୍ୟାଗ କରି ପାରନ୍ତି, ଅର୍ଥାତ୍ କର୍ମସଙ୍ଗ ତ୍ୟାଗ କରିଥିବାରୁ ଆତ୍ମାକୁ ଅକର୍ତ୍ତା ବୋଲି ଜାଣନ୍ତି, ପୁଣି ଫଳ ଆସଙ୍ଗ ତ୍ୟାଗ କରିବା ହେତୁ ଯେ ଆତ୍ମାକୁ 'ଅଭୋକ୍ତା' ବୋଲି

Digitized by PPRACHIN, SOA

ଜାଣନ୍ତି, ସେ ସର୍ବଦା ସନ୍ତୁଷ୍ଟ ଅର୍ଥାତ୍ ପରମାନନ୍ଦଯୁକ୍ତ । ଯେ ବ୍ୟକ୍ତି ଆତ୍ମାଙ୍କୁ ଦେହର ଓ ଇନ୍ଦ୍ରିୟର ଅଥବା କର୍ମର ଓ କର୍ମଫଳର ଅଧୀନ ନୁହେ ବୋଲି ଜାଣନ୍ତି, ଅଥବା ଯେ ଅଭିମାନଶୂନ୍ୟ ଓ କାମନାରହିତ ହୋଇ କର୍ମ କରୁଥିବାରୁ କର୍ମ ଓ କର୍ମଫଳ ଯାହାଙ୍କର 'ଅଦୃଷ୍ଟ'ରୂପରେ ପରିଣତ ହୋଇ ପାରେ ନାହିଁ, ଯେଉଁ 'ଅଦୃଷ୍ଟ'କୁ ଆଶ୍ରୟ କରି ସେ ସୁଖ ଦୁଃଖ ଫଳ ଭୋଗ କରିବେ, ସେହି ବ୍ୟକ୍ତି ନିରାଶ୍ରୟ ଅଟନ୍ତି, ଅର୍ଥାତ୍ ଫଳାସଙ୍ଗ ନ ଥିବାରୁ ସେ 'ସର୍ବଦା ତୃପ୍ତ' ଓ କର୍ମାସଙ୍ଗ ନ ଥିବାରୁ ସେ 'ନିରାଶ୍ରୟ' ଅଟନ୍ତି । ଏପ୍ରକାର ବ୍ୟକ୍ତି କୌଣସି କର୍ମ କଲେ ମଧ୍ୟ ତାହା ନ କଲାପରି ହୁଏ, ଅର୍ଥାତ୍ ସେ କର୍ମ ତାହାଙ୍କୁ ସଂସାରବନ୍ଧନର କାରଣସ୍ୱରୂପ କୌଣସି ଫଳ ପ୍ରଦାନ କରି ପାରେ ନାହିଁ । ୨୦ ।

ଶ୍ଳୋକଃ ।

* ନିରାଶୀର୍ଯତଚିତ୍ତାତ୍ମା, ତ୍ୟକ୍ତସର୍ବପରିଗ୍ରହଃ ।
ଶାରୀରଂ କେବଳଂ କର୍ମ, କୁର୍ବନ୍ନାପ୍ନୋତି କିଲ୍ବିଷଂ । ୨୧ ।

ଅନ୍ୱୟଃ ।

ନିରାଶୀଃ, ତ୍ୟକ୍ତସର୍ବପରିଗ୍ରହଃ, ଯତଚିତ୍ତାତ୍ମା, କେବଳଂ ଶାରୀରଂ କର୍ମ କୁର୍ବନ୍ କିଲ୍ବିଷଂ ନ ଆପ୍ନୋତି । ୨୧ ।

ଟୀକା ।

କିଞ୍ଚ ନିରାଶୀରିତି । ନିର୍ଗତା ଆଶିଷଃ କାମନା ଯସ୍ମାତ୍, ଯତଂ ନିୟତଂ ଚିତ୍ତମାତ୍ମା ଶରୀରଂ ଚ ଯସ୍ୟ, ତ୍ୟକ୍ତାଃ ସର୍ବେ ପରିଗ୍ରହା ଯେନ ସଃ ଶାରୀରଂ ଶରୀରମାତ୍ରନିର୍ବର୍ତ୍ୟଂ କର୍ତ୍ତୃତ୍ୱାଭିନିବେଶରହିତଂ କର୍ମ କୁର୍ବନ୍ନପି କିଲ୍ବିଷଂ ବନ୍ଧଂ ନ ପ୍ରାପ୍ନୋତି, ଯୋଗାରୂଢ଼ପକ୍ଷେ ଶରୀରନିର୍ବାହମାତ୍ରୋପଯୋଗି ସ୍ୱାଭାବିକଂ ଭିକ୍ଷାଟନାଦି କୁର୍ବନ୍ନପି କିଲ୍ବିଷଂ ବିହିତାକରଣନିମିତ୍ତଦୋଷଂ ନ ପ୍ରାପ୍ନୋତି । ୨୧ ।

ପଦବ୍ୟାଖ୍ୟା ।

ନିରାଶୀଃ—କାମନାରହିତ, ଯତଚିତ୍ତାତ୍ମା—ମନ ଓ ଇନ୍ଦ୍ରିୟାଦିଙ୍କର ଦମନକାରୀ, ତ୍ୟକ୍ତସର୍ବପରିଗ୍ରହଃ—ସର୍ବପଦାର୍ଥତ୍ୟାଗୀ, ଶାରୀରଂ—ଶରୀରଯାତ୍ରାନିର୍ବାହକ, କେବଳଂ—ଏକା, କର୍ମ—କ୍ରିୟା, କୁର୍ବନ୍—କଲେ, ନ ଆପ୍ନୋତି—ପ୍ରାପ୍ତ ହୁଅନ୍ତି ନାହିଁ, କିଲ୍ବିଷଂ—ପାପକୁ । ୨୧ ।

ଅନୁବାଦ ।

କାମନାହୀନ ସର୍ବସ୍ୱତ୍ୟାଗୀ ଜିତେନ୍ଦ୍ରିୟ ବ୍ୟକ୍ତି କେବଳ ଶରୀରଯାତ୍ରା ନିର୍ବାହନିମିତ୍ତ କର୍ମ କଲେ ପାପଭାଗୀ ହୁଅନ୍ତି ନାହିଁ । ୨୧ ।

ବିଶଦବ୍ୟାଖ୍ୟା ।

ଯାହାଙ୍କର କର୍ମଫଳରେ କାମନା ନାହିଁ ଓ ଯେ ମନସହିତ ସମସ୍ତ ଇନ୍ଦ୍ରିୟମାନଙ୍କୁ ଦମନ ଏବଂ ସର୍ବସ୍ୱ ତ୍ୟାଗ କରିଅଛନ୍ତି, ସେ ଶରୀରଯାତ୍ରା ନିର୍ବାହପାଇଁ ଯେଉଁ କର୍ମ କରନ୍ତି, ସେଥିରେ ତାଙ୍କର କାମନା ଓ ଆସକ୍ତି ଏବଂ ଅଭିମାନ ନ ଥିବାରୁ, ସେ ତହିଁର ଫଳଭାଗୀ ହୁଅନ୍ତି ନାହିଁ, ତେବେ ଆଉ ପାପଭାଗୀ ହେବେ କିପରି ? । ୨୧ ।

Digitized by PPRACHIN, SOA

ଶ୍ଳୋକଃ ।

*ଯଦୃଚ୍ଛାଲାଭସନ୍ତୁଷ୍ଟୋ, ଦ୍ୱନ୍ଦ୍ୱାତୀତୋ ବିମତ୍ସରଃ ।
ସମଃ ସିଦ୍ଧାବସିଦ୍ଧୌ ଚ, କୃତ୍ୱାପି ନ ନିବଧ୍ୟତେ ।୨୨।

ଅନ୍ୱୟଃ ।

ଯଦୃଚ୍ଛାଲାଭସନ୍ତୁଷ୍ଟଃ ଦ୍ୱନ୍ଦ୍ୱାତୀତଃ ବିମତ୍ସରଃ, ସିଦ୍ଧୌ ଅସିଦ୍ଧୌ ଚ ସମଃ (ପୁମାନ୍) (କର୍ମ) କୃତ୍ୱା ଅପି ନ ନିବଧ୍ୟତେ । ୨୨ ।

ଟୀକା ।

କିଞ୍ଚ ଯଦୃଚ୍ଛାଲାଭେତି । ଅପ୍ରାର୍ଥିତୋପସ୍ଥିତୋ ଲାଭୋ ଯଦୃଚ୍ଛାଲାଭସ୍ତେନ ସନ୍ତୁଷ୍ଟଃ ଦ୍ୱନ୍ଦ୍ୱାନି ଶୀତୋଷ୍ଣାଦୀନ୍ୟତୀତୋଽତିକ୍ରାନ୍ତସ୍ତତ୍ସହନଶୀଳ ଇତ୍ୟର୍ଥଃ ବିମତ୍ସରୋ ନିର୍ବୈରଃ ଯଦୃଚ୍ଛାଲାଭସ୍ୟାପି ସିଦ୍ଧାବସିଦ୍ଧୌ ଚ ସମୋ ହର୍ଷବିଷାଦରହିତଃ ଯ ଏବମ୍ଭୂତଃ ସ ପୂର୍ବୋକ୍ତର ଭୂମିକୟୋର୍ଯଥାଯଥଂ ବିହିତଂ ସ୍ୱାଭାବିକଂ ବା କର୍ମ କୃତ୍ୱା ବନ୍ଧଂ ନ ପ୍ରାପ୍ନୋତି । ୨୨ ।

ପଦବ୍ୟାଖ୍ୟା ।

ଯଦୃଚ୍ଛାଲାଭସନ୍ତୁଷ୍ଟଃ—ବିନା ଯତ୍ନରେ ପ୍ରାପ୍ତ ପଦାର୍ଥରେ ତୃପ୍ତ, ଦ୍ୱନ୍ଦ୍ୱାତୀତଃ—ସୁଖ ଓ ଦୁଃଖାଦି ଯୁଗ୍ମପଦାର୍ଥରେ ସମାନ ଜ୍ଞାନୀ, ବିମତ୍ସରଃ—ଯେ ପରଶ୍ରୀକାତର ନୁହେ, ସମଃ—ସମାନ, ସିଦ୍ଧୌ—ସିଦ୍ଧିରେ ବା ପ୍ରାପ୍ତିରେ, ଅସିଦ୍ଧୌ ଚ—ଅପ୍ରାପ୍ତିରେ ମଧ୍ୟ, କୃତ୍ୱାପି—କର୍ମ କଲେ ସୁଦ୍ଧା, ନ ନିବଧ୍ୟତେ—ଆବଦ୍ଧ ହୁଏ ନାହିଁ । ୨୨ ।

ଅନୁବାଦ ।

ଯେଉଁ ବ୍ୟକ୍ତି ବିନା ଯତ୍ନରେ ପ୍ରାପ୍ତ ଦ୍ରବ୍ୟାଦିରେ ସନ୍ତୁଷ୍ଟ, ନିର୍ଦ୍ଦ୍ୱନ୍ଦ୍ୱ, ବୈରହୀନ ଏବଂ ଲାଭ ଓ ଅଲାଭରେ ସମାନ ଜ୍ଞାନୀ, ସେ କର୍ମ କଲେ ମଧ୍ୟ ତହିଁରେ ଆବଦ୍ଧ ହୁଅନ୍ତି ନାହିଁ । ୨୨ ।

ବିଶଦବ୍ୟାଖ୍ୟା ।

ବିନା ପ୍ରାର୍ଥନାରେ ଓ ବିନା ଉଦ୍ୟମରେ ଯାହା ମିଳେ ତହିଁରେ ଯେଉଁ ବ୍ୟକ୍ତି ସନ୍ତୁଷ୍ଟ, ଯେ କ୍ଷୁଧା, ପିପାସା, ଶୀତ, ଉଷ୍ଣ, ସୁଖ, ଦୁଃଖ ଆଦି ଦ୍ୱନ୍ଦ୍ୱ ବା ଯୁଗ୍ମ ବିଷୟରେ ସମଦର୍ଶୀ, ଅର୍ଥାତ୍ ସୁଖ ପ୍ରାପ୍ତିରେ ଯେପରି, ଦୁଃଖ ପ୍ରାପ୍ତିରେ ମଧ୍ୟ ସେହିପରି ଅନୁଭବ କରନ୍ତି; ଯେ ଆପଣାର ଅମଙ୍ଗଳ କରି ମଧ୍ୟ ପରର ମଙ୍ଗଳରେ ସଚେଷ୍ଟ, ଅର୍ଥାତ୍ ଯେ ସମସ୍ତଙ୍କୁ ଆପଣା ତୁଲ୍ୟ ଜାଣନ୍ତି, ପୁଣି କାର୍ଯ୍ୟ କରି ସେଥିର ଫଳଲାଭ ହେଲେ ବା ନ ହେଲେ ଯାହାଙ୍କ ଚିତ୍ତରେ ବିକାର ଜନ୍ମେ ନାହିଁ, ସେ ବ୍ୟକ୍ତି କର୍ମ କଲେ ମଧ୍ୟ କର୍ମର ଫଳଭୋଗରୂପ ବନ୍ଧନ ପ୍ରାପ୍ତ ହୁଅନ୍ତି ନାହିଁ । ୨୨ ।

ଶ୍ଳୋକଃ ।

* ଗତସଙ୍ଗସ୍ୟ ମୁକ୍ତସ୍ୟ, ଜ୍ଞାନାବସ୍ଥିତଚେତସଃ ।
ଯଜ୍ଞାୟାଚରତଃ କର୍ମ, ସମଗ୍ରଂ ପ୍ରବିଲୀୟତେ । ୨୩ ।

ଅନ୍ୱୟଃ ।

ଗତସଙ୍ଗସ୍ୟ, ମୁକ୍ତସ୍ୟ, ଜ୍ଞାନାବସ୍ଥିତଚେତସଃ ଯଜ୍ଞାୟ କର୍ମ ଆଚରତଃ (ଜନସ୍ୟ) ସମଗ୍ରଂ ପ୍ରବିଲୀୟତେ । ୨୩ ।

Digitized by PPRACHIN, SOA

## ଟୀକା ।

କିଞ୍ଚ ଗତେତି । ଗତସଙ୍ଗସ୍ୟ ନିଷ୍କାମସ୍ୟ ରାଗାଦିଭିର୍ମୁକ୍ତସ୍ୟ ଜ୍ଞାନେଽବସ୍ଥିତଂ ଚେତୋ ଯସ୍ୟ, ଯଜ୍ଞାୟ ପରମେଶ୍ୱରା-ରାଧନାର୍ଥଂ କର୍ମ ଆଚରତଃ ସତଃ ସମଗ୍ରଂ ସବାସନଂ କର୍ମ ପ୍ରବିଲୀୟତେ ଅକର୍ମଭାବମାପଦ୍ୟତେ, ଆରୂଢ଼ଯୋଗପକ୍ଷେ ଯଜ୍ଞାୟ ଯଜ୍ଞରକ୍ଷଣାର୍ଥଂ ଲୋକସଂଗ୍ରହାର୍ଥଂ କର୍ମ କୁର୍ବତ ଇତ୍ୟର୍ଥଃ । ୨୩ ।

## ପଦବ୍ୟାଖ୍ୟା ।

ଗତସଙ୍ଗସ୍ୟ—ଆସକ୍ତିହୀନ, ମୁକ୍ତସ୍ୟ—ଶ୍ରଦ୍ଧା ଓ ଶତ୍ରୁତାଦିରୁ ମୁକ୍ତ, ଜ୍ଞାନାବସ୍ଥିତଚେତସଃ—ଜ୍ଞାନରେ ନିଶ୍ଚଳଚିତ୍ତ, ଯଜ୍ଞାୟ—ପରମେଶ୍ୱରାରାଧନନିମିତ୍ତ, ଆଚରତଃ—ଆଚରଣ କରିବା ବ୍ୟକ୍ତିର, କର୍ମ—କ୍ରିୟାକୁ, ସମଗ୍ରଂ—ସମ୍ପୂର୍ଣ୍ଣ, ପ୍ରବିଲୀୟତେ—ଲୟପ୍ରାପ୍ତ ହୋଇଯାଏ । ୨୩ ।

## ଅନୁବାଦ ।

କାମନା ଓ ଆସକ୍ତିରହିତ, ରାଗଦ୍ୱେଷାଦି ବିମୁକ୍ତ ଓ ଜ୍ଞାନରେ ନିଶ୍ଚଳମନା ବ୍ୟକ୍ତି, ବିଷ୍ଣୁଙ୍କ ଆରାଧନାନିମିତ୍ତ କର୍ମ କଲେ ସୁଦ୍ଧା, ତାହାର ଫଳସହିତ ସମସ୍ତ କର୍ମ ଲୟପ୍ରାପ୍ତ ହୁଏ । ୨୩।

## ବିଶଦବ୍ୟାଖ୍ୟା ।

ଯାହାର ଫଳକାମନା ନାହିଁ, ଯେ କୌଣସି ପଦାର୍ଥରେ ଶ୍ରଦ୍ଧା ବା ଶତ୍ରୁତା କରେ ନାହିଁ ଏବଂ ଯାହାର ମନ ତତ୍ତ୍ୱଜ୍ଞାନରେ ନିଶ୍ଚଳ, ତାହାର କର୍ମ କରିବାର ଆବଶ୍ୟକ ନାହିଁ । ଯଦି ସେ ପ୍ରାରବ୍ଧବଶରୁ ବା ଲୋକଶିକ୍ଷାପାଇଁ ଯଜ୍ଞାଦି କର୍ମ କରେ ଅଥବା ଯଜ୍ଞ (ବିଷ୍ଣୁଙ୍କ) ଆରାଧନାପାଇଁ କର୍ମ କରେ, ତେବେ ତାହାର ସେହି କର୍ମ, ସମଗ୍ର ଅର୍ଥାତ୍ (ସମ୍—ଅଗ୍ର= ଫଳ) ଫଳସହିତ ଲୋପପ୍ରାପ୍ତ ହୁଏ । ଫଳକଥା ଏହି କି ବିଷ୍ଣୁଙ୍କ ଆରାଧନାନିମିତ୍ତ କର୍ମ କରୁଥିବାରୁ ତାହାର ସେହି କର୍ମ ଓ କର୍ମଫଳ ସଂସାରବନ୍ଧନର ହେତୁ ହୁଏ ନାହିଁ । ୨୩ ।

## ଶ୍ଲୋକଃ ।

* ବ୍ରହ୍ମାର୍ପଣଂ ବ୍ରହ୍ମ ହବି, ର୍ବ୍ରହ୍ମାଗ୍ନୌ ବ୍ରହ୍ମଣା ହୁତଂ ।
ବ୍ରହ୍ମୈବ ତେନ ଗନ୍ତବ୍ୟଂ, ବ୍ରହ୍ମକର୍ମସମାଧିନା । ୨୪ ।

## ଅନ୍ୱୟଃ ।

ଅର୍ପଣଂ ବ୍ରହ୍ମ ହବିଃ ବ୍ରହ୍ମ, ବ୍ରହ୍ମାଗ୍ନୌ, ବ୍ରହ୍ମଣା ହୁତଂ, ତେନ ବ୍ରହ୍ମକର୍ମସମାଧିନା ବ୍ରହ୍ମ ଏବ ଗନ୍ତବ୍ୟଂ । ୨୪ ।

## ଟୀକା ।

ତତ୍ରଚ ପରମେଶ୍ୱରାରାଧନଲକ୍ଷଣଂ କର୍ମ ଜ୍ଞାନହେତୁତ୍ୱେନ ବନ୍ଧକତ୍ୱାଭାବାଦକର୍ମୈବ ଆରୂଢ଼ାବସ୍ଥାୟାନ୍ତୁ ଅକର୍ତ୍ରାତ୍ମଜ୍ଞାନବାଧିତତ୍ୱାତ୍ ସ୍ୱାଭାବିକମପି କର୍ମ ଅକର୍ମୈବେତି କର୍ମଣ୍ୟକର୍ମ ଯଃ ପଶ୍ୟେଦିତ୍ୟନେନୋକ୍ତଃ କର୍ମପ୍ରବିଲୟଃ ପ୍ରପଞ୍ଚିତଃ । ଇଦାନୀଂ କର୍ମଣି ତଦଙ୍ଗେଷୁ ଚ ବ୍ରହ୍ମୈବାନୁସ୍ୟୂତଂ ପଶ୍ୟତଃ କର୍ମପ୍ରବିଲୟମାହ, ବ୍ରହ୍ମାର୍ପଣମିତି । ଅର୍ପ୍ୟତେ ଅନେନେତ୍ୟର୍ପଣଂ ଜୁହ୍ୱାଦି ତଦପି ବ୍ରହ୍ମୈବ, ଅର୍ପ୍ୟମାଣଂ ହବିରପି ଘୃତାଦିକଂ ବ୍ରହ୍ମୈବ, ବ୍ରହ୍ମୈବାଗ୍ନିସ୍ତସ୍ମିନ୍ ବ୍ରହ୍ମଣା କର୍ତ୍ରା ହୁତଂ, ହୋମୋଽଗ୍ନିଶ୍ଚ କର୍ତ୍ତା ଚ କ୍ରିୟା ଚ ବ୍ରହ୍ମୈବେତ୍ୟର୍ଥଃ, ଏବଂ ବ୍ରହ୍ମଣ୍ୟେବ କର୍ମାତ୍ମକେ ସମାଧିଶ୍ଚିତ୍ତୈକାଗ୍ର୍ୟଂ ଯସ୍ୟ ତେନ ବ୍ରହ୍ମୈବ ଗନ୍ତବ୍ୟଂ ପ୍ରାପ୍ୟଂ ନତୁ ଫଳାନ୍ତରମିତ୍ୟର୍ଥଃ । ୨୪ ।

## ପଦବ୍ୟାଖ୍ୟା ।

ବ୍ରହ୍ମ-ଅର୍ପଣଂ—ଯାହାଦ୍ୱାରା ଅର୍ପଣ କରାଯାଏ (ସ୍ରୁବ) ସେ ବ୍ରହ୍ମ, ବ୍ରହ୍ମ ହବିଃ—ଘୃତାଦି ମଧ୍ୟ ବ୍ରହ୍ମ, ବ୍ରହ୍ମାଗ୍ନୌ—

Digitized by PPRACHIN, SOA

ବ୍ରହ୍ମରୂପ ଅଗ୍ନିରେ, ବ୍ରହ୍ମଣା—ବ୍ରହ୍ମଙ୍କଦ୍ୱାରା, ହୁତଂ—ହୋମ କରାଗଲା, ବ୍ରହ୍ମୈବ—ବ୍ରହ୍ମଙ୍କୁ କେବଳ, ତେନ—ସେ, ଗନ୍ତବ୍ୟଂ—ପ୍ରାପ୍ତ ହୁଅନ୍ତି, ବ୍ରହ୍ମକର୍ମସମାଧିନା—ବ୍ରହ୍ମରୂପ କର୍ମରେ ନିଷ୍ଠଳବୁଦ୍ଧି ଯାହାଙ୍କର ସେ । ୨୪ ।

ଅନୁବାଦ ।

ସ୍ରୁବ ବ୍ରହ୍ମ, ଘୃତାଦି ବ୍ରହ୍ମ ଓ ଅଗ୍ନି ବ୍ରହ୍ମ ଆଉ ହୋମକର୍ତ୍ତା ବ୍ରହ୍ମ, ଯାହାଙ୍କର କର୍ମରେ ଏହି-ପରି ବ୍ରହ୍ମବୁଦ୍ଧି ନିଶ୍ଚଳ ହୁଏ ସେ ବ୍ରହ୍ମ ପ୍ରାପ୍ତ ହୁଅନ୍ତି । ୨୪ ।

ବିଶଦବ୍ୟାଖ୍ୟା ।

କର୍ତ୍ତା, କର୍ମ, କରଣ, ସମ୍ପ୍ରଦାନ ଓ ଅଧିକରଣ ଏହି ପାଞ୍ଚ କାରକଦ୍ୱାରା ଯଜ୍ଞାଦି କ୍ରିୟା ସମ୍ପନ୍ନ ହୁଏ । ଦେବତା ଉଦ୍ଦେଶ୍ୟରେ କୌଣସି ଦ୍ରବ୍ୟ ତ୍ୟାଗ କଲେ ତାକୁ 'ଯାଗ' ବୋଲି-ଯାଏ । ପୁଣି କୌଣସି ଦେବତା ଉଦ୍ଦେଶ୍ୟରେ ଅଗ୍ନିରେ କୌଣସି ପଦାର୍ଥ ନିକ୍ଷେପ କଲେ ତାକୁ 'ହୋମ' ବୋଲାଯାଏ । ହୋମରେ ଯଜମାନ = କର୍ତ୍ତା, ଘୃତ ଓ ଚରୁ ଆଦି ଦ୍ରବ୍ୟ = କର୍ମ, ସ୍ରୁବ = କରଣ । ଯେଉଁ ଦେବତାଙ୍କ ଉଦ୍ଦେଶ୍ୟରେ ଆହୁତି ପ୍ରଦାନ କରାଯାଏ ସେହି ଦେବତା = ସମ୍ପ୍ରଦାନ ଓ ଅଗ୍ନି = ଅଧିକରଣ । ଯେ, ହୋମରେ ପ୍ରୟୋଜନୀୟ ସମସ୍ତ ପଦାର୍ଥକୁ ବ୍ରହ୍ମ ବୋଲି ଜାଣନ୍ତି, ଅର୍ଥାତ୍ 'ମୁଁ ଘୃତାଦିକୁ ସ୍ରୁବଦ୍ୱାରା ଅମୁକ ଦେବତାଙ୍କ ଉଦ୍ଦେଶ୍ୟରେ ଅଗ୍ନିରେ ପ୍ରଦାନ କରୁଅଛି' ଏପରି ମନେ ନ କରି 'ସ୍ୱୟଂ ବ୍ରହ୍ମ ବ୍ରହ୍ମରୂପ ଘୃତାଦିକୁ ବ୍ରହ୍ମସ୍ୱରୂପ ସ୍ରୁବଦ୍ୱାରା ବ୍ରହ୍ମସ୍ୱରୂପ ଦେବତାଙ୍କ ଉଦ୍ଦେଶ୍ୟରେ ବ୍ରହ୍ମରୂପ ଅଗ୍ନିରେ ପ୍ରଦାନ କରୁଅଛନ୍ତି' ଏପ୍ରକାର ନିଶ୍ଚୟ କରି ଜାଣନ୍ତି, ଅର୍ଥାତ୍ ସଂକ୍ଷେପରେ କହିବାକୁ ଗଲେ, ଯେ ଯଜ୍ଞାଦି କର୍ମରେ ପ୍ରୟୋଜନୀୟ କର୍ତ୍ତା, କର୍ମ, କରଣ, ସମ୍ପ୍ରଦାନ ଓ ଅଧିକରଣକୁ ବ୍ରହ୍ମମୟ ବୋଲି ନିଶ୍ଚିତରୂପେ ବିଶ୍ୱାସ କରନ୍ତି, ସେ ବ୍ରହ୍ମତ୍ୱ ଅର୍ଥାତ୍ ସାଯୁଜ୍ୟମୁକ୍ତି ପ୍ରାପ୍ତ ହୁଅନ୍ତି । ୨୪ ।

ଶ୍ଳୋକଃ ।

* ଦୈବମେବାପରେ ଯଜ୍ଞଂ, ଯୋଗିନଃ ପର୍ଯ୍ୟୁପାସତେ ।
ବ୍ରହ୍ମାଗ୍ନାବପରେ ଯଜ୍ଞଂ, ଯଜ୍ଞେନୈବୋପଜୁହ୍ୱତି । ୨୫ ।

ଅନ୍ୱୟଃ ।

ଅପରେ ଯୋଗିନଃ ଦୈବଂ ଏବ ଯଜ୍ଞଂ ପର୍ଯ୍ୟୁପାସତେ । ଅପରେ ବ୍ରହ୍ମାଗ୍ନୌ ଯଜ୍ଞେନ ଯଜ୍ଞଂ ଏବ ଉପଜୁହ୍ୱତି । ୨୫ ।

ଟୀକା ।

ତଦେବଂ ଯଜ୍ଞତ୍ୱେନ ସମ୍ପାଦିତଂ ସର୍ବଂ ବ୍ରହ୍ମଦର୍ଶନଲକ୍ଷଣଂ ଜ୍ଞାନଂ ସର୍ବଯଜ୍ଞୋପାୟପ୍ରାପ୍ୟତ୍ୱାତ୍ ସର୍ବଯଜ୍ଞେଭ୍ୟଃ ଶ୍ରେଷ୍ଠମିତ୍ୟେବଂ ସ୍ତୋତୁମଧିକାରଭେଦେନ ଜ୍ଞାନୋପାୟଭୂତାନ୍ ବହୂନ୍ ଯଜ୍ଞାନାହ, ଦୈବମିତ୍ୟାଦିଭିରଷ୍ଟଭିଃ । ଦେବା-ଇନ୍ଦ୍ରବରୁଣାଦୟଃ ଇଜ୍ୟନ୍ତେ ଯସ୍ମିନ୍, ଏବକାରେଣେନ୍ଦ୍ରାଦିଷୁ ବ୍ରହ୍ମବୁଦ୍ଧିରାହିତ୍ୟଂ ଦର୍ଶିତଂ, ତଦେବଂ ଯଜ୍ଞମପରେ କର୍ମଯୋଗିନଃ ପର୍ଯ୍ୟୁପାସତେ ଶ୍ରଦ୍ଧୟାନୁତିଷ୍ଠନ୍ତି, ଅପରେ ତୁ ଜ୍ଞାନଯୋଗିନୋ ବ୍ରହ୍ମରୂପେଽଗ୍ନୌ ଯଜ୍ଞେନୈବୋପାୟେନ ବ୍ରହ୍ମାର୍ପଣମିତ୍ୟାଦ୍ୟୁକ୍ତ-ପ୍ରକାରେଣ ଯଜ୍ଞମୁପଜୁହ୍ୱତି ଯଜ୍ଞାଦିସର୍ବକର୍ମାଣି ପ୍ରବିଲାପୟନ୍ତୀତ୍ୟର୍ଥଃ, ସୋଽୟଂ ଜ୍ଞାନଯଜ୍ଞଃ । ୨୫ ।

ପଦବ୍ୟାଖ୍ୟା ।

ଦୈବଂ—ଦେବତାସମ୍ବନ୍ଧୀୟ, ଏବ—କେବଳ, ଅପରେ—କେତେକ, ଯଜ୍ଞଂ—ଯଜ୍ଞକୁ, ଯୋଗିନଃ—କର୍ମ-

Digitized by PPRACHIN, SOA

ଯୋଗିମାନେ, ପର୍ଯ୍ୟୁପାସତେ—ଶ୍ରଦ୍ଧାରେ ଉପାସନା କରନ୍ତି, ବ୍ରହ୍ମାଗ୍ନୌ—ବ୍ରହ୍ମରୂପ ଅଗ୍ନିରେ, ଅପରେ—ଅନ୍ୟ (ଜ୍ଞାନ-ଯୋଗୀ)ମାନେ, ଯଜ୍ଞଂ—ଯଜ୍ଞକୁ ବା ଆତ୍ମାକୁ, ଯଜ୍ଞେନ ଏବ—କେବଳ ଯଜ୍ଞରୂପ ଉପାୟଦ୍ୱାରା, ଉପଜୁହ୍ୱତି—ହୋମ କରନ୍ତି । ୨୫ ।

ଅନୁବାଦ ।

କେତେକ (କର୍ମ)ଯୋଗୀ କେବଳ ଦେବତାପୂଜାରୂପ ଯଜ୍ଞର ଉପାସନା କରନ୍ତି । ମାତ୍ର ଅନ୍ୟ (ଜ୍ଞାନ)ଯୋଗିମାନେ ଯଜ୍ଞରୂପ ଉପାୟଦ୍ୱାରା ବ୍ରହ୍ମରୂପ ଅଗ୍ନିରେ ଯଜ୍ଞାଦି ସମସ୍ତ କର୍ମକୁ ଆହୁତରୂପେ ପ୍ରଦାନ କରନ୍ତି । ୨୫ ।

ବିଶଦବ୍ୟାଖ୍ୟା ।

ବ୍ରହ୍ମଜ୍ଞାନରୂପ ଯଜ୍ଞର ମାହାତ୍ମ୍ୟ ଅନ୍ୟ ସବୁ ଯଜ୍ଞଠାରୁ ଶ୍ରେଷ୍ଠ, ଏହା ଏହି ଶ୍ଳୋକଠାରୁ ଆରମ୍ଭ କରି ଆଠ ଶ୍ଳୋକରେ ବୁଝାଉଅଛନ୍ତି ।

ଇନ୍ଦ୍ରାଦି ଦେବତାମାନଙ୍କ ସନ୍ତୋଷ ନିମିତ୍ତ ଦର୍ଶପୌର୍ଣ୍ଣମାସ ଓ ଜ୍ୟୋତିଷ୍ଟୋମାଦି ଯେଉଁ ଯଜ୍ଞ କରାଯାଏ ତାକୁ ଦୈବଯଜ୍ଞ ବୋଲାଯାଏ । କର୍ମଯୋଗିମାନେ କେବଳ ଦୈବ-ଯଜ୍ଞ କରନ୍ତି, ଅର୍ଥାତ୍ ଇନ୍ଦ୍ରାଦି ଦେବତାଙ୍କଠାରେ ବ୍ରହ୍ମବୁଦ୍ଧି ନ କରି ବ୍ରହ୍ମରୁ ପୃଥକ୍ ଦେବ-ଜ୍ଞାନରେ ଆରାଧନା କରନ୍ତି । ମାତ୍ର ଜ୍ଞାନଯୋଗିମାନେ ସେହି ଯଜ୍ଞ ଉପାୟଦ୍ୱାରା ଅର୍ଥାତ୍ ଦୈବଯଜ୍ଞର ଅନୁଷ୍ଠାନ ପରି କର୍ମ କରି କେବଳ ଦେବତାବୁଦ୍ଧିରେ ନ କରି ବ୍ରହ୍ମବୁଦ୍ଧିରେ କରିବାରୁ, ସେହି ଯଜ୍ଞାଦି କର୍ମକୁ ବ୍ରହ୍ମରୂପ ଅଗ୍ନିରେ ଆହୁତରୂପେ ପ୍ରଦାନ କରନ୍ତି, ଅର୍ଥାତ୍ ଯଜ୍ଞାଦି କର୍ମ ଓ ତାହାର ଫଳକୁ ବ୍ରହ୍ମରେ ଅର୍ପଣ କରନ୍ତି, ଅଥବା ଜ୍ଞାନଯୋଗି ବା ସନ୍ନ୍ୟାସି-ମାନେ 'ତତ୍' ପଦବାଚ୍ୟ ବ୍ରହ୍ମରୂପ ଅଗ୍ନିରେ 'ତ୍ୱଂ' ପଦବାଚ୍ୟ ଆତ୍ମା (ଯଜ୍ଞ)କୁ ହୋମ କରନ୍ତି, ଅର୍ଥାତ୍ ବ୍ରହ୍ମ ଓ ଜୀବ ମଧ୍ୟରେ ପ୍ରଭେଦ ରଖନ୍ତି ନାହିଁ । ୨୫ ।

ଶ୍ଳୋକଃ ।

ଶ୍ରୋତ୍ରାଦୀନୀନ୍ଦ୍ରିୟାଣ୍ୟନ୍ୟେ, ସଂଯମାଗ୍ନିଷୁ ଜୁହ୍ୱତି ।
ଶବ୍ଦାଦୀନ୍ ବିଷୟାନନ୍ୟ, ଇନ୍ଦ୍ରିୟାଗ୍ନିଷୁ ଜୁହ୍ୱତି । ୨୬ ।

ଅନ୍ୱୟଃ ।

ଅନ୍ୟେ ଶ୍ରୋତ୍ରାଦୀନି ଇନ୍ଦ୍ରିୟାଣି ସଂଯମାଗ୍ନିଷୁ ଜୁହ୍ୱତି । ଅନ୍ୟେ ଶବ୍ଦାଦୀନ୍ ବିଷୟାନ୍ ଇନ୍ଦ୍ରିୟାଗ୍ନିଷୁ ଜୁହ୍ୱତି । ୨୬ ।

ଟୀକା ।

ଶ୍ରୋତ୍ରାଦୀନୀତି । ଅନ୍ୟେ ନୈଷ୍ଠିକା ବ୍ରହ୍ମଚାରିଣସ୍ତତ୍ତଦିନ୍ଦ୍ରିୟସଂଯମରୂପେଷ୍ୱଗ୍ନିଷୁ ଶ୍ରୋତ୍ରାଦୀନି ଜୁହ୍ୱତି ପ୍ରବିଲାପୟନ୍ତି ଇନ୍ଦ୍ରିୟାଣି ନିରୁଧ୍ୟ ସଂଯମପ୍ରଧାନାସ୍ତିଷ୍ଠନ୍ତୀତ୍ୟର୍ଥଃ, ଇନ୍ଦ୍ରିୟାଣ୍ୟେବାଗ୍ନୟସ୍ତେଷୁ ଶବ୍ଦାଦୀନନ୍ୟେ ଗୃହସ୍ଥା ଜୁହ୍ୱତି ବିଷୟ-ଭୋଗସମୟେଽପ୍ୟନାସକ୍ତାଃ ସନ୍ତୋଽଗ୍ନିତ୍ୱେନ ଭାବିତେଷ୍ୱିନ୍ଦ୍ରିୟେଷୁ ହବିଷ୍ଟ୍ୱେନ ଭାବିତାନ୍ ଶବ୍ଦାଦୀନ୍ ପ୍ରକ୍ଷିପନ୍ତୀତ୍ୟର୍ଥଃ । ୨୬ ।

ପଦବ୍ୟାଖ୍ୟା ।

ଶ୍ରୋତ୍ରାଦୀନି—କର୍ଣ୍ଣ ପ୍ରଭୃତି, ଇନ୍ଦ୍ରିୟାଣି—ଇନ୍ଦ୍ରିୟମାନଙ୍କୁ, ଅନ୍ୟେ—କେହି କେହି ଲୋକ, ସଂଯମାଗ୍ନିଷୁ—ସଂଯମରୂପ-ଅଗ୍ନିରେ, ଜୁହ୍ୱତି—ହୋମ କରନ୍ତି, ଶବ୍ଦାଦୀନ୍—ଶବ୍ଦ-ସ୍ପର୍ଶ-ଆଦି, ବିଷୟାନ୍—ବିଷୟମାନଙ୍କୁ, ଅନ୍ୟେ—କେହି କେହି ଲୋକ, ଇନ୍ଦ୍ରିୟାଗ୍ନିଷୁ—ଇନ୍ଦ୍ରିୟରୂପ ଅଗ୍ନିରେ, ଜୁହ୍ୱତି—ହୋମ କରନ୍ତି । ୨୬ ।

Digitized by PPRACHIN, SOA

ଅନୁବାଦ ।

କେହି୨ (ନୈଷ୍ଠିକବ୍ରହ୍ମଚାରୀ) ବ୍ୟକ୍ତି କର୍ଣ୍ଣ ନାସିକାଦି ଇନ୍ଦ୍ରିୟମାନଙ୍କୁ ସଂଯମରୂପ ଅଗ୍ନିରେ ଓ କୌଣସି୨ (ଗୃହସ୍ଥ) ବ୍ୟକ୍ତି ଶବ୍ଦ, ଗନ୍ଧ ପ୍ରଭୃତି ବିଷୟମାନଙ୍କୁ ଇନ୍ଦ୍ରିୟରୂପ ଅଗ୍ନିରେ ହୋମ କରନ୍ତି । ୨୬ ।

ବିଶଦବ୍ୟାଖ୍ୟା ।

ଏ ଶ୍ଳୋକରେ ପ୍ରଥମପାଦରେ ଥିବା 'ଅନ୍ୟେ' ଶବ୍ଦଦ୍ୱାରା ନୈଷ୍ଠିକବ୍ରହ୍ମଚାରୀମାନଙ୍କୁ ଓ ତୃତୀୟପାଦସ୍ଥ 'ଅନ୍ୟେ' ଶବ୍ଦଦ୍ୱାରା ଗୃହସ୍ଥମାନଙ୍କୁ ଲକ୍ଷ୍ୟ କରା ହୋଇଅଛି ।

ନୈଷ୍ଠିକବ୍ରହ୍ମଚାରୀମାନେ ସଂଯମରୂପ ଅଗ୍ନିରେ କର୍ଣ୍ଣଆଦି ଇନ୍ଦ୍ରିୟମାନଙ୍କୁ ଆହୁତିରୂପେ ପ୍ରଦାନ କରନ୍ତି, ଅର୍ଥାତ୍ ସେମାନେ ଇନ୍ଦ୍ରିୟମାନଙ୍କୁ ଏପରି ଦମନ କରନ୍ତି, ଯେ ଇନ୍ଦ୍ରିୟମାନଙ୍କର ଆଉ କିଛି କ୍ଷମତା ନ ଥାଏ । ସୁମଧୁର ସଙ୍ଗୀତ ହେଲେ ମଧ୍ୟ ସେମାନଙ୍କର କର୍ଣ୍ଣକୁ ତାହା ଶୁଭେ ନାହିଁ ଓ ମଳୟଚନ୍ଦନର ସୁଗନ୍ଧ ସେମାନଙ୍କୁ ବାସେ ନାହିଁ ବା ଅନ୍ୟର ମନୋହରରୂପରେ ତାଙ୍କର ଚକ୍ଷୁ ଆକୃଷ୍ଟ ହୁଏ ନାହିଁ କି ମଧୁର ଓ ଅମ୍ଳ ପ୍ରଭୃତି ରସପ୍ରତି ତାଙ୍କର ଜିହ୍ୱା ଲୋଭ ପ୍ରକାଶ କରେ ନାହିଁ । କାହିଁକି ନା ସେମାନେ ଇନ୍ଦ୍ରିୟମାନଙ୍କର ପ୍ରବର୍ତ୍ତକ ମନକୁ ସଂଯମଦ୍ୱାରା ଆତ୍ମନିଷ୍ଠ କରିଥାନ୍ତି । ମହାତ୍ମା ପତଞ୍ଜଳିଙ୍କ ମତରେ "ତ୍ରୟମେକତ୍ରସଂଯମଃ" ଅର୍ଥାତ୍ ଏକ ପରମେଶ୍ୱରଙ୍କଠାରେ ଧାରଣା, ଧ୍ୟାନ ଓ ସମାଧିକୁ 'ସଂଯମ' ବୋଲାଯାଏ । ମନକୁ ହୃଦୟପଦ୍ମରେ ବା ଈଶ୍ୱରଙ୍କଠାରେ ଦୀର୍ଘକାଳ ପର୍ଯ୍ୟନ୍ତ ନିଶ୍ଚଳଭାବରେ ସ୍ଥାପନ କରିବାକୁ ଧାରଣା ବୋଲାଯାଏ । ପାତଞ୍ଜଳସୂତ୍ରର ବିଭୂତିପାଦର ପ୍ରଥମ ସୂତ୍ରରେ ଲେଖାଅଛି, ଯେ "ଦେଶବନ୍ଧଶ୍ଚିତ୍ତସ୍ୟ ଧାରଣା" ଅର୍ଥାତ୍ ଚିତ୍ତକୁ ଏକଦେଶରେ ବା ଏକ ବିଷୟରେ ଆବଦ୍ଧ କରି ରଖିବାକୁ 'ଧାରଣା' ବୋଲାଯାଏ । ୧ । "ତତ୍ର ପ୍ରତ୍ୟୟୈକତାନତା ଧ୍ୟାନଂ" ଅର୍ଥାତ୍ ଧାରଣୀୟ ପଦାର୍ଥରେ ଚିତ୍ତବୃତ୍ତିର ଏକାଗ୍ରତାକୁ 'ଧ୍ୟାନ' ବୋଲାଯାଏ । ୨ । "ତଦେବାର୍ଥମାତ୍ରନିର୍ଭାସ ସ୍ୱରୂପଶୂନ୍ୟମିବ ସମାଧିଃ" ଅର୍ଥାତ୍ ଧ୍ୟାନଦ୍ୱାରା କ୍ରମେ୨ ସେହି 'ଧ୍ୟେୟ' ବସ୍ତୁର ପ୍ରକାଶ ଭିନ୍ନ ଅନ୍ୟ କୌଣସି ବସ୍ତୁର ପ୍ରକାଶ ନ ହେଲେ, ଏମନ୍ତ କି ନିଜର ସ୍ୱରୂପଜ୍ଞାନ ନ ରହିଲେ, ସେହି ଧ୍ୟାନକୁ 'ସମାଧି' ବୋଲି ଯାଏ । ୩ । ନୈଷ୍ଠିକବ୍ରହ୍ମଚାରୀମାନେ 'ଧାରଣା' 'ଧ୍ୟାନ' ଓ 'ସମାଧି'ରୂପ ଅଗ୍ନିରେ ଇନ୍ଦ୍ରିୟମାନଙ୍କୁ ହୋମ କରନ୍ତି, ଅର୍ଥାତ୍ ଧାରଣା, ଧ୍ୟାନ ଓ ସମାଧି ସିଦ୍ଧି ନିମିତ୍ତ ଇନ୍ଦ୍ରିୟମାନଙ୍କୁ ନିଜ୨ ବିଷୟରୁ ନିବୃତ୍ତ କରି ରଖନ୍ତି ।

ଆଉ ଗୃହସ୍ଥମାନେ ଶବ୍ଦାଦି ବିଷୟକୁ ଇନ୍ଦ୍ରିୟରୂପ ଅଗ୍ନିରେ ହୋମ କରନ୍ତି, ଅର୍ଥାତ୍ ସମସ୍ତ ବିଷୟ ଭୋଗ କରନ୍ତି, ମାତ୍ର କୌଣସି ବିଷୟରେ ଆସକ୍ତ ନ ହୋଇ ଇନ୍ଦ୍ରିୟମାନଙ୍କୁ ଧର୍ମକାର୍ଯ୍ୟରେ ନିଯୁକ୍ତ କରନ୍ତି । ଯଥା—କର୍ଣ୍ଣରେ ଧର୍ମକଥା ଶୁଣିବା, ଜିହ୍ୱାରେ ପ୍ରସାଦ ସେବା କରିବା, ଚକ୍ଷୁରେ ତୀର୍ଥ, ଦେବବିଗ୍ରହ ଓ ଧର୍ମପୁସ୍ତକ ଦର୍ଶନ, ନାସିକାରେ ବିଷ୍ଣୁଙ୍କ ପଦତୁଳସୀ ଓ ଅଗୁରୁଧୂମର ଗନ୍ଧଗ୍ରହଣ, ଚର୍ମେନ୍ଦ୍ରିୟଦ୍ୱାରା ଶୀତୋଷ୍ଣାଦି ସହ୍ୟ କରିବା, ବାକ୍ ଇନ୍ଦ୍ରିୟଦ୍ୱାରା ମନ୍ତ୍ରାଦି ଜପ ଓ ବେଦପାଠାଦିଦ୍ୱାରା ଈଶ୍ୱରସ୍ତୁତି, ହସ୍ତରେ ଗୁରୁ ବ୍ରାହ୍ମଣ ଓ ଦେବତା ସେବା ଓ ପୂଜା ଏବଂ ଦାନ, ପାଦରେ ତୀର୍ଥଭ୍ରମଣ ଓ ପରୋପକାରପାଇଁ ଗମନାଗମନ, ଜନନେ-

Digitized by PPRACHIN, SOA

ନ୍ଦ୍ରିୟଦ୍ୱାର ଉପଭୋଗସମୟରେ ନିଜ ବିବାହିତାସ୍ତ୍ରୀ ସହବାସ ପ୍ରଭୃତି ଶାସ୍ତ୍ରର ଅନୁକୂଳ କର୍ମ କରନ୍ତି । ଏହାକୁ 'ବିଷୟହୋମ' ବୋଲାଯାଏ । ୨୬ ।

ଶ୍ଳୋକଃ ।

ସର୍ବାଣୀନ୍ଦ୍ରିୟକର୍ମାଣି, ପ୍ରାଣକର୍ମାଣି ଚାପରେ ।
ଆତ୍ମସଂଯମଯୋଗାଗ୍ନୌ, ଜୁହ୍ୱତି ଜ୍ଞାନଦୀପିତେ । ୨୭ ।

ଅନ୍ୱୟଃ ।

ଅପରେ ସର୍ବାଣି ଇନ୍ଦ୍ରିୟକର୍ମାଣି ଚ ପ୍ରାଣ-କର୍ମାଣି ଜ୍ଞାନଦୀପିତେ ଆତ୍ମସଂଯମଯୋଗାଗ୍ନୌ ଜୁହ୍ୱତି । ୨୭ ।

ଟୀକା ।

କିଞ୍ଚ ସର୍ବାଣୀତି । ଅପରେ ଧ୍ୟାନନିଷ୍ଠା ବୁଦ୍ଧୀନ୍ଦ୍ରିୟାଣାଂ ଶ୍ରୋତ୍ରାଦୀନାଂ କର୍ମାଣି ଶ୍ରବଣଦର୍ଶନାଦୀନି, କର୍ମେନ୍ଦ୍ରିୟାଣାଂ ବାକ୍‌ପାଣ୍ୟାଦୀନାଂ କର୍ମାଣି ବଚନୋପାଦାନାଦୀନି, ପ୍ରାଣାନାଂ ଚ ଦଶାନାଂ କର୍ମାଣି ପ୍ରାଣସ୍ୟ ବହିର୍ଗମନଂ, ଅପାନସ୍ୟାଧୋଗମନଂ, ବ୍ୟାନସ୍ୟ ବ୍ୟାପ୍ତିନାକୁଞ୍ଚନପ୍ରସାରଣାଦୀନି, ସମାନସ୍ୟାଶିତପୀତାଦୀନାଂ, ସମୁନ୍ନୟନଂ ଉଦାନସ୍ୟୋର୍ଦ୍ଧ୍ୱନୟନଂ । ଉଦ୍ଗାରେ ନାଗ ଆଖ୍ୟାତଃ କୂର୍ମ ଉନ୍ମୀଲନେ ସ୍ମୃତଃ । କୃକରଃ କ୍ଷୁତକୃଦ୍‌ଜ୍ଞେୟୋ ଦେବଦତ୍ତୋ ବିଜୃମ୍ଭଣେ । ନ ଜହାତି ମୃତଞ୍ଚାପି ସର୍ବବ୍ୟାପୀ ଧନଞ୍ଜୟଃ । ଇତ୍ୟେବଂ ରୂପାଣି ଜୁହ୍ୱତି ଆତ୍ମନି ସଂଯମୋ ଧ୍ୟାନୈକାଗ୍ର୍ୟଂ ସ ଏବ ଯୋଗଃ ସ ଏବାଗ୍ନିସ୍ତସ୍ମିନ୍ ଜ୍ଞାନେନ ଧ୍ୟେୟବିଷୟେଣ ଦୀପିତେ ପ୍ରଜ୍ୱଳିତେ ଧ୍ୟେୟଂ ସମ୍ୟକ୍ ଜ୍ଞାତ୍ୱା ତସ୍ମିନ୍ ମନଃ ସଂଯମ୍ୟ ତାନି ସର୍ବାଣି କର୍ମାଣି ଉପରମୟନ୍ତୀତ୍ୟର୍ଥଃ । ୨୭ ।

ପଦବ୍ୟାଖ୍ୟା ।

ସର୍ବାଣି—ସମସ୍ତ, ଇନ୍ଦ୍ରିୟକର୍ମାଣି—ଇନ୍ଦ୍ରିୟମାନଙ୍କର କାର୍ଯ୍ୟକୁ, ପ୍ରାଣକର୍ମାଣି ଚ—ପ୍ରାଣମାନଙ୍କର କାର୍ଯ୍ୟକୁ ମଧ୍ୟ, ଅପରେ—ଅନ୍ୟ ଲୋକେ, ଆତ୍ମସଂଯମଯୋଗାଗ୍ନୌ—ମନଃସଂଯମରୂପ ଯୋଗାଗ୍ନିରେ, ଜୁହ୍ୱତି—ହୋମ କରନ୍ତି, ଜ୍ଞାନଦୀପିତେ—ଜ୍ଞାନଦ୍ୱାରା ପ୍ରଜ୍ୱଳିତ । ୨୭ ।

ଅନୁବାଦ ।

ଅପର କେହି୨ ଯୋଗୀ ଇନ୍ଦ୍ରିୟମାନଙ୍କର କାର୍ଯ୍ୟ ଓ ପ୍ରାଣମାନଙ୍କର କାର୍ଯ୍ୟକୁ, ଜ୍ଞାନଦ୍ୱାରା ପ୍ରଜ୍ୱଳିତ ଆତ୍ମସଂଯମଯୋଗରୂପ ଅଗ୍ନିରେ ହୋମ କରନ୍ତି । ୨୭ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ବୁଝାଇ ଦିଆ ଯାଇଅଛି, ଯେ ଧାରଣା, ଧ୍ୟାନ ଓ ସମାଧିକୁ ସଂଯମ ବୋଲାଯାଏ । ଏ ଶ୍ଳୋକରେ ଆତ୍ମସଂଯମ ଯୋଗର କଥା ବୁଝାଇ ଦିଆ ଯାଉଅଛି । ପୂର୍ବୋକ୍ତ ସମାଧି, ଲୟସମାଧି ଓ ବାଧସମାଧି ଭେଦରେ ଦୁଇପ୍ରକାର ଅଟେ । ଲୟସମାଧି କରିବାକୁ ହେଲେ ଧ୍ୟାନଯୁକ୍ତଚିତ୍ତରେ ପୃଥିବୀକୁ ଜଳରେ, ଜଳକୁ ତେଜରେ, ତେଜକୁ ବାୟୁରେ, ବାୟୁକୁ ଆକାଶରେ, ଆକାଶକୁ ମହାଆକାଶରେ, ମହାଆକାଶକୁ ସଙ୍କଳ୍ପରୂପ ଅହଂକାରରେ, ଅହଂକାରକୁ ମହତ୍ତତ୍ତ୍ୱରେ, ମହତ୍ତତ୍ତ୍ୱକୁ ମାୟାରେ ଏବଂ ମାୟାକୁ ଚୈତନ୍ୟରେ ଲୟ କରିବାକୁ ହୁଏ । ମାତ୍ର ଏ ଲୟସମାଧିରେ ଅବିଦ୍ୟା ବିନଷ୍ଟ ହୁଏ ନାହିଁ । ଅବିଦ୍ୟା ବିନଷ୍ଟ ନ ହେଲେ ବ୍ରହ୍ମରେ ଆତ୍ମବୁଦ୍ଧି ଅର୍ଥାତ୍ 'ମୁଁ ବ୍ରହ୍ମ' ଏପରି ବୁଦ୍ଧି ଉଦୟ ହେବାର ସମ୍ଭାବନା ନାହିଁ । କିନ୍ତୁ ତତ୍ତ୍ୱଜ୍ଞାନର ଉଦୟ ହେଲେ ସମ୍ପୂର୍ଣ୍ଣରୂପେ ଅବିଦ୍ୟାରହିତ ଯେଉଁ ସମାଧିର ଉଦୟ ହୁଏ ତାକୁ

'ବାଧସମାଧି' ବୋଲାଯାଏ । 'ବାଧସମାଧିରେ' ଅବିଦ୍ୟାର ପୁନର୍ବାର ଉଦୟ ହେବାର ଆଉ ସମ୍ଭାବନା ନ ଥାଏ । ଏ ଶ୍ଳୋକରେ ସେହି ବାଧସମାଧିପ୍ରତି ଲକ୍ଷ୍ୟ କରା ହୋଇଅଛି ।

ସେହି ବାଧସମାଧିରୂପ ଯୋଗାଗ୍ନିରେ କେହି୨ ଧ୍ୟାନନିଷ୍ଠବ୍ୟକ୍ତି ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ଓ ପଞ୍ଚ ପ୍ରାଣ ଏବଂ ମନ ଓ ବୁଦ୍ଧି ଏହି ସପ୍ତଦଶାତ୍ମକ ସୂକ୍ଷ୍ମ ବା ଲିଙ୍ଗଶରୀରକୁ ଆହୁତିରୂପେ ପ୍ରଦାନ କରନ୍ତି, ଅଥବା ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ ଏବଂ ପ୍ରାଣାଦି ଦଶପ୍ରକାର ବାୟୁର କାର୍ଯ୍ୟମାନଙ୍କୁ ଆତ୍ମସଂଯମରୂପ ଯୋଗାଗ୍ନିରେ ହୋମ କରନ୍ତି ଅର୍ଥାତ୍ ସେ ସମାଧିରେ ଏପରି ନିଶ୍ଚଳ ହୋଇ ବସନ୍ତି, ଯେ ତାଙ୍କର ଇନ୍ଦ୍ରିୟ ଓ ପ୍ରାଣମାନଙ୍କର କାର୍ଯ୍ୟ ଏକାବେଳକେ ଲୋପ ହୋଇଯାଏ । ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ଏବଂ ପ୍ରାଣାଦି ଦଶପ୍ରକାର ବାୟୁର କାର୍ଯ୍ୟ ନିମ୍ନରେ ବିବୃତ ହେଲା । ଚକ୍ଷୁଃ, କର୍ଣ୍ଣ, ନାସିକା, ଜିହ୍ବା ଓ ତ୍ୱକ୍ ଏହି ପାଞ୍ଚ ଜ୍ଞାନେନ୍ଦ୍ରିୟର ଯଥାକ୍ରମେ ଦର୍ଶନ, ଶ୍ରବଣ, ଘ୍ରାଣ, ଆସ୍ୱାଦନ ଓ ସ୍ପର୍ଶ ଏହି ପାଞ୍ଚ କର୍ମ । ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ ଏ ପାଞ୍ଚ କର୍ମେନ୍ଦ୍ରିୟର ସେହିପରି ବଚନ, ଦାନ ଓ ଗ୍ରହଣ, ଗମନ, ମଳତ୍ୟାଗ ଓ ମୈଥୁନ ଏହି ପାଞ୍ଚ କର୍ମ; ଏବଂ ପ୍ରାଣବାୟୁର କର୍ମ ବହିର୍ଗମନ (ପ୍ରଶ୍ୱାସ), ଅପାନ ବାୟୁର କର୍ମ ଅଧୋଗମନ ବା ଅନ୍ତର୍ଗମନ (ନିଶ୍ୱାସ), ବ୍ୟାନବାୟୁର ଆକୁଞ୍ଚନ ପ୍ରସାରଣାଦି, ସମାନ ବାୟୁର ଭୁକ୍ତାଦି ଦ୍ରବ୍ୟର ପରିପାକ, ଉଦାନ ବାୟୁର ଊର୍ଦ୍ଧ୍ୱଶ୍ୱାସ ଓ ହିକ୍କା କର୍ମ ଅଟେ । ସେହିପରି ନାଗନାମକ ବାୟୁର ବମନ, କୂର୍ମର ଉନ୍ମୀଲନ, କୃକରର କ୍ଷୁତ୍ (କ୍ଷୁଧା), ଦେବଦତ୍ତର ଜୃମ୍ଭା (ହାଇ) ଓ ଧନଞ୍ଜୟର ଦେହରକ୍ଷା କର୍ମ ଅଟେ ।

ଫଳକଥା ଏହି କ ଧ୍ୟାନନିଷ୍ଠବ୍ୟକ୍ତି ଯେଉଁ ସତ୍‌ସ୍ୱରୂପର ଧ୍ୟାନ କରନ୍ତି, ତାହାଦ୍ୱାରା ତାଙ୍କର ଆତ୍ମଜ୍ଞାନରୂପ ଅଗ୍ନି ଉଦ୍ଦୀପିତ ହୁଏ ଏବଂ ସେହି ଅଗ୍ନିରେ ସେ କର୍ମେନ୍ଦ୍ରିୟ, ଜ୍ଞାନେନ୍ଦ୍ରିୟ ଓ ପ୍ରାଣାଦି ବାୟୁମାନଙ୍କର କର୍ମକୁ ଅର୍ଥାତ୍ ଶରୀରର ସମସ୍ତ କାର୍ଯ୍ୟକୁ ଆହୁତିରୂପରେ ପ୍ରଦାନ କରନ୍ତି । ୨୭ ।

ଶ୍ଳୋକଃ ।

ଦ୍ରବ୍ୟଯଜ୍ଞାସ୍ତପୋଯଜ୍ଞା, ଯୋଗଯଜ୍ଞାସ୍ତଥାପରେ ।
ସ୍ୱାଧ୍ୟାୟଜ୍ଞାନଯଜ୍ଞାଶ୍ଚ, ଯତୟଃ ସଂଶିତବ୍ରତାଃ । ୨୮ ।

ଅନ୍ୱୟଃ ।

ଅପରେ ଯତୟଃ ଦ୍ରବ୍ୟଯଜ୍ଞାଃ ତପୋଯଜ୍ଞାଃ ତଥା ଯୋଗଯଜ୍ଞାଃ ସ୍ୱାଧ୍ୟାୟଜ୍ଞାନଯଜ୍ଞାଃ ଚ ସଂଶିତବ୍ରତାଃ (ଭବନ୍ତି) । ୨୮ ।

ଟୀକା ।

କିଞ୍ଚ ଦ୍ରବ୍ୟଯଜ୍ଞା ଇତ୍ୟାଦି । ଦ୍ରବ୍ୟଦାନମେବ ଯଜ୍ଞୋ ଯେଷାଂ ତେ ଦ୍ରବ୍ୟଯଜ୍ଞାଃ, କୃଚ୍ଛ୍ରଚାନ୍ଦ୍ରାୟଣାଦି ତପ ଏବ ଯଜ୍ଞୋ ଯେଷାଂ ତେ ତପୋଯଜ୍ଞାଃ, ଯୋଗଶ୍ଚିତ୍ତବୃତ୍ତିନିରୋଧଲକ୍ଷଣସମାଧିଃ ସଏବ ଯଜ୍ଞୋ ଯେଷାଂ ତେ ଯୋଗଯଜ୍ଞାଃ, ସ୍ୱାଧ୍ୟାୟେନ ବେଦେନ ଶ୍ରବଣମନନାଦିନା ତଦର୍ଥଜ୍ଞାନଂ ତଦେବ ଯଜ୍ଞୋ ଯେଷାଂ ତେ, ଯଦ୍ୱା ବେଦପାଠଯଜ୍ଞାସ୍ତଦର୍ଥଜ୍ଞାନଯଜ୍ଞାଶ୍ଚେତି ଦ୍ୱିବିଧା ଯତୟଃ ପ୍ରଯତ୍ନଶୀଳାଃ ସମ୍ୟକ୍ ଶିତଂ ନିଶିତଂ ତୀକ୍ଷ୍ଣୀକୃତଂ ବ୍ରତଂ ଯେଷାଂ ତେ । ୨୮ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଦ୍ରବ୍ୟଯଜ୍ଞାଃ—ଯେଉଁମାନେ ଦ୍ରବ୍ୟଦାନ କରନ୍ତି, ତପୋଯଜ୍ଞାଃ—କୃଚ୍ଛ୍ରଚାନ୍ଦ୍ରାୟଣାଦି ତପକୁ ଯେଉଁମାନେ ଯଜ୍ଞ ବୋଲି ଜାଣନ୍ତି, ଯୋଗଯଜ୍ଞାଃ—ଯମ, ନିୟମ, ଆସନ, ପ୍ରାଣାୟାମାଦି 'ଯୋଗ' ଯେଉଁମାନଙ୍କର ଯଜ୍ଞସ୍ୱରୂପ, ତଥା—ସେହିପରି, ଅପରେ—ଅନ୍ୟମାନେ, ସ୍ୱାଧ୍ୟାୟଜ୍ଞାନଯଜ୍ଞାଃ—ବେଦାଭ୍ୟାସାଦି ବେଦର ଅର୍ଥଜ୍ଞାନ, ଯେଉଁମାନଙ୍କର ଯଜ୍ଞସ୍ୱରୂପ, ଅଥବା ବେଦପାଠରୂପ ଯଜ୍ଞକାରୀ ଓ ବେଦର ଅର୍ଥଜ୍ଞାନରୂପ ଯଜ୍ଞକର୍ତ୍ତା, ଯତୟଃ—ଯତ୍ନଶୀଳଲୋକମାନେ, ସଂଶିତବ୍ରତାଃ—ଦୃଢ଼ନିୟମୀ । ୨୮ ।

ଅନୁବାଦ ।

କେହି ଦ୍ରବ୍ୟତ୍ୟାଗରୂପ ଯଜ୍ଞ, କେହି ତପୋରୂପ ଯଜ୍ଞ, କେହି ଯୋଗରୂପ ଯଜ୍ଞ, କେହି ବେଦାଭ୍ୟାସରୂପ ଯଜ୍ଞ, କେହି ବେଦର ଅର୍ଥଜ୍ଞାନରୂପ ଯଜ୍ଞ ଓ କେହି ଯତ୍ନଶୀଳ ବ୍ୟକ୍ତି ଅତ୍ୟନ୍ତ ଦୃଢ଼ବ୍ରତରୂପ ଯଜ୍ଞ କରନ୍ତି । ୨୮ ।

ବିଶଦବ୍ୟାଖ୍ୟା ।

କେହି୨ ବ୍ୟକ୍ତି ଦ୍ରବ୍ୟଯଜ୍ଞ ଅର୍ଥାତ୍ ଦ୍ରବ୍ୟଦାନରୂପ ଯଜ୍ଞ କରନ୍ତି—କୂପ ପୁଷ୍କରିଣୀ ପ୍ରଭୃତି ଖନନ, ଅତିଥିପୂଜା, ଦେବମନ୍ଦିରାଦି ନିର୍ମାଣ, ଧର୍ମଶାଳା ସ୍ଥାପନ, ଶରଣାଗତ ବ୍ୟକ୍ତିର ରକ୍ଷା ଓ କ୍ଷୁଧାର୍ତ୍ତଙ୍କୁ ଅନ୍ନଦାନ ପ୍ରଭୃତି କର୍ମରେ ଏବଂ ବେଦୋକ୍ତ ନାନାପ୍ରକାର କର୍ମରେ ଅର୍ଥଦାନ କରନ୍ତି । କେହି୨ ତପୋଯଜ୍ଞ କରନ୍ତି ଅର୍ଥାତ୍ ଦର୍ଶପୌର୍ଣ୍ଣମାସ ଯଜ୍ଞ, କୃଚ୍ଛ୍ରଚାନ୍ଦ୍ରାୟଣାଦି ବ୍ରତ ଓ ଶୀତୋଷ୍ଣାଦି ସହ୍ୟ କରିବା ପ୍ରଭୃତି କର୍ମମାନ କରନ୍ତି । ପୁଣି କେହି୨ ଯୋଗଯଜ୍ଞ କରନ୍ତି ଅର୍ଥାତ୍ ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧିରୂପ ଅଷ୍ଟାଙ୍ଗଯୋଗ କରନ୍ତି । ଯେହି ଅଷ୍ଟାଙ୍ଗଯୋଗ ମଧ୍ୟରୁ 'ଯମ' ନାମକ ପ୍ରଥମ ଅଙ୍ଗ ଦଶପ୍ରକାର, ଯଥା—

"ଅହିଂସା ସତ୍ୟମସ୍ତେୟଂ ବ୍ରହ୍ମଚର୍ଯ୍ୟଂ ଦୟାର୍ଜ୍ଜବଂ ।
କ୍ଷମାଧୃତିର୍ମିତାହାରଃ ଶୌଚଞ୍ଚୈବ ଯମାଦଶ" । ତନ୍ତ୍ର ।

ଅର୍ଥାତ୍ ଅହିଂସା, ସତ୍ୟ, ଅସ୍ତେୟ (ଚୋରି ନ କରିବା), ବ୍ରହ୍ମଚର୍ଯ୍ୟ, ଦୟା, ଆର୍ଜ୍ଜବ (ସରଳତା), କ୍ଷମା, ଧୃତି (ଧୈର୍ଯ୍ୟ) ଓ ମିତାହାର (ଅଳ୍ପ ଆହାର) ଏବଂ ଶୌଚ ଏ ଦଶପ୍ରକାର ଯମ ନାମକ ଯୋଗାଙ୍ଗ ହୁଏ । ସେହିପରି ଆସ୍ତିକତା, ହର୍ଷ, ତପ, ଦେବାର୍ଚ୍ଚନ, ଦାନ, ଲଜ୍ଜା, ସଦ୍‌ଜ୍ଞାନ, ହୋମ, ସତ୍କଥାଶ୍ରବଣ ଓ ଜପ ଏହି ଦଶପ୍ରକାର ନିୟମ ନାମକ ଦ୍ୱିତୀୟ ଯୋଗାଙ୍ଗ ହୁଏ । ପଦ୍ମାସନ, ବୀରାସନ, ଭଦ୍ରାସନ, ସ୍ୱସ୍ତିକାସନ, ଦଣ୍ଡାସନ, ସୋପାଶ୍ରୟାସନ, ପର୍ଯ୍ୟଙ୍କାସନ, ଅଜାସନ, ମୟୂରାସନ, ଉଷ୍ଟ୍ରାସନ, ଗଜାସନ, ସମସ୍ଥାସନ, ସ୍ଥିରସୁଖାସନ ଓ ସୁଖାସନ ଏପରି ଚତୁର୍ଦ୍ଦଶ ପ୍ରକାରରେ 'ଆସନ' ନାମକ ତୃତୀୟ ଯୋଗାଙ୍ଗ ହୁଏ । ରେଚକ, ପୂରକ ଓ କୁମ୍ଭକକୁ 'ପ୍ରାଣାୟାମ' ନାମକ ଚତୁର୍ଥ ଯୋଗାଙ୍ଗ ଓ ଇନ୍ଦ୍ରିୟମାନଙ୍କୁ ସ୍ୱ ସ୍ୱ ବିଷୟରୁ ଓ ମନକୁ ସଙ୍କଳ୍ପ ଏବଂ ବିଷୟରୁ ଫେରାଇ ଆଣି ଈଶ୍ୱର ଆରାଧନାଦି କର୍ମରେ ନିଯୁକ୍ତ କରିବାକୁ 'ପ୍ରତ୍ୟାହାର' ନାମକ ପଞ୍ଚମ ଯୋଗାଙ୍ଗ ବୋଲିଯାଏ । 'ଧାରଣା' 'ଧ୍ୟାନ' ଓ

'ସମାଧି' ନାମକ ଅବଶିଷ୍ଟ ଚତୁଷ୍ଟୟ ଯୋଗାଙ୍ଗର ବିଶେଷ ବିବରଣ ଏହି ଅଧ୍ୟାୟର ୨୭ ଓ ୨୭ ଶ୍ଳୋକରେ ବୁଝାଇ ଦିଆ ଯାଇଅଛି ।

କେହି୨ ବ୍ରହ୍ମଚର୍ଯ୍ୟ (ସ୍ତ୍ରୀସଙ୍ଗ ତ୍ୟାଗ) ଗ୍ରହଣ କରି ଶ୍ରଦ୍ଧାଯୁକ୍ତ ଚିତ୍ତରେ ଗୁରୁସେବା-ପୂର୍ବକ ବେଦାଭ୍ୟାସରୂପ 'ସ୍ୱାଧ୍ୟାୟଯଜ୍ଞ' ଓ କେହି୨ ଅଚଳବିଶ୍ୱାସରେ ଯୁକ୍ତିପୂର୍ବକ ବେଦର ଅର୍ଥ ନିଶ୍ଚୟ କରିବାରୂପ 'ଜ୍ଞାନଯଜ୍ଞ' ଏବଂ କେହି୨ ବେଦର ବିଧି କିଛିମାତ୍ର ଅଙ୍ଗହୀନ ନ କରି 'ଦୃଢ଼ବ୍ରତ'ରୂପ ଯଜ୍ଞର ଅନୁଷ୍ଠାନ କରନ୍ତି । ଏହିପରି ଭିନ୍ନ୨ ଯୋଗୀ ଭିନ୍ନ୨ ପ୍ରକାରର ଯଜ୍ଞ କରନ୍ତି । ୨୮ ।

## ଶ୍ଳୋକଃ ।

* ଅପାନେ ଜୁହ୍ୱତି ପ୍ରାଣଂ, ପ୍ରାଣେଽପାନଂ ତଥାପରେ ।
ପ୍ରାଣାପାନଗତୀ ରୁଦ୍ଧ୍ୱା, ପ୍ରାଣାୟାମପରାୟଣାଃ । ୨୯ ।

## ଅନ୍ୱୟଃ ।

ଅପରେ ପ୍ରାଣାୟାମପରାୟଣାଃ ପ୍ରାଣାପାନଗତୀ ରୁଦ୍ଧ୍ୱା ଅପାନେ ପ୍ରାଣଂ ତଥା ପ୍ରାଣେ ଅପାନଂ ଜୁହ୍ୱତି । ୨୯ ।

## ଟୀକା ।

କିଞ୍ଚ ଅପାନେ ଇତି । ଅପାନେଽଧୋବୃତ୍ତୌ ପ୍ରାଣମୂର୍ଦ୍ଧ୍ୱବୃତ୍ତିଂ ପୂରକେଣ ଜୁହ୍ୱତି ପୂରକକାଳେ ପ୍ରାଣମପାନେନୈକୀକୁର୍ବନ୍ତି, ତଥା କୁମ୍ଭକେନ ପ୍ରାଣାପାନୟୋରୂର୍ଦ୍ଧ୍ୱାଧୋଗତୀ ରୁଦ୍ଧ୍ୱା, ରେଚକକାଳେଽପାନଂ ପ୍ରାଣେ ଜୁହ୍ୱତି ଏବଂ ପୂରକକୁମ୍ଭକରେଚକୈଃ ପ୍ରାଣାୟାମପରାୟଣା ଅପରେ ଇତ୍ୟର୍ଥଃ । କିଞ୍ଚ ଅପରେ ଇତି । ଅପରେ ତ୍ୱାହାରସଙ୍କୋଚମଭ୍ୟସ୍ୟନ୍ତଃ ସ୍ୱୟମେବ ଜୀର୍ଯ୍ୟମାଣେଷ୍ୱିନ୍ଦ୍ରିୟେଷୁ ତତ୍ତଦିନ୍ଦ୍ରିୟବୃତ୍ତିଲୟଂ ହୋମଂ ଭାବୟନ୍ତୀତ୍ୟର୍ଥଃ, ଯଦ୍ୱା "ଅପାନେ ଜୁହ୍ୱତି ପ୍ରାଣଂ ପ୍ରାଣେଽପାନଂ ତଥାପରେ" ଇତ୍ୟନେନ ପୂରକରେଚକୟୋରାବର୍ତ୍ତ୍ୟମାନୟୋର୍ହଂସଃ ସୋଽହମିତ୍ୟନୁଲୋମତଃ ପ୍ରତିଲୋମତଶ୍ଚାଭିବ୍ୟକ୍ତ୍ୟମାନେନାଜପାମନ୍ତ୍ରେଣ ତତ୍ତ୍ୱଂ ପଦାର୍ଥୈକ୍ୟଂ ବ୍ୟତୀହାରେଣ ଭାବୟନ୍ତୀତ୍ୟର୍ଥଃ, ତଦୁକ୍ତଂ ଯୋଗଶାସ୍ତ୍ରେ "ସକାରେଣ ବହିର୍ଯ୍ୟାତି ହକାରେଣ ବିଶେତ୍ପୁନଃ । ପ୍ରାଣସ୍ତତ୍ର ସ ଏବାହମହଂସ ଇତି ଚିନ୍ତୟେଦିତି ।" ପ୍ରାଣାପାନଗତୀ ରୁଦ୍ଧ୍ୱେତ୍ୟନେନ ଶ୍ଳୋକେନ ପ୍ରାଣାୟାମଯଜ୍ଞା ଅପରେ କଥ୍ୟନ୍ତେ, ତତ୍ରାୟମର୍ଥଃ । "ଦ୍ୱୌ ଭାଗୌ ପୂରୟେଦନ୍ନୈର୍ଜଲେନୈକଂ ପ୍ରପୂରୟେତ୍ । ମାରୁତସ୍ୟ ପ୍ରଚାରାର୍ଥଂ ଚତୁର୍ଥମବଶେଷୟେତ୍ ଇତ୍ୟେବମାଦିବଚନୋକ୍ତୋନିୟତ ଆହାରୋ ଯେଷାଂ ତେ କୁମ୍ଭକେନ ପ୍ରାଣାପାନଗତୀ ରୁଦ୍ଧ୍ୱା ପ୍ରାଣାୟାମପରାୟଣାଃ ସନ୍ତଃ ପ୍ରାଣାନିନ୍ଦ୍ରିୟାଣି ପ୍ରାଣେଷୁ ଜୁହ୍ୱତି କୁମ୍ଭକେନ ହି ସର୍ବେ ପ୍ରାଣା ଏକୀଭବନ୍ତି ତତ୍ରୈବ ଲୀୟମାନେଷ୍ୱିନ୍ଦ୍ରିୟେଷୁ ହୋମଂ ଭାବୟନ୍ତୀତ୍ୟର୍ଥଃ, ତଦୁକ୍ତଂ ଯୋଗଶାସ୍ତ୍ରେ—

"ଯଥା ଯଥା ସଦାଭ୍ୟାସାନ୍ମନସଃ ସ୍ଥିରତା ଭବେତ୍ ।
ବାୟୁବାକ୍କାୟଦୃଷ୍ଟୀନାଂ ସ୍ଥିରତା ଚ ତଥା ତଥେତି" । ୨୯ ।

## ପଦବ୍ୟାଖ୍ୟା ।

ଅପାନେ—ଶରୀର ମଧ୍ୟକୁ ଗତ କରୁଥିବା ବାୟୁ (ପ୍ରଶ୍ୱାସ)ରେ, ଜୁହ୍ୱତି—ହୋମ କରନ୍ତି, ପ୍ରାଣଂ—ବାହାରକୁ ନିର୍ଗତ ହେଉଥିବା (ନିଶ୍ୱାସ) ବାୟୁକୁ, ପ୍ରାଣେ—ପ୍ରାଣବାୟୁରେ, ଅପାନଂ—ଅପାନବାୟୁକୁ, ତଥା—ସେହିପରି, ଅପରେ—ଅନ୍ୟ ବ୍ୟକ୍ତିମାନେ, ପ୍ରାଣାପାନଗତୀ—ପ୍ରାଣବାୟୁ ଓ ଅପାନବାୟୁର ଗତିକୁ, ରୁଦ୍ଧ୍ୱା—ରୁଦ୍ଧ କରି, ପ୍ରାଣାୟାମପରାୟଣାଃ—ପ୍ରାଣାୟାମ (ରେଚକ, ପୂରକ ଓ କୁମ୍ଭକ)ରେ ନିଯୁକ୍ତ । ୨୯ ।

## ଅନୁବାଦ ।

ପ୍ରାଣାୟାମରେ ନିଯୁକ୍ତ କେହି୨ ବ୍ୟକ୍ତି (କୁମ୍ଭକଦ୍ୱାରା) ପ୍ରାଣ ଓ ଅପାନ ଏହି ଦୁଇ

Digitized by PPRACHIN, SOA

ବାୟୁଙ୍କର ଗତି ରୋଧ କରି (ପୂରକଦ୍ୱାରା) ଅପାନ ବାୟୁରେ ପ୍ରାଣବାୟୁକୁ ଏବଂ ସେହିପରି (ରେଚକଦ୍ୱାରା) ପ୍ରାଣବାୟୁରେ ଅପାନ ବାୟୁକୁ ଆହୁତିରୂପେ ପ୍ରଦାନ କରନ୍ତି । ୨୯ ।

ବିଶଦବ୍ୟାଖ୍ୟା ।

ଉପଯୁକ୍ତ ଆସନରେ ବସି ଦକ୍ଷିଣହସ୍ତର ଅଙ୍ଗୁଷ୍ଠଦ୍ୱାରା ଦକ୍ଷିଣ ନାସାପୁଟ ରୁଦ୍ଧ କରି ବାମ ନାସାପୁଟଦ୍ୱାରା ଯଥାଶକ୍ତି ଉଦର ମଧ୍ୟରେ ଅପାନ ବାୟୁକୁ ପୂରଣ କରିବାକୁ ପୂରକ ବୋଲାଯାଏ । ଏଦ୍ୱାରା ପ୍ରାଣବାୟୁ ଅର୍ଥାତ୍ ନିଶ୍ୱାସ, ଅପାନ ବାୟୁରେ ଅର୍ଥାତ୍ ପ୍ରଶ୍ୱାସ ବାୟୁରେ ମିଶି ଆପଣାର ଗୁଣ ଲୋପ କରେ, ସେଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ (ପୂରକଦ୍ୱାରା) 'ଅପାନ ବାୟୁରେ ପ୍ରାଣବାୟୁକୁ ହୋମ କରନ୍ତି' । ପୁଣି ବାମନାସାପୁଟକୁ ଦକ୍ଷିଣ ହସ୍ତର ଅନାମିକା ଓ କନିଷ୍ଠାଙ୍ଗୁଳିଦ୍ୱାରା ଏବଂ ଦକ୍ଷିଣ ନାସାପୁଟକୁ ଦକ୍ଷିଣହସ୍ତର ଅଙ୍ଗୁଷ୍ଠଦ୍ୱାରା ରୁଦ୍ଧ କରି, ପୂରକଦ୍ୱାରା ଗୃହୀତ ବାୟୁକୁ ଆବଦ୍ଧ କରିବାର ନାମ 'କୁମ୍ଭକ' । ତାହାଦ୍ୱାରା ପ୍ରାଣ ଓ ଅପାନ ଦୁଇବାୟୁର ଅର୍ଥାତ୍ ନିଶ୍ୱାସ (ଭିତରକୁ ନେବା ଶ୍ୱାସ)ର ଓ ପ୍ରଶ୍ୱାସ (ତ୍ୟାଗ କରିବା ଶ୍ୱାସ)ର ଗତି ରୁଦ୍ଧ କରନ୍ତି । ପୁଣି ଦକ୍ଷିଣନାସାପୁଟରେ ଅବରୁଦ୍ଧ ବାୟୁକୁ ତ୍ୟାଗ କରିବାକୁ 'ରେଚକ' ବୋଲାଯାଏ । ତଦ୍ୱାରା ଅପାନ ବାୟୁକୁ ଅର୍ଥାତ୍ କୁମ୍ଭକଦ୍ୱାରା ଉଦର ମଧ୍ୟରେ ଆବଦ୍ଧ ଥିବା ବାୟୁକୁ ପ୍ରାଣବାୟୁରେ ଅର୍ଥାତ୍ ବାହାରର ନିର୍ମଳ ବାୟୁରେ ମିଶ୍ରିତ କରନ୍ତି । ଫଳକଥା ଏହି କି ଗୃହୀତ ବାୟୁକୁ ପ୍ରଶ୍ୱାସରୂପରେ ପରିଣତ କରନ୍ତି ।

ପୂରକକୁ ଅନ୍ତର୍ବୃତ୍ତି ପ୍ରାଣାୟାମ ଓ କୁମ୍ଭକକୁ ସ୍ତମ୍ଭବୃତ୍ତି ପ୍ରାଣାୟାମ ଏବଂ ରେଚକକୁ ବହିର୍ବୃତ୍ତି ପ୍ରାଣାୟାମ ବୋଲାଯାଏ । ପୂରକ, କୁମ୍ଭକ ଓ ରେଚକ, ପରିବର୍ତ୍ତିତ ପ୍ରଣାଳୀରେ ମଧ୍ୟ ନିଷ୍ପନ୍ନ ହୁଏ; ଅର୍ଥାତ୍ ପ୍ରଥମରେ ବାମନାସାପୁଟରେ ପୂରକ ଓ ଉଭୟ ନାସାପୁଟ ରୁଦ୍ଧ କରି କୁମ୍ଭକ ଏବଂ ଦକ୍ଷିଣ ନାସାପୁଟରେ ରେଚକ କରି ପୁଣି ଦକ୍ଷିଣ ନାସାରେ ପୂରକ ଓ ଉଭୟ ନାସାପୁଟ ରୁଦ୍ଧ କରି କୁମ୍ଭକ ଏବଂ ବାମ ନାସାପୁଟରେ ରେଚକ କରା ହୁଏ ।

ପୂରକ, କୁମ୍ଭକ ଓ ରେଚକ କରିବାର ନିର୍ଦ୍ଦିଷ୍ଟ ସଂଖ୍ୟା ବା କାଳ ଅଛି; ଅର୍ଥାତ୍ ହ୍ରୀଁ, କ୍ଳୀଂ ବା ଓଁ ଅଥବା ସେହିପରି ଦୀର୍ଘ ଉଚ୍ଚାରଣ ଯୋଗ୍ୟ କୌଣସି ମନ୍ତ୍ର ୩୨ ବାର ପାଠ କରିବା-ଯାଏ ପୂରକ, ୬୪ ଥର ପାଠଯାଏ କୁମ୍ଭକ ଏବଂ ୧୬ ଥର ଯାଏ ରେଚକ କରିବାକୁ ହୁଏ, ଏହା ସାଧାରଣ ନିୟମ ଯଥା—

'ରେଚଃ ଷୋଡଶମାତ୍ରାଭିଃ ପୂରୋଦ୍ୱାତ୍ରିଂଶତା ଭବେତ୍ ।
ଚତୁଃଷଷ୍ଟ୍ୟାଭବେତ୍ କୁମ୍ଭ ଏବଂ ବୈ ପ୍ରାଣସଂଯମଃ' ।

ମାତ୍ର ସକାମ ବ୍ୟକ୍ତିମାନଙ୍କର କାମନା ଅନୁସାରେ ଉକ୍ତ ପରିମାଣର ପରିବର୍ତ୍ତନ ହେଉଥିବାର ତନ୍ତ୍ରାଦିରେ ଅନେକ ପ୍ରମାଣ ଅଛି, ସେ ସବୁ ଏ ସ୍ଥଳରେ ଉଲ୍ଲେଖ କରିବାର-ଆବଶ୍ୟକ ନାହିଁ । ୨୯ ।

Digitized by PPRACHIN, SOA

ଶ୍ଲୋକଃ ।

ଅପରେ ନିୟତାହାରାଃ, ପ୍ରାଣାନ୍ ପ୍ରାଣେଷୁ ଜୁହ୍ୱତି ।
ସର୍ବେଽପ୍ୟେତେ ଯଜ୍ଞବିଦୋ,ଯଜ୍ଞକ୍ଷପିତକଲ୍ମଷାଃ । ୩୦ ।

ଅନ୍ୱୟଃ ।

ଅପରେ ନିୟତାହାରାଃ ପ୍ରାଣେଷୁ ପ୍ରାଣାନ୍ ଜୁହ୍ୱତି । ଏତେ ସର୍ବେ ଅପି ଯଜ୍ଞବିଦଃ ଯଜ୍ଞକ୍ଷପିତକଲ୍ମଷାଃ । ୩୦ ।

ଟୀକା ।

ଏତଦେବମୁକ୍ତାନାଂ ଦ୍ୱାଦଶାନାଂ ଯଜ୍ଞବିଦାଂ ଫଲମାହ, ସର୍ବେଽପ୍ୟେତେ ଇତି । ଯଜ୍ଞାନ୍ ବିଦନ୍ତି ଲଭନ୍ତଇତି ଯଜ୍ଞବିଦୋଯଜ୍ଞଜ୍ଞା ଇତି ବା । ଯଜ୍ଞୈଃ କ୍ଷପିତଂ ନାଶିତଂ କଲ୍ମଷଂ ଯୈଃ । ୩୦ ।

ପଦବ୍ୟାଖ୍ୟା ।

ଅପରେ—ଅନ୍ୟ ଲୋକମାନେ, ନିୟତାହାରାଃ—ପରିମିତ ଅହାରୀ, ପ୍ରାଣାନ୍—ପ୍ରାଣମାନଙ୍କୁ, ପ୍ରାଣେଷୁ—ପ୍ରାଣମାନଙ୍କରେ, ଜୁହ୍ୱତି—ହୋମ କରନ୍ତି, ସର୍ବେ—ସମସ୍ତେ, ଅପି—ମଧ୍ୟ, ଏତେ—ଏମାନେ, ଯଜ୍ଞବିଦଃ—ଯଜ୍ଞ ଲଭିବା କିମ୍ବା ଯଜ୍ଞ କରିବା, ଯଜ୍ଞକ୍ଷପିତକଲ୍ମଷାଃ—ଯଜ୍ଞଦ୍ୱାରା ଯେଉଁମାନେ ପାପ ନାଶ କରିଅଛନ୍ତି । ୩୦ ।

ଅନୁବାଦ ।

ଆଉ କେହି୨ ପରିମିତ ଆହାର କରି ପ୍ରାଣକୁ ପ୍ରାଣରେ ହୋମ କରନ୍ତି । ଏ ସମସ୍ତେ ଯଜ୍ଞ ଜାଣନ୍ତି ଓ ଯଜ୍ଞଦ୍ୱାରା ପାପଶୂନ୍ୟ ଅଟନ୍ତି । ୩୦ ।

ବିଶଦବ୍ୟାଖ୍ୟା ।

ଯେଉଁମାନେ ପରିମିତ ଆହାର କରନ୍ତି ଅର୍ଥାତ୍ ଅନ୍ନାଦିଦ୍ୱାରା ଉଦରଗହ୍ୱରର ଦୁଇଭାଗ ପୂରଣ କରନ୍ତି ଓ ଜଳଦ୍ୱାରା ଅନ୍ୟ ଏକଭାଗ ପୂରଣ କରି ବାୟୁର ଗମନାଗମନପାଇଁ ବାକି ଏକ ଭାଗକୁ ଖାଲି ରଖନ୍ତି, ସେହି ପରିମିତାହାରୀ ବ୍ୟକ୍ତି 'କୁମ୍ଭକ' ନାମକ ପ୍ରାଣାୟାମଦ୍ୱାରା ସମସ୍ତ ପ୍ରାଣକୁ ପ୍ରାଣରେ ମିଶ୍ରିତ କରନ୍ତି ଅଥବା କୁମ୍ଭକ ପ୍ରାଣାୟାମ ଅଧିକ ପରିମାଣରେ ଅଭ୍ୟାସ କରିବାରୁ ପ୍ରାଣମାନଙ୍କୁ ଅର୍ଥାତ୍ ଇନ୍ଦ୍ରିୟମାନଙ୍କୁ ପ୍ରାଣରେ ଅର୍ଥାତ୍ ପ୍ରାଣାଦି ବାୟୁରେ ଲୟ କରନ୍ତି ।

ଏହିପରି ଦ୍ୱାଦଶପ୍ରକାର ଯଜ୍ଞକାରୀ ବ୍ୟକ୍ତିମାନେ (ଅର୍ଥାତ୍ ୧ ଦୈବଯଜ୍ଞ, ୨ ବ୍ରହ୍ମଯଜ୍ଞ, ୩ ସଂଯମ ଯଜ୍ଞ, ୪ ଇନ୍ଦ୍ରିୟ ଯଜ୍ଞ, ୫ ଆତ୍ମସଂଯମ ଯଜ୍ଞ, ୬ ଦ୍ରବ୍ୟଯଜ୍ଞ, ୭ ତପୋଯଜ୍ଞ, ୮ ଯୋଗଯଜ୍ଞ, ୯ ସ୍ୱାଧ୍ୟାୟ ଯଜ୍ଞ, ୧୦ ବେଦାର୍ଥ ଯଜ୍ଞ, ୧୧ ଦୃଢବ୍ରତ ଯଜ୍ଞ ଏବଂ ୧୨ ପ୍ରାଣାୟାମ ଯଜ୍ଞକାରୀବ୍ୟକ୍ତିମାନେ) ଯଜ୍ଞବିତ୍ ବା ଯଜ୍ଞଜ୍ଞାନୀ ଅଟନ୍ତି ଓ ପୂର୍ବୋକ୍ତ ଯଜ୍ଞମାନଙ୍କଦ୍ୱାରା ସେମାନେ ନିଜ୨ ପାପ ବିନାଶ କରନ୍ତି । ୩୦ ।

ଶ୍ଲୋକଃ ।

ଯଜ୍ଞଶିଷ୍ଟାମୃତଭୁଜୋ,ଯାନ୍ତି ବ୍ରହ୍ମ ସନାତନଂ ।
ନାୟଂ ଲୋକୋଽସ୍ତ୍ୟଯଜ୍ଞସ୍ୟ, କୁତୋଽନ୍ୟଃ କୁରୁସତ୍ତମ । ୩୧ ।

Digitized by PPRACHIN, SOA

### ଅନ୍ୱୟଃ ।

ହେ କୁରୁସତ୍ତମ ! ଯଜ୍ଞଶିଷ୍ଟାମୃତଭୁଜଃ ସନାତନଂ ବ୍ରହ୍ମ ଯାନ୍ତି । ଅଯଜ୍ଞସ୍ୟ ଅୟଂ ଲୋକଃ ନ ଅସ୍ତି ଅନ୍ୟଃ କୁତଃ । । ୩୧ ।

### ଟୀକା ।

ଯଜ୍ଞେତି । ଯଜ୍ଞାନ୍ କୃତାବଶିଷ୍ଟକାଲେଽନଷିଦ୍ଧମନ୍ନମମୃତରୂପଂ ଭୁଞ୍ଜତଇତି ତଥା ତେ । ସନାତନଂ ନିତ୍ୟଂ ବ୍ରହ୍ମ ଜ୍ଞାନଦ୍ୱାରେଣ ପ୍ରାପ୍ନୁବନ୍ତି, ତଦକରଣେ ଦୋଷମାହ, ନାୟମିତି । ଅୟମଲ୍ପସୁଖୋଽପି ମନୁଷ୍ୟଲୋକୋଽଯଜ୍ଞସ୍ୟ ଯଜ୍ଞାନୁଷ୍ଠାନରହିତସ୍ୟ ନାସ୍ତି କୁତୋଽନ୍ୟୋବହୁସୁଖଃ ପରଲୋକଃ ଅତୋଯଜ୍ଞାଃ ସର୍ବଥା କର୍ତ୍ତବ୍ୟା ଇତ୍ୟର୍ଥଃ । ୩୧ ।

### ପଦବ୍ୟାଖ୍ୟା ।

ଯଜ୍ଞଶିଷ୍ଟାମୃତଭୁଜଃ—ଯଜ୍ଞର ଅବଶିଷ୍ଟ ଅମୃତତୁଲ୍ୟ ଅନ୍ନ ଯେଉଁମାନେ ଭୋଜନ କରନ୍ତି, ଯାନ୍ତି—ପ୍ରାପ୍ତ ହୁଅନ୍ତି, ବ୍ରହ୍ମ—ବ୍ରହ୍ମକୁ, ସନାତନଂ—ପୁରାତନ ବା ନିତ୍ୟ, ନ—ନାହିଁ, ଅୟଂ—ଏହି (ମନୁଷ୍ୟ), ଲୋକଃ—ଭୁବନ, ଅସ୍ତି—ଅଛି, ଅଯଜ୍ଞସ୍ୟ—ଯଜ୍ଞ ନ କରିବା ବ୍ୟକ୍ତିର, କୁତଃ—କିପରି ବା କେଉଁଠାରୁ, ଅନ୍ୟଃ—ଅନ୍ୟ ଲୋକ (ସ୍ୱର୍ଗାଦି), କୁରୁସତ୍ତମ—ହେ କୁରୁଶ୍ରେଷ୍ଠ । ୩୧ ।

### ଅନୁବାଦ ।

ହେ କୁରୁଶ୍ରେଷ୍ଠ ! ଯଜ୍ଞର ଅବଶିଷ୍ଟ ଅମୃତତୁଲ୍ୟ ଅନ୍ନ ଭୋଜନ କରିବା ବ୍ୟକ୍ତି ସନାତନ ବ୍ରହ୍ମକୁ ପ୍ରାପ୍ତ ହୁଅନ୍ତି । ଯଜ୍ଞ ନ କରିବା ବ୍ୟକ୍ତିର ମନୁଷ୍ୟଲୋକ ଲାଭ ହୁଏ ନାହିଁ, ଆଉ ପରଲୋକ କେଉଁଠାରୁ ହେବ ? । ୩୧ ।

### ବିଶଦବ୍ୟାଖ୍ୟା ।

ଯେଉଁମାନେ ପୂର୍ବୋକ୍ତ ବାର ପ୍ରକାର ଯଜ୍ଞ ମଧ୍ୟରୁ ଯେ କୌଣସି ଯଜ୍ଞର ଅନୁଷ୍ଠାନ କରି ଯଜ୍ଞର ଅବଶିଷ୍ଟ ଅନ୍ନକୁ ଅଥବା ବୈଶ୍ୱଦେବାଦି ଯଜ୍ଞର ଅବଶିଷ୍ଟ ଅନ୍ନକୁ ଅମୃତ ତୁଲ୍ୟ ଜ୍ଞାନ କରି ଭୋଜନ କରନ୍ତି, ସେମାନେ ନିତ୍ୟ ଅଥବା ସନାତନ ବ୍ରହ୍ମକୁ ପ୍ରାପ୍ତ ହୁଅନ୍ତି, ଅର୍ଥାତ୍ ବ୍ରହ୍ମଲୋକକୁ ଯାଆନ୍ତି ।

ଯଜ୍ଞ ନ କରିବା ବ୍ୟକ୍ତି ଅର୍ଥାତ୍ ଯେ ଉକ୍ତ ପୂର୍ବୋକ୍ତ ଦ୍ୱାଦଶ ପ୍ରକାର ଯଜ୍ଞ ମଧ୍ୟରୁ କୌଣସି ପ୍ରକାର ଯଜ୍ଞର ଅନୁଷ୍ଠାନ ନ କରନ୍ତି, ସେମାନେ ସାମାନ୍ୟ ସୁଖକର ଏହି ମନୁଷ୍ୟଲୋକ ପୁନର୍ବାର ପ୍ରାପ୍ତ ହୁଅନ୍ତି ନାହିଁ, ଅଧିକ ସୁଖକର ସ୍ୱର୍ଗାଦି ଲୋକ ପ୍ରାପ୍ତି ସେମାନଙ୍କର କିପରି ବା କେଉଁଠାରୁ ହେବ ? ଅତଏବ ଯଜ୍ଞାଦି କର୍ମ କରିବା ସର୍ବତୋଭାବରେ ବିଧେୟ ଅଟେ । ୩୧ ।

### ଶ୍ଲୋକଃ ।

ଏବଂ ବହୁବିଧା ଯଜ୍ଞା,ବିତତା ବ୍ରହ୍ମଣୋମୁଖେ ।
କର୍ମଜାନ୍ ବିଦ୍ଧି ତାନ୍ ସର୍ବା,-ନେବଂ ଜ୍ଞାତ୍ୱା ବିମୋକ୍ଷ୍ୟସେ । ୩୨ ।

### ଅନ୍ୱୟଃ ।

ଏବଂ ବହୁବିଧାଃ ଯଜ୍ଞାଃ ବ୍ରହ୍ମଣଃ ମୁଖେ ବିତତାଃ, ତାନ୍ ସର୍ବାନ୍ କର୍ମଜାନ୍ ବିଦ୍ଧି, ଏବଂ ଜ୍ଞାତ୍ୱା ବିମୋକ୍ଷ୍ୟସେ । ୩୨ ।

Digitized by PPRACHIN, SOA

## ଟୀକା ।

ଜ୍ଞାନଯଜ୍ଞଂ ସ୍ତୋତୁମୁକ୍ତାନ୍ ଯଜ୍ଞାନୁପସଂହରତି । ଏବ ବହୁବିଧା ଇତି । ବ୍ରହ୍ମଣୋ ବେଦସ୍ୟ ମୁଖେ ବିତତା ବେଦେନ ସାକ୍ଷାଦୁକ୍ତା ଇତ୍ୟର୍ଥଃ । ତଥାପି ତାନ୍ ସର୍ବାନ୍ ବାଙ୍‌ମନଃକାୟକର୍ମଜନିତାନ୍ ଆତ୍ମସ୍ୱରୂପସଂସ୍ପର୍ଶରହିତାନ୍ ବିଦ୍ଧି ଜାନୀହି ଅତଃ କର୍ମଣୋଽଶେଷତ୍ୱାତ୍ ଏବ ଜ୍ଞାତ୍ୱା ଜ୍ଞାନନିଷ୍ଠଃ ସନ୍ ସଂସାରାଦ୍ୱିମୁକ୍ତୋ ଭବିଷ୍ୟସି । ୩୨ ।

## ପଦବ୍ୟାଖ୍ୟା ।

ଏବ—ଏପ୍ରକାର, ବହୁବିଧାଃ—ଅନେକ ପ୍ରକାର, ଯଜ୍ଞାଃ—ଯଜ୍ଞମାନ, ବିତତାଃ—ବିସ୍ତାରିତରୂପେ କଥିତ ହୋଇଅଛି, ବ୍ରହ୍ମଣଃ—ବେଦର, ମୁଖେ—ମୁଖରେ, କର୍ମଜାନ୍—କର୍ମଜନିତ ବୋଲି, ବିଦ୍ଧି—ଜାଣ, ତାନ୍ ସର୍ବାନ୍—ସେହି ସବୁକୁ, ଏବ—ଏପରି, ଜ୍ଞାତ୍ୱା—ଜାଣିଲେ, ବିମୋକ୍ଷ୍ୟସେ—ସଂସାରରୁ ମୁକ୍ତ ହେବ । ୩୨ ।

## ଅନୁବାଦ ।

ଏହିପରି ବେଦରେ ଅନେକପ୍ରକାର ଯଜ୍ଞ ବିସ୍ତାରିତରୂପେ ବର୍ଣ୍ଣିତ ହୋଇଅଛି । ମାତ୍ର ସେ ସବୁକୁ କର୍ମଜନିତ ବୋଲି ଜାଣ । ଏ ପ୍ରକାର ଜାଣିଲେ ମୁକ୍ତ ହୋଇଯିବ । ୩୨ ।

## ବିଶଦବ୍ୟାଖ୍ୟା ।

ଋକ୍ ପ୍ରଭୃତି ବେଦରେ ଏହିପ୍ରକାର ବହୁବିଧ ଯଜ୍ଞର ବିଧି ବିସ୍ତୃତଭାବରେ ଲେଖାଅଛି, ଏହା କଳ୍ପିତ କଥା ନୁହେ । ମାତ୍ର ଏ ସବୁ ଯଜ୍ଞ କାୟିକ, ମାନସିକ ଓ ବାଚନିକ କର୍ମରୁ ଉତ୍ପନ୍ନ ହୁଏ । ଏଥିରେ ଆତ୍ମାର କର୍ତ୍ତୃତ୍ୱ ନାହିଁ । ଏହା ସ୍ଥିର ବିଶ୍ୱାସରେ ଜାଣିଲେ ଅର୍ଥାତ୍ ଯଜ୍ଞାଦି କ୍ରିୟାରେ ଆତ୍ମାର କିଛିମାତ୍ର ସଂସ୍ପର୍ଶ ନାହିଁ, କେବଳ ମନ ବଚନ ଓ ଶରୀରକ୍ରିୟାଦ୍ୱାରା ସେ ସବୁ ସମ୍ପାଦିତ ହୁଏ, ଏପରି ଦୃଢ଼ଜ୍ଞାନ ହେଲେ, ତୁମ୍ଭେ ଜନ୍ମମରଣରୂପ ସଂସାରବନ୍ଧନରୁ ମୁକ୍ତ ହୋଇଯିବ । ୩୨ ।

## ଶ୍ଳୋକଃ ।

ଶ୍ରେୟାନ୍ ଦ୍ରବ୍ୟମୟାଦ୍ୟଜ୍ଞାଜ୍‌ଜ୍ଞାନଯଜ୍ଞଃ ପରନ୍ତପ ।
ସର୍ବଂ କର୍ମାଖିଳଂ ପାର୍ଥ, ଜ୍ଞାନେ ପରିସମାପ୍ୟତେ । ୩୩ ।

## ଅନ୍ୱୟଃ ।

ହେ ପରନ୍ତପ ! ଦ୍ରବ୍ୟମୟାତ୍ ଯଜ୍ଞାତ୍ ଜ୍ଞାନଯଜ୍ଞଃ ଶ୍ରେୟାନ୍, ହେ ପାର୍ଥ ! ସର୍ବଂ ଅଖିଳଂ କର୍ମ ଜ୍ଞାନେ ପରିସମାପ୍ୟତେ । ୩୩ ।

## ଟୀକା ।

ଜ୍ଞାନଯଜ୍ଞସ୍ତୁ ଶ୍ରେଷ୍ଠ ଇତ୍ୟାହ, ଶ୍ରେୟାନିତି । ଦ୍ରବ୍ୟମୟାଦନାତ୍ମବ୍ୟାପାରଜନ୍ୟାଦ୍ଦୈବାଦ୍ୟଜ୍ଞାତ୍ ଜ୍ଞାନଯଜ୍ଞଃ ଶ୍ରେଷ୍ଠଃ, ଯଦ୍ୟପି ଜ୍ଞାନସ୍ୟାପି ମନୋବ୍ୟାପାରାଧୀନତ୍ୱମସ୍ତ୍ୟେବ ତଥାପ୍ୟାତ୍ମସ୍ୱରୂପସ୍ୟ ଜ୍ଞାନସ୍ୟ ମନଃପରିଣାମେ ଅଭିବ୍ୟକ୍ତିମାତ୍ରଂ ନ ତଜ୍ଜନ୍ୟତ୍ୱମିତି ଦ୍ରବ୍ୟମୟାଦ୍ୱିଶେଷଃ, ଶ୍ରେଷ୍ଠତ୍ୱେ ହେତୁଃ ସର୍ବଂ କର୍ମାଖିଳଂ ଫଳସହିତଂ ଜ୍ଞାନେ ପରିସମାପ୍ୟତେ ଅନ୍ତର୍ଭବତୀତ୍ୟର୍ଥଃ । ସର୍ବଂ ତଦଭିସମେତି ଯତ୍କିଞ୍ଚିତ୍ ପ୍ରଜାଃ ସାଧୁ କୁର୍ବନ୍ତୀତି ଶ୍ରୁତେଃ । ୩୩ ।

## ପଦବ୍ୟାଖ୍ୟା ।

ଶ୍ରେୟାନ୍—ଶ୍ରେଷ୍ଠ, ଦ୍ରବ୍ୟମୟାତ୍—ଦ୍ରବ୍ୟଦ୍ୱାରା ସମ୍ପନ୍ନ, ଯଜ୍ଞାତ୍—ଯଜ୍ଞ ଅପେକ୍ଷା, ଜ୍ଞାନଯଜ୍ଞଃ—ଆତ୍ମଜ୍ଞାନରୂପ ଯଜ୍ଞ, ପରନ୍ତପ—ହେ ଶତ୍ରୁତାପନ !, ସର୍ବଂ କର୍ମ—ସମସ୍ତ କର୍ମ, ଅଖିଳଂ—ସମଗ୍ର ଅର୍ଥାତ୍ ଫଳସହିତ, ପାର୍ଥ—ହେ ଅର୍ଜ୍ଜୁନ !, ଜ୍ଞାନେ—ଜ୍ଞାନରେ, ପରିସମାପ୍ୟତେ—ସମ୍ପୂର୍ଣ୍ଣ ହୁଏ । ୩୩ ।

Digitized by PPRACHIN, SOA

ଅନୁବାଦ ।

ହେ ପରନ୍ତପ ଅର୍ଜୁନ । ଦ୍ରବ୍ୟଦ୍ୱାରା ନିଷ୍ପନ୍ନ ଯଜ୍ଞଅପେକ୍ଷା ଜ୍ଞାନଯଜ୍ଞ ଶ୍ରେଷ୍ଠ । କାହିଁକି ନା ଜ୍ଞାନରେ ସମସ୍ତ କର୍ମ ସମାପ୍ତ ହୁଏ । ୩୩ ।

ବିଶେଷବ୍ୟାଖ୍ୟା ।

ଦ୍ରବ୍ୟଯଜ୍ଞଠାରୁ ଜ୍ଞାନଯଜ୍ଞ, ଯେ ଶ୍ରେଷ୍ଠ ତାହା ସହଜରେ ପ୍ରମାଣ କରି ଯାଇପାରେ । ଦ୍ରବ୍ୟଯଜ୍ଞ ପ୍ରଭୃତିର ଉଦ୍ଦେଶ୍ୟ କେବଳ ସ୍ୱର୍ଗାଦି ସୁଖଲାଭ, କିନ୍ତୁ ଜ୍ଞାନରେ ସବୁକର୍ମର ସମାପ୍ତ ହୁଏ, କାହିଁକି ନା ଯଜ୍ଞରେ ଯେ ସବୁ କର୍ମର ଫଳ ଅଛି ଅର୍ଥାତ୍ ଅଶ୍ୱମେଧ, ଅଗ୍ନିଷ୍ଟୋମ, ସୋମଯଜ୍ଞ ଓ ଚୟନଯଜ୍ଞ ପ୍ରଭୃତି ସମସ୍ତ ଯଜ୍ଞର ପୃଥକ୍ ୨ ଫଳମାନ ଏକ ଆତ୍ମଜ୍ଞାନଲାଭରେ ପ୍ରାପ୍ତ ହୁଏ ।

ଶ୍ରୁତିରେ ପ୍ରମାଣ ଅଛି, ଯେ "ଜ୍ଞାନାଦେବ ତୁ କୈବଲ୍ୟଂ" ଅର୍ଥାତ୍ କେବଳ ଆତ୍ମଜ୍ଞାନରୁ କୈବଲ୍ୟ ନାମକ ମୁକ୍ତି ପ୍ରାପ୍ତ ହୁଏ, ଅନ୍ୟ କୌଣସି ଯାଗାଦିରୁ ତାହା ପ୍ରାପ୍ତ ହୁଏ ନାହିଁ । ୩୩ ।

ଶ୍ଳୋକଃ ।

ତଦ୍ବିଦ୍ଧି ପ୍ରଣିପାତେନ, ପରିପ୍ରଶ୍ନେନ ସେବୟା ।
ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ, ଜ୍ଞାନିନସ୍ତତ୍ତ୍ୱଦର୍ଶିନଃ । ୩୪ ।

ଅନ୍ୱୟଃ ।

ତତ୍ ପ୍ରଣିପାତେନ, ପରିପ୍ରଶ୍ନେନ ସେବୟା ବିଦ୍ଧି । ତତ୍ତ୍ୱଦର୍ଶିନଃ ଜ୍ଞାନିନଃ ତେ ଜ୍ଞାନଂ ଉପଦେକ୍ଷ୍ୟନ୍ତି । ୩୪ ।

ଟୀକା ।

ଏବମ୍ଭୂତାତ୍ମଜ୍ଞାନେ ସାଧନମାହ, ତଦିତି । ତଜ୍ଜ୍ଞାନଂ ବିଦ୍ଧି ଜାନୀହି ପ୍ରାପ୍ନୁହୀତ୍ୟର୍ଥଃ ଜ୍ଞାନିନାଂ ପ୍ରଣିପାତେନ ନମସ୍କାରେଣ ତତଃ ପରିପ୍ରଶ୍ନେନ କୁତୋଽୟଂ ମମ ସଂସାରଃ କଥଂ ବା ନିବର୍ତ୍ତେତ ଇତି ପରିପ୍ରଶ୍ନେନ, ସେବୟା ଗୁରୁଶୁଶ୍ରୂଷୟା ଚ, ଜ୍ଞାନିନଃ ଶାସ୍ତ୍ରଜ୍ଞାଃ ତତ୍ତ୍ୱଦର୍ଶିନୋଽପରୋକ୍ଷାନୁଭବସମ୍ପନ୍ନାଶ୍ଚ ତେ ତୁଭ୍ୟଂ ଜ୍ଞାନମୁପଦେଶେନ ସମ୍ପାଦୟିଷ୍ୟନ୍ତି । ୩୪ ।

ପଦବ୍ୟାଖ୍ୟା ।

ତତ୍—ତାହାକୁ, ବିଦ୍ଧି—ଜାଣ, ପ୍ରଣିପାତେନ—ଦଣ୍ଡବତ ପ୍ରଣିପାତଦ୍ୱାରା, ପରିପ୍ରଶ୍ନେନ—ବିଶେଷରୂପେ ପ୍ରଶ୍ନ କରି, ସେବୟା—ସେବାଦ୍ୱାରା, ଉପଦେକ୍ଷ୍ୟନ୍ତି—ଉପଦେଶ ଦେବେ, ତେ—ତୁମ୍ଭକୁ, ଜ୍ଞାନଂ—ଜ୍ଞାନକୁ, ଜ୍ଞାନିନଃ—ଶାସ୍ତ୍ରଜ୍ଞାନୀମାନେ, ତତ୍ତ୍ୱଦର୍ଶିନଃ—ତତ୍ତ୍ୱଦର୍ଶୀମାନେ । ୩୪ ।

ଅନୁବାଦ ।

ପ୍ରଣାମ ଓ ସେବାଦ୍ୱାରା (ସଶୁଶ୍ରୂଷା କରି) ଉପଯୁକ୍ତ ପ୍ରଶ୍ନଦ୍ୱାରା ସେହି ଜ୍ଞାନ ଜାଣିବାକୁ ଯତ୍ନ କର, ତେବେ ତତ୍ତ୍ୱଦର୍ଶୀ ଜ୍ଞାନୀମାନେ ତୁମ୍ଭକୁ ତାହା ଉପଦେଶ ଦେବେ । ୩୪ ।

ବିଶେଷବ୍ୟାଖ୍ୟା ।

ତତ୍ତ୍ୱଜ୍ଞାନଲାଭ ନିଜ ଚେଷ୍ଟାଦ୍ୱାରା ହେବାର ନୁହେ । ଗୁରୁଙ୍କଠାରୁ ଉପଦେଶ ନ ପାଇଲେ ତାହା ସିଦ୍ଧ ହୋଇ ପାରିବ ନାହିଁ । ଆତ୍ମାକୁ ସାକ୍ଷାତ୍‌ଭାବରେ ଦେଖିଥିବା ଶାସ୍ତ୍ରଜ୍ଞ ଗୁରୁଙ୍କ ନିକଟରେ ଉପସ୍ଥିତ ହୋଇ ଭକ୍ତିଭାବରେ ନମସ୍କାର କରି ପ୍ରଶ୍ନ କରିବ,—'ହେ ଗୁରୋ !

Digitized by PPRACHIN, SOA

ମୁଁ ଛଏ ? ମୋହର ଏ ସଂସାରବନ୍ଧନ କପର ହେଲା ? ଏଥିରୁ ମୁଁ କପର ମୁକ୍ତିଲାଭ କରିବି ? ଏପର ପ୍ରଶ୍ନ କଲେ ସେ ଉପଦେଶଦ୍ୱାରା ତତ୍ତ୍ୱଜ୍ଞାନର ଶିକ୍ଷା ଦେବେ । ଶ୍ରୁତିରେ ପ୍ରମାଣ ଅଛି, ଯେ "ତଦ୍ୱିଜ୍ଞାନାର୍ଥଂ ସ ଗୁରୁମେବାଭିଗଚ୍ଛେତ୍ ସମିତ୍ପାଣିଃ ଶ୍ରୋତ୍ରିୟଂ ବ୍ରହ୍ମନିଷ୍ଠଂ" ଅର୍ଥାତ୍ ଆତ୍ମଜ୍ଞାନ ଲାଭନିମିତ୍ତ ଯଥାଶକ୍ତି ଉପଢୌକନ (ଭେଟି) ହାତରେ ଘେନି ଶ୍ରୋତ୍ରିୟ ବ୍ରହ୍ମନିଷ୍ଠ ଗୁରୁଙ୍କ ନିକଟକୁ ଗମନ କରିବ । ୩୪ ।

ଶ୍ଲୋକଃ ।

ଯଜ୍ଜ୍ଞାତ୍ୱା ନ ପୁନର୍ମୋହମେବଂ ଯାସ୍ୟସି ପାଣ୍ଡବ ।
ଯେନ ଭୂତାନ୍ୟଶେଷେଣ ଦ୍ରକ୍ଷ୍ୟସ୍ୟାତ୍ମନ୍ୟଥୋ ମୟି । ୩୫ ।

ଅନ୍ୱୟଃ ।

ହେ ପାଣ୍ଡବ ! ଯତ୍ (ଜ୍ଞାନଂ) ଜ୍ଞାତ୍ୱା ପୁନଃ ଏବଂ ମୋହଂ ନ ଯାସ୍ୟସି, ଯେନ ଅଶେଷେଣ ଭୂତାନି ଆତ୍ମନି ଅଥୋ ମୟି ଦ୍ରକ୍ଷ୍ୟସି । ୩୫ ।

ଟୀକା ।

ଜ୍ଞାନଫଳମାହ, ଯଜ୍ଜ୍ଞାତ୍ୱେତି ସାର୍ଦ୍ଧୈସ୍ତ୍ରିଭିଃ । ଯଜ୍ଜ୍ଞାନଂ ଜ୍ଞାତ୍ୱା ପ୍ରାପ୍ୟ ପୁନର୍ବନ୍ଧୁବଧାଦିନିମିତ୍ତଂ ମୋହଂ ନ ପ୍ରାପ୍ସ୍ୟସି । ତତ୍ର ହେତୁର୍ଯେନ ଜ୍ଞାନେନ ଭୂତାନି ପିତୃପୁତ୍ରାଦୀନି ସ୍ୱାବିଦ୍ୟାବିଜୃମ୍ଭିତାନି ଆତ୍ମନ୍ୟେବାଭେଦେନ ଦ୍ରକ୍ଷ୍ୟସି । ଅଥୋ ଅନନ୍ତରଂ ଆତ୍ମାନଂ ମୟି ପରମାତ୍ମନ୍ୟଭେଦେନ ଦ୍ରକ୍ଷ୍ୟସୀତ୍ୟର୍ଥଃ । ୩୫ ।

ପଦବ୍ୟାଖ୍ୟା ।

ଯତ୍—ଯେଉଁ (ଜ୍ଞାନକୁ), ଜ୍ଞାତ୍ୱା—ଜାଣିଲେ, ନ—ନାହିଁ, ପୁନଃ—ପୁଣି, ମୋହଂ—ମୋହକୁ, ଏବଂ—ଏପ୍ରକାର, ଯାସ୍ୟସି—ପ୍ରାପ୍ତ ହେବ, ପାଣ୍ଡବ—ହେ ପାଣ୍ଡୁପୁତ୍ର !, ଯେନ—ଯେଉଁ (ଜ୍ଞାନ)ଦ୍ୱାରା, ଭୂତାନି—ପ୍ରାଣିମାନଙ୍କୁ, ଅଶେଷେଣ—ସମ୍ପୂର୍ଣ୍ଣରୂପରେ, ଦ୍ରକ୍ଷ୍ୟସି—ଦେଖିବ, ଆତ୍ମନି—ଆତ୍ମାରେ, ଅଥୋ—ଏଥିଉତ୍ତାରୁ, ମୟି—ଆମ୍ଭଠାରେ । ୩୫ ।

ଅନୁବାଦ ।

ହେ ପାଣ୍ଡବ ! ଯେଉଁ ଜ୍ଞାନକୁ ଜାଣିଲେ ତୁମ୍ଭେ ଏପରି ମୋହ ଆଉ ପ୍ରାପ୍ତ ହେବ ନାହିଁ ଓ ଯାହାଦ୍ୱାରା ସମସ୍ତ ପ୍ରାଣିଙ୍କୁ ସମ୍ପୂର୍ଣ୍ଣରୂପେ ନିଜ ଆତ୍ମାରେ ଏବଂ ତତ୍ପରେ ଆମ୍ଭଠାରେ (ପରମାତ୍ମାଙ୍କଠାରେ) ଦେଖିବ । ୩୫ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ କାଳେ ଏପରି ଆଶଙ୍କା କରିବେ, ଯେ ଏତେ ପରିଶ୍ରମ କରି ଗୁରୁଙ୍କ ନିକଟରୁ ଆତ୍ମଜ୍ଞାନ ଶିଖିଲେ ଫଳ କଣ ହେବ ? ସେଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ ଗୁରୁ ଉପଦିଷ୍ଟ ଆତ୍ମଜ୍ଞାନ ଲାଭ ହେଲେ ତୁମ୍ଭେ ଆଉ ଭୀଷ୍ମଦ୍ରୋଣାଦି ଗୁରୁ ଓ କୌରବ ଭ୍ରାତା ପ୍ରଭୃତିଙ୍କ ବିନାଶ ହେତୁରୁ ମୋହ ପ୍ରାପ୍ତ ହେବ ନାହିଁ । କାହିଁକି ନା ତୁମ୍ଭର ଆତ୍ମଜ୍ଞାନ ଉଦୟ ହୋଇ ନ ଥିବାରୁ ସିନା ତୁମ୍ଭେ ଭୀଷ୍ମଦ୍ରୋଣାଦି ଓ କୌରବମାନଙ୍କୁ ଆପଣାଠାରୁ ପୃଥକ୍ ବୋଲି ଜାଣୁଅଛ, ଆତ୍ମଜ୍ଞାନ ହେଲେ ତୁମ୍ଭେ ସମସ୍ତ ପ୍ରାଣିଙ୍କୁ ସମ୍ପୂର୍ଣ୍ଣରୂପେ ନିଜ ଆତ୍ମାରେ ଦେଖିବ,

Digitized by PPRACHIN, SOA

ଅର୍ଥାତ୍ ସମସ୍ତ ପ୍ରାଣୀ ଓ ତୁମ୍ଭେ, ଯେ ଭିନ୍ନ ନୁହ—ଏକ ଆତ୍ମାର ଲୀଳାମୟ ଭିନ୍ନ ଭିନ୍ନ ବହ୍ନାଂଶ ମାତ୍ର, ତାହା ବୁଝି ପାରିବ ଏବଂ ସେହିପରି ସମସ୍ତ ପ୍ରାଣୀ ଓ ତୁମ୍ଭେ, ଯେ ଆମ୍ଭଠାରେ ଅଛ ଅର୍ଥାତ୍ ଆମ୍ଭର ଅନନ୍ତସତ୍ତ୍ୱଭିନ୍ନ ଏ ଜଗତରେ ଆଉ କିଛି ନାହିଁ, ତାହା ଜାଣିବ ଅର୍ଥାତ୍ ତୁମ୍ଭେ ଓ ଭୀଷ୍ମଦ୍ରୋଣାଦି ଯେ କିଛି ନୁହ, ଆମ୍ଭର ସତ୍ତାର କେବଳ ଅଂଶମାତ୍ର, ତାହା ବୁଝି ପାରିବ । ୩୫ ।

ଶ୍ଳୋକଃ ।

ଅପି ଚେଦସି ପାପେଭ୍ୟଃ, ସର୍ବେଭ୍ୟଃ ପାପକୃତ୍ତମଃ ।
ସର୍ବଂ ଜ୍ଞାନପ୍ଳବେନୈବ, ବୃଜିନଂ ସନ୍ତରିଷ୍ୟସି । ୩୬ ।

ଅନ୍ୱୟଃ ।

ସର୍ବେଭ୍ୟଃ ପାପିଭ୍ୟଃ ଅପି ପାପକୃତ୍ତମଃ ଅସି ଚେତ୍ ଜ୍ଞାନପ୍ଳବେନ ଏବ ସର୍ବଂ ବୃଜିନଂ ସନ୍ତରିଷ୍ୟସି । ୩୬ ।

ଟୀକା ।

କିଞ୍ଚ ଅପିଚେଦସୀତି । ସର୍ବେଭ୍ୟୋଽପି ପାପକାରିଭ୍ୟୋ ଯଦ୍ୟପି ଅତିଶୟେନ ପାପକାରୀ ଭବସି ତଥାପି ସର୍ବଂ ପାପସମୁଦ୍ରଂ ଜ୍ଞାନପ୍ଳବେନୈବ ଜ୍ଞାନପୋତେନୈବ ସମ୍ୟଗନାୟାସେନ ତରିଷ୍ୟସି । ୩୬ ।

ପଦବ୍ୟାଖ୍ୟା ।

ଅପି—ମଧ୍ୟ, ଚେତ୍—ଯେବେହେଁ, ଅସି—ହୁଅ, ପାପିଭ୍ୟଃ—ପାପିମାନଙ୍କଠାରୁ, ସର୍ବେଭ୍ୟଃ—ସମସ୍ତ, ପାପକୃତ୍ତମଃ—ଅତ୍ୟନ୍ତ ପାପୀ, ସର୍ବଂ—ସମସ୍ତ, ଜ୍ଞାନପ୍ଳବେନୈବ—ଜ୍ଞାନରୂପ ନୌକାରେ କେବଳ, ବୃଜିନଂ—ପାପକୁ, ସନ୍ତରିଷ୍ୟସି—ଅନାୟାସରେ ପାର ହୋଇ ଯିବ । ୩୬ ।

ଅନୁବାଦ ।

ତୁମ୍ଭେ ସମସ୍ତ ପାପିଙ୍କଠାରୁ ଅତି ଅଧିକ ପାପୀ ହେଲେହୁଁ, ଜ୍ଞାନରୂପ ନୌକାଦ୍ୱାରା ସମସ୍ତ ପାପସମୁଦ୍ରକୁ ଅକ୍ଳେଶରେ ପାର ହୋଇଯିବ । ୩୬ ।

ବଣଦବ୍ୟାଖ୍ୟା ।

ଅର୍ଜୁନ ପାପୀ ନୁହନ୍ତି ସତ, ମାତ୍ର ଜ୍ଞାନର ମାହାତ୍ମ୍ୟ ବୁଝାଇବା ନିମିତ୍ତ ଶ୍ରୀଭଗବାନ୍ କହିଲେ, ଯେ ତୁମ୍ଭେ ପାପୀ ଅପେକ୍ଷା ମହାପାପୀ ହେଲେ ମଧ୍ୟ ଜ୍ଞାନନୌକାଦ୍ୱାରା ପାପପାରାବାର ଅକ୍ଳେଶରେ ପାର ହୋଇଯିବ । ଫଳକଥା ଏହି କି ଜ୍ଞାନଯୋଗରେ ମହାପାପୀ ମଧ୍ୟ ମୁକ୍ତିଲାଭ କରିପାରେ, ପାପଶୂନ୍ୟ ବ୍ୟକ୍ତିର କଥା ଆଉ କଅଣ କହିବା ? କାହିଁକି ନା ଆତ୍ମଜ୍ଞାନ ଜାତ ହୋଇ ନ ଥିବାଯାଏ ପାପ ଓ ପୁଣ୍ୟର ଅଧିକାର ଅଛି, ଆତ୍ମଜ୍ଞାନ ଜନ୍ମିଲେ ପାପ ବା ପୁଣ୍ୟ କିଛିହିଁ ରହି ନ ପାରେ । ସୁତରାଂ ପାପସମୁଦ୍ର ପାର ହେବାର ବଡ଼ଭ କଣ ? । ୩୬ ।

ଶ୍ଳୋକଃ ।

ଯଥୈଧାଂସି ସମିଦ୍ଧୋଽଗ୍ନିର୍ଭସ୍ମସାତ୍ କୁରୁତେଽର୍ଜୁନ ।
ଜ୍ଞାନାଗ୍ନିଃ ସର୍ବକର୍ମାଣି, ଭସ୍ମସାତ୍ କୁରୁତେ ତଥା । ୩୭ ।

Digitized by PPRACHIN, SOA

ଅନ୍ୱୟଃ ।

ହେ ଅର୍ଜ୍ଜୁନ ! ଯଥା ସମିଦ୍ଧଃ ଅଗ୍ନିଃ ଏଧାଂସି ଭସ୍ମସାତ୍ କୁରୁତେ ତଥା ଜ୍ଞାନାଗ୍ନିଃ ସର୍ବ୍ବକର୍ମାଣି ଭସ୍ମସାତ୍ କୁରୁତେ । ।୩୭।

ଟୀକା ।

ସମୁଦ୍ରବତ୍ ସ୍ଥିତସ୍ୟୈବ ପାପସ୍ୟ ଅତଳସ୍ପର୍ଶନମାତ୍ରଂ ନତୁ ପାପସ୍ୟ ନାଶ ଇତି ଭ୍ରାନ୍ତିଂ ଦୃଷ୍ଟାନ୍ତେନ ବାରୟନ୍ନାହ, ଯଥୈଧାଂସୀତି । ଏଧାଂସି କାଷ୍ଠାନି ପ୍ରଦୀପ୍ତୋଽଗ୍ନିର୍ୟଥା ଭସ୍ମୀଭାବଂ ନୟତି ତଥା ଆତ୍ମଜ୍ଞାନସ୍ୱରୂପୋଽଗ୍ନିଃ 'ପ୍ରାରବ୍ଧକର୍ମଫଳ-ବ୍ୟତିରିକ୍ତାନି ସର୍ବାଣି କର୍ମାଣି ଭସ୍ମୀକରୋତୀତ୍ୟର୍ଥଃ । ୩୭ ।

ପଦବ୍ୟାଖ୍ୟା ।

ଯଥା—ଯେପରି, ଏଧାଂସି—କାଷ୍ଠମାନଙ୍କୁ, ସମିଦ୍ଧଃ—ପ୍ରଜ୍ୱଳିତ, ଅଗ୍ନିଃ—ହୁତାଶନ, ଭସ୍ମସାତ୍—ଭସ୍ମରୂପରେ ପରିଣତ, କୁରୁତେ—କରେ, ଅର୍ଜ୍ଜୁନ—ହେ ଅର୍ଜ୍ଜୁନ !, ଜ୍ଞାନାଗ୍ନିଃ—ଜ୍ଞାନରୂପ ଅଗ୍ନି, ସର୍ବ୍ବକର୍ମାଣି—ସମସ୍ତ (ଶୁଭାଶୁଭ) କର୍ମକୁ, ଭସ୍ମସାତ୍—ଭସ୍ମରୂପରେ ପରିଣତ, କୁରୁତେ—କରେ, ତଥା—ସେହିପରି । ୩୭ ।

ଅନୁବାଦ ।

ହେ ଅର୍ଜ୍ଜୁନ ! ଯେପରି ପ୍ରଜ୍ୱଳିତ ଅଗ୍ନି କାଷ୍ଠମାନଙ୍କୁ ଭସ୍ମ କରେ, ସେହିପରି ଜ୍ଞାନରୂପ ଅଗ୍ନି ସବୁ କର୍ମକୁ ଭସ୍ମ କରିଦିଏ । ୩୭ ।

ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନ ଏପରି ମନେ କରିବେ, ଯେ ଜ୍ଞାନନୌକା ପାପରୂପ ସମୁଦ୍ରରୁ ଉତ୍ତୀର୍ଣ୍ଣ କରେ ସତ, ମାତ୍ର ନୌକା ଯେପରି ସମୁଦ୍ରର ଜଳକୁ ଶୁଷ୍କ କରି ପାରେ ନାହିଁ ଅଥବା ସମୁଦ୍ରକୁ ନଷ୍ଟ କରି ପାରେ ନାହିଁ, ସେହିପରି ଜ୍ଞାନ, ପାପସମୁଦ୍ରର ବିନାଶ କରିବାରେ ଅକ୍ଷମ ଅଟେ । ପାପ ଯଦି ବିନଷ୍ଟ ନ ହେଲା ତେବେ ଆଉ ମୁକ୍ତି ହେବ କିପରି ? ସେଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ ଜ୍ଞାନରୂପ ନୌକାଦ୍ୱାରା ତୁମ୍ଭେ ପାପସମୁଦ୍ରରୁ ପାର ହୋଇ ଯିବା ସଙ୍ଗେ ସଙ୍ଗେ ପ୍ରଜ୍ୱଳିତ ଅଗ୍ନି କାଷ୍ଠରାଶିକୁ ଭସ୍ମ କଲାପରି ଜ୍ଞାନରୂପ ଅଗ୍ନି ପ୍ରାରବ୍ଧକର୍ମ ଓ ପ୍ରାରବ୍ଧକର୍ମର ଫଳ ଅର୍ଥାତ୍ ଶରୀର ଭିନ୍ନ ଆଉ ସମସ୍ତ ଶୁଭାଶୁଭ କର୍ମକୁ ଭସ୍ମ କରିଦେବ । ସୂତ୍ରରେ ମଧ୍ୟ ପ୍ରମାଣ ଅଛି, ଯେ "ତଦଧିଗମ ଉତ୍ତରପୂର୍ବାଘୟୋରଶ୍ଳେଷବିନାଶୌ ତଦ୍ୱ୍ୟପଦେଶାତ୍" ଅର୍ଥାତ୍ ଆତ୍ମଜ୍ଞାନସମ୍ପନ୍ନ ବ୍ୟକ୍ତିଙ୍କର ପୂର୍ବକୃତ କର୍ମରାଶି ବିନଷ୍ଟ ହୁଏ, ଭବିଷ୍ୟତରେ ସେ ଯେଉଁ କର୍ମ କରିବେ, ତହିଁରେ ସେ ପଦ୍ମପତ୍ରରେ ଜଳପରି ଲିପ୍ତ ହେବେ ନାହିଁ ।

ପ୍ରାରବ୍ଧକର୍ମ ଅନୁସାରେ ସେ କେବଳ ଦେହଯାତ୍ରା ନିର୍ବାହ କରନ୍ତି, ମାତ୍ର କୌଣସି କର୍ମର କର୍ତ୍ତାରୂପରେ ପରିଗଣିତ ହୁଅନ୍ତି ନାହିଁ । ୩୭ ।

ଶ୍ଳୋକଃ ।

ନ ହି ଜ୍ଞାନେନ ସଦୃଶଂ, ପବିତ୍ରମିହ ବିଦ୍ୟତେ ।
ତତ୍ ସ୍ୱୟଂ ଯୋଗସଂସିଦ୍ଧଃ, କାଳେନାତ୍ମନି ବିନ୍ଦତି । ୩୮ ।

ଅନ୍ୱୟଃ ।

ହି ଇହ ଜ୍ଞାନେନ ସଦୃଶଂ ପବିତ୍ରଂ ନ ବିଦ୍ୟତେ । ତତ୍ କାଳେନ ଯୋଗସଂସିଦ୍ଧଃ ଆତ୍ମନି ସ୍ୱୟଂ ବିନ୍ଦତି । ୩୮ ।

Digitized by PPRACHIN, SOA

### ଟୀକା ।

ତତ୍ର ହେତୁମାହ ନହୀତି । ପବିତ୍ରଂ ଶୁଦ୍ଧିକରଂ ଇହ ତପୋଯୋଗାଦିଷୁ ମଧ୍ୟେ ଜ୍ଞାନତୁଲ୍ୟଂ ନାସ୍ତ୍ୟେବ, ତର୍ହି ସର୍ବେଽପି କିମିତି ଆତ୍ମଜ୍ଞାନମେବ ନାଭ୍ୟସ୍ୟନ୍ତୀତ୍ୟତ ଆହ, ତତ୍ ସ୍ୱୟମିତି ସର୍ବୋ ନ । ତଦାତ୍ମବିଷୟେ ଜ୍ଞାନଂ କାଳେନ ମହତା କର୍ମଯୋଗେନ ସଂସିଦ୍ଧୋ ଯୋଗ୍ୟତାଂ ପ୍ରାପ୍ତଃ ସନ୍ ସ୍ୱୟମେବାନାୟାସେନ ଲଭତେ ନ ତୁ କର୍ମଯୋଗଂ ବିନେତ୍ୟର୍ଥଃ । ୩୮ ।

### ପଦବ୍ୟାଖ୍ୟା ।

ନ—ନାହିଁ, ହି—ଯେହେତୁ, ଜ୍ଞାନେନ ସଦୃଶଂ—ଜ୍ଞାନତୁଲ୍ୟ, ପବିତ୍ରଂ—ପବିତ୍ର, ଇହ—ଏହି ଲୋକରେ, ବିଦ୍ୟତେ—ଅଛି, ତତ୍—ସେହି ଜ୍ଞାନକୁ, ସ୍ୱୟଂ—ନିଜେ, ଯୋଗସଂସିଦ୍ଧଃ—ଯୋଗରେ ଉତ୍ତମରୂପେ ସିଦ୍ଧ, କାଳେନ—ବହୁଦିନରେ, ଆତ୍ମନି—ଆପଣାଠାରେ, ବିନ୍ଦତି—ପ୍ରାପ୍ତ ହୁଏ । ୩୮ ।

### ଅନୁବାଦ ।

ଏହି ଲୋକରେ ଜ୍ଞାନପରି ପବିତ୍ର ଆଉ ନାହିଁ । ବହୁକାଳରେ କର୍ମଯୋଗଦ୍ୱାରା ସିଦ୍ଧ ବ୍ୟକ୍ତି ନିଜେ ଆପଣାଠାରେ ସେହି ଆତ୍ମଜ୍ଞାନ ପ୍ରାପ୍ତ ହୁଏ । ୩୮ ।

### ବିଶଦବ୍ୟାଖ୍ୟା ।

ଏ ଜଗତରେ ଆତ୍ମଶୁଦ୍ଧିପାଇଁ ତପୋଯଜ୍ଞ ଦ୍ରବ୍ୟଯଜ୍ଞ ଆଦି ଯେତେପ୍ରକାର ସାଧନ ଅଛି, ଆତ୍ମଜ୍ଞାନ ବା ଜ୍ଞାନଯୋଗ ସେ ସମସ୍ତ ସାଧନ ଅପେକ୍ଷା ଶ୍ରେଷ୍ଠ; ଅର୍ଥାତ୍ ଆତ୍ମଜ୍ଞାନ ଯେପରି ଆତ୍ମାକୁ ପବିତ୍ର କରି ପାରେ, ଅନ୍ୟ କୌଣସି ସାଧନ ସେପରି କରି ପାରେ ନାହିଁ । କାହିଁକି ନା କର୍ମଯୋଗାଦିଦ୍ୱାରା ପାପର ନିବୃତ୍ତି ହେଲେ ମଧ୍ୟ, ପାପର ମୂଳକାରଣ ଅଜ୍ଞାନ ବିନଷ୍ଟ ହୁଏ ନାହିଁ, ସୁତରାଂ ପାପର ପୁନର୍ବାର ଉଦୟ ହେବାର ସମ୍ଭାବନା ଥାଏ । ମାତ୍ର ଆତ୍ମଜ୍ଞାନଦ୍ୱାରା ପାପର ମୂଳକାରଣ ଅଜ୍ଞାନ ବିନଷ୍ଟ ହେବାରୁ ଆଉ ପାପାଚରଣର ଅଶଙ୍କା ନ ଥାଏ । ଅତଏବ ଆତ୍ମଜ୍ଞାନ ଯେ ସର୍ବାପେକ୍ଷା ଶ୍ରେଷ୍ଠ, ତାହା ସହଜରେ ବୁଝାଯାଉଅଛି । ଯେବେ ଆତ୍ମଜ୍ଞାନ ସର୍ବାପେକ୍ଷା ଶ୍ରେଷ୍ଠ ହେଲା, ତେବେ ଲୋକମାନେ ସେହି ଆତ୍ମଜ୍ଞାନର ଉପାସନା ନ କରି, ଅନ୍ୟାନ୍ୟ ଯୋଗମାନ ସାଧନା କରିବାରେ କାହିଁକି ପ୍ରବୃତ୍ତ ହୁଅନ୍ତି ? ଏହାର ଉତ୍ତର ଏହି କି, କର୍ମଯୋଗାଦି ସିଦ୍ଧିପ୍ରାପ୍ତ ନ ହେଲେ ଆତ୍ମଜ୍ଞାନ ଲାଭରେ ଅଧିକାର ହେବ କିପରି ? ଅତଏବ ଯେଉଁମାନେ ଆତ୍ମଜ୍ଞାନଲାଭର ଅଭିଳାଷୀ, ସେମାନଙ୍କର ନିଷ୍କାମ କର୍ମଯୋଗ ବା ଭକ୍ତିଯୋଗ ସାଧନ କରିବା ନିତାନ୍ତ ଆବଶ୍ୟକ । ବହୁକାଳ କର୍ମଯୋଗର ସାଧନା କରି ତହିଁରେ ସିଦ୍ଧି ପ୍ରାପ୍ତ ହେଲେ, ଆତ୍ମଜ୍ଞାନ ଆପଣାଛଏଁ ଉଦିତ ହେବ । ବିନା କର୍ମଯୋଗରେ ଆତ୍ମଜ୍ଞାନ କଦାପି ଲାଭ କରି ଯାଇ ନ ପାରେ । ୩୮ ।

### ଶ୍ଲୋକଃ ।

ଶ୍ରଦ୍ଧାବାନ୍ ଲଭତେ ଜ୍ଞାନଂ, ତତ୍ପରଃ ସଂଯତେନ୍ଦ୍ରିୟଃ ।
ଜ୍ଞାନଂ ଲବ୍ଧ୍ୱା ପରାଂ ଶାନ୍ତି,ମଚିରେଣାଧିଗଚ୍ଛତି । ୩୯ ।

### ଅନ୍ୱୟଃ ।

ତତ୍ପରଃ ସଂଯତେନ୍ଦ୍ରିୟଃ ଶ୍ରଦ୍ଧାବାନ୍ ଜ୍ଞାନଂ ଲଭତେ ଜ୍ଞାନଂ ଲବ୍ଧ୍ୱା ଅଚିରେଣ ପରାଂ ଶାନ୍ତିଂ ଅଧିଗଚ୍ଛତି । ୩୯ ।

Digitized by PPRACHIN, SOA

ଟୀକା ।

ଇଷ୍ଟ ଶ୍ରଦ୍ଧାବାନିତି । ଶ୍ରଦ୍ଧାବାନ୍ ଗୁରୂପଦିଷ୍ଟେ ଽର୍ଥେ ଽସ୍ତିକ୍ୟବୁଦ୍ଧିମାନ୍ ତତ୍ପରସ୍ତଦେକନିଷ୍ଠଃ ସଂଯତେନ୍ଦ୍ରିୟଶ୍ଚ ଏତଜ୍ଜ୍ଞାନଂ ଲଭତେ, ନାନ୍ୟଃ, ଅତଃ ଶ୍ରଦ୍ଧାଦିସମ୍ପତ୍ତ୍ୟା ଜ୍ଞାନଲାଭାତ୍ ପ୍ରାକ୍ କର୍ମଯୋଗ ଏବ ଶୁଦ୍ଧ୍ୟର୍ଥମନୁଷ୍ଠେୟଃ, ଜ୍ଞାନଲାଭାନନ୍ତରନ୍ତୁ ନ ତସ୍ୟ କିଞ୍ଚିତ୍ କର୍ତ୍ତବ୍ୟମିତ୍ୟାହ, ଜ୍ଞାନଂ ଲବ୍ଧ୍ୱା ତୁ ମୋକ୍ଷମଚିରେଣ ପ୍ରାପ୍ନୋତି । ୩୯ ।

ପଦବ୍ୟାଖ୍ୟା ।

ଶ୍ରଦ୍ଧାବାନ୍—ଶ୍ରଦ୍ଧାଯୁକ୍ତ, ଲଭତେ—ପ୍ରାପ୍ତ ହୁଏ, ଜ୍ଞାନଂ—ଆତ୍ମଜ୍ଞାନକୁ, ତତ୍ପରଃ—ଜ୍ଞାନ ବିଷୟରେ ମନୋଯୋଗୀ, ସଂଯତେନ୍ଦ୍ରିୟଃ—ଇନ୍ଦ୍ରିୟଦମନକାରୀ, ଜ୍ଞାନଂ—ଆତ୍ମଜ୍ଞାନକୁ, ଲବ୍ଧ୍ୱା—ପ୍ରାପ୍ତ ହୋଇ, ପରାଂ ଶାନ୍ତିଂ—ଉତ୍କୃଷ୍ଟ ଶାନ୍ତି ଅର୍ଥାତ୍ ମୋକ୍ଷକୁ, ଅଚିରେଣ—ଅଳ୍ପକାଳରେ, ଅଧିଗଚ୍ଛତି—ପ୍ରାପ୍ତ ହୁଏ । ୩୯ ।

ଅନୁବାଦ ।

ଜ୍ଞାନ ବିଷୟରେ ତତ୍ପର, ଶ୍ରଦ୍ଧାବାନ୍ ଓ ଜିତେନ୍ଦ୍ରିୟ ପୁରୁଷ ଜ୍ଞାନଲାଭ କରେ । ଜ୍ଞାନ ଲାଭ କଲେ ଅବିଳମ୍ବରେ ମୋକ୍ଷପ୍ରାପ୍ତ ହୁଏ । ୩୯ ।

ବିଶଦବ୍ୟାଖ୍ୟା ।

ଜ୍ଞାନଶିକ୍ଷା କରିବାକୁ ଆଗ୍ରହ ବା ଆକାଙ୍କ୍ଷା ନ ଥିଲେ ଜ୍ଞାନଲାଭ ହେବ ନାହିଁ; କାହିଁକି ନା ଆଗ୍ରହ ଓ ଆକାଙ୍କ୍ଷା ନ ହେଲେ ଗୁରୁ ପାଇବ କିପରି ? ଅଥବା ବେଦାନ୍ତାଦି ଜ୍ଞାନଶାସ୍ତ୍ର ପଢ଼ିବ କିପରି ? ଅତଏବ ଜ୍ଞାନାର୍ଥୀମାନଙ୍କର ପ୍ରଥମରେ ଆକାଙ୍କ୍ଷା ବା ଆଗ୍ରହ ଜନ୍ମିବା ଅର୍ଥାତ୍ ଜ୍ଞାନ ବିଷୟରେ 'ତତ୍ପର' ହେବା ଆବଶ୍ୟକ । ପୁଣି ତତ୍ପର ହୋଇ ଗୁରୁଙ୍କ ଉପଦେଶରେ ବା ବେଦାନ୍ତାଦି ଶାସ୍ତ୍ରବଚନରେ ଶ୍ରଦ୍ଧା ଅର୍ଥାତ୍ ଅଟଳବିଶ୍ୱାସ ନ କଲେ ଜ୍ଞାନଲାଭ ଆଶା ବୃଥା । ଏଥିପାଇଁ ଜ୍ଞାନାଭିଳାଷିର 'ଶ୍ରଦ୍ଧାବାନ୍' ହେବା ଆବଶ୍ୟକ । ପୁଣି ତତ୍ପର ଓ ଶ୍ରଦ୍ଧାବାନ୍ ହେଲେ ସୁଦ୍ଧା ଇନ୍ଦ୍ରିୟମାନଙ୍କର ବଶୀଭୂତ ହେଲେ ସବୁ ପରିଶ୍ରମ ବୃଥା ହେବ, ତେଣୁ କରି ସଂଯତେନ୍ଦ୍ରିୟ ହେବା ଅର୍ଥାତ୍ ଇନ୍ଦ୍ରିୟମାନଙ୍କୁ ଜ୍ଞାନସାଧନର ଅନୁକୂଳ ବା ଉପଯୋଗୀ କରିନେବା ଉଚିତ । ଯେତେଦିନଯାଏ ଇନ୍ଦ୍ରିୟମାନେ ବଶୀଭୂତ ନ ହେବେ, ସେତେଦିନଯାଏ ନିଷ୍କାମଭାବରେ କର୍ମ କରିବା ଉଚିତ । ଜ୍ଞାନଲାଭ ନିମିତ୍ତ ତତ୍ପର ଅର୍ଥାତ୍ ଇଚ୍ଛୁକ ହୋଇ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରି ପାରିଲେ ଓ ଗୁରୁ ଉପଦେଶ ଏବଂ ବେଦାନ୍ତାଦି ଶାସ୍ତ୍ରବଚନରେ ଅଟଳବିଶ୍ୱାସ ସ୍ଥାପନ କଲେ ଆତ୍ମଜ୍ଞାନ ଲାଭ ହେବ ଓ ଆତ୍ମଜ୍ଞାନ ଲାଭ ହେଲେ ଅବିଳମ୍ବେ ମୋକ୍ଷ ବା ପରଶାନ୍ତି ପ୍ରାପ୍ତ ହେବ, ଆଉ ତାହାର କର୍ମ କରିବାର ଆବଶ୍ୟକ ନାହିଁ । ୩୯ ।

ଶ୍ଳୋକଃ ।

* ଅଜ୍ଞଶ୍ଚାଶ୍ରଦ୍ଦଧାନଶ୍ଚ, ସଂଶୟାତ୍ମା ବିନଶ୍ୟତି ।
ନାୟଂ ଲୋକୋଽସ୍ତି ନ ପରୋ, ନ ସୁଖଂ ସଂଶୟାତ୍ମନଃ । ୪୦ ।

ଅନ୍ୱୟଃ ।

ଅଜ୍ଞଃ ଚ ଅଶ୍ରଦ୍ଦଧାନଃ ଚ ସଂଶୟାତ୍ମା ବିନଶ୍ୟତି, ସଂଶୟାତ୍ମନଃ ନ ଅୟଂ ଲୋକଃ ନ, ଅପରଂ ନ ସୁଖଂ ଅସ୍ତି । ୪୦ ।

Digitized by PPRACHIN, SOA

### ଟୀକା ।

ଜ୍ଞାନାଧିକାରିଣମୁକ୍ତ୍ୱା ତଦ୍ୱିପରୀତମନଧିକାରିଣମାହ, ଅଜ୍ଞଶ୍ଚେତି । ଅଜ୍ଞୋଗୁରୂପଦିଷ୍ଟାର୍ଥାନଭିଜ୍ଞଃ କଥଞ୍ଚିଜ୍ଜ୍ଞାନେ ଜାତେଽପି ତତ୍ରାଶ୍ରଦ୍ଦଧାନଶ୍ଚ ଜାତାୟାମପି ଶ୍ରଦ୍ଧାୟାଂ ମମେଦଂ ସିଦ୍ଧ୍ୟେନ୍ନବେତି ସଂଶୟାକ୍ରାନ୍ତଚିତ୍ତଶ୍ଚ ବିନଶ୍ୟତି ସ୍ୱାର୍ଥାଦ୍ଭ୍ରଶ୍ୟତି, ଏତେଷୁ ତ୍ରିଷ୍ୱପି ସଂଶୟାତ୍ମା ସର୍ବଥା ନଶ୍ୟତି ଯତସ୍ତସ୍ୟାୟଂ ଲୋକୋନାସ୍ତି ଧନାର୍ଜନବିବାହାଦ୍ୟସିଦ୍ଧେଃ ନ ଚ ପରଲୋକଃ ଧର୍ମସ୍ୟାନିଷ୍ପତ୍ତେଃ ନ ଚ ସୁଖଂ ସଂଶୟେନୈବ ଭୋଗସ୍ୟାପ୍ୟସମ୍ଭବାତ୍ । ୪୦ ।

### ପଦବ୍ୟାଖ୍ୟା ।

ଅଜ୍ଞଃ—ଗୁରୁ ଉପଦେଶର ଅର୍ଥ ନ ଜାଣିବା ବ୍ୟକ୍ତି, ଚ—ପୁଣି, ଅଶ୍ରଦ୍ଦଧାନଃ—ଶ୍ରଦ୍ଧାହୀନ, ସଂଶୟାତ୍ମା—ଯାହାର ମନରେ ସନ୍ଦେହ ଥାଏ, ବିନଶ୍ୟତି—ପଥଭ୍ରଷ୍ଟ ହୁଏ, ନ—ନାହିଁ, ଅୟଂ—ଏହି, ଲୋକଃ—ଭୁବନ, ଅସ୍ତି—ଅଛି; ନ ପରଃ—ପରଲୋକ ନାହିଁ, ନ ସୁଖଂ—ସୁଖ ନାହିଁ, ସଂଶୟାତ୍ମନଃ—ସନ୍ଦେହପୂର୍ଣ୍ଣ ବ୍ୟକ୍ତିର । ୪୦ ।

### ଅନୁବାଦ ।

ମୂର୍ଖ, ଶ୍ରଦ୍ଧାହୀନ ଓ ସନ୍ଦେହଯୁକ୍ତ ବ୍ୟକ୍ତି ନଷ୍ଟ ହୁଏ, (ତନ୍ମଧ୍ୟରୁ) ସଂଶୟାତ୍ମା ବ୍ୟକ୍ତିର ଇହଲୋକ, ପରଲୋକ ଓ ସୁଖ ନାହିଁ । ୪୦ ।

### ବିଶଦବ୍ୟାଖ୍ୟା ।

ଗୁରୁଙ୍କ ଉପଦେଶ ଅଥବା ବେଦାନ୍ତାଦି ଶାସ୍ତ୍ରର ଅର୍ଥ ବୁଝି ନ ପାରିବା ବ୍ୟକ୍ତିକୁ ଅଜ୍ଞ କୁହାଯାଏ, ଅଜ୍ଞବ୍ୟକ୍ତି ଜ୍ଞାନଲାଭ କରି ପାରେ ନାହିଁ । ଗୁରୁ ଉପଦେଶ ବା ବେଦାନ୍ତାଦି ଶାସ୍ତ୍ର ବୁଝି ପାରିଲେ ମଧ୍ୟ ସେଥିରେ ଶ୍ରଦ୍ଧା ନ ହେଲେ ସାଧନରେ ପ୍ରବୃତ୍ତି ହୁଏ ନାହିଁ, ସେହି ହେତୁରୁ ଶ୍ରଦ୍ଧାହୀନ ବ୍ୟକ୍ତିର ଜ୍ଞାନଲାଭ ହୁଏ ନାହିଁ । ପୁଣି ଯଦି କୌଣସି ପ୍ରକାରେ ଶ୍ରଦ୍ଧା ଜାତ ହେଲା, ମାତ୍ର ଉକ୍ତ ପ୍ରକାର ସାଧନରେ ସିଦ୍ଧି ହେବ କି ନାହିଁ, ଏପ୍ରକାର ସନ୍ଦେହ କରିବା ବ୍ୟକ୍ତିର ମଧ୍ୟ ଜ୍ଞାନଲାଭ ହୋଇ ପାରେ ନାହିଁ । ଅଜ୍ଞ, ଶ୍ରଦ୍ଧାହୀନ ଓ ସନ୍ଦେହଯୁକ୍ତ ଏ ତିନି ବ୍ୟକ୍ତିଙ୍କ ମଧ୍ୟରୁ ସନ୍ଦେହଯୁକ୍ତ ବ୍ୟକ୍ତିର ଇହଲୋକରେ କି ପରଲୋକରେ ସୁଖ ନାହିଁ । କାହିଁକନା ଇହଲୋକରେ ସେ ଆପଣାର ସତୀ ସ୍ତ୍ରୀକୁ କୁଳଟା ମନେ କରି ଉନ୍ମତ୍ତ ଓ ମିତ୍ରକୁ ଶତ୍ରୁ ଭାବି ବ୍ୟାକୁଳ ହୁଏ ଓ ଭୋଜନଦ୍ରବ୍ୟରେ ବିଷ ମିଶ୍ରିତ ହୋଇଥିବା ସନ୍ଦେହ କରି ଭଲକରି ଖାଇ ପାରେ ନାହିଁ । ଏହିପରି ତାହାର ଇହଲୋକରେ ସୁଖ ନ ଥାଏ ଓ ବେଦାଦି ବଚନରେ ସନ୍ଦେହ ହେବାରୁ ସ୍ୱର୍ଗାଦି ଫଳଜନକ କର୍ମ କରି ପାରେ ନାହିଁ; ସୁତରାଂ ତାହାର ସ୍ୱର୍ଗାଦି ପରଲୋକର ସୁଖ ମଧ୍ୟ ହୁଏ ନାହିଁ । ଫଳକଥା ଏହି କି ଅଜ୍ଞ ଓ ଶ୍ରଦ୍ଧାହୀନ ବ୍ୟକ୍ତିଙ୍କର ପରଲୋକରେ ସୁଖ ନାହିଁ ସତ, ମାତ୍ର ସେମାନଙ୍କର ଇହଲୋକରେ କିଛି ସୁଖ ଅଛି । ସଂଶୟାତ୍ମା ବ୍ୟକ୍ତିର ପରଲୋକ କି ଇହଲୋକ କାହିଁରେ ସୁଖ ନାହିଁ । ବିଜ୍ଞମାନେ କହନ୍ତି, ଯେ ଅଜ୍ଞର ଗତିଲାଭ ସୁଖସାଧ୍ୟ, ଶ୍ରଦ୍ଧାହୀନର ଗତିଲାଭ ଶ୍ରମସାଧ୍ୟ ଓ ସଂଶୟାତ୍ମା ବ୍ୟକ୍ତିର ଗତିଲାଭ କଷ୍ଟସାଧ୍ୟ ଅଟେ । ୪୦ ।

### ଶ୍ଳୋକଃ ।

* ଯୋଗସଂନ୍ୟସ୍ତକର୍ମାଣଂ, ଜ୍ଞାନସଂଛିନ୍ନସଂଶୟଂ ।
ଆତ୍ମବନ୍ତଂ ନ କର୍ମାଣି, ନିବଧ୍ନନ୍ତି ଧନଞ୍ଜୟ । ୪୧ ।

Digitized by PPRACHIN, SOA

## ଅନ୍ୱୟଃ ।

ହେ ଧନଞ୍ଜୟ ! ଯୋଗସଂନ୍ୟସ୍ତକର୍ମାଣଂ ଜ୍ଞାନସଂଚ୍ଛିନ୍ନସଂଶୟଂ ଆତ୍ମବନ୍ତଂ କର୍ମାଣି ନ ନିବଧ୍ନନ୍ତି । ୪୧ ।

## ଟୀକା ।

ଅଧ୍ୟାୟଦ୍ୱୟୋକ୍ତାଂ ପୂର୍ବାପରଭୂମିକାଭେଦେନ କର୍ମଜ୍ଞାନମୟୀଂ ଦ୍ୱିବିଧାଂ ବ୍ରହ୍ମନିଷ୍ଠାମୁପସଂହରତି । ଯୋଗେତି ଦ୍ୱାଭ୍ୟାଂ । ଯୋଗେନ ପରମେଶ୍ୱରାରାଧନରୂପେଣ ତସ୍ମିନ୍ ସଂନ୍ୟସ୍ତାନି ସମର୍ପିତାନି କର୍ମାଣି ଯେନ ତଂ ପୁରୁଷଂ କର୍ମାଣି ସ୍ୱଫଳୈର୍ନ ନିବଧ୍ନନ୍ତି, ତତଶ୍ଚ ଜ୍ଞାନେନାତ୍ମସ୍ୱାବଧନେନ ସଂଚ୍ଛିନ୍ନଃ ସଂଶୟୋଦେହାଦ୍ୟଭିମାନଲକ୍ଷଣୋଯସ୍ୟ ତମାତ୍ମବନ୍ତ-ମପ୍ରମାଦିନଂ କର୍ମାଣି ଲୋକସଂଗ୍ରହାର୍ଥାନି ସ୍ୱାଭାବିକାନି ବା ନ ନିବଧ୍ନନ୍ତି । ୪୧ ।

## ପଦବ୍ୟାଖ୍ୟା ।

ଯୋଗସଂନ୍ୟସ୍ତକର୍ମାଣଂ—ଈଶ୍ୱର ଆରାଧନରୂପ ଯୋଗଦ୍ୱାରା ପରମେଶ୍ୱରଙ୍କଠାରେ ଯେ କର୍ମମାନ ଅର୍ପଣ କରନ୍ତି, ଜ୍ଞାନସଂଚ୍ଛିନ୍ନସଂଶୟଂ—ଅନ୍ତରାତ୍ମା ଆରାଧନରୂପ ଜ୍ଞାନଦ୍ୱାରା ଯେ ସମସ୍ତ ସଂଶୟ ଛିନ୍ନ କରିଅଛନ୍ତି, ଆତ୍ମବନ୍ତଂ—ପ୍ରମାଦ-ଶୂନ୍ୟ ବ୍ୟକ୍ତିଙ୍କୁ, ନ—ନାହିଁ, କର୍ମାଣି—କର୍ମମାନ, ନିବଧ୍ନନ୍ତି—ବନ୍ଧନ କରି ପାରନ୍ତି, ଧନଞ୍ଜୟ—ହେ ଅର୍ଜୁନ ! । ୪୧ ।

## ଅନୁବାଦ ।

ହେ ଧନଞ୍ଜୟ ! ଯୋଗଦ୍ୱାରା ଯେ ସମସ୍ତ କର୍ମ ଈଶ୍ୱରଙ୍କଠାରେ ଅର୍ପଣ କରିଅଛନ୍ତି ଓ ଆତ୍ମଜ୍ଞାନଦ୍ୱାରା ଯେ ସମସ୍ତ ସଂଶୟ ଛେଦନ କରିଅଛନ୍ତି, ସେହି ଆତ୍ମଜ୍ଞାନବ୍ୟକ୍ତିଙ୍କୁ କର୍ମ ସବୁ ଆବଦ୍ଧ କରି ପାରେ ନାହିଁ । ୪୧ ।

## ବିଶଦବ୍ୟାଖ୍ୟା ।

ଆତ୍ମଜ୍ଞାନୀ ଭକ୍ତିପୂର୍ବକ ଭଗବାନଙ୍କ ଆରାଧନା କରି ସମସ୍ତ କର୍ମ ଫଳସହିତ ଈଶ୍ୱରଙ୍କ-ଠାରେ ଅର୍ପଣ କରିଥିବାରୁ, ତାଙ୍କର କର୍ମବାସନା କ୍ଷୟ ହୋଇ ଯାଇଥାଏ । ପୁଣି ସେ ଆତ୍ମଜ୍ଞାନ-ଦ୍ୱାରା ସମସ୍ତ ଜଗତକୁ ଆତ୍ମସ୍ୱରୂପରେ ଦର୍ଶନ କରୁଥିବାରୁ 'ମୁଁ କରୁଅଛି' ଏପରି ଅହଂବୁଦ୍ଧି ତାଙ୍କର ନ ଥାଏ ବୋଲି ଅର୍ଥାତ୍ ସେ କର୍ମ କରି ଆପଣାକୁ କର୍ତ୍ତା ବୋଲି ମଣୁ ନ ଥିବାରୁ, କର୍ମଫଳ ତାଙ୍କୁ ଭୋଗ କରିବାକୁ ହୁଏ ନାହିଁ ; ତେବେ ଆଉ କର୍ମରେ ସେ ଆବଦ୍ଧ ହେବେ କିପରି ? ଅର୍ଥାତ୍ ସେ ଫଳଭୋଗ ଇଚ୍ଛାରେ କର୍ମ କରୁ ନ ଥିବାରୁ କର୍ମ ତାଙ୍କୁ ବନ୍ଧନ କରି ପାରେ ନାହିଁ । ୪୧ ।

## ଶ୍ଳୋକଃ ।

* ତସ୍ମାଦଜ୍ଞାନସମ୍ଭୂତଂ, ହୃତ୍‌ସ୍ଥଂ ଜ୍ଞାନାସିନାତ୍ମନଃ ।
ଛିତ୍ତ୍ୱୈନଂ ସଂଶୟଂ ଯୋଗ, ମାତିଷ୍ଠୋତ୍ତିଷ୍ଠ ଭାରତ । ୪୨ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗ-ବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସମ୍ବାଦେ ଜ୍ଞାନଯୋଗୋନାମ ଚତୁର୍ଥୋଽଧ୍ୟାୟଃ । ୪୨ ।

---

## ଅନ୍ୱୟଃ ।

ହେ ଭାରତ ! ଉତ୍ତିଷ୍ଠ, ତସ୍ମାତ୍ ଅଜ୍ଞାନସମ୍ଭୂତଂ ହୃତ୍‌ସ୍ଥଂ ଏନଂ ଆତ୍ମନଃ ସଂଶୟଂ ଜ୍ଞାନାସିନା ଛିତ୍ତ୍ୱା ଯୋଗଂ ଆତିଷ୍ଠ ।

ଇତି ଶ୍ରୀଭଗବଦ୍‌ଗୀତାୟାଂ ଅନ୍ୱୟେ ଚତୁର୍ଥୋଽଧ୍ୟାୟଃ । ୪୨ ।

Digitized by PPRACHIN, SOA

## ଟୀକା ।

ତସ୍ମାଦଜ୍ଞାନେତି । ଯସ୍ମାଦେବଂ ତସ୍ମାଦାତ୍ମନୋଽଜ୍ଞାନେନ ସମ୍ଭୂତଂ ହୃଦି ସ୍ଥିତମେନଂ ସଂଶୟଂ ଶୋକାଦିନିମିତ୍ତଂ ଦେହାତ୍ମବିବେକଜ୍ଞାନଖଡ୍ଗେନ ଛିତ୍ତ୍ୱା କର୍ମଯୋଗମାତିଷ୍ଠ ଆଶ୍ରୟ, ତତ୍ର ଚ ପ୍ରଥମଂ ପ୍ରସ୍ତୁତାୟ ଯୁଦ୍ଧାୟୋତ୍ତିଷ୍ଠ, ହେ ଭାରତେତି କ୍ଷତ୍ରିୟତ୍ୱେନ ଯୁଦ୍ଧସ୍ୟ ଧର୍ମ୍ମ୍ୟତ୍ୱଂ ଦର୍ଶିତଂ ।

ପୁମବସ୍ଥାବଶେନେହ କର୍ମଜ୍ଞାନମୟୀ ଦ୍ୱିଧା ।
ନିଷ୍ଠୋକ୍ତା ଯେନ ତଂ ବନ୍ଦେ ଶୌରିଂ ସଂଶୟସଂଛିଦଂ ।
ଇତି ସ୍ୱାମିକୃତଟୀକାୟାଂ ଚତୁର୍ଥୋଽଧ୍ୟାୟଃ ।

---

## ପଦବ୍ୟାଖ୍ୟା ।

ତସ୍ମାତ୍—ସେହି ହେତୁରୁ, ଅଜ୍ଞାନସମ୍ଭୂତଂ—ଅଜ୍ଞାନରୁ ଉତ୍ପନ୍ନ, ହୃତ୍ସ୍ଥଂ—ହୃଦୟରେ ସ୍ଥିତ, ଜ୍ଞାନାସିନା—ଆତ୍ମଜ୍ଞାନରୂପ ଖଡ୍ଗରେ, ଆତ୍ମନଃ—ଆପଣାର, ଛିତ୍ତ୍ୱା—କାଟି କରି, ଏନଂ—ଏହି, ସଂଶୟଂ—ସନ୍ଦେହକୁ, ଯୋଗଂ—କର୍ମଯୋଗକୁ, ଆତିଷ୍ଠ—ଆଶ୍ରୟ କର, ଉତ୍ତିଷ୍ଠ—ଉଠ, ଭାରତ—ହେ ଭରତବଂଶଜ (ଅର୍ଜ୍ଜୁନ) । ୪୨ ।

ଇତି ଶ୍ରୀଭଗବଦ୍ଗୀତା-ପଦବ୍ୟାଖ୍ୟାୟାଂ ଚତୁର୍ଥୋଽଧ୍ୟାୟଃ ।

---

## ଅନୁବାଦ ।

ଅତଏବ ହେ ଭାରତ! ହୃଦୟସ୍ଥିତ ଅଜ୍ଞାନଜନିତ ଏହି ସଂଶୟକୁ ଜ୍ଞାନରୂପ ଖଡ୍ଗଦ୍ୱାରା ଛେଦନ କରି କର୍ମଯୋଗକୁ ଆଶ୍ରୟ କର ଓ (ଯୁଦ୍ଧନିମିତ୍ତ) ଉଠ । ୪୨ ।

ଇତି ଶ୍ରୀଭଗବଦ୍ଗୀତାର ଉତ୍କଳାନୁବାଦରେ ଚତୁର୍ଥ ଅଧ୍ୟାୟ ସମାପ୍ତ ।

---

## ବିଶଦବ୍ୟାଖ୍ୟା ।

ଅଜ୍ଞାନଲୋକର ସଂଶୟ ଉପସ୍ଥିତ ହୁଏ । ସେହି ସଂଶୟ ହୃଦୟରେ ସ୍ଥିତ ହେବାରୁ ଇହଲୋକ ଓ ପରଲୋକରେ ସୁଖ ହୁଏ ନାହିଁ । ଅତଏବ ସବୁ ଅମଙ୍ଗଳର କାରଣସ୍ୱରୂପ ସେହି ଅଜ୍ଞାନକୁ ଆତ୍ମଜ୍ଞାନରୂପ ଖଡ୍ଗଦ୍ୱାରା ଛେଦନ କର ଓ ନିଷ୍କାମ କର୍ମଯୋଗର ଆଶ୍ରୟ ଗ୍ରହଣ କର । କର୍ମଯୋଗ କରିବାକୁ ହେଲେ ବର୍ଣ୍ଣାଶ୍ରମଧର୍ମ ପାଳନ କରିବା ଉଚିତ । ତୁମ୍ଭେ ଭାରତ ଅର୍ଥାତ୍ କ୍ଷତ୍ରିୟଶ୍ରେଷ୍ଠ ଭରତରାଜାଙ୍କ ବଂଶରେ ଜନ୍ମଗ୍ରହଣ କରିଅଛ; ଅତଏବ ପ୍ରଥମରୁ ସଜ୍ଜିତ ହୋଇଥିବା ଏହି ଯୁଦ୍ଧ ନିମିତ୍ତ ତୁମ୍ଭେ ଉଠ ଅର୍ଥାତ୍ କ୍ଷତ୍ରିୟଧର୍ମ ପାଳନନିମିତ୍ତ ଯୁଦ୍ଧରେ ପ୍ରବୃତ୍ତ ହୁଅ । ୪୨ ।

ଇତି ଶ୍ରୀଭଗବଦ୍ଗୀତାର ବିଶଦବ୍ୟାଖ୍ୟାରେ ଚତୁର୍ଥ ଅଧ୍ୟାୟ ସମାପ୍ତ ।

Digitized by PPRACHIN, SOA

# ଶ୍ରୀମଦ୍ଭଗବଦ୍ଗୀତା ।

## ପଞ୍ଚମୋଽଧ୍ୟାୟଃ ।

### ସନ୍ନ୍ୟାସ ଯୋଗଃ

ଶ୍ଲୋକଃ ।

ଅର୍ଜ୍ଜୁନଉବାଚ ।—ସନ୍ନ୍ୟାସଂ କର୍ମଣାଂ କୃଷ୍ଣ, ପୁନର୍ଯୋଗଂ ଚ ଶଂସସି ।
ଯଚ୍ଛ୍ରେୟ ଏତୟୋରେକଂ, ତନ୍ମେ ବ୍ରୂହି ସୁନିଶ୍ଚିତଂ ।

ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ । ହେ କୃଷ୍ଣ ! କର୍ମଣାଂ ସନ୍ନ୍ୟାସଂ ପୁନଃ ଯୋଗଂ ଚ ଶଂସସି, ଏତୟୋଃ ଯତ୍ ଏକଂ ଶ୍ରେୟଃ ତତ୍ ସୁନିଶ୍ଚିତଂ ମେ ବ୍ରୂହି । ୧ ।

ସ୍ୱାମିକୃତ ଟୀକା ।

ନବାର୍ଯ୍ୟ ସଂଶୟଂ ଜିଷ୍ଣୋଃ କର୍ମସନ୍ନ୍ୟାସଯୋଗୟୋଃ ।
ଜିତେନ୍ଦ୍ରିୟସ୍ୟ ଚ ଯତେଃ ପଞ୍ଚମେ ମୁକ୍ତିମବ୍ରବୀତ୍ ।

ଅଜ୍ଞାନସମ୍ଭୂତଂ ସଂଶୟଂ ଜ୍ଞାନାସିନା ଛିତ୍ତ୍ୱା କର୍ମଯୋଗମାତିଷ୍ଠେତ୍ୟୁକ୍ତଂ, ତତ୍ର ପୂର୍ବାପରବିରୋଧଂ ମନ୍ୱାନୋଽର୍ଜ୍ଜୁନ ଉବାଚ, ସନ୍ନ୍ୟାସମିତି । ଯସ୍ତ୍ୱାତ୍ମରତିରେବ ସ୍ୟାଦିତ୍ୟାଦିନା ସର୍ବଂ କର୍ମାଖିଲଂ ପାର୍ଥେତ୍ୟାଦିନା ଚ ଜ୍ଞାନିନଃ କର୍ମସନ୍ନ୍ୟାସଂ କଥୟସି ଜ୍ଞାନାସିନା ସଂଶୟଂ ଛିତ୍ତ୍ୱା ଯୋଗମାତିଷ୍ଠେତି ପୁନର୍ଯୋଗଂ ଚ କଥୟସି ନ ଚ କର୍ମସନ୍ନ୍ୟାସଃ କର୍ମଯୋଗଶ୍ଚୈ-କସ୍ୟୈକଦୈବ ସମ୍ଭବତୋ ବିରୁଦ୍ଧସ୍ୱରୂପତ୍ୱାତ୍ ତସ୍ମାଦେତୟୋର୍ମଧ୍ୟେ ଏକସ୍ମିନ୍ନନୁଷ୍ଠାତବ୍ୟେ ସତି ମମ ଯଚ୍ଛ୍ରେୟଃ ସୁନିଶ୍ଚିତଂ ତଦେକଂ ବ୍ରୂହି । ୧ ।

ପଦବ୍ୟାଖ୍ୟା ।

ସନ୍ନ୍ୟାସଂ—ତ୍ୟାଗକୁ, କର୍ମଣାଂ—କର୍ମମାନଙ୍କର, କୃଷ୍ଣ—ହେ ଶ୍ରୀକୃଷ୍ଣ !, ପୁନଃ—ପୁଣି, ଯୋଗଂ ଚ—ଯୋଗକୁ ମଧ, ଶଂସସି—କହୁଅଛନ୍ତି, ଯତ୍—ଯାହା, ଶ୍ରେୟଃ—ଶ୍ରେଷ୍ଠ, ଏତୟୋଃ—ଏ ଦୁହିଙ୍କ ମଧରେ, ଏକଂ—ଏକ, ତତ୍—ତାହା, ମେ—ମତେ, ବ୍ରୂହି—କହିବା ହେଉନ୍ତୁ, ସୁନିଶ୍ଚିତଂ—ନିଶ୍ଚୟ କରି । ୧ ।

ଅନୁବାଦ ।

ଅର୍ଜ୍ଜୁନ କହିଲେ, ହେ ଶ୍ରୀକୃଷ୍ଣ ! ଆପଣ କର୍ମତ୍ୟାଗ ଓ କର୍ମଯୋଗ ମଧ୍ୟ କହିଲେ । ମାତ୍ର ଏ ଦୁହିଙ୍କ ମଧ୍ୟରେ ଯେଉଁଟି ଶ୍ରେଷ୍ଠ ସେହି ଗୋଟିକ ମତେ ନିଶ୍ଚୟ କରି କହିବା ହେଉନ୍ତୁ । ୧ ।

Digitized by PPRACHIN, SOA

ବିଷୟବ୍ୟାଖ୍ୟା ।

"ଯସ୍ତ୍ୱାତ୍ମରତିରେବସ୍ୟାତ୍" (୩ ୟ ଅଃ ୧୭ ଶ୍ଳୋକ) ଓ "ସର୍ବଂ କର୍ମାଖିଳଂ ପାର୍ଥ" (୪ ଅଃ ୩୩ ଶ୍ଳୋକ), ଇତ୍ୟାଦିବଚନଦ୍ୱାରା 'ସନ୍ନ୍ୟାସ' ଅର୍ଥାତ୍ କର୍ମତ୍ୟାଗର ଏବଂ—"ଜ୍ଞାନାସିନା ସଂଶୟଂ ଛିତ୍ତ୍ୱା ଯୋଗମାତିଷ୍ଠ" (୪ ଅଃ ୪୨ ଶ୍ଳୋକ) ଇତ୍ୟାଦିବଚନଦ୍ୱାରା ପୁନର୍ବାର କର୍ମଯୋଗର ଉପଦେଶ ଶ୍ରୀଭଗବାନଙ୍କଠାରୁ ଶୁଣି, ପୂର୍ବାପର ବିରୋଧ ହେବାର ଜାଣି ଅର୍ଜୁନ ପଚାରିଲେ, ହେ ଭଗବନ୍! ଆପଣ କର୍ମଯୋଗର ଉପଦେଶ ଦେଉଅଛନ୍ତି, ପୁଣି କର୍ମତ୍ୟାଗର ମଧ୍ୟ ଉପଦେଶ ଦେଉଅଛନ୍ତି, ମାତ୍ର ଏ ଦୁହିଙ୍କ ମଧ୍ୟରୁ ଯେ ଶ୍ରେଷ୍ଠ (ଅର୍ଥାତ୍ ମୋକ୍ଷପକ୍ଷରେ କର୍ମତ୍ୟାଗ ଉତ୍ତମ କି କର୍ମଯୋଗ ଉତ୍ତମ) ତାହା ମତେ ନିଶ୍ଚୟ କରି କହିବା ହେଉନ୍ତୁ, କାହିଁକି ନା ଯେପରି ଆଲୋକ ଓ ଅନ୍ଧକାର ଏକସମୟରେ ଏକତ୍ରରେ ରହି ନ ପାରେ, ସେପରି କର୍ମତ୍ୟାଗ ଓ କର୍ମଯୋଗ ଏକସମୟରେ ଏକବ୍ୟକ୍ତିଦ୍ୱାରା ହୋଇ ନ ପାରେ । ଅତଏବ ମୋକ୍ଷପକ୍ଷରେ ଯାହା ଶ୍ରେୟଃ ତାହା ମତେ ନିଶ୍ଚୟ କରି କହନ୍ତୁ । ୧ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—ସନ୍ନ୍ୟାସଃ କର୍ମଯୋଗଶ୍ଚ, ନିଃଶ୍ରେୟସକରାବୁଭୌ ।
ତୟୋସ୍ତୁ କର୍ମସନ୍ନ୍ୟାସାତ୍, କର୍ମଯୋଗୋ ବିଶିଷ୍ୟତେ । ୨ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ସନ୍ନ୍ୟାସଃ କର୍ମଯୋଗଃ ଚ ଉଭୌ ନିଃଶ୍ରେୟସକରୌ ତୟୋଃ ତୁ କର୍ମଯୋଗଃ କର୍ମସନ୍ନ୍ୟାସାତ୍ ବିଶିଷ୍ୟତେ । ୨ ।

ଟୀକା ।

ଅତ୍ରୋତ୍ତରଂ ଶ୍ରୀଭଗବାନୁବାଚ । ସନ୍ନ୍ୟାସଇତି । ଅୟଂ ଭାବଃ ନହି ବେଦାନ୍ତବେଦ୍ୟାତ୍ମତତ୍ତ୍ୱଜ୍ଞଂ ପ୍ରତି କର୍ମଯୋଗମହଂ ବ୍ରବୀମି ଯତଃ ପୂର୍ବୋକ୍ତେନ ସନ୍ନ୍ୟାସେନ ବିରୋଧଃ ସ୍ୟାତ୍, ଅପି ତୁ ଦେହାତ୍ମାଭିମାନିନଂ ତ୍ୱାଂ ବନ୍ଧୁବଧାଦିନିମିତ୍ତଶୋକମୋହାଦି-କୃତମେନଂ ସଂଶୟଂ ଦେହାତ୍ମବିବେକ-ଜ୍ଞାନାସିନା ଛିତ୍ତ୍ୱା ପରମାତ୍ମଜ୍ଞାନୋପାୟଭୂତଂ କର୍ମଯୋଗମାତିଷ୍ଠେତି ବ୍ରବୀମି, କର୍ମଯୋଗେନ ଶୁଦ୍ଧଚିତ୍ତସ୍ୟାତ୍ମତତ୍ତ୍ୱଜ୍ଞାନେ ଜାତେ ସତି ତତ୍ପରିପାକାର୍ଥଂ ଜ୍ଞାନନିଷ୍ଠାଙ୍ଗତ୍ୱେନ ସନ୍ନ୍ୟାସଃ ପୂର୍ବମୁକ୍ତଃ ଏବଂ ଚ ସତ୍ୟଙ୍ଗପ୍ରଧାନୟୋର୍ବିକଳ୍ପାଯୋଗାତ୍ ସନ୍ନ୍ୟାସଃ କର୍ମଯୋଗଶ୍ଚେତ୍ୟେତାବୁଭାବପି ଭୂମିକାଭେଦେନ ସମୁଚ୍ଚିତାବେବ ନିଃଶ୍ରେୟସଂ ସାଧୟତଃ ତଥାପି ତୟୋର୍ମଧ୍ୟେ କର୍ମସନ୍ନ୍ୟାସାତ୍ ସକାଶାତ୍ କର୍ମଯୋଗୋ ବିଶିଷ୍ୟତ ଇତି । ୨ ।

ପଦବ୍ୟାଖ୍ୟା ।

ସନ୍ନ୍ୟାସଃ—କର୍ମତ୍ୟାଗ, କର୍ମଯୋଗଃ—କର୍ମାନୁଷ୍ଠାନ, ଚ—ପୁଣି, ନିଃଶ୍ରେୟସକରୌ—ମୋକ୍ଷଦାୟକ ଅଟନ୍ତି, ଉଭୌ—ଦୁହେଁ, ତୟୋଃ ତୁ—ସେ ଦୁହିଙ୍କ ମଧ୍ୟରେ ପୁଣି, କର୍ମସନ୍ନ୍ୟାସାତ୍—କର୍ମତ୍ୟାଗ ଅପେକ୍ଷା, କର୍ମଯୋଗଃ—କର୍ମ ଅନୁଷ୍ଠାନ, ବିଶିଷ୍ୟତେ—ଶ୍ରେଷ୍ଠ ଅଟେ । ୨ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, କର୍ମତ୍ୟାଗ ଓ କର୍ମାନୁଷ୍ଠାନ ଏ ଦୁହେଁ ମୋକ୍ଷଦାୟକ ଅଟନ୍ତି । ମାତ୍ର ସେ ଦୁହିଙ୍କ ମଧ୍ୟରେ କର୍ମତ୍ୟାଗ ଅପେକ୍ଷା କର୍ମାନୁଷ୍ଠାନ ଉତ୍କୃଷ୍ଟ ଅଟେ । ୨ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଯେଉଁମାନଙ୍କର ଅନ୍ତଃକରଣ ଶୁଦ୍ଧ ଅଛି, ଅର୍ଥାତ୍ ଯେଉଁମାନଙ୍କର ପ୍ରକୃତ ଆତ୍ମଜ୍ଞାନ ଜନ୍ମିଅଛି, ସେମାନେ କର୍ମତ୍ୟାଗର, ଏବଂ ଯେଉଁମାନଙ୍କର ଅନ୍ତଃକରଣ ଶୁଦ୍ଧ ହୋଇ ନାହିଁ ସେମାନେ କର୍ମ ଅନୁଷ୍ଠାନର ଅଧିକାରୀ । କର୍ମତ୍ୟାଗ ଓ କର୍ମଯୋଗ ଏହିପରି ଅଧିକାରଭେଦ-ରେ ମୋକ୍ଷର କାରଣ ଅଟନ୍ତି ଅର୍ଥାତ୍ ଆତ୍ମଜ୍ଞାନୀ କର୍ମତ୍ୟାଗର ଅଧିକାରୀ ଥିବାରୁ କର୍ମତ୍ୟାଗ-ରେ ତାହାଙ୍କର ମୁକ୍ତି ହୋଇପାରେ, ମାତ୍ର ଆତ୍ମଜ୍ଞାନ ଜାତ ହୋଇ ନ ଥିବା ବ୍ୟକ୍ତିର କର୍ମ-ତ୍ୟାଗରେ ଅଧିକାର ନ ଥିବାରୁ, କର୍ମ ଅନୁଷ୍ଠାନଦ୍ୱାରା ତାହାର ମୋକ୍ଷଲାଭ ହେବାର ସମ୍ଭା-ବନା; ଅତଏବ ତୁମ୍ଭ ପକ୍ଷରେ କର୍ମତ୍ୟାଗ ଅପେକ୍ଷା କର୍ମ ଅନୁଷ୍ଠାନହିଁ ଶ୍ରେଷ୍ଠତର ଅଟେ । ୨ ।

ଶ୍ଲୋକଃ ।

ଜ୍ଞେୟଃ ସ ନିତ୍ୟସନ୍ନ୍ୟାସୀ, ଯୋ ନ ଦ୍ୱେଷ୍ଟି ନ କାଂକ୍ଷତି ।
ନିର୍ଦ୍ୱନ୍ଦ୍ୱୋ ହି ମହାବାହୋ, ସୁଖଂ ବନ୍ଧାତ୍ ପ୍ରମୁଚ୍ୟତେ । ୩ ।

ଅନ୍ୱୟଃ ।

ହେ ମହାବାହୋ ! ଯଃ ନ ଦ୍ୱେଷ୍ଟି, ନ କାଂକ୍ଷତି, ନିର୍ଦ୍ୱନ୍ଦ୍ୱଃ, ସଃ ନିତ୍ୟସନ୍ନ୍ୟାସୀ ଜ୍ଞେୟଃ । ହି ବନ୍ଧାତ୍ ସୁଖଂ ପ୍ରମୁଚ୍ୟତେ । ୩ ।

ଟୀକା ।

କୁତ ଇତ୍ୟପେକ୍ଷାୟାଂ ସନ୍ନ୍ୟାସିତ୍ୱେନ କର୍ମଯୋଗିନଂ ସ୍ତୁବନ୍ ତସ୍ୟ ଶ୍ରେଷ୍ଠତ୍ୱଂ ଦର୍ଶୟତି, ଜ୍ଞେୟଇତି । ରାଗଦ୍ୱେଷାଦି-ରାହିତ୍ୟେନ ପରମେଶ୍ୱରାର୍ଥଂ କର୍ମାଣି ଯୋଽନୁତିଷ୍ଠତି ସ ନିତ୍ୟଂ କର୍ମାନୁଷ୍ଠାନକାଲେଽପି ସନ୍ନ୍ୟାସୀତ୍ୟେବ ଜ୍ଞେୟଃ । ତତ୍ର ହେତୁଃ, ନିର୍ଦ୍ୱନ୍ଦ୍ୱୋରାଗ-ଦ୍ୱେଷାଦି-ଦ୍ୱନ୍ଦ୍ୱଶୂନ୍ୟୋହି ଶୁଦ୍ଧଚିତ୍ତୋଜ୍ଞାନଦ୍ୱାରା ସୁଖମନାୟାସେନୈବ ସଂସାରାତ୍ ପ୍ରମୁଚ୍ୟତେ । ୨ ।

ପଦବ୍ୟାଖ୍ୟା ।

ଜ୍ଞେୟଃ—ଜାଣିବା ଉଚିତ, ସଃ—ତାହାକୁ, ନିତ୍ୟସନ୍ନ୍ୟାସୀ—ଚିରସନ୍ନ୍ୟାସୀ, ଯଃ—ଯେ, ନ ଦ୍ୱେଷ୍ଟି—ଦ୍ୱେଷ ନ କରେ, ନ କାଂକ୍ଷତି—ଅଭିଳାଷ ନ କରେ, ନିର୍ଦ୍ୱନ୍ଦ୍ୱଃ—ରାଗ-ଦ୍ୱେଷାଦି-ଦ୍ୱନ୍ଦ୍ୱଶୂନ୍ୟ, ହି—ନିଶ୍ଚୟ, ମହାବାହୋ—ହେ-ଅର୍ଜ୍ଜୁନ !, ସୁଖଂ—ଅନାୟାସରେ, ବନ୍ଧାତ୍—ଜନ୍ମମରଣରୂପ ସଂସାରବନ୍ଧନରୁ, ପ୍ରମୁଚ୍ୟତେ—ମୁକ୍ତ ହୁଏ । ୩ ।

ଅନୁବାଦ ।

ହେ ମହାବାହୋ ! ଯେ (କୌଣସିପଦାର୍ଥପ୍ରତି) ଇଚ୍ଛା ଓ ଶତ୍ରୁତା ନ କରେ, ଓ ସୁଖ-ଦୁଃଖାଦି ଦ୍ୱନ୍ଦ୍ୱଶୂନ୍ୟ ଅଟେ, ତାହାକୁ ଚିରସନ୍ନ୍ୟାସୀ ବୋଲି ଜାଣିବା ଉଚିତ, ଯେହେତୁ ସେ ଅକ୍ଳେଶରେ ବନ୍ଧନରୁ ମୁକ୍ତ ହୁଏ । ୩ ।

ବିଶଦବ୍ୟାଖ୍ୟା ।

କର୍ମର ସମସ୍ତ ଫଳ ପରମେଶ୍ୱରଙ୍କଠାରେ ଅର୍ପଣ କରି ଫଳକାମନା ରହିତ ହୋଇ ଯେ କର୍ମ ଅନୁଷ୍ଠାନ କରେ, ସେ କର୍ମ କରୁଥିଲେ ସୁଦ୍ଧା, ତାହାକୁ ପ୍ରକୃତ ସନ୍ନ୍ୟାସୀ ବୋଲି ଜାଣିବାକୁ ହେବ । ଆପଣାର କେବଳ ବେଶଭୂଷା ବା ଆଶ୍ରମ ତ୍ୟାଗ କଲେ ସନ୍ନ୍ୟାସୀ ପଦର ଯୋଗ୍ୟ ହେବ ନାହିଁ । ଆତ୍ମା ଉପରେ ଅଜ୍ଞାନର ଯେଉଁ ମଳିନ ପରଚ୍ଛଦ ବା ଆବ-

Digitized by PPRACHIN, SOA

ରଣ ପଡ଼ିଅଛି, ତାକୁ ତ୍ୟାଗ କରିପାରିଲେ ପ୍ରକୃତ ସନ୍ନ୍ୟାସୀ ନାମର ଯୋଗ୍ୟ ହେବ । ଫଳକଥା ଏହି କି ଆତ୍ମ ଓ ଅନାତ୍ମ ବସ୍ତୁର ଦ୍ୱାରା ସୁଖଦୁଃଖାଦି ଦ୍ୱନ୍ଦ୍ୱଶୂନ୍ୟ ହୋଇ ନିଷ୍କାମଭାବରେ କର୍ମ କରିବାହିଁ ପ୍ରକୃତ ସନ୍ନ୍ୟାସ, ଏବଂ ତାହାଦ୍ୱାରା ଜନ୍ମମରଣରୂପ ବନ୍ଧନରୁ ଅକ୍ଳେଶରେ ମୁକ୍ତ ହୋଇ ପାରିବ । ୩ ।

ଶ୍ଳୋକଃ ।

ସାଙ୍ଖ୍ୟଯୋଗୌ ପୃଥଗ୍ବାଲାଃ, ପ୍ରବଦନ୍ତି ନ ପଣ୍ଡିତାଃ ।
ଏକମପ୍ୟାସ୍ଥିତଃ ସମ୍ୟ,-ଗୁଭୟୋର୍ବିନ୍ଦତେ ଫଳଂ । ୪ ।

ଅନ୍ୱୟଃ ।

ବାଲାଃ ସାଙ୍ଖ୍ୟଯୋଗୌ ପୃଥକ୍ ( ଇତି ) ପ୍ରବଦନ୍ତି, ପଣ୍ଡିତାଃ ନ, ଏକଂ ଅପି ସମ୍ୟକ୍ ଆସ୍ଥିତଃ ଉଭୟୋଃ ଫଳଂ ବିନ୍ଦତେ । ୪ ।

ଟୀକା ।

ଯସ୍ମାଦେବମଙ୍ଗପ୍ରଧାନଭାବେନୋଭୟୋ-ରବସ୍ଥାଭେଦେନ କ୍ରମସମୁଚ୍ଚୟୋଽତୋ ବିକଳ୍ପମଙ୍ଗୀକୃତ୍ୟୋଭୟୋଃ କଃ ଶ୍ରେଷ୍ଠ ଇତି ପ୍ରଶ୍ନୋଽଜ୍ଞାନାମେବୋଚିତଃ ନ ବିବେକିନାମିତ୍ୟାହ, ସାଙ୍ଖ୍ୟଯୋଗାବିତି । ସାଙ୍ଖ୍ୟଶବ୍ଦେନ ଜ୍ଞାନନିଷ୍ଠାବାଚିନା ତଦଙ୍ଗଂ ସନ୍ନ୍ୟାସଂ ଲକ୍ଷୟତି । ସନ୍ନ୍ୟାସକର୍ମଯୋଗାବେକଫଲୌ ସନ୍ତୌ ପୃଥକ୍ ସ୍ୱତନ୍ତ୍ରାବିତି ବାଲା ଅଜ୍ଞା ଏବ ପ୍ରବଦନ୍ତି, ନ ତୁ ପଣ୍ଡିତାଃ । ଅତ୍ର ହେତୁଃ, ଅନୟୋରେକମପି ସମ୍ୟଗାସ୍ଥିତ ଆଶ୍ରିତବାନୁଭୟୋଃ ଫଳମାପ୍ନୋତି, ତଥାହି କର୍ମଯୋଗଂ ସମ୍ୟଗନୁତିଷ୍ଠନ୍ ଶୁଦ୍ଧଚିତ୍ତଃ ସନ୍ ଜ୍ଞାନଦ୍ୱାରା ଯଦୁଭୟୋଃ ଫଳଂ କୈବଲ୍ୟଂ ତଦ୍ବିନ୍ଦତି ସନ୍ନ୍ୟାସ ସମ୍ୟଗାସ୍ଥିତୋଽପି ପୂର୍ବମନୁଷ୍ଠିତସ୍ୟ କର୍ମଯୋଗସ୍ୟାପି ପରଂପରୟା ଯତ୍ ଫଳଂ କୈବଲ୍ୟଂ ତଦ୍ବିନ୍ଦତୀତି ନ ପୃଥକ୍ଫଳତ୍ୱମନୟୋରିତ୍ୟର୍ଥଃ । ୪ ।

ପଦବ୍ୟାଖ୍ୟା ।

ସାଙ୍ଖ୍ୟଯୋଗୌ—ସନ୍ନ୍ୟାସ ଓ କର୍ମଯୋଗ ଏ ଦୁହେଁ, ପୃଥକ୍—ଭିନ୍ନ ୨ ବୋଲି, ବାଲାଃ—ଅଜ୍ଞ ବା ମୂର୍ଖମାନେ, ପ୍ରବଦନ୍ତି—କହନ୍ତି, ନ ପଣ୍ଡିତାଃ—ପଣ୍ଡିତମାନେ କହନ୍ତି ନାହିଁ, ଏକଂ ଅପି— (ସେ ଦୁଇରୁ) ଗୋଟିକୁ ମଧ୍ୟ, ଆସ୍ଥିତଃ—ଆଶ୍ରୟ କଲେ, ସମ୍ୟକ୍—ସମ୍ପୂର୍ଣ୍ଣରୂପେ, ଉଭୟୋଃ—(ସନ୍ନ୍ୟାସ ଓ କର୍ମଯୋଗ) ଦୁହିଙ୍କର, ବିନ୍ଦତେ—ପ୍ରାପ୍ତ ହୁଏ, ଫଳଂ—ମୋକ୍ଷରୂପ ଫଳକୁ । ୪ ।

ଅନୁବାଦ ।

କର୍ମତ୍ୟାଗ ଓ କର୍ମଯୋଗ ଏ ଦୁହେଁ ଭିନ୍ନ ୨ ବୋଲି ଅଜ୍ଞାନମାନେ କହନ୍ତି, ମାତ୍ର ପଣ୍ଡିତମାନେ କହନ୍ତି ନାହିଁ । କାହିଁକି ନା ଗୋଟିକର ଉତ୍ତମରୂପେ ଅନୁଷ୍ଠାନ କଲେ ଦୁହିଙ୍କର ଫଳ ମିଳେ । ୪ ।

ବିଶଦବ୍ୟାଖ୍ୟା ।

ପାତ୍ର ବା ଅଧିକାରଭେଦରେ ସାଙ୍ଖ୍ୟ * ଓ ଯୋଗ ଅର୍ଥାତ୍ କର୍ମତ୍ୟାଗ ଓ କର୍ମଯୋଗର ତତ୍ତ୍ୱ ଆମ୍ଭେ କହିଲୁଁ । ଏ ଦୁହିଙ୍କୁ କେବଳ ଅଜ୍ଞବ୍ୟକ୍ତିମାନେ ପୃଥକ୍ ୨ ବୋଲି ମନେ କରନ୍ତି, ଅର୍ଥାତ୍ ଏ ଦୁହିଙ୍କ ମଧ୍ୟରୁ ଫଳର ତାରତମ୍ୟ ଅନୁସାରେ ଗୋଟିଏ ଶ୍ରେଷ୍ଠ

* ଜ୍ଞାନନିଷ୍ଠାକୁ ସନ୍ନ୍ୟାସ ବୋଲିଯାଏ, ଜ୍ଞାନନିଷ୍ଠାର ଅଙ୍ଗ କର୍ମସନ୍ନ୍ୟାସ, ସେହି ହେତୁରୁ ଏସ୍ଥଳରେ 'ସାଙ୍ଖ୍ୟ' ପଦରେ ସନ୍ନ୍ୟାସପ୍ରତି ଲକ୍ଷ କରା ହୋଇଅଛି ।

ଓ ଅପରଟି ବନ୍ଧକ ଏପରି ମନେ କରନ୍ତି । ମାତ୍ର ପଣ୍ଡିତମାନେ ତାହା କରନ୍ତି ନାହିଁ, ଅର୍ଥାତ୍ ପଣ୍ଡିତମାନେ କର୍ମତ୍ୟାଗ ଓ କର୍ମଯୋଗର ଫଳ ଏକ ବୋଲି ଜାଣନ୍ତି, କାରଣ ନିଷ୍କାମଭାବରେ କର୍ମାନୁଷ୍ଠାନ, କର୍ମତ୍ୟାଗର ନାମାନ୍ତର ମାତ୍ର; ଯାହାଙ୍କର ଆତ୍ମଜ୍ଞାନ ଲାଭ ହେଲେ 'କର୍ମାନୁଷ୍ଠାନର ଆଉ ଆବଶ୍ୟକ ନାହିଁ' ଏହା ଜାଣିପାରି କର୍ମତ୍ୟାଗ କଲେ ଯେଉଁ (ମୋକ୍ଷ-ରୂପ) ଫଳ ହୁଏ ସେହି ଫଳ ନିଷ୍କାମଭାବରେ ଭକ୍ତିର ସହିତ ବିହିତକର୍ମ ଅନୁଷ୍ଠାନ କଲେ ଚିତ୍ତ ଶୁଦ୍ଧିଦ୍ୱାରା ପ୍ରାପ୍ତ ହୁଏ । ଫଳକଥା ଏହି କି କର୍ମତ୍ୟାଗ ଓ କର୍ମଯୋଗର ଅଧିକାରଭେଦ ଥିଲେ ସୁଦ୍ଧା, ଫଳ ଦୁହିଙ୍କର ଏକ ଅଟେ; ସୁତରାଂ ସେ ଦୁହେଁ ଏକ ଅଟନ୍ତି । ୪ ।

## ଶ୍ଳୋକଃ ।

ଯତ୍ ସାଙ୍ଖ୍ୟୈଃ ପ୍ରାପ୍ୟତେ ସ୍ଥାନଂ, ତଦ୍ୟୋଗୈରପି ଗମ୍ୟତେ ।
ଏକଂ ସାଙ୍ଖ୍ୟଂ ଚ ଯୋଗଂ ଚ, ଯଃ ପଶ୍ୟତି ସ ପଶ୍ୟତି । ୫ ।

## ଅନ୍ୱୟଃ ।

ଯତ୍ ସ୍ଥାନଂ ସାଙ୍ଖ୍ୟୈଃ ପ୍ରାପ୍ୟତେ, ତତ୍ ଯୋଗୈଃ ଅପି ଗମ୍ୟତେ । ଯଃ ସାଙ୍ଖ୍ୟଂ ଚ ଯୋଗଂ ଚ ଏକଂ ପଶ୍ୟତି ସଃ ପଶ୍ୟତି । ୫ ।

## ଟୀକା ।

ଏତଦେବ ସ୍ଫୁଟୟତି, ଯତ୍ ସାଙ୍ଖ୍ୟୈରିତି । ସାଙ୍ଖ୍ୟୈର୍ଜ୍ଞାନନିଷ୍ଠୈଃ ସନ୍ନ୍ୟାସିଭିଃ ଯତ୍ ସ୍ଥାନଂ ମୋକ୍ଷାଖ୍ୟଂ ପ୍ରକର୍ଷେଣ ସାକ୍ଷାଦବାପ୍ୟତେ ଯୋଗୈରପ୍ୟତ୍ର ଅର୍ଶ ଆଦିତ୍ୱାନ୍ମତ୍ୱର୍ଥୀୟୋଽଚ୍ପ୍ରତ୍ୟୟୋ ଦ୍ରଷ୍ଟବ୍ୟସ୍ତେନ କର୍ମଯୋଗିଭିରପି ତଦେବ ଜ୍ଞାନଦ୍ୱାରେଣ ଗମ୍ୟତେ ପ୍ରାପ୍ୟତ ଇତ୍ୟର୍ଥଃ, ଅତଃ ସାଙ୍ଖ୍ୟଂ ଚ ଯୋଗଂ ଚୈକଫଳତ୍ୱେନୈକଂ ଯଃ ପଶ୍ୟେତ୍, ସ ପଶ୍ୟେତ୍ ଏବ ସମ୍ୟକ୍ ପଶ୍ୟତି । ୫ ।

## ପଦବ୍ୟାଖ୍ୟା ।

ଯତ୍—ଯେଉଁ ସାଙ୍ଖ୍ୟୈଃ—ସାଙ୍ଖ୍ୟଯୋଗୀ ଅର୍ଥାତ୍ ସନ୍ନ୍ୟାସିମାନେ, ପ୍ରାପ୍ୟତେ—ପ୍ରାପ୍ତ ହୁଅନ୍ତି, ସ୍ଥାନଂ—ସ୍ଥାନକୁ ତତ୍—ସେହି ସ୍ଥାନକୁ; ଯୋଗୈଃ ଅପି—କର୍ମଯୋଗିମାନେ ମଧ୍ୟ ଗମ୍ୟତେ—ଗମନ କରନ୍ତି, ଏକଂ—ଏକବୋଧ, ସାଙ୍ଖ୍ୟଂ ଚ ଯୋଗଂ ଚ—ସାଙ୍ଖ୍ୟ ଓ ଯୋଗକୁ, ଯଃ—ଯେ, ପଶ୍ୟତି—ଦେଖନ୍ତି, ସଃ—ସେ, ପଶ୍ୟତି—ପ୍ରକୃତ ଦେଖନ୍ତି । । ୫ ।

## ଅନୁବାଦ ।

ସାଙ୍ଖ୍ୟ (ସନ୍ନ୍ୟାସୀ)ମାନେ ଯେଉଁ ସ୍ଥାନକୁ ପ୍ରାପ୍ତ ହୁଅନ୍ତି, (କର୍ମ)ଯୋଗିମାନେ ମଧ୍ୟ ତହିଁକି ଗମନ କରନ୍ତି । ଅତଏବ ସାଙ୍ଖ୍ୟ ଓ ଯୋଗକୁ ଯେ ଏକ ବୋଲି ଜାଣନ୍ତି, ସେ ପ୍ରକୃତ ଜ୍ଞାନୀ ଅଟନ୍ତି । ୫ ।

## ତତ୍ତ୍ୱବ୍ୟାଖ୍ୟା ।

ଏ ଶ୍ଳୋକରେ 'ପ୍ରାପ୍ୟତେ' ଏବଂ 'ଗମ୍ୟତେ' ଦୁଇଗୋଟି କ୍ରିୟା ଅଛି, ତାହାର ସୂକ୍ଷ୍ମ-ବିଚାର କଲେ ସ୍ପଷ୍ଟ ଜଣା ଯାଉଅଛି, ଯେ ସାଙ୍ଖ୍ୟ ଅର୍ଥାତ୍ ସନ୍ନ୍ୟାସିମାନେ ଯେଉଁ ସ୍ଥାନକୁ

Digitized by PPRACHIN, SOA

'ଯାଇବେ' ଅର୍ଥାତ୍ ପୂର୍ବକୃତ କର୍ମାନୁଷ୍ଠାନଦ୍ୱାରା ଶୁଦ୍ଧଚିତ୍ତ ହୋଇଥିବାରୁ କର୍ମତ୍ୟାଗ କରି କେବଳ ମୋକ୍ଷରୂପ ସ୍ଥାନ ଅବଲମ୍ବନରେ ପ୍ରାପ୍ତ ହେବେ, ନିଷ୍କାମ କର୍ମଯୋଗୀମାନେ କ୍ରମେ ଶୁଦ୍ଧଚିତ୍ତ ହୋଇ ସେହି ସ୍ଥାନକୁ ଗମନ କରିବେ ଅର୍ଥାତ୍ ଏହିଜନ୍ମରେ ବା ଜନ୍ମାନ୍ତରରେ ଅବଶ୍ୟ ପାଇବେ, ସୁତରାଂ ଦୁହିଁଙ୍କର ଫଳ ସମାନ । ଅତଏବ ଯେଉଁମାନେ ସନ୍ନ୍ୟାସୀ ଏବଂ କର୍ମଯୋଗୀଙ୍କୁ ଏକ-ପ୍ରକାର ଫଳଭୋଗୀ ବୋଲି ସିଦ୍ଧାନ୍ତ କରିଥାନ୍ତି, ସେମାନେ ପ୍ରକୃତ ତତ୍ତ୍ୱଦର୍ଶୀ ଅଟନ୍ତି । ୫ ।

ଶ୍ଳୋକଃ ।

ସନ୍ନ୍ୟାସସ୍ତୁ ମହାବାହୋ, ଦୁଃଖମାପ୍ତୁମଯୋଗତଃ ।
ଯୋଗଯୁକ୍ତୋ ମୁନିର୍ବ୍ରହ୍ମ, ନ ଚିରେଣାଧିଗଚ୍ଛତି । ୬ ।

ଅନ୍ୱୟଃ ।

ହେ ମହାବାହୋ ! ଅଯୋଗତଃ ସନ୍ନ୍ୟାସଃ ଆପ୍ତୁଂ ଦୁଃଖଂ ତୁ ଯୋଗଯୁକ୍ତଃ ମୁନିଃ ନ ଚିରେଣ ବ୍ରହ୍ମ ଅଧିଗଚ୍ଛତି । ୬ ।

ଟୀକା ।

ଯଦି କର୍ମଯୋଗିନୋଽପ୍ୟନ୍ତତଃ ସନ୍ନ୍ୟାସେନୈବ ଜ୍ଞାନନିଷ୍ଠା, ତର୍ହି ଆଦିତ ଏବ ସନ୍ନ୍ୟାସଃ କର୍ତ୍ତୁଂ ଯୁକ୍ତ ଇତି ମନ୍ୱାନଂ ପ୍ରତ୍ୟାହ, ସନ୍ନ୍ୟାସସ୍ତ୍ୱିତି । ଅଯୋଗତଃ କର୍ମଯୋଗଂ ବିନା ସନ୍ନ୍ୟାସଃ ପ୍ରାପ୍ତୁଂ ଦୁଃଖଂ ଦୁଃଖହେତୁରଶକ୍ୟ ଇତ୍ୟର୍ଥଃ ଚିତ୍ତଶୁଦ୍ଧ୍ୟଭାବେନ ଜ୍ଞାନାସମ୍ଭବାତ୍ ଯୋଗଯୁକ୍ତସ୍ତୁ ଶୁଦ୍ଧଚିତ୍ତତ୍ୱାତ୍ ମୁନିଃ ସନ୍ନ୍ୟାସୀ ଭୂତ୍ୱା ଅଚିରେଣ ବ୍ରହ୍ମାଧିଗଚ୍ଛତି ଅପରୋକ୍ଷଂ ଜାନାତି ଅତଶ୍ଚିତ୍ତଶୁଦ୍ଧେଃ ପ୍ରାକ୍ କର୍ମଯୋଗ ଏବ ସନ୍ନ୍ୟାସାଦ୍ ବିଶିଷ୍ୟତ ଇତି ପୂର୍ବୋକ୍ତଂ ସିଦ୍ଧଂ, ତଦୁକ୍ତଂ ବାର୍ତ୍ତିକକୃଦ୍ଭିଃ "ପ୍ରମାଦିନୋ ବହିଶ୍ଚିତ୍ତାଃ ପିଶୁନାଃ କଲହୋତ୍ସୁକାଃ । ସନ୍ନ୍ୟାସିନୋଽପି ଦୃଶ୍ୟନ୍ତେ ଦୈବସନ୍ଦୂଷିତାଶୟାଃ" ଇତି । ୬

ପଦବ୍ୟାଖ୍ୟା ।

ସନ୍ନ୍ୟାସସ୍ତୁ—କର୍ମତ୍ୟାଗ, ମହାବାହୋ—ହେ ଅର୍ଜୁନ !, ଦୁଃଖଂ—କଷ୍ଟକର, ଆପ୍ତୁଂ—ପାଇବାକୁ, ଅଯୋଗତଃ—କର୍ମଯୋଗ ନ କଲେ, ଯୋଗଯୁକ୍ତଃ ମୁନିଃ—କର୍ମଯୋଗୀ ମୁନି, ବ୍ରହ୍ମ—ବ୍ରହ୍ମପଦକୁ, ନ ଚିରେଣ—ଅବିଳମ୍ବରେ, ଅଧିଗଚ୍ଛତି—ପ୍ରାପ୍ତ ହୁଅନ୍ତି । ୬ ।

ଅନୁବାଦ ।

ହେ ମହାବାହୋ ! କର୍ମଯୋଗ ନ କଲେ ସନ୍ନ୍ୟାସପ୍ରାପ୍ତି ବଡ଼ କଷ୍ଟକର । କିନ୍ତୁ କର୍ମଯୋଗଯୁକ୍ତ ମୁନି (ଶୁଦ୍ଧଚିତ୍ତ ହୋଇଥିବାରୁ) ଅବିଳମ୍ବରେ ବ୍ରହ୍ମପଦକୁ ପ୍ରାପ୍ତ ହୁଅନ୍ତି । ୬ ।

ବିଶଦବ୍ୟାଖ୍ୟା ।

ଯେବେ କର୍ମଯୋଗ ପରେ ପୁଣି କର୍ମତ୍ୟାଗ କରିବାକୁ ହେବ—ତେବେ, ପ୍ରଥମରୁ କର୍ମତ୍ୟାଗ ଅଭ୍ୟାସ କଲେ କ୍ଷତି କଣ ? କାହିଁକି ନା କର୍ମ କରିବାକୁ ହେଲେ ଯଦି କର୍ମରେ ଆସକ୍ତି ଜନ୍ମେ ତେବେ ତାହା ତ୍ୟାଗ କରିବା କଠିନ ହେବ । ଏପରି ସ୍ଥଳେ କର୍ମ ତ୍ୟାଗ କରିବା ଅପେକ୍ଷା କର୍ମ ନ କରିବା ଭଲ । "ପ୍ରକ୍ଷାଳନାଦ୍ଧି ପଙ୍କସ୍ୟ ଦୂରାଦସ୍ପର୍ଶନଂ ବରଂ" ଅର୍ଥାତ୍ ପଙ୍କରେ ପଶି ପୁଣି ଧୋଇହେବା ଅପେକ୍ଷା ପଙ୍କକୁ ଦୂରରୁ ନ ଛୁଇଁବା ହିଁ ଶ୍ରେଷ୍ଠ । ଏ ପ୍ରକାର ଆଶଙ୍କା ନିବାରଣପାଇଁ ଶ୍ରୀଭଗବାନ୍ କହିଲେ, ଯେ କର୍ମ ନ କରିବା ଓ କର୍ମ-

ତ୍ୟାଗ ଏ ଦୁଇଟି ସମ୍ପୂର୍ଣ୍ଣ ପୃଥକ୍ । କର୍ମ ନ କରିବାର ନାମ 'ସନ୍ନ୍ୟାସ' ନୁହେଁ । କର୍ମ କରି ତାହା ତ୍ୟାଗ କରିବାର ନାମହିଁ 'ସନ୍ନ୍ୟାସ' । ସେହି କର୍ମତ୍ୟାଗ, କର୍ମଯୋଗ ବ୍ୟତିରେକେ କଷ୍ଟକର, ଅର୍ଥାତ୍ ପ୍ରଥମରେ କର୍ମାନୁଷ୍ଠାନ କରି ଚିତ୍ତ ଶୁଦ୍ଧ ନହେଲେ କର୍ମତ୍ୟାଗ କରି ହେବ ନାହିଁ । କାହିଁକନା କର୍ମ ନ କଲେ ତ୍ୟାଗ କରିବ କଣ ? ଆଉ ଏ ଜଗତରେ କେହି କି କର୍ମ ନ କରି ରହିପାରେ ? କର୍ମ କରନ୍ତି ସମସ୍ତେ, ମାତ୍ର ତାହାର ଗୁଣାଗୁଣ ଜାଣି ନଥିବା ବ୍ୟକ୍ତି ସେଥିରେ ଆସକ୍ତ ହୁଅନ୍ତି ଓ ଜାଣିଥିବା ଲୋକ ଆସକ୍ତ ହୁଅନ୍ତି ନାହିଁ । କିନ୍ତୁ ଯେ କର୍ମ କରି ନାହାନ୍ତି କର୍ମରେ ତାହାଙ୍କର କିଛିମାତ୍ର ଜ୍ଞାନ ନାହିଁ, ସୁତରାଂ ସେ ଦନେ ଅନାସ୍ୱାଦିତ କର୍ମର ବନ୍ଧନରେ ପଡ଼ି ପାରନ୍ତି । ସେହି ହେତୁରୁ ତାଙ୍କର କର୍ମତ୍ୟାଗ ଅସମ୍ଭବ । ସୁତରାଂ ମୋକ୍ଷ ବା ବ୍ରହ୍ମଲାଭ ମଧ୍ୟ ଅସମ୍ଭବ । ମାତ୍ର କର୍ମଯୋଗ-ଯୁକ୍ତ ମୁନିଙ୍କର କର୍ମାନୁଷ୍ଠାନଦ୍ୱାରା ଚିତ୍ତ ଶୁଦ୍ଧ ହୋଇ ଥିବାରୁ ସେ ସହଜରେ ସନ୍ନ୍ୟାସ ବା ଜ୍ଞାନଯୋଗ ଅବଲମ୍ବନ କରନ୍ତି ଓ ଅଚିରାତ୍ ବ୍ରହ୍ମପଦ ପ୍ରାପ୍ତ ହୁଅନ୍ତି ।

ଫଳକଥା ଏହିକି ଚିତ୍ତ ଶୁଦ୍ଧ ନ ହେଲେ କର୍ମ ତ୍ୟାଗ କରି ହେବ ନାହିଁ ଓ ନିଷ୍କାମ କର୍ମାନୁଷ୍ଠାନ ନ କଲେ ଚିତ୍ତଶୁଦ୍ଧି ହୁଏ ନାହିଁ, ସୁତରାଂ କର୍ମ ତ୍ୟାଗ ବିଷୟରେ କର୍ମାନୁଷ୍ଠାନହିଁ ଏକମାତ୍ର କାରଣ ଅଟେ । ୬ ।

### ଶ୍ଳୋକଃ ।

* ଯୋଗଯୁକ୍ତୋ ବିଶୁଦ୍ଧାତ୍ମା, ବିଜିତାତ୍ମା ଜିତେନ୍ଦ୍ରିୟଃ ।
ସର୍ବଭୂତାତ୍ମଭୂତାତ୍ମା, କୁର୍ବନ୍ନପି ନ ଲିପ୍ୟତେ । ୭ ।

### ଅନ୍ୱୟଃ ।

ଯୋଗଯୁକ୍ତଃ ବିଶୁଦ୍ଧାତ୍ମା, ବିଜିତାତ୍ମା, ଜିତେନ୍ଦ୍ରିୟଃ ସର୍ବଭୂତାତ୍ମଭୂତାତ୍ମା କୁର୍ବନ୍ ଅପି ନ ଲିପ୍ୟତେ । ୭ ।

### ଟୀକା ।

କର୍ମଯୋଗାଦିକ୍ରମେଣ ବ୍ରହ୍ମାଧିଗମେ ସତ୍ୟପି ତଦୁପକ୍ରମେଣ କର୍ମଣା ବନ୍ଧଃ ସ୍ୟାଦେବେତ୍ୟାଶଙ୍କ୍ୟାହ, ଯୋଗଯୁକ୍ତ ଇତି । ଯୋଗେନ ଯୁକ୍ତଃ ଅତଏବ ବିଶୁଦ୍ଧ ଆତ୍ମା ଚିତ୍ତଂ ଯସ୍ୟ, ଅତଏବ ବିଜିତ ଆତ୍ମା ଶରୀରଂ ଯେନ ଅତଏବ ଜିତାନି ଇନ୍ଦ୍ରିୟାଣି ଯେନ, ତତଶ୍ଚ ସର୍ବେଷାଂ ଭୂତାନାମାତ୍ମଭୂତ ଆତ୍ମା ଯସ୍ୟ, ସ ଲୋକସଂଗ୍ରହାର୍ଥଂ ସ୍ୱାଭାବିକଂ ବା କର୍ମ କୁର୍ବନ୍ନପି ନ ଲିପ୍ୟତେ । ୭ ।

### ପଦବ୍ୟାଖ୍ୟା ।

ଯୋଗଯୁକ୍ତଃ—କର୍ମଯୋଗରେ ନିଯୁକ୍ତ, ବିଶୁଦ୍ଧାତ୍ମା—ବିଶୁଦ୍ଧ ଅନ୍ତଃକରଣ ବ୍ୟକ୍ତି, ବିଜିତାତ୍ମା—ଦେହାଭିମାନ-ରହିତ, ଜିତେନ୍ଦ୍ରିୟଃ—ଇନ୍ଦ୍ରିୟବଶକାରୀ, ସର୍ବଭୂତାତ୍ମଭୂତାତ୍ମା—ଯେ ସମସ୍ତ ପ୍ରାଣିମାନଙ୍କୁ ଆତ୍ମତୁଲ୍ୟ ଜ୍ଞାନ କରନ୍ତି, କୁର୍ବନ୍ ଅପି—(କର୍ମ) କଲେ ମଧ୍ୟ, ନ ଲିପ୍ୟତେ—ଲିପ୍ତ ହୁଅନ୍ତି ନାହିଁ ଅର୍ଥାତ୍ ଫଳାଭିସନ୍ଧିରେ ଆବଦ୍ଧ ହୁଅନ୍ତି ନାହିଁ । ୭ ।

### ଅନୁବାଦ ।

ଯାହାଙ୍କର ଚିତ୍ତ ବିଶୁଦ୍ଧ ଓ ଯାହାଙ୍କର ଦେହ ଓ ଇନ୍ଦ୍ରିୟଗଣ ବଶୀଭୂତ ଏବଂ ଯେ ଆପଣାର ଆତ୍ମାକୁ ସର୍ବପ୍ରାଣିଙ୍କ ଆତ୍ମାପରି ଜାଣନ୍ତି, ସେ କର୍ମ କଲେ ସୁଦ୍ଧା, ତହିଁରେ ଲିପ୍ତ ହୁଅନ୍ତି ନାହିଁ । ୭ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନ ଏପରି ଆଶଙ୍କା କରିବେ, ଯେ କର୍ମ ତ ସଂସାରବନ୍ଧନର ହେତୁ, କର୍ମ-ଯୋଗୀ ସଂସାରବନ୍ଧନରେ ନ ପଡ଼ି କିପରି ମୁକ୍ତିଲାଭ କରି ପାରିବେ ? ସେଥିପାଇଁ ଶ୍ରୀଭଗ-ବାନ୍ କହୁଅଛନ୍ତି, ଯେ ଫଳକାମନାରହିତ ହୋଇ କର୍ମର ଅନୁଷ୍ଠାନ କରନ୍ତି, ପ୍ରଥମରେ ତାଙ୍କର ଅନ୍ତଃକରଣ ବା ମନୋବୃତ୍ତି ବିଶୁଦ୍ଧ ହୁଏ ଅର୍ଥାତ୍ ରଜଃ ଓ ତମୋଗୁଣଶୂନ୍ୟ ହୁଏ; ସେହିହେତୁରୁ ସେ ଦେହାଭିମାନରହିତ ହୋଇ ଇନ୍ଦ୍ରିୟମାନଙ୍କୁ ଜୟ କରନ୍ତି ଓ ମନୋଦଣ୍ଡ, କାୟଦଣ୍ଡ ଓ ବାକ୍ (ଇନ୍ଦ୍ରିୟ) ଦଣ୍ଡ ଏପରି ତ୍ରିଦଣ୍ଡଯୁକ୍ତ ହୋଇ ସର୍ବଭୂତରେ ଆତ୍ମଜ୍ଞାନ କରନ୍ତି, ଅର୍ଥାତ୍ ବ୍ରହ୍ମଠାରୁ ସ୍ତମ୍ବ ପର୍ଯ୍ୟନ୍ତ ସବୁ ପଦାର୍ଥକୁ ଆପଣାପରି ମଣନ୍ତି । ଏ ପ୍ରକାର କର୍ମଯୋଗିଙ୍କର 'ମୁଁ କର୍ମ କରୁଅଛି' ଏପରି ଅଭିମାନ ଅଥବା ଏ କର୍ମର ଫଳ ମତେ ମିଳୁ, ଏପରି କାମନା ନ ଥିବାରୁ ସେ ଲୋକଶିକ୍ଷାପାଇଁ କିମ୍ବା ଶରୀରଯାତ୍ରା ନିର୍ବାହପାଇଁ କୌଣସି କର୍ମ କଲେ ସୁଦ୍ଧା, ତହିଁରେ ଲିପ୍ତ ହୁଅନ୍ତି ନାହିଁ ଅର୍ଥାତ୍ ସେ କର୍ମଜନିତ ଫଳ ତାଙ୍କୁ ସଂସାରରେ ଆବଦ୍ଧ କରି ପାରେ ନାହିଁ । ୭ ।

ଶ୍ଳୋକଃ ।

ନୈବ କିଞ୍ଚିତ୍ କରୋମୀତି, ଯୁକ୍ତୋ ମନ୍ୟେତ ତତ୍ତ୍ୱବିତ୍ ।
ପଶ୍ୟନ୍ ଶୃଣ୍ୱନ୍ ସ୍ପୃଶନ୍ ଜିଘ୍ରନ୍ନଶ୍ନନ୍ ଗଚ୍ଛନ୍ ସ୍ୱପନ୍ ଶ୍ୱସନ୍ । ୮ ।

ଅନ୍ୱୟଃ ।

ତତ୍ତ୍ୱବିତ୍ ଯୁକ୍ତଃ (ପୁରୁଷଃ) ପଶ୍ୟନ୍ ଶୃଣ୍ୱନ୍, ସ୍ପୃଶନ୍, ଜିଘ୍ରନ୍, ଅଶ୍ନନ୍, ଗଚ୍ଛନ୍, ସ୍ୱପନ୍, ଶ୍ୱସନ୍, କିଞ୍ଚିତ୍ ଏବ ନ କରୋମି ଇତି ମନ୍ୟେତ । ୮ ।

ଟୀକା ।

କର୍ମ କୁର୍ବନ୍ନପି ନ ଲିପ୍ୟତ ଇତ୍ୟେତଦ୍ଦୁରୁପପାଦମିତ୍ୟାଶଙ୍କ୍ୟ କର୍ତ୍ତୃତ୍ୱାଭିମାନାଭାବାନ୍ନେତ୍ୟାହ, ନୈବେତି ଦ୍ୱାଭ୍ୟାଂ । କର୍ମଯୋଗେନ ଯୁକ୍ତଃ କ୍ରମେଣ ତତ୍ତ୍ୱବିତ୍ ଭୂତ୍ୱା ଦର୍ଶନ-ଶ୍ରବଣାଦୀନି କୁର୍ବନ୍ନପି ଇନ୍ଦ୍ରିୟାଣି ଇନ୍ଦ୍ରିୟାର୍ଥେଷୁ ବର୍ତ୍ତନ୍ତ ଇତି ଧାର-ୟନ୍ ବୁଦ୍ଧ୍ୟା ନିଶ୍ଚିନ୍ୱନ୍ କିଞ୍ଚିଦପ୍ୟହଂ ନ କରୋମୀତି ମନ୍ୟେତ, ତତ୍ର ଦର୍ଶନ-ଶ୍ରବଣ-ସ୍ପର୍ଶନାବଘ୍ରାଣାଶନାନି ଚକ୍ଷୁରାଦି-ଜ୍ଞାନେ-ନ୍ଦ୍ରିୟବ୍ୟାପାରାଃ, ଗତିଃ ପାଦୟୋଃ, ସ୍ୱାପୋ ବୁଦ୍ଧେଃ, ଶ୍ୱାସଃ ପ୍ରାଣସ୍ୟ । ୮ ।

ପଦବ୍ୟାଖ୍ୟା ।

ନ ଏବ—କେବେ ନୁହେଁ, କିଞ୍ଚିତ୍—କିଛି, କରୋମି—ମୁଁ କରୁଅଛି, ଇତି—ଏହା, ଯୁକ୍ତଃ—କର୍ମଯୋଗୀ, ମନ୍ୟେତ—ବୋଧ କରନ୍ତି, ତତ୍ତ୍ୱବିତ୍—ତତ୍ତ୍ୱଜ୍ଞ (ବ୍ରହ୍ମଜ୍ଞାନୀ), ପଶ୍ୟନ୍—ଦେଖିଲେ, ଶୃଣ୍ୱନ୍—ଶୁଣିଲେ, ସ୍ପୃଶନ୍—ସ୍ପର୍ଶ କଲେ, ଜିଘ୍ରନ୍—ଆଘ୍ରାଣ କଲେ, ଅଶ୍ନନ୍—ଭୋଜନ କଲେ, ଗଚ୍ଛନ୍—ଗଲେ, ସ୍ୱପନ୍—ଶୋଇଲେ, ଶ୍ୱସନ୍—ନିଃଶ୍ୱାସପ୍ରଶ୍ୱାସ କଲେ । ୮ ।

ଅନୁବାଦ ।

ତତ୍ତ୍ୱଦର୍ଶୀ (ନିଷ୍କାମ) କର୍ମଯୋଗୀ ଦର୍ଶନ, ଶ୍ରବଣ, ସ୍ପର୍ଶନ, ଘ୍ରାଣ, ଭୋଜନ, ଗମନ, ଶୟନ ଓ ଶ୍ୱାସ ଗ୍ରହଣାଦି କ୍ରିୟା କଲେ ମଧ୍ୟ, ଆମ୍ଭେ କିଛି କରୁ ନାହୁଁ ବୋଲି ମନେ କରନ୍ତି । ୮ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

୮ମ ଓ ୯ମ ଦୁଇ ଶ୍ଲୋକର ବିଶଦବ୍ୟାଖ୍ୟା ଏକତ୍ରେ ନବମ ଶ୍ଲୋକରେ ଦିଆ ହୋଇ-ଅଛି । ୮ ।

ଶ୍ଲୋକଃ ।

* ପ୍ରଲପନ୍ ବିସୃଜନ୍ ଗୃହ୍ଣ-ନ୍ନୁନ୍ମିଷନ୍ନିମିଷନ୍ନପି ।
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥେଷୁ, ବର୍ତ୍ତନ୍ତ ଇତି ଧାରୟନ୍ । ୯ ।

ଅନ୍ୱୟଃ ।

ପ୍ରଲପନ୍, ବିସୃଜନ୍, ଗୃହ୍ଣନ୍, ଉନ୍ମିଷନ୍, ନିମିଷନ୍ ଅପି, ଇନ୍ଦ୍ରିୟାଣି ଇନ୍ଦ୍ରିୟାର୍ଥେଷୁ ବର୍ତ୍ତନ୍ତେ ଇତି ଧାରୟନ୍ (ଏବଂ କିଞ୍ଚିତ୍ ଏବ ନ କରୋମି ଇତି ମନ୍ୟେତ ଇତି ପୂର୍ବଶ୍ଲୋକେନ ସହ ଅନ୍ୱୟଃ) । ୯ ।

ଟୀକା ।

ପ୍ରଲପନଂ ବାଗ୍‌ବ୍ୟାପାରଃ, ବିସର୍ଗଃ ପାୟୂପସ୍ଥୟୋଃ, ଗ୍ରହଣଂ ହସ୍ତୟୋଃ, ଉନ୍ମେଷନିମେଷଣେ କୂର୍ମାଖ୍ୟପ୍ରାଣସ୍ୟେତି ବିବେକଃ । ଏତାନି ସର୍ବାଣି କୁର୍ବନ୍ନପି ଅଭିମାନାଭାବାତ୍ ବ୍ରହ୍ମବେତ୍ତା ନ ଲିପ୍ୟତେ ତଥା ଚ ପାରମର୍ଷଂ ସୂତ୍ରଂ 'ତଦଧିଗମେ ଉତ୍ତରପୂର୍ବାଘୟୋରଶ୍ଳେଷବିନାଶୌ ତଦ୍‌ବ୍ୟପଦେଶାଦିତି' । ୯ ।

ପଦବ୍ୟାଖ୍ୟା ।

ପ୍ରଲପନ୍—କଥା କହିଲେ, ବିସୃଜନ୍—ମଳମୂତ୍ର ତ୍ୟାଗ କଲେ, ଗୃହ୍ଣନ୍—ଦ୍ରବ୍ୟାଦି ଗ୍ରହଣ କଲେ, ଉନ୍ମିଷନ୍—ଚକ୍ଷୁ ଫିଟାଇଲେ, ନିମିଷନ୍—ଅକ୍ଷି ବୁଜିଲେ, ଅପି—ମଧ୍ୟ, ଇନ୍ଦ୍ରିୟାଣି—ଇନ୍ଦ୍ରିୟମାନେ, ଇନ୍ଦ୍ରିୟାର୍ଥେଷୁ—ଇନ୍ଦ୍ରିୟମାନଙ୍କ ବିଷୟରେ, ବର୍ତ୍ତନ୍ତେ—ରହନ୍ତି, ଇତି ଧାରୟନ୍—ଏହା ନିଶ୍ଚୟ କରି । ୯ ।

ଅନୁବାଦ ।

(ସେହି କର୍ମଯୋଗୀ) କଥନ, ମଳମୂତ୍ରାଦି ତ୍ୟାଗ, ଦ୍ରବ୍ୟ ଗ୍ରହଣ, ଚକ୍ଷୁ ଫିଟାଇବା ଓ ବୁଜିବା ଏମାନ କଲେ ମଧ୍ୟ, ଇନ୍ଦ୍ରିୟମାନେ ଆପଣା ଆପଣା ବିଷୟରେ ରତ ଅଛନ୍ତି, ଏହା ନିଶ୍ଚୟ କରି (ଆମ୍ଭେ କିଛି କରୁ ନାହୁଁ ବୋଲି ମନେ କରନ୍ତି) । ୯ ।

ବିଶଦବ୍ୟାଖ୍ୟା ।

ଯେ ପୁରୁଷମାନେ ନିଷ୍କାମଭାବରେ କର୍ମର ଅନୁଷ୍ଠାନ କରିଥିବାରୁ ବିଶୁଦ୍ଧ ଅନ୍ତଃକରଣ ହୋଇଅଛନ୍ତି, ସେ ଦର୍ଶନ, ଶ୍ରବଣ, ଘ୍ରାଣ, ଭୋଜନ ଓ ସ୍ପର୍ଶ ପ୍ରଭୃତିକୁ ଚକ୍ଷୁଃ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ୍ ଇତ୍ୟାଦି ଇନ୍ଦ୍ରିୟମାନଙ୍କର କ୍ରିୟା ବୋଲି ମନେ କରନ୍ତି, ସେହିପରି ଗମନକୁ ପାଦର, ଶୟନ ବା ନିଦ୍ରାକୁ ବୁଦ୍ଧିର, ନିଃଶ୍ୱାସପ୍ରଶ୍ୱାସକୁ ପ୍ରାଣାଦି ବାୟୁର, କଥନକୁ ବାକ୍ ଇନ୍ଦ୍ରିୟର, ମଳମୂତ୍ରାଦି ତ୍ୟାଗକୁ ପାୟୁ ଓ ଉପସ୍ଥର, ଦ୍ରବ୍ୟାଦି ଗ୍ରହଣକୁ ହସ୍ତର ଏବଂ ଅକ୍ଷି ଫିଟାଇବା ଓ ବୁଜିବାକୁ କୂର୍ମ ନାମକ ବାୟୁର କାର୍ଯ୍ୟ ବୋଲି ମନେ କରନ୍ତି, ଅର୍ଥାତ୍ ଉକ୍ତ କାର୍ଯ୍ୟମାନ ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ, ପ୍ରାଣାଦି ବାୟୁ ଓ ବୁଦ୍ଧି ପ୍ରଭୃତି ମନୋବୃତ୍ତିଦ୍ୱାରା ହେଉଥିବାର ନିଶ୍ଚୟ ଜାଣନ୍ତି, ଏବଂ ଆମ୍ଭେ କିଛି କରୁ ନାହୁଁ ବୋଲି ମଣନ୍ତି, ଅର୍ଥାତ୍ ଆତ୍ମା ଯେ ନିଃସଙ୍ଗ ଓ ନିଷ୍କ୍ରିୟ ତାହା ନିଶ୍ଚୟରୂପେ ଜାଣନ୍ତି । ୮, ୯ ।

Digitized by PPRACHIN, SOA

ଶ୍ଳୋକଃ ।

* ବ୍ରହ୍ମଣ୍ୟାଧାୟ କର୍ମାଣି, ସଙ୍ଗଂ ତ୍ୟକ୍ତ୍ୱା କରୋତି ଯଃ ।
ଲିପ୍ୟତେ ନ ସ ପାପେନ, ପଦ୍ମପତ୍ରମିବାମ୍ଭସା । ୧୦ ।

ଅନ୍ୱୟଃ ।

ଯଃ ବ୍ରହ୍ମଣି ଆଧାୟ ସଙ୍ଗଂ ତ୍ୟକ୍ତ୍ୱା କର୍ମାଣି କରୋତି, ସଃ ଅମ୍ଭସା ପଦ୍ମପତ୍ରଂ ଇବ ପାପେନ ନ ଲିପ୍ୟତେ । ୧୦ ।

ଟୀକା ।

ତର୍ହି ଯସ୍ୟ କରୋମୀତ୍ୟଭିମାନୋଽସ୍ତି ତସ୍ୟ କର୍ମଲେପୋ ଦୁର୍ବାରଃ, ତଥା ଅଶୁଦ୍ଧଚିତ୍ତତ୍ୱାତ୍ ସନ୍ନ୍ୟାସୋଽପି ନାସ୍ତୀତି ମହତ୍ସଙ୍କଟମାପନ୍ନମିତ୍ୟାଶଙ୍କ୍ୟାହ, ବ୍ରହ୍ମଣୀତି । ବ୍ରହ୍ମଣ୍ୟାଧାୟ ପରମେଶ୍ୱରେ ସମର୍ପ୍ୟ ତତ୍ଫଳେ ଚ ସଙ୍ଗଂ ତ୍ୟକ୍ତ୍ୱା ଯଃ କର୍ମାଣି କରୋତି, ଅସୌ ପାପେନ ବନ୍ଧହେତୁତୟା ପାପିଷ୍ଠେନ ପୁଣ୍ୟପାପାତ୍ମକେନ କର୍ମଣା ନ ଲିପ୍ୟତେ । ଯଥା ପଦ୍ମପତ୍ରମମ୍ଭସି ସ୍ଥିତମପି ତେନାମ୍ଭସା ନ ଲିପ୍ୟତେ ତଦ୍ୱତ୍ । ୧୦ ।

ପଦବ୍ୟାଖ୍ୟା ।

ବ୍ରହ୍ମଣି—ପରମେଶ୍ୱରଙ୍କଠାରେ, ଆଧାୟ—ଅର୍ପଣ କରି, କର୍ମାଣି—କର୍ମମାନଙ୍କୁ, ସଙ୍ଗଂ ତ୍ୟକ୍ତ୍ୱା—ଫଳଭୋଗ ଇଚ୍ଛା ତ୍ୟାଗ କରି, କରୋତି—କରେ, ଯଃ—ଯେ, ଲିପ୍ୟତେ ନ—ଲିପ୍ତ କରେ ନାହିଁ, ସଃ—ତାହାଙ୍କୁ, ପାପେନ—ପାପ, ପଦ୍ମପତ୍ରଂ—ପଦ୍ମପତ୍ରକୁ, ଇବ ଅମ୍ଭସା—ଜଳପରି । ୧୦ ।

ଅନୁବାଦ ।

ଯେଉଁ ବ୍ୟକ୍ତି ଫଳଭୋଗ ଇଚ୍ଛା ତ୍ୟାଗପୂର୍ବକ ପରମେଶ୍ୱରଙ୍କ ନିମିତ୍ତ କର୍ମମାନ କରନ୍ତି, ତାହାଙ୍କୁ ପାପ, ପଦ୍ମପତ୍ରକୁ ଜଳପରି ଲିପ୍ତ କରେ ନାହିଁ । ୧୦ ।

ବିଶଦବ୍ୟାଖ୍ୟା ।

ଜାଣେ ଅର୍ଜ୍ଜୁନ ଏପରି ଆଶଙ୍କା କରିବେ, ଯେ କର୍ମ କଲେ ତ ନିଶ୍ଚୟ ତାହାର ଫଳ ଭୋଗ କରିବାକୁ ହେବ, ପୁଣି ଚିତ୍ତଶୁଦ୍ଧି ନ ହେବା ଯାଏ କର୍ମତ୍ୟାଗ ମଧ୍ୟ କରି ଯାଇ ନ ପାରେ, ତେବେ ଆଉ ମୋକ୍ଷପ୍ରାପ୍ତି ହେବ କିପରି ? ସେଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ ପୃଥିବୀର ପ୍ରାୟ ତାବନ୍ମାତ୍ର ପଦାର୍ଥ, ଜଳ ସଂଲଗ୍ନ ହେଲେ ଆର୍ଦ୍ର ହୁଏ ସତ, ମାତ୍ର ଯେପରି ଜଳରେ ସର୍ବଦା ରହିଥିବା ପଦ୍ମପତ୍ରକୁ ତଦୁପରିସ୍ଥ ଜଳ ଲିପ୍ତ କରେ ନାହିଁ, ଅର୍ଥାତ୍ ଯେପରି ପଦ୍ମପତ୍ର ଉପରେ ଜଳ ଲାଗି ରହି ପାରେ ନାହିଁ, ସେହିପରି କର୍ମର ଫଳ ସମସ୍ତେ ଭୋଗ କରନ୍ତି ସତ, ମାତ୍ର ଯେ, କର୍ମର ଫଳସବୁକୁ ଈଶ୍ୱରଙ୍କଠାରେ ଅର୍ପଣ କରି ଫଳଭୋଗ ଇଚ୍ଛା ତ୍ୟାଗପୂର୍ବକ କର୍ମ କରନ୍ତି, ସେ କର୍ମଜନିତ ପାପରେ ଲିପ୍ତ ହୁଅନ୍ତି ନାହିଁ, ଅର୍ଥାତ୍ କର୍ମର ଫଳଭୋଗୀ ହୁଅନ୍ତି ନାହିଁ । ୧୦ ।

ଶ୍ଳୋକଃ ।

କାୟେନ ମନସା ବୁଦ୍ଧ୍ୟା, କେବଳୈରିନ୍ଦ୍ରିୟୈରପି ।
ଯୋଗିନଃ କର୍ମ କୁର୍ବନ୍ତି, ସଙ୍ଗଂ ତ୍ୟକ୍ତ୍ୱାତ୍ମଶୁଦ୍ଧୟେ । ୧୧ ।

Digitized by PPRACHIN, SOA

ଅନ୍ୱୟଃ ।

ଯୋଗିନଃ ଆତ୍ମଶୁଦ୍ଧୟେ ସଙ୍ଗଂ ତ୍ୟକ୍ତ୍ୱା କାୟେନ, ମନସା, ବୁଦ୍ଧ୍ୟା, କେବଳୈଃ ଇନ୍ଦ୍ରିୟୈଃ ଅପି କର୍ମ କୁର୍ବନ୍ତି । ୧୧।

ଟୀକା ।

ବନ୍ଧକତ୍ୱାଭାବମୁକ୍ତ୍ୱା ମୋକ୍ଷହେତୁତ୍ୱଂ ସଦାଚାରେଣ ଦର୍ଶୟତି । କାୟେନେତି । କାୟେନ ସ୍ନାନାଦି, ମନସା ଧ୍ୟାନାଦି, ବୁଦ୍ଧ୍ୟା ତତ୍ତ୍ୱନିଶ୍ଚୟାଦି, କେବଳୈଃ କର୍ମାଭିନିବେଶରହିତୈ-ରିନ୍ଦ୍ରିୟୈଃ ଶ୍ରବଣ-କୀର୍ତ୍ତନାଦିଲକ୍ଷଣଂ କର୍ମଫଳାସଙ୍ଗଂ ତ୍ୟକ୍ତ୍ୱା ଚିତ୍ତଶୁଦ୍ଧୟେ କର୍ମଯୋଗିନଃ କୁର୍ବନ୍ତି । ୧୧ ।

ପଦବ୍ୟାଖ୍ୟା ।

କାୟେନ—ଦେହଦ୍ୱାରା, ମନସା—ମନଦ୍ୱାରା, ବୁଦ୍ଧ୍ୟା—ବୁଦ୍ଧିଦ୍ୱାରା, କେବଳୈଃ ଇନ୍ଦ୍ରିୟୈଃ ଅପି—କେବଳ ଇନ୍ଦ୍ରିୟମାନଙ୍କଦ୍ୱାରା ମଧ୍ୟ, ଯୋଗିନଃ—ଯୋଗିମାନେ, କର୍ମ କୁର୍ବନ୍ତି—କର୍ମ କରନ୍ତି, ସଙ୍ଗଂ ତ୍ୟକ୍ତ୍ୱା—କର୍ମଫଳରେ ଆସକ୍ତି ତ୍ୟାଗ କରି, ଆତ୍ମଶୁଦ୍ଧୟେ—ଚିତ୍ତଶୁଦ୍ଧି ନିମିତ୍ତ । ୧୧ ।

ଅନୁବାଦ ।

ଯୋଗିମାନେ ଚିତ୍ତଶୁଦ୍ଧି ନିମିତ୍ତ ଫଳକାମନା ପରିତ୍ୟାଗପୂର୍ବକ, ଦେହ, ମନ, ବୁଦ୍ଧି ଓ କେବଳ ଇନ୍ଦ୍ରିୟମାନଙ୍କଦ୍ୱାରା ମଧ୍ୟ, କର୍ମ କରନ୍ତି । ୧୧ ।

ବିଶଦବ୍ୟାଖ୍ୟା ।

ନିଷ୍କାମ କର୍ମଯୋଗିମାନେ କେବଳ ଚିତ୍ତଶୁଦ୍ଧିନିମିତ୍ତ ଫଳକାମନାରହିତ ହୋଇ କର୍ମ କରନ୍ତି । ଦେହଦ୍ୱାରା ସ୍ନାନାଦି କର୍ମ, ମନଦ୍ୱାରା ଧ୍ୟାନାଦି, ବୁଦ୍ଧିଦ୍ୱାରା ପରମାର୍ଥ ବିଷୟକ ତତ୍ତ୍ୱ ନିଶ୍ଚୟ ଓ ଆସକ୍ତି ଶୂନ୍ୟ ଇନ୍ଦ୍ରିୟମାନଙ୍କଦ୍ୱାରା ଶ୍ରବଣ-କୀର୍ତ୍ତନାଦି କର୍ମ କରନ୍ତି । ଫଳକଥା ଏହି କି ସେ ଯେଉଁସବୁ କର୍ମ କରନ୍ତି ସେସବୁ ଫଳକାମନାରହିତ ଥିବାରୁ ତାହା କେବଳ ଚିତ୍ତଶୁଦ୍ଧି ନିମିତ୍ତ କରନ୍ତି । ୧୧ ।

ଶ୍ଳୋକଃ ।

* ଯୁକ୍ତଃ କର୍ମଫଳଂ ତ୍ୟକ୍ତ୍ୱା, ଶାନ୍ତିମାପ୍ନୋତି ନୈଷ୍ଠିକୀଂ ।
ଅଯୁକ୍ତଃ କାମକାରେଣ, ଫଳେ ସକ୍ତୋ ନିବଧ୍ୟତେ । ୧୨ ।

ଅନ୍ୱୟଃ ।

ଯୁକ୍ତଃ କର୍ମଫଳଂ ତ୍ୟକ୍ତ୍ୱା ନୈଷ୍ଠିକୀଂ ଶାନ୍ତିଂ ଆପ୍ନୋତି । ଅଯୁକ୍ତଃ କାମକାରେଣ ଫଳେ ସକ୍ତଃ ନିବଧ୍ୟତେ । ୧୨ ।

ଟୀକା ।

ନନୁ କଥଂ ତେନୈବ କର୍ମଣା କଶ୍ଚିନ୍ମୁଚ୍ୟତେ କଶ୍ଚିଦ୍ବଧ୍ୟତେ ଇତି ବ୍ୟବସ୍ଥା, ଅତ ଆହ, ଯୁକ୍ତ ଇତି । ଯୁକ୍ତଃ ପରମେଶ୍ୱରୈକନିଷ୍ଠଃ ସନ୍ କର୍ମଣାଂ ଫଳଂ ତ୍ୟକ୍ତ୍ୱା କର୍ମାଣି କୁର୍ବନ୍ନାତ୍ୟନ୍ତିକୀଂ ଶାନ୍ତିଂ ମୋକ୍ଷଂ ପ୍ରାପ୍ନୋତି, ଅଯୁକ୍ତସ୍ତୁ ବହିର୍ମୁଖଃ କାମକାରେଣ କାମତଃ ପ୍ରବୃତ୍ତ୍ୟା ଫଳେ ଅସକ୍ତୋ ନିତରାଂ ବନ୍ଧଂ ପ୍ରାପ୍ନୋତି । ୧୨ ।

ପଦବ୍ୟାଖ୍ୟା ।

ଯୁକ୍ତଃ—ପରମେଶ୍ୱରଙ୍କଠାରେ ନିଷ୍ଠାଯୁକ୍ତ, କର୍ମଫଳଂ ତ୍ୟକ୍ତ୍ୱା—କର୍ମଫଳକୁ ତ୍ୟାଗ କରି, ଶାନ୍ତିଂ ଆପ୍ନୋତି—ଶାନ୍ତିକୁ ପ୍ରାପ୍ତ ହୁଅନ୍ତି, ନୈଷ୍ଠିକୀଂ—ମନର ଏକାଗ୍ରତାଜନିତ (ମୋକ୍ଷରୂପ), ଅଯୁକ୍ତଃ—ଈଶ୍ୱରଙ୍କଠାରେ ଆସକ୍ତି ରହିତ, କାମକାରେଣ—କାମନାଦ୍ୱାରା, ଫଳେ ସକ୍ତଃ—ଫଳରେ ଆସକ୍ତ ହୋଇ, ନିବଧ୍ୟତେ—ସଂସାରବନ୍ଧନକୁ ପ୍ରାପ୍ତ ହୁଏ ।

। ୧୨ ।

Digitized by PPRACHIN, SOA

### ଅନୁବାଦ ।

ଯୁକ୍ତ ଅର୍ଥାତ୍ ନିଷ୍କାମ କର୍ମଯୋଗୀ କର୍ମଫଳ ତ୍ୟାଗପୂର୍ବକ ଏକାଗ୍ରତାଜନିତ ଶାନ୍ତି (ମୋକ୍ଷ) ପ୍ରାପ୍ତ ହୁଅନ୍ତି, ଆଉ ଅଯୁକ୍ତ (ଫଳକାମୀ) ବ୍ୟକ୍ତି କାମନା ହେତୁରୁ ଫଳରେ ଆସକ୍ତ ହୋଇ ବନ୍ଧନଦଶାଗ୍ରସ୍ତ ହୁଏ । ୧୨ ।

### ବିଶଦବ୍ୟାଖ୍ୟା ।

ଫଳଭୋଗେଚ୍ଛା ସଂସାରବନ୍ଧନର ହେତୁ ଅଟେ । ଯେଉଁ କର୍ମଯୋଗୀ ଫଳକାମନା ତ୍ୟାଗ କରି ଅର୍ଥାତ୍ ନିଷ୍କାମଭାବରେ କର୍ମ କରନ୍ତି, ତାହାଙ୍କର ପ୍ରଥମରେ ଚିତ୍ତଶୁଦ୍ଧି ହୁଏ, ସେହି ନିର୍ମଳ ଚିତ୍ତରେ ବ୍ରହ୍ମନିଷ୍ଠା ବା ଏକାଗ୍ରତା ଜାତ ହୁଏ । ସୁତରାଂ ସେ ଏକାଗ୍ରତାଜନିତ ପରମ-ଶାନ୍ତି ଅର୍ଥାତ୍ ମୋକ୍ଷ ଲାଭ କରନ୍ତି । ତାହାଙ୍କର ଆଉ ବନ୍ଧନଦଶା ହୁଏ ନାହିଁ । ମାତ୍ର ଯେ ଅଯୁକ୍ତ ଅର୍ଥାତ୍ ଫଳକାମୀ, ସେ କାମନା ବଶରୁ ଫଳ ଇଚ୍ଛା ତ୍ୟାଗ କରି ନ ପାରି ଫଳରେ ଆସକ୍ତ ହୁଏ; ସୁତରାଂ ସେ ଫଳଭୋଗର ଉପାୟସ୍ୱରୂପ ଜନ୍ମମରଣ ନାମକ ବନ୍ଧନରେ ପଡ଼େ । ୧୨ ।

### ଶ୍ଳୋକଃ ।

ସର୍ବକର୍ମାଣି ମନସା, ସନ୍ନ୍ୟସ୍ୟାସ୍ତେ ସୁଖଂ ବଶୀ ।
ନବଦ୍ୱାରେ ପୁରେ ଦେହୀ, ନୈବ କୁର୍ବନ୍ନ କାରୟନ୍ । ୧୩ ।

### ଅନ୍ୱୟଃ ।

ବଶୀ ଦେହୀ ନବଦ୍ୱାରେ ପୁରେ ସର୍ବକର୍ମାଣି ମନସା ସନ୍ନ୍ୟସ୍ୟ ନ କୁର୍ବନ୍ ନ କାରୟନ୍ ଏବ ସୁଖଂ ଆସ୍ତେ । ୧୩ ।

### ଟୀକା ।

ଏବଂ ଭୂତସ୍ୟ ଚିତ୍ତଶୁଦ୍ଧିଶୂନ୍ୟସ୍ୟ ସନ୍ନ୍ୟାସାତ୍ କର୍ମଯୋଗୋ ବିଶିଷ୍ୟତ ଇତ୍ୟେତତ୍ ପ୍ରପଞ୍ଚିତଂ, ଇଦାନୀଂ ଶୁଦ୍ଧଚିତ୍ତସ୍ୟ ସନ୍ନ୍ୟାସଃ ଶ୍ରେଷ୍ଠ ଇତ୍ୟାହ, ସର୍ବକର୍ମାଣୀତି । ବଶୀ ଜିତଚିତ୍ତଃ ସର୍ବକର୍ମାଣି ବିକ୍ଷେପକାଣି ମନସା ବିବେକଯୁକ୍ତେନ ସନ୍ନ୍ୟସ୍ୟ ସୁଖଂ ଯଥା ଭବତ୍ୟେବଂ ଜ୍ଞାନନିଷ୍ଠଃ ସନ୍ନାସ୍ତେ କ୍ୱାସ୍ତେ ଇତ୍ୟତଆହ, ନବଦ୍ୱାରେ ନେତ୍ରେ ନାସିକେ, କର୍ଣ୍ଣୌ ମୁଖଂ ଚେତି ସପ୍ତ ଶିରୋଗତାନି ଅଧୋଗତେ ଦ୍ୱେ ପାୟୂପସ୍ଥରୂପେ ଇତ୍ୟେବଂ ନବଦ୍ୱାରାଣି ଯସ୍ମିନ୍ ପୁରେ ପୁରବଦହଙ୍କାରଶୂନ୍ୟେ ଦେହେ ଦେହୀ ଅବତିଷ୍ଠତେ ଅହଙ୍କାରାଭାବାଦେବ ସ୍ୱୟଂ ତେନ ଦେହେନ ନୈବ କୁର୍ବନ୍ ମନକାର୍ଯ୍ୟାଭାବାତ୍ ନ କାରୟନ୍ନିତି ଅଶୁଭଦୃଷ୍ଟ୍ୟା ବ୍ୟାବୃତ୍ତିଯୁକ୍ତା ଅଶୁଭଶରୀରେହ ସନ୍ନ୍ୟସ୍ୟ ପୁନଃ କଥୋତ କାରୟତ ଚ ନ ସ୍ୱୟଂ ତଥା, ଅତଃ ସୁଖମାସ୍ତ ଇତ୍ୟର୍ଥଃ । ୧୩ ।

### ପଦବ୍ୟାଖ୍ୟା ।

ସର୍ବକର୍ମାଣି—ସମସ୍ତ କର୍ମମାନଙ୍କୁ, ମନସା—ମନଦ୍ୱାରା, ସନ୍ନ୍ୟସ୍ୟ—ତ୍ୟାଗ କରି, ଆସ୍ତେ—ବାସ କରେ, ସୁଖଂ—ସୁଖରେ, ବଶୀ—ମନ ଓ ଇନ୍ଦ୍ରିୟଜୟକାରୀ, ନବଦ୍ୱାରେ ପୁରେ—ନବଦ୍ୱାରଯୁକ୍ତ ପୁର ଅର୍ଥାତ୍ ଶରୀରରେ, ଦେହୀ—ଆତ୍ମା, ନ ଏବ କୁର୍ବନ୍—କୌଣସି କର୍ମ ନ କରି, ନ କାରୟନ୍—(କୌଣସି କର୍ମ) ନ କରାଇ । ୧୩ ।

### ଅନୁବାଦ ।

ଜିତେନ୍ଦ୍ରିୟ ପ୍ରାଣୀ ସମସ୍ତ କର୍ମକୁ ମନରୁ ପରିତ୍ୟାଗ କରି (ଆପେ କୌଣସି କର୍ମ) ନ କରି ଓ ଅପରଦ୍ୱାରା ନ କରାଇ ନବଦ୍ୱାରଯୁକ୍ତ ପୁର (ଦେହ)ରେ ସୁଖରେ ଥାଆନ୍ତି । ୧୩ ।

Digitized by PPRACHIN, SOA

ବଶଦବ୍ୟାଖ୍ୟା ।

**ଯେ ମନ ଓ ଇନ୍ଦ୍ରିୟମାନଙ୍କୁ ଅପଣାର ବଶରେ ରଖି ପାରନ୍ତି, ସେହି ପ୍ରାଣୀ 'ମୁଁ କର୍ତ୍ତା'** ଏପରି **ବୁଦ୍ଧି** ତ୍ୟାଗ କରିଥିବାରୁ ନିତ୍ୟ, ନୈମିତ୍ତିକ, କାମ୍ୟ ଓ ପ୍ରତିଷିଦ୍ଧ କୌଣସି କର୍ମର କର୍ତ୍ତା ନୁହନ୍ତି, ତାଙ୍କର ଅଧୀନ ଥିବା ଇନ୍ଦ୍ରିୟମାନେ କୌଣସି କର୍ମ କରି ନ ପାରିଲେ ବୋଲି, ସେ କିଛିମାତ୍ର ଦୁଃଖ ବୋଧ କରନ୍ତି ନାହିଁ । ସେହି ପ୍ରାଣୀ ନବଦ୍ୱାରଯୁକ୍ତ (ନାସିକାଦ୍ୱୟ, କର୍ଣ୍ଣଦ୍ୱୟ, ନେତ୍ରଦ୍ୱୟ ଏବଂ ମୁଖ ଏପରି ଊର୍ଦ୍ଧ୍ୱଗତ ସପ୍ତଦ୍ୱାର ଓ ପାୟୁ ଏବଂ ଉପସ୍ଥ ନାମକ ଅଧୋଗତ ଦୁଇ ଦ୍ୱାର ଏରୂପ ସର୍ବସମେତ ନବଦ୍ୱାରଯୁକ୍ତ) ପୁର ଅର୍ଥାତ୍ ଦେହରେ ସୁଖରେ ବାସ କରନ୍ତି । ଅପଣାଠାରୁ ଦେହ ପୃଥକ୍, ଏପରି ଜ୍ଞାନ ତାଙ୍କର ଥିବାରୁ ସେ ଦେହପ୍ରତି କୌଣସି ମମତା ନ ରଖି ବସାଘରେ ଥିବା ବଦେଶୀ ପରି ଅପଣାକୁ ମନେ କରନ୍ତି । ବଦେଶୀ ଯେପରି ବସାଘର ସଂସ୍କାରାଦି ବିଷୟରେ କିଛିମାତ୍ର ଚେଷ୍ଟା କରନ୍ତି ନାହିଁ, ସେହିପରି 'ଦେହୀ' ଦେହର ଶ୍ରେୟସ୍କାର ବା ପତନ ନିବାରଣ ପାଇଁ କିଛି କର୍ମ କରନ୍ତି ନାହିଁ କି କାହାର-ଦ୍ୱାରା କରାନ୍ତି ନାହିଁ । ୧୩ ।

ଶ୍ଳୋକଃ ।

ନ କର୍ତ୍ତୃତ୍ୱଂ ନ କର୍ମାଣି, ଲୋକସ୍ୟ ସୃଜତି ପ୍ରଭୁଃ ।
ନ କର୍ମଫଳସଂଯୋଗଂ, ସ୍ୱଭାବସ୍ତୁ ପ୍ରବର୍ତ୍ତତେ । ୧୪ ।

ଅନ୍ୱୟଃ ।

ପ୍ରଭୁଃ ଲୋକସ୍ୟ କର୍ତ୍ତୃତ୍ୱଂ ନ ସୃଜତି ନ କର୍ମାଣି, ନ କର୍ମଫଳସଂଯୋଗଂ, ତୁ ସ୍ୱଭାବଃ ପ୍ରବର୍ତ୍ତତେ । ୧୪ ।

ଟୀକା ।

ନନୁ ଏଷ ଏବ ସାଧୁ କର୍ମ କାରୟତି ତଂ ଯମେଭ୍ୟୋ ଲୋକେଭ୍ୟ ଉନ୍ନିନୀଷତେ ଏଷ ଏବାସାଧୁ କର୍ମ କାରୟତି ତଂ ଯମେଭ୍ୟୋ ଲୋକେଭ୍ୟ ଅଧୋ ନିନୀଷତ ଇତ୍ୟାଦି ଶ୍ରୁତେଃ, ପରମେଶ୍ୱରେଣୈବ ଶୁଭାଶୁଭଫଳେଷୁ କର୍ମସୁ କର୍ତ୍ତୃତ୍ୱେନ ପ୍ରଯୁଜ୍ୟମାନୋଽସ୍ୱତନ୍ତ୍ରଃ ପୁରୁଷଃ କଥଂ ତାନି କର୍ମାଣି ତ୍ୟଜେତ୍, ଈଶ୍ୱରେଣୈବ ଜ୍ଞାନମାର୍ଗେ ପ୍ରଯୁଜ୍ୟମାନଃ ଶୁଭାନ୍ୟଶୁଭାନି ଚ ତ୍ୟକ୍ଷ୍ୟତୀତି ଚେତ୍ ଏବଂ ସତି ବୈଷମ୍ୟନୈର୍ଘୃଣ୍ୟାଭ୍ୟାମୀଶ୍ୱରସ୍ୟାପି ପ୍ରୟୋଜକକର୍ତ୍ତୃତ୍ୱାତ୍ ପୁଣ୍ୟପାପସମ୍ବନ୍ଧଃ ସ୍ୟାଦିତ୍ୟାଶଙ୍କ୍ୟାହ, ନ କର୍ତ୍ତୃତ୍ୱମିତି ଦ୍ୱାଭ୍ୟାଂ । ପ୍ରଭୁରୀଶ୍ୱରୋ ଜୀବଲୋକସ୍ୟ କର୍ତ୍ତୃତ୍ୱାଦିକଂ ନ ସୃଜତି, କିନ୍ତୁ ଜୀବସ୍ୟ ସ୍ୱଭାବୋଽବିଦ୍ୟୈବ କର୍ତ୍ତୃତ୍ୱାଦିରୂପେଣ ପ୍ରବର୍ତ୍ତତେ ଅନାଦ୍ୟବିଦ୍ୟା କାମବଶାତ୍ ପ୍ରବୃତ୍ତିସ୍ୱଭାବମେବ ଲୋକମୀଶ୍ୱରଃ କର୍ମସୁ ନିଯୁଙ୍କ୍ତେ, ନ ତୁ ସ୍ୱୟମେବ କର୍ତ୍ତୃତ୍ୱାଦିକମୁତ୍ପାଦୟତୀତ୍ୟର୍ଥଃ । ୧୪ ।

ପଦବ୍ୟାଖ୍ୟା ।

ନ—ନାହିଁ, କର୍ତ୍ତୃତ୍ୱଂ—କର୍ତ୍ତୃତ୍ୱକୁ, ନ—ନାହିଁ, କର୍ମାଣି—କର୍ମମାନଙ୍କୁ, ଲୋକସ୍ୟ—ଲୋକର, ସୃଜତି—ସୃଷ୍ଟି କରନ୍ତି, ପ୍ରଭୁଃ—ସର୍ବସମର୍ଥ (ଜଗଦୀଶ୍ୱର), ନ—ନାହିଁ, କର୍ମଫଳସଂଯୋଗଂ—କର୍ମଫଳ ସମ୍ବନ୍ଧକୁ, ସ୍ୱଭାବଃ—ପ୍ରକୃତି—ଅବିଦ୍ୟା, ତୁ—କିନ୍ତୁ, ପ୍ରବର୍ତ୍ତତେ—ପ୍ରବୃତ୍ତ ହୁଏ । ୧୪ ।

ଅନୁବାଦ ।

ଜଗତ୍‌କର୍ତ୍ତା ପରମେଶ୍ୱର ଜୀବର ଦେହାଦିରେ କର୍ତ୍ତୃତ୍ୱ, ଅବା କର୍ମ, ଅଥବା କର୍ମଫ-

Digitized by PPRACHIN, SOA

ଳର ସମ୍ବନ୍ଧ, ରଚନା କରନ୍ତି ନାହିଁ, କିନ୍ତୁ ସ୍ୱଭାବ (ମାୟା) ଏ ସମସ୍ତର କର୍ତ୍ତୃତ୍ୱରେ ପ୍ରବୃତ୍ତ ହୁଏ । ୧୪ ।

ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନଙ୍କ ମନରେ ଏପରି ଆଶଙ୍କା ହେବ, ଯେ ଯଦି ନିଷ୍କାମଭାବରେ କର୍ମ କରିବା ବ୍ୟକ୍ତି 'ମୁଁ କରୁଅଛି' ଏପରି ଅଭିମାନ କରୁ ନ ଥିବାରୁ ଓ ଫଳକାମନାବର୍ଜ୍ଜିତ ଥିବାରୁ ପାପ ପୁଣ୍ୟର ଭାଗୀ ନ ହେବ ଓ ଦେହ ଜଡପଦାର୍ଥ ଥିବାରୁ ସେ ମଧ୍ୟ କର୍ମଫଳର ଅର୍ଥାତ୍ ପାପପୁଣ୍ୟର ଭାଗୀ ନ ହେବ, ତେବେ ପରମେଶ୍ୱର ଏକ ବ୍ୟକ୍ତିକୁ ସତ୍‌କର୍ମରେ ପ୍ରବୃତ୍ତ କରି ବୈକୁଣ୍ଠବାସୀ ଓ ଅନ୍ୟ ବ୍ୟକ୍ତିକୁ ଅସତ୍‌କର୍ମରେ ପ୍ରବୃତ୍ତ କରି ନରକଗାମୀ କରନ୍ତି ଓ ଏପରି ପକ୍ଷପାତ ବା ଅନ୍ୟାୟ କାର୍ଯ୍ୟର ଦାୟୀ କି ପରମେଶ୍ୱର ଅଟନ୍ତି ? ସେଥି-ପାଇଁ ଶ୍ରୀଭଗବାନ୍ ଦୁଇ ଶ୍ଳୋକରେ କହୁଅଛନ୍ତି, ଯେ ପ୍ରଭୁ ଅର୍ଥାତ୍ ପରମେଶ୍ୱର କୌଣସି ଜୀବର ଦେହାଦିରେ 'ମୁଁ କର୍ତ୍ତା' ଏପରି ଅଭିମାନକୁ ଅଥବା ପାପପୁଣ୍ୟଜନକ କର୍ମକୁ ସର୍ଜନା କରନ୍ତି ନାହିଁ, ଅଥବା କର୍ମଫଳରେ ସମ୍ବନ୍ଧ; ଅର୍ଥାତ୍ ଏ ବ୍ୟକ୍ତି ଏପରି ସତ୍‌କର୍ମ କରିଅଛି ସ୍ୱର୍ଗ ପାଇବ, ଏ ବ୍ୟକ୍ତି ଅସତ୍‌କର୍ମ କରିଅଛି ନରକରେ ପଡିବ, ଏପରି ସମ୍ବନ୍ଧ ମଧ୍ୟ ରଚନା କରନ୍ତି ନାହିଁ, କେବଳ ସ୍ୱଭାବ ଅର୍ଥାତ୍ ପ୍ରକୃତି ସେ ସବୁର ପ୍ରବର୍ତ୍ତିକା । ଅର୍ଥାତ୍ ଲୋକମାନେ ଆପଣା୨ ସ୍ୱଭାବ ଅନୁସାରେ କର୍ମମାନ କରନ୍ତି ଓ ଦେହାଦିରେ କର୍ତ୍ତା ଅଭିମାନ ଅଥବା ଦେହ ଓ ଆତ୍ମାରେ ପୃଥକ୍ ଜ୍ଞାନ, ସ୍ୱଭାବ ଅନୁସାରେ ଜାତ ହୁଏ ଏବଂ କର୍ମର ସ୍ୱଭାବ ଅନୁସାରେ ଫଳର ସମ୍ବନ୍ଧ ମଧ୍ୟ ଉତ୍ପନ୍ନ ହୁଏ; ଅର୍ଥାତ୍ ସତ୍‌କର୍ମରେ ସ୍ୱର୍ଗାଦି ଉତ୍ତମ ଫଳ ଓ ଅସତ୍ କର୍ମରେ ନରକାଦି ନିକୃଷ୍ଟ ଫଳ ପ୍ରାପ୍ତ ହୁଏ । ପରମେଶ୍ୱର ଏ ସବୁ କିଛି କରନ୍ତି ନାହିଁ, ସେ କେବଳ ସାକ୍ଷିସ୍ୱରୂପ । ୧୪ ।

ଶ୍ଳୋକଃ ।

ନାଦତ୍ତେ କସ୍ୟଚିତ୍ ପାପଂ, ନ ଚୈବ ସୁକୃତଂ ବିଭୁଃ ।
ଅଜ୍ଞାନେନାବୃତଂ ଜ୍ଞାନଂ, ତେନ ମୁହ୍ୟନ୍ତି ଜନ୍ତବଃ । ୧୫ ।

ଅନ୍ୱୟଃ ।

ବିଭୁଃ କସ୍ୟଚିତ୍ ପାପଂ ନ, ଚ ସୁକୃତଂ ଏବ ନ ଆଦତ୍ତେ, ଜ୍ଞାନଂ ଅଜ୍ଞାନେନ ଆବୃତଂ, ତେନ ଜନ୍ତବଃ ମୁହ୍ୟନ୍ତି । ୧୫ ।

ଟୀକା ।

ସମ୍ଭାବେବଂ ତସ୍ମାନ୍ନାଦତ୍ତ ଇତି । ପ୍ରଯୋଜକୋଽପି ସନ୍ ପ୍ରଭୁଃ କସ୍ୟଚିତ୍ ପାପଂ ସୁକୃତଂ ଚ ନୈବାଦତ୍ତେ ନ ଭଜତେ, ତତ୍ର ହେତୁଃ, ବିଭୁଃ ପରିପୂର୍ଣ୍ଣଃ ଆପ୍ତକାମ ଇତ୍ୟର୍ଥଃ, ଯଦି ହି ସ୍ୱାର୍ଥକାମନୟା କାରୟେତ୍ତର୍ହି ତଥା ସ୍ୟାତ୍ ନ ତ୍ୱେତଦସ୍ତି ଆପ୍ତକାମସ୍ୟୈବାଚିନ୍ତ୍ୟନିଜମାୟୟା ତତ୍ପୂର୍ବକର୍ମାନୁସାରେଣ ପ୍ରବର୍ତ୍ତକତ୍ୱାତ୍ ନନୁ ଭକ୍ତାନନୁଗୃହ୍ଣତୋଽଭକ୍ତାନ୍ନିଗୃହ୍ଣତଶ୍ଚ ବୈଷମ୍ୟୋପଲମ୍ଭାତ୍ କଥମାପ୍ତକାମତ୍ୱମିତ୍ୟତ ଆହ, ଅଜ୍ଞାନେନେତି । ନିଗ୍ରହୋଽପି ଦଣ୍ଡରୂପୋଽନୁଗ୍ରହ ଏବେତ୍ୟେବମଜ୍ଞାନେନ ସର୍ବତ୍ର ସମଃ ପରମେଶ୍ୱର ଇତ୍ୟେବମ୍ଭୂତଂ ଜ୍ଞାନମାବୃତଂ ତେନ ହେତୁନା ଜନ୍ତବୋ ଜୀବା ମୁହ୍ୟନ୍ତି ଭଗବତି ବୈଷମ୍ୟଂ ମନ୍ୟନ୍ତ ଇତ୍ୟର୍ଥଃ । ୧୫ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ନ ଆଦତ୍ତେ—ଗ୍ରହଣ କରନ୍ତି ନାହିଁ, କସ୍ୟଚିତ୍ ପାପଂ—କାହାର ପାପକୁ, ନ ଚ ଏବ ସୁକୃତଂ—ଆଉ ପୁଣ୍ୟକୁ ମଧ୍ୟ (ଗ୍ରହଣ କରନ୍ତି) ନାହିଁ, ବିଭୁଃ—ପରିପୂର୍ଣ୍ଣ ବା ସର୍ବବ୍ୟାପକ, ଅଜ୍ଞାନେନ—ଅଜ୍ଞାନଦ୍ୱାରା, ଆବୃତଂ—ଆଚ୍ଛନ୍ନ ହୋଇଅଛି, ଜ୍ଞାନଂ—ଈଶ୍ୱର ସର୍ବତ୍ର ସମଭାବରେ ଅଛନ୍ତି ଏପରି ଜ୍ଞାନ, ତେନ—ସେହି ହେତୁରୁ, ମୁହ୍ୟନ୍ତି—ମୋହିତ ହୁଅନ୍ତି, ଜନ୍ତବଃ—ଜୀବମାନେ । ୧୫ ।

ଅନୁବାଦ ।

ପରମେଶ୍ୱର କାହାର ପାପ ବା ପୁଣ୍ୟ ଗ୍ରହଣ କରନ୍ତି ନାହିଁ । ଅଜ୍ଞାନଦ୍ୱାରା ଜ୍ଞାନ ଆବୃତ ଥିବାରୁ ଜୀବମାନେ ତହିଁରେ ମୋହିତ ହୁଅନ୍ତି (ଅର୍ଥାତ୍ ପରମେଶ୍ୱରଙ୍କୁ ପକ୍ଷପାତୀ ମନେ କରନ୍ତି) । ୧୫ ।

ବିଶଦବ୍ୟାଖ୍ୟା ।

ଭଗବାନ୍ ପ୍ରକୃତିକୁ ସର୍ବ କାର୍ଯ୍ୟର ପ୍ରବର୍ତ୍ତକ ଓ ଆତ୍ମାକୁ ଅକର୍ତ୍ତା ବୋଲି କହିଲେ ସତ, ମାତ୍ର ଅର୍ଜୁନଙ୍କ ମନରୁ ସନ୍ଦେହ ଦୂର ହେଲା ନାହିଁ, କାରଣ ସେ ଅର୍ଜୁନ ଶ୍ରୁତିରୁ ଜାଣିଅଛନ୍ତି, ଯେ " ଏଷ ଏବ ସାଧୁକର୍ମ କାରୟତି ତଂ ଯମେଭ୍ୟୋ ଲୋକେଭ୍ୟ ଉନ୍ନିନୀଷତେ ଏଷ ଏବା ସାଧୁକର୍ମ କାରୟତି ତଂ ଯମେଭ୍ୟୋ ଲୋକେଭ୍ୟ ଅଧୋ ନିନୀଷତେ " ଅର୍ଥାତ୍ ଭଗବାନ୍ ଯାହାକୁ ଇହଲୋକରୁ ଊର୍ଦ୍ଧ୍ୱକୁ (ସ୍ୱର୍ଗାଦିକୁ) ନେବାକୁ ଇଚ୍ଛା କରନ୍ତି, ତାକୁ ସାଧୁକର୍ମ କରାନ୍ତି ଏବଂ ଯାହାକୁ ଇହଲୋକଠାରୁ ନୀଚଲୋକ (ନରକାଦି)କୁ ନେବାକୁ ଇଚ୍ଛା କରନ୍ତି, ତାକୁ ଅସାଧୁକର୍ମ କରାନ୍ତି । ପୁଣି ସ୍ମୃତିରେ ମଧ୍ୟ ପ୍ରମାଣ ଅଛି, ଯେ—

"ଅଜ୍ଞୋ ଜନ୍ତୁରନୀଶୋଽୟମାତ୍ମନଃ ସୁଖ-ଦୁଃଖୟୋଃ ।
ଈଶ୍ୱରପ୍ରେରିତୋ ଗଚ୍ଛେତ୍ ସ୍ୱର୍ଗଂ ବା ଶ୍ୱଭ୍ରମେବ ବା ।"

ଅର୍ଥାତ୍ ଜୀବ ଅଜ୍ଞାନୀ ଓ ଆପଣାର ସୁଖ ଦୁଃଖ ସାଧନରେ ନିଜେ ଅସମର୍ଥ । କେବଳ ଭଗବାନଙ୍କଦ୍ୱାରା ପ୍ରେରିତ ଅର୍ଥାତ୍ ପୁଣ୍ୟ ବା ପାପ କାର୍ଯ୍ୟରେ ପ୍ରବୃତ୍ତ ହୋଇ ସ୍ୱର୍ଗ ବା ନରକକୁ ଗମନ କରେ ।

ଏହି ସବୁ ପ୍ରମାଣରୁ ଅର୍ଜୁନ ଈଶ୍ୱରଙ୍କୁ ପାପ ପୁଣ୍ୟର କର୍ତ୍ତା ଜାଣି ମନରେ ସନ୍ଦେହ କରୁଅଛନ୍ତି । ସେଥିପାଇଁ ଶ୍ରୀଭଗବାନ୍ କହିଲେ, କି ତତ୍ତ୍ୱ ଦୃଷ୍ଟିରେ ଦେଖିଲେ ଜୀବ ଯେତେବେଳେ ପାପ ବା ପୁଣ୍ୟର କର୍ତ୍ତା ନୁହେ, କେବଳ ସ୍ୱଭାବ ଅର୍ଥାତ୍ ପ୍ରକୃତି ସେ ସବୁର ପ୍ରବର୍ତ୍ତକ ବୋଲି ପ୍ରମାଣିତ ହେଉଅଛି, ତେତେବେଳେ ସର୍ବବ୍ୟାପୀ ଓ କ୍ରିୟାଶୂନ୍ୟ ପରମେଶ୍ୱର କିପରି ପାପ ପୁଣ୍ୟର କର୍ତ୍ତା ହେବେ ? ଫଳକଥା ଏହି କି ସେ ପାପ ଓ ପୁଣ୍ୟର ପ୍ରବର୍ତ୍ତକ କି ଫଳଭାଗୀ ନୁହନ୍ତି । କେବଳ ସର୍ବଦା ପ୍ରକାଶମାନ ଯେ ଜ୍ଞାନ, ସେ ଆବରଣ ଓ ବିକ୍ଷେପାଦି ଗୁଣଯୁକ୍ତ ମାୟାରେ ଆଚ୍ଛନ୍ନ ରହି ମେଘାଚ୍ଛନ୍ନ ସୂର୍ଯ୍ୟପରି ପ୍ରଭାହୀନ ହେବାରୁ ଜୀବ ଆପଣାର ସ୍ୱରୂପ ଦର୍ଶନରେ ଅସମର୍ଥ ହୋଇ ଭ୍ରମରେ ପଡିଥାଏ । ଶ୍ରୁତି ଓ ସ୍ମୃତିରେ ଯେ ଈଶ୍ୱରଙ୍କ ପ୍ରବର୍ତ୍ତନା ବା ପ୍ରେରଣା କଥା ଲେଖାଅଛି, ତାହା କେବଳ ମାୟାକୁ ଲକ୍ଷ୍ୟ କରି କୁହାଯାଇଅଛି,

କଲ୍ପିତ ପ୍ରକୃତରେ ପରମେଶ୍ୱରଙ୍କୁ ସୁଖ ଦୁଃଖ ବା ପାପ ପୁଣ୍ୟର କର୍ତ୍ତା ବୋଲି ମଣିବା କେବଳ ଭ୍ରମ ଅଟେ । ୧୫ ।

ଶ୍ଳୋକଃ ।

ଜ୍ଞାନେନ ତୁ ତଦଜ୍ଞାନଂ, ଯେଷାଂ ନାଶିତ-ମାତ୍ମନଃ ।
ତେଷାମାଦିତ୍ୟବଜ୍‌ଜ୍ଞାନଂ, ପ୍ରକାଶୟତି ତତ୍ପରଂ । ୧୬ ।

ଅନ୍ୱୟଃ ।

ଯେଷାଂ ଆତ୍ମନଃ ଜ୍ଞାନେନ ତତ୍ ଅଜ୍ଞାନଂ ନାଶିତଂ, ତେଷାଂ ଜ୍ଞାନଂ ଆଦିତ୍ୟବତ୍ ତତ୍ ପରଂ ପ୍ରକାଶୟତି । ୧୬ ।

ଟୀକା ।

ଜ୍ଞାନେନତୁ ନ ମୁହ୍ୟନ୍ତୀତ୍ୟାହ, ଜ୍ଞାନେନେତି । ଆତ୍ମନୋଭଗବତୋଜ୍ଞାନେନ ଯେଷାଂ ତତ୍ ନୈଷ୍ଟମ୍ୟାପଲମ୍ଭକମଜ୍ଞାନଂ ନାଶିତଂ ତଜ୍‌ଜ୍ଞାନଂ ତେଷାମଜ୍ଞାନଂ ନାଶୟିତ୍ୱା ତତ୍ ପରଂ ପରିପୂର୍ଣ୍ଣମୀଶ୍ୱରସ୍ୟ ରୂପଂ ପ୍ରକାଶୟତି ଯଥା ଆଦିତ୍ୟ ସ୍ତମୋନିରସ୍ୟ ସମସ୍ତଂ ବସ୍ତୁଜାତଂ ପ୍ରକାଶୟତି ତଦ୍ୱତ୍ । ୧୬ ।

ପଦବ୍ୟାଖ୍ୟା ।

ଜ୍ଞାନେନ ତୁ—ଜ୍ଞାନଦ୍ୱାରା, ତତ୍ ଅଜ୍ଞାନଂ—ସେହି ଅଜ୍ଞାନ, ଯେଷାଂ—ଯେଉଁମାନଙ୍କର, ନାଶିତଂ—ବିନାଶ ପ୍ରାପ୍ତ ହୁଏ, ଆତ୍ମନଃ—ଆପଣାର, ତେଷାଂ—ସେମାନଙ୍କର, ଆଦିତ୍ୟବତ୍—ସୂର୍ଯ୍ୟଙ୍କ ପରି, ଜ୍ଞାନଂ—ଜ୍ଞାନ, ପ୍ରକାଶୟତି—ପ୍ରକାଶ କରେ, ତତ୍ ପରଂ—ସେହି ଈଶ୍ୱରଙ୍କ ପରିପୂର୍ଣ୍ଣ ରୂପକୁ । ୧୬ ।

ଅନୁବାଦ ।

ଆତ୍ମଜ୍ଞାନଦ୍ୱାରା ଯେଉଁମାନଙ୍କର ସେହି ଅଜ୍ଞାନ ବିନଷ୍ଟ ହୋଇଯାଏ, ସେମାନଙ୍କର ସେହି ଆତ୍ମଜ୍ଞାନ ସୂର୍ଯ୍ୟଙ୍କ ପରି ବ୍ରହ୍ମସ୍ୱରୂପକୁ ପ୍ରକାଶ କରେ । ୧୬ ।

ଭାବବ୍ୟାଖ୍ୟା ।

ସୂର୍ଯ୍ୟକିରଣଦ୍ୱାରା ଜଳୀୟ ବାଷ୍ପ ଉପରକୁ ଉଠି ଶୀତଳବାୟୁ ସଂଯୋଗରେ ମେଘରୂପରେ ପରିଣତ ହୋଇ ସେହି ଜନ୍ମଦାତା ସୂର୍ଯ୍ୟଙ୍କୁ ଯେପରି ଆବରଣ କରେ, ଆତ୍ମାର ଆଶ୍ରୟରେ ରହିଥିବା ଅଜ୍ଞାନ, ସେହିପରି ଆତ୍ମାକୁ ଆବୃତ କରେ । ସାଧନରୂପ ବାୟୁଦ୍ୱାରା ଅଜ୍ଞାନରୂପ ମେଘ ଦୂରୀକୃତ ହେଲେ ସୂର୍ଯ୍ୟସ୍ୱରୂପ ଆତ୍ମଜ୍ଞାନ ପ୍ରକାଶିତ ହୁଏ । ସୂର୍ଯ୍ୟାଲୋକରେ ସମସ୍ତ ପଦାର୍ଥ ଯେପରି ଉତ୍ତମରୂପେ ଦେଖାଯାଏ, ସେହିପରି ଜ୍ଞାନାଲୋକଦ୍ୱାରା ପରମାତ୍ମାଙ୍କ ସାକ୍ଷାତ୍କାର ଲାଭ କରାଯାଏ ।

ଜ୍ଞାନ ଦୁଇପ୍ରକାର, ପରୋକ୍ଷଜ୍ଞାନ ଓ ଅପରୋକ୍ଷଜ୍ଞାନ । ଦୂରସ୍ଥିତ ବା ତତ୍ତ୍ୱଜ୍ଞ ବ୍ୟକ୍ତି କଥିତ ବାକ୍ୟଦ୍ୱାରା ଯେଉଁ ଜ୍ଞାନ ଜନ୍ମେ ତାକୁ ପରୋକ୍ଷଜ୍ଞାନ ବୋଲାଯାଏ । ଯେପରି "ସତ୍ୟଂଜ୍ଞାନମନନ୍ତଂ ବ୍ରହ୍ମ" ଏ ବାକ୍ୟରେ ବ୍ରହ୍ମର ଆଭାସ ବୁଝା ଗଲେ ସୁଦ୍ଧା, ବ୍ରହ୍ମ ଅନୁଭବ ହେଉ ନାହିଁ; ଯେପରି କି ମଝିରେ କିଛି ଆବରଣ ଅଛି, ମାତ୍ର "ତତ୍ତ୍ୱମସି" ଏହି ବାକ୍ୟକୁ ଶ୍ରବଣ ମନନ ଓ ଅଭ୍ୟାସ କଲେ ଏକପ୍ରକାର ଅପୂର୍ବ ଅନୁଭବାତ୍ମକ ଜ୍ଞାନ ଜାତ ହୁଏ, ତାହାକୁ ଅପରୋକ୍ଷ ବା ସାକ୍ଷାତ୍‌ଜ୍ଞାନ ବୋଲାଯାଏ । ଏପରି ଜ୍ଞାନ ଜନ୍ମିଲେ ପରମେଶ୍ୱର ଓ

Digitized by PPRACHIN, SOA

ଆପଣା ମଧ୍ୟରେ କଛି ମାତ୍ର ବ୍ୟବଧାନ ବା ଅନ୍ତର ଭେଦ ବୋଧ ହୁଏ ନାହିଁ "ଅହଂ ବ୍ରହ୍ମାସ୍ମି" ଏହି ଜ୍ଞାନ ଜନ୍ମେ, ଯେପରି ଆତ୍ମା ଓ ପରମାତ୍ମା ମିଶି ଏକାକାର ହୋଇଯାଏ ; ଏହି ଅପରୋକ୍ଷ ଜ୍ଞାନ ଲଭିଲେ ଜୀବର ବ୍ରହ୍ମଦର୍ଶନ ହୁଏ । ୧୬

ଶ୍ଳୋକଃ ।

ତଦ୍‌ବୁଦ୍ଧୟସ୍ତଦାତ୍ମାନସ୍ତନ୍ନିଷ୍ଠାସ୍ତତ୍ପରାୟଣାଃ ।
ଗଚ୍ଛନ୍ତ୍ୟପୁନରାବୃତ୍ତିଂ ଜ୍ଞାନନିର୍ଦ୍ଧୂତକଲ୍ମଷାଃ ॥ ୧୭ ॥

ଅନ୍ୱୟଃ ।

ତଦ୍‌ବୁଦ୍ଧୟଃ ତଦାତ୍ମାନଃ ତନ୍ନିଷ୍ଠାଃ ତତ୍ପରାୟଣାଃ ଜ୍ଞାନନିର୍ଦ୍ଧୂତକଲ୍ମଷାଃ, ଅପୁନରାବୃତ୍ତିଂ ଗଚ୍ଛନ୍ତି । ୧୭ ।

ଟୀକା ।

ଏବମ୍ଭୂତେଶ୍ୱରୋପାସକାନାଂ ଫଳମାହ, ତଦିତି । ତସ୍ମିନ୍ନେବ ବୁଦ୍ଧିର୍ନିଶ୍ଚୟାତ୍ମିକା ଯେଷାଂ, ତସ୍ମିନ୍ନେବ ଆତ୍ମା ମନୋ ଯେଷାଂ, ତସ୍ମିନ୍ନେବ ନିଷ୍ଠା ତାତ୍ପର୍ଯ୍ୟଂ ଯେଷାଂ, ତଦେବ ପରମମୟନମାଶ୍ରୟୋ ଯେଷାଂ, ତତଶ୍ଚ ତତ୍ପ୍ରସାଦଲବ୍ଧେନାତ୍ମଜ୍ଞାନେନ ନିର୍ଦ୍ଧୂତଂ ନିରସ୍ତଂ କଲ୍ମଷଂ ଯେଷାଂ ତେଽପୁନରାବୃତ୍ତିଂ ମୁକ୍ତିଂ ଯାନ୍ତି । ୧୭ ।

ପଦବ୍ୟାଖ୍ୟା ।

ତଦ୍‌ବୁଦ୍ଧୟଃ—ଈଶ୍ୱରଙ୍କଠାରେ ବୁଦ୍ଧିକୁ ନିବିଷ୍ଟ କରିଥିବା ବ୍ୟକ୍ତିମାନେ, ତଦାତ୍ମାନଃ—ଈଶ୍ୱରଙ୍କ ବିଷୟରେ ଯତ୍ନବନ୍ତ, ତନ୍ନିଷ୍ଠାଃ—ଈଶ୍ୱରଙ୍କ ବିଷୟରେ ଶ୍ରଦ୍ଧାବନ୍ତ, ତତ୍ପରାୟଣାଃ—କେବଳ ଈଶ୍ୱରଙ୍କ ଆଶ୍ରିତ, ଗଚ୍ଛନ୍ତି—ପ୍ରାପ୍ତ ହୁଅନ୍ତି, ଅପୁନରାବୃତ୍ତିଂ—ମୋକ୍ଷକୁ, ଜ୍ଞାନନିର୍ଦ୍ଧୂତକଲ୍ମଷାଃ—ଜ୍ଞାନଦ୍ୱାରା ଯେଉଁମାନଙ୍କ ପାପ ବିନଷ୍ଟ ହୋଇଅଛି । ୧୭ ।

ଅନୁବାଦ ।

ଯେଉଁମାନଙ୍କର ଈଶ୍ୱରଙ୍କଠାରେ ଅଟଳବୁଦ୍ଧି, ଯେଉଁମାନଙ୍କର ଈଶ୍ୱରଙ୍କପ୍ରତି ଯତ୍ନ, ଯେଉଁମାନଙ୍କର ଈଶ୍ୱରଙ୍କଠାରେ ନିଷ୍ଠା ଏବଂ ଯେଉଁମାନଙ୍କର ଈଶ୍ୱର ପରମ ଆଶ୍ରୟ, ସେହିମାନେ ଜ୍ଞାନଦ୍ୱାରା ପାପଶୂନ୍ୟ ହୋଇ ମୋକ୍ଷ ପ୍ରାପ୍ତ ହୁଅନ୍ତି । ୧୭ ।

ବିଶଦବ୍ୟାଖ୍ୟା ।

ବିବେକଦ୍ୱାରା ଯେଉଁମାନଙ୍କର ବୁଦ୍ଧି ଈଶ୍ୱରଙ୍କପ୍ରତି କୌଣସି ପ୍ରକାର ସନ୍ଦେହଯୁକ୍ତ ନ ହୋଇ ସ୍ଥିର ହୋଇଅଛି, ଈଶ୍ୱରଙ୍କଠାରେ ଯାହାଙ୍କର ଯତ୍ନ, ଅଥବା ଈଶ୍ୱର ଓ ଆତ୍ମା ମଧ୍ୟରେ ଯାହାଙ୍କର ପ୍ରଭେଦ ନାହିଁ, ଯେଉଁମାନେ ସମସ୍ତ କର୍ମ କେବଳ ଈଶ୍ୱରନିଷ୍ଠାରେ କରନ୍ତି, ପୁଣି ଯେଉଁମାନେ କର୍ମଫଳରେ କାମନା ନ କରି କେବଳ ବ୍ରହ୍ମଭାବ ବିଷୟରେ ତତ୍ପର, ସେମାନଙ୍କର ଆଉ ଜନ୍ମମରଣ ହୁଏ ନାହିଁ, କାହିଁକି ନା ଜ୍ଞାନଦ୍ୱାରା ସେମାନଙ୍କର ପାପ-ପୁଣ୍ୟରୂପ ଜନ୍ମାନ୍ତର ଗ୍ରହଣର ମୂଳସୂତ୍ର ବିନଷ୍ଟ ହୋଇଯାଏ । ୧୭ ।

ଶ୍ଳୋକଃ ।

ବିଦ୍ୟାବିନୟସମ୍ପନ୍ନେ, ବ୍ରାହ୍ମଣେ ଗବି ହସ୍ତିନି ।
ଶୁନି ଚୈବ ଶ୍ୱପାକେ ଚ, ପଣ୍ଡିତାଃ ସମଦର୍ଶିନଃ । ୧୮ ।

Digitized by PPRACHIN, SOA

ତ ତସ୍ମାତ୍ତେ ସମଦର୍ଶିନୋ ବ୍ରହ୍ମଣ୍ୟେବ ସ୍ଥିତା ବ୍ରହ୍ମଭାବଂ ପ୍ରାପ୍ତା ଇତ୍ୟର୍ଥଃ, ଗୌତମୋକ୍ତସ୍ତୁ ଦୋଷୋ ବ୍ରହ୍ମଭାବପ୍ରାପ୍ତେଃ ପୂର୍ବମେବ ପୂଜାୟ ଇତି ପୂର୍ବଭାବସ୍ଥାବଣାତ୍ । ୧୯ ।

ପଦବ୍ୟାଖ୍ୟା ।

ଇହ ଏବ—ଏହି ଲୋକରେ କେବଳ, ତୈଃ ଜଗତଃ ସର୍ଗଃ—ସେମାନେ ସଂସାରକୁ ଜୟ କରି ଅଛନ୍ତି, ଯେଷାଂ—ଯେଉଁମାନଙ୍କର, ସାମ୍ୟେ ସ୍ଥିତଂ ମନଃ—ସମଭାବରେ (ବ୍ରହ୍ମଭାବରେ) ମନ ଥାଏ, ନିର୍ଦୋଷଂ—ନିର୍ଦୋଷ ରହିତ, ହି—ଯେଉଁ ହେତୁରୁ, ସମଂ—ସର୍ବତ୍ର ସମାନ, ବ୍ରହ୍ମ—ପରମାତ୍ମା, ତସ୍ମାତ୍—ସେହି ହେତୁରୁ, ବ୍ରହ୍ମଣି ତେ ସ୍ଥିତାଃ—ସେମାନେ ବ୍ରହ୍ମରେ ସ୍ଥିତ ଥାନ୍ତି । ୧୯ ।

ଅନୁବାଦ ।

ଯେଉଁମାନଙ୍କର ମନ ସମଭାବରେ ଥାଏ, ସେମାନେ ଜୀବତ ଅବସ୍ଥାରେ ମଧ୍ୟ ସଂସାରକୁ ଜୟ କରନ୍ତି ଏବଂ ବ୍ରହ୍ମ ନିର୍ଦୋଷ ଓ 'ସମ' ସ୍ୱରୂପ ବୋଲି ସେମାନେ ବ୍ରହ୍ମରେ ସ୍ଥାନପ୍ରାପ୍ତ ହୁଅନ୍ତି । ୧୯ ।

ବିଶଦବ୍ୟାଖ୍ୟା ।

ଯେଉଁମାନେ ସଂସାରର ପ୍ରତ୍ୟେକ ପଦାର୍ଥକୁ ବ୍ରହ୍ମଭାବରେ ଦେଖନ୍ତି; ଅର୍ଥାତ୍ ବ୍ରହ୍ମ ଓ ସଂସାରର କୌଣସି ପଦାର୍ଥ ମଧ୍ୟରେ ପ୍ରଭେଦ ନ ଥିବାର ବୁଝି ପାରନ୍ତି, ସେମାନେ ଜୀବତ ଅବସ୍ଥାରେ ଥାଇଁ ସୁଦ୍ଧା, ସଂସାରକୁ ଜୟ କରନ୍ତି । କାହିଁକି ନା ବ୍ରହ୍ମ ନିର୍ଦୋଷ ଓ ସର୍ବତ୍ର ସମସ୍ୱରୂପ, ସେମାନେ 'ସମ' ଭାବରେ ବା ବ୍ରହ୍ମଭାବରେ ଅବସ୍ଥିତ ଥିବାରୁ ଅର୍ଥାତ୍ ପ୍ରତ୍ୟେକ ପଦାର୍ଥକୁ ବ୍ରହ୍ମ ବୋଲି ମଣୁଥିବାରୁ ସେହି ବ୍ରହ୍ମରେ ସ୍ଥିତ ହୁଅନ୍ତି; ଅର୍ଥାତ୍ ବ୍ରହ୍ମଭାବ ପ୍ରାପ୍ତ ହୁଅନ୍ତି ।

କେହି କେହି ଏପରି ଆପତ୍ତି କରି ପାରନ୍ତି, ଯେ ବିଷମରେ ସମଦୃଷ୍ଟି କରିବାର ନିଷେଧ ଥିବାସ୍ଥଳେ ସର୍ବତ୍ର ସମଦର୍ଶୀ ଲୋକଙ୍କୁ 'ପଣ୍ଡିତ' ବୋଲା ଯିବ କିପରି? ବିଶେଷତଃ ଗୌତମଙ୍କ ମତରେ (ଟୀକାରେ ସଂସ୍କୃତ ଦେଖ) ଯେଉଁମାନେ ବିଷମରେ ସମାନ ଓ ସମରେ ବିଷମ ପୂଜା କରନ୍ତି, ସେମାନେ ଇହ ଓ ପରକାଳରୁ ଭ୍ରଷ୍ଟ ହୁଅନ୍ତି ଇତ୍ୟାଦି । ମାତ୍ର ତାହାର ଉତ୍ତର ଅତି ସହଜ; ଅର୍ଥାତ୍ ଯେତେଦିନ ଯାଏ ପ୍ରକୃତ ବ୍ରହ୍ମଜ୍ଞାନ ଉଦୟ ହୋଇ ନ ଥିବ ବା ଦ୍ୱୈତଭାବ ମନରେ ଥିବ, ତେତେ ଦିନ ଯାଏ ସମାନକୁ ବିଷମ ବା ବିଷମକୁ ସମାନଭାବରେ ପୂଜା କଲେ ଇହ ଓ ପର କାଳ ନଷ୍ଟ ହେବ, ମାତ୍ର ବ୍ରହ୍ମଜ୍ଞାନ ହେଲେ ଆଉ ବିଷମଭାବ ରହି ନ ପାରେ । ଗୌତମଙ୍କ ମତରେ 'ପୂଜା କରିବା' ଶବ୍ଦ ଥିବାରୁ ତାହା ଜ୍ଞାନ ଉଦୟର ପୂର୍ବର କଥା ବୋଲି ସ୍ପଷ୍ଟ ଜଣା ଯାଉଅଛି । ୧୯ ।

ଶ୍ଳୋକଃ ।

ନ ପ୍ରହୃଷ୍ୟେତ୍ ପ୍ରିୟଂ ପ୍ରାପ୍ୟ, ନୋଦ୍ୱିଜେତ୍ପ୍ରାପ୍ୟ ଚାପ୍ରିୟଂ ।
ସ୍ଥିରବୁଦ୍ଧିରସମ୍ମୂଢୋ, ବ୍ରହ୍ମବିଦ୍‌ବ୍ରହ୍ମଣି ସ୍ଥିତଃ । ୨୦ ।

ଅନ୍ୱୟଃ ।

ବ୍ରହ୍ମବିତ୍ ବ୍ରହ୍ମଣି ସ୍ଥିତଃ ପ୍ରିୟଂ ପ୍ରାପ୍ୟ ନ ପ୍ରହୃଷ୍ୟେତ୍, ଚ ଅପ୍ରିୟଂ ପ୍ରାପ୍ୟ ନ ଉଦ୍ୱିଜେତ୍ (ଯତଃ) ସ୍ଥିରବୁଦ୍ଧିଃ ଅସମ୍ମୂଢଃ । ୨୦ ।

Digitized by PPRACHIN, SOA

## ଟୀକା ।

ବ୍ରହ୍ମପ୍ରାପ୍ତସ୍ୟ ଲକ୍ଷଣମାହ, ନ ପ୍ରହୃଷ୍ୟେଦିତି । ବ୍ରହ୍ମବିଦ୍ଭୂତ୍ୱା ବ୍ରହ୍ମଣ୍ୟେବ ଯଃ ସ୍ଥିତଃ ସ ପ୍ରିୟଂ ପ୍ରାପ୍ୟ ନ ପ୍ରହୃଷ୍ୟେତ୍, ନ ପ୍ରହୃଷ୍ଟୋହର୍ଷବାନ୍ ସ୍ୟାତ୍, ଅପ୍ରିୟଂ ପ୍ରାପ୍ୟ ଚ ନୋଦ୍ୱିଜେତ୍, ନ ବଷୀଦେଦିତ୍ୟର୍ଥଃ, ଯତଃ ସ୍ଥିରବୁଦ୍ଧିଃ ସ୍ଥିରା ନଶ୍ଚଳା ବୁଦ୍ଧିର୍ଯସ୍ୟ ତତ୍ର ହେତୁଃ ଯତୋଽସମ୍ମୂଢ଼ଃ ନବୃତ୍ତମୋହଃ । ୨୦ ।

## ପଦବ୍ୟାଖ୍ୟା ।

ନ ପ୍ରହୃଷ୍ୟେତ୍—ହୃଷ୍ଟ ହୁଅନ୍ତି ନାହିଁ, ପ୍ରିୟଂ ପ୍ରାପ୍ୟ—ପ୍ରିୟପଦାର୍ଥ ଲାଭ କରି, ନୋଦ୍ୱିଜେତ୍—ଦୁଃଖିତ ହୁଅନ୍ତି ନାହିଁ, ପ୍ରାପ୍ୟ ଚ ଅପ୍ରିୟଂ—ଅପ୍ରିୟ ପଦାର୍ଥ ପାଇକରି ମଧ୍ୟ, ସ୍ଥିରବୁଦ୍ଧିଃ—ନଶ୍ଚଳବୁଦ୍ଧି, ଅସଂମୂଢଃ—ମୋହଶୂନ୍ୟ, ବ୍ରହ୍ମବିତ୍—ବ୍ରହ୍ମଜ୍ଞାନୀ, ବ୍ରହ୍ମଣି ସ୍ଥିତଃ—ବ୍ରହ୍ମନଷ୍ଠ । ୨୦ ।

## ଅନୁବାଦ ।

ବ୍ରହ୍ମଜ୍ଞାନୀ ଓ ବ୍ରହ୍ମନଷ୍ଠ ବ୍ୟକ୍ତି ପ୍ରିୟବସ୍ତୁ ଲାଭରେ ଆନନ୍ଦିତ ବା ଅପ୍ରିୟବସ୍ତୁ ଲାଭରେ ଅସ୍ଥିର ହୁଅନ୍ତି ନାହିଁ । କାହିଁକି ନା ତାଙ୍କର ବୁଦ୍ଧି ସ୍ଥିର ହୋଇଥିବାରୁ ସେ ମୋହପ୍ରାପ୍ତ ହୁଅନ୍ତି ନାହିଁ । ୨୦ ।

## ବଶଦବ୍ୟାଖ୍ୟା ।

ଯାହାଙ୍କର ନର୍ମଳ ବ୍ରହ୍ମଜ୍ଞାନ ଜନ୍ମିଅଛି, ଯେ ସବୁ ପଦାର୍ଥରେ ସମଦର୍ଶୀ ହେବାରୁ ବ୍ରହ୍ମ-ଭାବରେ ଅବସ୍ଥାନ କରୁଅଛନ୍ତି ଓ ଯାହାଙ୍କର ବ୍ରହ୍ମରେ ବୁଦ୍ଧି ସ୍ଥିର ଅର୍ଥାତ୍ ଯେ ବ୍ରହ୍ମ ଭନ୍ନ ଆଉ କୌଣସି ପଦାର୍ଥରେ ମନୋବୃତ୍ତି ଲଗାନ୍ତି ନାହିଁ, ପୁଣି ଯେ ମୋହବର୍ଜିତ ଅର୍ଥାତ୍ ଏ ପଦାର୍ଥ ମୋହର, ମୁଁ ଅମୁକ କାର୍ଯ୍ୟ କଲି ଇତ୍ୟାଦି ଅଭିମାନବର୍ଜିତ, ତାଙ୍କର କୌଣସି ପଦାର୍ଥ ପ୍ରିୟ ବା ଅପ୍ରିୟ ନୁହେ । ସୁତରାଂ ସେ ଏକ ପଦାର୍ଥ ପ୍ରାପ୍ତିରେ ଆନନ୍ଦିତ ଓ ଅପର ପଦାର୍ଥ ପ୍ରାପ୍ତିରେ ଦୁଃଖିତ ବା ଅସ୍ଥିର ହେବେ କପରି ? । ୨୦ ।

## ଶ୍ଲୋକଃ ।

* ବାହ୍ୟସ୍ପର୍ଶେଷ୍ୱସକ୍ତାତ୍ମା, ବିନ୍ଦତ୍ୟାତ୍ମନି ଯତ୍ସୁଖଂ ।
ସ ବ୍ରହ୍ମଯୋଗଯୁକ୍ତାତ୍ମା, ସୁଖମକ୍ଷୟମଶ୍ନୁତେ । ୨୧ ।

## ଅନ୍ୱୟଃ ।

ବାହ୍ୟସ୍ପର୍ଶେଷୁ ଅସକ୍ତାତ୍ମା, ଆତ୍ମନି ଯତ୍ ସୁଖଂ (ତତ୍) ବିନ୍ଦତି । (ତଦନୁ) ସଃ ବ୍ରହ୍ମଯୋଗଯୁକ୍ତାତ୍ମା ଅକ୍ଷୟଂ ସୁଖଂ ଅଶ୍ନୁତେ । ୨୧ ।

## ଟୀକା ।

ମୋହନବୃତ୍ତ୍ୟା ବୁଦ୍ଧିସ୍ଥୈର୍ଯ୍ୟହେତୁମାହ, ବାହ୍ୟେତି । ଇନ୍ଦ୍ରିୟୈଃ ସ୍ପୃଶ୍ୟନ୍ତ ଇତି ସ୍ପର୍ଶାଃ ବିଷୟାଃ ବାହ୍ୟେନ୍ଦ୍ରିୟ-ବିଷୟେଷ୍ୱସକ୍ତାତ୍ମା ଅନାସକ୍ତଚିତ୍ତଃ ଆତ୍ମନ୍ୟନ୍ତଃକରଣେ ଯଦୁପଶମାତ୍ମକଂ ସାତ୍ତ୍ୱିକସୁଖଂ ତଦ୍ବିନ୍ଦତି ଲଭତେ ସ ଚୈପଶ-ମସୁଖଂ ଲବ୍ଧ୍ୱା ବ୍ରହ୍ମଣି ଯୋଗେନ ସମାଧିନା ଯୁକ୍ତସ୍ତଦୈକ୍ୟଂ ପ୍ରାପ୍ତ ଆତ୍ମା ଯସ୍ୟ ସୋଽକ୍ଷୟଂ ସୁଖମଶ୍ନୁତେ ପ୍ରାପ୍ନୋତି । । ୨୧ ।

## ପଦବ୍ୟାଖ୍ୟା ।

ବାହ୍ୟସ୍ପର୍ଶେଷୁ—ବାହ୍ୟ ଇନ୍ଦ୍ରିୟମାନଙ୍କର ବିଷୟରେ, ଅସକ୍ତାତ୍ମା—ଅନାସକ୍ତଚିତ୍ତ, ବିନ୍ଦତି—ପ୍ରାପ୍ତ ହୁଅନ୍ତି,

Digitized by PPRACHIN, SOA

ଆତ୍ମନି—ଅନ୍ତଃକରଣରେ, ଯତ୍ ସୁଖଂ—ଯେଉଁ ସୁଖ (ତାକୁ), ସଃ ବ୍ରହ୍ମଯୋଗଯୁକ୍ତାତ୍ମା—ସେ ବ୍ରହ୍ମଭାବନାରେ ନିବିଷ୍ଟଚିତ୍ତ ହେଲେ, ସୁଖମକ୍ଷୟଂ—ଅକ୍ଷୟ ସୁଖକୁ, ଅଶ୍ନୁତେ—ପ୍ରାପ୍ତ ହୁଅନ୍ତି । ୨୧ ।

ଅନୁବାଦ ।

ବାହ୍ୟ ବିଷୟରେ ଅସକ୍ତ ନ ହେବା ବ୍ୟକ୍ତି ଆତ୍ମସୁଖ ଭୋଗ କରନ୍ତି, (ତତ୍ପରେ) ସେ ବ୍ରହ୍ମଭାବନାରେ ନିବିଷ୍ଟଚିତ୍ତ ହେଲେ ଅକ୍ଷୟସୁଖ ପ୍ରାପ୍ତ ହୁଅନ୍ତି । ୨୧ ।

ବିଶଦବ୍ୟାଖ୍ୟା ।

ବାହ୍ୟ ବିଷୟରେ ଅର୍ଥାତ୍ ଶବ୍ଦ,ସ୍ପର୍ଶ,ରୂପ,ରସ,ଗନ୍ଧ ପ୍ରଭୃତିରେ ଆସକ୍ତ ହେଲେ ମନରେ କଦାପି ଶାନ୍ତି ଜାତ ହୁଏ ନାହିଁ, କାହିଁକି ନା କାମ୍ୟ ପଦାର୍ଥକୁ ଯେତେ ଉପଭୋଗ କଲେ ସୁଦ୍ଧା, ତହିଁରୁ ମନ ନିବୃତ୍ତ ନ ହୋଇ ନୂତନ୨ ଭୋଗ୍ୟ ପଦାର୍ଥ ଖୋଜିବାରେ ପ୍ରବୃତ୍ତ ହୁଏ । ଏପରି ସ୍ଥଳେ ଅନ୍ତଃକରଣରେ ନିବୃତ୍ତିଜନିତ ସୁଖ ଲାଭ ହୁଏ ନାହିଁ । ମାତ୍ର ଯେଉଁ ବ୍ୟକ୍ତି ସେହି ବାହ୍ୟ ବିଷୟସୁଖ ଅର୍ଥାତ୍ ଶବ୍ଦ ସ୍ପର୍ଶାଦିରେ ଅନାସକ୍ତ, ସେ ଆତ୍ମାରେ ଶାନ୍ତିସୁଖ ଭୋଗ କରନ୍ତି । ଆତ୍ମାରେ ଶାନ୍ତି ଜାତ ହେଲେ ସେ କ୍ରମେ୨ ବ୍ରହ୍ମଯୋଗରେ ଅନ୍ତଃକରଣକୁ ଯୁକ୍ତ କରି ପାରନ୍ତି ଏବଂ ତଦ୍ୱାରା ଅକ୍ଷୟସୁଖ ପ୍ରାପ୍ତ ହୁଅନ୍ତି । ଫଳକଥା ଏହି କି ବାହ୍ୟସୁଖରେ ଆସକ୍ତ ବ୍ୟକ୍ତିର ଶାନ୍ତିସୁଖ ନାହିଁ । ଅନାସକ୍ତ ବ୍ୟକ୍ତିଙ୍କର ଶାନ୍ତିଜନିତ ଆତ୍ମସୁଖ ଲାଭ ହୁଏ ଏବଂ ବାହ୍ୟ ବିଷୟରେ ଅନାସକ୍ତଚିତ୍ତ ଓ ବ୍ରହ୍ମସମାଧିରେ ନିବିଷ୍ଟ ଚିତ୍ତ ବ୍ୟକ୍ତିଙ୍କର ଅକ୍ଷୟସୁଖ ଲାଭ ହୁଏ । ୨୧ ।

ଶ୍ଳୋକଃ ।

* ଯେ ହି ସଂସ୍ପର୍ଶଜା ଭୋଗା,ଦୁଃଖଯୋନୟ ଏବ ତେ ।
ଆଦ୍ୟନ୍ତବନ୍ତଃ କୌନ୍ତେୟ, ନ ତେଷୁ ରମତେ ବୁଧଃ । ୨୨ ।

ଅନ୍ୱୟଃ ।

ହେ କୌନ୍ତେୟ ! ସଂସ୍ପର୍ଶଜାଃ ଯେ ହି ଭୋଗାଃ ତେ ଦୁଃଖଯୋନୟଃ ଏବ ହି ଆଦ୍ୟନ୍ତବନ୍ତଃ । ତେଷୁ ବୁଧଃ ନ ରମତେ । ୨୨ ।

ଟୀକା ।

ନନୁ ପ୍ରିୟବିଷୟଭୋଗାନାମପି ନିବୃତ୍ତେଃ କଥଂ ମୋକ୍ଷଃ ପୁରୁଷାର୍ଥଃ ସ୍ୟାଦିତ୍ୟାହ, ଯେ ହୀତି । ସଂସ୍ପୃଶନ୍ତି ଇତି ସଂସ୍ପର୍ଶା ବିଷୟାଃ ତେଭ୍ୟୋଜାତା ଯେ ଭୋଗାଃ ସୁଖାନି ତେ ହି ବର୍ତ୍ତମାନକାଲେଽପି ସ୍ପର୍ଦ୍ଧାସୂୟାଦିବ୍ୟାପ୍ତତ୍ୱାତ୍ ଦୁଃଖସ୍ୟୈବ ଯୋନୟଃ କାରଣଭୂତାଃ ତଥାଦିମନ୍ତୋଽନ୍ତବନ୍ତଶ୍ଚ ଅତୋ ବିବେକୀ ତେଷୁ ନ ରମତେ । ୨୨ ।

ପଦବ୍ୟାଖ୍ୟା ।

ଯେ—ଯେଉଁ, ହି—ନିଶ୍ଚୟ, ସଂସ୍ପର୍ଶଜାଃ—ବିଷୟଜନିତ, ଭୋଗାଃ—ସୁଖମାନ, ଦୁଃଖଯୋନୟଃ—ଦୁଃଖର କାରଣ, ଏବ—କେବଳ, ତେ—ସେମାନେ, ଆଦ୍ୟନ୍ତବନ୍ତଃ—ଜନ୍ମମରଣଶୀଳ—ଅନିତ୍ୟ, କୌନ୍ତେୟ—ହେ ଅର୍ଜ୍ଜୁନ !, ନ ତେଷୁ ରମତେ—ସେମାନଙ୍କରେ ଆସକ୍ତ ହୁଅନ୍ତି ନାହିଁ, ବୁଧଃ—ଜ୍ଞାନୀ । ୨୨ ।

Digitized by PPRACHIN, SOA

### ଅନୁବାଦ ।

ହେ ଅର୍ଜୁନ ! ବିଷୟଜନିତ ସୁଖସବୁ କେବଳ ଦୁଃଖର କାରଣ ଓ ଅନିତ୍ୟ ଅଟେ । (ଅତଏବ) ସେଥିରେ ଜ୍ଞାନୀ ବ୍ୟକ୍ତି ଆସକ୍ତ ହୁଅନ୍ତି ନାହିଁ । ୨୨ ।

### ବିଶଦବ୍ୟାଖ୍ୟା ।

ରୂପ ସନ୍ଦର୍ଶନରେ ନେତ୍ରର ଯେଉଁ ସୁଖ, କିମ୍ବା ରସାଦ ସ୍ପର୍ଶରେ ଜିହ୍ୱାଦିର ଯେଉଁ ସୁଖ, ତାହା ପରିଣାମରେ ଦୁଃଖର କାରଣ । କାହିଁକି ନା କ୍ଷଣିକ ସୁଖଲାଲସାରେ ମନ ପ୍ରମତ୍ତ ହେଲେ ନିତ୍ୟ ନୂତନ ନୂତନ ସୁଖ ପାଇବାକୁ ବ୍ୟଗ୍ର ହୁଏ ଓ କୌଣସି କାରଣରୁ ତହିଁରେ ବିଘ୍ନ ହେଲେ ମନରେ ନାନାପ୍ରକାର ଦୁଃଖ ହୁଏ ଏବଂ ଇନ୍ଦ୍ରିୟମାନଙ୍କର ଅତିଶକ୍ତ ସେବାରେ, ଯେ କେତେପ୍ରକାର ଶାରୀରିକ ଓ ମାନସିକ ଦୁଃଖ ହୁଏ, ତାହାର ଶତ ଶତ ଉଦାହରଣ ପ୍ରତିଦିବସ ଦେଖା ଯାଉଅଛି । ଅତଏବ ବିଷୟଜନିତ ସୁଖ, ଯେ ଦୁଃଖର କାରଣ, ତହିଁରେ କି ଆଉ ସନ୍ଦେହ ଅଛି ? ପୁଣି ସେହି ସୁଖ ଅଳ୍ପକାଳସ୍ଥାୟୀ, ଅର୍ଥାତ୍ ତାହା ଉପଭୋଗ କରିବା ପୂର୍ବରୁ ଯେପରି ସୁଖର କଳ୍ପନା କରି ଯାଇଥାଏ, ଉପଭୋଗ ପରେ ଆଉ ସେଥିରେ ସେପରି ସୁଖ ବୋଧ ହୁଏ ନାହିଁ, ବରଂ ତାହା ତ୍ୟାଗ କରି ସେହି ଶ୍ରେଣୀର ଅନ୍ୟ ସୁଖ ପାଇବାକୁ ମନ ଅସ୍ଥିର ହୋଇଉଠେ । ବିଷୟଜନିତ ସୁଖ ଏହିପରି ଦୁଃଖଜନକ ଓ ଅନିତ୍ୟ ଥିବାରୁ ଜ୍ଞାନୀ ବ୍ୟକ୍ତି ସେଥିରେ ଆସକ୍ତ ହୁଅନ୍ତି ନାହିଁ । ୨୨ ।

### ଶ୍ଲୋକଃ ।

* ଶକ୍ନୋତୀହୈବ ଯଃ ସୋଢୁଂ, ପ୍ରାକ୍ ଶରୀରବିମୋକ୍ଷଣାତ୍ ।
କାମକ୍ରୋଧୋଦ୍ଭବଂ ବେଗଂ, ସ ଯୁକ୍ତଃ ସ ସୁଖୀ ନରଃ । ୨୩ ।

### ଅନ୍ୱୟଃ ।

ଯଃ ଶରୀରବିମୋକ୍ଷଣାତ୍ ପ୍ରାକ୍ ଇହ ଏବ କାମକ୍ରୋଧୋଦ୍ଭବଂ ବେଗଂ ସୋଢୁଂ ଶକ୍ନୋତି, ସଃ ନରଃ ଯୁକ୍ତଃ ସଃ ସୁଖୀ । ୨୩ ।

### ଟୀକା ।

ତସ୍ମାନ୍ମୋକ୍ଷ ଏବ ପରମଃ ପୁରୁଷାର୍ଥସ୍ତସ୍ୟ ଚ କାମକ୍ରୋଧବେଗୋଽତିପ୍ରତିପକ୍ଷୋଽତସ୍ତତ୍ସହନସମର୍ଥ ଏବ ମୋକ୍ଷଭାଗିତ୍ୟାହ, ଶକ୍ନୋତୀହୈବେତି । କାମାତ୍ କ୍ରୋଧାଚ୍ଚୋଦ୍ଭବତି ଯୋବେଗଃ ମନୋନେତ୍ରାଦିକ୍ଷୋଭଲକ୍ଷଣସ୍ତମିହୈବ ତଦୁଦ୍ଭବସମୟ ଏବ ଯୋନରଃ ସୋଢୁଂ ପ୍ରତିରୋଦ୍ଧୁଂ ଶକ୍ନୋତି, ତଦପି ନ କ୍ଷଣମାତ୍ରଂ କିନ୍ତୁ ଶରୀରବିମୋକ୍ଷଣାତ୍ ପ୍ରାକ୍ ଦେହପାତାବଧ୍ୟର୍ଥଃ ଯ ଏବମ୍ଭୂତଃ ସ ଏବ ଯୁକ୍ତଃ ସମାହିତଃ ସୁଖୀ ଚ ଭବତି ନାନ୍ୟଃ ଯଦ୍ବା ମରଣାଦୂର୍ଦ୍ଧ୍ୱଂ ବିଳପନ୍ତୀଭିର୍ୟୁବତିଭିରାଲିଙ୍ଗ୍ୟମାନୋଽପି ପୁତ୍ରାଦିଭିର୍ଦହ୍ୟମାନୋଽପି ଯଥା ପ୍ରାଣଶୂନ୍ୟଃ କାମକ୍ରୋଧବେଗଂ ସହତେ ତଥା ମରଣାତ୍ ପ୍ରାଗପି ଜୀବନ୍ନେବ ଯଃ ସହତେ ସ ଏବ ଯୁକ୍ତଃ ସୁଖୀ ଚେତ୍ୟର୍ଥଃ ତଦୁକ୍ତଂ ବଶିଷ୍ଠେନ "ପ୍ରାଣେ ଗତେ ଯଥା ଦେହଃ ସୁଖଦୁଃଖେ ନ ବିନ୍ଦତି । ତଥା ଚେତ୍ ପ୍ରାଣଯୁକ୍ତୋଽପି ସ କୈବଲ୍ୟାଶ୍ରମେ ବସେଦିତି" । ୨୩ ।

### ପଦବ୍ୟାଖ୍ୟା ।

ଶକ୍ନୋତି—ସମର୍ଥ ହୁଏ, ଇହ ଏବ—ଇହଲୋକରେ ବା କାଳ ସମୟରେ, ଯଃ ସୋଢୁଂ—ଯେ ସହିବାକୁ, ପ୍ରାକ୍ ଶରୀରବିମୋକ୍ଷଣାତ୍—ଶରୀର ତ୍ୟାଗ ପର୍ଯ୍ୟନ୍ତ, କାମକ୍ରୋଧୋଦ୍ଭବଂ ବେଗଂ—କାମକ୍ରୋଧଜନିତ ବିକାରକୁ, ସ ଯୁକ୍ତଃ—ସେହି ଯୋଗୀ, ସ ସୁଖୀ—ସେ ସୁଖୀ, ନରଃ—ମନୁଷ୍ୟ । ୨୩ ।

Digitized by PPRACHIN, SOA

ଅନୁବାଦ ।

ଯେ ଇହଲୋକରେ ଶରୀର ତ୍ୟାଗ ପର୍ଯ୍ୟନ୍ତ କାମ ଓ କ୍ରୋଧର ବେଗକୁ ସହ୍ୟ କରି ପାରନ୍ତି, ସେହି ମନୁଷ୍ୟ ଯୋଗୀ ଓ ସୁଖୀ ଅଟନ୍ତି । ୨୩ ।

ବିଶଦବ୍ୟାଖ୍ୟା ।

ଇନ୍ଦ୍ରିୟସୁଖକର ପଦାର୍ଥମାନ ପାଇବାକୁ ଯେଉଁ ତୃଷ୍ଣା ବା ଲୋଭ ହୁଏ, ତାହାକୁ 'କାମ' ଆଉ ସେହି କାମ ପୂରଣ କରିବାରେ କିଛି ବାଧା ହେଲେ ମନରେ ଯେଉଁ ଉତ୍ତେଜନା ଜନ୍ମେ, ତାହାକୁ 'କ୍ରୋଧ' ବୋଲାଯାଏ । ସେହି କାମ ଓ କ୍ରୋଧ ଜ୍ଞାନର ଅତ୍ୟନ୍ତ ବିରୋଧୀ । ତାହାକୁ ସହ୍ୟ କରି ପାରିଲେ ମନୁଷ୍ୟ ସହଜରେ ଯୋଗୀ ହୋଇ ପାରେ; ମାତ୍ର କାମ କ୍ରୋଧର ବେଗ ଦୁଇ ଦିନ ଚାରି ଦିନ କି ଦୁଇ ଚାରି ବର୍ଷ ମାତ୍ର ସହିଲେ ହେବ ନାହିଁ, ଶରୀର ତ୍ୟାଗର ପୂର୍ବ ପର୍ଯ୍ୟନ୍ତ ଅର୍ଥାତ୍ ଯେତେଦିନ ଯାଏ ଏହି ଜଗତରେ ଜୀବିତ ଥିବ, ସେତେଦିନ ଯାଏ ଯେଉଁ ବ୍ୟକ୍ତି କାମ ଓ କ୍ରୋଧର ବେଗକୁ ସହ୍ୟ କରି ପାରନ୍ତି, ସେ ଯୋଗୀ ହୋଇ ପାରନ୍ତି ଓ ଯୋଗଯୁକ୍ତ ହେଲେ ଅକ୍ଷୟ ସୁଖରେ ସୁଖୀ ହୁଅନ୍ତି । ତେବେ କେଉଁ ସମୟଠାରୁ ତାହା ସହିବାକୁ ହେବ ? ନା ଉକ୍ତ ବେଗର ଜନ୍ମ ସମୟଠାରୁ ଅର୍ଥାତ୍ କାମ କ୍ରୋଧର ବେଗ ବାହ୍ୟେନ୍ଦ୍ରିୟରେ ପ୍ରବର୍ତ୍ତିତ ନ ହେଉଣୁ ତାକୁ ରୋଧ କରିବାକୁ ହେବ । ଏହି ନିୟମ ଯାବଜ୍ଜୀବନ ପାଳି ପାରିଲେ ଯୋଗସିଦ୍ଧି ଓ ସୁଖଲାଭ ସହଜରେ ହେବ, ଅଥବା ଶରୀରରୁ ପ୍ରାଣତ୍ୟାଗ ପରେ ଯେପରି ଯୁବତୀ ସ୍ତ୍ରୀର ଆଲିଙ୍ଗନରେ ସୁଦ୍ଧା କାମୋଦ୍ରେକ ହୁଏ ନାହିଁ ବା ପୁତ୍ରାଦମାନେ ପୋଡ଼ିଲେ ସୁଦ୍ଧା ଯେପରି କ୍ରୋଧର ଉଦୟ ହୁଏ ନାହିଁ, ସେହିପରି କାମ ଓ କ୍ରୋଧର ବେଗ ସହିବାକୁ ହେବ । ୨୩ ।

ଶ୍ଳୋକଃ ।

* ଯୋଽନ୍ତଃସୁଖୋଽନ୍ତରାରାମସ୍ତଥାନ୍ତର୍ଜ୍ୟୋତିରେବ ଯଃ ।
ସ ଯୋଗୀ ବ୍ରହ୍ମନିର୍ବାଣଂ ବ୍ରହ୍ମଭୂତୋଽଧିଗଚ୍ଛତି । ୨୪ ।

ଅନ୍ୱୟଃ ।

ଯଃ ଅନ୍ତଃସୁଖଃ ଅନ୍ତରାରାମଃ ତଥା ଯଃ ଅନ୍ତର୍ଜ୍ୟୋତିଃ ସଃ ଏବ ଯୋଗୀ ବ୍ରହ୍ମଭୂତଃ (ସନ୍) ବ୍ରହ୍ମନିର୍ବାଣଂ ଅଧିଗଚ୍ଛତି । ୨୪ ।

ଟୀକା ।

ନ କେବଳଂ କାମକ୍ରୋଧ-ବେଗ-ସମ୍ବରଣମାତ୍ରେଣ ମୋକ୍ଷଂ ପ୍ରାପ୍ନୋତି ଅପି ତୁ ଯୋଽନ୍ତରିତି । ଅନ୍ତରାତ୍ମନ୍ୟେବ ସୁଖଂ ଯସ୍ୟ, ନତୁ ବିଷୟେଷୁ, ଅନ୍ତରେବାରାମଃ କ୍ରୀଡା ଯସ୍ୟ, ନ ବହିଃ, ଅନ୍ତରେବ ଜ୍ୟୋତିର୍ଦୃଷ୍ଟିର୍ଯସ୍ୟ, ନ ଗୀତନୃତ୍ୟାଦିଷୁ, ସ ଏବ ବ୍ରହ୍ମଣି ଭୂତଃ ସ୍ଥିତଃ ସନ୍ ବ୍ରହ୍ମଣି ନିର୍ବାଣଂ ଲୟଂ ଅଧିଗଚ୍ଛତି ପ୍ରାପ୍ନୋତି । ୨୪ ।

ପଦବ୍ୟାଖ୍ୟା ।

ଯଃ ଅନ୍ତଃସୁଖଃ—ଯେ ଅନ୍ତଃକରଣରେ ଆତ୍ମସୁଖ ଅନୁଭବ କରନ୍ତି, ଅନ୍ତରାରାମଃ—ଯେ ଅନ୍ତର୍ଜଗତରେ କ୍ରୀଡା କରନ୍ତି, ତଥା—ସେହିପରି, ଅନ୍ତର୍ଜ୍ୟୋତିଃ—ଯେ ଅନ୍ତଃକରଣରେ ବ୍ରହ୍ମଦର୍ଶନ କରନ୍ତି, ଏବ—କେବଳ, ଯଃ—ଯେ,

Digitized by PPRACHIN, SOA

ସଃ ଯୋଗୀ—ସେହି ଯୋଗୀ, ବ୍ରହ୍ମନିର୍ବାଣଂ—ବ୍ରହ୍ମରେ ଲୟକୁ, ବ୍ରହ୍ମଭୂତଃ—ବ୍ରହ୍ମମୟ—ବ୍ରହ୍ମରେ ସ୍ଥିତ ହୋଇ, ଅଧିଗଚ୍ଛତି—ପ୍ରାପ୍ତ ହୁଅନ୍ତି । ୨୪ ।

ଅନୁବାଦ ।

ଯାହାଙ୍କର ଆତ୍ମାରେ ସୁଖ, ଆତ୍ମାରେ କ୍ରୀଡ଼ା ଓ ଆତ୍ମାରେ ଦୃଷ୍ଟି, କେବଳ ସେହି ଯୋଗୀ ବ୍ରହ୍ମରେ ଅବସ୍ଥିତ ହୋଇ ବ୍ରହ୍ମନିର୍ବାଣକୁ ପ୍ରାପ୍ତ ହୁଅନ୍ତି । ୨୪ ।

ବିଶଦବ୍ୟାଖ୍ୟା ।

ଯେ ବିଷୟସୁଖ ପରିତ୍ୟାଗ କରି ଆତ୍ମସୁଖରେ ମଗ୍ନ, ଯେ ବାହ୍ୟକ୍ରୀଡ଼ା ଛାଡ଼ି ଅନ୍ତର୍ଜଗତରେ ଅର୍ଥାତ୍ ଆତ୍ମଜଗତରେ କ୍ରୀଡ଼ା କରନ୍ତି, ପୁଣି ଯେ ବାହ୍ୟର ନୃତ୍ୟଗୀତାଦି ଦର୍ଶନ ଶ୍ରବଣ ନ କରି କେବଳ ଆତ୍ମଦର୍ଶନ ଓ ଆତ୍ମବିଷୟ ଶ୍ରବଣ କରନ୍ତି, ସେହି ଯୋଗୀ ବ୍ୟକ୍ତି ସର୍ବକାର୍ଯ୍ୟରେ ବ୍ରହ୍ମଭାବନା କରୁଥିବାରୁ ତନ୍ମୟ ଅର୍ଥାତ୍ ବ୍ରହ୍ମସ୍ୱରୂପ ହୋଇ ବ୍ରହ୍ମନିର୍ବାଣ ନାମକ ମୁକ୍ତି ଲାଭ କରନ୍ତି । ୨୪ ।

ଶ୍ଳୋକଃ ।

* ଲଭନ୍ତେ ବ୍ରହ୍ମନିର୍ବାଣମୃଷୟଃ କ୍ଷୀଣକଲ୍ମଷାଃ ।
ଛିନ୍ନଦ୍ୱୈଧା ଯତାତ୍ମାନଃ, ସର୍ବଭୂତହିତେ ରତାଃ । ୨୫ ।

ଅନ୍ୱୟଃ ।

ଛିନ୍ନଦ୍ୱୈଧାଃ ଯତାତ୍ମାନଃ ସର୍ବଭୂତହିତେ ରତାଃ କ୍ଷୀଣକଲ୍ମଷାଃ ଋଷୟଃ ବ୍ରହ୍ମନିର୍ବାଣଂ ଲଭନ୍ତେ । ୨୫ ।

ଟୀକା ।

କିଞ୍ଚ ଲଭନ୍ତ ଇତି ଋଷୟଃ ସମ୍ୟଗ୍‌ଦର୍ଶିନଃ କ୍ଷୀଣଂ କଲ୍ମଷଂ ଯେଷାଂ, ଛିନ୍ନଂ ଦ୍ୱୈଧଂ ସଂଶୟୋ ଯେଷାଂ, ଯତଃ ସଂଯତ ଆତ୍ମା ଚିତ୍ତଂ ଯେଷାଂ, ସର୍ବେଷାଂ ଭୂତାନାଂ ହିତେ ରତାଃ ଯେ କୃପାଳବସ୍ତେ ବ୍ରହ୍ମନିର୍ବାଣଂ ମୋକ୍ଷଂ ଲଭନ୍ତେ । ୨୫ ।

ପଦବ୍ୟାଖ୍ୟା ।

ଲଭନ୍ତେ—ପ୍ରାପ୍ତ ହୁଅନ୍ତି, ବ୍ରହ୍ମନିର୍ବାଣଂ—ମୋକ୍ଷକୁ, ଋଷୟଃ—ଋଷିମାନେ, କ୍ଷୀଣକଲ୍ମଷାଃ—ନିଷ୍ପାପ, ଛିନ୍ନଦ୍ୱୈଧାଃ—ସଂଶୟଶୂନ୍ୟ, ଯତାତ୍ମାନଃ—ବିଷୟମାନଙ୍କରେ ଅନାସକ୍ତଚିତ୍ତ, ସର୍ବଭୂତହିତେ ରତାଃ—ସମସ୍ତ ପ୍ରାଣିମାନଙ୍କ ହିତରେ ଆସକ୍ତ । ୨୫ ।

ଅନୁବାଦ ।

ନିଷ୍ପାପ, ସଂଶୟବର୍ଜିତ, ଏକାଗ୍ରଚିତ୍ତ ଓ ସମସ୍ତ ପ୍ରାଣୀଙ୍କ ଉପକାରରେ ଆସକ୍ତ ଋଷିମାନେ ବ୍ରହ୍ମନିର୍ବାଣ ପ୍ରାପ୍ତ ହୁଅନ୍ତି । ୨୫ ।

ବିଶଦବ୍ୟାଖ୍ୟା ।

ଯେଉଁମାନେ ନିଷ୍କାମଭାବରେ ବେଦବିହିତ ଯଜ୍ଞାଦି କର୍ମ କରି ପାପଶୂନ୍ୟ ହୋଇଅଛନ୍ତି; ବେଦାନ୍ତାଦି ଶାସ୍ତ୍ର ଅଧ୍ୟୟନ ଓ ଜ୍ଞାନଦ୍ୱାରା ଦ୍ୱୈଧଭାବରହିତ ବା ସଂଶୟବର୍ଜିତ ହୋଇଅଛନ୍ତି, ଯୋଗସାଧନାଦିଦ୍ୱାରା ଚିତ୍ତର ଏକାଗ୍ରତା ଲାଭ କରିଅଛନ୍ତି, ପୁଣି ଆତ୍ମଜ୍ଞାନ

Digitized by PPRACHIN, SOA

ଉଦୟ ହୋଇଥିବାରୁ ସମସ୍ତ ପ୍ରାଣିମାନଙ୍କର ହିତସାଧନ କରନ୍ତି, ସେହି ଋଷି ବ୍ରହ୍ମନିର୍ବାଣ ନାମକ ମୋକ୍ଷକୁ ପ୍ରାପ୍ତ ହୁଅନ୍ତି । ୨୫ ।

ଶ୍ଳୋକଃ ।

* କାମକ୍ରୋଧବିମୁକ୍ତାନାଂ, ଯତୀନାଂ ଯତଚେତସାଂ ।
ଅଭିତୋବ୍ରହ୍ମନିର୍ବାଣଂ, ବର୍ତ୍ତତେ ବିଦିତାତ୍ମନାଂ । ୨୬ ।

ଅନ୍ୱୟଃ ।

କାମକ୍ରୋଧବିମୁକ୍ତାନାଂ ଯତଚେତସାଂ ଯତୀନାଂ ବିଦିତାତ୍ମନାଂ ବ୍ରହ୍ମନିର୍ବାଣଂ ଅଭିତଃ ବର୍ତ୍ତତେ । ୨୬ ।

ଟୀକା ।

କିଞ୍ଚ କାମେତ୍ୟାଦି । କାମକ୍ରୋଧାଭ୍ୟାଂ ବିମୁକ୍ତାନାଂ ଯତୀନାଂ ସନ୍ନ୍ୟାସିନାଂ ସଂଯତଚିତ୍ତାନାଂ ଜ୍ଞାତାତ୍ମତତ୍ତ୍ୱାନାମଭିତ ଉଭୟତୋ ଜୀବତାଂ ମୃତାନାଞ୍ଚ ନ ଦେହାନ୍ତ ଏବ ତେଷାଂ ବ୍ରହ୍ମଣି ଲୟୋଽପି ତୁ ଜୀବତାମପି ବର୍ତ୍ତତ ଇତ୍ୟର୍ଥଃ । ୨୬ ।

ପଦବ୍ୟାଖ୍ୟା ।

କାମକ୍ରୋଧବିମୁକ୍ତାନାଂ—କାମକ୍ରୋଧରହିତ, ଯତୀନାଂ—ସନ୍ନ୍ୟାସୀ (ଇହଲୋକ ଓ ପରଲୋକ ସୁଖତ୍ୟାଗୀ), ଯତଚେତସାଂ—ମନୋବଶକାରୀ, ଅଭିତଃ—ଜୀବିତ ଓ ମୃତ ଦୁଇ ଅବସ୍ଥାରେ, ବ୍ରହ୍ମନିର୍ବାଣଂ—ମୋକ୍ଷ, ବର୍ତ୍ତତେ—ବିଦ୍ୟମାନ ଅଛି, ବିଦିତାତ୍ମନାଂ—ଆତ୍ମଜ୍ଞାନମାନଙ୍କର । ୨୬ ।

ଅନୁବାଦ ।

କାମକ୍ରୋଧରହିତ ସର୍ବସୁଖତ୍ୟାଗୀ ମନୋବଶକାରୀ ଓ ଯଥାର୍ଥ ଆତ୍ମତତ୍ତ୍ୱଜ୍ଞାନମାନଙ୍କର (ଜୀବିତ ଓ ମୃତ) ସବୁ ଅବସ୍ଥାରେ ବ୍ରହ୍ମନିର୍ବାଣ ପ୍ରାପ୍ତି ହୁଏ । ୨୬ ।

ବିଶଦବ୍ୟାଖ୍ୟା ।

ଯେଉଁମାନଙ୍କ ମନରୁ କାମ ଓ କ୍ରୋଧ ସମୂଳେ ବିନଷ୍ଟ ହୋଇଅଛି; ଅର୍ଥାତ୍ କାମନା ଓ କ୍ରୋଧ ଜାତ ହେବାର କାରଣମାନ ବିଦ୍ୟମାନ ଥିଲେ ମଧ୍ୟ, ଯେଉଁମାନଙ୍କର କାମ ଓ କ୍ରୋଧ ଜାତ ହୁଏ ନାହିଁ ଓ ଯେଉଁମାନେ ଚିତ୍ତକୁ ସଂଯତ ଅର୍ଥାତ୍ ବଶୀଭୂତ କରିଅଛନ୍ତି ଏବଂ ଯେଉଁମାନଙ୍କର ପ୍ରକୃତ ଆତ୍ମଜ୍ଞାନ ଉଦୟ ହୋଇଅଛି, ସେମାନେ ଜୀବିତ ଥିଲେ ବା ଦେହତ୍ୟାଗ କଲେ ମଧ୍ୟ, ବ୍ରହ୍ମନିର୍ବାଣ ନାମକ ମୋକ୍ଷକୁ ପ୍ରାପ୍ତ ହୁଅନ୍ତି; ଅର୍ଥାତ୍ ଜୀବିତ ଥିଲେ ସେମାନେ ଜୀବନ୍ମୁକ୍ତ ଓ ଦେହତ୍ୟାଗ ପରେ ବ୍ରହ୍ମପ୍ରାପ୍ତ ହୁଅନ୍ତି । ୨୫ ।

ଶ୍ଳୋକଃ ।

ସ୍ପର୍ଶାନ୍ କୃତ୍ୱା ବହିର୍ବାହ୍ୟାଂ, ଶ୍ଚକ୍ଷୁଶ୍ଚୈବାନ୍ତରେ ଭ୍ରୁବୋଃ ।
ପ୍ରାଣାପାନୌ ସମୌ କୃତ୍ୱା, ନାସାଭ୍ୟନ୍ତରଚାରିଣୌ । ୨୭ ।

ଅନ୍ୱୟଃ ।

ବାହ୍ୟାନ୍ ସ୍ପର୍ଶାନ୍ ବହିଃ, ଚକ୍ଷୁଃ ଚ ଭ୍ରୁବୋଃ ଅନ୍ତରେ ଏବ କୃତ୍ୱା ନାସାଭ୍ୟନ୍ତରଚାରିଣୌ ପ୍ରାଣାପାନୌ ସମୌ କୃତ୍ୱା—। ୨୭ ।

Digitized by PPRACHIN, SOA

ଟୀକା ।

ସ ଯୋଗୀ ବ୍ରହ୍ମନିର୍ବାଣମିତ୍ୟାଦଶୂ ଯୋଗୀ ମୋକ୍ଷମାପ୍ନୋତୀତ୍ୟୁକ୍ତଂ ତମେବ ଯୋଗଂ ସଂକ୍ଷେପେଣାହ । ସ୍ପର୍ଶାନିତି ଦ୍ୱାଭ୍ୟାଂ । ବାହ୍ୟା ଏବ ସ୍ପର୍ଶା ରୂପରସାଦୟୋ ବିଷୟାଶ୍ଚିନ୍ତିତାଃ ସନ୍ତୋଽନ୍ତଃପ୍ରବିଶନ୍ତି ତାଂ ସ୍ତଚ୍ଚିନ୍ତାତ୍ୟାଗେନ ବହିରେବ କୃତ୍ୱା ଚକ୍ଷୁର୍ଭ୍ରୁବୋରନ୍ତରେ ଭ୍ରୂମଧ୍ୟ ଏବ କୃତ୍ୱା ଅତ୍ୟନ୍ତଂ ନେତ୍ରୟୋର୍ନିମୀଲନେ ନିଦ୍ରୟା ମନୋଲୀୟତେ ଉନ୍ମୀଲନେ ଚ ବହିଃ ପ୍ରସରତି ତଦୁଭୟଦୋଷପରିହାରାର୍ଥମର୍ଦ୍ଧନିମୀଲନେନ ଭ୍ରୂମଧ୍ୟେ ଦୃଷ୍ଟିଂ ନିଧାୟେତ୍ୟର୍ଥଃ । ଉଚ୍ଛ୍ୱାସନିଃଶ୍ୱାସରୂପେଣ ନାସିକୟୋରଭ୍ୟନ୍ତରେ ଚରନ୍ତୌ ପ୍ରାଣାପାନାବୂର୍ଦ୍ଧ୍ୱାଧୋଗତିରୋଧେନ ସମୌ କୃତ୍ୱା କୁମ୍ଭକଂ କୃତ୍ୱେତ୍ୟର୍ଥଃ ଯଦ୍ୱା ପ୍ରାଣୋଽୟଂ ଯଥା ନ ବହିର୍ନିର୍ଯାତି ଯଥା ବା ଅପାନୋଽନ୍ତର୍ନ ପ୍ରବିଶତି କିନ୍ତୁ ନାସାମଧ୍ୟ ଏବ ଦ୍ୱାବପି ଯଥା ଚରତସ୍ତଥାମନ୍ଦାଭ୍ୟାମୁଚ୍ଛ୍ୱାସନିଃଶ୍ୱାସାଭ୍ୟାଂ ସମୌ କୃତ୍ୱେତି । ୨୭ ।

ପଦବ୍ୟାଖ୍ୟା ।

ସ୍ପର୍ଶାନ୍ କୃତ୍ୱା ବହିର୍ବାହ୍ୟାନ୍—ବାହ୍ୟସ୍ପର୍ଶମାନଙ୍କ ସୁଖକୁ ମନରୁ ଦୂର କରି, ଚକ୍ଷୁଶ୍ଚ ଏବ—ଦୃଷ୍ଟିକି ମଧ୍ୟ, ଅନ୍ତରେ ଭ୍ରୁବୋଃ—ଭ୍ରୂଲତାଦ୍ୱୟର ମଧ୍ୟରେ, ପ୍ରାଣାପାନୌ—ପ୍ରାଣ ଓ ଅପାନ ଏ ଦୁହିଙ୍କି, ସମୌ କୃତ୍ୱା—କୁମ୍ଭକଦ୍ୱାରା ସମାନ କରି, ନାସାଭ୍ୟନ୍ତରଚାରିଣୌ—ନାସିକାମଧ୍ୟସଞ୍ଚାରୀ । ୨୭ ।

ଅନୁବାଦ ।

ବାହ୍ୟେନ୍ଦ୍ରିୟ ସୁଖକୁ ମନରୁ ଦୂର କରି, ଦୃଷ୍ଟିକି ଭ୍ରୂମଧ୍ୟରେ ରଖି, ନାସିକା ମଧ୍ୟରେ ଗତାୟାତ କରୁଥିବା ପ୍ରାଣ ଓ ଅପାନ ଏ ଦୁହିଁଙ୍କି ସ୍ଥିର କରି (କୁମ୍ଭକ କରିବ) । ୨୭ ।

ଭାବବ୍ୟାଖ୍ୟା ।

ଏ ଶ୍ଳୋକ ଓ ପରଶ୍ଳୋକ ଅର୍ଥାତ୍ ୨୭ଶ ଓ ୨୮ଶ ଦୁଇଶ୍ଳୋକର ଅନ୍ୱୟ ଏକତ୍ର ଥିବାରୁ ୨୮ଶ ଶ୍ଳୋକରେ ଭାବବ୍ୟାଖ୍ୟା ଦେଖ । ୨୭ ।

ଶ୍ଳୋକଃ ।

* ଯତେନ୍ଦ୍ରିୟମନୋବୁଦ୍ଧିର୍ମୁନିର୍ମୋକ୍ଷପରାୟଣଃ ।
ବିଗତେଚ୍ଛାଭୟକ୍ରୋଧୋ, ଯଃ ସଦା ମୁକ୍ତ ଏବ ସଃ । ୨୮ ।

ଅନ୍ୱୟଃ ।

ଯତେନ୍ଦ୍ରିୟମନୋବୁଦ୍ଧିଃ ଯଃ ମୁନିଃ ବିଗତେଚ୍ଛାଭୟକ୍ରୋଧଃ (ସନ୍) ମୋକ୍ଷପରାୟଣଃ (ସ୍ୟାତ୍) ସ ଏବ ସଦା ମୁକ୍ତଃ । ୨୮ ।

ଟୀକା ।

ଯତ ଇତି । ଅନେନୋପାୟେନ ଯତାଃ ସଂଯତା ଇନ୍ଦ୍ରିୟମନୋବୁଦ୍ଧୟୋ ଯସ୍ୟ ମୋକ୍ଷ ଏବ ପରମୟନଂ ପ୍ରାପ୍ୟଂ ଯସ୍ୟ ଅତଏବ ବିଗତା ଇଚ୍ଛାଭୟକ୍ରୋଧା ଯସ୍ୟ ଏବମ୍ଭୂତୋ ଯୋ ମୁନିଃ ସ ସଦା ଜୀବନ୍ନପି ମୁକ୍ତ ଏବେତ୍ୟର୍ଥଃ । ୨୮ ।

ପଦବ୍ୟାଖ୍ୟା ।

ଯତେନ୍ଦ୍ରିୟମନୋବୁଦ୍ଧିଃ—ଇନ୍ଦ୍ରିୟ ମନ ଓ ବୁଦ୍ଧିର ଜୟକାରୀ, ମୁନିଃ—ମନକୁ ଆତ୍ମାରେ ଲଗାଇବା ବ୍ୟକ୍ତି, ମୋକ୍ଷପରାୟଣଃ—ମୁକ୍ତିସାଧନରେ ତତ୍ପର, ବିଗତେଚ୍ଛାଭୟକ୍ରୋଧଃ—ବାଞ୍ଛା ଭୀତ ଓ କୋପଶୂନ୍ୟ, ଯଃ—ଯେଉଁ ପୁରୁଷ, ସଦା ମୁକ୍ତ ଏବ ସଃ—ସେହି ସର୍ବଦା ମୁକ୍ତ ଅଟନ୍ତି । ୨୮ ।

Digitized by PPRACHIN, SOA

ଅନୁବାଦ ।

ଯେ ଇନ୍ଦ୍ରିୟ ମନ ଓ ବୁଦ୍ଧିକୁ ଜୟ କରଅଛନ୍ତି, ଯେ ମୋକ୍ଷାଭିଳାଷୀ ଏବଂ ଯେ ଇଚ୍ଛା ଭୟ ଓ କ୍ରୋଧକୁ ଦୂର କରଅଛନ୍ତି, ସେହି ମୁନିବ୍ୟକ୍ତି ସର୍ବଦା ମୁକ୍ତ ଅଟନ୍ତି । ୨୮ ।

ବିଶଦବ୍ୟାଖ୍ୟା ।

ଇନ୍ଦ୍ରିୟମାନେ ସ୍ୱଭାବରେ ବାହ୍ୟବିଷୟରେ ରତ ହୁଅନ୍ତି ଏବଂ ସେମାନଙ୍କଦ୍ୱାରା ପୁଣି ବିଷୟମାନ ମନୋମଧ୍ୟରେ ଅଙ୍କିତ ହୋଇଥାଏ । ବିଷୟଦ୍ୱାରା ଅଙ୍କିତ ଚିତ୍ତବୃତ୍ତିରେ ଜ୍ଞାନୋଦୟ ଅସମ୍ଭବ । ଏଥିପାଇଁ ଶ୍ରୀଭଗବାନ୍ ମୁକ୍ତିସାଧନର ଅନ୍ୟ ଉପାୟ ଧ୍ୟାନଯୋଗର ବର୍ଣ୍ଣନ କରୁଅଛନ୍ତି । ( ୨୭ ଶ୍ଳୋକ ) ଭ୍ରୂଦ୍ୱୟର ସନ୍ଧିସ୍ଥାନରେ ଦୃଷ୍ଟି ସ୍ଥିର ରଖିଲେ ଅର୍ଥାତ୍ ଊର୍ଦ୍ଧ୍ୱଦୃଷ୍ଟିଦ୍ୱାରା ଚକ୍ଷୁର କୃଷ୍ଣଗୋଲକଦ୍ୱୟକୁ ଭ୍ରୂଲତାଦ୍ୱୟର ସନ୍ଧିସ୍ଥାନରେ ସ୍ଥିର ରଖି ପାରିଲେ ଚିତ୍ତର ଏକାଗ୍ରତା ବୃଦ୍ଧି ହୁଏ, ତହିଁ ସଙ୍ଗେ୨ ନାସିକା ମଧ୍ୟରେ ଗତାୟାତ କରୁଥିବା ପ୍ରାଣ ଓ ଅପାନ ବାୟୁକୁ ସ୍ଥିର କଲେ ଅର୍ଥାତ୍ କୁମ୍ଭକଦ୍ୱାରା ପ୍ରାଣ ଓ ଅପାନ ଏହି ଦୁଇ ବାୟୁକୁ ନିରୁଦ୍ଧ କଲେ ଚିତ୍ତସଂଯତ ହୁଏ । (୨୮ଶ୍ଳୋକ) ଏହି ସବୁ ଉପାୟଦ୍ୱାରା ଅର୍ଥାତ୍ ବାହ୍ୟସୁଖକୁ ମନରୁ ଦୂର କରିବାଦ୍ୱାରା ଇନ୍ଦ୍ରିୟଜୟ ଓ ଭ୍ରୂମଧ୍ୟ ସନ୍ଧିରେ ଦୃଷ୍ଟି ସ୍ଥିର ରଖିବା-ଦ୍ୱାରା ମନୋଜୟ ଏବଂ କୁମ୍ଭକାଦି ସାଧନଦ୍ୱାରା ବିଷୟାସକ୍ତ ବୁଦ୍ଧିକୁ ଜୟ କରିବାରୁ, ଯୋଗୀ ବ୍ୟକ୍ତିଙ୍କର ଇଚ୍ଛା ଭୟ ଓ କ୍ରୋଧ କ୍ରମେ୨ ଲୟପ୍ରାପ୍ତ ହୁଏ । ସାଧକଙ୍କର ଏହିପରି ଅବସ୍ଥା ହେଲେ ଅର୍ଥାତ୍ ଇନ୍ଦ୍ରିୟ ମନ ଓ ବୁଦ୍ଧି ସଂଯତ ଏବଂ ଇଚ୍ଛା, ଭୟ ଓ କ୍ରୋଧ ଲୟପ୍ରାପ୍ତ ହେଲେ ସେ ସର୍ବଦା ମୁକ୍ତ ବୋଲି ପରିଗଣିତ ହୁଅନ୍ତି । ୨୮ ।

ଶ୍ଳୋକଃ ।

ଭୋକ୍ତାରଂ ଯଜ୍ଞତପସାଂ, ସର୍ବଲୋକମହେଶ୍ୱରଂ ।
ସୁହୃଦଂ ସର୍ବଭୂତାନାଂ, ଜ୍ଞାତ୍ୱା ମାଂ ଶାନ୍ତିମୃଚ୍ଛତି । ୨୯ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗ-ବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସମ୍ବାଦେ ସନ୍ନ୍ୟାସଯୋଗୋନାମ ପଞ୍ଚମୋଽଧ୍ୟାୟଃ ।

---

ଅନ୍ୱୟଃ ।

ଯଜ୍ଞତପସାଂ ଭୋକ୍ତାରଂ ସର୍ବଲୋକମହେଶ୍ୱରଂ ସର୍ବଭୂତାନାଂ ସୁହୃଦଂ ମାଂ ଜ୍ଞାତ୍ୱା ଶାନ୍ତିଂ ଗଚ୍ଛତି । ୨୯ ।
ଇତି ଶ୍ରୀଭଗବଦ୍ଗୀତାୟାଂ ଅନ୍ୱୟେ ପଞ୍ଚମୋଽଧ୍ୟାୟଃ ।

---

ଟୀକା ।

ନନ୍ୱେବମିନ୍ଦ୍ରିୟାଦିସଂଯମମାତ୍ରେଣ କଥଂ ମୁକ୍ତିଃ ସ୍ୟାତ୍ ତାବନ୍ମାତ୍ରେଣ ନତୁ ଜ୍ଞାନଦ୍ୱାରେଣେତ୍ୟାହ, ଭୋକ୍ତାରମିତି । ଯଜ୍ଞାନାଂ ତପସାଞ୍ଚୈବ ମମ ଭକ୍ତୈଃ ସମର୍ପିତାନାଂ ଯଦୃଚ୍ଛୟା ଭୋକ୍ତାରଂ ପାଳକମିତିବା, ସର୍ବେଷାଂ ଲୋକାନାଂ ମହାନ୍ତମୀଶ୍ୱରଂ ସର୍ବଭୂତାନାଂ ସୁହୃଦଂ ନିରପେକ୍ଷୋପକାରଣମନ୍ତର୍ଯାମିଣଂ ମାଂ ଜ୍ଞାତ୍ୱା ମତ୍ପ୍ରସାଦେନ ଶାନ୍ତିଂ ମୋକ୍ଷମୃଚ୍ଛତି ପ୍ରାପ୍ନୋତି ।

Digitized by PPRACHIN, SOA

ବିକଳ୍ପଶଙ୍କାପୋହେନ ଯେନୈବଂ ଯୋଗସାଙ୍ଖ୍ୟୟୋଃ ।
ସମୁଚ୍ଚୟଃ କ୍ରମେଣୋକ୍ତଃ ସର୍ବଜ୍ଞଂ ନୌମି ତଂ ଗୁରୁଂ । ୨୯ ।
ଇତି ସ୍ୱାମିକୃତଟୀକାୟାଂ ପଞ୍ଚମୋଽଧ୍ୟାୟଃ ।

---

## ପଦବ୍ୟାଖ୍ୟା ।

ଭୋକ୍ତାରଂ—ଭୋଗକର୍ତ୍ତା ବା ପାଳକ, ଯଜ୍ଞତପସାଂ—ଯଜ୍ଞ ଓ ତପସ୍ୟାର, ସର୍ବଲୋକମହେଶ୍ୱରଂ—ସମସ୍ତ ଲୋକର ପ୍ରଭୁ, ସୁହୃଦଂ—ନିରପେକ୍ଷ ଉପକାରୀ, ସର୍ବଭୂତାନାଂ—ସମସ୍ତ ପ୍ରାଣିଙ୍କର, ଜ୍ଞାତ୍ୱା—ଜାଣିଲେ, ମାଂ—ଆମ୍ଭଙ୍କୁ, ଶାନ୍ତିଂ ଋଚ୍ଛତି—ମୁକ୍ତିକୁ ପ୍ରାପ୍ତ ହୁଅନ୍ତି । ୨୯ ।

ଇତି ଶ୍ରୀଭଗବଦ୍‌ଗୀତା-ପଦବ୍ୟାଖ୍ୟାୟାଂ ପଞ୍ଚମୋଽଧ୍ୟାୟଃ ।

---

## ଅନୁବାଦ ।

(ମାନବଗଣ) ଆମ୍ଭଙ୍କୁ ଯଜ୍ଞ ଓ ତପସ୍ୟାର ପାଳକ, ସମସ୍ତ ଲୋକର ପ୍ରଭୁ ଓ ସମସ୍ତଙ୍କର ସୁହୃଦ ବୋଲି ଜାଣିଲେ ମୁକ୍ତି ପ୍ରାପ୍ତ ହୁଅନ୍ତି । ୨୯ ।

ଇତି ଶ୍ରୀଭଗବଦ୍‌ଗୀତାର ଉତ୍କଳାନୁବାଦରେ ପଞ୍ଚମ ଅଧ୍ୟାୟ ସମାପ୍ତ ।

## ବିଶଦବ୍ୟାଖ୍ୟା ।

ପାଛେ ଅର୍ଜ୍ଜୁନ ଏପରି ମନେ କରିବେ, ଯେ କେବଳ ଇନ୍ଦ୍ରିୟାଦି ସଂଯମ କଲେ କି ମୁକ୍ତି ହେବ ? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଇନ୍ଦ୍ରିୟାଦି ସଂଯମ ସଙ୍ଗେ ୨ ଜ୍ଞାନ ଉଦୟ ହେବା ମଧ୍ୟ ଆବଶ୍ୟକ । ଯେଉଁମାନେ ଆମ୍ଭଙ୍କୁ (ଶ୍ରୀଭଗବାନଙ୍କୁ) ଅଗ୍ନିଷ୍ଟୋମ ଓ ଅଶ୍ୱମେଧାଦି ଯଜ୍ଞର ଏବଂ କୃଚ୍ଛ୍ରଚାନ୍ଦ୍ରାୟଣ ଓ ପଞ୍ଚାଗ୍ନି ସ୍ଥାପନ ପ୍ରଭୃତି ତପସ୍ୟାର ପାଳକ ବୋଲି ଜାଣନ୍ତି ଏବଂ ସମସ୍ତ ପ୍ରାଣିଙ୍କର ଆମ୍ଭେ ଆତ୍ମାରୂପରେ ସୁହୃଦ ଅର୍ଥାତ୍ ପ୍ରତ୍ୟୁପକାର ପାଇବାର ଆଶା ନ ରଖି ଉପକାର କରୁଁ ବୋଲି ଜାଣନ୍ତି, ସେମାନେ ମୁକ୍ତି ପ୍ରାପ୍ତ ହୁଅନ୍ତି । ଏ ଶ୍ଳୋକରେ ଶ୍ରୀଭଗବାନ୍ ଆପଣାକୁ ଯଜ୍ଞ ଓ ତପସ୍ୟାର ପାଳକ, ସର୍ବ ଜଗତର ପ୍ରଭୁ ଓ ସର୍ବ ପ୍ରାଣିଙ୍କର ସୁହୃଦ ଇତ୍ୟାଦି ବିଶେଷଣଦ୍ୱାରା ଚିହ୍ନାଇ ଦେଇ ସଙ୍କେତରେ ଅର୍ଜ୍ଜୁନଙ୍କୁ ଏହି କଥା ଜଣାଇଲେ, ଯେ ତୁମ୍ଭେ ଆମ୍ଭଙ୍କୁ ସମ୍ମୁଖରେ ଦେଖି କରି ମଧ୍ୟ, ଉପର ଉକ୍ତ ବିଶେଷଣମାନଙ୍କର ଅର୍ଥ ଅନୁସାରେ ନ ଭାବି ସ୍ଥୂଳଭାବରେ ଦେଖୁଥିବାରୁ ତୁମ୍ଭେ ଅଜ୍ଞାନ-ପାଶରୁ ବିମୁକ୍ତ ହୋଇ ପାରୁ ନାହଁ । ୨୯ ।

ଇତି ଶ୍ରୀଭଗବଦ୍‌ଗୀତାର ବିଶଦବ୍ୟାଖ୍ୟାରେ ପଞ୍ଚମ ଅଧ୍ୟାୟ ସମାପ୍ତ ।

Digitized by PPRACHIN, SOA

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ଷଷ୍ଠୋଽଧ୍ୟାୟଃ ।

ଧ୍ୟାନ ଯୋଗଃ ।—

### ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।— ଅନାଶ୍ରିତଃ କର୍ମଫଳଂ, କାର୍ଯ୍ୟଂ କର୍ମ କରୋତି ଯଃ ।
ସ ସନ୍ନ୍ୟାସୀ ଚ ଯୋଗୀ ଚ, ନ ନିରଗ୍ନି ର୍ନଚାକ୍ରିୟଃ ୧ ।

### ଅନ୍ୱୟଃ ।

ଯଃ କର୍ମଫଳଂ ଅନାଶ୍ରିତଃ କାର୍ଯ୍ୟଂ କର୍ମ କରୋତି, ସଃ ସନ୍ନ୍ୟାସୀ ଚ ସଃ ଯୋଗୀ; ନିରଗ୍ନିଃ ନ, (ସନ୍ନ୍ୟାସୀ) ଚ ଅକ୍ରିୟଃ ନ । ୧ ।

### ସ୍ୱାମିକୃତ ଟୀକା ।

ତତ୍ରେ ଶୁଦ୍ଧେଽପି ନ ଧ୍ୟାନଂ ବିନା ସନ୍ନ୍ୟାସମାତ୍ରତଃ ।
ମୁକ୍ତିଃ ସ୍ୟାଦତ ଷଷ୍ଠେଽସ୍ମିନ୍ ଧ୍ୟାନଯୋଗୋ ବିତନ୍ୟତେ ।

ପୂର୍ବାଧ୍ୟାୟାନ୍ତେ ସଂକ୍ଷେପେଣୋକ୍ତଂ ଯୋଗଂ ପ୍ରପଞ୍ଚୟିତୁଂ ଷଷ୍ଠାଧ୍ୟାୟାରମ୍ଭସ୍ତତ୍ରତାବତ୍ ସର୍ବ କର୍ମାଣି ମନସା ସନ୍ନ୍ୟସ୍ୟେ-ତ୍ୟାରଭ୍ୟ ସନ୍ନ୍ୟାସପୂର୍ବିକାୟା ଜ୍ଞାନନିଷ୍ଠାୟାସ୍ତାତ୍ପର୍ଯ୍ୟେଣାଭିଧାନାଦ୍ଦୁଃଖରୂପତ୍ୱାଚ୍ଚ କର୍ମଣଃ ସହସା ସନ୍ନ୍ୟାସାତିପ୍ରସଙ୍ଗଂ ପ୍ରାପ୍ତଂ ବାରୟିତୁଂ ସନ୍ନ୍ୟାସାଦପି ଶ୍ରେଷ୍ଠତ୍ୱେନ କର୍ମଯୋଗଂ ସ୍ତୌତି, ଅନାଶ୍ରିତ ଇତି ଦ୍ୱାଭ୍ୟାଂ । କର୍ମଫଳମନାଶ୍ରିତୋଽନ-ପେକ୍ଷମାଣଃ ଅବଶ୍ୟଂ କାର୍ଯ୍ୟତୟା ବିହିତଂ କର୍ମ ଯଃ କରୋତି, ସ ଏବ ସନ୍ନ୍ୟାସୀ ଯୋଗୀ ଚ ନତୁ ନିରଗ୍ନି ରଗ୍ନି ସାଧ୍ୟେ-ଷ୍ଟ୍ୟାଖ୍ୟକର୍ମତ୍ୟାଗୀ, ନ ଚାକ୍ରିୟୋଽନଗ୍ନି ସାଧ୍ୟ-ପୂର୍ତ୍ତାଖ୍ୟ-କର୍ମତ୍ୟାଗୀ ଚ । ୧ ।

### ପଦବ୍ୟାଖ୍ୟା ।

ଅନାଶ୍ରିତଃ—ଆଶ୍ରୟ ନ କରି, କର୍ମଫଳଂ—ଯଜ୍ଞାଦି କର୍ମର ଫଳକୁ, କାର୍ଯ୍ୟଂ କର୍ମ—କର୍ତ୍ତବ୍ୟ କାର୍ଯ୍ୟକୁ, କରୋତି ଯଃ—ଯେ କରନ୍ତି, ସଃ ସନ୍ନ୍ୟାସୀ—ସେ ସନ୍ନ୍ୟାସୀ ଅଟନ୍ତି, ଚ ଯୋଗୀ—ଯୋଗୀ ମଧ୍ୟ ଅଟନ୍ତି, ଚ ନ—ନୁହନ୍ତି, ନିରଗ୍ନିଃ—ଅଗ୍ନି ଦ୍ୱାରା ସାଧ୍ୟ 'ଇଷ୍ଟି' କର୍ମତ୍ୟାଗ କରିବା ବ୍ୟକ୍ତି, ନ ଚାକ୍ରିୟଃ—ପୂର୍ତ୍ତନାମକ (ବିନା ଅଗ୍ନିରେ ସାଧ୍ୟ) କର୍ମତ୍ୟାଗୀ ସନ୍ନ୍ୟାସୀ ନୁହନ୍ତି । ୧ ।

### ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ଯେ, କର୍ମଫଳର ଆଶ୍ରୟ ତ୍ୟାଗ କରି କର୍ତ୍ତବ୍ୟକର୍ମ କରନ୍ତି, ସେହି ସନ୍ନ୍ୟାସୀ ଓ ଯୋଗୀ ଅଟନ୍ତି । କିନ୍ତୁ କେବଳ ଅଗ୍ନିହୋତ୍ର ଓ ଅନ୍ୟାନ୍ୟ କ୍ରିୟା ତ୍ୟାଗ କରିବା ବ୍ୟକ୍ତି ସନ୍ନ୍ୟାସୀ ଵା ଯୋଗୀ ନୁହନ୍ତି । ୧ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ପଞ୍ଚମ ଅଧ୍ୟାୟର ଶେଷ ଭାଗରେ ଯୋଗର ସୂତ୍ରମାତ୍ର କଥିତ ହୋଇଥିଲା, ସେହି ଯୋଗ ଷଷ୍ଠ ଅଧ୍ୟାୟରେ ବିସ୍ତୃତରୂପେ ବ୍ୟାଖ୍ୟା କରି ହେଉଅଛି ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜୁନ ! ଯେ ବ୍ୟକ୍ତି କର୍ମର ଫଳକୁ ଆଶ୍ରୟ ନ କରି ଅର୍ଥାତ୍ ଫଳକାମନା ରହିତ ହୋଇ 'ଶାସ୍ତ୍ର-ବିହିତ କର୍ମମାନ ଅବଶ୍ୟ କରିବା ଉଚିତ' ଏପରି ବୁଦ୍ଧିରେ ନିତ୍ୟ ନୈମିତ୍ତିକ କ୍ରିୟାମାନ ବିଧି ଅନୁସାରେ ଅନୁଷ୍ଠାନ କରନ୍ତି, ସେହି ବ୍ୟକ୍ତି କର୍ମ କଲେ ହେଁ ଫଳକାମନା 'ତ୍ୟାଗ' କରିଥିବାରୁ ପ୍ରକୃତ ସନ୍ନ୍ୟାସୀ ଅଟନ୍ତି ଓ ଫଳକାମନା ତ୍ୟାଗ କରିବାଦ୍ୱାରା ତାଙ୍କ ମନରେ କୌଣସି ପ୍ରକାର ବିକ୍ଷେପ (ଚଞ୍ଚଳତା) ନ ଜନ୍ମିବାରୁ ସେ ପ୍ରକୃତ ଯୋଗୀ । ମାତ୍ର ଯେଉଁମାନେ କେବଳ ଅଗ୍ନିହୋତ୍ର ଓ ଯଜ୍ଞଦାନାଦି କ୍ରିୟା ତ୍ୟାଗ କରନ୍ତି; ଅର୍ଥାତ୍ ଫଳକାମନା ତ୍ୟାଗ ନ କରି କିମ୍ବା ଅନ୍ତଃକରଣକୁ ପରିଶୁଦ୍ଧ ନ କରି କେବଳ ଅନୁଷ୍ଠାନରେ ଅସମର୍ଥ ହୋଇ କର୍ମତ୍ୟାଗ କରନ୍ତି, ସେ ସନ୍ନ୍ୟାସୀ କି ଯୋଗୀ ନୁହନ୍ତି ।

ଏ ଶ୍ଳୋକରେ 'ନିର୍କ୍ରିୟ' ଓ 'ନିରଗ୍ନି' ଦୁଇଟି ପଦ ଥିବାରୁ ତାହା ପୁନରୁକ୍ତି ଦୋଷଯୁକ୍ତ ବୋଲି ଜଣା ଯାଉଅଛି । କାହିଁକି ନା 'ନିର୍କ୍ରିୟ' ହେଲେ ଅର୍ଥାତ୍ 'କର୍ମତ୍ୟାଗ' କଲେ, ଏତିକି କହିଲେତ ଅଗ୍ନିହୋତ୍ରାଦି ସମସ୍ତ କର୍ମତ୍ୟାଗର କଥା ବୁଝା ଯିବ, ତେବେ ଆଉ 'ନିରଗ୍ନି' ପଦ ଦେବାର ଆବଶ୍ୟକ କଣ ? ଏହାର ଉତ୍ତରରେ ଏହି କଥା ବୋଲି ଯାଇ ପାରେ, ଯେ ଅଗ୍ନିହୋତ୍ରାଦି କର୍ମଦ୍ୱାରା ବାହ୍ୟିକ ସମସ୍ତ କାର୍ଯ୍ୟ ଏବଂ କ୍ରିୟା ଶବ୍ଦଦ୍ୱାରା କେବଳ ଆନ୍ତରିକ ସଂକଳ୍ପ ଓ ବିକ୍ଷେପାଦି କ୍ରିୟା ପ୍ରତି ଲକ୍ଷ୍ୟ କରି ହୋଇଅଛି । ଅଥବା ଅଗ୍ନି ଶବ୍ଦଦ୍ୱାରା ଅଗ୍ନିସାଧ୍ୟ ଇଷ୍ଟିନାମକ ବୈଦିକ କର୍ମ ଓ 'କ୍ରିୟା' ଶବ୍ଦଦ୍ୱାରା ବିନା ଅଗ୍ନିରେ ସାଧ୍ୟ ପୂର୍ତ୍ତ ଇତ୍ୟାଦି ସ୍ମାର୍ତ୍ତକର୍ମ ପ୍ରତି ଲକ୍ଷ୍ୟ କରି ହୋଇଅଛି ।

ଫଳକଥା ଏହି କି କର୍ମଫଳର ବାସନା ତ୍ୟାଗ ନ କଲେ ଇଷ୍ଟ ଓ ପୂର୍ତ୍ତକର୍ମ ତ୍ୟାଗ କରି ପକାଇଲେ, ତୁମ୍ଭେ ସନ୍ନ୍ୟାସୀ କି ଯୋଗୀ ହୋଇ ପାରିବ ନାହିଁ । ଅଥବା କେବଳ ବାହ୍ୟ (ଅଗ୍ନିହୋତ୍ରାଦି) ସମସ୍ତ କର୍ମ ତ୍ୟାଗ କଲେ (ଫଳକାମନା ଛାଡ଼ି ନ ଥିବାରୁ) ସନ୍ନ୍ୟାସୀ ହୋଇ ପାରିବ ନାହିଁ କିମ୍ବା କେବଳ ଆନ୍ତରିକ ସଙ୍କଳ୍ପ ବିକ୍ଷେପାଦି କ୍ରିୟା ତ୍ୟାଗ କଲେ (ସମାଧି ଅଭ୍ୟାସ ହୋଇ ନ ଥିବାରୁ ) ଯୋଗୀ ହୋଇ ପାରିବ ନାହିଁ । ସନ୍ନ୍ୟାସୀ କି ଯୋଗୀ ହେବାକୁ ଗଲେ ଶାସ୍ତ୍ରବିହିତ କର୍ମମାନ ଯଥାବିଧି କରିବା ଓ ତାହା ସଙ୍ଗେ ସଙ୍ଗେ ଫଳକାମନା ସଙ୍କଳ୍ପାଦି ତ୍ୟାଗ ଓ ସମାଧି ଅଭ୍ୟାସ କରିବା ଆବଶ୍ୟକ । ୧ ।

ଶ୍ଳୋକଃ ।

ଯଂ ସନ୍ନ୍ୟାସମିତି ପ୍ରାହୁର୍ୟୋଗଂ ତଂ ବିଦ୍ଧି ପାଣ୍ଡବ ।
ନ ହ୍ୟସଂନ୍ୟସ୍ତସଙ୍କଳ୍ପୋ ଯୋଗୀ ଭବତି କଶ୍ଚନ । ୨ ।

ଅନ୍ୱୟଃ ।

ହେ ପାଣ୍ଡବ ! ଯଂ ସନ୍ନ୍ୟାସଂ ଇତି ପ୍ରାହୁଃ, ତଂ ଯୋଗଂ ବିଦ୍ଧି, ହି ଅସନ୍ନ୍ୟସ୍ତସଙ୍କଳ୍ପଃ କଶ୍ଚନ ଯୋଗୀ ନ ଭବତି । ୨ ।

## ଟୀକା ।

ବୃତ ଇତ୍ୟପେକ୍ଷାଙ୍ଗଂ କର୍ମଯୋଗସ୍ୟୈବ ସନ୍ନ୍ୟାସତ୍ୱଂ ପ୍ରତିପାଦୟନ୍ନାହ, ଯମିତି । ଯଂ ସନ୍ନ୍ୟାସଂ ପ୍ରାହୁଃ ପ୍ରକର୍ଷେଣ ଶ୍ରେଷ୍ଠତ୍ୱେନାହୁଃ ସନ୍ନ୍ୟାସ ଏବାତ୍ୟରେଚୟଦିତ୍ୟାଦି ଶ୍ରୁତ୍ୟା ଇତି । କେବଲାତ୍ ଫଲସନ୍ନ୍ୟାସାଦ୍ଭେଦେ ଯୋଗମେବ ତଂ ଜାନୀହି ବୃତ ଇତ୍ୟପେକ୍ଷାସ୍ୱାମିତ ଶବ୍ଦୋକ୍ତୋହେତୁଃ ଯୋଗେ ପ୍ୟସ୍ତୀତ୍ୟାହ, ନହୀତି । ନ ସନ୍ନ୍ୟସ୍ତଃ ଫଲସଙ୍କଳ୍ପୋ ଯେନ ସ କର୍ମନିଷ୍ଠୋ ଜ୍ଞାନନିଷ୍ଠୋ ବା କଶ୍ଚିଦପି ଯୋଗୀ ନ ହି ଭବତି ଅତଃ ଫଲସଙ୍କଳ୍ପତ୍ୟାଗାଦେବ ଚିତ୍ତବିକ୍ଷେପାଭାବାତ୍ ଯୋଗୀ ଚ ଭବତ୍ୟେବ ସ ଇତ୍ୟର୍ଥଃ । ୨ ।

## ପଦବ୍ୟାଖ୍ୟା ।

ଯଂ—ଯାହାକୁ, ସନ୍ନ୍ୟାସମିତି ପ୍ରାହୁଃ—ସନ୍ନ୍ୟାସ ବୋଲି କହନ୍ତି, ଯୋଗଂ ତଂ ବିଦ୍ଧି—ତାହାକୁ 'ଯୋଗ' ବୋଲି ଜାଣ, ପାଣ୍ଡବ—ହେ ପାଣ୍ଡୁପୁତ୍ର ! (ଅର୍ଜ୍ଜୁନ), ନ ହି—ନାହିଁ, ଅସନ୍ନ୍ୟସ୍ତସଙ୍କଳ୍ପଃ—ଯେ ସଙ୍କଳ୍ପକାମନା ତ୍ୟାଗ ନ କରେ, ଯୋଗୀ ଭବତି—ଯୋଗୀ ହୁଅନ୍ତି, କଶ୍ଚନ—କେହି । ୨ ।

## ଅନୁବାଦ ।

ହେ ଅର୍ଜ୍ଜୁନ ! ( ଶ୍ରୁତି ) ଯାହାକୁ 'ସନ୍ନ୍ୟାସ' କହନ୍ତି, ତାକୁ ଯୋଗ ବୋଲି ଜାଣ । କାହିଁକି ନା ସଙ୍କଳ୍ପ (ଫଳକାମନା) ତ୍ୟାଗ ନ କଲେ କେହି ଯୋଗୀ ହୁଅନ୍ତି ନାହିଁ । ୨ ।

## ତତ୍ତ୍ୱଦବ୍ୟାଖ୍ୟା ।

ମୋକ୍ଷ ହିଁ ଜ୍ଞାନିବ୍ୟକ୍ତିଙ୍କର ଉଦ୍ଦେଶ୍ୟ । କର୍ମ କଲେ ତାହାର ଫଳ ଭୋଗ କରିବାପାଇଁ ସଂସାରବନ୍ଧନରେ ରହିବାକୁ ହେବ, ତାହା ହେଲେ ଆଉ ମୋକ୍ଷ ମିଳିବ କିପରି ? ଏଥିପାଇଁ ମୋକ୍ଷାଭିଳାଷୀ କର୍ମତ୍ୟାଗ ଅର୍ଥାତ୍ ସନ୍ନ୍ୟାସକୁ ଶ୍ରେଷ୍ଠ ଉପାୟ ବୋଲି ଜାଣନ୍ତି । ଏଥିରୁ ସ୍ପଷ୍ଟରୂପେ ଜଣା ଯାଉଅଛି, ଯେ କର୍ମଫଳ ହିଁ କେବଳ ମୋକ୍ଷର ବିଘ୍ନକାରୀ ବା ବିରୋଧୀ । ସେହି କର୍ମଫଳଭୟରେ କର୍ମ ତ୍ୟାଗ କରିବାକୁ ଅର୍ଥାତ୍ କର୍ମର ଫଳ ସହିତରେ କୌଣସି ସମ୍ପର୍କ ନ ରଖିବାକୁ 'ସନ୍ନ୍ୟାସ' ବୋଲାଯାଏ । ଆଉ କର୍ମଫଳର ସଙ୍କଳ୍ପ ଅର୍ଥାତ୍ କାମନା ତ୍ୟାଗ ନ କଲେ କେହି ଯୋଗୀ ହୁଅନ୍ତି ନାହିଁ । ସେହି ହେତୁରୁ ଶ୍ରୀଭଗବାନ୍ କହିଲେ, ଯେ ଶ୍ରୁତି ଯାହାକୁ 'ସନ୍ନ୍ୟାସ' ବୋଲି କହନ୍ତି, ତାକୁ 'ଯୋଗ' ବୋଲି ଜାଣ । ମନ, ଫଳକାମନାର ପ୍ରଧାନ କାରଣ ଅଟେ । କାହିଁକି ନା କାମକ୍ରୋଧାଦି ରିପୁଗୁଡିକ ମନର ବୃତ୍ତି ଅଟନ୍ତି । ସେଥିପାଇଁ ମହାତ୍ମା 'ପତଞ୍ଜଳି' ଯୋଗସୂତ୍ରର ଆରମ୍ଭରେ କହିଅଛନ୍ତି, ଯେ "ଯୋଗଶ୍ଚିତ୍ତବୃତ୍ତିନିରୋଧଃ"; ଅର୍ଥାତ୍ ମନର ସମସ୍ତ ବୃତ୍ତିଗୁଡିକୁ ନିରୋଧ କରିବାର ନାମ ଯୋଗ ଅଟେ ।

ସେହି ଚିତ୍ତବୃତ୍ତି ପୁଣି ପାଞ୍ଚପ୍ରକାରେ ବିଭକ୍ତ । ଯଥା;—

ବୃତ୍ତୟଃ ପଞ୍ଚତୟ୍ୟଃ କ୍ଲିଷ୍ଟା ଅକ୍ଲିଷ୍ଟାଃ । ୫ ।
ପ୍ରମାଣ-ବିପର୍ଯ୍ୟୟ-ବିକଳ୍ପ-ନିଦ୍ରା-ସ୍ମୃତୟଃ । ୬ । ପାତଞ୍ଜଳସୂତ୍ର ।

ଅର୍ଥାତ୍ ମନର ବୃତ୍ତିମାନଙ୍କ ମଧ୍ୟରୁ କାମ, କ୍ରୋଧ, ଦମ୍ଭ, ମୋହ, ମଦ ଓ ମାତ୍ସର୍ଯ୍ୟ ପ୍ରଭୃତି ବୃତ୍ତିଗୁଡିକ କ୍ଲେଶଦାୟକ ବୋଲି ସେମାନଙ୍କୁ 'କ୍ଲିଷ୍ଟ', ଓ ଦୟା, ଭକ୍ତି, ଶ୍ରଦ୍ଧା ପ୍ରଭୃତି ବୃତ୍ତିଗୁଡିକ କ୍ଲେଶନିବାରକ ବୋଲି ସେମାନଙ୍କୁ ଅକ୍ଲିଷ୍ଟ ବୋଲାଯାଏ । ମାତ୍ର ସେହି 'କ୍ଲିଷ୍ଟ' ଓ 'ଅକ୍ଲିଷ୍ଟ' ସମୁଦାୟ ବୃତ୍ତିଗୁଡିକ ପାଞ୍ଚ ଭାଗରେ ବିଭକ୍ତ । ଯଥା;—୧ ପ୍ରମାଣ, ୨ ବିପର୍ଯ୍ୟୟ, ୩ ବିକଳ୍ପ, ୪ ନିଦ୍ରା ଓ ୫ ସ୍ମୃତି ଇତ୍ୟାଦି ।

Digitized by PPRACHIN, SOA

(୧) ପ୍ରମାଣ ମଧ୍ୟ ତିନପ୍ରକାର । ଯଥା;—ପ୍ରତ୍ୟକ୍ଷ, ଅନୁମାନ ଓ ଆଗମ । ଇନ୍ଦ୍ରିୟ-ସହିତ ବାହ୍ୟବସ୍ତୁର ସଂଯୋଗ ହେବା ମାତ୍ରକେ, ମନ ମଧ୍ୟରେ ସେହି ବସ୍ତୁର ସ୍ୱରୂପବୋଧକ ଯେଉଁ ବୃତ୍ତି ଜନ୍ମେ ତାକୁ 'ପ୍ରତ୍ୟକ୍ଷ' ବୋଲି ।

କୌଣସି ପଦାର୍ଥ ଦେଖାଗଲେ ତାହା ସଙ୍ଗରେ ଅନ୍ୟ 'ଅଦେଖା' ପଦାର୍ଥ ସମ୍ବନ୍ଧରେ ଯେଉଁ ପ୍ରତ୍ୟୟ ବା ବୋଧ ଜନ୍ମେ, ତାକୁ 'ଅନୁମାନ' ବୋଲି । ଯେପରି ଧୂମ ଦର୍ଶନରେ ତତ୍ସଙ୍ଗତର ଅପ୍ରତ୍ୟକ୍ଷ ଅଗ୍ନିବିଷୟକ ବୋଧ ଜନ୍ମେ ।

ବିଶ୍ୱାସଯୋଗ୍ୟ (ବେଦାଦି) ବଚନ ଶୁଣି କୌଣସି ପଦାର୍ଥ ସମ୍ବନ୍ଧରେ ଯେଉଁ ଜ୍ଞାନ ଜନ୍ମେ, ତାକୁ 'ଆଗମ' ବୋଲାଯାଏ । ( ଏଠାରେ ତିନପ୍ରକାର ପ୍ରମାଣ ଶେଷ ହେଲା) ।

(୨) ବିପର୍ଯ୍ୟୟ—ମିଥ୍ୟାଜ୍ଞାନ* ଅର୍ଥାତ୍ ପଦାର୍ଥର ସ୍ୱରୂପ ଅବଗତ ହେଲେ ପ୍ରଥମରେ ଜନ୍ମିଥିବା ଯେଉଁ ଜ୍ଞାନର ପରିବର୍ତ୍ତନ ହୁଏ । ଯେପରି ପ୍ରଥମରେ ରଜ୍ଜୁରେ ସର୍ପଜ୍ଞାନ ଓ ଶୁକ୍ତିରେ (ଶାମୁକାରେ) ରଜତଜ୍ଞାନ ହୋଇଥାଏ, ରଜ୍ଜୁ ଓ ଶୁକ୍ତିର ପ୍ରକୃତ ଜ୍ଞାନ ଜନ୍ମିଲେ ତାହା ମିଥ୍ୟା ବୋଲି ପ୍ରମାଣିତ ହୁଏ ।

(୩) ବିକଳ୍ପ—ଏକପ୍ରକାର ଭାବ (ବୃତ୍ତି), ଯେ ପଦାର୍ଥ ନ ଥାଇ କେବଳ ଶବ୍ଦ ହେତୁରୁ ମନରେ ଉଦୟ ହୁଏ । ଯେପରି 'ଆକାଶକୁସୁମ' ବୋଲି କୌଣସି ପଦାର୍ଥ ନାହିଁ, ମାତ୍ର ସେ ଶବ୍ଦଟି ଶୁଣି ମନରେ ଏକପ୍ରକାର ଭାବ ଜାତ ହୁଏ ।

(୪) ନିଦ୍ରା—ତମୋମୟ ଅଜ୍ଞାନବୃତ୍ତି, ଯାହାର ଉଦୟରେ ପ୍ରମାଣ, ବିପର୍ଯ୍ୟୟ, ବିକଳ୍ପ ଓ ସ୍ମୃତି ପ୍ରଭୃତି ବୃତ୍ତିଗୁଡ଼ିକ ପ୍ରକାଶିତ ହୋଇ ପାରେ ନାହିଁ ।

(୫) ସ୍ମୃତି—ସ୍ମରଣ, ଅର୍ଥାତ୍ ଯେଉଁ ବୃତ୍ତି ପୂର୍ବ ଅନୁଭବଦ୍ୱାରା ସଂସ୍କାରରୂପରେ ମନ ମଧ୍ୟରେ ଅଙ୍କିତ ଥାଏ, କୌଣସି ଉଦ୍‌ବୋଧକ ଅଥବା ଉତ୍ତେଜକ କାରଣ ମିଳିଗଲେ ପୁନର୍ବାର ସେ ପ୍ରକାଶିତ ହୁଏ ।

ଯେତେପ୍ରକାର ମନୋବୃତ୍ତି ଅଛି, ତାହା ଉପରୋକ୍ତ ପାଞ୍ଚପ୍ରକାର ମଧ୍ୟରୁ କୌଣସି ନା କୌଣସି ପ୍ରକାରର ଅନ୍ତର୍ଗତ ଅଟେ । ଏହି ସବୁ ମନୋବୃତ୍ତିଗୁଡ଼ିକ ଯେ ସମ୍ପୂର୍ଣ୍ଣରୂପେ ନିରୋଧ କରିପାରନ୍ତି, ସେହି ବ୍ୟକ୍ତି ଯୋଗୀ ଅଟନ୍ତି । ନିଷ୍କାମଭାବରେ କର୍ମ କରୁଥିବା ବ୍ୟକ୍ତି ସଙ୍କଳ୍ପ ଅର୍ଥାତ୍ ଫଳକାମନା (ଅନୁରାଗ ବା ବିପର୍ଯ୍ୟୟ ନାମକ ୨ୟ ବୃତ୍ତି) ରହିତ ବୋଲି (ଗୌଣମତରେ) ତାଙ୍କୁ ଯୋଗୀ ବୋଲା ଯାଇପାରେ । ୨ ।

---

* କୌଣସି ତରଳଧାତୁକୁ ଛାଞ୍ଚରେ ଢାଳିଲେ ତାହା ଯେପରି ଠିକ ଛାଞ୍ଚର ଆକାର ଧାରଣ କରେ, ସେହିପରି ଜୀବର ଅନ୍ତଃକରଣ ବାହ୍ୟବସ୍ତୁର ସହିତ ସଂଯୁକ୍ତ ହେଲେ ସେହି ବସ୍ତୁର ଆକାରରେ ପରିଣତ ହୁଏ । ଅନ୍ତଃକରଣର ଏପ୍ରକାରପରିଣାମକୁ ତଦ୍‌ଗତର ଜ୍ଞାନ ବୋଲାଯାଏ, (କିନ୍ତୁ ଯୋଗଶାସ୍ତ୍ର ମତରେ ତାହାକୁ ବୃତ୍ତି କହନ୍ତି) ।

ଛାଞ୍ଚ ଏକପ୍ରକାର ଥିଲେ ସୁଦ୍ଧା, ଢାଳିବା ଦୋଷରେ ବା ଅନ୍ୟ ଦୋଷରେ ଯେବେ ତାହାର ବ୍ୟତିକ୍ରମ ହୁଏ, ତେବେ ତାହାର ସ୍ୱରୂପ ଯେପରି ଅପ୍ରକୃତ ହୁଏ, ସେହିପରି ପଦାର୍ଥ ଏକ ଥିଲେ ସୁଦ୍ଧା ମନୋବୃତ୍ତି ଅନ୍ୟ ପ୍ରକାର ହେଲେ ପ୍ରକୃତ ଜ୍ଞାନ ନ ହୋଇ ଅପ୍ରକୃତ ଜ୍ଞାନ ହୁଏ, ସେହି ଅପ୍ରକୃତ ଜ୍ଞାନକୁ 'ବିପର୍ଯ୍ୟୟ' ବୋଲାଯାଏ ।

Digitized by PPRACHIN, SOA

ଶ୍ଳୋକଃ ।

ଆରୁରୁକ୍ଷୋର୍ମୁନେର୍ଯୋଗଂ, କର୍ମ କାରଣମୁଚ୍ୟତେ ।
ଯୋଗାରୂଢସ୍ୟ ତସ୍ୟୈବ, ଶମଃ କାରଣମୁଚ୍ୟତେ । ୩ ।

ଅନ୍ୱୟଃ ।

ଯୋଗଂ ଆରୁରୁକ୍ଷୋଃ ମୁନେଃ କର୍ମ କାରଣଂ ଉଚ୍ୟତେ । ତସ୍ୟ ଏବ ଯୋଗାରୂଢ଼ସ୍ୟ ଶମଃ କାରଣଂ ଉଚ୍ୟତେ । ୩ ।

ଟୀକା ।

ତର୍ହି ଯାବଜ୍ଜୀବ କର୍ମଯୋଗ ଏବ ପ୍ରାପ୍ତ ଇତ୍ୟାଶଙ୍କ୍ୟ ତସ୍ୟାବଧିମାହ, ଆରୁରୁକ୍ଷୋରିତି । ଜ୍ଞାନଯୋଗମାରୋଢୁଂ ପ୍ରାପ୍ତୁମିଚ୍ଛୋଃ ପୁଂସସ୍ତଦାରୋହେ କାରଣଂ କର୍ମୋଚ୍ୟତେ । ଚିତ୍ତଶୁଦ୍ଧିକରତ୍ୱାତ୍ ଜ୍ଞାନଯୋଗମାରୂଢ଼ସ୍ୟ ତୁ ତସ୍ୟୈବ ଜ୍ଞାନନିଷ୍ଠସ୍ୟ ଶମୋ ବିକ୍ଷେପକକର୍ମୋପରମୋ ଜ୍ଞାନପରିପାକେ କାରଣମୁଚ୍ୟତେ ।

ପଦବ୍ୟାଖ୍ୟା ।

ଆରୁରୁକ୍ଷୋଃ—(ଜ୍ଞାନଯୋଗ) ପାଇବାକୁ ଇଚ୍ଛୁକ, ମୁନେଃ—ମୁନିଙ୍କର, ଯୋଗଂ—ଜ୍ଞାନଯୋଗକୁ, କର୍ମ କାରଣମୁଚ୍ୟତେ—କର୍ମାନୁଷ୍ଠାନକୁ କାରଣ କହନ୍ତି, ଯୋଗାରୂଢସ୍ୟ ତସ୍ୟୈବ—ଯୋଗପ୍ରାପ୍ତ ସେହି ମୁନିଙ୍କର, ଶମଃ—କର୍ମନିବୃତ୍ତି, କାରଣମୁଚ୍ୟତେ—କାରଣ ବୋଲି କଥିତ ହୁଏ । ୩ ।

ଅନୁବାଦ ।

ଜ୍ଞାନଯୋଗକୁ ଆରୋହଣ କରିବାକୁ ଇଚ୍ଛୁକ ମୁନି ବ୍ୟକ୍ତିଙ୍କର, କର୍ମାନୁଷ୍ଠାନ କାରଣସ୍ୱରୂପ ଏବଂ ଜ୍ଞାନଯୋଗରେ ଆରୋହଣ କରିଥିବା ବ୍ୟକ୍ତିଙ୍କର (ଜ୍ଞାନପରିପାକ ବିଷୟରେ) କର୍ମତ୍ୟାଗ କାରଣସ୍ୱରୂପ ଅଟେ । ୩ ।

ବିଶଦବ୍ୟାଖ୍ୟା ।

ନିଷ୍କାମଭାବରେ ଅର୍ଥାତ୍ ଫଳକାମନା ରହିତ ହୋଇ କର୍ମ ଅନୁଷ୍ଠାନ କଲେ, ଚିତ୍ତଶୁଦ୍ଧ ହୋଇ ଯୋଗରେ ଆରୋହଣ କରିବାକୁ ଅର୍ଥାତ୍ ଯୋଗପ୍ରାପ୍ତ ହେବାକୁ ଇଚ୍ଛା ହୁଏ । ସୁତରାଂ ଯୋଗରେ ଆରୋହଣ କରିବାକୁ ଇଚ୍ଛୁକ ବ୍ୟକ୍ତିର କର୍ମାନୁଷ୍ଠାନ କାରଣ ହେଲା । କର୍ମତ୍ୟାଗ ଯୋଗପ୍ରାପ୍ତ ବ୍ୟକ୍ତିଙ୍କର ଜ୍ଞାନପରିପାକର ହେତୁ ଅଟେ । ଫଳକଥା ଏହି କି ବୈରାଗ୍ୟ ପ୍ରାପ୍ତିଯାଏ କର୍ମାନୁଷ୍ଠାନ କର୍ତ୍ତବ୍ୟ, ବୈରାଗ୍ୟ ପ୍ରାପ୍ତ ହେଲେ ଜ୍ଞାନପରିପାକ ନିମିତ୍ତ କର୍ମତ୍ୟାଗ କର୍ତ୍ତବ୍ୟ । ୩ ।

ଶ୍ଳୋକଃ ।

ଯଦା ହି ନେନ୍ଦ୍ରିୟାର୍ଥେଷୁ, ନ କର୍ମସ୍ୱନୁଷଜ୍ଜତେ ।
ସର୍ବସଙ୍କଳ୍ପସନ୍ନ୍ୟାସୀ, ଯୋଗାରୂଢସ୍ତଦୋଚ୍ୟତେ । ୪ ।

ଅନ୍ୱୟଃ ।

ଯଦା ସର୍ବସଙ୍କଳ୍ପସନ୍ନ୍ୟାସୀ ଇନ୍ଦ୍ରିୟାର୍ଥେଷୁ ନ ହି ଅନୁଷଜ୍ଜତେ, ନ କର୍ମସୁ, (ଅନୁଷଜ୍ଜତେ) ତଦା ଯୋଗାରୂଢ଼ଃ ଉଚ୍ୟତେ । ୪ ।

Digitized by PPRACHIN, SOA

ଟୀକା ।

କୀଦୃଶୋଽସୌ ଯୋଗାରୂଢ଼ଃ ଯସ୍ୟ ଶମଃ କାରଣମୁଚ୍ୟତ ଇତ୍ୟତ୍ରାହ । ଯଦେତି । ଇନ୍ଦ୍ରିୟାର୍ଥେଷୁ ଇନ୍ଦ୍ରିୟଭୋଗ୍ୟେଷୁ ତତ୍ସାଧନେଷୁ ଚ କର୍ମସୁ ଯଦା ନାନୁଷଜ୍ଜତେ ଆସକ୍ତିଂ ନ କରୋତି, ତତ୍ର ହେତୁଃ ଅସକ୍ତିମୂଳଭୂତାନ୍ ସର୍ବାନ୍ ଭୋଗବିଷୟାନ୍ କର୍ମବିଷୟାଂଶ୍ଚ ସଙ୍କଳ୍ପାନ୍ ସନ୍ନ୍ୟସିତୁଂ ତ୍ୟକ୍ତୁଂ ଶୀଳଂ ଯସ୍ୟ ସ ତଦା ଯୋଗାରୂଢ଼ ଉଚ୍ୟତେ । ୪ ।

ପଦବ୍ୟାଖ୍ୟା ।

ଯଦା ହି—ଯେତେବେଳେ, ନ—ନାହିଁ, ଇନ୍ଦ୍ରିୟାର୍ଥେଷୁ—(ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧାଦି) ବିଷୟରେ, ନ—ନାହିଁ, କର୍ମସୁ—(ନିତ୍ୟ ନୈମିତ୍ତିକ ଓ କାମ୍ୟ ଆଦି) କର୍ମମାନଙ୍କରେ, ଅନୁଷଜ୍ଜତେ—ଆସକ୍ତ ହୁଏ, ସର୍ବସଙ୍କଳ୍ପସନ୍ନ୍ୟାସୀ—ସର୍ବ ଫଳକାମନା ତ୍ୟାଗୀ, ଯୋଗାରୂଢ଼ସ୍ତଦୋଚ୍ୟତେ—( ତାକୁ ) ତେବେ ଯୋଗାରୂଢ଼ ବୋଲଯାଏ । ୪ ।

ଅନୁବାଦ ।

ଯେତେବେଳେ (ମନୁଷ୍ୟ) ଶବ୍ଦସ୍ପର୍ଶାଦି ବିଷୟ ଓ ନିତ୍ୟ ନୈମିତ୍ତିକାଦି କର୍ମମାନଙ୍କରେ ଆସକ୍ତ ନ ହୁଅନ୍ତି ଏବଂ ସର୍ବପ୍ରକାର କାମନା ତ୍ୟାଗ କରନ୍ତି, ତେତେବେଳେ (ତାଙ୍କୁ) ଯୋଗାରୂଢ଼ ବୋଲଯାଏ । ୪ ।

ବିଶଦବ୍ୟାଖ୍ୟା ।

ମନୁଷ୍ୟ ଜ୍ଞାନସାଧନ କରି ଯେତେବେଳେ 'ସତ୍ତ୍ୱାପତ୍ତି' * ବା ଚତୁର୍ଥଭୂମିକା ଅବସ୍ଥାରେ ଉପସ୍ଥିତ ହୁଅନ୍ତି ଓ ତାଙ୍କୁ ଜଗତ୍ ସ୍ୱପ୍ନପରି ବୋଧ ହେବାରୁ, ସେ ଇନ୍ଦ୍ରିୟସୁଖକର ଶବ୍ଦସ୍ପର୍ଶାଦି ବିଷୟମାନଙ୍କରେ ଏବଂ ତତ୍ପ୍ରାପ୍ତିର ହେତୁ ସ୍ୱରୂପ ନିତ୍ୟ ନୈମିତ୍ତିକ ଓ କାମ୍ୟ କର୍ମମାନଙ୍କରେ ଆସକ୍ତ ନ ହୁଅନ୍ତି ଏବଂ ସର୍ବପ୍ରକାର ସଙ୍କଳ୍ପ ତ୍ୟାଗ କରନ୍ତି ଅର୍ଥାତ୍ ମନୋବୃତ୍ତି (ଅନ୍ତର୍ମୁଖୀନ) ଭିତର ଆଡକୁ ଗ୍ଲଳିତ ହୋଇଥିବାରୁ ବାହାରର କୌଣସି ପଦାର୍ଥରେ କାମନା ନ କରନ୍ତି ତେତେବେଳେ ତାଙ୍କୁ ଯୋଗାରୂଢ଼ ବୋଲି କୁହାଯାଏ ।

ଫଳକଥା ଏହି କି ଯୋଗାରୂଢ଼ ବ୍ୟକ୍ତିଙ୍କର କାମନା ନ ଥାଏ ଏବଂ ଇନ୍ଦ୍ରିୟଭୋଗ୍ୟ ବିଷୟମାନଙ୍କରେ ଆସକ୍ତି ନ ଥାଏ । ୪ ।

ଶ୍ଲୋକଃ ।

* ଉଦ୍ଧରେଦାତ୍ମନାତ୍ମାନଂ,ନାତ୍ମାନମବସାଦୟେତ୍ ।
ଆତ୍ମୈବ ହ୍ୟାତ୍ମନୋବନ୍ଧୁ,ରାତ୍ମୈବ ରିପୁରାତ୍ମନଃ । ୫ ।

ଅନ୍ୱୟଃ ।

ଆତ୍ମନା ଆତ୍ମାନଂ ଉଦ୍ଧରେତ୍, ଆତ୍ମାନଂ ନ ଅବସାଦୟେତ୍ । ହି ଆତ୍ମା ଏବ ଆତ୍ମନଃ ବନ୍ଧୁଃ, ଆତ୍ମା ଏବ ଆତ୍ମନଃ ରିପୁଃ । ୫ ।

ଟୀକା ।

ଅତୋବିଷୟାସକ୍ତିତ୍ୟାଗେ ମୋକ୍ଷଂ ତଦାସକ୍ତୌ ଚ ବନ୍ଧଂ ପର୍ଯ୍ୟାଲୋଚ୍ୟ ରାଗାଦିସ୍ୱଭାବ ତ୍ୟଜେଦିତ୍ୟାହ, ଉଦ୍ଧରେଦିତି । ଆତ୍ମନା ବିବେକଯୁକ୍ତେନାତ୍ମାନଂ ସଂସାରାଦୁଦ୍ଧରେତ୍ ନ ତ୍ୱବସାଦୟେତ୍ଧୋନୟେତ୍, ହି ଯତଃ ଆତ୍ମୈବ ମନଃସଙ୍ଗାଦ୍ୟୁପରତଃ ଆତ୍ମନଃ ସ୍ୱସ୍ୟ ବନ୍ଧୁରୁପକାରକଃ ରିପୁରପକାରକଃ । ୫ ।

* ତୃତୀୟ ଅଃ ୧୮ଶ ଶ୍ଲୋକ ବିଶଦବ୍ୟାଖ୍ୟା ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଉଦ୍ଧରେତ୍—ଉଦ୍ଧାର କରିବ, ଆତ୍ମନାତ୍ମାନଂ—ବିବେକଯୁକ୍ତ ମନଦ୍ୱାରା ଆପଣାକୁ, ନାତ୍ମାନମବସାଦୟେତ୍—ଆତ୍ମାକୁ ନୀଚଗାମୀ କରିବ ନାହିଁ, ଆତ୍ମୈବ ହି—ଆତ୍ମା କେବଳ, ଆତ୍ମନୋବନ୍ଧୁଃ—ଆତ୍ମାର (ଆପଣାର) ବନ୍ଧୁ, ଆତ୍ମୈବ—ଆତ୍ମା କେବଳ, ରିପୁଃ—ଶତ୍ରୁ, ଆତ୍ମନଃ—ଆପଣାର । ୫ ।

ଅନୁବାଦ ।

ବିବେକଯୁକ୍ତ (ଆତ୍ମା) ମନଦ୍ୱାରା ଆପଣାକୁ ଉଦ୍ଧାର କରିବ । ଆତ୍ମାକୁ ଅବସନ୍ନ (ଅଧୋଗାମୀ) କରିବ ନାହିଁ । କାହିଁକି ନା ଆତ୍ମା (ମନ) ଅବସ୍ଥାବିଶେଷରେ ଆପଣାର ମିତ୍ର ଓ ଶତ୍ରୁ ହୁଏ । ୫ ।

ବିଶଦବ୍ୟାଖ୍ୟା ।

ସଂସାର ଗୋଟିଏ ସମୁଦ୍ରସ୍ୱରୂପ, ମାୟା ତହିଁରେ ଅଗାଧ ଜଳ ଓ କାମକ୍ରୋଧାଦି ରିପୁଗଣ ତିମି, ହାଙ୍ଗର ଓ କୁମ୍ଭୀର ପ୍ରଭୃତି ଭୟାନକ ଜୀବରୂପରେ ତହିଁରେ ବର୍ତ୍ତମାନ । ଏପ୍ରକାର ଭୟଙ୍କର ସମୁଦ୍ରରୁ ଉଦ୍ଧାର ପାଇବାକୁ ଆପଣାର ଯତ୍ନଭିନ୍ନ ଆଉ କିଛି ଉପାୟ ନାହିଁ । ଅତଏବ ଯତ୍ନସହକାରେ ବିବେକଯୁକ୍ତ ମନରୂପ ନୌକାଦ୍ୱାରା ନିଜେ ଏ ସଂସାର-ସାଗର ପାର ହେବାକୁ ହେବ । ସାବଧାନ ହୋଇ ଚଳି ପାରିଲେ ଆପେ ଆପଣାର ବନ୍ଧୁ ହୋଇ ଆତ୍ମଜ୍ଞାନରୂପ କୂଳ ପ୍ରାପ୍ତ ହେବ, କିନ୍ତୁ ଅସାବଧାନ ହେଲେ ଅଗାଧଜଳରେ ବୁଡ଼ି କାମକ୍ରୋଧାଦି ନକ୍ର ପ୍ରଭୃତି ଜୀବଦ୍ୱାରା କ୍ଷତବିକ୍ଷତ ହୋଇ ଅନନ୍ତ ଯନ୍ତ୍ରଣା ଭୋଗ କରିବ ଓ ତେତେବେଳେ ଆପଣାର ଗର୍ହିତକାର୍ଯ୍ୟ ବୁଝିପାରି ଆପଣାକୁ ନିଜର ଶତ୍ରୁ ବୋଲି ଚିହ୍ନି ପାରିବ ।

ଫଳକଥା ଏହି କି ବିବେକି ମନ ଆପଣାର ମିତ୍ର ଓ ଇନ୍ଦ୍ରିୟାସକ୍ତ ମନ ଆପଣାର ଶତ୍ରୁ । ଭବବନ୍ଧନରୁ ମୁକ୍ତ ହେବା ଅଥବା ଭବସାଗରରେ ପଡ଼ି 'ଉବୁଡ଼ି ଝୁବୁଡ଼ି' ହେବା ଏ ଦୁଇ କଥାର କ୍ଷମତା ମନୁଷ୍ୟ ହାତରେ ଅଛି । ସେ ଯେଉଁ ପଥ ଅବଲମ୍ବନ କରିବ ସେହିପରି ଫଳ ପାଇବ । ୫ ।

ଶ୍ଳୋକଃ ।

* ବନ୍ଧୁରାତ୍ମାତ୍ମନସ୍ତସ୍ୟ, ଯେନାତ୍ମୈବାତ୍ମନା ଜିତଃ ।
ଅନାତ୍ମନସ୍ତୁ ଶତ୍ରୁତ୍ୱେ, ବର୍ତ୍ତେତାତ୍ମୈବ ଶତ୍ରୁବତ୍ । ୬ ।

ଅନ୍ୱୟଃ ।

ଯେନ ଆତ୍ମନା ଏବ ଆତ୍ମା ଜିତଃ, ତସ୍ୟ ଆତ୍ମନଃ ଆତ୍ମା ବନ୍ଧୁଃ, ତୁ ଅନାତ୍ମନଃ ଆତ୍ମା ଏବ ଶତ୍ରୁବତ୍ ଶତ୍ରୁତ୍ୱେ ବର୍ତ୍ତେତ । ୬ ।

ଟୀକା ।

କଥମ୍ଭୂତସ୍ୟାତ୍ମୈବବନ୍ଧୁଃ କଥମ୍ଭୂତସ୍ୟ ଶତ୍ରୁରିତ୍ୟପେକ୍ଷାୟାମାହ, ବନ୍ଧୁରିତି । ଯେନାତ୍ମନୈବାତ୍ମା କାର୍ଯ୍ୟକାରଣସଂଘାତରୂପୋଜିତୋ ବଶୀକୃତସ୍ତସ୍ୟ ତଥାଭୂତସ୍ୟାତ୍ମନଃ ଆତ୍ମୈବ ବନ୍ଧୁଃ ଅନାତ୍ମନୋଽଜିତାତ୍ମନସ୍ତୁ ଆତ୍ମୈବାତ୍ମନଃ ଶତ୍ରୁତ୍ୱେ ଶତ୍ରୁବଦପକାରିତ୍ୱେ ବର୍ତ୍ତେତ । ୬ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ବନ୍ଧୁଃ—ମିତ୍ର, ଆତ୍ମା—ଅଟେ, ଆତ୍ମନଃ—ଆପଣାର, ତସ୍ୟ—ସେହି ବ୍ୟକ୍ତିର, ଯେନ ଆତ୍ମା ଏବ ଆତ୍ମନା ଜିତଃ—ଯେ ଆପଣାର ମନ ଓ ଇନ୍ଦ୍ରିୟକୁ ଜୟ କରିଅଛି, ଅନାତ୍ମନସ୍ତୁ—ଆପଣାର ମନ ଓ ଇନ୍ଦ୍ରିୟକୁ ଜୟ କରି ନ ଥିବା ବ୍ୟକ୍ତିର, ଶତ୍ରୁତ୍ୱେ—ଶତ୍ରୁପଣିଆରେ, ବର୍ତ୍ତେତ—ପ୍ରବୃତ୍ତ ହେବ, ଆତ୍ମୈବ—ଆତ୍ମା କେବଳ, ଶତ୍ରୁବତ୍—ଶତ୍ରୁପରି । ୬ ।

ଅନୁବାଦ ।

ଯେ (ଜୀବାତ୍ମା) ନିଜେ 'ଆତ୍ମା' ଅର୍ଥାତ୍ ମନକୁ ବଶୀଭୂତ କରିଅଛି, ସେହି (ଜୀବାତ୍ମା)ର (ମନ) ମିତ୍ର, ଆଉ ଯେ (ଜୀବାତ୍ମା) ମନର ବଶୀଭୂତ ତାହାର ମନ ଶତ୍ରୁପରି ଅପକାର କରିବାରେ ପ୍ରବୃତ୍ତ ହୁଏ । ୬ ।

ବିଶଦବ୍ୟାଖ୍ୟା ।

ମହାତ୍ମା ପରାଶର କହିଅଛନ୍ତି, ଯେ "ମନ ଏବ ମନୁଷ୍ୟାଣାଂ କାରଣଂ ବନ୍ଧମୋକ୍ଷୟୋଃ" ଅର୍ଥାତ୍ ମନୁଷ୍ୟମାନଙ୍କର ମନ ବନ୍ଧନ ଓ ମୁକ୍ତିର କାରଣ ଅଟେ । ଏ କଥାର ତାତ୍ପର୍ଯ୍ୟ ଏହି ଶ୍ଳୋକରେ ବିଶଦରୂପେ ବୁଝାଇ ଦିଆ ଯାଉଅଛି ; ଅର୍ଥାତ୍ ଯେଉଁ ଜୀବାତ୍ମା ମନକୁ ବିଷୟରୁ ନିବୃତ୍ତ କରି ଆପଣାର ବଶୀଭୂତ କରିଅଛି, ସେହି ଜୀବାତ୍ମାର ସେ ମନ ବନ୍ଧୁ—ହିତକାରୀ ଅଟେ । ଆଉ ଯେଉଁ ଜୀବାତ୍ମା 'ଅନାତ୍ମା' ଅର୍ଥାତ୍ ମନର ବଶୀଭୂତ ତାହାର ମନ ଶତ୍ରୁପରି ଅପକାରୀ ଅଟେ ।

ଫଳକଥା ଏହି କି ମନ ବିବେକ ବୁଦ୍ଧିଦ୍ୱାରା ସଂଯତ ହେଲେ, ଶୁଭଫଳପ୍ରଦ ଓ ଯଥେଚ୍ଛାଗାମୀ ହେଲେ ଅଶୁଭଫଳପ୍ରଦ ହୁଏ । ୬ ।

ଶ୍ଳୋକଃ ।

ଜିତାତ୍ମନଃ ପ୍ରଶାନ୍ତସ୍ୟ, ପରମାତ୍ମା ସମାହିତଃ ।
ଶୀତୋଷ୍ଣ-ସୁଖ-ଦୁଃଖେଷୁ, ତଥା ମାନାପମାନୟୋଃ । ୭ ।

ଅନ୍ୱୟଃ ।

ଜିତାତ୍ମନଃ ପ୍ରଶାନ୍ତସ୍ୟ ପରଂ ଆତ୍ମା (ପରମାତ୍ମା ବା) ଶୀତୋଷ୍ଣ-ସୁଖ-ଦୁଃଖେଷୁ ତଥା ମାନାପମାନୟୋଃ ସମାହିତଃ (ଭବତି) । ୭ ।

ଟୀକା ।

ଜିତାତ୍ମନଃ ସ୍ୱସ୍ମିନ୍ ବନ୍ଧୁତ୍ୱଂ ସ୍ପଷ୍ଟୟତି, ଜିତାତ୍ମନ ଇତି । ଜିତଃ ଆତ୍ମା ଯେନ ତସ୍ୟ ପ୍ରଶାନ୍ତସ୍ୟ ରାଗାଦିରହିତସ୍ୟୈବ ପରଂ କେବଳମାତ୍ମା ଶୀତୋଷ୍ଣାଦିଷୁ ସତ୍ସ୍ୱପି ସମାହିତ ଆତ୍ମନଷ୍ଟୋଭବତି ନାନ୍ୟସ୍ୟ ଯଦ୍ୱା ତସ୍ୟ ହୃଦି ପରମାତ୍ମା ସମାହିତଃ ସ୍ଥିତୋଭବତି । ୭ ।

ପଦବ୍ୟାଖ୍ୟା ।

ଜିତାତ୍ମନଃ—ମନୋଜୟକାରୀ, ପ୍ରଶାନ୍ତସ୍ୟ—ରାଗଦ୍ୱେଷାଦିରହିତ ବ୍ୟକ୍ତିର, ପରଂ—କେବଳ, ଆତ୍ମା ସମାହିତଃ—ଆତ୍ମା ସମାଧିଯୁକ୍ତ ହୁଏ, ଅଥବା—ପରମାତ୍ମା ସମାହିତଃ—(ମନୋଜୟକାରୀ ଓ ରାଗଦ୍ୱେଷାଦିରହିତ ବ୍ୟକ୍ତିର ମନରେ) ପରମାତ୍ମା ପ୍ରକାଶିତ ହୁଅନ୍ତି, ଶୀତୋଷ୍ଣ-ସୁଖ-ଦୁଃଖେଷୁ—(ସତ୍ସୁ) ଶୀତ, ଉଷ୍ଣ, ସୁଖ ଓ ଦୁଃଖ ଥିଲେହେଁ, ତଥା—ସେହିପରି, ମାନାପମାନୟୋଃ—ମାନ ଓ ଅପମାନ ଥିଲେ ସୁଦ୍ଧା । ୭ ।

Digitized by PPRACHIN, SOA

ଅନୁବାଦ ।

ମନୋବଶକାରୀ ଓ ରାଗଦ୍ୱେଷାଦିରହିତ ବ୍ୟକ୍ତିଙ୍କର ଶୀତ, ଉଷ୍ଣ, ସୁଖ, ଦୁଃଖ, ମାନ ଓ ଅପମାନ ଘଟିଲେ ମଧ୍ୟ ଆତ୍ମା ସମାଧିଯୁକ୍ତ ହୁଏ । ୭ ।

ବିଶଦବ୍ୟାଖ୍ୟା ।

ଆତ୍ମା ସମାଧିଯୁକ୍ତ ହେବା ବିଷୟରେ ସୁଖ-ଦୁଃଖାଦି ଦ୍ୱନ୍ଦ୍ୱସହିଷ୍ଣୁତାର ନିତାନ୍ତ ପ୍ରୟୋଜନ । କାହିଁକି ନା ଦ୍ୱନ୍ଦ୍ୱସହିଷ୍ଣୁତା ନ ହେଲେ ଋତୁପରିବର୍ତ୍ତନ ଓ ଦିବାରାତ୍ରି ଇତ୍ୟାଦି ହେତୁରୁ ଉଷ୍ଣତା ଓ ଶୀତଳତାଦି ପ୍ରକୋପରେ ସମାଧିଭଙ୍ଗର ବିଶେଷ ସମ୍ଭାବନା । ପୁଣି ଦ୍ୱନ୍ଦ୍ୱସହିଷ୍ଣୁ ହେବାକୁ ମନର ଚଞ୍ଚଳତାଦି ପରିତ୍ୟାଗ ନିତାନ୍ତ ଆବଶ୍ୟକ, ସୁତରାଂ ଯେଉଁ ବ୍ୟକ୍ତି ମନକୁ ବଶୀଭୂତ କରିଅଛନ୍ତି, ଅର୍ଥାତ୍ ମନର ବିକ୍ଷେପାଦି ଗୁଣ ପରିତ୍ୟାଗ କରିଅଛନ୍ତି, ଏବଂ ସେହି ହେତୁରୁ ସୁଖ-ଦୁଃଖ, ଶୀତ ଓ ଉଷ୍ଣ ଏବଂ ମାନ ଓ ଅପମାନ ଇତ୍ୟାଦି ଦ୍ୱନ୍ଦ୍ୱସହିଷ୍ଣୁ ହୋଇଅଛନ୍ତି, ତାଙ୍କର ଆତ୍ମା ଯେ ସମାଧିସ୍ଥ ହେବ ସେଥିରେ ଆଉ ସନ୍ଦେହ କଣ ? । ୭ ।

ଶ୍ଲୋକଃ ।

* ଜ୍ଞାନବିଜ୍ଞାନତୃପ୍ତାତ୍ମା, କୂଟସ୍ଥୋ ବିଜିତେନ୍ଦ୍ରିୟଃ ।
ଯୁକ୍ତ ଇତ୍ୟୁଚ୍ୟତେ ଯୋଗୀ, ସମଲୋଷ୍ଟ୍ରାଶ୍ମକାଞ୍ଚନଃ । ୮ ।

ଅନ୍ୱୟଃ ।

ଜ୍ଞାନବିଜ୍ଞାନତୃପ୍ତାତ୍ମା କୂଟସ୍ଥଃ ବିଜିତେନ୍ଦ୍ରିୟଃ ସମଲୋଷ୍ଟ୍ରାଶ୍ମକାଞ୍ଚନଃ ଯୋଗୀ, ଯୁକ୍ତଃ ଇତି ଉଚ୍ୟତେ । ୮ ।

ଟୀକା ।

ଯୋଗାରୂଢ଼ସ୍ୟ ଲକ୍ଷଣଂ ଶ୍ରୈଷ୍ଠ୍ୟଂ ଚୋକ୍ତମୁପସଂହରତି, ଜ୍ଞାନେତି । ଜ୍ଞାନମୌପଦେଶିକଂ ବିଜ୍ଞାନମପରୋକ୍ଷାନୁଭବଃ ତାଭ୍ୟାଂ ତୃପ୍ତଃ ନିରାକାଂକ୍ଷଃ ଆତ୍ମା ଚିତ୍ତଂ ଯସ୍ୟ, ଅତଃ କୂଟସ୍ଥଃ ନିର୍ବିକାରଃ ଅତଏବ ବିଜିତାନି ଇନ୍ଦ୍ରିୟାଣି ଯେନ ଅତଏବ ସମାନି ଲୋଷ୍ଟ୍ରାଦୀନି ଯସ୍ୟ ମୃତ୍‌ଖଣ୍ଡପାଷାଣସୁବର୍ଣ୍ଣେଷୁ ହେୟୋପାଦେୟବୁଦ୍ଧିଶୂନ୍ୟଃ ସ ଯୁକ୍ତୋ ଯୋଗାରୂଢ଼ ଇତ୍ୟୁଚ୍ୟତେ । ୮ ।

ପଦବ୍ୟାଖ୍ୟା ।

ଜ୍ଞାନ-ବିଜ୍ଞାନତୃପ୍ତାତ୍ମା—(ଶାସ୍ତ୍ର ଓ ଗୁରୁ ଉପଦେଶ ଏବଂ ଅନୁମାନ ଓ ଯୁକ୍ତିଦ୍ୱାରା ନିଶ୍ଚିତ ବୋଧକୁ ଜ୍ଞାନ ଏବଂ ପ୍ରତ୍ୟକ୍ଷ ଅନୁଭବଜନିତ ବୋଧର ନାମ ବିଜ୍ଞାନ) ଜ୍ଞାନ ଓ ବିଜ୍ଞାନଦ୍ୱାରା ଯାହାର ଆତ୍ମା କାମନାରହିତ ଅଟେ, କୂଟସ୍ଥଃ—(କାମକ୍ରୋଧାଦି) ବିକାରରହିତ, ବିଜିତେନ୍ଦ୍ରିୟଃ—ଇନ୍ଦ୍ରିୟମାନଙ୍କୁ ସମ୍ପୂର୍ଣ୍ଣରୂପେ ଜୟ କରିଥିବା ବ୍ୟକ୍ତି, ଯୁକ୍ତଃ—ଆତ୍ମଜ୍ଞାନରୂପ ଯୋଗରେ ନିଶ୍ଚଳ (ଯୋଗାରୂଢ଼), ଇତି ଉଚ୍ୟତେ—ଏହା କଥିତ ହୁଏ, ଯୋଗୀ—ଯୋଗାଭ୍ୟାସୀ, ସମଲୋଷ୍ଟ୍ରାଶ୍ମକାଞ୍ଚନଃ—ଟେଳା ପଥର ଓ ସୁବର୍ଣ୍ଣରେ ସମଜ୍ଞାନ । ୮ ।

ଅନୁବାଦ ।

ଯାହାଙ୍କର ଚିତ୍ତ ଜ୍ଞାନ ଓ ବିଜ୍ଞାନରେ ତୃପ୍ତ, ଯେ ବିକାରହୀନ ଓ ଜିତେନ୍ଦ୍ରିୟ ଏବଂ ଯେ ଟେଳା ପଥର ଓ ସୁବର୍ଣ୍ଣରେ ସମାନ ଜ୍ଞାନ କରନ୍ତି, ସେହି ଯୋଗାଭ୍ୟାସି ପୁରୁଷଙ୍କୁ ଯୁକ୍ତ (ଯୋଗାରୂଢ଼) ବୋଲାଯାଏ । ୮ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଶାସ୍ତ୍ର ଉପଦେଶ ଅଥବା ଗୁରୁ ଉପଦେଶଦ୍ୱାରା ଯେଉଁ ନିର୍ମଳ ବୁଦ୍ଧି ଜାତ ହୁଏ, ତାହାକୁ 'ଜ୍ଞାନ' ବୋଲାଯାଏ । ଶାସ୍ତ୍ରୋକ୍ତ ପଦାର୍ଥମାନଙ୍କର ସାକ୍ଷାତ୍ ଅନୁଭବ ଅର୍ଥାତ୍ ପରୀକ୍ଷିତ ଜ୍ଞାନକୁ 'ବିଜ୍ଞାନ' ବୋଲାଯାଏ । ଯେଉଁ ବ୍ୟକ୍ତିଙ୍କର ଆତ୍ମା, ଜ୍ଞାନ ଓ ବିଜ୍ଞାନରେ ତୃପ୍ତ, ଅର୍ଥାତ୍ ତତ୍ତ୍ୱପଦାର୍ଥ ବିଷୟରେ ଶାସ୍ତ୍ର ଓ ଗୁରୁ ଉପଦେଶକୁ ନିଜର ପରୀକ୍ଷାଦ୍ୱାରା ଯେ ସତ୍ୟ ବୋଲି ସ୍ଥିର କରିଅଛନ୍ତି, ଏବଂ ଯେ କାମ କ୍ରୋଧାଦି ବିକାରରହିତ ଓ ଯେ ମନସହିତ ସମସ୍ତ ଇନ୍ଦ୍ରିୟମାନଙ୍କୁ ଜୟ କରିଅଛନ୍ତି, ଅର୍ଥାତ୍ ଇନ୍ଦ୍ରିୟସୁଖକର ଭୋଗ୍ୟପଦାର୍ଥ ଦେଖିଲେ ସୁଦ୍ଧା ଯାହାଙ୍କ ମନରେ ବିକାର ଜାତ ନ ହୁଏ, ଏବଂ ତୀବ୍ର ବୈରାଗ୍ୟ ଉଦୟ ହୋଇଥିବାରୁ ଢେଲା ପଥର ଓ ସୁବର୍ଣ୍ଣାଦିରେ ଯାହାଙ୍କର ସମାନ ଜ୍ଞାନ, ସେହି ଯୋଗାଭ୍ୟାସୀ ବ୍ୟକ୍ତି 'ଯୁକ୍ତ' ଅର୍ଥାତ୍ ଯୋଗାରୂଢ଼ ବୋଲି କଥିତ ହୁଅନ୍ତି । ୮ ।

ଶ୍ଲୋକଃ ।

* ସୁହୃନ୍ମିତ୍ରାର୍ଯ୍ୟୁଦାସୀନ,ମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ ।
ସାଧୁଷ୍ୱପି ଚ ପାପେଷୁ, ସମବୁଦ୍ଧିର୍ବିଶିଷ୍ୟତେ । ୯ ।

ଅନ୍ୱୟଃ ।

ସୁହୃନ୍ମିତ୍ରାର୍ଯ୍ୟୁଦାସୀନମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ ଚ ସାଧୁଷୁ, ଚ ପାପେଷୁ ଅପି ସମବୁଦ୍ଧିଃ ବିଶିଷ୍ୟତେ । ୯ ।

ଟୀକା ।

ସୁହୃନ୍ମିତ୍ରାଦିଷୁ ସମବୁଦ୍ଧିଯୁକ୍ତସ୍ତୁ ତତୋଽପି ଶ୍ରେଷ୍ଠ ଇତ୍ୟାହ, ସୁହୃଦିତି । ସୁହୃତ୍ ସ୍ୱଭାବେନୈବହିତାଶଂସୀ, ମିତ୍ରଂ ସ୍ନେହବଶେନୋପକାରକଃ, ଅରିର୍ଘାତକଃ, ଉଦାସୀନଃ ବିବଦମାନୟୋରୁଭୟୋରପି ହିତାଶଂସୀ, ଦ୍ୱେଷ୍ୟୋଦ୍ୱେଷବିଷୟଃ, ବନ୍ଧୁଃ ସମ୍ବନ୍ଧୀ, ସାଧବଃ ସଦାଚାରାଃ, ପାପା ଦୁରାଚାରାଃ, ଏତେଷୁ ସମା ରାଗଦ୍ୱେଷଶୂନ୍ୟାବୁଦ୍ଧିର୍ଯସ୍ୟ ସତୁ ବିଶିଷ୍ଟଃ । ୯ ।

ପଦବ୍ୟାଖ୍ୟା ।

ସୁହୃନ୍ମିତ୍ରାର୍ଯ୍ୟୁଦାସୀନମଧ୍ୟସ୍ଥଦ୍ୱେଷ୍ୟବନ୍ଧୁଷୁ—ସୁହୃଦ, ମିତ୍ର, ଶତ୍ରୁ, ଉଦାସୀନ, ମଧ୍ୟସ୍ଥ, ଦ୍ୱେଷର ପାତ୍ର ଓ ବନ୍ଧୁମାନଙ୍କଠାରେ, ସାଧୁଷୁ ଅପି ଚ—ସାଧୁମାନଙ୍କଠାରେ ମଧ୍ୟ, ପାପେଷୁ—ପାପିପୁରୁଷମାନଙ୍କଠାରେ, ସମବୁଦ୍ଧିଃ—ସମାନ ଜାଣିବା ବ୍ୟକ୍ତି ଅର୍ଥାତ୍ ସମଦର୍ଶୀ, ବିଶିଷ୍ୟତେ—ଶ୍ରେଷ୍ଠ ହୁଅନ୍ତି । ୯ ।

ଅନୁବାଦ ।

ସୁହୃଦ, ମିତ୍ର, ଅରି, ଉଦାସୀନ, ମଧ୍ୟସ୍ଥ, ଅପ୍ରିୟ ଓ ବନ୍ଧୁମାନଙ୍କଠାରେ ଏବଂ ସାଧୁ ଓ ପାପିମାନଙ୍କଠାରେ ଯାହାଙ୍କର ସମବୁଦ୍ଧି, ସେହି ବ୍ୟକ୍ତି ଶ୍ରେଷ୍ଠ ଅଟନ୍ତି । ୯ ।

ବିଶଦବ୍ୟାଖ୍ୟା ।

ସୁହୃଦ—ଯେ ପ୍ରତି ଉପକାର ପାଇବାର ଆଶା ନ ରଖି ଉପକାର କରନ୍ତି, ମିତ୍ର—ଯେ ସ୍ନେହବଶରୁ ଉପକାର କରିବାକୁ ଅଭିଳାଷୀ ହୁଅନ୍ତି, ଅରି ବା ଶତ୍ରୁ—ଯେ ଲୋକର ଅନିଷ୍ଟ ବା ଅଶୁଭ ଇଚ୍ଛା କରନ୍ତି, ଉଦାସୀନ—ଯେ ବିବାଦ ଥିବା ଉଭୟ ପକ୍ଷ ମଧ୍ୟରୁ କୌଣସି ପକ୍ଷ ଅବଲମ୍ବନ ନ କରନ୍ତି, ମଧ୍ୟସ୍ଥ—ବିବାଦ କରୁଥିବା ଉଭୟ ପକ୍ଷଙ୍କର ହିତ-

Digitized by PPRACHIN, SOA

କାମନାରେ ଯେ ଉପାଦ ମେଷ୍ଟାଇ ଦଅନ୍ତି, ଦ୍ୱେଷ୍ୟ—ଯେ ଦ୍ୱେଷ ବା ହିଂସାର ପାତ୍ର ଅଟନ୍ତି, ବନ୍ଧୁ—ଯାହା ସହିତ କୌଣସି ପ୍ରକାର ସ୍ନେହର ସମ୍ବନ୍ଧ ଥାଏ, ସାଧୁ—ସଦାଚାର-ରତ ପୁରୁଷ, ପାପୀ—ଧର୍ମଦ୍ରୋହୀ, ବହୁଭାଗ୍ୟ, ଅସତ୍‌କର୍ମାବଲମ୍ବୀ ଅର୍ଥାତ୍ ପାପାତ୍ମା । ଯେଉଁ ବ୍ୟକ୍ତି ପୂର୍ବୋକ୍ତ ଲକ୍ଷଣଯୁକ୍ତ ସୁହୃତ୍ ମିତ୍ରାଦିଙ୍କଠାରେ ସମବୁଦ୍ଧି ଅର୍ଥାତ୍ ସମସ୍ତଙ୍କୁ ଯେ ରାଗ-ଦ୍ୱେଷାଦି ପରିହାର କରି ସମାନଭାବରେ ଦେଖନ୍ତି, ସେ ଶ୍ରେଷ୍ଠ ଅଟନ୍ତି । ୯ ।

ଶ୍ଳୋକଃ ।

✱ ଯୋଗୀ ଯୁଞ୍ଜୀତ ସତତମାତ୍ମାନଂ ରହସି ସ୍ଥିତଃ ।
ଏକାକୀ ଯତଚିତ୍ତାତ୍ମା, ନିରାଶୀରପରିଗ୍ରହଃ । ୧୦ ।

ଅନ୍ୱୟଃ ।

ଏକାକୀ ଯତଚିତ୍ତାତ୍ମା ନିରାଶୀଃ ଅପରିଗ୍ରହଃ ଯୋଗୀ ରହସି ସ୍ଥିତଃ (ସନ୍), ସତତଂ ଆତ୍ମାନଂ ଯୁଞ୍ଜୀତ । ୧୦

ଟୀକା ।

ଏବ ଯୋଗାରୂଢ଼ସ୍ୟ ଲକ୍ଷଣମୁକ୍ତ୍ୱେଦାନୀଂ ତସ୍ୟ ସାଙ୍ଗଂ ଯୋଗଂ ବିଧତ୍ତେ, ଯୋଗୀତ୍ୟାଦିନା । ସ ଯୋଗୀ ପରମୋ-ମତ ଇତ୍ୟନ୍ତେନ ଗ୍ରନ୍ଥେନ । ଯୋଗୀ ଯୋଗାରୂଢ଼ ଆତ୍ମାନଂ ମନୋଯୁଞ୍ଜୀତ ସମାହିତଂ କୁର୍ଯ୍ୟାତ୍ ସତତଂ ନିରନ୍ତରଂ ରହସି ଏକାନ୍ତେ, ସ୍ଥିତଃ ସନ୍, ଏକାକୀ ସଙ୍ଗଶୂନ୍ୟଃ, ଯତଂ ସଂଯତଂ ଚିତ୍ତମାତ୍ମା ଦେହଶ୍ଚ ଯସ୍ୟ, ନିରାଶୀର୍ନିରାକାଂକ୍ଷଃ, ଅପରିଗ୍ରହଃ ପରିଗ୍ରହଶୂନ୍ୟଶ୍ଚ । ୧୦ ।

ପଦବ୍ୟାଖ୍ୟା ।

ଯୋଗୀ—ଯୋଗାଭ୍ୟାସୀ, ଯୁଞ୍ଜୀତ—ଯୋଗରେ ଲଗାଇବେ, ସତତଂ—ସର୍ବଦା, ଆତ୍ମାନଂ—ମନକୁ, ରହସି ସ୍ଥିତଃ—ଏକାନ୍ତରେ ଅର୍ଥାତ୍ ନିର୍ଜନରେ ବସି, ଏକାକୀ—ସଙ୍ଗଶୂନ୍ୟ ହୋଇ, ଯତଚିତ୍ତାତ୍ମା—ମନ ଓ ଦେହକୁ ଅଧୀନ କରି, ନିରାଶୀଃ—କାମନାରହିତ, ଅପରିଗ୍ରହଃ—(ଅସତ୍‌ପଦାର୍ଥ) ଗ୍ରହଣରେ ବିରତ । ୧୦ ।

ଅନୁବାଦ ।

ଯୋଗାରୂଢ଼ ବ୍ୟକ୍ତି ନିର୍ଜନରେ ଏକାକୀ ବସି, ଦେହ ଓ ମନକୁ ବଶୀଭୂତ କରି, ଆଶା ଓ ପରିଗ୍ରହ ତ୍ୟାଗ କରି, ସର୍ବଦା ସମାଧିରେ ମନକୁ ଲଗାଇବେ । ୧୦ ।

ବିଶଦବ୍ୟାଖ୍ୟା ।

ଉକ୍ତ ଲକ୍ଷଣଯୁକ୍ତ ବ୍ୟକ୍ତିଙ୍କୁ ଯୋଗାରୂଢ଼ ବୋଲାଯାଏ, ତାହା ପୂର୍ବଶ୍ଳୋକମାନଙ୍କରେ ବୁଝାଇ ଦେଇ ବର୍ତ୍ତମାନ ଯୋଗର ପ୍ରଣାଳୀ ବ୍ୟାଖ୍ୟା କରି ଯାଉଅଛି । ଯୋଗ କରିବାକୁ ପ୍ରଥମେ 'ସ୍ଥାନ' ଆବଶ୍ୟକ । କୋଲାହଳପୂର୍ଣ୍ଣ କୋଠା ବାଡ଼ି ଅଥବା ଦେବମନ୍ଦିରରେ 'ଯୋଗ' ସାଧନ ହୋଇ ପାରିବ ନାହିଁ । ଏଥିପାଇଁ 'ରହସି' ଅର୍ଥାତ୍ ପର୍ବତଗୁହା ପ୍ରଭୃତି ନିର୍ଜନସ୍ଥାନରେ ବସି, ଯୋଗସାଧନ କରିବାକୁ ଉପଦେଶ ଦିଆ ଯାଇଅଛି । ସେହି ପର୍ବତ-ଗୁହାରେ ବା ଅନ୍ୟ ଗୁପ୍ତସ୍ଥାନରେ ମଧ୍ୟ, ଯଦି ଆତ୍ମୀୟ ପରିଜନ ବେଷ୍ଟିତ ହୋଇ ଯୋଗାଭ୍ୟାସ କରିଥିବ, ତେବେ କି ସିଦ୍ଧ ହେବ ? ନା ସେଥିପାଇଁ ଏକାକୀ ଅର୍ଥାତ୍ ସଙ୍ଗଶୂନ୍ୟ ହେବାର ବିଧି ଅଛି । ସଙ୍ଗଶୂନ୍ୟ ହୋଇ ଗିରିଗୁହାରେ ବାସ କଲେ, ଯେ ଯୋଗ ସିଦ୍ଧ ହେବ ତାହା ନୁହେ,

Digitized by PPRACHIN, SOA

ଆପଣାର ଦେହ ଓ ମନ ଏମାନଙ୍କୁ ବଶୀଭୂତ କରିବା ମଧ୍ୟ ଆବଶ୍ୟକ, ତହିଁ ମଧ୍ୟରୁ ମନକୁ ବଶୀଭୂତ କରିବା ପ୍ରଧାନ କଥା । ସେହି ମନର ସାଧାରଣତଃ ପାଞ୍ଚଟି ଅବସ୍ଥା ଅଛି, ଯଥା— ୧ କ୍ଷିପ୍ତ, ୨ ମୂଢ଼, ୩ ବିକ୍ଷିପ୍ତ, ୪ ଏକାଗ୍ର ଓ ୫ ନିରୁଦ୍ଧ । ମନୁଷ୍ୟ-ମନରେ ଯେଉଁପ୍ରକାର ଅବସ୍ଥା ହେଉ ପଛକେ, ତାହା ଏହି ପାଞ୍ଚପ୍ରକାର ମଧ୍ୟରୁ କୌଣସି ନା କୌଣସି ଅବସ୍ଥାର ଅନ୍ତର୍ଗତ ।

୧ କ୍ଷିପ୍ତାବସ୍ଥା ।—ବାହ୍ୟବସ୍ତୁ ପାଇବାପାଇଁ ମନର ଯେଉଁ ଅସ୍ଥିରତା ବା ଚଞ୍ଚଳତା ଜାତ ହୁଏ ।

୨ ମୂଢ଼ାବସ୍ଥା ।—ମନ ଯେତେବେଳେ କାମ କ୍ରୋଧାଦିର ବଶୀଭୂତ ଓ ନିଦ୍ରା ତନ୍ଦ୍ରାଦିର ଅଧୀନ ହୋଇ କର୍ତ୍ତବ୍ୟାକର୍ତ୍ତବ୍ୟ ନ ମାନି ଅଜ୍ଞାନମୟ ଅବସ୍ଥାରେ ନିମଗ୍ନ ହୁଏ ।

୩ ବିକ୍ଷିପ୍ତାବସ୍ଥା ।—ମନ ଚଞ୍ଚଳ ଥିବା ଅବସ୍ଥାରେ ଯେଉଁ କ୍ଷଣିକ ସ୍ଥିରତା ଜନ୍ମେ ।

୪ ଏକାଗ୍ରତାବସ୍ଥା ।—ଯେତେବେଳେ ମନ ବାହ୍ୟିକ ବା ଆନ୍ତରିକ କୌଣସି ଏକ ପଦାର୍ଥକୁ ଅବଲମ୍ବନ କରି ସ୍ଥିରଭାବରେ ରହେ, ଅଥବା ରଜଃ ଓ ତମୋଗୁଣ ପରାସ୍ତ ହୋଇ କେବଳ ସାତ୍ତ୍ୱିକ ବୃତ୍ତି ପ୍ରବଳ ରହେ ।

୫ ନିରୁଦ୍ଧାବସ୍ଥା ।—ଯେତେବେଳେ ମନ ବିନା ଅବଲମ୍ବନରେ ସ୍ଥିର ହୁଏ ଅର୍ଥାତ୍ ଈଶ୍ୱର ଓ ଜୀବ ମଧ୍ୟରେ ଆଶ୍ରୟ ଓ ଆଶ୍ରିତ ଭାବ ନଷ୍ଟ ହୋଇ ଏକତା ଜନ୍ମେ । ଏହି ପାଞ୍ଚ ମଧ୍ୟରୁ ଶେଷ ଦୁଇ ଅବସ୍ଥା କେବଳ ଯୋଗର ଉପଯୋଗୀ । ମନର କ୍ଷିପ୍ତ, ମୂଢ଼ ଓ ବିକ୍ଷିପ୍ତ ଏ ଅବସ୍ଥାତ୍ରୟକୁ ଅତିକ୍ରମ କଲେ, ଏକାଗ୍ର ଅବସ୍ଥା ପ୍ରାପ୍ତ ହୁଏ ଓ ସଙ୍ଗେ ସଙ୍ଗେ ଇନ୍ଦ୍ରିୟସୁଖକର ଭୋଗ୍ୟବିଷୟକୁ ଆଶା କରିସ୍ତ ହୁଏ ଏବଂ ଯୋଗବିରୋଧୀ କୌଣସି ଦ୍ରବ୍ୟ ସଂଗ୍ରହ କରିବା-ରେ ପ୍ରବୃତ୍ତି ରହେ ନାହିଁ, ସୁତରାଂ ମନ ସମାଧିରେ (ନିରୁଦ୍ଧ ଅବସ୍ଥାରେ) ନିଯୁକ୍ତ ହୁଏ । ୧୦

ଶ୍ଳୋକଃ ।

ଶୁଚୌ ଦେଶେ ପ୍ରତିଷ୍ଠାପ୍ୟ, ସ୍ଥିରମାସନମାତ୍ମନଃ ।
ନାତ୍ୟୁଚ୍ଛ୍ରିତଂ ନାତିନୀଚଂ, ଚୈଲାଜିନକୁଶୋତ୍ତରଂ । ୧୧ ।

ଅନ୍ୱୟଃ ।

ଶୁଚୌ ଦେଶେ ଆତ୍ମନଃ ନ ଅତି ଉଚ୍ଛ୍ରିତଂ ନ ଅତିନୀଚଂ ଚୈଲାଜିନକୁଶୋତ୍ତରଂ ସ୍ଥିରଂ ଆସନଂ ପ୍ରତିଷ୍ଠାପ୍ୟ । ୧୧ ।

ଟୀକା ।

ଆସନନିୟମଂ ଦର୍ଶୟନ୍ନାହ, ଶୁଚାବିତି ଦ୍ୱାଭ୍ୟାଂ । ଶୁଚୌ ସ୍ଥାନେ ଆତ୍ମନଃ ସ୍ୱସ୍ୟାସନଂ ସ୍ଥାପୟିତ୍ୱା, କୀଦୃଶଂ ସ୍ଥିରମଚଞ୍ଚଳଂ ନାତ୍ୟୁଚ୍ଛ୍ରିତଂ ନ ଚାତିନୀଚଂ ଚୈଲଂ ବସ୍ତ୍ରଂ ଅଜିନଂ ବ୍ୟାଘ୍ରାଦି ଚର୍ମ ଚୈଲାଜିନେ କୁଶେଭ୍ୟ ଉତ୍ତରେ ଯସ୍ୟ, କୁଶାନାମୁପରି ଚର୍ମ ତଦୁପରି ବସ୍ତ୍ରମାସ୍ତୀର୍ଯ୍ୟେତ୍ୟର୍ଥଃ । ୧୧ ।

ପଦବ୍ୟାଖ୍ୟା ।

ଶୁଚୌ ଦେଶେ—ପବିତ୍ରସ୍ଥାନରେ, ପ୍ରତିଷ୍ଠାପ୍ୟ—ସ୍ଥାପନ କରି, ସ୍ଥିରଂ—ସ୍ଥାୟୀ, ଆସନଂ—ଆସନକୁ, ଆତ୍ମନଃ—

ଆପଣାର, ନ ଅତି ଉଚ୍ଛ୍ରିତଂ—ଯାହା ଅତି ଉଚ୍ଚ ନୁହେ, ନ ଅତି ନୀଚଂ—ଯାହା ଅତି ନୀଚ ନୁହେ, ଚେଲାଜିନକୁଶୋ-ତ୍ତରଂ—ପ୍ରଥମରେ କୁଶ ତାହା ଉପରେ (ଅଜିନ) ମୃଗ ଅବା ବ୍ୟାଘ୍ରର ଚର୍ମ ଓ ତାହା ଉପରେ (ଚେଲ) ବସ୍ତ୍ର ଦେଇ ଆସନ ପ୍ରସ୍ତୁତ କରିବ । ୧୧ ।

ଅନୁବାଦ ।

ବିଶୁଦ୍ଧ ଭୂମିରେ କୁଶାସନ ଓ ତାହା ଉପରେ ମୃଗ ଅବା ବ୍ୟାଘ୍ରର ଚର୍ମ ଏବଂ ତହିଁ ଉପରେ ବସ୍ତ୍ର ଦେଇ ଅତି ଉଚ୍ଚ ବା ଅତି ନୀଚ ନ କରି ଆପଣାର ସ୍ଥାୟୀ ଆସନ ସ୍ଥାପନ କରିବ । ୧୧ ।

ବିଶଦବ୍ୟାଖ୍ୟା ।

ସ୍ୱାଭାବିକ ବିଶୁଦ୍ଧ ସ୍ଥାନରେ ଅଥବା ଗୋମୟାଦିଦ୍ୱାରା ପରିଶୁଦ୍ଧସ୍ଥାନରେ ଆପଣାର ସ୍ଥାୟୀ ଆସନ ସଂସ୍ଥାପନ କରିବ । ସ୍ଥାୟୀ କହିବାର ତାତ୍ପର୍ଯ୍ୟ ଏହି, ଯେ ସମାଧିରେ ଦୀର୍ଘକାଳ ପର୍ଯ୍ୟନ୍ତ ସେହି ଆସନରେ ବସି ରହିବାକୁ ହେବ, ଅଥବା ଯୋଗୀ ଅନ୍ୟ ବ୍ୟକ୍ତିର ଆସନରେ ବସନ୍ତି ନାହିଁ କି ତାଙ୍କ ଆସନରେ ଆଉ କେହି ବସନ୍ତି ନାହିଁ, ଏପରି ବିଧି ଥିବାରୁ ତାଙ୍କର ଆସନ 'ସ୍ଥାୟୀ' ଅର୍ଥାତ୍ ନିଶ୍ଚିତ ହେବା ଆବଶ୍ୟକ । ସେହି ଆସନ ସମତଳ ଭୂମିଠାରୁ ଅତି ଉଚ୍ଚ ବା ଅତି ନୀଚ ହେବା ଉଚିତ ନୁହେ । କାହିଁକି ନା ସମତଳଠାରୁ ଅଧିକ ଉଚ୍ଚ ହେଲେ, ସମାଧିରେ ଯୋଗୀ ବାହ୍ୟଜ୍ଞାନଶୂନ୍ୟ ହେବାବେଳେ ପଡ଼ିଯିବାର ଓ ତଦ୍ଦ୍ୱାରା ସମାଧି ଭଙ୍ଗ ହେବାର ସମ୍ଭାବନା । ପୁଣି ଅତି ନୀଚ ହେଲେ, ବର୍ଷାକାଳରେ କଷ୍ଟ ଓ ବସିବାବେଳେ ଶରୀରର ସରଳଭାବ ନଷ୍ଟ ହେବାର ସମ୍ଭାବନା । ମୃତ୍ତିକା ସମତଳ କରି ତହିଁ ଉପରେ କୁଶାସନ ଓ ତାହା ଉପରେ କୋମଳ ମୃଗ ବା ବ୍ୟାଘ୍ରଚର୍ମ ଏବଂ ତାହା ଉପରେ କୋମଳ ବସ୍ତ୍ର ବିସ୍ତୃତ କରିବ ।

କେହି୨ ଆପତ୍ତି କରି ପାରନ୍ତି, ଯେ ବସ୍ତ୍ରାସନରେତ ବସିବାର ନିଷେଧ ଅଛି, ବ୍ୟାଘ୍ର-ଚର୍ମ ଉପରେ ତେବେ ବସ୍ତ୍ର ବିଛାଇବ କିପରି ? ତାହା ଉତ୍ତରରେ ଏହି କଥା କୁହା ଯାଇପାରେ, ଯେ "ବସ୍ତ୍ରାସନେ ଦରିଦ୍ରତା" ଇତ୍ୟାଦି ନିଷେଧ ବିଧି କେବଳ ଗୃହିମାନଙ୍କ ପକ୍ଷରେ ଅଟେ ; ଯୋଗିମାନଙ୍କ ପକ୍ଷରେ ତାହା ନୁହେ ।

କୁଶାସନ ଓ ତଦୁପରି ଅଜିନ ଏବଂ ବସ୍ତ୍ର ଦେବାର କିଛି ଗୂଢ଼ ଅର୍ଥ ନାହିଁ କି ? ଅବଶ୍ୟ ଅଛି । ଯୋଗିର ବର୍ଣ୍ଣଭେଦ ଜ୍ଞାନ ଅର୍ଥାତ୍ ବ୍ରାହ୍ମଣ କ୍ଷତ୍ରିୟ ଓ ବୈଶ୍ୟ ଇତ୍ୟାଦି ଭେଦଜ୍ଞାନ ତ୍ୟାଗ କରିବା ଉଚିତ । ସେଥିପାଇଁ ବ୍ରାହ୍ମଣର ଚିହ୍ନ କୁଶ ଓ କ୍ଷତ୍ରିୟ (ମୃଗୟାପ୍ରିୟ)ର ଚିହ୍ନ ମୃଗ ଅବା ବ୍ୟାଘ୍ରଚର୍ମ ଏବଂ ବାଣିଜ୍ୟପ୍ରିୟ ବୈଶ୍ୟଙ୍କର ଚିହ୍ନ ବସ୍ତ୍ରକୁ ପଦତଳେ ମାଡ଼ି ବସିବାକୁ ହେବ; ଅର୍ଥାତ୍ ଭେଦଜ୍ଞାନ କିଛି ନାହିଁ, ତାହା ଜଣାଇବାପାଇଁ ଏପରି ବିଧି ହୋଇଅଛି । ୧୧ ।

ଶ୍ଳୋକଃ ।

ତତ୍ରୈକାଗ୍ରଂ ମନଃ କୃତ୍ୱା, ଯତଚିତ୍ତେନ୍ଦ୍ରିୟକ୍ରିୟଃ ।
ଉପବିଶ୍ୟାସନେ ଯୁଞ୍ଜ୍ୟା,ଦ୍ୟୋଗମାତ୍ମବିଶୁଦ୍ଧୟେ । ୧୨ ।

Digitized by PPRACHIN, SOA

### ଅନ୍ୱୟଃ ।

ଯତଚିତ୍ତେନ୍ଦ୍ରିୟକ୍ରିୟଃ ତତ୍ର ଆସନେ ଉପବିଶ୍ୟ ମନଃ ଏକାଗ୍ରଂ କୃତ୍ୱା ଆତ୍ମବିଶୁଦ୍ଧୟେ ଯୋଗଂ ଯୁଞ୍ଜ୍ୟାତ୍ । ୧୨ ।

### ଟୀକା ।

ତତ୍ର ତସ୍ମିନ୍ନାସନେ ଉପବିଶ୍ୟ ଏକାଗ୍ରଂ ବିକ୍ଷେପରହିତଂ ମନଃ କୃତ୍ୱା ଯୋଗଂ ଯୁଞ୍ଜ୍ୟାଦଭ୍ୟସେତ୍, ଯତା ସଂଯତା ଚିତ୍ତସ୍ୟେନ୍ଦ୍ରିୟାଣାଂ ଚ କ୍ରିୟା ଯସ୍ୟ ଆତ୍ମନୋମନସୋବିଶୁଦ୍ଧୟେ ଉପଶାନ୍ତୟେ । ୧୨ ।

### ପଦବ୍ୟାଖ୍ୟା ।

ତତ୍ର—ସେହି (ଆସନରେ), ଏକାଗ୍ରଂ ମନଃ କୃତ୍ୱା—ମନକୁ ଏକାଗ୍ର କରି, ଯତଚିତ୍ତେନ୍ଦ୍ରିୟକ୍ରିୟଃ—ଚିତ୍ତ ଓ ଇନ୍ଦ୍ରିୟମାନଙ୍କର କ୍ରିୟାକୁ ରୋଧ କରି, ଉପବିଶ୍ୟ—ବସିକରି, ଆସନେ—ଆସନରେ, ଯୁଞ୍ଜ୍ୟାତ୍—ଅଭ୍ୟାସ କରିବ, ଯୋଗଂ—ଅଷ୍ଟାଙ୍ଗଯୋଗକୁ (ଚତୁର୍ଥ ଅଧ୍ୟାୟରେ ବିସ୍ତୃତ ବିବରଣ ଦେଖ), ଆତ୍ମବିଶୁଦ୍ଧୟେ—ଅନ୍ତଃକରଣ ଶୁଦ୍ଧି ନିମିତ୍ତ । । ୧୨ ।

### ଅନୁବାଦ ।

ମନ ଓ ଇନ୍ଦ୍ରିୟମାନଙ୍କର କ୍ରିୟାରୋଧକାରୀ ବ୍ୟକ୍ତି (ପୂର୍ବୋକ୍ତ) ଆସନ ଉପରେ ବସି, ମନକୁ ଏକାଗ୍ର କରି, ଚିତ୍ତଶୁଦ୍ଧି ନିମିତ୍ତ ଯୋଗ କରିବ । ୧୨ ।

### ବିଶଦବ୍ୟାଖ୍ୟା ।

ମନ ଓ ଇନ୍ଦ୍ରିୟମାନଙ୍କର କ୍ରିୟାକୁ 'ପ୍ରତ୍ୟାହାର' ନାମକ ଯୋଗାଙ୍ଗ ସାଧନଦ୍ୱାରା ଯୋଗବିରୁଦ୍ଧ ବିଷୟରୁ ଫେରାଇ ଆଣି, ଆତ୍ମଦର୍ଶନ ନିମିତ୍ତ ହୃଦୟ ମଧ୍ୟକୁ ଚାଳିତ କରିବା ଉଚିତ । ଯେ, ମନ ଓ ଇନ୍ଦ୍ରିୟର କ୍ରିୟାକୁ ଏପରି ଆୟତ୍ତ କରି ପାରିଅଛନ୍ତି, ସେହି ବ୍ୟକ୍ତି କେବଳ ପୂର୍ବୋକ୍ତ ଆସନର ଅଧିକାରୀ । ମନକୁ ଧ୍ୟାନନିଷ୍ଠ କରି ଏକାଗ୍ର ଓ ଶୁଦ୍ଧ ହେବାପାଇଁ ସମାଧି ଅଭ୍ୟାସ କରିବାକୁ ହେବ । ଏହି ସମାଧିଦ୍ୱାରା ନିଶ୍ଚଳ ମନ ମଧ୍ୟରେ ବ୍ରହ୍ମସ୍ୱରୂପ ପ୍ରତିବିମ୍ବିତ ହୁଅନ୍ତି । ୧୨ ।

### ଶ୍ଳୋକଃ ।

ସମଂ କାୟଶିରୋଗ୍ରୀବଂ, ଧାରୟନ୍ନଚଳଂ ସ୍ଥିରଃ ।
ସମ୍ପ୍ରେକ୍ଷ୍ୟ ନାସିକାଗ୍ରଂ ସ୍ୱଂ, ଦିଶଶ୍ଚାନବଲୋକୟନ୍ । ୧୩ ।

### ଅନ୍ୱୟଃ ।

କାୟଶିରୋଗ୍ରୀବଂ ଅଚଳଂ ସମଂ ଧାରୟନ୍ ସ୍ଥିରଃ (ଭୂତ୍ୱା) ସ୍ୱଂ ନାସିକାଗ୍ରଂ ସମ୍ପ୍ରେକ୍ଷ୍ୟ ଚ ଦିଶଃ ଅନବଲୋକୟନ୍ (ଆସୀତ) । ୧୩ ।

### ଟୀକା ।

ତତ୍ରୈକାଗ୍ର୍ୟୋପଯୋଗିନୀଂ ଦେହାଦି ଧାରଣାଂ ଦର୍ଶୟନ୍ନାହ, ସମମିତି ଦ୍ୱାଭ୍ୟାଂ । କାୟ ଇତି ଦେହସ୍ୟ ମଧ୍ୟଭାଗୋବିବକ୍ଷିତଃ କାୟଶ୍ଚ ଶିରଶ୍ଚ ଗ୍ରୀବା ଚ କାୟଶିରୋଗ୍ରୀବଂ ମୂଳାଧାରାଦାରଭ୍ୟ ମୂର୍ଦ୍ଧାଗ୍ର ପର୍ଯ୍ୟନ୍ତଂ ସମଂ ଅବକ୍ରଂ ନିଶ୍ଚଳଂ ଧାରୟନ୍ ସ୍ଥିରୋଦୃଢ଼ଂ ପ୍ରୟତ୍ନୋଭୂତ୍ୱେତ୍ୟର୍ଥଃ ସ୍ୱୀୟଂ ନାସିକାଗ୍ରଂ ସମ୍ପ୍ରେକ୍ଷ୍ୟ ଅର୍ଦ୍ଧନିମୀଳିତନେତ୍ର ଇତ୍ୟର୍ଥଃ ଇତସ୍ତତୋଦିଶଶ୍ଚାନବଲୋକୟନ୍ନାସୀତେତ୍ୟୁତ୍ତରେଣାନ୍ୱୟଃ । ୧୩ ।

Digitized by PPRACHIN, SOA

ଅନ୍ୱୟ ଓ ପଦବ୍ୟାଖ୍ୟା ।

ସମଂ—ସରଳ ବା ସିଧା (ସରଳଭାବରେ), କାୟଶିରୋଗ୍ରୀବଂ—ଶରୀର (ଗଣ୍ଡି) ମସ୍ତକ ଓ ଗ୍ରୀବା (ଗଳପ୍ରଦେଶ)କୁ, ଧାରୟନ୍—ଧାରଣ କରି, ଅଚଳଂ—ନିଶ୍ଚଳଭାବରେ, ସ୍ଥିରଃ—ନିଶ୍ଚଳ ହୋଇ, ସମ୍ପ୍ରେକ୍ଷ୍ୟ—ଉତ୍ତମରୂପେ ନିରୀକ୍ଷଣ କରି, ନାସିକାଗ୍ରଂ ସ୍ୱଂ—ଆପଣା ନାକର ଅଗ୍ରଭାଗକୁ, ଦିଶଶ୍ଚାନବଲୋକୟନ୍—ଦିଗମାନଙ୍କୁ (ଏଣେତେଣେ) ନ ଚାହିଁ । । ୧୩ ।

ଅନୁବାଦ ।

(ଯୋଗାଭ୍ୟାସୀ ବ୍ୟକ୍ତି) ଶରୀର, ମସ୍ତକ ଓ ଗ୍ରୀବାକୁ ସରଳ ଏବଂ ଅଚଳଭାବରେ ରଖି, ସ୍ଥିର ହୋଇ ନିଜର ନାସାଗ୍ର ଦର୍ଶନ କରିବେ, ଏଣେତେଣେ ଚାହିଁବେ ନାହିଁ । ୧୩ ।

ବିଶଦବ୍ୟାଖ୍ୟା ।

'କାୟ' ଶବ୍ଦର ଅର୍ଥ ଶରୀରର ମଧ୍ୟଭାଗ ଅର୍ଥାତ୍ 'ଗଣ୍ଡି' । ଗଣ୍ଡି ମୁଣ୍ଡ ଓ ଗଳଦେଶ ସମ ଅର୍ଥାତ୍ ସରଳଭାବରେ ଏବଂ ଅଚଳଭାବରେ ରଖିବ । ବାମ ଦକ୍ଷିଣ କି ଊର୍ଦ୍ଧ୍ୱ କି ଅଧଃ (କୌଣସି ଦିଗକୁ) ନ ଚାହିଁ, ଦୃଷ୍ଟିକୁ ନିଜର ନାସିକା ଅଗ୍ରଭାଗରେ ସ୍ଥାପନ କରିବ । 'ଏ ସ୍ଥଳରେ ନାସିକା ଅଗ୍ର ଅବଲୋକନ କରିବାର ଅର୍ଥ ଏହି, ଯେ ଅର୍ଦ୍ଧନିମୀଳିତ ନେତ୍ର ହେବ । କାହିଁକି ନା ଯୋଗାଭ୍ୟାସ ସମୟରେ ଦୃଷ୍ଟି ନାସିକା ଅଗ୍ରରେ ରହିଲେ, ମନରେ ବ୍ରହ୍ମସ୍ୱରୂପ ଉଦୟ ନ ହୋଇ, ନାସିକା ଅଗ୍ରଭାଗ ଉଦୟ ହେବ । ଏଥିପାଇଁ ଭଗବାନ ନାସାଗ୍ରସ୍ଥିତ ଆକାଶରେ ଦୃଷ୍ଟି ସ୍ଥାପନ କରିବାକୁ କହି, କୌଣସି ଦିଗକୁ ନ ଚାହିଁବାର ଉପଦେଶ ଦେଇଅଛନ୍ତି' ବୋଲି କୌଣସି କୌଣସି ଟୀକାରେ ଅର୍ଥ କରିଅଛନ୍ତି । ମାତ୍ର ଏ ପ୍ରକାର ଅର୍ଥ ସଙ୍ଗତ ବୋଲି ବୋଧ ହେଉ ନାହିଁ । କାହିଁକି ନା ନାସିକାଗ୍ରରେ ଦୃଷ୍ଟି ସ୍ଥିର କରି ରଖିଲେ, ମନ ସ୍ଥିର ହୁଏ ବୋଲି ଯୋଗଶାସ୍ତ୍ରରେ ସ୍ପଷ୍ଟ ପ୍ରମାଣ ଅଛି । ଯଥା;—

"ନାସାଗ୍ରଂ ଦୃଶ୍ୟତେ ଯେନ ପଦ୍ମାସନ ଗତେନ ବୈ ।
ମନସୋ ମରଣଂ ତସ୍ୟ ଖେଚରତ୍ୱଂ ପ୍ରସିଧ୍ୟତି" ।

ଅର୍ଥାତ୍ ଯୋଗୀ ପଦ୍ମାସନରେ ଉପବିଷ୍ଟ ହୋଇ ନାସାଗ୍ର ଦର୍ଶନ କରିବେ । ତାହା ହେଲେ ତାଙ୍କର ମନୋବୃତ୍ତି ଲୟ ହୋଇ ଖେଚରୀ ବିଦ୍ୟାରେ ପଟୁତା ଜନ୍ମିବ ।*

ଏହି ଖେଚରୀ ବିଦ୍ୟାର ଏକ ଶାଖାକୁ 'ତ୍ରାଟକ' ବୋଲାଯାଏ । ତ୍ରାଟକ ଯୋଗରେ ସିଦ୍ଧି ଲାଭ କରିବାପାଇଁ ଆମ୍ଭମାନଙ୍କର ପୂର୍ବପୁରୁଷମାନେ ନାସାଗ୍ର, ଭ୍ରୂମଧ୍ୟ ଓ ଲଲାଟକେନ୍ଦ୍ର ସର୍ବଦା ଦର୍ଶନ କରିବାର ବିଧି କରି ଯାଇଅଛନ୍ତି । ସେହି ସେହି ସ୍ଥଳରେ ଦୃଷ୍ଟି ସ୍ଥିର ରଖିବାପାଇଁ 'ତିଳକ' ଧାରଣ କରିବାକୁ ଉପଦେଶ ଦେଇଅଛନ୍ତି । ଆହୁରି ଶାଳଗ୍ରାମ ଶିଳା-ଧାତୁନିର୍ମିତ ଦେବମୂର୍ତ୍ତି ସ୍ୱସ୍ତିକଯନ୍ତ୍ର ପ୍ରଭୃତି ସମ୍ମୁଖରେ ରଖି ପୂଜା କରିବାର ବିଧି ଯେ ପ୍ରଚଳିତ କରିଅଛନ୍ତି, ତାହା କେବଳ ସେହି 'ତ୍ରାଟକଯୋଗ'ର ସାଧନ ନିମିତ୍ତ । ତ୍ରାଟକ ବିଷୟରେ ଯୋଗଶାସ୍ତ୍ରର ବିଧି, ଯଥା—

* ଖେଚରୀ ବିଦ୍ୟା = ଅସଂପ୍ରଜ୍ଞାତ ସମାଧି ବା ନିର୍ବିକଳ୍ପ ସମାଧିର ନାମାନ୍ତର ମାତ୍ର, ଯଥା,—ଦୃଷ୍ଟିଃସ୍ଥିରା ଯସ୍ୟ ବିନାବଲୋକନଂ ମନଃସ୍ଥିରଂ ଯସ୍ୟ ବିନାବଲମ୍ବନଂ । ବାୟୁଃସ୍ଥିରୋ ଯସ୍ୟ ବିନାନିରୋଧନଂ ସା ଏବ ବିଦ୍ୟା ଵଚତେ ଚ ଖେଚରୀ ।

Digitized by PPRACHIN, SOA

ନସାକ୍ଷେନ୍ନିଶ୍ଚଳଦୃଶା ସୂକ୍ଷ୍ମଲକ୍ଷ୍ୟଂ ସମାହିତଃ ।
ଅଶ୍ରୁସମ୍ପାତପର୍ଯ୍ୟନ୍ତମାର୍ଯ୍ୟୈସ୍ତ୍ରାଟକଂ ସ୍ମୃତଂ ।
ମୋଚନଂ ନେତ୍ରରୋଗାଣାଂ ତନ୍ଦ୍ରାଦୀନାଂ କବାଟକଂ ।
ଏତଚ୍ଚ ତ୍ରାଟକଂ ଗୋପ୍ୟଂ ଯଥା ହାଟକପେଟକଂ ।

ଅର୍ଥାତ୍ ଏକାଗ୍ରମନା ହୋଇ ସମ୍ମୁଖସ୍ଥିତ କୌଣସି ଉଜ୍ଜ୍ୱଳ ସୂକ୍ଷ୍ମ ପଦାର୍ଥରେ ଆଖିରୁ ପାଣି ବୋହିବା ପର୍ଯ୍ୟନ୍ତ ଦୃଷ୍ଟି ସ୍ଥିର କରି ରଖିବ । ଆର୍ଯ୍ୟମାନଙ୍କ ମତରେ ଏହାହିଁ 'ତ୍ରାଟକ' ଯୋଗ ଅଟେ । ଏହି ତ୍ରାଟକଯୋଗ ସାଧନ କଲେ ଦୃଷ୍ଟିଶକ୍ତି ବୃଦ୍ଧି ହୁଏ ଓ ଚକ୍ଷୁସମ୍ବନ୍ଧୀୟ ରୋଗ ବିନଷ୍ଟ ହୁଏ ଏବଂ ନିଦ୍ରା ତନ୍ଦ୍ରା ପ୍ରଭୃତି ଯୋଗବିରୁଦ୍ଧ ଅବସ୍ଥା ଉଦୟ ହୁଏ ନାହିଁ । ଏହାକୁ (ଏହି ବିଦ୍ୟାକୁ) ସୁବର୍ଣ୍ଣ ପେଡ଼ିପରି ଗୋପନୀୟଭାବରେ ରଖିବ ଇତ୍ୟାଦି ।

ଫଳକଥା ଏହି କି ନାସାଗ୍ରରେ ଦୃଷ୍ଟି ସ୍ଥିର ରଖିବା ଯୋଗସାଧନର ଏକ ପ୍ରଧାନ ଓ ପ୍ରୟୋଜନୀୟ ଅଙ୍ଗ ଅଟେ । ୧୩ ।

ଶ୍ଲୋକଃ ।

ପ୍ରଶାନ୍ତାତ୍ମା ବିଗତଭୀ,ର୍ବ୍ରହ୍ମଚାରିବ୍ରତେ ସ୍ଥିତଃ ।
ମନଃ ସଂଯମ୍ୟ ମଚ୍ଚିତ୍ତୋ, ଯୁକ୍ତ ଆସୀତ ମତ୍ପରଃ । ୧୪ ।

ଅନ୍ୱୟଃ ।

ପ୍ରଶାନ୍ତାତ୍ମା ବିଗତଭୀଃ ବ୍ରହ୍ମଚାରିବ୍ରତେ ସ୍ଥିତଃ ମଚ୍ଚିତ୍ତଃ ମତ୍ପରଃ (ସନ୍), ମନଃ ସଂଯମ୍ୟ ଯୁକ୍ତଃ ଆସୀତ । ୧୪ ।

ଟୀକା ।

ପ୍ରଶାନ୍ତେତି । ପ୍ରଶାନ୍ତଃ ଆତ୍ମା ଚିତ୍ତଂ ଯସ୍ୟ, ବିଗତାଭୀର୍ଭୟଂ ଯସ୍ୟ, ବ୍ରହ୍ମଚାରିବ୍ରତେ ବ୍ରହ୍ମଚର୍ଯ୍ୟେ ସ୍ଥିତଃ ସନ୍ ମନଃ ସଂଯମ୍ୟ ପ୍ରତ୍ୟାହୃତ୍ୟ ମୟ୍ୟେବ ଚିତ୍ତଂ ଯସ୍ୟ ଅହମେବ ପରଃ ପୁରୁଷାର୍ଥୋ ଯସ୍ୟ ସ ମତ୍ପର ଏବଂ ଯୁକ୍ତୋ ଭୂତ୍ୱା ତିଷ୍ଠେତ୍ । ୧୪ ।

ପଦବ୍ୟାଖ୍ୟା ।

ପ୍ରଶାନ୍ତାତ୍ମା—ଧୀରଚିତ୍ତ, ବିଗତଭୀଃ—ନିର୍ଭୟ, ବ୍ରହ୍ମଚାରିବ୍ରତେ ସ୍ଥିତଃ—ବ୍ରହ୍ମଚର୍ଯ୍ୟ (ସ୍ତ୍ରୀସଙ୍ଗ ତ୍ୟାଗ) ବ୍ରତଧାରୀ, ମନଃ ସଂଯମ୍ୟ—ମନକୁ ବିଷୟାଦିରୁ ନିବୃତ୍ତ କରି, ମଚ୍ଚିତ୍ତଃ—ଆମ୍ଭଠାରେ ଚିତ୍ତ ନିବେଶ କରି, ଯୁକ୍ତଃ ଆସୀତ—ଯୋଗରେ ବସିବ, ମତ୍ପରଃ—ଆମ୍ଭଙ୍କୁ ପରମ ପୁରୁଷାର୍ଥ ଅର୍ଥାତ୍ ସର୍ବୋତ୍କୃଷ୍ଟ ଜ୍ଞାନ କରିବ । ୧୪ ।

ଅନୁବାଦ ।

ପ୍ରଶାନ୍ତମନା, ଭୟବର୍ଜିତ, ବ୍ରହ୍ମଚାରୀବ୍ୟକ୍ତି ମନଃ ସଂଯମ କରି, ଆମ୍ଭଠାରେ ଚିତ୍ତ ଓ ଏକାନ୍ତ ଭକ୍ତି ରଖି ସମାଧିରେ ବସିବେ । ୧୪ ।

ବିଶଦବ୍ୟାଖ୍ୟା ।

ଯୋଗାଭ୍ୟାସିବ୍ୟକ୍ତିଙ୍କର ଆସନ ସ୍ଥିର ହେଲା ଉତ୍ତାରୁ ସେ ଆପଣାର ମନକୁ ପ୍ରଶାନ୍ତ ଅର୍ଥାତ୍ ରାଗଦ୍ୱେଷାଦିଶୂନ୍ୟ କରିବେ । ବେଦବିହିତ କର୍ମାନୁଷ୍ଠାନ ନ କରି ଯୋଗାଭ୍ୟାସ କଲେ କିଛି ହେବ କି ନ ହେବ, ଏପ୍ରକାର ଭୟ (ଶଙ୍କା)କୁ ତ୍ୟାଗ କରିବେ । ଗୁରୁସେବା-

Digitized by PPRACHIN, SOA

ପରିତ୍ୟକ୍ତ ହୋଇ ଓ ଭିକ୍ଷାନ୍ନ ମାତ୍ର ଭୋଜନ କରି, ସ୍ତ୍ରୀସହବାସ ପ୍ରଭୃତି ତ୍ୟାଗ କରି, ବ୍ରହ୍ମଚର୍ଯ୍ୟ-ବ୍ରତ ଧାରଣ କରିବେ । କୌଣସି ପ୍ରକାର ବିଷୟଭୋଗରେ ଇଚ୍ଛା ନ ରଖି, ଈଶ୍ୱରଙ୍କଠାରେ ଚିତ୍ତ ସମର୍ପଣ କରିବେ, ଏକାନ୍ତ ଭକ୍ତିଯୁକ୍ତଚିତ୍ତରେ ସମାଧିରେ ଉପବେଶନ କରିବେ । ୧୪ ।

ଶ୍ଲୋକଃ ।

ଯୁଞ୍ଜନ୍ନେବଂ ସଦାତ୍ମାନଂ, ଯୋଗୀ ନିୟତମାନସଃ ।
ଶାନ୍ତିଂ ନିର୍ବାଣପରମାଂ, ମତ୍‌ସଂସ୍ଥାମଧିଗଚ୍ଛତି । ୧୫

ଅନ୍ୱୟଃ ।

ନିୟତମାନସଃ ଯୋଗୀ ଆତ୍ମାନଂ ସଦା ଏବଂ ଯୁଞ୍ଜନ୍ (ସନ୍) ନିର୍ବାଣପରମାଂ ମତ୍‌ସଂସ୍ଥାଂ ଶାନ୍ତିଂ ଅଧିଗଚ୍ଛତି । ୧୫ ।

ଟୀକା ।

ଯୋଗାଭ୍ୟାସ ଫଳମାହ ଯୁଞ୍ଜନ୍ନେବମିତି । ଏବମୁକ୍ତପ୍ରକାରେଣ ସଦା ଆତ୍ମାନଂ ମନୋଯୁଞ୍ଜନ୍ ସମାହିତଂ କୁର୍ବନ୍ ନିୟତଂ ନିରୁଦ୍ଧଂ ମାନସଂ ଚିତ୍ତଂ ଯସ୍ୟ ସ ଶାନ୍ତିଂ ସଂସାରୋପରମଂ ପ୍ରାପ୍ନୋତି; କଥମ୍ଭୂତାଂ ନିର୍ବାଣଂ ପରମଂ ପ୍ରାପ୍ୟଂ ଯସ୍ୟାଂ ତାଂ ମତ୍‌ସଂସ୍ଥାଂ ମଦ୍ରୂପେଣାବସ୍ଥିତିଂ । ୧୫ ।

ପଦବ୍ୟାଖ୍ୟା ।

ଯୁଞ୍ଜନ୍ ଏବ—ଏହିପରି ଲଗାଇଲେ (ସମାଧିରେ), ସଦାତ୍ମାନଂ—ମନକୁ ସର୍ବଦା, ଯୋଗୀ—ଯୋଗାଭ୍ୟାସୀ, ନିୟତମାନସଃ—ମନୋନିରୋଧକାରୀ, ଶାନ୍ତିଂ—ସଂସାରରୁ ନିବୃତ୍ତି, ନିର୍ବାଣପରମାଂ—ଯହିଁରେ ନିର୍ବାଣ (ମୁକ୍ତି) ପ୍ରାପ୍ତ ହୁଏ, ମତ୍‌ସଂସ୍ଥାଂ—ଆମ୍ଭ ରୂପରେ ଅବସ୍ଥିତିକୁ, ଅଧିଗଚ୍ଛତି—ପ୍ରାପ୍ତ ହୁଅନ୍ତି । ୧୫ ।

ଅନୁବାଦ ।

ସଂଯତଚିତ୍ତ ଯୋଗିବ୍ୟକ୍ତି ଏହିପରି (ସମାଧିରେ) ସର୍ବଦା ମନ ଲଗାଇଲେ, ଆମ୍ଭର ସାରୂପ୍ୟ ଓ ନିର୍ବାଣ ମୁକ୍ତି ର ଉପାୟସ୍ୱରୂପ ଶାନ୍ତିକୁ ପ୍ରାପ୍ତ ହୁଅନ୍ତି । ୧୫ ।

ବିଶଦବ୍ୟାଖ୍ୟା ।

ଯୋଗୀ ପୂର୍ବୋକ୍ତ ପ୍ରକାର ଆସନଆଦି ସ୍ଥିର କରି, ଏକାନ୍ତ ଭକ୍ତିଯୁକ୍ତଚିତ୍ତରେ ସମାଧିରେ ଉପବେଶନ କଲେ, ବାହ୍ୟବିଷୟରେ ତାଙ୍କର ଆଉ ମନର ପ୍ରବୃତ୍ତି ରହିବ ନାହିଁ । ବାହ୍ୟବିଷୟରୁ ମନର ବୃତ୍ତିସବୁ ନିବୃତ୍ତ ହେଲେ, ଯୋଗୀ 'ଶାନ୍ତି' ଲାଭ କରନ୍ତି । ସେହି ଶାନ୍ତି ପ୍ରାପ୍ତ ହେଲେ, ଯୋଗିଙ୍କର କାମନା, କର୍ମ ଓ ଅବିଦ୍ୟା ଆଉ ରହେ ନାହିଁ । ସୁତରାଂ ଯୋଗୀ ପରମାନନ୍ଦସ୍ୱରୂପରେ ବିଗଳମାନ ହୋଇ ନିର୍ବାଣ ମୁକ୍ତି ପ୍ରାପ୍ତ ହୁଅନ୍ତି ।

ଏ ଅଧ୍ୟାୟରେ ଏପର୍ଯ୍ୟନ୍ତ ଯେଉଁ ଯୋଗତତ୍ତ୍ୱ ବ୍ୟବହାର କରି ହୋଇଅଛି, ତାହା 'ସମ୍ପ୍ରଜ୍ଞାତଯୋଗ' ନାମରେ ଖ୍ୟାତ ଅଟେ । ସମ୍ପ୍ରଜ୍ଞାତ ଯୋଗର ସଂକ୍ଷିପ୍ତ ବିବରଣ ନିମ୍ନରେ ବିବୃତ ହେଲା ।

ମନର ନିରୋଧ, ସମାଧି ଓ ଏକାଗ୍ରତା ନାମରେ ତିନିଗୋଟି 'ପରିଣାମ' (ଅବସ୍ଥା) ଅଛି । ୧ ସଂଯମ ନାମକ ଯୋଗାଙ୍ଗ ସାଧନ କରୁଁ ୨ ବ୍ୟୁତ୍ଥାନ (ସମାଧିଭଙ୍ଗ) ସଂସ୍କାର ନିରସ୍ତ ହୋଇ (ଅନ୍ୟ ବିଷୟାଦିରୁ ଫେରାଇ ବନ୍ଦ କରି ରଖିବାରୂପ) ନିରୋଧ ସଂସ୍କାର

Digitized by PPRACHIN, SOA

ଦୃଢ଼ ହେଲେ, ମନ ସେହି ନିରୋଧ ସଂସ୍କାରର ଅନୁଗତ ହୁଏ । ଏପ୍ରକାର ଅନୁଗତ ହେବାକୁ 'ନିରୋଧ ପରିଣାମ' ବୋଲାଯାଏ ।

୨ । ଚିତ୍ତରେ ନାନାବିଧ ପଦାର୍ଥବିଷୟକ ବହୁ ପ୍ରକାର ବୃତ୍ତି ଅଛି, ସେ ସବୁ କ୍ଷୟ-ପ୍ରାପ୍ତ ହୋଇ କେବଳ ଏକବସ୍ତୁବିଷୟକ ଗୋଟିଏ ମାତ୍ର ବୃତ୍ତି ପ୍ରବଳ ହେଲେ 'ସମାଧି ପରି-ଣାମ' ହୁଏ ।

୩ । କୌଣସି ଧ୍ୟେୟପଦାର୍ଥକୁ ଅବଲମ୍ବନ କଲେ, ପ୍ରଥମରେ ସେହି ଧ୍ୟେୟ (ଧ୍ୟାନ ବିଷୟ) ପଦାର୍ଥ ଆକାରରେ ମନରେ ଯେଉଁ ବୃତ୍ତି ଜନ୍ମେ, ତାହା ଧ୍ୱଂସ ହେବା ସଙ୍ଗେ ସଙ୍ଗେ* ସେହି ଧ୍ୟେୟପଦାର୍ଥ ଆକାରରେ ପୁଣି ଅନ୍ୟ ଯେଉଁ ବୃତ୍ତି ଜନ୍ମେ, ସେହି (ଧ୍ୱଂସପ୍ରାପ୍ତ ଓ ନବ-ଜାତ) ଦୁଇ ବୃତ୍ତିକୁ ଏକତ୍ରରେ 'ଏକାଗ୍ରତା ନାମକ ପରିଣାମ' ବୋଲାଯାଏ ।

ଏହି 'ଏକାଗ୍ରତା' ଅବିଚ୍ଛେଦଭାବରେ ଯଦି ଦ୍ୱାଦଶ ଥର ଯାଏ ହୁଏ, ତେବେ ତାହାକୁ 'ଧାରଣା' ବୋଲି ଜାଣିବ । 'ଧାରଣା' ଅବିରତଭାବରେ ଦ୍ୱାଦଶ ଗୁଣ ସମୟ ପର୍ଯ୍ୟନ୍ତ ସ୍ଥାୟୀ ହେଲେ, 'ଧ୍ୟାନ' ନାମରେ କଥିତ ହୁଏ ଓ 'ଧ୍ୟାନ' ଦ୍ୱାଦଶ ଗୁଣ ସମୟ ପର୍ଯ୍ୟନ୍ତ ନିରନ୍ତର ସ୍ଥାୟୀ ହେଲେ, ତାକୁ 'ସମାଧି' ବୋଲାଯାଏ ଓ 'ସମାଧି' ଦ୍ୱାଦଶ ଗୁଣ ସମୟ ପର୍ଯ୍ୟନ୍ତ ସ୍ଥାୟୀ ହେଲେ, 'ସମ୍ପ୍ରଜ୍ଞାତ ଯୋଗ' ନାମରେ ବିଖ୍ୟାତ ହୁଏ ।

ଏକ ନିମେଷର ଚତୁର୍ଥଭାଗର ଏକଭାଗକୁ 'କ୍ଷଣ' ବୋଲାଯାଏ । କାହାରି ମତରେ ୧୦ ଲିତା ସମୟରେ ଏକ 'କ୍ଷଣ' ହୁଏ । ବୁଝିବାକୁ ସୁବିଧା ହେବ ବୋଲି ଆମ୍ଭେମାନେ ୧୦ ଲିତାରେ ଏକ 'କ୍ଷଣ' ଧରି ନିମ୍ନରେ ଗୋଟିଏ ହିସାବ ଦେଲୁଁ, ତହିଁରୁ ସମସ୍ତେ 'ଧାରଣା', 'ଧ୍ୟାନ' ଓ 'ସମାଧି' ଏବଂ 'ସମ୍ପ୍ରଜ୍ଞାତ ଯୋଗର' ସମୟ ବୁଝି ପାରିବେ ।

କୌଣସି ବୃତ୍ତି ୩ କ୍ଷଣରୁ ଅଧିକ ରହେ ନାହିଁ । 'ଏକାଗ୍ରତା ପରିଣାମ' ଏକ ବୃତ୍ତିର ଧ୍ୱଂସ ଓ ଅପର ବୃତ୍ତିର ଜନ୍ମ ଅର୍ଥାତ୍ ଦୁଇ ବୃତ୍ତିର ସମୟ ଯୋଗ ହେଉଥିବାରୁ (୩ + ୩) ୬ କ୍ଷଣ ବା (୬ × ୧୦) ୬୦ ଲିତା ଅର୍ଥାତ୍ ଏକ ଦଣ୍ଡ ସମୟ ବ୍ୟାପକ, ଅର୍ଥାତ୍ ଏକବସ୍ତୁବିଷୟକ ବୃତ୍ତି ୧ ଦଣ୍ଡ ପର୍ଯ୍ୟନ୍ତ ସ୍ଥାୟୀ ହେଲେ, 'ଏକାଗ୍ରତା' ନାମରେ କଥିତ ହୋଇ ପାରେ । ଏହି-ପରି (୧ × ୧୨) ବାର ଦଣ୍ଡ ଯାଏ ଏକାଗ୍ରତା ସ୍ଥାୟୀ ହେଲେ 'ଧାରଣା' ଓ ୧୨ × ୧୨ = ୧୪୪) ଏକଶଚୌରଳିଶ ଦଣ୍ଡ ଯାଏ 'ଧାରଣା' ସ୍ଥାୟୀ ହେଲେ 'ଧ୍ୟାନ' ଓ (୧୪୪ × ୧୨ = ୧୭୨୮) ଏକହଜାର ସାତଶ ଅଠାଇଶ ଦଣ୍ଡ ଯାଏ 'ଧ୍ୟାନ' ସ୍ଥାୟୀ ହେଲେ 'ସମାଧି' ଓ (୧୭୨୮ × ୧୨ = ୨୦୭୩୬) କୋଡ଼ିଏ ହଜାର ସାତଶ ଛତିଶ ଦଣ୍ଡ ଯାଏ ସମାଧି ସ୍ଥିର ହେଲେ 'ସମ୍ପ୍ରଜ୍ଞାତ' ଯୋଗ ହୁଏ । ୬୦ ଦଣ୍ଡରେ ଏକ ଅହୋରାତ୍ର ବୋଲି ୨୦୭୩୬ ଦଣ୍ଡରେ $\frac{୨୦୭୩୬}{୬୦}$ ୩୪୫ ଦିନ ଓ ୩୬ ଦଣ୍ଡ ହେଉଅଛି, ଅର୍ଥାତ୍ ପ୍ରାୟ ଏକବର୍ଷ କାଳ ମନଃ ସଂଯମ କରି ଏପ୍ରକାର ସମାଧିରେ ବସି ରହି ପାରିଲେ ସମ୍ପ୍ରଜ୍ଞାତ ଯୋଗ ହୁଏ । ଏହିପ୍ରକାର ଯୋଗ ଯେ ଅଭ୍ୟାସ କରି ଆୟତ୍ତ କରି ପାରନ୍ତି, ସେ ନିର୍ବାଣ ମୁକ୍ତି ଲାଭ କରନ୍ତି ।

* କୌଣସି ବୃତ୍ତି ତିନ କ୍ଷଣରୁ ଅଧିକ ରହି ପାରେ ନାହିଁ ।

Digitized by PPRACHIN, SOA

ସମ୍ପ୍ରଜ୍ଞାତ ଯୋଗର ଶେଷଫଳ ନିର୍ବାଣ ମୁକ୍ତି ସତ୍ୟ, ମାତ୍ର ସମାଧି ଅଭ୍ୟାସ ହେବା ପୂର୍ବରୁ ନାନା ପ୍ରକାର ଅଦ୍ଭୁତ କ୍ରିୟାରେ ସାଧକ ଦକ୍ଷତା ଲାଭ କରନ୍ତି । ପାତଞ୍ଜଳସୂତ୍ର ବିଭୂତି-ପାଦର ୧୬ ସୂତ୍ରଠାରୁ ୩୭ ସୂତ୍ର ପର୍ଯ୍ୟନ୍ତ ସେ ସବୁ ଅଦ୍ଭୁତ କ୍ଷମତାର କଥା ବିସ୍ତୃତରୂପେ ବର୍ଣ୍ଣିତ ଅଛି ।

ମହାତ୍ମା ପତଞ୍ଜଳି ବିଭୂତିପାଦର ୩୮ ସୂତ୍ରରେ କହିଅଛନ୍ତି, ଯେ "ତେ ସମାଧାବୁପସ-ର୍ଗାବ୍ୟୁତ୍ଥାନେ ସିଦ୍ଧୟଃ" ଅର୍ଥାତ୍ ସେହି ସବୁ ଅଦ୍ଭୁତ କ୍ଷମତା ବ୍ୟୁତ୍ଥାନ ଅବସ୍ଥାରେ ବା ନିରୋଧ ଅବସ୍ଥା ଜନ୍ମିବା ପୂର୍ବରେ 'ସିଦ୍ଧି' ବୋଲି ପରିଚିତ ହୁଅନ୍ତି ସତ, ମାତ୍ର ସମାଧିରେ (ନିରୋଧ ଅବସ୍ଥାରେ) ସେମାନେ 'ଉପସର୍ଗ' ଅର୍ଥାତ୍ ସମାଧିର ପ୍ରତିବନ୍ଧକ ହୁଅନ୍ତି । କାହିଁକି ନା ଅଦ୍ଭୁତ କ୍ଷମତା ଦେଖାଇ ଲୋକଙ୍କୁ ବିସ୍ମିତ ଓ ଆଶ୍ଚର୍ଯ୍ୟାନ୍ୱିତ କରିବାକୁ ଗଲେ, ସମାଧିରେ ମନ ନିଶ୍ଚଳ ହୁଏ ନାହିଁ । ସେଥିପାଇଁ ସମାଧି ଅଭିଳାଷୀ ବ୍ୟକ୍ତି ସେ ସବୁ ଅଦ୍ଭୁତ କ୍ଷମତାକୁ ତୃଣପରି ତୁଚ୍ଛଜ୍ଞାନ କରି ପରିତ୍ୟାଗ କରନ୍ତି ଏବଂ ଏକମାତ୍ର ଆତ୍ମସ୍ୱରୂପ ଅନୁଭବ କରିବାରେ ନିମଗ୍ନ ହୁଅନ୍ତି । ତାହାଦ୍ୱାରା ତାଙ୍କର କାମନା ପ୍ରକାଶର ବୀଜ ନଷ୍ଟ ହୋଇଯାଏ ବୋଲି ସେହି ଅବସ୍ଥାକୁ 'ନିର୍ବାଣ' ବୋଲାଯାଏ । ୧୫ ।

## ଶ୍ଲୋକଃ ।

* ନାତ୍ୟଶ୍ନତସ୍ତୁ ଯୋଗୋଽସ୍ତି, ନ ଚୈକାନ୍ତମନଶ୍ନତଃ ।
ନ ଚାତିସ୍ୱପ୍ନଶୀଳସ୍ୟ, ଜାଗ୍ରତୋ ନୈବ ଚାର୍ଜୁନ । ୧୬ ।

## ଅନ୍ୱୟଃ ।

ହେ ଅର୍ଜୁନ ! ନ ତୁ ଅତ୍ୟଶ୍ନତଃ ନ ଏକାନ୍ତଂ ଅନଶ୍ନତଃ ଚ ନ ଅତିସ୍ୱପ୍ନଶୀଳସ୍ୟ ଚ ଜାଗ୍ରତଃ ଯୋଗଃ ନ ଏବ ଅସ୍ତି । ୧୬ ।

## ଟୀକା ।

ଯୋଗାଭ୍ୟାସନିଷ୍ଠସ୍ୟ ଆହାରାଦିନିୟମମାହ । ନାତ୍ୟଶ୍ନତ ଇତି ଦ୍ୱାଭ୍ୟାଂ । ଅତ୍ୟନ୍ତମଧିକଂ ଭୁଞ୍ଜାନସ୍ୟ ଏକାନ୍ତ-ମତ୍ୟନ୍ତମଭୁଞ୍ଜାନସ୍ୟାପି ଯୋଗଃ ସମାଧିର୍ନଭବତି ତଥା ଅତିନିଦ୍ରାଶୀଳସ୍ୟ ଅତିଜାଗ୍ରତଶ୍ଚ ଯୋଗୋନୈବାସ୍ତି । ୧୬ ।

## ପଦବ୍ୟାଖ୍ୟା ।

ନ—ନାହିଁ, ଅତ୍ୟଶ୍ନତସ୍ତୁ—ବହୁତ ଭୋଜନ କରିବା ବ୍ୟକ୍ତିର, ଯୋଗୋଽସ୍ତି—ଯୋଗ ହୁଏ, ନ ଚ—ନାହିଁ, ଏକାନ୍ତମନଶ୍ନତଃ—ନିତାନ୍ତ ନିରାହାରବ୍ୟକ୍ତିର, ନ ଚ—ନାହିଁ, ଅତିସ୍ୱପ୍ନଶୀଳସ୍ୟ—ବହୁତ ନିଦ୍ରା କରିବା ବ୍ୟକ୍ତିର, ଜାଗ୍ରତଃ—ବହୁ ଜାଗରଣଶୀଳ ଅର୍ଥାତ୍ ଉନ୍ନିଦ୍ର ରହିବା ବ୍ୟକ୍ତିର, ନୈବ ଚ—ହୁଏ ନାହିଁ ମଧ୍ୟ, ଅର୍ଜୁନ—ହେ ଅର୍ଜୁନ ! । ୧୬ ।

## ଅନୁବାଦ ।

ହେ ଅର୍ଜୁନ ! ଅତିଭୋଜୀ, ନିତାନ୍ତ ନିରାହାରୀ, ଅତ୍ୟନ୍ତ ନିଦ୍ରାଳୁ ଓ ଅଧିକ ଜାଗରଣ-ଶୀଳ ବ୍ୟକ୍ତିର ଯୋଗ ହୋଇ ପାରେ ନାହିଁ । ୧୬ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଯୋଗାଭିଳାଷିବ୍ୟକ୍ତିଙ୍କର ଯୋଗସାଧନପ୍ରଣାଳୀ ପୂର୍ବଶ୍ଳୋକମାନଙ୍କରେ ବୁଝାଇ ଦେଇ, ଏ ଶ୍ଳୋକରେ ଯୋଗର ଉପଯୋଗୀ ଅହାର ବିହାରାଦିର କଥା ବୁଝାଉଅଛନ୍ତି ।

ଯେଉଁ ବ୍ୟକ୍ତି ଅତିଭୋଜନ କରନ୍ତି, ତାହାଙ୍କ ଶରୀରରେ ରସ ପ୍ରଭୃତି ଧାତୁର ବିକାର ଜାତ ହୋଇ, ଦେହର ପରିଚ୍ଛନ୍ନତା ନଷ୍ଟ କରେ ଓ ନିଦ୍ରା ତନ୍ଦ୍ରା ପ୍ରଭୃତି ଜାତ ହେବାରୁ ସେ ସାଧନରେ ଅସମର୍ଥ ହୁଅନ୍ତି । ପୁଣି ଯେ ଅତ୍ୟନ୍ତ ଉପବାସ କରନ୍ତି, କ୍ଷୁଧାଦ୍ୱାରା ତାଙ୍କର ଚିତ୍ତ-ରେ ଚଞ୍ଚଳତା ଜନ୍ମି, ଯୋଗସାଧନରେ ବିଘ୍ନ ଉତ୍ପାଦନ କରେ ଓ ରସାଦି ଶୁଷ୍କ ହୋଇ ଶରୀରକୁ ଦୁର୍ବଳ କରି ଯୋଗର ଅନୁପଯୁକ୍ତ କରେ । ଅତଏବ ଯୋଗାଭିଳାଷିର 'ଆତ୍ମସମ୍ମିତ' (ଅଷ୍ଟ-ଗ୍ରାସ ପରିମାଣ) ଅନ୍ନ ଭୋଜନ କରିବା ଉଚିତ । ଶତପଥ ବ୍ରାହ୍ମଣରେ ପ୍ରମାଣ ଅଛି ଯେ;—

"ଯଦୁହବା ଆତ୍ମସମ୍ମିତମନ୍ନଂ ତଦବତି ତନ୍ନ ହିନସ୍ତି ।
ଯଦ୍ଭୂୟୋ ହିନସ୍ତି ତଦ୍ ଯତ୍ତୁ କନୀୟୋନ ତଦବତି" ଇତି ।

ଅର୍ଥାତ୍ ଯାହାଦ୍ୱାରା ଶରୀରର ରକ୍ଷା ହୁଏ, କ୍ଷତି ହୁଏନାହିଁ, ତାହାକୁ ଆତ୍ମସମ୍ମିତ ଅନ୍ନ କୁହାଯାଏ । ଯାହାଦ୍ୱାରା ଶରୀରର କ୍ଷତି ହୁଏ, (ଅତି ଭୋଜନ) ଏବଂ ଯେଉଁ ଅନ୍ନ ପରିମାଣରେ ନିତାନ୍ତ ଅଳ୍ପ (କନୀୟଃ) ତାହା ଶରୀରକୁ ରକ୍ଷା କରି ପାରେ ନାହିଁ, ଇତ୍ୟାଦି । ଅତଏବ ଯୋଗିବ୍ୟକ୍ତି ଶାସ୍ତ୍ରବିହିତ ପରିମାଣରେ ଅନ୍ନ ଭୋଜନ କରିବେ, ଅତିଭୋଜନ ଓ ଅଳ୍ପଭୋଜନ ପରିତ୍ୟାଗ କରିବେ । ଅଥବା—

"ପୂରୟେଦଶନେନାର୍ଦ୍ଧଂ ତୃତୀୟମୁଦକେନ ତୁ ।
ବାୟୋଃ ସଞ୍ଚରଣାର୍ଥାୟ-ଚତୁର୍ଥମବଶେଷୟେତ୍" ।

ଇତ୍ୟାଦି ବଚନ ପ୍ରମାଣ ଅନୁସାରେ ଉଦରଗହ୍ୱରର ଦୁଇଭାଗ ଅନ୍ନଦ୍ୱାରା ଓ ଏକଭାଗ ଜଳ-ଦ୍ୱାରା ପୂରଣ କରି, ଅବଶିଷ୍ଟ ଭାଗ ବାୟୁର ଗମନାଗମନପାଇଁ ଖାଲି ରଖିବ । ସେହିପରି ଅତିନିଦ୍ରାରେ ଶରୀର ଅବସନ୍ନ ହେଲେ, ଯୋଗସାଧନରେ ସାମର୍ଥ୍ୟ ଓ ପ୍ରବୃତ୍ତି ରହେ ନାହିଁ, ପୁଣି ଅତି ଅନିଦ୍ରା ହେଲେ ସମାଧିରେ ନିଶ୍ଚଳ ହୋଇ ବସିଲାବେଳକୁ ନିଦ୍ରା ଜାତ ହୋଇ ସମା-ଧିରେ ବିଘ୍ନ ଉତ୍ପାଦନ କରିବ । ଅତଏବ ଯୋଗିବ୍ୟକ୍ତିର ଅତିନିଦ୍ରା ଓ ଅତିଜାଗରଣ ତ୍ୟାଗ କରିବା ଉଚିତ । ଦିବସରେ ନିଦ୍ରା ଏକାବେଳକେ ବର୍ଜନୀୟ । ରାତ୍ରିର ପ୍ରଥମ ଓ ଚତୁର୍ଥ ପ୍ରହରରେ ଜାଗ୍ରତ ଥାଇ ଈଶ୍ୱର ଆରାଧନା କରିବ ଓ ୨ ୟ ଏବଂ ୩ ୟ ପ୍ରହରରେ ନିଦ୍ରା କରିବ । ୧୬ ।

ଶ୍ଳୋକଃ ।

* ଯୁକ୍ତାହାରବିହାରସ୍ୟ, ଯୁକ୍ତଚେଷ୍ଟସ୍ୟ କର୍ମସୁ ।
ଯୁକ୍ତସ୍ୱପ୍ନାବବୋଧସ୍ୟ, ଯୋଗୋ ଭବତି ଦୁଃଖହା । ୧୭ ।

Digitized by PPRACHIN, SOA

### ଅନ୍ୱୟଃ ।

ଯୁକ୍ତାହାରବିହାରସ୍ୟ କର୍ମସୁ ଯୁକ୍ତଚେଷ୍ଟସ୍ୟ ଯୁକ୍ତସ୍ୱପ୍ନାବବୋଧସ୍ୟ ଦୁଃଖହା ଯୋଗଃ ଭବତି । ୧୭ ।

### ଟୀକା ।

ତର୍ହି କଥମ୍ଭୂତସ୍ୟ ଯୋଗୋଭବତୀତ୍ୟତଆହ ଯୁକ୍ତାହାରେତି । ଯୁକ୍ତୋନିୟତ ଆହାରୋବିହାରଶ୍ଚ ଗତିର୍ଯସ୍ୟ କର୍ମସୁ କାର୍ଯ୍ୟେଷୁ ଯୁକ୍ତା ନିୟତା ଚେଷ୍ଟା ଯସ୍ୟ ଯୁକ୍ତୌ ନିୟତୌ ସ୍ୱପ୍ନାବବୋଧୌ ନିଦ୍ରାଜାଗରୌ ଯସ୍ୟ ତସ୍ୟ ଦୁଃଖନିବର୍ତ୍ତକୋ ଯୋଗୋ ଭବତି ସିଧ୍ୟତି । ୧୭ ।

### ପଦବ୍ୟାଖ୍ୟା ।

ଯୁକ୍ତାହାରବିହାରସ୍ୟ—ଯେଉଁ ବ୍ୟକ୍ତିର ଆହାର (ଭୋଜନ) ଓ ବିହାର (ଭ୍ରମଣାଦି) ନିୟମିତ, ଯୁକ୍ତଚେଷ୍ଟସ୍ୟ କର୍ମସୁ—ସମସ୍ତ କର୍ମରେ ଯାହାଙ୍କର ଚେଷ୍ଟା ନିୟମିତ ଅଟେ, ଯୁକ୍ତସ୍ୱପ୍ନାବବୋଧସ୍ୟ—ଯାହାଙ୍କର ଶୟନ ଓ ଜାଗରଣ ନିୟମିତ, ଯୋଗୋଭବତି ଦୁଃଖହା—ଦୁଃଖନାଶକାରୀ ଯୋଗ ସିଦ୍ଧ ହୁଏ । ୧୭ ।

### ଅନୁବାଦ ।

ଯେଉଁ ବ୍ୟକ୍ତି ଆହାର, ବିହାର, କାର୍ଯ୍ୟଚେଷ୍ଟା, ନିଦ୍ରା ଓ ଜାଗରଣକୁ ନିୟମିତରୂପେ ସମାଧାନ କରନ୍ତି, ଦୁଃଖନାଶକ ଯୋଗ ତାଙ୍କର ସିଦ୍ଧ ହୁଏ । ୧୭ ।

### ବିଶଦବ୍ୟାଖ୍ୟା ।

ଯେଉଁ ବ୍ୟକ୍ତି ନିୟମିତ ଆହାର କରନ୍ତି, ଅର୍ଥାତ୍ ଅତିଭୋଜନ ଓ ଅଳ୍ପଭୋଜନରୂପ ଅନିୟମ ତ୍ୟାଗ କରନ୍ତି, ପୁଣି ଅନିୟମିତ ବିହାର (ଭ୍ରମଣାଦି) ତ୍ୟାଗ କରି, ନିୟମାନୁଯାୟୀ କରନ୍ତି, ନିୟମିତରୂପେ ପ୍ରଣବ ଉଚ୍ଚାରଣାଦି କର୍ମରେ ଚେଷ୍ଟା (ଯତ୍ନ) କରନ୍ତି, ନିଦ୍ରା ଓ ଜାଗରଣ ମଧ୍ୟ ନିୟମ ଅନୁସାରେ ଅଭ୍ୟାସ କରନ୍ତି, ସେ ବ୍ୟକ୍ତିଙ୍କର ଯୋଗ-ବିଘ୍ନକାରୀ କୌଣସି କ୍ରିୟା ନ ଥିବାରୁ ଦୁଃଖନାଶକ ଯୋଗ ସହଜରେ ସିଦ୍ଧ ହୁଏ । ୧୭ ।

### ଶ୍ଳୋକଃ ।

ଯଦା ବିନିୟତଂ ଚିତ୍ତମାତ୍ମନ୍ୟେବାବତିଷ୍ଠତେ ।
ନିଃସ୍ପୃହଃ ସର୍ବକାମେଭ୍ୟୋ ଯୁକ୍ତ ଇତ୍ୟୁଚ୍ୟତେ ତଦା । ୧୮ ।

### ଅନ୍ୱୟଃ ।

ଯଦା ଆତ୍ମନି ଏବ ବିନିୟତଂ ଚିତ୍ତଂ ଅବତିଷ୍ଠତେ ତଦା ସର୍ବକାମେଭ୍ୟଃ ନିଃସ୍ପୃହଃ (ସନ୍) ଯୁକ୍ତଃ ଇତି ଉଚ୍ୟତେ । ୧୮ ।

### ଟୀକା ।

କଦା ନିଷ୍ପନ୍ନଯୋଗଃ ପୁରୁଷୋଭବତୀତ୍ୟପେକ୍ଷାୟାମାହ, ଯଦେତି । ବିନିୟତଂ ବିଶେଷେଣ ନିୟତଂ ସଚ୍ଚିତ୍ତଂ ଆତ୍ମନ୍ୟେବ ଯଦା ନିଶ୍ଚଳଂ ତିଷ୍ଠତି ତଦା ପ୍ରାପ୍ତଯୋଗ ଇତ୍ୟୁଚ୍ୟତେ । ୧୮ ।

### ପଦବ୍ୟାଖ୍ୟା ।

ଯଦା—ଯେଉଁ ସମୟରେ, ବିନିୟତଂ—ବିଶେଷରୂପେ ନିରୁଦ୍ଧ, ଚିତ୍ତଂ—ଅନ୍ତଃକରଣ (ମନ), ଆତ୍ମନି ଏବ—ଆତ୍ମାରେ କେବଳ, ଅବତିଷ୍ଠତେ—ଅବସ୍ଥିତ ହୁଏ, ନିଃସ୍ପୃହଃ—ଇଚ୍ଛାରହିତ, ସର୍ବକାମେଭ୍ୟଃ—ସମସ୍ତ କାମନାମାନଙ୍କରୁ, ଯୁକ୍ତଃ—ଆତ୍ମାରେ ଲୀନ, ଇତି ଉଚ୍ୟତେ—ଏହା କଥିତ ହୁଏ, ତଦା—ସେହି ସମୟରେ । ୧୮ ।

Digitized by PPRACHIN, SOA

ଅନୁବାଦ ।

ଯେତେବେଳେ ଚିତ୍ତ ସଂଯତ ହୋଇ ଆତ୍ମାରେ ଅବସ୍ଥିତ ହୁଏ ଓ କୌଣସି ବିଷୟରେ ସ୍ପୃହା ନ ଥାଏ, ସେତେବେଳେ 'ଯୋଗ ସିଦ୍ଧ ହୋଇଅଛି' ଏହା ବୋଲାଯାଏ । ୧୮ ।

ବିଶଦବ୍ୟାଖ୍ୟା ।

ଯେଉଁ ସମୟରେ ତୀବ୍ର ବୈରାଗ୍ୟ ହେତୁରୁ ଚିତ୍ତ ବିଶେଷରୂପରେ ସଂଯତ ହୁଏ ବା ସର୍ବପ୍ରକାର ବୃତ୍ତିଶୂନ୍ୟ ହୁଏ, ଅର୍ଥାତ୍ ରଜଃ ଓ ତମୋଗୁଣଶୂନ୍ୟ ହୋଇ 'ସ୍ୱଚ୍ଛ' ସତ୍ତ୍ୱଗୁଣ ପରିପୂରିତ ହେବାରୁ ସମସ୍ତ ବିଷୟ ଗ୍ରହଣରେ ସମର୍ଥ ହେଲେ ସୁଦ୍ଧା, ବାହ୍ୟବିଷୟରୁ ସମ୍ପୂର୍ଣ୍ଣ-ରୂପେ ନିରୁଦ୍ଧ ହୋଇ କେବଳ ଆତ୍ମାରେ ଅବସ୍ଥାନ କରେ, ସେତେବେଳେ ସର୍ବକାମନାରୁ ସ୍ପୃହାହୀନ ଅର୍ଥାତ୍ ପ୍ରବଳବୈରାଗ୍ୟଯୁକ୍ତ ବ୍ୟକ୍ତି 'ଯୋଗୀ' ପଦବାଚ୍ୟ ହୁଅନ୍ତି । ଫଳକଥା ଏହି କି କାମନାବିହୀନ ବ୍ୟକ୍ତିଙ୍କର ମନ ସମ୍ପୂର୍ଣ୍ଣରୂପେ ନିରୁଦ୍ଧ ହୋଇ ଆତ୍ମାରେ ଯୁକ୍ତ ହେଲେ ଯୋଗ ସିଦ୍ଧ ହୁଏ । ୧୮ ।

ଶ୍ଳୋକଃ ।

ଯଥା ଦୀପୋ ନିବାତସ୍ଥୋ, ନେଙ୍ଗତେ ସୋପମା ସ୍ମୃତା ।
ଯୋଗିନୋ ଯତଚିତ୍ତସ୍ୟ, ଯୁଞ୍ଜତୋ ଯୋଗମାତ୍ମନଃ । ୧୯ ।

ଅନ୍ୱୟଃ ।

ଯଥା ନିବାତସ୍ଥଃ ଦୀପଃ ନ ଇଙ୍ଗତେ, ଯୋଗଂ ଯୁଞ୍ଜତଃ ଯତଚିତ୍ତସ୍ୟ ଯୋଗିନଃ ଆତ୍ମନଃ ସା ଉପମା ସ୍ମୃତା । ୧୯ ।

ଟୀକା ।

ଅଥୈକାଗ୍ରତାଦ୍ଧ୍ୟବସ୍ଥିତସ୍ୟ ଚିତ୍ତସ୍ୟୋପମାନମାହ, ଯଥେତି । ବାତଶୂନ୍ୟେ ଦେଶେ ସ୍ଥିତୋ ଦୀପୋ ଯଥା ନେଙ୍ଗତେ ନ ଚଳତି ସା ଉପମା ଦୃଷ୍ଟାନ୍ତଃ କସ୍ୟ ଆତ୍ମବିଷୟଂ ଯୋଗଂ ଯୁଞ୍ଜତୋଽଭ୍ୟସ୍ୟତୋ ଯୋଗିନୋ ଯତଂ ନିୟତଂ ଚିତ୍ତଂ ଯସ୍ୟ ନିଶ୍ଚଳତୟା ପ୍ରକାଶକତୟା ଚ ଚଞ୍ଚଳଂ ଚିତ୍ତଂ ତଦ୍ବନ୍ନିଶ୍ଚଳମିତ୍ୟର୍ଥଃ । ୧୯ ।

ପଦବ୍ୟାଖ୍ୟା ।

ଯଥା—ଯେପରି, ଦୀପୋ ନିବାତସ୍ଥଃ—ବାୟୁଶୂନ୍ୟ ସ୍ଥାନରେ ଥିବା ଦୀପ, ନେଙ୍ଗତେ—ଚଳେ ନାହିଁ (ହଲେ ନାହିଁ), ସା ଉପମା ସ୍ମୃତା—ତାହା ଉଦାହରଣ ଅଟେ, ଯୋଗିନଃ—ଯୋଗିଙ୍କର, ଯତଚିତ୍ତସ୍ୟ—ସଂଯତମନା, ଯୁଞ୍ଜତୋ-ଯୋଗଂ—ଯୋଗ ଅଭ୍ୟାସ କରୁଥିବା, ଆତ୍ମନଃ—ଚିତ୍ତବୃତ୍ତିର । ୧୯ ।

ଅନୁବାଦ ।

ସଂଯତଚିତ୍ତ ଯୋଗାଭ୍ୟାସିବ୍ୟକ୍ତିଙ୍କର ଚିତ୍ତବୃତ୍ତି ପକ୍ଷରେ ବାୟୁଶୂନ୍ୟ-ସ୍ଥାନରେ ଥିବା ନିଶ୍ଚଳ ଦୀପଶିଖା ଉଦାହରଣ ଅଟେ । ୧୯ ।

ବିଶଦବ୍ୟାଖ୍ୟା ।

ଦୀପଶିଖା ଯେପରି ଆପେ ପ୍ରକାଶିତ ହୋଇ ଅନ୍ୟ ପଦାର୍ଥ ପ୍ରକାଶ କରେ, ସଂଯତ-ମନା ଯୋଗିବ୍ୟକ୍ତିଙ୍କ ଚିତ୍ତବୃତ୍ତି ସେହିପରି ଆତ୍ମଜ୍ଞାନ-ଦୀପିତ ହୋଇ ସତ୍ତ୍ୱଗୁଣର ପ୍ରକାଶକ ହୁଏ । ଯେପରି ବାୟୁସଞ୍ଚାର ନ ଥିବା ସ୍ଥାନରେ ଦୀପଶିଖା ବକ୍ର କି ଚଞ୍ଚଳ ହୁଏ ନାହିଁ, ସେହି-

Digitized by PPRACHIN, SOA

ପରି ବାହ୍ୟପଦାର୍ଥର ସଂସ୍ପର୍ଶରହିତ ହେବାରୁ ଯୋଗିର ଚିତ୍ତବୃତ୍ତି କିଞ୍ଚିନ୍ମାତ୍ର ବିଚଳିତ ହୁଏ ନାହିଁ । ଅତଏବ ସଂଯତଚିତ୍ତ ଯୋଗିଙ୍କ ଚିତ୍ତବୃତ୍ତି ପକ୍ଷରେ ବାୟୁଶୂନ୍ୟ ସ୍ଥାନରେ ଥିବା ଅଚଞ୍ଚଳ ଦୀପଶିଖା ଏକମାତ୍ର ଉପମା ବା ଉଦାହରଣ ଅଟେ । ୧୯ ।

ଶ୍ଳୋକଃ ।

ଯତ୍ରୋପରମତେ ଚିତ୍ତଂ, ନିରୁଦ୍ଧଂ ଯୋଗସେବୟା ।
ଯତ୍ର ଚୈବାତ୍ମନାତ୍ମାନଂ, ପଶ୍ୟନ୍ନାତ୍ମନି ତୁଷ୍ୟତି । ୨୦ ।

ଅନ୍ୱୟଃ ।

ଯତ୍ର ଯୋଗସେବୟା ନିରୁଦ୍ଧଂ ଚିତ୍ତଂ ଉପରମତେ ଚ ଯତ୍ର ଆତ୍ମନା ଆତ୍ମାନଂ ପଶ୍ୟନ୍ ଆତ୍ମନି ଏବ ତୁଷ୍ୟତି (ତଂ ଯୋଗସଂଜ୍ଞିତଂ ବିଦ୍ୟାତ୍ ଇତି ଚତୁର୍ଥେନାନ୍ୱୟଃ) । ୨୦ ।

ଟୀକା ।

ଯଂ ସନ୍ନ୍ୟାସମିତି ପ୍ରାହୁର୍ଯୋଗଂ ତଂ ବିଦ୍ଧି ପାଣ୍ଡବେତ୍ୟାଦୌ କର୍ମୈବ ଯୋଗଶବ୍ଦେନୋକ୍ତଂ ନାତ୍ୟନ୍ତମ୍ ଯୋଗୋଽତ୍ରୀତ୍ୟାଦୌ ତୁ ସମାଧିର୍ଯୋଗଶବ୍ଦେନୋକ୍ତଃ ତତ୍ର ମୁଖ୍ୟୋ ଯୋଗଃ କଃ ଇତ୍ୟପେକ୍ଷାୟାଂ ସମାଧିମେବ ସ୍ୱରୂପତଃ ଫଲତଶ୍ଚ ଲକ୍ଷୟନ୍ ସ ଏବ ମୁଖ୍ୟୋ ଯୋଗଃ ଇତ୍ୟାହ ଯତ୍ରେତି ସାର୍ଦ୍ଧୈସ୍ତ୍ରିଭିଃ । ଯତ୍ର ଯସ୍ମିନ୍ନବସ୍ଥାବିଶେଷେ ଯୋଗାଭ୍ୟାସେନ ନିରୁଦ୍ଧଂ ଚିତ୍ତମୁପରତଂ ଭବତୀତି ଯୋଗସ୍ୟ ସ୍ୱରୂପଲକ୍ଷଣମୁକ୍ତଂ ତଥା ଚ ପାତଞ୍ଜଳସୂତ୍ରଂ "ଯୋଗଶ୍ଚିତ୍ତବୃତ୍ତିନିରୋଧଃ" ଇତି, ଇଷ୍ଟପ୍ରାପ୍ତିଲକ୍ଷଣେନ ଫଲେନ ତମେବ ଲକ୍ଷୟତି ଯତ୍ର ଚ ଯସ୍ମିନ୍ନବସ୍ଥାବିଶେଷେ ଆତ୍ମନା ଶୁଦ୍ଧେନ ମନସା ଆତ୍ମାନମେବ ପଶ୍ୟତି ନ ତୁ ଦେହାଦି ପଶ୍ୟଂସ୍ୱାତ୍ମନ୍ୟେବ ତୁଷ୍ୟତି ନ ତୁ ବିଷୟେଷୁ, ଯତ୍ରେତ୍ୟାଦୀନାଂ ଯଚ୍ଛବ୍ଦାନାଂ ତଂ ଯୋଗସଂଜ୍ଞିତଂ ବିଦ୍ୟାଦିତି ଚତୁର୍ଥେନାନ୍ୱୟଃ । ୨୦ ।

ପଦବ୍ୟାଖ୍ୟା ।

ଯତ୍ର—ଯେଉଁ ଅବସ୍ଥାରେ, ଉପରମତେ—ନିବୃତ୍ତ ହୁଏ, ଚିତ୍ତଂ—ମନ, ନିରୁଦ୍ଧଂ—ଅବରୁଦ୍ଧ—ସଂଯତ, ଯୋଗସେବୟା—ଯୋଗାଭ୍ୟାସଦ୍ୱାରା, ଯତ୍ର ଚ ଏବ—ଆଉ ଯେଉଁ ଅବସ୍ଥାରେ, ଆତ୍ମନାତ୍ମାନଂ—ଆପଣା ମନରେ ଆପଣାକୁ, ପଶ୍ୟନ୍—ଦେଖିକରି, ଆତ୍ମନି ତୁଷ୍ୟତି—ଆତ୍ମାରେ ତୃପ୍ତ ହୁଏ । ୨୦ ।

ଅନୁବାଦ ।

ଯେଉଁ ଅବସ୍ଥାରେ ଯୋଗାଭ୍ୟାସଦ୍ୱାରା ଚିତ୍ତ ନିରୁଦ୍ଧ ହୋଇ ନିବୃତ୍ତ ହୁଏ ଓ ଯେଉଁ ଅବସ୍ଥାରେ (ଯୋଗୀ) ଶୁଦ୍ଧାନ୍ତଃକରଣ ଆତ୍ମଦର୍ଶନ କରି ଆତ୍ମାରେ ସନ୍ତୁଷ୍ଟ ହୁଅନ୍ତି (ତାହାକୁ ଯୋଗ ବୋଲି) । ୨୦ ।

ବିଶଦବ୍ୟାଖ୍ୟା ।

ଯୋଗ ଅଭ୍ୟାସ କରୁଁ କରୁଁ ମନ ସଂଯତ ହୋଇ ଏକାବେଳକେ ବାହ୍ୟବିଷୟରୁ ନିବୃତ୍ତ ହୁଏ । ଅଗ୍ନିକୁଣ୍ଡରେ କାଷ୍ଠ ନ ଦେଲେ ଯେପରି ଅଗ୍ନି ନିଭିଯାଏ ବାହ୍ୟବିଷୟ ସହିତ କଦାପି ସଂସ୍ପର୍ଶ ନ ହେଲେ, ମନର ବୃତ୍ତିଗୁଡ଼ିକ ସେହିପରି ନିବୃତ୍ତ ହୋଇଯାଏ, ମନର ଏ ପ୍ରକାର ଉପଶମ ଅବସ୍ଥା ହେଲେ ରଜଃ ଓ ତମୋଗୁଣର ବିନାଶ ହୁଏ, ଶୁଦ୍ଧ ଓ ସତ୍ତ୍ୱଗୁଣର ପ୍ରକାଶ ହୁଏ । ସୁତରାଂ ସେହି ସ୍ୱଚ୍ଛ ଅବସ୍ଥାରେ ସତ୍ ଚିତ୍ ଆନନ୍ଦଘନ ଓ ଅଦ୍ୱିତୀୟ ପରମାତ୍ମାଙ୍କର ପ୍ରକାଶ ଅନୁଭବ ହେବାରୁ ଯୋଗୀ ଆତ୍ମାନନ୍ଦ—ପରମାନନ୍ଦ ଲାଭ କରନ୍ତି । ୨୦ ।

Digitized by PPRACHIN, SOA

### ଶ୍ଲୋକଃ ।

ସୁଖମାତ୍ୟନ୍ତିକଂ ଯତ୍ତଦ୍ବୁଦ୍ଧିଗ୍ରାହ୍ୟମତୀନ୍ଦ୍ରିୟଂ ।
ବେତ୍ତି ଯତ୍ର ନ ଚୈବାୟଂ, ସ୍ଥିତଶ୍ଚଲତି ତତ୍ତ୍ୱତଃ । ୨୧ ।

### ଅନ୍ୱୟଃ ।

ଯତ୍ ଅତୀନ୍ଦ୍ରିୟଂ ବୁଦ୍ଧିଗ୍ରାହ୍ୟଂ ତତ୍ ଆତ୍ୟନ୍ତିକଂ ସୁଖଂ, ଅୟଂ ଯତ୍ର ବେତ୍ତି ଚ (ଯତ୍ର) ସ୍ଥିତଃ (ଅୟଂ) ତତ୍ତ୍ୱତଃ ଏବ ନ ଚଲତି । ୨୧ ।

### ଟୀକା ।

ଆତ୍ମନୈବ ତୋଷେ ହେତୁମାହ, ସୁଖମିତି । ଯତ୍ର ଯସ୍ମିନ୍ନବସ୍ଥାବିଶେଷେ ଯତ୍ତତ୍ କମପି ନିରତିଶୟମାତ୍ୟନ୍ତିକଂ ନିତ୍ୟଂ ସୁଖଂ ବେତ୍ତି, ନନୁ ତଦା ବିଷୟେନ୍ଦ୍ରିୟସମ୍ବନ୍ଧାଭାବାତ୍ କୁତଃ ସୁଖଂ ସ୍ୟାଦିତ୍ୟାହ, ଅତୀନ୍ଦ୍ରିୟଂ ବିଷୟେନ୍ଦ୍ରିୟସମ୍ବନ୍ଧାତୀତଂ କେବଲଂ ବୁଦ୍ଧ୍ୟୈବାତ୍ମାକାରତୟା ଗ୍ରାହ୍ୟଂ, ଅତଏବ ଚ ଯତ୍ର ସ୍ଥିତଃ ସନ୍ ତତ୍ତ୍ୱତ ଆତ୍ମସ୍ୱରୂପାନ୍ନୈବ ଚଲତି । ୨୧ ।

### ପଦବ୍ୟାଖ୍ୟା ।

ସୁଖଂ ଆତ୍ୟନ୍ତିକଂ—ନିତ୍ୟସୁଖ, ଯତ୍—ଯାହା, ତତ୍—ତାହା, ବୁଦ୍ଧିଗ୍ରାହ୍ୟଂ—(ବ୍ରହ୍ମବିଷୟିଣୀ) ବୁଦ୍ଧିଦ୍ୱାରା ଗ୍ରହଣ-ଯୋଗ୍ୟ, ଅତୀନ୍ଦ୍ରିୟଂ—ଇନ୍ଦ୍ରିୟଜନିତ ଜ୍ଞାନର ଅଗୋଚର, ବେତ୍ତି—ଜାଣନ୍ତି, ଯତ୍ର—ଯେଉଁ ଅବସ୍ଥାରେ, ନ ଚ ଏବ—ନାହିଁ, ଅୟଂ—ଏହି (ଯୋଗୀ), ସ୍ଥିତଃ—ଅବସ୍ଥାନ କଲେ, ଚଲତି—ବିଚଳିତ ହୁଏ, ତତ୍ତ୍ୱତଃ—ଆତ୍ମଜ୍ଞାନରୁ । ୨୧

### ଅନୁବାଦ ।

ଯାହା ଇନ୍ଦ୍ରିୟର ଅଗୋଚର ଓ କେବଳ ବୁଦ୍ଧିଦ୍ୱାରା ପ୍ରାପ୍ୟ, ସେହି ନିତ୍ୟସୁଖକୁ ଯେଉଁ ଅବସ୍ଥାରେ ସ୍ଥିତ ହେଲେ ଯୋଗୀ ଜାଣି ପାରନ୍ତି ଓ ଯେଉଁ ଅବସ୍ଥାରେ ସ୍ଥିତ ହେଲେ ଆତ୍ମଜ୍ଞାନରୁ ବିଚଳିତ ହୁଅନ୍ତି ନାହିଁ (ସେହି ଅବସ୍ଥାକୁ ଯୋଗ ବୋଲାଯାଏ) । ୨୧ ।

### ବିଶଦବ୍ୟାଖ୍ୟା ।

ବାହ୍ୟପଦାର୍ଥ ସହିତ ଇନ୍ଦ୍ରିୟବୃତ୍ତିର ସଂସର୍ଗ ହେଲେ ଯେଉଁ ସୁଖ ହୁଏ, ତାହା ଅପେକ୍ଷା ଆତ୍ମଜ୍ଞାନଜନିତ ସୁଖ ଅଧିକ ଶ୍ରେଷ୍ଠ । ବାହ୍ୟସୁଖ ସବୁ ଇନ୍ଦ୍ରିୟଦ୍ୱାରା ଜଣାଯାଏ, ମାତ୍ର ଆତ୍ମଜ୍ଞାନଜନିତ ସୁଖ ଇନ୍ଦ୍ରିୟମାନଙ୍କର ଅଗୋଚର । କେବଳ ପରମାତ୍ମବିଷୟିଣୀ ଶୁଦ୍ଧବୁଦ୍ଧିଦ୍ୱାରା ତାହା ଅନୁଭବ କରାଯାଏ । ବାହ୍ୟସୁଖ ପରି ତାହା କ୍ଷଣସ୍ଥାୟୀ ନୁହେ, ତାହା ନିତ୍ୟ ଅଟେ । ଅତଏବ ଯୋଗୀ ସେହି ନିତ୍ୟସୁଖ ଅନୁଭବ କଲେ, ଆତ୍ମଜ୍ଞାନରୁ ଆଉ ବିଚଳିତ ହୁଅନ୍ତି ନାହିଁ । ୨୧ ।

### ଶ୍ଳୋକଃ ।

* ଯଂ ଲବ୍ଧ୍ୱା ଚାପରଂ ଲାଭଂ, ମନ୍ୟତେ ନାଧିକଂ ତତଃ ।
ଯସ୍ମିନ୍ ସ୍ଥିତୋ ନ ଦୁଃଖେନ, ଗୁରୁଣାପି ବିଚାଲ୍ୟତେ । ୨୨ ।

### ଅନ୍ୱୟଃ ।

ଯଂ ଲବ୍ଧ୍ୱା ଅପରଂ ଲାଭଂ ତତଃ ଅଧିକଂ ନ ମନ୍ୟତେ, ଚ ଯସ୍ମିନ୍ ସ୍ଥିତଃ ଗୁରୁଣା ଅପି ଦୁଃଖେନ ନ ବିଚାଲ୍ୟତେ । ୨୨ ।

### ଟୀକା ।

ଅଚଳତ୍ୱମେବୋପପାଦୟତି, ଯମିତି । ଯତୋ ଯମାତ୍ମସ୍ୱରୂପଂ ଲବ୍ଧ୍ୱା ତତୋଽଧିକଂ ଲାଭଂ ନ ମନ୍ୟତେ ତସ୍ୟୈବ ନିରତିଶୟସୁଖତ୍ୱାତ୍, ଯସ୍ମିଂଶ୍ଚ ସ୍ଥିତୋମହତାପି ଶୀତୋଷ୍ଣାଦିଦୁଃଖେନ ନ ବିଚାଲ୍ୟତେ ନାଭିଭୂୟତେ, ଏତେନାନିଷ୍ଟନିବୃତ୍ତିଫଲେନାପି ଯୋଗସ୍ୟ ଲକ୍ଷଣମୁକ୍ତଂ ଦ୍ରଷ୍ଟବ୍ୟଂ । ୨୨ ।

### ପଦବ୍ୟାଖ୍ୟା ।

ଯଂ ଲବ୍ଧ୍ୱା—ଯାହାକୁ ପାଇଲେ, ଚ ଅପରଂ ଲାଭଂ—ଅନ୍ୟ ଲାଭକୁ, ମନ୍ୟତେ ନ—ମଣନ୍ତି ନାହିଁ, ଅଧିକଂ ତତଃ—ତହିଁରୁ ଅଧିକ, ଯସ୍ମିନ୍ ସ୍ଥିତଃ—ଯହିଁରେ ଅବସ୍ଥିତ ହେଲେ, ନ—ନାହିଁ, ଦୁଃଖେନ ଗୁରୁଣା ଅପି—ଅତିଶୟ ଦୁଃଖରେ ମଧ୍ୟ, ବିଚାଲ୍ୟତେ—ବିଚଳିତ ହୁଅନ୍ତି । ୨୨ ।

### ଅନୁବାଦ ।

(ଯୋଗୀ) ଯେଉଁ ଅବସ୍ଥା ଲାଭ କଲେ ଅନ୍ୟ ଲାଭକୁ ତାହାଠାରୁ ଅଧିକ ବୋଲି ବୋଧ କରନ୍ତି ନାହିଁ ଏବଂ ଯେଉଁ ଅବସ୍ଥାରେ ସ୍ଥିତ ହେଲେ ଗୁରୁତର ଦୁଃଖରେ ମଧ୍ୟ ବିଚଳିତ ହୁଅନ୍ତି ନାହିଁ (ସେହି ଅବସ୍ଥାକୁ ଯୋଗ ବୋଲାଯାଏ) । ୨୨ ।

### ବିଶଦବ୍ୟାଖ୍ୟା ।

ଯୋଗୀ ଯେଉଁ ଅବସ୍ଥା (ସମାଧି) ଲାଭ କଲେ, ଅନ୍ୟ ଲାଭ ଅର୍ଥାତ୍ ସ୍ୱର୍ଗଭୋଗ କି ଅଣିମାଦି ଅଷ୍ଟୈଶ୍ୱର୍ଯ୍ୟକୁ ଅଧିକ ବୋଲି ମଣନ୍ତି ନାହିଁ ଏବଂ ସେଥିରେ ସ୍ଥିତ ହେଲେ, ଶୀତ, ଉଷ୍ଣ, ବାୟୁ, ବର୍ଷା ଅଥବା ମଶକ ଦଂଶକାଦିର ଉପଦ୍ରବରୂପ ଗୁରୁତର ଦୁଃଖ ସବୁ, ଯୋଗିଙ୍କୁ ସେ ଅବସ୍ଥାରୁ ବିଚଳିତ କରି ପାରେ ନାହିଁ । କାହିଁକି ନା ବାହ୍ୟବିଷୟ ସହିତ ମନର ବୃତ୍ତି ଇନ୍ଦ୍ରିୟଦ୍ୱାରା ସଂଯୁକ୍ତ ହେଲେ, ସୁଖ ଦୁଃଖ ଜଣାଯାଏ । ମାତ୍ର ସେ ଅବସ୍ଥାରେ (ସମାଧିରେ) ଇନ୍ଦ୍ରିୟ ଓ ମନୋବୃତ୍ତି ନିରୁଦ୍ଧ ହୋଇଥିବାରୁ ସୁଖ ବା ଦୁଃଖ ତାଙ୍କୁ ତ ଜଣାଯାଏ ନାହିଁ, ବିଚଳିତ କରିବ କିପରି ? । ୨୨ ।

### ଶ୍ଲୋକଃ ।

ତଂ ବିଦ୍ୟାଦ୍ଦୁଃଖସଂଯୋଗବିୟୋଗଂ ଯୋଗସଞ୍ଜ୍ଞିତଂ ।
ସ ନିଶ୍ଚୟେନ ଯୋକ୍ତବ୍ୟୋ, ଯୋଗୋଽନିର୍ବିଣ୍ଣଚେତସା । ୨୩ ।

### ଅନ୍ୱୟଃ ।

ତଂ ଦୁଃଖସଂଯୋଗବିୟୋଗଂ ଯୋଗସଞ୍ଜ୍ଞିତଂ ବିଦ୍ୟାତ୍, ସ ଯୋଗଃ ଅନିର୍ବିଣ୍ଣଚେତସା ନିଶ୍ଚୟେନ ଯୋକ୍ତବ୍ୟଃ । ୨୩ ।

### ଟୀକା ।

ତମିତି । ଯ ଏବମ୍ଭୂତୋଽବସ୍ଥାବିଶେଷସ୍ତଂ ଦୁଃଖସଂଯୋଗବିୟୋଗଂ ଯୋଗସଞ୍ଜ୍ଞିତଂ ବିଦ୍ୟାତ୍ ଦୁଃଖଶବ୍ଦେନ ଦୁଃଖମିଶ୍ରିତଂ ବୈଷୟିକଂ ସୁଖମପି ଗୃହ୍ୟତେ । ଦୁଃଖସ୍ୟ ସଂଯୋଗେନ ସମ୍ପର୍କମାତ୍ରେଣାପି ବିୟୋଗୋ ଯସ୍ମିନ୍ ତମବସ୍ଥାବିଶେଷଂ ଯୋଗସଞ୍ଜ୍ଞିତଂ ଯୋଗଶବ୍ଦବାଚ୍ୟଂ ଜାନୀୟାତ୍ । ପରମାତ୍ମନ କ୍ଷେତ୍ରଜ୍ଞସ୍ୟ ଯୋଜନଂ ଯୋଗଃ ଯଦ୍ୱା ଦୁଃଖସ୍ୟ ସଂଯୋ-

ଗେନ ବିଯୋଗଏବ ଶୂରେ ଵାଡରଶବ୍ଦବଦ୍ବିରୁଦ୍ଧଲକ୍ଷଣୟା ଯୋଗ ଉଚ୍ୟତେ । କର୍ମଣି ତୁ ଯୋଗଶବ୍ଦସ୍ତଦୁପାୟତ୍ୱାଦୌ-ପଚାରିକ ଇତି ଭାବଃ । ଯସ୍ମାଦେବଂ ମହାଫଲୋଯୋଗସ୍ତସ୍ମାତ୍ ସଏବ ଯତ୍ନତୋଽଭ୍ୟସନୀୟ ଇତ୍ୟାହ ସ ଇତି ସାର୍ଦ୍ଧେନ । ସ ଯୋଗୋନିଶ୍ଚୟେନ ଶାସ୍ତ୍ରାଚାର୍ଯ୍ୟୋପଦେଶଜନିତେନ ଯୋକ୍ତବ୍ୟୋଽଭ୍ୟସନୀୟଃ ଯଦ୍ୟପି ଶୀଘ୍ରଂ ନ ସିଧ୍ୟତି ତଥାପ୍ୟନିର୍ବି-ଣ୍ଣେନ ନିର୍ବେଦରହିତେନ ଚେତସା ଯୋକ୍ତବ୍ୟଃ । ଦୁଃଖବୁଦ୍ଧ୍ୟା ପ୍ରଯତ୍ନଶୈଥିଲ୍ୟଂ ନିର୍ବେଦଃ । ୨୩ ।

ପଦବ୍ୟାଖ୍ୟା ।

ତଂ—ସେହି ଅବସ୍ଥାକୁ, ବିଦ୍ୟାତ୍—ଜାଣିବ, ଦୁଃଖସଂଯୋଗବିୟୋଗଂ—ଯେଉଁ ଅବସ୍ଥାରେ ସଂଯୁକ୍ତ ହେବା ମା-ତ୍ରକେ ଦୁଃଖ ବିନଷ୍ଟ ହୁଏ, ଯୋଗସଞ୍ଜ୍ଞିତଂ—ତାହାର ନାମ ଯୋଗ, ସ—ସେହି, ନିଶ୍ଚୟେନ—(ଗୁରୁ ଓ ଶାସ୍ତ୍ରଉପଦେଶ-ଜନିତ) ନିଶ୍ଚୟ ଜ୍ଞାନଦ୍ୱାରା, ଯୋକ୍ତବ୍ୟଃ—ଅଭ୍ୟାସ କରିବ, ଯୋଗଃ—ଯୋଗକୁ, ଅନିର୍ବିଣ୍ଣଚେତସା—ନିର୍ବେଦ (ଦୁଃଖ ରୟରେ ଉଦ୍ୟମ ତ୍ରୁଟି) ହୀନ ମନରେ । ୨୩ ।

ଅନୁବାଦ ।

ଯେଉଁ ଅବସ୍ଥାରେ ସଂଯୋଗ ହେବା ମାତ୍ରକେ ଦୁଃଖର ବିୟୋଗ ହୁଏ, ପୂର୍ବୋକ୍ତ ସେହି ଅବସ୍ଥାକୁ 'ଯୋଗ' ବୋଲି ଜାଣିବ ଏବଂ ନିର୍ବେଦରହିତ ନିଶ୍ଚୟଚିତ୍ତରେ ସେହି ଯୋଗକୁ ଅଭ୍ୟାସ କରିବ । ୨୩ ।

ବିଶଦବ୍ୟାଖ୍ୟା ।

ସାଂସାରିକ ସୁଖ ସବୁ ଦୁଃଖମିଶ୍ରିତ ବୋଲି ଏ ଶ୍ଳୋକରେ 'ଦୁଃଖ' ଶବ୍ଦଦ୍ୱାରା ସେହି ସାଂସାରିକ ସୁଖକୁ ମଧ୍ୟ ଲକ୍ଷ୍ୟ କରା ହୋଇଅଛି । ଯେଉଁ ଅବସ୍ଥାରେ ଦୁଃଖସଂଯୋଗର ବିୟୋଗ ହୁଏ, କି ସଂଯୋଗ ହେବା ସଙ୍ଗେ ସଙ୍ଗେ ଦୁଃଖ ବିୟୋଗ ହୁଏ ଅର୍ଥାତ୍ ଯେଉଁ ଅବସ୍ଥାଦ୍ୱାରା ବାହ୍ୟ-ବିଷୟଜନିତ ସୁଖଦୁଃଖ ବିନଷ୍ଟ ହୁଏ, ଏବଂ ପୂର୍ବଶ୍ଳୋକମାନଙ୍କରେ ଯେଉଁ ଅବସ୍ଥାର କଥା ବର୍ଣ୍ଣିତ ହୋଇଅଛି, ସେହି ଅବସ୍ଥାକୁ ଯୋଗ ବୋଲାଯାଏ । ସେହି ଯୋଗକୁ ଗୁରୁ ଓ ଶାସ୍ତ୍ର ଉପଦେଶଜନିତ ନିଶ୍ଚୟବୁଦ୍ଧିରେ ଅଭ୍ୟାସ କରିବ । ଅମୁକ କାର୍ଯ୍ୟ କରିବା ଅତି କଷ୍ଟକର ଏହା ଭାବି, ସେଥିରେ ଯେଉଁ ଉଦ୍ୟମହୀନତାରୂପ ଭାବ ଜନ୍ମେ, ତାହାକୁ 'ନିର୍ବେଦ' ବୋଲା-ଯାଏ । ମାତ୍ର ଯୋଗାଭ୍ୟାସରେ ମନ ନିର୍ବେଦହୀନ ହେବା ଆବଶ୍ୟକ ।

ଫଳକଥା ଏହି କି ଗୁରୁବଚନ ଓ ଶାସ୍ତ୍ରର ଉପଦେଶଦ୍ୱାରା ସାଧନପ୍ରଣାଳୀକୁ ନିଶ୍ଚୟ-ରୂପେ ଅବଗତ ହୋଇ, ସମ୍ପୂର୍ଣ୍ଣ ଉତ୍ସାହଯୁକ୍ତଚିତ୍ତରେ ଯୋଗ ଅଭ୍ୟାସ କରିବ । ୨୩ ।

ଶ୍ଳୋକଃ ।

ସଙ୍କଳ୍ପପ୍ରଭବାନ୍ କାମାନ୍, ତ୍ୟକ୍ତ୍ୱା ସର୍ବାନଶେଷତଃ ।
ମନସୈବେନ୍ଦ୍ରିୟଗ୍ରାମଂ, ବିନିୟମ୍ୟ ସମନ୍ତତଃ । ୨୪ ।

ଅନ୍ୱୟଃ ।

ସଙ୍କଳ୍ପପ୍ରଭବାନ୍ ସର୍ବାନ୍ କାମାନ୍ ଅଶେଷତଃ ତ୍ୟକ୍ତ୍ୱା ମନସା ଏବ ଇନ୍ଦ୍ରିୟଗ୍ରାମଂ ସମନ୍ତତଃ ବିନିୟମ୍ୟ (ସ ଯୋଗଃ ଯୋକ୍ତବ୍ୟ ଇତି ପୂର୍ବେଣାନ୍ୱୟଃ) । ୨୪ ।

ଟୀକା ।

କିଞ୍ଚ ସଙ୍କଳ୍ପେତି । ସଙ୍କଳ୍ପାତ୍ ପ୍ରଭବୋଯେଷାଂ ତାନ୍ ଯୋଗପ୍ରତିକୂଳାନ୍ ସର୍ବାନ୍ କାମାନ୍ ଅଶେଷତଃ ସବାସ-

ନାଂସ୍ତ୍ୟକ୍ତ୍ୱା ମନସୈବ ବିଷୟଦୋଷଦର୍ଶିନା ସର୍ବତଃ ପ୍ରସରନ୍ତମିନ୍ଦ୍ରିୟସମୂହଂ ବିଶେଷେଣ ନିୟମ୍ୟ ଯୋଗୋ ଯୋକ୍ତବ୍ୟ ଇତି ପୂର୍ବେଣାନ୍ୱୟଃ । ୨୪ ।

ପଦବ୍ୟାଖ୍ୟା ।

ସଙ୍କଳ୍ପପ୍ରଭବାନ୍—ସଙ୍କଳ୍ପରୁ ଉତ୍ପନ୍ନ, କାମାନ୍—କାମନାମାନଙ୍କୁ, ତ୍ୟକ୍ତ୍ୱା—ତ୍ୟାଗ କରି, ସର୍ବାନ୍—ସମସ୍ତ, ଅଶେଷତଃ—ନିଃଶେଷରୂପେ, ମନସା ଏବ—ମନରେ କେବଳ, ଇନ୍ଦ୍ରିୟଗ୍ରାମଂ—ଇନ୍ଦ୍ରିୟଗଣଙ୍କୁ, ବିନିୟମ୍ୟ—ସଂଯତ କରି, ସମନ୍ତତଃ—ସମସ୍ତ ବିଷୟମାନଙ୍କରୁ ସମ୍ପୂର୍ଣ୍ଣରୂପେ । ୨୪ ।

ଅନୁବାଦ ।

ସଙ୍କଳ୍ପଜନିତ ସକଳ କାମନାକୁ ସମୂଳରେ ପରିତ୍ୟାଗ କରି, ଇନ୍ଦ୍ରିୟମାନଙ୍କୁ ମନଦ୍ୱାରା ସମ୍ପୂର୍ଣ୍ଣରୂପେ ସଂଯତ କରି (ଯୋଗାଭ୍ୟାସ କରିବ) । ୨୪ ।

ବିଶଦବ୍ୟାଖ୍ୟା ।

ଯେଉଁମାନଙ୍କର ମନ ଭୋଗଲାଳସାରେ ପୂର୍ଣ୍ଣ, ସେମାନଙ୍କ ଚିତ୍ତରେ ମାଳା, ଚନ୍ଦନ, ଯୁବତୀ, ଅମୃତ ଓ ସ୍ୱର୍ଗାଦି ପାଇବାପାଇଁ ସଙ୍କଳ୍ପ (ବାସନା) ଜାତ ହୁଏ । ସେହି ସଙ୍କଳ୍ପରୁ 'ଉକ୍ତ ପଦାର୍ଥମାନ କି ପ୍ରକାରେ ପାଇବି' ଏପରି କାମନା ଜନ୍ମେ । ସଙ୍କଳ୍ପଜାତ ସେହି କାମନାମାନଙ୍କୁ ନିଃଶେଷରୂପେ ଅର୍ଥାତ୍ ସଙ୍କଳ୍ପସହିତରେ ପରିତ୍ୟାଗ କରିବାକୁ ହେବ । ପୁଣି ଇନ୍ଦ୍ରିୟମାନଙ୍କୁ ମନଦ୍ୱାରା ସମ୍ପୂର୍ଣ୍ଣରୂପେ ସଂଯତ କରିବାକୁ ହେବ; ଅର୍ଥାତ୍ ଇନ୍ଦ୍ରିୟମାନଙ୍କୁ ନଷ୍ଟ ନ କରି, କେବଳ ତହିଁରେ ମନଃସଂଯୋଗ ନ କରି ଆବୃତ୍ତ କରିବାକୁ ହେବ ।

କେହି କେହି ଅଦୂରଦର୍ଶୀ ଯୋଗାଭିଳାଷୀ ବ୍ୟକ୍ତି ଔଷଧାଦି ପ୍ରୟୋଗ କରି ଆପଣାର ଆଖି ଫୁଟାଇଦିଅନ୍ତି ଓ କର୍ଣ୍ଣର ଶକ୍ତି ନଷ୍ଟ କରନ୍ତି, ମାତ୍ର ତାହାଦ୍ୱାରା ଇନ୍ଦ୍ରିୟସଂଯମ ସାଧିତ ହୁଏ ନାହିଁ । ମନୋବୃତ୍ତି ସେଥିରେ ସଂଯୁକ୍ତ ନ କରିବାଦ୍ୱାରା ଇନ୍ଦ୍ରିୟମାନଙ୍କୁ ନିଜ ନିଜ ବିଷୟରୁ ବିମୁଖ କରିବାହିଁ ପ୍ରକୃତ ଇନ୍ଦ୍ରିୟସଂଯମ ଅଟେ । ମନଃସଂଯୋଗ ନ ହେଲେ ଇନ୍ଦ୍ରିୟ କିପରି ଆପଣା ବିଷୟରୁ ବିମୁଖ ହୁଏ, ତାହାର ଅନେକ ଉଦାହରଣ ପ୍ରତିଦିନ ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥିତ ହୁଅଇ । କୌଣସି ପୁସ୍ତକାଦି ପାଠ କରୁଁ କରୁଁ ତଦନ୍ତର୍ଗତ କଠିନ ବିଷୟ ଭାବିଲାବେଳେ ଆମ୍ଭେମାନେ ଉପରକୁ ଚାହୁଁ, ମାତ୍ର ମନ ପୁସ୍ତକ ଅନ୍ତର୍ଗତ କଠିନ ବିଷୟରେ ସଂଯୁକ୍ତ ଥାଏ ଓ ଚକ୍ଷୁରେ ସଂଯୁକ୍ତ ନ ଥାଏ ବୋଲି, ସେତେବେଳେ ଉପରର କୌଣସି ପଦାର୍ଥ ( ଘରର ଛାତ ପ୍ରଭୃତି ) ଆମ୍ଭମାନଙ୍କ ଚକ୍ଷୁର ଗୋଚର ହୁଏ ନାହିଁ । ୨୪ ।

ଶ୍ଳୋକଃ ।

* ଶନୈଃ ଶନୈରୁପରମେଦ୍‌ବୁଦ୍ଧ୍ୟା ଧୃତିଗୃହୀତୟା ।
ଆତ୍ମସଂସ୍ଥଂ ମନଃ କୃତ୍ୱା, ନ କିଞ୍ଚିଦପି ଚିନ୍ତୟେତ୍ । ୨୫ ।

ଅନ୍ୱୟଃ ।

ଧୃତି ଗୃହୀତୟା ବୁଦ୍ଧ୍ୟା ମନଃ ଆତ୍ମ ସଂସ୍ଥଂ କୃତ୍ୱା ଶନୈଃ ଶନୈଃ ଉପରମେତ୍ କିଞ୍ଚିତ୍ ଅପି ନ ଚିନ୍ତୟେତ୍ ।।ୟ।

Digitized by PPRACHIN, SOA

ଟୀକା ।

ଯଦା ତୁ ପ୍ରାକ୍ତନକର୍ମସଂସ୍କାରେଣ ମନୋବିଚଳେତ୍ତର୍ହି ଧାରଣୟା ସ୍ଥିରୀକୁର୍ଯାଦିତ୍ୟାହ, ଶନୈରିତି । ଧୃତିର୍ଧାରଣା ତୟା ଗୃହୀତୟା ବଶୀକୃତୟା ବୁଦ୍ଧ୍ୟା ଆତ୍ମସଂସ୍ଥମାତ୍ମନ୍ୟେବ ସମ୍ୟକ୍ ସ୍ଥିତଂ ନିଶ୍ଚଳଂ ମନଃ କୃତ୍ୱା ଉପରମେତ୍, ତଚ୍ଚ ଶନୈଃ ଶନୈରଭ୍ୟାସକ୍ରମେଣ ନ ତୁ ସହସା ଉପରମସ୍ୱରୂପମାହ ନ କିଞ୍ଚିଦପି ଚିନ୍ତୟେତ୍ ନିଶ୍ଚଳେ ମନସି ସ୍ୱୟମେବ ପ୍ରକାଶମାନ ପରମାନନ୍ଦ ନିର୍ଭରୋଭୂତ୍ୱା ଆତ୍ମଧ୍ୟାନାଦପି ନ ନିବର୍ତ୍ତେତ ଇତ୍ୟର୍ଥଃ । ୨୫ ।

ପଦବ୍ୟାଖ୍ୟା ।

ଶନୈଃ ଶନୈଃ—ଧୀରେ ଧୀରେ, ଉପରମେତ୍—ନିବୃତ୍ତ ହେବ, ବୁଦ୍ଧ୍ୟା—ବୁଦ୍ଧିଦ୍ୱାରା, ଧୃତିଗୃହୀତୟା—ଧାରଣା-ବଶୀଭୂତ, ଆତ୍ମସଂସ୍ଥଂ—ଆତ୍ମାରେ ସ୍ଥିତ, ମନଃ—ମନକୁ, କୃତ୍ୱା—କରି, ନ କିଞ୍ଚିଦପିଚିନ୍ତୟେତ୍—କିଛି ମାତ୍ର ଚିନ୍ତା କରିବ ନାହିଁ । ୨୫ ।

ଅନୁବାଦ ।

ଧାରଣା ଓ ବଶୀଭୂତ ବୁଦ୍ଧିଦ୍ୱାରା ଧୀରେ୨ ମନକୁ ଆତ୍ମନିଷ୍ଠ କରି ବୈରାଗ୍ୟ ଅବଲମ୍ବନ କରିବ । ଆଉ ଅନ୍ୟ କିଛିମାତ୍ର ଚିନ୍ତା କରିବ ନାହିଁ । ୨୫ ।

ବିଶଦବ୍ୟାଖ୍ୟା ।

ଯେଉଁ ବୃତ୍ତିଦ୍ୱାରା ମନ ବାହ୍ୟବ୍ୟାପାରରୁ ବିରତ ହୁଏ, ସେହି ବୃତ୍ତିକୁ 'ଧୃତି' ବୋଲାଯାଏ । ଯୋଗାଭ୍ୟାସୀ ଆପଣାର ବୁଦ୍ଧିକୁ ସେହି ଧୃତି ନାମକ ବୃତ୍ତିର ଅନୁଗତ କରିବେ । ତତ୍ପରେ ସେହି ବୁଦ୍ଧିଦ୍ୱାରା ଧୀରେ୨ ମନକୁ ନିରୋଧ କରିବେ । ହଠାତ୍ ମନକୁ ନିରୋଧ କରିବା ଅସମ୍ଭବ ବୋଲି ଧୀରେ୨ ନିରୋଧ କରିବାକୁ ଉପଦେଶ ଦିଆ ଯାଇଅଛି । ମନୁଷ୍ୟର ଯେପରି ଜାଗ୍ରତ ଅବସ୍ଥାରୁ 'ତନ୍ଦ୍ରା' ଓ ତହିଁରୁ ସ୍ୱପ୍ନାବସ୍ଥା ଏବଂ ତତ୍ପରେ 'ସୁଷୁପ୍ତି' ଅର୍ଥାତ୍ ନିଦ୍ରାବସ୍ଥା ହୁଏ, ସାଧକ ସେହିପରି ଇନ୍ଦ୍ରିୟମାନଙ୍କୁ ମନରେ, ମନକୁ ଅହଙ୍କାରତତ୍ତ୍ୱରେ ଓ ଅହଙ୍କାରତତ୍ତ୍ୱକୁ ମହତ୍ତତ୍ତ୍ୱରେ କ୍ରମେ୨ ଲୀନ କରିବେ । ମନ ଏହିପ୍ରକାର ସଂଯତ ବା ନିରୁଦ୍ଧ ହେଲେ ଆତ୍ମାରେ ସ୍ଥିତ ହୁଏ, କ୍ରମେ ଯୋଗୀ ଅସମ୍ପ୍ରଜ୍ଞାତ ନାମକ ସମାଧିରେ ସମାହିତ ହୋଇ ପରମ ବିଶ୍ରାମ ଲାଭ କରନ୍ତି । ସେତେବେଳେ ମୁଁ ଧ୍ୟାନକର୍ତ୍ତା ଓ ପରମାତ୍ମା 'ଧ୍ୟେୟ' ଇତ୍ୟାକାର ଚିନ୍ତା ଆଉ ନ ଥାଏ । ସେଥିପାଇଁ ଶ୍ରୀଭଗବାନ୍ କହିଅଛନ୍ତି, ଯେ ଅନ୍ୟ କୌଣସି ପ୍ରକାର ଚିନ୍ତା କରିବ ନାହିଁ । କାହିଁକି ନା ଅସମ୍ପ୍ରଜ୍ଞାତ ସମାଧିରେ ସମାହିତ ହେଲେ, 'ଆମ୍ଭେ ଆତ୍ମଦର୍ଶନ କରୁଅଛୁଁ' ଅଥବା 'ଆମ୍ଭେ ଈଶ୍ୱର ହୋଇଅଛୁଁ' ଇତ୍ୟାଦି କୌଣସି ପ୍ରକାର ଚିନ୍ତା ଉଦୟ ହୁଏ ନାହିଁ । ସେ ସମାଧି ଅବସ୍ଥାରେ ଯେ କିପରି ଅନିର୍ବଚନୀୟ ଭାବ ଉଦୟ ହୁଏ, ତାହା ସେହି ଅବସ୍ଥାରେ ସ୍ଥିତ ଯୋଗୀ ନିଜେ ବୁଝି ପାରନ୍ତି ନାହିଁ କି ବୁଝାଇ ପାରନ୍ତି ନାହିଁ, ଆଉ ବୁଝାଇବ କିଏ ? । ୨୫ ।

ଶ୍ଳୋକଃ ।

* ଯତୋଯତୋ ନିଶ୍ଚରତି, ମନଶ୍ଚଞ୍ଚଳମସ୍ଥିରଂ ।
ତତସ୍ତତୋ ନିୟମ୍ୟୈତ,ଦାତ୍ମନ୍ୟେବ ବଶଂ ନୟେତ୍ । ୨୬ ।

### ଅନ୍ୱୟଃ ।

ଅସ୍ଥିରଂ ଚଞ୍ଚଳଂ ମନଃ ଯତଃ ଯତଃ ନିଶ୍ଚରତି, ତତଃ ତତଃ ନିୟମ୍ୟ ଆତ୍ମନି ଏବ ବଶଂ ନୟେତ୍ । ୨୬ ।

### ଟୀକା ।

ଏବମପି ରଜୋଗୁଣବଶାଦ୍ୟଦି ମନଃ ପ୍ରଚଳେତ୍ତର୍ହି ପୁନଃ ପ୍ରତ୍ୟାହାରେଣ ବଶୀକୁର୍ଯ୍ୟାଦିତ୍ୟାହ, ଯତୋଯତ ଇତି । ସ୍ୱଭାବତଶ୍ଚଞ୍ଚଳଂ ଧାର୍ଯ୍ୟମାଣମପ୍ୟସ୍ଥିରଂ ମନୋଯଂ ଯଂ ବିଷୟଂପ୍ରତି ନିର୍ଗଚ୍ଛତି ତତସ୍ତତଃ ପ୍ରତ୍ୟାହୃତ୍ୟ ଆତ୍ମନ୍ୟେବ ସ୍ଥିରଂ କୁର୍ଯ୍ୟାତ୍ । ୨୬ ।

### ପଦବ୍ୟାଖ୍ୟା ।

ଯତୋଯତଃ—ଯେଉଁ ୨ ବିଷୟକୁ, ନିଶ୍ଚରତି—ଗମନ କରେ, ମନଶ୍ଚଞ୍ଚଳମସ୍ଥିରଂ—ଚଞ୍ଚଳ ଓ ଅସ୍ଥିର ମନ, ତତସ୍ତତଃ—ସେହି ସେହି ବିଷୟରୁ, ନିୟମ୍ୟ—ସଂଯତ କରି, ଏତତ୍—ଏହି (ମନକୁ), ଆତ୍ମନ୍ୟେବ—କେବଳ ଆତ୍ମାରେ, ବଶଂ ନୟେତ୍—ସ୍ଥିରକରି ରଖିବ । ୨୬ ।

### ଅନୁବାଦ ।

ଅସ୍ଥିର ଓ ଚଞ୍ଚଳ ମନ, ଯେଉଁ ୨ ବିଷୟକୁ ଗମନ କରିବ, ସେହି ୨ ବିଷୟରୁ ତାହାକୁ ଯତ୍ନପୂର୍ବକ ଫେରାଇ ଆଣି, କେବଳ ଆତ୍ମାରେ ସ୍ଥିର କରିବ । ୨୬ ।

### ବିଶଦବ୍ୟାଖ୍ୟା ।

ମନ ସ୍ୱଭାବତଃ ଚଞ୍ଚଳ, ପୁଣି ଯତ୍ନ କରି ନିରୋଧ କଲେ ମଧ୍ୟ ତାହା ସହଜରେ ସ୍ଥିର ହୁଏ ନାହିଁ, କୌଣସି ନା କୌଣସି ବିଷୟପ୍ରତି ଧାବିତ ହୁଏ । ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ 'ଅସ୍ଥିର ଓ ଚଞ୍ଚଳ ମନ ଯେଉଁ ୨ ବିଷୟପ୍ରତି ଧାବିତ ହେବ, ସେହି ୨ ବିଷୟରୁ ତାହାକୁ ନିବୃତ୍ତ କରି ଆତ୍ମାରେ ସ୍ଥିର ରଖିବ' । ଯେପରି ବନ୍ୟ ପଶୁ ପକ୍ଷୀ ସ୍ୱଚ୍ଛନ୍ଦରେ ବନରେ ବୁଲୁଥିବାରୁ, ପିଞ୍ଜରାବଦ୍ଧ ହେଲେ ପ୍ରଥମରେ ବ୍ୟଥିତ ହୁଅନ୍ତି ସତ୍ୟ, ମାତ୍ର କିଛି ଦିନଯାଏ ପିଞ୍ଜରାରେ ଶୃଙ୍ଖଳାବଦ୍ଧ ହୋଇ ରହିଲେ, ଏପରି ଅଭ୍ୟସ୍ତ ହୋଇଯାନ୍ତି, ଯେ ସେହି ପିଞ୍ଜରାକୁ ଶେଷରେ ତାଙ୍କର ନିଜଗୃହ ବୋଲି ମଣନ୍ତି, ସେହିପରି ମନ ପ୍ରଥମରେ ନିରୁଦ୍ଧ ହେଲେ, ବିଷୟାନ୍ତରକୁ ପ୍ରଧାବିତ ହେବ ସତ, ମାତ୍ର କ୍ରମେ ୨ ସମସ୍ତ ବିଷୟରୁ ନିରୁଦ୍ଧ ହେଲେ, ସେ ଏକା ଆତ୍ମାରେ ସ୍ଥିର ହେବ ଓ ସେଠାରେ ଅନିର୍ବଚନୀୟ ସୁଖଭୋଗ ପାଇଁ ଆଉ ବାହ୍ୟବିଷୟ ଆଡ଼କୁ ବିଚଳିତ ହେବ ନାହିଁ । ୨୬ ।

### ଶ୍ଳୋକଃ ।

ପ୍ରଶାନ୍ତମନସଂ ହ୍ୟେନଂ, ଯୋଗିନଂ ସୁଖମୁତ୍ତମଂ ।
ଉପୈତି ଶାନ୍ତରଜସଂ, ବ୍ରହ୍ମଭୂତମକଳ୍ମଷଂ । ୨୭ ।

### ଅନ୍ୱୟଃ ।

ହି ପ୍ରଶାନ୍ତମନସଂ ଶାନ୍ତରଜସଂ ଅକଳ୍ମଷଂ ବ୍ରହ୍ମଭୂତଂ ଏନଂ ଯୋଗିନଂ ଉତ୍ତମଂ ସୁଖଂ ଉପୈତି । ୨୭ ।

### ଟୀକା ।

ଏବଂ ପ୍ରତ୍ୟାହାରାଦିଭିଃ ପୁନଃପୁନର୍ମନୋବଶୀକୁର୍ବନ୍ତଂ ରଜୋଗୁଣକ୍ଷୟେସତି ଯୋଗସୁଖଂ ପ୍ରାପ୍ନୋତୀତ୍ୟାହ, ପ୍ରଶା-

Digitized by PPRACHIN, SOA

ନ୍ତେତ । ଏବମୁକ୍ତପ୍ରକାରେଣ ଶାନ୍ତଂ ରଜୋଯସ୍ୟ ତଂ ଅତଏବ ପ୍ରଶାନ୍ତଂ ମନୋଯସ୍ୟ ତମେନଂ ନଷ୍ଟକଲ୍ମଷଂ ବ୍ରହ୍ମତ୍ୱଂ ପ୍ରାପ୍ତଂ ଯୋଗିନମୁତ୍ତମଂ ସୁଖଂ ସମାଧିସୁଖଂ ସ୍ୱୟମେବ ଉପୈତି ପ୍ରାପ୍ନୋତି । ୨୭ ।

### ପଦବ୍ୟାଖ୍ୟା ।

ପ୍ରଶାନ୍ତମନସଂ—ଯାହାର ମନ ଅତିଶୟ ଶାନ୍ତ ହୋଇଥାଏ, ହି—ନିଶ୍ଚୟ, ଏନଂ ଯୋଗିନଂ—ଏହି ଯୋଗୀଙ୍କୁ, ସୁଖମୁତ୍ତମଂ—ଉତ୍ତମ ସୁଖ, ଉପୈତି—ପ୍ରାପ୍ତ ହୁଏ, ଶାନ୍ତରଜସଂ—ରଜୋଗୁଣରହିତ, ବ୍ରହ୍ମଭୂତଂ—ବ୍ରହ୍ମତ୍ୱ ପ୍ରାପ୍ତ, ଅକଲ୍ମଷଂ—ପାପରହିତ । ୨୭ ।

### ଅନୁବାଦ ।

ପ୍ରଶାନ୍ତଚିତ୍ତ, ରଜୋଗୁଣହୀନ, ନିଷ୍ପାପ ଓ ବ୍ରହ୍ମଭାବପ୍ରାପ୍ତ ଯୋଗୀଙ୍କୁ (ସମାଧିଜନିତ) ଉତ୍ତମ ସୁଖ (ଆପଣାଛାଏଁ) ମିଳେ । ୨୭ ।

### ବିଶଦବ୍ୟାଖ୍ୟା ।

ଯୋଗୀଙ୍କର ରଜୋଗୁଣ ହୀନ ହେବାରୁ କାମନା ନ ଥାଏ । କାମନା ନ ଥିବାରୁ ବାହ୍ୟବିଷୟରେ ମନ ଆସକ୍ତ ହୁଏ ନାହିଁ । ସମ୍ପୂର୍ଣ୍ଣରୂପେ ଚଞ୍ଚଳତାଶୂନ୍ୟ ହୋଇ ଆତ୍ମାରେ ସ୍ଥିର ହୁଏ । ତେତେବେଳେ ସଂସାରର ସୁଖ ଦୁଃଖ ସଂଯୋଗ ବିଯୋଗ ପ୍ରଭୃତି ଆଉ ମନରେ ପ୍ରତିବିମ୍ବିତ ହୁଏ ନାହିଁ । ତତ୍ପର ଏପ୍ରକାର ଅବସ୍ଥା ହେଲେ ସମାଧି ସ୍ଥିର ହୁଏ ଓ ସମାଧିଜନିତ ଅପୂର୍ବ ସୁଖ ଆପଣାଛାଏଁ ଯୋଗୀଙ୍କି ପ୍ରାପ୍ତ ହୁଏ । ୨୭ ।

### ଶ୍ଳୋକଃ ।

।୨ । ।୮ । । ।
* ଯୁଞ୍ଜନ୍ନେବଂ ସଦାତ୍ମାନଂ, ଯୋଗୀ ବିଗତକଲ୍ମଷଃ ।
। ।୫ । ।୫ ।
ସୁଖେନ ବ୍ରହ୍ମସଂସ୍ପର୍ଶମତ୍ୟନ୍ତଂ ସୁଖମଶ୍ନୁତେ । ୨୮ ।

### ଅନ୍ୱୟଃ ।

ବିଗତକଲ୍ମଷଃ ଯୋଗୀ ଏବଂ ଆତ୍ମାନଂ ସତତଂ ଯୁଞ୍ଜନ୍ ବ୍ରହ୍ମସଂସ୍ପର୍ଶଂ ଅତ୍ୟନ୍ତଂ ସୁଖଂ ସୁଖେନ ଅଶ୍ନୁତେ । ୨୮ ।

### ଟୀକା ।

ତତଶ୍ଚ କୃତାର୍ଥୋଭବତୀତ୍ୟାହ । ଯୁଞ୍ଜନ୍ନିତି । ଏବମନେନ ପ୍ରକାରେଣ ସର୍ବଦା ଆତ୍ମାନଂ ମନୋଯୁଞ୍ଜନ ବଶୀକୁର୍ବନ୍ ବିଶେଷେଣ ସର୍ବାତ୍ମନା ବିଗତଂ କଲ୍ମଷଂ ଯସ୍ୟ ସ ଯୋଗୀ ସୁଖେନ ଅନାୟାସେନ ବ୍ରହ୍ମଣଃ ସଂସ୍ପର୍ଶୋଽବିଦ୍ୟାନିବର୍ତ୍ତକଃ ସାକ୍ଷାତ୍କାରଃ ତଦେବାତ୍ୟନ୍ତଂ ସର୍ବୋତ୍ତମଂ ସୁଖମଶ୍ନୁତେ ଜୀବନ୍ମୁକ୍ତୋଭବତୀତ୍ୟର୍ଥଃ । ୨୮ ।

### ପଦବ୍ୟାଖ୍ୟା ।

ଯୁଞ୍ଜନ୍—ବଶ କରି, ଏବଂ—ଏହି ପ୍ରକାରେ, ସଦା—ସର୍ବଦା, ଆତ୍ମାନଂ—ମନକୁ, ଯୋଗୀ—ଯୋଗାଭ୍ୟାସୀ, ବିଗତକଲ୍ମଷଃ—ପାପରହିତ, ସୁଖେନ—ସହଜରେ, ବ୍ରହ୍ମସଂସ୍ପର୍ଶଂ—ବ୍ରହ୍ମସାକ୍ଷାତ୍କାରରୂପ, ଅତ୍ୟନ୍ତଂ ସୁଖଂ—ପରମସୁଖକୁ, ଅଶ୍ନୁତେ—ଭୋଗ କରନ୍ତି—ପ୍ରାପ୍ତ ହୁଅନ୍ତି । ୨୮ ।

### ଅନୁବାଦ ।

ନିଷ୍ପାପ ଯୋଗୀ ଏହିପ୍ରକାରେ ମନକୁ ସର୍ବଦା ବଶୀଭୂତ କରି, ବ୍ରହ୍ମସାକ୍ଷାତ୍କାରରୂପ ପରମସୁଖକୁ ସହଜରେ ଲାଭ କରନ୍ତି । ୨୮ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ପୂର୍ବୋକ୍ତ ପ୍ରକାରରେ ଯେଉଁ ଯୋଗୀ ମନକୁ ଆତ୍ମାରେ ସ୍ଥିର କରି ପାରନ୍ତି ଓ ସାଂସାରିକ ବିଷୟବୃଷ୍ଣୀଜନିତ ସୁଖଦୁଃଖାଦି ବିକାର ତ୍ୟାଗ କରି ପାରନ୍ତି, ସେହି ପାପଶୂନ୍ୟ ଯୋଗିବ୍ୟକ୍ତି (ସୁଖେନ) ସହଜରେ ଅର୍ଥାତ୍ ସମାଧିର ବିଘ୍ନ ବାଧା ସବୁ ଅତିକ୍ରମ କରି ବ୍ରହ୍ମାନନ୍ଦ ସୁଖ ଅନୁଭବ କରନ୍ତି । ପାତଞ୍ଜଳ ମତରେ ଯୋଗର ନିମ୍ନଲିଖିତ ବିଘ୍ନ(ଅନ୍ତରାୟ)ମାନ ଅଛି । ଯଥା,—

ବ୍ୟାଧି ସ୍ତ୍ୟାନ ସଂଶୟ ପ୍ରମାଦାଲସ୍ୟାବିରତି ଭ୍ରାନ୍ତିଦର୍ଶନା-
ଲବ୍ଧଭୂମିକତ୍ୱାନବସ୍ଥିତତ୍ୱାନି ଚିତ୍ତବିକ୍ଷେପାସ୍ତେଽନ୍ତରାୟାଃ ।

ଅର୍ଥାତ୍ ବ୍ୟାଧି (ପାପ), ସ୍ତ୍ୟାନ (ଅକର୍ମଣ୍ୟତା), ସଂଶୟ (ଯୋଗସିଦ୍ଧି ହେବ କି ନାହିଁ ଏପରି ସନ୍ଦେହ), ପ୍ରମାଦ (ଯୋଗସାଧନରେ ଉଦାସୀନତା), ଆଲସ୍ୟ (ଶରୀର ଓ ମନରେ ଗୁରୁଭାବ), ଅବିରତି (ଚିତ୍ତର ବିଷୟାସକ୍ତି), ଭ୍ରାନ୍ତିଦର୍ଶନ (ଯୋଗରେ ଅନାବଶ୍ୟକୀୟ ବିଷୟ ସାଧନ ଓ ଆବଶ୍ୟକୀୟ ବିଷୟ ଅସାଧନ ପ୍ରଭୃତି ବିପରୀତ ବୁଦ୍ଧି), ଅଲବ୍ଧଭୂମିକତ୍ୱ (ଯୋଗସିଦ୍ଧିର ବିଳମ୍ବଜନିତ ଚଞ୍ଚଳତା), ଅନବସ୍ଥିତତ୍ୱ (କୌଣସି ଯୋଗାବସ୍ଥା ପାଇଲେ ମଧ୍ୟ ସେଥିରେ ସ୍ଥିର ନ ହେବା) ଏମାନେ ମନର ଚଞ୍ଚଳତା ଜନ୍ମାନ୍ତି ବୋଲି ଯୋଗର 'ବିଘ୍ନ' ନାମରେ ପରିଚିତ । ଉପରୋକ୍ତ ବିଘ୍ନଗୁଡ଼ିକ ଯୋଗସାଧନ ହେବା ପୂର୍ବରେ ଉଦିତ ହୁଏ, ମାତ୍ର ଯୋଗସାଧନ ପରେ ଏମାନଙ୍କ ଦ୍ୱାରା ଅନୁଷ୍ଠିତ ବା ସବିକଳ୍ପ ସମାଧି ଉତ୍ତାରୁ ମଧ୍ୟ କେତେକ ବିଘ୍ନ ଉପସ୍ଥିତ ହୋଇ, ଏ ଶ୍ଳୋକବର୍ଣ୍ଣିତ ବ୍ରହ୍ମସାକ୍ଷାତ୍କାରଲକ୍ଷଣରୂପ (ନିର୍ବିକଳ୍ପ ସମାଧିଜନିତ) ପରମାନନ୍ଦ ସୁଖ ଅନୁଭବ କରାଇ ଦିଏ ନାହିଁ, ସେ ସବୁ ବିଘ୍ନର ନାମ ବେଦାନ୍ତ ମତ ଅନୁସାରେ ନିମ୍ନରେ ଲେଖା ଗଲା । ଯଥା,—

"ଏବମଭ୍ୟାସାଙ୍ଗିନୋ ନିର୍ବିକଳ୍ପକସ୍ୟ ଲୟବିକ୍ଷେପା
କଷାୟ ରସାସ୍ୱାଦ ଲକ୍ଷଣାଶ୍ଚତ୍ୱାରୋବିଘ୍ନାଃ ।"

ଅର୍ଥାତ୍ ଅଷ୍ଟାଙ୍ଗ (ଯମ ନିୟମାଦି) ବିଶିଷ୍ଟ ନିର୍ବିକଳ୍ପ ସମାଧିର ଲୟ, ବିକ୍ଷେପ, କଷାୟ ଓ ରସାସ୍ୱାଦ ନାମରେ ଚାରିଗୋଟି ବିଘ୍ନ ଅଛି । ସେମାନଙ୍କର ଲକ୍ଷଣ ଯଥା ;—

ଅଖଣ୍ଡ ବ୍ରହ୍ମବସ୍ତୁକୁ ଅବଲମ୍ବନ କରି ଚିତ୍ତବୃତ୍ତିର ଯେଉଁ 'ନିଦ୍ରା' ଅର୍ଥାତ୍ ଅଚେତନ ଅବସ୍ଥା ହୁଏ, ତାହାକୁ ଲୟ ନାମକ ବିଘ୍ନ ବୋଲାଯାଏ । ଅଖଣ୍ଡ ବ୍ରହ୍ମବସ୍ତୁକୁ ଅବଲମ୍ବନ ନ କରି ଚିତ୍ତ ଅନ୍ୟଥା ଅବଲମ୍ବନ କଲେ, ବିକ୍ଷେପ ନାମକ ବିଘ୍ନ ଉପସ୍ଥିତ ବୋଲି ଜାଣିବାକୁ ହେବ । ଲୟ ଓ ବିକ୍ଷେପ ଏ ଦୁଇ ବିଘ୍ନ ନ ଥିଲେ ସୁଦ୍ଧା, ଚିତ୍ତବୃତ୍ତି ଅନୁରାଗାଦି ବାସନାଦ୍ୱାରା ନିସ୍ତବ୍ଧ ହୋଇ, ଅଖଣ୍ଡ ବ୍ରହ୍ମବସ୍ତୁକୁ ଅବଲମ୍ବନ ନ କଲେ, କଷାୟ ନାମକ ବିଘ୍ନର କାର୍ଯ୍ୟ ବୋଲି ଜାଣିବାକୁ ହେବ ।

ଚିତ୍ତବୃତ୍ତି ଅଖଣ୍ଡ ବ୍ରହ୍ମବସ୍ତୁ ଅବଲମ୍ବନ ନ କରି, ବ୍ରହ୍ମାନନ୍ଦ ଭ୍ରମରେ ସବିକଳ୍ପକ ସମାଧିର ରସ ଆସ୍ୱାଦନ କଲେ, ଅର୍ଥାତ୍ କେବଳ ନିର୍ବିକଳ୍ପ ସମାଧିରେ ଯେଉଁ ସୁଖ ପ୍ରାପ୍ତ ହୁଏ, ସେହି ସୁଖ ବୋଲି ଭ୍ରମବଶତଃ ସବିକଳ୍ପ ସମାଧିଜନିତ ସୁଖ ଗ୍ରହଣ କଲେ, ରସାସ୍ୱାଦନ ନାମକ

Digitized by PPRACHIN, SOA

ବିଘ୍ନ ହୁଏ । ସେ ସବୁ ବିଘ୍ନକୁ ଅତିକ୍ରମ କରିବାପାଇଁ ଯୋଗଶାସ୍ତ୍ରରେ ଅନେକ ପ୍ରକାର କଷ୍ଟ-ସାଧ୍ୟ ଉପାୟମାନ ବର୍ଣ୍ଣିତ କରି, ଶେଷରେ ମହାତ୍ମା ପତଞ୍ଜଳି 'ଈଶ୍ୱରପ୍ରଣିଧାନାଦ୍ୱା' କହି-ଅଛନ୍ତି, ଅର୍ଥାତ୍ ଈଶ୍ୱର ଉପାସନାଦ୍ୱାରା ଏ ସବୁ ବାଧା ଅତିକ୍ରମ କରି ଅସମ୍ପ୍ରଜ୍ଞାତ ସମାଧି ଲାଭ କରା ଯାଇ ପାରେ । ଶାରୀରିକ, ମାନସିକ ଓ ବାଚନିକ ସମସ୍ତ କାର୍ଯ୍ୟ ଈଶ୍ୱରଙ୍କ ଅଧୀନ, ଏହା ଜାଣି ଯେତେବେଳେ ଯେଉଁ କର୍ମ କରିବ, ତାହାର ଫଳ ଅନୁସନ୍ଧାନ ନ କରି ଈଶ୍ୱ-ରଙ୍କଠାରେ ଅର୍ପଣ କରିବ, କୌଣସି କର୍ମ ନ କଲାବେଳେ ତାଙ୍କର ଧ୍ୟାନ କରିବ । ଏକାନ୍ତ ଭକ୍ତିଯୁକ୍ତଚିତ୍ତରେ ଏହି ପ୍ରକାର କଲେ 'ଈଶ୍ୱର ଉପାସନା' ସିଦ୍ଧ ହୁଏ । ଏହି ଈଶ୍ୱରୋ-ପାସନାଦ୍ୱାରା (ଭକ୍ତିଦ୍ୱାରା) ସହଜରେ ସମାଧିଜନିତ ସୁଖ ପ୍ରାପ୍ତି ହୁଏ ।

ଏହି ଅଧ୍ୟାୟର ଚତୁର୍ଦ୍ଦଶ ଶ୍ଳୋକରେ—

"ମନଃସଂଯମ୍ୟ ମଚ୍ଚିତ୍ତୋଯୁକ୍ତ ଆସୀତ ମତ୍ପରଃ ।"

ଅର୍ଥାତ୍—'ମନଃସଂଯମ କରି ଆମ୍ଭଠାରେ ଚିତ୍ତ ଓ ଏକାନ୍ତ ଭକ୍ତି ରଖି ସମାଧିରେ ବସିବ' ଏହା କୁହା ଯାଇଅଛି ଅତଏବ ଭକ୍ତିର ସାହାଯ୍ୟରେ ମନଃସଂଯମ ପ୍ରଭୃତି କରିବା ଶ୍ରୀକୃଷ୍ଣ-ଙ୍କର ଅଭିପ୍ରାୟ ବୋଲି ଜଣା ଯାଉଅଛି । ସୁତରାଂ ଯେଉଁମାନେ ପୂର୍ବୋକ୍ତ ପ୍ରଣାଳୀରେ ମନକୁ ଆତ୍ମାରେ ସ୍ଥିର କରି ପାରନ୍ତି, ସେମାନେ ସହଜରେ ଅର୍ଥାତ୍ ଅଳ୍ପ ଶ୍ରମ ଓ ଅଳ୍ପ ସମୟରେ ବ୍ରହ୍ମ-ସାକ୍ଷାତ୍କାରରୂପ ଉତ୍କୃଷ୍ଟ ସୁଖ ଲାଭ କରନ୍ତି । ୨୮ ।

ଶ୍ଳୋକଃ ।

ସର୍ବଭୂତସ୍ଥମାତ୍ମାନଂ ସର୍ବଭୂତାନି ଚାତ୍ମନି ।
ଈକ୍ଷତେ ଯୋଗଯୁକ୍ତାତ୍ମା, ସର୍ବତ୍ର ସମଦର୍ଶନଃ । ୨୯ ।

ଅନ୍ୱୟଃ ।

ସର୍ବତ୍ର ସମଦର୍ଶନଃ ଯୋଗଯୁକ୍ତାତ୍ମା ଆତ୍ମାନଂ ସର୍ବଭୂତସ୍ଥଂ ଚ ସର୍ବଭୂତାନି ଆତ୍ମନି ଈକ୍ଷତେ । ୨୯ ।

ଟୀକା ।

ବ୍ରହ୍ମସାକ୍ଷାତ୍କାରମେବ ଦର୍ଶୟତି । ସର୍ବଭୂତସ୍ଥମିତି । ଯୋଗେନାଭ୍ୟସ୍ୟମାନେନ ଯୁକ୍ତାତ୍ମା ସମାହିତଚିତ୍ତଃ ସର୍ବତ୍ର ସମଂ ବ୍ରହ୍ମୈବ ପଶ୍ୟତୀତି ତଥା ସ୍ୱମାତ୍ମାନଂ ଅବିଦ୍ୟାକୃତଦେହାଦିପରିଚ୍ଛେଦଶୂନ୍ୟଂ ସର୍ବଭୂତେଷୁ ବ୍ରହ୍ମାଦି ସ୍ଥାବ-ରାନ୍ତେଷୁ ଅବସ୍ଥିତଂ ପଶ୍ୟତି ତାନି ଚ ଆତ୍ମନି ଅଭେଦେନ ପଶ୍ୟତି । ୨୯ ।

ପଦବ୍ୟାଖ୍ୟା ।

ସର୍ବଭୂତସ୍ଥଂ—ସମସ୍ତ ଭୂତରେ ଅବସ୍ଥିତ, ଆତ୍ମାନଂ—ଆପଣାକୁ ( ଆତ୍ମାକୁ ), ସର୍ବଭୂତାନି ଚ—ସମସ୍ତ ଭୂତମାନଙ୍କୁ ମଧ୍ୟ, ଆତ୍ମନି—ଆପଣାଠାରେ ( ଆତ୍ମାରେ ), ଈକ୍ଷତେ—ଦେଖନ୍ତି, ଯୋଗଯୁକ୍ତାତ୍ମା—ଯୋଗରେ ନିବିଷ୍ଟଚିତ୍ତ, ସର୍ବତ୍ର—ସବୁଠାରେ, ସମଦର୍ଶନଃ—ସମଦର୍ଶୀ । ୨୯ ।

ଅନୁବାଦ ।

ସବୁଠାରେ ସମଦର୍ଶୀ ଓ ସମାଧିରେ ନିବିଷ୍ଟଚିତ୍ତ ବ୍ୟକ୍ତି ସର୍ବଭୂତରେ ଆତ୍ମାକୁ ଓ ଆତ୍ମା-ରେ ସମସ୍ତ ଭୂତମାନଙ୍କୁ ଦର୍ଶନ କରନ୍ତି । ୨୯ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ମନ ଯେତେବେଳେ ବିଷୟରେ ଆସକ୍ତ ଥାଏ, ସେତେବେଳେ ଜଗତର ପ୍ରତ୍ୟେକ ପଦାର୍ଥ ତାହା ନିକଟରେ ସ୍ୱତନ୍ତ୍ର ବୋଲି ପ୍ରତୀତ ହୁଏ । ମାତ୍ର ଯୋଗର କୌଶଳଦ୍ୱାରା ମନଃ ସଂଯତ ହୋଇ ଆତ୍ମନିଷ୍ଠ ହେଲେ ପୃଥକ୍ ଜ୍ଞାନ ଆଉ ରହେ ନାହିଁ । ସୁତରାଂ ଯୋଗିବ୍ୟକ୍ତି ସବୁଠାରେ—ଜଗତର ପ୍ରତ୍ୟେକ ପଦାର୍ଥରେ ବ୍ରହ୍ମଭିନ୍ନ ଆଉ କିଛି ଦେଖି ପାରନ୍ତି ନାହିଁ । ସେହି-ହେତୁରୁ ସେ ସର୍ବଭୂତରେ ଅର୍ଥାତ୍ ବ୍ରହ୍ମଠାରୁ ସ୍ତମ୍ବ ପର୍ଯ୍ୟନ୍ତ ପ୍ରତ୍ୟେକ ପଦାର୍ଥରେ ଆତ୍ମାକୁ ଦେଖନ୍ତି ଏବଂ ଆତ୍ମାରେ ସମସ୍ତ ଜଗତ୍ ବିଦ୍ୟମାନ ଥିବାର ଦର୍ଶନ କରନ୍ତି । ଫଳକଥା ଏହି କି ତାଙ୍କର ସର୍ବପ୍ରକାର ଭେଦଜ୍ଞାନ ବିନଷ୍ଟ ହୁଏ । ୨୯ ।

ଯୋ ମାଂ ପଶ୍ୟତି ସର୍ବତ୍ର, ସର୍ବଂ ଚ ମୟି ପଶ୍ୟତି ।
ତସ୍ୟାହଂ ନ ପ୍ରଣଶ୍ୟାମି, ସ ଚ ମେ ନ ପ୍ରଣଶ୍ୟତି । ୩୦ ।

ଅନ୍ୱୟଃ ।

ଯଃ ମାଂ ସର୍ବତ୍ର ପଶ୍ୟତି, ସର୍ବଂ ଚ ମୟି ପଶ୍ୟତି, ତସ୍ୟ ଅହଂ ନ ପ୍ରଣଶ୍ୟାମି, ସ ଚ ମେ ନ ପ୍ରଣଶ୍ୟତି । ୩୦ ।

ଟୀକା ।

ଏବମ୍ଭୂତାତ୍ମଜ୍ଞାନେ ଚ ସର୍ବଭୂତାତ୍ମତୟା ମଦୁପାସନଂ ମୁଖ୍ୟଂ କାରଣମିତ୍ୟାହ । ଯୋମାମିତି । ମାଂ ପରମେଶ୍ୱରଂ ସର୍ବତ୍ର ଭୂତମାତ୍ରେ ଯଃ ପଶ୍ୟତି ସର୍ବଂ ଚ ପ୍ରାଣିମାତ୍ରଂ ମୟି ଯଃ ପଶ୍ୟତି, ତସ୍ୟ ଅହଂ ନ ପ୍ରଣଶ୍ୟାମି ଅଦୃଶ୍ୟୋ ନ ଭବାମି ସ ଚ ମମାଦୃଶ୍ୟୋ ନ ଭବତି ପ୍ରତ୍ୟକ୍ଷୋଭୂତ୍ୱା କୃପାଦୃଷ୍ଟ୍ୟା ତଂ ବିଲୋକ୍ୟ ଅନୁଗୃହ୍ଣାମୀତ୍ୟର୍ଥଃ । ୩୦ ।

ପଦବ୍ୟାଖ୍ୟା ।

ଯଃ ମାଂ ପଶ୍ୟତି ସର୍ବତ୍ର—ଯେ ଆମ୍ଭଙ୍କୁ ସବୁଠାରେ ଦେଖନ୍ତି, ସର୍ବଂ ଚ—ସମସ୍ତଙ୍କୁ, ମୟି—ଆମ୍ଭଠାରେ, ପଶ୍ୟତି—ଦେଖନ୍ତି, ତସ୍ୟ—ତାହାଙ୍କ ସମ୍ବନ୍ଧରେ, ଅହଂ—ଆମ୍ଭେ, ନ ପ୍ରଣଶ୍ୟାମି—ଅଦୃଶ୍ୟ ହେଉ ନାହିଁ, ସ ଚ—ସେ ମଧ୍ୟ, ମେ—ଆମ୍ଭ ସମ୍ବନ୍ଧରେ, ନ ପ୍ରଣଶ୍ୟତି—ଅଦୃଶ୍ୟ ହୁଅନ୍ତି ନାହିଁ । ୩୦ ।

ଅନୁବାଦ ।

ଯେଉଁ ବ୍ୟକ୍ତି ଆମ୍ଭଙ୍କୁ ସର୍ବପ୍ରାଣିମଧ୍ୟରେ ଏବଂ ସମସ୍ତ ପ୍ରାଣୀଙ୍କୁ ଆମ୍ଭ ମଧ୍ୟରେ ଦେଖନ୍ତି, ଆମ୍ଭେ ତାଙ୍କୁ ଅଦୃଶ୍ୟ ହେଉ ନାହିଁ କି ସେ ମଧ୍ୟ ଆମ୍ଭଙ୍କୁ ଅଦୃଶ୍ୟ ହୁଅନ୍ତି ନାହିଁ । ୩୦ ।

ବିଶଦବ୍ୟାଖ୍ୟା ।

ଯେଉଁ ଯୋଗିବ୍ୟକ୍ତିଙ୍କର ଆତ୍ମଜ୍ଞାନ ଉଦୟ ହୁଏ, ସେ ପରମେଶ୍ୱରଙ୍କୁ ସର୍ବତ୍ର ବିଦ୍ୟମାନ ଦେଖି ପାରନ୍ତି ; ଅର୍ଥାତ୍ ଜଗତର ପ୍ରତ୍ୟେକ ପଦାର୍ଥ, ଯେ ସେହି ଏକ ଅଦ୍ୱିତୀୟ ପରମେଶ୍ୱରଙ୍କର ସତ୍ତା, ତାହା ସେ ବୁଝି ପାରନ୍ତି ଏବଂ ସମସ୍ତ ଜଗତ୍ ପରମେଶ୍ୱରଙ୍କଠାରେ ବିଦ୍ୟମାନ ଥିବାର ମଧ୍ୟ ଦେଖନ୍ତି ; ଅର୍ଥାତ୍ ପରମେଶ୍ୱରଙ୍କଠାରୁ ସମସ୍ତ ଜଗତ୍ ଉଦୟ ଓ ଶେଷରେ ତହିଁରେ ବିଲୀନ ହେବାର ବୁଝି ପାରନ୍ତି । ଫଳକଥା ଏହି କି ଶ୍ରୁତି ପ୍ରତିଲିଖିତ "ଯତୋବା ଇମାନି ଭୂତାନି ଜାୟନ୍ତେ" "ଯସ୍ମିଂଶ୍ଚ ପ୍ରଳୟଂ ଯାନ୍ତି ପୁନରେବ ଯୁଗକ୍ଷୟେ"

ଇତ୍ୟାଦି ମହାବାକ୍ୟ ସମ୍ବନ୍ଧରେ ତାଙ୍କର ସାକ୍ଷାତ୍ ଜ୍ଞାନ ହୁଏ । ସେପରି ଯୋଗିବ୍ୟକ୍ତି ପରମେଶ୍ୱରଙ୍କୁ ସର୍ବଦା ଦେଖନ୍ତି ଓ ଈଶ୍ୱର ମଧ୍ୟ ତାଙ୍କୁ କୃପାଦୃଷ୍ଟିରେ ଅବଲୋକନ କରି ଅନୁଗ୍ରହ କରନ୍ତି ।୩୦ ।

ଶ୍ଳୋକଃ ।

* ସର୍ବଭୂତସ୍ଥିତଂ ଯୋ ମାଂ ଭଜତ୍ୟେକତ୍ୱମାସ୍ଥିତଃ ।
ସର୍ବଥା ବର୍ତ୍ତମାନୋଽପି, ସ ଯୋଗୀ ମୟି ବର୍ତ୍ତତେ । ୩୧ ।

ଅନ୍ୱୟଃ ।

ଯଃ ଏକତ୍ୱଂ ଆସ୍ଥିତଃ ସର୍ବଭୂତସ୍ଥିତଂ ମାଂ ଭଜତି, ସ ଯୋଗୀ ସର୍ବଥା ବର୍ତ୍ତମାନଃ ଅପି ମୟି ବର୍ତ୍ତତେ । ୩୧ ।

ଟୀକା ।

ନ ଚୈବମ୍ଭୂତୋବନ୍ଧକିଙ୍କରଃ ସ୍ୟାଦିତ୍ୟାହ । ସର୍ବଭୂତସ୍ଥିତମିତି । ସର୍ବଭୂତେଷୁ ସ୍ଥିତଂ ମାମଭେଦମାସ୍ଥିତ-ଆଶ୍ରିତୋଯୋଭଜତି ସଃ ଯୋଗୀ ଜ୍ଞାନୀ ସନ୍ ସର୍ବଥା କର୍ମ ପରିତ୍ୟାଗେନାପି ବର୍ତ୍ତମାନୋମୟ୍ୟେବ ବର୍ତ୍ତତେ ମୁଚ୍ୟତେ ନ ତୁ ଭ୍ରଶ୍ୟତୀତ୍ୟର୍ଥଃ । ୩୧ ।

ପଦବ୍ୟାଖ୍ୟା ।

ସର୍ବଭୂତସ୍ଥିତଂ—ସମସ୍ତ ପ୍ରାଣିଙ୍କଠାରେ ସ୍ଥିତ ( ସର୍ବବ୍ୟାପକ ), ଯଃ—ଯେଉଁ ବ୍ୟକ୍ତି, ମାଂ—ଆମ୍ଭଙ୍କୁ, ଭଜତି—ଉପାସନା କରନ୍ତି, ଏକତ୍ୱମାସ୍ଥିତଃ—ଅଭେଦ ଜ୍ଞାନକୁ ଆଶ୍ରୟ କରି, ସର୍ବଥା ବର୍ତ୍ତମାନୋଽପି—ସର୍ବପ୍ରକାରେ ( କର୍ମ ପରିତ୍ୟାଗ କରି ସୁଦ୍ଧା ) ବର୍ତ୍ତମାନ ଥିଲେହେଁ ( ଅର୍ଥାତ୍ ଯେ କୌଣସି ଅବସ୍ଥାରେ ଥିଲେ ମଧ୍ୟ ), ସଃ—ସେ, ଯୋଗୀ—ଯୋଗାଭ୍ୟାସୀ, ମୟି ବର୍ତ୍ତତେ—ଆମ୍ଭଠାରେ ( ମିଳିକରି ) ରହନ୍ତି । ୩୧ ।

ଅନୁବାଦ ।

ଆମ୍ଭେ ସର୍ବବ୍ୟାପୀ ; ଯେଉଁ ଯୋଗୀ (ଆମ୍ଭଠାରେ) ଏରୂପ ଅଭେଦଜ୍ଞାନ କରି ଆମ୍ଭଙ୍କୁ ଭଜନ୍ତି, ସେ ଯେ କୌଣସି ଅବସ୍ଥାରେ ଥିଲେ ମଧ୍ୟ ଆମ୍ଭଠାରେ ଯୁକ୍ତ ହୁଅନ୍ତି । ୩୧ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଆମ୍ଭେ ସର୍ବଭୂତରେ ସ୍ଥିତ ଅର୍ଥାତ୍ ସର୍ବବ୍ୟାପୀ ଅଟୁଁ । ଯେଉଁ ଯୋଗିବ୍ୟକ୍ତି ଆମ୍ଭଠାରେ ଅଭେଦଜ୍ଞାନ ରଖି ଆମ୍ଭଙ୍କୁ ଭଜନ୍ତି; ଅର୍ଥାତ୍ ଆମ୍ଭ ଭିନ୍ନ ଆଉ ଏ ଜଗତ ପ୍ରପଞ୍ଚରେ କିଛି ନାହିଁ, ଏହା ବୁଝି ପାରି ଆମ୍ଭର ଉପାସନା କରନ୍ତି, ସେ ଯେ କୌ-ଣସି ଅବସ୍ଥାରେ ଥାଉନ୍ତୁ ପଛକେ ଅର୍ଥାତ୍ ଜୀବାତ୍ମଭାବରେ କର୍ମ କରନ୍ତୁ ବା କର୍ମତ୍ୟାଗ କରନ୍ତୁ, ତଥାପି ଆମ୍ଭଠାରେ ରହନ୍ତି, ଅର୍ଥାତ୍ ତାଙ୍କର ଅଭେଦଜ୍ଞାନ ଥିବାରୁ ସେ ଆମ୍ଭ ସହିତରେ ଯୁକ୍ତ ହୋଇଯାନ୍ତି ବା ସାଯୁଜ୍ୟ ମୁକ୍ତି ପ୍ରାପ୍ତ ହୁଅନ୍ତି । ୩୧ ।

ଶ୍ଳୋକଃ ।

* ଆତ୍ମୌପମ୍ୟେନ ସର୍ବତ୍ର, ସମଂ ପଶ୍ୟତି ଯୋଽର୍ଜ୍ଜୁନ ।
ସୁଖଂ ବା ଯଦି ବା ଦୁଃଖଂ, ସ ଯୋଗୀ ପରମୋମତଃ । ୩୨ ।

ବନ୍ତି । ମନକୁ ଆତ୍ମନଷ୍ଠ ବା ସମାଧିସ୍ଥ କରି ଯୋଗ ଅଭ୍ୟାସ କରିବାକୁ ହେବ, ଇତ୍ୟାଦି ପ୍ରକାରେ ଆପଣ ଯୋଗର କଥା କହିଲେ ସତ, ମାତ୍ର ମନ ଯେପରି ଚଞ୍ଚଳ, ସେ ଯେ ଅଧିକ ସମୟ ପର୍ଯ୍ୟନ୍ତ ସମାଧିରେ ଅବସ୍ଥିତ ହେବ, ତାହାତ ମୋହର ବିଶ୍ୱାସ ହେଉ ନାହିଁ ।

ଫଳକଥା ଏହି କି ମନର ଚଞ୍ଚଳତା ଦୂର କରିବା ବିଷୟରେ ଆଉ କିଛି ଉପାୟ ଅଛି କି ନାହିଁ, ତାହା ଜାଣିବାପାଇଁ ଅର୍ଜୁନ ଏ ପ୍ରଶ୍ନ କଲେ । ୩୩ ।

ଶ୍ଲୋକଃ ।

ଚଞ୍ଚଳଂ ହି ମନଃ କୃଷ୍ଣ, ପ୍ରମାଥି ବଲବଦ୍ଦୃଢ଼ଂ ।
ତସ୍ୟାହଂ ନିଗ୍ରହଂ ମନ୍ୟେ, ବାୟୋରିବ ସୁଦୁଷ୍କରଂ । ୩୪ ।

ଅନ୍ୱୟଃ ।

ହେ କୃଷ୍ଣ ! ମନଃ ହି ଚଞ୍ଚଳଂ ପ୍ରମାଥି ବଲବତ୍ ଦୃଢ଼ଂ, ଅହଂ ତସ୍ୟ ନିଗ୍ରହଂ ବାୟୋଃ ଇବ ସୁଦୁଷ୍କରଂ ମନ୍ୟେ । ୩୪ ।

ଟୀକା ।

ଏତତ୍ ସ୍ପଷ୍ଟୟତି । ଚଞ୍ଚଳମିତି । ଚଞ୍ଚଳଂ ସ୍ୱଭାବେନୈବ ଚପଲଂ । କିଞ୍ଚ ପ୍ରମାଥି ପ୍ରମଥନଶୀଳଂ ଦେହେନ୍ଦ୍ରିୟକ୍ଷୋଭକରମିତ୍ୟର୍ଥଃ । କିଞ୍ଚ ବଲବତ୍ ବଚାରେଣାପି ଜେତୁମଶକ୍ୟଂ କିଞ୍ଚ ଦୃଢ଼ଂ ବିଷୟବାସନାନୁବନ୍ଧତୟା ଦୁର୍ଭେଦ୍ୟଂ ଅତୋଯଥାକାଶେ ଦୋଧୂୟମାନସ୍ୟ ବାୟୋଃ କୁମ୍ଭାଦଷୁ ନିରୋଧନମଶକ୍ୟଂ ତଥାହଂ ତସ୍ୟ ମନସୋ ନିଗ୍ରହଂ ନିରୋଧଂ ସୁଦୁଷ୍କରଂ ସର୍ବଥା କର୍ତ୍ତୁମଶକ୍ୟଂ ମନ୍ୟେ । ୩୪ ।

ପଦବ୍ୟାଖ୍ୟା ।

ଚଞ୍ଚଳଂ—ଅସ୍ଥିର, ହି—ନିଶ୍ଚୟ, ମନଃ—ଚିତ୍ତ, କୃଷ୍ଣ—ହେ ଶ୍ରୀକୃଷ୍ଣ !, ପ୍ରମାଥି—ଦେହ ଓ ଇନ୍ଦ୍ରିୟର କ୍ଷୋଭଜନକ, ବଲବତ୍—ଅଜେୟ, ଦୃଢ଼ଂ—(ବିଷୟବାସନାଯୁକ୍ତ ବୋଲି) ଅଭେଦ୍ୟ, ତସ୍ୟ—ସେହି ମନର, ଅହଂ—ମୁଁ, ନିଗ୍ରହଂ—ନିରୋଧକୁ, ମନ୍ୟେ—ମନେ କରେଁ, ବାୟୋରିବ—ବାୟୁର (ନିରୋଧ) ପରି, ସୁଦୁଷ୍କରଂ—ଅତି ଅସାଧ୍ୟ । ୩୪ ।

ଅନୁବାଦ ।

ହେ ଶ୍ରୀକୃଷ୍ଣ ! ମନଃ (ସ୍ୱଭାବରେ) ଚଞ୍ଚଳ, ଇନ୍ଦ୍ରିୟକ୍ଷୋଭଜନକ, ଅଜେୟ ଓ ଅଭେଦ୍ୟ ଅଟେ । ଅତଏବ ମୁଁ ଜାଣୁଅଛି, ବାୟୁନିରୋଧ ପରି ମନନିରୋଧ ଦୁଃସାଧ୍ୟ ଅଟେ । ୩୪ ।

ବିଶଦବ୍ୟାଖ୍ୟା ।

କୌଣସି ଚଞ୍ଚଳ ପଦାର୍ଥକୁ ଧରି ରଖିବା କଠିନ, ମନତ ସ୍ୱଭାବରେ ଚଞ୍ଚଳ, ସୁତରାଂ ସହଜରେ ଧରା ପଡିବା ପଦାର୍ଥ ନୁହେ । ସେଥିରେ ପୁଣି 'ପ୍ରମାଥି' ଅର୍ଥାତ୍ ଦେହ ଓ ଇନ୍ଦ୍ରିୟର କ୍ଷୋଭଜନକ; ଅର୍ଥାତ୍ ମନର ଉପଦ୍ରବରେ ଦେହ ଓ ଇନ୍ଦ୍ରିୟମାନେ ସର୍ବଦା ଅବଶ ହୋଇ ପଡନ୍ତି । ଏଥିରେ ତାକୁ ଧରି ନିରୋଧ କରିବା ଅଧିକ କଠିନ କଥା । ସେହି ମନ ପୁଣି ଏପରି ବଳଶାଳୀ, ଯେ ସେ ଯେଉଁ ଆଡକୁ ଧାବିତ ହେବ, ସେ ଆଡରୁ ତାକୁ ଫେରାଇବା (ପ୍ରତ୍ୟାହୃତ କରିବା) ସହଜସାଧ୍ୟ ନୁହେ, ଏପରି ଅବସ୍ଥାରେ ତାକୁ ନିରୋଧ କରିବା କଠିନତମ ବୋଲି ବୋଧ ହୁଏ । ଅଧିକ ଜନ୍ମଜନ୍ମାନ୍ତରର ବାସନାମାନ ସଂସ୍କାରରୂପରେ

Digitized by PPRACHIN, SOA

ଏକତ୍ରିତ ହୋଇ ସେ ମନକୁ ଏପରି ବଶୀଭୂତ କରୁଅଛି, ଯେ ତାହାକୁ ଭେଦ କରା ଯାଇ ନ ପାରେ । ସୁତରାଂ ତାହାକୁ ଧରି ନିରୋଧ କରିବା ଅସାଧ୍ୟବ୍ୟାପାର ଅଟେ । ପ୍ରବଳବେଗରେ ବହୁଥିବା ବାୟୁ (ବତାସ)କୁ ଧରି ରଖିବା ଯେପରି ଅସାଧ୍ୟ, ମନକୁ ନିରୋଧ କରିବା ସେହିପରି ଅସାଧ୍ୟ ବୋଲି ମୁଁ ମଣୁଅଛି ।

ଅର୍ଜୁନ ମନକୁ ନିରୋଧ କରିବା ଅସାଧ୍ୟ ଜାଣି ସୁଦ୍ଧା, ଆଶା ତ୍ୟାଗ କରି ନାହାନ୍ତି । ଯେଉଁ 'କୃଷ୍ଣ' ଭକ୍ତମାନଙ୍କର ପାପ ଓ ଦୁର୍ବଳତା ବାରଣ କରି, ସର୍ବ ପୁରୁଷାର୍ଥ ସିଦ୍ଧିର ସାମର୍ଥ୍ୟ ଦେଇ ପାରନ୍ତି, ତାହାଙ୍କୁ ଏ ମନୋନିରୋଧ କାର୍ଯ୍ୟ ସିଦ୍ଧି ବିଷୟରେ ଏକମାତ୍ର ଭରସା ଜାଣି, 'ହେ କୃଷ୍ଣ' ବୋଲି ସମ୍ବୋଧନ କରି ଆପଣାର ସନ୍ଦେହ ଜଣାଇଲେ । ୩୪ ।

ଶ୍ଲୋକଃ ।

ଶ୍ରୀଭଗବାନୁବାଚ ।—*ଅସଂଶୟଂ ମହାବାହୋ, ମନୋ ଦୁର୍ନିଗ୍ରହଂ ଚଳଂ ।
ଅଭ୍ୟାସେନ ତୁ କୌନ୍ତେୟ, ବୈରାଗ୍ୟେଣ ଚ ଗୃହ୍ୟତେ । ୩୫ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ହେ ମହାବାହୋ ! ମନଃ ଦୁର୍ନିଗ୍ରହଂ ଚଳଂ (ଇତି) ଅସଂଶୟଂ । ହେ କୌନ୍ତେୟ ! (ଇଦଂ) ଅଭ୍ୟାସେନ ତୁ ବୈରାଗ୍ୟେଣ ଚ ଗୃହ୍ୟତେ । ୩୫ ।

ଟୀକା ।

ଉକ୍ତଂ ଚଞ୍ଚଳାଦିକମଙ୍ଗୀକୃତ୍ୟୈବ ମନୋନିଗ୍ରହୋପାୟଂ ଶ୍ରୀଭଗବାନୁବାଚ । ଅସଂଶୟମିତି । ଚଞ୍ଚଳତ୍ୱାଦିନା ମନୋନିରୋଧୁଂ ଅଶକ୍ୟମିତି ଯଦ୍ବଦସି ଏତନ୍ନିଃସଂଶୟମେବ ତଥାପି ତୁ ଅଭ୍ୟାସେନ ପରମାତ୍ମାକାରତୟା ବୃତ୍ତ୍ୟା ବିଷୟବୈତୃଷ୍ଣ୍ୟେନ ଚ ଗୃହ୍ୟତେ ଅଭ୍ୟାସେନ ଲୟପ୍ରତିବନ୍ଧାତ୍ ବୈରାଗ୍ୟେଣ ଚ ବିକ୍ଷେପପ୍ରତିବନ୍ଧାଦୁପରତବୃତ୍ତିକଂ ସତ୍ ପରମାତ୍ମାକାରେଣ ପରିଣତଂ ତିଷ୍ଠତୀତ୍ୟର୍ଥଃ । ତଦୁକ୍ତଂ ଯୋଗଶାସ୍ତ୍ରେ,—ମନସୋ ବୃତ୍ତିଶୂନ୍ୟସ୍ୟ ବ୍ରହ୍ମାକାରତୟା ସ୍ଥିତିଃ । ଯା ସମ୍ପ୍ରଜ୍ଞାତନାମାସୌ ସମାଧିରଭିଧୀୟତେ । ୩୫ ।

ପଦବ୍ୟାଖ୍ୟା ।

ଅସଂଶୟଂ—ନିଃସନ୍ଦେହ, ମହାବାହୋ—ହେ ଆଜାନୁଲମ୍ବିତବାହୋ (ଅର୍ଜୁନ)!, ମନଃ—ଚିତ୍ତ, ଦୁର୍ନିଗ୍ରହଂ—ନିରୋଧରେ ଅସାଧ୍ୟ, ଚଳଂ—ଅସ୍ଥିର, ଅଭ୍ୟାସେନ ତୁ—ଅଭ୍ୟାସ ବଳରେ, କୌନ୍ତେୟ—ହେ ଅର୍ଜୁନ !, ବୈରାଗ୍ୟେଣ ଚ—ବୈରାଗ୍ୟଦ୍ୱାରା ମଧ୍ୟ, ଗୃହ୍ୟତେ—ନିରୁଦ୍ଧ ହୁଏ । ୩୫ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ହେ ମହାବାହୋ ! ମନ ଯେ ନିଗ୍ରହର ଦୁଃସାଧ୍ୟ ଏବଂ ଚଞ୍ଚଳ ତହିଁରେ ସନ୍ଦେହ ନାହିଁ । କିନ୍ତୁ ହେ କୌନ୍ତେୟ ! ଅଭ୍ୟାସ ଏବଂ ବୈରାଗ୍ୟଦ୍ୱାରା ଏହା ନିରୋଧ କରାଯାଏ । ୩୫ ।

ବିଶଦବ୍ୟାଖ୍ୟା ।

ମନ ନିଗ୍ରହ କରିବାର ନାନାପ୍ରକାର ଉପାୟ ନାନାଲୋକେ କହିଥିଲେ ସୁଦ୍ଧା, ଅଭ୍ୟାସ ଓ ବୈରାଗ୍ୟ ତାହା ମଧ୍ୟରେ ସର୍ବପ୍ରଧାନ । ସେଥିପାଇଁ ମହାତ୍ମା ପତଞ୍ଜଳି ଆପଣା ରଚିତ

Digitized by PPRACHIN, SOA

ଗ୍ରନ୍ଥର ସମାଧିପାଦ ଦ୍ୱାଦଶ ସୂତ୍ରରେ କହିଅଛନ୍ତି କି "ଅଭ୍ୟାସବୈରାଗ୍ୟାଭ୍ୟାଂ ତନ୍ନିରୋଧଃ"। ଅର୍ଥାତ୍ ମନର ପ୍ରମାଣ, ବିପର୍ଯ୍ୟୟ, ବିକଳ୍ପ, ନିଦ୍ରା ଓ ସ୍ମୃତି ନାମକ ଯେଉଁ ପାଞ୍ଚ ବୃତ୍ତି ଅଛି, (ଏହି ଅଧ୍ୟାୟର ୨୨ଶ ଶ୍ଳୋକ ବ୍ୟାଖ୍ୟା ଦେଖ) ତାହା ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ନିରୁଦ୍ଧ ହୁଏ । ଅଭ୍ୟାସ କାହାକୁ କହନ୍ତି ନା "ତତ୍ର ସ୍ଥିତୌ ଯତ୍ନୋଽଭ୍ୟାସଃ" ( ୩ ସୂ ) । ଅର୍ଥାତ୍ ଚିତ୍ତକୁ ସ୍ଥିର ରଖିବା ବିଷୟରେ ଓ ଚିତ୍ତରେ ରଜସ ଓ ତାମସ ଗୁଣ ଯେପରି ଉଦୟ ନ ହୁଏ, ସେ ବିଷୟରେ, ଯତ୍ନ କରିବାର ନାମ 'ଅଭ୍ୟାସ' ।

ଫଳକଥା ଏହି କି ଯମ, ନିୟମ, ଆସନ, ପ୍ରାଣାୟାମ ପ୍ରଭୃତି ସାତ ପ୍ରକାର ଯୋଗାଙ୍ଗ ସାଧନପୂର୍ବକ ବିଷୟାସକ୍ତି ତ୍ୟାଗ କରି ମନକୁ ବାରମ୍ବାର ଏକାଗ୍ର କରିବାର ନାମ ଅଭ୍ୟାସ । ଏହି ଅଭ୍ୟାସ ଦୃଢ ହେଲେ ବିଷୟବାସନା ତାକୁ ବିଚଳିତ କରି ପାରେ ନାହିଁ । ଏବେ ବୈରାଗ୍ୟ କାହାକୁ କହନ୍ତି ତାହା ଶୁଣ ।

"ଦୃଷ୍ଟାନୁଶ୍ରବିକ-ବିଷୟ-ବିତୃଷ୍ଣସ୍ୟ ବଶୀକାରସଂଜ୍ଞା ବୈରାଗ୍ୟଂ" (୧୫ ସୂ) । ଅନ୍ନ, ପାନୀୟ, ମାଳା, ଚନ୍ଦନ, କାମିନୀ, କାଞ୍ଚନ ପ୍ରଭୃତି (ଦୃଷ୍ଟ) ଦେଖା ଯାଉଥିବା ବିଷୟସୁଖ ଓ ଶାସ୍ତ୍ରରୁ (ଅନୁଶ୍ରବିକ) ଶୁଣା ଯାଉଥିବା ଅମୃତ, ଅପ୍ସର, ଓ ସ୍ୱର୍ଗାଦି ବିଷୟ ସୁଖ, ଏହି ଦେଖା ଓ ଶୁଣା ଦୁଇ ପ୍ରକାର ବିଷୟସୁଖରୁ ସମ୍ପୂର୍ଣ୍ଣରୂପେ ଇଚ୍ଛାତ୍ୟାଗ କରି ପାରିଲେ 'ବଶୀକାର' ନାମକ 'ବୈରାଗ୍ୟ' ଜାତ ହୁଏ । ସଂକ୍ଷେପରେ କହିବାକୁ ହେଲେ ଇହକାଳ ଓ ପରକାଳର ସୁଖଭୋଗ ଇଚ୍ଛା ତ୍ୟାଗର ନାମ 'ବୈରାଗ୍ୟ' ।

ଏହି 'ଅଭ୍ୟାସ' ଓ 'ବୈରାଗ୍ୟ'ଦ୍ୱାରା ମନକୁ ଧୀରେଧୀରେ ନିଗୃହୀତ କରାଯାଏ ।

ଏ ଶ୍ଳୋକରେ 'ମହାବାହୋ' ଓ 'କୌନ୍ତେୟ' ଦୁଇ ସମ୍ବୋଧନ ପଦ ବ୍ୟବହୃତ କରିବାଦ୍ୱାରା ଶ୍ରୀଭଗବାନ୍ ଏହି କଥା ସଂକ୍ଷେପରେ କହିଲେ, ଯେ ତୁମ୍ଭେ ରୁଦ୍ର ଓ ଇନ୍ଦ୍ର ପ୍ରଭୃତି ଦେବତାଙ୍କୁ ଜୟ କରିଥିବାରୁ 'ମହାବାହୁ' ଅର୍ଥାତ୍ ମହାପୁରୁଷ, ପୁଣି କୁନ୍ତୀପୁତ୍ର ହେବାରୁ ଆମ୍ଭର ଆତ୍ମୀୟ ଅଟ । ତୁମ୍ଭର ମନୋନିଗ୍ରହ କରିବା ବିଷୟରେ କ୍ଷୁଦ୍ରାଶୟ ବ୍ୟକ୍ତିପରି ନିରାଶ ହେବା ଉଚିତ ନୁହେ,ଅତ ଏବ ଉତ୍ସାହର ସହିତ ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ମନକୁ ଜୟ କର । ୩୫ ।

ଶ୍ଳୋକଃ ।

ଅସଂଯତାତ୍ମନା ଯୋଗୋ, ଦୁଷ୍ପ୍ରାପ ଇତି ମେ ମତିଃ ।
ବଶ୍ୟାତ୍ମନା ତୁ ଯତତା, ଶକ୍ୟୋଽବାପ୍ତୁମୁପାୟତଃ । ୩୬ ।

ଅନ୍ୱୟଃ ।

ଯୋଗଃ ଅସଂଯତାତ୍ମନା ଦୁଷ୍ପ୍ରାପଃ ତୁ ଯତତା ବଶ୍ୟାତ୍ମନା ଉପାୟତଃ ଅବାପ୍ତୁଂ ଶକ୍ୟଃ ଇତି ମେ ମତିଃ । ୩୬ ।

ଟୀକା ।

ଏତାବାଂସ୍ତୁ ହି ନିଶ୍ଚୟ ଇତ୍ୟାହ । ଅସଂଯତେତି । ଉକ୍ତପ୍ରକାରେଣ ଅଭ୍ୟାସବୈରାଗ୍ୟାଭ୍ୟାମସଂଯତ ଆତ୍ମା ଚିତ୍ତଂ ଯସ୍ୟ ତେନ ଯୋଗୋଦୁଷ୍ପ୍ରାପ୍ୟଃ ପ୍ରାପ୍ତୁମଶକ୍ୟଃ ଅଭ୍ୟାସବୈରାଗ୍ୟାଭ୍ୟାଂ ବଶୀଭୂତବର୍ତ୍ତୀ ଆତ୍ମା ଚିତ୍ତଂ ଯସ୍ୟ ତେନ ପୁରୁଷେଣ ପୁନଶ୍ଚାନେକୈରୁପାୟୈଃ ପ୍ରଯତ୍ନଂ କୁର୍ବତା ଯୋଗଃ ପ୍ରାପ୍ତୁଂ ଶକ୍ୟଃ । ୩୬ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଅସଂଯତାତ୍ମନା—ଯାହାର ମନ ବଶୀଭୂତ ନୁହେ ସେ, ଯୋଗୋଦୁଷ୍ପ୍ରାପଃ—ସହଜରେ ଯୋଗ ପାଏ ନାହିଁ, ଇତି ମେ ମତଃ—ଏହି ଆମ୍ଭର ମତ, ବଶ୍ୟାତ୍ମନା ତୁ—ତଦ୍ଭିନ୍ନ ମନକୁ ବଶୀଭୂତ କରିଥିବା ବ୍ୟକ୍ତି, ଯତତା—ଯତ୍ନଶୀଳ, ଶକ୍ୟୋଽବାପ୍ତୁଂ—(ଯୋଗକୁ) ପାଇବାକୁ ସମର୍ଥ ହୁଅନ୍ତି, ଉପାୟତଃ—ଉପାୟଦ୍ୱାରା । ୩୬ ।

ଅନୁବାଦ ।

ଯାହାର ମନ ବଶୀଭୂତ ନୁହେଁ, ଆମ୍ଭ ମତରେ ତାଙ୍କର ପକ୍ଷରେ ଏହି ଯୋଗ ଦୁଷ୍ପ୍ରାପ୍ୟ, କିନ୍ତୁ ଯେଉଁ ବ୍ୟକ୍ତି ଯତ୍ନ କରି ମନକୁ ବଶୀଭୂତ କରିଅଛନ୍ତି, ସେ (ବିହିତ) ଉପାୟଦ୍ୱାରା ଏହା ଲାଭ କରି ପାରନ୍ତି । ୩୬ ।

ବିଶଦବ୍ୟାଖ୍ୟା ।

ଯେ ଆପଣାର ଚିତ୍ତକୁ ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ବଶୀଭୂତ କରି ପାରି ନାହାନ୍ତି, ତାଙ୍କ ପକ୍ଷରେ ଯୋଗ ଲାଭ କରିବା ସହଜ କଥା ନୁହେ । କିନ୍ତୁ ବୈରାଗ୍ୟ ସାଧନଦ୍ୱାରା ଯାହାଙ୍କ ମନକୁ ସର୍ବପ୍ରକାର ବାସନା ବିମୁକ୍ତ ହୋଇଅଛୁ, ସେହି ବ୍ୟକ୍ତି ଉପାୟ ଅର୍ଥାତ୍ ପୁରୁଷାର୍ଥ ସାଧନଦ୍ୱାରା ଯୋଗରେ ସିଦ୍ଧିଲାଭ କରି ପାରନ୍ତି ।

କେତେକ ବ୍ୟକ୍ତି ବେଦାନ୍ତ ଆଦି ଶାସ୍ତ୍ର ପଢ଼ି ବ୍ରହ୍ମତତ୍ତ୍ୱ ଅବଗତ ହୋଇଥିଲେ ସୁଦ୍ଧା, ଆଳସ୍ୟ ଓ ଅଯତ୍ନ ହେତୁରୁ ସାଧନ କରି ନ ପାରି ବ୍ରହ୍ମାନନ୍ଦ ସୁଖରୁ ବଞ୍ଚିତ ହୁଅନ୍ତି । ସେ-ମାନେ କହନ୍ତି, ପ୍ରାରବ୍ଧ ଅନୁସାରେ ଫଳ ହୁଏ । ଆମ୍ଭର ପ୍ରାରବ୍ଧରେ ନାହିଁ କିପରି ସିଦ୍ଧ ହେବ ? ଇତ୍ୟାଦି । କିନ୍ତୁ ସାଂସାରିକ ସୁଖଦୁଃଖ ଭୋଗ କେବଳ ପୂର୍ବଜନ୍ମାର୍ଜିତ ଶୁଭାଶୁଭ କର୍ମର ଫଳ । ପ୍ରାରବ୍ଧ କର୍ମର ଫଳ ବୋଲି ସେହି ସାଂସାରିକ ସୁଖ ବା ଦୁଃଖ ଭୋଗ କର, ସେଥିରେ ଆପତ୍ତି ନାହିଁ । ମାତ୍ର ଯେଉଁ ସବୁ କର୍ମ କଲେ (ନିଷ୍କାମକର୍ମ ଈଶ୍ୱରଭକ୍ତି ପ୍ରଭୃତି) ଭୋଗ ନିମିତ୍ତ 'ଅଦୃଷ୍ଟ' ଉତ୍ପନ୍ନ ହୁଏ ନାହିଁ, ସେହି କର୍ମର ଉନ୍ନତ ପୁରୁଷାର୍ଥ ସାଧନ (ଉପାୟ) ଭିନ୍ନ, ପ୍ରାରବ୍ଧ ଉପରେ ନିର୍ଭର କରା ଯାଇ ପାରେ ନାହିଁ ଆଉ ଯେବେ ଯୋଗସାଧନାଦିକୁ ମଧ୍ୟ ପ୍ରାରବ୍ଧଜନିତ ବୋଲି ସ୍ୱୀକାର କରାଯାଏ, ତେବେ ଇହଜନ୍ମରେ ସେ ବିଷୟରେ ଯେଉଁ ଯତ୍ନ କରା ଯାଇଥିବ, ସେ ପରବର୍ତ୍ତୀ ଜନ୍ମରେ ଅଦୃଷ୍ଟରୂପରେ ରହି ତାହାର (ଯୋଗସାଧନର) ଉନ୍ନତି କରାଇବ; ଅତଏବ ଉକ୍ତ ବିଷୟରେ ଯତ୍ନ କରିବା ସର୍ବତୋଭାବରେ ଉଚିତ । ପୁରୁ-ଷାର୍ଥସାଧନ (ଉପାୟ ବା ଉଦ୍ୟୋଗ)ଦ୍ୱାରା ଯେ ସର୍ବ ବିଷୟରେ ସିଦ୍ଧିଲାଭ କରା ଯାଇ ପାରେ, ସେ ବିଷୟରେ ଯୋଗବାଶିଷ୍ଠରେ ନିମ୍ନଲିଖିତ ପ୍ରମାଣ ଅଛି । ଯଥା,—

ସର୍ବମେବେହ ହି ସଦା ସଂସାରେ ରଘୁନନ୍ଦନ ।
ସମ୍ୟକ୍ ପ୍ରଯୁକ୍ତାତ୍ ସର୍ବେଣ ପୌରୁଷାତ୍ ସମବାପ୍ୟତେ ।
ଉଚ୍ଛାସ୍ତ୍ରଂ ଶାସ୍ତ୍ରିତଂ ଚେତି ପୌରୁଷଂ ଦ୍ୱିବିଧଂ ସ୍ମୃତଂ ।
ତତ୍ରୋଚ୍ଛାସ୍ତ୍ରମନର୍ଥାୟ ପରମାର୍ଥାୟ ଶାସ୍ତ୍ରିତଂ । ଇତ୍ୟାଦି ।

ଅର୍ଥାତ୍ ହେ ରାମଚନ୍ଦ୍ର ! ଏହି ସଂସାରରେ ସମସ୍ତେ ସମ୍ପୂର୍ଣ୍ଣ 'ପୁରୁଷାର୍ଥ' (ଯତ୍ନ ବା

Digitized by PPRACHIN, SOA

ଉଦ୍ୟମ ପ୍ରୟୋଗ କରି) ସବୁପ୍ରକାର (ଭଲ ଓ ମନ୍ଦ) ଫଳଲାଭ କରି ପାରନ୍ତି । କାହିଁକି ନା, ପୁରୁଷାର୍ଥ ଦୁଇ ପ୍ରକାର ;—୧ମ ଉଚ୍ଛାସ୍ତ୍ର ଅର୍ଥାତ୍ ଶାସ୍ତ୍ରବିରୁଦ୍ଧ, ୨ୟ ଶାସ୍ତ୍ରିତ ଅର୍ଥାତ୍ ଶାସ୍ତ୍ରସମ୍ମତ । ଶାସ୍ତ୍ରବିରୁଦ୍ଧ ପୁରୁଷାର୍ଥ ପ୍ରୟୋଗରେ ଅନର୍ଥ ବା ମନ୍ଦଫଳ ମିଳେ, ଏବଂ ଶାସ୍ତ୍ରସମ୍ମତ ପୁରୁଷାର୍ଥ ସାଧନରେ ପରମାର୍ଥ ବା ଶ୍ରେଷ୍ଠଫଳ ମିଳେ, ଇତ୍ୟାଦି ।

ଫଳକଥା ଏହି କି ବୈରାଗ୍ୟ ଓ ଅଭ୍ୟାସଦ୍ୱାରା ଚିତ୍ତକୁ ସଂଯମ କରି, ପୁରୁଷାର୍ଥ ପ୍ରୟୋଗ କଲେ ଯୋଗସିଦ୍ଧି ହେବ, ଏଥିରେ ସଂଶୟ ନାହିଁ । ୩୬ ।

ଶ୍ଳୋକଃ ।

ଅର୍ଜ୍ଜୁନଉବାଚ ।—ଅୟତିଃ ଶ୍ରଦ୍ଧୟୋପେତୋ,ଯୋଗାଚ୍ଚଳିତମାନସଃ ।
ଅପ୍ରାପ୍ୟ ଯୋଗସଂସିଦ୍ଧିଂ, କାଂ ଗତିଂ କୃଷ୍ଣ ଗଚ୍ଛତି । ୩୭ ।

ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ । ହେ କୃଷ୍ଣ ! ଶ୍ରଦ୍ଧୟା ଉପେତଃ ଯୋଗାତ୍ ଚଳିତମାନସଃ ଅୟତିଃ ଯୋଗସଂସିଦ୍ଧିଂ ଅପ୍ରାପ୍ୟ କାଂ ଗତିଂ ଗଚ୍ଛତି ? । ୩୭ ।

ଟୀକା ।

ଅଭ୍ୟାସବୈରାଗ୍ୟାଭାବେନ କଥମ୍ପ୍ୟପ୍ରାପ୍ତ ସମ୍ୟଗ୍‌ଜ୍ଞାନଃ କଂ ଫଳଂ ପ୍ରାପ୍ନୋତୀତି ଅର୍ଜ୍ଜୁନଃ ଉବାଚ । ଅୟତିରିତି ପ୍ରଥମଂ ଶ୍ରଦ୍ଧୟୋପେତ ଏବ ଯୋଗେ ପ୍ରବୃତ୍ତଃ ନତୁ ମିଥ୍ୟାଚାରତୟା ତତଃ ପରନ୍ତୁ ଅୟତିଃ ସମ୍ୟକ୍ ନ ଯତତେ ଶିଥିଳାଭ୍ୟାସ ଇତ୍ୟର୍ଥଃ ତଥା ଯୋଗାଚ୍ଚଳିତଂ ମାନସଂ ବିଷୟପ୍ରବଣଂ ଚିତ୍ତଂ ଯସ୍ୟ ମନ୍ଦବୈରାଗ୍ୟ ଇତ୍ୟର୍ଥଃ ଏବମଭ୍ୟାସ ବୈରାଗ୍ୟଶୈଥିଲ୍ୟାତ୍ ଯୋଗସ୍ୟ ସଂସିଦ୍ଧିଂ ଫଳଂ ଜ୍ଞାନମପ୍ରାପ୍ୟ କାଂ ଗତିଂ ପ୍ରାପ୍ନୋତି ? । ୩୭ ।

ପଦବ୍ୟାଖ୍ୟା ।

ଅୟତିଃ—ଯାହାର ଇନ୍ଦ୍ରିୟମାନେ ବଶୀଭୂତ ନୁହନ୍ତି ଅଥବା ଅଭ୍ୟାସରହିତ, ଶ୍ରଦ୍ଧୟୋପେତଃ—ଶ୍ରଦ୍ଧାଯୁକ୍ତ, ଯୋଗାଚ୍ଚଳିତମାନସଃ—ଯୋଗରୁ ଯାହାଙ୍କ ମନ ବିଚଳିତ ହୋଇଅଛି, ଅପ୍ରାପ୍ୟ—ନ ପାଇ, ଯୋଗସଂସିଦ୍ଧିଂ—ଯୋଗର ସମ୍ପୂର୍ଣ୍ଣ ସିଦ୍ଧି ଅର୍ଥାତ୍ ଜ୍ଞାନ, କାଂ ଗତିଂ—କେଉଁ ଗତିକି, କୃଷ୍ଣ—ହେ ଶ୍ରୀକୃଷ୍ଣ !, ଗଚ୍ଛତି—ପ୍ରାପ୍ତ ହୁଅନ୍ତି । ୩୭ ।

ଅନୁବାଦ ।

ଅର୍ଜ୍ଜୁନ କହିଲେ, ହେ ଶ୍ରୀକୃଷ୍ଣ ! ଯେ (ପ୍ରଥମରେ) ଶ୍ରଦ୍ଧାଯୁକ୍ତ ହୋଇ ପୁଣ୍ଡା (ଶେଷରେ) ଯତ୍ନ ଅଭାବରେ ଯୋଗରୁ ଭ୍ରଷ୍ଟଚିତ୍ତ ହୁଅନ୍ତି, ସେ ଯୋଗସିଦ୍ଧି ଲାଭ କରି ନ ପାରି କି ପ୍ରକାର ଗତି ପ୍ରାପ୍ତ ହୁଅନ୍ତି ? । ୩୭ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ ପଚାରିଲେ, ହେ ଶ୍ରୀକୃଷ୍ଣ ! ଯେଉଁ ବ୍ୟକ୍ତି ପ୍ରଥମରେ ଶମ, ଦମ, ତିତିକ୍ଷା ଓ ଶ୍ରଦ୍ଧାଦି ଗୁଣଯୁକ୍ତ ହୋଇ, ଗୁରୁଙ୍କ ନିକଟରେ ଉପସ୍ଥିତ ହେବେ ଓ ଗୁରୁଙ୍କ ଉପଦେଶ ଅନୁସାରେ ନିତ୍ୟ ଓ ଅନିତ୍ୟ ପଦାର୍ଥର ବିବେକ ଏବଂ ଇହକାଳ ଓ ପରକାଳର ଭୋଗବାସନା ତ୍ୟାଗରୂପ ବୈରାଗ୍ୟାବଲମ୍ବନଦ୍ୱାରା ଯୋଗାଭ୍ୟାସ କରି ବସିବେ । ମାତ୍ର ତାହାଙ୍କର ପରମାୟୁର ଅଳ୍ପତା ହେତୁରୁ, ଯଦି ସେ ଯୋଗସାଧନରେ ବିହିତ ଯତ୍ନ କରିବାକୁ ଅବକାଶ ନ ପାନ୍ତି,

Digitized by PPRACHIN, SOA

ଅଥବା ମନର ଅବିବେକତା ହେତୁ ଯଦି ସେ ଯୋଗରୁ ବିଚଳିତ—ଭ୍ରଷ୍ଟ ହୁଅନ୍ତି, ତେବେ ଯୋଗସିଦ୍ଧି ଲାଭ କରି ନ ପାରି ସେ କେଉଁ ଗତି ପ୍ରାପ୍ତ ହେବେ ? କାହିଁକି ନା ବୈରାଗ୍ୟ ଅବଲମ୍ବନ ନିମିତ୍ତ ସେ କର୍ମ ଓ ତାହାର ଇହ ପରକାଳର ଫଳ ତ୍ୟାଗ କରିଥିବାରୁ, କର୍ମଫଳ ଅନୁସାରେ ସ୍ୱର୍ଗାଦି ପାଇବେ ନାହିଁ, ପୁଣି ଜ୍ଞାନପ୍ରାପ୍ତି ହୋଇ ନ ଥିବାରୁ ନିର୍ବାଣ ମୁକ୍ତି ମଧ୍ୟ ପାଇବେ ନାହିଁ, ତେବେ ତାହାଙ୍କର କି ଗତି ହେବ ? । ୩୭ ।

ଶ୍ଳୋକଃ ।

କଚ୍ଚିନ୍ନୋଭୟବିଭ୍ରଷ୍ଟଶ୍ଛିନ୍ନାଭ୍ରମିବ ନଶ୍ୟତି ।

ଅପ୍ରତିଷ୍ଠୋ ମହାବାହୋ ବିମୂଢୋ ବ୍ରହ୍ମଣଃ ପଥି । ୩୮ ।

ଅନ୍ୱୟଃ ।

ହେ ମହାବାହୋ ! ଉଭୟବିଭ୍ରଷ୍ଟଃ ଅପ୍ରତିଷ୍ଠଃ ବ୍ରହ୍ମଣଃ ପଥି ବିମୂଢଃ ଛିନ୍ନାଭ୍ରଂ ଇବ କଚ୍ଚିତ୍ ନ ନଶ୍ୟତି । ୩୮ ।

ଟୀକା ।

ପ୍ରଶ୍ନାଭିପ୍ରାୟଂ ବିବୃଣୋତି କଚ୍ଚିଦିତି । କର୍ମଣାମୀଶ୍ୱରେଽର୍ପିତତ୍ୱାଦନନୁଷ୍ଠାନାଚ୍ଚ ତାବତ୍ କର୍ମଫଳଂ ସ୍ୱର୍ଗାଦିକଂ ନ ପ୍ରାପ୍ନୋତି ଯୋଗାନିଷ୍ପତ୍ତେଶ୍ଚ ମୋକ୍ଷଂ ନ ପ୍ରାପ୍ନୋତି ଏବମୁଭୟସ୍ମାଦ୍ଭ୍ରଷ୍ଟଃ ଅପ୍ରତିଷ୍ଠୋ ନିରାଶ୍ରୟଃ ଅତଏବ ବ୍ରହ୍ମପ୍ରାପ୍ତ୍ୟୁପାୟେ ପଥି ମାର୍ଗେ ବିମୂଢଃ ସନ୍ କଚ୍ଚିତ୍ କିଂ ନ ନଶ୍ୟତି କିମ୍ବା ନଶ୍ୟତୀତ୍ୟର୍ଥଃ । ନାଶେ ଦୃଷ୍ଟାନ୍ତଃ ଯଥା ଛିନ୍ନମଭ୍ରଂ ପୂର୍ବସ୍ମାଦଭ୍ରାତ୍ ବିଶ୍ଲିଷ୍ଟମଭ୍ରାନ୍ତରମପ୍ରାପ୍ତଂ ମଧ୍ୟ ଏବ ବିଲୀୟତେ ତଦ୍ୱଦିତ୍ୟର୍ଥଃ । ୩୮ ।

ପଦବ୍ୟାଖ୍ୟା ।

କଚ୍ଚିତ୍—କି, ନ—ନୁହେ, ଉଭୟବିଭ୍ରଷ୍ଟଃ—ଦୁଇଅଡୁ ଭ୍ରଷ୍ଟ, ଛିନ୍ନାଭ୍ରଂ ଇବ—ଛିଣ୍ଡା ମେଘପରି, ନଶ୍ୟତି—ନାଶପ୍ରାପ୍ତ, ଅପ୍ରତିଷ୍ଠଃ—ଆଶ୍ରୟହୀନ, ମହାବାହୋ—ହେ ଶ୍ରୀକୃଷ୍ଣ !, ବିମୂଢଃ—ମୂର୍ଖ, ବ୍ରହ୍ମଣଃ ପଥି—ତତ୍ତ୍ୱଜ୍ଞାନର ମାର୍ଗରେ । ୩୮ ।

ଅନୁବାଦ ।

ହେ ମହାବାହୋ ! ( କର୍ମ ଓ ଯୋଗ ) ଉଭୟ ପଥରୁ ଭ୍ରଷ୍ଟ ଓ ନିରାଶ୍ରୟ ଏବଂ ବ୍ରହ୍ମଜ୍ଞାନମାର୍ଗରେ ବିମୂଢ଼ ହୋଇ (ସେ ବ୍ୟକ୍ତି) ଛିନ୍ନ ମେଘପରି ବିନଷ୍ଟ ନହୁଅନ୍ତି କି ? । ୩୮ ।

ବିଶଦବ୍ୟାଖ୍ୟା ।

ପିତୃଲୋକକୁ ଯିବାପାଇଁ ଯେଉଁ ମାର୍ଗ ଅଛି, ତାହାକୁ 'ପିତୃଯାନ' ଏବଂ ଦେବଲୋକକୁ ଯିବା ମାର୍ଗକୁ 'ଦେବଯାନ' ବୋଲାଯାଏ । ପିତୃଯାନ ମାର୍ଗର ସାଧନ ସକାମକର୍ମ ଓ ଦେବଯାନ ମାର୍ଗର ସାଧନ ଉପାସନା ବା ନିଷ୍କାମକର୍ମ ଅଟେ । ଯେଉଁ ବ୍ୟକ୍ତି ସେହି କର୍ମ ଓ ଉପାସନା ପଥରୁ ଭ୍ରଷ୍ଟ ହୋଇଅଛନ୍ତି, ଅର୍ଥାତ୍ ପୂର୍ବରୁ କରିଥିବା କର୍ମମାନଙ୍କୁ ଈଶ୍ୱରଙ୍କଠାରେ ଅର୍ପଣ କରିଥିବା ଓ ଅନ୍ୟ କର୍ମର ଅନୁଷ୍ଠାନ କରି ନ ଥିବାରୁ, କର୍ମଫଳସାଧ୍ୟ ସ୍ୱର୍ଗାଦି ଲାଭରୁ ଭ୍ରଷ୍ଟ ହୋଇଅଛନ୍ତି, ପୁଣି ଯୋଗସାଧନରେ କୃତକାର୍ଯ୍ୟ ନ ହୋଇ ଜ୍ଞାନଲାଭରୁ ମଧ୍ୟ ଭ୍ରଷ୍ଟ ହୋଇଅଛନ୍ତି, ସେହି ଉଭୟପଥଭ୍ରଷ୍ଟ, ଅତଏବ ଅପ୍ରତିଷ୍ଠ ଅର୍ଥାତ୍ ନିରାଶ୍ରୟ ବ୍ୟକ୍ତି ତତ୍ତ୍ୱଜ୍ଞାନ ମାର୍ଗରେ ବିମୂଢ଼ ହୋଇ, ବାୟୁଦ୍ୱାରା ବିଚ୍ଛିନ୍ନ କ୍ଷୁଦ୍ର ଛିନ୍ନ ମେଘପରି ନଷ୍ଟ ହୁଅନ୍ତି ନାହିଁ କି ? ଅର୍ଥାତ

ଖଣ୍ଡେ ଖଣ୍ଡେ ମେଘ ବଡ଼ ମେଘରୁ ଛିନ୍ନ ହୋଇ, ଅନ୍ୟ ବଡ଼ ମେଘ ସହିତ ମିଶି ନ ପାରି, ଯେପରି ବାୟୁରେ ଲୀନ ହୋଇଯାଏ, ସେହିପରି ପୂର୍ବୋକ୍ତ ବ୍ୟକ୍ତି କର୍ମଜନିତ ଫଳ ତ୍ୟାଗ କରି, ଜ୍ଞାନଫଳ ଲାଭ ନ କରି ମଝିରେ ନଷ୍ଟ ହେବେ କି ? । ୩୮ ।

ଶ୍ଲୋକଃ ।

ଏତନ୍ମେ ସଂଶୟଂ କୃଷ୍ଣ, ଛେତ୍ତୁମର୍ହସ୍ୟଶେଷତଃ ।
ତ୍ୱଦନ୍ୟଃ ସଂଶୟସ୍ୟାସ୍ୟ, ଛେତ୍ତା ନ ହ୍ୟୁପପଦ୍ୟତେ । ୩୯ ।

ଅନ୍ୱୟଃ ।

ହେ କୃଷ୍ଣ ! ଏତତ୍ ମେ ସଂଶୟଂ ଅଶେଷତଃ ଛେତ୍ତୁଂ ଅର୍ହସି ହି ଅସ୍ୟ ସଂଶୟସ୍ୟ ଛେତ୍ତା ତ୍ୱଦନ୍ୟଃ ନ ଉପପଦ୍ୟତେ । ୩୯ ।

ଟୀକା ।

ତ୍ୱମେବ ସର୍ବଜ୍ଞୋନାସ୍ୟ ମମ ସନ୍ଦେହୋ ନିରସନୀୟଃ । ତ୍ୱତ୍ତୋଽନ୍ୟସ୍ତୁ ଏତତ୍ ସନ୍ଦେହ ନିବର୍ତ୍ତକୋନାସ୍ତୀତ୍ୟାହ ଏତଦିତି । ଏତତ୍ ଏତଂ ଛେତ୍ତା ନିବର୍ତ୍ତକଃ ହ୍ୟୁପପନ୍ନୋହି । ୩୯ ।

ପଦବ୍ୟାଖ୍ୟା ।

ଏତତ୍—ଏହି, ମେ—ମୋହର, ସଂଶୟଂ—ସନ୍ଦେହକୁ, କୃଷ୍ଣ—ହେ ଶ୍ରୀକୃଷ୍ଣ !, ଛେତ୍ତୁଂ ଅର୍ହସି—ଛେଦନ କରିବା ହେଉଛ, ଅଶେଷତଃ—ସମ୍ପୂର୍ଣ୍ଣରୂପରେ, ତ୍ୱଦନ୍ୟଃ—ଆପଣଙ୍କ ଭିନ୍ନ ଅନ୍ୟ କେହି, ସଂଶୟସ୍ୟାସ୍ୟ—ଏହି ସଂଶୟର, ଛେତ୍ତା—ଛେଦନକର୍ତ୍ତା, ନ ହି ଉପପଦ୍ୟତେ—ଦେଖା ଯାଉ ନାହିଁ । ୩୯ ।

ଅନୁବାଦ ।

ହେ ଶ୍ରୀକୃଷ୍ଣ ! ଆପଣ ମୋହର ଏହି ସଂଶୟକୁ ସମ୍ପୂର୍ଣ୍ଣରୂପେ ନିବୃତ୍ତ କରନ୍ତୁ, କାହିଁକି ନା ଆପଣଙ୍କ ଭିନ୍ନ ଏ ସଂଶୟ ଆଉ କେହି ଛେଦନ କରି ପାରିବେ ନାହିଁ । ୩୯ ।

ଲକ୍ଷଣବ୍ୟାଖ୍ୟା ।

ଅର୍ଜ୍ଜୁନ ମନେ ମନେ ସ୍ଥିର କଲେ, ଯେ ଅନ୍ୟ କୌଣସି ଋଷି ବା ମୁନିଙ୍କୁ ପଚାରିଲେ, ସେ ମୋହର ସନ୍ଦେହ ଦୂର କରି ପାରିବେ ସତ, ମାତ୍ର ମୋହର ମନ ସ୍ଥିର ନ ଥିବାରୁ ଅଥବା ଭଷାଦ୍ୱାରା ବ୍ୟକ୍ତ କରିବାକୁ ଅସମର୍ଥ ହେବାରୁ, ମୋହ ମନର ଆଉ ଯେଉଁ ସବୁ ସଂଶୟ ରହିଯିବ, ତାହାର ଉତ୍ତର କିଏ ଦେବ ? ଅଥବା କେହି ଉତ୍ତର ଦେଲେ ସୁଦ୍ଧା, ପ୍ରକୃତ ସାଧନରେ କିଏ ସହାୟତା କରିବ ? ଏଥିପାଇଁ ଜଗଦ୍‌ଗୁରୁ ପରମଦୟାଳୁ ଅନ୍ତର୍ଯାମୀ ଓ ସର୍ବଶକ୍ତିମାନ୍ ଏବଂ ଭକ୍ତବତ୍ସଳ ଶ୍ରୀକୃଷ୍ଣଙ୍କୁ କହିଲେ, ଯେ ଆପଣ ମୋହର ଏ ସଂଶୟ ଛେଦନ କରନ୍ତୁ, ଆପଣଙ୍କ ଭିନ୍ନ ଆଉ କେହି ପାରିବେ ନାହିଁ । ୩୯ ।

ଶ୍ଲୋକଃ ।

ଶ୍ରୀଭଗବାନୁବାଚ ।—ପାର୍ଥ ନୈବେହ ନାମୁତ୍ର, ବିନାଶସ୍ତସ୍ୟ ବିଦ୍ୟତେ ।
ନ ହି କଲ୍ୟାଣକୃତ୍ କଶ୍ଚିତ୍, ଦୁର୍ଗତିଂ ତାତ ଗଚ୍ଛତି । ୪୦ ।

Digitized by PPRACHIN, SOA

## ଅନ୍ୱୟଃ ।

ହେ ପାର୍ଥ ! ତସ୍ୟ ବିନାଶ ଇହ ଅମୁତ୍ର ନ ବିଦ୍ୟତେ ଏବ । ହେ ତାତ ! ହି କଶ୍ଚିତ୍ କଲ୍ୟାଣକୃତ୍ ଦୁର୍ଗତିଂ ନ ଗଚ୍ଛତି । ୪୦ ।

## ଟୀକା ।

ଅତ୍ରୋତ୍ତରଂ ଶ୍ରୀଭଗବାନୁବାଚ । ପାର୍ଥେତି ସାର୍ଦ୍ଧୈସ୍ତ୍ରିଭିଃ । ଇହଲୋକେ ନାଶଃ ଉଭୟଭ୍ରଂଶାତ୍ ପାତିତ୍ୟଂ ଅମୁତ୍ର ପରଲୋକେ ନାଶୋ ନରକପ୍ରାପ୍ତିସ୍ତଦୁଭୟଂ ତସ୍ୟ ନାସ୍ତ୍ୟେବ । ଯତଃ କଲ୍ୟାଣକୃତ୍ ଶୁଭକାରୀ କଶ୍ଚିଦପି ଦୁର୍ଗତିଂ ନ ଗଚ୍ଛତି ଅୟଂ ଚ ଶୁଭକାରୀ ଶ୍ରଦ୍ଧୟା ଯୋଗେ ପ୍ରବୃତ୍ତତ୍ୱାତ୍ । ତାତେତି ଲୋକରୀତ୍ୟା ଉପଲାଲୟନ୍ ସମ୍ବୋଧୟତି । ୪୦ ।

## ପଦବ୍ୟାଖ୍ୟା ।

ପାର୍ଥ—ହେ ପୃଥାପୁତ୍ର ( ଅର୍ଜ୍ଜୁନ ! ), ନୈବ—ନାହିଁ, ଇହ—ଏହି ଲୋକରେ, ନ ଅମୁତ୍ର—ପରଲୋକରେ ନାହିଁ, ବିନାଶଃ—ଅଧୋଗତି, ତସ୍ୟ—ସେହି ଲୋକର, ବିଦ୍ୟତେ—(ବର୍ତ୍ତମାନ) ହୁଏ, ନ ହି—ନାହିଁ ଯେହେତୁରୁ, କଲ୍ୟାଣକୃତ୍—ପୁଣ୍ୟକାରୀ, କଶ୍ଚିତ୍—କେହି, ଦୁର୍ଗତିଂ—ମନ୍ଦଦଶାକୁ, ତାତ—(ବାତ୍ସଲ୍ୟସମ୍ବୋଧନ) ହେ ଅର୍ଜ୍ଜୁନ !, ଗଚ୍ଛତି—ପ୍ରାପ୍ତ ହୁଅନ୍ତି । ୪୦ ।

## ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ହେ ପାର୍ଥ ! ତାହାଙ୍କର ( ଯୋଗଭ୍ରଷ୍ଟ ବ୍ୟକ୍ତିଙ୍କର ) ଇହଲୋକ ବା ପରଲୋକରେ ବିନାଶ ନାହିଁ । କାହିଁକି ନା ହେ ତାତ ! ଶୁଭକାର୍ଯ୍ୟର ଅନୁଷ୍ଠାନକାରୀ କୌଣସି ବ୍ୟକ୍ତି ଦୁର୍ଗତିପ୍ରାପ୍ତ ହୁଅନ୍ତି ନାହିଁ । ୪୦ ।

## ବିଶଦବ୍ୟାଖ୍ୟା ।

ଯେଉଁମାନେ କର୍ମାନୁଷ୍ଠାନରେ ଅସମର୍ଥ ହୋଇ ଅଥବା ଇଚ୍ଛାପୂର୍ବକ କର୍ମ ଓ ଉପାସନା ତ୍ୟାଗ କରନ୍ତି, ସେମାନେ ଦେବଯାନ ବା ପିତୃଯାନର ଅଧିକାରୀ ହୁଅନ୍ତି ନାହିଁ । ସେହିମାନେ ଇହଲୋକରେ ନିନ୍ଦା ଓ ପରଲୋକରେ ନରକପ୍ରାପ୍ତ ହୁଅନ୍ତି । ମାତ୍ର ଯେଉଁମାନେ ଶାସ୍ତ୍ରବିହିତ ନିୟମ ଅନୁସାରେ ଯୋଗସାଧନରେ ଶ୍ରଦ୍ଧାବାନ୍ ହୋଇ କର୍ମାଦି ତ୍ୟାଗ କରନ୍ତି, ସେମାନଙ୍କର ଇହ ବା ପରଲୋକରେ କିଛିମାତ୍ର କ୍ଷତି ହେବ ନାହିଁ, ଅର୍ଥାତ୍ ସେ ଇହଲୋକରେ ନିନ୍ଦା ବା ପରଲୋକରେ ନରକପ୍ରାପ୍ତ ହୁଅନ୍ତି ନାହିଁ ଆଉ କର୍ମତ୍ୟାଗ କରିବାର ଅର୍ଥ ଏହି, ଯେ ନିଷ୍କାମଭାବରେ କର୍ମ କରିବେ । ନିଷ୍କାମକର୍ମଯୋଗ ବିଷୟରେ ଏହି ଗୀତାର ୨ୟ ଅଃ ୪୦ ଶ୍ଳୋକରେ "ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍" ଅର୍ଥାତ୍ 'ନିଷ୍କାମକର୍ମଯୋଗର ଅଳ୍ପମାତ୍ର ଅନୁଷ୍ଠିତ ହେଲେ, ଅନୁଷ୍ଠାନକାରୀ ମହତ୍ ଭୟରୁ ରକ୍ଷା ପାନ୍ତି' ଇତ୍ୟାଦି ଲେଖା ଅଛି । ତେବେ ଯେଉଁ ବ୍ୟକ୍ତି ମୃତ୍ୟୁ ପର୍ଯ୍ୟନ୍ତ ଶାସ୍ତ୍ରବିହିତ କର୍ମମାନ ନିଷ୍କାମଭାବରେ ଅନୁଷ୍ଠାନ କରଅଛନ୍ତି, ତାଙ୍କର କି ଦୁର୍ଗତି ହେବ ?

ଅର୍ଜ୍ଜୁନ ପୂର୍ବରୁ ଶିଷ୍ୟଭାବରେ ପ୍ରଶ୍ନ କରିଥିବାରୁ, ଶ୍ରୀଭଗବାନ୍ ଏ ଶ୍ଳୋକରେ 'ତାତ' ଏପରି ବାତ୍ସଲ୍ୟସମ୍ବୋଧନ କରିଅଛନ୍ତି । ୪୦ ।

Digitized by PPRACHIN, SOA

ଶ୍ଳୋକଃ ।

ପ୍ରାପ୍ୟ ପୁଣ୍ୟକୃତାଂ ଲୋକାନୁଷିତ୍ୱା ଶାଶ୍ୱତୀଃ ସମାଃ ।
ଶୁଚୀନାଂ ଶ୍ରୀମତାଂ ଗେହେ, ଯୋଗଭ୍ରଷ୍ଟୋଽଭିଜାୟତେ । ୪୧ ।

ଅନ୍ୱୟଃ ।

ଯୋଗଭ୍ରଷ୍ଟଃ ପୁଣ୍ୟକୃତାଂ ଲୋକାନ୍ ପ୍ରାପ୍ୟ (ତତ୍ର) ଶାଶ୍ୱତୀଃ ସମାଃ ଉଷିତ୍ୱା ଶୁଚୀନାଂ ଶ୍ରୀମତାଂ ଗେହେ ଅଭିଜାୟତେ । ୪୧ ।

ଟୀକା ।

ତର୍ହି କମସୌ ପ୍ରାପ୍ନୋତୀତ୍ୟପେକ୍ଷାୟାମାହ ପ୍ରାପ୍ୟେତି । ପୁଣ୍ୟକାରିଣାମଶ୍ୱମେଧାଦି ଯାଜିନାଂ ଲୋକାନ୍ ପ୍ରାପ୍ୟ ତତ୍ର ଶାଶ୍ୱତୀଃ ସମାଃ ବହୂନ୍ ସମ୍ବତ୍ସରାନ୍ ଉଷିତ୍ୱା ବାସମନୁଭୂୟ ଶୁଚୀନାଂ ସଦାଚାରାଣାଂ ଶ୍ରୀମତାଂ ଧନିନାଂ ଗେହେ ସ ଯୋଗଭ୍ରଷ୍ଟଃ ଜନ୍ମ ପ୍ରାପ୍ନୋତି । ୪୧ ।

ପଦବ୍ୟାଖ୍ୟା ।

ପ୍ରାପ୍ୟ—ପ୍ରାପ୍ତ ହୋଇ, ପୁଣ୍ୟକୃତାଂ—ପୁଣ୍ୟକାରୀମାନଙ୍କ, ଲୋକାନ୍—ଭୁବନକୁ, ଉଷିତ୍ୱା—ବାସ କରି, ଶାଶ୍ୱତୀଃ ସମାଃ—ଅନେକ ବର୍ଷ ପର୍ଯ୍ୟନ୍ତ, ଶୁଚୀନାଂ—ସଦାଚାରୀ, ଶ୍ରୀମତାଂ—ଧନମାନଙ୍କର, ଗେହେ—ଗୃହରେ, ଯୋଗଭ୍ରଷ୍ଟଃ—ଯୋଗରୁ ଭ୍ରଷ୍ଟ ହୋଇଥିବା ବ୍ୟକ୍ତି, ଅଭିଜାୟତେ—ଜନ୍ମଗ୍ରହଣ କରନ୍ତି । ୪୧ ।

ଅନୁବାଦ ।

ଯୋଗଭ୍ରଷ୍ଟ ବ୍ୟକ୍ତି, ପୁଣ୍ୟାତ୍ମାମାନଙ୍କର ପ୍ରାପ୍ୟ (ସ୍ୱର୍ଗାଦି) ଲୋକ ପ୍ରାପ୍ତ ହୋଇ, ସେଠାରେ ବହୁ ବର୍ଷଯାଏ ବାସ କରି, (ପୃଥିବୀରେ) ସଦାଚାରରତ ଧନଲୋକଙ୍କ ଗୃହରେ ଜନ୍ମଗ୍ରହଣ କରନ୍ତି । ୪୧ ।

ବିଶଦବ୍ୟାଖ୍ୟା ।

ଯୋଗୀ ଦୁଇ କାରଣରୁ ଯୋଗଭ୍ରଷ୍ଟ ହୁଅନ୍ତି । ଯଥା—୧ ବିଷୟବାସନାର ବଶୀଭୂତ ହୋଇ ମନର ଅସ୍ଥିରତା ହେତୁରୁ । ୨ ବିଷୟରେ ବୈରାଗ୍ୟ ଜନ୍ମିଥିଲେ ସୁଦ୍ଧା ପରମାତ୍ମାର ଅଲ୍ପତା ହେତୁରୁ ଯୋଗ ସିଦ୍ଧିରେ ଅକ୍ଷମ ହୋଇ ଯୋଗଭ୍ରଷ୍ଟ ହୁଅନ୍ତି । ଏ ଶ୍ଳୋକରେ ଭଗବାନ୍ ସେହି ପ୍ରଥମପ୍ରକାରର ଯୋଗଭ୍ରଷ୍ଟ ବ୍ୟକ୍ତିଙ୍କ କଥା କହୁଅଛନ୍ତି । ଉକ୍ତ (ପ୍ରଥମପ୍ରକାରର) ଯୋଗଭ୍ରଷ୍ଟମାନେ ଅର୍ଚ୍ଚିଃ ଆଦି ମାର୍ଗଦ୍ୱାରା ବ୍ରହ୍ମାଦି ଲୋକକୁ ଗମନ କରି, ସେହି୨ ଲୋକର ଅଧିଷ୍ଠାତା ଦେବଙ୍କ ପରମାତ୍ମାର ଇଚ୍ଛା ସମୟ ସେଠାରେ ବାସ କରି, ପୁଣି ଭୋଗ ଶେଷ ହେଲେ 'ପବିତ୍ର' ଗୃହକୁଳରେ ଜନ୍ମଗ୍ରହଣ କରନ୍ତି । କିନ୍ତୁ ଯେଉଁ ଧନଶାଳୀ ବ୍ୟକ୍ତି ପାପକାର୍ଯ୍ୟରେ ରତ ଥାନ୍ତି, ଯୋଗଭ୍ରଷ୍ଟ ବ୍ୟକ୍ତି ସେମାନଙ୍କ ଗୃହରେ ଜନ୍ମଗ୍ରହଣ କରନ୍ତି ନାହିଁ । ୪୧ ।

ଶ୍ଳୋକଃ ।

ଅଥବା ଯୋଗିନାମେବ, କୁଳେ ଭବତି ଧୀମତାଂ ।
ଏତଦ୍ଧି ଦୁର୍ଲଭତରଂ, ଲୋକେ ଜନ୍ମ ଯଦୀଦୃଶଂ । ୪୨ ।

Digitized by PPRACHIN, SOA

ଅନ୍ୱୟଃ ।

ଅଥବା ଧୀମତାଂ ଯୋଗିନାଂ ଏବ କୁଳେ (ଜାୟତେ) । ହି ଲୋକେ ଈଦୃଶଂ ଯତ୍ ଜନ୍ମ ଏତତ୍ ଦୁର୍ଲଭତରଂ ଭବତି । ୪୨ ।

ଟୀକା ।

ଅଳ୍ପକାଳାଭ୍ୟସ୍ତଯୋଗଭ୍ରଂଶେ ଗତିବିଶେଷମୁକ୍ତ୍ୱା ଚିରାଭ୍ୟସ୍ତଯୋଗଭ୍ରଂଶେ ପକ୍ଷାନ୍ତରମାହ, ଅଥବେତି । ଯୋଗନିଷ୍ଠାନାଂ ଧୀମତାଂ ଜ୍ଞାନିନାଂ ଏବ କୁଳେ ଜାୟତେ ନ ତୁ ପୂର୍ବୋକ୍ତାନାଂ ଅନାରୂଢ଼ଯୋଗାନାଂ କୁଳେ, ଏତତ୍ ଜନ୍ମ ସ୍ତୌତି । ଈଦୃଶଂ ଜନ୍ମ ଏତଦ୍ଧି ଲୋକେ ଦୁର୍ଲଭତରଂ ମୋକ୍ଷହେତୁତ୍ୱାତ୍ । ୪୨ ।

ପଦବ୍ୟାଖ୍ୟା ।

ଅଥବା—ଅବା, ଯୋଗିନାଂ ଏବ—କେବଳ ଯୋଗିମାନଙ୍କର, କୁଳେ—କୁଳରେ, ଭବତି—ହୁଏ, ଧୀମତାଂ—ବ୍ରହ୍ମବିଷୟିଣୀ ବୁଦ୍ଧିଯୁକ୍ତ, ଏତତ୍—ଏହା, ହି—ନିଶ୍ଚୟ, ଦୁର୍ଲଭତରଂ—ଅତ୍ୟନ୍ତ ଦୁର୍ଲଭ, ଲୋକେ—(ମର୍ତ୍ତ୍ୟ) ଲୋକରେ, ଜନ୍ମ ଯଦୀଦୃଶଂ—ଏପରି ଯେଉଁ ଜନ୍ମ । ୪୨ ।

ଅନୁବାଦ ।

ଅଥବା (ସେହି ଯୋଗଭ୍ରଷ୍ଟ ବ୍ୟକ୍ତି) (ବ୍ରହ୍ମବିଷୟିଣୀ) ବୁଦ୍ଧିଯୁକ୍ତ ଯୋଗିମାନଙ୍କ ଗୃହରେ କେବଳ ଜନ୍ମଗ୍ରହଣ କରନ୍ତି । ଇହଲୋକରେ ଏପ୍ରକାର ଯେଉଁ ଜନ୍ମ ତାହା ଅତି ଦୁର୍ଲ୍ଲଭ ଅଟେ । ୪୨ ।

ବିଶଦବ୍ୟାଖ୍ୟା ।

ଏ ଶ୍ଳୋକରେ ଭଗବାନ୍ ଦ୍ୱିତୀୟ ପ୍ରକାର ଯୋଗଭ୍ରଷ୍ଟ ବ୍ୟକ୍ତିଙ୍କର ଯେପରି ଗତି ହୁଏ ତାହା କହୁଅଛନ୍ତି ।

ଯେମାନେ କେବଳ ବ୍ରହ୍ମବିଦ୍ୟାବିଷୟିଣୀ ବୁଦ୍ଧିଯୁକ୍ତ ଯୋଗିଙ୍କ ଗୃହରେ ଜନ୍ମ ହୁଅନ୍ତି । କାହିଁକି ନା ମରଣ ସମୟ ପର୍ଯ୍ୟନ୍ତ ତାଙ୍କର ବିଷୟରେ ବୈରାଗ୍ୟ ପ୍ରବଳ ଥିବାରୁ, ମୃତ୍ୟୁ ପରେ ଅନିତ୍ୟ ସ୍ୱର୍ଗଲୋକ ବା ବ୍ରହ୍ମଲୋକକୁ ନ ଯାଇ, ଯେମାନେ କେବଳ ଯୋଗିଙ୍କ ଗୃହରେ ଜନ୍ମଗ୍ରହଣ କରନ୍ତି । ବିଷୟଭୋଗର ଉପାୟସ୍ୱରୂପ ଧନିଗୃହରେ ବା ସ୍ୱର୍ଗାଦି ଲୋକରେ ତାଙ୍କୁ ରହିବାକୁ ହୁଏ ନାହିଁ, ସେଥିପାଇଁ ବ୍ରହ୍ମବେତ୍ତା ଯୋଗିଗୃହରେ ସେ ଜନ୍ମଗ୍ରହଣ କରନ୍ତି । ଦରିଦ୍ର ବ୍ରହ୍ମବେତ୍ତା ଯୋଗିଗୃହରେ ଏପରି ଜନ୍ମ ଲଭିବା ଅତି ଦୁର୍ଲ୍ଲଭ । କାହିଁକି ନା ଧନିଗୃହରେ ଜନ୍ମିଲେ, ଉତ୍ତମ ଆହାର ବିହାର ଓ ଯୋଗବିରୁଦ୍ଧ ଅନେକ କାରଣ ଉପସ୍ଥିତ ହୁଅନ୍ତି, ମାତ୍ର ଯୋଗିଗୃହରେ ସେ ସବୁ ଉପଦ୍ରବର କାରଣ କଛମାତ୍ର ନାହିଁ । ୪୨ ।

ଶ୍ଳୋକଃ ।

ତତ୍ର ତଂ ବୁଦ୍ଧିସଂଯୋଗଂ, ଲଭତେ ପୌର୍ବଦେହିକଂ ।
ଯତତେ ଚ ତତୋଭୂୟଃ, ସଂସିଦ୍ଧୌ କୁରୁନନ୍ଦନ । ୪୩ ।

ଅନ୍ୱୟଃ ।

ହେ କୁରୁନନ୍ଦନ ! ତତ୍ର ତଂ ପୌର୍ବଦେହିକଂ ବୁଦ୍ଧିସଂଯୋଗଂ ଲଭତେ । ତତଃ ଚ ସଂସିଦ୍ଧୌ ଭୂୟଃ ଯତତେ । ୪୩ ।

Digitized by PPRACHIN, SOA

### ଟୀକା ।

ତତଃ କିମତ ଆହ, ତତ୍ରେତି ସାର୍ଦ୍ଧେନ । ସ ତତ୍ର ଦ୍ୱିପ୍ରକାରେଽପି ଜନ୍ମନି, ପୂର୍ବଦେହଭବଂ ପୌର୍ବଦେହିକଂ ତମେବ ବ୍ରହ୍ମବିଷୟୟା ବୁଦ୍ଧ୍ୟା ସଂଯୋଗଂ ଲଭତେ । ତତଶ୍ଚ ଭୂୟୋଽଧିକଂ ସଂସିଦ୍ଧୌ ମୋକ୍ଷେ ପ୍ରଯତ୍ନଂ କରୋତି । ୪୩ ।

### ପଦବ୍ୟାଖ୍ୟା ।

ତତ୍ର—ସେହି (ଧନୀ ବା ଯୋଗୀ ଦୁଇକୁଳ) ଜନ୍ମରେ, ତଂ ବୁଦ୍ଧିସଂଯୋଗଂ—ସେହି ବ୍ରହ୍ମବିଷୟିଣୀ ବୁଦ୍ଧିରେ ସଂଯୋଗରୂ, ଲଭତେ—ପ୍ରାପ୍ତ ହୁଅନ୍ତି, ପୌର୍ବଦେହିକଂ—ପୂର୍ବଜନ୍ମଦେହଜାତ, ଯତତେ ଚ—ପୁଣି ଯତ୍ନ କରନ୍ତି, ତତଃ—ତହିଁ ଉତ୍ତାରୁ, ଭୂୟଃ—ବାରମ୍ବାର ବା ଅଧିକ, ସଂସିଦ୍ଧୌ—ଉତ୍ତମ ସିଦ୍ଧି ବିଷୟରେ, କୁରୁନନ୍ଦନ—ହେ କୁରୁବଂଶଜ (ଅର୍ଜ୍ଜୁନ!) । ୪୩ ।

### ଅନୁବାଦ ।

ହେ କୁରୁନନ୍ଦନ ! ଯୋଗଭ୍ରଷ୍ଟ ବ୍ୟକ୍ତି ଜନ୍ମଗ୍ରହଣ କରିବା ମାତ୍ରେ, ତାଙ୍କର ପୂର୍ବଦେହଜାତ ସଂସ୍କାରସ୍ୱରୂପ ଜ୍ଞାନସାଧନୀ ବୁଦ୍ଧି ଲାଭ କରନ୍ତି ଓ ତହିଁ ଉତ୍ତାରୁ ମୁକ୍ତି ବିଷୟରେ ଅଧିକ ଯତ୍ନ କରନ୍ତି । ୪୩ ।

### ବିଶଦବ୍ୟାଖ୍ୟା ।

ଲୋକଙ୍କର ସତ୍‌କର୍ମ ବା ଅସତ୍‌କର୍ମରେ ଯେଉଁ ପ୍ରବୃତ୍ତି ହୁଏ, ତାହା ତାଙ୍କ ଇହଜନ୍ମର ଇଚ୍ଛାର ବିକାଶରୁ ହୁଏ ନାହିଁ । ପୂର୍ବଜନ୍ମକୃତ ଶୁଭାଶୁଭ ସଂସ୍କାରଦ୍ୱାରା ସେ ପ୍ରବୃତ୍ତି ପ୍ରେରିତ ହୋଇ, ଲୋକଙ୍କୁ ସତ୍ ବା ଅସତ୍‌କର୍ମରେ ଲିପ୍ତ କରେ । ମୃତ୍ୟୁ ହେଲେ ସ୍ଥୂଳଦେହ ମାତ୍ର ନଷ୍ଟ ହୁଏ, କିନ୍ତୁ ମନୋମୟ ସୂକ୍ଷ୍ମଶରୀର ନଷ୍ଟ ହୁଏ ନାହିଁ । ଦେହ ଧାରଣବେଳେ ମନୁଷ୍ୟ ସଙ୍କଳ୍ପପୂର୍ବକ ଯେଉଁ ଶୁଭ ବା ଅଶୁଭ କର୍ମ କରନ୍ତି, ସେହି କର୍ମଫଳଗୁଡ଼ିକ ସଂସ୍କାରରୂପରେ ମନୋମୟ ସୂକ୍ଷ୍ମଶରୀରରେ ଅଙ୍କିତ ଥାଏ । ପରବର୍ତ୍ତୀ ଜନ୍ମରେ ସେହି ସଂସ୍କାର 'ଅଦୃଷ୍ଟ' ହୋଇ, ଆପଣାର ସ୍ୱଭାବ ଅନୁସାରେ ଦେହକୁ କର୍ମରେ ପ୍ରବୃତ୍ତ କରାଏ । ଯେଉଁ ବ୍ୟକ୍ତି ପୂର୍ବଜନ୍ମରେ ମନ୍ଦକାର୍ଯ୍ୟରେ ସଙ୍କଳ୍ପପୂର୍ବକ ରତ ହୋଇଥାଏ, ସେହି ମନ୍ଦକର୍ମର ଫଳ ଅଦୃଷ୍ଟରୂପରେ ତାକୁ ପରଜନ୍ମରେ ଅଧିକ ମନ୍ଦକର୍ମରେ ପ୍ରବୃତ୍ତ କରେ । ଆଉ ଯେ ପୂର୍ବଜନ୍ମରେ ଶୁଭକାର୍ଯ୍ୟ କରିଥାଏ, ତାହାର ସେହି କର୍ମଫଳ ଅଦୃଷ୍ଟ ହୋଇ, ତାକୁ ପରଜନ୍ମରେ ଅନାୟାସରେ ଶୁଭକାର୍ଯ୍ୟ ସିଦ୍ଧ କରାଏ ଓ କ୍ରମେ ସେ ସେହି ମାର୍ଗରେ ଅଧିକ ଅଗ୍ରସର ହୁଏ । ସେହି କାରଣରୁ ଯୋଗଭ୍ରଷ୍ଟ ବ୍ୟକ୍ତି ବ୍ରହ୍ମବେତ୍ତା ଯୋଗିଗୃହରେ ଜନ୍ମଗ୍ରହଣ କରି, ପୂର୍ବଜନ୍ମସାଧିତ ଯୋଗାଙ୍ଗରେ ଅନାୟାସରେ ସିଦ୍ଧିଲାଭ କରି, ମୋକ୍ଷବିଷୟରେ ଯତ୍ନଶୀଳ ହୁଅନ୍ତି, ଅର୍ଥାତ୍ ଅବଶିଷ୍ଟ ଯୋଗାଂଶ ସାଧନରେ ତତ୍ପର ହୁଅନ୍ତି ।

ମହାରାଜ 'କୁରୁ' ଭାରତବର୍ଷରେ ଅତି ପବିତ୍ର ଏବଂ ଖ୍ୟାତ ଚକ୍ରବର୍ତ୍ତୀ ଥିଲେ । ଅର୍ଜ୍ଜୁନଙ୍କୁ 'କୁରୁନନ୍ଦନ' ସମ୍ବୋଧନଦ୍ୱାରା ଶ୍ରୀଭଗବାନ୍ ସଙ୍କେତରେ କହିଲେ, ଯେ ତୁମ୍ଭେ ପ୍ରଥମପ୍ରକାର ଯୋଗଭ୍ରଷ୍ଟ ବ୍ୟକ୍ତି, ପବିତ୍ର ରାଜକୁଳରେ ଜନ୍ମଗ୍ରହଣ କରିଅଛ, ତୁମ୍ଭେ ଯତ୍ନ କଲେ ଜ୍ଞାନଲାଭ କରି ପାରିବ । ୪୩ ।

## ଶ୍ଳୋକଃ ।

ପୂର୍ବାଭ୍ୟାସେନ ତେନୈବ, ହ୍ରିୟତେ ହ୍ୟବଶୋଽପି ସଃ ।
ଜିଜ୍ଞାସୁରପି ଯୋଗସ୍ୟ, ଶବ୍ଦବ୍ରହ୍ମାତିବର୍ତ୍ତତେ । ୪୪ ।

## ଅନ୍ୱୟଃ ।

ସଃ ଅବଶଃ ଅପି ତେନ ଏବ ପୂର୍ବାଭ୍ୟାସେନ (ବ୍ରହ୍ମନିଷ୍ଠଃ) ହ୍ରିୟତେ । ହି ଯୋଗସ୍ୟ ଜିଜ୍ଞାସୁଃ ଅପି ଶବ୍ଦବ୍ରହ୍ମ ଅତିବର୍ତ୍ତତେ । ୪୪ ।

## ଟୀକା ।

ତତ୍ର ହେତୁଃ, ପୂର୍ବେତି । ତେନୈବ ପୂର୍ବଦେହକୃତାଭ୍ୟାସେନାବଶୋଽପି କୁତଶ୍ଚିଦନ୍ତରାୟାଦନିଚ୍ଛନ୍ନପି ସ ହ୍ରିୟତେ ବିଷୟେଭ୍ୟଃ ପରାବୃତ୍ୟ ବ୍ରହ୍ମନିଷ୍ଠଃ କ୍ରିୟତେ । ତଦେବ ପୂର୍ବାଭ୍ୟାସବଶେନ ପ୍ରଯତ୍ନଂ କୁର୍ବନ୍ ଶନୈର୍ମୁଚ୍ୟତ ଇତି ଇମଂ ଅର୍ଥଂ କୈମୁତ୍ୟନ୍ୟାୟେନ ଦର୍ଶୟତି । ଜିଜ୍ଞାସୁରିତି ସାର୍ଦ୍ଧେନ । ଯୋଗସ୍ୟ ସ୍ୱରୂପଂ ଜିଜ୍ଞାସୁରେବ କେବଲଂ, ନତୁ ପ୍ରାପ୍ତଯୋଗଃ ଏବମ୍ଭୂତୋ ଯୋଗେ ପ୍ରବୃତ୍ତମାତ୍ରୋଽପି ପାପବଶାତ୍ ଯୋଗଭ୍ରଷ୍ଟୋଽପି ଶବ୍ଦବ୍ରହ୍ମ ବେଦମତିବର୍ତ୍ତତେ ବେଦୋକ୍ତକର୍ମଫଲାନ୍ୟତିକ୍ରାମତି ତେଭ୍ୟୋଽଧିକଂ ଫଲଂ ପ୍ରାପ୍ୟ ମୁଚ୍ୟତେ ଇତ୍ୟର୍ଥଃ । ୪୪ ।

## ପଦବ୍ୟାଖ୍ୟା ।

ପୂର୍ବାଭ୍ୟାସେନ—ପୂର୍ବଜନ୍ମକୃତ ଯୋଗାଭ୍ୟାସଦ୍ୱାରା, ତେନୈବ—ସେହି, ହ୍ରିୟତେ—(ବ୍ରହ୍ମନିଷ୍ଠ) ହୁଅନ୍ତି, ହି—ନିଶ୍ଚୟ, ଅବଶୋଽପି ସଃ—(କୌଣସି କାରଣରୁ) ଅନିଚ୍ଛୁକ ହେଲେ ମଧ୍ୟ, ଜିଜ୍ଞାସୁଃ ଅପି—(ସ୍ୱରୂପ) ଜାଣିବାକୁ ଇଚ୍ଛୁକ, ଯୋଗସ୍ୟ—ଯୋଗର, ଶବ୍ଦବ୍ରହ୍ମ—ବେଦ—ଅର୍ଥାତ୍ ବେଦୋକ୍ତ କର୍ମଫଳ, ଅତିବର୍ତ୍ତତେ—ଅତିକ୍ରମ କରନ୍ତି ଅର୍ଥାତ୍ ମୁକ୍ତ ହୋଇଯାନ୍ତି । ୪୪ ।

## ଅନୁବାଦ ।

(ଯୋଗଭ୍ରଷ୍ଟ ବ୍ୟକ୍ତି) କୌଣସି କାରଣବଶରୁ ଅନିଚ୍ଛୁକ ହେଲେ ମଧ୍ୟ, ପୂର୍ବଜନ୍ମକୃତ ଅଭ୍ୟାସଦ୍ୱାରା ବ୍ରହ୍ମନିଷ୍ଠ ହୁଅନ୍ତି ଏବଂ ଯୋଗର ସ୍ୱରୂପ ମାତ୍ର ଜାଣିବାକୁ ଇଚ୍ଛୁକ ହେଲେହେଁ, ବେଦୋକ୍ତ କର୍ମଫଳ ଅତିକ୍ରମ କରି ମୁକ୍ତ ହୁଅନ୍ତି । ୪୪ ।

## ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନ ମନେ କରିବେ, ଯେ ଯେଉଁ ଯୋଗଭ୍ରଷ୍ଟ ବ୍ୟକ୍ତି ଦରିଦ୍ର ବ୍ରହ୍ମଜ୍ଞାନୀ ଯୋଗୀ ଗୃହରେ ଜନ୍ମଗ୍ରହଣ କରିବେ, ତାଙ୍କର ଯୋଗସିଦ୍ଧିରେ ବ୍ୟାଘାତ ନ ହୋଇପାରେ ସତ, ମାତ୍ର ଯେଉଁ ଯୋଗଭ୍ରଷ୍ଟ ବ୍ୟକ୍ତି ଧନୀଗୃହରେ ଜାତ ହେବେ, ତାଙ୍କର ଆବାଲ୍ୟରୁ ନାନାପ୍ରକାର ଆମୋଦ ପ୍ରମୋଦ ଓ ବିଷୟ ଐଶ୍ୱର୍ଯ୍ୟରେ ଦିନପାତ ହେଉଥିବାରୁ, ଯୋଗରେ ଯତ୍ନ କରିବାକୁ ତାଙ୍କୁ ଅବକାଶ ମିଳିବ କିପରି ? ଏଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ ଯୋଗଭ୍ରଷ୍ଟ ବ୍ୟକ୍ତି ଯତ୍ନ କରିବାକୁ ଇଚ୍ଛା ନ କଲେ ସୁଦ୍ଧା, ପୂର୍ବଜନ୍ମର ଅଭ୍ୟାସ ତାଙ୍କୁ ବଳପୂର୍ବକ ଯୋଗରେ ପ୍ରବୃତ୍ତ କରାଇ ବ୍ରହ୍ମନିଷ୍ଠ କରାଏ । ବିନାଯତ୍ନରେ ତାହାଙ୍କ ମନ ତତ୍ତ୍ୱ ବିଷୟ ଜାଣିବାକୁ ବ୍ୟଗ୍ର ହୁଏ । ତାଙ୍କର ସେହି ତତ୍ତ୍ୱଜ୍ଞାନଇଚ୍ଛା ଏପରି ବଳବତୀ ହୁଏ, ଯେ ବେଦବିହିତ କର୍ମସମୂହର ଫଳ ତାହାଙ୍କୁ କୌଣସି ମତରେ ପରାଭବ କରି ପାରେ ନାହିଁ, ଅର୍ଥାତ୍ ସେ ଅବଲମ୍ବରେ ବେଦୋକ୍ତ କର୍ମଫଳ ଅପେକ୍ଷା ଅଧିକ ଫଳ (ମୁକ୍ତି) ଲାଭ କରନ୍ତି । ଏ ଶ୍ଳୋ-

Digitized by PPRACHIN, SOA

କରେ 'ଜିଜ୍ଞାସୁ' ଅର୍ଥାତ୍ 'ଜାଣିବାକୁ ଇଚ୍ଛୁକ ବ୍ୟକ୍ତି' ଏପରି ପଦ ପ୍ରୟୋଗ କରିବାଦ୍ୱାରା ଶ୍ରୀଭ-ଗବାନ୍ ସଙ୍କେତରେ ଏହି କଥା କହିଲେ, ଯେ ହେ ଅର୍ଜୁନ ! ତୁମ୍ଭେ ପୂର୍ବଜନ୍ମରେ ଯୋଗଭ୍ରଷ୍ଟ ହୋଇ ଏବେ ରାଜକୁଳରେ ଜନ୍ମଗ୍ରହଣ କରିଅଛ, ପୁଣି ସମସ୍ତ ଭାରତବର୍ଷରେ ଚକ୍ରବର୍ତ୍ତୀ ହେବାର ସୁବିଧା ତୁମ୍ଭ ସମ୍ମୁଖରେ ଉପସ୍ଥିତ, ତଥାପି ତୁମ୍ଭର ପୂର୍ବଜନ୍ମକୃତ ଅଭ୍ୟାସ ଏ ବିଷୟ-ସୁଖରୁ ତୁମ୍ଭଙ୍କୁ ବିରତ କରି 'ତତ୍ତ୍ୱଜିଜ୍ଞାସୁ' କରିଅଛି ଏବଂ ଏହି ଜିଜ୍ଞାସାବଳରେ ତୁମ୍ଭେ ବେଦୋକ୍ତ ସମସ୍ତ କର୍ମ ଫଳଠାରୁ ଶ୍ରେଷ୍ଠ ମୁକ୍ତି ଲାଭ କରିପାରିବ । ୪୪ ।

ଶ୍ଳୋକଃ ।

ପ୍ରଯତ୍ନାଦ୍ୟତମାନସ୍ତୁ, ଯୋଗୀ ସଂଶୁଦ୍ଧକିଲ୍ବିଷଃ ।
ଅନେକଜନ୍ମସଂସିଦ୍ଧ,ସ୍ତତୋ ଯାତି ପରାଂ ଗତିଂ । ୪୫ ।

ଅନ୍ୱୟଃ ।

ଯତମାନଃ ପ୍ରଯତ୍ନାତ୍ ସଂଶୁଦ୍ଧକିଲ୍ବିଷଃ, ଯୋଗୀ ତୁ ଅନେକଜନ୍ମସଂସିଦ୍ଧଃ, ତତଃ ପରାଂ ଗତିଂ ଯାତି । ୪୫ ।

ଟୀକା ।

ଯଦୈବଂ ମନ୍ଦପ୍ରଯତ୍ନୋଽପି ଯୋଗୀ ପରାଂ ଗତିଂ ଯାତି ତଦା ଯସ୍ତୁ ଯୋଗୀ ପ୍ରଯତ୍ନାଦୁତ୍ତରୋତ୍ତରମଧିକଂ ଯୋଗେ ଯତମାନଃ ଯତ୍ନଂ କୁର୍ବନ୍ ଯୋଗେନୈବ ସଂଶୁଦ୍ଧକିଲ୍ବିଷୋ ବିଧୂତପାପଃ ସୋଽନେକେଷୁ ଜନ୍ମସୁ ଉପଚିତେନ ଯୋଗେନ ସଂସିଦ୍ଧଃ ସମ୍ୟକ୍ ଜ୍ଞାନୀ ଭୂତ୍ୱା ତତଃ ଶ୍ରେଷ୍ଠାଂ ଗତିଂ ଯାତୀତି କିଂ ବକ୍ତବ୍ୟମିତ୍ୟର୍ଥଃ । ୪୫ ।

ପଦବ୍ୟାଖ୍ୟା ।

ପ୍ରଯତ୍ନାତ୍—ବିଶେଷ ଯତ୍ନରୁ, ଯତମାନଃ—ଯତ୍ନଶୀଳ, ତୁ—ପୁଣି, ଯୋଗୀ—ଯୋଗାଭ୍ୟାସୀ, ସଂଶୁଦ୍ଧକିଲ୍ବିଷଃ—ନିଷ୍ପାପ, ଅନେକଜନ୍ମସଂସିଦ୍ଧଃ—ଅନେକ ଜନ୍ମରେ ସିଦ୍ଧିଲାଭ କରି, ତତଃ—ତହିଁ ଉତ୍ତାରୁ, ଯାତି—ପ୍ରାପ୍ତ ହୁଅନ୍ତି, ପରାଂ ଗତିଂ—ଶ୍ରେଷ୍ଠ ଗତିକୁ ( ମୋକ୍ଷକୁ ) । ୪୫ ।

ଅନୁବାଦ ।

ଯତ୍ନଶୀଳ ଯୋଗୀ କ୍ରମେ କ୍ରମେ ଅଧିକ ଯତ୍ନ କରିବାଦ୍ୱାରା ନିଷ୍ପାପ ହୋଇ, ଅନେକ ଜନ୍ମ-ରେ ସିଦ୍ଧିଲାଭ କରି ତହିଁ ଉତ୍ତାରୁ ମୁକ୍ତିଲାଭ କରନ୍ତି । ୪୫ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ଯୋଗଭ୍ରଷ୍ଟ ବ୍ୟକ୍ତି ଧନିକୁଳରେ ଜନ୍ମିଥିବାରୁ ଯତ୍ନ କରିବାକୁ ଅନିଚ୍ଛୁକ ହେଲେ ମଧ୍ୟ, ପୂର୍ବଜନ୍ମକୃତ ଅଭ୍ୟାସବଳରେ ବ୍ରହ୍ମନିଷ୍ଠ ହୁଅନ୍ତି ବୋଲି କୁହାଯାଇଅଛି । ବର୍ତ୍ତମାନ ଦରିଦ୍ର ବ୍ରହ୍ମଜ୍ଞାନୀ ଗୃହରେ ଜନ୍ମିଥିବା ଯୋଗଭ୍ରଷ୍ଟର କଥା କହୁଅଛନ୍ତି ।

ଦରିଦ୍ର ବ୍ରହ୍ମବେତ୍ତା ଯୋଗୀ ଗୃହରେ ଜନ୍ମିଥିବା ଯୋଗଭ୍ରଷ୍ଟ ବ୍ୟକ୍ତି, ଅବସ୍ଥା ଅନୁକୂ-ଳରେ ଯୋଗରେ ଯତ୍ନଶୀଳ ହୁଅନ୍ତି । ସେ ପୂର୍ବଜନ୍ମ ଅପେକ୍ଷା ଅଧିକ ଯତ୍ନ କରିବାରୁ ତାଙ୍କର ପାପବାସନା ନିବୃତ୍ତ ହୋଇଯାଏ, ତତ୍ପରେ ତାଙ୍କର ବ୍ରହ୍ମସାକ୍ଷାତ୍କାରପାଇଁ ନିର୍ମଳ ବୁଦ୍ଧିର ଉଦୟ ହୁଏ । ତହିଁ ଉତ୍ତାରୁ ସେହି ନିର୍ମଳ ବୁଦ୍ଧି ସାହାଯ୍ୟରେ ସେ ବ୍ରହ୍ମଜିଜ୍ଞାସୁ ଅର୍ଥାତ୍ ବ୍ରହ୍ମ-ଜ୍ଞାନର ଅଭିଳାଷୀ ହୁଅନ୍ତି । ସେହି ଜିଜ୍ଞାସାବଳରେ ସେ ସିଦ୍ଧିଲାଭ କରନ୍ତି । ଏହିପରି



Digitized by PPRACHIN, SOA

ଅନେକ ଜନ୍ମରେ ଯେ ମୁକ୍ତିଲାଭ କରନ୍ତି, ଏହା କ ଆଉ କହିବାକୁ ହେବ ? ଅର୍ଥାତ୍ ଯତ୍ନ ନ କରୁଥିବା ବ୍ୟକ୍ତି ଯେତେବେଳେ ପୂର୍ବ ୨ ଜନ୍ମମାନଙ୍କର ଅଭ୍ୟାସବଳରେ ତତ୍ତ୍ୱଜିଜ୍ଞାସୁ ହୋଇ, ବେଦୋକ୍ତ କର୍ମଫଳ ଅପେକ୍ଷା ଅଧିକ ଫଳଲାଭ କରନ୍ତି, ସେତେବେଳେ ଯତ୍ନଶୀଳ ଯୋଗୀ, ଯେ ଯତ୍ନବଳରେ ନିଷ୍ପାପ ହୋଇ ଅନେକ ଜନ୍ମ ପରେ ସିଦ୍ଧିଲାଭ କରି ମୁକ୍ତି ପ୍ରାପ୍ତ ହେବେ, ତହିଁରେ ଆଉ ସନ୍ଦେହ କଣ ?

ଅପେକ୍ଷାକୃତ ଅସମ୍ଭବ ଘଟନା ଘଟିଲା ଉତ୍ତାରୁ ସମ୍ଭାବନୀୟ ଘଟଣାକଥା ନ କହିଲେ ମଧ୍ୟ ଚଳେ, ଏହି ରୀତିକୁ ସଂସ୍କୃତ ସାହିତ୍ୟରେ 'କୈମୁତିକ' ନ୍ୟାୟ କହନ୍ତି । ତାହାର ଉ-ଦାହରଣ, ଯଥା,—ଜଣେ ଲୋକ ବିଦେଶକୁ ଯିବା ଉଦ୍ଦେଶ୍ୟରେ କେତେକ ପିଷ୍ଟକ ସମ୍ବଳ-ରୂପେ ସଙ୍ଗରେ ନେଇ ଏକ ଗୃହସ୍ଥ ଘରେ ଅତିଥି ହେଲେ । ପିଷ୍ଟକ ବନ୍ଧା ଥିବା ପୋଟଳାଟି ଖଣ୍ଡିଏ ଦଣ୍ଡ ବା ଯଷ୍ଟିରେ ସଲଗ୍ନ କରି ଗୃହସ୍ଥର ଘରେ ରଖାଇଲେ । ପରଦିନ ପ୍ରଭାତରେ ଗୃହସ୍ଥ ଆସି ଅତିଥିକୁ କହିଲେ, 'ଆପଣଙ୍କ ଯଷ୍ଟି ମୂଷିକ ଭକ୍ଷଣ କରିଅଛି' । ଗୃହସ୍ଥ ପିଷ୍ଟକକଥା କିଛି ମାତ୍ର ଉଲ୍ଲେଖ କଲେ ନାହିଁ । ମାତ୍ର ଯେଉଁ ମୂଷିକ 'ଦଣ୍ଡ' (ଯଷ୍ଟି) ଭକ୍ଷଣ କଲା, ସେ ଯେ ପିଷ୍ଟକ ଭକ୍ଷଣ କରିଥିବ ଏଥିରେ ସନ୍ଦେହ ନାହିଁ ବୋଲି, ଅତିଥି କିଛି ନ କହି ସେ ସ୍ଥାନରୁ ଚାଲିଗଲେ । ୪୫ ।

ଶ୍ଳୋକଃ ।

* ତପସ୍ୱିଭ୍ୟୋଽଧିକୋ ଯୋଗୀ, ଜ୍ଞାନିଭ୍ୟୋଽପି ମତୋଽଧିକଃ ।
କର୍ମିଭ୍ୟଶ୍ଚାଧିକୋ ଯୋଗୀ, ତସ୍ମାଦ୍ୟୋଗୀ ଭବାର୍ଜୁନ । ୪୬ ।

ଅନ୍ୱୟଃ ।

ହେ ଅର୍ଜୁନ ! ଯୋଗୀ ତପସ୍ୱିଭ୍ୟଃ ଅଧିକଃ ଜ୍ଞାନିଭ୍ୟଃ ଅପି ଅଧିକଃ ମତଃ ଚ କର୍ମିଭ୍ୟଃ ଯୋଗୀ ଅଧିକଃ ତସ୍ମାତ୍ (ତ୍ୱଂ) ଯୋଗୀ ଭବ । ୪୬ ।

ଟୀକା ।

ଯସ୍ମାଦେବଂ ତସ୍ମାତ୍, ତପସ୍ୱିଭ୍ୟ ଇତି । କୃଚ୍ଛ୍ରଚାନ୍ଦ୍ରାୟଣାଦିତପୋନିଷ୍ଠେଭ୍ୟୋଽପି ଜ୍ଞାନିଭ୍ୟଃ ଶାସ୍ତ୍ରଜ୍ଞାନବଦ୍ଭ୍ୟୋଽପି କର୍ମିଭ୍ୟଃ ଇଷ୍ଟାପୂର୍ତ୍ତାଦିକର୍ମକାରିଭ୍ୟୋଽପି ଯୋଗୀ ଶ୍ରେଷ୍ଠୋମମାଭିମତଃ ତସ୍ମାତ୍ତ୍ୱଂ ଯୋଗୀ ଭବ । ୪୬ ।

ପଦବ୍ୟାଖ୍ୟା ।

ତପସ୍ୱିଭ୍ୟଃ—ତପସ୍ୟାକାରୀମାନଙ୍କ ଅପେକ୍ଷା, ଅଧିକଃ ଯୋଗୀ—ଯୋଗୀ ଅଧିକ ଅଟନ୍ତି, ଜ୍ଞାନିଭ୍ୟଃ ଅପି—ଶାସ୍ତ୍ରଜ୍ଞମାନଙ୍କ ଅପେକ୍ଷା ମଧ୍ୟ, ମତୋଽଧିକଃ—ଆମ୍ଭ ମତରେ ଅଧିକ, କର୍ମିଭ୍ୟଶ୍ଚ—ପୁଣି କର୍ମାନୁଷ୍ଠାନକାରୀମାନଙ୍କ ଅପେକ୍ଷା, ଅଧିକୋ ଯୋଗୀ—ଯୋଗୀ ଅଧିକ ଅଟନ୍ତି, ତସ୍ମାତ୍—ସେହି ହେତୁରୁ, ଯୋଗୀ ଭବ—(ତୁମ୍ଭେ) ଯୋଗୀ ହୁଅ, ଅର୍ଜୁନ—ହେ ଅର୍ଜୁନ ! । ୪୬ ।

ଅନୁବାଦ ।

ହେ ଅର୍ଜୁନ ! ଆମ୍ଭ ମତରେ ତତ୍ତ୍ୱଜ୍ଞାନୀ ଯୋଗୀ, ତପସ୍ୱୀମାନଙ୍କ ଅପେକ୍ଷା ଶ୍ରେଷ୍ଠ, ପରୋକ୍ଷଜ୍ଞାନୀମାନଙ୍କଠାରୁ ମଧ୍ୟ ଶ୍ରେଷ୍ଠ ଏବଂ କର୍ମୀମାନଙ୍କ ଅପେକ୍ଷା ଶ୍ରେଷ୍ଠ ଅଟନ୍ତି । ସେହି ହେତୁରୁ ତୁମ୍ଭେ ଯୋଗୀ ହୁଅ । ୪୬ ।

ବିଶଦବ୍ୟାଖ୍ୟା ।

ଯେଉଁମାନେ କୃଚ୍ଛ୍ରଚାନ୍ଦ୍ରାୟଣାଦି ବ୍ରତରୂପ ତପସ୍ୟା କରନ୍ତି ଓ ଯେଉଁମାନେ ପରମାତ୍ମାଙ୍କୁ ଶାସ୍ତ୍ରାଦି ବଚନଦ୍ୱାରା କେବଳ ପରୋକ୍ଷ (ଅସାକ୍ଷାତ୍) ଜ୍ଞାନରେ ଜାଣନ୍ତି, ଏବଂ ଯେଉଁମାନେ ଯାଗ ଯଜ୍ଞାଦି ବେଦୋକ୍ତ କର୍ମରେ ବ୍ୟସ୍ତ, ସେ ସମସ୍ତଙ୍କ ଅପେକ୍ଷା ବ୍ରହ୍ମଜ୍ଞାନୀ (ମୁକ୍ତିପିପାସୁ ଯୋଗିବ୍ୟକ୍ତି) ଶ୍ରେଷ୍ଠ ବୋଲି ଆମ୍ଭେ ଜାଣୁଁ । କାହିଁକି ନା ତପସ୍ୱୀ, ପରୋକ୍ଷଜ୍ଞାନୀ ଓ କର୍ମୀ ଏମାନେ କେହି ମୁକ୍ତିର ଅଧିକାରୀ ନୁହନ୍ତି । ସେମାନେ କେବଳ ଅନିତ୍ୟ ବୈଷୟିକ ଫଳର ପ୍ରାର୍ଥୀ । ମାତ୍ର ଯୋଗିବ୍ୟକ୍ତି ତତ୍ତ୍ୱଜ୍ଞାନ ଲାଭକରି କର୍ମଫଳର ଆଧାରସ୍ୱରୂପ ମନକୁ ବାସନାସହିତ ଲୟପୂର୍ବକ ଜୀବନ୍ମୁକ୍ତି ଲାଭ କରି ପାରନ୍ତି । ଅତଏବ ହେ ଅର୍ଜୁନ! ତୁମ୍ଭେ ସେହି ମୋକ୍ଷସାଧନର ପ୍ରଧାନ ଉପାୟସ୍ୱରୂପ ଯୋଗର ସାଧନାରେ ପ୍ରବୃତ୍ତ ହୁଅ । ୪୬ ।

ଶ୍ଳୋକଃ ।

* ଯୋଗିନାମପି ସର୍ବେଷାଂ, ମଦ୍ଗତେନାନ୍ତରାତ୍ମନା ।
ଶ୍ରଦ୍ଧାବାନ୍ ଭଜତେ ଯୋ ମାଂ, ସ ମେ ଯୁକ୍ତତମୋ ମତଃ । ୪୭ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସମ୍ବାଦେ ଧ୍ୟାନଯୋଗୋ ନାମ ଷଷ୍ଠୋଽଧ୍ୟାୟଃ ।

---

ଅନ୍ୱୟଃ ।

ସର୍ବେଷାଂ ଯୋଗିନାଂ ଅପି (ମଧ୍ୟେ) ଯଃ ଶ୍ରଦ୍ଧାବାନ୍ ମଦ୍ଗତେନ ଅନ୍ତରାତ୍ମନା ମାଂ ଭଜତେ, ସଃ ଯୁକ୍ତତମଃ ମେ ମତଃ ।
ଇତି ଶ୍ରୀଭଗବଦ୍ଗୀତାୟାଂ ଅନ୍ୱୟେ ଷଷ୍ଠୋଽଧ୍ୟାୟଃ । ୪୭ ।

---

ଟୀକା ।

ଯୋଗିନାମପି ଯମନିୟମାଦିପରାଣାଂ ମଧ୍ୟେ ମଦ୍ଭକ୍ତଃ ଶ୍ରେଷ୍ଠ ଇତ୍ୟାହ, ଯୋଗିନାମପୀତି । ମଦ୍ଗତେନ ମୟ୍ୟାସକ୍ତେନ ଅନ୍ତରାତ୍ମନା ମନସା ଯୋ ମାଂ ପରମେଶ୍ୱରଂ ଶ୍ରଦ୍ଧାଯୁକ୍ତଃ ସନ୍ ଭଜତେ, ସ ଯୋଗଯୁକ୍ତେଭ୍ୟଃ ଶ୍ରେଷ୍ଠୋ ମମ ସମ୍ମତଃ ଅତୋ ମଦ୍ଭକ୍ତୋ ଭବେତି ଭାବଃ ।

ଅତ୍ରଯୋଗମବୋଚଦ୍ଯୋ ଭକ୍ତିଯୋଗଶିରୋମଣିଂ ।
ତଂ ବନ୍ଦେ ପରମାନନ୍ଦଂ ମାଧବଂ ଭକ୍ତସେବଧିଂ । ୪୭ ।
ଇତି ସ୍ୱାମିକୃତଟୀକାୟାଂ ଷଷ୍ଠୋଽଧ୍ୟାୟଃ ।

---

ପଦବ୍ୟାଖ୍ୟା ।

ଯୋଗିନାଂ ଅପି ସର୍ବେଷାଂ—ସମସ୍ତ ଯୋଗୀମାନଙ୍କ ମଧ୍ୟରେ, ମଦ୍ଗତେନ—ଆମ୍ଭଠାରେ ଆସକ୍ତ, ଅନ୍ତରାତ୍ମନା—ମନଦ୍ୱାରା, ଶ୍ରଦ୍ଧାବାନ୍—ଶ୍ରଦ୍ଧାଯୁକ୍ତ ହୋଇ, ଭଜତେ—ଭଜନା କରନ୍ତି, ଯଃ—ଯେଉଁ ବ୍ୟକ୍ତି, ମାଂ—ଆମ୍ଭଙ୍କୁ, ସଃ—ସେହି ବ୍ୟକ୍ତି, ମେ ଯୁକ୍ତତମୋ ମତଃ—ଆମ୍ଭ ମତରେ ଶ୍ରେଷ୍ଠଯୋଗୀ ଅଟନ୍ତି । ୪୭ ।

ଇତି ଶ୍ରୀଭଗବଦ୍ଗୀତା-ପଦବ୍ୟାଖ୍ୟାୟାଂ ଷଷ୍ଠୋଽଧ୍ୟାୟଃ ସମାପ୍ତଃ ।

---

Digitized by PPRACHIN, SOA

ଅନୁବାଦ ।

ଯୋଗିମାନଙ୍କ ମଧ୍ୟରୁ ପୁଣି ଯେଉଁ ବ୍ୟକ୍ତି ଶ୍ରଦ୍ଧାଯୁକ୍ତ ହୋଇ ଆମ୍ଭଠାରେ ମନକୁ ଆସକ୍ତ କରି ଆମ୍ଭର ଉପାସନା କରନ୍ତି, ସେ ବ୍ୟକ୍ତି ଆମ୍ଭ ମତରେ ଶ୍ରେଷ୍ଠତମ ଯୋଗୀ ଅଟନ୍ତି । ୪୭ ।

ଇତି ଶ୍ରୀଭଗବଦ୍‌ଗୀତାର ଉତ୍କଳାନୁବାଦରେ ଷଷ୍ଠ ଅଧ୍ୟାୟ ସମାପ୍ତ ।

---

ବିଶଦବ୍ୟାଖ୍ୟା ।

ତପସ୍ୱୀ, ଜ୍ଞାନୀ ଓ କର୍ମୀ ଏମାନଙ୍କ ଅପେକ୍ଷା ଯୋଗୀ ଶ୍ରେଷ୍ଠ, ଅର୍ଥାତ୍ ତପସ୍ୟା, ଶାସ୍ତ୍ରଜ୍ଞାନ ଓ ଯାଗାଦି କର୍ମ ଅପେକ୍ଷା ଯୋଗ (ଯମ ନିୟମାଦି ସାଧନଦ୍ୱାରା) ଅଭ୍ୟାସ କରିବା ଯେ ଶ୍ରେଷ୍ଠ ତାହା ପୂର୍ବ ଶ୍ଳୋକରେ ବୁଝାଇ, ଅର୍ଜ୍ଜୁନଙ୍କୁ ଯୋଗୀ ହେବାକୁ ଉପଦେଶ ଦେଇ, ଶ୍ରୀଭଗବାନ୍ ଏ ଶ୍ଳୋକରେ ଭକ୍ତିକୁ ସର୍ବଶ୍ରେଷ୍ଠ ବୋଲି ବୁଝାଉଅଛନ୍ତି । ଯେଉଁ ବ୍ୟକ୍ତି ଶ୍ରଦ୍ଧାଯୁକ୍ତଚିତ୍ତରେ ମନକୁ ଆମ୍ଭଠାରେ ଆସକ୍ତ କରି ଆମ୍ଭର ଉପାସନା କରନ୍ତି, ସେ ଆମ୍ଭ ମତରେ ଶ୍ରେଷ୍ଠତମ ଯୋଗୀ ଅଟନ୍ତି । କାହିଁକି ନା ଯୋଗର ପ୍ରଧାନ ଲକ୍ଷ୍ୟ ମୁକ୍ତି । ଯୋଗସାଧନର ପ୍ରଣାଳୀ, ଯାହା କି ଏ ଅଧ୍ୟାୟରେ ବିସ୍ତୃତରୂପେ ବୁଝାଇଅଛୁଁ, ତାହା ଭକ୍ତିର ବିନା ସାହାଯ୍ୟରେ ସାଧିତ ହେବା କଷ୍ଟକର । କିନ୍ତୁ ଭକ୍ତି ସହିତ ଯୋଗରେ ପ୍ରବୃତ୍ତ ହେଲେ, ସହଜରେ ଯୋଗଫଳ (ମୁକ୍ତି) ଲାଭ ହୁଏ, ଅଥବା ଅଷ୍ଟାଙ୍ଗସାଧନଦ୍ୱାରା ଜନ୍ମଜନ୍ମାନ୍ତରରେ ଈଶ୍ୱର ସାକ୍ଷାତ୍କାରରୂପ ଯେଉଁ ଫଳ ହୁଏ, ଭକ୍ତି ବଳରେ ଅତି ଅଳ୍ପ ସମୟ ମଧ୍ୟରେ ତାହା ମିଳେ । ଭକ୍ତଶ୍ରେଷ୍ଠ ଧ୍ରୁବ ଓ ପ୍ରହ୍ଲାଦ ତାହାର ଜାଜ୍ୱଲ୍ୟମାନ ପ୍ରମାଣ ଅଟନ୍ତି । ଅତଏବ 'ଭକ୍ତିର ସହିତ ଯୋଗ ସାଧନ କର' ବୋଲି ଅର୍ଜ୍ଜୁନଙ୍କୁ ଉପଦେଶ ଦେଲେ ।

ଏ ଅଧ୍ୟାୟରେ ଶ୍ରୀଭଗବାନ୍ ପ୍ରଥମେ ଚିତ୍ତଶୁଦ୍ଧିର ଉପାୟସ୍ୱରୂପ କର୍ମଯୋଗ ଓ ତହୁଁ ଉତ୍ତାରୁ କର୍ମତ୍ୟାଗ, ଏବଂ ଅଷ୍ଟାଙ୍ଗ ସାଧନଦ୍ୱାରା ଯେପରି ଯୋଗ ଅଭ୍ୟାସ କରିବାକୁ ହୁଏ, ତାହା ବୁଝାଇଲେ ଓ ମନକୁ କି ଉପାୟରେ ସଂଯତ କରିବାକୁ ହୁଏ, ତାହା ବିଶଦରୂପେ ବ୍ୟାଖ୍ୟା କରି, ଏବେ ଯୋଗଭ୍ରଷ୍ଟ ବ୍ୟକ୍ତିର କିପରି ଗତି ହୁଏ, ତାହା ମଧ୍ୟ ବୁଝାଇ, ତତ୍ପରେ ଦ୍ୱିତୀୟଷଟ୍କ ଅର୍ଥାତ୍ ୭ମଠାରୁ ୧୨ଶ ପର୍ଯ୍ୟନ୍ତ ଅଧ୍ୟାୟମାନଙ୍କରେ ଯେଉଁ ଭକ୍ତିଯୋଗର କଥା ବର୍ଣ୍ଣନ କରିଯିବ, ତାହାର ମୂଳସୂତ୍ରକୁ "ଶ୍ରଦ୍ଧାବାନ୍ ଭଜତେ ଯୋମାଂ" ଏହି ବଚନରେ ପ୍ରକାଶ କଲେ । ୪୭ ।

ଇତି ଶ୍ରୀଭଗବଦ୍‌ଗୀତାର ବିଶଦବ୍ୟାଖ୍ୟାରେ ଷଷ୍ଠ ଅଧ୍ୟାୟ ସମାପ୍ତ ।

("ତ୍ୱଂ" ପଦବୋଧକ ପ୍ରଥମଷଟ୍କ ସମାପ୍ତ) ।

Digitized by PPRACHIN, SOA

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ସପ୍ତମୋଽଧ୍ୟାୟଃ ।

### ବିଜ୍ଞାନଯୋଗଃ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—ମୟ୍ୟାସକ୍ତମନାଃ ପାର୍ଥ, ଯୋଗଂ ଯୁଞ୍ଜନ୍ ମଦାଶ୍ରୟଃ ।
ଅସଂଶୟଂ ସମଗ୍ରଂ ମାଂ, ଯଥା ଜ୍ଞାସ୍ୟସି ତଚ୍ଛୃଣୁ । ୧ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ହେ ପାର୍ଥ! ମୟି ଅସକ୍ତମନାଃ ମଦାଶ୍ରୟଃ (ତ୍ୱଂ) ଯୋଗଂ ଯୁଞ୍ଜନ୍ ଅସଂଶୟଂ ସମଗ୍ରଂ ମାଂ ଯଥା ଜ୍ଞାସ୍ୟସି ତତ୍ ଶୃଣୁ । ୧ ।

ଟୀକା ।

ବକ୍ଷ୍ୟେମାତ୍ମନସ୍ତତ୍ତ୍ୱଂ ସଯୋଗଂ ସମୁଦାହୃତଂ । ଭକ୍ତାନ୍ୟେମଥେଦାନୀମୈଶ୍ୱରଂ ରୂପମୀର୍ଯ୍ୟତେ । ପୂର୍ବାଧ୍ୟାୟାନ୍ତେ ମଦ୍ଗତେନାନ୍ତରାତ୍ମନା ଯୋମାଂ ଭଜତେ ସ ମେ ଯୁକ୍ତତମୋମତ ଇତ୍ୟୁକ୍ତଂ, ତତ୍ର କୀଦୃଶସ୍ତ୍ୱଂ ଯସ୍ୟ ଭକ୍ତିଃ କର୍ତ୍ତବ୍ୟେତ୍ୟପେକ୍ଷାୟାଂ ସ୍ୱସ୍ୱରୂପଂ ନିରୂପୟିଷ୍ୟନ୍ ଶ୍ରୀଭଗବାନୁବାଚ, ମୟୀତି । ମୟି ପରମେଶ୍ୱରେ ଅସକ୍ତମଭିନିବଷ୍ଟଂ ମନୋଯସ୍ୟ ସଃ ମଦାଶ୍ରୟୋଽହମେବାଶ୍ରୟୋ ଯସ୍ୟ ଅନନ୍ୟଶରଣଃ ସନ୍ ଯୋଗଂ ଯୁଞ୍ଜନ୍ନଭ୍ୟସନ୍ନସଂଶୟଂ ଯଥା ଭବତ୍ୟେବଂ ମାଂ ସମଗ୍ରଂ ବିଭୂତିବଲୈଶ୍ୱର୍ଯ୍ୟାଦିସହିତଂ ଯଥା ଜ୍ଞାସ୍ୟସି ତଦିଦଂ ମୟା ବକ୍ଷ୍ୟମାଣଂ ଶୃଣୁ । ୧ ।

ପଦବ୍ୟାଖ୍ୟା ।

ମୟ୍ୟାସକ୍ତମନାଃ—ଆମ୍ଭଠାରେ ନିବଷ୍ଟଚିତ୍ତ ହୋଇ, ପାର୍ଥ—ହେ ପୃଥାପୁତ୍ର (ଅର୍ଜୁନ !), ଯୋଗଂ ଯୁଞ୍ଜନ୍—ଯୋଗାଭ୍ୟାସ କରି, ମଦାଶ୍ରୟଃ—ଆମ୍ଭଙ୍କୁ ଆଶ୍ରୟ କରି, ଅସଂଶୟଂ—ନିଃସନ୍ଦେହରୂପେ, ସମଗ୍ରଂ—(ବିଭୂତି ବଳ ଓ ଐଶ୍ୱର୍ଯ୍ୟ ସହିତ) ସମ୍ପୂର୍ଣ୍ଣ, ମାଂ—ଆମ୍ଭଙ୍କୁ, ଯଥା—ଯେପରି, ଜ୍ଞାସ୍ୟସି—ଜାଣିବ, ତତ୍ ଶୃଣୁ—ତାହା ଶୁଣ । ୧ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜୁନ! ଆମ୍ଭଠାରେ ଅସକ୍ତଚିତ୍ତ ଓ ଶରଣାଗତ ହୋଇ ଯୋଗାଭ୍ୟାସ କଲେ, ନିଃସନ୍ଦେହରେ ଆମ୍ଭଙ୍କୁ ସମ୍ପୂର୍ଣ୍ଣରୂପେ ଯେପରି ଜାଣି ପାରିବ, ତାହା ଶୁଣ । ୧ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ପୂର୍ବାଧ୍ୟାୟର ଶେଷ ଶ୍ଳୋକରେ 'ଯେ ଶ୍ରଦ୍ଧାବନ୍ତ ହୋଇ ଆମ୍ଭଠାରେ ମନ

ଅସକ୍ତ ହୋଇ ଆମ୍ଭର ଉପାସନା କରନ୍ତି, ସେ ଆମ୍ଭ ମତରେ ଶ୍ରେଷ୍ଠତମ ଯୋଗୀ ଅଟନ୍ତି' ବୋଲି କହିଥିବାରୁ, କାଳେ ଅର୍ଜୁନଙ୍କ ମନରେ ଏପରି ଆଶଙ୍କା ହେବ, କି 'ଆପଣ କିଏ, ଯେ ଆପଣଙ୍କଠାରେ ଭକ୍ତି କରିବାକୁ ହେବ' ଏଥିପାଇଁ ସେ ଆପଣାର ସ୍ୱରୂପ ବର୍ଣ୍ଣନ କରିବାକୁ ଆରମ୍ଭ କରୁଅଛନ୍ତି । ଶ୍ରୀଭଗବାନ୍ କହିଲେ, ହେ ପାର୍ଥ! ଆମ୍ଭଠାରେ ମନ ସମର୍ପଣ କରି, ଆମ୍ଭର ଉପଦେଶ ଅନୁସାରେ ମନ ନିରୋଧାଦି କରି, କିପରି ଯୋଗାଭ୍ୟାସ କରିବାକୁ ହେବ, ତାହା ତୁମ୍ଭଙ୍କୁ କହୁଅଛୁଁ । ମାତ୍ର ଆମ୍ଭଙ୍କୁ ସମ୍ପୂର୍ଣ୍ଣରୂପେ ଅର୍ଥାତ୍ ଆମ୍ଭର ବଳ ବିଭୂତି ଓ ଐଶ୍ୱର୍ଯ୍ୟାଦି ସହିତ କିପରି ନିଃସନ୍ଦେହରୂପେ ଜାଣି ପାରିବ, ତାହା କହୁଅଛୁଁ, ଶ୍ରବଣ କର । ୧ ।

ଶ୍ଳୋକଃ ।

ଜ୍ଞାନଂ ତେଽହଂ ସବିଜ୍ଞାନମିଦଂ ବକ୍ଷ୍ୟାମ୍ୟଶେଷତଃ ।
ଯଜ୍ଜ୍ଞାତ୍ୱା ନେହ ଭୂୟୋଽନ୍ୟଜ୍ଜ୍ଞାତବ୍ୟମବଶିଷ୍ୟତେ । ୨ ।

ଅନ୍ୱୟଃ ।

ଅହଂ ତେ ଇଦଂ ସବିଜ୍ଞାନଂ ଜ୍ଞାନଂ ଅଶେଷତଃ ବକ୍ଷ୍ୟାମି, ଯତ୍ ଜ୍ଞାତ୍ୱା ଇହ ଭୂୟଃ ଅନ୍ୟତ୍ ଜ୍ଞାତବ୍ୟଂ ନ ଅବଶିଷ୍ୟତେ । ୨ ।

ଟୀକା ।

ବକ୍ଷ୍ୟମାଣଂ ସ୍ତୌତି, ଜ୍ଞାନମିତି । ଜ୍ଞାନଂ ଶାସ୍ତ୍ରୀୟଂ ବିଜ୍ଞାନଂ ଅନୁଭବସ୍ତତ୍ସହିତଂ ଇଦଂ ମଦ୍ବିଷୟଂ ଅଶେଷତଃ କାର୍ତ୍ସ୍ନ୍ୟେନ ବକ୍ଷ୍ୟାମି ଯତ୍ ଜ୍ଞାତ୍ୱା ଇହ ଶ୍ରେୟୋମାର୍ଗେ ବର୍ତ୍ତମାନସ୍ୟ ପୁନରନ୍ୟତ୍ ଜ୍ଞାତବ୍ୟମବଶିଷ୍ଟଂ ନ ଭବତି ତେ କୃତାର୍ଥୋ ଭବିଷ୍ୟତୀତ୍ୟର୍ଥଃ । ୨ ।

ପଦବ୍ୟାଖ୍ୟା ।

ଜ୍ଞାନଂ—ଶାସ୍ତ୍ରାଦି ପାଠଦ୍ୱାରା ଅଥବା ଗୁରୁଙ୍କ ଉପଦେଶରୁ ଯେଉଁ ବୋଧ ଜନ୍ମେ ତାକୁ, ତେଽହଂ—ତୁମ୍ଭକୁ ଅମ୍ଭେ, ସବିଜ୍ଞାନଂ—(ପରୀକ୍ଷାଲବ୍ଧ ଜ୍ଞାନକୁ ବିଜ୍ଞାନ ବୋଲାଯାଏ) ବିଜ୍ଞାନ ସହିତ, ଇଦଂ—ଏହି, ବକ୍ଷ୍ୟାମି—କହିବୁ, ଅଶେଷତଃ—ସମ୍ପୂର୍ଣ୍ଣରୂପେ, ଯତ୍ ଜ୍ଞାତ୍ୱା—ଯାହା ଜାଣିଲେ, ନ—ନାହିଁ, ଇହ—ଏହି ମୋକ୍ଷ ବିଷୟରେ, ଭୂୟଃ—ପୁନର୍ବାର, ଅନ୍ୟତ୍—ଆଉ କିଛି, ଜ୍ଞାତବ୍ୟଂ—ଜାଣିବା ବିଷୟ, ଅବଶିଷ୍ୟତେ—ଅବଶିଷ୍ଟ ରହିବ । ୨ ।

ଅନୁବାଦ ।

ଅମ୍ଭେ ବିଜ୍ଞାନ ସହିତ ଜ୍ଞାନ କଥା ତୁମ୍ଭଙ୍କୁ ସମ୍ପୂର୍ଣ୍ଣରୂପେ କହିବୁଁ । ଯାହା ଜାଣିଲେ ମୋକ୍ଷ ସମ୍ବନ୍ଧରେ ଆଉ କିଛି ଜାଣିବାକୁ ଅବଶିଷ୍ଟ ରହିବ ନାହିଁ । ୨ ।

ବିଶଦବ୍ୟାଖ୍ୟା ।

ଗୁରୁଙ୍କ ଉପଦେଶରୁ ଓ ଶାସ୍ତ୍ରାଦି ବଚନରୁ, ଈଶ୍ୱର ସର୍ବଶକ୍ତିମାନ୍ ଅଦ୍ୱିତୀୟ ଓ ପୂର୍ଣ୍ଣସ୍ୱରୂପ ଇତ୍ୟାଦି, ଯେଉଁ ପ୍ରତୀତି ବା ବୋଧ ଜନ୍ମେ ତାହାକୁ ଜ୍ଞାନ ବୋଲାଯାଏ । ମାତ୍ର ଶ୍ରବଣ ମନନ ଓ ନିଦିଧ୍ୟାସନ ପ୍ରଭୃତିଦ୍ୱାରା ଆତ୍ମାରେ ପରମାତ୍ମାଙ୍କୁ ଅନୁଭବ କରିବାର ନାମ 'ବିଜ୍ଞାନ', ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ପରମାତ୍ମା ସମ୍ବନ୍ଧରେ ଜ୍ଞାନ ଓ ବିଜ୍ଞାନ ଅର୍ଥାତ୍ ଈଶ୍ୱରଙ୍କୁ କିପରି ଜାଣିବାକୁ ହୁଏ ଓ ଅନୁଭବ କରିବାକୁ ହୁଏ ତାହା ସମ୍ପୂର୍ଣ୍ଣରୂପେ ବୁଝାଇବେ । ସେହି ଜ୍ଞାନ ଓ ବିଜ୍ଞା...

Digitized by PPRACHIN, SOA

ଅଧିକୃତ ହେଲେ, ମୋକ୍ଷ ବିଷୟରେ ଆଉ କିଛି ଜାଣିବାର ଆବଶ୍ୟକ ହେବ ନାହିଁ । ବିଶେଷତଃ ସର୍ବାନ୍ତର୍ଯ୍ୟାମୀ ଶ୍ରୀକୃଷ୍ଣ ଯେତେବେଳେ ଉପଦେଶ ଦେଉଅଛନ୍ତି, ସେତେବେଳେ ଶ୍ରୋତାର ମନରେ ପ୍ରଶ୍ନ ଉଠିବା ପୂର୍ବରୁ ସେ ଯେ ସମସ୍ତ ସଂଶୟ ଛେଦନ କରିବେ, ଏଥିରେ କି ଆଉ ସନ୍ଦେହ କରାଯାଇ ପାରେ ? । ୨ ।

## ଶ୍ଳୋକଃ ।

* ମନୁଷ୍ୟାଣାଂ ସହସ୍ରେଷୁ, କଶ୍ଚିଦ୍ୟତତି ସିଦ୍ଧୟେ ।
ଯତତାମପି ସିଦ୍ଧାନାଂ କଶ୍ଚିନ୍ମାଂ ବେତ୍ତି ତତ୍ତ୍ୱତଃ । ୩ ।

## ଅନ୍ୱୟଃ ।

ମନୁଷ୍ୟାଣାଂ ସହସ୍ରେଷୁ କଶ୍ଚିତ୍ ସିଦ୍ଧୟେ ଯତତି, ଯତତାଂ ସିଦ୍ଧାନାଂ ଅପି କଶ୍ଚିତ୍ ମାଂ ତତ୍ତ୍ୱତଃ ବେତ୍ତି । ୩ ।

## ଟୀକା ।

ମଦ୍‌ଭକ୍ତିଂ ବିନା ତୁ ମଜ୍‌ଜ୍ଞାନଂ ଦୁର୍ଲଭମିତ୍ୟାହ, ମନୁଷ୍ୟାଣାମିତି । ଅସଙ୍ଖ୍ୟାତାନାଂ ଜୀବାନାଂ ମଧ୍ୟେ ମନୁଷ୍ୟତ୍ୱଂ ଦୁର୍ଲଭଂ, ତେଷୁ ଚ ଶ୍ରେୟସି ପ୍ରବୃତ୍ତିରେବ ନାସ୍ତି, ମନୁଷ୍ୟାଣାଂ ତୁ ସହସ୍ରେଷୁ ମଧ୍ୟେ କଶ୍ଚିଦେବ ପ୍ରକୃଷ୍ଟପୁଣ୍ୟବଶାତ୍ ସିଦ୍ଧୟେ ଆତ୍ମଜ୍ଞାନାୟ ପ୍ରଯତତେ, ପ୍ରଯତ୍ନଂ କୁର୍ବତାମପି ସହସ୍ରେଷୁ କଶ୍ଚିଦେବ ପ୍ରାକ୍ତନପୁଣ୍ୟବଶାତ୍ ଆତ୍ମାନଂ ବେତ୍ତି, ତାଦୃଶାନାଂ ସିଦ୍ଧାନାଂ ସହସ୍ରେଷୁ କଶ୍ଚିଦେବ ମାଂ ପରମାତ୍ମାନଂ ମତ୍ପ୍ରସାଦେନ ତତ୍ତ୍ୱତୋ ବେତ୍ତି ତଦେବମତିଦୁର୍ଲଭମପ୍ୟାତ୍ମତତ୍ତ୍ୱଂ ତୁଭ୍ୟମହଂ ପ୍ରବକ୍ଷ୍ୟାମୀତ୍ୟର୍ଥଃ । ୩ ।

## ପଦବ୍ୟାଖ୍ୟା ।

ମନୁଷ୍ୟାଣାଂ ସହସ୍ରେଷୁ—ଅସଙ୍ଖ୍ୟ ମନୁଷ୍ୟମାନଙ୍କ ମଧ୍ୟରେ, କଶ୍ଚିତ୍—କେହି, ଯତତି—ଯତ୍ନ କରନ୍ତି, ସିଦ୍ଧୟେ—ଆତ୍ମଜ୍ଞାନଲାଭପାଇଁ, ଯତତାମପି—ଯତ୍ନକାରୀମାନଙ୍କ ମଧ୍ୟରୁ (ଅତି ଅଳ୍ପ ସିଦ୍ଧି ଅର୍ଥାତ୍ ଆତ୍ମଜ୍ଞାନଲାଭ କରନ୍ତି), ସିଦ୍ଧାନାଂ—ଆତ୍ମଜ୍ଞାନଲାଭକାରୀମାନଙ୍କ ମଧ୍ୟରେ, କଶ୍ଚିତ୍—କେହି, ମାଂ—ଆମ୍ଭଙ୍କୁ, ବେତ୍ତି—ଜାଣନ୍ତି, ତତ୍ତ୍ୱତଃ—ଯଥାର୍ଥରୂପେ, । ୩ ।

## ଅନୁବାଦ ।

ସହସ୍ର ସହସ୍ର ମନୁଷ୍ୟ ମଧ୍ୟରେ କେହି ଅବା ଆତ୍ମଜ୍ଞାନଲାଭ ନିମିତ୍ତ ଯତ୍ନ କରନ୍ତି । ପୁଣି ସେହିପରି ଯତ୍ନକାରୀ ସହସ୍ର ୨ ବ୍ୟକ୍ତି ମଧ୍ୟରୁ କେହି ଅବା ଆମ୍ଭଙ୍କୁ ଯଥାର୍ଥରୂପେ ଜାଣନ୍ତି । ୩ ।

## ବିଶଦବ୍ୟାଖ୍ୟା ।

ଜୀବ ନାନାପ୍ରକାର (କୀଟ ପତଙ୍ଗ ପକ୍ଷୀ ପଶୁ ଆଦି) ଯୋନିରେ ଜନ୍ମଗ୍ରହଣ କରି, ଜନ୍ମଜନ୍ମାନ୍ତରର ପାପରାଶିର ଫଳଭୋଗ କଲା ପରେ, ପୁଣ୍ୟ ଫଳରେ ମନୁଷ୍ୟ ଦେହଲାଭ କରେ; ତନ୍ମଧ୍ୟରେ ଯୋଗାଧିକାରୀ ଦ୍ୱିଜଦେହ ଲାଭ କରିବା ସମସ୍ତଙ୍କ ଭାଗ୍ୟରେ ଘଟେ ନାହିଁ । ପୁଣି ଦ୍ୱିଜ ହେଲେ, ଯେ ସମସ୍ତେ ବିବେକୀ ବା ନିର୍ମଳଚିତ୍ତ ହେବେ ତାହା ନୁହେଁ, ଏଥିପାଇଁ ଶ୍ରୀଭଗବାନ୍ କହିଲେ, ସହସ୍ର ୨ ମନୁଷ୍ୟ ମଧ୍ୟରେ କେହି ଆତ୍ମଜ୍ଞାନଲାଭପାଇଁ ଯତ୍ନ କରୁଥିବେ, ମାତ୍ର ଅଧିକାଂଶ ଲୋକତ କିଛିମାତ୍ର ଯତ୍ନ କରନ୍ତି ନାହିଁ । ଆଉ ଯେଉଁମାନେ ଯତ୍ନ କରନ୍ତି,



Digitized by PPRACHIN, SOA

ନାନାକାରଣରୁ ସେମାନଙ୍କ ମଧ୍ୟରୁ ଅନେକଙ୍କର ଆତ୍ମଜ୍ଞାନଲାଭ ହୋଇ ପାରେ ନାହିଁ । ଏପରି ସହସ୍ର ୨ ବ୍ୟକ୍ତି ମଧ୍ୟରୁ କଦାଚିତ୍ ଦୁଇ ଏକଜଣ ଆତ୍ମଙ୍କୁ ( ପରମାତ୍ମାଙ୍କୁ ) ଜାଣନ୍ତି । କାଳେ ଅର୍ଜ୍ଜୁନଙ୍କ ମନରେ ଏପରି ଆଶଙ୍କା ହେବ, ଯେ ସମାଗତ କୁରୁକ୍ଷେତ୍ର ଯୁଦ୍ଧରେ ଏହି ଅଷ୍ଟାଦଶ ଅକ୍ଷୌହିଣୀ ସୈନ୍ୟ ଓ ଦେବତା, ଗନ୍ଧର୍ବ, କିନ୍ନର ପ୍ରଭୃତି ସମସ୍ତେତ ଶ୍ରୀକୃଷ୍ଣଙ୍କୁ ଜାଣନ୍ତି, ତେବେ ଆତ୍ମଜ୍ଞାନରେ ସିଦ୍ଧିଲାଭ କରିଥିବା ସହସ୍ର ୨ ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ କି ଦୁଇଜଣ ଆତ୍ମଙ୍କୁ ଜାଣନ୍ତି, ଏପରି କଥା ଭଗବାନ୍ କାହିଁକି କହିଲେ ? ସେଥିପାଇଁ ଶ୍ରୀଭଗବାନ 'ତତ୍ତ୍ୱତଃ' ପଦଟି ବ୍ୟବହାର କରିଅଛନ୍ତି, ଅର୍ଥାତ୍ ଏମାନେ ଆତ୍ମଙ୍କୁ ବସୁଦେବଙ୍କ ପୁତ୍ର ବା ନନ୍ଦଙ୍କ ପାଳିତ ବୋଲି ଜାଣନ୍ତି, ମାତ୍ର ଯଥାର୍ଥରୂପରେ କେହି ଜାଣନ୍ତି ନାହିଁ । ବର୍ତ୍ତମାନର ରୂପ ଆତ୍ମର ଯଥାର୍ଥରୂପ ନୁହେଁ, ଏହା କେବଳ ମାୟାକଳ୍ପିତ ଲୀଳା-ଅବତାର ମାତ୍ର। ତେବେ ସମ୍ପୂର୍ଣ୍ଣରୂପେ ଜାଣନ୍ତି କିଏ ? ନା ଉପଯୁକ୍ତ ଗୁରୁଙ୍କ ନିକଟକୁ ଯାଇଁ 'ସତ୍ୟଂ ଜ୍ଞାନମନନ୍ତଂ' ଇତ୍ୟାଦି ପରୋକ୍ଷଜ୍ଞାନଜନକ ମହାବାକ୍ୟ ଅଭ୍ୟାସ ଏବଂ ଶ୍ରବଣ, ମନନ, ନିଦିଧ୍ୟାସନ ପ୍ରଭୃତିଦ୍ୱାରା ନିର୍ମଳଚିତ୍ତ ହୋଇ, 'ତତ୍ତ୍ୱମସି' ପ୍ରଭୃତି ଅପରୋକ୍ଷ ବା ସାକ୍ଷାତ୍‌ଜ୍ଞାନଜନକ ମହାବାକ୍ୟମାନଙ୍କର ଆଶ୍ରୟ ନେଇଥିବା ବ୍ୟକ୍ତିମାନେ କେବଳ ସମ୍ପୂର୍ଣ୍ଣରୂପେ ଆତ୍ମଙ୍କୁ ଜାଣନ୍ତି । ୩ ।

## ଶ୍ଳୋକଃ ।

ଭୂମିରାପୋଽନଳୋ ବାୟୁଃ, ଖଂ ମନୋ ବୁଦ୍ଧିରେବ ଚ ।
ଅହଙ୍କାର ଇତୀୟଂ ମେ, ଭିନ୍ନା ପ୍ରକୃତିରଷ୍ଟଧା । ୪ ।

## ଅନ୍ୱୟଃ ।

ଭୂମିଃ, ଆପଃ, ଅନଳଃ, ବାୟୁଃ, ଖଂ, ମନଃ, ବୁଦ୍ଧିଃ ଚ ଅହଂକାରଃ ଏବ, ଇତି ଇୟଂ ମେ ପ୍ରକୃତିଃ ଅଷ୍ଟଧା ଭିନ୍ନା । ୪ ।

## ଟୀକା ।

ଏବଂ ଶ୍ରୋତାରମଭିମୁଖୀକୃତ୍ୟ ଇଦାନୀଂ ପ୍ରକୃତିଦ୍ୱାରା ସୃଷ୍ଟ୍ୟାଦିକର୍ତ୍ତୃତ୍ୱେନେଶ୍ୱରତତ୍ତ୍ୱଂ 'ପ୍ରତିଜ୍ଞାତଂ' ନିରୂପୟିଷ୍ୟନ୍ ପରାପରଭେଦେନ ପ୍ରକୃତିଦ୍ୱୟମାହ, ଭୂମିରିତ୍ୟାଦିଭ୍ୟାଂ । ଭୂମ୍ୟାଦୀନି ପଞ୍ଚମହାଭୂତସୂକ୍ଷ୍ମାଣି, ମନଃଶବ୍ଦେନ ତତ୍କାରଣଭୂତୋଽହଙ୍କାରଃ, ବୁଦ୍ଧିଶବ୍ଦେନ ତତ୍କାରଣଂ ମହତ୍ତତ୍ତ୍ୱଂ, ଅହଙ୍କାରଶବ୍ଦେନ ତତ୍କାରଣମବିଦ୍ୟା ଇତ୍ୟେବମଷ୍ଟଧା ଭିନ୍ନା, ଯଦ୍ୱା ଭୂମ୍ୟାଦିଶବ୍ଦୈଃ ପଞ୍ଚମହାଭୂତାନି ସୂକ୍ଷ୍ମୈଃ ସହ ଏକୀକୃତ୍ୟ ଗୃହ୍ୟନ୍ତେ, ଅହଙ୍କାରଶବ୍ଦେନୈବାହଙ୍କାରସ୍ତେନୈବ ତତ୍କାର୍ଯ୍ୟାଣି ଇନ୍ଦ୍ରିୟାଣ୍ୟପି ଗୃହ୍ୟନ୍ତେ ବୁଦ୍ଧିରିତି ମହତ୍ତତ୍ତ୍ୱଂ ମନଃଶବ୍ଦେନ ତୁ ମନସୈବୋନ୍ନେୟମବ୍ୟକ୍ତସ୍ୱରୂପଂ ପ୍ରଧାନମିତ୍ୟନେନ ପ୍ରକାରେଣ ମେ ପ୍ରକୃତିର୍ମାୟାଖ୍ୟା ଶକ୍ତିରଷ୍ଟଧା ଭିନ୍ନା ବିଭାଗଂ ପ୍ରାପ୍ତା, ଚତୁର୍ବିଂଶତିଭେଦଭିନ୍ନାପ୍ୟଷ୍ଟଧାସ୍ୱେବାନ୍ତର୍ଭାବବିବକ୍ଷୟାଷ୍ଟଧା ଭିନ୍ନା ଇତ୍ୟେବମୁକ୍ତଂ ତଥାଚ କ୍ଷେତ୍ରାଧ୍ୟାୟେ ଇମାମେବ ପ୍ରକୃତିଂ ଚତୁର୍ବିଂଶତିତତ୍ତ୍ୱାତ୍ମନା ପ୍ରପଞ୍ଚୟିଷ୍ୟତି, "ମହାଭୂତାନ୍ୟହଙ୍କାରୋ ବୁଦ୍ଧିରବ୍ୟକ୍ତମେବ ଚ । ଇନ୍ଦ୍ରିୟାଣି ଦଶୈକଞ୍ଚ ପଞ୍ଚ ଚେନ୍ଦ୍ରିୟଗୋଚରାଃ" । ୪ ।

## ପଦବ୍ୟାଖ୍ୟା ।

ଭୂମିଃ—ପୃଥିବୀ, ଅପଃ—ଜଳ, ଅନଳଃ—ଅଗ୍ନି, ବାୟୁଃ—ପବନ, ଖଂ—ଆକାଶ, ମନଃ—ଅନ୍ତଃକରଣ, ବୁଦ୍ଧିଃ—ନିଶ୍ଚୟାତ୍ମିକା ବୋଧଶକ୍ତି, ଏବ ଚ—ଅଧିକ, ଅହଙ୍କାରଃ—ଅଭିମାନ, ଇତି—ଏହିପରି, ଇୟଂ—ଏହି, ମେ—ଆମ୍ଭର, ଭିନ୍ନା—ବିଭକ୍ତ, ପ୍ରକୃତିଃ—ମାୟା, ଅଷ୍ଟଧା—ଅଠପ୍ରକାର । ୪ ।

### ଅନୁବାଦ ।

ଆମ୍ଭର ପ୍ରକୃତି ପୃଥିବୀ, ଜଳ, ତେଜ, ବାୟୁ, ଆକାଶ, ମନ, ବୁଦ୍ଧି ଓ ଅହଙ୍କାର ଏହି ଆଠପ୍ରକାରରେ ବିଭକ୍ତ ଅଟେ । ୪ ।

### ବିଶଦବ୍ୟାଖ୍ୟା ।

ପ୍ରକୃତି ଦୁଇପ୍ରକାର, ଅପରା ଓ ପରା ; ଅପରା ପ୍ରକୃତି ପୁଣି ସାଂଖ୍ୟମତରେ ଆଠଭାଗରେ ବିଭକ୍ତ । ଯଥା; ଗନ୍ଧ, ରସ, ରୂପ, ସ୍ପର୍ଶ ଓ ଶବ୍ଦ ଏହି ପଞ୍ଚତନ୍ମାତ୍ର ଏବଂ ଅହଙ୍କାର, ମହତ୍ତତ୍ତ୍ୱ ଓ ଅବ୍ୟକ୍ତ । କିନ୍ତୁ ଏହି ଶ୍ଲୋକରେ ଭୂମିଠାରୁ ଆକାଶ ପର୍ଯ୍ୟନ୍ତ ଯେ ପଞ୍ଚମହାଭୂତ, ତାହା ପଞ୍ଚତନ୍ମାତ୍ର ପରିବର୍ତ୍ତରେ ଏବଂ ବୁଦ୍ଧିଶବ୍ଦ, ମହତ୍ତତ୍ତ୍ୱ ପରିବର୍ତ୍ତରେ ଓ ମନଃଶବ୍ଦକୁ ଅବ୍ୟକ୍ତ ପରିବର୍ତ୍ତରେ ଲେଖା ହୋଇଅଛି । ଆଉ ଅବଶିଷ୍ଟ ଅହଙ୍କାର ଉଭୟ ମତରେ ସମାନ ଅଛି । କେହି୨ (ବେଦାନ୍ତୀମାନେ) ପ୍ରକୃତିକୁ ଚତୁର୍ବିଂଶତି ତତ୍ତ୍ୱ ବୋଲି ୨୪ ଭାଗରେ ବିଭକ୍ତ କରନ୍ତି (୧୩ଶ ଅଧ୍ୟାୟର ୫ମ ଶ୍ଲୋକ ଦେଖ), ସେମାନଙ୍କ ମତରେ ଭୂମ୍ୟାଦି ମହାଭୂତ ୫, ଅହଙ୍କାର (୬), ବୁଦ୍ଧି (୭), ଅବ୍ୟକ୍ତ (୮), କର୍ମେନ୍ଦ୍ରିୟ ପାଞ୍ଚ (୧୩), ଜ୍ଞାନେନ୍ଦ୍ରିୟ ପାଞ୍ଚ (୧୮), ମନ (୧୯), ଗନ୍ଧାଦି ପଞ୍ଚତନ୍ମାତ୍ର (୨୪), ଏହି ଚବିଶ ଭାଗରେ ବିଭକ୍ତ । ମାତ୍ର ସେ ଚବିଶଟିଯାକ ଉପରୋକ୍ତ ଆଠପ୍ରକାରର ଅନ୍ତର୍ଗତ ବୋଲି, ଏ ଶ୍ଲୋକରେ ଅପରା ପ୍ରକୃତିକୁ ୮ ଭାଗରେ ବିଭକ୍ତ କରାଗଲା । ୪ ।

### ଶ୍ଲୋକଃ ।

ଅପରେୟମିତସ୍ତ୍ୱନ୍ୟାଂ ପ୍ରକୃତିଂ ବିଦ୍ଧି ମେ ପରାଂ ।
ଜୀବଭୂତାଂ ମହାବାହୋ, ଯୟେଦଂ ଧାର୍ଯ୍ୟତେ ଜଗତ୍ । ୫ ।

### ଅନ୍ୱୟଃ ।

ହେ ମହାବାହୋ ଇୟଂ ଅପରା, ତୁ ଇତଃ ଅନ୍ୟାଂ ଜୀବଭୂତାଂ ମେ ପରାଂ ପ୍ରକୃତିଂ ବିଦ୍ଧି, ଯୟା ଇଦଂ ଜଗତ୍ ଧାର୍ଯ୍ୟତେ । ୫ ।

### ଟୀକା ।

ଅପରାମିମାଂ ପ୍ରକୃତିମୁପସଂହରନ୍ ପରାଂ ପ୍ରକୃତିମାହ, ଅପରେୟମିତି । ଅଷ୍ଟଧା ଯା ପ୍ରକୃତିରୁକ୍ତା ଇୟମପରା ନିକୃଷ୍ଟା ଜଡତ୍ୱାତ୍ ପରାର୍ଥତ୍ୱାଚ୍ଚ, ଇତଃ ସକାଶାତ୍ ପରାଂ ପ୍ରକୃଷ୍ଟାଂ ଅନ୍ୟାଂ ଜୀବଭୂତାଂ ଜୀବସ୍ୱରୂପାଂ ମେ ପ୍ରକୃତିଂ ଜାନୀହି । ପରତ୍ୱେ ହେତୁଃ, ଯୟା ଚେତନୟା କ୍ଷେତ୍ରଜ୍ଞସ୍ୱରୂପୟା ସ୍ୱକର୍ମଦ୍ୱାରେଣ ଇଦଂ ଜଗତ୍ ଧାର୍ଯ୍ୟତେ । ୫ ।

### ପଦବ୍ୟାଖ୍ୟା ।

ଅପରା ଇୟଂ—ଏହା ( ପୂର୍ବଶ୍ଲୋକୋକ୍ତ ) ଅପରା ପ୍ରକୃତି, ଇତଃ ତୁ ଅନ୍ୟାଂ—ଏଥିରୁ ଭିନ୍ନ, ପ୍ରକୃତିଂ—ପ୍ରକୃତିକୁ, ବିଦ୍ଧି—ଜାଣ, ମେ—ଆମ୍ଭର, ପରାଂ—'ପରା' ବୋଲି, ଜୀବଭୂତାଂ—ଜୀବରୂପା, ମହାବାହୋ—ହେ ଆଜାନୁଲମ୍ବିତଭୁଜ (ଅର୍ଜୁନ ! ), ଯୟା—ଯେଉଁ ପରା ପ୍ରକୃତି, ଇଦଂ ଧାର୍ଯ୍ୟତେ ଜଗତ୍—ଏହି ଜଗତକୁ ଧାରଣ କରିଅଛି । ୫ ।

### ଅନୁବାଦ ।

( ପୂର୍ବୋକ୍ତ ) ଏହି ଅଷ୍ଟଧା ପ୍ରକୃତି 'ଅପରା' ଅଟେ । ହେ ମହାବାହୋ ! ଏଥିରୁ

Digitized by PPRACHIN, SOA

ଭିନ୍ନ ଜୀବସ୍ୱରୂପ ଯେଉଁ ପ୍ରକୃତି ଏହି ଜଗତକୁ ଧାରଣ କରିଅଛି, ତାହାକୁ 'ପରା' ପ୍ରକୃତି ବୋଲି ଜାଣ । ୫ ।

ସ୍ୱଶଦବ୍ୟାଖ୍ୟା ।

ଅପରା ଓ ପରା ଏହି ଦୁଇ ପ୍ରକୃତି ମଧ୍ୟରୁ ପୂର୍ବଶ୍ଳୋକରେ ଯେଉଁ ଜଡାତ୍ମକ ପ୍ରକୃତିର କଥା ବୋଲା ଯାଇଅଛି, ତାହା 'ଅପରା' ଅର୍ଥାତ୍ ନିକୃଷ୍ଟ । କାହିଁକି ନା ତାହା ଜଡ଼, ପରାଧୀନ, ପୁଣି ସଂସାରବନ୍ଧନର ହେତୁ ଅଟେ । ତହିଁରୁ ଭିନ୍ନ ଜୀବସ୍ୱରୂପା ପ୍ରକୃତି 'ପରା' ଅର୍ଥାତ୍ ଶ୍ରେଷ୍ଠ ଅଟେ । ଯେହେତୁ ତାହା ଜଗତକୁ ( ଜଡ଼ ବା ଅପରା ପ୍ରକୃତିକୁ ) ଧାରଣ କରିଅଛି । ଅପରା ପ୍ରକୃତି ବା ଜଡ଼ବସ୍ତୁଜ୍ଞାନଦ୍ୱାରା ଜୀବ ସଂସାରବନ୍ଧନଦଶା ପ୍ରାପ୍ତ ହୁଏ ଓ ପର ପ୍ରକୃତି ବା ଚେତନ ପ୍ରକୃତିକୁ ଜାଣି ପାରିଲେ, ଜୀବ ସଂସାରରୁ ମୁକ୍ତ ହୁଏ । ଅତଏବ ଏ ଶ୍ଳୋକର ଏପରି ଅର୍ଥ କରା ଯାଇପାରେ, ଯେ ହେ ମହାବାହୋ ! ଏହି ଅପରା ପ୍ରକୃତିରୁ ଭିନ୍ନ, ଜୀବସ୍ୱରୂପ ଯେଉଁ ପରା ପ୍ରକୃତି ଜଗତକୁ (ଅପରା ପ୍ରକୃତିକୁ ) ଧାରଣ କରିଅଛି, ତାହାକୁ ଜାଣ, କାହିଁକି ନା ତାହା ଜାଣିଲେ ମୁକ୍ତ ହୋଇପାରିବ । ୫ ।

ଶ୍ଳୋକଃ ।

ଏତଦ୍‌ଯୋନୀନି ଭୂତାନି, ସର୍ବାଣୀତ୍ୟୁପଧାରୟ ।
ଅହଂ କୃତ୍ସ୍ନସ୍ୟ ଜଗତଃ, ପ୍ରଭବଃ ପ୍ରଳୟସ୍ତଥା । ୬ ।

ଅନ୍ୱୟଃ ।

ସର୍ବାଣି ଭୂତାନି ଏତଦ୍ ଯୋନୀନି, ଅହଂ କୃତ୍ସ୍ନସ୍ୟ ଜଗତଃ ପ୍ରଭବଃ ତଥା ପ୍ରଳୟଃ ଇତି ଉପଧାରୟ । ୬ ।

ଟୀକା ।

ଅନୟୋଃ ପ୍ରକୃତିଭ୍ୟାଂ ଦର୍ଶୟନ୍ ସ୍ୱସ୍ୟ ତଦ୍ଦ୍ୱାରା ସୃଷ୍ଟ୍ୟାଦିକାରଣତ୍ୱମାହ, ଏତଦ୍ୟୋନୀନୀତି । ଏତେ କ୍ଷେତ୍ରକ୍ଷେତ୍ରଜ୍ଞରୂପେ ପ୍ରକୃତୀ ଯୋନୀ କାରଣଭୂତେ ଯେଷାଂ ତାନି ଏତଦ୍ୟୋନୀନି ସ୍ଥାବରଜଙ୍ଗମାତ୍ମକାନି ସର୍ବାଣି ଭୂତାନୀତି ଉପଧାରୟ ବୁଧ୍ୟସ୍ୱ । ତତ୍ର ଜଡ଼ା ପ୍ରକୃତିର୍ଦେହରୂପେଣ ପରିଣମତେ ଚେତନା ତୁ ମଦଂଶଭୂତା ଭୋକ୍ତୃତ୍ୱେନ ଦେହେଷୁ ପ୍ରବିଶ୍ୟ ସ୍ୱକର୍ମଣା ତାନି ଧାରୟତି । ତେ ଚ ମଦୀୟେ ପ୍ରକୃତୀ ମତ୍ତଃ ସମ୍ଭୂତେ ଅତୋଽହମେବ କୃତ୍ସ୍ନସ୍ୟ ମତ୍ପ୍ରକୃତିଦ୍ୱାରା ଜଗତଃ ପ୍ରଭବଃ ପ୍ରକର୍ଷେଣ ଭବତି ଅସ୍ମାଦିତି ପରମକାରଣମିତ୍ୟର୍ଥଃ । ପ୍ରଲୀୟତେ ଅନେନ ଇତି ପ୍ରଳୟଃ ସଂହର୍ତ୍ତାପ୍ୟହମେବେତ୍ୟର୍ଥଃ । ୬ ।

ପଦବ୍ୟାଖ୍ୟା ।

ଏତଦ୍ୟୋନୀନି—ଏହି ଦୁଇ ପ୍ରକୃତିରୁ ଜାତ, ଭୂତାନି ସର୍ବାଣି—ସମସ୍ତ ଭୂତ (ପ୍ରାଣିମାନେ), ଇତି ଉପଧାରୟ—ଏହା ଜାଣ, ଅହଂ—ଅମ୍ଭେ, କୃତ୍ସ୍ନସ୍ୟ ଜଗତଃ—ସମସ୍ତ ଜଗତର, ପ୍ରଭବଃ—ଜନ୍ମସ୍ଥାନ, ପ୍ରଳୟସ୍ତଥା—ସେହିପରି ସଂହାରକର୍ତ୍ତା । ୬ ।

ଅନୁବାଦ ।

(ସ୍ଥାବରଜଙ୍ଗମାତ୍ମକ) ସକଳ ଭୂତବର୍ଗ ଏହି ଦୁଇ ପ୍ରକୃତିରୁ ଜାତ ଅଟନ୍ତି ଏବଂ ଅମ୍ଭେ ସମସ୍ତ ଜଗତର ଉତ୍ପତ୍ତିକର୍ତ୍ତା ଓ ସଂହାରକର୍ତ୍ତା ଅଟୁଁ, ଏହା ଜାଣ । ୬ ।

Digitized by PPRACHIN, SOA

### ବିଶଦବ୍ୟାଖ୍ୟା ।

ସ୍ଥାବର ଓ ଜଙ୍ଗମରୂପରେ ଯେତେ ଭୂତ ( ପ୍ରାଣୀ ) ଏ ଜଗତରେ ଅଛନ୍ତି, ସେ ସବୁ ଏହି ଅପରା ଓ ପରା ଦୁଇ ପ୍ରକୃତିରୁ ଜାତ ହୁଅନ୍ତି, କାହିଁକି ନା ଦେହୀର ଦେହ ଜଡ଼ପଦାର୍ଥ-ନିର୍ମିତ, ସୁତରାଂ ଅପରା ପ୍ରକୃତିରୁ ଉତ୍ପନ୍ନ, ଆଉ ଜୀବ, ଯେ କି ସୁଖ ଦୁଃଖ ଭୋଗ କରିବାକୁ ଦେହରୂପ କ୍ଷେତ୍ରରେ ଅଛି, ତାହା 'ପରା' ବା ଚେତନା ପ୍ରକୃତିରୁ ଜାତ ଅଟେ । ମାତ୍ର ଏହି ଅପରା ଓ ପରା ଏହି ଦୁଇ ପ୍ରକୃତିଯାକ ଆମ୍ଭଠାରୁ ଜାତ ଅଟନ୍ତି, ଅତଏବ ଆମ୍ଭେ ପ୍ରକୃତି-ସହିତ ଏ ସମସ୍ତ ଜଗତର ଉତ୍ପତ୍ତିକର୍ତ୍ତା ଅଟୁଁ । ପୁଣି ଯୁଗକ୍ଷୟ ସମୟରେ ଏ ସମସ୍ତ ଜଗତ୍ ଆମ୍ଭଠାରେ ଲୟପ୍ରାପ୍ତ ହୁଏ, ଏଣୁକରି ଆମ୍ଭେ ସମସ୍ତ ଜଗତର ସଂହାରକର୍ତ୍ତା ମଧ୍ୟ ଅଟୁଁ । ୬ ।

### ଶ୍ଳୋକଃ ।

ମତ୍ତଃ ପରତରଂ ନାନ୍ୟତ୍, କିଞ୍ଚିଦସ୍ତି ଧନଞ୍ଜୟ ।
ମୟି ସର୍ବମିଦଂ ପ୍ରୋତଂ, ସୂତ୍ରେ ମଣିଗଣା ଇବ । ୭ ।

### ଅନ୍ୱୟଃ ।

ହେ ଧନଞ୍ଜୟ ! ମତ୍ତଃ ପରତରଂ ଅନ୍ୟତ୍ କିଞ୍ଚିତ୍ ନ ଅସ୍ତି ସୂତ୍ରେ ମଣିଗଣାଃ ଇବ ଇଦଂ ସର୍ବଂ ମୟି ପ୍ରୋତଂ । ୭ ।

### ଟୀକା ।

ଯସ୍ମାଦେବ ତସ୍ମାନ୍ମତ୍ତ ଇତି । ମତ୍ତଃ ସକାଶାତ୍ ପରତରଂ ଶ୍ରେଷ୍ଠଂ ଜଗତଃ ସୃଷ୍ଟିସଂହାରୟୋଃ ସ୍ୱତନ୍ତ୍ରଂ କାରଣଂ କିଞ୍ଚିଦପି ନାସ୍ତି, କିନ୍ତିତିହେତୁରପ୍ୟହମେବେତ୍ୟାହ, ମୟୀତି । ମୟି ସର୍ବମିଦଂ ଜଗତ୍ ପ୍ରୋତଂ ଗ୍ରଥିତଂ ଆଶ୍ରିତମିତ୍ୟର୍ଥଃ ଦୃଷ୍ଟାନ୍ତଃ ସ୍ପଷ୍ଟଃ । ୭ ।

### ପଦବ୍ୟାଖ୍ୟା ।

ମତ୍ତଃ—ଆମ୍ଭଠାରୁ, ପରତରଂ—ଅଧିକ ଶ୍ରେଷ୍ଠ ବା ସ୍ୱତନ୍ତ୍ର, ନ ଅନ୍ୟତ୍ କିଞ୍ଚିତ୍ ଅସ୍ତି—ଆଉ କିଛି ନାହିଁ, ଧନଞ୍ଜୟ—ହେ ଅର୍ଜ୍ଜୁନ !, ମୟି—ଆମ୍ଭଠାରେ, ସର୍ବଂ ଇଦଂ—ସମୁଦାୟ ଏହି (ଜଗତ୍), ପ୍ରୋତଂ—ଗୁନ୍ଥା ହୋଇଅଛି, ସୂତ୍ରେ ମଣିଗଣା ଇବ—ସୂତାରେ ମଣି ସବୁ ଗୁନ୍ଥା ହେଲପରି । ୭ ।

### ଅନୁବାଦ ।

ହେ ଧନଞ୍ଜୟ ! (ସୃଷ୍ଟି ଓ ସଂହାର ବିଷୟରେ) ଆମ୍ଭ ଅପେକ୍ଷା ଆଉ କିଛି ସ୍ୱତନ୍ତ୍ର ବା ଶ୍ରେଷ୍ଠ କାରଣ ନାହିଁ । ସୂତାରେ ମଣି ସବୁ ଗୁନ୍ଥା ହେଲପରି ଏ ସମସ୍ତ ଜଗତ୍ ଆମ୍ଭଙ୍କୁ ଆଶ୍ରୟ କରି ରହିଅଛି । ୭ ।

### ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ ଶ୍ରୀଭଗବାନ୍ ଆପଣାକୁ ଜଗତର ସୃଷ୍ଟି ଓ ସଂହାରର କର୍ତ୍ତା ବୋଲି ପରିଚୟ ଦେଲେ । ମାତ୍ର କାଳେ ଅର୍ଜ୍ଜୁନଙ୍କର ଏପରି ସଂଶୟ ହେବ, ଯେ ଏହାଙ୍କ ଭିନ୍ନ ହୁଏତ, ଜଗତର ସୃଷ୍ଟି ଓ ସଂହାର ବିଷୟରେ ଅନ୍ୟର କେହି କର୍ତ୍ତା ଅଛି । ସେଥିପାଇଁ ଶ୍ରୀଭଗ-

ହାନ୍ କହିଲେ, ଯେ ସୃଷ୍ଟି ଓ ସଂହାର ବିଷୟରେ ଆମ୍ଭ ଭିନ୍ନ ଆଉ କିଛି ସ୍ୱତନ୍ତ୍ର ବା ଶ୍ରେଷ୍ଠ କାରଣ ନାହିଁ । ପୁଣି କାଳେ ଅର୍ଜୁନଙ୍କର ଏପରି ସନ୍ଦେହ ହେବ, ଯେ ଭଗବାନ୍ ଜଗତର ସୃଷ୍ଟି ଓ ସଂହାରର କାରଣ ସତ, ମାତ୍ର ଜଗତର ସ୍ଥିତି ବିଷୟରେ ଆଉ କେହି କାରଣ ଅଛି ; ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ମଣି ସବୁ ଯେପରି ସୂତାରେ ଗୁନ୍ଥା ହୋଇଥାଏ, ଏ ସମସ୍ତ ଜଗତ୍ ସେହିପରି ଆମ୍ଭଙ୍କୁ ଆଶ୍ରୟ କରିଅଛି, ଅର୍ଥାତ୍ ଜଗତର ସ୍ଥିତି ବିଷୟରେ ମଧ୍ୟ ଆମ୍ଭେ ଏକମାତ୍ର କାରଣ ଅଟୁଁ ।

ସୂତ୍ର ଓ ମଣିର ଉଦାହରଣ ଦେବାର ତାତ୍ପର୍ଯ୍ୟ ଏହି, ଯେ ସୂତ୍ର ନ ଥିଲେ ଯେପରି ମଣି ଗୋଟା ଗୋଟା ହୋଇ ଯାଆନ୍ତା, ସେହିପରି ଈଶ୍ୱରସତ୍ତା ନ ଥିଲେ, ବ୍ରହ୍ମାଣ୍ଡ ବିଶୃଙ୍ଖଳ ହୋଇଯାଆନ୍ତା । ପୁଣି ମଣିମଧ୍ୟଗତ ସୂତ୍ର ଯେପରି ସହଜରେ ଦେଖା ଯାଏ ନାହିଁ, ସେହିପରି ଜଗତର ଧାରଣକର୍ତ୍ତା ଈଶ୍ୱରଙ୍କୁ ସହଜରେ କେହି ଦେଖି ପାରନ୍ତି ନାହିଁ ।

ଏ ସ୍ଥଳରେ ଏପରି ଆପତ୍ତି ହୋଇପାରେ, ଯେ ସୂତ୍ର ଓ ମଣି ଯେପରି ଦୁଇଟି ସ୍ୱତନ୍ତ୍ର ପଦାର୍ଥ, ଈଶ୍ୱର ଓ ଜଗତ୍ କି ସେହିପରି ଦୁଇଟି ଭିନ୍ନ ପଦାର୍ଥ ? ଅଥବା ମଣି ଅପେକ୍ଷା ସୂତ୍ର ଯେପରି ଅଳ୍ପମୂଲ୍ୟ ଓ ଅଚିରସ୍ଥାୟୀ ଅଟେ, ଜଗତ୍ ତୁଳନାରେ ଈଶ୍ୱର କି ସେହିପରି ? ଏହି ସବୁ ଆପତ୍ତି ଖଣ୍ଡନ ପାଇଁ କେହି କେହି ଟୀକାକାର 'ସୂତ୍ର' ଶବ୍ଦର ସ୍ୱପ୍ନଦର୍ଶୀ 'ତୈଜସ' ଆତ୍ମା ଅର୍ଥ କରିଅଛନ୍ତି । ଅର୍ଥାତ୍ ସ୍ୱପ୍ନଦର୍ଶୀ ପୁରୁଷ ସ୍ୱପ୍ନାବସ୍ଥାରେ ଯେଉଁ ସବୁ ମଣି ଦେଖନ୍ତି, ତାହା ଯେପରି କଳ୍ପିତ ଏବଂ ଜାଗ୍ରତ ଅବସ୍ଥାରେ ପ୍ରକୃତ ବ୍ୟବହାରିକ ଜ୍ଞାନ ଉଦିତ ହୋଇ ସ୍ୱପ୍ନଦୃଷ୍ଟ ମଣି ସବୁକୁ ଯେପରି ମିଥ୍ୟା ଥିବାର ଜଣାଇ ଦିଏ, ସେହିପରି ଏ ସମସ୍ତ ଜଗତ୍ ଆତ୍ମଠାରେ କେବଳ କଳ୍ପିତ ଅଟେ, ତତ୍ତ୍ୱଜ୍ଞାନ ଜାତ ପରେ ଆତ୍ମର ସ୍ୱରୂପ ଅବଗତ ହେଲେ, ଏ ଜଗତ୍ ମିଥ୍ୟା ଥିବାର ସ୍ପଷ୍ଟ ଅନୁଭୂତ ହୁଏ । ଫଳକଥା ଏହି କି ମାୟାଦ୍ୱାରା କେବଳ ଜଗତ୍ ଭିନ୍ନ ବୋଲି ବୋଧ ହୁଏ, କିନ୍ତୁ ବାସ୍ତବରେ ଏହାର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । ଏହାର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ଇତ୍ୟାଦି ଯାହା କିଛି ଦେଖାଯାଏ, ତାହା ଅନାଦିସିଦ୍ଧ ମାୟାର ସ୍ୱଭାବ ଅନୁସାରେ କେବଳ ବ୍ୟବହାରିକ ଦୃଷ୍ଟିରେ ଘଟେ, ତତ୍ତ୍ୱଦୃଷ୍ଟିରେ ଦେଖିଲେ ସେ ସବୁ ମିଥ୍ୟା ବୋଲି ପ୍ରମାଣିତ ହୁଏ । ୭ ।

---

*ଚୈତନ୍ୟ ଏକ, ସର୍ବବ୍ୟାପୀ ଓ ଅଖଣ୍ଡ ହେଲେ ହେଁ ବା, ଶାସ୍ତ୍ରକାରମାନେ ତାହାକୁ ନିମ୍ନଲିଖିତମତେ ଆଠପ୍ରକାର କରି ବର୍ଣ୍ଣନ କରିଅଛନ୍ତି । ଯଥା ୧ ଈଶ୍ୱର, ୨ ହିରଣ୍ୟଗର୍ଭ, ୩ ବିରାଟ, ୪ ପ୍ରାଜ୍ଞ, ୫ ତୈଜସ, ୬ ବିଶ୍ୱ, ୭ ଆଭାସ ଚୈତନ୍ୟ ଓ ୮ କୂଟସ୍ଥ ଚୈତନ୍ୟ । ଏହି କଥାଟି ବିଶଦରୂପେ ବୁଝାଇବାକୁ ଗଲେ ସ୍ୱତନ୍ତ୍ର ଗୋଟିଏ ପୁସ୍ତକ ହୋଇପାରେ । ଅମ୍ଭେମାନେ ଅତି ସଂକ୍ଷେପରେ ତାହାର ମୂଳ ତାତ୍ପର୍ଯ୍ୟ ଏଠାରେ ଉଲ୍ଲେଖ କରୁଅଛୁଁ ।

ଦର୍ଶନଶାସ୍ତ୍ରକାରମାନେ ପ୍ରାଣିମାତ୍ରଙ୍କୁ ସ୍ଥୂଳ, ସୂକ୍ଷ୍ମ, ଏବଂ କାରଣ ଏହି ତିନିପ୍ରକାର ଶରୀରବିଶିଷ୍ଟ ବୋଲି କହନ୍ତି । କର୍ମଫଳ ଅନୁସାରେ ପଞ୍ଚୀକୃତ ମହାଭୂତଦ୍ୱାରା ନିର୍ମିତ, ସୁଖ-ଦୁଃଖ-ଭୋଗର କ୍ଷେତ୍ର, ଅସ୍ତିତ୍ୱ, ଜନ୍ମ, ବୃଦ୍ଧି, ଅବସ୍ଥାନ୍ତର-ପ୍ରାପ୍ତି, କ୍ଷୟ ଓ ବିନାଶ ଏହି ଛଅପ୍ରକାର ବିକାରଯୁକ୍ତ ଯେ ଶରୀର, ତାହାକୁ 'ସ୍ଥୂଳଶରୀର' ବୋଲାଯାଏ । କର୍ମଫଳ ଅନୁସାରେ ଅପଞ୍ଚୀକୃତ ପଞ୍ଚମହାଭୂତଦ୍ୱାରା ନିର୍ମିତ, ସୁଖ-ଦୁଃଖାଦି-ଭୋଗର ସାଧନ, ଓ ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ, ପଞ୍ଚପ୍ରାଣ ଓ ମନ ଏବଂ ବୁଦ୍ଧି ଏହି ସପ୍ତଦଶ କଳାଯୁକ୍ତ ଯେ ଶରୀର, ତାହାକୁ 'ସୂକ୍ଷ୍ମଶରୀର' ବୋଲାଯାଏ ।

ଅନିର୍ବଚନୀୟ ଅନାଦି-ଅବିଦ୍ୟାସ୍ୱରୂପ, ସୂକ୍ଷ୍ମ ଓ ସ୍ଥୂଳଶରୀରର କାରଣ ଏବଂ ନିଜ ସ୍ୱରୂପର ଅପ୍ରକାଶକ ଯେ ଶରୀର, ତାହାକୁ 'କାରଣଶରୀର' ବୋଲାଯାଏ ।

Digitized by PPRACHIN, SOA

ଶ୍ଲୋକଃ ।

ରସୋଽହମପ୍ସୁ କୌନ୍ତେୟ, ପ୍ରଭାସ୍ମି ଶଶିସୂର୍ଯ୍ୟୟୋଃ ।
ପ୍ରଣବଃ ସର୍ବବେଦେଷୁ, ଶବ୍ଦଃ ଖେ ପୌରୁଷଂ ନୃଷୁ । ୮ ।

ଅନ୍ୱୟଃ ।

ହେ କୌନ୍ତେୟ ! ଅହଂ ଅପ୍‌ସୁ ରସଃ, ଶଶିସୂର୍ଯ୍ୟୟୋଃ ପ୍ରଭା, ସର୍ବବେଦେଷୁ ପ୍ରଣବଃ, ଖେ ଶବ୍ଦଃ, ନୃଷୁ ପୌରୁଷଂ ଅସ୍ମି । ୮ ।

ଟୀକା ।

ଜଗତ୍‌ସ୍ଥିତହେତୁତ୍ୱମେବ ପ୍ରପଞ୍ଚୟନ୍ ରସୋଽହମିତ, ପଞ୍ଚଭିଃ । ଅପ୍ସୁ ରସଃ ଅହଂ, ରସତନ୍ମାତ୍ରସ୍ୱରୂପସ୍ୟ ମତ୍ତଭୂତ୍ୟା ଅପ୍ସୁତ୍ୱେନାପ୍ସୁ ସ୍ଥିତୋଽହମିତ୍ୟର୍ଥଃ । ତଥା ଶଶିସୂର୍ଯ୍ୟୟୋଃ ପ୍ରଭାସ୍ମି ଚନ୍ଦ୍ରେ ସୂର୍ଯ୍ୟେ ଚ ପ୍ରକାଶରୂପସ୍ୟ ମଦ୍ଭୂତ୍ୟା ତଦାଶ୍ରୟତ୍ୱେନ ସ୍ଥିତୋଽହମିତ୍ୟର୍ଥଃ । ଏବମନ୍ୟତ୍ରାପି ଦ୍ରଷ୍ଟବ୍ୟଂ । ସର୍ବବେଦେଷୁ ବୈଖରୀରୂପେଷୁ ତନ୍ମୂଳଭୂତଃ ପ୍ରଣବଃ ଓଁକାରଃ ଅସ୍ମି, ଖେ ଆକାଶେ ଶବ୍ଦଃ ଶବ୍ଦତନ୍ମାତ୍ରରୂପୋଽସ୍ମି, ନୃଷୁ ପୁରୁଷେଷୁ ପୌରୁଷମୁଦ୍ୟମୋଽସ୍ମି, ଉଦ୍ୟମେ ହି ପୁରୁଷାସ୍ତିଷ୍ଠନ୍ତି । ୮ ।

ପଦବ୍ୟାଖ୍ୟା ।

ରସୋଽହଂ—ଆମ୍ଭେ ରସସ୍ୱରୂପରେ, ଅପ୍ସୁ—ଜଳରେ, କୌନ୍ତେୟ—ହେ କୁନ୍ତୀପୁତ୍ର (ଅର୍ଜ୍ଜୁନ) !, ପ୍ରଭାସ୍ମି—ପ୍ରଭାରୂପରେ ଅଛୁଁ, ଶଶିସୂର୍ଯ୍ୟୟୋଃ—ଚନ୍ଦ୍ରସୂର୍ଯ୍ୟଙ୍କଠାରେ, ପ୍ରଣବଃ—ଓଁକାରରୂପରେ, ସର୍ବବେଦେଷୁ—ସମସ୍ତ ବେଦମାନଙ୍କରେ, ଶବ୍ଦଃ—ଶବ୍ଦରୂପରେ, ଖେ—ଆକାଶରେ, ପୌରୁଷଂ—ପୁରୁଷାର୍ଥ ବା ଉଦ୍ୟମରୂପରେ, ନୃଷୁ—ମନୁଷ୍ୟମାନଙ୍କଠାରେ । ୮ ।

---

ଯେଉଁ ଅବସ୍ଥାରେ ଶ୍ରୋତ୍ରାଦି ଜ୍ଞାନେନ୍ଦ୍ରିୟଦ୍ୱାରା ଶବ୍ଦାଦି ବିଷୟମାନ ଅନୁଭବ କରାଯାଏ, ତାହାକୁ ଜାଗ୍ରତାବସ୍ଥା ବୋଲାଯାଏ ।

ଜାଗ୍ରତ ଅବସ୍ଥାରେ ଦେଖା ଓ ଶୁଣା ଯାଉଥିବା ବିଷୟମାନ ନିଦ୍ରାକାଳର ଯେଉଁ ଅବସ୍ଥାରେ ସତ୍ୟ ପରି ପ୍ରତୀତ ହୁଏ, ତାହାକୁ ସ୍ୱପ୍ନାବସ୍ଥା ବୋଲାଯାଏ ।

ଯେଉଁ ଅବସ୍ଥାରେ ଜାଗ୍ରତ ବା ସ୍ୱପ୍ନାବସ୍ଥାର ଜ୍ଞାନପରି କିଛି ଜ୍ଞାନ ନ ଥାଏ, ଅଥଚ ସୁଖରେ ନିଦ୍ରା ହୁଏ, ସେହି ଅବସ୍ଥାକୁ ସୁଷୁପ୍ତି ଅବସ୍ଥା ବୋଲାଯାଏ ।

ପୁଣି ଦର୍ଶନଶାସ୍ତ୍ରରେ ବ୍ୟଷ୍ଟି ଓ ସମଷ୍ଟିବୋଲି ଦୁଇଟି ଶବ୍ଦ ବ୍ୟବହୃତ ହୁଏ । ତନ୍ମଧ୍ୟରୁ 'ସମଷ୍ଟି' ଶବ୍ଦର ଅର୍ଥ ସମୁଦାୟ । ଯେପରି 'ବନ' କହିଲେ ନାନାପ୍ରକାର ବୃକ୍ଷ ଲତା ଗୁଳ୍ମାଦିବିଶିଷ୍ଟ ସ୍ଥାନ ବୁଝାଯାଏ । ପୁଣି 'ବ୍ୟଷ୍ଟି' ଶବ୍ଦର ଅର୍ଥ 'ସମଷ୍ଟି'ର ଏକ୨ ଅଂଶ । ଯେପରି 'ବୃକ୍ଷ' କହିଲେ ବନର ଅନ୍ତର୍ଗତ ଗୋଟିଏ ମାତ୍ର ଗଛ ବୁଝାଯାଏ ।

ଯେଉଁ ଚୈତନ୍ୟ ସମଷ୍ଟିଭାବରେ ସମସ୍ତ ସ୍ଥୂଳଶରୀରରେ ଅଛନ୍ତି, ତାହାଙ୍କୁ 'ବିରାଟ' ବୋଲାଯାଏ । ସେହିପରି ସମଷ୍ଟିଭାବରେ ସମସ୍ତ ସୂକ୍ଷ୍ମଶରୀରେ ଅଧିଷ୍ଠିତ ଚୈତନ୍ୟଙ୍କୁ 'ହିରଣ୍ୟଗର୍ଭ' ଓ ସମଷ୍ଟିଭାବରେ ସମସ୍ତ କାରଣଶରୀରରେ ଅଧିଷ୍ଠିତ ଚୈତନ୍ୟଙ୍କୁ 'ଈଶ୍ୱର' ବୋଲାଯାଏ । ବ୍ୟଷ୍ଟିଭାବରେ ପ୍ରତ୍ୟେକ ସ୍ଥୂଳଶରୀରରେ ଅଧିଷ୍ଠିତ ଜାଗ୍ରତାବସ୍ଥାଭିମାନୀ ଚୈତନ୍ୟଙ୍କୁ 'ବିଶ୍ୱ', ସୂକ୍ଷ୍ମ ଶରୀରରେ ଅଧିଷ୍ଠିତ ଓ ସ୍ୱପ୍ନାବସ୍ଥାଭିମାନୀ ଚୈତନ୍ୟଙ୍କୁ 'ତୈଜସ' ଓ କାରଣଶରୀରରେ ଅଧିଷ୍ଠିତ ନିଦ୍ରାବସ୍ଥାଭିମାନୀ ଚୈତନ୍ୟଙ୍କୁ 'ପ୍ରାଜ୍ଞ' ବୋଲାଯାଏ । ଫଳକଥା ଏହି କି ଏକ ଆତ୍ମା ସମଷ୍ଟିଭାବରେ ସ୍ଥୂଳ ସୂକ୍ଷ୍ମ ଓ କାରଣଶରୀରରେ ଅଧିଷ୍ଠିତ ହୋଇ ଯଥାକ୍ରମେ ବିରାଟ, ହିରଣ୍ୟଗର୍ଭ ଓ ଈଶ୍ୱର ଏବଂ ବ୍ୟଷ୍ଟିଭାବରେ ସ୍ଥୂଳ ସୂକ୍ଷ୍ମ ଓ କାରଣଶରୀରରେ ଅଧିଷ୍ଠିତ ହୋଇ 'ବିଶ୍ୱ' 'ତୈଜସ' ଓ 'ପ୍ରାଜ୍ଞ' ନାମରେ କଥିତ ହୁଅନ୍ତି । ଏ ଜଗତ୍ ଏହି ଛଅପ୍ରକାର ଚୈତନ୍ୟମୟ ହୋଇ ପ୍ରକାଶିତ ଅଛି ।

ଚୈତନ୍ୟର ଜ୍ୟୋତି ଗ୍ରହଣ କରିବାକୁ ପ୍ରାଣିଦେହରେ ଯେ ଏକପ୍ରକାର ଆଧାର ଅଛି, ତାହାକୁ 'ଆଭାସଚୈତନ୍ୟ'

Digitized by PPRACHIN, SOA

ଅନୁବାଦ ।

ହେ କୌନ୍ତେୟ ! ଆମ୍ଭେ ଜଳରେ ରସସ୍ୱରୂପରେ, ଚନ୍ଦ୍ର ଓ ସୂର୍ଯ୍ୟଠାରେ ପ୍ରଭାରୂପରେ, ବେଦମାନଙ୍କରେ ପ୍ରଣବ (ଓଁକାର) ରୂପରେ, ଆକାଶରେ ଶବ୍ଦରୂପରେ ଏବଂ ମନୁଷ୍ୟମାନଙ୍କଠାରେ ପୌରୁଷ (ଉଦ୍ୟମ)ରୂପରେ ବିଦ୍ୟମାନ ଅଛୁଁ । ୮ ।

ବିଶଦବ୍ୟାଖ୍ୟା ।

ଜଳର ରସହିଁ ମୂଳତତ୍ତ୍ୱ ଓ ତନ୍ମାତ୍ର ଏବଂ ରସହିଁ ଜଳର ସାର, ପରମେଶ୍ୱର ସେହି ରସସ୍ୱରୂପ । ପ୍ରଭା ଅର୍ଥାତ୍ ପ୍ରକାଶକ ଆଲୋକହିଁ ଚନ୍ଦ୍ରସୂର୍ଯ୍ୟଙ୍କର ତନ୍ମାତ୍ର ଓ ସାରପଦାର୍ଥ ଭଗବାନଙ୍କର ସତ୍ତା ସେହି ପ୍ରଭାରୂପରେ ବିଦ୍ୟମାନ । ସମସ୍ତ ବେଦମାନଙ୍କରେ ଓଁକାର ସାରପଦାର୍ଥ, କାହିଁକି ନା ଓଁକାର ନ ଥିଲେ, ବେଦର କୌଣସି ଶକ୍ତି ନ ଥାଏ । ସେହି ପ୍ରଣବ ଭଗବାନଙ୍କର ସତ୍ତା । ଆକାଶର ଶବ୍ଦହିଁ ସାର, ସେହି ଶବ୍ଦ ପରମେଶ୍ୱରଙ୍କ ସତ୍ତାର ବିକାଶ ମାତ୍ର । ମନୁଷ୍ୟ ଉଦ୍ୟମବିହୀନ ହୋଇ ରହି ପାରନ୍ତି ନାହିଁ, ଅତଏବ ଉଦ୍ୟମ (ପୌରୁଷ) ମନୁଷ୍ୟର ସାରପଦାର୍ଥ, ଭଗବାନ୍ ସେହି ପୌରୁଷରୂପରେ ମନୁଷ୍ୟଦେହରେ ବିଦ୍ୟମାନ ।

ଫଳକଥା ଏହି କି, ଏହି ଦୃଶ୍ୟମାନ ଜଗତରେ ଯେଉଁ ପଦାର୍ଥରେ ଯାହା ସାର ବା ଯାହା ଅଭାବରେ ଯେଉଁ ପଦାର୍ଥ ରହି ନ ପାରେ, ପରମେଶ୍ୱରସତ୍ତା ସେହି ୨ ସାରରୂପରେ (ସ୍ଥିତିକାରଣ ହୋଇ) ସେହି ୨ ପଦାର୍ଥରେ ଅବସ୍ଥିତ ଅଛି । ୮ ।

ଶ୍ଳୋକଃ ।

ପୁଣ୍ୟୋ ଗନ୍ଧଃ ପୃଥିବ୍ୟାଂ ଚ, ତେଜଶ୍ଚାସ୍ମି ବିଭାବସୌ ।
ଜୀବନଂ ସର୍ବଭୂତେଷୁ, ତପଶ୍ଚାସ୍ମି ତପସ୍ୱିଷୁ । ୯ ।

---

ବୋଲାଯାଏ । ସର୍ବପ୍ରକାର ପଦାର୍ଥ ପ୍ରକାଶିତ କରି କାହିଁରେ ଲିପ୍ତ ନ ହୋଇ ଯେ ଏକ ନିର୍ବିକାର ଚୈତନ୍ୟ ଅଛନ୍ତି, ତାହାଙ୍କୁ 'କୂଟସ୍ଥଚୈତନ୍ୟ' ବୋଲାଯାଏ । ନୃତ୍ୟଶାଳାସ୍ଥିତ 'ଦୀପ' ଯେପରି ନର୍ତ୍ତକ, ବାଦକ, ଗାୟକ ଓ ଦର୍ଶକ ସମସ୍ତଙ୍କୁ ପ୍ରକାଶିତ କରି କାହିଁରେ ଲିପ୍ତ ନ ଥାଏ ଏବଂ ନର୍ତ୍ତକାଦି କେହି ନ ଥିଲେ ସୁଦ୍ଧା, ସେ ଯେପରି ହ୍ରାସ ନ ହୋଇ ସମାନଭାବରେ ପ୍ରଦୀପ୍ତ ଥାଏ, ସେହିପରି ଜଗତର ଉତ୍ପତ୍ତି ସ୍ଥିତି ଓ ଲୟ ଆଦି ସମସ୍ତ ଘଟନା 'କୂଟସ୍ଥଚୈତନ୍ୟ'ଙ୍କଦ୍ୱାରା ପ୍ରକାଶିତ ଅଥଚ ସେ କାହିଁରେ ଲିପ୍ତ ନୁହନ୍ତି ଏବଂ ଜଗତ୍ ନ ଥିଲେ ସୁଦ୍ଧା ସେ କୂଟସ୍ଥଚୈତନ୍ୟ ସେହିପରି ସର୍ବଦା ଦୀପ୍ତ ରହିବେ । ସୂର୍ଯ୍ୟକିରଣ ବା ପ୍ରଦୀପର ଆଲୋକ ନ ଥିଲେ ନେତ୍ରର ଆଲୋକ ଯେପରି କୌଣସି ଦ୍ରବ୍ୟ ପ୍ରକାଶ କରିବାକୁ ସମର୍ଥ ହୁଏ ନାହିଁ, ସେହିପରି କୂଟସ୍ଥଚୈତନ୍ୟ ଅଭାବରେ ଆଭାସଚୈତନ୍ୟ କୌଣସି କାର୍ଯ୍ୟ କରି ପାରନ୍ତି ନାହିଁ, ପୁଣି ଯେପରି ନେତ୍ର-ଆଲୋକ ଅଭାବରେ କୌଣସି ଦ୍ରବ୍ୟ ଦେଖାଯାଏ ନାହିଁ ସେହିପରି ଆଭାସଚୈତନ୍ୟ ନ ଥିଲେ, କୂଟସ୍ଥଚୈତନ୍ୟଙ୍କ ଦ୍ୱାରା ପ୍ରକାଶିତ କୌଣସି ଦ୍ରବ୍ୟ ଜୀବ ବୁଝି ପାରନ୍ତା ନାହିଁ ଆଭାସଚୈତନ୍ୟ କୂଟସ୍ଥଚୈତନ୍ୟଙ୍କର ପ୍ରତିବିମ୍ବ ଗ୍ରହଣ କରିବାର ଆଧାର ମାତ୍ର ।

ଉପରୋକ୍ତ ବ୍ୟାଖ୍ୟାରୁ ପାଠକମାନେ ବୁଝି ପାରିଥିବେ, ଯେ ମନୋମୟ ସୂକ୍ଷ୍ମଶରୀରରେ ଅଧିଷ୍ଠିତ ଚୈତନ୍ୟହିଁ, 'ତୈଜସ' ଆତ୍ମା ଓ ତାହାଙ୍କୁ ଏ ଶ୍ଳୋକରେ 'ସୂତ୍ର' ଶବ୍ଦଦ୍ୱାରା ଲକ୍ଷ୍ୟ କରା ହୋଇଅଛି; ଅର୍ଥାତ୍ ସ୍ୱପ୍ନଦର୍ଶୀ ଆତ୍ମାଙ୍କ ନାମ 'ସୂତ୍ର' ଅଟେ ।

Digitized by PPRACHIN, SOA

ଅନ୍ୱୟଃ ।

ପୃଥିବ୍ୟାଂ ପୁଣ୍ୟଃ ଗନ୍ଧଃ, ଚ ବିଭାବସୌ ତେଜଃ, ଚ ସର୍ବଭୂତେଷୁ ଜୀବନଂ, ଚ ତପସ୍ୱିଷୁ ତପଃ (ଅହଂ) ଅସ୍ମି । ୯ ।

ଟୀକା ।

କିଞ୍ଚ ପୁଣ୍ୟ ଇତି । ପୁଣ୍ୟୋଽବିକୃତୋଗନ୍ଧଃ ଗନ୍ଧତନ୍ମାତ୍ରଂ ପୃଥିବ୍ୟାଶ୍ରୟଭୂତୋଽହମିତ୍ୟର୍ଥଃ, ଯଦ୍ୱା ଦୁରିତଦୂଷଣା-ଶ୍ରୟତ୍ୱସ୍ୟ ବିବକ୍ଷିତତ୍ୱାତ୍ ସୁରଭିଗନ୍ଧସ୍ୟୈବ ଉତ୍କୃଷ୍ଟତୟା ଦୂରତତ୍ୱାତ୍ ପୁଣ୍ୟୋଗନ୍ଧ ଇତ୍ୟୁକ୍ତଂ ତଥା ବିଭାବସୌ ବହ୍ନୌ ଯତ୍ତେଜଃ ଦୁଃସହା ଦୀପ୍ତିସ୍ତଦହଂ, ସର୍ବଭୂତେଷୁ ଜୀବନଂ ପ୍ରାଣଧାରଣମାୟୁରହମିତ୍ୟର୍ଥଃ, ତପସ୍ୱିଷୁ ବାନପ୍ରସ୍ଥାଦିଷୁ ଦ୍ୱନ୍ଦ୍ୱସହନରୂପଂ ତପୋଽହମସ୍ମି । ୯ ।

ପଦବ୍ୟାଖ୍ୟା ।

ପୁଣ୍ୟୋଗନ୍ଧଃ—ପବିତ୍ରଗନ୍ଧ, ପୃଥିବ୍ୟାଂ—ଭୂମିରେ, ଚ—ପୁଣି, ତେଜଶ୍ଚ ଅସ୍ମି—ତେଜଃସ୍ୱରୂପରେ ଅଛୁଁ, ବିଭା-ବସୌ—ଅଗ୍ନିରେ, ଜୀବନଂ ସର୍ବଭୂତେଷୁ—ସମସ୍ତ ପ୍ରାଣିମାନଙ୍କଠାରେ ଜୀବନସ୍ୱରୂପରେ, ତପଶ୍ଚ ଅସ୍ମି ତପସ୍ୱିଷୁ—ପୁଣି ତପସ୍ୱିମାନଙ୍କଠାରେ ତପସ୍ୟାରୂପରେ ଅଛୁଁ । ୯ ।

ଅନୁବାଦ ।

(ଆମ୍ଭେ) ପୃଥିବୀରେ ପବିତ୍ରଗନ୍ଧରୂପରେ, ଅଗ୍ନିରେ ତେଜରୂପରେ, ସର୍ବଭୂତରେ ଜୀବନସ୍ୱରୂପରେ ଏବଂ ତପସ୍ୱିମାନଙ୍କଠାରେ ତପସ୍ୟାରୂପରେ ବିଦ୍ୟମାନ ଅଛୁଁ । ୯ ।

ବିଶଦବ୍ୟାଖ୍ୟା ।

ପୃଥିବୀର 'ତନ୍ମାତ୍ର' ଗନ୍ଧ, ସେହି ପୃଥିବୀର ମୂଳ ଓ ସାର ଅଟେ । ସେହି ଗନ୍ଧ, ବିକୃତ ଅବ-ସ୍ଥାରେ ଦୂଷିତଗନ୍ଧ ଓ ଅବିକୃତ ବା ସ୍ୱାଭାବିକ ଅବସ୍ଥାରେ ସୁରଭି ଅର୍ଥାତ୍ 'ପବିତ୍ରଗନ୍ଧ' ବୋଲି ପରିଚିତ । ଭଗବାନ୍ କହିଲେ, ଯେ ଆମ୍ଭେ ପୃଥିବୀରେ ସେହି ସ୍ୱାଭାବିକ ପବିତ୍ରଗନ୍ଧରୂପରେ ବିଦ୍ୟମାନ ଅଛୁଁ । ଅଗ୍ନିର ଯେଉଁ ତେଜରେ ସମସ୍ତ ପଦାର୍ଥ ଦଗ୍ଧ ହୁଏ ବା ଉତ୍ତପ୍ତ ହୁଏ ଏବଂ ପ୍ରକାଶିତ ହୁଏ, ଭଗବାନ୍ ସେହି ତେଜରୂପରେ ଅଗ୍ନିରେ ବର୍ତ୍ତମାନ । ସ୍ଥାବର ଜଙ୍ଗମ ସମସ୍ତ ଜୀବର ଜୀବନୀଶକ୍ତି ବା ପରମାୟୁ ଓ ଜୀବନରକ୍ଷକ ଅନାଦି ପରମେଶ୍ୱରଙ୍କ ସତ୍ତା ଭିନ୍ନ ଆଉ କିଛି ନୁହେ ।

ଏହି ଦୁଇ ଶ୍ଳୋକରେ ଭଗବାନ୍ ଜଗତର ଯେତେ ପଦାର୍ଥରେ ଯେ ରୂପରେ ଅଛନ୍ତି ବୋଲି କହିଲେ, ତଦ୍ଭିନ୍ନ ଆଉ ଯେତେ ପଦାର୍ଥ ରହିଲା, ସେ ସବୁରେ ମଧ୍ୟ ସାରରୂପରେ ସେହି ଏକ ପରମେଶ୍ୱର ବିଦ୍ୟମାନ ଅଛନ୍ତି ବୋଲି, ଏହି ଶ୍ଳୋକାନ୍ତର୍ଗତ 'ଚ'କାରରୁ ଜାଣି-ବାକୁ ହେବ । ୯ ।

ଶ୍ଳୋକଃ ।

ବୀଜଂ ମାଂ ସର୍ବଭୂତାନାଂ, ବିଦ୍ଧି ପାର୍ଥ ସନାତନଂ ।
ବୁଦ୍ଧିର୍ବୁଦ୍ଧିମତାମସ୍ମି, ତେଜସ୍ତେଜସ୍ୱିନାମହଂ । ୧୦ ।

ଅନ୍ୱୟଃ ।

ହେ ପାର୍ଥ ! ମାଂ ସର୍ବଭୂତାନାଂ ସନାତନଂ ବୀଜଂ ବିଦ୍ଧି । ଅହଂ ବୁଦ୍ଧିମତାଂ ବୁଦ୍ଧିଃ, ତେଜସ୍ୱିନାଂ ତେଜଃ ଅସ୍ମି । ୧୦ ।

Digitized by PPRACHIN, SOA

## ଟୀକା ।

କିଞ୍ଚ ସର୍ବେଷାଂ ଚରାଚରାଣାଂ ଭୂତାନାଂ ବୀଜଂ ସଜାତୀୟକାର୍ଯ୍ୟୋତ୍ପାଦନସାମର୍ଥ୍ୟଂ ସନାତନଂ ନିତ୍ୟଂ ଉତ୍ପନ୍ନେ-ତରସର୍ବକାର୍ଯ୍ୟେଷୁ ଅନୁସ୍ୟୂତଂ ତଦେବ ବୀଜଂ ମତ୍ତ୍ୱ ଭୂତଂ ବିଦ୍ଧି ନତୁ ପ୍ରତିବ୍ୟକ୍ତି ଭିନ୍ନଂ ନଶ୍ୟତ୍ ତଥା ବୁଦ୍ଧିମତାଂ ବୁଦ୍ଧିଃ ପ୍ରଜ୍ଞାହମସ୍ମି ତେଜସ୍ୱିନାଂ ପ୍ରଗଲ୍ଭାନାଂ ତେଜଃ ପ୍ରାଗଲ୍ଭ୍ୟମହଂ । ୧୦ ।

## ପଦବ୍ୟାଖ୍ୟା ।

ବୀଜଂ—ସଜାତୀୟ-ପଦାର୍ଥ-ଉତ୍ପାଦନସମର୍ଥ କାରଣ, ମାଂ—ଆମ୍ଭଙ୍କୁ, ସର୍ବଭୂତାନାଂ—ସମସ୍ତ ଚର ଓ ଅଚର ପ୍ରାଣିମାନଙ୍କର, ବିଦ୍ଧି—ଜାଣ, ପାର୍ଥ—ହେ ଅର୍ଜୁନ!, ସନାତନଂ—ମୂଳ ଅବିନାଶୀ, ବୁଦ୍ଧିର୍ବୁଦ୍ଧିମତାମସ୍ମି—ବୁଦ୍ଧିମାନ ଲୋକଙ୍କର ପ୍ରଜ୍ଞା ଅଟୁଁ, ତେଜଃ—ପ୍ରଗଲ୍ଭତା, ତେଜସ୍ୱିନାଂ—ତେଜୋବନ୍ତ ପୁରୁଷ (ପ୍ରଗଲ୍ଭ) ମାନଙ୍କର, ଅହଂ—ଆମ୍ଭେ । ୧୦ ।

## ଅନୁବାଦ ।

ହେ ଅର୍ଜୁନ! ଆମ୍ଭଙ୍କୁ ସର୍ବଭୂତର ମୂଳକାରଣ ବୋଲି ଜାଣ । ଆମ୍ଭେ ବୁଦ୍ଧିମାନମାନଙ୍କର ବୁଦ୍ଧି ଓ ତେଜସ୍ୱିମାନଙ୍କର ତେଜଃସ୍ୱରୂପ ଅଟୁଁ । ୧୦ ।

## ବିଶଦବ୍ୟାଖ୍ୟା ।

ସାଧାରଣତଃ ସଜାତୀୟ ପଦାର୍ଥ ଉତ୍ପାଦନକାରୀ ବୀଜ ନଷ୍ଟ ହୋଇଯାଏ, ଯେପରି ଅଙ୍କୁର ଉତ୍ପାଦନ କରି ବୀଜ ବିନଷ୍ଟ ହୁଏ । ମାତ୍ର ଭଗବାନ୍ ଙ୍କ ସର୍ବଭୂତର ସେହିପରି ବୀଜ ? ଅର୍ଥାତ୍ ଭୂତ ସବୁ ଉତ୍ପାଦନ କରି, ଭଗବାନ୍ ଙ୍କ ବିନଷ୍ଟ ହୁଅନ୍ତି ? ନା, ତାହା ନୁହେ । ଭଗବାନ୍ ସର୍ବଭୂତର 'ସନାତନ' ବୀଜ ଅର୍ଥାତ୍ ଅବିନାଶୀ ବୀଜ ଅଟନ୍ତି । ସୃଷ୍ଟିର ଉତ୍ପତ୍ତି ଓ ବିନାଶ ହେଲେ ମଧ୍ୟ, ସେ ବୀଜ ବିନଷ୍ଟ ହେବାର ନୁହେ । କାହିଁକି ନା ସେ ବୀଜ ନଷ୍ଟ ହେଲେ ପୁନର୍ବାର ସୃଷ୍ଟି ହୁଅନ୍ତା କିପରି ?

ଶ୍ରୀଭଗବାନ୍ କହୁଅଛନ୍ତି, ମନୁଷ୍ୟମାନେ ଯେଉଁ ବୁଦ୍ଧିବଳରେ ଜ୍ଞେୟ, ଅଜ୍ଞେୟ ଓ ସୂକ୍ଷ୍ମବସ୍ତୁର ନିରୂପଣ କରନ୍ତି, ଏବଂ ଯେଉଁ ତେଜୋବଳରେ ଅନ୍ୟଙ୍କୁ ପରାସ୍ତ କରନ୍ତି, ଆମ୍ଭେ ସେହି ବୁଦ୍ଧି ଓ ତେଜରୂପରେ ସେମାନଙ୍କଠାରେ ଅବସ୍ଥାନ କରୁଁ । ୧୦ ।

## ଶ୍ଳୋକଃ ।

ବଲଂ ବଲବତାଂ ଚାହଂ, କାମରାଗବିବର୍ଜିତଂ ।

ଧର୍ମାବିରୁଦ୍ଧୋ ଭୂତେଷୁ, କାମୋଽସ୍ମି ଭରତର୍ଷଭ । ୧୧ ।

## ଅନ୍ୱୟଃ ।

ହେ ଭରତର୍ଷଭ! ଅହଂ ବଲବତାଂ କାମରାଗବିବର୍ଜିତଂ ବଲଂ ଚ ଭୂତେଷୁ ଧର୍ମାବିରୁଦ୍ଧଃ କାମଃ ଅସ୍ମି । ୧୧ ।

## ଟୀକା ।

କିଞ୍ଚ ବଲମିତି । କାମୋଽପ୍ରାପ୍ତେଷୁ ବସ୍ତୁଷ୍ୱଭିଲାଷୋ ରଜଃସ୍ଥଃ ରାଗଃ ପୁନରଭିଲଷିତେଽର୍ଥେ ପ୍ରାପ୍ତେଽପି ପୁନରଧିକେଽର୍ଥେ ଚିତ୍ତରଞ୍ଜନାତ୍ମକସ୍ତୃଷ୍ଣାପର୍ଯ୍ୟାୟସ୍ତାମସଃ, ତାଭ୍ୟାଂ ବିବର୍ଜିତଂ ବଲବତାଂ ବଲମସ୍ମି ସାତ୍ତ୍ୱିକଂ ସ୍ୱଧର୍ମାନୁଷ୍ଠାନ-ସାମର୍ଥ୍ୟମହମିତ୍ୟର୍ଥଃ । ଧର୍ମେଣାବିରୁଦ୍ଧଃ ସ୍ୱଦାରେଷୁ ପୁତ୍ରୋତ୍ପାଦନମାତ୍ରୋପଯୋଗୀ କାମୋଽହମିତି । ୧୧ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ବଲଂ—ସାମର୍ଥ୍ୟ, ବଲବତାଂ—ବଲବାନ୍ ପୁରୁଷମାନଙ୍କର, ଅହଂ—ଅଟେ, କାମରାଗବିବର୍ଜ୍ଜିତଂ—(ରଜୋଗୁଣ ଜନ୍ମ) କାମ ଓ (ତମୋଗୁଣ ଉତ୍ପନ୍ନ) ରାଗ-ରହିତ, ଧର୍ମାବିରୁଦ୍ଧଃ—ଧର୍ମର ଅବିରୋଧୀ, ଭୂତେଷୁ—ପ୍ରାଣିମାନଙ୍କଠାରେ, କାମଃ ଅସ୍ମି—କାମସ୍ୱରୂପ ଅଟୁଁ, ଭରତର୍ଷଭ—ହେ ଭରତକୁଳର ଶ୍ରେଷ୍ଠ ! । ୧୧ ।

ଅନୁବାଦ ।

ହେ ଭରତକୁଳପ୍ରବର ! ଆମ୍ଭେ ବଳବାନ୍‌ମାନଙ୍କର କାମରାଗବର୍ଜ୍ଜିତ ବଳ, ପୁଣି ପ୍ରାଣିମାନଙ୍କର ଧର୍ମର ଅବିରୋଧୀ କାମସ୍ୱରୂପ ଅଟୁଁ । ୧୧ ।

ବିଶଦବ୍ୟାଖ୍ୟା ।

ଅପ୍ରାପ୍ତ ପଦାର୍ଥର ପ୍ରାପ୍ତି ବିଷୟରେ ଯେଉଁ ଇଚ୍ଛା, ତାହାକୁ 'କାମ', ଏବଂ ସେ ରଜୋଗୁଣରୁ ଉତ୍ପନ୍ନ ବୋଲି ତାହାକୁ 'ରାଜସ' ବୋଲାଯାଏ । ଆଉ ଅଭିଲଷିତ ପଦାର୍ଥ ପ୍ରାପ୍ତି ହେଲେ, ଅଧିକ ପଦାର୍ଥ ପାଇବା ବିଷୟରେ ଯେଉଁ ତୃଷ୍ଣା ହୁଏ, ତାହାକୁ 'ରାଗ' ବୋଲାଯାଏ ଓ ତାହା ତମୋଗୁଣସମୁତ୍ପନ୍ନ ବୋଲି 'ତାମସ' ନାମରେ ମଧ୍ୟ ପରିଚିତ ହୁଏ । ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଆମ୍ଭେ ବଳବନ୍ତ ଲୋକମାନଙ୍କର କାମରାଗବର୍ଜ୍ଜିତ ବଳ ଅର୍ଥାତ୍ ସ୍ୱଧର୍ମ ଅନୁଷ୍ଠାନସହାୟ ସାତ୍ତ୍ୱିକ ବଳ ଅଟୁଁ । ପୁଣି ଧର୍ମାବିରୁଦ୍ଧ ଅର୍ଥାତ୍ ଧର୍ମଶାସ୍ତ୍ର ଅନୁମୋଦିତ କାମଚେଷ୍ଟା, ଯାହା ଦ୍ୱାରା କି ମନୁଷ୍ୟ କେବଳ ନିଜର ବିବାହିତା ସ୍ତ୍ରୀସହିତରେ ପୁତ୍ର କାମନାରେ ରତ ହୁଏ, ଆମ୍ଭେ ସେହି କାମ ଅଟୁଁ ।

ଫଳକଥା ଏହି କି, ମନୁଷ୍ୟର ଯେଉଁ ବୃତ୍ତି ପବିତ୍ରଭାବବିଶିଷ୍ଟ, ତାହାହିଁ ଭଗବାନଙ୍କର ବିଭୂତିର ବିକାଶ ଅଟେ । ୧୧ ।

ଶ୍ଳୋକଃ ।

ଯେ ଚୈବ ସାତ୍ତ୍ୱିକା ଭାବା, ରାଜସାସ୍ତାମସାଶ୍ଚ ଯେ ।
ମତ୍ତ ଏବେତି ତାନ୍ ବିଦ୍ଧି, ନ ତ୍ୱହଂ ତେଷୁ ତେ ମୟି । ୧୨ ।

ଅନ୍ୱୟଃ ।

ଯେ ସାତ୍ତ୍ୱିକା ଏବ ଭାବାଃ ଯେ ରାଜସାଃ ତାମସାଃ ଚ ତାନ୍ ମତ୍ତଃ ଏବ (ଜାତାନ୍) ଇତି ବିଦ୍ଧି, ଅହଂ, ନ ତେଷୁ ତେ ତୁ ମୟି (ସନ୍ତି) । ୧୨ ।

ଟୀକା ।

କିଞ୍ଚ ଯେ ଚୈବେତି । ଯେ ଚାନ୍ୟେଽପି ସାତ୍ତ୍ୱିକା ଭାବାଃ ଶମଦମାଦୟଃ ରାଜସାଶ୍ଚ ହର୍ଷଦର୍ପାଦୟଃ ତାମସାଶ୍ଚ ଯେ ଶୋକମୋହାଦୟଃ ପ୍ରାଣିନାଂ ସ୍ୱକର୍ମବଶାତ୍ ଜାୟନ୍ତେ ତାନ୍ ସର୍ବାନ୍ ମତ୍ତ ଏବ ଜାତାନ୍ ବିଦ୍ଧି ମଦୀୟ ପ୍ରକୃତିଗୁଣକାର୍ଯ୍ୟତ୍ୱାତ୍, ଏବମପି ତେଷ୍ୱହଂ ନ ବର୍ତ୍ତେ ଜୀବବତ୍ ତଦଧୀନୋଽହଂ ନ ଭବାମୀତ୍ୟର୍ଥଃ, ତେ ତୁ ମଦଧୀନାଃ ସନ୍ତୋ ମୟି ବର୍ତ୍ତନ୍ତ ଇତ୍ୟର୍ଥଃ । ୧୨ ।

ପଦବ୍ୟାଖ୍ୟା ।

ଯେ ଚୈବ ସାତ୍ତ୍ୱିକା ଭାବାଃ—ସତ୍ତ୍ୱଗୁଣରୁ ଉତ୍ପନ୍ନ ଯେଉଁ ଭାବସବୁ, ରାଜସାଃ—ରଜୋଗୁଣ ଉତ୍ପନ୍ନ ଭାବ, ତାମ-

Digitized by PPRACHIN, SOA

ସାଶ୍ଚ ଯେ—ତମୋଗୁଣ ଉତ୍ପନ୍ନ ଯେଉଁ ଭାବମାନ, ମତ୍ତ ଏବ ଇତି—କେବଳ ଅମ୍ଭଠାରୁ ଜାତ ହୋଇ, ତାନ୍ ବିଦ୍ଧି—ସେମାନଙ୍କୁ ଜାଣ, ନ ତୁ ଅହଂ ତେଷୁ—ଅମ୍ଭେ ସେମାନଙ୍କଠାରେ ନ ଥାଉଁ, ତେ ମୟି—ସେମାନେ ଅମ୍ଭଠାରେ ଥାନ୍ତି ଅର୍ଥାତ୍ ଅମ୍ଭର ଅଧୀନ ଅଟନ୍ତି । ୧୨ ।

## ଅନୁବାଦ ।

ସାତ୍ତ୍ୱିକ, ରାଜସ ଓ ତାମସ ଯେତେ ପ୍ରକାର ଭାବ ଅଛି, ସେ ସବୁ ଅମ୍ଭଠାରୁ ଉତ୍ପନ୍ନ ବୋଲି ଜାଣ । ଅମ୍ଭେ ସେ ସବୁ ଭାବର ଅଧୀନ ନୋହୁଁ, କିନ୍ତୁ ସେମାନେ ଅମ୍ଭର ଅଧୀନ ଅଟନ୍ତି । ୧୨ ।

## ବିଶଦବ୍ୟାଖ୍ୟା ।

ଶମ, ଦମ, ତିତିକ୍ଷା, ଉପରତି ପ୍ରଭୃତି ସାତ୍ତ୍ୱିକଭାବ ଓ ହର୍ଷ, ଦର୍ପ, କାମ ପ୍ରଭୃତି ରାଜସଭାବ, ଏବଂ ଶୋକ, ମୋହ, କ୍ରୋଧ ପ୍ରଭୃତି ତାମସଭାବ, ଏମାନେ ସବୁ ଅମ୍ଭଠାରୁ ଜାତ ବୋଲି ଜାଣ । ଏ ସବୁ ଭାବ ମନୁଷ୍ୟର କର୍ମଗୁଣରେ ଜାତ ହେଲେ ହେଁ, ପ୍ରକୃତରେ ଅମ୍ଭଠାରୁ ଜାତ ବୋଲି ଜାଣ । କାହିଁକି ନା ଗୁଣ ସବୁ ପ୍ରକୃତିରୁ ଜାତ, ପ୍ରକୃତି ଅମ୍ଭଠାରୁ ଜାତ, ଏବଂ ଅମ୍ଭେ ସବୁ ପଦାର୍ଥର ସନାତନ କାରଣ ଥିବାରୁ, ଏମାନେ ସମସ୍ତେ ଅମ୍ଭଠାରୁ ଜାତ ଅଟନ୍ତି । ସାଧାରଣ ଜୀବ ଯେପରି ସାତ୍ତ୍ୱିକ ରାଜସ ଓ ତାମସ ଭାବର ଅଧୀନ, ଅମ୍ଭେ ସେପରି ସେ ସବୁ ଭାବରେ ନ ଥାଉଁ; ଅର୍ଥାତ୍ ଭାବମାନଙ୍କର ଅଧୀନ ନୋହୁଁ, ମାତ୍ର ସେମାନେ ଅମ୍ଭର ଅଧୀନ ଅଟନ୍ତି । ୧୨ ।

## ଶ୍ଳୋକଃ ।

ତ୍ରିଭିର୍ଗୁଣମୟୈର୍ଭାବୈରେଭିଃ ସର୍ବମିଦଂ ଜଗତ୍ ।
ମୋହିତଂ ନାଭିଜାନାତି, ମାମେଭ୍ୟଃ ପରମବ୍ୟୟଂ । ୧୩ ।

## ଅନ୍ୱୟଃ ।

ଏଭିଃ ତ୍ରିଭିଃ ଗୁଣମୟୈଃ ଭାବୈଃ ଇଦଂ ସର୍ବଂ ଜଗତ୍ ମୋହିତଂ (ଅତଃ) ଏଭ୍ୟଃ ପରଂ ଅବ୍ୟୟଂ ମାଂ ନ ଅଭିଜାନାତି । ୧୩ ।

## ଟୀକା ।

ଏବମ୍ଭୂତଂ ଈଶ୍ୱରଂ ତ୍ୱାଂ ଅୟଂ ଜନଃ କମିତି ନ ଜାନାତି ଇତ୍ୟତ ଆହ, ତ୍ରିଭିରିତି । ତ୍ରିଭିସ୍ତ୍ରିବିଧୈଃ ଏଭିଃ ପୂର୍ବୋକ୍ତୈର୍ଗୁଣମୟୈଃ କାମଲୋଭାଦିଭିଃ ଗୁଣବିକାରୈଃ ଭାବୈଃ ସ୍ୱଭାବୈଃ ମୋହିତମିଦଂ ଜଗତ୍ ଅତୋମାଂ ନାଭିଜାନାତି କଥମ୍ଭୂତଂ ଏଭ୍ୟୋଭାବେଭ୍ୟଃ ପରଂ ଏଭିରସଂସ୍ପୃଷ୍ଟଂ ଏତେଷାଂ ନିୟନ୍ତାରଂ ଅତଏବ ଅବ୍ୟୟଂ ନିର୍ବିକାରମିତ୍ୟର୍ଥଃ । ୧୩ ।

## ପଦବ୍ୟାଖ୍ୟା ।

ତ୍ରିଭିଃ—ତିନି, ଗୁଣମୟୈଃ—ଗୁଣସ୍ୱରୂପ, ଭାବୈଃ—ସ୍ୱଭାବମାନଙ୍କ କର୍ତ୍ତୃକ, ଏଭିଃ—ଏହି, ସର୍ବଂ ଇଦଂ ଜଗତ୍—ଏହି ସମୁଦାୟ ଜଗତ (ଜଗତସ୍ଥିତପ୍ରାଣୀ), ମୋହିତଂ—ମୁଗ୍ଧ—(ଅଚେତନ) ହୋଇ, ନ ଅଭିଜାନାତି—ଜାଣି ପାରୁ ନାହାନ୍ତି, ମାଂ—ଅମ୍ଭଙ୍କୁ, ଏଭ୍ୟଃ—ଏମାନଙ୍କ ଅପେକ୍ଷା, ପରଂ—ଉତ୍କୃଷ୍ଟ, ଅବ୍ୟୟଂ—ଅବିନାଶୀ । ୧୩ ।

Digitized by PPRACHIN, SOA

## ଅନୁବାଦ ।

(ପୂର୍ବୋକ୍ତ) ଏହି ତ୍ରିବିଧ ଗୁଣମୟ ଭାବ, ଏହି ସମୁଦାୟ ଜଗତକୁ ମୋହିତ କରିଅଛି, ଅତଏବ ଏ ସମସ୍ତଙ୍କ ଅପେକ୍ଷା ଆମ୍ଭେ ଶ୍ରେଷ୍ଠ ଓ ଅବିନାଶୀ ବୋଲି କେହି ଜାଣି ପାରୁ ନାହାନ୍ତି । ୧୩ ।

## ବିଶଦବ୍ୟାଖ୍ୟା ।

କାଳେ ଅର୍ଜୁନଙ୍କର ଏପରି ସନ୍ଦେହ ହେବ, ଯେ ଭଗବାନଙ୍କର ଯଦି ଏପରି ବିଭୂତି ଓ ଗୁଣ ଅଛି, ତେବେ ଏ ଲୋକମାନେ ତାଙ୍କୁ ଚିହ୍ନି ପାରୁ ନାହାନ୍ତି କାହିଁକି ? ଅର୍ଥାତ୍ ତାହାଙ୍କୁ ପରମାତ୍ମା ସର୍ବଶକ୍ତିମାନ୍ ଇତ୍ୟାଦିରୂପରେ ନ ଚିହ୍ନି, କେବଳ ବାସୁଦେବ ବା ନନ୍ଦନନ୍ଦନ ଇତ୍ୟାଦି ସାଧାରଣ ମନୁଷ୍ୟ ପରି ମଣୁଛନ୍ତି କାହିଁକି ? ସେଥିପାଇଁ ଅନ୍ତର୍ଯ୍ୟାମୀ ଶ୍ରୀକୃଷ୍ଣ କହୁଅଛନ୍ତି, ଯେ ଆମ୍ଭେ ପୂର୍ବରେ ଯେଉଁ ଗୁଣମୟ ସାତ୍ତ୍ୱିକ, ରାଜସ ଓ ତାମସ ଏହି ତିନିସ୍ୱଭାବର କଥା କହିଥିଲୁଁ, ସେହି ଭାବ ଏ ସମୁଦାୟ ଜଗତକୁ ମୋହିତ କରିଅଛି, ସୁତରାଂ ଆମ୍ଭେ ସେ ଗୁଣମୟ ଭାବମାନଙ୍କ ଅପେକ୍ଷା ଶ୍ରେଷ୍ଠ ଓ ଅବିନାଶୀ ହେଲେହେଁ, ଲୋକେ ଆମ୍ଭଙ୍କୁ ଚିହ୍ନି ପାରନ୍ତି ନାହିଁ । ଯେପରି କୌଣସି ବ୍ୟକ୍ତିର ଚକ୍ଷୁରେ ବିକାର ଜନ୍ମିଲେ ବା 'ପରଳ' ପଡିଲେ, ସେ କୌଣସି ପଦାର୍ଥ ଦେଖିପାରେ ନାହିଁ, ଅଥବା କାମଳ ରୋଗାକ୍ରାନ୍ତ-ବ୍ୟକ୍ତି କୌଣସି ପଦାର୍ଥର ସ୍ୱରୂପ ଦେଖି ନ ପାରି ସମସ୍ତ ପଦାର୍ଥକୁ ପୀତବର୍ଣ୍ଣ ଦେଖେ, ସେହିପରି ତ୍ରିଗୁଣମୟ ସ୍ୱଭାବଦ୍ୱାରା ଜଗତର ପ୍ରାଣୀ ମୋହିତ ହୋଇ ଆମ୍ଭର ସ୍ୱରୂପ ଅବଗତ ହୋଇ ପାରନ୍ତି ନାହିଁ । ୧୩ ।

## ଶ୍ଳୋକଃ ।

ଦୈବୀ ହ୍ୟେଷା ଗୁଣମୟୀ, ମମ ମାୟା ଦୁରତ୍ୟୟା ।
ମାମେବ ଯେ ପ୍ରପଦ୍ୟନ୍ତେ, ମାୟାମେତାଂ ତରନ୍ତି ତେ । ୧୪ ।

## ଅନ୍ୱୟଃ ।

ଏଷା ଗୁଣମୟୀ ଦୈବୀ ମମ ମାୟା ହି ଦୁରତ୍ୟୟା ଯେ ମାଂ ଏବ ପ୍ରପଦ୍ୟନ୍ତେ ତେ ଏତାଂ ମାୟାଂ ତରନ୍ତି । ୧୪ ।

## ଟୀକା ।

କେ ତର୍ହି ତ୍ୱାଂ ଜାନନ୍ତୀତ୍ୟତ ଆହ, ଦୈବୀତି । ଦୈବୀ ଅଲୌକିକୀ ଅତ୍ୟଦ୍ଭୁତେତ୍ୟର୍ଥଃ, ଗୁଣମୟୀ ସତ୍ତ୍ୱାଦି ଗୁଣବିକାରାତ୍ମିକା ମମ ପରମେଶ୍ୱରସ୍ୟ ଶକ୍ତିର୍ମାୟା ଦୁରତ୍ୟୟା ଦୁସ୍ତରା । ହି ପ୍ରସିଦ୍ଧମେତତ୍ ତଥାପି ମାମେବେତ୍ୟେବକାରେଣ ଅବ୍ୟଭିଚାରିଣ୍ୟା ଭକ୍ତ୍ୟା ଯେ ପ୍ରପଦ୍ୟନ୍ତେ ଭଜନ୍ତି, ତେ ମାୟାମେତାଂ ସୁଦୁସ୍ତରାମପି ତରନ୍ତି ତତୋମାଂ ଜାନନ୍ତୀତ୍ୟର୍ଥଃ । ୧୪ ।

## ପଦବ୍ୟାଖ୍ୟା ।

ଦୈବୀ—ଅଲୌକିକୀ, ହି—ନିଶ୍ଚୟ, ଏଷା ଗୁଣମୟୀ—ଏହି ସତ୍ତ୍ୱାଦି ଗୁଣଯୁକ୍ତା, ମମ ମାୟା—ଆମ୍ଭର 'ମାୟା' ନାମକ ଶକ୍ତି, ଦୁରତ୍ୟୟା—ଦୁସ୍ତର—ଅର୍ଥାତ୍ ଏଥିରୁ ସହଜରେ କେହି ତରି ପାରନ୍ତି ନାହିଁ, ମାଂ ଏବ—ଆମ୍ଭଙ୍କୁ କେବଳି, ଯେ—ଯେଉଁମାନେ, ପ୍ରପଦ୍ୟନ୍ତେ—ଭଜନା କରନ୍ତି, ମାୟାଂ ଏତାଂ—ଏହି ମାୟାକୁ, ତରନ୍ତି ତେ—ସେହିମାନେ ତରନ୍ତି । ୧୪ ।

Digitized by PPRACHIN, SOA

### ଅନୁବାଦ ।

ଆମ୍ଭର ଏହି ଆଶ୍ଚର୍ଯ୍ୟରୂପା ତ୍ରିଗୁଣମୟୀ ମାୟାକୁ ତରିବା ସହଜ ନୁହେ । କିନ୍ତୁ ଯେଉଁମାନେ ଏକାନ୍ତ ଭକ୍ତିରେ ଆମ୍ଭର ଭଜନା କରନ୍ତି, ସେମାନେ ଏ ମାୟାକୁ ତରିଯାନ୍ତି । ୧୪ ।

### ଭକ୍ତଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ଆମ୍ଭ ମାୟାକୁ ତରିବା ସହଜ ନୁହେ, କାହିଁକି ନା ସେ ମାୟା ଦୈବୀ ଅର୍ଥାତ୍ ଅଲୌକିକୀ ବା ଆଶ୍ଚର୍ଯ୍ୟରୂପା । ପୁଣି ତ୍ରିଗୁଣମୟୀ, ଅର୍ଥାତ୍ ସତ୍ତ୍ୱ ରଜଃ ଓ ତମୋଗୁଣମୟୀ । ଯେପରି କୌଣସି ରଜ୍ଜୁ ତିନିପ୍ରସ୍ଥିୟା ବା 'ତିନିଖିଆ' ହୋଇ ପ୍ରସ୍ତୁତ ହେଲେ, ତାହା ଛିନ୍ନ କରିବା ସହଜ ନୁହେ । ଏହା ଶୁଣି କାଳେ ଅର୍ଜୁନଙ୍କର ଏପରି ସନ୍ଦେହ ହେବ, ଯେ ମାୟା ତ୍ରିଗୁଣାତ୍ମିକା ଓ ପ୍ରାଣିମାନଙ୍କେ ତ୍ରିଗୁଣାଶ୍ରିତ, ତେବେତ ମାୟାକୁ ତରିବାର କୌଣସି ଉପାୟ ନାହିଁ, ପୁଣି ସମସ୍ତେ ମାୟାମୋହିତ ହୋଇଥିବାରୁ ଭଗବାନଙ୍କୁ ଚିହ୍ନିବାର ମଧ୍ୟ କୌଣସି ଉପାୟ ନାହିଁ । ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ମାୟା ଏପରି ଦୁସ୍ତର ହେଲେ ମଧ୍ୟ, ଯେଉଁମାନେ ଆମ୍ଭଠାରେ ଏକାନ୍ତ ଭକ୍ତି ରଖି ଆମ୍ଭର ଉପାସନା କରନ୍ତି, ସେମାନେ ଏ ମାୟାକୁ ତରିଯାନ୍ତି । ମାୟା-ଆବରଣ ଅନ୍ତର ହୋଇଗଲେ, ଭଗବାନଙ୍କର ସ୍ୱରୂପ ଦର୍ଶନ କରି, ସେ ବ୍ୟକ୍ତି କୃତାର୍ଥ ହୁଅନ୍ତି । ୧୪ ।

### ଶ୍ଲୋକଃ ।

ନ ମାଂ ଦୁଷ୍କୃତିନୋ ମୂଢ଼ାଃ, ପ୍ରପଦ୍ୟନ୍ତେ ନରାଧମାଃ ।
ମାୟୟାପହୃତଜ୍ଞାନା, ଆସୁରଂ ଭାବମାଶ୍ରିତାଃ । ୧୫ ।

### ଅନ୍ୱୟଃ ।

ମାୟୟା ଅପହୃତଜ୍ଞାନାଃ ଅସୁରଂ ଭାବ ଆଶ୍ରିତାଃ ଦୁଷ୍କୃତିନଃ ମୂଢ଼ାଃ ନରାଧମାଃ ମାଂ ନ ପ୍ରପଦ୍ୟନ୍ତେ । ୧୫ ।

### ଟୀକା ।

କସ୍ମିତ ତର୍ହି ସର୍ବେ ତ୍ୱାମେବ ନ ଭଜନ୍ତୀତ୍ୟତ ଆହ, ନ ମାମିତି । ନରେଷୁ ଯେ ଅଧମାଃ ତେ ମାଂ ନ ପ୍ରପଦ୍ୟନ୍ତେ ନ ଭଜନ୍ତି ଅଧମତ୍ୱେ ହେତୁଃ ମୂଢ଼ାଃ ବିବେକଶୂନ୍ୟାଃ ତତ୍ର କୁତଃ ଦୁଷ୍କୃତିନଃ ପାପଶୀଳାଃ ଅତୋ ମାୟୟାପହୃତଂ ନିରସ୍ତଂ ଶାସ୍ତ୍ରାଚାର୍ଯ୍ୟୋପଦେଶାଭ୍ୟାଂ ଜାତମପି ଜ୍ଞାନଂ ଯେଷାଂ ତେ ତଥା ଅତଏବ ଦମ୍ଭୋଦର୍ପୋଭିମାନଶ୍ଚ କ୍ରୋଧଃ ପାରୁଷ୍ୟମେବ ଚ ଇତ୍ୟାଦିନା ବକ୍ଷ୍ୟମାଣମାସୁରଂ ଭାବଂ ସ୍ୱଭାବଂ ପ୍ରାପ୍ତାଃ ସନ୍ତୋ ନ ମାଂ ଭଜନ୍ତି । ୧୫ ।

### ପଦବ୍ୟାଖ୍ୟା ।

ନ—ନାହିଁ, ମାଂ—ଆମ୍ଭଙ୍କୁ, ଦୁଷ୍କୃତିନଃ—ପାପୀ, ମୂଢ଼ାଃ—ଅବିବେକ, ପ୍ରପଦ୍ୟନ୍ତେ—ଶରଣ ପଶନ୍ତି, ନରାଧମାଃ—ନୀଚ ବା ନିକୃଷ୍ଟ ମନୁଷ୍ୟମାନେ, ମାୟୟା—ମାୟାଦ୍ୱାରା, ଅପହୃତଜ୍ଞାନାଃ—ଯାହାଙ୍କର ଜ୍ଞାନ ନଷ୍ଟ ହୋଇଅଛି, ଅସୁରଂ ଭାବଂ ଆଶ୍ରିତାଃ—ଅସୁରସ୍ୱଭାବପ୍ରାପ୍ତ । ୧୫ ।

### ଅନୁବାଦ ।

ପାପୀ ଅବିବେକ ଅଧମଲୋକମାନେ ମାୟାପ୍ରଭାବରୁ ଜ୍ଞାନହୀନ ଓ ଅସୁରସ୍ୱଭାବ ପ୍ରାପ୍ତ ହୋଇ ଆମ୍ଭଠାରେ ଶରଣ ପଶନ୍ତି ନାହିଁ । ୧୫ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଯେବେ ଏକାନ୍ତ ଭକ୍ତି କରି ପରମେଶ୍ୱରଙ୍କଠାରେ ଶରଣ ପଶିଲେ ମାୟାବନ୍ଧନ ଛିନ୍ନ ହୁଏ, ତେବେ ସମସ୍ତେ ତାହା କରୁ ନାହାନ୍ତି କାହିଁକି? ଅର୍ଜ୍ଜୁନ ବାଲେ ଏପରି ଆଶଙ୍କା କରିବେ, ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଯେଉଁମାନେ ପାପୀ, ସର୍ବଦା ପାପକାର୍ଯ୍ୟର ଅନୁଷ୍ଠାନ କରନ୍ତି, ସେମାନେ ଆପଣାର ପ୍ରକୃତ ହିତାହିତ ଜାଣି ପାରନ୍ତି ନାହିଁ । ସେହି ଅବିବେକ ଲୋକମାନେ ନରାଧମ, ସେ ଆମ୍ଭଙ୍କୁ ଭଜନା କରନ୍ତି ନାହିଁ । ଶାସ୍ତ୍ରପାଠ ବା ଉପଦେଶଦ୍ୱାରା ଯଦି ସେମାନଙ୍କର କିଛି ଜ୍ଞାନ ହୁଏ, ମାୟାପ୍ରଭାବରେ ତାହା ବିନଷ୍ଟ ହୋଇଯାଏ ଓ ସେମାନେ ଦମ୍ଭ, ଦର୍ପ, ଅଭିମାନ ଓ କ୍ରୋଧାଦିଦ୍ୱାରା ଉନ୍ମତ୍ତ ହୋଇ ଅସୁରସ୍ୱଭାବ ପ୍ରାପ୍ତ ହୁଅନ୍ତି । ଅତଏବ ସେମାନେ ସଂସାରବାସନା ଛାଡ଼ି ଆମ୍ଭଙ୍କୁ ଭଜିବେ କିପରି ? । ୧୫ ।

ଶ୍ଲୋକଃ ।

ଚତୁର୍ବିଧା ଭଜନ୍ତେ ମାଂ, ଜନାଃ ସୁକୃତିନୋଽର୍ଜ୍ଜୁନ ।
ଆର୍ତ୍ତୋ ଜିଜ୍ଞାସୁରର୍ଥାର୍ଥୀ, ଜ୍ଞାନୀ ଚ ଭରତର୍ଷଭ । ୧୬ ।

ଅନ୍ୱୟଃ ।

ହେ ଅର୍ଜ୍ଜୁନ ! ହେ ଭରତର୍ଷଭ ! ଆର୍ତ୍ତଃ ଜିଜ୍ଞାସୁଃ, ଅର୍ଥାର୍ଥୀ ଚ ଜ୍ଞାନୀ ( ଇତି ) ଚତୁର୍ବିଧାଃ ସୁକୃତିନଃ ଜନାଃ ମାଂ ଭଜନ୍ତେ । । ୧୬ ।

ଟୀକା ।

ସୁକୃତିନସ୍ତୁ ମାଂ ଭଜନ୍ତ୍ୟେବ । ତେ ଚ ସୁକୃତତାରତମ୍ୟେନ ଚତୁର୍ବିଧା ଇତ୍ୟାହ । ଚତୁର୍ବିଧା ଇତି, ପୂର୍ବଜନ୍ମସୁ ଯେ କୃତପୁଣ୍ୟାଜନାସ୍ତେ ମାଂ ଭଜନ୍ତି ତେ ଚ ଚତୁର୍ବିଧାଃ । ଆର୍ତ୍ତୋ ରୋଗାଦ୍ୟଭିଭୂତଃ, ସ ଯେଦି ପୂର୍ବଂ କୃତପୁଣ୍ୟସ୍ତର୍ହି ମାଂ ଭଜତି ଅନ୍ୟଥା କ୍ଷୁଦ୍ରଦେବତାଭଜନେନ ସଂସରତି । ଏବମୁତ୍ତରତ୍ରାପି ଦ୍ରଷ୍ଟବ୍ୟଂ, ଜିଜ୍ଞାସୁରାତ୍ମଜ୍ଞାନେଚ୍ଛୁଃ, ଅର୍ଥାର୍ଥୀ, ଅତ୍ର ବା ପରତ୍ର ବା ଭୋଗସାଧନଭୂତାର୍ଥଲିପ୍ସୁଃ, ଜ୍ଞାନୀ ଚ ଆତ୍ମବିତ୍ । ୧୬ ।

ପଦବ୍ୟାଖ୍ୟା ।

ଚତୁର୍ବିଧାଃ—ଚାରିପ୍ରକାର, ଭଜନ୍ତେ ମାଂ—ଆମ୍ଭଙ୍କୁ ଭଜନ୍ତି, ଜନାଃ ସୁକୃତିନଃ—ପୁଣ୍ୟଶୀଳ ଲୋକମାନେ, ଅର୍ଜ୍ଜୁନ—ହେ ଅର୍ଜ୍ଜୁନ !, ଆର୍ତ୍ତଃ—ରୋଗୀ ବା ଆପଦଗ୍ରସ୍ତ, ଜିଜ୍ଞାସୁଃ—ଆତ୍ମଜ୍ଞାନ ଅଭିଳାଷୀ, ଅର୍ଥାର୍ଥୀ—ଇହଲୋକରେ ହେଉ ବା ପରଲୋକରେ ହେଉ ସୁଖାଭିଳାଷୀ, ଜ୍ଞାନୀ ଚ—ଯେ ଜ୍ଞାନଲାଭ କରିଅଛନ୍ତି, ଭରତର୍ଷଭ—ହେ ଭରତକୁଳଶ୍ରେଷ୍ଠ (ଅର୍ଜ୍ଜୁନ) । । ୧୬ ।

ଅନୁବାଦ ।

**ହେ ଭରତକୁଳଶ୍ରେଷ୍ଠ ଅର୍ଜ୍ଜୁନ ! ବିପଦଗ୍ରସ୍ତ ଜ୍ଞାନାଭିଳାଷୀ ଅର୍ଥକାମୀ ଓ ଜ୍ଞାନୀ ଏ ଚାରିପ୍ରକାର ବ୍ୟକ୍ତି ଆମ୍ଭଙ୍କୁ ଭଜନ୍ତି । ୧୬ ।**

ବିଶଦବ୍ୟାଖ୍ୟା ।

ଭଗବଦ୍ଭକ୍ତଙ୍କୁ ସାଧାରଣତଃ ଦୁଇଭାଗରେ ବିଭକ୍ତ କରି ଯାଇପାରେ; ଯଥା,—୧ ସକାମ ଓ ୨ ନିଷ୍କାମ । ଏ ଶ୍ଲୋକଲିଖିତ 'ଆର୍ତ୍ତ' 'ଜିଜ୍ଞାସୁ' ଓ 'ଅର୍ଥାର୍ଥୀ' ଏମାନେ ସକାମଭକ୍ତ, କିନ୍ତୁ

Digitized by PPRACHIN, SOA

ଜ୍ଞାନୀ କେବଳ ନିଷ୍କାମଭକ୍ତ ଅଟନ୍ତି । ବ୍ୟାଧିରେ ଯନ୍ତ୍ରଣାପ୍ରାପ୍ତ ବା ଭୟରେ ଭୀତ ଅଥବା କୌଣସି ପ୍ରକାରେ ବିପଦ୍‌ଗ୍ରସ୍ତ ବ୍ୟକ୍ତି ସେହି ବ୍ୟାଧିଯନ୍ତ୍ରଣା ବା ଭୟ ଅଥବା ବିପଦରୁ ରକ୍ଷା ପାଇବାକୁ ପରମେଶ୍ୱରଙ୍କଠାରେ ଭକ୍ତି କରନ୍ତି ଓ ଶରଣାପନ୍ନ ହୁଅନ୍ତି, ଏପରି ଭକ୍ତଙ୍କୁ ଆର୍ତ୍ତ ଭକ୍ତ ବୋଲାଯାଏ । ଯେପରି ଗଜେନ୍ଦ୍ରାଦି । ଆତ୍ମଜ୍ଞାନ ଲାଭ କରିବା ଇଚ୍ଛାରେ ଯେଉଁମାନେ ଭଗବାନଙ୍କଠାରେ ଭକ୍ତି କରନ୍ତି, ସେମାନେ 'ଜିଜ୍ଞାସୁ ଭକ୍ତ' । ଯେପରି ଅର୍ଜ୍ଜୁନ ଓ ଉଦ୍ଧବ । ଯେଉଁମାନେ ଇହଲୋକରେ ହେଉ ବା ପରଲୋକରେ ହେଉ କୌଣସି ଅର୍ଥପ୍ରାପ୍ତି ବା ଫଳସିଦ୍ଧି ନିମିତ୍ତ ଈଶ୍ୱର ଆରାଧନା କରନ୍ତି 'ସେମାନେ ଅର୍ଥାର୍ଥୀ ଭକ୍ତ' । ସୁଦାମା ଓ ସାନ୍ଦୀପନି ପ୍ରଭୃତି ଏହି ଶ୍ରେଣୀର ଭକ୍ତ । ଆଉ ଯେଉଁମାନେ ଭୋଗତ୍ୟାଗୀ, ଫଳକାମନାବର୍ଜ୍ଜିତ ଓ କଠୋର ବୈରାଗ୍ୟଯୁକ୍ତ ହୋଇ ଈଶ୍ୱରଧ୍ୟାନ କରନ୍ତି, ସେମାନେ ଜ୍ଞାନୀ ଅଟନ୍ତି । ନାରଦ, ପ୍ରହ୍ଲାଦ, ସନକ ଓ ଶୁକ ପ୍ରଭୃତି ଜ୍ଞାନୀଭକ୍ତ ଅଟନ୍ତି । ୧୬ ।

ଶ୍ଳୋକଃ ।

ତେଷାଂ ଜ୍ଞାନୀ ନିତ୍ୟଯୁକ୍ତ, ଏକଭକ୍ତିର୍ବିଶିଷ୍ୟତେ ।
ପ୍ରିୟୋ ହି ଜ୍ଞାନିନୋଽତ୍ୟର୍ଥମହଂ ସ ଚ ମମ ପ୍ରିୟଃ ॥

ଅନ୍ୱୟଃ ।

ତେଷାଂ ଏକଭକ୍ତିଃ ନିତ୍ୟଯୁକ୍ତଃ ଜ୍ଞାନୀ ବିଶିଷ୍ୟତେ ଜ୍ଞାନିନଃ ହି ଅହଂ ଅତ୍ୟର୍ଥଂ ପ୍ରିୟଃ ସ ଚ ମମ ପ୍ରିୟଃ । ୧୭ ।

ଟୀକା ।

ଏତେଷାଂ ମଧ୍ୟେ ଜ୍ଞାନୀ ଶ୍ରେଷ୍ଠ ଇତ୍ୟାହ ତେଷାମିତି । ତେଷାଂ ମଧ୍ୟେ ଜ୍ଞାନୀ ବିଶିଷ୍ଟଃ ଯତ ହେତବଃ ନିତ୍ୟଯୁକ୍ତଃ, ସଦା ମନ୍ନିଷ୍ଠଃ ଏକସ୍ମିନ୍ ମୟ୍ୟେବ ଭକ୍ତିର୍ୟସ୍ୟ ସଃ ଜ୍ଞାନିନୋ ଦେହାଦ୍ୟଭିମାନାଭାବେନ ଚିତ୍ତବିକ୍ଷେପାଭାବାନ୍ନିତ୍ୟଯୁକ୍ତତ୍ୱମେକାନ୍ତଭକ୍ତିତ୍ୱଂ ଚ ସମ୍ଭବତି ନାନ୍ୟସ୍ୟ । ଅତଏବ ତସ୍ୟାହମତ୍ୟନ୍ତଂ ପ୍ରିୟଃ ସ ଚ ମମ, ତସ୍ମାଦେତୈର୍ନିତ୍ୟଯୁକ୍ତତ୍ୱାଦିଭିଃ ଚତୁର୍ଭିର୍ହେତୁଭିଃ ସ ଉତ୍ତମ ଇତ୍ୟର୍ଥଃ । ୧୭ ।

ପଦବ୍ୟାଖ୍ୟା ।

ତେଷାଂ—ସେମାନଙ୍କ ମଧ୍ୟରେ, ଜ୍ଞାନୀ—ଆତ୍ମଜ୍ଞାନନିଷ୍ଠବ୍ୟକ୍ତି, ନିତ୍ୟଯୁକ୍ତଃ—ସର୍ବଦା ଆତ୍ମଠାରେ ମନକୁ ଲଗାଇଥାନ୍ତି, ଏକଭକ୍ତିଃ—ଅଦ୍ୱୈତଭକ୍ତ, ବିଶିଷ୍ୟତେ—ଶ୍ରେଷ୍ଠ ଅଟନ୍ତି, ପ୍ରିୟୋହି—ନିଶ୍ଚୟ ପ୍ରିୟ, ଜ୍ଞାନିନଃ—ଜ୍ଞାନୀ ଲୋକଙ୍କର, ଅତ୍ୟର୍ଥଂ—ଅଧିକ ପରିମାଣରେ, ଅହଂ—ଆମ୍ଭେ, ସ ଚ—ସେହି ଜ୍ଞାନୀ ମଧ୍ୟ, ମମ ପ୍ରିୟଃ—ଆମ୍ଭର ପ୍ରିୟ ହୁଅନ୍ତି । ୧୭ ।

ଅନୁବାଦ ।

ସେ (ଚତୁର୍ବିଧଭକ୍ତ)ମାନଙ୍କ ମଧ୍ୟରେ ନିତ୍ୟଯୁକ୍ତ ଓ ଅଦ୍ୱୈତଭକ୍ତ 'ଜ୍ଞାନୀ' ସର୍ବଶ୍ରେଷ୍ଠ ଅଟନ୍ତି । କାହିଁକି ନା ଆମ୍ଭେ ତାଙ୍କର ଅତ୍ୟନ୍ତ ପ୍ରିୟ ଅଟୁଁ ଏବଂ ସେ ମଧ୍ୟ ଆମ୍ଭର ପ୍ରିୟ ଅଟନ୍ତି । ୧୭ ।

ବିଶଦବ୍ୟାଖ୍ୟା ।

ଚାରି ପ୍ରକାର ଭକ୍ତ ମଧ୍ୟରୁ 'ଆର୍ତ୍ତଭକ୍ତ' ଆପଣାର ଆରୋଗ୍ୟ ନିମିତ୍ତ ସୂର୍ଯ୍ୟଙ୍କର ଉପାସନା କରନ୍ତି, ଅଥବା ବିପଦରୁ ଉଦ୍ଧାର ପାଇବାପାଇଁ ଦୁର୍ଗତିନାଶିନୀ ଦୁର୍ଗାଙ୍କର ଭଜନା-

Digitized by PPRACHIN, SOA

ତରେ ଅଥବା ତାରା, କାଳୀ ପ୍ରଭୃତି ସେବାରେ ନିଯୁକ୍ତ ହୁଅନ୍ତି । 'ଜିଜ୍ଞାସୁଭକ୍ତ' ତତ୍ତ୍ୱଜ୍ଞାନ ଲାଭ ନିମିତ୍ତ ଅଜ୍ଞାନନାଶିନୀ ସରସ୍ୱତୀ ଅଥବା ଗଣେଶଙ୍କର ପୂଜାରେ ପ୍ରବୃତ୍ତ ହୋଇ ପାରନ୍ତି । 'ଅର୍ଥାର୍ଥୀ ଭକ୍ତ' ଅର୍ଥଲାଭପାଇଁ ଲକ୍ଷ୍ମୀ, ଧନଦା ବା କମଳା ଅଥବା କୁବେରାଦି ଦେବତାଙ୍କର ଆରାଧନାରେ ମନ ପ୍ରାଣ ସମର୍ପଣ କରି ପାରନ୍ତି । ମାତ୍ର ଜଗତ୍‌ପୂଜ୍ୟ 'ଜ୍ଞାନୀଭକ୍ତ' ପରମାତ୍ମାଙ୍କୁ ସର୍ବଦା ସର୍ବତ୍ର ଦର୍ଶନ କରୁଥିବାରୁ, ତଦ୍ଭିନ୍ନ ଅନ୍ୟ କୌଣସି ଦେବତା ଆରାଧନା କରନ୍ତି ନାହିଁ, ସେ ପରମାତ୍ମାଙ୍କ ଭିନ୍ନ ଆଉ କିଛି ଦେଖନ୍ତି ନାହିଁ, କି ଶୁଣନ୍ତି ନାହିଁ, ବା ଅନ୍ୟ କଥା ଶୁଣିବାକୁ ଅବକାଶ ପାଆନ୍ତି ନାହିଁ, ଏଥିପାଇଁ ସେ ଅନ୍ୟ ସମସ୍ତ ଭକ୍ତଙ୍କ ଅପେକ୍ଷା ଶ୍ରେଷ୍ଠ ଅଟନ୍ତି । ପରମେଶ୍ୱର ତାଙ୍କର ଅତ୍ୟନ୍ତ ପ୍ରିୟ ଓ ସେମାନେ ମଧ୍ୟ ପରମେଶ୍ୱରଙ୍କର ଅତ୍ୟନ୍ତ ପ୍ରିୟ ଅଟନ୍ତି । ୧୭ ।

## ଶ୍ଳୋକଃ ।

ଉଦାରାଃ ସର୍ବ ଏବୈତେ, ଜ୍ଞାନୀ ତ୍ୱାତ୍ମୈବ ମେ ମତଂ ।
ଆସ୍ଥିତଃ ସ ହି ଯୁକ୍ତାତ୍ମା, ମାମେବାନୁତ୍ତମାଂ ଗତିଂ । ୧୮ ।

## ଅନ୍ୱୟଃ ।

ଏତେ ସର୍ବେ ଉଦାରାଃ ଏବ, ଜ୍ଞାନୀ ତୁ (ମମ) ଆତ୍ମା ଇତି ମେ ମତଂ । ହି ସଃ ଯୁକ୍ତାତ୍ମା ଅନୁତ୍ତମାଂ ଗତିଂ ମାଂ ଏବ ଆସ୍ଥିତଃ । ୧୮ ।

## ଟୀକା ।

ତର୍ହି କିମିତରେ ତ୍ୱଦ୍ଭକ୍ତାଃ ସଂସରନ୍ତି ? ନହି ନହୀତ୍ୟାହ, ଉଦାରା ଇତି । ସର୍ବେଽପ୍ୟେତେ ଉଦାରା ମହାନ୍ତଃ ମୋକ୍ଷଭାଜ ଏବେତ୍ୟର୍ଥଃ ଜ୍ଞାନୀ ତୁ ପୁନରାତ୍ମୈବେତି ମେ ମତଂ ନିଶ୍ଚୟଃ । ହି ଯସ୍ମାତ୍ ସ ଜ୍ଞାନୀ ଯୁକ୍ତାତ୍ମା ମଦେକଚିତ୍ତଃ ସନ୍ ନ ବିଦ୍ୟତେ ଉତ୍ତମା ଯସ୍ୟାସ୍ତାମନୁତ୍ତମାଂ ସର୍ବୋତ୍ତମାଂ ଗତିଂ ମାମେବାସ୍ଥିତଃ ଆଶ୍ରିତବାନ୍ ମଦ୍‌ବ୍ୟତିରିକ୍ତମନ୍ୟତ୍ ଫଳଂ ନ ମନ୍ୟତ ଇତ୍ୟର୍ଥଃ । ୧୮ ।

## ପଦବ୍ୟାଖ୍ୟା ।

ଉଦାରାଃ—ମହାନ୍, ସର୍ବେ ଏବ ଏତେ—ସେ ସମସ୍ତେ, ଜ୍ଞାନୀ ତୁ ଆତ୍ମା ଏବ—ଜ୍ଞାନୀ କିନ୍ତୁ ଆମ୍ଭର ଆତ୍ମାସ୍ୱରୂପ, ମେ ମତଂ—ଏହା ଆମ୍ଭର ମତ (ଅଭିପ୍ରାୟ), ଆସ୍ଥିତଃ—ଭଲରୂପରେ ଆଶ୍ରୟ କରନ୍ତି, ସ ହି—ଯେହେତୁ ସେ, ଯୁକ୍ତାତ୍ମା—ଈଶ୍ୱରଙ୍କଠାରେ ଆସକ୍ତମନା, ମାମେବ—ଆମ୍ଭଙ୍କୁ କେବଳ, ଅନୁତ୍ତମାଂ ଗତିଂ—ଶ୍ରେଷ୍ଠ ଗତିସ୍ୱରୂପ । ୧୮ ।

## ଅନୁବାଦ ।

ସେ ସମସ୍ତେ (ଚାରି ପ୍ରକାର ଭକ୍ତଯାକ) ଶ୍ରେଷ୍ଠ । କିନ୍ତୁ ଜ୍ଞାନୀଭକ୍ତ ଆମ୍ଭ ମତରେ ନିଶ୍ଚୟ ଆତ୍ମାସ୍ୱରୂପ । କାହିଁକି ନା ସେ ଆମ୍ଭଠାରେ ମନ ଲଗାଇ ସର୍ବଶ୍ରେଷ୍ଠ ଗତିସ୍ୱରୂପ ଆମ୍ଭଙ୍କୁ ଆଶ୍ରୟ କରଥାନ୍ତି । ୧୮ ।

## ବଙ୍ଗପଦବ୍ୟାଖ୍ୟା ।

ଆର୍ତ୍ତାଦି ଚାରି ପ୍ରକାର ଭକ୍ତମାନେ ଅଭକ୍ତମାନଙ୍କ ଅପେକ୍ଷା ଶ୍ରେଷ୍ଠ ଅଟନ୍ତି । ଅଭକ୍ତମାନଙ୍କର ପୂର୍ବଜନ୍ମାର୍ଜିତ ପୁଣ୍ୟ ନ ଥିବାରୁ, ସେମାନେ କଦାପି ଆମ୍ଭଙ୍କୁ ଭଜନ୍ତି ନାହିଁ, ମାତ୍ର

ଅର୍ଥିଦ ଭକ୍ତମାନେ 'ସକାମ' ଅର୍ଥାତ୍ ଫଳକାମନାରେ ଆମ୍ଭଙ୍କୁ ଭଜୁ ଥିଲେହେଁ, ସୁକୃତ ବୋଲି ଅଭକ୍ତମାନଙ୍କ ଅପେକ୍ଷା ଶ୍ରେଷ୍ଠ । ମାତ୍ର ସେମାନେ କେବଳ ଫଳ ନିମିତ୍ତ ଆମ୍ଭର ଆରାଧନା କରୁଥିବାରୁ, କାମନାର ତାରତମ୍ୟ ଅନୁସାରେ ଆମ୍ଭେ ତାଙ୍କର ଅଳ୍ପ ବା ଅଧିକ ପ୍ରିୟ ହେଉଁ, ଏବଂ ସେମାନଙ୍କର ଆରାଧନାର ନ୍ୟୂନାଧିକତା ଅନୁସାରେ ସେମାନେ ଆମ୍ଭର ପ୍ରୀତିର ପାତ୍ର ହୁଅନ୍ତି । କିନ୍ତୁ ଯେଉଁ ଜ୍ଞାନୀବ୍ୟକ୍ତି ଯୁକ୍ତାତ୍ମା ହୋଇ ଅର୍ଥାତ୍ ଆମ୍ଭଠାରେ ମନୋନିବେଶ କରି, ଆମ୍ଭଙ୍କୁ ସର୍ବଶ୍ରେଷ୍ଠ ଗତି ବୋଲି ଆଶ୍ରୟ କରନ୍ତି, ଅନ୍ୟ କୌଣସି ପ୍ରକାର ଫଳକାମନା ନ କରନ୍ତି, ସେ ଆମ୍ଭଙ୍କୁ ଅତ୍ୟନ୍ତ ପ୍ରିୟ ବୋଲି ମଣୁଥିବାରୁ, ଆମ୍ଭେ ତାଙ୍କୁ ଆପଣାର ଆତ୍ମାସ୍ୱରୂପ ଜାଣୁ; ଏହା ନିଶ୍ଚୟ କଥା, ଏଥିରେ ସନ୍ଦେହ ନାହିଁ । ୧୮ ।

## ଶ୍ଲୋକଃ ।

* ବହୂନାଂ ଜନ୍ମନାମନ୍ତେ, ଜ୍ଞାନବାନ୍ ମାଂ ପ୍ରପଦ୍ୟତେ ।
ବାସୁଦେବଃ ସର୍ବମିତି, ସ ମହାତ୍ମା ସୁଦୁର୍ଲଭଃ । ୧୯ ।

## ଅନ୍ୱୟଃ ।

ବହୂନାଂ ଜନ୍ମନାଂ ଅନ୍ତେ ବାସୁଦେବଃ ସର୍ବଂ ଇତି ଜ୍ଞାନବାନ୍ (ସନ୍) ମାଂ ପ୍ରପଦ୍ୟତେ । ସଃ ମହାତ୍ମା ସୁଦୁର୍ଲଭଃ । ୧୯ ।

## ଟୀକା ।

ଏବମ୍ଭୂତୋ ମଦ୍ଭକ୍ତୋଽତିଦୁର୍ଲଭ ଇତ୍ୟାହ । ବହୂନାମିତି । ବହୂନାଂ ଜନ୍ମନାଂ କିଞ୍ଚିତ୍ କିଞ୍ଚିତ୍ ପୁଣ୍ୟୋପଚୟେନ ଅନ୍ତେ ଚରମେ ଜନ୍ମନି ଜ୍ଞାନବାନ୍ ସନ୍ ସର୍ବମିଦଂ ଚରାଚରଂ ବାସୁଦେବ ଇତି ସର୍ବାତ୍ମଦୃଷ୍ଟ୍ୟା ମାଂ ପ୍ରପଦ୍ୟତେ ଭଜତି ଅତଃ ସ ମହାତ୍ମା ଅପରିଚ୍ଛିନ୍ନଦୃଷ୍ଟିଃ ସୁଦୁର୍ଲଭଃ । ୧୯ ।

## ପଦବ୍ୟାଖ୍ୟା ।

ବହୂନାଂ—ଅନେକ, ଜନ୍ମନାଂ ଅନ୍ତେ—ଜନ୍ମମାନଙ୍କ ପରେ, ଜ୍ଞାନବାନ୍—ଆତ୍ମଜ୍ଞାନୀ ହୋଇ, ମାଂ—ଆମ୍ଭଙ୍କୁ, ପ୍ରପଦ୍ୟତେ—ଭଜନ୍ତି—ଉପାସନା କରନ୍ତି, ବାସୁଦେବଃ ସର୍ବଂ ଇତି—'ସମସ୍ତ ଜଗତ୍ ବାସୁଦେବ ସ୍ୱରୂପ' ଏପରି, ସଃ ମହାତ୍ମା—ସେହି ଶ୍ରେଷ୍ଠ ବ୍ୟକ୍ତି, ସୁଦୁର୍ଲଭଃ—ଅତି ଦୁର୍ଲଭ ଅଟନ୍ତି । ୧୯ ।

## ଅନୁବାଦ ।

ଅନେକ ଜନ୍ମ ପରେ ଜ୍ଞାନବନ୍ତବ୍ୟକ୍ତି 'ସମସ୍ତ ଜଗତ୍ ବାସୁଦେବସ୍ୱରୂପ' ଏପରି ସ୍ଥିର କରି ଆମ୍ଭଙ୍କୁ ଭଜନ (ବା ଲାଭ) କରନ୍ତି । ମାତ୍ର ସେପରି ମହାତ୍ମା ଅତି ଦୁର୍ଲଭ । ୧୯ ।

## ବିଶଦବ୍ୟାଖ୍ୟା ।

ଭଗବାନଙ୍କର ସ୍ୱରୂପ ଜାଣିବା ସହଜ କଥା ନୁହେ । ବହୁଜନ୍ମ ଅତୀତ ହେଲେ, ସେହି ୨ ଜନ୍ମର ପୁଣ୍ୟରାଶି ଫଳରେ ଜ୍ଞାନୀ ହୋଇଥିବା ବ୍ୟକ୍ତି ଜଗତକୁ ବାସୁଦେବସ୍ୱରୂପ ଦେଖନ୍ତି; ଅର୍ଥାତ୍ ଚରାଚର ଜଗତ ମଧ୍ୟରେ ସେ ଯେ କୌଣସି ପଦାର୍ଥ ଦେଖନ୍ତି, ବାସୁଦେବଙ୍କ ସତ୍ତା ଭିନ୍ନ ତାହା ଆଉ କିଛି ନୁହେ ବୋଲି ଜାଣି ପାରନ୍ତି । ଏହି କାରଣରୁ ଆତ୍ମଜ୍ଞାନଦ୍ୱାରା ଯେ ଭଗବାନଙ୍କଠାରେ ଭକ୍ତି କରନ୍ତି, ସେ 'ମହାତ୍ମା' ଅଟନ୍ତି । ସେପରି ମହାତ୍ମା ଅର୍ଥାତ୍ ସମସ୍ତ ଜଗତକୁ ବାସୁଦେବସ୍ୱରୂପ ଜ୍ଞାନ କରିବା ବ୍ୟକ୍ତି ସଂସାରରେ ଅତି ଦୁର୍ଲଭ । ୧୯ ।

Digitized by PPRACHIN, SOA

ଶ୍ଳୋକଃ ।

କାମୈସ୍ତୈସ୍ତୈର୍ହୃତଜ୍ଞାନାଃ, ପ୍ରପଦ୍ୟନ୍ତେଽନ୍ୟଦେବତାଃ ।
ତଂ ତଂ ନିୟମମାସ୍ଥାୟ, ପ୍ରକୃତ୍ୟା ନିୟତାଃ ସ୍ୱୟା । ୨୦ ।

ଅନ୍ୱୟଃ ।

ସ୍ୱୟା ପ୍ରକୃତ୍ୟା ନିୟତାଃ ତୈଃ ତୈଃ କାମୈଃ ହୃତଜ୍ଞାନାଃ ତଂ ତଂ ନିୟମଂ ଆସ୍ଥାୟ ଅନ୍ୟଦେବତାଃ ପ୍ରପଦ୍ୟନ୍ତେ । ୨୦ ।

ଟୀକା ।

ତଦେବଂ କାମିନୋଽପି ସନ୍ତଃ କାମପ୍ରାପ୍ତୟେ ପରମେଶ୍ୱରମେବ ଯେ ଭଜନ୍ତି ତେ କାମାନ୍ ପ୍ରାପ୍ୟ ଶନୈର୍ମୁଚ୍ୟନ୍ତ ଇତ୍ୟୁକ୍ତଂ ଯେ ତୁ ଅତ୍ୟନ୍ତଂ ରାଜସାସ୍ତାମସାଶ୍ଚ କାମାଭିଭୂତାଃ କ୍ଷୁଦ୍ରଦେବତାଃ ସେବନ୍ତେ, ତେ ସଂସରନ୍ତୀତ୍ୟାହ, କାମୈରିତି ଚତୁର୍ଭିଃ । ଯେ ତୁ ତୈସ୍ତୈଃ ପୁତ୍ର-କୀର୍ତ୍ତି-ଶତ୍ରୁ-ଜୟାଦିବିଷୟୈଃ କାମୈରପହୃତବିବେକାଃ ସନ୍ତଃ ଅନ୍ୟାଃ କ୍ଷୁଦ୍ରା ଭୂତ-ପ୍ରେତ-ଯକ୍ଷାଦି-ଦେବତାଃ ଭଜନ୍ତି, କିଂ କୃତ୍ୱା ତତ୍ତଦ୍ଦେବତାରାଧନେ ଯୋ ଯୋ ନିୟମଃ ଉପବାସାଦିଲକ୍ଷଣଃ ତଂ ତଂ ନିୟମଂ ସ୍ୱୀକୃତ୍ୟ, ତତ୍ରାପି ତେ ଚ ସ୍ୱକୀୟୟା ପ୍ରକୃତ୍ୟା ପୂର୍ବାଭ୍ୟାସବାସନୟା ନିୟତାଃ ବଶୀକୃତାଃ ସନ୍ତୋ ଦେବତାବିଶେଷାନ୍ ଭଜନ୍ତି । ୨୦ ।

ପଦବ୍ୟାଖ୍ୟା ।

କାମୈଃ ତୈଃ ତୈଃ—ସେହି ୨ କାମନାରେ, ହୃତଜ୍ଞାନାଃ—ଅଗ୍ୟଜ୍ଞାନକୁ ହରାଇ, ପ୍ରପଦ୍ୟନ୍ତେ—ଶରଣ ପଶନ୍ତି, ଅନ୍ୟଦେବତାଃ—(ଭୂତ ପ୍ରେତାଦି) ଅନ୍ୟ ଦେବତାମାନଙ୍କୁ, ତଂ ତଂ ନିୟମଂ—ସେହି ୨ (ଦେବତାଙ୍କ) ନିୟମକୁ, ଆସ୍ଥାୟ—ଆଶ୍ରୟ କରି, ପ୍ରକୃତ୍ୟା—ପ୍ରକୃତିଦ୍ୱାରା, ନିୟତାଃ—ବଶୀଭୂତ ହୋଇ, ସ୍ୱୟା—ନିଜ ୨ । ୨୦ ।

ଅନୁବାଦ ।

(ଅନ୍ୟାନ୍ୟ ଉପାସକମାନେ) ନିଜ ୨ ପ୍ରକୃତିର ବଶୀଭୂତ ହୋଇ ଓ ଆତ୍ମଜ୍ଞାନ ହରାଇ, ଅନ୍ୟାନ୍ୟ ଦେବତାମାନଙ୍କୁ ସେହି ୨ (ଦେବତାମାନଙ୍କର) ନିୟମ ଅନୁସାରେ ଉପାସନା କରନ୍ତି । ୨୦ ।

ବିଶଦବ୍ୟାଖ୍ୟା ।

ଅସ୍ମଜ୍ଜାନୀ ଭିନ୍ନ ଅନ୍ୟାନ୍ୟ ଉପାସକମାନେ, ନିଜ ପ୍ରକୃତିର ବଶୀଭୂତ ହୋଇ କେହି ସ୍ୱର୍ଗ, ଧନ ଓ ପୁତ୍ରାଦି ଲାଭ ନିମିତ୍ତ ବ୍ରହ୍ମ ରୁଦ୍ର ଓ ଇନ୍ଦ୍ରାଦି ପୂଜା, କେହି ଅବା ସ୍ତମ୍ଭନ, ବଶୀକରଣ, କେହି ଅବା ମାରଣ, ଉଚ୍ଚାଟନ, ଇତ୍ୟାଦି ନୀଚ ବିଷୟରେ ସିଦ୍ଧିଲାଭ କରିବାପାଇଁ ଅସ୍ମଜ୍ଜାନ ହରାଇ ବସନ୍ତି ଏବଂ ଯେଉଁ ଦେବତା ବା ଉପଦେବତାଙ୍କ ପୂଜା ବା ଉପାସନା କଲେ, ଯେଉଁ ୨ ବାଞ୍ଛିତ ଫଳ ଲାଭ ହେବ, ସେହି ୨ ଦେବତାମାନଙ୍କର ବିଧି ଅନୁସାରେ ଉପାସନା କରନ୍ତି । ୨୦ ।

ଶ୍ଳୋକଃ ।

ଯୋ ଯୋ ଯାଂ ଯାଂ ତନୁଂ ଭକ୍ତଃ, ଶ୍ରଦ୍ଧୟାର୍ଚ୍ଚିତୁମିଚ୍ଛତି ।
ତସ୍ୟ ତସ୍ୟାଚଳାଂ ଶ୍ରଦ୍ଧାଂ, ତାମେବ ବିଦଧାମ୍ୟହଂ । ୨୧ ।

Digitized by PPRACHIN, SOA

### ଅନ୍ୱୟଃ ।

ଯଃ ଯଃ ଭକ୍ତଃ ଯାଂ ଯାଂ ତନୁଂ ଶ୍ରଦ୍ଧୟା ଅର୍ଚ୍ଚିତୁଂ ଇଚ୍ଛତି, ଅହଂ ତସ୍ୟ ତସ୍ୟ ତାଂ ଏବ ଶ୍ରଦ୍ଧାଂ ଅଚଳାଂ ବିଦଧାମି । ୨୧ ।

### ଟୀକା ।

ଯୋଯୋ ଯାମିତି । ତେଷାଂ ମଧ୍ୟେ ଯୋଯୋ ଭକ୍ତଃ ଯାଂ ଯାଂ ତନୁଂ ଦେବତାରୂପାଂ ମଦୀୟାମେବ ମୂର୍ତ୍ତିଂ ଶ୍ରଦ୍ଧୟାର୍ଚ୍ଚିତୁଂ ଇଚ୍ଛତି ପ୍ରବର୍ତ୍ତତେ, ତସ୍ୟ ତସ୍ୟ ଭକ୍ତସ୍ୟ ତଦ୍‌ମୂର୍ତ୍ତିବିଷୟାଂ ତାମେବ ଶ୍ରଦ୍ଧାମଚଳାଂ ଦୃଢ଼ାଂ ଅହମନ୍ତର୍ଯ୍ୟାମୀ ବିଦଧାମି କରୋମି । ୨୧ ।

### ପଦବ୍ୟାଖ୍ୟା ।

ଯଃ ଯଃ—ଯେଉଁ ଯେଉଁ, ଯାଂ ଯାଂ ତନୁଂ—ଯେଉଁ ଯେଉଁ ଦେବତାମୂର୍ତ୍ତିକୁ, ଭକ୍ତଃ—ସେବକ, ଶ୍ରଦ୍ଧୟା—ଶ୍ରଦ୍ଧାରେ, ଅର୍ଚ୍ଚିତୁଂ—ପୂଜା କରିବାକୁ, ଇଚ୍ଛତି—ଇଚ୍ଛା କରନ୍ତି, ତସ୍ୟ ତସ୍ୟ—ସେହି ୨ ଭକ୍ତଙ୍କର, ଅଚଳାଂ ଶ୍ରଦ୍ଧାଂ—ଶ୍ରଦ୍ଧାକୁ ନିଶ୍ଚଳ, ତାଂ ଏବ—ସେହି ପ୍ରସିଦ୍ଧ (ଦେବତାଙ୍କ ପ୍ରତି ଅର୍ପିତ), ବିଦଧାମି—ଅମ୍ଭେ କରୁଁ । ୨୧ ।

### ଅନୁବାଦ ।

ଯେଉଁ ୨ ଭକ୍ତ ଯେଉଁ ୨ ଦେବତାମୂର୍ତ୍ତିଙ୍କୁ ଶ୍ରଦ୍ଧାରେ ପୂଜା କରିବାକୁ ଇଚ୍ଛା କରନ୍ତି, ତାଙ୍କର ସେହି ଶ୍ରଦ୍ଧାକୁ (ସେହି ଦେବତା ମୂର୍ତ୍ତିରେ) ଅମ୍ଭେ ନିଶ୍ଚଳ କରୁଁ । ୨୧ ।

### ବିଶଦବ୍ୟାଖ୍ୟା ।

ସକାମ ଭକ୍ତମାନେ ସେମାନଙ୍କର କାମନାସିଦ୍ଧିର ଅନୁକୂଳ ଦେବତା ବୋଲି ଯେଉଁ ୨ ଦେବତାମୂର୍ତ୍ତିର ପୂଜା କରନ୍ତି, ସର୍ବାନ୍ତର୍ଯ୍ୟାମୀ ଶ୍ରୀଭଗବାନ୍ ସେହି ୨ ମୂର୍ତ୍ତିରେ ସେ ଭକ୍ତଙ୍କର ଶ୍ରଦ୍ଧାକୁ ନିଶ୍ଚଳ କରି ତାହାଙ୍କର ଭକ୍ତି ଦୃଢ଼ କରି ଦିଅନ୍ତି । ଅଳ୍ପବୁଦ୍ଧି ଲୋକମାନେ ଭିନ୍ନ ୨ ଦେବତାଙ୍କୁ ଭିନ୍ନ ୨ କାମନା ସିଦ୍ଧିପାଇଁ ପୂଜା କରନ୍ତି ସତ, ମାତ୍ର ସର୍ବବ୍ୟାପକ ପରମେଶ୍ୱରଙ୍କ ଭିନ୍ନ ପୂଜା ଗ୍ରହଣର ଓ ଫଳପ୍ରଦାନର ସ୍ୱତନ୍ତ୍ର ଅଧିକାରୀ କେହି ନାହାନ୍ତି । ଯେହେତୁ ସେ ସର୍ବବ୍ୟାପକ ଅଟନ୍ତି ଓ ଜଗତର ସମସ୍ତ ଦେବତା ତାଙ୍କର ସତ୍ତାର ବିକାଶମାତ୍ର । ସୁତରାଂ ଭକ୍ତଙ୍କର ଇଚ୍ଛା ଅନୁସାରେ ମୂର୍ତ୍ତି ପରିଗ୍ରହ କରି, ସେହି ମୂର୍ତ୍ତିରେ ଯେପରି ଭକ୍ତର ଶ୍ରଦ୍ଧା ଓ ଭକ୍ତି ଅଟଳ ରହିବ, ତାହାର ବିଧି ପରମେଶ୍ୱର ନିଜେ କରି ଦିଅନ୍ତି । ୨୧ ।

### ଶ୍ଲୋକଃ ।

ସ ତୟା ଶ୍ରଦ୍ଧୟା ଯୁକ୍ତସ୍ତସ୍ୟାରାଧନମୀହତେ ।
ଲଭତେ ଚ ତତଃ କାମାନ୍, ମୟୈବ ବିହିତାନ୍ ହି ତାନ୍ । ୨୨ ।

### ଅନ୍ୱୟଃ ।

ସଃ ତୟା ଶ୍ରଦ୍ଧୟା ଯୁକ୍ତଃ ତସ୍ୟ ଆରାଧନଂ ଈହତେ ଚ ତତଃ ମୟା ଏବ ବିହିତାନ୍ ହି ତାନ୍ କାମାନ୍ ଲଭତେ । ୨୨ ।

### ଟୀକା ।

ତତଶ୍ଚ ସ ଇତ୍ୟେତ । ସ ଭକ୍ତଃ ତୟା ଦୃଢ଼ୟା ଶ୍ରଦ୍ଧୟା ତସ୍ୟାସ୍ତନୋରାଧନମୀହତେ କରୋତି । ତତଶ୍ଚ କାମାଃ ଯେ

ସଙ୍କଳ୍ପିତାଃ ତାନ୍ ତତୋଦେବତାବଶେଷାତ୍ ଲଭତେ । କିନ୍ତୁ ମୟୈବ ତତ୍ତଦ୍ଦେବତାନ୍ତର୍ଯ୍ୟାମିଣା ହି ବହିତାନ୍ ନିର୍ମିତାନ୍ ହି ଓଁ ତ୍ମେତତ୍ ଦେବତାନାମପି ମଦଧୀନତ୍ୱାନ୍ମମ ମୂର୍ତ୍ତିତ୍ୱାଚ୍ଚେତ୍ୟର୍ଥଃ । ୨୨ ।

ପଦବ୍ୟାଖ୍ୟା ।

ସଃ—ସେହି ଭକ୍ତ, ତୟା ଶ୍ରଦ୍ଧୟା—ସେହି ନିଶ୍ଚଳ ଶ୍ରଦ୍ଧାରେ, ଯୁକ୍ତଃ—ମିଳିତ ହୋଇ, ତସ୍ୟ—ସେହି ଦେବତାଙ୍କର, ଆରାଧନଂ ଇହତେ—ପୂଜା କରନ୍ତି, ଲଭତେ ଚ—ପ୍ରାପ୍ତ ହୁଅନ୍ତି ମଧ୍ୟ, ତତଃ—ସେହି ଦେବତାଙ୍କଠାରୁ, କାମାନ୍—ବାଞ୍ଛିତ ଫଳମାନଙ୍କୁ, ମୟା ଏବ ବହିତାନ୍—ଅସ୍ମଦ୍ଦ୍ୱାରା ନିର୍ମିତ, ହି—ନିଶ୍ଚୟ, ତାନ୍—ସେହି ପୂର୍ବ ସଙ୍କଳ୍ପିତ କାମନା । ୨୨ ।

ଅନୁବାଦ ।

ସେ (ସକାମ) ଭକ୍ତ, ସେହି ଅଚଳ ଶ୍ରଦ୍ଧାରେ ଯୁକ୍ତ ହୋଇ ସେହି ଦେବତାଙ୍କର ପୂଜା କରନ୍ତି ଓ ତାଙ୍କଠାରୁ ଆମ୍ଭ ଦତ୍ତ ସେହି୨ କାମନାର ଫଳ ପ୍ରାପ୍ତ ହୁଅନ୍ତି । ୨୨ ।

ବିଶଦବ୍ୟାଖ୍ୟା ।

ସକାମ ଭକ୍ତମାନେ ଆପଣାର ଇଷ୍ଟଦେବତାଙ୍କୁ ପୂଜିବାକୁ ଶ୍ରଦ୍ଧା କରନ୍ତି । ଆମ୍ଭେ ତାଙ୍କର ସେହି ଶ୍ରଦ୍ଧାକୁ ଦୃଢ଼ କରିଦେଲେ, ସେ ସେହି ଦୃଢ଼ଶ୍ରଦ୍ଧାରେ ସେହି ଦେବତାଙ୍କୁ ପୂଜା କରି, ଅଭିଳଷିତ କାମନାଫଳ ସେହି ଦେବତାଙ୍କଠାରୁ ପ୍ରାପ୍ତ ହୁଅନ୍ତି । ମାତ୍ର ସେ କାମନାଫଳ ଆମ୍ଭେ ପ୍ରଦାନ କରୁଁ । ଯେପରି କୌଣସି କ୍ଷୁଦ୍ର ଜଳାଶୟ ସହିତ କୌଣସି ନଦୀର ଯୋଗ ଥିଲେ, ସେ କ୍ଷୁଦ୍ର ଜଳାଶୟରୁ ଯେତେ ଜଳ ଗ୍ରହଣ କରାଯାଏ, ତାହା ସେହି ନଦୀର ଜଳ ବୋଲି ଜାଣିବା ଉଚିତ, ସେହିପରି ସକାମ ଭକ୍ତ ଯେ କୌଣସି ଦେବତାମୂର୍ତ୍ତି ପୂଜା କରି ଯେପରି ଇଚ୍ଛା ସେପରି ଫଳ ପାଉନ୍ତୁ ପଛକେ, ତାହା ଆମ୍ଭ ପ୍ରେରିତ ବୋଲି ଜାଣିବାକୁ ହେବ । ଯେହେତୁ ଆମ୍ଭ ଭିନ୍ନ ଫଳ ପ୍ରଦାନ କରିବାର ଅନ୍ୟ କୌଣସି ଦେବତାଙ୍କର ଅଧିକାର ନାହିଁ । ୨୨ ।

ଶ୍ଳୋକଃ ।

ଅନ୍ତବତ୍ତୁ ଫଳଂ ତେଷାଂ, ତଦ୍ଭବତ୍ୟଲ୍ପମେଧସାଂ ।
ଦେବାନ୍ ଦେବଯଜୋଯାନ୍ତି, ମଦ୍ଭକ୍ତାଯାନ୍ତି ମାମପି । ୨୩ ।

ଅନ୍ୱୟଃ ।

ତୁ ତେଷାଂ ଅଲ୍ପମେଧସାଂ ତତ୍ ଫଳଂ ଅନ୍ତବତ୍ ଭବତି । ଦେବଯଜଃ ଦେବାନ୍ ଯାନ୍ତି । ମଦ୍ଭକ୍ତାଃ ଅପି ମାଂ ଯାନ୍ତି । ୨୩ ।

ଟୀକା ।

ତଦେବ ଯଦ୍ୟପି ସର୍ବା ଅପି ଦେବତା ମମୈବ ମୂର୍ତ୍ତୟଃ ଅତସ୍ତଦାରାଧନମପି ବସ୍ତୁତୋମଦାରାଧନମେବ ତତ୍ତତ୍ଫଳଦାତାପି ଚ ଅହମେବ ତଥାପି ସାକ୍ଷାତ୍ ମଦ୍ଭକ୍ତାନାଂ ଚ ତେଷାଂ ଚ ଫଳବୈଷମ୍ୟଂ ଭବତୀତ୍ୟାହ । ଅନ୍ତବଦିତି । ଅଲ୍ପମେଧସାଂ ପରିଚ୍ଛିନ୍ନଦୃଷ୍ଟୀନାଂ ମତ୍ତ ବଦ୍ଧମପି ତତ୍ ଫଳମନ୍ତବତ୍ ବିନାଶି ଭବତି, ତଦେବାହ । ଦେବାନ୍ ଯଜନ୍ତୀତି ଦେବଯଜଃ ତେ ଦେବାନ୍ ଅନ୍ତବତୋଯାନ୍ତି ମଦ୍ଭକ୍ତାସ୍ତୁ ମାଂ ଅନାଦ୍ୟନ୍ତଂ ପରମାନନ୍ଦଂ ପ୍ରାପ୍ନୁବନ୍ତି । ୨୩ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଅନ୍ତବତ୍—ବିନାଶଯୁକ୍ତ, ତୁ—କିନ୍ତୁ, ଫଳଂ ତେଷାଂ—ସେମାନଙ୍କର ଫଳ, ତତ୍—ସେହି (ଆମ୍ଭଠାରୁ), ଭବତି—ହୁଏ, ଅଳ୍ପମେଧସାଂ—ଅଳ୍ପବୁଦ୍ଧି ମନୁଷ୍ୟମାନଙ୍କର, ଦେବାନ୍—ଦେବତାମାନଙ୍କୁ, ଦେବଯଜଃ—ଦେବପୂଜକମାନେ, ଯାନ୍ତି—ପ୍ରାପ୍ତ ହୁଅନ୍ତି, ମଦ୍ଭକ୍ତାଃ—ଆମ୍ଭର ଭକ୍ତମାନେ, ଯାନ୍ତି—ପ୍ରାପ୍ତ ହୁଅନ୍ତି, ମାଂ ଅପି—ଆମ୍ଭଙ୍କୁ ମଧ୍ୟ । ୨୩ ।

ଅନୁବାଦ ।

କିନ୍ତୁ ସେହି ଅଳ୍ପବୁଦ୍ଧି ଦେବପୂଜକମାନଙ୍କର ସେହି ଫଳ ଅସ୍ଥାୟୀ ହୁଏ । ( କାହିଁକି ନା ) ଦେବପୂଜକମାନେ ଦେବତାଙ୍କୁ ଓ ଆମ୍ଭର ଭକ୍ତମାନେ ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି । ୨୩ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ଯେ ଦେବତାପୂଜକମାନେ ପ୍ରକାରାନ୍ତରେ ଆମ୍ଭର ଉପାସକ; ଏବଂ ସେମାନେ ଦେବତାଙ୍କଠାରୁ ଯେଉଁ ଫଳ ପ୍ରାପ୍ତ ହୁଅନ୍ତି, ତାହା ଆମ୍ଭେ ପ୍ରେରଣ କରୁଁ । ତଥାପି ସେମାନେ ସାକ୍ଷାତ୍‌ସ୍ୱରୂପରେ ଆମ୍ଭର ଭକ୍ତ ନୁହନ୍ତି ବୋଲି, ଆମ୍ଭ ଭକ୍ତଙ୍କର ଓ ଦେବପୂଜକମାନଙ୍କର ପ୍ରାପ୍ତ ଫଳ ମଧ୍ୟରେ ତାରତମ୍ୟ ହୁଏ । ଦେବପୂଜକମାନେ ଆମ୍ଭର ଦତ୍ତ ଫଳ ପ୍ରାପ୍ତ ହେଲେ ସୁଦ୍ଧା, ତାହା ଅଳ୍ପକାଳସ୍ଥାୟୀ ହୁଏ । କାହିଁକି ନା ଦେବପୂଜକମାନେ ଅସ୍ଥାୟୀ ଦେବତ୍ୱ ପ୍ରାପ୍ତ ହୋଇପାରନ୍ତି ସତ, ମାତ୍ର ଆମ୍ଭର ଭକ୍ତ ନିଷ୍କାମଭକ୍ତିଯୋଗଦ୍ୱାରା ପରମାନନ୍ଦ ପରିପୂର୍ଣ୍ଣ ନିତ୍ୟସୁଖ ଅର୍ଥାତ୍ ବ୍ରହ୍ମାନନ୍ଦ ସୁଖ ପ୍ରାପ୍ତ ହୁଅନ୍ତି । ୨୩ ।

ଶ୍ଳୋକଃ ।

ଅବ୍ୟକ୍ତଂ ବ୍ୟକ୍ତିମାପନ୍ନଂ, ମନ୍ୟନ୍ତେ ମାମବୁଦ୍ଧୟଃ ।
ପରଂ ଭାବମଜାନନ୍ତୋ,ମମାବ୍ୟୟମନୁତ୍ତମଂ । ୨୪ ।

ଅନ୍ୱୟଃ ।

ମମ ଅବ୍ୟୟଂ ଅନୁତ୍ତମଂ ପରଂ ଭାବଂ ଅଜାନନ୍ତଃ ଅବୁଦ୍ଧୟଃ ଅବ୍ୟକ୍ତଂ ମାଂ ବ୍ୟକ୍ତିଂ ଆପନ୍ନଂ ମନ୍ୟନ୍ତେ । ୨୪ ।

ଟୀକା ।

ନନୁ ଚ ସମାନେ ପ୍ରୟାସେ ମହତ୍ ଚ ଫଳବିଶେଷେ ସତି ସର୍ବେଽପି କମିତି ଦେବତାନ୍ତରଂ ହିତ୍ୱା ତ୍ୱାମେବ ନ ଭଜନ୍ତି ? ତତ୍ରାହ, ଅବ୍ୟକ୍ତମିତି । ଅବ୍ୟକ୍ତଂ ପ୍ରପଞ୍ଚାତୀତଂ ମାଂ ବ୍ୟକ୍ତିଂ ମନୁଷ୍ୟ-ମତ୍ସ୍ୟକୂର୍ମାଦିଭାବ ପ୍ରାପ୍ତମଳ୍ପବୁଦ୍ଧୟୋମନ୍ୟନ୍ତେ । ତତ୍ର ହେତୁଃ, ମମ ପରଂ ଭାବ ସ୍ୱରୂପମଜାନନ୍ତଃ କଥମ୍ଭୂତଂ ଅବ୍ୟୟଂ ନିତ୍ୟଂ ନ ବିଦ୍ୟତେ ଉତ୍ତମୋଯସ୍ମାତ୍ ତଂ ମଦ୍ଭାବ ଅତୋ ଜଗଦ୍ରକ୍ଷାର୍ଥଂ ଲୀଳୟାବିଷ୍କୃତ-ନାନାବିଶୁଦ୍ଧୋର୍ଜ୍ଜିତ-ସତ୍ତ୍ୱମୂର୍ତ୍ତିଂ ମାଂ ପରମେଶ୍ୱରଂ କର୍ମନିର୍ମିତ-ଭୌତିକଦେହଂ ଦେବତାନ୍ତରସମଂ ପଶ୍ୟନ୍ତୋମନ୍ଦମତୟୋମାଂ ନାତୀବାଦ୍ରିୟନ୍ତେ ପ୍ରତ୍ୟୁତ କ୍ଷିପ୍ରଫଳଦଂ ଦେବତାନ୍ତରମେବ ଭଜନ୍ତେ । ତେ ଚୈକ୍ତ-ପ୍ରକାରେଣ ଅନ୍ତବତ୍ ଫଳଂ ପ୍ରାପ୍ନୁବନ୍ତୀତ୍ୟର୍ଥଃ । ୨୪ ।

ପଦବ୍ୟାଖ୍ୟା ।

ଅବ୍ୟକ୍ତଂ—ରୂପରହିତ, ବ୍ୟକ୍ତିଂ ଆପନ୍ନଂ—ମୂର୍ତ୍ତିପ୍ରାପ୍ତ, ମନ୍ୟନ୍ତେ—ଜ୍ଞାନ କରନ୍ତି, ମାଂ—ଆମ୍ଭଙ୍କୁ, ଅବୁଦ୍ଧୟଃ—ମନ୍ଦବୁଦ୍ଧିମାନେ, ପରଂ ଭାବ—ସ୍ୱରୂପତ୍ୱ, ଅଜାନନ୍ତଃ—ନ ଜାଣି, ମମ—ଆମ୍ଭର, ଅବ୍ୟୟଂ—ଅବିନାଶି, ଅନୁତ୍ତମଂ—ସବୁଠାରୁ ଉତ୍ତମ । ୨୪ ।

Digitized by PPRACHIN, SOA

ଅନୁବାଦ ।

ମନ୍ଦବୁଦ୍ଧି ଲୋକମାନେ ଆମ୍ଭର ଅବିନାଶୀ ଓ ସର୍ବୋତ୍କୃଷ୍ଟ ଅବ୍ୟକ୍ତ ସ୍ୱରୂପକୁ ନ ଜାଣି ଆମ୍ଭଙ୍କୁ ରୂପଧାରୀ ବୋଲି ମଣନ୍ତି । ୨୪ ।

ବିଶଦବ୍ୟାଖ୍ୟା ।

କାଳେ ଅର୍ଜୁନ ଏପରି ଆଶଙ୍କା କରିବେ, ଯେ ଯଦି ଦେବପୂଜକମାନଙ୍କର ଅଚିରସ୍ଥାୟି ଫଳ ହୁଏ ଏବଂ ଭଗବାନଙ୍କ ଭକ୍ତମାନେ ଅବଶ୍ୟ ମୋକ୍ଷଫଳ ଲାଭ କରନ୍ତି, ତେବେ ସମସ୍ତେ ଭଗବାନଙ୍କର ଉପାସନା ନ କରି କ୍ଷୁଦ୍ର ଦେବତାଙ୍କର ଉପାସନା କାହିଁକି କରନ୍ତି? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଆମ୍ଭର ସର୍ବୋତ୍କୃଷ୍ଟ ଓ ନିତ୍ୟ ଯେଉଁ ସ୍ୱରୂପ ଅଛି, ତାହା ମନ୍ଦବୁଦ୍ଧି ଲୋକମାନେ କାହୁଁ ଜାଣିପାରିବେ? ଆମ୍ଭେ ଯଦିଚ ଚରାଚର ଜଗତ ବ୍ୟାପିଅଛୁଁ, ତଥାପି ଆମ୍ଭେ ଅବ୍ୟକ୍ତ ଅଛୁଁ । ମାତ୍ର ଅବିବେକ ଲୋକେ ତାହା ବୁଝନ୍ତି ନାହିଁ । ସେମାନେ ଆମ୍ଭଙ୍କୁ ମତ୍ସ୍ୟ, କୂର୍ମ, ବାମନ, ନୃସିଂହ ଇତ୍ୟାଦି ରୂପଧାରୀ ବୋଲି ଅନ୍ୟାନ୍ୟ ଦେବତାଙ୍କ ସଙ୍ଗେ ସମାନ ଜ୍ଞାନ କରନ୍ତି । ପୁଣି ଅନ୍ୟାନ୍ୟ ଦେବତାମାନେ ଶୀଘ୍ର ଫଳ ପ୍ରଦାନ କରନ୍ତି ବୋଲି ସେମାନେ ଆମ୍ଭଙ୍କୁ ଛାଡ଼ି ସେହି ଦେବତାଙ୍କୁ ଭଜନ୍ତି । ସୁତରାଂ ଅଚିରସ୍ଥାୟି ଫଳଲାଭ କରନ୍ତି । ୨୪ ।

ଶ୍ଳୋକଃ ।

ନାହଂ ପ୍ରକାଶଃ ସର୍ବସ୍ୟ, ଯୋଗମାୟାସମାବୃତଃ ।
ମୂଢୋଽୟଂ ନାଭିଜାନାତି, ଲୋକୋମାମଜମବ୍ୟୟଂ । ୨୫ ।

ଅନ୍ୱୟଃ ।

ଅହଂ ସର୍ବସ୍ୟ ପ୍ରକାଶଃ ନ, ଯୋଗମାୟାସମାବୃତଃ ଅୟଂ ମୂଢ଼ଃ ଲୋକଃ ଅଜଂ ଅବ୍ୟୟଂ ମାଂ ନ ଅଭିଜାନାତି । ୨୫ ।

ଟୀକା ।

ତେଷାଂ ସ୍ୱାଜ୍ଞାନେ ହେତୁମାହ, ନାହମିତି । ସର୍ବଲୋକସ୍ୟ ନାହଂ ପ୍ରକାଶଃ ପ୍ରକାଶୋ ନ ଭବାମି କିନ୍ତୁ ମଦ୍ଭକ୍ତାନାମେବ, ଯତୋଯୋଗମାୟୟା ସମାବୃତଃ ଯୋଗୋଯୁକ୍ତିର୍ମଦୀୟଃ କୋଽପି ଅଚିନ୍ତ୍ୟଃ ପ୍ରଜ୍ଞାବିଳାସଃ ସ ଏବ ମାୟା ଅଘଟନଘଟନାପଟୀୟସ୍ତ୍ୱାତ୍ ତୟା ଛନ୍ନଃ ଅତଏବ ମନ୍ମୂର୍ତ୍ତ୍ୟଜ୍ଞାନେ ମୂଢ଼ଃ ସନ୍ନୟଂ ଲୋକୋଽଜମବ୍ୟୟଂ ଚ ମାଂ ନ ଜାନାତି । ୨୫ ।

ପଦବ୍ୟାଖ୍ୟା ।

ନ ଅହଂ—ଆମ୍ଭେ ନୋହୁଁ, ପ୍ରକାଶଃ—ପ୍ରତ୍ୟକ୍ଷ, ସର୍ବସ୍ୟ—ସମସ୍ତଙ୍କର, ଯୋଗମାୟାସମାବୃତଃ—ଯୋଗମାୟାରେ ଆଚ୍ଛନ୍ନ, ମୂଢଃ—ଅଜ୍ଞାନୀ, ଅୟଂ—ଏହି, ନାଭିଜାନାତି—ଭଲରୂପେ ଜାଣେ ନାହିଁ, ଲୋକଃ—ବ୍ୟକ୍ତି, ମାଂ—ଆମ୍ଭଙ୍କୁ, ଅଜଂ—ଜନ୍ମରହିତ, ଅବ୍ୟୟଂ—ନାଶରହିତ । ୨୫ ।

ଅନୁବାଦ ।

ଆମ୍ଭେ ସମସ୍ତଙ୍କ ନିକଟରେ ପ୍ରକାଶିତ ହେଉ ନାହିଁ । ଆମ୍ଭେ ଯେ ଜନ୍ମ-ମରଣରହିତ, ତାହା ଯୋଗମାୟାରେ ଆଚ୍ଛନ୍ନ ମୂର୍ଖଲୋକେ ଜାଣି ପାରନ୍ତି ନାହିଁ । ୨୫ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ମତ୍ସ୍ୟ କୂର୍ମାଦି ଅବତାର ବେଳେ ମଧ୍ୟ ପରମେଶ୍ୱରଙ୍କର ଏପରି ଅସାଧାରଣ କାର୍ଯ୍ୟ ଦେଖାଯାଏ, ଯାହାଦ୍ୱାରା କି ତାଙ୍କୁ ସାଧାରଣ ଦେବତାଙ୍କଠାରୁ ଶ୍ରେଷ୍ଠ ବୋଲି ଚହ୍ନା ଯାଇ ପାରେ, ତେବେ ଲୋକମାନେ ତାଙ୍କୁ କାହିଁକି ଚହ୍ନି ନ ପାରନ୍ତି ? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଏକାନ୍ତ ଭକ୍ତ ଓ ନିଷ୍କପଟ ବିଶ୍ୱାସୀ ଭିନ୍ନ ଅମ୍ଭ ସ୍ୱରୂପଙ୍କୁ କେହି ଜାଣି ନ ପାରୁ, ଅମ୍ଭର ଏପ୍ରକାର ଯେଉଁ ସଙ୍କଳ୍ପ, ତାହା ଯୋଗମାୟା ନାମରେ ବିଖ୍ୟାତ । ସେହି ଯୋଗମାୟାଦ୍ୱାରା ଜଗତର ଲୋକେ ଆଚ୍ଛନ୍ନ ଥିବାରୁ, ମେଘାନ୍ତର୍ଗତସ୍ଥିତ ଚନ୍ଦ୍ରପରି ଅମ୍ଭର ସ୍ୱରୂପ ଅବଗତ ହୋଇ ପାରନ୍ତି ନାହିଁ । ସୁତରାଂ ଆମ୍ଭେ ଜନ୍ମ ଓ ମରଣରହିତ ହେଲେହେଁ, ସେମାନେ ଅମ୍ଭଙ୍କୁ ସାଧାରଣ ଦେହଧାରୀ ବୋଲି ମନେ କରନ୍ତି । ୨୫ ।

ଶ୍ଳୋକଃ ।

ବେଦାହଂ ସମତୀତାନି, ବର୍ତ୍ତମାନାନି ଚାର୍ଜ୍ଜୁନ ।
ଭବିଷ୍ୟାଣି ଚ ଭୂତାନି, ମାଂ ତୁ ବେଦ ନ କଶ୍ଚନ । ୨୬ ।

ଅନ୍ୱୟଃ ।

ହେ ଅର୍ଜ୍ଜୁନ ! ଅହଂ ସମତୀତାନି ବର୍ତ୍ତମାନାନି ଚ ଭବିଷ୍ୟାଣି ଚ ଭୂତାନି ବେଦ ମାଂ ତୁ କଶ୍ଚନ ନ ବେଦ । ୨୬ ।

ଟୀକା ।

ସର୍ବୋତ୍ତମଂ ମତ୍ସ୍ୱରୂପଂ ଅଜାନନ୍ତ ଇତ୍ୟୁକ୍ତଂ, ତଦେବ ସ୍ୱସ୍ୟ ସର୍ବୋତ୍ତମତ୍ୱମନାବୃତଜ୍ଞାନଶକ୍ତିତ୍ୱେନ ଦର୍ଶୟନ୍ନନ୍ୟେଷାମଜ୍ଞାନମେବାହ । ବେଦେତି । ସମତୀତାନି ବିନଷ୍ଟାନି ବର୍ତ୍ତମାନାନି ଚ ଭାବୀନି ଚ ତ୍ରିକାଳବର୍ତ୍ତୀନି ଭୂତାନି ସ୍ଥାବରଜଙ୍ଗମାନି ସର୍ବାଣ୍ୟହଂ ବେଦ ଜାନାମି ମାୟାଶ୍ରୟତ୍ୱାନ୍ମମ ତସ୍ୟାଃ ସ୍ୱାଶ୍ରୟ-ବ୍ୟାମୋହକତ୍ୱାଭାବାତ୍ ମାଂ ତୁ କୋଽପି ନ ବେତ୍ତି ମନ୍ମାୟାମୋହିତତ୍ୱାତ୍, ପ୍ରସିଦ୍ଧଂ ହି ଲୋକେ ମାୟାୟାଃ ସ୍ୱାଶ୍ରୟାଧୀନତ୍ୱମନ୍ୟମୋହକତ୍ୱଂ ଚେତି । ୨୬ ।

ପଦବ୍ୟାଖ୍ୟା ।

ବେଦ—ଜାଣୁ, ଅହଂ—ଅମ୍ଭେ, ସମତୀତାନି—ଗତ ହୋଇଥିବା, ବର୍ତ୍ତମାନାନି—ବିଦ୍ୟମାନ ଥିବା, ଚ—ପୁଣି, ଅର୍ଜ୍ଜୁନ—ହେ ଅର୍ଜ୍ଜୁନ !, ଭବିଷ୍ୟାଣି—ଭବିଷ୍ୟତରେ ଯେଉଁମାନ ହେବ, ଚ—ପୁଣି, ଭୂତାନି—ସ୍ଥାବର ଜଙ୍ଗମ ସମସ୍ତ ପଦାର୍ଥକୁ, ମାଂ ତୁ—କିନ୍ତୁ ଅମ୍ଭଙ୍କୁ, ବେଦ ନ—ଜାଣନ୍ତି ନାହିଁ, କଶ୍ଚନ—କେହି । ୨୬ ।

ଅନୁବାଦ ।

ହେ ଅର୍ଜ୍ଜୁନ ! ଗତ ହୋଇଥିବା, ବିଦ୍ୟମାନ ଥିବା ଓ ଭବିଷ୍ୟତରେ ହେବା ସମସ୍ତ ବିଷୟ ଅମ୍ଭେ ଜାଣୁ, ମାତ୍ର ଆମ୍ଭଙ୍କୁ କେହି ଜାଣନ୍ତି ନାହିଁ । ୨୬ ।

ବିଶଦବ୍ୟାଖ୍ୟା ।

ଭଗବାନ୍ ସର୍ବଜ୍ଞ ମାୟାବିମୁକ୍ତ ଅଟନ୍ତି, ସୁତରାଂ ଭୂତ ଭବିଷ୍ୟତ ଓ ବର୍ତ୍ତମାନର ସମସ୍ତ ଘଟନା ଯେ ତାହାଙ୍କୁ ଜଣାଅଛି, ଏ କଥାର ବିଶେଷ ବ୍ୟାଖ୍ୟା ନ କଲେ ମଧ୍ୟ ଚଳେ । ମାତ୍ର ଅଘଟନ କଥାକୁ ଘଟାଇବା ବିଷୟରେ ବିଶେଷ ନିପୁଣ ଯେ ମାୟା, ସେ ସମସ୍ତ ପ୍ରାଣିଙ୍କୁ ଏପରି ଆଚ୍ଛନ୍ନ କରି ରଖିଅଛି, ଯେ ସେଥିରେ ଭଗବାନଙ୍କର ସ୍ୱରୂପ କେହି ଜାଣି ପାରୁ ନାହାନ୍ତି ।

Digitized by PPRACHIN, SOA

ଫଳକଥା ଏହି କି ଈଶ୍ୱର ମାୟାର ଆଶ୍ରୟ ଅଟନ୍ତି, ମାୟା ତାଙ୍କୁ ବିମୋହିତ କରି ପାରେ ନାହିଁ, ଏବଂ ସେହି ହେତୁରୁ ସେ ତ୍ରିକାଳଦର୍ଶୀ ଅଟନ୍ତି, ମାତ୍ର ପ୍ରାଣିମାନେ ମାୟାର ଆଶ୍ରିତ ବୋଲି ତଦ୍ଦ୍ୱାରା ବିମୋହିତ ହୋଇ ତତ୍ତ୍ୱକଥା ଜାଣି ପାରୁ ନାହାନ୍ତି । କେବଳ ଭକ୍ତ ଓ ଜ୍ଞାନୀବ୍ୟକ୍ତି ପ୍ରଖର ସୂର୍ଯ୍ୟକିରଣ ସମ ଭକ୍ତି ଓ ବୈରାଗ୍ୟଦ୍ୱାରା କୁହୁଡ଼ି ସମାନ ମାୟାକୁ ଭେଦ କରି ତାହାଙ୍କୁ ଜାଣି ପାରନ୍ତି । ୨୬ ।

ଶ୍ଳୋକଃ ।

ଇଚ୍ଛା-ଦ୍ୱେଷ-ସମୁତ୍ଥେନ, ଦ୍ୱନ୍ଦ୍ୱମୋହେନ ଭାରତ ।
ସର୍ବଭୂତାନି ସମ୍ମୋହଂ, ସର୍ଗେ ଯାନ୍ତି ପରନ୍ତପ । ୨୭ ।

ଅନ୍ୱୟଃ ।

ହେ ଭାରତ! ହେ ପରନ୍ତପ! ଇଚ୍ଛା-ଦ୍ୱେଷ-ସମୁତ୍ଥେନ ଦ୍ୱନ୍ଦ୍ୱମୋହେନ, ସର୍ବଭୂତାନି ସର୍ଗେ ସମ୍ମୋହଂ ଯାନ୍ତି । ୨୭ ।

ଟୀକା ।

ଶ୍ରୀ ତଦେବଂ ମାୟାବିଷୟତ୍ୱେନ ଜୀବାନାଂ ପରମେଶ୍ୱରଜ୍ଞାନମୁକ୍ତଂ ତସ୍ୟୈବାଜ୍ଞାନସ୍ୟ ଦୃଢତ୍ୱେ କାରଣମାହ -ଇଚ୍ଛା-ଦ୍ୱେଷ-ସମୁତ୍ଥେନେତି । ବ୍ୟୁତ୍ପନ୍ନ ଇତି ସର୍ଗଃ ସର୍ଗେ ସ୍ଥୂଳଦେହୋତ୍ପତ୍ତୌ ସତ୍ୟାଂ ତଦନୁକୂଲେ ଇଚ୍ଛା ତତ୍ପ୍ରତିକୂଲେ ଚ ଦ୍ୱେଷଃ ତାଭ୍ୟାଂ ସମୁତ୍ଥଃ ସମୁଦ୍ଭୂତୋ ଯଃ ଶୀତୋଷ୍ଣ-ସୁଖଦୁଃଖାଦି ଦ୍ୱନ୍ଦ୍ୱନିମିତ୍ତୋ ମୋହୋ ବିବେକଭ୍ରଂଶଃ ତେନ ସର୍ବାଣି ଭୂତାନି, ସମ୍ମୋହଂ ଯାନ୍ତି ଅହମେବ ସୁଖୀ ଦୁଃଖୀ ଚେତି ଗାଢ଼ତରମଭିନିବେଶଂ ପ୍ରାପ୍ନୁବନ୍ତି ଅତସ୍ତାନି ମଜ୍ଜ୍ଞାନାଭାବାନ୍ମାଂ ନ ଭଜନ୍ତୀତି ଭାବଃ । ୨୭ ।

ପଦବ୍ୟାଖ୍ୟା ।

ଇଚ୍ଛା-ଦ୍ୱେଷ ସମୁତ୍ଥେନ—ଇଚ୍ଛା ଓ ଦ୍ୱେଷରୁ ଜାତ, ଦ୍ୱନ୍ଦ୍ୱମୋହେନ—ଶୀତ ଓ ଉଷ୍ଣ ସୁଖ ଓ ଦୁଃଖ ଇତ୍ୟାଦି ଦ୍ୱନ୍ଦ୍ୱସହିତ ଅଜ୍ଞାନଦ୍ୱାରା, ଭାରତ—ହେ ଭରତବଂଶଜ!, ସର୍ବଭୂତାନି—ସମସ୍ତ ପ୍ରାଣିମାନେ, ସମ୍ମୋହଂ—ସମ୍ପୂର୍ଣ୍ଣ ମୋହକୁ, ଯାନ୍ତି—ପ୍ରାପ୍ତ ହୁଅନ୍ତି, ସର୍ଗେ—ସ୍ଥୂଳଦେହ ଜାତ ହେଲେ, ପରନ୍ତପ—ହେ ଶତ୍ରୁତାପନ (ଅର୍ଜ୍ଜୁନ)! । ୨୭ ।

ଅନୁବାଦ ।

ହେ ପରନ୍ତପ ଭାରତ! ପ୍ରାଣିମାନଙ୍କର ସ୍ଥୂଳଦେହ ଜାତ ହେଲେ, ସେମାନେ ଇଚ୍ଛା ଓ ଦ୍ୱେଷଜନିତ ଶୀତୋଷ୍ଣାଦି ଦ୍ୱନ୍ଦ୍ୱଦ୍ୱାରା ମୋହପ୍ରାପ୍ତ ହୁଅନ୍ତି । ୨୭ ।

ବିଶଦବ୍ୟାଖ୍ୟା ।

ଦେହୀର ସ୍ଥୂଳଦେହ ଉତ୍ପନ୍ନ ହେଲେ, ସେହି ଦେହର ଅନୁକୂଳ ବିଷୟରେ ଇଚ୍ଛା ଓ ପ୍ରତିକୂଳ ବିଷୟରେ ଦ୍ୱେଷ ଜାତ ହୁଏ । ସେହି ଇଚ୍ଛାଜନିତ ସୁଖ ଓ ଦ୍ୱେଷଜନିତ ଦୁଃଖଦ୍ୱାରା ପ୍ରାଣିମାନେ ମୋହପ୍ରାପ୍ତ ହୁଅନ୍ତି; ଅର୍ଥାତ୍ ଯେଉଁ ବିଷୟଗୁଡ଼ିକ ସ୍ଥୂଳଦେହପ୍ରତି ହିତକାରକ, ସେହି ଗୁଡ଼ିକ ଲାଭ କରିବାପାଇଁ 'ଇଚ୍ଛା' ହୁଏ, ଏବଂ ଯେଉଁ ବିଷୟଗୁଡ଼ିକ ସ୍ଥୂଳଦେହର ଅହିତକର, ସେଥିରେ 'ଦ୍ୱେଷ' ବା ଅଶ୍ରଦ୍ଧା ଅଥବା ବୈରଭାବ ଜାତ ହୁଏ । ସେହି ଇଚ୍ଛା ଓ ଦ୍ୱେଷରୁ ଯେଉଁ ଦ୍ୱନ୍ଦ୍ୱଭାବ ଜାତ ହୁଏ, (ଯେପରି ଶୀତ ଓ ଉଷ୍ଣ, ସୁଖ ଓ ଦୁଃଖ, ଜନ୍ମ ଓ ମରଣ) ସେଥିରେ ପ୍ରାଣିମାନେ ମୋହପ୍ରାପ୍ତ ହୁଅନ୍ତି, ଅର୍ଥାତ୍ ଆପଣାକୁ ସୁଖୀ ବା ଦୁଃଖୀ ବୋଲି

Digitized by PPRACHIN, SOA

ଜ୍ଞାନ ହରନ୍ତି । ଯୋଗମାୟା ତ ତତ୍ତ୍ୱଜ୍ଞାନର ଗୋଟିଏ ପ୍ରଧାନ ପ୍ରତିବନ୍ଧକ, ପୁଣି ଏ ଦ୍ୱନ୍ଦ୍ୱବୃତ୍ତି ମଧ୍ୟ ଗୋଟିଏ ପ୍ରତିବନ୍ଧକ ଅଟେ ; ଅର୍ଥାତ୍ ରାଗଦ୍ୱେଷାଦିଜନିତ ସୁଖ-ଦୁଃଖରେ ଯେଉଁମାନେ ବଶୀଭୂତ, ସେମାନେ ପରମେଶ୍ୱରଙ୍କ ସ୍ୱରୂପ ଦର୍ଶନରେ ଅସମର୍ଥ ହୁଅନ୍ତି ।.୨୭ ।

ଶ୍ଳୋକଃ ।

ଯେଷାଂ ତ୍ୱନ୍ତଗତଂ ପାପଂ, ଜନାନାଂ ପୁଣ୍ୟକର୍ମଣାଂ ।
ତେ ଦ୍ୱନ୍ଦ୍ୱମୋହନିର୍ମୁକ୍ତା, ଭଜନ୍ତେ ମାଂ ଦୃଢ଼ବ୍ରତାଃ ।୨୮ ।

ଅନ୍ୱୟଃ ।

ତୁ ଯେଷାଂ ପୁଣ୍ୟକର୍ମଣାଂ ଜନାନାଂ ପାପଂ ଅନ୍ତଗତଂ, ତେ ଦ୍ୱନ୍ଦ୍ୱମୋହନିର୍ମୁକ୍ତାଃ ଦୃଢ଼ବ୍ରତାଃ (ସନ୍ତଃ) ମାଂ ଭଜନ୍ତେ । ୨୮ ।

ଟୀକା ।

କୃତସ୍ତର୍ହି କେଚନ ତ୍ୱାଂ ଭଜନ୍ତୋଦୃଶ୍ୟନ୍ତେ ତତ୍ରାହ । ଯେଷାମିତି । ଯେଷାଂ ତୁ ପୁଣ୍ୟାଚରଣଶୀଳାନାଂ ସତ୍ତ୍ୱ ପ୍ରତିବନ୍ଧକଂ ପାପଂ ଅନ୍ତଗତଂ ନଷ୍ଟଂ ତେ ଦ୍ୱନ୍ଦ୍ୱନିମିତ୍ତେନ ମୋହେନ ବିନିର୍ମୁକ୍ତାଃ ଦୃଢ଼ବ୍ରତାଃ ଏକାନ୍ତିନଃ ସନ୍ତୋମାଂ ଭଜନ୍ତେ । ୨୮ ।

ପଦବ୍ୟାଖ୍ୟା ।

ଯେଷାଂ—ଯେଉଁମାନଙ୍କର, ତୁ—ପୁଣି, ଅନ୍ତଗତଂ—ନଷ୍ଟ ହୋଇଅଛି, ପାପଂ—ପ୍ରତିବନ୍ଧକ ବା ଅଧର୍ମ, ଜନାନାଂ—ମନୁଷ୍ୟମାନଙ୍କର, ପୁଣ୍ୟକର୍ମଣାଂ—ପୁଣ୍ୟଆଚରଣଦ୍ୱାରା, ତେ—ସେମାନେ, ଦ୍ୱନ୍ଦ୍ୱମୋହନିର୍ମୁକ୍ତାଃ—ଦ୍ୱନ୍ଦ୍ୱ ଓ ମୋହରୁ ମୁକ୍ତ ହୋଇ, ଭଜନ୍ତେ—ଉପାସନା କରନ୍ତି, ମାଂ—ଆମ୍ଭଙ୍କୁ, ଦୃଢ଼ବ୍ରତାଃ—ଏକାଗ୍ରଚିତ୍ତ । ୨୮ ।

ଅନୁବାଦ ।

ପୁଣ୍ୟକର୍ମ ଆଚରଣଶୀଳ ଯେଉଁ ମନୁଷ୍ୟମାନଙ୍କର ପାପ ନଷ୍ଟ ହୋଇଅଛି, ସେମାନେ ଦ୍ୱନ୍ଦ୍ୱ ଓ ମୋହରୁ ମୁକ୍ତ ହୋଇ ଏକାଗ୍ରଚିତ୍ତରେ ଆମ୍ଭଙ୍କୁ ଭଜନ୍ତି । ୨୮ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ଏହି ଅଧ୍ୟାୟରେ ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ ଏବଂ ଜ୍ଞାନୀ ଏହି ଚତୁର୍ବିଧ ଭକ୍ତଙ୍କର କଥା କହି, ପୁଣି ପୂର୍ବଶ୍ଳୋକରେ 'ସ୍ଥୂଳଦେହଜାତ ହେଲେ 'ସମସ୍ତେ' ମୋହପ୍ରାପ୍ତ ହୁଅନ୍ତି' ଏ ପ୍ରକାର କଥା କହିବାରୁ ପରସ୍ପର ବିରୋଧ ହେଲା ବୋଲି, କାଳେ ଅର୍ଜୁନଙ୍କ ମନରେ ସନ୍ଦେହ ହେବ, ସେଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ ସମସ୍ତ ପ୍ରାଣୀ ଜନ୍ମ ମାତ୍ରକେ ଦ୍ୱନ୍ଦ୍ୱ ଓ ମୋହରେ ମୋହିତ ହୁଅନ୍ତି ସତ, ମାତ୍ର ଯେଉଁମାନଙ୍କର ଜନ୍ମଜନ୍ମାନ୍ତରକୃତ ପୁଣ୍ୟକର୍ମଦ୍ୱାରା ପାପସବୁ ନଷ୍ଟ ହୋଇଥାଏ, ସେମାନଙ୍କର ଦ୍ୱନ୍ଦ୍ୱ ଓ ମୋହ ସବୁ କ୍ରମେ କ୍ରମେ କ୍ଷୟପ୍ରାପ୍ତ ହୁଏ ଏବଂ ଚିତ୍ତର ଏକାଗ୍ରତା ଜାତ ହୁଏ, ସୁତରାଂ ସେମାନେ ଆମ୍ଭଙ୍କୁ ଭଜନ କରିବାରେ ପ୍ରବୃତ୍ତ ହୁଅନ୍ତି । ୨୮ ।

Digitized by PPRACHIN, SOA

ଶ୍ଲୋକଃ ।

ଜରାମରଣମୋକ୍ଷାୟ, ମାମାଶ୍ରିତ୍ୟ ଯତନ୍ତି ଯେ ।
ତେ ବ୍ରହ୍ମ ତଦ୍ବିଦୁଃ କୃତ୍ସ୍ନ,ମଧ୍ୟାତ୍ମଂ କର୍ମ ଚାଖିଲଂ । ୨୯ ।

ଅନ୍ୱୟଃ ।

ଯେ ଜରାମରଣମୋକ୍ଷାୟ ମାଂ ଆଶ୍ରିତ୍ୟ ଯତନ୍ତି, ତେ ତତ୍ ବ୍ରହ୍ମ, କୃତ୍ସ୍ନଂ ଅଧ୍ୟାତ୍ମଂ ଚ ଅଖିଲଂ କର୍ମ ବିଦୁଃ । ୨୯ ।

ଟୀକା ।

ଏବଂ ଚ ମାଂ ଭଜନ୍ତସ୍ତେ ସର୍ବଂ ବିଜ୍ଞେୟଂ ବିଜ୍ଞାୟ କୃତାର୍ଥା ଭବନ୍ତୀତ୍ୟାହ, ଜରେତି । ଜରାମରଣୟୋର୍ନିରସନାର୍ଥଂ ମାମାଶ୍ରିତ୍ୟ ଯେ ପ୍ରଯତନ୍ତେ ତେ ତତ୍ ପରଂବ୍ରହ୍ମ ବିଦୁଃ କୃତ୍ସ୍ନମଧ୍ୟାତ୍ମଂ ଚ ବିଦୁଃ । ଯେନ ତତ୍ ପ୍ରାପ୍ତବ୍ୟଂ ତତ୍ ଦେହାଦି-ବ୍ୟତିରିକ୍ତଂ ଶୁଦ୍ଧମାତ୍ମାନଂ ଚ ଜାନନ୍ତୀତ୍ୟର୍ଥଃ ତତ୍ସାଧନଭୂତମଖିଲଂ ସରହସ୍ୟଂ କର୍ମ ଚ ଜାନନ୍ତୀତ୍ୟର୍ଥଃ । ୨୯ ।

ପଦବ୍ୟାଖ୍ୟା ।

ଜରାମରଣମୋକ୍ଷାୟ—ଜରା ଓ ମରଣରୁ ରକ୍ଷା ପାଇବାକୁ, ମାଂ ଆଶ୍ରିତ୍ୟ—ଆମ୍ଭଙ୍କୁ ଆଶ୍ରୟ କରି, ଯତନ୍ତି ଯେ—ଯେଉଁମାନେ ସାଧନରେ ଯତ୍ନଶୀଳ ହୁଅନ୍ତି, ତେ—ସେମାନେ, ବ୍ରହ୍ମ ତତ୍—ସେହି (ପର)ବ୍ରହ୍ମଙ୍କୁ, ବିଦୁଃ—ଜାଣନ୍ତି, କୃତ୍ସ୍ନଂ ଅଧ୍ୟାତ୍ମଂ—ଆତ୍ମାସମ୍ବନ୍ଧୀୟ ସମସ୍ତ କଥା; କର୍ମ ଚ ଅଖିଲଂ—ଏବଂ ସମଗ୍ର କର୍ମକୁ । ୨୯ ।

ଅନୁବାଦ ।

ଯେଉଁମାନେ ଆମ୍ଭଙ୍କୁ ଆଶ୍ରୟ କରି ଜରା ଓ ମରଣ ନିବାରଣ ନିମିତ୍ତ ଯତ୍ନ କରନ୍ତି, ସେମାନେ ସେହି ପରଂବ୍ରହ୍ମ ଓ ସକଳ ଅଧ୍ୟାତ୍ମ ବିଷୟ ଏବଂ ସମସ୍ତ କର୍ମ ଜାଣିପାରନ୍ତି । ୨୯ ।

ବିଶଦବ୍ୟାଖ୍ୟା ।

ଏ ଶ୍ଲୋକରେ ଭଗବାନ୍ ଯେ 'ଆମ୍ଭଙ୍କୁ ଆଶ୍ରୟ କରି' ଇତ୍ୟାଦି କହିଅଛନ୍ତି, ତାହା 'ସଗୁଣବ୍ରହ୍ମ'ପ୍ରତି ଲକ୍ଷ୍ୟ କରି ହୋଇଅଛି । କାହିଁକି ନା ନିର୍ଗୁଣବ୍ରହ୍ମଙ୍କୁ ଜରାମରଣ ନିବାରଣପାଇଁ ପ୍ରାର୍ଥନା କରାଯାଇ ପାରେ ନାହିଁ, ଯେହେତୁ ସେ ଉପାସନାର ଅତୀତ, ପୁଣି ନିର୍ଗୁଣ ବ୍ରହ୍ମଙ୍କଠାରେ ଦୟାଗୁଣର ସମ୍ଭବ ନ ଥିବାରୁ, ଉପାସନାରେ ଦୟାର୍ଦ୍ର ହୋଇ ଅଭିଲଷିତ ବର ଦେବେ କିପରି ? ଅତଏବ ଜରାମରଣ ନିବାରଣପାଇଁ ସଗୁଣବ୍ରହ୍ମଙ୍କୁ ଆଶ୍ରୟ କରି ଯତ୍ନ କରିବ, ତାହାହେଲେ ଆତ୍ମାର ସ୍ୱରୂପ ଅବଗତ ହୋଇ ପାରିବ ଓ ଆତ୍ମଜ୍ଞାନ ଲାଭ ନିମିତ୍ତ ଆବଶ୍ୟକୀୟ ସମସ୍ତ କର୍ମମାନ ଜାଣି ପାରିବ, ଅବଶେଷରେ 'ତତ୍ ବ୍ରହ୍ମ' ଅର୍ଥାତ୍ ନିର୍ଗୁଣ ପରଂବ୍ରହ୍ମଙ୍କୁ ଚିହ୍ନି ପାରିବ ।

ଫଳକଥା ଏହି କି ଭକ୍ତ ପ୍ରଥମେ ସଗୁଣବ୍ରହ୍ମଙ୍କୁ ଆଶ୍ରୟ କରି ଭକ୍ତିଯୁକ୍ତଚିତ୍ତରେ ଉପାସନାଦି କଲେ, ସର୍ବପ୍ରକାର କର୍ମ ଓ ଅଧ୍ୟାତ୍ମବିଷୟ ଅବଗତ ହୋଇ ଶେଷରେ ନିର୍ଗୁଣ ପରଂବ୍ରହ୍ମଙ୍କୁ ଜାଣି ପାରିବେ । ୨୯ ।

ଶ୍ଲୋକଃ ।

ସାଧିଭୂତାଧିଦୈବଂ ମାଂ, ସାଧିଯଜ୍ଞଂ ଚ ଯେ ବିଦୁଃ ।
ପ୍ରୟାଣକାଲେଽପି ଚ ମାଂ, ତେ ବିଦୁର୍ଯୁକ୍ତଚେତସଃ । ୩୦ ।

Digitized by PPRACHIN, SOA

ଇତି ଶ୍ରୀମଦ୍ଭାଗବତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସମ୍ବାଦେ ବିଜ୍ଞାନଯୋଗୋ ନାମ ସପ୍ତମୋଽଧ୍ୟାୟଃ । ୭ ।

---

## ଅନ୍ୱୟଃ ।

ସାଧିଭୂତାଧିଦୈବଂ ଚ ସାଧିଯଜ୍ଞଂ ମାଂ ଯେ ବିଦୁଃ, ଯୁକ୍ତଚେତସଃ ତେ ପ୍ରୟାଣକାଳେ ଅପି ମାଂ ବିଦୁଃ । ୩୦ ।

ଇତି ଶ୍ରୀଭଗବଦ୍‌ଗୀତାୟାଂ ଅନ୍ୱୟେ ସପ୍ତମୋଽଧ୍ୟାୟଃ । ୭ ।

---

## ଟୀକା ।

ନ ଚୈବମ୍ଭୂତାନାଂ ଯୋଗଭ୍ରଂଶଶଙ୍କାପୀତ୍ୟାହ, ସାଧିଭୂତେତି । ଅଧିଭୂତାଦିଶବ୍ଦାନାମର୍ଥଂ ଶ୍ରୀଭଗବାନେବୋତ୍ତରଧ୍ୟାୟେ ବ୍ୟାଖ୍ୟାସ୍ୟତି, ଅଧିଭୂତେନାଧିଦୈବେନ ଚ ସହ ଅଧିଯଜ୍ଞେନ ଚ ସହ ମାଂ ଯେ ଜାନନ୍ତି ତେଽପ୍ୟୁକ୍ତଚେତସୋ ମୟ୍ୟାସକ୍ତମନସଃ ପ୍ରୟାଣକାଲେଽପି ମରଣସମୟେଽପି ମାଂ ବିଦୁର୍ଜାନନ୍ତି ନ ତୁ ତଦାପି ବ୍ୟାକୁଲୀଭୂୟ ମାଂ ବିସ୍ମରନ୍ତି, ଅତୋ ମଦ୍ଭକ୍ତାନାଂ ନ ଯୋଗଭ୍ରଂଶଶଙ୍କେତି ଭାବଃ ।

କୃଷ୍ଣଭକ୍ତ୍ୟୈବ ସତ୍ତ୍ୱେନ ବ୍ରହ୍ମଜ୍ଞାନମବାପ୍ୟତେ ।
ଇତି ବିଜ୍ଞାନଯୋଗାଖ୍ୟେ ସପ୍ତମେ ସମ୍ପ୍ରକାଶିତଂ । ୩୦ ।

ଇତି ସ୍ୱାମିକୃତଟୀକାୟାଂ ସପ୍ତମୋଽଧ୍ୟାୟଃ । ୭ ।

---

## ପଦବ୍ୟାଖ୍ୟା ।

ସାଧିଭୂତାଧିଦୈବଂ—ଅଧିଭୂତ ଓ ଅଧିଦୈବର ସହିତ, ମାଂ—ଆମ୍ଭଙ୍କୁ, ସାଧିଯଜ୍ଞଂ ଚ—ଏବଂ ଅଧିଯଜ୍ଞର ସହିତ, ଯେ ବିଦୁଃ—ଯେଉଁମାନେ ଜାଣନ୍ତି, ପ୍ରୟାଣକାଲେଽପି ଚ—ମରଣ ସମୟରେ ମଧ୍ୟ, ମାଂ—ଆମ୍ଭଙ୍କୁ, ତେ ବିଦୁଃ—ସେମାନେ ଜାଣନ୍ତି, ଯୁକ୍ତଚେତସଃ—ଆମ୍ଭଠାରେ ଆସକ୍ତମନା ହୋଇ । ୩୦ ।

ଇତି ଶ୍ରୀଭଗବଦ୍‌ଗୀତା-ପଦବ୍ୟାଖ୍ୟାୟାଂ ସପ୍ତମୋଽଧ୍ୟାୟଃ । ୭ ।

---

## ଅନୁବାଦ ।

ଯେଉଁମାନେ ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞସହିତ ଆମ୍ଭଙ୍କୁ ଜାଣନ୍ତି, ସେମାନଙ୍କ ମନ ଆମ୍ଭଠାରେ ଆସକ୍ତ ଥିବାରୁ ସେମାନେ ମରଣ ସମୟରେ ମଧ୍ୟ ଆମ୍ଭଙ୍କୁ ଜାଣି ପାରନ୍ତି । ୩୦ ।

ଇତି ଶ୍ରୀଭଗବଦ୍‌ଗୀତାର ଉତ୍କଳାନୁବାଦରେ ସପ୍ତମ ଅଧ୍ୟାୟ ସମାପ୍ତ । ୭ ।

## ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନଙ୍କର ଏପରି ଆଶଙ୍କା ହେବ, ଯେ ଯେଉଁମାନେ ସଗୁଣବ୍ରହ୍ମଙ୍କୁ ଆଶ୍ରୟ କରିବେ, ସେମାନଙ୍କର ତ ଯୋଗସିଦ୍ଧି ହୋଇ ପାରିବ ନାହିଁ । ଏଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଯେଉଁମାନେ ଆମ୍ଭଙ୍କୁ ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞର ସହିତ (ଅଧିଭୂତାଦି ଶବ୍ଦର ଅର୍ଥ ଅଷ୍ଟମ ଅଧ୍ୟାୟରେ ଶ୍ରୀଭଗବାନ୍ ନିଜେ ବ୍ୟାଖ୍ୟା କରିଥିବାରୁ ଏଠାରେ ଦିଆ ଗଲା ନାହିଁ) ଜାଣନ୍ତି, ସେମାନଙ୍କର ମନ ସର୍ବଦା ଆମ୍ଭଠାରେ ଆସକ୍ତ ଥିବାରୁ ସେମାନେ ମରଣ ସମୟରେ ମଧ୍ୟ ଆମ୍ଭଙ୍କୁ ଜାଣି ପାରନ୍ତି । ମରଣ ସମୟରେ ମସ୍ତିଷ୍କ ଓ ଇନ୍ଦ୍ରିୟ-

Digitized by PPRACHIN, SOA

ସ୍ୱଭାବ ବିକୃତ ହୋଇଯାଏ, ଯେତେବେଳେ ଈଶ୍ୱର ସ୍ମରଣ ଅସମ୍ଭବ ହୋଇ ପାରେ ସତ, ମାତ୍ର ଏହା ସମସ୍ତେ ଅବଗତ ଅଛନ୍ତି, ଯେ ଯେଉଁ ବ୍ୟକ୍ତି ଯେଉଁ ବିଷୟରେ ସର୍ବଦା ଆସକ୍ତ ଥାନ୍ତି, ମରଣ ସମୟରେ ତାହାଙ୍କର ପ୍ରାୟ ସେହି ବିଷୟର ଭାବତରଙ୍ଗ ହୃଦୟରୁ ଉଠିତ ହୁଏ । ଭଗବଦ୍ଭକ୍ତ ବ୍ୟକ୍ତି ସର୍ବଦା ଈଶ୍ୱର ବିଷୟରେ ମନ ଲଗାଇଥିବାରୁ ମରଣ ସମୟରେ ମଧ୍ୟ ତାଙ୍କର ତାହା ବିସ୍ମରଣ ହୁଏ ନାହିଁ । ଅଥବା କୌଣସି ଶିଶୁ ମାତାର ବସ୍ତ୍ରାଞ୍ଚଳ ଧରି ତାହା ସହିତ ଗମନ କରିବା ସମୟରେ ଯଦି ଦୈବାତ୍ ପଥରେ ପତିତ ହୋଇ ମୂର୍ଚ୍ଛିତ ହୁଏ, ତେତେବେଳେ ସେ ମାତାକୁ ସାହାଯ୍ୟ ପାଇଁ ନ ଡାକିଲେ ସୁଦ୍ଧା, ମାତା ଯେପରି ଆପେ, ସେହି ଚେଷ୍ଟା ଓ ଚୈତନ୍ୟଶୂନ୍ୟ ଶିଶୁକୁ କୋଡରେ ନେଇ ତାହାର ଚୈତନ୍ୟଉଦୟରେ ଯତ୍ନ କରେ, ସେହିପରି ଭକ୍ତ ମରଣ ସମୟରେ ମୂର୍ଚ୍ଛିତ ଓ ଚେତନାଶୂନ୍ୟ ହେଲେ ସୁଦ୍ଧା, ଚୈତନ୍ୟମୟ ଭକ୍ତବତ୍ସଳ ଦୟାସାଗର ପ୍ରଭୁ ଭକ୍ତର ଭକ୍ତି ଓ ଶ୍ରଦ୍ଧା ସ୍ମରଣ କରି, ତାହାର ହୃଦୟରେ ଚେତନାସ୍ୱରୂପରେ ବିରାଜମାନ ହୋଇ, ତାହାକୁ ଆପଣା କଥା ସ୍ମରଣ କରାଇ ଦିଅନ୍ତି ।

ଏ ଅଧ୍ୟାୟରେ ଭକ୍ତମାନେ ଭକ୍ତିବଳରେ ଶେଷରେ ବ୍ରହ୍ମଜ୍ଞାନ ଲାଭ କରି ପାରନ୍ତି, ଏହି କଥାହିଁ ବର୍ଣ୍ଣିତ ହେଲା । ୩୦ ।

ଇତି ଶ୍ରୀଭଗବଦ୍ଗୀତାର ବିଶଦବ୍ୟାଖ୍ୟାରେ ସପ୍ତମ ଅଧ୍ୟାୟ ସମାପ୍ତ । ୭ ।



Digitized by PPRACHIN, SOA

ଶ୍ରୀ

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ଅଷ୍ଟମୋଽଧ୍ୟାୟଃ ।

### ତାରକବ୍ରହ୍ମ-ଯୋଗଃ ।

#### ଶ୍ଳୋକଃ ।

ଅର୍ଜ୍ଜୁନଉବାଚ ।—କିଂ ତତ୍ ବ୍ରହ୍ମ କିମଧ୍ୟାତ୍ମଂ, କିଂ କର୍ମ ପୁରୁଷୋତ୍ତମ ।
ଅଧିଭୂତଂ ଚ କିଂ ପ୍ରୋକ୍ତ,ମଧିଦୈବଂ କିମୁଚ୍ୟତେ । ୧ ।

#### ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ । ହେ ପୁରୁଷୋତ୍ତମ ! ତତ୍ ବ୍ରହ୍ମ କିଂ ଅଧ୍ୟାତ୍ମଂ କିଂ କର୍ମ କିଂ ଚ ଅଧିଭୂତଂ କିଂ ପ୍ରୋକ୍ତଂ ଅଧିଦୈବଂ କିଂ ଉଚ୍ୟତେ ? । ୧ ।

#### ଟୀକା ।

ବ୍ରହ୍ମକର୍ମାଧିଭୂତାଦ ବଦୁଃ କୃଷ୍ଣୈକଚେତସଃ ।
ଇତ୍ୟୁକ୍ତଂ ବ୍ରହ୍ମକର୍ମାଦ ପ୍ରୁଷ୍ଟମଷ୍ଟମ ଉଚ୍ୟତେ ।

ପୂର୍ବାଧ୍ୟାୟାନ୍ତେ ଭଗବତୋପକ୍ଷିପ୍ତାନାଂ ବ୍ରହ୍ମାଧ୍ୟାତ୍ମାଦସପ୍ତପଦାର୍ଥାନାଂ ତତ୍ତ୍ୱଂ ଜିଜ୍ଞାସୁରର୍ଜ୍ଜୁନ ଉବାଚ, କିଂ ତତ୍ ବ୍ରହ୍ମେତ୍ୟାଦ୍ୟାଭ୍ୟାଂ । ଶ୍ଳୋକାର୍ଥଃ । ୧ ।

#### ପଦବ୍ୟାଖ୍ୟା ।

କିଂ ତତ୍ ବ୍ରହ୍ମ—ସେହି ବ୍ରହ୍ମ କଏ ?, କିଂ ଅଧ୍ୟାତ୍ମଂ—ଅଧ୍ୟାତ୍ମ କଅଣ ?, କିଂ କର୍ମ—କର୍ମ କଣ ?, ପୁରୁଷୋତ୍ତମ—ହେ ପୁରୁଷଶ୍ରେଷ୍ଠ !, ଅଧିଭୂତଂ ଚ କିଂ ପ୍ରୋକ୍ତଂ—ଅଧିଭୂତ ପୁଣି କାହାକୁ ବୋଲଯାଏ ?, ଅଧିଦୈବ କିମୁଚ୍ୟତେ—ଅଧିଦୈବ କାହାକୁ ବୋଲଯାଏ ? । ୧ ।

#### ଅନୁବାଦ ।

ଅର୍ଜ୍ଜୁନ କହିଲେ, ହେ ପୁରୁଷୋତ୍ତମ ! ସେହି ବ୍ରହ୍ମ କି ପଦାର୍ଥ ? ଅଧ୍ୟାତ୍ମ କାହାକୁ କହନ୍ତି ? କର୍ମ କଣ ? ଓ ଅଧିଭୂତ ଏବଂ ଅଧିଦୈବ କାହାକୁ ବୋଲାଯାଏ ? । ୧ ।

#### ବିଶଦବ୍ୟାଖ୍ୟା ।

ସପ୍ତମ ଅଧ୍ୟାୟର ଶେଷଭାଗରେ ( ୨୯ ଓ ୩୦ ଶ୍ଳୋକରେ ) ଶ୍ରୀଭଗବାନ୍ , ବ୍ରହ୍ମ, ଅଧ୍ୟାତ୍ମ, କର୍ମ, ଅଧିଭୂତ, ଅଧିଦୈବ ଓ ଅଧିଯଜ୍ଞ ଏବଂ ମରଣ କାଳରେ ସୁଦ୍ଧା ପରମେଶ୍ୱରଙ୍କୁ

Digitized by PPRACHIN, SOA

ସଂଯତଚେତା ବ୍ୟକ୍ତିମାନେ ଜାଣିପାରନ୍ତି, ଇତ୍ୟାଦି କଥା ସଂକ୍ଷେପରେ କହିଥିଲେ । ବର୍ତ୍ତମାନ ସେହି ସବୁ କଥାର ପ୍ରକୃତ ତତ୍ତ୍ୱ ଜାଣିବା କାରଣ ଅର୍ଜୁନ ପ୍ରଥମ ଦୁଇଶ୍ଳୋକରେ ପ୍ରଶ୍ନ କରୁ-ଅଛନ୍ତି, ହେ ପୁରୁଷୋତ୍ତମ ! ସେହି ବ୍ରହ୍ମ କି ପଦାର୍ଥ ? ଅର୍ଥାତ୍ ତାହା ଉପାଧିଯୁକ୍ତ କି ଉପାଧି-ରହିତ ? ଦେହକୁ ଅଧିକାର କରିଥିବା ଆତ୍ମା, ଭୌତିକ ପଦାର୍ଥ କି ଚୈତନ୍ୟସ୍ୱରୂପ ? କର୍ମ କଣ ? ଯାଗ ଯଜ୍ଞାଦି କି ଆଉ କୌଣସି ପ୍ରକାର କର୍ମ ଅଛି ? ପୃଥିବ୍ୟାଦି ପଦାର୍ଥକୁ ଅଧିଭୂତ ବୋଲି ଆପଣ କହୁଅଛନ୍ତି କି ଭୌତିକ ସମସ୍ତ କ୍ରିୟାକୁ କହୁଅଛନ୍ତି ? ଦେବତାମାନଙ୍କ ଧ୍ୟାନାଦି କି ଆପଣଙ୍କ ମତରେ ଅଧିଦୈବ ?

ଫଳକଥା ଏହି କି ସପ୍ତମ ଅଧ୍ୟାୟ ଶେଷରେ ଆପଣ ଯେଉଁ ସପ୍ତ ଜ୍ଞେୟବିଷୟର ଉଲ୍ଲେଖ କରିଅଛନ୍ତି, ତାହା ବିସ୍ତୃତ ଓ ବିଶଦରୂପେ ବୁଝାଇ ଦେଉନ୍ତୁ । ୧ ।

ଶ୍ଳୋକଃ ।

ଅଧିଯଜ୍ଞଃକଥଂ କୋଽତ୍ର, ଦେହେଽସ୍ମିନ୍ ମଧୁସୂଦନ ।
ପ୍ରୟାଣକାଳେ ଚ କଥଂ, ଜ୍ଞେୟୋଽସି ନିୟତାତ୍ମଭିଃ । ୨ ।

ଅନ୍ୱୟଃ ।

ହେ ମଧୁସୂଦନ । ଅତ୍ର ଦେହେ ଅଧିଯଜ୍ଞଃ କଃ ଅସ୍ମିନ୍ କଥଂ (ସଃ ତିଷ୍ଠତି) ? ପ୍ରୟାଣକାଳେ ଚ ନିୟତାତ୍ମଭିଃ କଥଂ ଜ୍ଞେୟଃ ଅସି । ୨ ।

ଟୀକା ।

କଶ୍ଚ ଅଧିଯଜ୍ଞ ଇତି । ଅତ୍ର ଦେହେ ଯୋଯଜ୍ଞୋବର୍ତ୍ତତେ ତସ୍ମିନ କୋଽଧିଷ୍ଠାତା ପ୍ରଯୋଜକଃ ଫଳଦାତା ଚ କ ଇତ୍ୟର୍ଥଃ, ସ୍ୱରୂପଂ ପୃଷ୍ଟ୍ୱାଧିଷ୍ଠାନପ୍ରକାରଂ ପୃଚ୍ଛତି କଥଂ କେନ ପ୍ରକାରେଣ ଅସାବସ୍ମିନ୍ ଦେହେ ସ୍ଥିତଃ ଯଜ୍ଞମଧିକୃତ୍ୟପୃଷ୍ଟ-ତ୍ୱାର୍ଥଃ ଯଜ୍ଞଗ୍ରହଣଂ ସର୍ବକର୍ମଣାମୁପଲକ୍ଷଣାର୍ଥଂ । ଅନ୍ତକାଳେ ଚ ନିୟତଚିତ୍ତୈଃ ପୁରୁଷୈଃ କଥଂ କେନୋପାୟେନ ଜ୍ଞେୟୋଽସି । ୨ ।

ପଦବ୍ୟାଖ୍ୟା ।

ଅଧିଯଜ୍ଞଃ—ଯଜ୍ଞାଦି କର୍ମର ଫଳଦାତା ବା ଅଧିଷ୍ଠାତା, କଥଂ—କିପ୍ରକାର, କଃ—କିଏ ?, ଅତ୍ର ଦେହେ—ଏ ଦେହରେ, ଅସ୍ମିନ୍—ଏଥିରେ, ମଧୁସୂଦନ—ହେ ମଧୁଦୈତ୍ୟବିନାଶକ !, ପ୍ରୟାଣକାଳେ—ମରଣ ସମୟରେ, ଚ—ପୁଣି, କଥଂ ଜ୍ଞେୟଃ ଅସି—ଆପଣ କିପରି ଜଣାଯାନ୍ତି ?, ନିୟତାତ୍ମଭିଃ—ସଂଯତମନା ବ୍ୟକ୍ତିମାନଙ୍କଦ୍ୱାରା । ୨ ।

ଅନୁବାଦ ।

ହେ ମଧୁସୂଦନ ! ଏ ଦେହରେ ଅଧିଯଜ୍ଞ କିଏ ? ଓ ସେ କିପରି ଏଥିରେ ଅବସ୍ଥିତ କରୁଅଛନ୍ତି ଏବଂ ମରଣ ସମୟରେ ଜିତେନ୍ଦ୍ରିୟ ଯୋଗିମାନେ କି ଉପାୟରେ ଆପଣଙ୍କୁ ଜାଣନ୍ତି ? । ୨ ।

ବିଶଦବ୍ୟାଖ୍ୟା ।

ଅର୍ଜୁନ ଶ୍ରୀଭଗବାନଙ୍କୁ ପଚାରିଲେ, ହେ ମଧୁସୂଦନ ! ଯେ ଯଜ୍ଞକୁ ଅବଲମ୍ବନ କରିଥାନ୍ତି, ତାଙ୍କୁ ଅଧିଯଜ୍ଞ ବୋଲାଯାଏ କି ସେ ଅନ୍ୟ କୌଣସି ସ୍ୱତନ୍ତ୍ର ଦେବତା ? ସେ ଏ

Digitized by PPRACHIN, SOA

ଦେହରେ କିପରି ଅବସ୍ଥାନ କରନ୍ତି ? ଦେହ ଭିତରେ ଥାନ୍ତି ନା ବାହାରେ ଥାନ୍ତି ? ଯଦି ଭିତରେ ଥାନ୍ତି, ତେବେ ବୁଦ୍ଧିଆଦି ରୂପରେ ଥାନ୍ତି କି ଅନ୍ୟ କୌଣସି ରୂପରେ ଥାନ୍ତି ? ତାଙ୍କୁ କିପରି ଧ୍ୟାନ କରାଯାଏ ? ମୃତ୍ୟୁକାଳରେ ଇନ୍ଦ୍ରିୟମାନ ଭଲ୍‌ରୁ ମରଣ ଯନ୍ତ୍ରଣାଦ୍ୱାରା ଅବଶ ହୋଇ ପଡ଼ିଲେ ଓ ଚେତନା ଏବଂ ସ୍ମରଣଶକ୍ତି ହରାଇଲେ, ଆପଣ କିପରି ତାହାଙ୍କ ହୃଦୟରେ ଉଦିତ ହୁଅନ୍ତି ? ଅର୍ଥାତ୍ ତେତେବେଳେ ସେ ଆପଣଙ୍କୁ କି ପ୍ରକାର ଜାଣି ପାରନ୍ତି ? ଏ ସବୁ ପ୍ରଶ୍ନର ଉତ୍ତର ମତେ ବିଶଦରୂପରେ ବୁଝାଇ ଦେବା ହେଉନ୍ତୁ । ୨ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—ଅକ୍ଷରଂ ପରମଂ ବ୍ରହ୍ମ, ସ୍ୱଭାବୋଽଧ୍ୟାତ୍ମମୁଚ୍ୟତେ ।
ଭୂତଭାବୋଦ୍ଭବକରୋ, ବିସର୍ଗଃ କର୍ମସଂଜ୍ଞିତଃ । ୩ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ପରମଂ ଅକ୍ଷରଂ ବ୍ରହ୍ମ ଉଚ୍ୟତେ, ସ୍ୱଭାବଃ ଅଧ୍ୟାତ୍ମଂ (ଉଚ୍ୟତେ), ଭୂତଭାବୋଦ୍ଭବକରଃ ବିସର୍ଗଃ କର୍ମସଂଜ୍ଞିତଃ (ଭବତି) । ୩ ।

ଟୀକା ।

ପ୍ରଶ୍ନକ୍ରମେଣୈବୋତ୍ତରଂ ଶ୍ରୀଭଗବାନ୍ ଉବାଚ । ଅକ୍ଷରମିତି ତ୍ରିଭିଃ । ନ କ୍ଷରତି ନ ଚଳତୀତ୍ୟକ୍ଷରଂ ନନୁ ଜୀବୋଽପ୍ୟକ୍ଷରସ୍ତତ୍ରାହ ପରମଂ ଯଦକ୍ଷରଂ ଜଗତାଂ ମୂଳକାରଣଂ ତଦ୍‌ବ୍ରହ୍ମ । ଏତଦ୍ ବୈ ତଦକ୍ଷରଂ ଗାର୍ଗି ବ୍ରାହ୍ମଣା ଅଭିବଦନ୍ତୀତି ଶ୍ରୁତେଃ । ସ୍ୱସ୍ୟୈବ ବ୍ରହ୍ମଣ ଏବାଂଶତୟା ଜୀବରୂପେଣ ଭବନଂ ସ୍ୱଭାବଃ ସ ଏବାତ୍ମାନଂ ଦେହମଧିକୃତ୍ୟ ଭୋକ୍ତୃତ୍ୱେନ ବର୍ତ୍ତମାନୋଽଧ୍ୟାତ୍ମଶବ୍ଦେନୋଚ୍ୟତ ଇତ୍ୟର୍ଥଃ । ଭୂତାନାଂ ଜରାୟୁଜାଦୀନାଂ ଭାବଃ ସତ୍ତା ଉତ୍ପତ୍ତିଃ ଉଦ୍ଭବଶ୍ଚ ଅଗ୍ନୌ ପ୍ରାସ୍ତାହୁତିଃ ସମ୍ୟଗାଦିତ୍ୟମୁପତିଷ୍ଠତେ ଆଦିତ୍ୟାଜ୍ଜାୟତେ ବୃଷ୍ଟିରିତି କ୍ରମେଣ ବୃଦ୍ଧିରୁତ୍କର୍ଷସ୍ତେନ ଭବନମୁଦ୍ଭବଃ ତୌ ଭୂତଭାବୋଦ୍ଭବୌ କରୋତି ଯୋ ବିସର୍ଗୋ ଦେବତୋଦ୍ଦେଶେନ ଦ୍ରବ୍ୟତ୍ୟାଗରୂପୀ ଯଜ୍ଞଃ ସର୍ବକର୍ମଣାମୁପଲକ୍ଷଣମେତତ୍ ସ ଚ କର୍ମଶବ୍ଦବାଚ୍ୟଃ । ୩ ।

ପଦବ୍ୟାଖ୍ୟା ।

ଅକ୍ଷରଂ—କ୍ଷୟରହିତ ଅର୍ଥାତ୍ ପୂର୍ଣ୍ଣ, ପରମଂ—ଜଗତର ଆଦିକାରଣ, ବ୍ରହ୍ମ—ଉପାଧିରହିତ ଚୈତନ୍ୟ, ସ୍ୱଭାବଃ—ବ୍ରହ୍ମପଦାର୍ଥର ଅଂଶଭାବ ବା ଜୀବରୂପେ ପ୍ରକାଶ ଅର୍ଥାତ୍ ଈଶ୍ୱରଙ୍କ ଅଂଶରୂପୀ ଜୀବାତ୍ମା, ଅଧ୍ୟାତ୍ମଂ ଉଚ୍ୟତେ—ଅଧ୍ୟାତ୍ମ ନାମରେ କଥିତ, ଭୂତଭାବୋଦ୍ଭବକରଃ—ପ୍ରାଣିମାନଙ୍କର ଜନ୍ମ ଓ ବୃଦ୍ଧିର କାରଣ, ବିସର୍ଗଃ—ଦେବତା ଉଦ୍ଦେଶ୍ୟରେ ଦ୍ରବ୍ୟତ୍ୟାଗରୂପ ଯଜ୍ଞ, କର୍ମସଂଜ୍ଞିତଃ—କର୍ମ ନାମରେ କଥିତ । ୩ ।

ଅନୁବାଦ ।

ଭଗବାନ୍ କହିଲେ, ଜଗତର ମୂଳକାରଣ ଅକ୍ଷୟ ପଦାର୍ଥକୁ ବ୍ରହ୍ମ ଓ ପ୍ରତିଦେହରେ ବ୍ରହ୍ମପଦାର୍ଥର ଯେଉଁ ଅଂଶଭାବ ଅଛି, ତାକୁ ଅଥବା ବ୍ରହ୍ମପଦାର୍ଥର ଅଂଶରୂପ ଜୀବକୁ 'ଅଧ୍ୟାତ୍ମ' ବୋଲାଯାଏ ଏବଂ ପ୍ରାଣିମାନଙ୍କର ଉତ୍ପତ୍ତି ଓ ବୃଦ୍ଧିର କାରଣ ଯେ ଯଜ୍ଞାଦି ତାହା କର୍ମ ନାମରେ କଥିତ ଅଟେ । ୩ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ଅର୍ଜୁନଙ୍କ ପ୍ରଶ୍ନର ଉତ୍ତର ଯଥାକ୍ରମରେ ଦେଉଅଛନ୍ତି । ଅର୍ଜୁନ ପ୍ରଥମରେ ବ୍ରହ୍ମ କିଏ ଓ ତତ୍ପରେ ଅଧ୍ୟାତ୍ମ କାହାକୁ ବୋଲାଯାଏ, ଏବଂ କର୍ମ କାହାକୁ କହନ୍ତି ବୋଲି

Digitized by PPRACHIN, SOA

ପଚ୍ଚାରିଥିଲେ । ଭଗବାନ୍ ସେହି ପ୍ରଶ୍ନତ୍ରୟର ଉତ୍ତର ଏ ଶ୍ଳୋକରେ ଦେଉଅଛନ୍ତି । ଯାହାଙ୍କର 'କ୍ଷର' ଅର୍ଥାତ୍ କ୍ଷୟ ବା ଚଳନାଦି ନାହିଁ, ସେହି 'ଅକ୍ଷର'ଙ୍କୁ ଅର୍ଥାତ୍ ଉପାଧିରହିତ ଚୈତନ୍ୟଙ୍କୁ 'ବ୍ରହ୍ମ' ବୋଲିଯାଏ । କାଳେ ଅର୍ଜ୍ଜୁନ ମନେ କରିବେ, ଯେ ଯଦି ଅକ୍ଷରଙ୍କୁ ବ୍ରହ୍ମ ବୋଲିଯାଏ, ତେବେ 'ଅ' 'କ' ପ୍ରଭୃତି ଅକ୍ଷର ବା ବର୍ଣ୍ଣମାନଙ୍କୁ ଅଥବା ଜୀବଙ୍କୁ କି ବ୍ରହ୍ମ ବୋଲି ଜାଣିବାକୁ ହେବ? ସେଥିପାଇଁ ଶ୍ରୀଭଗବାନ୍ 'ପରମଂ' ବିଶେଷଣ ଶବ୍ଦ ଦେଇଅଛନ୍ତି, ଅର୍ଥାତ୍ ଯେଉଁ ଅକ୍ଷର 'ପରମ'—ସମସ୍ତ ଜଗତର ଆଦିକାରଣ ତାହାହିଁ ବ୍ରହ୍ମଶବ୍ଦ ବାଚ୍ୟ । ଫଳକଥା ଏହି କି ଅବିନାଶୀ ଓ ସର୍ବବ୍ୟାପୀ ଏବଂ ସର୍ବଜଗତର କାରଣସ୍ୱରୂପ, ଉପାଧିଶୂନ୍ୟ, ସ୍ୱପ୍ରକାଶ ଚୈତନ୍ୟଙ୍କୁ 'ବ୍ରହ୍ମ' ବୋଲିଯାଏ । ସେହି 'ଅକ୍ଷର' ବ୍ରହ୍ମପଦାର୍ଥର ଯେଉଁ ଅଂଶଭାବ, ସେ ଦେହକୁ ଆଶ୍ରୟ କରି ରହିଲେ ଅଧ୍ୟାତ୍ମ ନାମରେ କଥିତ ହୁଅନ୍ତି; ଅର୍ଥାତ୍ ପରମେଶ୍ୱରଙ୍କର ଅଂଶରୂପୀ ଜୀବାତ୍ମାକୁ 'ଅଧ୍ୟାତ୍ମ' ବୋଲିଯାଏ । ଆଉ ପ୍ରାଣିମାନଙ୍କର ଉତ୍ପତ୍ତି ଓ ବୃଦ୍ଧିର କାରଣ ଯେ ଦ୍ରବ୍ୟତ୍ୟାଗରୂପ ଯଜ୍ଞାଦି, ତାହା କର୍ମ ନାମରେ କଥିତ ହୁଏ । ଯଜ୍ଞ ଅର୍ଥାତ୍ ଯାଗ, ହୋମ ଓ ଦାନ ଏ ସମସ୍ତହିଁ ଦ୍ରବ୍ୟତ୍ୟାଗଦ୍ୱାରା ନିଷ୍ପନ୍ନ ହୁଏ । ଦଣ୍ଡାୟମାନ ହୋଇ ମନ୍ତ୍ରଶେଷରେ 'ବଷଟ୍' ଉଚ୍ଚାରଣ କରି ଦେବତା ଉଦ୍ଦେଶ୍ୟରେ ଅଗ୍ନିରେ ଚରୁ ସମିଧ ବା ଆହୁତି ଆଦି ଦ୍ରବ୍ୟତ୍ୟାଗକୁ ଯାଗ ବୋଲିଯାଏ । ଆସନରେ ଉପବିଷ୍ଟ ହୋଇ ମନ୍ତ୍ରଶେଷରେ 'ସ୍ୱାହା' ଉଚ୍ଚାରଣ କରି ଅଗ୍ନିରେ ଯେଉଁ ଆହୁତି ପ୍ରଭୃତି 'ତ୍ୟାଗ' କରାଯାଏ, ତାହାକୁ ହୋମ କହନ୍ତି । ଆଉ ଯେଉଁ ଦ୍ରବ୍ୟକୁ ଏପରି ତ୍ୟାଗ କରାଯାଏ, ଯେ ସେଥିରେ ଆପଣାର ଅଧିକାର ନଷ୍ଟ ହୋଇ ପରର ଅଧିକାର ଜନ୍ମେ, ସେହି ତ୍ୟାଗକୁ 'ଦାନ' ବୋଲିଯାଏ । ସୁତରାଂ 'ବିସର୍ଗ' ଅର୍ଥାତ୍ ତ୍ୟାଗ କହିଲେ ଯଜ୍ଞାଦି ସମସ୍ତ କ୍ରିୟା ବୁଝା ଯାଏ, ସେହି ତ୍ୟାଗ ବା ଯଜ୍ଞାଦି କ୍ରିୟା ଏସ୍ଥଳରେ 'କର୍ମ' ନାମରେ କଥିତ ହୋଇଅଛି । ସେହି କର୍ମରୁ ପ୍ରାଣିମାନଙ୍କର ଉତ୍ପତ୍ତି ଓ ବୃଦ୍ଧି ହୁଏ, ଯେହେତୁ ସ୍ମୃତିରେ ପ୍ରମାଣ ଅଛି, ଯେ "ଅଗ୍ନୌ ପ୍ରାସ୍ତାହୁତିଃ ସମ୍ୟକ୍ ଆଦିତ୍ୟମୁପତିଷ୍ଠତେ । ଆଦିତ୍ୟାଜ୍ଜାୟତେ ବୃଷ୍ଟିଃ ବୃଷ୍ଟେରନ୍ନଂ ତତଃ ପ୍ରଜାଃ" ଇତ୍ୟାଦି; ଅର୍ଥାତ୍ ଅଗ୍ନିରେ ଯାହା ଆହୁତିରୂପରେ ଦିଆଯାଏ, ତାହା ଧୂମରୂପରେ ସୂର୍ଯ୍ୟଙ୍କ ନିକଟକୁ ଯାଏ; ସୂର୍ଯ୍ୟ ତାହାଦ୍ୱାରା ବୃଷ୍ଟି କରାନ୍ତି ଓ ବୃଷ୍ଟିରୁ ଶସ୍ୟାଦି ଜାତ ହୁଏ ଓ ସେହି ଶସ୍ୟାଦି ଶୁକ୍ର-ଶୋଣିତରୂପରେ ପରିଣତ ହେଲେ, ତହିଁରୁ ପ୍ରାଣୀ ଜାତ ହୁଅନ୍ତି, ଇତ୍ୟାଦି । ଆଉ ସେହି କର୍ମରୁ ଜାତ ଶସ୍ୟାଦି ଭକ୍ଷଣ କରି ପ୍ରାଣିମାନେ ଯେ ବର୍ଦ୍ଧିତ ହୁଅନ୍ତି, ଏହା କହିବା ବାହୁଲ୍ୟମାତ୍ର । ୩ ।

ଶ୍ଳୋକଃ ।

ଅଧିଭୂତଂ କ୍ଷରୋଭାବଃ, ପୁରୁଷଶ୍ଚାଧିଦୈବତଂ ।
ଅଧିଯଜ୍ଞୋଽହମେବାତ୍ର, ଦେହେ ଦେହଭୃତାମ୍ବର । ୪ ।

ଅନ୍ୱୟଃ ।

ହେ ଦେହଭୃତାମ୍ବର ! କ୍ଷରଃ ଭାବଃ ଅଧିଭୂତଂ ଚ ପୁରୁଷଃ ଅଧିଦୈବତଂ ଅହଂ ଏବ ଅତ୍ର ଦେହେ ଅଧିଯଜ୍ଞଃ । ୪ ।



Digitized by PPRACHIN, SOA

## ଟୀକା ।

କିଞ୍ଚ ଅଧିଭୂତମିତି । କ୍ଷରୋ ବିନଶ୍ୱରୋ ଭାବଃ ଦେହାଦିପଦାର୍ଥୋ ଭୂତଂ ପ୍ରାଣିମାତ୍ରମଧିକୃତ୍ୟ ଭବତୀତ୍ୟଧିଭୂତମୁଚ୍ୟତେ । ପୁରୁଷୋ ବୈରାଜଃ ସୂର୍ଯ୍ୟମଣ୍ଡଳମଧ୍ୟବର୍ତ୍ତୀ ସ୍ୱାଂଶଭୂତସର୍ବଦେବତାନାମଧିପତିରଧିଦୈବତମୁଚ୍ୟତେ । ଅଧିଦୈବତମଧିଷ୍ଠାତ୍ରୀଦେବତା, ସ ବୈ ଶରୀରୀ ପ୍ରଥମଃ ସ ବୈ ପୁରୁଷ ଉଚ୍ୟତେ । ଆଦିକର୍ତ୍ତା ସ ଭୂତାନାଂ ବ୍ରହ୍ମାଗ୍ରେ ସମବର୍ତ୍ତତ ଇତି ଶ୍ରୁତେଃ । ଅତ୍ରାସ୍ମିନ୍ ଦେହେ ସ୍ଥିତୋଽହମେବାଧିଯଜ୍ଞୋ ଯଜ୍ଞାଧିଷ୍ଠାତ୍ରୀ ଦେବତା ଯଜ୍ଞାଦିକର୍ମପ୍ରବର୍ତ୍ତକସ୍ତତ୍ଫଳଦାତା ଚ କଥମିତ୍ୟସ୍ୟାପ୍ୟୁତ୍ତରମନେନୈବୋକ୍ତଂ ଦ୍ରଷ୍ଟବ୍ୟଂ । ଅନ୍ତର୍ଯ୍ୟାମିଣୋଽସଙ୍ଗୋଦାସୀନତ୍ୱାଦିଗୁଣୈର୍ଜୀବବୈଲକ୍ଷଣ୍ୟେନ ଦେହାନ୍ତର୍ବର୍ତ୍ତିତ୍ୱପ୍ରସିଦ୍ଧତ୍ୱାତ୍ ତଥା ଚ ଶ୍ରୁତିଃ । ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା ସମାନଂ ବୃକ୍ଷଂ ପରିଷସ୍ୱଜାତେ, ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତ୍ତ୍ୟନଶ୍ନନ୍ନନ୍ୟୋଽଭିଚାକଶୀତି । ଦେହଭୃତାଂ ମଧ୍ୟେ ଶ୍ରେଷ୍ଠ ଇତି ସମ୍ବୋଧୟନ୍ ଦେହତୋଽନ୍ୟମନ୍ତର୍ଯ୍ୟାମିନଂ ପରାଧୀନ-ସ୍ୱପ୍ରବୃତ୍ତି-ନିବୃତ୍ତ୍ୟନ୍ୱୟବ୍ୟତିରେକାଭ୍ୟାଂ ବୋଦ୍ଧୁମର୍ହସୀତି ସୂଚୟତି । ୪ ।

## ପଦବ୍ୟାଖ୍ୟା ।

ଅଧିଭୂତଂ—ଅଧିଭୂତ ବୋଲଯାଏ (ଚୈତନ୍ୟାଶ୍ରିତ ଦେହାଦି ପଦାର୍ଥ), କ୍ଷରଃ—ନଶ୍ୱର, ଭାବଃ—ଦେହାଦି ପଦାର୍ଥକୁ, ପୁରୁଷଃ—ଦେହରୂପ ପୁରରେ ବାସକାରୀ ଅନ୍ତର୍ଯ୍ୟାମୀ ବିରାଟ୍‌ପୁରୁଷ, ଅଧିଦୈବତଂ—ଅଧିଦୈବତ ନାମରେ କଥିତ (ସୂର୍ଯ୍ୟମଣ୍ଡଳବର୍ତ୍ତୀ ଓ ଦେବତାମାନଙ୍କର ଅଧିଷ୍ଠାତୃଦେବ), ଅଧିଯଜ୍ଞଃ—ଯଜ୍ଞାଦି କର୍ମର ଅଧିଷ୍ଠାତା ଓ ଫଳଦାତା, ଅହଂ ଏବ—ଆମ୍ଭେ କେବଳ, ଦେହେ—ଶରୀରରେ, ଦେହଭୃତାମ୍‌ବର—ହେ ଦେହଶ୍ରେଷ୍ଠ । ୪ ।

## ଅନୁବାଦ ।

ହେ ଦେହିଶ୍ରେଷ୍ଠ ଅର୍ଜ୍ଜୁନ ! ଦେହାଦି ନଶ୍ୱର ପଦାର୍ଥକୁ 'ଅଧିଭୂତ' ଓ ହିରଣ୍ୟଗର୍ଭ ପୁରୁଷକୁ 'ଅଧିଦୈବ' ବୋଲଯାଏ, ଏବଂ ଦେହରେ ଆମ୍ଭେ 'ଅଧିଯଜ୍ଞ'ସ୍ୱରୂପରେ ବର୍ତ୍ତମାନ ଥାଉଁ । ୪ ।

## ବିଶଦବ୍ୟାଖ୍ୟା ।

ଯେଉଁ କ୍ଷର ପଦାର୍ଥ 'କ୍ଷର' ଅର୍ଥାତ୍ ବିନାଶଶୀଳ ସେହି ସବୁ (ଦେହାଦି) ପଦାର୍ଥ, 'ଭୂତ' ଅର୍ଥାତ୍ ପ୍ରାଣିମାନଙ୍କୁ ଆଶ୍ରୟ କରିଥାଏ ବୋଲି 'ଅଧିଭୂତ' ନାମରେ କଥିତ ଅଟେ । ଯେଉଁ ହିରଣ୍ୟଗର୍ଭ ପୁରୁଷ ସୂର୍ଯ୍ୟମଣ୍ଡଳ ମଧ୍ୟବର୍ତ୍ତୀ ହୋଇ ଆପଣାର ଅଂଶରୁ ଉତ୍ପନ୍ନ ସମସ୍ତ ଦେବତାଙ୍କର ଅଧିଷ୍ଠାତାରୂପରେ ବିରାଜମାନ ଅଛନ୍ତି ଏବଂ ଯାହାଙ୍କର ବିରାଟ୍‌ମୂର୍ତ୍ତି ଦେବତାସମୂହର ଯୋଗଫଳ (ସମଷ୍ଟି) ତୁଲ୍ୟ, ଏବଂ ଯେ ବ୍ୟଷ୍ଟିଭାବରେ (ଏକ୨ ଅଂଶରେ) ସୂର୍ଯ୍ୟାଦି ରୂପ ଧାରଣ କରି ଚକ୍ଷୁରାଦି ଇନ୍ଦ୍ରିୟରେ ପ୍ରକାଶକ ଶକ୍ତି ପ୍ରଦାନ କରନ୍ତି, ସେହି ହିରଣ୍ୟଗର୍ଭ ପୁରୁଷଙ୍କୁ 'ଅଧିଦୈବ' ବୋଲାଯାଏ । ପୁଣି ଯେ, ସର୍ବଯଜ୍ଞର ଅଧିଷ୍ଠାତା ଓ ସର୍ବଯଜ୍ଞର ଫଳଦାତା ଏବଂ ସର୍ବଯଜ୍ଞାତ୍ମମାନୀ, ସେହି ଯଜ୍ଞସ୍ୱରୂପୀ ବିଷ୍ଣୁ (ଯଜ୍ଞୋ ବୈ ବିଷ୍ଣୁରିତି ଶ୍ରୁତିଃ) 'ଅଧିଯଜ୍ଞ' ଅଟନ୍ତି । ଭଗବାନ୍ ବାସୁଦେବ ଏହି ଦେହରେ ଅଧିଯଜ୍ଞରୂପରେ ଥିଲେ ସୁଦ୍ଧା, ବୁଦ୍ଧି ଆଦି ପଦାର୍ଥରୁ ଭିନ୍ନ ଅଟନ୍ତି ।

ଏ ଶ୍ଳୋକରେ ଭଗବାନ୍ ଅର୍ଜ୍ଜୁନଙ୍କୁ ହେ 'ଦେହିଶ୍ରେଷ୍ଠ !' ବୋଲି ସମ୍ବୋଧନ କରିବାଦ୍ୱାରା ସଙ୍କେତରେ ଏହି କଥା କହିଲେ, ଯେ ତୁମ୍ଭେ ଆମ୍ଭର ବିଶେଷ ଅନୁଗ୍ରହପାତ୍ର ଥିବାରୁ ଭଗବତ୍ତତ୍ତ୍ୱ ବୁଝିବାର ସମ୍ପୂର୍ଣ୍ଣ ଅଧିକାରୀ ଅଟ । ୪ ।

Digitized by PPRACHIN, SOA

ଶ୍ଲୋକଃ ।

ଅନ୍ତକାଳେ ଚ ମାମେବ, ସ୍ମରନ୍ମୁକ୍ତ୍ୱା କଳେବରଂ ।
ଯଃ ପ୍ରୟାତି ସ ମଦ୍ଭାବଂ, ଯାତି ନାସ୍ତ୍ୟତ୍ର ସଂଶୟଃ । ୫ ।

ଅନ୍ୱୟଃ ।

ଯଃ ଅନ୍ତକାଳେ ମାଂ ଏବ ସ୍ମରନ୍ କଳେବରଂ ମୁକ୍ତ୍ୱା ପ୍ରୟାତି ସଃ ମଦ୍ଭାବ ଯାତି ଅତ୍ର ସଂଶୟଃ ନ ଅସ୍ତି । ୫ ।

ଟୀକା ।

ପ୍ରୟାଣକାଳେ ଚ କଥଂ ଜ୍ଞେୟୋଽସୀତ୍ୟନେନ ପୃଷ୍ଟମନ୍ତକାଳେ ଜ୍ଞାନୋପାୟଂ ତତ୍ଫଳଂ ଚ ଦର୍ଶୟତି, ଅନ୍ତକାଳ ଇତି । ମାମେବୋକ୍ତଲକ୍ଷଣମନ୍ତର୍ଯ୍ୟାମିରୂପଂ ପରମେଶ୍ୱରଂ ସ୍ମରନ୍ ଦେହଂ ତ୍ୟକ୍ତ୍ୱା ଯଃ ପ୍ରକର୍ଷେଣ ଅର୍ଚ୍ଚିରାଦିମାର୍ଗେଣ ଉତ୍ତରାୟଣପଥା ଯାତି ସ ମଦ୍ଭାବ ମଦ୍ରୂପତାଂ ଯାତି ଅତ୍ର ସଂଶୟୋନାସ୍ତି । ସ୍ମରଣଂ ଜ୍ଞାନୋପାୟୋମଦ୍ଭାବାପତ୍ତିଷ୍ଟ ଫଳମିତ୍ୟର୍ଥଃ । ୫ ।

ପଦବ୍ୟାଖ୍ୟା ।

ଅନ୍ତକାଳେ—ମରଣ ସମୟରେ, ଚ—ପୁଣି, ମାଂ—ଆମ୍ଭଙ୍କୁ, ଏବ—କେବଳ, ସ୍ମରନ୍—ସ୍ମରଣ କରି, ମୁକ୍ତ୍ୱା—ତ୍ୟାଗ କରି, କଳେବରଂ—ଦେହକୁ, ଯଃ—ଯେଉଁ ବ୍ୟକ୍ତି, ପ୍ରୟାତି—ଯାନ୍ତି, ସଃ—ସେ, ମଦ୍ଭାବ—ମୋହର ସ୍ୱରୂପକୁ, ଯାତି—ପ୍ରାପ୍ତ ହୁଅନ୍ତି, ନାସ୍ତି—ନାହିଁ, ଅତ୍ର—ଏ ବିଷୟରେ, ସଂଶୟଃ—ସନ୍ଦେହ । ୫ ।

ଅନୁବାଦ ।

ମରଣ ସମୟରେ ଯେ, କେବଳ ଆମ୍ଭଙ୍କୁ ସ୍ମରଣ କରୁ୨ ଶରୀର ତ୍ୟାଗ କରି (ଉତ୍ତରାୟଣ ମାର୍ଗରେ) ଗମନ କରନ୍ତି, ସେ ଆମ୍ଭ ସ୍ୱରୂପ ପ୍ରାପ୍ତ ହୁଅନ୍ତି, ଏଥିରେ ସନ୍ଦେହ ନାହିଁ । । ୫ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ ଏହି ଅଧ୍ୟାୟର ୨ୟ ଶ୍ଳୋକରେ ପଚାରିଥିଲେ, ଯେ ମରଣ ସମୟରେ ଜିତେନ୍ଦ୍ରିୟ ଯୋଗିମାନେ କି ପ୍ରକାରେ ଆପଣଙ୍କୁ ଜାଣନ୍ତି, ତାହାର ଉତ୍ତରରେ ଶ୍ରୀଭଗବାନ୍ କହୁଅଛନ୍ତି, କି ମରଣ କାଳରେ ଆମ୍ଭଙ୍କୁ ସ୍ମରଣ କରିବାହିଁ ଜାଣିବାର ଉପାୟ ଓ ସ୍ମରଣ କଲେ ଆମ୍ଭର ସ୍ୱରୂପ ପ୍ରାପ୍ତ ହେବେ, ତାହା ଜାଣିବାର ଫଳ; ଅର୍ଥାତ୍ ମାନବ ମରଣ ସମୟରେ ଆମ୍ଭଙ୍କୁ ଅଧିଯଜ୍ଞ ବା ସଗୁଣରୂପରେ, ଅଥବା ପରମ-ଅକ୍ଷର ବା ନିର୍ଗୁଣରୂପରେ, ଯେ କୌଣସି ରୂପରେ ସ୍ମରଣ କରୁଁ୨ ଶରୀର ତ୍ୟାଗ କଲେ, ଆମ୍ଭ ସ୍ୱରୂପକୁ ପ୍ରାପ୍ତ ହେବେ, ଏଥିରେ ସନ୍ଦେହ ନାହିଁ । ତେବେ ପ୍ରଭେଦ ଏତିକି, ଯେ ଯେଉଁମାନେ ସଗୁଣ ବା ଅଧିଯଜ୍ଞାଦିରୂପରେ ଆମ୍ଭଙ୍କୁ ସ୍ମରଣ କରନ୍ତି, ସେମାନେ ଅର୍ଚ୍ଚିରାଦି ମାର୍ଗ ଭ୍ରମଣ କରି ହିରଣ୍ୟଗର୍ଭ-ଲୋକ ଭୋଗ ଶେଷରେ ଆମ୍ଭ ନିର୍ଗୁଣସ୍ୱରୂପ ପ୍ରାପ୍ତ ହୁଅନ୍ତି, ଆଉ ଯେଉଁମାନେ କେବଳ ନିର୍ଗୁଣ ଓ ଉପାଧିରହିତ ଭାବରେ ଆମ୍ଭଙ୍କୁ ସ୍ମରଣ କରୁଁ୨ କଳେବର ତ୍ୟାଗ କରି ପାରନ୍ତି, ସେମାନେ ସାକ୍ଷାତ୍ ଭାବରେ ଆମ୍ଭର ଉପାଧିଶୂନ୍ୟ ନିର୍ଗୁଣସ୍ୱରୂପ ପ୍ରାପ୍ତ ହୁଅନ୍ତି । ଏଥିରେ କୌଣସି ପ୍ରକାର ସନ୍ଦେହ ନାହିଁ; ଅର୍ଥାତ୍ ସଗୁଣ ବା ଉପାଧିଯୁକ୍ତ ବ୍ରହ୍ମଙ୍କୁ ସ୍ମରଣ କରୁଁ୨ ଦେହ ତ୍ୟାଗ କଲେ, ଯେବେ ଅଗ୍ନି,

Digitized by PPRACHIN, SOA

ଜ୍ୟୋତି, ଦିବସ ଓ ଶୁକ୍ଳ ଇତ୍ୟାଦି ମାର୍ଗରେ ହିରଣ୍ୟଗର୍ଭ-ଲୋକକୁ ଯାଇ ସେହି ୨ ଲୋକର ଭୋଗ ଶେଷରେ ନିର୍ଗୁଣବ୍ରହ୍ମକୁ ପ୍ରାପ୍ତ ହୁଅନ୍ତି, ତେବେ ସେହି ୨ ଅଗ୍ନ୍ୟାଦି ଲୋକରେ ଉପାସନାର ଉପଯୋଗୀ ସ୍ଥୂଳଶରୀର ନ ଥିବା ସ୍ଥଳେ, କେବଳ ଜୀବାତ୍ମାର ଉକ୍ତ ପ୍ରକାର ବ୍ରହ୍ମପ୍ରାପ୍ତି ସମ୍ଭବ କି ନା ? ଇତ୍ୟାଦି ସନ୍ଦେହ କରିବାର କିଛିମାତ୍ର ଆବଶ୍ୟକ ନାହିଁ । କାହିଁକି ନା ଜୀବାତ୍ମା ସ୍ଥୂଳଶରୀର ତ୍ୟାଗ କଲେ ସୁଦ୍ଧା, ସୂକ୍ଷ୍ମଶରୀର ସହିତ ଅଗ୍ନ୍ୟାଦି ଲୋକର ଅଧିଷ୍ଠାତ୍ରୀ ଦେବତା ଦେହରେ ଲୀନ ହୁଅନ୍ତି, ସେ ଦେବତା ପରବର୍ତ୍ତୀ ଦେବତାମାନଙ୍କ ଦେହରେ ମିଶିମିଶିକା ହିରଣ୍ୟଗର୍ଭରେ ଲୀନ ହୁଅନ୍ତି ଓ ହିରଣ୍ୟଗର୍ଭ ନିର୍ଗୁଣବ୍ରହ୍ମରେ ଲୀନ ହେଲାବେଳେ ଉପାସକ ଅଗ୍ନ୍ୟାଦି ଦେବତାଙ୍କ ସହିତ ନିର୍ଗୁଣବ୍ରହ୍ମକୁ ପ୍ରାପ୍ତ ହୁଅନ୍ତି । ୫ ।

### ଶ୍ଲୋକଃ ।

ଯଂ ଯଂ ବାପି ସ୍ମରନ୍ ଭାବଂ, ତ୍ୟଜତ୍ୟନ୍ତେ କଳେବରଂ ।
ତଂ ତମେବୈତି କୌନ୍ତେୟ, ସଦା ତଦ୍ଭାବଭାବିତଃ । ୬ ।

### ଅନ୍ୱୟଃ ।

ହେ କୌନ୍ତେୟ ! ସଦା ତଦ୍ଭାବଭାବିତଃ ( ଜନଃ ) ଯଂ ଯଂ ଅପି ଭାବ ବା ସ୍ମରନ୍ ଅନ୍ତେ କଳେବରଂ ତ୍ୟଜତି, ତଂ ତଂ ଏବ ଏତି । ୬ ।

### ଟୀକା ।

ନ କେବଲଂ ମାଂ ସ୍ମରନ୍ ମଦ୍ଭାବ ପ୍ରାପ୍ନୋତୀତି ନିୟମଃ । କିଂ ତର୍ହି ? ଯଂ ସମିତି । ଯଂ ଯଂ ଭାବ ଦେବତାନ୍ତରଂ ବା ଅନ୍ୟମପି ବା ଅନ୍ତକାଳେ ସ୍ମରନ୍ ଦେହଂ ତ୍ୟଜତି ତଂ ତମେବ ସ୍ମର୍ଯ୍ୟମାଣଂ ଭାବ ପ୍ରାପ୍ନୋତି । ଅନ୍ତକାଳେ ଭାବବିଶେଷସ୍ମରଣେ ହେତୁଃ ସଦା ତଦ୍ଭାବଭାବିତ ଇତି । ସର୍ବଦା ତସ୍ୟ ଭାବୋଭାବନାନୁଚିନ୍ତନଂ ତେନ ଭାବତୋବାସିତଚିତ୍ତଃ । ୬ ।

### ପଦବ୍ୟାଖ୍ୟା ।

ଯଂ ଯଂ—ଯେଉଁ ୨, ବା ଅପି—ଅଥବା ମଧ୍ୟ, ସ୍ମରନ୍—ସ୍ମରଣ କରି ୨, ଭାବ—ପଦାର୍ଥକୁ ବା ଅନ୍ୟ ଦେବତାଙ୍କୁ, ତ୍ୟଜତି—ତ୍ୟାଗ କରନ୍ତି, ଅନ୍ତେ—ମରଣ ସମୟରେ, କଳେବରଂ—ଶରୀରକୁ, ତଂ ତଂ—ସେହି ୨ ପଦାର୍ଥ ସ୍ୱରୂପକୁ, ଏବ—ନିଶ୍ଚୟ, ଏତି—ପ୍ରାପ୍ତ ହୁଅନ୍ତି, କୌନ୍ତେୟ—ହେ କୁନ୍ତୀପୁତ୍ର (ଅର୍ଜୁନ !), ସଦା—ନିରନ୍ତର,—ସର୍ବଦା, ତଦ୍ଭାବଭାବିତଃ—ସେହି ପଦାର୍ଥର ଭାବନାରେ ଭାବିତ । ୬ ।

### ଅନୁବାଦ ।

ହେ କୌନ୍ତେୟ ! ସର୍ବଦା ଚିନ୍ତା କରୁଥିବାରୁ ମରଣସମୟରେ ଯେ, ଯେଉଁ ଭାବ ସ୍ମରଣ କରି ଦେହତ୍ୟାଗ କରନ୍ତି, ସେ ସେହି ଭାବ ପ୍ରାପ୍ତ ହୁଅନ୍ତି । ୬ ।

### ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ଭଗବାନ୍ କହିଥିଲେ, ଯେ ଯେଉଁ ବ୍ୟକ୍ତି ମରଣ ସମୟରେ କେବଳ ଆମ୍ଭଙ୍କୁ ସ୍ମରଣ କରି ୨ ଶରୀର ତ୍ୟାଗ କରନ୍ତି, ସେ ଆମ୍ଭସ୍ୱରୂପ ପ୍ରାପ୍ତ ହୁଅନ୍ତି, ଏଥିରେ ସନ୍ଦେହ ନାହିଁ । ଏ ଶ୍ଳୋକରେ କହୁଅଛନ୍ତି, କି ମରଣ ସମୟରେ କେବଳ ଆମ୍ଭଙ୍କୁ ସ୍ମରଣ କଲେ, ଯେ

Digitized by PPRACHIN, SOA

ଆମ୍ଭସ୍ୱରୂପ ପ୍ରାପ୍ତ ହେବେ, ତାହା ନୁହେ, ଯେଉଁ ୨ ଭାବ ବା ଯେଉଁ ୨ ଦେବତା ଅଥବା ଯେ କୌଣସି ପଦାର୍ଥ ଭାବନା କରିବେ, ସେହି ୨ ଭାବ, ଅଥବା ସେହି ଦେବତାସ୍ୱରୂପ ବା ପଦାର୍ଥ ପ୍ରାପ୍ତ ହେବେ ।

କାଳେ ଅର୍ଜ୍ଜୁନ ମନେ କରିବେ, ଯେ ମରଣ ସମୟରେ ସ୍ମରଣ କରିବାର କ୍ଷମତା ଥିବ କି ? ଅଥବା କ୍ଷମତା ଥିଲେ ଲୋକେ ମରଣ ସମୟରେ ବିଷ୍ଣୁ ବା ଶିବ ପ୍ରଭୃତି ସ୍ମରଣ କରି ତ ମୁକ୍ତ ହୋଇ ଯାଉଥାନ୍ତେ, ସଂସାରବନ୍ଧନରେ ପଡ଼ି ରହିବାର କାରଣ କଣ ? ଅନ୍ତର୍ଯ୍ୟାମୀ ଭଗବାନ୍ ସେଥିପାଇଁ କହୁଅଛନ୍ତି, ଯେ 'ସଦା ତଦ୍ଭାବଭାବିତଃ' ଅର୍ଥାତ୍ ଜୀବିତ ସମୟରେ ସର୍ବଦା ଯେଉଁ ବିଷୟରେ ଭାବନା ହୋଇଥାଏ, ମରଣସମୟରେ ଅଭ୍ୟାସବଳରେ ସେହି ଭାବନାର ସ୍ମରଣ ହୁଏ ଓ ମାନବ ମୃତ୍ୟୁସମୟରେ ସେହି ଭାବିତଭାବର ସ୍ୱରୂପ ପ୍ରାପ୍ତ ହୁଅନ୍ତି । ଭ୍ରମରକୀଟ ଯେପରି ମରଣସମୟର ୨ । ୩ ଘଣ୍ଟା ପୂର୍ବରୁ ଭ୍ରମରର ରୂପକୁ ଭୟଯୁକ୍ତ ହୃଦୟରେ ଭାବନା କରୁଁ ୨ ଆପଣାର ସ୍ୱରୂପ ଛାଡ଼ି ସେହି ଭ୍ରମରରୂପ ପ୍ରାପ୍ତ ହୁଏ, ସେହିପରି ମାନବ ମୃତ୍ୟୁସମୟରେ ପୂର୍ବ-ଅଭ୍ୟାସବଶରୁ ଯେଉଁ ବିଷୟ ଭାବନା କରନ୍ତି, ତତ୍ସ୍ୱରୂପ ପ୍ରାପ୍ତ ହୁଅନ୍ତି ।

ଫଳକଥା ଏହି କି ମରଣ ସମୟର ଚିନ୍ତାଶକ୍ତିର ସ୍ୱଭାବ ଅନୁସାରେ ମାନବର ପୁନର୍ଜନ୍ମ ବା ମୁକ୍ତି ଲାଭ ହୋଇପାରେ ଏବଂ ଜୀବିତକାଳର କାର୍ଯ୍ୟକଳାପର ପ୍ରକୃତି ଅନୁସାରେ ମରଣକାଳରେ ସତ୍ ବା ଅସତ୍ ଚିନ୍ତା ଉଦିତ ହୁଏ । ୬ ।

### ଶ୍ଳୋକଃ ।

ତସ୍ମାତ୍ ସର୍ବେଷୁ କାଲେଷୁ, ମାମନୁସ୍ମର ଯୁଧ୍ୟ ଚ ।
ମୟ୍ୟର୍ପିତମନୋବୁଦ୍ଧି, ର୍ମାମେବୈଷ୍ୟସ୍ୟସଂଶୟଃ । ୭ ।

### ଅନ୍ୱୟଃ ।

ତସ୍ମାତ୍ ସର୍ବେଷୁ କାଲେଷୁ ମାଂ ଅନୁସ୍ମର ଯୁଧ୍ୟ ଚ (ତତଃ) ମୟି ଅର୍ପିତମନୋବୁଦ୍ଧିଃ (ସନ୍) ମାଂ ଏବ ଏଷ୍ୟସି ଅସଂଶୟଃ । ୭ ।

### ଟୀକା ।

ତସ୍ମାଦିତି । ଯସ୍ମାତ୍ ପୂର୍ବବାସନୈବାନ୍ତକାଲେ ସ୍ମୃତିହେତୁର୍ନ ତୁ ତଦା ବିବଶସ୍ୟ ସ୍ମରଣୋଦ୍ୟମଃ ସମ୍ଭବତି, ତସ୍ମାତ୍ ସର୍ବଦା ମାମନୁସ୍ମର ଅନୁଚିନ୍ତୟ, ତଚ୍ଚ ସ୍ମରଣଂ ହି ଚିତ୍ତଶୁଦ୍ଧିଂ ବିନା ନ ଭବତି, ଅତୋ ଯୁଧ୍ୟ ଚ ଯୁଦ୍ଧସ୍ୱ ଚିତ୍ତଶୁଦ୍ଧ୍ୟର୍ଥଂ ଯୁଦ୍ଧାଦିକଂ ସ୍ୱଧର୍ମମନୁତିଷ୍ଠେତ୍ୟର୍ଥଃ । ଏବଂ ମୟ୍ୟର୍ପିତଂ ମନଃ ସଙ୍କଳ୍ପାତ୍ମକଂ ବୁଦ୍ଧିଶ୍ଚ ବ୍ୟବସାୟାତ୍ମିକା ଯେନ ତ୍ୱଂ ସ ତ୍ୱମନାୟାସେନ ମାମେବ ପ୍ରାପ୍ସ୍ୟସି । ଅସଂଶୟଃ ସଂଶୟୋଽତ୍ର ନାସ୍ତି । ୭ ।

### ପଦବ୍ୟାଖ୍ୟା ।

ତସ୍ମାତ୍—ସେହି ହେତୁରୁ, ସର୍ବେଷୁ କାଲେଷୁ—ସବୁ କାଳରେ, ମାଂ—ଆମ୍ଭଙ୍କୁ, ଅନୁସ୍ମର—ସ୍ମରଣ କର, ଯୁଧ୍ୟ ଚ—(ଚିତ୍ତଶୁଦ୍ଧି ନିମିତ୍ତ) ଯୁଦ୍ଧ କର, ମୟି—ଆମ୍ଭଠାରେ, ଅର୍ପିତମନୋବୁଦ୍ଧିଃ—(ସଙ୍କଳ୍ପାତ୍ମକ) ମନ ଓ (ନିଶ୍ଚୟାତ୍ମିକା) ବୁଦ୍ଧିକୁ ଅର୍ପଣ କରି, ମାଂ ଏବ—ଆମ୍ଭଙ୍କୁ ନିଶ୍ଚୟ, ଏଷ୍ୟସି—ପ୍ରାପ୍ତ ହେବ, ଅସଂଶୟଃ—ଏଥିରେ ସନ୍ଦେହ ନାହିଁ । ୭ । ❀

Digitized by PPRACHIN, SOA

## ଅନୁବାଦ ।

ଅତଏବ ସର୍ବଦା ଆମ୍ଭଙ୍କୁ ଚିନ୍ତା କର ଓ (ସ୍ୱଧର୍ମପାଳନଦ୍ୱାରା ଚିତ୍ତଶୁଦ୍ଧି ନିମିତ୍ତ) ଯୁଦ୍ଧରେ ପ୍ରବୃତ୍ତ ହୁଅ । ମନ ଓ ବୁଦ୍ଧିକୁ ଆମ୍ଭଠାରେ ଅର୍ପଣ କଲେ ନିଶ୍ଚୟ ଆମ୍ଭଙ୍କୁ ପ୍ରାପ୍ତ ହେବ, ଏଥିରେ ସଂଶୟ ନାହିଁ । ୭ ।

## ବିଶଦବ୍ୟାଖ୍ୟା ।

ଜୀବିତକାଳର କାର୍ଯ୍ୟକଳାପ ମରଣସମୟରେ ସତ୍ ଅସତ୍ ଚିନ୍ତା ଜନ୍ମାଇବାର କାରଣ; ଅର୍ଥାତ୍ ଯେ, ଜୀବିତକାଳରେ ସର୍ବଦା ସତ୍‌କାର୍ଯ୍ୟରେ ରତ ଥାଏ ଓ ସତ୍‌କାର୍ଯ୍ୟ—ହରିସ୍ମରଣାଦିରେ ତନ୍ମୟଚିତ୍ତ ହୋଇଥାଏ, ସେ, ମରଣ ସମୟରେ ଚେଷ୍ଟା ନ କଲେ ସୁଦ୍ଧା, ଏବଂ ତାହାର ଇନ୍ଦ୍ରିୟାଦି ଅବଶ ଥିଲେ ସୁଦ୍ଧା, ସେହି ଅଭ୍ୟାସବଳରୁ ସେ ହରିସ୍ମରଣାଦି କରିବ । ବାଲ୍ୟକାଳରେ ଆମ୍ଭେମାନେ ସର୍ବଦା ମାତା ବା ପିତାଙ୍କ ନିକଟରେ ରହୁଥିବାରୁ ଏବଂ ସମସ୍ତ ବିପଦରୁ ଉଦ୍ଧାରକର୍ତ୍ତା ସେହି ମାତାପିତା ବୋଲି ଆମ୍ଭମାନଙ୍କର ଅଭ୍ୟାସ ହୋଇ ଯାଇଥିବାରୁ, ଆମ୍ଭମାନଙ୍କର ଯୌବନ ସମୟରେ ବା ଅନ୍ୟ ଅବସ୍ଥାରେ, ଅକସ୍ମାତ୍ କୌଣସି ବିପଦ ଉପସ୍ଥିତ ହେଲେ 'ମାଲୋ' ଅଥବା 'ବାପ୍‌ରେ' ଇତ୍ୟାଦି ଶବ୍ଦ ଅପଣାଛାଏଁ ବାହାରି ପଡେ । ସେହିପରି ଜୀବିତକାଳର ଅଭ୍ୟସ୍ତକାର୍ଯ୍ୟ ମରଣସମୟରେ ମନେ ପଡେ । ଅତଏବ ମରଣସମୟରେ ବିଷ୍ଣୁଚିନ୍ତା ଉଦିତ କରିବାର ଆବଶ୍ୟକ ହେଲେ, ସର୍ବଦା ଭଗବାନଙ୍କୁ ସ୍ମରଣ କରିବା ଉଚିତ । ସେଥିପାଇଁ ଶ୍ରୀଭଗବାନ୍ ଅର୍ଜୁନଙ୍କୁ କହିଲେ, ଯେ ତୁମ୍ଭେ ସବୁକାଳରେ ଆମ୍ଭଙ୍କୁ ସ୍ମରଣ କର । ମାତ୍ର ସ୍ୱଧର୍ମ ଅନୁଷ୍ଠାନଦ୍ୱାରା ଚିତ୍ତଶୁଦ୍ଧି ନ ହେଲେ, ଭଗବତ୍‌ଚିନ୍ତା ବଳବତୀ ହୁଏ ନାହିଁ, ଏଥିପାଇଁ ଶ୍ରୀଭଗବାନ୍ ଅର୍ଜୁନଙ୍କୁ ନିଜର କ୍ଷତ୍ରିୟଧର୍ମ ଯୁଦ୍ଧାଦିର ଅନୁଷ୍ଠାନ କରିବାକୁ ଉପଦେଶ ଦେଲେ । ପୁଣି କାଳେ ଯୁଦ୍ଧାଦି କରୁଁ କରୁଁ ଅର୍ଜୁନଙ୍କର 'ମୁଁ ଯୁଦ୍ଧ କରୁଅଛି ଓ ମୋହର ଜୟ ହେବ' ଇତ୍ୟାଦି ଅଭିମାନ ଜନ୍ମିବ, ତଦ୍ୱାରା ସେ କର୍ମଜାଲରେ ଆବଦ୍ଧ ହେବେ, ଏଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ ତୁମ୍ଭେ ତୁମ୍ଭର ମନ ଓ ବୁଦ୍ଧିକୁ ଆମ୍ଭଠାରେ ଅର୍ପଣ କର । କାହିଁକି ନା ମନ ଓ ବୁଦ୍ଧି ଈଶ୍ୱରାର୍ପିତ ହେଲେ ଆଉ କର୍ତ୍ତୃତ୍ୱ ଅଭିମାନ ରହିବ ନାହିଁ କି କର୍ମଜାଲରେ ଆବଦ୍ଧ ହେବାକୁ ପଡିବ ନାହିଁ ।

ଫଳକଥା ଏହି କି ଭଗବଚ୍ଚିନ୍ତା କରି ସ୍ୱଧର୍ମର ଯେ କୌଣସି କର୍ମ ଅନୁଷ୍ଠାନ କଲେ, ଭଗବତ୍ ଭାବନା ବଳବତୀ ଥିବାରୁ କର୍ମଚିନ୍ତା ମନକୁ ଆକ୍ରମଣ କରି ପାରେ ନାହିଁ ଏବଂ ସ୍ୱଧର୍ମ ପାଳନହେତୁ ଚିତ୍ତଶୁଦ୍ଧି ହୋଇ ଭଗବତ୍ ଚିନ୍ତା ଦୃଢ଼ ହୁଏ ଓ ମରଣସମୟରେ ସେହି ଅଭ୍ୟାସଜନିତ ହରିଚିନ୍ତା ସ୍ମରଣରୂପରେ ଉପସ୍ଥିତ ହୋଇ ଜୀବକୁ ବ୍ରହ୍ମସ୍ୱରୂପ ଲାଭର ଅଧିକାରୀ କରେ । ଅତଏବ ସମସ୍ତଙ୍କର ବର୍ଣ୍ଣାଶ୍ରମିକ ଧର୍ମାନୁଷ୍ଠାନ ସଙ୍ଗେ ସଙ୍ଗେ ଭଗବତ୍‌ଚିନ୍ତା କରିବା ସର୍ବତୋଭାବରେ ବିଧେୟ । ୭ ।

Digitized by PPRACHIN, SOA

ଶ୍ଳୋକଃ ।

ଅଭ୍ୟାସଯୋଗଯୁକ୍ତେନ, ଚେତସା ନାନ୍ୟଗାମିନା ।
ପରମଂ ପୁରୁଷଂ ଦିବ୍ୟଂ, ଯାତି ପାର୍ଥାନୁଚିନ୍ତୟନ୍ । ୮ ।

ଅନ୍ୱୟଃ ।

ହେ ପାର୍ଥ! ଅଭ୍ୟାସଯୋଗଯୁକ୍ତେନ ନାନ୍ୟଗାମିନା ଚେତସା ଅନୁଚିନ୍ତୟନ୍ ଦିବ୍ୟଂ ପରମଂ ପୁରୁଷଂ ଯାତି । ୮ ।

ଟୀକା ।

ସନ୍ତତସ୍ମରଣସ୍ୟ ଚାଭ୍ୟାସୋଽନ୍ତରଙ୍ଗସାଧନମିତି ଦର୍ଶୟନ୍ନାହ । ଅଭ୍ୟାସଯୋଗେତି । ଅଭ୍ୟାସଃ ସଜାତୀୟପ୍ରତ୍ୟୟପ୍ରବାହଃ ସ ଏବ ଯୋଗ ଉପାୟସ୍ତେନ ଯୁକ୍ତେନୈକାଗ୍ରେଣ ଅତଏବ ନାନ୍ୟଂ ବିଷୟଂ ଗନ୍ତୁଂ ଶୀଳଂ ଯସ୍ୟ ତେନ ଚେତସା ଦିବ୍ୟଂ ଦ୍ୟୋତନାତ୍ମକଂ ପରମେଶ୍ୱରମନୁଚିନ୍ତୟନ୍ ହେ ପାର୍ଥ ତମେବ ଯାତୀତି । ୮ ।

ପଦବ୍ୟାଖ୍ୟା ।

ଅଭ୍ୟାସ-ଯୋଗ-ଯୁକ୍ତେନ—ବାରମ୍ବାର ଧ୍ୟାନରୂପ ଉପାୟଯୁକ୍ତ, ଚେତସା—ଚିତ୍ତଦ୍ୱାରା, ନାନ୍ୟଗାମିନା—ଈଶ୍ୱରତ-ଭିନ୍ନ ବିଷୟରେ ଗମନରହିତ, ପରମଂ—ସର୍ବବ୍ୟାପକ, ପୁରୁଷଂ—ପରମେଶ୍ୱରଙ୍କୁ, ଦିବ୍ୟଂ—ପ୍ରକାଶସ୍ୱରୂପ, ଯାତି—ପ୍ରାପ୍ତ ହୁଅନ୍ତି, ପାର୍ଥ—ହେ ଅର୍ଜ୍ଜୁନ!, ଅନୁଚିନ୍ତୟନ୍—ସ୍ମରଣ କରି । ୮ ।

ଅନୁବାଦ ।

ହେ ପାର୍ଥ! ଅଭ୍ୟାସରୂପ ଯୋଗଯୁକ୍ତ ଓ ଏକାଗ୍ରଚିତ୍ତରେ ସ୍ମରଣ କଲେ (ଜୀବ) ଦିବ୍ୟ ପରମପୁରୁଷଙ୍କୁ ପ୍ରାପ୍ତ ହୁଅନ୍ତି । ୮ ।

ବିଶଦବ୍ୟାଖ୍ୟା ।

ଚିତ୍ତ ଅନ୍ୟଗାମି ନ ହେଲେ, ଅର୍ଥାତ୍ ଏକାଗ୍ର ହେଲେ, ପରମାତ୍ମଭାବନା କରି ପାରେ । ଏହିପରି ନିରନ୍ତର ଭାବରେ ପରମାତ୍ମଭାବନା ହେଲେ, ସମାଧିଯୋଗ ହୁଏ । ସେହି ଯୋଗର ନିୟମିତ ଅଭ୍ୟାସ ହେଲେ, ସେଥିରୁ ସଂସ୍କାର ଜନ୍ମେ ଓ ସେହି ସଂସ୍କାରହିଁ ସ୍ମରଣଶକ୍ତିକି ବୃଦ୍ଧି କରେ । ଅତଏବ ମରଣ ସମୟରେ ଇନ୍ଦ୍ରିୟଶିଥିଳତା ପ୍ରଭୃତି ସ୍ମରଣଶକ୍ତି ହ୍ରାସକର ଘଟନା ଘଟିଲେ ସୁଦ୍ଧା, ସେହି ସଂସ୍କାର ସ୍ମରଣପଥରେ ପରମାତ୍ମଚିନ୍ତା ଉଦୟ କରାଏ । ମରଣ ସମୟରେ ପରମାତ୍ମଚିନ୍ତା ସମୁଦିତ ହେଲେ, ଜୀବାତ୍ମାଙ୍କର ଜୀବତ୍ୱ ଘୁଞ୍ଚିଯାଏ ଓ ସେ ସ୍ୱପ୍ରକାଶ ପରମପୁରୁଷରେ ଅବସ୍ଥିତି ଲାଭ କରନ୍ତି । ୮ ।

ଶ୍ଳୋକଃ ।

କବିଂ ପୁରାଣମନୁଶାସିତାର, ମଣୋରଣୀୟାଂସମନୁସ୍ମରେଦ୍ୟଃ ।
ସର୍ବସ୍ୟ ଧାତାରମଚିନ୍ତ୍ୟରୂପ, ମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ । ୯ ।

ଅନ୍ୱୟଃ ।

କବିଂ ପୁରାଣଂ ଅନୁଶାସିତାରଂ ଅଣୋଃ ଅଣୀୟାଂସଂ ସର୍ବସ୍ୟ ଧାତାରଂ ଅଚିନ୍ତ୍ୟରୂପଂ ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ଯଃ ଅନୁସ୍ମରେତ୍ (ସଃ ତଂ ଉପୈତି) । ୯ ।

Digitized by PPRACHIN, SOA

## ଟୀକା ।

ପୁନରପ୍ୟନୁଚିନ୍ତ୍ୟଂ ପୁରୁଷଂ ବିଶିନଷ୍ଟି । କବିମିତି ଦ୍ୱାଭ୍ୟାଂ । କବିଂ ସର୍ବଜ୍ଞଂ ସର୍ବବିଦ୍ୟାନିର୍ମାତାରଂ, ପୁରାଣମନାଦିସିଦ୍ଧଂ, ଅନୁଶାସିତାରଂ ନିୟନ୍ତାରଂ, ଅଣୋଃ ସୂକ୍ଷ୍ମାଦପ୍ୟଣୀୟାଂସମତିସୂକ୍ଷ୍ମଂ ଆକାଶ-କାଳ-ଦିଗ୍‌ଭ୍ୟୋଽପ୍ୟତିସୂକ୍ଷ୍ମତରଂ ସର୍ବସ୍ୟ ଧାତାରଂ ପୋଷକଂ, ଅପରିମିତମହିମତ୍ୱାଦଚିନ୍ତ୍ୟରୂପଂ, ମଳୀମସୟୋର୍ମନୋବୁଦ୍ଧ୍ୟୋରଗୋଚରଂ ଆଦିତ୍ୟବତ୍ ସ୍ୱରୂପପ୍ରକାଶାତ୍ମକୋବର୍ଣ୍ଣଃ ସ୍ୱରୂପଂ ଯସ୍ୟ ତଂ ତମସଃ ପ୍ରକୃତେଃ ପରସ୍ତାତ୍ ବର୍ତ୍ତମାନଂ । ବେଦାହମେତଂ ପୁରୁଷଂ ମହାନ୍ତମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ଇତି ଶ୍ରୁତେଃ । ୯ ।

## ପଦବ୍ୟାଖ୍ୟା ।

କବିଂ—ସର୍ବଜ୍ଞ, ପୁରାଣଂ—ପ୍ରାଚୀନ ବା ଅନାଦି, ଅନୁଶାସିତାରଂ—ଶାସନକର୍ତ୍ତା, ଅଣୋଃ—ଅଣୁ (ସୂକ୍ଷ୍ମପଦାର୍ଥଠାରୁ) ଅଣୀୟାଂସଂ—ଅତିସୂକ୍ଷ୍ମ, ଅନୁସ୍ମରେତ୍ ଯଃ—ଯେ ସ୍ମରଣ କରନ୍ତି, ସର୍ବସ୍ୟ—ସମସ୍ତଙ୍କର, ଧାତାରଂ—ପୋଷକକର୍ତ୍ତା, ଅଚିନ୍ତ୍ୟରୂପଂ—ମନ ଓ ବୁଦ୍ଧିର ଅଗୋଚର, ଆଦିତ୍ୟବର୍ଣ୍ଣଂ—ସୂର୍ଯ୍ୟପରି ସ୍ୱପ୍ରକାଶରୂପ, ତମସଃ—ମାୟା ଅନ୍ଧକାରରୁ, ପରସ୍ତାତ୍—ଉପରେ ସ୍ଥିତ ଅର୍ଥାତ୍ ଯାହାଙ୍କୁ ମାୟା ସ୍ପର୍ଶ କରି ପାରି ନାହିଁ । ୯ ।

## ଅନୁବାଦ ।

ସର୍ବଜ୍ଞ, ଅନାଦି, ଜଗତର ଶାସନକର୍ତ୍ତା, ଅଣୁ ଅପେକ୍ଷା ଅତିସୂକ୍ଷ୍ମ, ସର୍ବଲୋକପାଳକ, ଅଚିନ୍ତ୍ୟରୂପ, ଆଦିତ୍ୟ ପରି ସ୍ୱପ୍ରକାଶରୂପ ଏବଂ ପ୍ରକୃତିରୁ ପର (ସେହି ଈଶ୍ୱରଙ୍କୁ) ଯେ, ସ୍ମରଣ କରନ୍ତି, (ସେ, ତାହାଙ୍କଠାରେ ଲୀନ ହୁଅନ୍ତି) । ୯ ।

## ବିଶଦବ୍ୟାଖ୍ୟା ।

ମୋକ୍ଷାର୍ଥୀ ବ୍ୟକ୍ତିମାନେ ମୃତ୍ୟୁ ସମୟରେ ଯେଉଁ ଦିବ୍ୟ ପରମପୁରୁଷଙ୍କୁ ସ୍ମରଣ କରନ୍ତି, ନାନା ବିଶେଷଣଦ୍ୱାରା ସେହି ପରମାତ୍ମାଙ୍କୁ ଶ୍ରୀଭଗବାନ୍ ଅର୍ଜୁନଙ୍କୁ ଚିହ୍ନାଇ ଦେଉଅଛନ୍ତି । ପରମାତ୍ମା 'କବି' ବା ସର୍ବଜ୍ଞ, କାହିଁକି ନା ସେ ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ ସମସ୍ତ ବିଷୟର ଦର୍ଶକ ଅଟନ୍ତି । ସେ 'ପୁରାଣ' ଅର୍ଥାତ୍ ଅନାଦି, କାହିଁକି ନା ସେ ସମସ୍ତ ଜଗତର ମୂଳକାରଣ, ମାତ୍ର ତାଙ୍କର କାରଣ ବା ଆଦି କେହି ନାହିଁ । ସେ ଚନ୍ଦ୍ର ସୂର୍ଯ୍ୟାଦି ସମସ୍ତ ଜଗତର ନିୟାମକ ଓ ଶାସନକର୍ତ୍ତା, ପୁଣି ସମସ୍ତଙ୍କ ହୃଦୟରେ ଅନ୍ତରାତ୍ମାରୂପରେ ବିରାଜିତ ହୋଇ କର୍ମ ଅନୁସାରେ ସେମାନଙ୍କୁ ପ୍ରବୃତ୍ତି ଦେଇ ଶୁଭାଶୁଭ କାର୍ଯ୍ୟରେ ନିଯୁକ୍ତ କରୁଅଛନ୍ତି । ସେ ଦିଗ, କାଳ ଓ ଆକାଶ ପ୍ରଭୃତି ସୂକ୍ଷ୍ମବସ୍ତୁ ଅପେକ୍ଷା ମଧ୍ୟ ଅଧିକ ସୂକ୍ଷ୍ମ ବା ଦୁର୍ବିଜ୍ଞେୟ ଅଟନ୍ତି । ସେ ସମସ୍ତ ଜଗତର ପାଳକ ଓ ସମସ୍ତ କର୍ମର ଫଳଦାତା । ସେ ଅଚିନ୍ତ୍ୟରୂପ ଅର୍ଥାତ୍ ମନର ଚିନ୍ତାଶକ୍ତିଦ୍ୱାରା ତାଙ୍କର ରୂପ ଗ୍ରହଣ କରି ଯାଇ ପାରେ ନାହିଁ । ସେ ଆଦିତ୍ୟ ପରି ଜଗତର ପ୍ରକାଶକ, ମାତ୍ର ତାଙ୍କର ପ୍ରକାଶକ କେହି ନାହିଁ । ସେ ପ୍ରକୃତିରୁ ପର, ଅର୍ଥାତ୍ ଅବିଦ୍ୟାର ରାଜ୍ୟ ଅତିକ୍ରମ ନ କଲେ ତାଙ୍କୁ କେହି ପ୍ରାପ୍ତ ହୋଇ ପାରନ୍ତି ନାହିଁ । ୯ ।

## ଶ୍ଳୋକଃ ।

ପ୍ରୟାଣକାଳେ ମନସାଚଳେନ, ଭକ୍ତ୍ୟା ଯୁକ୍ତୋ ଯୋଗବଳେନ ଚୈବ ।
ଭ୍ରୁବୋର୍ମଧ୍ୟେ ପ୍ରାଣମାବେଶ୍ୟ ସମ୍ୟକ୍, ସ ତଂ ପରଂ ପୁରୁଷମୁପୈତି ଦିବ୍ୟଂ । ୧୦ ।

Digitized by PPRACHIN, SOA

ଅନ୍ୱୟଃ ।

(ଯଃ) ଭକ୍ତ୍ୟାଯୁକ୍ତଃ ପ୍ରୟାଣକାଳେ ଅଚଳେନ ମନସା ଚ ଭ୍ରୁବୋଃ ମଧ୍ୟେ ଯୋଗବଳେନ ଏବ ପ୍ରାଣଂ ସମ୍ୟକ୍ ଆବେଶ୍ୟ (ଅନୁସ୍ମରେତ୍) ସଃ ତଂ ଦିବ୍ୟଂ ପରଂ ପୁରୁଷଂ ଉପୈତି । ୧୦ ।

ଟୀକା ।

ସପ୍ରପଞ୍ଚ ପ୍ରକୃତିଂ ହିତ୍ୱା ସର୍ବ୍ୱସ୍ଥିତ, ଏବମ୍ଭୂତଂ ପୁରୁଷଂ ଅନ୍ତକାଳେ ଭକ୍ତ୍ୟାଯୁକ୍ତୋ ନିଶ୍ଚଳେନ ବିକ୍ଷେପରହିତେନ ମନସା ଯୋଽନୁସ୍ମରେତ୍ ମନୋନୈଶ୍ଚଲ୍ୟେ ହେତୁଃ ଯୋଗବଳେନ ସମ୍ୟକ୍ ସୁଷୁମ୍ନା ମାର୍ଗେଣ ଭ୍ରୁବୋର୍ମଧ୍ୟେ ପ୍ରାଣମାବେଶ୍ୟ ଇତି ସ ତଂ ପରଂ ପୁରୁଷଂ ପରମାତ୍ମସ୍ୱରୂପଂ ଦିବ୍ୟଂ ଦ୍ୟୋତନାତ୍ମକଂ ପ୍ରାପ୍ନୋତି । ୧୦ ।

ପଦବ୍ୟାଖ୍ୟା

ପ୍ରୟାଣକାଳେ—ମରଣ ସମୟରେ, ମନସା—ମନରେ, ଅଚଳେନ—ନିଶ୍ଚଳ—ବିକ୍ଷେପରହିତ, ଭକ୍ତ୍ୟା ଯୁକ୍ତଃ—ଭକ୍ତିଯୁକ୍ତ ହୋଇ, ଯୋଗବଳେନ—ଯୋଗବଳରେ, ଚ—ପୁଣି, ଭ୍ରୁବୋଃ ମଧ୍ୟେ—ଭ୍ରୂଲତାଦ୍ୱୟ ମଧ୍ୟରେ, ପ୍ରାଣଂ—ପ୍ରାଣବାୟୁକୁ, ଆବେଶ୍ୟ—ସ୍ଥାପିତ କରି, ସମ୍ୟକ୍—ଉତ୍ତମ ରୂପରେ, ସଃ—ସେ, ତଂ—ସେହି, ପରଂ—ଉତ୍କୃଷ୍ଟ—ସର୍ବବ୍ୟାପକ, ପୁରୁଷଂ—ପରମେଶ୍ୱରଙ୍କୁ, ଉପୈତି—ପ୍ରାପ୍ତ ହୁଅନ୍ତି, ଦିବ୍ୟଂ—ପ୍ରକାଶସ୍ୱରୂପ । ୧୦ ।

ଅନୁବାଦ ।

(ଯେଉଁ ବ୍ୟକ୍ତି) ମରଣ ସମୟରେ ଭକ୍ତିଯୁକ୍ତ ହୋଇ, ଯୋଗବଳରେ ଦୁଇ ଭ୍ରୂଲତା ମଧ୍ୟରେ ପ୍ରାଣବାୟୁକୁ ଉତ୍ତମରୂପେ ସଂସ୍ଥାପିତ କରି, ନିଶ୍ଚଳମନରେ (ସ୍ମରଣ କରନ୍ତି), ସେ, ସେହି ଦିବ୍ୟ ପରମପୁରୁଷଙ୍କୁ ପ୍ରାପ୍ତ ହୁଅନ୍ତି । ୧୦ ।

ବିଶଦବ୍ୟାଖ୍ୟା ।

ଏ ଶ୍ଲୋକରେ ଜ୍ଞାନୀ, ଭକ୍ତ ଓ ଯୋଗୀ ଅର୍ଥାତ୍ ସର୍ବପ୍ରକାର ସାଧକ, ଯେ ମରଣ ସମୟରେ ପରମାତ୍ମା ସ୍ମରଣ କରି ମୁକ୍ତିଲାଭ କରି ପାରନ୍ତି, ତାହା ପ୍ରମାଣିତ ହେଉଅଛି । ଯଥା; ଯେଉଁ ବ୍ୟକ୍ତି ମରଣ ସମୟରେ ନିଶ୍ଚଳମନରେ ସ୍ମରଣ କରନ୍ତି, ଅର୍ଥାତ୍ ମରଣ ଯାତନାରେ କାତର ନ ହୋଇ ଏକାଗ୍ରମନରେ ସ୍ମରଣ କରନ୍ତି, ସେହି 'ଜ୍ଞାନୀ' ବ୍ୟକ୍ତି ପରମ-ପୁରୁଷଙ୍କୁ ଲାଭ କରନ୍ତି । ପୁଣି ଯେ, ମରଣ ସମୟରେ ଭକ୍ତିଯୁକ୍ତ ହୋଇ ସ୍ମରଣ କରନ୍ତି, ସେହି 'ଭକ୍ତ' ପରମପୁରୁଷଙ୍କୁ ପ୍ରାପ୍ତ ହୁଅନ୍ତି । ସେହିପରି ଯେ ଯୋଗବଳରେ ଆପଣାର ପ୍ରାଣବାୟୁକୁ ସୁଷୁମ୍ନା ନାଡୀଦ୍ୱାରା (ପ୍ରାଣାୟାମ ସାଧନ କରି) ଭ୍ରୂଲତାଦ୍ୱୟର ମଧ୍ୟସ୍ଥିତ ଦ୍ୱିଦଳ ଲଲାଟ-ପଦ୍ମରେ ସ୍ଥିର ରଖି ସ୍ମରଣ କରନ୍ତି, ସେହି 'ଯୋଗୀ' ଦିବ୍ୟ ପରମପୁରୁଷସ୍ୱରୂପ ପ୍ରାପ୍ତ ହୁଅନ୍ତି । ୧୦ ।

ଶ୍ଲୋକଃ ।

ଯଦକ୍ଷରଂ ବେଦବିଦୋ ବଦନ୍ତି, ବିଶନ୍ତି ଯଦ୍ ଯତୟୋ ବୀତରାଗାଃ ।
ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି, ତତ୍ତେ ପଦଂ ସଂଗ୍ରହେଣ ପ୍ରବକ୍ଷ୍ୟେ । ୧୧ ।

ଅନ୍ୱୟଃ ।

ବେଦବିଦଃ ଯତ୍ ଅକ୍ଷରଂ ବଦନ୍ତି, ବୀତରାଗାଃ ଯତୟଃ ଯତ୍ ବିଶନ୍ତି, ଯତ୍ ଇଚ୍ଛନ୍ତଃ ବ୍ରହ୍ମଚର୍ଯ୍ୟଂ ଚରନ୍ତି, ତତ୍ ପଦଂ ତେ ସଂଗ୍ରହେଣ ପ୍ରବକ୍ଷ୍ୟେ । ୧୧ ।

Digitized by PPRACHIN, SOA

## ଟୀକା ।

କେବଳାଭ୍ୟାସଯୋଗାଦପି ପ୍ରଣବାଭ୍ୟାସମନ୍ତରଙ୍ଗଂ ବିଧିତ୍ସୁଃ ପ୍ରତିଜାନୀତେ, ଯଦକ୍ଷରମିତି । ଯଦକ୍ଷରଂ ବେଦାର୍ଥଜ୍ଞା ବଦନ୍ତି, ଏତସ୍ୟ ବା ଅକ୍ଷରସ୍ୟ ପ୍ରଶାସନେ ଗାର୍ଗି ସୂର୍ଯ୍ୟାଚନ୍ଦ୍ରମସୌ ବିଧୃତୌ ତିଷ୍ଠତ ଇତି ଶ୍ରୁତେଃ । ବୀତୋଽଭ୍ୟୋ ଗୋପେଭ୍ୟସ୍ତେ ବୀତରାଗାଯତୟଃ ପ୍ରସମ୍ୟବନ୍ତୋ ପଦ୍‌ବଶନ୍ତି, ସଚ ଇଚ୍ଛନ୍ତୋ ଗୁରୁକୁଲେ ବ୍ରହ୍ମଚର୍ଯ୍ୟଂ ଚରନ୍ତି, ତତ୍ତେ ଭୂଭ୍ୟଂ ପଦଂ ପଦ୍ୟତେ ଗମ୍ୟତ ଇତି ପଦଂ ପ୍ରାପ୍ୟଂ ସଂଗ୍ରହେଣ ସଂକ୍ଷେପେଣ ପ୍ରବକ୍ଷ୍ୟେ ତତ୍ପ୍ରାପ୍ତ୍ୟୁପାୟଂ କଥୟିଷ୍ୟାମୀତ୍ୟର୍ଥଃ । ୧୧ ।

## ପଦବ୍ୟାଖ୍ୟା ।

ଯତ୍—ଯାହାଙ୍କୁ, ଅକ୍ଷରଂ—ଅବିନାଶୀ ବୋଲି, ବେଦବିଦଃ—ବେଦର ଅର୍ଥ ଜାଣିବା ବ୍ୟକ୍ତିମାନେ, ବଦନ୍ତି—କହନ୍ତି, ବିଶନ୍ତି—ପ୍ରବେଶ କରନ୍ତି, ଯତ୍—ଯହିଁରେ, ଯତୟଃ—ଜିତେନ୍ଦ୍ରିୟମାନେ, ବୀତରାଗାଃ—ସ୍ପୃହାହୀନ, ଯତ୍—ଯାହାଙ୍କୁ, ଇଚ୍ଛନ୍ତଃ—(ଜାଣିବାକୁ) ଇଚ୍ଛା କରି, ବ୍ରହ୍ମଚର୍ଯ୍ୟଂ—ବ୍ରହ୍ମଚର୍ଯ୍ୟବ୍ରତକୁ, ଚରନ୍ତି—ଆଚରଣ କରନ୍ତି, ତତ୍—ସେହି, ତେ—ତୁମ୍ଭଙ୍କୁ, ପଦଂ—ପଦକୁ, ସଂଗ୍ରହେଣ—ସଂକ୍ଷେପରେ, ପ୍ରବକ୍ଷ୍ୟେ—କହିବା । ୧୧ ।

## ଅନୁବାଦ ।

ବେଦବେତ୍ତାମାନେ ଯାହାଙ୍କୁ 'ଅକ୍ଷର' ବୋଲି କହନ୍ତି, ବିଷୟାସକ୍ତିଶୂନ୍ୟ ଯତିମାନେ ଯାହାଙ୍କଠାରେ ଲୀନ ହୁଅନ୍ତି, ଏବଂ ଯାହାଙ୍କୁ ଜାଣିବାପାଇଁ (ଅନେକ ସାଧକ) ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରନ୍ତି, ତାହାଙ୍କୁ ପାଇବାର ଉପାୟ ସଂକ୍ଷେପରେ ତୁମ୍ଭଙ୍କୁ କହିବା । ୧୧ ।

## ବିଶଦବ୍ୟାଖ୍ୟା ।

ବେଦଜ୍ଞ ଋଷିମାନେ ଜଗତ୍ ପ୍ରପଞ୍ଚକୁ ନଶ୍ୱର ଓ ମିଥ୍ୟା ବୋଲି ପ୍ରମାଣିତ କରି, ଯେଉଁ ପରମବ୍ରହ୍ମଙ୍କୁ 'ଅକ୍ଷର' ଅର୍ଥାତ୍ ଅବିନାଶୀ ଓ ନିତ୍ୟ ବୋଲି କହିଅଛନ୍ତି, ଏବଂ ତୀବ୍ର ବୈରାଗ୍ୟଯୁକ୍ତ ଜିତେନ୍ଦ୍ରିୟମାନେ ଦେହାନ୍ତେ ଯେଉଁ ପରମବ୍ରହ୍ମରେ ପ୍ରବେଶ କରନ୍ତି ଅର୍ଥାତ୍ ଲୀନ ହୁଅନ୍ତି , ପୁଣି ଯେଉଁ ବ୍ରହ୍ମପଦାର୍ଥକୁ ଜାଣିବାପାଇଁ ଅନେକ ସାଧକ ଗୁରୁ ଆଶ୍ରମରେ କଠିନ ବ୍ରହ୍ମଚର୍ଯ୍ୟ ବ୍ରତ ଅବଲମ୍ବନ କରି ରହନ୍ତି, ସେହି ପରମହଂସମାନଙ୍କ ଜ୍ଞେୟପଦାର୍ଥ ପ୍ରାପ୍ତିର ଉପାୟ ସଂକ୍ଷେପରେ ଅର୍ଜୁନଙ୍କୁ ଉପଦେଶ ଦେବେ ବୋଲି, ଶ୍ରୀଭଗବାନ୍ ଏ ଶ୍ଳୋକରେ କହିଲେ । ୧୧ ।

## ଶ୍ଳୋକଃ ।

ସର୍ବଦ୍ୱାରାଣି ସଂଯମ୍ୟ, ମନୋହୃଦି ନିରୁଧ୍ୟ ଚ ।
ମୂର୍ଦ୍ଧ୍ନ୍ୟାଧାୟାତ୍ମନଃ ପ୍ରାଣ,ମାସ୍ଥିତୋଯୋଗଧାରଣାଂ । ୧୨ ।

## ଅନ୍ୱୟଃ ।

ସର୍ବଦ୍ୱାରାଣି ସଂଯମ୍ୟ ଚ ହୃଦି ମନଃ ନିରୁଧ୍ୟ ଆତ୍ମନଃ ପ୍ରାଣଂ ମୂର୍ଦ୍ଧ୍ନି ଆଧାୟ ଯୋଗଧାରଣାଂ ଆସ୍ଥିତଃ (ସନ୍) । ୧୨ ।

## ଟୀକା ।

ତଦକ୍ଷରମୁପାୟଂ ସାଙ୍ଗମାହ । ସର୍ବେତି ଦ୍ୱାଭ୍ୟାଂ । ସର୍ବାଣୀନ୍ଦ୍ରିୟଦ୍ୱାରାଣି ସଂଯମ୍ୟ ପ୍ରତ୍ୟାହୃତ୍ୟ ଚକ୍ଷୁରାଦିଭିର୍ବାହ୍ୟବିଷୟଗ୍ରହଣମକୁର୍ବନ୍ନିତ୍ୟର୍ଥଃ, ମନଶ୍ଚ ହୃଦି ନିରୁଧ୍ୟ ବାହ୍ୟବିଷୟସ୍ମରଣାଦପ୍ରତ୍ୟାହୃତ୍ୟେତ୍ୟର୍ଥଃ, ମୂର୍ଦ୍ଧ୍ନି ଭ୍ରୁବୋର୍ମଧ୍ୟେ ପ୍ରାଣମାଧାୟ ଯୋଗସ୍ୟ ଧାରଣାଂ ସ୍ଥୈର୍ଯ୍ୟମାସ୍ଥିତ ଆଶ୍ରିତବାନ୍ ସନ୍ । ୧୨ ।

Digitized by PPRACHIN, SOA

### ପଦବ୍ୟାଖ୍ୟା ।

ସର୍ବଦ୍ୱାରାଣି—ସମସ୍ତ ଇନ୍ଦ୍ରିୟ-ଦ୍ୱାରକୁ, ସଂଯମ୍ୟ—ଉତ୍ତମରୂପେ ରୋଧ କରି, ମନଃ—ଚିତ୍ତକୁ, ହୃଦି—ହୃଦୟରେ ନିରୁଧ୍ୟ ଚ—ନିରୋଧ କରି, ମୂର୍ଦ୍ଧ୍ନି—ମସ୍ତକରେ ଅର୍ଥାତ୍ ଭ୍ରୂଲତାଦ୍ୱୟର ମଧ୍ୟରେ, ଆଧାୟ—ସଂସ୍ଥାପିତ କରି, ଆତ୍ମନଃ—ଆପଣାର, ପ୍ରାଣଂ—ପ୍ରାଣବାୟୁକୁ, ଆସ୍ଥିତଃ—ଆଶ୍ରୟ କରି, ଯୋଗଧାରଣାଂ—ଯୋଗରୂପ ଧୈର୍ଯ୍ୟକୁ ଅର୍ଥାତ୍ ସମାଧିକୁ । ୧୨ ।

### ଅନୁବାଦ ।

ଯେଉଁ ଉପାସକ ସମସ୍ତ ଇନ୍ଦ୍ରିୟମାନଙ୍କୁ ସଂଯତ ଓ ମନକୁ ହୃଦୟରେ ନିରୁଦ୍ଧ କରି ଏବଂ ଆପଣାର ପ୍ରାଣବାୟୁକୁ ଭ୍ରୂମଧ୍ୟରେ ରଖି, ସମାଧି ଅବଲମ୍ବନପୂର୍ବକ (ଶରୀର ତ୍ୟାଗ କରନ୍ତି ସେ, ପରମପଦ ପ୍ରାପ୍ତ ହୁଅନ୍ତି) । ୧୨ ।

### ବିଶଦବ୍ୟାଖ୍ୟା ।

ବ୍ରହ୍ମପଦ କିପରି ମିଳିବ, ତାହାର ଉପାୟ କହୁଅଛନ୍ତି । ପ୍ରଥମରେ ଇନ୍ଦ୍ରିୟମାନଙ୍କୁ ସଂଯତ କରିବାକୁ ହେବ; ଅର୍ଥାତ୍ ଇନ୍ଦ୍ରିୟମାନେ ଯେପରି ଆପଣା ଆପଣାର ଶବ୍ଦ ସ୍ପର୍ଶାଦି ବିଷୟ ଗ୍ରହଣ ନ କରି ତହିଁରୁ ପ୍ରତ୍ୟାବୃତ୍ତ ହୁଅନ୍ତି ତାହା କରିବ । ପୁଣି ବାହ୍ୟେନ୍ଦ୍ରିୟ ନିବୃତ୍ତ ହେଲେ ସୁଦ୍ଧା, ମନ ଯଦି ସଂଯତ ନ ହେବ, ତାହା ହେଲେ ଇନ୍ଦ୍ରିୟମାନଙ୍କୁ ବଳପୂର୍ବକ ବିଷୟ ଗ୍ରହଣ କରାଇବ, ସେଥିପାଇଁ ଅଭ୍ୟାସ ଓ ବୈରାଗ୍ୟଦ୍ୱାରା ମନକୁ ହୃଦୟରେ ନିରୋଧ କରିବ, ଅର୍ଥାତ୍ ମନରେ ସୁଦ୍ଧା ବିଷୟାଦି ଭାବନା କରିବ ନାହିଁ । ଏହିପରି ବାହ୍ୟ ଓ ଆନ୍ତର ଉଭୟ ଇନ୍ଦ୍ରିୟକୁ ନିରୁଦ୍ଧ କଲା ପରେ, ପ୍ରାଣକୁ ମଧ୍ୟ ସମ୍ପୂର୍ଣ୍ଣରୂପେ ନିରୁଦ୍ଧ କରି ଅର୍ଥାତ୍ ଗୁରୁ-ପଦିଷ୍ଟ ମାର୍ଗରେ (ସୁଷୁମ୍ନା ନାଡ଼ୀଦ୍ୱାରା) ଭ୍ରୂ ମଧ୍ୟରେ ସ୍ଥାପିତ କରି, ଆତ୍ମସମାଧିରୂପ 'ଧାରଣା' ଅବଲମ୍ବନ କରିବ । ଯେଉଁ ବ୍ୟକ୍ତି ଏପ୍ରକାର କରି ପାରନ୍ତି, ସେ ସେହି ପରମବାଞ୍ଛନୀୟ ବ୍ରହ୍ମପଦ ଲାଭ କରନ୍ତି । ୧୨ ।

### ଶ୍ଳୋକଃ ।

ଓମିତ୍ୟେକାକ୍ଷରଂ ବ୍ରହ୍ମ, ବ୍ୟାହରନ୍ ମାମନୁସ୍ମରନ୍ ।
ଯଃ ପ୍ରୟାତି ତ୍ୟଜନ୍ ଦେହଂ, ସ ଯାତି ପରମାଂ ଗତିଂ । ୧୩ ।

### ଅନ୍ୱୟଃ ।

ଓଁ ଇତି ଏକାକ୍ଷରଂ ବ୍ରହ୍ମ ବ୍ୟାହରନ୍ ଚ ମାଂ ଅନୁସ୍ମରନ୍ ଦେହଂ ତ୍ୟଜନ୍ ଯଃ ପ୍ରୟାତି, ସଃ ପରମାଂ ଗତିଂ ଯାତି । ୧୩ ।

### ଟୀକା ।

ଓମିତି । ଓମିତ୍ୟେକଂ ଯଦକ୍ଷରଂ ତଦେବ ବ୍ରହ୍ମବାଚକତ୍ୱାତ୍ ବ୍ରହ୍ମ ପ୍ରତିମାଦିବତ୍ ବ୍ରହ୍ମପ୍ରତୀକତ୍ୱାଦ୍ୱା ବ୍ରହ୍ମ ତଦ୍‌ବ୍ୟାହରନ୍ନୁଚ୍ଚାରୟନ୍ ତଦ୍‌ବାଚ୍ୟଞ୍ଚ ମାମନୁସ୍ମରନ୍ନେବ ଦେହଂ ତ୍ୟଜନ୍ ଯଃ ପ୍ରକର୍ଷେଣ ଯାତି ଅର୍ଚ୍ଚିରାଦିମାର୍ଗେଣ ସ ପରମାଂ ଶ୍ରେଷ୍ଠାଂ ମଦ୍‌ଗତିଂ ପ୍ରାପ୍ନୋତି । ୧୩ ।

Digitized by PPRACHIN, SOA

### ପଦବ୍ୟାଖ୍ୟା ।

ଓଁ—ଓଁକାର ଅର୍ଥାତ୍ ପ୍ରଣବ, ଇତି—ଏହି, ଏକାକ୍ଷରଂ—ଗୋଟିଏ ଅକ୍ଷରକୁ, ବ୍ରହ୍ମ—ବ୍ରହ୍ମବୋଧକ, ବ୍ୟାହରନ୍—ଉଚ୍ଚାରଣ କରି, ମାଂ ଅନୁସ୍ମରନ୍—ଆମ୍ଭଙ୍କୁ ସ୍ମରଣ କରି, ଯଃ—ଯେଉଁ ବ୍ୟକ୍ତି, ପ୍ରୟାତି—ଯାନ୍ତି, ତ୍ୟଜନ୍ ଦେହଂ—ଶରୀର ତ୍ୟାଗ କରି, ସଃ—ସେ, ଯାତି—ପ୍ରାପ୍ତ ହୁଅନ୍ତି, ପରମାଂ ଗତିଂ—ପରମଗତି (ମୁକ୍ତି)କୁ । ୧୩ ।

### ଅନୁବାଦ ।

(ଏବଂ) ବ୍ରହ୍ମବାଚକ 'ଓଁ' ଏହି ଏକ ଅକ୍ଷର ଉଚ୍ଚାରଣପୂର୍ବକ ଆମ୍ଭଙ୍କୁ ସ୍ମରଣ କରି ଯେ, ଶରୀର ତ୍ୟାଗ କରି ଯାନ୍ତି, ସେ, ପରମଗତି ପ୍ରାପ୍ତ ହୁଅନ୍ତି । ୧୩ ।

### ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ଯେପରି ଇନ୍ଦ୍ରିୟସଂଯମ ଓ ମନୋନିରୋଧ ଏବଂ ଭ୍ରୂମଧ୍ୟରେ ପ୍ରାଣବାୟୁ ସଂସ୍ଥାପନ କରି ସମାଧିଯୋଗ ଅବଲମ୍ବନ କରିବାର କୁହା ହୋଇଅଛି, ତାହା କରି ବ୍ରହ୍ମବାଚକ ଅଥବା ବ୍ରହ୍ମସ୍ୱରୂପ 'ଓଁ' ଏହି ଏକ ଅକ୍ଷରକୁ ଉଚ୍ଚାରଣ କରି ଦେହତ୍ୟାଗ କଲେ, ବ୍ରହ୍ମପଦ ପ୍ରାପ୍ତି ହୁଏ । ମହାତ୍ମା ପତଞ୍ଜଳି ସମାଧିବିଘ୍ନ ନିବାରଣପାଇଁ 'ଈଶ୍ୱରପ୍ରଣିଧାନାଦ୍ୱା' କହିଅଛନ୍ତି । ପ୍ରଣିଧାନ ଶବ୍ଦର ବ୍ୟାଖ୍ୟା ଏହିପରି କରି ହୋଇଅଛି ; ଯଥା, 'ତସ୍ୟ ବାଚକଃ ପ୍ରଣବସ୍ତଜ୍ଜପସ୍ତଦର୍ଥଭାବନମିତି' ଅର୍ଥାତ୍ ପ୍ରଣବ (ଓଁ) ବ୍ରହ୍ମବାଚକ ଅଟେ । ସେହି ପ୍ରଣବ ଜପ କରିବା ଓ ତାହାର ଅର୍ଥ (ବ୍ରହ୍ମ) ଭାବନା କରିବାକୁ ଈଶ୍ୱରପ୍ରଣିଧାନ ବୋଲାଯାଏ । ତାହାଦ୍ୱାରା ସମସ୍ତ ବାଧା ଅତିକ୍ରମ କରି ଦେବଯାନମାର୍ଗଦ୍ୱାରା* ବ୍ରହ୍ମଲୋକରେ ଅବସ୍ଥାନ କରନ୍ତି ଓ ସେଠାର ସୁଖଭୋଗ ଶେଷ ହେଲେ ବ୍ରହ୍ମସ୍ୱରୂପ ଲାଭ କରନ୍ତି । ବ୍ରହ୍ମସ୍ୱରୂପ ଲାଭ ହେଲେ ତାହାଙ୍କର ଆଉ କୌଣସି ବିଷୟର ଆବଶ୍ୟକ ହୁଏ ନାହିଁ, ଯେହେତୁ ଶ୍ରୁତିରେ ପ୍ରମାଣ ଅଛି, ଯେ—"ଏଷାସ୍ୟ ପରମା ଗତିରେଷାସ୍ୟ ପରମା ସମ୍ପଦେଷୋଽସ୍ୟ ପରମ ଆନନ୍ଦଃ" ଅର୍ଥାତ୍ ଏହି ଯେ ଅଦ୍ୱିତୀୟ ପରମବ୍ରହ୍ମସ୍ୱରୂପ ଲାଭ, ତାହା ଜ୍ଞାନୀ ସାଧକ ପକ୍ଷରେ ପରମଗତି ଓ ପରମ ସମ୍ପଦ ଏବଂ ପରମ ଆନନ୍ଦସ୍ୱରୂପ ଅଟେ, ଆଉ ତାହାଙ୍କର କିଛି ଆବଶ୍ୟକ ନାହିଁ । ୧୩ ।

### ଶ୍ଳୋକଃ ।

* ଅନନ୍ୟଚେତାଃ ସତତଂ, ଯୋ ମାଂ ସ୍ମରତି ନିତ୍ୟଶଃ ।
ତସ୍ୟାହଂ ସୁଲଭଃ ପାର୍ଥ, ନିତ୍ୟଯୁକ୍ତସ୍ୟ ଯୋଗିନଃ । ୧୪ ।

### ଅନ୍ୱୟଃ ।

ହେ ପାର୍ଥ ! ଅନନ୍ୟଚେତାଃ ଯଃ ମାଂ ନିତ୍ୟଶଃ ସତତଂ ସ୍ମରତି, ନିତ୍ୟଯୁକ୍ତସ୍ୟ ତସ୍ୟ ଯୋଗିନଃ ଅହଂ ସୁଲଭଃ । ୧୪ ।

### ଟୀକା ।

ଏବମନ୍ତକାଲେ ଧାରଣୟା ମଦ୍‌ପ୍ରାପ୍ତିର୍ନିତ୍ୟାଭ୍ୟାସବଶତଏବ ଭବତି ନାନ୍ୟଥେତି ପୂର୍ବୋକ୍ତମେବାନୁସ୍ମାରୟତି,

* ଯେଉଁ ମାର୍ଗରେ ଦେବଲୋକକୁ ଗମନ କରାଯାଏ ତାହାକୁ ଦେବଯାନମାର୍ଗ ବୋଲାଯାଏ ।

Digitized by PPRACHIN, SOA

ଅନନ୍ୟେତି । ନାସ୍ତି ଅନ୍ୟସ୍ମିନ୍ ଚେତୋଯସ୍ୟ ତଥାଭୂତଃ ସନ୍ ଯୋମାଂ ସତତଂ ନିରନ୍ତରଂ ନିତ୍ୟଶଃ ପ୍ରତିଦିନଂ ସ୍ମରତି, ତସ୍ୟ ନିତ୍ୟଯୁକ୍ତସ୍ୟ ସମାହିତସ୍ୟାହଂ ସୁଖେନ ଲଭ୍ୟୋଽସ୍ମି ନାନ୍ୟସ୍ୟେତି । ୧୪ ।

### ପଦବ୍ୟାଖ୍ୟା ।

ଅନନ୍ୟଚେତାଃ—ଯାହାର ଚିତ୍ତ ଈଶ୍ୱରଭିନ୍ନ ଅନ୍ୟପଦାର୍ଥରେ ଲାଗେ ନାହିଁ, ସତତଂ—ସବୁକାଳରେ, ଯଃ—ଯେ, ମାଂ—ଆମ୍ଭଙ୍କୁ, ସ୍ମରତି—ସ୍ମରଣ କରନ୍ତି, ନିତ୍ୟଶଃ—ପ୍ରତିଦିନ, ତସ୍ୟ—ସେହି, ଅହଂ—ଆମ୍ଭେ, ସୁଲଭଃ—ଅନାୟାସପ୍ରାପ୍ୟ, ପାର୍ଥ—ହେ ଅର୍ଜ୍ଜୁନ !, ନିତ୍ୟଯୁକ୍ତସ୍ୟ—ସର୍ବଦା ସମାଧିଯୁକ୍ତ, ଯୋଗିନଃ—ଯୋଗାଭ୍ୟାସିଙ୍କ ପକ୍ଷରେ । ୧୪

### ଅନୁବାଦ ।

ଯେଉଁ ବ୍ୟକ୍ତି, ଅନ୍ୟଠାରେ ଚିତ୍ତ ନ ଦେଇ ଚିରକାଳ ନିରନ୍ତର ଆମ୍ଭଙ୍କୁ ସ୍ମରଣ କରନ୍ତି, ସେହି ସମାଧିଯୁକ୍ତ ଯୋଗିପକ୍ଷରେ ଅମ୍ଭେ ସୁଲଭ ଅଟୁଁ; ଅର୍ଥାତ୍ ସେ ସହଜରେ ଆମ୍ଭଙ୍କୁ ଲାଭ କରନ୍ତି । ୧୪ ।

### ବିଶଦବ୍ୟାଖ୍ୟା ।

ପ୍ରାଣାୟାମ, ଧାରଣା, ଧ୍ୟାନ ଓ ସମାଧି ଇତ୍ୟାଦି ସାଧନଦ୍ୱାରା ପ୍ରାଣବାୟୁକୁ ଭ୍ରୂମଧ୍ୟରେ ସ୍ଥାପନ କରି ଦେହତ୍ୟାଗ କଲେ, ଯେ ବ୍ରହ୍ମପଦ ଲାଭ ହୁଏ, ତାହା ପୂର୍ବେ କୁହା ଯାଇଅଛି । ବର୍ତ୍ତମାନ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଯେଉଁ ବ୍ୟକ୍ତି, ଅନ୍ୟ ବିଷୟରେ ବା ପ୍ରାଣାୟାମାଦି ଅନ୍ୟ ଉପାୟରେ ଆସକ୍ତ ନ ହୋଇ, ଚିରକାଳ ଅବିଚ୍ଛେଦଭାବରେ ଆମ୍ଭଙ୍କୁ ସ୍ମରଣ କରନ୍ତି; ଅର୍ଥାତ୍ ସୁଖରେ ବା ଦୁଃଖରେ, ସମ୍ପଦରେ ବା ବିପଦରେ, ହର୍ଷରେ ବା ଶୋକରେ ସର୍ବଦା ଆମ୍ଭଙ୍କୁ ସ୍ମରଣ କରନ୍ତି, ସେହି ଭକ୍ତ ଓ ନିତ୍ୟଯୁକ୍ତ ଯୋଗିପକ୍ଷରେ ଅମ୍ଭେ ସହଜଲଭ୍ୟ ଅଟୁଁ; ଅର୍ଥାତ୍ ତାହାଙ୍କର ଆମ୍ଭଙ୍କୁ ପାଇବା ନିମିତ୍ତ ଆଉ କୌଣସି ପ୍ରକାର କଷ୍ଟସାଧ୍ୟ ଉପାୟ ଅବଲମ୍ବନ କରିବାକୁ ହୁଏ ନାହିଁ । ୧୪ ।

### ଶ୍ଳୋକଃ ।

ମାମୁପେତ୍ୟ ପୁନର୍ଜନ୍ମ, ଦୁଃଖାଲୟମଶାଶ୍ୱତଂ ।
ନାପ୍ନୁବନ୍ତି ମହାତ୍ମାନଃ, ସଂସିଦ୍ଧିଂ ପରମାଂ ଗତାଃ । ୧୫ ।

### ଅନ୍ୱୟଃ ।

ମହାତ୍ମାନଃ ମାଂ ଉପେତ୍ୟ ଦୁଃଖାଲୟଂ ଅଶାଶ୍ୱତଂ ଜନ୍ମ ପୁନଃ ନ ଆପ୍ନୁବନ୍ତି (ଯତଃ) ପରମାଂ ସଂସିଦ୍ଧିଂ ଗତାଃ । ୧୫ ।

### ଟୀକା ।

ଯଦ୍ୟେବଂ ତ୍ୱଂ ସୁଲଭୋଽସି ତତଃ କିମତ ଆହ, ମାମିତି । ଉକ୍ତଲକ୍ଷଣା ମହାତ୍ମାନୋମଦ୍ଭକ୍ତା ମାଂ ପ୍ରାପ୍ୟ ପୁନର୍ଦୁଃଖାଶ୍ରୟମନିତ୍ୟଞ୍ଚ ଜନ୍ମ ନ ପ୍ରାପ୍ନୁବନ୍ତି, ଯତସ୍ତେ ପରମାଂ ସିଦ୍ଧିଂ ମୋକ୍ଷମେବ ପ୍ରାପ୍ତାଃ, ପୁନର୍ଜନ୍ମନୋଦୁଃଖାନାଂ ଗୃହସ୍ଥାନଂ ମାମୁପେତ୍ୟ ନ ପ୍ରାପ୍ନୁବନ୍ତୀତି ବା । ୧୫ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ମାଂ—ଆମ୍ଭଙ୍କୁ, ଉପେତ୍ୟ—ପ୍ରାପ୍ତ ହୋଇ, ପୁନଃ—ପୁଣି, ଜନ୍ମ—ଜନ୍ମକୁ, ଦୁଃଖାଳୟଂ—ଦୁଃଖର ସ୍ଥାନ, ଅଶାଶ୍ୱତଂ—ଅନିତ୍ୟ, ନ ଆପ୍ନୁବନ୍ତି—ପ୍ରାପ୍ତ ହୁଅନ୍ତି ନାହିଁ, ମହାତ୍ମାନଃ—ମହାତ୍ମାମାନେ, ସଂସିଦ୍ଧିଂ—ମୁକ୍ତିକୁ, ପରମାଂ—ଉତ୍କୃଷ୍ଟ, ଗତାଃ—ପ୍ରାପ୍ତ । ୧୫ ।

ଅନୁବାଦ ।

ମହାତ୍ମାମାନେ ଆମ୍ଭଙ୍କୁ ପ୍ରାପ୍ତ ହେଲେ, ଦୁଃଖର ଆଶ୍ରୟ ଓ ଅନିତ୍ୟ ଯେ ଜନ୍ମ, ତାକୁ ପୁନର୍ବାର ପ୍ରାପ୍ତ ହୁଅନ୍ତି ନାହିଁ, ଯେହେତୁ ସେମାନେ ମୁକ୍ତିଲାଭ କରନ୍ତି । ୧୫ ।

ବିଶଦବ୍ୟାଖ୍ୟା ।

ଯେଉଁମାନେ ଅନନ୍ୟଚିତ୍ତ ହୋଇ ଆମ୍ଭଙ୍କୁ ସ୍ମରଣ କରନ୍ତି, ସେମାନେ ଇନ୍ଦ୍ରଲୋକରେ କୌଣସି ପ୍ରକାର ଦୁଃଖଭୋଗ ନ କରି ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି । ଆମ୍ଭଙ୍କୁ ପ୍ରାପ୍ତ ହେଲେ, ସେ ମହାତ୍ମାମାନେ ପୁନର୍ବାର ଅନିତ୍ୟ ଜନ୍ମଗ୍ରହଣ କରନ୍ତି ନାହିଁ । ସୁତରାଂ ଜନନୀର ଜଠରରେ ଅବସ୍ଥାନ କରିବା ଓ ଜନନେନ୍ଦ୍ରିୟରେ ନିର୍ଗତ ହେବାରୂପ ଦୁଃଖ ଆଉ ଭୋଗ କରନ୍ତି ନାହିଁ; ଅର୍ଥାତ୍ ସେମାନେ ମୁକ୍ତିଲାଭ କରନ୍ତି । ୧୫ ।

ଶ୍ଳୋକଃ ।

ଆବ୍ରହ୍ମଭୁବନାଲ୍ଲୋକାଃ, ପୁନରାବର୍ତ୍ତିନୋଽର୍ଜ୍ଜୁନ ।
ମାମୁପେତ୍ୟ ତୁ କୌନ୍ତେୟ, ପୁନର୍ଜନ୍ମ ନ ବିଦ୍ୟତେ । ୧୬ ।

ଅନ୍ୱୟଃ ।

ହେ ଅର୍ଜ୍ଜୁନ ! ଆବ୍ରହ୍ମଭୁବନାତ୍ ଲୋକାଃ ପୁନରାବର୍ତ୍ତିନଃ (ଭବନ୍ତି) ତୁ ମାଂ ଉପେତ୍ୟ ହେ କୌନ୍ତେୟ ! ପୁନଃ ଜନ୍ମ ନ ବିଦ୍ୟତେ । ୧୬ ।

ଟୀକା ।

ତଦେବ ସର୍ବେଷ୍ୱପି ଲୋକେଷୁ ପୁନରାବୃତ୍ତିଂ ଦର୍ଶୟନ୍ ନିର୍ଦ୍ଧାରୟତି, ଆବ୍ରହ୍ମଭୁବନାଦିତି । ବ୍ରହ୍ମଣୋଭୁବନଂ ବାସସ୍ଥାନଂ ବ୍ରହ୍ମଲୋକସ୍ତମଭିବ୍ୟାପ୍ୟ ସର୍ବେ ଲୋକାଃ ପୁନରାବର୍ତ୍ତନଶୀଲାଃ । ବ୍ରହ୍ମଲୋକସ୍ୟାପି ବିନାଶିତ୍ୱାତ୍ ତତ୍ରପ୍ରାପ୍ତାନାମନୁତ୍ପନ୍ନଜ୍ଞାନାନାମବଶ୍ୟମ୍ଭାବି ପୁନର୍ଜନ୍ମ । ଯ ଏବ କ୍ରମମୁକ୍ତିଫଳାଭିରୁପାସନାଭିର୍ବ୍ରହ୍ମଲୋକଂ ପ୍ରାପ୍ତାସ୍ତେଷାମେବ ତତ୍ରୋତ୍ପନ୍ନଜ୍ଞାନାନାଂ ବ୍ରହ୍ମଣା ସହ ମୋକ୍ଷୋନାନ୍ୟେଷାଂ । ତଥାଚ—ବ୍ରହ୍ମଣା ସହ ତେ ସର୍ବେ ସମ୍ପ୍ରାପ୍ତେ ପ୍ରତିସଞ୍ଚରେ । ପରସ୍ୟାନ୍ତେ କୃତାତ୍ମାନଃ ପ୍ରବିଶନ୍ତି ପରଂ ପଦଂ । ପରସ୍ୟାନ୍ତେ ବ୍ରହ୍ମଣଃ ପରମାୟୁଷୋଽନ୍ତେ କୃତାତ୍ମାନୋବ୍ରହ୍ମଭାବାପାଦିତମନସଃ । ଅଦ୍ୟୁଃ କର୍ମଦ୍ୱାରେଣ ଯେଷାଂ ବ୍ରହ୍ମଲୋକପ୍ରାପ୍ତିସ୍ତେଷାଂ ନ ମୋକ୍ଷ ଇତି ପରିନିଷ୍ଠିତଃ । ମାମୁପେତ୍ୟ ବର୍ତ୍ତମାନାନାନ୍ତୁ ପୁନର୍ଜନ୍ମ ନାସ୍ତ୍ୟେବେତି । ୧୬ ।

ପଦବ୍ୟାଖ୍ୟା ।

ଆବ୍ରହ୍ମଭୁବନାତ୍—ବ୍ରହ୍ମଲୋକଠାରୁ ମଧ୍ୟ, ଲୋକାଃ—ଜନମାନେ, ପୁନରାବର୍ତ୍ତିନଃ—ପୁନରାବର୍ତ୍ତନଶୀଳ ଅର୍ଥାତ୍ ପୁନର୍ବାର ଜନ୍ମଗ୍ରହଣ କରନ୍ତି, ଅର୍ଜ୍ଜୁନ—ହେ ଅର୍ଜ୍ଜୁନ !, ମାଂ ଉପେତ୍ୟ—ଆମ୍ଭଙ୍କୁ ପ୍ରାପ୍ତ ହେଲେ, ତୁ—କିନ୍ତୁ, କୌନ୍ତେୟ—ହେ କୁନ୍ତୀପୁତ୍ର !, ପୁନଃ—ପୁଣି, ଜନ୍ମ—ଉତ୍ପତ୍ତି, ନ ବିଦ୍ୟତେ—ହୁଏ ନାହିଁ । ୧୬ ।

Digitized by PPRACHIN, SOA

ଅନୁବାଦ ।

ହେ ଅର୍ଜ୍ଜୁନ ! ବ୍ରହ୍ମଲୋକ ଅବଧି ସମସ୍ତ ଲୋକରୁ ମଧ୍ୟ ଜୀବ ସଂସାରକୁ ଫେରି ଆସେ, କିନ୍ତୁ ହେ କୌନ୍ତେୟ ! ଆମ୍ଭଙ୍କୁ ପ୍ରାପ୍ତ ହେଲେ (ଜୀବର) ପୁନର୍ଜନ୍ମ ହୁଏ ନାହିଁ । ୧୬ ।

ବିଶଦବ୍ୟାଖ୍ୟା ।

ଯେଉଁମାନେ ଯଜ୍ଞାଦି ବା ଅନ୍ୟ ଉପାୟରେ ବ୍ରହ୍ମଲୋକ ପର୍ଯ୍ୟନ୍ତ ଗମନ କରନ୍ତି, ସେମାନେ ଭୋଗ ଶେଷ ହେଲେ ପୁନର୍ବାର ସଂସାରକୁ ଫେରି ଆସନ୍ତି । ମର୍ତ୍ତ୍ୟଲୋକ ପରେ ବ୍ରହ୍ମଲୋକ ପର୍ଯ୍ୟନ୍ତ ଯେତେ ଭୁବନ ଅଛି, ସବୁଠାରୁ ଜୀବ ଫେରି ଆସିଥାରେ, କେବଳ ଯେଉଁ ସଗୁଣୋପାସକମାନେ ଏକାନ୍ତ ଭକ୍ତିଯୁକ୍ତଚିତ୍ତରେ ସର୍ବଦା ଆମ୍ଭଙ୍କୁ ସ୍ମରଣ କରିଥିବାରୁ ବ୍ରହ୍ମଲୋକ ପ୍ରାପ୍ତ ହୋଇଥାନ୍ତି, ସେମାନେ ସେହି ବ୍ରହ୍ମଲୋକରେ ସୁଦ୍ଧା ଆମ୍ଭଙ୍କୁ ସ୍ମରଣ କରୁଥିବାରୁ ଅର୍ଥାତ୍ ସେଠାରେ ମଧ୍ୟ ସେମାନେ ଭକ୍ତି କରୁଥିବାରୁ ମୁକ୍ତି ପ୍ରାପ୍ତ ହୁଅନ୍ତି, ତାଙ୍କର ଆଉ ପୁନର୍ଜନ୍ମ ହୁଏ ନାହିଁ । ଏକାନ୍ତ ଭଗବଦ୍‌ଭକ୍ତି ନ ଥିଲେ ବ୍ରହ୍ମଲୋକକୁ ଯାଅ ବା ଯେ କୌଣସି ସୁଖକର ସ୍ଥାନକୁ ଯାଅ 'ପୁନରାବୃତ୍ତି' ହାତରୁ ନିସ୍ତାର ପାଇବା ସହଜ ନୁହେ । ୧୬ ।

ଶ୍ଳୋକଃ ।

ସହସ୍ରଯୁଗପର୍ଯ୍ୟନ୍ତମହର୍ଯଦ୍‌ବ୍ରହ୍ମଣୋ ବିଦୁଃ ।
ରାତ୍ରିଂ ଯୁଗସହସ୍ରାନ୍ତାଂ, ତେଽହୋରାତ୍ରବିଦୋ ଜନାଃ । ୧୭ ।

ଅନ୍ୱୟଃ ।

( ଯେ ) ସହସ୍ରଯୁଗପର୍ଯ୍ୟନ୍ତଂ ଯତ୍ ବ୍ରହ୍ମଣଃ ଅହଃ (ତତ୍ ଚ) ଯୁଗ ସହସ୍ରାନ୍ତାଂ ରାତ୍ରିଂ ବିଦୁଃ, ତେ ଜନାଃ ଅହୋରାତ୍ର ବିଦଃ । ୧୭ ।

ଟୀକା ।

ନନୁ ଚ-ତପସ୍ୱିନୋ ଦାନଶୀଳା ବୀତରାଗାସ୍ତିତିକ୍ଷବଃ ।
ତ୍ରୈଲୋକ୍ୟସ୍ୟୋପରିସ୍ଥାନଂ ଲଭନ୍ତେ ଶୋକବର୍ଜ୍ଜିତଂ ।

ଇତ୍ୟାଦି ପୁରାଣବାକ୍ୟୈସ୍ତ୍ରିଲୋକ୍ୟାଃ ସକାଶାନ୍ମହର୍ଲୋକାଦୀନାମୁତ୍କୃଷ୍ଟତ୍ୱଂ ଗମ୍ୟତେ ବିନାଶିତ୍ୱେ ଚ ସର୍ବେଷାମବିଶିଷ୍ଟେ କଥମସୌ ବିଶେଷଃ ସ୍ୟାଦିତ୍ୟାଶଙ୍କ୍ୟ ବହୁକାଲସ୍ଥାୟିତ୍ୱେନାଲ୍ପସ୍ଥାୟିତ୍ୱେନ ଚାଲୋକ୍ୟାନାମସୌ ବିଶେଷ ଇତ୍ୟାଶୟେନ ସ୍ୱମାନେନ ଶତବର୍ଷାୟୁଷୋ ବ୍ରହ୍ମଣୋଽହନି ଅହନି ତ୍ରିଲୋକ୍ୟା ଉତ୍ପତ୍ତିର୍ନିଶି ନିଶି ଚ ପ୍ରଳୟୋ ଭବତୀତି ଦର୍ଶୟିଷ୍ୟନ୍ ବ୍ରହ୍ମଣୋଽହୋରାତ୍ରୟୋଃ ପ୍ରମାଣମାହ, ସହସ୍ରେତି । ସହସ୍ରଂ ଯୁଗାନି ପର୍ଯ୍ୟନ୍ତୋଽବସାନଂ ଯସ୍ୟ ତଦ୍‌ବ୍ରହ୍ମଣୋ ଯଦହସ୍ତଦ୍ ଯେ ବିଦୁଃ, ଯୁଗସହସ୍ରମନ୍ତୋ ଯସ୍ୟାସ୍ତାଂ ରାତ୍ରିଂ ଚ ଯୋଗବଳେନ ଯେ ବିଦୁସ୍ତ ଏବ ସର୍ବଜ୍ଞା ଜନାଃ ଅହୋରାତ୍ରବିଦଃ । ଯେ ତୁ କେବଳଂ ଚନ୍ଦ୍ରାଦିତ୍ୟଗତ୍ୟୈବ ଜାନନ୍ତି ତେ ତଥାହୋରାତ୍ରବିଦୋ ନ ଭବନ୍ତି ଅଲ୍ପଦର୍ଶିତ୍ୱାତ୍ । ଯୁଗଶବ୍ଦେନାତ୍ର ଚତୁର୍ଯୁଗମଭିପ୍ରେତଂ । ଚତୁର୍ଯୁଗସହସ୍ରନ୍ତୁ ବ୍ରହ୍ମଣୋ ଦିନମୁଚ୍ୟତ ଇତି ବିଷ୍ଣୁପୁରାଣୋକ୍ତେଃ ବ୍ରହ୍ମଣ ଇତି ଚ ମହର୍ଲୋକାଦିବାସିନାମୁପଲକ୍ଷଣାର୍ଥଂ । ତତ୍ରାୟଂ କାଳଗଣନାପ୍ରକାରଃ । ମନୁଷ୍ୟାଣାଂ ଯଦ୍‌ବର୍ଷଂ ତଦ୍ଦେବାନାମହୋରାତ୍ରଂ ତାଦୃଶୈରହୋରାତ୍ରୈଃ ପକ୍ଷମାସାଦିକଳ୍ପନୟା ଦ୍ୱାଦଶଭିର୍ବର୍ଷସହସ୍ରୈଶ୍ଚତୁର୍ଯୁଗଂ ଭବତି, ଚତୁର୍ଯୁଗସହସ୍ରନ୍ତୁ ବ୍ରହ୍ମଣୋ ଦିନଂ, ତାବତ୍ ପ୍ରମାଣୈବ ରାତ୍ରିସ୍ତାଦୃଶୈଶ୍ଚାହୋରାତ୍ରୈଃ ପକ୍ଷମାସାଦିକ୍ରମେଣ ବର୍ଷଶତଂ ବ୍ରହ୍ମଣଃ ପରମାୟୁରିତି । ୧୭ ।

ପଦବ୍ୟାଖ୍ୟା ।

ସହସ୍ରଯୁଗପର୍ଯ୍ୟନ୍ତଂ—ଚତୁର୍ଯୁଗବିଶିଷ୍ଟ ଏକସହସ୍ର ଦେବଯୁଗ ପର୍ଯ୍ୟନ୍ତ, ଅହଃ—ଦିବସ, ଯତ୍—ଯାହା, ବ୍ରହ୍ମଣଃ

Digitized by PPRACHIN, SOA

—ବ୍ରହ୍ମଙ୍କର, ବିଦୁଃ—ଜାଣନ୍ତି, ରାତ୍ରିଂ—ରାତି, ଯୁଗସହସ୍ରାନ୍ତାଂ—ଚତୁର୍ଯୁଗବିଶିଷ୍ଟ ଏକସହସ୍ର ଦେବଯୁଗରେ ଯାହାର ଶେଷ ହୁଏ, ତେ—ସେହି, ଅହୋରାତ୍ରବିଦଃ—ଦିବାରାତ୍ରଜ୍ଞ, ଜନାଃ—ଜନମାନେ । ୧୭ ।

ଅନୁବାଦ ।

ଦେବତାମାନଙ୍କର ସହସ୍ର ଯୁଗରେ ବ୍ରହ୍ମାଙ୍କର ଏକ ଦିବସ ହୁଏ । ସେହିପରି ସହସ୍ର ଦେବଯୁଗରେ ବ୍ରହ୍ମାଙ୍କର ଏକ ରାତ୍ରି ହୁଏ । ଯେଉଁମାନେ ଏହିପରି ଦିବାରାତ୍ରି ଜାଣନ୍ତି, ସେହିମାନେ ପ୍ରକୃତ ଅହୋରାତ୍ରବେତ୍ତା ଅଟନ୍ତି । ୧୭ ।

ବିଶଦବ୍ୟାଖ୍ୟା ।

ମନୁଷ୍ୟମାନଙ୍କର ଏକ ବର୍ଷରେ ଦେବତାମାନଙ୍କର ଏକ ଅହୋରାତ୍ର ହୁଏ; ଅର୍ଥାତ୍ ଉତ୍ତରାୟଣ ଛମାସରେ ଦେବତାମାନଙ୍କର ଦିବସ ଓ ଦକ୍ଷିଣାୟନ ଛମାସରେ ଦେବତାମାନଙ୍କର ରାତ୍ରି ହୁଏ । ସୁତରାଂ ମନୁଷ୍ୟମାନଙ୍କର ୩୬୦ ବର୍ଷରେ ଦେବତାମାନଙ୍କର ଏକବର୍ଷ । ସେହି ଦେବବର୍ଷରେ ୧୨୦୦୦ ବର୍ଷ ହେଲେ, ଅର୍ଥାତ୍ ମନୁଷ୍ୟବର୍ଷର ( ୩୬୦ × ୧୨୦୦୦ )=୪୩,୨୦,୦୦୦ ତେୟାଳିଶଲକ୍ଷ କୋଡ଼ିଏହଜାର ବର୍ଷରେ ଦେବତାମାନଙ୍କର ଏକ ଯୁଗ ହୁଏ । ତାହା ମନୁଷ୍ୟମାନଙ୍କର ଚାରିଯୁଗ ସଙ୍ଗରେ ସମାନ ଅଟେ; ଅର୍ଥାତ୍ ସତ୍ୟଯୁଗ=୧୭,୨୮,୦୦୦; ତ୍ରେତାଯୁଗ=୧୨,୯୬,୦୦୦; ଦ୍ୱାପରଯୁଗ=୮,୬୪,୦୦୦ ଓ କଳିଯୁଗ=୪,୩୨,୦୦୦ ବର୍ଷ; ସବୁମୋଟ=୪୩,୨୦,୦୦୦ ତେୟାଳିଶ ଲକ୍ଷ କୋଡ଼ିଏ ହଜାର ବର୍ଷ । ଏହିପରି ଦେବଯୁଗର ୧୦୦୦ ଏକସହସ୍ର ଯୁଗ ହେଲେ ଅର୍ଥାତ୍ ମନୁଷ୍ୟବର୍ଷର (୪୩,୨୦,୦୦୦ × ୧୦୦୦) = ୪,୩୨,୦୦,୦୦,୦୦୦ ଚାରିଶ ବତିଶକୋଟି ବର୍ଷରେ ବ୍ରହ୍ମାଙ୍କର ଏକଦିବସ ହୁଏ ଓ ସେହିପରି ଆଉ ଚାରିଶ ବତିଶକୋଟି ବର୍ଷରେ ଏକ ରାତ୍ରି ହୁଏ, ଅର୍ଥାତ୍ ମୋଟରେ ୮,୬୪,୦୦,୦୦,୦୦୦ ଆଠଶ ଚଉଷଠିକୋଟି ବର୍ଷରେ ବ୍ରହ୍ମାଙ୍କର ଏକ ଅହୋରାତ୍ର ହୁଏ । ଯେଉଁମାନେ ଯୋଗବଳରେ ବ୍ରହ୍ମାଙ୍କର ଏପ୍ରକାର ଅହୋରାତ୍ର ବୁଝି ପାରନ୍ତି, ସେହିମାନେ ପ୍ରକୃତ ଅହୋରାତ୍ରବିତ୍ ଅଟନ୍ତି, ମାତ୍ର ଯେଉଁମାନେ କେବଳ ଚନ୍ଦ୍ର ଓ ସୂର୍ଯ୍ୟଙ୍କ ଗତିରୁ ଦିବାରାତ୍ର ଗଣନା କରନ୍ତି, ସେମାନେ ଅଳ୍ପଦର୍ଶୀ ବୋଲି ପ୍ରକୃତ ଅହୋରାତ୍ରର ମର୍ମ ଜାଣନ୍ତି ନାହିଁ ।

ଏହିପରି ଅହୋରାତ୍ରରେ ପକ୍ଷ, ମାସ ଓ ବର୍ଷ ଗଣନା କଲେ, ବ୍ରହ୍ମାଙ୍କର ପରମାୟୁ ୧୦୦ ବର୍ଷ ହେବ । ସୁତରାଂ ସେହି ୧୦୦ବର୍ଷ ଅତୀତ ହେଲେ ବ୍ରହ୍ମା ମଧ୍ୟ ନଷ୍ଟ ହେବେ । ସୁତରାଂ ଯେଉଁମାନେ ଯଜ୍ଞ ପ୍ରଭୃତିଦ୍ୱାରା ବ୍ରହ୍ମଲୋକକୁ ଯାଆନ୍ତି ବା ତନ୍ନିମ୍ନଶ୍ରେଣୀର ଭୁବନ ଇନ୍ଦ୍ରାଦି ଲୋକରେ ଥାନ୍ତି, ସେମାନଙ୍କର ଯେ ପୁନର୍ଜନ୍ମ ହେବ, ଏଥିରେ ସନ୍ଦେହ କଣ ? ଯେହେତୁ ଶାସ୍ତ୍ରରେ କଥିତ ଅଛି, ଯେ "ବ୍ରହ୍ମାଦି ତୃଣପର୍ଯ୍ୟନ୍ତଂ ମାୟୟା କଳ୍ପିତଂ ଜଗତ୍" ଅର୍ଥାତ୍ ବ୍ରହ୍ମାଙ୍କଠାରୁ ତୃଣ ପର୍ଯ୍ୟନ୍ତ ସମସ୍ତ ଜଗତ୍ ମାୟାବିରଚିତ ଅଟେ । ମାୟାରାଜ୍ୟର ସୀମା ମଧ୍ୟରେ ଥିଲେ କଦାପି ମୁକ୍ତ ହୋଇ ନ ପାରେ । ମାତ୍ର ପୁରାଣରେ ଲେଖାଅଛି ଯେ "ତପସ୍ୱିନୋ-ଦାନଶୀଳାବୀତରାଗାସ୍ତିତିକ୍ଷବଃ । ତ୍ରୈଲୋକ୍ୟସ୍ୟୋପରିସ୍ଥାନଂ ଲଭନ୍ତେ ଶୋକବର୍ଜିତଂ" ଇତ୍ୟାଦି ଅର୍ଥାତ୍ ତପସ୍ୱୀ, ଦାନୀ, ବୈରାଗ୍ୟଯୁକ୍ତ ଓ ସହିଷ୍ଣୁ ଲୋକମାନେ ତ୍ରିଲୋକର ଉପ-

ରେ—ମଦର୍ଚ୍ଚୋକାଦରେ ଶୋକବର୍ଜିତ ଅର୍ଥାତ୍ ଜନ୍ମମରଣଶୂନ୍ୟ ସ୍ଥାନ ପ୍ରାପ୍ତ ହୁଅନ୍ତି । ଏ ଶ୍ଳୋକରେ ପ୍ରମାଣ ହେଲା, ଯେ ବ୍ରହ୍ମଲୋକରୁ ମଧ୍ୟ, ପୁନରାବୃତ୍ତି ହୁଏ, ତେବେ ପୁରାଣୋକ୍ତ ବଚନର ତାତ୍ପର୍ଯ୍ୟ କଣ ? ତାହାର ଉତ୍ତରରେ ଏହି କଥା ବୋଲା ଯାଇ ପାରେ, ଯେ ବ୍ରହ୍ମଲୋକରେ ବା ମହଃ ପ୍ରଭୃତି ଲୋକରେ ଯେଉଁମାନେ ବାସ କରନ୍ତି, ସେମାନଙ୍କର ଏକ୨ ଅହୋରାତ୍ର ଯେତେବେଳେ ମନୁଷ୍ୟବର୍ଷର ବହୁ 'କଳ୍ପ' ସଙ୍ଗରେ ସମାନ ହେଉଅଛି, ତେତେବେଳେ ସାଧାରଣଦୃଷ୍ଟିରେ ସେମାନଙ୍କର ଆଉ ପୁନର୍ଜନ୍ମ ନାହିଁ ବୋଲି ବୁଝା ଯାଇପାରେ । ପୁଣି ବ୍ରହ୍ମାଙ୍କର ଦିବସରେ ତ୍ରିଲୋକର ସୃଷ୍ଟି ଓ ବ୍ରହ୍ମାଙ୍କର ରାତ୍ରିରେ ତ୍ରିଲୋକର ବିନାଶ ହେଉଥିବାରୁ ବ୍ରହ୍ମଲୋକରେ ଦୁଇ ଘଣ୍ଟା ବାସକରିବା ବ୍ୟକ୍ତି ପୁନର୍ବାର ଜନ୍ମଗ୍ରହଣ କଲାବେଳକୁ ମର୍ତ୍ତ୍ୟଲୋକର ଦୁଇ ଘଣ୍ଟାର ସୃଷ୍ଟି ଓ ସଂହାର ହୋଇ ଯାଇଥିବ । ସୁତରାଂ ସେ, ଯେଉଁ ଲୋକରୁ ବ୍ରହ୍ମଲୋକକୁ ଯାଇଥିଲେ, ଆଉ ସେ ଲୋକରେ ତାଙ୍କର ପୁନର୍ଜନ୍ମ ହେଲା ନାହିଁ ।

ଫଳକଥା ଏହି କି ବ୍ରହ୍ମଲୋକରେ ରହିବା କାଳ ମନୁଷ୍ୟ ବର୍ଷରେ ବହୁକଳ୍ପ ହେଉଥିବାରୁ ପୁନର୍ଜନ୍ମ ନ ଥିବାର ପୁରାଣରେ ଲେଖିଅଛି, ମାତ୍ର ପ୍ରକୃତରେ ଅବିଦ୍ୟା ନିବୃତ୍ତ ନ ହେବାଯାଏ କେହି ପୁନର୍ଜନ୍ମର ହସ୍ତରୁ ନିସ୍ତାର ପାଇ ପାରିବ ନାହିଁ । ୧୭ ।

ଶ୍ଳୋକଃ ।

ଅବ୍ୟକ୍ତାଦ୍ବ୍ୟକ୍ତୟଃ ସର୍ବାଃ, ପ୍ରଭବନ୍ତ୍ୟହରାଗମେ ।
ରାତ୍ର୍ୟାଗମେ ପ୍ରଲୀୟନ୍ତେ, ତତ୍ରୈବାବ୍ୟକ୍ତସଂଜ୍ଞକେ । ୧୮ ।

ଅନ୍ୱୟଃ ।

( ବ୍ରହ୍ମଣଃ ) ଅହରାଗମେ ଅବ୍ୟକ୍ତାତ୍ ସର୍ବାଃ ବ୍ୟକ୍ତୟଃ ପ୍ରଭବନ୍ତି, ରାତ୍ର୍ୟାଗମେ ତତ୍ର ଅବ୍ୟକ୍ତସଂଜ୍ଞକେ ଏବ ପ୍ରଲୀୟନ୍ତେ । ୧୮ ।

ଟୀକା ।

ତତଃ କମତ ଅହ, ଅବ୍ୟକ୍ତାଦତ୍ୟାଦ । କାର୍ଯ୍ୟସ୍ୟାବ୍ୟକ୍ତରୂପଂ କାରଣାତ୍ମକଂ ତସ୍ମାଦବ୍ୟକ୍ତାତ୍କାରଣରୂପାତ୍ ବ୍ୟଜ୍ୟନ୍ତ ଇତ ବ୍ୟକ୍ତୟଃଷ୍ଟରଚରଣି ଭୂତାନ ପ୍ରାଦୁର୍ଭବନ୍ତି କଦା ? ଅହରାଗମେ ବ୍ରହ୍ମଣୋଦବସସ୍ୟୋପକ୍ରମେ । ତଥା ରାତ୍ର୍ୟାଗମେ ବ୍ରହ୍ମଣସ୍ୱପେ ତସ୍ମିନ୍ନେବାବ୍ୟକ୍ତସଂଜ୍ଞକେ କାରଣରୂପେ ପ୍ରଳୟଂ ଯାନ୍ତି । ଯତ୍ତ୍ୱା ତେହୋଭବନ୍ତବଦ ଇତେଽଭଲ୍ ବଧୀୟତେ କଲ୍ପ ତେ ପ୍ରତିବା ଅହୋରାତ୍ରବୋଜନା ବ୍ରହ୍ମଣୋଽପଦହର୍ଦୃତ୍ତସ୍ୟାଭ୍ ଅଗମେଽବ୍ୟକ୍ତାଦ୍ବ୍ୟକ୍ତୟଃ ପ୍ରଭବନ୍ତି ସାଂ ତ ନ୍ତିଂ ବଦୁସ୍ୟସ୍ୟା ରନେଗମେ ପ୍ରଳୀୟନ୍ତ ଇତ ହସ୍ୟେରନ୍ୱୟଃ । ୧୮ ।

ପଦବ୍ୟାଖ୍ୟା ।

ଅବ୍ୟକ୍ତାତ୍—କାରଣରୂପ ପ୍ରକୃତିଠାରୁ, ବ୍ୟକ୍ତୟଃ—ସ୍ଥାବର ଜଙ୍ଗମ ଆଦି ଜଗତ୍, ସର୍ବାଃ—ସମସ୍ତ, ପ୍ରଭବନ୍ତି—ଉତ୍ପନ୍ନ ହୁଅନ୍ତି, ଅହରାଗମେ—(ବ୍ରହ୍ମାଙ୍କ) ଦିବସ ଆଗମରେ ଅର୍ଥାତ୍ ପ୍ରାତଃକାଳରେ, ରାତ୍ର୍ୟାଗମେ—ରାତ୍ରିର ଆଗମରେ ଅର୍ଥାତ୍ ସାୟଂକାଳରେ, ପ୍ରଲୀୟନ୍ତେ—ଲୟପ୍ରାପ୍ତ ହୁଅନ୍ତି, ତତ୍ର—ସେହି, ଏବ—କେବଳ, ଅବ୍ୟକ୍ତସଂଜ୍ଞକେ—ଅବ୍ୟକ୍ତନାମକ ପ୍ରକୃତିଠାରେ । ୧୮ ।

Digitized by PPRACHIN, SOA

ଅନୁବାଦ ।

(ବ୍ରହ୍ମାଙ୍କ) ଦିବସ ପ୍ରାରମ୍ଭରେ ପ୍ରକୃତିଠାରୁ ସକଳ ଚରାଚର ଜଗତ୍ ଉତ୍ପନ୍ନ ହୁଏ ଏବଂ ରାତ୍ରି ପ୍ରାରମ୍ଭରେ ସେହି ଅବ୍ୟକ୍ତନାମକ ପ୍ରକୃତିଠାରେ ସବୁ ଲୀନ ହୁଏ । ୧୮ ।

ବିଶଦବ୍ୟାଖ୍ୟା ।

ବ୍ରହ୍ମାଙ୍କ ଜାଗରଣ ଅବସ୍ଥା ବା ବ୍ରହ୍ମଦିବସ, ଜଗତର ସୃଷ୍ଟି କାଳ ଅଟେ, ଏବଂ ତାଙ୍କର ଶୟନାବସ୍ଥା ବା ବ୍ରହ୍ମରାତ୍ରି, ଜଗତ୍‌ପ୍ରଳୟର କାଳ ଅଟେ । ସୁତରାଂ ଦିବସ ଆରମ୍ଭ ହେଲେ ଅର୍ଥାତ୍ ବ୍ରହ୍ମା ଜାଗରିତ ହେଲେ, ଚେତନ ଶକ୍ତିର ସ୍ଫୁରଣ ହେବା ସଙ୍ଗେ ସଙ୍ଗେ ପ୍ରତ୍ୟକ୍ଷ ଜଗତ୍ ବ୍ୟକ୍ତାବସ୍ଥାରେ ପରିଣତ ହୋଇ ପ୍ରକାଶିତ ହୁଏ, ଆଉ ରାତ୍ରି ହେଲେ ଅର୍ଥାତ୍ ବ୍ରହ୍ମା ନିଦ୍ରିତ ହେଲେ, ସମସ୍ତ ଜଗତର ସତ୍ତା ଅବ୍ୟକ୍ତରୂପ କାରଣରେ (ପ୍ରକୃତିରେ) ଲୟ ପ୍ରାପ୍ତ ହୁଏ ଅର୍ଥାତ୍ ପ୍ରତ୍ୟକ୍ଷ ବ୍ୟବହାରୋପଯୋଗୀ ଜଗତ୍ ଦେଖାଯାଏ ନାହିଁ । ୧୮ ।

ଶ୍ଳୋକଃ ।

ଭୂତଗ୍ରାମଃ ସ ଏବାୟଂ, ଭୂତ୍ୱା ଭୂତ୍ୱା ପ୍ରଲୀୟତେ ।
ରାତ୍ର୍ୟାଗମେଽବଶଃ ପାର୍ଥ, ପ୍ରଭବତ୍ୟହରାଗମେ । ୧୯ ।

ଅନ୍ୱୟଃ ।

ହେ ପାର୍ଥ! ସ ଏବ ଅୟଂ ଭୂତଗ୍ରାମଃ ଭୂତ୍ୱା ଭୂତ୍ୱା ରାତ୍ର୍ୟାଗମେ ପ୍ରଲୀୟତେ, ଅହରାଗମେ ଅବଶଃ (ସନ୍) ପ୍ରଭବତି । ୧୯ ।

ଟୀକା ।

ଅତ୍ର ଚ କୃତନାଶାକୃତାଭ୍ୟାଗମଶଙ୍କାଂ ବାରୟନ୍ ବୈରାଗ୍ୟାର୍ଥଂ ସୃଷ୍ଟି-ପ୍ରଳୟ-ପ୍ରବାହସ୍ୟ ଅବିଚ୍ଛେଦଂ ଦର୍ଶୟତି । ଭୂତଗ୍ରାମ ଇତି । ଭୂତାନାଂ ଚରାଚରପ୍ରାଣିନାଂ ଗ୍ରାମଃ ସମୂହୋ ଯଃ ପ୍ରାଗାସୀତ୍ ସ ଏବାୟମହରାଗମେ ଭୂତ୍ୱା ଭୂତ୍ୱା ରାତ୍ର୍ୟାଗମେ ପ୍ରଲୀୟତେ, ପ୍ରଲୀୟ ପୁନରପ୍ୟହରାଗମେଽବଶଃ କର୍ମାଦିପରତନ୍ତ୍ରଃ ସନ୍ ପ୍ରଭବତି । ନାନ୍ୟ ଇତ୍ୟର୍ଥଃ । ୧୯ ।

ପଦବ୍ୟାଖ୍ୟା ।

ଭୂତଗ୍ରାମଃ—ପ୍ରାଣିସମୂହ, ସ ଏବ ଅୟଂ—ସେହି କେବଳ ଏହି, ଭୂତ୍ୱା ଭୂତ୍ୱା—ବାରମ୍ବାର ଉତ୍ପନ୍ନ ହୋଇ, ପ୍ରଲୀୟତେ—ଲୀନ ହୁଏ, ରାତ୍ର୍ୟାଗମେ—ରାତ୍ରିର ଆଗମନ କାଳରେ, ଅବଶଃ—ପ୍ରାରବ୍ଧ କର୍ମର ଅଧୀନ ହୋଇ, ପାର୍ଥ—ହେ ଅର୍ଜ୍ଜୁନ! ପ୍ରଭବତି— ଉତ୍ପନ୍ନ ହୁଏ, ଅହରାଗମେ—ଦିବସ ଆଗମନରେ । ୧୯ ।

ଅନୁବାଦ ।

ହେ ପାର୍ଥ! ଏହି ସମୁଦାୟ ଜଗତ୍ ବାରମ୍ବାର ଉତ୍ପନ୍ନ ହୋଇ (ବ୍ରହ୍ମାଙ୍କ) ରାତ୍ରି ଆଗତ ହେଲେ ଲୟପ୍ରାପ୍ତ ହୁଏ, ପୁଣି (ବ୍ରହ୍ମାଙ୍କ) ଦିବସ ଆରମ୍ଭ ହେଲେ କର୍ମାଧୀନ ହୋଇ ଉତ୍ପନ୍ନ ହୁଏ । ୧୯ ।

ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନ ଏପରି ମନେ କରିବେ, ଯେ ବ୍ରହ୍ମାଙ୍କ ରାତ୍ରି ଆଗତ ହେଲେ ଜଗତ୍ ଲୟପ୍ରାପ୍ତ ହୁଏ । ପରଦିନ ବ୍ରହ୍ମା ନୂତନ ଜଗତ୍ ନିର୍ମାଣ କରୁଥିବେ, ସୁତରାଂ ଯେଉଁମାନେ

Digitized by PPRACHIN, SOA

ସର୍ବ ରାତ୍ରରେ ଲୟପ୍ରାପ୍ତ ହେଲେ, ସେମାନେ ସଂସାର ବନ୍ଧନରୁ ମୁକ୍ତ ହୋଇ ଗଲେ, ଇତ୍ୟାଦ । ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଜଗତ୍ ବାରମ୍ବାର ଉତ୍ପନ୍ନ ହୋଇ ବ୍ରହ୍ମାଙ୍କ ରାତ୍ରିରେ ଲୟପ୍ରାପ୍ତ ହୁଏ ସତ, ମାତ୍ର ପୁନର୍ବାର ବ୍ରହ୍ମାଙ୍କର ଦବସ ଆରମ୍ଭ ହେଲେ, ସେହି ପ୍ରାଣି ସବୁ (ଯେଉଁମାନେ କ ପୂର୍ବ ଦବସରେ ଥିଲେ) ଆପଣାର କୃତ କର୍ମଦ୍ୱାରା 'ଅବଶ' ହୋଇ—ସ୍ୱାଧୀନତା ହରାଇ ଅର୍ଥାତ୍ କର୍ମର ଅଧୀନ ହୋଇ ପୁନର୍ବାର ଜନ୍ମଗ୍ରହଣ କରନ୍ତି । ଫଳକଥା ଏହି କ ଅବଦ୍ୟା ନବୃତ୍ତି ନ ହେବା ଯାଏ, ଜଗତର ପୁନଃ ପୁନଃ ଉତ୍ପତ୍ତି ଓ ବନାଶ ହେଲେ ମଧ୍ୟ, ଜୀବର ମୁକ୍ତି ହୁଏ ନାହିଁ । ଏବିଷୟରେ ଶ୍ରୁତିରେ ପ୍ରମାଣ ଅଛି, ଯେ—"ସୂର୍ଯ୍ୟା-ଚନ୍ଦ୍ରମସୌ ଧାତା ଯଥା ପୂର୍ବମକଳ୍ପୟତ୍ ଦବଞ୍ଚ ପୃଥିବୀଞ୍ଚାନ୍ତରୀକ୍ଷମଥୋସ୍ୱଃ" ଅର୍ଥାତ୍ ବ୍ରହ୍ମ ଦବସର ଆରମ୍ଭରେ ବଧାତା ପୂର୍ବ ପର ସୂର୍ଯ୍ୟ, ଚନ୍ଦ୍ର, ଦ୍ୟୁଲୋକ, (ସ୍ୱର୍ଗଲୋକ) ଭୂଲୋକ, ଅନ୍ତରୀକ୍ଷ ଓ ସ୍ୱର୍ଲୋକାଦ ରଚନା କରନ୍ତି ।

ସାରକଥା ଏହି କ କାମ୍ୟ କର୍ମ ଅନୁଷ୍ଠାନ କରୁଥିବା ଜୀବର ନଶ୍ଚୟ କାମ୍ୟ ଫଳ ଭୋଗ କରବାକୁ ହେବ । ଯେଉଁମାନେ ପୂର୍ବ କଳ୍ପରେ (ବ୍ରହ୍ମ ଦବସରେ) କାମ୍ୟଫଳ ଭୋଗ କର ସାର ନ ଥିବାରୁ ବ୍ରହ୍ମ ରାତ୍ରିରେ କାରଣସ୍ୱରୂପ ସୂକ୍ଷ୍ମ ଅବସ୍ଥାରେ ଥାନ୍ତି, ସେମାନେ ପ୍ରକ୍ତନ କର୍ମର ଫଳଭୋଗପାଇଁ କର୍ମାଧୀନ ହୋଇ ବ୍ରହ୍ମ ଦବସରେ ଉତ୍ପନ୍ନ ହୁଅନ୍ତି । ସଂସାର ବନ୍ଧନରୁ ମୁକ୍ତି ପାଇବାର ଏକମାତ୍ର ଉପାୟ=ବୈରାଗ୍ୟ ଓ ଏକାଗ୍ର ଭକ୍ତିର ସହିତ ନଷ୍କାମ କର୍ମ, ତାହା ଅବଲମ୍ବନ କରବାକୁ ଏ ଶ୍ଳୋକଦ୍ୱାରା ଶ୍ରୀଭଗବାନ୍ ପ୍ରକାରାନ୍ତରରେ ଅର୍ଜୁନଙ୍କୁ ଉପଦେଶ ଦେଲେ । ୧୯ ।

ଶ୍ଳୋକଃ ।

ପରସ୍ତସ୍ମାତ୍ତୁ ଭାବୋଽନ୍ୟୋ,ଽବ୍ୟକ୍ତୋଽବ୍ୟକ୍ତାତ୍ ସନାତନଃ ।
ଯଃ ସ ସର୍ବେଷୁ ଭୂତେଷୁ, ନଶ୍ୟତ୍ସୁ ନ ବନଶ୍ୟତ । ୨୦ ।

ଅନ୍ୱୟଃ ।

ତସ୍ମାତ୍ ଅବ୍ୟକ୍ତାତ୍ ପରଃ ଅନ୍ୟଃ ଯଃ ଅବ୍ୟକ୍ତଃ ସନାତନଃ ଭାବଃ, ସଃ ସର୍ବେଷୁ ଭୂତେଷୁ ନଶ୍ୟତ୍ସୁ ନ ବନଶ୍ୟତ । । ୨୦ ।

ଟୀକା ।

ଲୋକାନାମନତ୍ୟତ୍ୱଂ ପ୍ରପଞ୍ଚ୍ୟ ପରମେଶ୍ୱରସ୍ୱରୂପସ୍ୟ ନତ୍ୟତ୍ୱଂ ପ୍ରପଞ୍ଚୟତ, ପର ଇତ ଦ୍ୱାଭ୍ୟାଂ । ତସ୍ମାଚ୍ଚର-ଚର-କାରଣଭୂତାଦବ୍ୟକ୍ତାତ୍ ପରସ୍ତସ୍ୟାପି କାରଣଭୂତୋଯୋଽନ୍ୟସ୍ତଦ୍ୱିଲକ୍ଷଣୋଽବ୍ୟକ୍ତଶ୍ଚକ୍ଷୁରାଦ୍ୟଗୋଚରୋଭାବଃ ସନାତନୋଽନାଦଃ ସ ତୁ ସର୍ବେଷୁ କାର୍ଯ୍ୟକାରଣଲକ୍ଷଣେଷୁ ଭୂତେଷୁ ନଶ୍ୟତ୍ସ୍ୱପି ନ ବନଶ୍ୟତ । ୨୦ ।

ପଦବ୍ୟାଖ୍ୟା ।

ପରଃ—ଶ୍ରେଷ୍ଠ, ତସ୍ମାତ୍—ସେହି, ତୁ—କନ୍ତୁ, ଭାବଃ—ସତ୍ତ୍ୱରୂପ ଅଥବା ଅକ୍ଷରରୂପ, ଅନ୍ୟଃ—ପୃଥକ୍, ଅବ୍ୟକ୍ତଃ ରୂପରହିତ ଓ କାରଣସ୍ୱରୂପ, ଅବ୍ୟକ୍ତାତ୍—ଜଗତର କାରଣରୂପ ପ୍ରକୃତ ଅପେକ୍ଷା, ସନାତନଃ—ଅନାଦ—ନତ୍ୟ, ଯଃ—ଯେଉଁ (ଭାବ), ସଃ—ସେ, ସର୍ବେଷୁ ଭୂତେଷୁ—ସମସ୍ତ ପ୍ରାଣିମାନେ, ନଶ୍ୟତ୍ସୁ—ନଷ୍ଟ ହେଲେ ମଧ, ନ ବନଶ୍ୟତ—ନଷ୍ଟ ହୁଅନ୍ତି ନାହିଁ । ୨୦ ।

Digitized by PPRACHIN, SOA

ଅନୁବାଦ ।

ଏହି ଅବ୍ୟକ୍ତରୁ ଶ୍ରେଷ୍ଠ ଓ ଏହାର କାରଣସ୍ୱରୂପ ଯେଉଁ ସ୍ୱତନ୍ତ୍ର ସତ୍ତ୍ୱା ଅଛି, ତାହା ନିତ୍ୟ ଓ ଇନ୍ଦ୍ରିୟର ଅଗୋଚର ଅଟେ ଭୂତ ସବୁ ବିନଷ୍ଟ ହେଲେ ସୁଦ୍ଧା, ତାହା ବିନଷ୍ଟ ହୁଏ ନାହିଁ । ୨୦ ।

ବିଶଦବ୍ୟାଖ୍ୟା ।

ହିରଣ୍ୟଗର୍ଭ ନାମକ ଅବ୍ୟକ୍ତ ସତ୍ତ୍ୱା ଚରାଚର ଜଗତର କାରଣସ୍ୱରୂପ ଅଟନ୍ତି । କିନ୍ତୁ ପରମାତ୍ମା ସେହି ହିରଣ୍ୟଗର୍ଭ ନାମକ କାରଣର କାରଣ ଓ ତାହା ଅପେକ୍ଷା ଅନଭିବ୍ୟକ୍ତ ଅର୍ଥାତ୍ ଅଧିକ ସୂକ୍ଷ୍ମ ଏବଂ ସ୍ୱତନ୍ତ୍ର ପଦାର୍ଥ ଅଟନ୍ତି । ଚରାଚର ଜଗତର କାରଣ, ଯେ ଅବ୍ୟକ୍ତ ବା ହିରଣ୍ୟଗର୍ଭରୂପ ସତ୍ତ୍ୱା, ତାହାର ମଧ୍ୟ ନାଶ ଅଛି, ମାତ୍ର କାରଣର କାରଣସ୍ୱରୂପ, ଯେ ପରମାତ୍ମ ସତ୍ତ୍ୱା, ତାହାର ନାଶ ନାହିଁ, କାରଣ ସେ ସନାତନ ଅନାଦି ଓ ଅନନ୍ତ । ସେହି ସତ୍ତ୍ୱାସ୍ୱରୂପଙ୍କୁ ଇନ୍ଦ୍ରିୟଦ୍ୱାରା ଗ୍ରହଣ କରାଯାଇ ପାରେ ନାହିଁ, କି ବୁଦ୍ଧିର ତର୍କଦ୍ୱାରା ସିଦ୍ଧାନ୍ତ କରା ଯାଇ ପାରେ ନାହିଁ । ସେ ସତ୍ତ୍ୱାର ଆଦି, ଅନ୍ତ, ମଧ୍ୟ, ନାମ, ଗୁଣ ବା ଅବସ୍ଥା କିଛି ନାହିଁ, ତଥାପି ଅସ୍ତିତ୍ୱ ଅଛି । ୨୦ ।

ଶ୍ଲୋକଃ ।

ଅବ୍ୟକ୍ତୋଽକ୍ଷର ଇତ୍ୟୁକ୍ତସ୍ତମାହୁଃ ପରମାଂ ଗତିଂ ।
ଯଂ ପ୍ରାପ୍ୟ ନ ନିବର୍ତ୍ତନ୍ତେ, ତଦ୍ଧାମ ପରମଂ ମମ । ୨୧ ।

ଅନ୍ୱୟଃ ।

(ଯଃ ଭାବଃ) ଅବ୍ୟକ୍ତଃ ଅକ୍ଷରଃ ଇତି ଉକ୍ତଃ । ତଂ ପରମାଂ ଗତିଂ ଆହୁଃ । ଯଂ ପ୍ରାପ୍ୟ (ଜନାଃ) ନ ନିବର୍ତ୍ତନ୍ତେ, ତତ୍ ମମ ପରମଂ ଧାମ । ୨୧ ।

ଟୀକା ।

ଅବକାଶେ ପ୍ରମାଣଂ ଦର୍ଶୟନ୍ନାହ, ଅବ୍ୟକ୍ତ ଇତି । ଯୋଽସାବବ୍ୟକ୍ତୋଽତୀନ୍ଦ୍ରିୟଃ ଅକ୍ଷରଃ ପ୍ରବେଶନାଶଶୂନ୍ୟ ଇତି ତଥା ଅକ୍ଷରାତ୍ ସମ୍ଭବତୀହ ବିଶ୍ୱମିତ୍ୟାଦି ଶ୍ରୁତିଷ୍ୱକ୍ଷର ଇତ୍ୟୁକ୍ତଃ ତଂ ପରମାଂ ଗତିଂ ଗମ୍ୟଂ ପୁରୁଷାର୍ଥମାହୁଃ । ପୁରୁଷାନ୍ନ ପରଂ କିଞ୍ଚିତ୍ ସା କାଷ୍ଠା ସା ପରା ଗତିରିତ୍ୟାଦିଶ୍ରୁତୟଃ ପରମଗତିତ୍ୱମେବାହ । ଯଂ ପ୍ରାପ୍ୟ ନ ପୁନର୍ନିବର୍ତ୍ତନ୍ତେ ଇତି । ତଚ୍ଚ ମମୈବ ଧାମସ୍ୱରୂପଂ, ମମେତ୍ୟୁପଚାରେ ଷଷ୍ଠୀ ରାହୋଃ ଶିର ଇତିବତ୍ ଅତୋଽହମେବ ପରମା ଗତିରିତ୍ୟର୍ଥଃ । ୨୧ ।

ପଦବ୍ୟାଖ୍ୟା ।

ଅବ୍ୟକ୍ତଃ—ଇନ୍ଦ୍ରିୟର ଅଗୋଚର ଅର୍ଥାତ୍ ରୂପରହିତ, ଅକ୍ଷରଃ—ନାଶରହିତ, ଇତି—ଏପ୍ରକାର, ଉକ୍ତଃ—କଥିତ, ତଂ—ତାହାଙ୍କୁ, ଆହୁଃ—କହନ୍ତି, ପରମାଂ ଗତିଂ—ଉତ୍କୃଷ୍ଟ ଆଶ୍ରୟ ବୋଲି, ଯଂ—ଯାହାଙ୍କୁ, ପ୍ରାପ୍ୟ—ପାଇଲେ, ନ ନିବର୍ତ୍ତନ୍ତେ—ନିବୃତ୍ତ ହୁଅନ୍ତି ନାହିଁ ଅର୍ଥାତ୍ ସଂସାରକୁ ପୁନରାଗମନ କରନ୍ତି ନାହିଁ, ତତ୍—ସେହି, ଧାମ—ସ୍ଥାନ, ପରମଂ—ଉତ୍କୃଷ୍ଟ, ମମ—ଆମ୍ଭର । ୨୧ ।

ଅନୁବାଦ ।

(ବେଦରେ) ସେହି ସ୍ୱତନ୍ତ୍ର ସତ୍ତ୍ୱା 'ଅବ୍ୟକ୍ତ ଓ ଅକ୍ଷର' ବୋଲି କଥିତ ଅଛି ଓ ତାହାଙ୍କୁ

Digitized by PPRACHIN, SOA

(ଜୀବର) ପରମଗତି ବୋଲି କହିଅଛନ୍ତି । ଯାହାକୁ ଲଭିଲେ, ଆଉ ସଂସାରକୁ ଫେରିଆସି-ବାକୁ ହୁଏ ନାହିଁ, ତାହା ଆମ୍ଭର ଉତ୍କୃଷ୍ଟ ଧାମ ଅଟେ । ୨୧ ।

ସଂଶୟବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ଯେଉଁ ସ୍ୱତନ୍ତ୍ର ସତ୍ତ୍ୱର କଥା କୁହା ଯାଇଅଛି, ତାହା 'ଅବ୍ୟକ୍ତ ଓ ଅକ୍ଷର' ନାମରେ ବେଦାଦିରେ କଥିତ ହୋଇଅଛି, ଯଥା; "ଏତସ୍ୟ ବା ଅକ୍ଷରସ୍ୟ ପ୍ରଶାସନେ ଗାର୍ଗି ସୂର୍ଯ୍ୟା ଚନ୍ଦ୍ରମସୌ ବିଧୃତୌ ତିଷ୍ଠତଃ" ଅର୍ଥାତ୍ ସେହି ଅକ୍ଷର (ଅବ୍ୟକ୍ତ ସତ୍ତ୍ୱ)ଙ୍କ ଶାସନ-ଦ୍ୱାରା ସୂର୍ଯ୍ୟ ଓ ଚନ୍ଦ୍ର ଆକାଶରେ ରହିଅଛନ୍ତି । ପୁଣି ସେହି ଅବ୍ୟକ୍ତ ସତ୍ତ୍ୱକୁ ଶ୍ରୁତି ଓ ସ୍ମୃତି ଏମାନେ ପରମଗତି ବୋଲି କହିଅଛନ୍ତି । ଯଥା "ଏଷାସ୍ୟ ପରମାଗତିଃ ପୁରୁଷାନ୍ନ ପରଂ କିଞ୍ଚିତ୍ ସା କାଷ୍ଠା ସା ପରା ଗତିଃ" ଅର୍ଥାତ୍ ସେହି ପରମପୁରୁଷ ଅପେକ୍ଷା ଆଉ କିଛି ଶ୍ରେଷ୍ଠ ନାହିଁ—ତାହାହିଁ କାଷ୍ଠା ଓ ତାହାହିଁ ପରମଗତି ଅଟେ ଇତ୍ୟାଦି । ସେହି ଅବ୍ୟକ୍ତ ସତ୍ତ୍ୱକୁ ଜୀବ ପ୍ରାପ୍ତ ହେଲେ, ଆଉ ସଂସାରକୁ ଫେରିବାକୁ ହୁଏ ନାହିଁ, ତାହାହିଁ ଆମ୍ଭର ପରମଧାମ ଅର୍ଥାତ୍ ଆମ୍ଭେ ସେହି ଅବ୍ୟକ୍ତ ସତ୍ତ୍ୱ ଅଟୁଁ ।

ଏ ଶ୍ଳୋକରେ 'ତାହା ଆମ୍ଭର ପରମ ଧାମ ଅଟେ' ବୋଲି ଯେ ଲେଖା ଅଛି, ତାହାର ଅର୍ଥ ଏହି, ଯେ ଆମ୍ଭେ ନିଜେ ସେ ଧାମସ୍ୱରୂପ ଅଟୁଁ । କାହିଁକି ନା ପରମାତ୍ମା ଓ ପରମଧାମ ମଧ୍ୟରେ କିଛିମାତ୍ର ପ୍ରଭେଦ ନାହିଁ । ଯେପରି 'ରାହୁର ମୁଣ୍ଡ' କହିଲେ, ସେହି ରାହୁ ଗ୍ରହ ଅର୍ଥ ହୁଏ (ଯେହେତୁ ମୁଣ୍ଡ=ରାହୁ ଓ ଗଣ୍ଡି=କେତୁ ବୋଲି ପ୍ରସିଦ୍ଧ ଅଛି) ସେହିପରି, କୃଷ୍ଣ-ଙ୍କର ପରମଧାମ, କହିଲେ ସେହି କୃଷ୍ଣ ଅର୍ଥ ବୁଝାଯାଏ । ୨୧ ।

ଶ୍ଳୋକଃ ।

* ପୁରୁଷଃ ସ ପରଃ ପାର୍ଥ, ଭକ୍ତ୍ୟା ଲଭ୍ୟସ୍ତ୍ୱନନ୍ୟୟା ।
ଯସ୍ୟାନ୍ତଃସ୍ଥାନି ଭୂତାନି, ଯେନ ସର୍ବମିଦଂ ତତଂ । ୨୨ ।

ଅନ୍ୱୟଃ ।

ହେ ପାର୍ଥ ! ଭୂତାନି ଯସ୍ୟ ଅନ୍ତଃସ୍ଥାନି, ଯେନ ଇଦଂ ସର୍ବଂ ତତଂ ସଃ ପରଃ ପୁରୁଷଃ ତୁ ଅନନ୍ୟୟା ଭକ୍ତ୍ୟା ଲଭ୍ୟଃ । ୨୨ ।

ଟୀକା

ତତ୍ପ୍ରାପ୍ତୌ ଚ ଭକ୍ତିରନ୍ତରଙ୍ଗୋପାୟ ଇତ୍ୟୁକ୍ତମେବେତ୍ୟାହ । ପୁରୁଷ ଇତି । ସ ଚାହଂ ପରଃ ପୁରୁଷୋଽନ-ନ୍ୟୟା ନ ବିଦ୍ୟତେ ଅନ୍ୟଃ ଶରଣତ୍ୱେନ ଯସ୍ୟାସ୍ତସ୍ୟା ଏକାନ୍ତଭକ୍ତ୍ୟୈବ ଲଭ୍ୟୋନାନ୍ୟଥା । ପରତ୍ୱମେବାହ । ଯସ୍ୟ କାରଣଭୂତସ୍ୟାନ୍ତର୍ମଧ୍ୟେ ଭୂତାନି ସ୍ଥିତାନି ଯେନ ଚ କାରଣଭୂତେନେଦଂ ସର୍ବଂ ଜଗତ୍ତତଂ ବ୍ୟାପ୍ତଂ । ୨୨ ।

ପଦବ୍ୟାଖ୍ୟା

ପୁରୁଷଃ—ଯେ ସମସ୍ତ ଶରୀରରେ ବାସ କରନ୍ତି, ସଃ—ସେ, ପରଃ—ଶ୍ରେଷ୍ଠ—ଉତ୍କୃଷ୍ଟ, ପାର୍ଥ—ହେ ଅର୍ଜୁନ !, ଭକ୍ତ୍ୟା—ଭକ୍ତି ଦ୍ୱାରା, ଲଭ୍ୟଃ—ପ୍ରାପ୍ୟ, ତୁ—ପୁଣି, ଅନନ୍ୟୟା—ଏକାନ୍ତ, ଯସ୍ୟ—ଯାହାଙ୍କର, ଅନ୍ତଃସ୍ଥାନି—ଅନ୍ତରେ ବିଦ୍ୟମାନ, ଭୂତାନି—ସମସ୍ତ ଜଗତ୍, ଯେନ—ଯେ, ସର୍ବଂ ଇଦଂ (ଜଗତ୍)—ଏହି ସମସ୍ତ ଜଗତ୍‌କୁ, ତତଂ—ବ୍ୟାପି-ଅଛନ୍ତି । ୨୨ ।

Digitized by PPRACHIN, SOA

### ଅନୁବାଦ ।

ହେ ପାର୍ଥ! ଯାହାଙ୍କ ମଧ୍ୟରେ ସମସ୍ତ ଜଗତ୍ ବିଦ୍ୟମାନ ଅଛି ଓ ଯେ ସମସ୍ତ ଜଗତ୍‌କୁ ବ୍ୟାପି ରହିଅଛନ୍ତି, ସେହି ପରମପୁରୁଷଙ୍କୁ ଏକାନ୍ତ ଭକ୍ତିଦ୍ୱାରା ଲାଭ କରାଯାଏ । ୨୨ ।

### ବିଶଦବ୍ୟାଖ୍ୟା ।

ଏ ସମସ୍ତ ଜଗତ୍‌ପ୍ରପଞ୍ଚ କାର୍ଯ୍ୟ ଓ ସେହି ଅବ୍ୟକ୍ତ ସତ୍ତା ପରମପୁରୁଷହିଁ କାରଣ, ଏବଂ କାର୍ଯ୍ୟ ସବୁ କାରଣର ଅନ୍ତର୍ବର୍ତ୍ତୀ ବୋଲି ଏ ଜଗତ୍‌ପ୍ରପଞ୍ଚ, ସେହି ପରମପୁରୁଷଙ୍କର ଅଭ୍ୟନ୍ତରରେ ବିଦ୍ୟମାନ, ପୁଣି ସେହି ପରମପୁରୁଷ ଏ ଜଗତ୍ ପ୍ରପଞ୍ଚକୁ ବ୍ୟାପି ରହିଅଛନ୍ତି । ଯେହେତୁ ଶ୍ରୁତିରେ ପ୍ରମାଣ ଅଛି, ଯେ—"ଯସ୍ମାତ୍ ପରଂ ନାପରମସ୍ତି କିଞ୍ଚିତ୍ ଯସ୍ମାନ୍ନାଣୀୟୋ ନ ଜ୍ୟାୟୋଽସ୍ତି କଶ୍ଚିତ୍ । ବୃକ୍ଷ ଇବ ସ୍ତବ୍ଧୋ ଦିବି ତିଷ୍ଠତ୍ୟେକସ୍ତେନେଦଂ ପୂର୍ଣ୍ଣଂ ପୁରୁଷେଣ ସର୍ବଂ ଯଚ୍ଚ କିଞ୍ଚିଜ୍ଜଗତ୍ୟସ୍ମିନ୍ ଦୃଶ୍ୟତେ ଶ୍ରୂୟତେଽପି ବା । ଅନ୍ତର୍ବହିଶ୍ଚ ତତ୍ସର୍ବଂ ବ୍ୟାପ୍ୟ ନାରାୟଣଃ ସ୍ଥିତଃ । ଇତି" । ଅର୍ଥାତ୍ ଯାହାଙ୍କଠାରୁ କୌଣସି ପଦାର୍ଥ ପର ବା ଅପର ନୁହେ, ଯାହାଙ୍କ ଅପେକ୍ଷା କୌଣସି ପଦାର୍ଥ ସୂକ୍ଷ୍ମ ବା ମହାନ୍ ନୁହେ, ସେହି ଅଦ୍ୱିତୀୟ ପରମାତ୍ମା ବିଶାଳ ବୃକ୍ଷପରି ଅଚଳ, ତାହାଙ୍କଦ୍ୱାରା ଏ ଜଗତ୍ ପରିପୂର୍ଣ୍ଣ ରହିଅଛି । ଏ ଜଗତ୍‌ରେ ଯାହା କିଛି ଦେଖାଯାଏ ବା ଶୁଣାଯାଏ, ସେ ସମସ୍ତର ଅନ୍ତରେ ଓ ବାହାରେ ବ୍ୟାପି କରି ନାରାୟଣ ସ୍ଥିତ ଅଛନ୍ତି । ଇତ୍ୟାଦି । ସେହି ପରମାତ୍ମାଙ୍କୁ ପାଇବାର ଏକମାତ୍ର ଉପାୟ ଅନନ୍ୟଭକ୍ତି ଅର୍ଥାତ୍ ଅନ୍ୟ କୌଣସି ଆଡେ ମନ ନ ଦେଇ ଏକାନ୍ତଭାବରେ ଭକ୍ତି କଲେ, ସେ ପରମ ପୁରୁଷଙ୍କୁ ଲାଭ କରାଯାଇ ପାରେ । ଏହି ଅଧ୍ୟାୟର ଚତୁର୍ଦ୍ଦଶ ଶ୍ଳୋକରେ ଶ୍ରୀଭଗବାନ୍ "ଅନନ୍ୟଚେତାଃ ସତତଂ ଯୋ ମାଂ ସ୍ମରତି ନିତ୍ୟଶଃ । ତସ୍ୟାହଂ ସୁଲଭଃ ପାର୍ଥ ନିତ୍ୟଯୁକ୍ତସ୍ୟ ଯୋଗିନଃ" ଇତ୍ୟାଦି ବଚନରେ ଯେଉଁ ଭକ୍ତିର କଥା କହିଥିଲେ, ବର୍ତ୍ତମାନ ସେହି ଭକ୍ତିର କଥା ଅର୍ଜ୍ଜୁନଙ୍କର ଦୃଢ଼ ପ୍ରତୀତି ପାଇଁ ପୁନର୍ବାର କହିଲେ । ୨୨ ।

### ଶ୍ଳୋକଃ ।

ଯତ୍ର କାଲେ ତ୍ୱନାବୃତ୍ତି, ମାବୃତ୍ତିଂ ଚୈବ ଯୋଗିନଃ ।
ପ୍ରୟାତା ଯାନ୍ତି ତଂ କାଲଂ, ବକ୍ଷ୍ୟାମି ଭରତର୍ଷଭ । ୨୩ ।

### ଅନ୍ୱୟଃ ।

ହେ ଭରତର୍ଷଭ ! ଯତ୍ର କାଲେ ପ୍ରୟାତାଃ ଯୋଗିନଃ ଅନାବୃତ୍ତିଂ ଚ ଆବୃତ୍ତିଂ ଏବ ଯାନ୍ତି ତଂ କାଲଂ ବକ୍ଷ୍ୟାମି । ୨୩ ।

### ଟୀକା ।

ତଦେବ ପରମେଶ୍ୱରୋପାସକାନ୍ତ୍ରପ୍ୟଂ ପ୍ରାପ୍ୟ ନ ନିବର୍ତ୍ତନ୍ତେ ଅନ୍ୟେ ତ୍ୱାବର୍ତ୍ତନ୍ତ ଇତ୍ୟୁକ୍ତଂ ତତ୍ର କେନ ମାର୍ଗେଣ ଗତା ନାବର୍ତ୍ତନ୍ତେ କେନ ବା ବର୍ତ୍ତନ୍ତ ଇତ୍ୟପେକ୍ଷାୟାମାହ । ଯତ୍ରେତି । ଯତ୍ର ଯସ୍ମିନ୍ କାଲେ ପ୍ରୟାତା ଯୋଗିନୋଽନାବୃତ୍ତିଂ ଯାନ୍ତି ଯସ୍ମିଂଶ୍ଚ କାଲେ ପ୍ରୟାତା ଆବୃତ୍ତିଂ ଯାନ୍ତି ତଂ କାଲଂ ବକ୍ଷ୍ୟାମୀତ୍ୟନ୍ୱୟଃ । ଅତ୍ର ଚ ରାତ୍ର୍ୟନ୍ତସାଦି ଅଭିଷ୍ଟାୟେନୋଽପି ତନ୍ନେ ଇତି ସୃତିଇନ୍ୟାଯେନୋତ୍ତରସ୍ୟଣାଦି-କାଲବିଶେଷ-ମରଣସ୍ୟ ତ୍ୱବିବକ୍ଷିତତ୍ୱାତ୍ କାଲଶବ୍ଦେନ କାଲାଭିମାନିନୀଭିର୍ଦେବତାଭିରୁପଲକ୍ଷିତୋ ମାର୍ଗ ଉପଲକ୍ଷ୍ୟତେ, ଅତୋଽୟମର୍ଥଃ । ଯସ୍ମିନ୍ କାଲାଭିମାନ-ଦେବତୋପଲକ୍ଷିତେ ମାର୍ଗେ

ପ୍ରୟାତା ଯୋଗିନ ଉପାସକାଃ କର୍ମିଣଶ୍ଚ ଯଥାକ୍ରମମନାବୃତ୍ତିମାବୃତ୍ତିଂ ଚ ଯାନ୍ତି, ତଂ କାଳାଭିମାନଦେବତୋପଲକ୍ଷିତଂ ମାର୍ଗଂ କଥୟିଷ୍ୟାମୀତି । ଅଗ୍ନିର୍ଜ୍ୟୋତଷୋଃ କାଳାଭିମାନଦେବତ୍ୱେପି ଭୂୟସାମହରାଦିଶବ୍ଦୋକ୍ତାନାଂ କାଳାଭିମାନିନାଂ ତାତ୍ପର୍ଯ୍ୟାଦାମ୍ରବଣନ୍ୟାୟେନ କାଳଶବ୍ଦେନୋପଲକ୍ଷଣମବଗନ୍ତବ୍ୟଂ । ୨୩ ।

### ପଦବ୍ୟାଖ୍ୟା ।

ଯତ୍ର କାଲେ ତୁ—ଯେଉଁ କାଳରେ ପୁଣି ଅଥବା ଯେଉଁ କାଳାଭିମାନ ଦେବମାର୍ଗରେ, ଅନାବୃତ୍ତିଂ—ଅବର୍ତ୍ତନ ବା ପୁନର୍ଜନ୍ମର ଅଭାବ, ଆବୃତ୍ତିଂ ଚ—ଆବର୍ତ୍ତନ ବା ପୁନର୍ଜନ୍ମକୁ ମଧ୍ୟ, ଯୋଗିନଃ—ଉପାସକ ଓ କର୍ମାନୁଷ୍ଠାନକାରୀ-ମାନେ, ପ୍ରୟାତାଃ—ଗମନ କରି, ଯାନ୍ତି—ପ୍ରାପ୍ତ ହୁଅନ୍ତି, ତଂ କାଳଂ—ସେହି କାଳକୁ, ବା କାଳାଭିମାନ ଦେବମାର୍ଗକୁ, ବକ୍ଷ୍ୟାମି—କହିବା, ଭରତର୍ଷଭ—ହେ ଭରତକୁଳଶ୍ରେଷ୍ଠ (ଅର୍ଜ୍ଜୁନ !) । ୨୩ ।

### ଅନୁବାଦ ।

ହେ ଅର୍ଜ୍ଜୁନ ! ଯେଉଁ କାଳରେ ଗମନ କଲେ ଯୋଗିମାନେ ସଂସାରକୁ ଫେରନ୍ତି ନାହିଁ ଓ କର୍ମାନୁଷ୍ଠାନମାନେ ଫେରନ୍ତି, ସେହି କାଳ କଥା (ତୁମ୍ଭଙ୍କୁ) କହିବା । ୨୩ ।

### ବିଶଦବ୍ୟାଖ୍ୟା ।

ଏ ଶ୍ଳୋକରେ 'କାଳ' ଶବ୍ଦର ଅର୍ଥ କାଳାଭିମାନୀ ଦେବତା । ଅର୍ଥାତ୍ ଦିବସ, ପକ୍ଷ ଓ ଅୟନ ଇତ୍ୟାଦି କାଳର ଅଭିମାନୀ ଦେବତାମାନଙ୍କ ମାର୍ଗରେ ଯୋଗୀ ବା ସଗୁଣ ଉପାସକମାନେ ଗମନ କଲେ, କ୍ରମ ମୁକ୍ତି ପ୍ରାପ୍ତ ହୋଇ ସଂସାରକୁ ପୁନର୍ବାର ଫେରନ୍ତି ନାହିଁ ଓ କର୍ମାନୁଷ୍ଠାନମାନେ ଯେଉଁ କାଳାଭିମାନ ଦେବମାର୍ଗରେ ଗମନ କଲେ ପୁନର୍ବାର ଫେରନ୍ତି, ସେହି କାଳ କଥା ବିଶଦରୂପେ ବୁଝାଇବେ ବୋଲି ଭଗବାନ୍ କହୁଅଛନ୍ତି । ଏ ଶ୍ଳୋକରେ ପୁନରାବୃତ୍ତି ଓ ଅନାବୃତ୍ତି ଦୁଇ ପ୍ରକାର ଫଳର କଥା ଥିବାରୁ ସ୍ପଷ୍ଟ ବୁଝା ଯାଉଅଛି, ଯେ କାଳାଭିମାନ ଦେବମାର୍ଗ ଦୁଇ ପ୍ରକାର ଅଟେ । ତାହା ପରବର୍ତ୍ତୀ ଶ୍ଳୋକରେ ବିଶଦରୂପେ ବୁଝାଇ ଦିଆ ଯିବ ।

### ଶ୍ଳୋକଃ ।

ଅଗ୍ନିର୍ଜ୍ୟୋତିରହଃ ଶୁକ୍ଲଃ, ଷଣ୍ମାସା ଉତ୍ତରାୟଣଂ ।
ତତ୍ର ପ୍ରୟାତା ଗଚ୍ଛନ୍ତି, ବ୍ରହ୍ମ ବ୍ରହ୍ମବିଦୋ ଜନାଃ । ୨୪ ।

### ଅନ୍ୱୟଃ ।

(ଯତ୍ର) ଅଗ୍ନିଃ ଜ୍ୟୋତିଃ ଅହଃ ଶୁକ୍ଳଃ ଷଣ୍ମାସାଃ ଉତ୍ତରାୟଣଂ, ତତ୍ର ପ୍ରୟାତାଃ ବ୍ରହ୍ମବିଦଃ ଜନାଃ ବ୍ରହ୍ମ ଗଚ୍ଛନ୍ତି । ୨୪ ।

### ଟୀକା ।

ତତ୍ରାନାବୃତ୍ତିମାର୍ଗମାହ । ଅଗ୍ନିରିତି । ଅଗ୍ନିର୍ଜ୍ୟୋତିଃ ଶବ୍ଦାଭ୍ୟାଂ ତେଽର୍ଚ୍ଚିଷମଭିସମ୍ଭବନ୍ତୀତି ଶ୍ରୁତ୍ୟୁକ୍ତାର୍ଚ୍ଚିରଭିମାନିନୀ ଦେବତୋପଲକ୍ଷ୍ୟତେ, ଅହରିତି ଦିବସାଭିମାନିନୀ ଶୁକ୍ଳ ଇତି ଶୁକ୍ଳପକ୍ଷାଭିମାନିନୀ ଉତ୍ତରାୟଣରୂପାଃ ଷଣ୍ମାସା ଇତ୍ୟୁତ୍ତରାୟଣାଭିମାନିନୀ ଏତଚ୍ଚାନ୍ୟାସାମପି ଶ୍ରୁତ୍ୟୁକ୍ତାନାଂ ସମ୍ବତ୍ସରଦେବଲୋକାଦି-ଦେବତାନାମୁପଲକ୍ଷଣାର୍ଥଂ ଏବମ୍ଭୂତୋ ଯୋ ମାର୍ଗସ୍ତତ୍ର ପ୍ରୟାତା ଗତା ଭଗବଦୁପାସକା ଜନା ବ୍ରହ୍ମ ପ୍ରାପ୍ନୁବନ୍ତି, ଯତସ୍ତେ ବ୍ରହ୍ମବିଦଃ । ତଥା ଚ ଶ୍ରୁତିଃ ତେଽର୍ଚ୍ଚିଷମଭିସମ୍ଭବ-ନ୍ତ୍ୟର୍ଚ୍ଚିଷୋଽହରହ୍ନ ଆପୂର୍ଯ୍ୟମାଣପକ୍ଷମାପୂର୍ଯ୍ୟମାଣପକ୍ଷାଦ୍ୟାନ୍ ଷଡୁଦଙ୍ଙେତି ମାସାନ୍ ମାସେଭ୍ୟୋ ଦେବଲୋକମିତ ।

## ପଦବ୍ୟାଖ୍ୟା ।

ଅଗ୍ନିଃ ଜ୍ୟୋତିଃ—ଅର୍ଚ୍ଚିଃ ବା ତେଜଃ ଅଭିମାନିନୀ ଦେବତା, ଅହଃ—ଦିବସ ଅଭିମାନିନୀ ଦେବତା, ଶୁକ୍ଳଃ—ଶୁକ୍ଳପକ୍ଷାଭିମାନିନୀ ଦେବତା, ଷଣ୍ମାସାଃ ଉତ୍ତରାୟଣଂ—ମକରଠାରୁ ମିଥୁନ ପର୍ଯ୍ୟନ୍ତ ଛ ମାସର ଅଭିମାନିନୀ ଦେବତା, ତତ୍ର—ସେହି ମାର୍ଗରେ, ପ୍ରୟାତାଃ—ଗମନ କଲେ, ଗଚ୍ଛନ୍ତି—ପ୍ରାପ୍ତ ହୁଅନ୍ତି, ବ୍ରହ୍ମ—ଅଦ୍ୱିତୀୟ ପରମ ବ୍ରହ୍ମଙ୍କୁ, ବ୍ରହ୍ମବିଦଃ ଜନାଃ—ବ୍ରହ୍ମଜ୍ଞାନୀ ପ୍ରାଣିମାନେ । ୨୪ ।

## ଅନୁବାଦ ।

(ଯେଉଁ ମାର୍ଗରେ) ଅଗ୍ନି, ଜ୍ୟୋତି, ଦିବସ, ଶୁକ୍ଳପକ୍ଷ ଓ ଉତ୍ତରାୟଣ ଷଣ୍ମାସାଦିର ଅଭିମାନିନୀ ଦେବତାମାନେ ଅଛନ୍ତି, ସେହି ମାର୍ଗରେ ଗମନ କରିବା (ସଗୁଣ) ବ୍ରହ୍ମଜ୍ଞାନୀମାନେ ବ୍ରହ୍ମ ପ୍ରାପ୍ତ ହୁଅନ୍ତି । ୨୪ ।

## ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ କାଳାଭିମାନିନୀ ଦେବତାଙ୍କର ଦୁଇଟି ମାର୍ଗ ଥିବାର କୁହା ଯାଇଅଛି । ତହିଁ ମଧ୍ୟରୁ ସଗୁଣ ଉପାସକମାନେ ଯେଉଁ ମାର୍ଗରେ ଗମନ କଲେ, ଆଉ ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି ନାହିଁ, ଅର୍ଥାତ୍ ମୁକ୍ତ ହୋଇ ଯାନ୍ତି, ସେହି ମାର୍ଗର ବିଶେଷ ବିବରଣ ଏ ଶ୍ଳୋକରେ ବ୍ୟାଖ୍ୟା କରି ଯାଉଅଛି । ଶ୍ରୁତିରେ ପ୍ରମାଣ ଅଛି, ଯେ "ତେଽର୍ଚ୍ଚିରଭିସମ୍ଭବନ୍ତ୍ୟର୍ଚ୍ଚିଷୋଽହ-ରହ୍ନ ଆପୂର୍ଯ୍ୟମାଣପକ୍ଷମାପୂର୍ଯ୍ୟମାଣପକ୍ଷାଦ୍ୟାନ୍ ଷଡୁଦଙ୍ଙେତି ମାସାଂସ୍ତାନ୍ ମାସେଭ୍ୟଃ ସମ୍ବ-ତ୍ସରଂ ସମ୍ବତ୍ସରାଦାଦିତ୍ୟମାଦିତ୍ୟାଚ୍ଚନ୍ଦ୍ରମସଂ ଚନ୍ଦ୍ରମସୋବିଦ୍ୟୁତଂ ତତ୍ ପୁରୁଷୋଽମାନବଃ ସ ଏତାନ୍ ବ୍ରହ୍ମ ଗମୟତ୍ୟେଷ ଦେବପଥୋବ୍ରହ୍ମପଥ ଏତେନ ପ୍ରତିପଦ୍ୟମାନା ଇମଂ ମାନବ ମାବର୍ତ୍ତଂନାବର୍ତ୍ତନ୍ତେ ଇତି" । ଅର୍ଥାତ୍ ସଗୁଣ ଉପାସକ ବ୍ୟକ୍ତି ପ୍ରଥମରେ (ଅଗ୍ନି ଓ ଜ୍ୟୋତିର) ଅର୍ଚ୍ଚିରଭିମାନିନୀ ଦେବତାଙ୍କୁ ପ୍ରାପ୍ତ ହୁଅନ୍ତି । ତତ୍ପରେ ଦିବସାଭିମାନିନୀ ଦେବତାଙ୍କୁ ପ୍ରାପ୍ତ ହୁଅନ୍ତି । ସେଠାରୁ ଶୁକ୍ଳପକ୍ଷାଭିମାନିନୀ ଦେବତା ଓ ତହିଁ ଉତ୍ତାରୁ ଉତ୍ତରାୟଣାଭିମାନିନୀ ଦେବତାଙ୍କୁ ପ୍ରାପ୍ତ ହୁଅନ୍ତି । ଉତ୍ତରାୟଣାଭିମାନିନୀ ଦେବତାଙ୍କ ପରେ ସମ୍ବତ୍ସର ଦେବତା ଓ ତତ୍ପରେ ଆଦିତ୍ୟ ଦେବତା ଏବଂ ଆଦିତ୍ୟଙ୍କ ପରେ ଚନ୍ଦ୍ରମା ଦେବତା ଏବଂ ତତ୍ପରେ ବିଦ୍ୟୁତ୍ ଦେବତାଙ୍କୁ ପ୍ରାପ୍ତ ହୁଅନ୍ତି ଏବଂ ସେହି ବିଦ୍ୟୁତ୍ ଦେବତାଙ୍କ ପରେ ଏକ ଅମାନବ ପୁରୁଷ ସେହି ଉପାସକଙ୍କୁ ବ୍ରହ୍ମ ପ୍ରାପ୍ତି କରାଇ ଦିଅନ୍ତି । ଏହି ମାର୍ଗକୁ ଦେବଯାନ ମାର୍ଗ ବା ବ୍ରହ୍ମପଥ ବୋଲି ଯାଏ, ଏବଂ ଏହି ମାର୍ଗରେ ଗମନ କଲେ, ଆଉ ପ୍ରତ୍ୟାବର୍ତ୍ତନ କରିବାକୁ ହୁଏ ନାହିଁ । ଫଳ କଥା ଏହି, ଯେ ଅଗ୍ନି ଓ ଜ୍ୟୋତିଃ ପ୍ରଭୃତି ମାର୍ଗରେ ଯୋଗିମାନେ ଗତି କରନ୍ତି ଅର୍ଥାତ୍ ନିଷ୍କାମ କର୍ମଯୋଗୀ ଯାଗାଦି କାର୍ଯ୍ୟରେ ରତ ଥିବାରୁ ଅଗ୍ନିପ୍ରଭୃତି ଦେବତାଙ୍କୁ ଭକ୍ତିର ସହିତ ପୂଜା କରନ୍ତି ଓ ଦେହ ତ୍ୟାଗ ପରେ ସେହି ଅଗ୍ନିଦେବତାଙ୍କୁ ପାଇ କ୍ରମମୁକ୍ତି ଅନୁସାରେ ପର-ବର୍ତ୍ତୀ ଦେବତାମାନଙ୍କୁ ତୁଷ୍ଟ କରି ଓ ସେହି୨ ଲୋକ ପ୍ରାପ୍ତ ହୋଇ ବିଦ୍ୟୁତ୍ ଲୋକକୁ ଯାନ୍ତି, ସେଠାରୁ ଅମାନବ ପୁରୁଷଦ୍ୱାରା ବ୍ରହ୍ମ ପ୍ରାପ୍ତ ହୁଅନ୍ତି, ସୁତରାଂ ଆଉ ସେମାନଙ୍କର ପୁନର୍ଜନ୍ମ ହୁଏ ନାହିଁ ।

ଏହି ଅଧ୍ୟାୟର ଷୋଡଶ ଶ୍ଳୋକରେ 'ବ୍ରହ୍ମଲୋକ ଅବଧି ସମସ୍ତ ଲୋକରୁ ଜୀବ ସଂସାରକୁ ଫେରି ଆସେ' ବୋଲି ଯାହା ଲେଖା ହୋଇଅଛି, ତାହା ଯଜ୍ଞାଦି ଉପାୟଦ୍ୱାରା ଯେଉଁମାନେ ହିରଣ୍ୟଗର୍ଭ ଲୋକ ପର୍ଯ୍ୟନ୍ତ ଯାଉଥାନ୍ତି, ସେମାନେ ଭୋଗାବସାନରେ ସେଠାରୁ ଫେରି ଆସନ୍ତି ବୋଲି, ସେମାନଙ୍କ ପ୍ରତି ଲକ୍ଷ୍ୟ କରି ହୋଇଅଛି, ଅଥବା ଯେଉଁମାନେ ଧୂମାଦି ଅଭିମାନିନୀ ଦେବତାମାନଙ୍କ ଅଧିକୃତ ପଥରେ ଅର୍ଥାତ୍ ପିତୃଯାନ ମାର୍ଗରେ ଗତି କରନ୍ତି, ସେମାନେ ପୁନର୍ବାର ସଂସାରକୁ ପ୍ରତ୍ୟାବର୍ତ୍ତନ କରନ୍ତି ବୋଲି, ସେହିମାନଙ୍କୁ ଲକ୍ଷ୍ୟ କରି ଯାଇଅଛି । ମାତ୍ର ଯେଉଁମାନେ ବିଷୟ ତୃଷ୍ଣା ରହିତ ହୋଇ ଏକାନ୍ତ ଭକ୍ତିଦ୍ୱାରା ଅର୍ଚ୍ଚିରଭି-ମାନିନୀ ଦେବତା ପ୍ରଭୃତିଙ୍କୁ ପ୍ରାପ୍ତ ହୁଅନ୍ତି, ସେମାନେ କ୍ରମମୁକ୍ତି ଅନୁସାରେ ତତ୍ତତ୍ ଲୋକ ପର୍ଯ୍ୟନ୍ତ ଯାଇ ସେଠାରୁ ଅମାନବ ପୁରୁଷଦ୍ୱାରା ବ୍ରହ୍ମ ପ୍ରାପ୍ତ ହୁଅନ୍ତି, ବ୍ରହ୍ମ ପ୍ରାପ୍ତି ହେଲେ, ଆଉ ପୁନର୍ଜନ୍ମ ହୁଏ ନାହିଁ । ଦେବଯାନ ମାର୍ଗରେ ଅର୍ଚ୍ଚିଠାରୁ ବିଦ୍ୟୁତ୍ ଲୋକ ପର୍ଯ୍ୟନ୍ତ ଅନ୍ୟାନ୍ୟ ଦେବତାମାନଙ୍କର ଅଧିଷ୍ଠାନ ଥିବା ସ୍ଥଳେ, ଏ ଶ୍ଳୋକରେ କେବଳ ଅର୍ଚ୍ଚିଠାରୁ ଉତ୍ତରାୟଣା-ଭିମାନିନୀ ଦେବତା ପର୍ଯ୍ୟନ୍ତ ଅଛି, ତାହାର କାରଣ ଏହି, ଯେ କେବଳ ମାର୍ଗର ସୂଚନା ନିମିତ୍ତ ଅଳ୍ପ ଦେବତାଙ୍କର ନାମ ଦିଆ ଯାଇଅଛି, ମାତ୍ର ଯେଉଁମାନେ ମାର୍ଗର ବିବରଣ ଜାଣନ୍ତି, ସେମାନେ ଅନ୍ୟାନ୍ୟ ଦେବତା ଥିବାର ଅବଶ୍ୟ ବୁଝି ପାରିବେ । ବୋଧହୁଏ ଏହି ଶ୍ଳୋକ ଅନୁସାରେ ଉତ୍ତରାୟଣ ଶୁକ୍ଳପକ୍ଷ ଦିବସରେ ମରିବା ବ୍ୟକ୍ତିର ସଦ୍ଗତି ହୁଏ ବୋଲି ସାଧାରଣରେ ପ୍ରଚଳିତ ଅଛି । ଏହି ପ୍ରଚଳନ ଏତେ ପ୍ରାଚୀନ ଏବଂ ଏପରି ପ୍ରବଳ, ଯେ ଭୀଷ୍ମଦେବ ଶର-ଶଯ୍ୟାରେ ଶରୀର ତ୍ୟାଗ କରିବାକୁ ଉତ୍ତରାୟଣ ପର୍ଯ୍ୟନ୍ତ ଅପେକ୍ଷା କରିଥିଲେ ବୋଲି, ମହା-ଭାରତରେ ଉଲ୍ଲେଖ ଅଛି । ୨୪ ।

ଶ୍ଳୋକଃ ।

ଧୂମୋ ରାତ୍ରିସ୍ତଥା କୃଷ୍ଣଃ, ଷଣ୍ମାସା ଦକ୍ଷିଣାୟନଂ ।
ତତ୍ର ଚାନ୍ଦ୍ରମସଂ ଜ୍ୟୋତି,ର୍ଯୋଗୀ ପ୍ରାପ୍ୟ ନିବର୍ତ୍ତତେ । ୨୫ ।

ଅନ୍ୱୟଃ ।

(ଯତ୍ର) ଧୂମଃ ରାତ୍ରିଃ ତଥା କୃଷ୍ଣଃ ଷଣ୍ମାସାଃ ଦକ୍ଷିଣାୟନଂ, ତତ୍ର (ପ୍ରବୃତ୍ତଃ) ଯୋଗୀ ଚାନ୍ଦ୍ରମସଂ ଜ୍ୟୋତିଃ ପ୍ରାପ୍ୟ ନିବ-ର୍ତ୍ତତେ । ୨୫ ।

ଟୀକା ।

ଅବୃତ୍ତିମାର୍ଗମାହ । ଧୂମ ଇତି ଧୂମାଦିମାନିନୀ ଦେବତା । ଯଦ୍ୟପ୍ୟବଶବ୍ଦୈସ୍ତ ପୂର୍ବବଦେବ ରାତ୍ରି-କୃଷ୍ଣପକ୍ଷ-ଦକ୍ଷିଣାୟନ-ରୂପ-ଷଣ୍ମାସାଭିମାନିନ୍ୟସ୍ତିସ୍ରୋଦେବତା ଉପଲକ୍ଷ୍ୟନ୍ତେ । ଏତାଭିରୁପଲକ୍ଷିତୋଯୋମାର୍ଗସ୍ତତ୍ର ପ୍ରବୃତ୍ତଃ କର୍ମଯୋଗୀ ଚାନ୍ଦ୍ରମସଂ ଜ୍ୟୋତିସ୍ତଦୁପଲକ୍ଷିତଂ ସ୍ୱର୍ଗଲୋକଂ ପ୍ରାପ୍ୟ ତତ୍ରେଷ୍ଟାପୂର୍ତ୍ତ-କର୍ମଫଳଂ ଭୁକ୍ତ୍ୱା ପୁନରାବର୍ତ୍ତତେ । ତଥାପି ଶ୍ରୁତିଃ । "ତେ ଧୂମମଭିସମ୍ଭବନ୍ତି ଧୂମାଦ୍ରାତ୍ରିଂ ରାତ୍ରେରପକ୍ଷୀୟମାଣପକ୍ଷମପକ୍ଷୀୟମାଣପକ୍ଷାଦ୍ୟାନ୍ ଷଣ୍ମାସାନ୍ ଦକ୍ଷିଣାଦିତ୍ୟ ଏତି ମାସେଭ୍ୟଃ ପିତୃଲୋକଂ ପିତୃଲୋକାତ୍ ଚନ୍ଦ୍ରଂ । ତେ ଚନ୍ଦ୍ରଂ ପ୍ରାପ୍ୟାନ୍ନଂ ଭବନ୍ତୀତ୍ୟାଦି" । ତଦୈବ ନିବୃତ୍ତିକର୍ମସହିତୋ-ପାସନୟା କ୍ରମମୁକ୍ତିଃ କାମ୍ୟକର୍ମଭିସ୍ତୁ ସ୍ୱର୍ଗଭୋଗାନନ୍ତରମାବୃତ୍ତିଃ । ନିଷିଦ୍ଧକର୍ମଭିସ୍ତୁ ନରକଭୋଗାନନ୍ତରମାବୃତ୍ତିଃ । କ୍ଷୁଦ୍ର-କର୍ମଣାଂ ତୁ ଜନ୍ତୂନାଂ ଅତ୍ରୈବ ପୁନଃ ପୁନର୍ଜନ୍ମେତି ଦ୍ରଷ୍ଟବ୍ୟଂ । ୨୫ ।

### ପଦବ୍ୟାଖ୍ୟା ।

ଧୂମଃ—ଧୂମାଭିମାନିନୀ ଦେବତା, ରାତ୍ରିଃ—ରାତ୍ରି ଅଭିମାନିନୀ ଦେବତା, ତଥା—ସେହିପରି, କୃଷ୍ଣଃ—କୃଷ୍ଣପକ୍ଷାଭିମାନିନୀ ଦେବତା, ଷଣ୍ମାସାଃ ଦକ୍ଷିଣାୟନଂ—ଦକ୍ଷିଣାୟନ ଛମାସର ଅଭିମାନିନୀ ଦେବତା, (କର୍କଟଠାରୁ ଧନୁ ପର୍ଯ୍ୟନ୍ତ ଛମାସକୁ ଦକ୍ଷିଣାୟନ ବୋଲାଯାଏ), ତତ୍ର—ସେହି ମାର୍ଗରେ, ଚାନ୍ଦ୍ରମସଂ ଜ୍ୟୋତିଃ—ଚନ୍ଦ୍ରମାସମ୍ବନ୍ଧୀୟ ପ୍ରଭା ଅଥବା ସ୍ୱର୍ଗଲୋକ, ଯୋଗୀ—ସକାମ କର୍ମାନୁଷ୍ଠାନୀ, ପ୍ରାପ୍ୟ—ପ୍ରାପ୍ତ ହୋଇ, ନିବର୍ତ୍ତତେ—ନିବୃତ୍ତ ହୁଅନ୍ତି, ଅର୍ଥାତ୍ ତହିଁରୁ ଅଧିକ ଉତ୍ତମ ଲୋକକୁ ଗମନ କରିବାରୁ ନିବୃତ୍ତ ହୁଅନ୍ତି—ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି । ୨୫ ।

### ଅନୁବାଦ ।

(ଯେଉଁ ମାର୍ଗରେ) ଧୂମ, ରାତ୍ରି, କୃଷ୍ଣପକ୍ଷ ଓ ଦକ୍ଷିଣାୟନ ଛମାସାଦିର ଅଭିମାନିନୀ ଦେବତାମାନେ ଅଛନ୍ତି, କର୍ମଯୋଗୀ ସେହି ମାର୍ଗରେ ଗମନ କରି ସ୍ୱର୍ଗଲୋକ ପ୍ରାପ୍ତ ହୁଅନ୍ତି ଓ (ଭୋଗ ଶେଷରେ) ପୁନର୍ଜନ୍ମ ଲାଭ କରନ୍ତି । ୨୫ ।

### ବିଶଦବ୍ୟାଖ୍ୟା ।

ସଗୁଣ ଉପାସକମାନେ ଯେଉଁ ମାର୍ଗରେ ଗମନ କରି ବ୍ରହ୍ମପ୍ରାପ୍ତ ହୁଅନ୍ତି ଓ ପୁନରାବର୍ତ୍ତନରୁ ନିଷ୍କୃତି ଲାଭ କରନ୍ତି, ତାହା ପୂର୍ବଶ୍ଳୋକରେ ବୁଝାଇ ଦିଆ ଯାଇଅଛି, କିନ୍ତୁ ଯେଉଁ ମାର୍ଗରେ ଗମନ କରି ସକାମ କର୍ମାନୁଷ୍ଠାନମାନେ ସ୍ୱର୍ଗଠାରୁ ନିବୃତ୍ତ ହୁଅନ୍ତି, ସଂସାରରେ ପୁନର୍ବାର ଜନ୍ମଗ୍ରହଣ କରନ୍ତି, ସେହି ମାର୍ଗର କଥା ଏ ଶ୍ଳୋକରେ ବ୍ୟାଖ୍ୟା କରା ଯାଉଅଛି । ଶ୍ରୁତିରେ ପ୍ରମାଣ ଅଛି, ଯେ "ତେ ଧୂମମଭିସମ୍ଭବନ୍ତି ଧୂମାଦ୍ରାତ୍ରିଂ ରାତ୍ରେରପକ୍ଷୀୟମାଣପକ୍ଷମପକ୍ଷୀୟମାଣପକ୍ଷାଦ୍ୟାନ୍ ଷଣ୍ମାସାନ୍ ଦକ୍ଷିଣାଦିତ୍ୟ ଏତି । ମାସେଭ୍ୟଃ ପିତୃଲୋକଂ ପିତୃଲୋକାତ୍ ଚନ୍ଦ୍ରଂ" ଅର୍ଥାତ୍ ସକାମ କର୍ମଯୋଗିମାନେ ପ୍ରଥମରେ ଧୂମାଭିମାନିନୀ ଦେବତାଙ୍କୁ ପ୍ରାପ୍ତ ହୁଅନ୍ତି, ତହିଁଉତ୍ତାରୁ ରାତ୍ରିଅଭିମାନିନୀ ଦେବତାଙ୍କୁ, ତଦନନ୍ତର କୃଷ୍ଣପକ୍ଷାଭିମାନିନୀ ଦେବତାଙ୍କୁ ଏବଂ ତତ୍ପରେ ଦକ୍ଷିଣାୟନ ଷଣ୍ମାସର ଅଭିମାନିନୀ ଦେବତାଙ୍କୁ ପ୍ରାପ୍ତ ହୁଅନ୍ତି । (ଅୟନାଭିମାନିନୀ ଦେବତା ପରେ ସେମାନେ ଆଉ ସମ୍ବତ୍ସରାଭିମାନିନୀ ଦେବତାଙ୍କୁ ପ୍ରାପ୍ତ ହୋଇ ପାରନ୍ତି ନାହିଁ) ଦକ୍ଷିଣାୟନ ଛମାସର ଅଭିମାନିନୀ ଦେବତାଙ୍କ ପରେ ସେମାନେ ପିତୃଲୋକକୁ ଏବଂ ପିତୃଲୋକରୁ ଚନ୍ଦ୍ରଲୋକକୁ ପ୍ରାପ୍ତ ହୁଅନ୍ତି, ପୁଣି ଚନ୍ଦ୍ରଲୋକରୁ (ତେ ଚନ୍ଦ୍ରଂ ପ୍ରାପ୍ୟାନ୍ନଂ ଭବନ୍ତୀତି ଶ୍ରୁତେଃ) 'ଅନ୍ନ' ରୂପରେ ସଂସାରରେ ପଡ଼ି "ବୃଷ୍ଟେରନ୍ନଂ ତତଃ ପ୍ରଜାଃ" ଇତ୍ୟାଦି ବଚନ ଅନୁସାରେ ପ୍ରାଣିରୂପରେ ଜନ୍ମଗ୍ରହଣ କରନ୍ତି । ଅଥବା ଚନ୍ଦ୍ରଲୋକ ପୁଣ୍ୟ ଭୋଗର ସ୍ଥାନ ହୋଇ "ଚାନ୍ଦ୍ରମସଂ ଜ୍ୟୋତିଃ" ଏହି ବାକ୍ୟର ଅର୍ଥ ସ୍ୱର୍ଗଲୋକ; ଅର୍ଥାତ୍ ସକାମକର୍ମ ଯୋଗିମାନେ ପୂର୍ବୋକ୍ତ ମାର୍ଗରେ ସ୍ୱର୍ଗପ୍ରାପ୍ତ ହୋଇ, ଆପଣାର ପୂର୍ବକୃତ ଯାଗ ଓ ଦାନ ପ୍ରଭୃତି (ଇଷ୍ଟ ଓ ପୂର୍ତ୍ତ) କର୍ମର ଫଳ ସେଠାରେ ଭୋଗ କରି, ଭୋଗଶେଷରେ ପୁନର୍ବାର ବାସନାରୂପ ସୂତ୍ର ଅବଲମ୍ବନ କରି ସଂସାରରେ ଜନ୍ମଗ୍ରହଣ କରନ୍ତି । ଏହି ମାର୍ଗରେ ଅୟନାଭିମାନିନୀ ଦେବତା ଉତ୍ତାରୁ ପିତୃଲୋକ ଥିବାରୁ ଏହାକୁ "ପିତୃଯାନ" ମାର୍ଗ ବୋଲାଯାଏ । ଫଳରେ ଏହା ଦେବଯାନମାର୍ଗ ଅପେକ୍ଷା ନିକୃଷ୍ଟ ଅଟେ । ପିତୃଯାନ ମାର୍ଗରେ ଚନ୍ଦ୍ରଲୋକ

ପର୍ଯ୍ୟନ୍ତ ଉକ୍ତ ୨ ଦେବତା ଥିଲେ ହେଁ, କେବଳ ମାର୍ଗର ସୂଚନାପାଇଁ ଦକ୍ଷିଣାୟନାଭିମାନୀ ଦେବତାଯାଏ ଏ ଶ୍ଳୋକରେ ଦିଆ ଯାଇଅଛି । ବୋଧହୁଏ ଏହି ଶ୍ଳୋକ ଅନୁସାରେ ସାଧାରଣରେ ପ୍ରଚଳିତ ଅଛି, ଯେ ଦକ୍ଷିଣାୟନ, କୃଷ୍ଣପକ୍ଷ ଓ ରାତ୍ରିକାଳରେ ମୃତ ବ୍ୟକ୍ତିର ପୁନର୍ଜନ୍ମ ହୁଏ ଇତ୍ୟାଦି । ୨୫ ।

ଶ୍ଳୋକଃ ।

ଶୁକ୍ଳକୃଷ୍ଣେ ଗତୀ ହ୍ୟେତେ, ଜଗତଃ ଶାଶ୍ୱତେ ମତେ ।
ଏକୟା ଯାତ୍ୟନାବୃତ୍ତିଂ, ଅନ୍ୟୟାବର୍ତ୍ତତେ ପୁନଃ । ୨୬ ।

ଅନ୍ୱୟଃ ।

ଏତେ ଶୁକ୍ଳକୃଷ୍ଣେ ଗତୀ ହି ଜଗତଃ ଶାଶ୍ୱତେ ମତେ, ଏକୟା ଅନାବୃତ୍ତିଂ ଯାତି, ଅନ୍ୟୟା ପୁନଃ ଆବର୍ତ୍ତତେ । ୨୬ ।

ଟୀକା ।

ଉକ୍ତମାର୍ଗଦ୍ୱୟମୁପସଂହରତି । ଶୁକ୍ଳେତି । ଶୁକ୍ଳାର୍ଚ୍ଚିରାଦିଗତିଃ ପ୍ରକାଶମୟତ୍ୱାତ୍ କୃଷ୍ଣା ଧୂମାଦିଗତିସ୍ତମୋମୟତ୍ୱାତ୍ । ଏତେ ଗତୀ ମାର୍ଗୌ ଜ୍ଞାନକର୍ମାଧିକାରିଣୋଜଗତଃ ଶାଶ୍ୱତେ ଅନାଦି ମତେ ସଂସାରସ୍ୟାନାଦିତ୍ୱାତ୍ ତତ୍ରୈକୟା ଶୁକ୍ଳୟାନାବୃତ୍ତିଂ ମୋକ୍ଷଂ ଯାତି, ଅନ୍ୟୟା କୃଷ୍ଣୟା ତୁ ପୁନରାବର୍ତ୍ତତେ । ୨୬ ।

ପଦବ୍ୟାଖ୍ୟା ।

ଶୁକ୍ଳକୃଷ୍ଣେ—ଶୁକ୍ଳ ଓ କୃଷ୍ଣ (ଦେବଯାନ ଓ ପିତୃଯାନ), ଗତୀ—ମାର୍ଗଦ୍ୱୟ, ହି—ନିଶ୍ଚୟ, ଏତେ—ଏହି, ଶାଶ୍ୱତେ—ଚିରକାଳ ସିଦ୍ଧ, ଜଗତଃ—ସଂସାରର, ମତେ—ଅଭିମତ—ସମ୍ମତ, ଏକୟା—ଗୋଟିକଦ୍ୱାରା (ଶୁକ୍ଳ ବା ଦେବଯାନରେ) ଯାତି—ପ୍ରାପ୍ତ ହୁଅନ୍ତି, ଅନାବୃତ୍ତିଂ—ମୁକ୍ତିକୁ, ଅନ୍ୟୟା—ଅନ୍ୟଟିଦ୍ୱାରା (କୃଷ୍ଣ ବା ପିତୃଯାନରେ), ଆବର୍ତ୍ତତେ—ସଂସାରରେ ପ୍ରବୃତ୍ତ ହୁଅନ୍ତି ଅର୍ଥାତ୍ ଜନ୍ମଗ୍ରହଣ କରନ୍ତି, ପୁନଃ—ପୁନର୍ବାର । ୨୬ ।

ଅନୁବାଦ ।

ଶୁକ୍ଳ ଓ କୃଷ୍ଣ ଏ ଦୁଇଟି ମାର୍ଗ ଜଗତରେ ବହୁକାଳରୁ ପ୍ରସିଦ୍ଧ ଅଛି । ତହିଁ ମଧ୍ୟରୁ ଗୋଟିକ (ଶୁକ୍ଳ)ରେ ମୁକ୍ତି ଓ ଅନ୍ୟଟି (କୃଷ୍ଣ)ରେ ପୁନର୍ଜନ୍ମ ଲାଭ କରାଏ । ୨୬ ।

ବିଶଦବ୍ୟାଖ୍ୟା ।

ଅଗ୍ନି ଜ୍ୟୋତିଃ ଇତ୍ୟାଦି ଦେବଯାନ ମାର୍ଗ 'ଶୁକ୍ଳ,' କାହିଁକି ନା ତାହା ପ୍ରକାଶମୟ ଓ ଉଜ୍ଜ୍ୱଳ ଅଟେ, ଏବଂ ସେହିହେତୁରୁ ତାହା ଜ୍ଞାନୀମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଅଛି । ସେ ମାର୍ଗରେ ଗମନ କଲେ, ଆଉ ସଂସାରକୁ ଫେରି ଆସିବାକୁ ହୁଏ ନାହିଁ । ଧୂମ ଓ ରାତ୍ରି ଇତ୍ୟାଦି ପିତୃଯାନ ମାର୍ଗ 'କୃଷ୍ଣ', କାହିଁକି ନା ତାହା ଅଜ୍ଞାନ ଓ ଭୋଗଯୁକ୍ତ ଥିବାରୁ ତମୋମୟ ଅଟେ, ସେଥିରେ ଗମନ କରିବା ସକାମ କର୍ମୀମାନେ ସଂସାରରେ ପୁନର୍ଜନ୍ମଗ୍ରହଣ କରନ୍ତି, ଯେହେତୁ ଉକ୍ତ ମାର୍ଗରେ ସେମାନଙ୍କର ଜ୍ଞାନର ବିକାଶ ହୋଇ ପାରେ ନାହିଁ ।

ଫଳକଥା ଏହି କି ଜ୍ଞାନୀ ଏକାନ୍ତ ଭକ୍ତିଯୁକ୍ତ ଚିତ୍ତରେ ସଗୁଣ [illegible]ର ଉପାସନା କରନ୍ତି ଓ କାମନାରହିତ ଥିବାରୁ ଜ୍ଞାନମୟ ଦେବଯାନ ମାର୍ଗରେ ଗତି କରି ବ୍ରହ୍ମ ପ୍ରାପ୍ତ ହୁଅନ୍ତି,

Digitized by PPRACHIN, SOA

ଆଉ ସକାମକର୍ମୀ ଭୋଗାଭିଳାଷୀ ଥିବାରୁ ଭୋଗ ଓ ଅଜ୍ଞାନମୟ ପିତୃଯାନ ମାର୍ଗରେ ଗତି କରି ସ୍ୱର୍ଗାଦି ସୁଖ ଭୋଗ ଶେଷରେ ସଂସାରରେ ପୁନର୍ବାର ଜନ୍ମଗ୍ରହଣ କରନ୍ତି । ୨୬ ।

ଶ୍ଲୋକଃ ।

ନୈତେ ସୃତୀ ପାର୍ଥ ଜାନନ୍, ଯୋଗୀ ମୁହ୍ୟତି କଶ୍ଚନ ।
ତସ୍ମାତ୍ସର୍ବେଷୁ କାଳେଷୁ, ଯୋଗଯୁକ୍ତୋଭବାର୍ଜୁନ ॥

ଅନ୍ୱୟଃ ।

ହେ ପାର୍ଥ! ଏତେ ସୃତୀ ଜାନନ୍ କଶ୍ଚନ ଯୋଗୀ ନ ମୁହ୍ୟତି । ତସ୍ମାତ୍ ହେ ଅର୍ଜ୍ଜୁନ! ତ୍ୱଂ ସର୍ବେଷୁ କାଳେଷୁ ଯୋଗଯୁକ୍ତଃ ଭବ । ୨୭ ।

ଟୀକା ।

ମାର୍ଗଜ୍ଞାନଫଳଂ ଦର୍ଶୟନ୍ ଭକ୍ତିଯୋଗମୁପସଂହରତି । ନୈତେ ଇତି । ଏତେ ସୃତୀ ମାର୍ଗୌ ମୋକ୍ଷସଂସାର-ପ୍ରାପକୌ ଜାନନ୍ କଶ୍ଚିଦପି ଯୋଗୀ ନ ମୁହ୍ୟତି ସୁଖବୁଦ୍ଧ୍ୟା ସ୍ୱର୍ଗାଦିଫଳଂ ନ କାମୟତେ । କିନ୍ତୁ ପରମେଶ୍ୱରନିଷ୍ଠ ଏବ ଭବତୀତ୍ୟର୍ଥଃ । ସ୍ପଷ୍ଟମନ୍ୟତ୍ । ୨୭ ।

ପଦବ୍ୟାଖ୍ୟା ।

ନ—ନାହିଁ, ଏତେ—ଏହି, ସୃତୀ—ମାର୍ଗ ଦ୍ୱୟକୁ, ପାର୍ଥ—ହେ ଅର୍ଜ୍ଜୁନ!, ଜାନନ୍—ଜାଣିଲେ, ଯୋଗୀ—ଯୋଗାଭ୍ୟାସୀ (ଜ୍ଞାନଯୋଗୀ), ମୁହ୍ୟତି—ମୋହପ୍ରାପ୍ତ ହୁଅନ୍ତି, କଶ୍ଚନ—କୌଣସି, ତସ୍ମାତ୍—ସେହିହେତୁରୁ, ସର୍ବେଷୁ କାଳେଷୁ—ସବୁ କାଳରେ, ଯୋଗଯୁକ୍ତଃ—ଯୋଗୀ, ଭବ—ହୁଅ, ଅର୍ଜ୍ଜୁନ— ହେ ଅର୍ଜ୍ଜୁନ! ୨୭ ।

ଅନୁବାଦ ।

ହେ ପୃଥାପୁତ୍ର ଅର୍ଜ୍ଜୁନ! ଏହି (ପୂର୍ବୋକ୍ତ) ମାର୍ଗ ଦ୍ୱୟକୁ ଜାଣିଲେ, କୌଣସି ଯୋଗୀ ମୋହପ୍ରାପ୍ତ ହୁଅନ୍ତି ନାହିଁ । ଅତଏବ ତୁମ୍ଭେ ସର୍ବଦା ଯୋଗଯୁକ୍ତ ହୁଅ । ୨୭ ।

ବିଶଦବ୍ୟାଖ୍ୟା ।

ଦେବଯାନ ମାର୍ଗ ଜ୍ଞାନମୟ ଓ ମୁକ୍ତିପ୍ରଦ, ଏବଂ ପିତୃଯାନ ମାର୍ଗ ତମୋମୟ ଓ ସଂସା-ରର ପୁନଃ ପ୍ରବର୍ତ୍ତକ; ଏହା ଜାଣି ସଗୁଣ ଯୋଗୀ ବ୍ୟକ୍ତି, କଦାପି ସଂସାର ପ୍ରବର୍ତ୍ତକ ପିତୃଯାନ ମାର୍ଗର ସ୍ୱର୍ଗାଦି ସୁଖରେ ମୋହିତ ହୁଅନ୍ତି ନାହିଁ । କେବଳ ଯୋଗ ବଳରେ ସେ-ମାନେ ଦେବଯାନ ମାର୍ଗର ପଥିକ ହୁଅନ୍ତି । ଅତଏବ ହେ ଅର୍ଜ୍ଜୁନ! ତୁମ୍ଭେ ଯୋଗଯୁକ୍ତ ହୁଅ ଅର୍ଥାତ୍ ସ୍ୱର୍ଗାଦି ଅନିତ୍ୟ ଫଳ କାମନା ତ୍ୟାଗ କରି ଏକାନ୍ତ ଭକ୍ତିଯୁକ୍ତ ଚିତ୍ତରେ ସଗୁଣ ବ୍ରହ୍ମଙ୍କର ଉପାସନା କରି ଦେବଯାନ ମାର୍ଗର ପଥିକ ହେବାକୁ ଚେଷ୍ଟା କର । ୨୭ ।

ଶ୍ଲୋକଃ ।

ବେଦେଷୁ ଯଜ୍ଞେଷୁ ତପଃସୁ ଚୈବ, ଦାନେଷୁ ଯତ୍ ପୁଣ୍ୟଫଳଂ ପ୍ରଦିଷ୍ଟଂ ।
ଅତ୍ୟେତି ତତ୍ସର୍ବମିଦଂ ବିଦିତ୍ୱା, ଯୋଗୀ ପରଂ ସ୍ଥାନମୁପୈତି ଚାଦ୍ୟଂ । ୨୮ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗ-

Digitized by PPRACHIN, SOA

ବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସମ୍ବାଦେ ତାରକବ୍ରହ୍ମଯୋଗୋ-
ନାମ ଅଷ୍ଟମୋଽଧ୍ୟାୟଃ ।୮।

---

## ଅନ୍ୱୟଃ ।

(ନରଃ) ଇଦଂ ବିଦିତ୍ୱା ବେଦେଷୁ, ଯଜ୍ଞେଷୁ, ଚ ତପଃସୁ ଚ ଦାନେଷୁ ଯତ୍ ପୁଣ୍ୟଫଳଂ ପ୍ରଦିଷ୍ଟଂ ତତ୍ ସର୍ବ୍ବଂ
ଅତ୍ୟେତି ଚ ଯୋଗୀ (ଭୂତ୍ୱା) ପରଂ ଆଦ୍ୟଂ ସ୍ଥାନଂ ଉପୈତି । ୨୮ ।

ଇତି ଶ୍ରୀଭଗବଦ୍‌ଗୀତାୟାଂ ଅନ୍ୱୟେ ଅଷ୍ଟମୋଽଧ୍ୟାୟଃ । ୮।

---

## ଟୀକା ।

ଅଧ୍ୟାୟୋକ୍ତମର୍ଥମଷ୍ଟ-ପ୍ରଶ୍ନାର୍ଥ-ନିର୍ଣ୍ଣୟଂ ସଫଳମୁପସଂହରତି । ବେଦେଷ୍ୱିତି । ବେଦେଷୁ ଅଧ୍ୟୟନାଦିଭିଃ, ଯଜ୍ଞେଷୁ ଅନୁଷ୍ଠାନାଦିଭିଃ, ତପଃସୁ କାୟଶୋଷଣାଦିଭିଃ, ଦାନେଷୁ ସତ୍ପାତ୍ରେଽର୍ପଣାଦିଭିଃ; ଯତ୍ ପୁଣ୍ୟଫଳମୁପଦିଷ୍ଟଂ ଶାସ୍ତ୍ରେଷୁ ତତ୍ ସର୍ବମତ୍ୟେତି ତତୋଽପି ଶ୍ରେଷ୍ଠଂ ଯୋଗୈଶ୍ୱର୍ଯ୍ୟଂ ପ୍ରାପ୍ନୋତି କିଂ କୃତ୍ୱା ଇଦମଷ୍ଟପ୍ରଶ୍ନାର୍ଥ-ନିର୍ଣ୍ଣୟେନୋକ୍ତଂ ତତ୍ତ୍ୱଂ ବିଦିତ୍ୱା ତତଶ୍ଚ ଯୋଗୀ ଜ୍ଞାନୀ ଭୂତ୍ୱା ପରମୁତ୍କୃଷ୍ଟଂ ଆଦ୍ୟଂ ଜଗନ୍ମୂଳଭୂତଂ ସ୍ଥାନଂ ବିଷ୍ଣୋଃ ପଦଂ ପ୍ରାପ୍ନୋତି । ୨୮ ।

ଅଷ୍ଟମେଽଷ୍ଟ-ବିଶିଷ୍ଟେଷ୍ଟ-ସଂପୃଷ୍ଟାର୍ଥ-ବିନିର୍ଣ୍ଣୟୈଃ ।
ଅକ୍ଲିଷ୍ଟମିଷ୍ଟ-ଧୀମାପ୍ତିଃ ସ୍ପଷ୍ଟିତୋତ୍କୃଷ୍ଟବର୍ତ୍ମନା ।
ଇତି ସ୍ୱାମିକୃତଟୀକାୟାଂ ଅଷ୍ଟମୋଽଧ୍ୟାୟଃ ସମାପ୍ତଃ । ୮ ।

---

## ପଦବ୍ୟାଖ୍ୟା ।

ବେଦେଷୁ—ସମସ୍ତ ବେଦରେ, ଯଜ୍ଞେଷୁ—ସମୁଦାୟ ଯଜ୍ଞରେ, ତପଃସୁ ଚ—ସର୍ବ ପ୍ରକାର ତପସ୍ୟାରେ ମଧ୍ୟ, ଏବଂ—ନିଶ୍ଚୟ, ଦାନେଷୁ—ସକଳ ଦାନରେ, ଯତ୍ ପୁଣ୍ୟଫଳଂ ପ୍ରଦିଷ୍ଟଂ—ଯେଉଁ ପୁଣ୍ୟ ଲାଭର କଥା କଥିତ ହୋଇ ଅଛି, ଅତ୍ୟେତି—ଅତିକ୍ରମ କରନ୍ତି ଅର୍ଥାତ୍ ତଦପେକ୍ଷା ଶ୍ରେଷ୍ଠ ଫଳ ଲାଭ କରନ୍ତି, ତତ୍ ସର୍ବଂ—ସେହି ସବୁ (ପୁଣ୍ୟ ଫଳକୁ), ଇଦଂ—ଏହା (ତତ୍ତ୍ୱ), ବିଦିତ୍ୱା—ଜାଣି କରି, ଯୋଗୀ—ଯୋଗାଭ୍ୟାସୀ, ପରଂ—ଉତ୍କୃଷ୍ଟ, ସ୍ଥାନଂ—ପଦକୁ, ଉପୈତି—ପ୍ରାପ୍ତ ହୁଅନ୍ତି, ଚ—ଏବଂ, ଆଦ୍ୟଂ—ମୂଳ କାରଣ । ୨୮ ।

ଇତି ଶ୍ରୀଭଗବଦ୍‌ଗୀତା-ପଦବ୍ୟାଖ୍ୟାୟାଂ ଅଷ୍ଟମୋଽଧ୍ୟାୟଃ ସମାପ୍ତଃ । ୮ ।

---

## ଅନୁବାଦ ।

ସମସ୍ତ ବେଦ, ଯଜ୍ଞ, ତପସ୍ୟା ଓ ଦାନରେ ଯେଉଁ ପୁଣ୍ୟ ଫଳ କଥିତ ଅଛି, ଧ୍ୟାନନିଷ୍ଠ ଯୋଗୀ ଏହି ଅଧ୍ୟାୟରେ ଉକ୍ତ ତତ୍ତ୍ୱ ଜାଣିଲେ, ସେହି ସବୁ ଫଳ ଅତିକ୍ରମ କରି ଜଗତର କାରଣସ୍ୱରୂପ, ଯେ ସର୍ବୋତ୍କୃଷ୍ଟ ସ୍ଥାନ, ତାକୁ ଲାଭ କରନ୍ତି । ୨୮ ।

ଇତି ଶ୍ରୀଭଗବଦ୍‌ଗୀତାର ଉତ୍କଳ ଅନୁବାଦରେ ଅଷ୍ଟମ ଅଧ୍ୟାୟ ସମାପ୍ତ । ୮ ।

---

## ବିଶଦବ୍ୟାଖ୍ୟା ।

ସମସ୍ତ ବେଦ ଶ୍ରଦ୍ଧାପୂର୍ବକ ଅଧ୍ୟୟନ କଲେ, ଶାସ୍ତ୍ର ବିଧି ଅନୁସାରେ ଅଶ୍ୱମେଧାଦି ସମସ୍ତ ଯଜ୍ଞ ସମ୍ପୂର୍ଣ୍ଣରୂପେ ଅନୁଷ୍ଠାନ କଲେ, ପୁଣି କୃଚ୍ଛ୍ରଚାନ୍ଦ୍ରାୟଣ ଓ ପଞ୍ଚାଗ୍ନି ପ୍ରଭୃତି ସମସ୍ତ ତପସ୍ୟା

Digitized by PPRACHIN, SOA

ସାଧନ କଲେ, ଏବଂ ଦେଶ, କାଳ ଓ ପାତ୍ର ଅନୁସାରେ ବିଧିପୂର୍ବକ ଗୋ, ସୁବର୍ଣ୍ଣ ଓ ଭୂମି ପ୍ରଭୃତି ଦାନ କଲେ, ଯେଉଁ ପୁଣ୍ୟ ଫଳ ଲାଭ ହୁଏ ବୋଲି ଶାସ୍ତ୍ରରେ କଥିତ ଅଛି, ଯୋଗି-ବ୍ୟକ୍ତି, ସେ ସମସ୍ତ ଫଳକୁ ଅତିକ୍ରମ କରି ତାହା ଅପେକ୍ଷା ଅଧିକ ଫଳ ଲାଭ କରନ୍ତି ; ଅର୍ଥାତ୍ ଏ ଅଧ୍ୟାୟରେ ଯେଉଁ ଅଷ୍ଟ* ପ୍ରଶ୍ନର ଉତ୍ତର ଦିଆ ଯାଇଅଛି, ତାହା ଦ୍ୱାରା ଓ ଦେବଯାନ ଏବଂ ପିତୃଯାନ ମାର୍ଗର ବିବରଣଦ୍ୱାରା ତତ୍ତ୍ୱ କଥା ଜାଣି ପାରିବାରୁ ସମସ୍ତ କାରଣର ମୂଳସ୍ୱରୂପ ଯେଉଁ ସର୍ବୋତ୍କୃଷ୍ଟ ସ୍ଥାନ ଅର୍ଥାତ୍ ବିଷ୍ଣୁଙ୍କର ପରମପଦ, ତାହାକୁ ଲାଭ କରନ୍ତି, ଅର୍ଥାତ୍ ବ୍ରହ୍ମ ପ୍ରାପ୍ତ ହୁଅନ୍ତି ।

ଏ ଅଧ୍ୟାୟରେ 'ତତ୍' ପଦବାଚ୍ୟ ପରମାତ୍ମାଙ୍କୁ 'ଧ୍ୟେୟ' ରୂପରେ ବ୍ୟାଖ୍ୟା କରା ଯାଇଅଛି । ୨୮ ।

ଇତି ଶ୍ରୀଭଗବଦ୍‌ଗୀତାର ବିଶଦବ୍ୟାଖ୍ୟାରେ ଅଷ୍ଟମ ଅଧ୍ୟାୟ ସମାପ୍ତ । ୮ ।

---

* ୧ ବ୍ରହ୍ମ, ୨ ଅଧ୍ୟାତ୍ମ, ୩ କର୍ମ, ୪ ଅଧିଭୂତ, ୫ ଅଧିଦୈବ, ୬ ଅଧିଯଜ୍ଞ କିଏ, ୭ ସେ କିପରି ଏ ଦେହ-ରେ ରହନ୍ତି, ୮ ମରଣ ସମୟରେ ଯୋଗିମାନେ କିପରି ଆପଣଙ୍କୁ ଜାଣି ପାରନ୍ତି, ଏହି ଆଠ ପ୍ରଶ୍ନର ଉତ୍ତର ଏ ଅଧ୍ୟାୟରେ ଦିଆ ଯାଇଅଛି, ଅର୍ଥାତ୍ ଏହି ଅଧ୍ୟାୟର ୩ୟ ଶ୍ଳୋକରେ ପ୍ରଥମ ତିନି ପ୍ରଶ୍ନର, ଚତୁର୍ଥ ଶ୍ଳୋକରେ ଚତୁର୍ଥଠାରୁ ସପ୍ତମ ପର୍ଯ୍ୟନ୍ତ ପ୍ରଶ୍ନମାନଙ୍କର ଉତ୍ତର ଦିଆ ଯାଇଅଛି, ଏବଂ ଅଷ୍ଟମ ପ୍ରଶ୍ନର ଉତ୍ତର ପଞ୍ଚମ ଶ୍ଳୋକଠାରୁ ଅଧ୍ୟାୟ ସମାପ୍ତି ପର୍ଯ୍ୟନ୍ତ ବ୍ୟାଖ୍ୟା କରି ହୋଇଅଛି ।

Digitized by PPRACHIN, SOA

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ନବମୋଽଧ୍ୟାୟଃ ।

### ରାଜଗୁହ୍ୟ-ଯୋଗଃ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—ଇଦଂ ତୁ ତେ ଗୁହ୍ୟତମଂ, ପ୍ରବକ୍ଷ୍ୟାମ୍ୟନସୂୟବେ ।
ଜ୍ଞାନଂ ବିଜ୍ଞାନସହିତଂ, ଯଜ୍ଜ୍ଞାତ୍ୱା ମୋକ୍ଷ୍ୟସେଽଶୁଭାତ୍ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ଇଦଂ ତୁ ଗୁହ୍ୟତମଂ ବିଜ୍ଞାନସହିତଂ ଜ୍ଞାନଂ ଅନସୂୟବେ ତେ ପ୍ରବକ୍ଷ୍ୟାମି, ଯତ୍ ଜ୍ଞାତ୍ୱା ଅଶୁଭାତ୍ ମୋକ୍ଷ୍ୟସେ । ୧ ।

ଟୀକା ।

ପରେଶଃ ପ୍ରାପ୍ୟତେ ଶୁଦ୍ଧଭକ୍ତ୍ୟେତି ସ୍ଥିତମଷ୍ଟମେ ।
ନବମେ ତୁ ତଦୈଶ୍ୱର୍ଯ୍ୟମତ୍ୟାଶ୍ଚର୍ଯ୍ୟଂ ପ୍ରପଞ୍ଚ୍ୟତେ ।

ଏବ ତାବତ୍ ସପ୍ତମାଷ୍ଟମୟୋଃ ସ୍ୱୀୟପରମେଶ୍ୱରତତ୍ତ୍ୱଂ ଭକ୍ତ୍ୟୈବ ସୁଲଭଂ ନାନ୍ୟଥେତ୍ୟୁକ୍ତମିଦାନୀମତ୍ୟନ୍ତଂ ସ୍ୱଗାମ୍ଭୀର୍ଯ୍ୟମୈଶ୍ୱର୍ଯ୍ୟଂ ଭକ୍ତେଶ୍ଚାସାଧାରଣପ୍ରଭାବ ପ୍ରପଞ୍ଚୟିଷ୍ୟନ୍ ଶ୍ରୀଭଗବାନୁବାଚ, ଇଦମିତି । ବିଶେଷେଣ ଜ୍ଞାୟତେ ଅନେନେତି ବିଜ୍ଞାନମୁପାସନଂ ତତ୍ସହିତଂ ଜ୍ଞାନମୀଶ୍ୱରବିଷୟମିଦଂ ତୁ ତେଽନସୂୟବେ ପୁନଃ ପୁନଃ ସ୍ୱମାହାତ୍ମ୍ୟମେବୋପଦିଶତୀତ୍ୟେବ ପରମକାରୁଣିକେ ମୟି ଦୋଷଦୃଷ୍ଟିରହିତାୟ ତୁଭ୍ୟଂ ବକ୍ଷ୍ୟାମି, ତୁ ଶବ୍ଦୋ ବୈଶିଷ୍ଟ୍ୟେ ତଦେବାହ ଗୁହ୍ୟତମମିତ୍ୟାଦିନା, ଗୁହ୍ୟଂ ଧର୍ମଜ୍ଞାନଂ ତତୋଽପ୍ୟଧିକଂ ତଦଦ୍ୱୈତାତ୍ମଜ୍ଞାନଂ ଗୁହ୍ୟତରଂ ତତୋଽପି ପରମାତ୍ମଜ୍ଞାନମତିରହସ୍ୟତ୍ୱାଦ୍‌ଗୁହ୍ୟତମଂ ଯଜ୍ଜ୍ଞାତ୍ୱା ଅଶୁଭାତ୍ ସଂସାରବନ୍ଧନାନ୍ମୋକ୍ଷ୍ୟସେ ସଦ୍ୟ ଏବ ମୁକ୍ତୋ ଭବିଷ୍ୟସି । ୧ ।

ପଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ଉବାଚ—ଶ୍ରୀଭଗବାନ୍ କହିଲେ, ଇଦଂ ତୁ—ଏହା ପୁଣି, ତେ—ତୁମ୍ଭଙ୍କୁ, ଗୁହ୍ୟତମଂ—ଅତିଶୟ ଗୁପ୍ତ, ପ୍ରବକ୍ଷ୍ୟାମି—କହିବି, ଅନସୂୟବେ—ଅଦୋଷଦର୍ଶୀ, ଜ୍ଞାନଂ—ପରମାତ୍ମଜ୍ଞାନ, ବିଜ୍ଞାନସହିତଂ—ଉପାସନାର ସହିତ, ଯତ୍ ଜ୍ଞାତ୍ୱା—ଯାହା ଜାଣିଲେ, ମୋକ୍ଷ୍ୟସେ—ମୁକ୍ତ ହେବ, ଅଶୁଭାତ୍—ଜନ୍ମମରଣରୂପ ଅମଙ୍ଗଳରୁ । ୧ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ (ହେ ଅର୍ଜୁନ !) ତୁମ୍ଭେ ଆମ୍ଭର ଦୋଷଦର୍ଶୀ ନୁହ, ସେଥିପାଇଁ

Digitized by PPRACHIN, SOA

ତୁମ୍ଭଙ୍କୁ ଏହି ଅତି ଗୋପନୀୟ ବିଜ୍ଞାନପୂର୍ଣ୍ଣ ଜ୍ଞାନତତ୍ତ୍ୱ କହିବୁଁ, ଯାହା ଜାଣିଲେ ତୁମ୍ଭେ ସଂସାର ବନ୍ଧନରୁ ମୁକ୍ତ ହେବ । ୧ ।

ବିଶଦବ୍ୟାଖ୍ୟା ।

ଅଷ୍ଟମ ଅଧ୍ୟାୟରେ ଯୋଗ ସାଧନଦ୍ୱାରା ଭ୍ରୂଲତାଦ୍ୱୟର ମଧ୍ୟସ୍ଥାନରେ ସୁଷୁମ୍ନା ନାଡ଼ୀଦ୍ୱାରା ପ୍ରାଣବାୟୁକୁ ଉପରେ ସ୍ଥିର ରଖିଲେ, ବ୍ରହ୍ମ ପ୍ରାପ୍ତି ହୁଏ, ତାହା ଓ ଦେବଯାନ ମାର୍ଗରେ ବିଦ୍ୟୁତ ଲୋକକୁ ଯାଇ ସେଠାରୁ ଅମାନବ ପୁରୁଷଦ୍ୱାରା ଉପରେ ବ୍ରହ୍ମ ଲାଭ କରାଯାଏ, ତାହା ବିସ୍ତାରିତରୂପେ କୁହା ଯାଇଅଛି ଏବଂ ସେହି ଅଧ୍ୟାୟ ଶେଷରେ ଏକାନ୍ତ ଭକ୍ତିଯୁକ୍ତ ଚିତ୍ତରେଂ ସ୍ମରଣ କଲେ, ଆମ୍ଭଙ୍କୁ ସହଜରେ ଲାଭ କରା ଯାଇପାରେ, ଇତ୍ୟାଦି କଥା ଶ୍ରୀଭଗବାନ୍ କହିଥିଲେ । ଯୋଗ ସାଧନରେ ବହୁ କ୍ଳେଶ ଓ ଜନ୍ମଜନ୍ମାନ୍ତରେ ସିଦ୍ଧିଲାଭ ହୁଏ ଏବଂ ଦେବଯାନ ମାର୍ଗରେ ଗତି କରି ବ୍ରହ୍ମଲାଭ କରିବା ମଧ୍ୟ ବହୁ କାଳରେ ସିଦ୍ଧ ହୁଏ, କେବଳ ଭଗବତ୍‌ତତ୍ତ୍ୱ ଜାଣିଲେ ଓ ତାଙ୍କଠାରେ ଭକ୍ତି କଲେ ସହଜରେ ବ୍ରହ୍ମତ୍ୱ ଲାଭ ହୁଏ, ସେହି ପରମାତ୍ମ ତତ୍ତ୍ୱ ଓ ଭକ୍ତିର ଅସାଧାରଣ ଶକ୍ତି ବିଶେଷରୂପେ ବର୍ଣ୍ଣନ କରିବାକୁ ନବମ ଅଧ୍ୟାୟ ଆରମ୍ଭ କରି ଶ୍ରୀଭଗବାନ୍ କହୁଅଛନ୍ତି, କି ଏହି ଜ୍ଞାନତତ୍ତ୍ୱ ଅତ୍ୟନ୍ତ ଗୋପନୀୟ ଅଟେ, ମାତ୍ର ଆମ୍ଭେ ତୁମ୍ଭଙ୍କୁ ବାରମ୍ବାର ଆତ୍ମା ଓ ପରମାତ୍ମାଙ୍କ ତତ୍ତ୍ୱ କହିବାରେ, ତୁମ୍ଭେ କେବେହେଁ ଆମ୍ଭପ୍ରତି ଅସୂୟା କରି ନ ଥିବା ଅର୍ଥାତ୍ ଦୋଷ ଦେଇ ନ ଥିବାରୁ ଅଥବା ନିନ୍ଦା କରି ନ ଥିବାରୁ ପ୍ରକୃତ ଜ୍ଞାନାଧିକାରୀ ହୋଇଅଛ ବୋଲି, ଆମ୍ଭେ ତୁମ୍ଭଙ୍କୁ ଏହି ଜ୍ଞାନତତ୍ତ୍ୱ ବିସ୍ତୃତରୂପେ କହିବା । କେବଳ, ଯେ ଜ୍ଞାନବିଷୟରେ କେତେକ ଶାସ୍ତ୍ରୀୟ ପ୍ରମାଣ ଦେଇ ବକ୍ତୃତା କରିବା, ତାହା ନୁହେ, ବିଜ୍ଞାନ ସହିତରେ କହିବା ଅର୍ଥାତ୍ ପରମାତ୍ମ ବିଷୟ ତୁମ୍ଭଙ୍କୁ ଅନୁଭବ କରାଇଦେବା, ପରମାତ୍ମାନୁଭବ ସହିତ ଏହି ଜ୍ଞାନତତ୍ତ୍ୱ, ତୁମ୍ଭେ ଜାଣିଲେ, ସଂସାରର ଜନ୍ମମରଣରୂପ ବନ୍ଧନରୁ ମୁକ୍ତ ହୋଇଯିବ ।

ଏ ଶ୍ଳୋକରେ 'ଇଦଂ ତୁ' ପଦରେ 'ତୁ' ଶବ୍ଦ ପ୍ରୟୋଗ କରିବାଦ୍ୱାରା ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ 'ଧ୍ୟାନ' ଯୋଗ ଅପେକ୍ଷା ଏ ଅଧ୍ୟାୟରେ ବର୍ଣ୍ଣିତ 'ଜ୍ଞାନ' ଯୋଗ, ଯେ ଶ୍ରେଷ୍ଠ, ତାହାହିଁ ସୂଚିତ ହେଉଅଛି; କାହିଁକି ନା ଧ୍ୟାନଦ୍ୱାରା କେବଳ ଚିତ୍ତଶୁଦ୍ଧି ହୁଏ କିନ୍ତୁ ଅଜ୍ଞାନର ସମ୍ପୂର୍ଣ୍ଣ ନିବୃତ୍ତି ହୁଏ ନାହିଁ । ଧ୍ୟାନ, କେବଳ ଜ୍ଞାନଲାଭର ଉପାୟ ମାତ୍ର, କିନ୍ତୁ ଜ୍ଞାନ ମୁକ୍ତିର ପ୍ରଧାନ ହେତୁ ଅଟେ, ଯେହେତୁ ତାହାଦ୍ୱାରା ମୁକ୍ତିର ପ୍ରଧାନ ପ୍ରତିବନ୍ଧକ ଅଜ୍ଞାନ ସମ୍ପୂର୍ଣ୍ଣରୂପେ ନିବୃତ୍ତ ହୋଇଯାଏ । ୧ ।

ଶ୍ଳୋକଃ ।

ରାଜବିଦ୍ୟା ରାଜଗୁହ୍ୟଂ, ପବିତ୍ରମିଦମୁତ୍ତମଂ ।
ପ୍ରତ୍ୟକ୍ଷାବଗମଂ ଧର୍ମ୍ୟଂ, ସୁସୁଖଂ କର୍ତ୍ତୁମବ୍ୟୟଂ । ୨ ।

Digitized by PPRACHIN, SOA

### ଅନ୍ୱୟଃ ।

ଇଦଂ (ଜ୍ଞାନଂ) ରାଜବିଦ୍ୟା, ରାଜଗୁହ୍ୟଂ, ପବିତ୍ରଂ, ଉତ୍ତମଂ, ପ୍ରତ୍ୟକ୍ଷାବଗମଂ, ଧର୍ମ୍ମ୍ୟଂ, କର୍ତ୍ତୁଂ ସୁସୁଖଂ ଚ ଅବ୍ୟୟଂ (ଭବତି) । ୨ ।

### ଟୀକା ।

ତତ୍ର ରାଜବିଦ୍ୟେତି । ଇଦଂ ଜ୍ଞାନଂ ରାଜବିଦ୍ୟା ବିଦ୍ୟାନାଂ ରାଜା, ରାଜଗୁହ୍ୟଂ ଗୁହ୍ୟାନାଂ ଚ ରାଜା, ବିଦ୍ୟାସୁ ଗୋପ୍ୟେଷୁ ଚାତିରହସ୍ୟଂ ଶ୍ରେଷ୍ଠମିତ୍ୟର୍ଥଃ, ରାଜଦନ୍ତାଦିତ୍ୱାତ୍ ଉପସର୍ଜ୍ଜନସ୍ୟାପି ପରତ୍ୱଂ ରାଜ୍ଞାଂ ବିଦ୍ୟା ରାଜ୍ଞାଂ ଗୁହ୍ୟମିତି ବା ଉତ୍ତମଂ ପବିତ୍ରମିଦମତ୍ୟନ୍ତପାବନଂ, ଜ୍ଞାନନାଂ ପ୍ରତ୍ୟକ୍ଷାବଗମଂ ଚ ପ୍ରତ୍ୟକ୍ଷଃ ସ୍ପଷ୍ଟୋଽବଗମୋଽବବୋଧୋ ଯସ୍ୟ ତତ୍ ପ୍ରତ୍ୟକ୍ଷାବଗମଂ ଦୃଷ୍ଟଫଲମିତ୍ୟର୍ଥଃ, ଧର୍ମ୍ମ୍ୟଂ ଧର୍ମ୍ମାଦନପେତଂ ବେଦୋକ୍ତସର୍ବଧର୍ମ୍ମଫଳତ୍ୱାତ୍ କର୍ତ୍ତୁଂ ଚ ସୁସୁଖଂ ସୁଖେନ କର୍ତ୍ତୁଂ ଶକ୍ୟମିତ୍ୟର୍ଥଃ, ଅବ୍ୟୟଂ ଚାକ୍ଷୟଫଳତ୍ୱାତ୍ । ୨ ।

### ପଦବ୍ୟାଖ୍ୟା ।

ରାଜବିଦ୍ୟା—ସମସ୍ତ ବିଦ୍ୟା ମଧ୍ୟରେ ରାଜାସ୍ୱରୂପ, ରାଜଗୁହ୍ୟଂ—ସମସ୍ତ ଗୋପନୀୟ ବିଷୟ ମଧ୍ୟରେ ଶ୍ରେଷ୍ଠ, ପବିତ୍ରଂ—ଶୁଦ୍ଧ—ନିଷ୍ପାପ, ଇଦଂ—ଏହି ଆତ୍ମଜ୍ଞାନ, ଉତ୍ତମଂ—ଶ୍ରେଷ୍ଠ, ପ୍ରତ୍ୟକ୍ଷାବଗମଂ—ଦୃଷ୍ଟଫଳ ଅର୍ଥାତ୍ ଯାହାର ଫଳ ପ୍ରତ୍ୟକ୍ଷ ଦେଖାଯାଏ, ଧର୍ମ୍ମ୍ୟଂ—ଧର୍ମ୍ମସଙ୍ଗତ, ସୁସୁଖଂ କର୍ତ୍ତୁଂ—ସୁଖରେ ଅନୁଷ୍ଠାନ କରା ଯାଇ ପାରେ, ଅବ୍ୟୟଂ—ବିନାଶରହିତ । ୨ ।

### ଅନୁବାଦ ।

ଏହି ଆତ୍ମଜ୍ଞାନ, ସକଳ ବିଦ୍ୟାର ରାଜା ଓ ସମସ୍ତ ଗୋପନୀୟ ପଦାର୍ଥ ମଧ୍ୟରେ ଶ୍ରେଷ୍ଠ ଅଟେ ଓ ଏହା ସର୍ବୋତ୍କୃଷ୍ଟ, ପବିତ୍ର, ପ୍ରତ୍ୟକ୍ଷଫଳପ୍ରଦ, ଧର୍ମ୍ମସଙ୍ଗତ, ସୁଖସାଧ୍ୟ ଏବଂ ଅକ୍ଷୟ ଅଟେ । ୨ ।

### ବିଶଦବ୍ୟାଖ୍ୟା ।

ଲୌକିକ ବିଦ୍ୟା ଓ ଶାସ୍ତ୍ରୀୟ ବିଦ୍ୟା ଅର୍ଥାତ୍ ସର୍ବପ୍ରକାର ବିଦ୍ୟା ଅପେକ୍ଷା ଆତ୍ମଜ୍ଞାନ ଶ୍ରେଷ୍ଠ, କାହିଁକି ନା ଅନ୍ୟ କୌଣସି ବିଦ୍ୟାଦ୍ୱାରା ଅବିଦ୍ୟା ସମ୍ପୂର୍ଣ୍ଣରୂପେ ନିବୃତ୍ତ ହୁଏ ନାହିଁ, ମାତ୍ର ଆତ୍ମଜ୍ଞାନଦ୍ୱାରା ଅବିଦ୍ୟା ଆପଣାର କାର୍ଯ୍ୟସହିତ ସମ୍ପୂର୍ଣ୍ଣ ନିବୃତ୍ତ ହୋଇଯାଏ । ଧର୍ମ୍ମ-ବିଷୟ ମାତ୍ରକେହି ଗୋପନୀୟ ବା ଗୁହ୍ୟ, ଦେହାଦି ଭିନ୍ନ ଜୀବାତ୍ମଜ୍ଞାନ, ତାହା ଅପେକ୍ଷା ଗୋପନୀୟ ବା ଗୁହ୍ୟତର, ପୁଣି ପରମାତ୍ମଜ୍ଞାନ ସର୍ବାପେକ୍ଷା ଗୋପନୀୟ ଅର୍ଥାତ୍ ଗୁହ୍ୟତମ ଅଟେ । ଅତଏବ ଏହା 'ରାଜଗୁହ୍ୟ' ଅର୍ଥାତ୍ ଗୋପନୀୟ ପଦାର୍ଥ ମଧ୍ୟରେ ଶ୍ରେଷ୍ଠ ଅଟେ ।

ପ୍ରାୟଶ୍ଚିତ୍ତାଦି କଲେ, ଜୀବର ଗୋଟିଏ୨ ପାପର ବିନାଶ ହୁଏ, ଅର୍ଥାତ୍ ଯେଉଁ ପାପ ବିନାଶ ନିମିତ୍ତ ପ୍ରାୟଶ୍ଚିତ୍ତ କରାଯାଏ, କେବଳ ସେହି ପାପଟିର ବିନାଶ ହୁଏ; ମାତ୍ର ଆତ୍ମଜ୍ଞାନ ସଞ୍ଚିତ ହେଲେ, ଜୀବର ପୂର୍ବଜନ୍ମକୃତ ଓ ବର୍ତ୍ତମାନ ଦେହକୃତ ସମସ୍ତ ପାପ ବିନଷ୍ଟ ହୁଏ, ଆଉ ଭବିଷ୍ୟତ୍ ଜନ୍ମର ହେତୁଭୂତ, ଯେ କର୍ମ୍ମ ପାଶ, ତାହା ମଧ୍ୟ ଛିନ୍ନ ହୋଇଯାଏ, ଅତଏବ ତାହା ପବିତ୍ର । ଆତ୍ମଜ୍ଞାନିମାନେ ଆତ୍ମଜ୍ଞାନଜନିତ ପରମସୁଖକୁ ପ୍ରତ୍ୟକ୍ଷ ଅନୁଭବ କରନ୍ତି, ଅତଏବ ଏହା ପ୍ରତ୍ୟକ୍ଷ ଫଳପ୍ରଦ । ଯାଗ ଯଜ୍ଞାଦି ଯେପରି ବହୁ ଅର୍ଥସାଧ୍ୟ, ତପସ୍ୟାଦି ଯେପରି କ୍ଲେଶସାଧ୍ୟ, ଆତ୍ମଜ୍ଞାନ ସେପରି ନୁହେଁ; ଏହା କେବଳ ଶ୍ରବଣ ମନନାଦିଦ୍ୱାରା ଅନାୟାସରେ ଲାଭ କରାଯାଏ, ଅତଏବ ତାହା ସୁଖସାଧ୍ୟ । ଆତ୍ମଜ୍ଞାନ ସହଜ ଲଭ୍ୟ ହେଲେହେଁ, ଏହାର

Digitized by PPRACHIN, SOA

ଫଳ ସାମାନ୍ୟ ନୁହେ—ଅକ୍ଷୟ ଅଟେ, ଅତଏବ ଆତ୍ମଜ୍ଞାନ ଅକ୍ଷୟ । ପୁଣି ଏହା ଧର୍ମବହିର୍ଭୂତ ନୁହେ ଓ ସବୁଧର୍ମର ଫଳସ୍ୱରୂପ ବୋଲି ଏହାକୁ 'ଧର୍ମ୍ୟ' ଅର୍ଥାତ୍ ଧର୍ମସଂଗତ ହୋଇଥାଏ । ସୁତରାଂ ଆତ୍ମଜ୍ଞାନ, ଯେ ସର୍ବୋତ୍କୃଷ୍ଟ, ତହିଁରେ ଆଉ ସନ୍ଦେହ କଣ ? । ୨ ।

ଶ୍ଳୋକଃ ।

ଅଶ୍ରଦ୍ଦଧାନାଃ ପୁରୁଷା, ଧର୍ମସ୍ୟାସ୍ୟ ପରନ୍ତପ ।
ଅପ୍ରାପ୍ୟ ମାଂ ନିବର୍ତ୍ତନ୍ତେ, ମୃତ୍ୟୁସଂସାରବର୍ତ୍ମନି । ୩ ।

ଅନ୍ୱୟଃ ।

ହେ ପରନ୍ତପ ! ଅସ୍ୟ ଧର୍ମସ୍ୟ ଅଶ୍ରଦ୍ଦଧାନାଃ ପୁରୁଷାଃ ମାଂ ଅପ୍ରାପ୍ୟ ମୃତ୍ୟୁସଂସାରବର୍ତ୍ମନି ନିବର୍ତ୍ତନ୍ତେ । ୩ ।

ଟୀକା ।

ନନ୍ୱେବମପ୍ୟେତ-ସୁକରତ୍ୱେନ କେ ନାମ ସଂସାରଂଶ୍ଚ ସ୍ୟୁଃ ତତ୍ରାହ, ଅଶ୍ରଦ୍ଦଧାନା ଇତ । ଅସ୍ୟ ଭକ୍ତିସହିତଜ୍ଞାନ-ଲକ୍ଷଣସ୍ୟ ଧର୍ମସ୍ୟୋତ କର୍ମଣି ଷଷ୍ଠୀ, ଇମଂ ଧର୍ମମଶ୍ରଦ୍ଦଧାନାଃ ଅସ୍ତିକ୍ୟେନାସ୍ୱୀକୁର୍ବନ୍ତ ଉପାୟାନ୍ତରୈର୍ମତ୍ପ୍ରାପ୍ତୟେ କୃତ-ପ୍ରଯତ୍ନା ଅପି ମାମପ୍ରାପ୍ୟ ମୃତ୍ୟୁଯୁକ୍ତେ ସଂସାରବର୍ତ୍ମନି ନିବର୍ତ୍ତନ୍ତେ ମୃତ୍ୟୁବ୍ୟାପ୍ତସଂସାରମାର୍ଗେ ପରିଭ୍ରମନ୍ତୀତ୍ୟର୍ଥଃ । ୩ ।

ପଦବ୍ୟାଖ୍ୟା ।

ଅଶ୍ରଦ୍ଦଧାନାଃ—ଶ୍ରଦ୍ଧାହୀନ, ପୁରୁଷାଃ—ଲୋକମାନେ, ଧର୍ମସ୍ୟ ଅସ୍ୟ—ଏହି ଧର୍ମ ବିଷୟରେ, ପରନ୍ତପ—ହେ ଶତ୍ରୁତାପନ !, ଅପ୍ରାପ୍ୟ ମାଂ—ଆମ୍ଭଙ୍କୁ ପ୍ରାପ୍ତ ନ ହୋଇ, ନିବର୍ତ୍ତନ୍ତେ—ଭ୍ରମଣ କରନ୍ତି, ମୃତ୍ୟୁସଂସାରବର୍ତ୍ମନି—ମୃତ୍ୟୁବ୍ୟାପ୍ତ ସଂସାରମାର୍ଗରେ । ୩ ।

ଅନୁବାଦ ।

ହେ ଶତ୍ରୁତାପନ ! ଏହି ଆତ୍ମଜ୍ଞାନରୂପ ଧର୍ମରେ ଶ୍ରଦ୍ଧାହୀନ ଲୋକମାନେ ଆମ୍ଭଙ୍କୁ ପ୍ରାପ୍ତ ନ ହୋଇ ମୃତ୍ୟୁପୂର୍ଣ୍ଣ ସଂସାରମାର୍ଗରେ ଭ୍ରମଣ କରନ୍ତି । ୩ ।

ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନ ମନେ କରିବେ, ଯେ ଆତ୍ମଜ୍ଞାନର ଯଦି ଏତେ ଗୁଣ, ପୁଣି ତାହାଁ ଯଦି ସୁଖସାଧ୍ୟ, ତେବେ ଲୋକେ ତାହାର ଅନୁଷ୍ଠାନ କରନ୍ତି ନାହିଁ କାହିଁକି ? ସେଥିପାଇଁ ଶ୍ରୀଭ-ଗବାନ୍ କହୁଅଛନ୍ତି, ଯେ ଆତ୍ମଜ୍ଞାନ ପବିତ୍ର, ସୁଖସାଧ୍ୟ ଓ ପ୍ରତ୍ୟକ୍ଷ ଫଳପ୍ରଦ ହେଲେ ସୁଦ୍ଧା, ଲୋକମାନଙ୍କର ସେଥିରେ ଶ୍ରଦ୍ଧା ନ ଥିବାରୁ ତାହାର ଅନୁଷ୍ଠାନରେ ପ୍ରବୃତ୍ତ ହୁଅନ୍ତି ନାହିଁ । ଶ୍ରଦ୍ଧା ନ ହେବାର କାରଣ ଏହି, ଯେ ସେମାନଙ୍କ ମଧ୍ୟରୁ କେହି୨ ଦମ୍ଭ ଦର୍ପାଦି ତମୋଗୁଣ-ମୟ ରାକ୍ଷସୀ ପ୍ରକୃତି ପ୍ରାପ୍ତ ହୋଇଥାନ୍ତି ଓ କେହି୨ କାମାଦି ରଜୋଗୁଣମୟ ଆସୁରୀ ପ୍ରକୃତିର ଅଧୀନ ହୋଇଥାନ୍ତି ଏବଂ କେହି ବା ବେଦର କର୍ମକାଣ୍ଡୋକ୍ତ ପୁଷ୍ପିତ ବଚନରେ ମୋହିତ ହୋଇଥାନ୍ତି । ସୁତରାଂ ସେମାନେ ଯାଗ ଯଜ୍ଞାଦିରେ ପ୍ରବୃତ୍ତ ହୁଅନ୍ତି ଓ କେହି୨ ବେଦବିରୁଦ୍ଧ କୁତ୍ସିତ କର୍ମାଦିର ଅନୁଷ୍ଠାନ କରନ୍ତି ଏବଂ ତଦ୍ୱାରା ମୃତ୍ୟୁପୂର୍ଣ୍ଣ ସଂସାରମାର୍ଗରେ ପରିଭ୍ରମଣ କରନ୍ତି । ଅର୍ଥାତ୍ କର୍ମର ତାରତମ୍ୟ ଅନୁସାରେ ମନୁଷ୍ୟଠାରୁ ପଶୁ ପକ୍ଷୀ କୀଟ ପତଙ୍ଗ ପର୍ଯ୍ୟନ୍ତ ନାନାପ୍ରକାର ଯୋନିରେ ଭ୍ରମଣ କରନ୍ତି ।

Digitized by PPRACHIN, SOA

ଫଳକଥା ଏହି, ଯେ 'ମୋକ୍ଷ' ଅଶ୍ରଦ୍ଧାର ହେତୁ, ଅଶ୍ରଦ୍ଧା ଆତ୍ମଜ୍ଞାନ ଅନୁଷ୍ଠାନ ନ କରିବାର କାରଣ ଏବଂ ଆତ୍ମଜ୍ଞାନ ଅନୁଷ୍ଠାନର ଅଭାବହିଁ ଲୋକଙ୍କୁ ଜନ୍ମ ମରଣରୂପ ସଂସାରମାର୍ଗରେ ପରିଭ୍ରମଣ କରାଏ । ୩ ।

ଶ୍ଳୋକଃ ।

ମୟା ତତମିଦଂ ସର୍ବଂ, ଜଗଦବ୍ୟକ୍ତମୂର୍ତ୍ତିନା ।
ମତ୍‌ସ୍ଥାନି ସର୍ବଭୂତାନି, ନ ଚାହଂ ତେଷ୍ୱବସ୍ଥିତଃ । ୪ ।

ଅନ୍ୱୟଃ ।

ଅବ୍ୟକ୍ତମୂର୍ତ୍ତିନା ମୟା ଇଦଂ ସର୍ବଂ ଜଗତ୍ ତତଂ, ସର୍ବଭୂତାନି ମତ୍‌ସ୍ଥାନି ଅହଂ ଚ ତେଷୁ ନ ଅବସ୍ଥିତଃ । ୪ ।

ଟୀକା ।

ତଦେବ ବକ୍ତବ୍ୟତୟା ପ୍ରସ୍ତୁତସ୍ୟ ଜ୍ଞାନସ୍ୟ ଶ୍ରଦ୍ଧୟା ଶ୍ରୋତାରମଭିମୁଖୀକୃତ୍ୟ ତଦେବ ଜ୍ଞାନଂ କଥୟତି, ମୟେତି ଦ୍ୱାଭ୍ୟାଂ । ଅବ୍ୟକ୍ତା ଅତୀନ୍ଦ୍ରିୟା ମୂର୍ତ୍ତିଃ ସ୍ୱରୂପଂ ଯସ୍ୟ ତାଦୃଶେନ ମୟା କାରଣଭୂତେନ ସର୍ବମିଦଂ ଜଗତ୍ ତତଂ ବ୍ୟାପ୍ତଂ ତତ୍ର ... ଶ୍ରୁତେଃ, ଅତଏବ କାରଣଭୂତେ ମୟି ତିଷ୍ଠନ୍ତୀତି ମତ୍‌ସ୍ଥାନି ସର୍ବାଣି ଭୂତାନି ଚରାଚରାଣି, ଏବମପି ଘଟାଦିଷୁ ମୃଦାଦ୍ୟେଷୁ ମୃତ୍ତିକେବ ତେଷୁ ଭୂତେଷୁ ନାହମବସ୍ଥିତଃ ଅକାଶବଦସଙ୍ଗତ୍ୱାତ୍ । ୪ ।

ପଦବ୍ୟାଖ୍ୟା ।

ମୟା—ଆମ୍ଭଦ୍ୱାରା, ତତଂ—ବ୍ୟାପ୍ତ, ଇଦଂ ସର୍ବଂ—ଏହି ସବୁ, ଜଗତ୍—ସଂସାର, ଅବ୍ୟକ୍ତମୂର୍ତ୍ତିନା—ଇନ୍ଦ୍ରିୟର ଅଗୋଚର ରୂପଧାରୀ, ମତ୍‌ସ୍ଥାନି—ଆମ୍ଭଠାରେ ସ୍ଥିତ, ସର୍ବଭୂତାନି—ଚରାଚର ସମସ୍ତ ଜଗତ୍, ନ ଚାହଂ—ଆଉ ଅମ୍ଭେ ନୋହୁଁ, ତେଷୁ—ସେମାନଙ୍କଠାରେ, ଅବସ୍ଥିତଃ—ସ୍ଥିତ । ୪ ।

ଅନୁବାଦ ।

ଅମ୍ଭେ ଅବ୍ୟକ୍ତରୂପରେ ଏହି ସମସ୍ତ ଜଗତକୁ ବ୍ୟାପି ରହିଅଛୁଁ । ଚରାଚର ଜଗତ ଆମ୍ଭଠାରେ ଅବସ୍ଥାନ କରେ, କିନ୍ତୁ ଅମ୍ଭେ ସେମାନଙ୍କରେ ଅବସ୍ଥିତ ନୋହୁଁ (ଯେହେତୁ ଅମ୍ଭେ ଆକାଶପରି ସଙ୍ଗରହିତ) । ୪ ।

ବିଶଦବ୍ୟାଖ୍ୟା ।

ପରମାତ୍ମାଙ୍କର ମୂର୍ତ୍ତି ଅବ୍ୟକ୍ତ ଅଟେ, ଅର୍ଥାତ୍ ଇନ୍ଦ୍ରିୟର ଅଗୋଚର, ସେହି ଅବ୍ୟକ୍ତ ରୂପ ସତ୍ତା, ଜଗତକୁ ବ୍ୟାପି ରହିଅଛି, ଅର୍ଥାତ୍ ସେହି ଈଶ୍ୱର ସତ୍ତା ଥିବାରୁ ଏ ମାୟାକଳ୍ପିତ ସମସ୍ତ ଜଗତ୍ ପ୍ରକାଶିତ ହେଉଅଛି, ସେ ସତ୍ତା ନ ଥିଲେ, ଏ ଜଗତର ଅସ୍ତିତ୍ୱ ରହି ପାରନ୍ତା ନାହିଁ । ଚରାଚର ଜଗତ୍ ସେହି କାରଣସ୍ୱରୂପ ସତ୍ତାରେ ସ୍ଥିତ କରୁଅଛି, ଅର୍ଥାତ୍ ସେହି ସତ୍ତାକୁ ଅବଲମ୍ବନ କରି ରହିଅଛି, ମାତ୍ର ସେ ସତ୍ତା କାହାରିକି ଅବଲମ୍ବନ କରି ରହି ନାହିଁ, ଯେହେତୁ ତାହା ସ୍ୱପ୍ରକାଶ । ସେ ସତ୍ତା ସମସ୍ତ ଭୂତର କାରଣ ହେଲେ ମଧ୍ୟ, କାହିଁରେ ଲିପ୍ତଭାବରେ ନ ଥାଏ । ଅର୍ଥାତ୍ ବସ୍ତ୍ରର କାରଣ ସୂତ୍ର, ଯେପରି ବସ୍ତ୍ରରେ ଲିପ୍ତଭାବରେ ଅଛି କିମ୍ବା କୁଣ୍ଡଳାଦିର କାରଣ ସୁବର୍ଣ୍ଣ, ଯେପରି କୁଣ୍ଡଳାଦିରେ ସଂଲିପ୍ତ, ଅଥବା ଘଟର କାରଣ ମୃତ୍ତିକା, ଯେପରି ଘଟରେ ସ୍ଥିତ, ଈଶ୍ୱର ସତ୍ତା ସେପରି ଭୂତମାନଙ୍କରେ ଅବସ୍ଥିତ ନୁହେଁ, ତାହା ଆକାଶପରି ନିର୍ଲିପ୍ତଭାବରେ ସର୍ବତ୍ର ବ୍ୟାପି ରହିଅଛି । ୪ ।

Digitized by PPRACHIN, SOA

### ଶ୍ଳୋକଃ ।

ନ ଚ ମତ୍‌ସ୍ଥାନି ଭୂତାନି, ପଶ୍ୟ ମେ ଯୋଗମୈଶ୍ୱରଂ ।
ଭୂତଭୃନ୍ନ ଚ ଭୂତସ୍ଥୋ, ମମାତ୍ମା ଭୂତଭାବନଃ । ୫ ।

### ଅନ୍ୱୟଃ ।

ଚ ଭୂତାନି ମତ୍‌ସ୍ଥାନି ନ, ମେ ଐଶ୍ୱରଂ ଯୋଗଂ ପଶ୍ୟ, (ଅହଂ) ଭୂତଭାବନଃ ଭୂତଭୃତ୍ ଚ ମମ ଆତ୍ମା ନ ଭୂତସ୍ଥଃ । ୫ ।

### ଟୀକା ।

କିଞ୍ଚ ନଚେତି । ନ ଚ ମୟି ସ୍ଥିତାନି ଭୂତାନି ଅସଙ୍ଗତ୍ୱାଦେବ ମମ, ନନୁ ତର୍ହି ବ୍ୟାପକତ୍ୱମାଶ୍ରୟତ୍ୱଂ ଚ ପୂର୍ବୋକ୍ତଂ ବିରୁଦ୍ଧମିତ୍ୟାଶଙ୍କ୍ୟାହ ପଶ୍ୟେତି, ମେ ଐଶ୍ୱରମସାଧାରଣଂ ଯୋଗଂ ଯୁକ୍ତିଂ ଅଘଟନଘଟନାଚାତୁର୍ଯ୍ୟମିଦଂ ପଶ୍ୟ, ମଦୀୟ-ଯୋଗମାୟାବୈଭବସ୍ୟାବିତର୍କ୍ୟତ୍ୱାନ୍ନ କିଞ୍ଚିତ୍ ବିରୁଦ୍ଧମିତ୍ୟର୍ଥଃ ଅନ୍ୟଦପ୍ୟାଶ୍ଚର୍ଯ୍ୟଂ ପଶ୍ୟେତ୍ୟାହ, ଭୂତେତି । ଭୂତାନି ବିଭର୍ତ୍ତି ଧାରୟତୀତି ଭୂତଭୃତ୍ ଭୂତାନି ଭାବୟତି ପାଳୟତୀତି ଭୂତଭାବନଃ ଏବମ୍ଭୂତୋଽପି ମମାତ୍ମା ପରଂ ସ୍ୱରୂପଂ ଭୂତସ୍ଥୋ ନ ଭବତୀତି ଅୟଂ ଭାବଃ, ଯଥା ଦେହଂ ବିଭ୍ରତ୍ ପାଳୟଂଶ୍ଚ ଜୀବୋଽହଙ୍କାରେଣ ତତ୍ସଂଶ୍ଳିଷ୍ଟସ୍ତିଷ୍ଠତି ଏବମହଂ ଭୂତାନି ଧାରୟନ୍ ପାଳୟନ୍ନପି ତେଷୁ ନ ତିଷ୍ଠାମି ନିରହଙ୍କାରତ୍ୱାଦିତି । ୫ ।

### ପଦବ୍ୟାଖ୍ୟା ।

ନ ଚ ମତ୍‌ସ୍ଥାନି ଭୂତାନି—ଭୂତ ସବୁ (ଜଗତ୍) ଆମ୍ଭଠାରେ ରହନ୍ତି ନାହିଁ, ପଶ୍ୟ—ଦେଖ, ମେ—ଆମ୍ଭର, ଯୋଗମୈଶ୍ୱରଂ—ଅସାଧାରଣ ଯୋଗକୁ, ଭୂତଭୃତ୍—ଜଗତ୍‌ପାଳକ, ନ ଚ ଭୂତସ୍ଥଃ—ଜଗତରେ ରହେ ନାହିଁ ମମାତ୍ମା—ଆମ୍ଭର ଆତ୍ମା, ଭୂତଭାବନଃ—ଜଗତ୍‌ପିତା । ୫ ।

### ଅନୁବାଦ ।

ପୁଣି ଚରାଚର ଜଗତ୍ ଆମ୍ଭଠାରେ ଅବସ୍ଥିତ କରେ ନାହିଁ, ଆମ୍ଭର ଅସାଧାରଣ ଯୋଗ-ପ୍ରଭାବ ଦେଖ, ଯେ ଆମ୍ଭେ ଜଗତ୍‌ପିତା ଓ ଜଗତ୍‌ପାଳକ ହେଲେ ମଧ୍ୟ, ଆମ୍ଭର ମନ ଜଗତରେ ଲିପ୍ତ ନୁହେ । ୫ ।

### ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ଭଗବାନ୍ କହିଥିଲେ, ଯେ 'ଚରାଚର ଜଗତ୍ ଆମ୍ଭଠାରେ ଅବସ୍ଥାନ କରୁଅଛି' ଏ ଶ୍ଳୋକରେ କହୁଅଛନ୍ତି, ଯେ 'ପୁଣି ଚରାଚର ଜଗତ୍ ଆମ୍ଭଠାରେ ଅବସ୍ଥିତ କରେ ନାହିଁ' । ଏଥିରେ ପରସ୍ପର ବିରୋଧ ହେଉଥିବାର ଦେଖି, କାଳେ ଅର୍ଜୁନ ସନ୍ଦେହ କରିବେ, ଏଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ତୁମ୍ଭେ ସ୍ଥୂଳଦୃଷ୍ଟି ତ୍ୟାଗ କରି ସୂକ୍ଷ୍ମ ଅର୍ଥାତ୍ ଜ୍ଞାନଦୃଷ୍ଟିରେ **ଆମ୍ଭର ଐଶ୍ୱରୀୟ** ଯୋଗପ୍ରଭାବ ଅବଲୋକନ କର । ତୁମ୍ଭେ ଗୋଟିଏ ବିରୁଦ୍ଧ କଥା ଦେଖି **ଆଶ୍ଚର୍ଯ୍ୟ ମନେ** କରୁଅଛ, ମାତ୍ର ଅଦ୍ଭୁତ ଆଶ୍ଚର୍ଯ୍ୟର କଥା ଏହି, ଯେ ଆମ୍ଭେ ଜଗତର ପାଳକ ଓ **ଉତ୍ପତ୍ତିକର୍ତ୍ତା** ଅଟୁଁ ତଥାପି ଆମ୍ଭର ମନ ଜଗତରେ ଅବଦ୍ଧ **ନାହିଁ**, ।

ଫଳକଥା **ଏହି ଯେ ଆମ୍ଭର** ଐଶୀ ଶକ୍ତି ନିକଟରେ କୌଣସି କଥା ଅସମ୍ଭବ ନୁହେ, ସ୍ଥୂଳଦୃଷ୍ଟିରେ ଜଗତ୍ **ଆମ୍ଭଠାରେ** ଅବସ୍ଥାନ କରୁଥିବାର ଲୋକେ ଜାଣନ୍ତି ସତ, ମାତ୍ର ତାହା

Digitized by PPRACHIN, SOA

ରଜ୍ଜୁରେ ସର୍ପଜ୍ଞାନ, ଶୁକ୍ତିରେ ରଜତଜ୍ଞାନ ବା ଆମ୍ଭରେ ଦେହାଭିମାନ ସବୁ, ଭ୍ରମାତ୍ମକ ଅଟେ । ସୂକ୍ଷ୍ମ ଦୃଷ୍ଟିରେ ଦେଖିଲେ ଜଣାଯିବ, ଯେ ଆମ୍ଭେ କୌଣସି ପଦାର୍ଥର ଆଧାର ନୋହୁଁ ବା କୌଣସି ପଦାର୍ଥ ଆମ୍ଭର ଆଧାର ନୁହେ, ଅର୍ଥାତ୍ ପଦ୍ମପତ୍ରରେ ଜଳପରି, ଆମ୍ଭେ ସମ୍ପୂର୍ଣ୍ଣରୂପେ ନିର୍ଲିପ୍ତ ଅଟୁଁ । ୫ ।

### ଶ୍ଲୋକଃ ।

ଯଥାକାଶସ୍ଥିତୋ ନିତ୍ୟଂ, ବାୟୁଃ ସର୍ବତ୍ରଗୋ ମହାନ୍ ।
ତଥା ସର୍ବାଣି ଭୂତାନି, ମତ୍ସ୍ଥାନୀତ୍ୟୁପଧାରୟ ॥ ୬ ॥

### ଅନ୍ୱୟଃ ।

ଯଥା ସର୍ବତ୍ରଗଃ ମହାନ୍ ବାୟୁଃ ନିତ୍ୟଂ ଆକାଶସ୍ଥିତଃ (ଭବତି) ତଥା ସର୍ବାଣି ଭୂତାନି ମତ୍ସ୍ଥାନି ଇତି ଉପଧାରୟ ॥ ୬ ॥

### ଟୀକା ।

ଅସଂଶ୍ଳେଷେଽପି ଆଧାରାଧେୟଭାବଂ ଦୃଷ୍ଟାନ୍ତେନାହ, ଯଥେତି । ଅବକାଶଂ ବିନା ଅବସ୍ଥାନାନୁପପତ୍ତେର୍ନିତ୍ୟମାକାଶସ୍ଥିତୋ ବାୟୁଃ ସର୍ବତ୍ରଗୋଽପି ମହାନପି ନାକାଶେନ ସଂଶ୍ଳିଷ୍ୟତେ ନିରବୟବତ୍ୱେନ ସଂଶ୍ଳେଷାଯୋଗାତ୍ ତଥା ସର୍ବାଣି ଭୂତାନି ମୟି ସ୍ଥିତାନି ଜାନୀହି ॥ ୬ ॥

### ପଦବ୍ୟାଖ୍ୟା ।

ଯଥା—ଯେପରି, ଆକାଶସ୍ଥିତଃ—ଆକାଶବ୍ୟାପୀ, ନିତ୍ୟଂ—ସଦା, ସବୁବେଳେ, ବାୟୁଃ—ପବନ, ସର୍ବତ୍ରଗଃ—ସବୁସ୍ଥାନରେ ପରିପୂର୍ଣ୍ଣ, ମହାନ୍—ବଡ, ତଥା—ସେହିପରି, ସର୍ବାଣି—ସମସ୍ତ, ଭୂତାନି—ଜଗତ୍, ମତ୍ସ୍ଥାନି—ମୋଠାରେ ସ୍ଥିତ, ଇତି—ଏହା, ଉପଧାରୟ—ଜାଣ । ୬ ।

### ଅନୁବାଦ ।

ଯେପରି ସର୍ବତ୍ର ଗତିଶୀଳ ମହାନ୍ ବାୟୁ ଆକାଶରେ ଥାଏ, ସେହିପରି ଚରାଚର ଜଗତ୍ ଆମ୍ଭଠାରେ (ନିର୍ଲିପ୍ତ ଭାବରେ) ଅଛି ଏହା ଜାଣ । ୬ ।

### ବିଶଦବ୍ୟାଖ୍ୟା ।

ବାୟୁ, ପରିମାଣରେ ମହାନ୍ ଅର୍ଥାତ୍ ଅତିବିସ୍ତୃତ, ପୁଣି ସର୍ବତ୍ର ଗମନଶୀଳ ଅଟେ, ତଥାପି, ତାହା ଆକାଶରେ ଅବସ୍ଥିତ କରଇ, ମାତ୍ର ଆକାଶ ବାୟୁରେ ଲିପ୍ତ ନୁହେ ବା ବାୟୁ ମଧ୍ୟ ଆକାଶରେ ଲିପ୍ତ ନୁହେ । ସେହିପରି ଚରାଚର ଜଗତ୍ ଅତି ବିସ୍ତୃତ ଅଟେ, ଓ ଆମ୍ଭଠାରେ ଅବସ୍ଥାନ କରୁଅଛି, ମାତ୍ର ଆମ୍ଭେ ଜଗତରେ ଲିପ୍ତ ନୋହୁଁ ବା ଜଗତ୍ ଆମ୍ଭଠାରେ ଲିପ୍ତ ନୁହେ ।

ଏ ଶ୍ଲୋକଦ୍ୱାରା ୪ର୍ଥ ଓ ୫ମ ଶ୍ଲୋକର ମତଭେଦ ଖଣ୍ଡିତ ହୋଇ ମିଳନ ସମ୍ଭାବିତ ହେଲା, ଅର୍ଥାତ୍ ଆମ୍ଭଠାରେ ଜଗତ୍ ନିର୍ଲିପ୍ତ ଭାବରେ ' ଅଛି ' ଲିପ୍ତଭାବରେ ' ନାହିଁ ' ଏହା ବୁଝାଇ ଦିଆଗଲା । ୬ ।

Digitized by PPRACHIN, SOA

### ଶ୍ଳୋକଃ ।

ସର୍ବଭୂତାନି କୌନ୍ତେୟ, ପ୍ରକୃତିଂ ଯାନ୍ତି ମାମିକାଂ ।
କଳ୍ପକ୍ଷୟେ ପୁନସ୍ତାନି, କଳ୍ପାଦୌ ବିସୃଜାମ୍ୟହଂ । ୭ ।

### ଅନ୍ୱୟଃ ।

ହେ କୌନ୍ତେୟ ! କଳ୍ପକ୍ଷୟେ ସର୍ବଭୂତାନି ମାମିକାଂ ପ୍ରକୃତିଂ ଯାନ୍ତି, କଳ୍ପାଦୌ ଅହଂ ପୁନଃ ତାନି ବିସୃଜାମି । ୭ ।

### ଟୀକା ।

ତଦେବମସଙ୍ଗସ୍ୟୈବ ଯୋଗମାୟୟା ସ୍ଥିତିହେତୁତ୍ୱମୁକ୍ତଂ ତୟୈବ ସୃଷ୍ଟିପ୍ରଳୟହେତୁତ୍ୱଂ ଚାହ, ସର୍ବେତି । କଳ୍ପକ୍ଷୟେ ପ୍ରଳୟକାଳେ ସର୍ବାଣି ଭୂତାନି ମଦୀୟାଂ ପ୍ରକୃତିଂ ଯାନ୍ତି ତ୍ରିଗୁଣାତ୍ମିକାୟାଂ ମାୟାୟାଂ ଲୀୟନ୍ତେ ପୁନଃ କଳ୍ପାଦୌ ସୃଷ୍ଟିକାଳେ ତାନି ବିସୃଜାମି ବିଶେଷେଣ ସୃଜାମି । ୭ ।

### ପଦବ୍ୟାଖ୍ୟା ।

ସର୍ବଭୂତାନି—ସବୁ ଜଗତ୍, କୌନ୍ତେୟ—ହେ କୁନ୍ତୀପୁତ୍ର !, ପ୍ରକୃତିଂ ଯାନ୍ତି—ପ୍ରକୃତିରେ ଲୟପ୍ରାପ୍ତ ହୁଅନ୍ତି, ମାମିକାଂ—ଆମ୍ଭର, କଳ୍ପକ୍ଷୟେ—କଳ୍ପ ଶେଷରେ—ବ୍ରହ୍ମଦିବସ ଶେଷରେ, ପୁନସ୍ତାନି—ପୁଣି ସେମାନଙ୍କୁ, କଳ୍ପାଦୌ—କଳ୍ପ ଆରମ୍ଭରେ—ବ୍ରହ୍ମଦିବସ ଉଦୟରେ, ବିସୃଜାମି ଅହଂ—ଆମ୍ଭେ ସର୍ଜନା କରୁଁ । ୭ ।

### ଅନୁବାଦ ।

ହେ କୌନ୍ତେୟ ! ପ୍ରଳୟ କାଳରେ ସମସ୍ତ ଜଗତ୍ ଆମ୍ଭର ତ୍ରିଗୁଣମୟୀ ପ୍ରକୃତି (ମାୟା)ରେ ଲୀନ ହୁଅନ୍ତି, ପୁଣି କଳ୍ପଆରମ୍ଭରେ ଆମ୍ଭେ ସେମାନଙ୍କୁ ସୃଷ୍ଟି କରୁଁ । ୭ ।

### ବିଶଦବ୍ୟାଖ୍ୟା ।

ଜଗତର ସ୍ଥିତିସମ୍ବନ୍ଧରେ ପରମାତ୍ମାସ୍ୱରୂପୀ ଭଗବାନ୍, ଯେ ସମ୍ପୂର୍ଣ୍ଣ ନିର୍ଲିପ୍ତ, ତାହା ପୂର୍ବଶ୍ଳୋକମାନଙ୍କରେ କୁହା ଯାଇଅଛି, ଏ ଶ୍ଳୋକରେ, ସେ, ପ୍ରଳୟ କାଳରେ ମଧ୍ୟ, ଯେ ନିର୍ଲିପ୍ତ ଥାନ୍ତି, ତାହା ବ୍ୟାଖ୍ୟା କରି ଯାଉଅଛି । ଭଗବାନ୍ କହୁଅଛନ୍ତି ଯେ ଆମ୍ଭର ଶକ୍ତି-ରୂପିଣୀ ଯେଉଁ ମାୟାରୁ ଜଗତ୍ ପ୍ରକାଶିତ ହୋଇଅଛି, ପ୍ରଳୟ କାଳରେ ସମସ୍ତ ଜଗତ୍ ସେହି କାରଣରୂପା ମାୟାରେ ଲୀନ ହୁଏ, ଅର୍ଥାତ୍ ଆମ୍ଭେ ସେତେବେଳେ ମଧ୍ୟ, ନିର୍ଲିପ୍ତ ଥାଉଁ ଏବଂ ସୃଷ୍ଟି ସମୟରେ ପୁଣି ଆମ୍ଭେ ସେହି ମାୟାରୁ ଜଗତକୁ ସର୍ଜନା କରୁଁ, ଅର୍ଥାତ୍ ଏହି ଜଗତ୍ ସେହି ଶକ୍ତିରୂପିଣୀ ମାୟାରୁ ଉତ୍ପନ୍ନ ହୁଏ । ଫଳକଥା ଏହି ଯେ ଜଗତର ସୃଷ୍ଟି, ସ୍ଥିତି ଓ ପ୍ରଳୟ କୌଣସି ବିଷୟରେ ଆମ୍ଭେ ଲିପ୍ତ ନୋହୁଁ, ମାତ୍ର ଆମ୍ଭର ଶକ୍ତିରୂପିଣୀ ମାୟାଦ୍ୱାରା ଏହା ସୃଷ୍ଟ ଓ ମାୟାରେ ସ୍ଥିତ ଏବଂ ସେହି ମାୟାରେ ଲୟପ୍ରାପ୍ତ ହୁଏ । ୭ ।

### ଶ୍ଳୋକଃ ।

ପ୍ରକୃତିଂ ସ୍ୱାମବଷ୍ଟଭ୍ୟ, ବିସୃଜାମି ପୁନଃ ପୁନଃ ।
ଭୂତଗ୍ରାମମିମଂ କୃତ୍ସ୍ନ,ମବଶଂ ପ୍ରକୃତେର୍ବଶାତ୍ । ୮ ।

Digitized by PPRACHIN, SOA

## ଅନ୍ୱୟଃ ।

ସ୍ୱାଂ ପ୍ରକୃତିଂ ଅବଷ୍ଟଭ୍ୟ ପ୍ରକୃତେଃ ବଶାତ୍ ଅବଶଂ ଇମଂ କୃତ୍ସ୍ନଂ ଭୂତଗ୍ରାମଂ ପୁନଃ ପୁନଃ ବିସୃଜାମି । ୮ ।

## ଟୀକା ।

ନନ୍ୱସଙ୍ଗୋ ନିର୍ବିକାରଶ୍ଚ ତ୍ୱଂ କଥଂ ସୃଜସୀତ୍ୟପେକ୍ଷାୟାମାହ, ପ୍ରକୃତିମିତ୍ୟାଦି । ସ୍ୱାଂ ସ୍ୱାଧୀନାଂ ପ୍ରକୃତିମବଷ୍ଟଭ୍ୟ ଅଧିଷ୍ଠାୟ ପ୍ରଳୟେ ଲୀନଂ ସନ୍ତଂ ଚତୁର୍ବିଧମିମଂ ସର୍ବଂ ଭୂତଗ୍ରାମଂ କର୍ମାଦିପରବଶଂ ପୁନଃ ପୁନର୍ବିବିଧଂ ସୃଜାମି ବିଶେଷେଣ ସୃଜାମୀତି ବା କଥଂ ପ୍ରକୃତେର୍ବଶାତ୍ ପ୍ରାଚୀନକର୍ମନିମିତ୍ତ-ତତ୍ତତ୍ସ୍ୱଭାବବଶାତ୍ । ୮ ।

## ପଦବ୍ୟାଖ୍ୟା ।

ପ୍ରକୃତିଂ ସ୍ୱାଂ—ଆପଣାର ମାୟାକୁ, ଅବଷ୍ଟଭ୍ୟ—ଅଧିଷ୍ଠାନ କରି—ଆଶ୍ରୟ କରି, ବିସୃଜାମି—ସର୍ଜନା କରୁଁ, ପୁନଃ ପୁନଃ—ବାରମ୍ବାର, ଭୂତଗ୍ରାମମିମଂ—ଏହି ପ୍ରାଣିସମୂହକୁ, କୃତ୍ସ୍ନଂ—ସମ୍ପୂର୍ଣ୍ଣ, ଅବଶଂ—ପରାଧୀନ, ପ୍ରକୃତେର୍ବଶାତ୍—ପ୍ରାରବ୍ଧ କର୍ମଜନିତ ସ୍ୱଭାବ ହେତୁରୁ । ୮ ।

## ଅନୁବାଦ ।

ପ୍ରକୃତି ଅର୍ଥାତ୍ ପୂର୍ବ ଜନ୍ମ କୃତ କର୍ମ ବଶରୁ ପରାଧୀନ ଭୂତସମୂହକୁ ଆମ୍ଭେ, ଆପଣା ପ୍ରକୃତି ସାହାଯ୍ୟରେ ବାରମ୍ବାର ସର୍ଜନା କରୁଁ । ୮ ।

## ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନଙ୍କର ଏପରି ଆଶଙ୍କା ହେବ, ଯେ ଏ ଜଗତ କଣ ? ଏବଂ ପରମେଶ୍ୱର ଏହାର ସୃଷ୍ଟି କଲେ କାହିଁକି ? ଭଗବାନଙ୍କର ନିଜର ଭୋଗନିମିତ୍ତ ଜଗତ ରଚନା ସମ୍ଭବ ନୁହେଁ, କାହିଁକି ନା ସେ ନିର୍ଲିପ୍ତ ଓ ନିର୍ବିକାର । ଅନ୍ୟ ବ୍ୟକ୍ତିର ଭୋଗପାଇଁ ଏହା ରଚିତ ହୋଇ ନାହିଁ, କାହିଁକି ନା ପରମେଶ୍ୱରଙ୍କ ସତ୍ତ୍ୱଭିନ୍ନ ଜଗତରେ ଆଉ ସ୍ୱତନ୍ତ୍ର ଜୀବ ନାହିଁ, ଯେ ସେ, ଭୋଗ କରନ୍ତେ ଆଉ ଜଡ଼ ପଦାର୍ଥର ତ ଭୋଗ କରିବାର କ୍ଷମତା ନାହିଁ, ସୁତରାଂ ତାହାପାଇଁ ମଧ୍ୟ ରଚିତ ହୋଇ ନାହିଁ । ପୁଣି ଏ ଜଗତ୍ ଜନ୍ମ ମରଣରୂପ ବନ୍ଧନର ହେତୁ ବୋଲି ମୁକ୍ତିର ବିରୋଧୀ, ଅତଏବ ଏହା ମୋକ୍ଷପାଇଁ ସୃଷ୍ଟି ହୋଇଅଛି, ଏହାମଧ୍ୟ କୁହାଯାଇ ନ ପାରେ, ତେବେ ଜଗତ୍ପତି ଜଗତ୍ ରଚନା କଲେ କାହିଁକି ? ଅର୍ଜ୍ଜୁନଙ୍କର ଏହି ଆଶଙ୍କା ନିବାରଣପାଇଁ, ଆଶଙ୍କାର ମୂଳ କାରଣ ଜଗତ, ଯେ ମାୟାମୟ, ତାହା ଏ ଶ୍ଳୋକରେ ଶ୍ରୀଭଗବାନ୍ ବୁଝାଉଅଛନ୍ତି ।

ପ୍ରଳୟ କାଳରେ ଭୂତ ସବୁ ଅବ୍ୟକ୍ତ କାରଣସ୍ୱରୂପ ମାୟାରେ ଲୀନ ହୋଇଥାଏ, ପୁଣି କଳ୍ପାଦ୍ୟରେ ପ୍ରକୃତିର ପ୍ରଭାବରେ ଅର୍ଥାତ୍ ମାୟାର ଆବରଣ ଓ ବିକ୍ଷେପାତ୍ମକ ଶକ୍ତିବଳରେ ଏ ଜଗତ୍ ଆପଣାର ପୂର୍ବ ପ୍ରକୃତି ଅନୁସାରେ ପ୍ରକାଶିତ ହୁଏ, ଅର୍ଥାତ୍ ଇନ୍ଦ୍ରଜାଲିକ ଅଥବା ବାଜିକର ଯେପରି ଇନ୍ଦ୍ରଜାଲ ପ୍ରଭାବରେ ନାନା ପ୍ରକାର କୌତୁକ ଆଶ୍ଚର୍ଯ୍ୟ ଘଟନାମାନ ଦେଖାଏ, ଲୋକେ ତାହାକୁ ସତ୍ୟ ମଣି ବିସ୍ମିତ ହୁଅନ୍ତି, ମାତ୍ର ସେ ସବୁ ମିଥ୍ୟା, ସେହିପରି ଏହି ଆକାଶାଦି ଭୂତସମୂହ, ଇନ୍ଦ୍ରଜାଲ ରୂପିଣୀ ମାୟାଦ୍ୱାରା ବାରମ୍ବାର ଉତ୍ପନ୍ନ ହେଉଅଛି, ଏବଂ ଜୀବ ସବୁ ଏହାକୁ ସତ୍ୟ ବୋଲି ମଣି ବିସ୍ମିତ ହେଉଅଛନ୍ତି, ମାତ୍ର ଏହା ସବୁ ମିଥ୍ୟା ଅର୍ଥାତ୍ ମାୟାର କାର୍ଯ୍ୟ ଅଟେ । ବାଜିକର କ୍ରୀଡ଼ାରେ ଦେଖା ଯାଉଥିବା ପଦାର୍ଥମାନ,

Digitized by PPRACHIN, SOA

ଯେପରି ବାଜୀକର ଖେଳରେ ଆସେ ନାହିଁ, ଅର୍ଥାତ୍ ତାହା ତାହାର ଖେଳନିମିତ୍ତ ରଚିତ ହୋଇ ନ ଥାଏ, ଏ ମାୟାମୟ ଜଗତ୍, ସେହିପରି ତାହାର ଖେଳପାଇଁ ରଚିତ ହୋଇ ନାହିଁ । ଇନ୍ଦ୍ରଜାଲ କ୍ରୀଡା ଦେଖିବା ବ୍ୟକ୍ତିମାନେ ଏପରି ମୋହିତ ହୋଇ ଥାଆନ୍ତି, ଯେ କ୍ରୀଡା ଶେଷ ନ ହେବା ଯାଏ, ତାହା ଛାଡି ଅନ୍ୟତ୍ର ଯିବାକୁ ଇଚ୍ଛା କରନ୍ତି ନାହିଁ, ସେହିପରି ଏହି ମାୟାମୟ ଜଗତରେ ଜୀବ, ଏପରି ମୁଗ୍ଧ ହୋଇଅଛି, ଯେ ପ୍ରଳୟ କାଳ ପର୍ଯ୍ୟନ୍ତ ଏହାକୁ ତ୍ୟାଗ କରି ପାରେ ନାହିଁ । ଇନ୍ଦ୍ରଜାଲକର କ୍ରୀଡାର କୌଶଳ ଜାଣିଥିବା ଲୋକ ଯେପରି ସେଥିରେ ମୁଗ୍ଧ ହୁଏ ନାହିଁ, ଜ୍ଞାନୀଲୋକ ସେହିପରି ଜଗତରେ ମୁଗ୍ଧ ହୁଅନ୍ତି ନାହିଁ । ୮ ।

ଶ୍ଲୋକଃ ।

ନ ଚ ମାଂ ତାନି କର୍ମାଣି, ନିବଧ୍ନନ୍ତି ଧନଞ୍ଜୟ ।
ଉଦାସୀନବଦାସୀନ,ମସକ୍ତଂ ତେଷୁ କର୍ମସୁ । ୯ ।

ଅନ୍ୱୟଃ ।

ହେ ଧନଞ୍ଜୟ ! ତେଷୁ କର୍ମସୁ ଅସକ୍ତଂ ଚ ଉଦାସୀନବତ୍ ଆସୀନଂ ମାଂ ତାନି କର୍ମାଣି ନ ନିବଧ୍ନନ୍ତି । ୯ ।

ଟୀକା ।

ନନ୍ୱେବଂ ନାନାବିଧାନି କର୍ମାଣି କୁର୍ବତସ୍ତବ ଜୀବବଦ୍ବନ୍ଧଃ କଥଂ ନ ସ୍ୟାଦିତ୍ୟତ ଆହ, ନ ଚ ମାମିତି । ତାନି ବିଶ୍ୱସୃଷ୍ଟ୍ୟାଦୀନି କର୍ମାଣି ମାଂ ନ ନିବଧ୍ନନ୍ତି, କର୍ମାସକ୍ତିର୍ହି ବନ୍ଧହେତୁଃ, ସା ଚ ପ୍ରାପ୍ତକାମତ୍ୱାନ୍ମମ ନାସ୍ତି, ଅତ ଉଦାସୀନବଦ୍ବର୍ତ୍ତମାନସ୍ୟ ମେ ବନ୍ଧଂ ନୋତ୍ପାଦୟନ୍ତି, ଉଦାସୀନତ୍ୱେ କର୍ତୃତ୍ୱାନୁପପତ୍ତେଃ କର୍ତୃତ୍ୱେ ଚୌଦାସୀନତ୍ୱାନୁପପତ୍ତେଃ ଉଦାସୀନବଦିତ୍ୟୁକ୍ତଂ । ୯ ।

ପଦବ୍ୟାଖ୍ୟା ।

ନ ଚ—ନାହିଁ, ମାଂ—ଆମ୍ଭଙ୍କୁ, ତାନି କର୍ମାଣି—ଜଗତ ସୃଷ୍ଟି ଆଦି କର୍ମ ସବୁ, ନିବଧ୍ନନ୍ତି—ବନ୍ଧନ କରେ, ଧନଞ୍ଜୟ—ହେ ଅର୍ଜ୍ଜୁନ ! ଉଦାସୀନବତ୍—ଉଦାସୀନ ପରି, ଆସୀନଂ—ଉପବିଷ୍ଟ ରହିଥିବା, ଅସକ୍ତଂ—ଅନୁରାଗରହିତ, ତେଷୁ କର୍ମସୁ—ସେହି ସବୁ କର୍ମରେ । ୯ ।

ଅନୁବାଦ ।

ହେ ଧନଞ୍ଜୟ ! ଆମ୍ଭେ କର୍ମମାନଙ୍କରେ ଆସକ୍ତ ନ ଥିବାରୁ ଏବଂ ଉଦାସୀନ ପରି ଅବସ୍ଥାନ କରୁଥିବାରୁ, ସେହି ସବୁ କର୍ମ ଆମ୍ଭଙ୍କୁ ବନ୍ଧନ କରି ପାରେ ନାହିଁ । ୯ ।

ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନଙ୍କର ଏପରି ଆଶଙ୍କା ହେବ, ଯେ ଭଗବାନ୍ ଯେବେ ମାୟାଦ୍ୱାରା ଜଗତ ସୃଷ୍ଟି କରନ୍ତି ଓ ପୁଣି ତାହାର ବିନାଶ କରନ୍ତି, ତେବେ ସେହି ସୃଷ୍ଟ୍ୟାଦି କର୍ମ ତାଙ୍କୁ ସାଧାରଣ ଜୀବ ପରି ସଂସାରରେ ଆବଦ୍ଧ ନ କରିବ କାହିଁକି ? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ କର୍ମରେ ଆସକ୍ତ ହେଲେ, ଅର୍ଥାତ୍ କାମନା ଓ ଅଭିମାନଯୁକ୍ତ ହୋଇ କର୍ମ କଲେ, ତାହା ବନ୍ଧନର ହେତୁ ହୁଏ, ମାତ୍ର ଆମ୍ଭେ ସୃଷ୍ଟ୍ୟାଦି କର୍ମରେ ଆସକ୍ତ ନ ହୋଇ ଉଦାସୀନ ପରି ଅର୍ଥାତ୍ କାମନା ଓ ଅଭିମାନ ରହିତ ହୋଇ ବିଦ୍ୟମାନ ଥାଉଁ, ସେହି ହେତୁରୁ ଆମ୍ଭେ ସୃଷ୍ଟି,

Digitized by PPRACHIN, SOA

ସ୍ଥିତ ଓ ପ୍ରଳୟପ୍ରଭୃତି କର୍ମମାନ କଲେ ସୁଦ୍ଧା, ତହିଁରେ ଆବଦ୍ଧ ହୋଇ ନାହୁଁ, ଯେପରି ଇନ୍ଦ୍ରଜାଲିକ ଅଥବା ବାଜୀକର ବ୍ୟକ୍ତିଙ୍କୁ, ତାହାର କ୍ରୀଡା ମିଥ୍ୟା ବୋଲି ଆବଦ୍ଧ କରି ପାରେ ନାହିଁ ଓ ଯେପରି ସ୍ୱପ୍ନଦ୍ରଷ୍ଟା ପୁରୁଷଙ୍କୁ ସ୍ୱପ୍ନଦୃଷ୍ଟ ପଦାର୍ଥ ସବୁ ମିଥ୍ୟା ହେତୁରୁ ଆବଦ୍ଧ କରି ପାରେ ନାହିଁ; ସେହିପରି ଏ ଜଗତ୍ ମାୟାମୟ ଅନିତ୍ୟ ଅର୍ଥାତ୍ ମିଥ୍ୟା ବୋଲି ଏହାର ସୃଷ୍ଟି, ସ୍ଥିତି ପ୍ରଳୟାଦି କର୍ମ ସବୁ ଆମ୍ଭଙ୍କୁ ଆବଦ୍ଧ କରି ପାରେ ନାହିଁ । ୯ ।

ଶ୍ଳୋକଃ ।

ମୟାଧ୍ୟକ୍ଷେଣ ପ୍ରକୃତିଃ, ସୂୟତେ ସଚରାଚରଂ ।
ହେତୁନାନେନ କୌନ୍ତେୟ, ଜଗଦ୍ବିପରିବର୍ତ୍ତତେ । ୧୦ ।

ଅନ୍ୱୟଃ ।

ହେ କୌନ୍ତେୟ ମୟା ଅଧ୍ୟକ୍ଷେଣ ପ୍ରକୃତିଃ ସଚରାଚରଂ (ଜଗତ୍) ସୂୟତେ ଅନେନ ହେତୁନା ଜଗତ୍ ବିପରିବର୍ତ୍ତତେ । ୧୦ ।

ଟୀକା ।

ତଦେବୋପପାଦୟତି । ମୟେତି । ମୟା ଅଧ୍ୟକ୍ଷେଣ ଅଧିଷ୍ଠାତ୍ରା ନିମିତ୍ତଭୂତେନ ପ୍ରକୃତିଃ ସଚରାଚରଂ ବିଶ୍ୱଂ ସୂୟତେ ଜନୟତି, ଅନେନ ମଦଧିଷ୍ଠାନେନ ହେତୁନା ଇଦଂ ଜଗତ୍ ବିପରିବର୍ତ୍ତତେ ପୁନଃ ପୁନର୍ଜାୟତେ, ସନ୍ନିଧିମାତ୍ରେଣାଧିଷ୍ଠାତୃତ୍ୱାତ୍ କର୍ତ୍ତୃତ୍ୱମୁଦାସୀନତ୍ୱଞ୍ଚାବିରୁଦ୍ଧମିତିଭାବଃ । ୧୦ ।

ପଦବ୍ୟାଖ୍ୟା ।

ମୟାଧ୍ୟକ୍ଷେଣ—ଆମ୍ଭଙ୍କୁ ଅଧ୍ୟକ୍ଷ କରି, ଅର୍ଥାତ୍ ଆମ୍ଭଙ୍କୁ ନିମିତ୍ତ କାରଣରୂପେ ଘେନି, ପ୍ରକୃତିଃ—ତ୍ରିଗୁଣମୟୀ-ମାୟା, ସୂୟତେ—ପ୍ରସବ କରୁଅଛି, ସଚରାଚରଂ—ସ୍ଥାବର ଓ ଜଙ୍ଗମଯୁକ୍ତ (ଜଗତକୁ), ହେତୁନା ଅନେନ—ଏହି ହେତୁରୁ, କୌନ୍ତେୟ—ହେ କୁନ୍ତୀପୁତ୍ର ଅର୍ଜ୍ଜୁନ!, ଜଗତ୍—ସଂସାର, ବିପରିବର୍ତ୍ତତେ—ପୁନଃ ପୁନଃ ଜାତ ଓ ନଷ୍ଟ ହେଉଅଛି । ୧୦ ।

ଅନୁବାଦ ।

ହେ କୌନ୍ତେୟ! ଆମ୍ଭର ସନ୍ନିଧାନ ହେତୁରୁ ପ୍ରକୃତି ଏହି ସଚରାଚର ଜଗତକୁ ପ୍ରସବ କରୁଅଛି, ଏବଂ ସେହିହେତୁରୁ ଜଗତ୍ ବାରମ୍ବାର ଉତ୍ପନ୍ନ ହେଉଅଛି । ୧୦ ।

ତତ୍ତ୍ୱବ୍ୟାଖ୍ୟା ।

ଶ୍ରୀଭଗବାନ୍ ଏକ ସ୍ଥାନରେ କହିଲେ 'ଆମ୍ଭେ ମାୟାଦ୍ୱାରା ଜଗତ୍ ବାରମ୍ବାର ରଚନା କରୁଁ' ପୁଣି ଅନ୍ୟ ସ୍ଥାନରେ କହିଲେ, ଯେ 'ଆମ୍ଭେ ଉଦାସୀନ' ଏପରି ପରସ୍ପର ବିରୁଦ୍ଧ କଥାରେ କାଳେ ଅର୍ଜ୍ଜୁନଙ୍କର ସନ୍ଦେହ ହେବ, ଏଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ ଆମ୍ଭର ସନ୍ନିଧାନ (ନିକଟବର୍ତ୍ତିତା) ହେତୁରୁ ପ୍ରକୃତି ଚରାଚର ଜଗତକୁ ରଚନା କରେ, ଅର୍ଥାତ୍ ପ୍ରକୃତିରେ ଜଗଦ୍ରୂପ କ୍ରିୟାର ସ୍ଫୁରଣ ହୁଏ; ସେଥିରେ ଆମ୍ଭେ କୌଣସି ପ୍ରକାରେ ଲିପ୍ତ ନୋହୁଁ । ଯେପରି ସୂର୍ଯ୍ୟ ଉଦୟ ହେଲେ ଜଗତ୍ ପ୍ରକାଶିତ ହୁଏ ଏବଂ ଜଗତରେ ଜୀବମାନେ ଯେଉଁ ଶୁଭ ବା ଅଶୁଭ କର୍ମ କରନ୍ତି, ସୂର୍ଯ୍ୟ ସେଥିର କାରଣ ନୁହନ୍ତି—ସେମାନଙ୍କର ସ୍ୱ-ସ୍ୱଭାବହିଁ ତହିଁର କାରଣ ଅଟେ, ସେହିପରି ଆମ୍ଭର ସନ୍ନିଧାନ ହେତୁରୁ ପ୍ରକୃତିରେ

Digitized by PPRACHIN, SOA

ଜଗତ୍‌ରୂପ କ୍ରିୟାର ଉତ୍ପତ୍ତି ହୁଏ, କିନ୍ତୁ ଅମ୍ଭେ ତହିଁର କାରଣ ନୋହୁଁ,—ପ୍ରକୃତି ତାହାର କାରଣ ଅଟେ । ଆମ୍ଭର ସେହି ଅଧିଷ୍ଠାନ ହେତୁରୁ ଜଗତ୍ ବାର ବାର ସୃଷ୍ଟି ହେଉଅଛି, ମାତ୍ର ଅମ୍ଭେ ଅବ୍ୟୟ ଓ ନିତ୍ୟରୂପରେ ବର୍ତ୍ତମାନ ଅଛୁଁ ।

ଫଳକଥା ଏହି କି ମାୟା ଜଡ଼ସ୍ୱରୂପା ହେତୁରୁ ନିଜେ ଜଗତ୍ ରଚନା କରି ପାରେ ନାହିଁ ସତ, ମାତ୍ର ଅମ୍ଭ ସନ୍ନିଧାନ ହେତୁରୁ ସେଥିରେ ଜଗତ୍ ଆପେ ପ୍ରକାଶିତ ହୁଏ, କିନ୍ତୁ ଅମ୍ଭେ ସୂର୍ଯ୍ୟପରି ନିର୍ଲିପ୍ତ ଥାଉଁ । ଅତଏବ ଆମ୍ଭ ସନ୍ନିଧାନ ହେତୁରୁ ଜଗତ୍ ସୃଷ୍ଟି ହୁଏ, ଏହି ଅର୍ଥରେ ଆମ୍ଭେ ଜଗତ୍ ସୃଷ୍ଟି କରୁଅଛୁଁ ବୋଲି କୁହାଯାଏ, ପୁଣି ଆମ୍ଭେ ସୂର୍ଯ୍ୟପରି ସମ୍ପୂର୍ଣ୍ଣ ନିର୍ଲିପ୍ତ ଓ ନିଷ୍କ୍ରିୟ ଥିବାରୁ ଉଦାସୀନ ଅଛୁଁ । ୧୦ ।

ଶ୍ଳୋକଃ ।

ଅବଜାନନ୍ତି ମାଂ ମୂଢ଼ା ମାନୁଷୀଂ ତନୁମାଶ୍ରିତଂ ।
ପରଂ ଭାବମଜାନନ୍ତୋ ମମ ଭୂତମହେଶ୍ୱରଂ । ୧୧ ।

ଅନ୍ୱୟଃ ।

ଭୂତମହେଶ୍ୱରଂ ମମ ପରଂ ଭାବ ଅଜାନନ୍ତଃ ମୂଢ଼ାଃ ମାନୁଷୀଂ ତନୁଂ ଆଶ୍ରିତଂ ମାଂ ଅବଜାନନ୍ତି । ୧୧ ।

ଟୀକା ।

ନନ୍ୱେବମ୍ଭୂତଂ ପରମେଶ୍ୱରଂ ତ୍ୱାଂ କମିତ କେଚନାଦ୍ଭଜନ୍ତେ ତତ୍ରାହ, ଅବଜାନନ୍ତୀତି ଦ୍ୱାଭ୍ୟାଂ । ସର୍ବଭୂତମହେଶ୍ୱରରୂପଂ ମଦୀୟଂ ପରଂ ଭାବ ତତ୍ତ୍ୱମଜାନନ୍ତୋମୂଢ଼ାଃ ମୂର୍ଖାଃ ମାମବଜାନନ୍ତି ମାନବମନ୍ୟନ୍ତେ, ଅବଜ୍ଞାନେ ହେତୁଃ ଶୁଦ୍ଧସତ୍ତ୍ୱମୟୀମପି ତନୁଂ ଭକ୍ତେଚ୍ଛାବଶାତ୍ ମନୁଷ୍ୟାକାରମାଶ୍ରିତବନ୍ତମିତି । ୧୧ ।

ପଦବ୍ୟାଖ୍ୟା ।

ଅବଜାନନ୍ତି—ଅବମାନନା କରନ୍ତି, ମାଂ—ଆମ୍ଭଙ୍କୁ, ମୂଢ଼ାଃ—ମୂର୍ଖଲୋକେ, ମାନୁଷୀଂ ତନୁଂ—ମନୁଷ୍ୟଦେହକୁ; ଆଶ୍ରିତଂ—ଗ୍ରହଣ କରିଥିବାରୁ, ପରଂ ଭାବ—ଉତ୍କୃଷ୍ଟ ମହିମାକୁ, ଅଜାନନ୍ତଃ—ନ ଜାଣି, ମମ—ଆମ୍ଭର, ଭୂତମହେଶ୍ୱରଂ—ଜଗତର ମହାପ୍ରଭୁସ୍ୱରୂପ । ୧୧ ।

ଅନୁବାଦ ।

ଜଗତର ମହାପ୍ରଭୁ ସ୍ୱରୂପ ଆମ୍ଭର ପରମ ତତ୍ତ୍ୱକୁ ନ ଜାଣି, ଅବିବେକିଲୋକମାନେ, ମନୁଷ୍ୟ ଶରୀର ଧାରଣ କରିଅଛୁଁ ବୋଲି ଆମ୍ଭଙ୍କୁ ଅବଜ୍ଞା କରନ୍ତି । ୧୧ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନଙ୍କ ସମ୍ମୁଖରେ ଉପସ୍ଥିତ ଶ୍ରୀଭଗବାନଙ୍କ ଉପଦେଶରୁ ଜଣାଯାଏ, ଯେ ସେ, ନିଜେ ପରମେଶ୍ୱର ଅଟନ୍ତି, ଏଥିରେ କାଳେ ଅର୍ଜ୍ଜୁନଙ୍କର ଏପରି ଆଶଙ୍କା ହେବ, ଯେ କଂସ ଶିଶୁପାଳ ଓ ଦୁର୍ଯ୍ୟୋଧନ ପ୍ରଭୃତି ବ୍ୟକ୍ତିମାନେ, ଏପରି ଅଦ୍ଭୁତ କ୍ଷମତାଶାଳୀ ଶ୍ରୀକୃଷ୍ଣଙ୍କୁ ତେବେ ସାମାନ୍ୟ ମନୁଷ୍ୟ ଜ୍ଞାନ କରି ଅନାଦର କରନ୍ତି କାହିଁକି ? ସେଥିପାଇଁ ସର୍ବାନ୍ତର୍ଯ୍ୟାମୀ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଆମ୍ଭର ମହିମା ସର୍ବଜଗତର ମହାପ୍ରଭୁ ଅର୍ଥାତ୍ ପ୍ରପଞ୍ଚ ଜଗତର କାରଣର କାରଣ ଅଟେ । ସେହି ମହିମାରୂପ ପରମତତ୍ତ୍ୱକୁ ନ ଜାଣି, ଅବିବେକି ଲୋକମାନେ

ଅମ୍ଭଙ୍କୁ ଅନାଦର କରନ୍ତି । ଅମ୍ଭେ ଭକ୍ତମାନଙ୍କର ଇଚ୍ଛା ଅନୁସାରେ ଆପଣାର ଶୁଦ୍ଧ ସତ୍ତ୍ୱ ମୂର୍ତ୍ତିକୁ ମନୁଷ୍ୟ ଆକାରରେ ପରିଣତ କରିଅଛୁଁ ବୋଲି ଅବିବେକ ଲୋକମାନେ ଅମ୍ଭଙ୍କୁ ଜାଣି ନ ପାରି ଆପଣାର ପରି ସାମାନ୍ୟ ମନୁଷ୍ୟ ଜ୍ଞାନରେ ଅବମାନନା କରନ୍ତି, ମାତ୍ର ବିବେକ ଓ ଭକ୍ତମାନେ ଅମ୍ଭର ସେହି ମନୁଷ୍ୟ ମୂର୍ତ୍ତିରେ ସମସ୍ତ ମହିମା ଓ ତତ୍ତ୍ୱ ଅବଗତ ହୋଇ ଚିଦାନନ୍ଦରୂପରେ ଧ୍ୟାନ କରି ପରମପଦ ଲାଭ କରନ୍ତି । ୧୧ ।

## ଶ୍ଲୋକଃ ।

ମୋଘାଶା ମୋଘକର୍ମାଣୋ, ମୋଘଜ୍ଞାନା ବିଚେତସଃ ।
ରାକ୍ଷସୀମାସୁରୀଂ ଚୈବ, ପ୍ରକୃତିଂ ମୋହିନୀଂ ଶ୍ରିତାଃ । ୧୨ ।

## ଅନ୍ୱୟଃ ।

ରାକ୍ଷସୀଂ ଚ ଆସୁରୀଂ ଏବ ମୋହିନୀଂ ପ୍ରକୃତିଂ ଶ୍ରିତାଃ (ଅତଏବ) ମୋଘାଶାଃ ମୋଘକର୍ମାଣଃ ମୋଘଜ୍ଞାନାଃ ବିଚେତସଃ ( ମାଂ ଅବଜାନନ୍ତି ) । ୧୨ ।

## ଟୀକା ।

କିଞ୍ଚ ମୋଘାଶାଇତି । ମତ୍ତୋଽନ୍ୟଦେବତାନ୍ତରଂ କ୍ଷିପ୍ରଂ ଫଳଂ ଦାସ୍ୟତୀତ୍ୟେବମ୍ଭୂତା ମୋଘା ନିଷ୍ଫଳୈବାଶା ଯେଷାଂ ତେ, ଅତଏବ ମଦ୍‌ବିମୁଖତ୍ୱାନ୍ମୋଘାନି ନିଷ୍ଫଳାନି କର୍ମାଣି ଯେଷାଂ ତେ, ମୋଘମେବ ନାନାକୁତର୍କାଶ୍ରିତଂ ଶାସ୍ତ୍ରଜ୍ଞାନଂ ଯେଷାଂ ତେ, ଅତଏବ ବିଚେତସୋ ବିକ୍ଷିପ୍ତଚିତ୍ତାଃ, ସର୍ବତ୍ରହେତୁଃ ରାକ୍ଷସୀଂ ତାମସୀଂ ହିଂସାଦିପ୍ରଚୁରାଂ ଆସୁରୀଂ ଚ ରାଜସୀଂ କାମଦର୍ପାଦିବହୁଳାଂ ମୋହିନୀଂ ବୁଦ୍ଧିଭ୍ରଂଶକରୀଂ ପ୍ରକୃତିଂ ସ୍ୱଭାବ ଶ୍ରିତାଃ ଆଶ୍ରିତାଃ ସନ୍ତୋମାମବଜାନନ୍ତୀତି ପୂର୍ବେଣୈବାନ୍ୱୟଃ । ୧୨ ।

## ପଦବ୍ୟାଖ୍ୟା ।

ମୋଘାଶାଃ—ନିଷ୍ଫଳମନୋରଥ, ମୋଘକର୍ମାଣଃ—ନିଷ୍ଫଳକର୍ମକାରୀ, ମୋଘଜ୍ଞାନାଃ—କୁତର୍କ ଆଶ୍ରୟ କରିବାରୁ ବିଫଳଜ୍ଞାନ, ବିଚେତସଃ—ବିକ୍ଷିପ୍ତଚିତ୍ତ, ରାକ୍ଷସୀଂ—ତମୋଗୁଣପ୍ରଧାନ, ଆସୁରୀଞ୍ଚୈବ—ଏବଂ ରଜୋଗୁଣପ୍ରଧାନ, ପ୍ରକୃତିଂ—ସ୍ୱଭାବକୁ, ମୋହିନୀଂ—ବୁଦ୍ଧିନାଶିନୀ, ଶ୍ରିତାଃ—ଆଶ୍ରୟକରି ।

## ଅନୁବାଦ ।

ମୋହକାରିଣୀ ରାକ୍ଷସୀ ( ତମୋଗୁଣମୟୀ ) ଓ ଆସୁରୀ ( ରଜୋଗୁଣମୟୀ) ପ୍ରକୃତିକୁ ଆଶ୍ରୟ କରି, ନିଷ୍ଫଳକାମ, ବିଫଳକର୍ମା ଓ କୁତର୍କଜ୍ଞାନୀ ପୁରୁଷମାନେ ବିଗ୍ରହହୀନ ହୋଇ (ଅମ୍ଭଙ୍କୁ ଅବଜ୍ଞା କରନ୍ତି) । ୧୨ ।

## ବିଶଦବ୍ୟାଖ୍ୟା ।

ଯେଉଁମାନେ ତମୋଗୁଣପ୍ରଧାନା ହିଂସାତ୍ମିକା ରାକ୍ଷସୀ ପ୍ରକୃତି ଆଶ୍ରୟ କରନ୍ତି ଓ ଯେଉଁମାନେ ରଜୋଗୁଣପ୍ରଧାନା କାମାତ୍ମିକା ଆସୁରୀ ପ୍ରକୃତି ପ୍ରାପ୍ତ ହୁଅନ୍ତି, ଏବଂ ଯେଉଁମାନେ ବୁଦ୍ଧିନାଶିନୀ ମୋହିନୀପ୍ରକୃତିର ଅଧୀନ ହୁଅନ୍ତି, ସେମାନେ ପରମାତ୍ମା ପରମେଶ୍ୱରଙ୍କୁ ଛାଡ଼ି ଅନ୍ୟ ଦେବତାଙ୍କ ପୂଜା କଲେ, ଶୀଘ୍ର ଅମୁକ ଫଳ ପ୍ରାପ୍ତ ହେବ ବୋଲି ବୃଥା ଆଶା କରନ୍ତି ଓ ସ୍ୱର୍ଗାଦି ପାଇବା ଲୋଭରେ ଅଗ୍ନିହୋତ୍ର ଓ ଅଶ୍ୱମେଧ ପ୍ରଭୃତି ବୃଥା କର୍ମ କରନ୍ତି ଏବଂ ଶାସ୍ତ୍ରପାଠ କଲେ ଓ ଗୁରୁଙ୍କ ଉପଦେଶ ପାଇଲେ ସୁଦ୍ଧା, କୁତର୍କ ଅର୍ଥାତ୍ ବିତଣ୍ଡା ଯୁକ୍ତି କରି

Digitized by PPRACHIN, SOA

ଜ୍ଞାନକୁ ନିଷ୍ଫଳ କରନ୍ତି, ସୁତରାଂ ସେମାନଙ୍କର ଚିତ୍ତ ବିକ୍ଷିପ୍ତ ଅର୍ଥାତ୍ ଅସ୍ଥିର ହେବାରୁ ସେମାନେ ଆମ୍ଭର ମନୁଷ୍ୟ ଶରୀର ଦେଖି, ଚିହ୍ନି ନ ପାରି ଅବଜ୍ଞା କରନ୍ତି । ୧୨ ।

ଶ୍ଳୋକଃ ।

ମହାତ୍ମାନସ୍ତୁ ମାଂ ପାର୍ଥ, ଦୈବୀଂ ପ୍ରକୃତିମାଶ୍ରିତାଃ ।
ଭଜନ୍ତ୍ୟନନ୍ୟମନସୋ, ଜ୍ଞାତ୍ୱା ଭୂତାଦିମବ୍ୟୟଂ । ୧୩ ।

ଅନ୍ୱୟଃ ।

ହେ ପାର୍ଥ ! ଦୈବୀଂ ପ୍ରକୃତିଂ ଆଶ୍ରିତାଃ ମହାତ୍ମାନଃ ତୁ ମାଂ ଭୂତାଦିଂ ଅବ୍ୟୟଂ ଜ୍ଞାତ୍ୱା ଅନନ୍ୟଚେତସଃ ଭଜନ୍ତି । ୧୩ ।

ଟୀକା ।

କେ ତର୍ହି ତ୍ୱାମାରାଧୟନ୍ତୀତ୍ୟତ ଆହ, ମହାତ୍ମାନ ଇତି । ମହାତ୍ମାନଃ କାମାଦ୍ୟନଭିଭୂତଚିତ୍ତାଃ ଅତଏବ ଅଭୟଂ ସତ୍ତ୍ୱସଂଶୁଦ୍ଧିରିତ୍ୟାଦିନା ବକ୍ଷ୍ୟମାଣାଂ ଦୈବୀଂ ପ୍ରକୃତିଂ ସ୍ୱଭାବମାଶ୍ରିତାଃ ଅତଏବ ମତ୍ତ୍ୟତିରେକେଣ ନାସ୍ତ୍ୟନ୍ୟସ୍ମିନ୍ ମନୋ ଯେଷାଂ ତେ ତୁ ଭୂତାଦିଂ ଜଗତ୍କାରଣଂ ଅବ୍ୟୟଂ ନିତ୍ୟଂ ଚ ମାଂ ଜ୍ଞାତ୍ୱା ଭଜନ୍ତି । ୧୩ ।

ପଦବ୍ୟାଖ୍ୟା ।

ମହାତ୍ମାନଃ ତୁ—କିନ୍ତୁ କାମକ୍ରୋଧାଦିରେ ଅଭିଭୂତ ନୋହୁଥିବା ବ୍ୟକ୍ତିମାନେ, ମାଂ—ଆମ୍ଭଙ୍କୁ, ପାର୍ଥ—ହେ ଅର୍ଜ୍ଜୁନ !, ଦୈବୀଂ—(ସତ୍ତ୍ୱଗୁଣ ପ୍ରଧାନା) ଦେବତା ସମ୍ବନ୍ଧୀୟ, ପ୍ରକୃତିଂ—ସ୍ୱଭାବକୁ, ଆଶ୍ରିତାଃ—ଆଶ୍ରୟ କରି, ଭଜନ୍ତି—ଆରାଧନା କରନ୍ତି, ଅନନ୍ୟମନସଃ—ଆମ୍ଭଠାରୁ ଅନ୍ୟଠାରେ ମନ ନ ଦେଇ ଅର୍ଥାତ୍ ଏକାଗ୍ରଚିତ୍ତ ହୋଇ, ଜ୍ଞାତ୍ୱା—ଜାଣି କରି, ଭୂତାଦିଂ—ଜଗତ୍ କାରଣ, ଅବ୍ୟୟଂ—ନିତ୍ୟ ଅବିନାଶୀ । ୧୩ ।

ଅନୁବାଦ ।

କିନ୍ତୁ ହେ ପାର୍ଥ! ଦୈବୀ (ସାତ୍ତ୍ୱିକୀ) ପ୍ରକୃତିପ୍ରାପ୍ତ ମହାତ୍ମାମାନେ ଏକାଗ୍ରଚିତ୍ତ ହୋଇ ଆମ୍ଭଙ୍କୁ ସମସ୍ତ ଜଗତର ଆଦି କାରଣ ଓ ଅବିନାଶୀ ବୋଲି ଜାଣି ଭଜନା କରନ୍ତି । ୧୩ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ମୂଢମାନେ ଯେଉଁ କାରଣରୁ ଶ୍ରୀଭଗବାନଙ୍କୁ ଅବଜ୍ଞା କରନ୍ତି, ତାହା କୁହା ଯାଇଅଛି, ଏ ଶ୍ଳୋକରେ ଯେଉଁମାନେ ଶ୍ରୀଭଗବାନଙ୍କୁ ଉପାସନା କରନ୍ତି, ସେମାନଙ୍କର କଥା ବ୍ୟାଖ୍ୟା କରି ଯାଉଅଛି ।

ଯେଉଁମାନେ ସତ୍ତ୍ୱଗୁଣପ୍ରଧାନା ଦୈବୀ ପ୍ରକୃତି ପ୍ରାପ୍ତ ହୋଇଥାନ୍ତି ସେମାନେ ଭଗବାନଙ୍କୁ ସମସ୍ତ ଜଗତର ଆଦିକାରଣ ଓ ଅବିନାଶୀ ବୋଲି ଜାଣିପାରି ଏକାଗ୍ରଭକ୍ତିଯୁକ୍ତ ଚିତ୍ତରେ ଉପାସନା କରନ୍ତି ।

ଫଳକଥା ଏହି କି ପ୍ରକୃତି ତ୍ରିଗୁଣମୟୀ ଅଟେ, ତହିଁ ମଧ୍ୟରୁ ଯେଉଁମାନେ କର୍ମାନୁସାରେ ରାଜସୀ ଓ ତାମସୀ ପ୍ରକୃତିର ଅଧୀନ ହୁଅନ୍ତି, ସେମାନେ ଚଞ୍ଚଳଚିତ୍ତ ହୋଇ ଶ୍ରୀଭଗବାନଙ୍କୁ ଚିହ୍ନି ନ ପାରି ଅନାଦର କରନ୍ତି, କିନ୍ତୁ ଯେଉଁମାନେ ଜନ୍ମଜନ୍ମାନ୍ତର ସୁକୃତି ବଳରେ ଶୁଦ୍ଧାନ୍ତଃକରଣ ହୋଇଥାନ୍ତି, ସେମାନେ ସାତ୍ତ୍ୱିକୀ ପ୍ରକୃତିକୁ ଆଶ୍ରୟ କରି ଈଶ୍ୱର ସ୍ୱରୂପ ଜାଣି ପାରନ୍ତି, ସୁତରାଂ ଏକାଗ୍ରଚିତ୍ତରେ ଉପାସନା କରନ୍ତି । ୧୩ ।

Digitized by PPRACHIN, SOA

ଶ୍ଲୋକଃ ।

* ସତତଂ କୀର୍ତ୍ତୟନ୍ତୋ ମାଂ, ଯତନ୍ତଶ୍ଚ ଦୃଢ଼ବ୍ରତାଃ ।
ନମସ୍ୟନ୍ତଶ୍ଚ ମାଂ ଭକ୍ତ୍ୟା, ନିତ୍ୟଯୁକ୍ତା ଉପାସତେ । ୧୪ ।

ଅନ୍ୱୟଃ ।

ସତତଂ କୀର୍ତ୍ତୟନ୍ତଃ ଚ ଦୃଢ଼ବ୍ରତାଃ ଯତନ୍ତଃ ଚ ଭକ୍ତ୍ୟା ମାଂ ନମସ୍ୟନ୍ତଃ ନିତ୍ୟଯୁକ୍ତାଃ (ସନ୍ତଃ) ମାଂ ଉପାସତେ । ୧୪ ।

ଟୀକା ।

ତେଷାଂ ଭଜନପ୍ରକାରମାହ । ସତତମିତି ଦ୍ୱାଭ୍ୟାଂ । ସତତଂ ସର୍ବଦା ସ୍ତୋତ୍ରମନ୍ତ୍ରାଦିଭିଃ କୀର୍ତ୍ତୟନ୍ତଃ କେଚନ୍ମାମୁପାସତେ ସେବନ୍ତେ, ଦୃଢ଼ାନି ବ୍ରତାନି ନିୟମା ଯେଷାଂ ତାଦୃଶାଃ ସନ୍ତୋ ଯତନ୍ତଶ୍ଚ ଈଶ୍ୱରୀୟଜ୍ଞାନାଦିଷୁ ପ୍ରଯତ୍ନଂ କୁର୍ବନ୍ତଃ କେଚିଦ୍ଭକ୍ତ୍ୟା ନମସ୍ୟନ୍ତଶ୍ଚ ପ୍ରଣମନ୍ତଃ । ଅନ୍ୟେ ନିତ୍ୟଯୁକ୍ତାଃ ଅନବରତଂ ଅବହିତାଃ ସେବନ୍ତେ ଭକ୍ତ୍ୟୈବ ନିତ୍ୟଯୁକ୍ତା ଇତି ଚ କୀର୍ତ୍ତନାଦିଷ୍ୱପି ଦ୍ରଷ୍ଟବ୍ୟଂ । ୧୪ ।

ପଦବ୍ୟାଖ୍ୟା ।

ସତତଂ—ସବୁବେଳେ, କୀର୍ତ୍ତୟନ୍ତଃ—କୀର୍ତ୍ତନ କରି, ମାଂ—ଆମ୍ଭଙ୍କୁ, ଯତନ୍ତଶ୍ଚ—ଇନ୍ଦ୍ରିୟମାନଙ୍କୁ ସଂଯତ କରି, ଦୃଢ଼ବ୍ରତାଃ—ଅଟଳ ନିୟମ ସହିତ, ନମସ୍ୟନ୍ତଶ୍ଚ—ଏବଂ ନମସ୍କାର କରି, ମାଂ—ଆମ୍ଭଙ୍କୁ, ଭକ୍ତ୍ୟା—ଏକାନ୍ତ ଭକ୍ତିରେ, ନିତ୍ୟଯୁକ୍ତାଃ—ସର୍ବଦା ସମାଧିଯୁକ୍ତ ହୋଇ, ଅର୍ଥାତ୍ ଏକାଗ୍ର ଚିତ୍ତ ହୋଇ, ଉପାସତେ—ଉପାସନା କରନ୍ତି । ୧୪ ।

ଅନୁବାଦ ।

(ସେହି ମହାପୁରୁଷମାନେ) ସର୍ବଦା ଏକାଗ୍ରଚିତ୍ତ ହୋଇ ଭକ୍ତିରେ ଆମ୍ଭର ନାମ ସଙ୍କୀର୍ତ୍ତନ ଓ ଅଟଳ ନିୟମରେ ଇନ୍ଦ୍ରିୟସଂଯମ କରି ଆମ୍ଭଙ୍କୁ ନମସ୍କାର ଓ ଉପାସନା କରନ୍ତି ।୧୪।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଲୋକରେ ଦୈବୀପ୍ରକୃତିପ୍ରାପ୍ତ ମହାତ୍ମାମାନେ ଭଗବାନଙ୍କୁ ଉପାସନା କରନ୍ତି ବୋଲି କୁହା ଯାଇଥିଲା, ଏ ଶ୍ଲୋକରେ ଓ ପରବର୍ତ୍ତି ଶ୍ଲୋକରେ ଉପାସନାର ପ୍ରଣାଳୀ ବ୍ୟାଖ୍ୟା କରି ଯାଉଅଛି ।

ସେହି ପୁରୁଷମାନଙ୍କ ମଧ୍ୟରୁ କେହି୨ ଏକାଗ୍ରଚିତ୍ତ ହୋଇ ଭକ୍ତିର ସହିତ ଆମ୍ଭର ନାମ ସଙ୍କୀର୍ତ୍ତନ କରି ଉପାସନା କରନ୍ତି, କେହି୨ ଦୃଢ଼ ନିୟମରେ ଇନ୍ଦ୍ରିୟମାନଙ୍କୁ ସଂଯମ କରି ଭକ୍ତିଯୁକ୍ତ ଚିତ୍ତରେ ଆମ୍ଭଙ୍କୁ ପୂଜା କରନ୍ତି, ଆଉ କେହି ବା ଆମ୍ଭଙ୍କୁ ଏକମାତ୍ର ପରିତ୍ରାଣର ଉପାୟ ଜାଣି, ଭକ୍ତିରେ ନମସ୍କାର କରି ଆରାଧନା କରନ୍ତି, ପୁଣି ଏ ଶ୍ଲୋକ ଅନ୍ତର୍ଗତ 'ଚ' କାର ହେତୁରୁ ସ୍ମରଣ ପାଦସେବନ ଆଦି ଅନ୍ୟାନ୍ୟ ଭକ୍ତି କାର୍ଯ୍ୟଗୁଡ଼ିକ ମଧ୍ୟ କେହି୨ କରନ୍ତି ବୋଲି ସୂଚିତ ହେଉଅଛି, ଭକ୍ତିଗ୍ରନ୍ଥରେ ଭକ୍ତିର ନଅ ପ୍ରକାର ଚିହ୍ନ ଥିବାର ଲେଖାଅଛି ଯଥା;—

ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ, ସ୍ମରଣଂ ପାଦସେବନଂ ।
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ, ସଖ୍ୟମାତ୍ମନିବେଦନଂ ।

Digitized by PPRACHIN, SOA

ଅର୍ଥାତ୍ ସର୍ବବ୍ୟାପକ ଶ୍ରୀଭଗବାନଙ୍କର କଥା ଓ ଗୁଣାନୁବାଦ ଶ୍ରବଣ, ତାହାଙ୍କର ନାମସଂକୀର୍ତ୍ତନ, ଏବଂ ତାହାଙ୍କୁ ସ୍ମରଣ କରିବା, ପୁଣି ତାହାଙ୍କର ପାଦସେବନ, ଅର୍ଚ୍ଚନା ଓ ବନ୍ଦନା କରିବା ଆଉ ତାହାଙ୍କୁ ପ୍ରଭୁ ଜାଣି ଆପଣାକୁ 'ଦାସ' ଅର୍ଥାତ୍ ଭୃତ୍ୟ କରି ମଣିବା ଓ ସୁଖରେ ବା ଦୁଃଖରେ ତାହାଙ୍କୁ ଏକମାତ୍ର ବନ୍ଧୁ ବୋଲି ବିଶ୍ୱାସ କରିବା ଏବଂ ତାହାଙ୍କଠାରେ ଆତ୍ମ ସମର୍ପଣ କରିବା; ଏହି ସବୁ କାର୍ଯ୍ୟକୁ ଭକ୍ତିର ଚିହ୍ନ ବୋଲାଯାଏ । କେହି କେହି ସନ୍ନ୍ୟାସୀ ଓ ସାଧୁମାନଙ୍କୁ ଏବଂ ଗୁରୁଙ୍କୁ ପରମେଶ୍ୱରଙ୍କର ସଚଳ ମୂର୍ତ୍ତି ମନେ କରି ଭକ୍ତିଯୁକ୍ତଚିତ୍ତରେ ନମସ୍କାର କରନ୍ତି । କାହିଁକି ନା ଶାସ୍ତ୍ରରେ ବିଧି ଅଛି ଯେ "ଦେବତା ପ୍ରତିମାଂ ଦୃଷ୍ଟ୍ୱା ଯତିଂ ଦୃଷ୍ଟ୍ୱା ଚ ଦଣ୍ଡିନଂ ପ୍ରଣିପାତମକୁର୍ବାଣୋ ରୌରବଂ ନରକଂ ବ୍ରଜେତ୍" ଅର୍ଥାତ୍ ଦେବତା ପ୍ରତିମା, ସନ୍ନ୍ୟାସୀ ଓ ମୁନିଙ୍କି ଦେଖି ଯେଉଁ ବ୍ୟକ୍ତି ନମସ୍କାର ନ କରେ, ସେ ରୌରବ ନାମକ ନରକରେ ପଡେ ।

ଯେଉଁ ବ୍ୟକ୍ତି ଏକାନ୍ତ ଭକ୍ତିରେ ଉପରଉକ୍ତ ନଅପ୍ରକାର ଉପାସନା ପ୍ରଣାଳୀ ମଧ୍ୟରୁ ଯେ କୌଣସି ପ୍ରଣାଳୀ ଅବଲମ୍ବନ କରି ଉପାସନା କରନ୍ତି, ସେ ପରମପଦ ଲାଭ କରନ୍ତି । ଯଥା—"ଯସ୍ୟ ଦେବେ ପରାଭକ୍ତିର୍ଯଥା ଦେବେ ତଥା ଗୁରୌ । ତସ୍ୟୈତେ କଥିତା ହ୍ୟର୍ଥାଃ ପ୍ରକାଶନ୍ତେ ମହାତ୍ମନଃ" । ଅର୍ଥାତ୍ ଈଶ୍ୱରଙ୍କଠାରେ ଯାହାଙ୍କର ଏକାନ୍ତ ଭକ୍ତି ଏବଂ ଈଶ୍ୱରଙ୍କ ପରି, ଯେ ଗୁରୁଙ୍କଠାରେ ମଧ୍ୟ ଭକ୍ତି କରନ୍ତି, ତାହାଙ୍କ ବୁଦ୍ଧିରେ ବେଦାନ୍ତ ଶାସ୍ତ୍ରୋକ୍ତ ଅର୍ଥ ପ୍ରକାଶିତ ହୁଏ ।

ମହାତ୍ମା ପତଞ୍ଜଳି ମଧ୍ୟ କହିଅଛନ୍ତି, ଯେ ପରମେଶ୍ୱରଙ୍କୁ ଏକାନ୍ତ ଭକ୍ତିରେ 'ପ୍ରଣିଧାନ' ଅର୍ଥାତ୍ ଉପାସନା କଲେ, ସାଧକବ୍ୟକ୍ତି ସମସ୍ତ ବାଧା ଓ ବିଘ୍ନ ଅତିକ୍ରମ କରି ବ୍ରହ୍ମସାକ୍ଷାତ୍କାର ପ୍ରାପ୍ତ ହୁଅନ୍ତି ।

ଫଳକଥା ଏହି ଜ ଭୂମିକା ଅତିକ୍ରମର ପ୍ରଣାଳୀ ଅନୁସାରେ ବ୍ରହ୍ମସାକ୍ଷାତ୍କାର ଲାଭ କରିବାରେ ଯେଉଁ କ୍ଲେଶ ହୁଏ ଏବଂ ଅର୍ଚ୍ଚିରାଦି ମାର୍ଗରେ (୮ ଅଃ ୨୪ଶ ଶ୍ଳୋକ ବ୍ୟାଖ୍ୟା ଦେଖ) ଗମନ କରିବାରେ ଯେଉଁ କାଳ ବିଲମ୍ବ ଘଟେ, ଏକାନ୍ତ ଭକ୍ତିଯୁକ୍ତ ଚିତ୍ତରେ ଈଶ୍ୱର ଉପାସନା କଲେ, ସେ ସବୁ କ୍ଲେଶ ବା କାଳ ବିଲମ୍ବ ହୁଏ ନାହିଁ ଓ ସାଧକ ଶୀଘ୍ର ଓ ସହଜରେ ବ୍ରହ୍ମସାକ୍ଷାତ୍କାର ଲାଭ କରନ୍ତି ।

ଏହି ଅଧ୍ୟାୟ ଆରମ୍ଭରେ ଯେଉଁ ଗୁହ୍ୟତମ ଜ୍ଞାନକଥା ଅର୍ଜୁନଙ୍କୁ କହିବାକୁ ଶ୍ରୀଭଗବାନ୍ ପ୍ରତିଜ୍ଞା କରିଥିଲେ, ସେହି ଭକ୍ତିଜ୍ଞାନକଥା ଏଠାରେ ବ୍ୟାଖ୍ୟା କଲେ । ୧୪ ।

ଶ୍ଳୋକଃ ।

ଜ୍ଞାନଯଜ୍ଞେନ ଚାପ୍ୟନ୍ୟେ, ଯଜନ୍ତୋମାମୁପାସତେ ।
ଏକତ୍ୱେନ ପୃଥକ୍ତ୍ୱେନ, ବହୁଧା ବିଶ୍ୱତୋମୁଖଂ । ୧୫ ।

ଅନ୍ୱୟଃ ।

ଅନ୍ୟେ ଏକତ୍ୱେନ ଚ ପୃଥକ୍ତ୍ୱେନ ବହୁଧା ବିଶ୍ୱତୋମୁଖଂ ମାଂ ଜ୍ଞାନଯଜ୍ଞେନ ଯଜନ୍ତଃ ଉପାସତେ । ୧୫ ।

Digitized by PPRACHIN, SOA

ଟୀକା ।

ଉକ୍ତ ଜ୍ଞାନେତି । ବାସୁଦେବଃ ସର୍ବମିତ୍ୟେବଂ ସର୍ବାତ୍ମଦର୍ଶନଂ ଜ୍ଞାନଂ ତଦେବ ଯଜ୍ଞଃ ତେନ ଜ୍ଞାନଯଜ୍ଞେନ ମାଂ ଯଜନ୍ତଃ ପୂଜୟନ୍ତୋଽନ୍ୟେପ୍ୟୁପାସତେ, ତତ୍ରାପି କେଚିଦେକତ୍ୱେନାଭେଦଭାବନୟା କେଚିତ୍ ପୃଥକ୍‌ଭାବନୟା ଦାସୋଽହମିତି କେଚିତ୍ ବିଶ୍ୱତୋମୁଖଂ ସର୍ବାତ୍ମକଂ ମାଂ ବହୁଧା ବ୍ରହ୍ମରୁଦ୍ରାଦିରୂପେଣୋପାସତେ । ୧୫ ।

ପଦବ୍ୟାଖ୍ୟା ।

ଜ୍ଞାନଯଜ୍ଞେନ—ତତ୍ତ୍ୱଜ୍ଞାନରୂପ ଯଜ୍ଞଦ୍ୱାରା, ଚ ଅପି ଅନ୍ୟେ—ଆଉ କେହି ମଧ, ଯଜନ୍ତଃ—ପୂଜା କରି, ମାଂ—ଆମ୍ଭଙ୍କୁ ଉପାସତେ—ଉପାସନା କରନ୍ତି, ଏକତ୍ୱେନ—ଏକ ଜ୍ଞାନରେ ଅର୍ଥାତ୍ ଅଭେଦ ବା ଅଦ୍ୱୈତ ଜ୍ଞାନରେ, ପୃଥକ୍ତ୍ୱେନ—ପୃଥକ୍ ଭାବରେ ଅର୍ଥାତ୍ ଦ୍ୱୈତଭାବରେ, ବହୁଧା—(ବ୍ରହ୍ମା, ବିଷ୍ଣୁ ଓ ରୁଦ୍ର ଇତ୍ୟାଦି) ବହୁପ୍ରକାରରେ, ବିଶ୍ୱତୋମୁଖଂ—ବିରାଟରୂପୀ—ସର୍ବବ୍ୟାପୀ—ସବୁ ଦେବତାଙ୍କର ଆତ୍ମାସ୍ୱରୂପ । ୧୫ ।

ଅନୁବାଦ ।

ଅନ୍ୟମାନେ ଆତ୍ମଜ୍ଞାନରୂପ ଯଜ୍ଞଦ୍ୱାରା ପୂଜା କରି ଆମ୍ଭର ଉପାସନା କରନ୍ତି, କେହି୨ ଅଦ୍ୱୈତଭାବରେ ଓ କେହି ବା ଦ୍ୱୈତଭାବରେ ଏବଂ କେହି୨ ବ୍ରହ୍ମା, ବିଷ୍ଣୁ ରୁଦ୍ର ଓ ଇନ୍ଦ୍ର ପ୍ରଭୃତି ବହୁଧାରୂପରେ ସର୍ବାତ୍ମସ୍ୱରୂପ ଆମ୍ଭର ଉପାସନା କରନ୍ତି । ୧୫ ।

ବିଶଦବ୍ୟାଖ୍ୟା ।

ଈଶ୍ୱର ସର୍ବବ୍ୟାପୀ ସର୍ବଶକ୍ତିମାନ୍ ଓ ସର୍ବାତ୍ମସ୍ୱରୂପ, ଏ ପ୍ରକାର ବୋଧକୁ ଜ୍ଞାନ ବୋଲାଯାଏ । ସେହି ଜ୍ଞାନରୂପ ଯଜ୍ଞଦ୍ୱାରା ପୂଜା କରି, ପୂର୍ବଶ୍ଳୋକୋକ୍ତ ସାଧକ ଭିନ୍ନ, ଅନ୍ୟ ବ୍ୟକ୍ତିମାନେ ଆମ୍ଭର ଉପାସନା କରନ୍ତି, ସେହି ଜ୍ଞାନଯଜ୍ଞକାରୀମାନେ ଉତ୍ତମ, ମଧ୍ୟମ ଓ ମନ୍ଦ ଭେଦରେ ତିନପ୍ରକାର; ତାହା ମଧ୍ୟରୁ ଯେଉଁମାନେ ଉତ୍ତମ ଜ୍ଞାନୀ, ସେମାନେ ଏକତ୍ୱ ଜ୍ଞାନରେ—ଅଦ୍ୱୈତ ଜ୍ଞାନରେ, ଅର୍ଥାତ୍ ଈଶ୍ୱର ଓ ଆପଣା ମଧ୍ୟରେ କୌଣସି ପ୍ରଭେଦ ନାହିଁ ଏହିପରି ଜ୍ଞାନଦ୍ୱାରା ଉପାସନା କରନ୍ତି । ଆଉ ମଧ୍ୟମଶ୍ରେଣୀର ଜ୍ଞାନୀମାନେ ପୃଥକ୍‌ଭାବରେ—ଦ୍ୱୈତଭାବରେ—ଅର୍ଥାତ୍ ଈଶ୍ୱରଙ୍କୁ ସେବ୍ୟ ବା ପ୍ରଭୁ ଏବଂ ଆପଣାକୁ ସେବକ ବା ଭୃତ୍ୟଜ୍ଞାନରେ ଉପାସନା କରନ୍ତି ; ପୁଣି ମନ୍ଦଜ୍ଞାନୀମାନେ ଇନ୍ଦ୍ର ଚନ୍ଦ୍ର ଓ ରୁଦ୍ରାଦି ବହୁପ୍ରକାର ମୂର୍ତ୍ତିରେ ଉପାସନା କରନ୍ତି, କିନ୍ତୁ ଆମ୍ଭେ, ଯେ ସବୁ ଦେବତାଙ୍କର ଆତ୍ମାସ୍ୱରୂପ, ତାହା ସେମାନେ ନ ଜାଣି ଦେବତାମାତ୍ରଙ୍କେ ପୂଜ୍ୟ, ଏପରି ଜ୍ଞାନରେ ଅନ୍ୟ ଦେବତାର ପୂଜା କରନ୍ତି ।

ଈଶ୍ୱର ଓ ଆପଣା ମଧ୍ୟରେ ଭେଦ ନ ଥିବା ଜ୍ଞାନରେ ଯେଉଁମାନେ ଉପାସନା କରନ୍ତି, ସେମାନେ ଜୀବନ୍ମୁକ୍ତ ବୋଲି ଉତ୍ତମ ଜ୍ଞାନୀ, ଯେଉଁମାନେ ଈଶ୍ୱରଙ୍କୁ ସେବ୍ୟ ଓ ଆପଣାକୁ ସେବକ ଜ୍ଞାନରେ ଉପାସନା କରନ୍ତି, ସେହି ଭକ୍ତମାନେ ଦେହତ୍ୟାଗ ପରେ ମୁକ୍ତି ଲାଭ କରନ୍ତି ବୋଲି, ମଧ୍ୟମ ଜ୍ଞାନୀ, ସେହିପରି ଅନ୍ୟ ଦେବତାପୂଜକ ଦେହତ୍ୟାଗ ପରେ ସେହି ଦେବତା ଦେହରେ ଓ ସେହି ଦେବତା ପରବର୍ତ୍ତୀ ଦେବତା ଦେହରେ, ଏହିପରି କ୍ରମେ ହିରଣ୍ୟଗର୍ଭ ବ୍ରହ୍ମରେ ଲୀନ ହୋଇ ସର୍ବଶେଷରେ ବହୁକଲ୍ପାନ୍ତେ ନିର୍ଗୁଣ ବ୍ରହ୍ମରେ ଲୀନ ହୁଅନ୍ତି, ଏଥିପାଇଁ ସେମାନଙ୍କୁ ମନ୍ଦଜ୍ଞାନୀ ବୋଲାଗଲା । ୧୫ ।

Digitized by PPRACHIN, SOA

## ଶ୍ଲୋକଃ ।

ଅହଂ କ୍ରତୁରହଂ ଯଜ୍ଞଃ, ସ୍ୱଧାହମହମୌଷଧଂ ।
ମନ୍ତ୍ରୋଽହମହମେବାଜ୍ୟ,ମହମଗ୍ନିରହଂ ହୁତଂ । ୧୬ ।

## ଅନ୍ୱୟଃ ।

କ୍ରତୁଃ ଅହଂ ଯଜ୍ଞଃ ଅହଂ ସ୍ୱଧା ଅହଂ ଔଷଧଂ ଅହଂ ମନ୍ତ୍ରଃ ଅହଂ ଆଜ୍ୟଂ ଅହଂ ଏବ, ଅଗ୍ନିଃ ଅହଂ ହୁତଂ ଅହଂ । ୧୬ ।

## ଟୀକା ।

ସର୍ବାତ୍ମତାଂ ପ୍ରପଞ୍ଚୟତି, ଅହଂ କ୍ରତୁରିତି ଚତୁର୍ଭିଃ । କ୍ରତୁଃ ଶ୍ରୌତୋଽଗ୍ନିଷ୍ଟୋମାଦିଃ, ଯଜ୍ଞଃ ସ୍ମାର୍ତ୍ତଃ ପଞ୍ଚଯଜ୍ଞାଦିଃ ସ୍ୱଧା ପିତୃର୍ଥଂ ଶ୍ରାଦ୍ଧାଦିଃ, ଔଷଧଂ ଔଷଧିପ୍ରଭବମନ୍ନଂ ଭେଷଜଂ ବା, ମନ୍ତ୍ରୋ-ଯାଜ୍ୟପୁରୋଽନୁବାକ୍ୟାଦିଃ । ଆଜ୍ୟଂ ହୋମାଦିସାଧନଂ ଅଗ୍ନିରାହବନୀୟାଦିଃ ହୁତଂ ହୋମଃ ଏତତ୍ସର୍ବମହମେବ । ୧୬ ।

## ପଦବ୍ୟାଖ୍ୟା ।

ଅହଂ—ଅମ୍ଭେ କ୍ରତୁଃ—ବେଦୋକ୍ତ ଅଗ୍ନିଷ୍ଟୋମାଦି, ଅହଂ ଯଜ୍ଞଃ—ଅମ୍ଭେ ଯଜ୍ଞ ଅର୍ଥାତ୍ ସ୍ମୃତିବିହିତ (ବ୍ରହ୍ମଯଜ୍ଞ, ନୃଯଜ୍ଞ, ଦୈବଯଜ୍ଞ, ପିତୃଯଜ୍ଞ ଓ ଭୂତଯଜ୍ଞ) ପାଞ୍ଚ ପ୍ରକାର ଯଜ୍ଞ, ସ୍ୱଧାହଂ—ଅମ୍ଭେ ସ୍ୱଧା, ଅର୍ଥାତ୍ ପିତୃଲୋକଙ୍କ ଉଦ୍ଦେଶରେ କୃତ ଶ୍ରାଦ୍ଧାଦିସ୍ୱରୂପ, ଅହଂ ଔଷଧଂ—ଅମ୍ଭେ ଔଷଧସ୍ୱରୂପ, ମନ୍ତ୍ରଃ ଅହଂ—ଅମ୍ଭେ ମନ୍ତ୍ରସ୍ୱରୂପ ଅଟୁଁ, ଅହଂ ଏବ ଆଜ୍ୟଂ—ଅମ୍ଭେ ଆଜ୍ୟ ଅର୍ଥାତ୍ ହୋମନିମିତ୍ତ ପ୍ରୟୋଜନୀୟ ଘୃତ, ସମିଧ ଓ ଚରୁସ୍ୱରୂପ, ଅହଂ ଅଗ୍ନିଃ—ଅମ୍ଭେ ଦକ୍ଷିଣାଗ୍ନି, ଗାର୍ହପତ୍ୟ ଓ ଆହବନୀୟ ଅଗ୍ନିସ୍ୱରୂପ ଅଟୁଁ, ଅହଂ ହୁତଂ—ଅମ୍ଭେ ହୋମସ୍ୱରୂପ ଅଟୁଁ । ୧୬ ।

## ଅନୁବାଦ ।

**ଅମ୍ଭେ କ୍ରତୁ, ଅମ୍ଭେ ଯଜ୍ଞ, ଅମ୍ଭେ ସ୍ୱଧା, ଅମ୍ଭେ ଔଷଧ, ଅମ୍ଭେ ମନ୍ତ୍ର, ଅମ୍ଭେ ଆଜ୍ୟ, ଅମ୍ଭେ ଅଗ୍ନି, ଏବଂ ଅମ୍ଭେ ହୋମସ୍ୱରୂପ ଅଟୁଁ । ୧୬ ।**

## ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଲୋକରେ ଶ୍ରୀଭଗବାନ୍ କହିଅଛନ୍ତି, ଯେ ଅମ୍ଭେ ସର୍ବାତ୍ମସ୍ୱରୂପ, ସେହି କଥା ଏ ଶ୍ଲୋକଠାରୁ ଆରମ୍ଭ କରି ଚାରି ଶ୍ଲୋକରେ ବିଶେଷରୂପେ ବ୍ୟାଖ୍ୟା କରି ଯାଉଅଛି ।

ଶ୍ରୀଭଗବାନ୍ କହୁଅଛନ୍ତି, ଅମ୍ଭେ ବେଦୋକ୍ତ ଅଗ୍ନିଷ୍ଟୋମ ଓ ଅଶ୍ୱମେଧାଦି କ୍ରତୁସ୍ୱରୂପ ଅଟୁଁ, ଅର୍ଥାତ୍ ବେଦରେ ଯେତେ ପ୍ରକାର ଯଜ୍ଞ ଅଛି, ସେଥିରେ ଅମ୍ଭେହିଁ ଭିନ୍ନ ଭିନ୍ନ ଦେବତା ରୂପରେ ପୂଜା ପାଉଁ । ମନୁଷ୍ୟମାନେ ପଞ୍ଚଶୂନାଦି ପାପ ନିବାରଣନିମିତ୍ତ ସ୍ମୃତି ଶାସ୍ତ୍ରୋକ୍ତ ଯେଉଁ ବୈଶ୍ୱଦେବାଦି ପଞ୍ଚଯଜ୍ଞ କରନ୍ତି, ଅମ୍ଭେ ସେହି ସ୍ୱରୂପ ଅଟୁଁ ଅର୍ଥାତ୍ ପ୍ରକାରାନ୍ତରରେ ତାହା ଅମ୍ଭର ପୂଜା ଅଟେ । ପିତୃଙ୍କ ଉଦ୍ଦେଶରେ ଯେଉଁ ଶ୍ରାଦ୍ଧାଦି କରାଯାଏ, ଅମ୍ଭେ ସେହି ଶ୍ରାଦ୍ଧାଦି (ସ୍ୱଧା) ସ୍ୱରୂପ ଅଟୁଁ । ସମସ୍ତ ପ୍ରାଣିମାନେ ଯେଉଁ ଅନ୍ନ ଖାଇ ପ୍ରାଣଧାରଣ କରନ୍ତି, ଅଥବା ଯେଉଁ ଔଷଧି ସେବନ କରି ରୋଗରୁ ମୁକ୍ତ ହୁଅନ୍ତି, ଅମ୍ଭେ ସେହି ଔଷଧସ୍ୱରୂପ ଅଟୁଁ । ଯାଗାଦି କର୍ମରେ ଯେ ସବୁ ଘୃତାଦି, ଅଗ୍ନି ଓ ହୋମ କ୍ରିୟା ପ୍ରୟୋଜନୀୟ, ସେ ସବୁ ଅମ୍ଭେ ଅଟୁଁ ।

Digitized by PPRACHIN, SOA

ଫଳକଥା ଏହି କି ଜଗତର ସମସ୍ତ ପଦାର୍ଥରେ ଓ କ୍ରିୟାରେ ଆମ୍ଭର ସତ୍ତା ବିଦ୍ୟମାନ ଅଛି, ଆମ୍ଭର ସତ୍ତାଭିନ୍ନ ପୃଥିବୀରେ ଆଉ କିଛି ପଦାର୍ଥ ନାହିଁ । ୧୬ ।

ଶ୍ଲୋକଃ ।

* ପିତାହମସ୍ୟ ଜଗତୋ ମାତା ଧାତା ପିତାମହଃ ।
ବେଦ୍ୟଂ ପବିତ୍ରମୋଁକାର୍ ଋକ୍ ସାମ ଯଜୁରେବ ଚ । ୧୭ ।

ଅନ୍ୱୟଃ ।

ଅହଂ ଅସ୍ୟ ଜଗତଃ ପିତା, ମାତା, ଧାତା, ପିତାମହଃ, ବେଦ୍ୟଂ, ପବିତ୍ରଂ, ଓଁକାରଃ, ଋକ୍, ସାମ, ଯଜୁଃ ଏବ ଚ । ୧୭ ।

ଟୀକା ।

କିଞ୍ଚ ପିତାହମସ୍ୟେତି । ଧାତା କର୍ମଫଳବିଧାତା, ବେଦ୍ୟଂ ଜ୍ଞେୟବସ୍ତୁ, ପବିତ୍ରଂ ଶୋଧକଂ, ପ୍ରାୟଶ୍ଚିତ୍ତାତ୍ମକଂ ବା ଓଁକାରଃ ପ୍ରଣବଃ, ଋଗାଦୟୋ ବେଦାଶ୍ଚାହମେବ ସ୍ପଷ୍ଟମନ୍ୟତ୍ । ୧୭ ।

ପଦବିଭାଖ୍ୟା ।

ପିତା—ଜନକ, ଅହଂ—ଆମ୍ଭେ, ଅସ୍ୟ ଜଗତଃ—ଏହି ଜଗତର, ମାତା—ଜନନୀ, ଧାତା—କର୍ମର ଫଳଦାତା, ପିତାମହଃ—ପିତାର ପିତା,—ବ୍ରହ୍ମା, ବେଦ୍ୟଂ—ଜ୍ଞେୟବସ୍ତୁ, ପବିତ୍ରଂ—ଶୋଧକ, ଓଁକାରଃ—ପ୍ରଣବ, ଋକ୍, ସାମ ଯଜୁଃ—ଋକ୍, ସାମ ଓ ଯଜୁଃ ଏହି ବେଦ ତ୍ରୟସ୍ୱରୂପ, ଏବ ଚ—ଆହୁରି । ୧୭ ।

ଅନୁବାଦ ।

ଆମ୍ଭେ ଏ ଜଗତର ପିତା, ମାତା, କର୍ମ ଫଳଦାତା ଓ ପିତାମହ ଅଟୁଁ, (ଅମ୍ଭେ) ଜ୍ଞେୟ, ପବିତ୍ର, ପ୍ରଣବ ଓ ଋକ୍ ସାମ ଏବଂ ଯଜୁର୍ବେଦସ୍ୱରୂପ ଅଟୁଁ । ୧୭ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଏ ଜଗତ୍ ଆମ୍ଭଠାରୁ ଉତ୍ପନ୍ନ, ଅତଏବ ଆମ୍ଭେ ଏ ଜଗତର ପିତା ଓ ମାତା ଅଟୁଁ, ଅର୍ଥାତ୍ ଆମ୍ଭେ ଏ ଜଗତର ନିମିତ୍ତ କାରଣ ଓ ଉପାଦାନ କାରଣ* ଅଟୁଁ । ଆମ୍ଭେ ପ୍ରାଣିମାନଙ୍କର ଶୁଭାଶୁଭ କର୍ମର ଫଳଦାତା ଅଟୁଁ ବୋଲି ଏ ଜଗତର 'ଧାତା' ନାମରେ ପରିଚିତ । ପୁଣି ଜଗତର କାରଣ (ଅବିଦ୍ୟା) ର କାରଣ ଅଟୁଁ, ଏଣୁକରି ଆମ୍ଭଙ୍କୁ 'ପିତାମହ' ବୋଲାଯାଏ । ଆମ୍ଭଙ୍କୁ ଜାଣିଲେ ଜୀବର ମୁକ୍ତି ହୁଏ, ତେଣୁ କରି ଆମ୍ଭେ 'ବେଦ୍ୟ' ଅର୍ଥାତ୍ ଜ୍ଞେୟ (ଜାଣିବାର ଯୋଗ୍ୟ) ଅଟୁଁ । ଆମ୍ଭେ ସମସ୍ତ ପାପ ନାଶ କରୁଁ ବୋଲି 'ପବିତ୍ର', ଆମ୍ଭେ ସମସ୍ତ ବେଦର ଶକ୍ତି ସ୍ୱରୂପ ଅଥବା ବ୍ରହ୍ମଜ୍ଞାନର ଏକମାତ୍ର

* ମାକଡସା ସୂତା ନିର୍ମାଣ କରେ । ସେହି ସୂତାପ୍ରତି ମାକଡସା ନିଜେ (ଚେତନ ଭାବରେ) ନିମିତ୍ତ କାରଣ ଓ ତାହାର ଶରୀର ଉପାଦାନ କାରଣ । ସେହିପରି ଆବରଣ ଓ ବିକ୍ଷେପ ଶକ୍ତିଯୁକ୍ତ ମାୟାର ଅଧିଷ୍ଠାତା ଈଶ୍ୱର, ଜଗତର ନିମିତ୍ତ କାରଣ, ଏବଂ ମାୟା ଏ ଜଗତର ଉପାଦାନ କାରଣ ଅଟେ । ମାତ୍ର ପରମେଶ୍ୱର ଯେତେବେଳେ ସୋପାଧିକ ହୁଅନ୍ତି, ସେତେବେଳେ ମାୟାରୂପ ଉପାଧିଯୁକ୍ତ ହୁଅନ୍ତି ବୋଲି ଜଗତର ଉପାଦାନ କାରଣ ମଧ୍ୟ ଅଟନ୍ତି ।

Digitized by PPRACHIN, SOA

ସାଧନସ୍ୱରୂପ, ସେହି କାରଣରୁ ଅମ୍ଭେ 'ଓଁକାର' ଅର୍ଥାତ୍ ପ୍ରଣବସ୍ୱରୂପ ଅଟୁଁ, ଏବଂ ଅମ୍ଭେ ଋକ୍, ସାମ ଓ ଯଜୁର୍ବେଦସ୍ୱରୂପ ମଧ୍ୟ ଅଟୁଁ ।

ଏ ଶ୍ଳୋକ ଶେଷରେ ଥିବା 'ଚ' କାରଦ୍ୱାରା ଅମ୍ଭେ ଅଥର୍ବ ବେଦସ୍ୱରୂପ ଥିବାର ମଧ୍ୟ ଜାଣିବ । ୧୭ ।

ଶ୍ଳୋକଃ ।

* ଗତିର୍ଭର୍ତ୍ତା ପ୍ରଭୁଃ ସାକ୍ଷୀ, ନିବାସଃ ଶରଣଂ ସୁହୃତ୍ ।
ପ୍ରଭବଃ ପ୍ରଳୟଃ ସ୍ଥାନଂ, ନିଧାନଂ ବୀଜମବ୍ୟୟଂ । ୧୮ ।

ଅନ୍ୱୟଃ ।

(ଅହଂ ଅସ୍ୟ ଜଗତଃ) ଗତିଃ, ଭର୍ତ୍ତା, ପ୍ରଭୁଃ ସାକ୍ଷୀ, ନିବାସଃ, ଶରଣଂ, ସୁହୃତ୍, ପ୍ରଭବଃ, ପ୍ରଳୟଃ, ସ୍ଥାନଂ ନିଧାନଂ, ଅବ୍ୟୟଂ ବୀଜଂ (ଚ) । ୧୮ ।

ଟୀକା ।

କିଞ୍ଚ ଗତିରିତି । ଗମ୍ୟତ ଇତି ଗତିଃ ଫଳଂ, ଭର୍ତ୍ତା ପୋଷଣକର୍ତ୍ତା, ପ୍ରଭୁର୍ନିୟନ୍ତା, ସାକ୍ଷୀ ଶୁଭାଶୁଭଦ୍ରଷ୍ଟା, ନିବାସୋ-ଭୋଗସ୍ଥାନଂ, ଶରଣଂ ରକ୍ଷକଃ, ସୁହୃତ୍ ହିତକର୍ତ୍ତା, ପ୍ରକର୍ଷେଣ ଭବତ୍ୟନେନେତି ପ୍ରଭବଃ ସ୍ରଷ୍ଟା; ପ୍ରଲୀୟତେ ଅନେନେତି ପ୍ରଳୟଃ ସଂହର୍ତ୍ତା, ତିଷ୍ଠତ୍ୟସ୍ମିନ୍ନିତି ସ୍ଥାନମାଧାରଃ, ନିଧୀୟତେଽସ୍ମିନ୍ନିତି ନିଧାନଂ ଲୟସ୍ଥାନଂ, ବୀଜଂ କାରଣଂ ଅପ୍ୟବ୍ୟୟ-ମବିନାଶି ନ ତୁ ବ୍ରୀହ୍ୟାଦିବୀଜବତ୍ ବିନଶ୍ୱରମିତ୍ୟର୍ଥଃ । ୧୮ ।

ପଦବ୍ୟାଖ୍ୟା ।

ଗତିଃ—କର୍ମଫଳ ଭର୍ତ୍ତା—ପୋଷଣକର୍ତ୍ତା, ପ୍ରଭୁଃ—ଶାସନକର୍ତ୍ତା, ସାକ୍ଷୀ—ଶୁଭ ଓ ଅଶୁଭ କର୍ମର ଦର୍ଶକ, ନିବାସଃ—ଭୋଗସ୍ଥାନ ଶରଣଂ—ଆଶ୍ରୟ, ସୁହୃତ୍—ହିତକାରୀ, ପ୍ରଭବଃ—ଉତ୍ପତ୍ତିକର୍ତ୍ତା, ପ୍ରଳୟଃ—ସଂହାରକର୍ତ୍ତା, ସ୍ଥାନଂ—ଆଧାର, ନିଧାନଂ—ଲୟସ୍ଥାନ, ବୀଜଂ—କାରଣସ୍ୱରୂପ, ଅବ୍ୟୟଂ—ଅବିନାଶୀ । ୧୮ ।

ଅନୁବାଦ ।

**(ଅମ୍ଭେ ଏ ଜଗତର) ଗତି, ଭର୍ତ୍ତା, ପ୍ରଭୁ, ସାକ୍ଷୀ, ନିବାସ, ଶରଣ, ସୁହୃତ୍, ପ୍ରଭବ, ପ୍ରଳୟ, ସ୍ଥାନ, ନିଧାନ, ଏବଂ ଅବ୍ୟୟ ବୀଜସ୍ୱରୂପ ଅଟୁଁ । ୧୮ ।**

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଜୀବମାନେ କର୍ମ, ଉପାସନା, ଯୋଗ, ଓ ଜ୍ଞାନାଦି ସାଧନ କରି ଯେଉଁ ଗତି ପ୍ରାପ୍ତ ହୁଅନ୍ତି, ଅମ୍ଭେ ସେହି 'ଗତି'ସ୍ୱରୂପ ଅଟୁଁ । ଅମ୍ଭେ ଜୀବମାନଙ୍କୁ ପୋଷଣ କରୁଁ ବୋଲି ଅମ୍ଭଙ୍କୁ 'ଭର୍ତ୍ତା' ବୋଲାଯାଏ । ଅମ୍ଭର ଆଦେଶରେ ଚନ୍ଦ୍ର ସୂର୍ଯ୍ୟାଦି ଯଥାନିୟମରେ ଉଦିତ ହେଉଅଛନ୍ତି ଏବଂ ମେଘ ଓ ବାୟୁ ପ୍ରଭୃତି ଦେବତା ନିଜ ନିଜ କର୍ମ କରୁଅଛନ୍ତି; ତେଣୁକରି ଅମ୍ଭେ ଜଗତର 'ପ୍ରଭୁ', କୌଣସି ଜୀବ ଅମ୍ଭ ଅଜ୍ଞାତରେ ଶୁଭ ବା ଅଶୁଭ କର୍ମ କରି ପାରେ ନାହିଁ, ଅର୍ଥାତ୍ ଅମ୍ଭେ ସମସ୍ତ କର୍ମର ଦର୍ଶକ ବୋଲି 'ସାକ୍ଷୀ' ନାମ ଧାରଣ କରୁଁ । ଅନ୍ନାଦି ଭୋଗ କରିବାକୁ ଯେଉଁ ସ୍ଥାନ ଅଛି, ଅମ୍ଭେ ସେହି ସ୍ଥାନ ରୂପ ଅଟୁଁ ବୋଲି 'ନିବାସ' ନାମରେ ପରିଚିତ । ଅମ୍ଭର ଆରାଧନା କରିବା ବ୍ୟକ୍ତିଙ୍କୁ ଅମ୍ଭେ ଶୋକ ଦୁଃଖାଦି ବିପତ୍ତିରୁ ରକ୍ଷା କରୁଁ ବୋଲି ଅମ୍ଭେ 'ଶରଣ' ଅଟୁଁ । ପ୍ରତ୍ୟୁପକାର ପାଇବାର

Digitized by PPRACHIN, SOA

ଅଶା ନ ରଖି ଅମ୍ଭେ ଜୀବର ମଙ୍ଗଳ ସାଧନ କରୁଁ, ଏଣୁକରି ଅମ୍ଭେ 'ସୁହୃତ୍' । ଅମ୍ଭେ ପ୍ରଭବ' 'ପ୍ରଳୟ' ଓ 'ସ୍ଥାନ' ଅର୍ଥାତ୍ ଜଗତର ଉତ୍ପତ୍ତି ବିନାଶ ଓ ସ୍ଥିତିସ୍ୱରୂପ । ଅଥବା ଜଗତ୍, ଅମ୍ଭଠାରୁ ଉତ୍ପନ୍ନ ହୁଏ ବୋଲି ଅମ୍ଭେ 'ପ୍ରଭବ' (ସୃଷ୍ଟିକର୍ତ୍ତା), ପୁଣି ଜଗତ୍ ଅମ୍ଭଠାରେ ଲୟପ୍ରାପ୍ତ ହୁଏ ବୋଲି ଅମ୍ଭେ 'ପ୍ରଳୟ' (ସଂହାରକର୍ତ୍ତା), ଏବଂ ସେହିପରି ଜଗତ୍ ଅମ୍ଭ ଅଙ୍ଗ-ରେ ସ୍ଥିତ ରହିଅଛି ବୋଲି ଅମ୍ଭେ 'ସ୍ଥାନ' ଅର୍ଥାତ୍ ଜଗତର ଆଧାର । ପ୍ରଳୟ ହେଲେ, ଜଗତ୍ ସୂକ୍ଷ୍ମ ବୀଜଭୂତ ଅବସ୍ଥାରେ ଅମ୍ଭଠାରେ ରହେ, ଏଣୁକରି ଅମ୍ଭେ 'ନିଧାନ' ଅର୍ଥାତ୍ ଲୟସ୍ଥାନ ଅଟୁଁ । ଅମ୍ଭେ ସକଳ ଜଗତର ବୀଜସ୍ୱରୂପ ଅଟୁଁ । କାହିଁକି ନା କଳ୍ପାନ୍ତରେ ଜଗତ୍ ଅମ୍ଭଠାରୁ ପୁଣି ଉତ୍ପନ୍ନ ହୁଏ, ମାତ୍ର ଅମ୍ଭେ ଜଗତର ବୀଜସ୍ୱରୂପ ହେଲେ ସୁଦ୍ଧା, ସାମାନ୍ୟ ଧାନ୍ୟାଦି ବୀଜ ପରି ଅଙ୍କୁରୋତ୍ପାଦନ ପରେ ବିନଷ୍ଟ ହେଉ ନାହୁଁ, ତେଣୁକରି ଅମ୍ଭେ 'ଅବ୍ୟୟ' ଅର୍ଥାତ୍ ଅବିନାଶି ବୀଜ ଅଟୁଁ । ୧୮ ।

ଶ୍ଳୋକଃ ।

।ଽ ।ଽ । । । । ।
ତପାମ୍ୟହମହଂ ବର୍ଷଂ, ନିଗୃହ୍ଣାମ୍ୟୁତ୍ସୃଜାମି ଚ ।
। ।ଏ । । । ।ଽ ।ଽ ।ଽ ।
ଅମୃତଂ ଚୈବ ମୃତ୍ୟୁଶ୍ଚ ସଦସଚ୍ଚାହମର୍ଜୁନ । ୧୯ ।

ଅନ୍ୱୟଃ ।

ହେ ଅର୍ଜୁନ ! ଅହଂ ତପାମି ଅହଂ ବର୍ଷଂ ନିଗୃହ୍ଣାମି ଚ ଉତ୍ସୃଜାମି ଅମୃତଂ ଚ ମୃତ୍ୟୁଃ ଚ ସତ୍ ଚ ଅସତ୍ ଚ ଅହଂ ଏବ । ୧୯ ।

ଟୀକା ।

କିଞ୍ଚ ତପାମ୍ୟହମିତି । ଆଦିତ୍ୟାତ୍ମନା ସ୍ଥିତ୍ୱା ନିଦାଘକାଳେ ତପାମି ଜଗତସ୍ତାପଂ କରୋମି, ବୃଷ୍ଟିସମୟେ ଚ ବର୍ଷଣ-ମୁତ୍ସୃଜାମି ବିମୁଞ୍ଚାମି, କଦାଚିତ୍ତୁ ବର୍ଷଂ ନିଗୃହ୍ଣାମି ଆକର୍ଷାମି, ଅମୃତଂ ଜୀବନଂ, ମୃତ୍ୟୁସ୍ତୁ ନାଶଃ, ସତ୍ ସ୍ଥୂଳଂ ଦୃଶ୍ୟଂ, ଅସତ୍ ସୂକ୍ଷ୍ମମଦୃଶ୍ୟଂ, ଏତତ୍ସର୍ବମହମେବେତି ଏବଂ ମତ୍ୱା ମାମେବ ବହୁଧା ଉପାସତେ ଇତି ପୂର୍ବେଣୈବାନ୍ୱୟଃ । ୧୯ ।

ପଦବ୍ୟାଖ୍ୟା

ତପାମି—ତାପ ପ୍ରଦାନ କରୁଁ, ଅହଂ—ଅମ୍ଭେ, ବର୍ଷଂ—ବୃଷ୍ଟିଜଳକୁ, ନିଗୃହ୍ଣାମି,—ଆକର୍ଷଣ କରୁଁ, ଉତ୍ସୃଜାମି ଚ—ତ୍ୟାଗ କରୁଁ ମଧ୍ୟ, ଅମୃତଂ ଚ ଏବ—ଆଉ ଜୀବନ, ମୃତ୍ୟୁଃ ଚ—ଓ ମରଣ, ସତ୍—ସ୍ଥୂଳ—ପ୍ରକାଶିତ, ଅସତ୍ ଚ—ସୂକ୍ଷ୍ମ—ଅପ୍ରକାଶ୍ୟ, ( ଅଥବା ସତ୍—ଅବିନାଶି, ଅସତ୍ ଚ—ନଶ୍ୱର ), ଅହଂ—ଅମ୍ଭେ, ଅର୍ଜୁନ—ହେ ଅର୍ଜୁନ !, । ୧୯ ।

ଅନୁବାଦ ।

ହେ ଅର୍ଜୁନ ! ଅମ୍ଭେ ଉତ୍ତାପ ଦାନ କରୁଁ, ଅମ୍ଭେ ଜଳ ଆକର୍ଷଣ କରୁଁ ଓ ତ୍ୟାଗ କରୁଁ, ଅମ୍ଭେ ଜନ୍ମ ଓ ମରଣରୂପ ଏବଂ ଅମ୍ଭେହିଁ ସତ୍ ଓ ଅସତ୍ ଅଟୁଁ । ୧୯ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, ଅମ୍ଭେ ସୂର୍ଯ୍ୟରୂପରେ ଜଗତକୁ ଉତ୍ତାପ ପ୍ରଦାନ କରୁଁ, ଅମ୍ଭେ ସହସ୍ରରଶ୍ମି (ସୂର୍ଯ୍ୟ)ରୂପରେ କାର୍ତ୍ତିକଠାରୁ ଜ୍ୟେଷ୍ଠ ଶେଷ ପର୍ଯ୍ୟନ୍ତ ଆଠମାସ ମଧ୍ୟରେ ହେ-

Digitized by PPRACHIN, SOA

ତେଜ କିରଣଦ୍ୱାରା ପୃଥିବୀରୁ ରସ (ଜଳ) ଆକର୍ଷଣ କରୁଁ ଓ ଆଷାଢଠାରୁ ଅଶ୍ୱିନ ଶେଷଯାଏ ଗ୍ରୀଷ୍ମମାସରେ ଅପର କିରଣଦ୍ୱାରା ସେହି ସଂଗୃହୀତ ଜଳକୁ ବୃଷ୍ଟିରୂପରେ ତ୍ୟାଗ କରୁଁ, ଅମ୍ଭେହିଁ ଦେବଲୋକ ଓ ମର୍ତ୍ତ୍ୟଲୋକସ୍ଥ ସମସ୍ତ ପ୍ରାଣିଙ୍କର ଜୀବନସ୍ୱରୂପ ଏବଂ ଅମ୍ଭେ ପ୍ରାଣିମାତ୍ରର ମରଣ ଅର୍ଥାତ୍ ଯମସ୍ୱରୂପ । ପୁଣି ଅମ୍ଭେ ଭକ୍ତମାନଙ୍କ ସମ୍ବନ୍ଧରେ 'ସତ୍' ଅର୍ଥାତ୍ ପ୍ରକାଶିତ ଓ ନିତ୍ୟ ଏବଂ ଅବିଶ୍ୱାସୀ ମୂଢମାନଙ୍କ ପକ୍ଷରେ 'ଅସତ୍' ଅର୍ଥାତ୍ ଅପ୍ରକାଶ୍ୟ ଓ ମାୟାବାଦିଙ୍କ ପର ନଶ୍ୱର ଅଟୁଁ , ଅଥବା ଅମ୍ଭେ ଆତ୍ମସ୍ୱରୂପ ବୋଲି 'ସତ୍' ଅର୍ଥାତ୍ ନିତ୍ୟ ଏବଂ ଜଗତ୍ ସ୍ୱରୂପ ବୋଲି 'ଅସତ୍' ଅର୍ଥାତ୍ ଅନିତ୍ୟ, ଏହିପରି ନାନା ଲୋକେ ଅମ୍ଭଙ୍କୁ ନାନା ପ୍ରକାର କଳ୍ପନା କରି ବହୁପ୍ରକାର ପ୍ରଣାଳୀରେ ଉପାସନା କରନ୍ତି ।

ଏହି ଅଧ୍ୟାୟର ପଞ୍ଚଦଶ ଶ୍ଳୋକରେ ଭଗବାନ୍ କହିଥିଲେ, ଯେ 'କେହି୨ ମହାତ୍ମା ଅମ୍ଭଙ୍କୁ ସର୍ବାତ୍ମସ୍ୱରୂପରେ ଉପାସନା କରନ୍ତି' ସେହି ସର୍ବାତ୍ମ ଭାବ ବିଷୟ ଏ ଶ୍ଳୋକ ପର୍ଯ୍ୟନ୍ତ ବ୍ୟାଖ୍ୟା କରାଗଲା, ଅର୍ଥାତ୍ ଉପାସକ ମଧ୍ୟରୁ କେହି୨ ଏହିପରି ଭାବରେ (ଅର୍ଥାତ୍ ୧୬ଶ ଠାରୁ ୧୯ଶ ପର୍ଯ୍ୟନ୍ତ ଚୌରଶ୍ଳୋକରେ ଯେପରି କୁହା ଯାଇଅଛି) ଉପାସନା କରନ୍ତି, ଅର୍ଥାତ୍ ଏ ଜଗତରେ, ଯାହା କିଛି ଦୃଷ୍ଟିଗୋଚର ଓ ଜ୍ଞାନଗୋଚର ପଦାର୍ଥ ବା କ୍ରିୟା ଅଛି, ସେ ସବୁ, ତେହିଁ ପରାତ୍ପର ପରମେଶ୍ୱରଙ୍କର ସତ୍ତା ଅଟେ ବୋଲି, ସେ ମହାତ୍ମାମାନେ ବିଶ୍ୱାସ କରନ୍ତି ।

ଯେତେବେଳେ ଭଗବାନ, ଆପଣାକୁ ଜଗତରୁ ସମ୍ପୂର୍ଣ୍ଣ ନିର୍ଲିପ୍ତ ବୋଲି କହୁଅଛନ୍ତି, ତେତେବେଳେ ସେ, ପୁଣି ଆପଣାକୁ ପ୍ରତ୍ୟେକ କାର୍ଯ୍ୟର କର୍ତ୍ତା ବୋଲି କିପରି କହନ୍ତେ ? ଏହି ଉକ୍ତି ଗୁଡ଼ିକ କେବଳ କୌଣସି୨ ଉପାସକଙ୍କର ମତ ବୋଲି ବର୍ଣ୍ଣିତ ହୋଇଅଛି । ୧୯ ।

ଶ୍ଳୋକଃ ।

ତ୍ରୈବିଦ୍ୟା ମାଂ ସୋମପାଃ ପୂତପାପା, ଯଜ୍ଞୈରିଷ୍ଟ୍ୱା ସ୍ୱର୍ଗତିଂ ପ୍ରାର୍ଥୟନ୍ତେ ।
ତେ ପୁଣ୍ୟମାସାଦ୍ୟ ସୁରେନ୍ଦ୍ରଲୋକ, ମଶ୍ନନ୍ତି ଦିବ୍ୟାନ୍ ଦିବି ଦେବଭୋଗାନ୍ ।୨୦।

ଅନ୍ୱୟଃ ।

ତ୍ରୈବିଦ୍ୟାଃ ସୋମପାଃ ପୂତପାପାଃ ମାଂ ଯଜ୍ଞୈଃ ଇଷ୍ଟ୍ୱା ସ୍ୱର୍ଗତିଂ ପ୍ରାର୍ଥୟନ୍ତେ, ତେ ପୁଣ୍ୟଂ ସୁରେନ୍ଦ୍ରଲୋକଂ ଆସାଦ୍ୟ ଦିବି ଦିବ୍ୟାନ୍ ଦେବଭୋଗାନ୍ ଅଶ୍ନନ୍ତି । ୨୦ ।

ଟୀକା ।

ଏବମେବଂବିଧା ମାଂ ମୂଢ଼ା ଇତ୍ୟାଦି ଶ୍ଳୋକଦ୍ୱୟେନ କ୍ଷିପ୍ରଫଳାଶୟା ଦେବତାନ୍ତରଂ ଯଜନ୍ତୋମାଂ ନାଶ୍ନନ୍ତି ଯନ୍ତି ଇତ୍ୟୁକ୍ତା ଦର୍ଶିତାଃ, ମହାତ୍ମାନସ୍ତୁ ମାଂ ପାର୍ଥ ଇତ୍ୟାଦିନା ତ ଉକ୍ତା ଉକ୍ତାସ୍ତ୍ରୈବିଧ୍ୟେନ ପୃଥକ୍ତ୍ୱେନ ବା ଯେ ପରମେଶ୍ୱରଂ ନ ଭଜନ୍ତି, ତେଷାଂ ଜନ୍ମମୃତ୍ୟୁପ୍ରବାହୋହୁତ୍ତାର ଇତ୍ୟାହ । ତ୍ରୈବିଦ୍ୟା ଇତି ଦ୍ୱାଭ୍ୟାଂ । ଋକ୍-ଯଜୁଃ-ସାମଲକ୍ଷଣାସ୍ତିସ୍ରୋବିଦ୍ୟା ଯେଷାଂ ତେ ତ୍ରିବିଦ୍ୟାସ୍ତ୍ରିବିଦ୍ୟା ଏବ ତ୍ରୈବିଦ୍ୟାଃ ସ୍ୱାର୍ଥେଽଣ୍ । ତିସ୍ରୋବିଦ୍ୟା ଅଧୀୟନ୍ତେ ଜାନନ୍ତି ବା ତ୍ରୈବିଦ୍ୟା ବେଦତ୍ରୟୋକ୍ତକର୍ମପରା ଇତ୍ୟର୍ଥଃ, ବେଦତ୍ରୟବିହିତୈର୍ଯଜ୍ଞୈର୍ମାମିଷ୍ଟ୍ୱା ମମୈବ ରୂପଂ ଦେବତାନ୍ତରମିତ୍ୟଜାନନ୍ତୋଽପି ବସ୍ତୁତଃ ଇନ୍ଦ୍ରାଦିରୂପେଣ ମାମେବେଷ୍ଟ୍ୱା ସମ୍ପୂଜ୍ୟ ଯଜ୍ଞଶେଷଂ ସୋମଂ ପିବନ୍ତୀତି ସୋମପାଃ, ତେନୈବ ପୂତପାପାଃ ଶୋଧିତକଳ୍ମଷାଃ ସନ୍ତଃ ସ୍ୱର୍ଗତିଂ ସ୍ୱର୍ଗଂ ପ୍ରତି ଗତିଂ ଯେ ପ୍ରାର୍ଥୟନ୍ତେ, ତେ ପୁଣ୍ୟଫଳରୂପଂ ସୁରେନ୍ଦ୍ରଲୋକଂ ସ୍ୱର୍ଗମାସାଦ୍ୟ ପ୍ରାପ୍ୟ ଦିବି ସ୍ୱର୍ଗେ ଦିବ୍ୟାନୁତ୍ତମାନ୍ ଦେବାନାଂ ଭୋଗାନଶ୍ନନ୍ତି ଭୁଞ୍ଜତେ । ୨୦ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ତ୍ରୈବିଦ୍ୟାଃ—ବେଦତ୍ରୟ (ଋକ୍ ଯଜୁଃ ସାମ) ଯାହାଙ୍କର ବିଦ୍ୟା, ବା ଯେ, ବେଦତ୍ରୟ ଅଧ୍ୟୟନ କରିଥାନ୍ତି, ମାଂ—ଆମ୍ଭଙ୍କୁ, ସୋମପାଃ—(ଯଜ୍ଞ ଅବଶିଷ୍ଟ) ସୋମରସପାନକାରୀ, ପୂତପାପାଃ—ପାପରୁ ପରିଶୁଦ୍ଧ ବା ମୁକ୍ତ, ଯଜ୍ଞୈଃ—ବେଦୋକ୍ତ ଯଜ୍ଞସମୂହଦ୍ୱାରା, ଇଷ୍ଟ୍ୱା—ପୂଜା କରି, ସ୍ୱର୍ଗତିଂ—ସ୍ୱର୍ଗକୁ ଯିବାପାଇଁ, ପ୍ରାର୍ଥୟନ୍ତେ—ପ୍ରାର୍ଥନା କରନ୍ତି, ତେ—ସେମାନେ, ପୁଣ୍ୟଂ—ପବିତ୍ର, ଆସାଦ୍ୟ—ପ୍ରାପ୍ତ ହୋଇ, ସୁରେନ୍ଦ୍ରଲୋକଂ—ଇନ୍ଦ୍ର ଭୁବନକୁ, ଅଶ୍ନନ୍ତି—ଭୋଗ କରନ୍ତି, ଦିବ୍ୟାନ୍—ଉତ୍ତମ, ଦିବି—ସ୍ୱର୍ଗରେ, ଦେବଭୋଗାନ୍—ଦେବଭୋଗମାନଙ୍କୁ । ୨୦ ।

ଅନୁବାଦ ।

ବେଦତ୍ରୟ ଜ୍ଞାନମାନେ ସୋମରସ ପାନଦ୍ୱାରା ପାପଶୂନ୍ୟ ହୋଇ, ଯଜ୍ଞମାନଙ୍କଦ୍ୱାରା ଆମ୍ଭଙ୍କୁ ପୂଜା କରି ସ୍ୱର୍ଗପ୍ରାପ୍ତି କାମନା କରନ୍ତି ଓ (ଅବଶେଷରେ) ପବିତ୍ର ଇନ୍ଦ୍ରଲୋକ ପ୍ରାପ୍ତ ହୋଇ ସେଠାରେ ଦେବ ଭୋଗମାନ ଭୋଗ କରନ୍ତି । ୨୦ ।

ବିଶଦବ୍ୟାଖ୍ୟା ।

ଏ ଅଧ୍ୟାୟର ପଞ୍ଚଦଶ ଶ୍ଳୋକଠାରୁ ଊନବିଂଶ ଶ୍ଳୋକଯାଏ ଦ୍ୱୈତ ଓ ଅଦ୍ୱୈତଭାବରେ ଏବଂ ବହୁପ୍ରକାରେ ଈଶ୍ୱରଙ୍କୁ ଯେପରି ଉପାସନା କରାଯାଏ, ତାହା ବ୍ୟାଖ୍ୟା କରା ଯାଇଅଛି, ମାତ୍ର ସ୍ଥୂଳରେ ସେ ସବୁ ନିଷ୍କାମ ଉପାସନା ଅଟେ । ନିଷ୍କାମ ଉପାସନାରେ ଜ୍ଞାନଲାଭ କରି ଚିତ୍ତଶୁଦ୍ଧିଦ୍ୱାରା କ୍ରମେ୨ ମୋକ୍ଷଲାଭ କରନ୍ତି, ମାତ୍ର ଯେଉଁମାନେ ସକାମ ଉପାସକ, ସେମାନେ, ଯେ କଦାପି ମୁକ୍ତିଲାଭ କରି ପାରନ୍ତି ନାହିଁ—ସଂସାରରେ ପୁନଃ ପୁନଃ ଜନ୍ମଗ୍ରହଣ କରନ୍ତି, ସେହି କଥା ଏଶ୍ଳୋକ ଓ ପରବର୍ତ୍ତୀ ଶ୍ଳୋକରେ ବ୍ୟାଖ୍ୟା କରା ଯାଉଅଛି ।

ହୋତା, ଅଧ୍ୱର୍ଯ୍ୟୁ ଓ ଉଦ୍‌ଗାତା (ବୈଦିକ ବ୍ରାହ୍ମଣ) ଏମାନେ, ଯେଉଁ ସବୁ କର୍ମର ବିଷୟ ଉଲ୍ଲେଖ କରିଅଛନ୍ତି, ତାହା ଋକ୍ ଯଜୁଃ ଓ ସାମ ବେଦରେ ବିଶେଷରୂପେ ବର୍ଣ୍ଣିତ ହୋଇଅଛି । ସେହି ବେଦତ୍ରୟ ଯେଉଁମାନଙ୍କର ବିଦ୍ୟା, ଅଥବା ଯେଉଁମାନେ ସେହି ବେଦତ୍ରୟ ଅଧ୍ୟୟନ କରିଅଛନ୍ତି ବା ଜାଣନ୍ତି, ସେମାନଙ୍କୁ 'ତ୍ରୈବିଦ୍ୟ' ବୋଲାଯାଏ, ତ୍ରୈବିଦ୍ୟ ଅର୍ଥାତ୍ ବୈଦିକମାନେ ବେଦୋକ୍ତ ଯଜ୍ଞମାନଙ୍କର ଅନୁଷ୍ଠାନ କରିବାଦ୍ୱାରା ଆମ୍ଭଙ୍କୁ ବସୁ, ରୁଦ୍ର ଓ ଆଦିତ୍ୟାଦି ରୂପରେ ପୂଜା କରନ୍ତି । ଫଳତଃ ଆମ୍ଭେ, ଯେ ବେଦୋକ୍ତ ଦେବତାସ୍ୱରୂପ, ତାହା ନ ଜାଣି, ସେମାନେ କେବଳ ଆପଣା୨ର କାମନା ଅନୁସାରେ ବେଦୋକ୍ତ ଦେବତାମାନଙ୍କୁ ସ୍ୱତନ୍ତ୍ର ଭାବରେ ପୂଜା କରନ୍ତି ଏବଂ ସ୍ୱର୍ଗାଦିପ୍ରାର୍ଥନା କରନ୍ତି, ତାହାଙ୍କର ସେହି ସକାମ ପୂଜାର ପୁଣ୍ୟଫଳଦ୍ୱାରା, ସେମାନେ ମୃତ୍ୟୁପରେ ପବିତ୍ର ଶତକ୍ରତୁ (ଇନ୍ଦ୍ର) ସ୍ଥାନ ସ୍ୱର୍ଗଲୋକ ପ୍ରାପ୍ତ ହୋଇ ସେଠାରେ ଦିବ୍ୟ—ମନୁଷ୍ୟଦୁର୍ଲ୍ଲଭ ଦେବଭୋଗମାନ ଭୋଗ କରନ୍ତି । ୨୦ ।

ଶ୍ଳୋକଃ ।

ତେ ତଂ ଭୁକ୍ତ୍ୱା ସ୍ୱର୍ଗଲୋକଂ ବିଶାଳଂ, କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି ।
ଏବଂ ତ୍ରୟୀଧର୍ମମନୁପ୍ରପନ୍ନା, ଗତାଗତଂ କାମକାମା ଲଭନ୍ତେ । ୨୧ ।

### ଅନ୍ୱୟଃ ।

ତେ, ତଂ ବିଶାଳଂ ସ୍ୱର୍ଗଲୋକଂ ଭୁକ୍ତ୍ୱା ପୁଣ୍ୟେ କ୍ଷୀଣେ (ସତି) ମର୍ତ୍ତ୍ୟଲୋକଂ ବିଶନ୍ତି; ତ୍ରୟୀଧର୍ମଂ ଅନୁପ୍ରପନ୍ନାଃ କାମକାମାଃ ଏବଂ ଗତାଗତଂ ଲଭନ୍ତେ । ୨୧ ।

### ଟୀକା ।

ତତଶ୍ଚ ତେ ତମିତି । ତେ ସ୍ୱର୍ଗକାମାଃ ତଂ ପ୍ରାର୍ଥିତଂ ବିପୁଳଂ ସ୍ୱର୍ଗଲୋକଂ ତତ୍ସୁଖଂ ଭୁକ୍ତ୍ୱା ଭୋଗପ୍ରାପକେ ପୁଣ୍ୟେ କ୍ଷୀଣେ ସତି ମର୍ତ୍ତ୍ୟଲୋକଂ ବିଶନ୍ତି, ପୁନରପ୍ୟେବମେବ ବେଦତ୍ରୟବିହିତଂ ଧର୍ମମନୁଗତାଃ କାମକାମାଃ ଭୋଗାନ୍ କାମୟମାନାନ୍ ଗତାଗତଂ ଯାତାୟାତଂ ଲଭନ୍ତେ । ୨୧ ।

### ପଦବ୍ୟାଖ୍ୟା ।

ତେ—ସେ ସ୍ୱର୍ଗକାମିମାନେ, ତଂ—ସେହି ସ୍ୱର୍ଗକୁ, ଭୁକ୍ତ୍ୱା—ଭୋଗ କରି, ସ୍ୱର୍ଗଲୋକଂ—ସ୍ୱର୍ଗ ଲୋକର ସୁଖକୁ, ବିଶାଳଂ—ବିସ୍ତୃତ, କ୍ଷୀଣେ ପୁଣ୍ୟେ—ପୁଣ୍ୟ କ୍ଷୀଣ ହେଲେ, ମର୍ତ୍ତ୍ୟଲୋକଂ ବିଶନ୍ତି—ଅନନ୍ତର ମର୍ତ୍ତ୍ୟଲୋକରେ ପ୍ରବେଶ କରନ୍ତି, ଏବଂ—ଏହିପରି, ତ୍ରୟୀଧର୍ମଂ—ବେଦତ୍ରୟୋକ୍ତ ଧର୍ମକୁ, ଅନୁପ୍ରପନ୍ନାଃ—ବାରମ୍ବାର ଆଶ୍ରୟ କରି, ଗତାଗତଂ—ଗମନାଗମନକୁ, କାମକାମାଃ—ଫଳଭୋଗାଭିଳାଷୀ, ଲଭନ୍ତେ—ପ୍ରାପ୍ତ ହୁଅନ୍ତି । ୨୧ ।

### ଅନୁବାଦ ।

**ସେ ସ୍ୱର୍ଗକାମିମାନେ ସ୍ୱର୍ଗଲୋକର ବିଶାଳସୁଖ ଭୋଗ କରି ପୁଣ୍ୟ କ୍ଷୟ ହେଲେ, ପୁନର୍ବାର ମର୍ତ୍ତ୍ୟଲୋକରେ ଜନ୍ମଗ୍ରହଣ କରନ୍ତି । ଏହି ପ୍ରକାରେ ବେଦୋକ୍ତ ଧର୍ମପରାୟଣମାନେ ଫଳ ଓ ଭୋଗାଭିଳାଷୀ ହୋଇ ଗତାୟାତ ପ୍ରାପ୍ତ ହୁଅନ୍ତି । ୨୧ ।**

### ବିଶଦବ୍ୟାଖ୍ୟା ।

**ସକାମ** କର୍ମାନୁଷ୍ଠାନମାନେ ବେଦୋକ୍ତ ଯଜ୍ଞାଦି କର୍ମଦ୍ୱାରା ସ୍ୱର୍ଗଲୋକ ପ୍ରାପ୍ତ ହୋଇ, ସେଠାରେ ଦିବ୍ୟ ସୁଖମାନଙ୍କୁ ଭୋଗ କରନ୍ତି ବୋଲି ପୂର୍ବଶ୍ଳୋକରେ କୁହା ଯାଇଅଛି । ସେହି ସ୍ୱର୍ଗଲୋକରେ ବିଶାଳ—ବହୁଦିନ ବ୍ୟାପି ସ୍ୱର୍ଗସୁଖ ଭୋଗ କରନ୍ତି ଓ ଯେଉଁ ପୁଣ୍ୟକର୍ମଫଳରେ ଉକ୍ତସୁଖ ଭୋଗ କରୁଥାନ୍ତି, ତାହା କ୍ଷୟ ହେଲେ, ଆଉ ସ୍ୱର୍ଗରେ ରହି ନ ପାରି ପୁନର୍ବାର ମର୍ତ୍ତ୍ୟଲୋକରେ ପ୍ରବେଶ କରନ୍ତି, ଅର୍ଥାତ୍ ଗର୍ଭବାସ ଓ ଜନ୍ମଯନ୍ତ୍ରଣା ଭୋଗ କରି ସଂସାରରେ ଶରୀର ଗ୍ରହଣ କରନ୍ତି, ଏବଂ ସଂସାରରେ ପ୍ରବେଶ କରି ପୂର୍ବ ବାସନା ଅନୁସାରେ ପୁନର୍ବାର ବେଦୋକ୍ତ ଧର୍ମର ଆଶ୍ରୟ ଗ୍ରହଣ କରନ୍ତି, ଅର୍ଥାତ୍ ଯଜ୍ଞାଦି ଅନୁଷ୍ଠାନ କରି ସୋମରସ ପାନଦ୍ୱାରା ନିଷ୍ପାପ ହୋଇ ଭୋଗ ଓ ଫଳ ଅଭିଳାଷ ହେତୁରୁ ପୁନର୍ବାର ସ୍ୱର୍ଗାଦି ପ୍ରାପ୍ତ ହୁଅନ୍ତି, ଏପରି ବାରମ୍ବାର ସ୍ୱର୍ଗକୁ ଗମନ ଓ ମର୍ତ୍ତ୍ୟକୁ ଆଗମନ କରନ୍ତି, ଅର୍ଥାତ୍ ସଂସାର ବନ୍ଧନରେ ପଡ଼ି ରହନ୍ତି । ଅତଏବ ସକାମକର୍ମ, ଜନ୍ମବନ୍ଧନର ହେତୁ ବୋଲି ନିଷ୍କାମକର୍ମ ଅପେକ୍ଷା ନିକୃଷ୍ଟ ଅଟେ ।୨୧ ।

### ଶ୍ଳୋକଃ ।

* ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ, ଯେ ଜନାଃ ପର୍ୟ୍ୟୁପାସତେ ।
ତେଷାଂ ନିତ୍ୟାଭିଯୁକ୍ତାନାଂ, ଯୋଗକ୍ଷେମଂ ବହାମ୍ୟହଂ । ୨୨ ।

Digitized by PPRACHIN, SOA

### ଅନ୍ୱୟଃ ।

ଯେ ଜନାଃ ଅନନ୍ୟାଃ ଚିନ୍ତୟନ୍ତଃ ମାଂ ପର୍ଯ୍ୟୁପାସତେ, ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ଅହଂ ବହାମି । ୨୨ ।

### ଟୀକା ।

ମଦ୍‌ଭକ୍ତାସ୍ତୁ ମତ୍ପ୍ରସାଦେନ କୃତାର୍ଥା ଭବନ୍ତୀତ୍ୟାହ, ଅନନ୍ୟା ଇତି । ଅନନ୍ୟା ନାସ୍ତି ମଦ୍ବ୍ୟତିରେକେଣାନ୍ୟତ୍ କାମ୍ୟଂ ଯେଷାଂ ତେ ତଥାଭୂତା ଯେ ଜନାଃ ମାଂ ଚିନ୍ତୟନ୍ତଃ ସେବନ୍ତେ, ତେଷାଂ ତୁ ନିତ୍ୟାଭିଯୁକ୍ତାନାଂ ସର୍ବଥା ମଦେକନିଷ୍ଠାନାଂ ଯୋଗଂ ଧନାଦିଲାଭଂ କ୍ଷେମଂ ଚ ତତ୍ପାଲନଂ ମୋକ୍ଷଂ ବା ତୈରପ୍ରାର୍ଥିତମପି ଅହମେବ ବହାମି ପ୍ରାପୟାମି । ୨୨ ।

### ପଦବ୍ୟାଖ୍ୟା ।

ଅନନ୍ୟାଃ—ଯେଉଁମାନଙ୍କର ଆମ୍ଭ ଭିନ୍ନ ଅନ୍ୟ କାମ୍ୟ ପଦାର୍ଥ ନାହିଁ, ଚିନ୍ତୟନ୍ତଃ—ଧ୍ୟାନ କରି, ମାଂ—ଆମ୍ଭଙ୍କୁ, ଯେ ଜନାଃ—ଯେଉଁ ଲୋକମାନେ, ପର୍ଯ୍ୟୁପାସତେ—ସମ୍ପୂର୍ଣ୍ଣ ଉପାସନା କରନ୍ତି, ତେଷାଂ—ସେହିମାନଙ୍କର, ନିତ୍ୟାଭିଯୁକ୍ତାନାଂ—ସର୍ବଦା ଆମ୍ଭଠାରେ ଏକ ନିଷ୍ଠ, ଯୋଗକ୍ଷେମଂ—ଅପ୍ରାପ୍ତ ପଦାର୍ଥର ପ୍ରାପ୍ତିକୁ ଓ ପ୍ରାପ୍ତ ପଦାର୍ଥର ରକ୍ଷାକୁ ଅଥବା ମୋକ୍ଷକୁ, ବହାମି ଅହଂ—ଆମ୍ଭେ ବହନ କରୁଁ ଅର୍ଥାତ୍ ପଠାଇ ଦେଉଁ । ୨୨ ।

### ଅନୁବାଦ ।

ଯେଉଁମାନେ ଅନ୍ୟଠାରେ ଆସକ୍ତ ନ ହୋଇ, ଆମ୍ଭଙ୍କୁ ଧ୍ୟାନ କରି ଉପାସନା କରନ୍ତି, ସେମାନେ, ସର୍ବଦା ଆମ୍ଭଠାରେ ଏକାଗ୍ରଚିତ୍ତ ବୋଲି, ତାଙ୍କୁ ଆମ୍ଭେ ଯୋଗ ଓ କ୍ଷେମ ପ୍ରଦାନ କରୁଁ । ୨୨ ।

### ବିଶଦବ୍ୟାଖ୍ୟା ।

ଯେଉଁମାନେ ଶ୍ରୀଭଗବାନଙ୍କ ଭିନ୍ନ ଅନ୍ୟ କୌଣସି ପଦାର୍ଥରେ ବା ଭୋଗରେ ଅଥବା ଦେବତାରେ କାମନା ନ କରି ଅର୍ଥାତ୍ ଭଗବାନଙ୍କୁ ସର୍ବବ୍ୟାପକ ଓ ସର୍ବାନ୍ତର୍ଯ୍ୟାମୀ ଜାଣି, ଧ୍ୟାନ ଦ୍ୱାରା ଉପାସନା କରନ୍ତି, ସେମାନେ ନିତ୍ୟାଭିଯୁକ୍ତ, ଅର୍ଥାତ୍ ସର୍ବଦା ଈଶ୍ୱର ଧ୍ୟାନରେ ଆସକ୍ତ; ସେମାନଙ୍କ ଶରୀର ଯାତ୍ରା ନିର୍ବାହପାଇଁ ଅନ୍ନାଦି ସଂଗ୍ରହ ଚେଷ୍ଟାରୂପ 'ଯୋଗ' ଓ ସଂଗୃହୀତ ଅନ୍ନାଦିର ରକ୍ଷା ବିଷୟରେ ଯତ୍ନରୂପ 'କ୍ଷେମ' ନିମିତ୍ତ ସେମାନେ ଯତ୍ନ ନ କଲେହେଁ ଶ୍ରୀଭଗବାନ୍ ନିଜେ, ସେ ଭାର ଗ୍ରହଣ କରନ୍ତି, ଅର୍ଥାତ୍ ନିଷ୍କାମ କର୍ମାନୁଷ୍ଠାନଙ୍କର କୌଣସି ବିଷୟ-ରେ କାମନା ନ ଥିବାରୁ, ଏବଂ ସେ ସର୍ବଦା ଈଶ୍ୱର ଧ୍ୟାନ ପରାୟଣ ଥିବାରୁ ଶରୀର ଯାତ୍ରା ନିର୍ବାହପାଇଁ ମଧ୍ୟ, କିଛି ଯତ୍ନ କରନ୍ତି ନାହିଁ, ମାତ୍ର ଭକ୍ତବତ୍ସଳ ଶ୍ରୀଭଗବାନ୍ ସେମାନଙ୍କୁ ବିନା ପ୍ରାର୍ଥନାରେ ଅନ୍ନାଦି ପ୍ରାପ୍ତ କରାଇ ଦିଅନ୍ତି ଓ ପ୍ରାପ୍ତ ଅନ୍ନାଦି ନିରୁପଦ୍ରବରେ ରକ୍ଷା କରନ୍ତି, ଅଥବା ନିଷ୍କାମଭକ୍ତ ମୋକ୍ଷ ପ୍ରାର୍ଥନା ନ କଲେ ମଧ୍ୟ, ଶ୍ରୀଭଗବାନ୍ ତାହାଙ୍କୁ 'ଯୋଗକ୍ଷେମ' ଅର୍ଥାତ୍ ମୋକ୍ଷ ପ୍ରଦାନ କରନ୍ତି । ସୁତରାଂ ନିଷ୍କାମକର୍ମ ସର୍ବାପେକ୍ଷା ଶ୍ରେଷ୍ଠ ଅଟେ । ୨୨ ।

### ଶ୍ଳୋକଃ ।

❋ ଯେଽପ୍ୟନ୍ୟଦେବତାଭକ୍ତା, ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।
ତେଽପି ମାମେବ କୌନ୍ତେୟ, ଯଜନ୍ତ୍ୟବିଧିପୂର୍ବକଂ । ୨୩ ।

### ଅନ୍ୱୟଃ ।

ହେ କୌନ୍ତେୟ ! ଯେ ଅନ୍ୟଦେବତାଭକ୍ତାଃ ଅପି ଶ୍ରଦ୍ଧୟା ଅନ୍ୱିତାଃ ଯଜନ୍ତେ, ତେ ଅପି ମାଂ ଏବ ଅବିଧିପୂର୍ବକଂ ଯଜନ୍ତି । ୨୩ ।

### ଟୀକା ।

ନନୁ ଚ ତ୍ୱଦ୍ବ୍ୟତିରେକେଣ ବସ୍ତୁତୋଦେବତାନ୍ତରସ୍ୟାଭାବାତ୍ ତ୍ୱାମେବସେବନ୍ତେ ଽପି ବୃତ୍ତ୍ୟା ଏବେତ କଥଂ ତେ ଗତାଗତଂ ଲଭେରଂସ୍ତନାହ, ଯେଽପୀତ । ଶ୍ରଦ୍ଧୟୋପେତାଃ ସନ୍ତୋଯେ ଜନାଃ ଅନ୍ୟଦେବତା ଇନ୍ଦ୍ରାଦିରୂପା ଯଜନ୍ତେ, ତେଽପି ମାମେବ ଯଜନ୍ତୀତି ସତ୍ୟଂ, କିନ୍ତୁ ଅବିଧିପୂର୍ବକଂ ମୋକ୍ଷପ୍ରାପକଂ ବିଧିଂ ବିନା ଯଜନ୍ତି, ଅତସ୍ତେ ପୁନରାବର୍ତ୍ତନ୍ତେ । । ୨୩ ।

### ପଦବ୍ୟାଖ୍ୟା ।

ଯେ ଅପି—ଯେଉଁମାନେ ମଧ୍ୟ, ଅନ୍ୟଦେବତାଭକ୍ତାଃ—ଅନ୍ୟ ଦେବତାମାନଙ୍କର ଭକ୍ତ ହୋଇ, ଯଜନ୍ତେ—ପୂଜା କରନ୍ତି, ଶ୍ରଦ୍ଧୟା ଅନ୍ୱିତାଃ—ଶ୍ରଦ୍ଧାଯୁକ୍ତ ହୋଇ, ତେ ଅପି—ସେମାନେ ମଧ୍ୟ, ମାଂ ଏବ—ଆମ୍ଭଙ୍କୁ କେବଳ, କୌନ୍ତେୟ—ହେ କୁନ୍ତୀପୁତ୍ର !, ଯଜନ୍ତି—ପୂଜା କରନ୍ତି, ଅବିଧିପୂର୍ବକଂ—ଅବିଧି ଅନୁସାରେ । ୨୩ ।

### ଅନୁବାଦ ।

ହେ କୌନ୍ତେୟ ! ଯେଉଁମାନେ ଅନ୍ୟଦେବତାମାନଙ୍କଠାରେ ଭକ୍ତ ହୋଇ ଶ୍ରଦ୍ଧାଯୁକ୍ତ ହୋଇ ପୂଜା କରନ୍ତି, ସେମାନେ ମଧ୍ୟ, ଅବିଧିପୂର୍ବକ ଆମ୍ଭର ପୂଜା କରନ୍ତି । ୨୩ ।

### ବିଶଦବ୍ୟାଖ୍ୟା ।

ସପ୍ତମ ଅଧ୍ୟାୟର [illegible]

[illegible]

ଫଳକଥା ଏହି କି ଜ୍ଞାନହୀନ ଭକ୍ତି, ମୁକ୍ତିର ଉପାୟ ନୁହେ, କିନ୍ତୁ ଜ୍ଞାନଯୁକ୍ତ ଭକ୍ତିହିଁ ମୁକ୍ତିର ଏକମାତ୍ର ଉପାୟ ଅଟେ । ୨୩ ।

ଶ୍ଳୋକଃ ।

ଅହଂ ହି ସର୍ବଯଜ୍ଞାନାଂ, ଭୋକ୍ତା ଚ ପ୍ରଭୁରେବ ଚ ।
ନ ତୁ ମାମଭିଜାନନ୍ତି, ତତ୍ତ୍ୱେନାତଶ୍ଚ୍ୟବନ୍ତି ତେ । ୨୪ ।

ଅନ୍ୱୟଃ ।

ଅହଂ ହି ସର୍ବଯଜ୍ଞାନାଂ ଭୋକ୍ତା ଚ ପ୍ରଭୁଃ ଏବ, ତେ ତୁ ମାଂ ତତ୍ତ୍ୱେନ ନ ଅଭିଜାନନ୍ତି ଅତଃ ଚ୍ୟବନ୍ତି । ୨୪ ।

ଟୀକା ।

ଏତଦେବ ବିବୃଣୋତି, ଅହମିତି । ସର୍ବେଷାଂ ଯଜ୍ଞାନାଂ ତତ୍ତଦ୍ଦେବତାରୂପେଣାହମେବ ଭୋକ୍ତା ପ୍ରଭୁଶ୍ଚ ସ୍ୱାମୀ ଫଳଦାତାପ୍ୟହମେବେତ୍ୟର୍ଥଃ, ଏବମ୍ଭୂତଂ ମାଂ ତେ ତତ୍ତ୍ୱେନ ଯଥାବନ୍ନାଭିଜାନନ୍ତି ଅତଶ୍ଚ୍ୟବନ୍ତି ପ୍ରଚ୍ୟବନ୍ତେ ପୁନରାବର୍ତ୍ତନ୍ତେ, ଯେ ତୁ ସର୍ବଦେବତାସୁ ମାମେବାନ୍ତର୍ଯ୍ୟାମିଣଂ **ପଶ୍ୟନ୍ତୋ ଯଜନ୍ତି ତେତୁ ନାବର୍ତ୍ତନ୍ତେ** ।୨୪।

ପଦବ୍ୟାଖ୍ୟା ।

ଅହଂ—ଆମ୍ଭେ, ହି—ନିଶ୍ଚୟ, ସର୍ବଯଜ୍ଞାନାଂ—ସମସ୍ତ ଯଜ୍ଞମାନଙ୍କର, ଭୋକ୍ତା ଚ—ଭୋଗକର୍ତ୍ତା, ପ୍ରଭୁରେବ ଚ—ସ୍ୱାମୀ ଅର୍ଥାତ୍ ଫଳଦାତା ମଧ୍ୟ, ନ ତୁ—ନାହିଁ, ମାଂ—ଆମ୍ଭଙ୍କୁ, ଅଭିଜାନନ୍ତି—ଜାଣନ୍ତି, ତତ୍ତ୍ୱେନ—ଯଥାର୍ଥ ରୂପରେ, ଅତଃ—ଏହି ହେତୁରୁ, ଚ୍ୟବନ୍ତି—ପତିତ ହୁଅନ୍ତି ଅର୍ଥାତ୍ ଜାତ ଓ ମୃତ ହେଉଥାନ୍ତି ତେ—ସେମାନେ । ୨୪ ।

ଅନୁବାଦ ।

ଆମ୍ଭେ ସମସ୍ତ ଯଜ୍ଞର ଭୋଗକର୍ତ୍ତା ଓ ଫଳଦାତା ଅଟୁଁ ସତ, **କିନ୍ତୁ ଆମ୍ଭଙ୍କୁ** ଯଥାର୍ଥ ରୂପରେ ଜାଣନ୍ତି ନାହିଁ ବୋଲି, ସେ (ସକାମକର୍ମୀ)ମାନେ ପୁନରାବୃତ୍ତି ପ୍ରାପ୍ତ ହୁଅନ୍ତି । ୨୪ ।

ବିଶଦବ୍ୟାଖ୍ୟା ।

ଆମ୍ଭେ ବେଦୋକ୍ତ ଓ ସ୍ମୃତିବିହିତ ସମସ୍ତ ଯଜ୍ଞର, 'ଭୋକ୍ତା' ଅର୍ଥାତ୍ ଯଜ୍ଞପୂଜିତ ଦେବତା ରୂପରେ ଆମ୍ଭେ ସେହି ସେହି ଯଜ୍ଞର ପୂଜା ଗ୍ରହଣ କରୁଁ, ଏହା ଶ୍ରୁତି ଓ ସ୍ମୃତିରେ ପ୍ରମାଣସିଦ୍ଧ । ପୁଣି ଆମ୍ଭେ ସେହି ସେହି ଯଜ୍ଞର 'ପ୍ରଭୁ' ଅର୍ଥାତ୍ ଫଳଦାତା । ସକାମକର୍ମାନୁଷ୍ଠାନମାନେ ଆମ୍ଭଙ୍କୁ ଯଥାର୍ଥ ରୂପେ ଜାଣି ନ ଥିବାରୁ ଅର୍ଥାତ୍ ଆମ୍ଭଙ୍କୁ ଯଜ୍ଞର ଭୋକ୍ତା ଓ ପ୍ରଭୁ ବୋଲି ଚିହ୍ନି ନ ପାରି ବରଂ, ରୁଦ୍ର ପ୍ରଭୃତି ସ୍ୱତନ୍ତ୍ର ଦେବତାଙ୍କୁ ଯଜ୍ଞର ଭୋକ୍ତା ଓ ଫଳଦାତା ବୋଲି ଜାଣିବାରୁ ଧୂମାଦି ମାର୍ଗରେ ସେହି ସେହି ଦେବଲୋକକୁ ଯାଇ, ସେ ଲୋକରେ ସୁଖଭୋଗ ପରେ, ପୁନର୍ବାର ସଂସାରରେ ଜନ୍ମଗ୍ରହଣ କରନ୍ତି ।

ଫଳକଥା ଏହି କି ଭଗବାନଙ୍କର ସତ୍ତା ସର୍ବତ୍ର ପରିପୂର୍ଣ୍ଣ ରହିଅଛି, ଏ ଜ୍ଞାନ ଦୃଢ଼ ନ ହେଲେ ଓ ପ୍ରେମରେ ଉନ୍ମତ୍ତ ହୋଇ ତାହାଙ୍କ ସତ୍ତାରେ ଆପଣାର ଅସ୍ତିତ୍ୱ ମିଶାଇ ନ ପାରିଲେ, ସଂସାରବନ୍ଧନରୁ ମୁକ୍ତ ହେବାର ଉପାୟ ନାହିଁ । ୨୪ ।

Digitized by PPRACHIN, SOA

ଶ୍ଳୋକଃ ।

ଯାନ୍ତି ଦେବବ୍ରତା ଦେବାନ୍, ପିତୃନ୍ ଯାନ୍ତି ପିତୃବ୍ରତାଃ ।
ଭୂତାନି ଯାନ୍ତି ଭୂତେଜ୍ୟା, ଯାନ୍ତି ମଦ୍ୟାଜିନୋଽପି ମାଂ । ୨୫ ।

ଅନ୍ୱୟଃ ।

ଦେବବ୍ରତାଃ ଦେବାନ୍ ଯାନ୍ତି, ପିତୃବ୍ରତାଃ ପିତୃନ୍ ଯାନ୍ତି, ଭୂତେଜ୍ୟାଃ ଭୂତାନି ଯାନ୍ତି, ମଦ୍ୟାଜିନଃ ଅପି ମାଂ ଯାନ୍ତି । ୨୫ ।

ଟୀକା ।

ତଦେବୋପପାଦୟତି, ଯାନ୍ତୀତି । ଦେବେଷୁ ଇନ୍ଦ୍ରାଦିଷୁ ବ୍ରତଂ ନିୟମୋ ଯେଷାଂ ତେ ଦେବବ୍ରତାଃ ଦେବାନ୍ ଯାନ୍ତି, ଅତଃ ପୁନରାବର୍ତ୍ତନ୍ତେ, ପିତୃଷୁ ବ୍ରତଂ ଯେଷାଂ ଶ୍ରାଦ୍ଧାଦିକ୍ରିୟାପରାଣାଂ ତେ ପିତୃନ୍ ଯାନ୍ତି, ଭୂତେଷୁ ବିନାୟକ-ମାତୃଗଣାଦିଷୁ ଇଜ୍ୟା ପୂଜା ଯେଷାଂ ତେ ଭୂତେଜ୍ୟା ଭୂତାନି ଯାନ୍ତି । ମାଂ ଯଷ୍ଟୁଂ ଶୀଳଂ ଯେଷାଂ ତେ ମଦ୍ୟାଜିନଃ, ତେ ତୁ ମାମକ୍ଷୟଂ ପରମାନନ୍ଦରୂପଂ ଯାନ୍ତି । ୨୫ ।

ପଦବ୍ୟାଖ୍ୟା ।

ଯାନ୍ତି—ପ୍ରାପ୍ତ ହୁଅନ୍ତି, ଦେବବ୍ରତାଃ—ଦେବପୂଜକମାନେ, ଦେବାନ୍—ଦେବତାମାନଙ୍କୁ, ପିତୃନ୍—ପିତୃମାନଙ୍କୁ ଯାନ୍ତି—ପ୍ରାପ୍ତ ହୁଅନ୍ତି, ପିତୃବ୍ରତାଃ—ଶ୍ରାଦ୍ଧାଦିଦ୍ୱାରା ପିତୃପୂଜକମାନେ, ଭୂତାନି ଯାନ୍ତି—ଭୂତମାନଙ୍କୁ ପ୍ରାପ୍ତ ହୁଅନ୍ତି ଭୂତେଜ୍ୟାଃ—ବିନାୟକ ଓ ଅଷ୍ଟାଦଶ ମାତୃଗଣାଦି ପୂଜକମାନେ, ଯାନ୍ତି—ପ୍ରାପ୍ତ ହୁଅନ୍ତି, ମଦ୍ୟାଜିନଃ ଅପି—ଆମ୍ଭର ପୂଜକମାନେ ମଧ୍ୟ, ମାଂ—ଆମ୍ଭଙ୍କୁ । ୨୫ ।

ଅନୁବାଦ ।

ଦେବପୂଜକ ଦେବତାମାନଙ୍କୁ, ପିତୃଉପାସକ ପିତୃମାନଙ୍କୁ, ଭୂତସେବକ ଭୂତମାନଙ୍କୁ (ମରଣାନ୍ତେ) ପ୍ରାପ୍ତ ହୁଅନ୍ତି, ଆମ୍ଭର ଉପାସକମାନେ ମଧ୍ୟ ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି । ୨୫ ।

ବିଶଦବ୍ୟାଖ୍ୟା ।

ଯେଉଁମାନେ ଅବିଧିପୂର୍ବକ ଅର୍ଥାତ୍ ଭେଦଜ୍ଞାନରେ ଆମ୍ଭଙ୍କୁ ପୂଜା କରନ୍ତି ସେମାନଙ୍କୁ ସାତ୍ତ୍ୱିକ, ରାଜସ ଓ ତାମସ ଭେଦରେ ତିନି ଶ୍ରେଣୀରେ ବିଭକ୍ତ କରି ଯାଇପାରେ । ଯେଉଁମାନେ ସାତ୍ତ୍ୱିକ, ସେମାନେ, ବେଦୋକ୍ତ ବସୁ ରୁଦ୍ର ଓ ଆଦିତ୍ୟାଦି ଦେବତାମାନଙ୍କୁ ବଳି, ଉପହାର ଓ ପ୍ରଦକ୍ଷିଣାଦିଦ୍ୱାରା ପୂଜା କରି ମରଣକାଳରେ ସେହି୨ ଉପାସ୍ୟ ଦେବତାଙ୍କୁ ପ୍ରାପ୍ତ ହୁଅନ୍ତି । ମାତ୍ର ସେ ଦେବତାମାନେ ଅନିତ୍ୟ ବୋଲି, ସେହି ଦେବଲୋକ ମଧ୍ୟ ଅଚିର-ସ୍ଥାୟୀ । ସୁତରାଂ, ସେ ଦେବଲୋକରେ ସୁଖଭୋଗ ଶେଷ ହେଲେ, ସେହି୨ ଦେବପୂଜକମାନେ ପୁନର୍ବାର ଜନ୍ମପରିଗ୍ରହ କରନ୍ତି । ସେହିପରି, ଯେଉଁମାନେ ରାଜସିକ, ସେମାନେ, ଶ୍ରାଦ୍ଧାଦିଦ୍ୱାରା ପିତୃଗଣଙ୍କର ଉପାସନା କରି, ଶେଷରେ ପିତୃଗଣଙ୍କୁ ପ୍ରାପ୍ତ ହୁଅନ୍ତି ଓ ଯେଉଁମାନେ ତାମସିକ, ସେମାନେ, ଯକ୍ଷ, ରାକ୍ଷସ, ବିନାୟକ ଓ ମାତୃଗଣାଦିର ପୂଜା କରି ଅବଶେଷରେ ସେହି ଭୂତଗଣଙ୍କୁ ପ୍ରାପ୍ତ ହୁଅନ୍ତି । ମାତ୍ର ଯେଉଁମାନେ ଆମ୍ଭଙ୍କୁ ସର୍ବଶକ୍ତିମାନ୍, ଅନାଦି ଓ ଅନନ୍ତ ଜାଣି ଉପାସନା କରନ୍ତି, ସେମାନେ ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି । ସୁତରାଂ ଆଉ ତାଙ୍କର ପୁନ-

Digitized by PPRACHIN, SOA

ବାର ସଂସାରରେ ଜନ୍ମ ହୁଏ ନାହିଁ । ଯେହେତୁ ଶ୍ରୁତିରେ ପ୍ରମାଣ ଅଛି, ଯେ " ଯଥାଯଥୋ-ପାସତେ ତଦେବ ଭବତି" ଅର୍ଥାତ୍ ଯେ, ଯେପର ଦେବତାର ଉପାସନା କରନ୍ତି, ସେ, ସେହି ଦେବତାସ୍ୱରୂପ ପ୍ରାପ୍ତ ହୁଅନ୍ତି । ୨୫ ।

ଶ୍ଳୋକଃ ।

* ପତ୍ରଂ ପୁଷ୍ପଂ ଫଳଂ ତୋୟଂ, ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି ।
ତଦହଂ ଭକ୍ତ୍ୟୁପହୃତମଶ୍ନାମି ପ୍ରୟତାତ୍ମନଃ । ୨୬ ।

ଅନ୍ୱୟଃ ।

ଯଃ ଭକ୍ତ୍ୟା ପତ୍ରଂ, ପୁଷ୍ପଂ, ଫଳଂ, ତୋୟଂ ମେ ପ୍ରଯଚ୍ଛତି, ପ୍ରୟତାତ୍ମନଃ ତତ୍ ଭକ୍ତ୍ୟୁପହୃତଂ ଅହଂ ଅଶ୍ନାମି । । ୨୬ ।

ଟୀକା ।

ତଦେବଂ ସ୍ୱଭକ୍ତାନାମକ୍ଷୟଂ ଫଳମୁକ୍ତ୍ୱା ଅନାୟାସତ୍ୱଂ ଚ ସ୍ୱଭକ୍ତେର୍ଦର୍ଶୟତି, ପତ୍ରମିତି । ପତ୍ରପୁଷ୍ପାଦିମାତ୍ରମପି ମହ୍ୟଂ ଭକ୍ତ୍ୟା ଯଃ ପ୍ରଯଚ୍ଛତି, ତସ୍ୟ ପ୍ରୟତାତ୍ମନଃ ଶୁଦ୍ଧଚିତ୍ତସ୍ୟ ନିଷ୍କାମଭକ୍ତସ୍ୟ ତତ୍ ପୁଷ୍ପାଦିକଂ ଭକ୍ତ୍ୟା ତେନୋପହୃତଂ ସମର୍ପିତ-ମହମଶ୍ନାମି ପ୍ରାପ୍ନୋମି ପ୍ରୀତ୍ୟା ଗୃହ୍ଣାମି । ନହି ମହାବିଭୂତିପତେଃ ପରମେଶ୍ୱରସ୍ୟ ମମ କ୍ଷୁଦ୍ରଦେବତାନାମିବ ବହୁବିତ୍ତସାଧ-ଯାଗାଦିଭିଃ ପରିତୋଷଃ ସ୍ୟାତ୍ କିନ୍ତୁ ଭକ୍ତିମାତ୍ରେଣ । ଅତୋଽଭକ୍ତେନ ସମର୍ପିତଂ ଯତ୍‌କିଞ୍ଚିତ୍ ପତ୍ରାଦିମାତ୍ରମପି ତଦନୁଗ୍ର-ହାର୍ଥମେବାଶ୍ନାମୀତି ଭାବଃ । ୨୬ ।

ପଦବ୍ୟାଖ୍ୟା ।

ପତ୍ରଂ—ତୁଳସୀ ପ୍ରଭୃତିକୁ, ପୁଷ୍ପଂ—ନାନାପ୍ରକାର ଫୁଲ, ଫଳଂ—ବିବିଧ ପ୍ରକାର ଫଳ, ତୋୟଂ—ଜଳକୁ, ଯଃ—ଯେଉଁ ବ୍ୟକ୍ତି, ମେ—ଆମ୍ଭଙ୍କୁ, ଭକ୍ତ୍ୟା—ଭକ୍ତିଦ୍ୱାରା, ପ୍ରଯଚ୍ଛତି—ଅର୍ପଣ କରନ୍ତି, ତତ୍—ତାହାକୁ, ଅହଂ—ଆମ୍ଭେ, ଭକ୍ତ୍ୟୁପହୃତଂ—ଭକ୍ତିର ଉପହାର ବୋଲି, ଅଶ୍ନାମି—ଗ୍ରହଣ କରୁଁ, ପ୍ରୟତାତ୍ମନଃ—ଶୁଦ୍ଧାନ୍ତଃକରଣ ବ୍ୟକ୍ତିର । ୨୬ ।

ଅନୁବାଦ ।

ଯେଉଁ ବ୍ୟକ୍ତି ଭକ୍ତିପୂର୍ବକ ଆମ୍ଭଙ୍କୁ ପତ୍ର, ପୁଷ୍ପ, ଫଳ ବା ଜଳ ମାତ୍ର ପ୍ରଦାନ କରନ୍ତି, ଆମ୍ଭେ, ସେହି ନିର୍ମଳ ଅନ୍ତଃକରଣ ବ୍ୟକ୍ତିଙ୍କର ଭକ୍ତିର ଉପହାର ସ୍ୱରୂପ, ତାହା ଗ୍ରହଣ କରୁଁ । ୨୬ ।

ବିଶଦବ୍ୟାଖ୍ୟା ।

ଭଗବଦ୍‌ଭକ୍ତିର ଫଳ, ଯେ ଅନନ୍ତ ଅର୍ଥାତ୍ ଭକ୍ତର, ଯେ ପୁନର୍ଜନ୍ମ ହୁଏ ନାହିଁ, ତାହା ପୂର୍ବଶ୍ଳୋକମାନଙ୍କରେ ବ୍ୟାଖ୍ୟା କରି ଏ ଶ୍ଳୋକରେ ଭଗବଦ୍‌ଭକ୍ତି, ଯେ ସୁଖସାଧ୍ୟ, ତାହା ବୁଝାଉଅଛନ୍ତି ।

ଯେଉଁ ବ୍ୟକ୍ତି ଭକ୍ତିରେ ପତ୍ର, ପୁଷ୍ପ, ଫଳ କି ଜଳ, ଯେ କୌଣସି ସାମାନ୍ୟ ଅନା-ୟାସଲଭ୍ୟ ପଦାର୍ଥ ଆମ୍ଭଙ୍କୁ ପ୍ରଦାନ କରନ୍ତି, ସେହି ପଦାର୍ଥକୁ ଆମ୍ଭେ, ସେହି ନିଷ୍କାମ ଉପାସକ-ଙ୍କର ଭକ୍ତିର ଉପହାର ବୋଲି ଗ୍ରହଣ କରୁଁ । ଆମ୍ଭେ ମହାବିଭୂତିପତି ଅର୍ଥାତ୍ ସମସ୍ତ ଜଗତର ପ୍ରତ୍ୟେକ ପଦାର୍ଥ ଆମ୍ଭ ନିର୍ମିତ ଓ ସମ୍ପୂର୍ଣ୍ଣରୂପେ ଆମ୍ଭର ଅଧୀନ, ତଥାପି, ଭକ୍ତ ଯେଉଁ

Digitized by PPRACHIN, SOA

ପଦାର୍ଥ ଭକ୍ତିରେ ଅର୍ପଣ କରନ୍ତି, ତାହା ଯେତେ ସାମାନ୍ୟ ହେଉ ନା କାହିଁକି, ଆମ୍ଭେ ପରମ ଆଦରରେ ଗ୍ରହଣ କରୁଁ ।

ଫଳକଥା ଏହି କି ଆମ୍ଭେ ପଦାର୍ଥର ମୂଲ୍ୟ ଦୃଷ୍ଟିରେ ଗ୍ରହଣ କରୁଁ ନା—କେବଳ ଭକ୍ତର ତାରତମ୍ୟ ଅନୁସାରେ ଗ୍ରହଣ କରୁଁ, ଅର୍ଥାତ୍ ଯେ, ଯେଉଁ ପଦାର୍ଥ, ଯେତେ ଭକ୍ତିରେ ସମର୍ପଣ କରନ୍ତି, ତାଙ୍କର ସେହି ପଦାର୍ଥକୁ, ଆମ୍ଭେ ତେତେ ପ୍ରୀତର ସହିତ ଗ୍ରହଣ କରୁଁ । ଯେଉଁ ଭକ୍ତିରେ ମୁକ୍ତିରୂପ ମହାଫଳ ମିଳେ ଏବଂ ଯାହା ସାମାନ୍ୟ ଫଳ, ପୁଷ୍ପ, ପତ୍ରାଦିଦ୍ୱାରା ମଧ୍ୟ ସାଧିତ ହୁଏ, ତାହା, ଯେ ସର୍ବଶ୍ରେଷ୍ଠ ଏ କଥା କି ଆଉରି ବିଶେଷ କରି ବୁଝାଇବାକୁ ହେବ ? । ୨୬ ।

ଶ୍ଳୋକଃ ।

* ଯତ୍କରୋଷି ଯଦଶ୍ନାସି, ଯଜ୍ଜୁହୋଷି ଦଦାସି ଯତ୍ ।
ଯତ୍ତପସ୍ୟସି କୌନ୍ତେୟ, ତତ୍କୁରୁଷ୍ୱ ମଦର୍ପଣଂ । ୨୭ ।

ଅନ୍ୱୟଃ ।

ହେ କୌନ୍ତେୟ ! ଯତ୍ କରୋଷି, ଯତ୍ ଅଶ୍ନାସି, ଯତ୍ ଜୁହୋଷି, ଯତ୍ ଦଦାସି, ଯତ୍ ତପସ୍ୟସି, ତତ୍ ମଦର୍ପଣଂ କୁରୁଷ୍ୱ । ୨୭ ।

ଟୀକା ।

ନ ଚ ଫଳପୁଷ୍ପାଦିକମପି ଯଜ୍ଞାର୍ଥ-ପଶୁ-ସୋମାଦିଦ୍ରବ୍ୟବନ୍ମଦର୍ଥମେବୋଦ୍ୟମୈରୁପାଦ୍ୟ ସମର୍ପଣୀୟଂ କିଂ ତର୍ହି ? ଯତ୍କରୋଷୀତି । ସ୍ୱଭାବତଃ ଶାସ୍ତ୍ରତୋବା ଯତ୍କିଞ୍ଚିତ୍ କର୍ମ କରୋଷି ତଥା ଯଦଶ୍ନାସି, ଯଜ୍ଜୁହୋଷି ଯତ୍ ଦଦାସି, ଯଚ୍ଚ ତପସ୍ୟସି, ତପଃ କରୋଷି, ତତ୍ ସର୍ବଂ ମଯ୍ୟର୍ପିତଂ ଯଥା ଭବତି ଏବଂ କୁରୁଷ୍ୱ । ୨୭ ।

ପଦବ୍ୟାଖ୍ୟା ।

ଯତ୍ କରୋଷି—(ତୁମ୍ଭେ) ଯେଉଁ କର୍ମ କରୁଅଛ, ଯଦଶ୍ନାସି—ଯାହା ଭୋଜନ କରୁଅଛ, ଯଜ୍ଜୁହୋଷି—ଯାହା ହୋମ କରୁଅଛ, ଦଦାସି ଯତ୍—ଯାହା ଦାନ କରୁଅଛ, ଯତ୍ ତପସ୍ୟସି—ଯେଉଁ ତପସ୍ୟା କରୁଅଛ, କୌନ୍ତେୟ—ହେ କୁନ୍ତୀପୁତ୍ର, ତତ୍—ତାହା, କୁରୁଷ୍ୱ ମଦର୍ପଣଂ—ଆମ୍ଭଠାରେ ଅର୍ପଣ କର । ୨୭ ।

ଅନୁବାଦ ।

ହେ କୌନ୍ତେୟ ! ତୁମ୍ଭେ ଭୋଜନ, ହୋମ, ଦାନ ଓ ତପସ୍ୟା ପ୍ରଭୃତି, ଯେ କୌଣସି କର୍ମ କର, ତାହା ଆମ୍ଭଠାରେ ଅର୍ପଣ କର । ୨୭ ।

ବିଶଦବ୍ୟାଖ୍ୟା ।

କେବଳ ପୁଷ୍ପ, ପତ୍ର ଓ ଜଳଦାନ କଲେ, ଯେ ଭକ୍ତିର କାର୍ଯ୍ୟ ଶେଷ ହେଲା, ତାହା ନୁହେ, ଶ୍ରୀଭଗବାନ୍ କହୁଅଛନ୍ତି, ଯେ ହେ କୌନ୍ତେୟ ! ତୁମ୍ଭେ ଯଦି ପ୍ରକୃତ ଭକ୍ତ ହେବାକୁ ଇଚ୍ଛା କର, ତାହାହେଲେ ଶାସ୍ତ୍ରୀୟ ବା ଲୌକିକ, ଯାହା କିଛି କର୍ତ୍ତବ୍ୟ କର୍ମ କର, ଶରୀରଧାରଣ ଓ ତୃପ୍ତ୍ୟାଦି ନିମିତ୍ତ, ଯାହା ଭୋଜନ କର ବା ଯେଉଁ ବସ୍ତ୍ରାଦି ଧାରଣ କର, ଦେବାଦିଙ୍କର ତୃପ୍ତି ନିମିତ୍ତ ବା ବର୍ଣ୍ଣାଶ୍ରମ ଧର୍ମପାଇଁ ଅଗ୍ନି ହୋତ୍ରାଦି, ଯେଉଁ ହୋମାଦି କର, ଅତିଥି ବା

Digitized by PPRACHIN, SOA

ବ୍ରାହ୍ମଣମାନଙ୍କୁ ଯେଉଁ ଅନ୍ନ, ଗୋ, ଭୂମି ଓ ସୁବର୍ଣ୍ଣାଦି ଦାନ କର ଅଥବା ଆପଣାର ପାପାଦି ନିବୃତ୍ତି ନିମିତ୍ତ ଯେଉଁ କୃଚ୍ଛ୍ରଚାନ୍ଦ୍ରାୟଣାଦି ବ୍ରତ ଏବଂ ଇନ୍ଦ୍ରିୟ ନିଗ୍ରହ (ଯମ ନିୟମାଦି) ଅଥବା ପଞ୍ଚାଗ୍ନି ପ୍ରଭୃତି ତପସ୍ୟା କର, ତାହା ସବୁ ଆମ୍ଭଠାରେ ଅର୍ପଣ କର; ଅର୍ଥାତ୍ ତୁମ୍ଭେ ଯେତେ-ପ୍ରକାର କର୍ତ୍ତବ୍ୟ କର୍ମ କର, ତାହା ସବୁ ଆମ୍ଭଠାରେ ଅର୍ପଣ କଲେ, ପ୍ରକୃତ ଭକ୍ତ ହେବ । ୨୭ ।

ଶ୍ଳୋକଃ ।

* ଶୁଭାଶୁଭଫଳୈରେବଂ, ମୋକ୍ଷ୍ୟସେ କର୍ମବନ୍ଧନୈଃ ।

ସନ୍ନ୍ୟାସଯୋଗଯୁକ୍ତାତ୍ମା, ବିମୁକ୍ତୋ ମାମୁପୈଷ୍ୟସି । ୨୮ ।

ଅନ୍ୱୟଃ ।

ଶୁଭାଶୁଭଫଳୈଃ କର୍ମବନ୍ଧନୈଃ ଏବଂ ମୋକ୍ଷ୍ୟସେ, ସନ୍ନ୍ୟାସଯୋଗଯୁକ୍ତାତ୍ମା (ତ୍ୱଂ) ବିମୁକ୍ତଃ (ସନ୍) ମାଂ ଉପୈଷ୍ୟସି । ୨୮ ।

ଟୀକା ।

ଏବଂ ଚ ଯତ୍ଫଳଂ ପ୍ରାପ୍ସ୍ୟସି ତଚ୍ଛୃଣୁ ଇତ୍ୟାହ । ଶୁଭାଶୁଭେତି । ଏବଂ କୁର୍ବନ୍ କର୍ମବନ୍ଧନୈଃ କର୍ମନିମିତ୍ତୈରିଷ୍ଟାନିଷ୍ଟଫଳୈର୍ମୁକ୍ତୋ ଭବିଷ୍ୟସି, କର୍ମଣାଂ ମୟି ଅର୍ପିତତ୍ୱେନ ତବ ତତ୍ଫଳସମ୍ବନ୍ଧାନୁପପତ୍ତେଃ ତୈଶ୍ଚ ବିମୁକ୍ତଃ ସନ୍ ସନ୍ନ୍ୟାସଯୋଗଯୁକ୍ତାତ୍ମା ସନ୍ନ୍ୟାସଃ କର୍ମଣାଂ ମଦର୍ପଣଂ ସ ଏବ ଯୋଗଃ ତେନ ଯୁକ୍ତ ଆତ୍ମା ଚିତ୍ତଂ ଯସ୍ୟ ତଥାଭୂତସ୍ତ୍ୱଂ ମାଂ ପ୍ରାପ୍ସ୍ୟସୀତ୍ୟର୍ଥଃ । ୨୮ ।

ପଦବ୍ୟାଖ୍ୟା ।

ଶୁଭାଶୁଭଫଳୈଃ—ଭଲ ଓ ମନ୍ଦ କର୍ମଫଳଦାୟକ, ଏବଂ—ଏ ପ୍ରକାର କଲେ, ମୋକ୍ଷ୍ୟସେ—ମୁକ୍ତ ହେବ କର୍ମ-ବନ୍ଧନୈଃ—କର୍ମବନ୍ଧନରୁ, ସନ୍ନ୍ୟାସଯୋଗଯୁକ୍ତାତ୍ମା—କର୍ମ ସବୁ ଈଶ୍ୱରଙ୍କଠାରେ ଅର୍ପଣ କରିବା ରୂପ ଯୋଗଦ୍ୱାରା ଯୁକ୍ତ-ଚିତ୍ତ ହୋଇ, ବିମୁକ୍ତଃ—ମୁକ୍ତ ହୋଇ, ମାଂ—ଆମ୍ଭଙ୍କୁ, ଉପୈଷ୍ୟସି—ପ୍ରାପ୍ତ ହେବ । ୨୮ ।

ଅନୁବାଦ ।

ତୁମ୍ଭେ ଏ ପ୍ରକାର କଲେ, ଶୁଭାଶୁଭ ଫଳଦାୟକ କର୍ମବନ୍ଧନରୁ ମୁକ୍ତ ହୋଇଯିବ, (କାହିଁକିନା) ଆମ୍ଭଠାରେ କର୍ମସବୁ ଅର୍ପଣ କରିବାରୂପ ଯୋଗରେ ମନ ଲଗାଇଲେ, ମୁକ୍ତ ହୋଇ ଆମ୍ଭଙ୍କୁ ପ୍ରାପ୍ତ ହେବ । ୨୮ ।

ବିଶଦବ୍ୟାଖ୍ୟା ।

କର୍ମରେ ଆସକ୍ତି ହିଁ କର୍ମବନ୍ଧନର ହେତୁ ଅର୍ଥାତ୍ 'ଏ କର୍ମ କଲେ ଅମୁକ ଫଳ ହେବ' ଏ ପ୍ରକାର ବୁଦ୍ଧିରେ କର୍ମ କଲେ, ତାହାର ଫଳ ଭୋଗ କରିବାକୁ ହୁଏ, ମାତ୍ର ଶୁଭାଶୁଭ ସମସ୍ତ କର୍ମ ଈଶ୍ୱରଙ୍କଠାରେ ଅର୍ପଣ କଲେ, ଫଳାଭିଳାଷ ନ ଥିବାରୁ କର୍ମବନ୍ଧନ ରହେ ନାହିଁ, ସେଥିପାଇଁ ଶ୍ରୀଭଗବାନ୍ କହିଲେ, ହେ ହେ ଅର୍ଜୁନ! ତୁମ୍ଭେ ଏ ପ୍ରକାର କଲେ, ଅର୍ଥାତ୍ ତୁମ୍ଭର ଭୋଜନ, ଦାନ, ହୋମ, ଓ ତପସ୍ୟାଦି ସମସ୍ତ କର୍ମ ଆମ୍ଭଠାରେ ଅର୍ପଣ କଲେ, ଶୁଭାଶୁଭ ଫଳ-ଦାୟକ କର୍ମବନ୍ଧନରୁ ତୁମ୍ଭେ ମୁକ୍ତ ହୋଇଯିବ । ଆମ୍ଭଠାରେ କର୍ମସବୁକୁ ଅର୍ପଣ କରିବା ଅର୍ଥାତ୍ କର୍ମଫଳ ତ୍ୟାଗ କରିବା-ରୂପ ଯୋଗରେ, ତୁମ୍ଭେ ଯୁକ୍ତଚିତ୍ତ ହେଲେ—ଏପ୍ରକାର ଯୋଗରେ ମନ ଦେଲେ କର୍ମବନ୍ଧନରୁ ମୁକ୍ତ ହୋଇ ଆମ୍ଭଙ୍କୁ ପ୍ରାପ୍ତ ହେବ । ୨୮ ।

Digitized by PPRACHIN, SOA

ଶ୍ଲୋକଃ ।

* ସମୋଽହଂ ସର୍ବଭୂତେଷୁ, ନ ମେ ଦ୍ୱେଷ୍ୟୋଽସ୍ତି ନ ପ୍ରିୟଃ ।
ଯେ ଭଜନ୍ତି ତୁ ମାଂ ଭକ୍ତ୍ୟା, ମୟି ତେ ତେଷୁ ଚାପ୍ୟହଂ । ୨୯ ।

ଅନ୍ୱୟଃ ।

ସର୍ବଭୂତେଷୁ ଅହଂ ସମଃ, ମେ ଦ୍ୱେଷ୍ୟଃ ନ ଅସ୍ତି, ପ୍ରିୟଃ ନ, ଯେ ତୁ ମାଂ ଭକ୍ତ୍ୟା ଭଜନ୍ତି, ତେ ମୟି, ତେଷୁ ଅପି ଅହଂ । ୨୯ ।

ଟୀକା ।

ଯଦି ତୁ ଭକ୍ତେଭ୍ୟ ଏବ ମୋକ୍ଷଂ ଦଦାସି ନାଭକ୍ତେଭ୍ୟସ୍ତର୍ହି ତବାପି କିଂ ରାଗଦ୍ୱେଷାଦିକୃତଂ ବୈଷମ୍ୟମସ୍ତି ? ନେତ୍ୟାହ । ସମୋଽହମିତି । ସର୍ବେଷ୍ୱପି ଭୂତେଷ୍ୱହଂ ସମଃ ଅତୋ ମମ ପ୍ରିୟଶ୍ଚ ଦ୍ୱେଷ୍ୟଶ୍ଚ ନାସ୍ତ୍ୟେବ, ଏବଂ ସତ୍ୟପି ଯେ ମାଂ ଭଜନ୍ତି, ତେ ଭକ୍ତ୍ୟା ମୟି ବର୍ତ୍ତନ୍ତେ ଅହମପି ତେଷ୍ୱନୁଗ୍ରାହକତୟା ବର୍ତ୍ତେ । ଅୟଂ ଭାବଃ, ଯଥା ଅଗ୍ନେଃ ସ୍ୱସେବକେଷ୍ୱେବ ତମଃଶୀତାଦି ଦୁଃଖମପାକୁର୍ବତୋଽପି ନ ବୈଷମ୍ୟଂ ଯଥା ବା କଳ୍ପବୃକ୍ଷସ୍ୟ, ତଥୈବ ଭକ୍ତପକ୍ଷପାତିନୋଽପି ମମ ବୈଷମ୍ୟଂ ନାସ୍ତ୍ୟେବ କିନ୍ତୁ ମଦ୍ଭକ୍ତେରେବାୟଂ ମହିମେତି । ୨୯ ।

ପଦବ୍ୟାଖ୍ୟା ।

ସମୋଽହଂ—ଆମ୍ଭେ ସମାନ ଅଟୁ, ସର୍ବଭୂତେଷୁ—ସମସ୍ତ ପ୍ରାଣିମାନଙ୍କ ପକ୍ଷରେ, ନ ମେ ଦ୍ୱେଷ୍ୟଃ ଅସ୍ତି—ଆମ୍ଭର ଶତ୍ରୁ କେହି ନାହିଁ, ନ ପ୍ରିୟଃ—ପ୍ରିୟ ମଧ୍ୟ କେହି ନୁହନ୍ତି, ଯେ—ଯେଉଁମାନେ, ଭଜନ୍ତି—ଭଜନା କରନ୍ତି, ତୁ—କିନ୍ତୁ, ମାଂ—ଆମ୍ଭଙ୍କୁ, ଭକ୍ତ୍ୟା—ଭକ୍ତିରେ, ମୟି ତେ—ସେମାନେ ଆମ୍ଭଠାରେ ରହନ୍ତି, ତେଷୁ ଚାପ୍ୟହଂ—ସେମାନଙ୍କଠାରେ ମଧ୍ୟ ଆମ୍ଭେ ରହୁଁ । ୨୯ ।

ଅନୁବାଦ ।

ସମସ୍ତ ପ୍ରାଣୀଙ୍କ ପକ୍ଷରେ ଆମ୍ଭେ ସମାନ ଅଟୁଁ, ଆମ୍ଭର କେହି ଶତ୍ରୁ ବା କେହି ମିତ୍ର ନୁହନ୍ତି, କିନ୍ତୁ ଯେଉଁମାନେ ଆମ୍ଭଙ୍କୁ ଭକ୍ତିର ସହିତ ପୂଜା କରନ୍ତି, ସେମାନେ ଆମ୍ଭଠାରେ ଅବସ୍ଥାନ କରନ୍ତି ଓ ଆମ୍ଭେ ସେମାନଙ୍କଠାରେ ଅବସ୍ଥାନ କରୁଁ । ୨୯ ।

ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନଙ୍କ ମନରେ ଏପରି ଆଶଙ୍କା ହେବ, ଯେ ଭଗବାନ୍ ଯେବେ ଭକ୍ତମାନଙ୍କୁ ମୁକ୍ତି ପ୍ରଦାନ କରନ୍ତି, ଅଭକ୍ତମାନଙ୍କୁ ମୁକ୍ତି ଦଅନ୍ତି ନାହିଁ, ତେବେ ତ ସାଧାରଣ ମନୁଷ୍ୟଙ୍କ ପରି ରାଗ ଦ୍ୱେଷାଦିଜନିତ ଭେଦ ଜ୍ଞାନ ତାଙ୍କର ମଧ୍ୟ ଅଛି । ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଆମ୍ଭେ ସମସ୍ତ ପ୍ରାଣୀମାନଙ୍କ ପକ୍ଷରେ ସମାନ ଅଟୁଁ ଅର୍ଥାତ୍ କାହାପ୍ରତି ଆମ୍ଭର ପକ୍ଷପାତ ନାହିଁ । କାହିଁତ ନା ଆମ୍ଭର କେହି 'ଦ୍ୱେଷ୍ୟ'—ଦ୍ୱେଷର ବିଷୟ ଅର୍ଥାତ୍ ଶତ୍ରୁ ନୁହେ ବା କେହି ଆମ୍ଭର ପ୍ରିୟ—ମିତ୍ର ନୁହେ, ତେବେ ଭେଦ ଏତିକି, ଯେ ଯେଉଁମାନେ ଏକାନ୍ତ ଭକ୍ତିରସହିତ ଆମ୍ଭର ପୂଜା କରନ୍ତି, ସେମାନେ ଭକ୍ତିଦ୍ୱାରା ଜଗତକୁ ଆମ୍ଭର ସ୍ୱରୂପ ବୋଲି ମଣୁଥିବାରୁ ଜଗତରେ ଥିଲେ ମଧ୍ୟ, ଆମ୍ଭଠାରେ ଅବସ୍ଥାନ କରନ୍ତି ଏବଂ ଭକ୍ତିଦ୍ୱାରା ତାହାଙ୍କ ହୃଦୟ ସ୍ୱଚ୍ଛ ହୋଇଥିବାରୁ ଧ୍ୟାନବଳରେ ଆମ୍ଭଙ୍କୁ ଆପଣା ହୃଦୟରେ ପ୍ରତିବିମ୍ବିତ କରାଇ ପାରନ୍ତି । ଅତ-ଏବ ଆମ୍ଭେ ସେମାନଙ୍କଠାରେ ପ୍ରକାଶିତ ଥାଉଁ । ମାତ୍ର ଅଭକ୍ତ, ଜଗତକୁ ଆମ୍ଭଠାରୁ ପୃଥକ୍

ମଳଥିବାରୁ ଆମ୍ଭଠାରେ ରହି ପାରେ ନାହିଁ, ଏବଂ ତାହାର ହୃଦୟ ଅସ୍ୱଚ୍ଛ ଥିବାରୁ ଆମ୍ଭେ ପ୍ରତି-ବିମ୍ବିତ ହୋଇ ତାହା ହୃଦୟରେ ରହି ପାରୁ ନା । ଯେପରି ସୂର୍ଯ୍ୟ ସବୁଠାରେ ସମାନଭାବରେ କିରଣ ପ୍ରଦାନ କଲେ ସୁଦ୍ଧା, ଦର୍ପଣାଦିରେ ତାଙ୍କର କିରଣ ସ୍ପଷ୍ଟ ପ୍ରତିଫଳିତ ହୁଏ, ମାତ୍ର ମୃତ୍ତି-କାଦିରେ ହୁଏ ନାହିଁ, ଯେପରି ଅଗ୍ନି ସମସ୍ତଙ୍କର ଶୀତ ଓ ଅନ୍ଧକାର ନାଶ କରିବାରେ ସକ୍ଷମ ହେଲେ ସୁଦ୍ଧା, ଅଗ୍ନି ନିକଟରେ ଥିବା ଲୋକ ଉକ୍ତ ଗୁଣ ଉତ୍ତମରୂପେ ଅନୁଭବ କରନ୍ତି, କିନ୍ତୁ ଦୂରସ୍ଥ ଲୋକ ଅନୁଭବ କରି ପାରନ୍ତି ନାହିଁ, ସେହିପରି, ଆମ୍ଭେ ସମସ୍ତଙ୍କ ପକ୍ଷରେ ସମାନ ହେଲେ ମଧ୍ୟ, ଭକ୍ତ ଉପାସନାଦ୍ୱାରା ଆମ୍ଭର ଭାବ ଗ୍ରହଣ କରି ପାରନ୍ତି, ମାତ୍ର ଅଭକ୍ତ ପାରେ ନାହିଁ ।

ଫଳକଥା ଏହି କି ନିରପେକ୍ଷ ପରମେଶ୍ୱରଙ୍କର ଭକ୍ତ ପ୍ରତି, ଯେ ବିଶେଷ ଅନୁଗ୍ରହ ଥିବାର ବୋଧ ହୁଏ, ତାହା ଭକ୍ତର ଭକ୍ତି ଗୁଣରେ ହୁଏ —ଈଶ୍ୱରଙ୍କ ପକ୍ଷପାତ ଦୋଷରେ ନୁହେ । ୨୯ ।

ଶ୍ଳୋକଃ ।

* ଅପି ଚେତ୍ ସୁଦୁରାଚାରୋ, ଭଜତେ ମାମନନ୍ୟଭାକ୍ ।
ସାଧୁରେବ ସ ମନ୍ତବ୍ୟଃ, ସମ୍ୟଗ୍‌ବ୍ୟବସିତୋ ହି ସଃ । ୩୦ ।

ଅନ୍ୱୟଃ ।

ସୁଦୁରାଚାରଃ ଅପି ଅନନ୍ୟଭାକ୍ ମାଂ ଭଜତେ ଚେତ୍ ସଃ ସାଧୁଃ ଏବ ମନ୍ତବ୍ୟଃ ହି ସଃ ସମ୍ୟଗ୍‌ବ୍ୟବସିତଃ । ୩୦ ।

ଟୀକା ।

ଅପି ଚ ମଦ୍ଭକ୍ତେରେବାସ୍ମବତର୍କ୍ୟଃ ପ୍ରଭାବ ଇତି ଦର୍ଶୟନ୍ନାହ । ଅପି ଚେଦିତି । ଅତ୍ୟନ୍ତଦୁରାଚାରୋଽପି ଯଦ୍ୟପୃଥକ୍‌ଭାବେନ ପୃଥକ୍‌ଦେବତାପି ବାସୁଦେବ ଏବେତି ବୁଦ୍ଧ୍ୟା ଦେବତାନ୍ତରଭକ୍ତିମକୁର୍ବନ୍ ମାମେବ ପରମେଶ୍ୱରଂ ଭଜତେ ତର୍ହି ସାଧୁଃ ଶ୍ରେଷ୍ଠ ଏବ ସ ମନ୍ତବ୍ୟଃ ଯତୋଽସୌ ସମ୍ୟଗ୍‌ବ୍ୟବସିତଃ ଶୋଭନମଧ୍ୟବସାୟଂ କୃତବାନ୍ । ୩୦ ।

ପଦବ୍ୟାଖ୍ୟା ।

ଅପି ଚେତ୍—ହେଲେ ମଧ୍ୟ, ସୁଦୁରାଚାରଃ—ଅତ୍ୟନ୍ତ ପାପୀ, ଭଜତେ—ଭଜନା କରନ୍ତି, ମାଂ—ଆମ୍ଭଙ୍କୁ, ଅନନ୍ୟଭାକ୍—ଅନ୍ୟଠାରେ ଭକ୍ତି ନ କରି, ସାଧୁରେବ ସଃ—ତାଙ୍କୁ କେବଳ ସାଧୁ ବୋଲି, ମନ୍ତବ୍ୟଃ—ଜାଣିବା ଉଚିତ ସମ୍ୟକ୍ ବ୍ୟବସିତଃ—ଉତ୍ତମ ଅଧ୍ୟବସାୟୀ, ହି—ଯେହେତୁ, ସଃ—ସେ ବ୍ୟକ୍ତି । ୩୦ ।

ଅନୁବାଦ ।

ଅତି ଦୁରାଚାର ବ୍ୟକ୍ତି ମଧ୍ୟ, ଯେବେ ଏକାନ୍ତଚିତ୍ତରେ ଆମ୍ଭଙ୍କୁ ଭଜନା କରନ୍ତି, ତେବେ, ତାଙ୍କୁ ସାଧୁ ବୋଲି ଜାଣିବ, କାହିଁକି ନା ତାହାଙ୍କର ଯତ୍ନ ଉତ୍କୃଷ୍ଟ ଅଟେ । ୩୦ ।

ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ କୁହା ଯାଇଅଛି, ଯେ ଭକ୍ତପ୍ରତି ଭଗବାନଙ୍କର, ଯେଉଁ ବିଶେଷ ଅନୁଗ୍ରହ ଦେଖାଯାଏ, ତାହା କେବଳ ଭକ୍ତର ଭକ୍ତି ଗୁଣରେ ହୁଏ, ବର୍ତ୍ତମାନ ସେହି ଭଗ-ବଦ୍ଭକ୍ତିର ମାହାତ୍ମ୍ୟ ବିଶେଷ କରି କୁହା ଯାଉଅଛି ।

Digitized by PPRACHIN, SOA

ଯଦି କୌଣସି ଅତି ଦୁରାଚାର ବ୍ୟକ୍ତି (ପ୍ରାୟଶ୍ଚିତ୍ତଦ୍ୱାରା ଯାହାର ପାପ ବିନାଶର ସମ୍ଭାବନା ନାହିଁ, ସେ) ଏକାନ୍ତ ମନରେ ଭଗବାନଙ୍କ ସ୍ମରଣାଦି କରେ, ତେବେ ତାହାକୁ ସାଧୁ ବୋଲି ଜାଣିବା ଉଚିତ । ସେ ପ୍ରକୃତରେ ସାଧୁ ନୁହେ ସତ, ତାହାର ମନ୍ଦ ଓ କୁତ୍ସିତ କ୍ରିୟା ଦେଖିଲେ, ତାହା ପ୍ରତି ସ୍ୱଭାବତଃ ଘୃଣାର ଉଦୟ ହୁଏ ସତ, ତଥାପି, ସେ, ଯେଉଁ ଅଧ୍ୟବସାୟ ଆରମ୍ଭ କରିଅଛି, ଅର୍ଥାତ୍ ଭଗବାନଙ୍କଠାରେ ଏକାନ୍ତ ଭକ୍ତି କରିବାକୁ ତାହାର ଯେଉଁ ପ୍ରବୃତ୍ତି ବା ଚେଷ୍ଟା ଜନ୍ମିଅଛି, ସେହି ଚେଷ୍ଟା ବଳରେ, ସେ, ସାଧୁ ପଦବାଚ୍ୟ ଅଟେ । କାହିଁକି ନା ଗୋଟିଏ ୨ ପାପର ବିନାଶପାଇଁ ଗୋଟିଏ ୨ ପ୍ରାୟଶ୍ଚିତ୍ତ କରିବାକୁ ହେଲେ, ପାପୀ ଆପଣାର ସମସ୍ତ ଜୀବନକାଳ ପ୍ରାୟଶ୍ଚିତ୍ତ କଲେ ମଧ୍ୟ, ନିଷ୍ପାପ ହୋଇ ପାରବ ନାହିଁ, ମାତ୍ର ଏକାନ୍ତ-ଭକ୍ତିରେ ନିମେଷମାତ୍ର ପରମେଶ୍ୱରଙ୍କର ଧ୍ୟାନ କଲେ, ସମସ୍ତ ପାପରୁ ବିମୁକ୍ତ ହୋଇ ଯିବ ; ଯେହେତୁ ଶାସ୍ତ୍ରରେ କଥିତ ଅଛି , ଯେ,—

"ଅତିପାପପ୍ରସକ୍ତୋଽପି ଧ୍ୟାୟନ୍ନିମିଷମଚ୍ୟୁତଂ ।
ଭୂୟସ୍ତପସ୍ୱୀ ଭବତି ପଂକ୍ତିପାବନପାବନଃ ।
ପ୍ରାୟଶ୍ଚିତ୍ତାନ୍ୟଶେଷାଣି ତପଃ କର୍ମ୍ମାତ୍ମିକାନି ବୈ ।
ଯାନି ତେଷାମଶେଷାଣାଂ କୃଷ୍ଣାନୁସ୍ମରଣଂ ପରଂ" ।

ଅର୍ଥାତ୍ ଅତି ପାପୀ ଲୋକ ମଧ୍ୟ ଏକାନ୍ତଚିତ୍ତ ହୋଇ ନିମେଷମାତ୍ର ଭଗବାନଙ୍କୁ ଧ୍ୟାନ କଲେ, ସମସ୍ତ ପାପରୁ ମୁକ୍ତ ହୋଇ ତପସ୍ୱୀ ବୋଲି ପରିଗଣିତ ହୁଏ, ଏବଂ ସେ, ଯେଉଁ ଲୋକ ପଂକ୍ତିରେ ଉପବେଶନ କରେ, ସେହି ଲୋକମାନେ ମଧ୍ୟ, ପବିତ୍ର ହୋଇ ଯାନ୍ତି । ତପସ୍ୟା ଓ ବ୍ରତାଦି ଯେତେ ପ୍ରକାର ପ୍ରାୟଶ୍ଚିତ୍ତ ଅଛି, କୃଷ୍ଣ ସ୍ମରଣ, ସେ ସବୁଠାରୁ ଶ୍ରେଷ୍ଠ ଅଟେ ।

ଅତଏବ ଭଗବଦ୍ଭକ୍ତି, ଯେ ସର୍ବଶ୍ରେଷ୍ଠ ଓ ସର୍ବ ପାପ ବିନାଶକ ଏବଂ ପରମ ସୁଖର କାରଣ, ସେଥିରେ ଅଣୁମାତ୍ର ସନ୍ଦେହ ନାହିଁ । ୩୦ ।

ଶ୍ଳୋକଃ ।

* କ୍ଷିପ୍ରଂ ଭବତି ଧର୍ମ୍ମାତ୍ମା, ଶଶ୍ୱଚ୍ଛାନ୍ତିଂ ନିଗଚ୍ଛତି ।
କୌନ୍ତେୟ ପ୍ରତିଜାନୀହି, ନ ମେ ଭକ୍ତଃ ପ୍ରଣଶ୍ୟତି ।୩୧ ।

ଅନ୍ୱୟଃ ।

(ସଃ) କ୍ଷିପ୍ରଂ ଧର୍ମ୍ମାତ୍ମା ଭବତି ଚ ଶଶ୍ୱତ୍ ଶାନ୍ତିଂ ନିଗଚ୍ଛତି । ହେ କୌନ୍ତେୟ ! ତ୍ୱଂ ପ୍ରତିଜାନୀହି ମେ ଭକ୍ତଃ ନ ପ୍ରଣଶ୍ୟତି । ୩୧ ।

ଟୀକା ।

ନନୁ କଥଂ ଦୁରାଚାରୋଽଧ୍ୟବସାୟମାତ୍ରେଣ ସାଧୁର୍ମନ୍ତବ୍ୟସ୍ତତ୍ରାହ । କ୍ଷିପ୍ରମିତି । ସୁଦୁରାଚାରୋଽପି ମାଂ ଭଜନ୍ ଶୀଘ୍ରଂ ଧର୍ମଚିତ୍ତୋ ଭବତି ତତଶ୍ଚ ଶଶ୍ୱତ୍ ଶାନ୍ତିଂ ଚିତ୍ତୋପଶମଂ ପରମେଶ୍ୱରନିଷ୍ଠାଂ ନିଗଚ୍ଛତି ପ୍ରାପ୍ନୋତି । ତର୍ହି ଦୁର୍ବାସନାବୈଚିତ୍ର୍ୟେଣ ଚିତ୍ତବିକ୍ଷେପେ କୁଲଂ ... ହେ କୌନ୍ତେୟ ! ପଟହାଦିମହାଘୋଷ-ପୂର୍ବକଂ ବିବଦମାନାନାଂ ସଭାଂ ଗତ୍ୱା ବାହୁମୁତ୍କ୍ଷିପ୍ୟ ନିଃଶଙ୍କଂ ପ୍ରତିଜାନୀହି ପ୍ରତିଜ୍ଞାଂ କୁରୁ, କଥଂ ମେ ପରମେଶ୍ୱରସ୍ୟ

ଭକ୍ତଃ ସୁଦୁରାଚାରୋଽପି ନ ପ୍ରଣଶ୍ୟତି, ଅପି ତୁ କୃତାର୍ଥ ଏବ ଭବତୀତି । ତତସ୍ତେ ତତ୍ପ୍ରୌଢ଼ିବିକମ୍ପିତ ଧ୍ୱଂସିତ-କୁତର୍କାଃ ସନ୍ତୋ ନିଃସଂଶୟଂ ତ୍ୱାମେବ ଗୁରୁତ୍ୱେନାଶ୍ରୟେରନ୍ । ୩୧ ।

ପଦବ୍ୟାଖ୍ୟା ।

କ୍ଷିପ୍ରଂ—ଶୀଘ୍ର, ଭବତି—ହୁଅନ୍ତି, ଧର୍ମାତ୍ମା—ପୁଣ୍ୟାତ୍ମା, ଶଶ୍ୱତ୍—ସର୍ବଦା, ଶାନ୍ତିଂ—ମୁକ୍ତି ସୁଖକୁ, ନିଗଚ୍ଛତି—ପ୍ରାପ୍ତ ହୁଅନ୍ତି, କୌନ୍ତେୟ—ହେ କୁନ୍ତୀପୁତ୍ର, ପ୍ରତିଜାନୀହି—ପ୍ରତିଜ୍ଞା କର ଅଥବା ସଭା ମଧ୍ୟରେ ହାତ ଉଠାଇ ଘୋଷଣା ଦିଅ, ନ ମେ ଭକ୍ତଃ ପ୍ରଣଶ୍ୟତି—ଆମ୍ଭର ଭକ୍ତ ବିନାଶ ପ୍ରାପ୍ତ ହୁଅନ୍ତି ନାହିଁ । ୩୧ ।

ଅନୁବାଦ ।

(ସେ ବ୍ୟକ୍ତି) ଶୀଘ୍ର ଧର୍ମାତ୍ମା ହୁଅନ୍ତି, ଏବଂ ସର୍ବଦା, ଶାନ୍ତି ସୁଖ ଭୋଗ କରନ୍ତି । ହେ ଅର୍ଜୁନ ! ଆମ୍ଭର ଭକ୍ତ କଦାପି ବିନାଶପ୍ରାପ୍ତ ହୁଅନ୍ତି ନାହିଁ, ଏକଥା ତୁମ୍ଭେ ହସ୍ତ ଉତ୍ତୋଳନ କରି ଘୋଷଣା କର । ୩୧ ।

ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଲୋକରେ କୁହା ଯାଇଥିଲା, ଯେ 'ଅତି ଦୁରାଚାର ବ୍ୟକ୍ତି ମଧ୍ୟ, ଯେବେ ଏକ ଚିତ୍ତରେ ଭଗବାନଙ୍କୁ ଭଜନା କରନ୍ତି, ତେବେ ତାଙ୍କୁ ସାଧୁ ବୋଲି ଜାଣିବା ଉଚିତ, କାହିଁକି ନା ତାଙ୍କର ଅଧ୍ୟବସାୟ ଶ୍ରେଷ୍ଠ,' ଏ ଶ୍ଲୋକରେ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ସେହି ବ୍ୟକ୍ତି (ଅର୍ଥାତ୍ ଯେ, ଦୁରାଚାର ହେଲେ ମଧ୍ୟ, ଏକାଗ୍ରଚିତ୍ତରେ ଆମ୍ଭଙ୍କୁ ଆରାଧନା କରନ୍ତି,) ଶୀଘ୍ର ଦୁରାଚାର ତ୍ୟାଗ କରି ଧର୍ମାତ୍ମା ହୁଅନ୍ତି ଓ ନିତ୍ୟ ଶାନ୍ତି ଅର୍ଥାତ୍ ଜନ୍ମମରଣାଦି ଉପଦ୍ରବଶୂନ୍ୟ ମୋକ୍ଷସୁଖ ଭୋଗ କରନ୍ତି ।

କାଳେ ଅର୍ଜୁନଙ୍କର ଏପରି ସନ୍ଦେହ ହେବ, କି ଯେ, ଚିରକାଳ ମନ୍ଦକାର୍ଯ୍ୟ କରି ଆସିଛି, ସେ, ଯେ ଭଗବଦ୍ଭକ୍ତି ବଳରେ ଅଳ୍ପ ସମୟ ମଧ୍ୟରେ ଧର୍ମାତ୍ମା ହୋଇ ଯିବ, ଏକଥା ଯୁକ୍ତିବାଦମାନେ ସ୍ୱୀକାର କରିବେ କି ? ବରଂ ପୂର୍ବରୁ ଅଭ୍ୟସ୍ତ ମନ୍ଦକର୍ମର ଫଳ ଅନୁସାରେ ସେ ଦିନକୁଦିନ ଅଧୋଗତିପ୍ରାପ୍ତ ହେବ ଓ ଶେଷରେ ଅନନ୍ତ ନରକରେ ପଡ଼ିବ, ଏହାହିଁ ଯୁକ୍ତିସଙ୍ଗତ ବୋଲି ସମସ୍ତେ ମନେ କରିବେ । ଅର୍ଜୁନଙ୍କର ଏହି ଆଶଙ୍କା ନିବାରଣପାଇଁ ଶ୍ରୀଭଗବାନ୍ କହିଲେ, —'ହେ ଅର୍ଜୁନ ! ଆମ୍ଭର ଭକ୍ତ କଦାପି ବିନାଶପ୍ରାପ୍ତ—ଅର୍ଥାତ୍ ଅଧୋଗତିପ୍ରାପ୍ତ ହୁଅନ୍ତି ନାହିଁ, ଏକଥା ତୁମ୍ଭେ ଯୁକ୍ତିବାଦମାନଙ୍କ ସଭାରେ ହସ୍ତ ଉତ୍ତୋଳନ କରି ଦୃଢ଼ ଅଥଚ ସଗର୍ବ ଭାବରେ ଘୋଷଣା କର । ତାହା ହେଲେ, ସେମାନେ ଯୁକ୍ତି ତ୍ୟାଗ କରି ତୁମ୍ଭର ମତ ଅନୁସରଣ କରିବେ ।'

ଫଳକଥା ଏହି କି ଭଗବଦ୍ଭକ୍ତିବଳରେ ଅତି ଦୁରାଚାର ଲୋକମଧ୍ୟ, ଶୀଘ୍ର ଧର୍ମାତ୍ମା ହୋଇ ମୁକ୍ତି ସୁଖ ଭୋଗ କରନ୍ତି, ଏଥିରେ କାହାର ସନ୍ଦେହ କରିବାର ଉଚିତ ନୁହେଁ । ୩୧ ।

ଶ୍ଲୋକଃ ।

* ମାଂ ହି ପାର୍ଥ ବ୍ୟପାଶ୍ରିତ୍ୟ, ଯେଽପି ସ୍ୟୁଃ ପାପଯୋନୟଃ ।
ସ୍ତ୍ରିୟୋ ବୈଶ୍ୟାସ୍ତଥା ଶୂଦ୍ରା, ସ୍ତେଽପି ଯାନ୍ତି ପରାଂ ଗତିଂ । ୩୨ ।

Digitized by PPRACHIN, SOA

ଅନ୍ୱୟଃ ।

ହେ ପାର୍ଥ! ଯେ ପାପଯୋନୟଃ ସ୍ୟୁଃ, ତେ ଅପି, ତଥା ସ୍ତ୍ରିୟଃ, ବୈଶ୍ୟାଃ, ଶୂଦ୍ରାଃ ଅପି ମାଂ ବ୍ୟପାଶ୍ରିତ୍ୟ ପରାଂ ଗତିଂ ଯାନ୍ତି । ୩୨ ।

ଟୀକା ।

ସ୍ୱାତ୍ମଭକ୍ତେଃ ମଭକ୍ତିଃ ପବିତ୍ରୀକରୋତୀତି କମତ୍ର ଚିତ୍ରଂ ଯତୋମଦ୍ଭକ୍ତିର୍ଦ୍ଦୁର୍କୁଲାନପ୍ୟନଧିକାରିଣୋଽପି ସଂସାରାନ୍ମୋଚୟତୀତ୍ୟାହ । ମାଂ ହୀତି । ଯେଽପି ପାପଯୋନୟଃ ସ୍ୟୁର୍ନିକୃଷ୍ଟଜନ୍ମାନୋଽନ୍ତ୍ୟଜାଦୟୋଭବେୟୁଃ, ଯେଽପି ବୈଶ୍ୟାଃ କେବଳଂ କୃଷ୍ୟାଦିନିରତାଃ ଅତଃ ସ୍ତ୍ରିୟଃ ଶୂଦ୍ରାଶ୍ଚାପ୍ୟଧ୍ୟୟନାଦିରହିତାସ୍ତେଽପି ମାଂ ବ୍ୟପାଶ୍ରିତ୍ୟ ସଂସେବ୍ୟ ପରାଂ ଗତିଂ ଯାନ୍ତି ହି ନିଶ୍ଚିତଂ । ୩୨ ।

ପଦବ୍ୟାଖ୍ୟା ।

ମାଂ—ଆମ୍ଭଙ୍କୁ, ହି—ନିଶ୍ଚୟ, ପାର୍ଥ—ହେ ଅର୍ଜୁନ!, ବ୍ୟପାଶ୍ରିତ୍ୟ—ଆଶ୍ରୟ କରି, ଯେଽପି ସ୍ୟୁଃ—ଯେଉଁମାନେ ହୁଅନ୍ତି, ପାପଯୋନୟଃ—ନିକୃଷ୍ଟ (ଚଣ୍ଡାଳାଦି) ଯୋନିରେ ଜାତ, ସ୍ତ୍ରିୟଃ—ନାରୀମାନେ, ବୈଶ୍ୟାଃ—କୃଷିକାର୍ଯ୍ୟରେ ନିରତ ବୈଶ୍ୟମାନେ, ଶୂଦ୍ରାଃ—ବେଦାଧ୍ୟୟନ ବର୍ଜିତ ଶୂଦ୍ରମାନେ, ତେଽପି—ସେମାନେ ମଧ୍ୟ, ଯାନ୍ତି—ପ୍ରାପ୍ତ ହୁଅନ୍ତି, ପରାଂ ଗତିଂ—ଶ୍ରେଷ୍ଠ ଗତି ଅର୍ଥାତ୍ ମୁକ୍ତିକୁ । ୩୨ ।

ଅନୁବାଦ ।

ହେ ପାର୍ଥ! ଆମ୍ଭଙ୍କୁ ଆଶ୍ରୟ କଲେ, ନିକୃଷ୍ଟ କୁଳଜାତ ପ୍ରାଣୀବର୍ଗ, ସ୍ତ୍ରୀ, ଶୂଦ୍ର ଏବଂ ବୈଶ୍ୟ ଏମାନେ ସମସ୍ତେ ମୁକ୍ତି ପ୍ରାପ୍ତ ହୁଅନ୍ତି । ୩୨ ।

ବିଶଦବ୍ୟାଖ୍ୟା ।

କର୍ମାଧିକାରୀ, ଜ୍ଞାନାଧିକାରୀ ଓ ଯୋଗାଧିକାରୀ ହେବାକୁ ହେଲେ, କେତେଗୁଡ଼ିଏ ବିଶେଷ ଦୈବୀ ଅନୁକୂଳ ଘଟନା ଆବଶ୍ୟକ ହୁଏ, ତାହା ନ ହେଲେ, ଅର୍ଥାତ୍ ବିପ୍ରାଦି ଜାତି, ଉପନୟନାଦି ସଂସ୍କାର ଓ ବେଦାଧ୍ୟୟନ ଏବଂ ସଦ୍ଗୁରୁପ୍ରାପ୍ତି ପ୍ରଭୃତି ନ ଘଟିଲେ, କର୍ମ, ଜ୍ଞାନ ଓ ଯୋଗସାଧନ କରାଯାଇ ନ ପାରେ; ପୁଣି ସ୍ତ୍ରୀ, ଶୂଦ୍ର ଓ ଚଣ୍ଡାଳାଦି ଅନ୍ତ୍ୟଜ ଜାତିମାନଙ୍କର ଉକ୍ତ କର୍ମାଦିରେ ଅଧିକାର ନାହିଁ । ମାତ୍ର ଭଗବଦ୍ଭକ୍ତିରେ ଚଣ୍ଡାଳଠାରୁ ବ୍ରାହ୍ମଣ ପର୍ଯ୍ୟନ୍ତ ଏବଂ ପଶୁ, ପକ୍ଷୀ, କୀଟାଦିମାନଙ୍କର ତୁଲ୍ୟ, ସମାନ ଅଧିକାର ଅଛି । ସେହି ଭଗବଦ୍ଭକ୍ତିର ବିଶେଷ ମାହାତ୍ମ୍ୟ ବର୍ଣ୍ଣନା କରିବାପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, କି ଯେଉଁମାନେ ପାପଯୋନିରେ ଜାତ ଅର୍ଥାତ୍ ଯେଉଁମାନେ ପୂର୍ବଜନ୍ମର ଦୁଷ୍କୃତବଳରେ ପଶୁ, ପକ୍ଷୀ ବା କୀଟାଦି ନିକୃଷ୍ଟ ଯୋନିରେ ଅଥବା ଚଣ୍ଡାଳାଦି ଅନ୍ତ୍ୟ ଯୋନିରେ ଜାତ ହୋଇଅଛନ୍ତି, ସେମାନେ ଏବଂ ବେଦାଧ୍ୟୟନବର୍ଜିତ ସ୍ତ୍ରୀଜାତି ଓ କୃଷି-ବାଣିଜ୍ୟାଦିରେ ସର୍ବଦା ରତ ବୈଶ୍ୟଜାତି ଏବଂ ବ୍ରାହ୍ମଣାଦି ବର୍ଣ୍ଣତ୍ରୟର ସେବାରେ ନିଯୁକ୍ତ ଶୂଦ୍ରଜାତି, ଏ ସମସ୍ତେ ଏକାନ୍ତ ଭକ୍ତିରେ ଆମ୍ଭଙ୍କୁ ଆଶ୍ରୟ କଲେ, ମୋକ୍ଷପ୍ରାପ୍ତ ହେବେ ।

ଫଳକଥା ଏହି କି ଭଗବଦ୍ଭକ୍ତିରେ ବ୍ରାହ୍ମଣଠାରୁ କୀଟ ପର୍ଯ୍ୟନ୍ତ ସମସ୍ତଙ୍କର ସମାନ ଅଧିକାର ଅଛି ଏବଂ ଭକ୍ତି, ସୁଖସାଧ୍ୟ ଓ ଶୀଘ୍ର ପରମ ଫଳପ୍ରଦ ଅଟେ । ୩୨ ।

Digitized by PPRACHIN, SOA

## ଶ୍ଳୋକଃ ।

* କିଂ ପୁନର୍ବ୍ରାହ୍ମଣାଃ ପୁଣ୍ୟା, ଭକ୍ତା ରାଜର୍ଷୟସ୍ତଥା ।
ଅନିତ୍ୟମସୁଖଂ ଲୋକ, ମିମଂ ପ୍ରାପ୍ୟ ଭଜସ୍ୱ ମାଂ । ୩୩ ।

## ଅନ୍ୱୟଃ ।

ପୁଣ୍ୟାଃ ବ୍ରାହ୍ମଣାଃ ତଥା ଭକ୍ତାଃ ରାଜର୍ଷୟଃ ପୁନଃ କିଂ ? ଇମଂ ଅନିତ୍ୟଂ ଅସୁଖଂ ଲୋକଂ ପ୍ରାପ୍ୟ ମାଂ ଭଜସ୍ୱ ।୩୩।

## ଟୀକା ।

ଯଦୈବଂ ତଦା ସତ୍କୁଲାଃ ସଦାଚାରବନ୍ତ ମଦ୍ଭକ୍ତାଃ ପରାଂ ଗତିଂ ଯାନ୍ତୀତି କିଂ ବକ୍ତବ୍ୟଂ ଇତ୍ୟାହ । କିଂ ପୁନରିତି । ପୁଣ୍ୟାଃ ସୁକୃତବନ୍ତୋ ବ୍ରାହ୍ମଣାଃ ତଥା ରାଜାନଶ୍ଚ ତେ ଋଷୟଶ୍ଚେତି ଏବମ୍ଭୂତାଶ୍ଚ ପରାଂ ଗତିଂ ଯାନ୍ତୀତି କିଂ ବକ୍ତବ୍ୟମିତ୍ୟର୍ଥଃ ଅତସ୍ତ୍ୱମିମଂ ରାଜର୍ଷିରୂପଂ ଦେହଂ ପ୍ରାପ୍ୟ ଲବ୍ଧ୍ୱା ମାଂ ଭଜସ୍ୱ । କିଞ୍ଚ ଅନିତ୍ୟମଧ୍ରୁବ ଅସୁଖଂ ସୁଖରହିତଂ ଚେମଂ ମର୍ତ୍ତ୍ୟଲୋକଂ ପ୍ରାପ୍ୟ ଅନିତ୍ୟତ୍ୱାତ୍ ବିଳମ୍ବମକୁର୍ବନ୍ ଅସୁଖତ୍ୱାଚ୍ଚ ସୁଖାର୍ଥମୁଦ୍ୟମଂ ହିତ୍ୱା ମାମେବ ଭଜସ୍ୱେତ୍ୟର୍ଥଃ । ୩୩ ।

## ପଦବ୍ୟାଖ୍ୟା ।

କିଂ ପୁନଃ—ଅଉ କ କହିବାକୁ ହେବ ?, ବ୍ରାହ୍ମଣାଃ—ବ୍ରାହ୍ମଣମାନେ, ପୁଣ୍ୟାଃ—ପବିତ୍ର, ଭକ୍ତାଃ ରାଜର୍ଷୟଃ—ଭକ୍ତ ରାଜର୍ଷିମାନେ, ତଥା—ସେହିପରି, ଅନିତ୍ୟଂ—ଅଚିରସ୍ଥାୟୀ, ଅସୁଖଂ—ସୁଖଶୂନ୍ୟ, ଲୋକଂ—ମର୍ତ୍ତ୍ୟଭୁବନକୁ, ଇମଂ—ଏହି, ପ୍ରାପ୍ୟ—ପ୍ରାପ୍ତ ହୋଇଥିବାରୁ, ଭଜସ୍ୱ—ଭଜନ କର, ମାଂ—ଆମ୍ଭଙ୍କୁ । ୩୩ ।

## ଅନୁବାଦ ।

ପବିତ୍ର ବ୍ରାହ୍ମଣ ଓ ଭକ୍ତ ରାଜର୍ଷିମାନେ, ଯେ ଭକ୍ତିବଳରେ ମୁକ୍ତି ପ୍ରାପ୍ତ ହେବେ, ତାହା କ ଅଉ କହିବାକୁ ହେବ ? ଅତଏବ ତୁମ୍ଭେ ଏହି ଅନିତ୍ୟ ଓ ଅସୁଖକର ଲୋକରେ ଥିବାରୁ ଆମ୍ଭଙ୍କୁ ଭଜନ କର । ୩୩ ।

## ବିଶଦବ୍ୟାଖ୍ୟା ।

ଯେତେବେଳେ ନୀଚଯୋନି ଜାତ ଅନ୍ତ୍ୟଜ ଜାତି ଏବଂ ମୁକ୍ତିର ଅଯୋଗ୍ୟ —ସ୍ତ୍ରୀ, ଶୂଦ୍ର ଓ ବୈଶ୍ୟ ଏମାନେ ସୁଦ୍ଧା, ଭକ୍ତିବଳରେ ମୁକ୍ତି ପ୍ରାପ୍ତ ହୁଅନ୍ତି, ସେତେବେଳେ ସଦ୍ବଂଶଜାତ ଓ ସଦାଚାରଯୁକ୍ତ ବ୍ରାହ୍ମଣ ଏବଂ ଭକ୍ତ କ୍ଷତ୍ରିୟମାନେ, ଯେ ମୁକ୍ତି ପ୍ରାପ୍ତ ହେବେ, ଏଥିରେ କ ଅଉ ସନ୍ଦେହ ଅଛି ? ଅତଏବ ହେ ଅର୍ଜୁନ! ତୁମ୍ଭେ ପବିତ୍ର କ୍ଷତ୍ରିୟବଂଶରେ ଜନ୍ମଗ୍ରହଣ କରିଥିବାରୁ ମୁକ୍ତିର ଯୋଗ୍ୟ ହୋଇଅଛ, ତୁମ୍ଭର ଭକ୍ତି କରିବା ବିଷୟରେ ଆଉ ହେଳା କରିବା ଉଚିତ ନୁହେ, ଶୀଘ୍ର ଆମ୍ଭଙ୍କୁ ଭଜନ କର । କାରଣ ତୁମ୍ଭେ ଏ ଯେଉଁ ମର୍ତ୍ତ୍ୟଲୋକରେ ଜନ୍ମଗ୍ରହଣ କରିଅଛ, ତାହା ଅନିତ୍ୟ, କେଜାଣେ କେଉଁଦିନ ହଠାତ୍ ରୋଗାଦିରେ ତୁମ୍ଭେ ଏ ଲୋକରୁ ଅପସାରିତ ହୋଇପାର, ଅତଏବ ଶୀଘ୍ର ଭକ୍ତି ଅବଲମ୍ବନ କର, ପୁଣି ଏ ଲୋକ ଅସୁଖକର ଅର୍ଥାତ୍ ରୋଗ, ଶୋକ ଓ ଜନ୍ମମରଣାଦି ନାନା ଅସୁଖ, ସର୍ବଦା ଏଥିରେ ଭୋଗ କରିବାକୁ ହେଉଅଛି । ଏପରି ସ୍ଥଳେ, ଏଥିରେ ଆସକ୍ତ ନ ହୋଇ ପରମସୁଖକର ମୋକ୍ଷ ପ୍ରାପ୍ତି ନିମିତ୍ତ ଶୀଘ୍ର ଭକ୍ତିମାର୍ଗ ଅବଲମ୍ବନ କର । ଆଉ ଆମ୍ଭେ ନିଜେ ଭକ୍ତିର ପାତ୍ର, ତୁମ୍ଭ ସମ୍ମୁଖରେ ଗୁରୁ ରୂପରେ ଉପସ୍ଥିତ ହୋଇ ଉପଦେଶ ପ୍ରଦାନ କରୁଅଛୁଁ । ଏପରି ସ୍ଥଳେ, ଭକ୍ତି ନ କରିବା ଓ

Digitized by PPRACHIN, SOA

ପ୍ରବଳ ହେବା ବଷୟରେ, ଏହାଠାରୁ ଅଧିକ ସୁଯୋଗ ଆଉ ତୁମ୍ଭେ ପାଇବ ନାହିଁ । ଅତଏବ ଶ୍ରୀଗୁରୁଆମ୍ଭଠାରେ ଭକ୍ତି କର । ୩୩ ।

ଶ୍ଳୋକଃ ।

* ମନ୍ମନା ଭବ ମଦ୍ଭକ୍ତୋ, ମଦ୍ୟାଜୀ ମାଂ ନମସ୍କୁରୁ ।
ମାମେବୈଷ୍ୟସି ଯୁକ୍ତ୍ୱୈବ,ମାତ୍ମାନଂ ମତ୍ପରାୟଣଃ । ୩୪ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସମ୍ବାଦେ ରାଜଗୁହ୍ୟଯୋଗୋ-ନାମ ନବମୋଽଧ୍ୟାୟଃ । ୯ ।

---

ଅନ୍ୱୟଃ ।

ମନ୍ମନାଃ, ମଦ୍ଭକ୍ତଃ, ମଦ୍ୟାଜୀ ଭବ, ମାଂ ନମସ୍କୁରୁ, ଏବ ଆତ୍ମାନଂ ଯୁକ୍ତ୍ୱା ମତ୍ପରାୟଣଃ (ସନ୍) ମାଂ ଏବ ଏଷ୍ୟସି ।୩୪।
ଇତି ଶ୍ରୀଭଗବଦ୍ଗୀତାୟାଂ ଅନ୍ୱୟେ ନବମୋଽଧ୍ୟାୟଃ । ୯ ।

---

ଟୀକା ।

ଭଜନପ୍ରକାରଂ ଦର୍ଶୟନ୍ନୁପସଂହରତି । ମନ୍ମନା ଇତି । ମଦ୍ୟେବ ମନୋଯସ୍ୟ ସ ମନ୍ମନାସ୍ତ୍ୱଂଭବ, ତଥା ମମୈବ ଭକ୍ତଃ ସେବକୋଭବ, ମଦ୍ୟାଜୀ ମତ୍ପୂଜନଶୀଳୋଭବ, ମାମେବ ଚ ନମସ୍କୁରୁ, ଏବମେଭିଃ ପ୍ରକାରୈଃ ମତ୍ପରାୟଣଃ ସନ୍ନାତ୍ମାନଂ ମନୋମଯି ଯୁକ୍ତ୍ୱା ସମାଧାୟ ମାମେବ ପରମାନନ୍ଦରୂପମେଷ୍ୟସି ପ୍ରାପ୍ସ୍ୟସି ।

ନିଜମୈଶ୍ୱର୍ଯ୍ୟମାଶ୍ଚର୍ଯ୍ୟଂ ଭକ୍ତେସ୍ତୁଲ୍ଲତବୈଭବଂ ।
ନବମେ ରାଜଗୁହ୍ୟାଖ୍ୟେ କୃପୟାବୋଚଦଚ୍ୟୁତଃ । ୩୪ ।

ଇତି ଶ୍ରୀଭଗବଦ୍ଗୀତାୟାଂ ସ୍ୱାମିକୃତଟୀକାୟାଂ ନବମୋଽଧ୍ୟାୟଃ । ୯ ।

---

ପଦବ୍ୟାଖ୍ୟା ।

ମନ୍ମନାଃ ଭବ—ଆମ୍ଭଠାରେ ମନ ଲଗାଅ, ମଦ୍ଭକ୍ତଃ—ଆମ୍ଭର ଭକ୍ତ ହୁଅ, ମଦ୍ୟାଜୀ—ଆମ୍ଭର ପୂଜକ ହୁଅ, ମାଂ ନମସ୍କୁରୁ—ଆମ୍ଭକୁ ନମସ୍କାର କର, ମାଂ ଏବ ଏଷ୍ୟସି—ଆମ୍ଭକୁ ନିଶ୍ଚୟ ପ୍ରାପ୍ତ ହେବ, ଯୁକ୍ତ୍ୱା—ଲଗାଇ କରି, ଏବଂ—ଏପ୍ରକାର, ଆତ୍ମାନଂ—ମନକୁ, ମତ୍ପରାୟଣଃ—ଆମ୍ଭକୁ ଆଶ୍ରୟ କଲେ । ୩୪ ।

ଇତି ଶ୍ରୀଭଗବଦ୍ଗୀତା-ପଦବ୍ୟାଖ୍ୟାୟାଂ ନବମୋଽଧ୍ୟାୟଃ । ୯ ।

---

ଅନୁବାଦ ।

ତୁମ୍ଭେ ଆମ୍ଭଠାରେ ମନ ଲଗାଅ, ଭକ୍ତି କର ଓ ଆମ୍ଭର ପୂଜକ ହୁଅ, ଏବଂ ଆମ୍ଭକୁ ନମସ୍କାର କର । ଏହିପରି ମନ ଲଗାଇ ଆମ୍ଭ ଆଶ୍ରୟ ଗ୍ରହଣ କଲେ, ଆମ୍ଭକୁ ନିଶ୍ଚୟ ପ୍ରାପ୍ତ ହେବ । ୩୪ ।

ଇତି ଶ୍ରୀଭଗବଦ୍ଗୀତା ଉତ୍କଳାନୁବାଦର ନବମ ଅଧ୍ୟାୟ ସମାପ୍ତ । ୯ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା

ଯେପ୍ରକାରେ ଭଜନା କରିବାକୁ ହେବ, ତାହା ବ୍ୟାଖ୍ୟା କରି ଏ ଅଧ୍ୟାୟ ଶେଷ କରିବାକୁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ହେ ଅର୍ଜ୍ଜୁନ ! ତୁମ୍ଭେ ସଂସାରର ଅନ୍ୟ କୌଣସି ବିଷୟରେ ବା ପଦାର୍ଥରେ ବା କୌଣସି ଦେବତାଠାରେ, ମନ ନ ଦେଇ, କେବଳ ଆମ୍ଭଠାରେ ମନ ଲଗାଅ, ଯଥା ରାଜା, ମହାରାଜ, ଚକ୍ରବର୍ତ୍ତୀ ଆଦି କୌଣସି ମନୁଷ୍ୟ ଅଥବା ରୁଦ୍ର, ବ୍ରହ୍ମା, ଇନ୍ଦ୍ରପ୍ରଭୃତି କୌଣସି ଦେବତାଠାରେ ଭକ୍ତି ନ କରି କେବଳ ଆମ୍ଭଠାରେ ଭକ୍ତି କର ଓ ଆମ୍ଭଙ୍କୁ ପୂଜା କର, ଏବଂ ଆମ୍ଭଙ୍କୁ ନମସ୍କାର କର । ଏହିପରି ପ୍ରଣାଳୀରେ ଆମ୍ଭଠାରେ ମନ ଅର୍ପଣ କରି ଶରଣାଗତ ହେଲେ, ତୁମ୍ଭେ ନିଶ୍ଚୟ ଆମ୍ଭଙ୍କୁ ପ୍ରାପ୍ତ ହେବ, ଅର୍ଥାତ୍ ଆମ୍ଭଠାରେ ଲୀନ ହୋଇ ଯିବ, ଏଥିରେ ଅଳ୍ପମାତ୍ର ସନ୍ଦେହ ନାହିଁ ।

ଏ ଅଧ୍ୟାୟରେ ଶ୍ରୀଭଗବାନ୍ ଆପଣାର ଆଶ୍ଚର୍ଯ୍ୟ ଐଶୀଶକ୍ତି ଓ ଭକ୍ତିର ଅସାଧାରଣ ମାହାତ୍ମ୍ୟ ବର୍ଣ୍ଣନ କଲେ । ଏ ଅଧ୍ୟାୟରେ ସର୍ବାପେକ୍ଷା ଗୋପନୀୟ ଭକ୍ତିଯୋଗର ବର୍ଣ୍ଣନ ହୋଇଥିବାରୁ, ଏହାକୁ ରାଜଗୁହ୍ୟ ଯୋଗାଧ୍ୟାୟ କୁହାଯାଏ । ୩୪ ।

ଇତି ଶ୍ରୀଭଗବଦ୍‌ଗୀତା ବିଶଦବ୍ୟାଖ୍ୟାର ନବମ ଅଧ୍ୟାୟ ସମାପ୍ତ । ୯ ।

Digitized by PPRACHIN, SOA

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ଦଶମୋଽଧ୍ୟାୟଃ

### ବିଭୂତି-ଯୋଗଃ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—ଭୂୟ ଏବ ମହାବାହୋ, ଶୃଣୁ ମେ ପରମଂ ବଚଃ ।
ଯତ୍ତେଽହଂ ପ୍ରୀୟମାଣାୟ, ବକ୍ଷ୍ୟାମି ହିତକାମ୍ୟୟା । ୧ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ହେ ମହାବାହୋ ମେ ପରମଂ ବଚଃ ଭୂୟଃ ଏବ ଶୃଣୁ । ଯତ୍ ଅହଂ ପ୍ରୀୟମାଣାୟ ତେ ହିତକାମ୍ୟୟା ବକ୍ଷ୍ୟାମି । ୧ ।

ଟୀକା ।

ଉକ୍ତାଃ ସଂକ୍ଷେପତଃ ପୂର୍ବଂ ସପ୍ତମାଦୌ ବିଭୂତୟଃ ।
ଦଶମେ ତା ପ୍ରପଞ୍ଚ୍ୟନ୍ତେ ସର୍ବତ୍ରେଶ୍ୱରଦୃଷ୍ଟୟେ ।

ଏବଂ ତାବତ୍ ସପ୍ତମାଦିଭିସ୍ତ୍ରିଭିରଧ୍ୟାୟୈଃ ଭଜନୀୟଂ ପରମେଶ୍ୱରତତ୍ତ୍ୱଂ ନିରୂପିତଂ ତଦ୍ବିଭୂତୟଶ୍ଚ ସପ୍ତମେ ରସୋଽହମପ୍ସୁ କୌନ୍ତେୟ ଇତ୍ୟାଦିନା ସଂକ୍ଷେପତୋ ଦର୍ଶିତାଃ । ଅଷ୍ଟମେ ଚ ଅଧିଯଜ୍ଞୋଽହମେବାତ୍ରେତ୍ୟାଦିନା, ନବମେ ଚ ଅହଂ କ୍ରତୁରହଂ ଯଜ୍ଞ ଇତ୍ୟାଦିନା, ଇଦାନୀଂ ତା ଏବ ବକ୍ଷ୍ୟନ୍ ପ୍ରପଞ୍ଚୟିଷ୍ୟନ୍ ସ୍ୱକୃତେଃ ସର୍ବଜଗତ୍କାରଣୀୟତ୍ୱଂ ବର୍ଣ୍ଣୟିଷ୍ୟନ୍ ଶ୍ରୀଭଗବାନୁବାଚ । ଭୂୟ ଏବେତି । ମହାନ୍ତୌ ଯୁଦ୍ଧାଦିସାଧନଂ ବା କୁଣ୍ଡଳୀ ବାହୂ ଯସ୍ୟ ତଥା ହେ ମହାବାହୋ ! ଭୂୟ ଏବ ପୁନରପି ମେ ବଚଃ ଶୃଣୁ, କୀଦୃଶଂ ପରମଂ ପରମାତ୍ମନିଷ୍ଠଂ ମଦ୍ବଚନାମୃତେନୈବ ପ୍ରୀତିଂ ପ୍ରାପ୍ନୁବତେ ତୁଭ୍ୟଂ ହିତକାମ୍ୟୟା ହିତେଚ୍ଛୟା ଯଦହଂ ବକ୍ଷ୍ୟାମି ତତ୍ । ୧ ।

ପଦବ୍ୟାଖ୍ୟା ।

ଭୂୟଃ ଏବ—ପୁନର୍ବାର, ମହାବାହୋ—ହେ ବଳବନ୍ତ, ଶୃଣୁ—ଶୁଣ, ମେ—ଆମର, ପରମଂ—ପରମାତ୍ମନିଷ୍ଠ ବା ଉତ୍କୃଷ୍ଟ, ବଚଃ—ବଚନକୁ, ଯତ୍—ଯାହା, ତେ—ତୁମ୍ଭଙ୍କୁ, ଅହଂ—ଆମେ, ପ୍ରୀୟମାଣାୟ—ପ୍ରୀତିଯୁକ୍ତ, ବକ୍ଷ୍ୟାମି—କହିବୁ, ହିତକାମ୍ୟୟା—ହିତ କାମନାରେ । ୧ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ହେ ମହାବାହୋ ! ପୁନର୍ବାର ଆମର ଉତ୍କୃଷ୍ଟ ବଚନ ଶ୍ରବଣ

Digitized by PPRACHIN, SOA

କର । କାରଣ, ତୁମ୍ଭେ (ଆମ୍ଭ କଥା ଶୁଣିବାକୁ) ପ୍ରୀତିଯୁକ୍ତ ବୋଲି, ତୁମ୍ଭ ହିତକାମନାରେ ଆମ୍ଭେ ତାହା କହିବୁଁ । ୧ ।

ବିଶଦବ୍ୟାଖ୍ୟା ।

ସପ୍ତମ ଅଧ୍ୟାୟେ (ଅଷ୍ଟମ ଶ୍ଳୋକ) ରେ 'ହେ କୌନ୍ତେୟ! ଆମ୍ଭେ ଜଳ ମଧ୍ୟରେ ରସ-ସ୍ୱରୂପ ଅଟୁଁ', ଓ ଅଷ୍ଟମ ଅଧ୍ୟାୟ (୪ର୍ଥ ଶ୍ଳୋକ)ରେ 'ଆମ୍ଭେ ମନୁଷ୍ୟ ଦେହରେ ଅଧିଯଜ୍ଞ-ସ୍ୱରୂପ ବିଦ୍ୟମାନ ଅଟୁଁ,' ଏବଂ ନବମ ଅଧ୍ୟାୟ (୧୬-ଶ ଶ୍ଳୋକ)ରେ 'ଆମ୍ଭେ ବେଦୋକ୍ତ କ୍ରତୁ ଓ ସ୍ମୃତିବିହିତ ଯଜ୍ଞ ଅଟୁଁ', ଇତ୍ୟାଦି ବଚନରେ ଶ୍ରୀଭଗବାନ୍ ଆପଣାର ବିଭୂତିକୁ ସଂକ୍ଷେପରେ କହିଥିଲେ, ବର୍ତ୍ତମାନ ତାହା ବିଶଦ ଓ ବିସ୍ତୃତରୂପେ ବୁଝାଇବାକୁ ଦଶମ ଅଧ୍ୟାୟ ଆରମ୍ଭ କରି କହୁଅଛନ୍ତି :—

ହେ ଅର୍ଜ୍ଜୁନ! ତୁମ୍ଭେ ମହାବାହୁ ଅର୍ଥାତ୍ ଯୁଦ୍ଧାଦି ସ୍ୱଧର୍ମସାଧନ ବିଷୟରେ ଅଥବା ମହତ୍ ସେବାଦି ବିଷୟରେ ତୁମ୍ଭର ବାହୁଦ୍ୱୟ ଉପଯୁକ୍ତ ଅଟେ । ତୁମ୍ଭେ ଆମ୍ଭର ଉତ୍କୃଷ୍ଟ ବିଭୂତି-ବିଷୟକ ବଚନ ପୁନର୍ବାର ଶ୍ରବଣ କର । କାହିଁକି ନା ସେ ବିଷୟ ଅତ୍ୟନ୍ତ କଠିନ, ତାହା ସଂକ୍ଷେପରେ କୁହା ଗଲେ, ହୃଦୟଙ୍ଗମ ହେବା ସମ୍ଭବ ନୁହେ, ଅତଏବ ବିସ୍ତାରିତରୂପେ କହୁଅଛୁଁ ଶ୍ରବଣ କର । ତୁମ୍ଭେ ଆମ୍ଭ କଥା ଶୁଣି ପ୍ରୀତିଯୁକ୍ତ ହୁଅ ବୋଲି, ତୁମ୍ଭର ହିତକାମନାରେ ଆମ୍ଭେ ତାହା ବିସ୍ତୃତ କରି କହୁଅଛୁଁ । ୧ ।

ଶ୍ଳୋକଃ ।

ନ ମେ ବିଦୁଃ ସୁରଗଣାଃ ପ୍ରଭବଂ ନ ମହର୍ଷୟଃ ।
ଅହମାଦିର୍ହି ଦେବାନାଂ, ମହର୍ଷୀଣାଂ ଚ ସର୍ବଶଃ । ୨ ।

ଅନ୍ୱୟଃ ।

ସୁରଗଣାଃ ମେ ପ୍ରଭବ ନ ବିଦୁଃ, ମହର୍ଷୟଃ ନ, ହି ଅହଂ ଦେବାନାଂ ମହର୍ଷୀଣାଂ ଚ ସର୍ବଶଃ ଆଦିଃ । ୨ ।

ଟୀକା ।

ଉକ୍ତସ୍ୟାପି ପୁନର୍ବଚନେ ଦୁର୍ଜ୍ଞେୟତ୍ୱଂ ହେତୁମାହ, ନ ମେ ବିଦୁରିତି । ମେ ମମ ପ୍ରକୃଷ୍ଟଂ ଭବ ଜନ୍ମରହିତସ୍ୟାପି ନାନାବିଭୂତିଭିରାବିର୍ଭାବ ସୁରଗଣା ଅପି ମହର୍ଷୟୋଽପି ଭୃଗ୍ୱାଦୟୋନ ଜାନନ୍ତି, ତତ୍ର ହେତୁଃ ଅହଂ ହି ଦେବାନାଂ ମହର୍ଷୀଣାଂ ଚ ଆଦିଃ କାରଣଂ, ସର୍ବଶଃ ସର୍ବୈଃ ପ୍ରକାରୈରୁତ୍ପାଦକତ୍ୱେନ ବୁଦ୍ଧ୍ୟାଦିପ୍ରବର୍ତ୍ତକତ୍ୱେନ ଚ ଅତୋମଦନୁଗ୍ରହଂ ବିନା ମାଂ କୋଽପି ନ ଜାନାତୀତ୍ୟର୍ଥଃ । ୨ ।

ପଦବ୍ୟାଖ୍ୟା ।

ନ ମେ ବିଦୁଃ—ଆମ୍ଭର ଜାଣନ୍ତି ନାହିଁ, ସୁରଗଣାଃ—ଦେବଗଣମାନେ, ପ୍ରଭବ—ପ୍ରକାଶ ବା ଅବତାରଗ୍ରହଣକୁ, ନ ମହର୍ଷୟଃ—ମହର୍ଷିମାନେ ମଧ୍ୟ ଜାଣନ୍ତି ନାହିଁ, ଅହଂ—ଆମ୍ଭେ, ଆଦିଃ—କାରଣ, ହି—ଯେହେତୁ, ଦେବାନାଂ—ଦେବତାମାନଙ୍କର, ମହର୍ଷୀଣାଂ ଚ—ମହର୍ଷିମାନଙ୍କର ମଧ୍ୟ, ସର୍ବଶଃ—ସବୁ ପ୍ରକାର । ୨ ।

ଅନୁବାଦ ।

ଦେବତା ଓ ମହର୍ଷିମାନେ ଆମ୍ଭର ଜନ୍ମବୃତ୍ତାନ୍ତ ଜାଣନ୍ତି ନାହିଁ । କାହିଁକି ନା ଆମ୍ଭେ ଦେବତା ଓ ମହର୍ଷିମାନଙ୍କର ସର୍ବପ୍ରକାରେ ମୂଳକାରଣ ଅଟୁଁ । ୨ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ହାଲେ ଅର୍ଜୁନ ଏପରି ଆଶଙ୍କା କରିବେ, ଯେ ସପ୍ତମଠାରୁ ନବମ ପର୍ଯ୍ୟନ୍ତ ତିନି ଅଧ୍ୟାୟରେ ଶ୍ରୀଭଗବାନ୍ ଆପଣାର ବିଭୂତି ବୁଝାଇଦେଇ ପୁଣି, ସେହି କଥା କହୁଅଛନ୍ତି କାହିଁକି ? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଆମ୍ଭର 'ପ୍ରଭବ' ଅର୍ଥାତ୍ ପ୍ରଭୁଶକ୍ତି ବା ଜନ୍ମବୃତ୍ତାନ୍ତରୁ ଇନ୍ଦ୍ରାଦି ଦେବତା ଓ ଭୃଗୁପ୍ରଭୃତି ମହର୍ଷିମାନେ, ସର୍ବଜ୍ଞ ହେଲେ ସୁଦ୍ଧା, ଜାଣନ୍ତି ନାହିଁ । କାହିଁକି ନା ଆମ୍ଭେ, ସେହି ଦେବତା ଓ ମହର୍ଷିମାନଙ୍କର ସର୍ବପ୍ରକାର କାରଣ ଅଟୁଁ ଅର୍ଥାତ୍ ସେମାନେ, ଆମ୍ଭ ସତ୍ତାର ଭିନ୍ନ୨ ପ୍ରକାର ସ୍ଫୁରଣ ମାତ୍ର ଏବଂ ଆମ୍ଭେ ଅନୁଗ୍ରହ କରି ବୁଦ୍ଧି ପ୍ରଦାନ କଲେ, ସେମାନେ ସୃଷ୍ଟି ସମ୍ବନ୍ଧରେ ଜ୍ଞାନଲାଭ କରନ୍ତି । ସୁତରାଂ ସେମାନେ, ଅନ୍ୟାନ୍ୟ ବିଷୟରେ ସର୍ବଜ୍ଞ ହେଲେ ସୁଦ୍ଧା, ଆମ୍ଭର ପ୍ରଭୁଶକ୍ତି ଓ ଜନ୍ମବୃତ୍ତାନ୍ତ ଜାଣନ୍ତି ନାହିଁ । ଅତ ତୁମ୍ଭେ ମନୁଷ୍ୟ ହୋଇ ଅଳ୍ପ ଚେଷ୍ଟାରେ ତାହା ଜାଣି ପାରିବ କିପରି ?

ଫଳକଥା ଏହି କି ଆମ୍ଭର ବିଭୂତି ଓ ସ୍ୱରୂପ ଅତ୍ୟନ୍ତ ଦୁର୍ଜ୍ଞେୟ, ତାହା ପୁନଃ ପୁନଃ ଶ୍ରବଣ କରିବା ଉଚିତ, ଅତଏବ ତୁମ୍ଭେ ପୁନର୍ବାର ଶ୍ରବଣ କର । ୨ ।

ଶ୍ଲୋକଃ ।

* ଯୋମାମଜମନାଦିଞ୍ଚ, ବେତ୍ତି ଲୋକମହେଶ୍ୱରଂ ।
ଅସଂମୂଢ଼ଃ ସ ମର୍ତ୍ତ୍ୟେଷୁ, ସର୍ବପାପୈଃ ପ୍ରମୁଚ୍ୟତେ । ୩ ।

ଅନ୍ୱୟଃ ।

ଯଃ ଅଜଂ ଅନାଦିଂ ଚ ଲୋକମହେଶ୍ୱରଂ ମାଂ ବେତ୍ତି, ସଃ ମର୍ତ୍ତ୍ୟେଷୁ ଅସଂମୂଢ଼ଃ ସର୍ବପାପୈଃ ପ୍ରମୁଚ୍ୟତେ । ୩ ।

ଟୀକା ।

ଏବମ୍ଭୂତାତ୍ମଜ୍ଞାନେ ଫଳମାହ, ଯୋମାମିତି । ସର୍ବକାରଣତ୍ୱାଦେବ ନ ବିଦ୍ୟତେ ଆଦିଃକାରଣଂ ଯସ୍ୟ ତମନାଦିଂ ଅତଏବାଜଂ ଜନ୍ମଶୂନ୍ୟଂ ଲୋକାନାଂ ମହେଶ୍ୱରଂ ଚ ମାଂ ଯୋବେତ୍ତି, ସ ମନୁଷ୍ୟେଷୁ ଅସମ୍ମୋହବର୍ଜ୍ଜିତଃ ସନ୍ ସର୍ବପାପୈଃ ପ୍ରମୁଚ୍ୟତେ । ୩ ।

ପଦବ୍ୟାଖ୍ୟା ।

ଯଃ—ଯେଉଁ ବ୍ୟକ୍ତି, ମାଂ—ଆମ୍ଭଙ୍କୁ, ଅଜଂ—ଜନ୍ମଶୂନ୍ୟ, ଅନାଦିଂ ଚ—କାରଣରହିତ, ବେତ୍ତି—ଜାଣନ୍ତି, ଲୋକମହେଶ୍ୱରଂ—ସର୍ବଲୋକର ମହାପ୍ରଭୁ, ଅସମ୍ମୂଢ଼ଃ—ମୋହବର୍ଜ୍ଜିତ, ସଃ—ସେହି ବ୍ୟକ୍ତି, ମର୍ତ୍ତ୍ୟେଷୁ—ମନୁଷ୍ୟମାନଙ୍କ ମଧ୍ୟରେ, ସର୍ବପାପୈଃ—ସମସ୍ତ ପାପରୁ, ପ୍ରମୁଚ୍ୟତେ—ଉତ୍ତମରୂପେ ମୁକ୍ତ ହୁଅନ୍ତି । ୩ ।

ଅନୁବାଦ ।

ଯେଉଁ ବ୍ୟକ୍ତି, ଆମ୍ଭଙ୍କୁ ଜନ୍ମଶୂନ୍ୟ,କାରଣରହିତ ଓ ସର୍ବଲୋକ ମହାପ୍ରଭୁ ବୋଲି ଜାଣନ୍ତି, ସେହି ବ୍ୟକ୍ତି, ମନୁଷ୍ୟମାନଙ୍କ ମଧ୍ୟରେ ମୋହବର୍ଜ୍ଜିତ ହୋଇ ସମସ୍ତ ପାପରୁ ବିମୁକ୍ତ ହୁଅନ୍ତି । ୩ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, କି ଯେଉଁ ବ୍ୟକ୍ତି, ଆମ୍ଭଙ୍କୁ ମନୁଷ୍ୟ ଜ୍ଞାନ ନ କରି 'ଅନାଦି'

Digitized by PPRACHIN, SOA

ଅର୍ଥାତ୍ କାରଣରହିତ, ଅତଏବ 'ଅଜ' ଅର୍ଥାତ୍ ଜନ୍ମଶୂନ୍ୟ ଏବଂ ସକଳ ଲୋକର ଅଦ୍ୱିତୀୟ ପ୍ରଭୁ ବୋଲି ଜାଣନ୍ତି, ମନୁଷ୍ୟମାନଙ୍କ ମଧ୍ୟରେ ସେହି ବ୍ୟକ୍ତି, ଅବିଦ୍ୟାରୂପ ମୋହବର୍ଜିତ ହୋଇ ପୂର୍ବଜନ୍ମକୃତ ଓ ବର୍ତ୍ତମାନ ଜନ୍ମକୃତ ପାପରୁ ସମ୍ପୂର୍ଣ୍ଣରୂପେ ମୁକ୍ତ ହୋଇଯାନ୍ତି ।

"ପ୍ରମୁଚ୍ୟତେ" ଶବ୍ଦର 'ପ୍ର' ଅକ୍ଷରଦ୍ୱାରା ଏହା ସୂଚିତ ହେଉଅଛି, ଯେ ଭଗବାନଙ୍କୁ ଯେଉଁ ବ୍ୟକ୍ତି, ସର୍ବକାରଣର କାରଣ ସ୍ୱରୂପ ଓ ସର୍ବଲୋକର ମହାପ୍ରଭୁ ବୋଲି ଅର୍ଥାତ୍ 'ବ୍ରହ୍ମ' ବୋଲି ଜାଣନ୍ତି, ସେହି ବ୍ୟକ୍ତି, କାୟ, ମନ ଓ ବଚନକୃତ ତ୍ରିବିଧ ପାପରୁ ଏବଂ ପାପର ମୂଳକାରଣ ଅବିଦ୍ୟାରୁ ସମ୍ପୂର୍ଣ୍ଣରୂପେ ମୁକ୍ତ ହୋଇଯାନ୍ତି । ୩ ।

ଶ୍ଲୋକଃ ।

* ବୁଦ୍ଧିର୍ଜ୍ଞାନମସମ୍ମୋହଃ, କ୍ଷମା ସତ୍ୟଂ ଦମଃ ଶମଃ ।
ସୁଖଂ ଦୁଃଖଂ ଭବୋଽଭାବୋ, ଭୟଂ ଚାଭୟମେବ ଚ । ୪ ।

ଅନ୍ୱୟଃ

ବୁଦ୍ଧିଃ, ଜ୍ଞାନଂ, ଅସମ୍ମୋହଃ, କ୍ଷମା, ସତ୍ୟଂ ଦମଃ, ଶମଃ, ସୁଖଂ, ଦୁଃଖଂ, ଭବଃ, ଅଭାବଃ ଚ ଭୟଂ ଚ ଅଭୟଂ ଏବ (ମତ୍ତଃ ଏବ ଭବନ୍ତି) । ୪ ।

ଟୀକା ।

କେବଳମହେଶ୍ୱରତାଂ ପ୍ରପଞ୍ଚୟତି, ବୁଦ୍ଧିରିତି ତ୍ରିଭିଃ । ବୁଦ୍ଧିଃ ସାରାସାରବିବେକନୈପୁଣ୍ୟଂ ଜ୍ଞାନଂ ଆତ୍ମବିଷୟଂ, ଅସମ୍ମୋହଃ ବ୍ୟାକୁଳତାଭାବଃ, କ୍ଷମା ସହିଷ୍ଣୁତ୍ୱଂ ସତ୍ୟଂ ଯଥାର୍ଥଭାଷଣଂ ଦମଃ ବାହ୍ୟେନ୍ଦ୍ରିୟସଂଯମଃ, ଶମଃ ଅନ୍ତଃକରଣସଂଯମଃ; ସୁଖଂ ଅନୁକୂଳସମ୍ବେଦନୀୟଂ, ଦୁଃଖଞ୍ଚ ତଦ୍ୱିପରୀତଂ ଭବଃ ଉଦ୍ଭବଃ, ଅଭାବଃ ତଦ୍ୱିପରୀତଃ, ଭୟଂ ତ୍ରାସଃ, ଅଭୟଂ ତଦ୍ୱିପରୀତଂ, ଅସ୍ୟ ଶ୍ଲୋକସ୍ୟ ମତ୍ତ ଏବ ଭବନ୍ତୀତ୍ୟୁତ୍ତରେଣାନ୍ୱୟଃ । ୪ ।

ପଦବ୍ୟାଖ୍ୟା ।

ବୁଦ୍ଧିଃ—ସତ୍ ଓ ଅସତ୍ ନିରୂପଣ କରିବା ଶକ୍ତି, ଜ୍ଞାନଂ—ଆତ୍ମବିଷୟ ଜ୍ଞାନ, ଅସମ୍ମୋହଃ—ବ୍ୟାକୁଳତାର ଅଭାବ, କ୍ଷମା—ସହିଷ୍ଣୁତା, ସତ୍ୟଂ—ଯଥାର୍ଥ କହିବା, ଦମଃ—ବାହ୍ୟେନ୍ଦ୍ରିୟ ଦମନ, ଶମଃ—ଅନ୍ତଃକରଣ ସଂଯମ, ସୁଖଂ—ଇଷ୍ଟପ୍ରାପ୍ତିଜନିତ ଭାବ, ଦୁଃଖଂ—ଅନିଷ୍ଟପ୍ରାପ୍ତିଜନିତ ଭାବ, ଭବଃ—ଜନ୍ମ, ଅଭାବଃ—ନାଶ, ଭୟଂ—ଭୀତି, ଅଭୟଂ ଏବ ଚ—ଭୀତିର ଅଭାବ ମଧ୍ୟ । ୪ ।

ଅନୁବାଦ ।

**ବୁଦ୍ଧି, ଜ୍ଞାନ, ମୋହଶୂନ୍ୟତା, ସହିଷ୍ଣୁତା, ସତ୍ୟ, ଦମ, ଶମ, ସୁଖ, ଦୁଃଖ, ଜନ୍ମ, ମରଣ, ଭୟ ଓ ଅଭୟ (ଏମାନେ ଭିନ୍ନ ଭିନ୍ନ ହୋଇ ଆମ୍ଭଠାରୁ ଉତ୍ପନ୍ନ ହୁଅନ୍ତି) । ୪ ।**

ବିଶଦବ୍ୟାଖ୍ୟା ।

ସୂକ୍ଷ୍ମ ଅର୍ଥମାନଙ୍କୁ ନିଃସଂଶୟରୂପେ ବୁଝିବାକୁ ଅନ୍ତଃକରଣରେ, ଯେଉଁ ଶକ୍ତିବିଶେଷ ଅଛି, ତାହାକୁ 'ବୁଦ୍ଧି' ବୋଲାଯାଏ । ଯାହାଦ୍ୱାରା ଆତ୍ମ ଓ ଅନାତ୍ମ ପଦାର୍ଥର ବୋଧ ଜନ୍ମେ, ତାହାକୁ 'ଜ୍ଞାନ' କୁହାଯାଏ । କୌଣସି କର୍ତ୍ତବ୍ୟ ବା ଜ୍ଞାତବ୍ୟ ପଦାର୍ଥ ସମ୍ବନ୍ଧରେ, ବ୍ୟାକୁଳ ନ ହୋଇ ସ୍ଥିର ରହିବା 'ଅସମ୍ମୋହର' ଚିହ୍ନ ଅଟେ । କୌଣସି ବ୍ୟକ୍ତିଦ୍ୱାରା ତିରସ୍କୃତ ବା

ପୀଡ଼ା ପ୍ରାପ୍ତହେଲେ, ତାହାକୁ ଦଣ୍ଡ ଦେବାର କ୍ଷମତା ଥିଲେ ସୁଦ୍ଧା, ଅନ୍ତଃକରଣର ଯେଉଁ ବୃତ୍ତିଦ୍ୱାରା ଦଣ୍ଡପ୍ରଦାନରୁ ନିବୃତ୍ତି ଜନ୍ମେ, ସେହି ବୃତ୍ତି 'କ୍ଷମା' ନାମରେ ପରିଚିତ । ପ୍ରକୃତ ଘଟନା ଯଥାର୍ଥରୂପେ କହିବା 'ସତ୍ୟ' ଅଟେ । ଅନ୍ତଃକରଣର ଯେଉଁ ବୃତ୍ତିଦ୍ୱାରା ଶ୍ରୋତ୍ରାଦି ଇନ୍ଦ୍ରିୟମାନେ ଶବ୍ଦାଦି ବିଷୟରୁ ନିବୃତ୍ତ ହୁଅନ୍ତି, ସେହି ବୃତ୍ତିକୁ 'ଦମ' ଓ ଯେଉଁ ବୃତ୍ତିଦ୍ୱାରା ଶବ୍ଦାଦି ବିଷୟ ଅନ୍ତଃକରଣରେ ଅଧିକାର ବିସ୍ତାର କରି ନ ପାରେ ତାହାକୁ 'ଶମ' ବୋଲି ଶାସ୍ତ୍ରକାରମାନେ ନିର୍ଦ୍ଦେଶ କରିଅଛନ୍ତି । ଯେଉଁ ଅବସ୍ଥାରେ ମନୁଷ୍ୟ ଧର୍ମସଙ୍ଗତ ପ୍ରସାଦ ବା ଆନନ୍ଦ ଲାଭ କରେ, ତାହା 'ସୁଖ' ଏବଂ ଯାହା ଅଧର୍ମରୁ ଉତ୍ପନ୍ନ ଓ ମନୁଷ୍ୟଙ୍କର ହୃଦୟ ଶୋକ ସନ୍ତାପାଦିର କାରଣ, ତାହାକୁ 'ଦୁଃଖ' ବୋଲି ଖ୍ୟାତ ଅଟେ । ଏମାନେ ଏବଂ ଜନ୍ମ, ମରଣ, ଭୟ ଓ ଅଭୟ (ଏ ସବୁ ଭିନ୍ନ ଭିନ୍ନ ହୋଇ ଆମ୍ଭଠାରୁ ଉତ୍ପନ୍ନ ହୁଅନ୍ତି) । ୪ ।

ଶ୍ଳୋକଃ ।

* ଅହିଂସା ସମତା ତୁଷ୍ଟିସ୍ତପୋ ଦାନଂ ଯଶୋଽଯଶଃ ।
ଭବନ୍ତି ଭାବା ଭୂତାନାଂ ମତ୍ତ ଏବ ପୃଥଗ୍‌ବିଧାଃ । ୫ ।

ଅନ୍ୱୟଃ ।

ଅହିଂସା, ସମତା, ତୁଷ୍ଟିଃ, ତପଃ, ଦାନଂ, ଯଶଃ, ଅଯଶଃ, (ଏବଂ) ଭୂତାନାଂ ପୃଥଗ୍‌ବିଧାଃ ଭାବାଃ, ମତ୍ତଃ ଏବ ଭବନ୍ତି । ୫ ।

ଟୀକା ।

କିଞ୍ଚ ଅହିଂସେତି । ଅହିଂସା ପରପୀଡ଼ାନିବୃତ୍ତିଃ, ସମତା ରାଗଦ୍ୱେଷାଦିରହିତତ୍ୱଂ, ତୁଷ୍ଟିଃ ଦୈବଲବ୍ଧେନ ସନ୍ତୋଷଃ ତପଃ ଶାସ୍ତ୍ରୀୟଂ ବକ୍ଷ୍ୟମାଣଂ, ଦାନଂ ନ୍ୟାୟାର୍ଜ୍ଜିତସ୍ୟ ଧନାଦେଃ ପାତ୍ରେ ଅର୍ପଣଂ, ଯଶଃ ସତ୍କୀର୍ତ୍ତିଃ, ଅଯଶଃ ଦୁଷ୍କୀର୍ତ୍ତିଃ, ଏତେ ବୁଦ୍ଧିଜ୍ଞାନାଦୟଃ, ତତ୍ପ୍ରସଙ୍ଗାତ୍ତ ଅନୁଦ୍ୟାଦୟଃ, ନାନାବିଧାଃ ଭାବାଃ ପ୍ରାଣିନାଂ ମତ୍ତଃ ସକାଶାତ୍ ଏବ ଭବନ୍ତି । ୫ ।

ପଦବ୍ୟାଖ୍ୟା ।

ଅହିଂସା—ପରର ଅନିଷ୍ଟ ନ କରିବା, ସମତା—ସ୍ନେହ ଓ ଶତ୍ରୁତା ବର୍ଜ୍ଜନ, ତୁଷ୍ଟିଃ—ପ୍ରାରବ୍ଧ ଅନୁସାରେ ଯାହା ମିଳେ, ତହିଁରେ ସନ୍ତୋଷ, ତପଃ—କୃଚ୍ଛ୍ରଚାନ୍ଦ୍ରାୟଣାଦିଦ୍ୱାରା ଶରୀରଶୋଷଣ, ଦାନଂ—ନ୍ୟାୟରେ ଅର୍ଜ୍ଜିତ ସମ୍ପତ୍ତିକୁ ସତ୍ପାତ୍ରରେ ଅର୍ପଣ କରିବା, ଯଶଃ—ପ୍ରଶଂସା, ଅଯଶଃ—ନିନ୍ଦା, ଭବନ୍ତି—ଉତ୍ପନ୍ନ ହୁଅନ୍ତି, ଭାବାଃ—ଭାବମାନେ, ଭୂତାନାଂ—ପ୍ରାଣିମାନଙ୍କର, ମତ୍ତଃ ଏବ—ଆମ୍ଭଠାରୁ କେବଳ, ପୃଥଗ୍‌ବିଧାଃ—ଭିନ୍ନ ଭିନ୍ନ ପ୍ରକାରରେ । ୫ ।

ଅନୁବାଦ ।

ଅହିଂସା, ସମତା, ତୁଷ୍ଟି, ତପସ୍ୟା, ଦାନ, ଯଶ ଓ ଅଯଶ ଏହି ଭାବ ସବୁ, ପ୍ରାଣିମାନଙ୍କର ଭିନ୍ନ ଭିନ୍ନ ରୂପେ ଆମ୍ଭଠାରୁ ଉତ୍ପନ୍ନ ହୁଅନ୍ତି । । ୫ ।

ବକ୍ଷ୍ୟପଦବ୍ୟାଖ୍ୟା ।

ମନ, ବଚନ ଓ କାୟଦ୍ୱାରା କାହାର ଅନିଷ୍ଟ ନ କରିବାକୁ 'ଅହିଂସା' ବୋଲାଯାଏ, ସ୍ନେହ ଓ ଶତ୍ରୁତା ତ୍ୟାଗ କରିବା ଅଥବା କୌଣସି ବ୍ୟକ୍ତି ବା ପଦାର୍ଥପ୍ରତି ଶ୍ରଦ୍ଧା ବା ଶତ୍ରୁତା

ନ କରିବାକୁ 'ସମତା' ବୋଲି । ପ୍ରାରବ୍ଧ କର୍ମ ଅନୁସାରେ ଯାହା ମିଳିବ, ସେଥିରେ ସନ୍ତୁଷ୍ଟ ରହିବାର ନାମ 'ତୁଷ୍ଟି' ଓ କୃଚ୍ଛ୍ରଚାନ୍ଦ୍ରାୟଣ, ପଞ୍ଚାଗ୍ନି, ତୀର୍ଥଦର୍ଶନ ଓ ଦେବପୂଜାଦି ଶରୀରଶୋଷଣକର କ୍ରିୟାର ନାମ 'ତପସ୍ୟା' । ଧର୍ମସଙ୍ଗତ ଉପାୟଦ୍ୱାରା ଅର୍ଜିତ ଧନାଦିକୁ ସତ୍ପାତ୍ରରେ ଅର୍ପଣ କଲେ, ତାକୁ 'ଦାନ' ବୋଲି ଜାଣିବ, ଉତ୍ତମ କାର୍ଯ୍ୟ ଓ ଉତ୍ତମ ବ୍ୟବହାରଦ୍ୱାରା ଯେଉଁ ସୁଖ୍ୟାତି ବା ପ୍ରଶଂସା ଲାଭ ହୁଏ, ତାହାକୁ 'ଯଶ' ଏବଂ ଅସତ୍କାର୍ଯ୍ୟ ଓ ଅସତ୍‌ବ୍ୟବହାର ହେତୁରୁ ଯେଉଁ ଅଖ୍ୟାତି ବା ନିନ୍ଦା ମିଳେ ତାହାକୁ 'ଅଯଶ' ବୋଲାଯାଏ । ପ୍ରାଣିମାନଙ୍କର, ଏ ଶ୍ଳୋକ କଥିତ ଅହିଂସାଦି ଭାବମାନ ଓ ପୂର୍ବଶ୍ଳୋକ ବର୍ଣ୍ଣିତ ବୁଦ୍ଧି ଓ ଜ୍ଞାନ ପ୍ରଭୃତି ଭାବମାନ, ଭିନ୍ନ ଭିନ୍ନରୂପେ କେବଳ ଆମ୍ଭଠାରୁ ଉତ୍ପନ୍ନ ହୁଅନ୍ତି ଅର୍ଥାତ୍ ସମସ୍ତ ଭାବର ଆଦିକାରଣ କେବଳ ଆମ୍ଭେ ଅଟୁଁ । ୫ ।

ଶ୍ଳୋକଃ ।

ମହର୍ଷୟଃ ସପ୍ତ ପୂର୍ବେ, ଚତ୍ୱାରୋ ମନବସ୍ତଥା ।
ମଦ୍ଭାବା ମାନସା ଜାତା, ଯେଷାଂ ଲୋକ ଇମାଃ ପ୍ରଜାଃ । ୬ ।

ଅନ୍ୱୟଃ ।

ମହର୍ଷୟଃ ସପ୍ତ (ତେଭ୍ୟଃ) ପୂର୍ବେ ଚତ୍ୱାରଃ, ତଥା ମନବଃ ମଦ୍ଭାବାଃ ମାନସାଃ ଜାତାଃ, ଯେଷାଂ ଲୋକେ ଇମାଃ ପ୍ରଜାଃ (ଜାତାଃ) । ୬ ।

ଟୀକା ।

କିଞ୍ଚ ମହର୍ଷୟ ଇତି । ସପ୍ତ ମହର୍ଷୟୋ ଭୃଗ୍ୱାଦୟଃ ସପ୍ତ ବ୍ରାହ୍ମଣ ଇତ୍ୟେତେ ପୁରାଣେ ନିଶ୍ଚୟଂ ଗତାଃ, ଇତ୍ୟାଦି ପୁରାଣପ୍ରସିଦ୍ଧାଃ ତେଭ୍ୟୋଽପି ପୂର୍ବେ ଅନ୍ୟେ ଚତ୍ୱାରୋ ମହର୍ଷୟଃ ସନକାଦୟଃ ତଥା ମନବଃ ସ୍ୱାୟମ୍ଭୁବାଦୟଃ ମଦ୍ଭାବାଃ ମଦ୍ଭକ୍ତୋଽଭବଃ ପ୍ରଭାବୋପେତ ତେ ହିରଣ୍ୟଗର୍ଭାତ୍ମନୋ ମମୈବ ମନସଃ ସଙ୍କଳ୍ପମାତ୍ରାଜ୍ଜାତାଃ ପ୍ରଭବମେବାହ, ଯେଷା ମିତି । ଯେଷାଂ ସ୍ୱାୟମ୍ଭୁବାଦୀନାଂ ସନକାଦୀନାଂ ତଥା ବ୍ରାହ୍ମଣାଦୀନାଂ ଲୋକେ ବର୍ତ୍ତମାନା ଯଥାଯଥଂ ପୁତ୍ରପୌତ୍ରାଦିରୂପାଃ ଶିଷ୍ୟପ୍ରଶିଷ୍ୟାଦିରୂପାଶ୍ଚ ପ୍ରଜାଃ ପ୍ରଜାୟନ୍ତେ । ୬ ।

ପଦବ୍ୟାଖ୍ୟା ।

ମହର୍ଷୟଃ—ମହା ଋଷିମାନେ, ସପ୍ତ—ସାତ, ପୂର୍ବେ—ସେମାନଙ୍କ ପୂର୍ବରୁ ଚତ୍ୱାରଃ—ଚାରି ମହର୍ଷି, ମନବଃ—ମନୁମାନେ, ତଥା—ସେହିପରି, ମଦ୍ଭାବାଃ—ଆମ୍ଭର ପ୍ରଭାବଯୁକ୍ତ, ମାନସାଃ—ମନରୁ, ଜାତାଃ—ଉତ୍ପନ୍ନ ହୋଇଅଛନ୍ତି, ଯେଷାଂ—ଯେଉଁମାନଙ୍କ (ଠାରୁ), ଲୋକେ—ମର୍ତ୍ତ୍ୟଭୁବନରେ, ଇମାଃ ପ୍ରଜାଃ—ଏହି ସବୁ ପ୍ରଜାମାନେ ଜାତ ହୋଇଅଛନ୍ତି । ୬ ।

ଅନୁବାଦ ।

ଭୃଗୁ ଆଦି ସାତ ଓ ତହୁଁ ପୂର୍ବରୁ ସନକାଦି ଚାରି ମହର୍ଷି ଏବଂ ପରେ ମନୁମାନେ, ଆମ୍ଭର ପ୍ରଭାବଯୁକ୍ତ ଓ ଆମ୍ଭର ମନରୁ ଉତ୍ପନ୍ନ ହୋଇଥିଲେ । ଯେଉଁମାନଙ୍କଠାରୁ ମର୍ତ୍ତ୍ୟଭୁବନରେ ଏହି ପ୍ରଜାମାନେ ଉତ୍ପନ୍ନ ହୋଇଅଛନ୍ତି । ୬ ।

ବିଶଦବ୍ୟାଖ୍ୟା ।

ସୃଷ୍ଟିର ଆଦିକାଳରେ ପୁରାଣପ୍ରସିଦ୍ଧ, ଯେଉଁ ସପ୍ତମହର୍ଷି ଜନ୍ମିଥିଲେ ଏବଂ ତତ୍ପୂର୍ବରୁ

Digitized by PPRACHIN, SOA

ସନକାଦି, ଯେଉଁ ଚାରି ମହର୍ଷି* ଜାତ ହୋଇଥିଲେ ଏବଂ ପରେ ସ୍ୱାୟମ୍ଭୁବ ପ୍ରଭୃତି, ଯେଉଁ ଚୌଦ ମନୁ† ଉତ୍ପନ୍ନ ହୋଇଥିଲେ, ସେମାନେ ସମସ୍ତେ 'ମଦ୍ଭାବ', ଅର୍ଥାତ୍ (ମଦ୍‌ଯୋଗ୍ୟଭାବଃ ଯେଷୁ), ଆମ୍ଭର ପ୍ରଭାବଯୁକ୍ତ ଅଥବା (ମୟି ଭାବୋଯେଷାଂ) ଆମ୍ଭଠାରେ ସଦା ଭାବନାଯୁକ୍ତ ଅଟନ୍ତି ଏବଂ ସେମାନେ ଆମ୍ଭ ମନର ସଙ୍କଳ୍ପରୁ ଜାତ ହୋଇଥିଲେ । ସୁତରାଂ ସେମାନେ ଅଯୋନିଜାତ ଥିବାରୁ ସାଧାରଣ ମନୁଷ୍ୟଙ୍କ ଅପେକ୍ଷା ଶ୍ରେଷ୍ଠ । ସେହିମାନଙ୍କଠାରୁ ଜନ୍ମ ଦ୍ୱାରା ଏବଂ ବିଦ୍ୟାଦି ପ୍ରସ୍ତାବରେ ଏହି ମର୍ତ୍ତ୍ୟଲୋକସ୍ଥିତ ସମସ୍ତ ବ୍ରାହ୍ମଣାଦି ପ୍ରଜାମାନେ ଜାତ ହୋଇଅଛନ୍ତି । ପୁରାଣରେ ସପ୍ତ ମହର୍ଷିଙ୍କ ବିଷୟ ଏହିପରି ଲେଖାଅଛି; ଯଥା—"ଭୃଗୁଂ ମରୀଚମତ୍ରିଂ ଚ ପୁଲସ୍ତ୍ୟଂ ପୁଲହଂ କ୍ରତୁଂ । ବଶିଷ୍ଠଞ୍ଚ ମହାତେଜାଃ ସୋଽସୃଜନ୍ ମନସା ସୁତାନ୍ । ସପ୍ତବ୍ରାହ୍ମଣ ଇତ୍ୟେତେ ପୁରାଣେ ନିଶ୍ଚୟଂ ଗତାଃ" । ଅର୍ଥାତ୍ ସେହି ହିରଣ୍ୟଗର୍ଭରୂପୀ ମହାତେଜା ପରମେଶ୍ୱର ଆପଣା ମନରୁ ଭୃଗୁ, ମରୀଚ, ଅତ୍ରି, ପୁଲସ୍ତ୍ୟ, ପୁଲହ, କ୍ରତୁ ଓ ବଶିଷ୍ଠ ଏହି ସପ୍ତ ଋଷିଙ୍କୁ ଉତ୍ପାଦନ କଲେ । ସେହିମାନେ ପୁରାଣରେ ସପ୍ତବ୍ରାହ୍ମଣ (ସପ୍ତ ମହର୍ଷି) ନାମରେ ବିଖ୍ୟାତ ହେଲେ ।

ଏହାଦ୍ୱାରା ଶ୍ରୀଭଗବାନ୍ ଏହି କଥା ଜଣାଇଲେ, କି କେବଳ, ଯେ ପୂର୍ବ ଦୁଇଶ୍ଲୋକ ଲିଖିତ ଭାବମାନ ଆମ୍ଭଠାରୁ ଉତ୍ପନ୍ନ ହୋଇଅଛି, ତାହା ନୁହେ, ସମସ୍ତ ପ୍ରଜାଙ୍କର ସୃଷ୍ଟିକର୍ତ୍ତା ଚତୁର୍ଦ୍ଦଶ ମନୁ ଓ ବେଦମାନଙ୍କ ପ୍ରଚାରକର୍ତ୍ତା ମହର୍ଷିମାନେ ମଧ୍ୟ, ଆମ୍ଭଠାରୁ ଉତ୍ପନ୍ନ ହୋଇଅଛନ୍ତି ଅର୍ଥାତ୍ ଜଗତର ସର୍ବପ୍ରାଣୀ ଓ ସର୍ବକ୍ରିୟାର ଆମ୍ଭେ ଏକମାତ୍ର କାରଣ ଅଟୁଁ । ୬ ।

ଶ୍ଲୋକଃ ।

ଏତାଂ ବିଭୂତିଂ ଯୋଗଂ ଚ, ମମ ଯୋବେତ୍ତି ତତ୍ତ୍ୱତଃ ।
ସୋଽବିକମ୍ପେନ ଯୋଗେନ, ଯୁଜ୍ୟତେ ନାତ୍ର ସଂଶୟଃ । ୭ ।

ଅନ୍ୱୟଃ ।

ଯଃ ମମ ଏତାଂ ବିଭୂତିଂ ଯୋଗଂ ଚ ତତ୍ତ୍ୱତଃ ବେତ୍ତି, ସଃ ଅବିକମ୍ପେନ ଯୋଗେନ ଯୁଜ୍ୟତେ, ଅତ୍ର ସଂଶୟଃ ନ । ୭ ।

ଟୀକା ।

ଯଥୋକ୍ତ-ବିଭୂତ୍ୟାଦି-ତତ୍ତ୍ୱଜ୍ଞାନସ୍ୟ ଫଳମାହ । ଏତାମିତି । ଏତାଂ ଉକ୍ତ୍ୱାଦିଲକ୍ଷଣାଂ ମମ ବିଭୂତିଂ ଯୋଗଂ ଚୈଶ୍ୱର୍ଯ୍ୟଲକ୍ଷଣଂ ତତ୍ତ୍ୱତଃ ଯୋବେତ୍ତି, ସଃ ଅବିକମ୍ପେନ ନିଃସଂଶୟେନ ଯୋଗେନ ସମ୍ୟଗ୍‌ଦର୍ଶନେନ ଯୁକ୍ତୋଭବତି ନାତ୍ର ସଂଶୟଃ । ୭ ।

---

* ସନକ, ସନନ୍ଦ, ସନାତନ ଓ ସନତ୍‌କୁମାର ଏହି ଚାରିମହର୍ଷି ।

† ଚତୁର୍ଦ୍ଦଶ ମନୁ ଯଥା—୧ମ ସ୍ୱାୟମ୍ଭୁବ, ୨ୟ ସ୍ୱାରୋଚିଷ, ୩ୟ ଉତ୍ତମ, ୪ର୍ଥ ରୈବତ, ୫ମ ଚାକ୍ଷୁଷ, ୬ଷ୍ଠ ବୈବସ୍ୱତ, ୭ମ ସାବର୍ଣ୍ଣି, ୮ମ ଦକ୍ଷସାବର୍ଣ୍ଣି, ୯ମ ଧର୍ମସାବର୍ଣ୍ଣି, ୧୦ମ ରୁଦ୍ରସାବର୍ଣ୍ଣି, ୧୧ଶ ବ୍ରହ୍ମସାବର୍ଣ୍ଣି, ୧୨ଶ ଦେବସାବର୍ଣ୍ଣି, ୧୩ଶ ଇନ୍ଦ୍ରସାବର୍ଣ୍ଣି, ଓ ୧୪ଶ ତାମସ (ମନୁ) ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଏତାଂ—ଏହି, ବିଭୂତିଂ—ବୁଦ୍ଧି ଜ୍ଞାନ ପ୍ରଭୃତି ବିବିଧ ଭାବକୁ, ଯୋଗଂ ଚ—ପରମ ଐଶ୍ୱର୍ଯ୍ୟକୁ ମଧ୍ୟ, ମମ—ଆମ୍ଭର, ଯଃ—ଯେଉଁ ବ୍ୟକ୍ତି, ବେତ୍ତି—ଜାଣନ୍ତି, ତତ୍ତ୍ୱତଃ—ଯଥାର୍ଥରୂପରେ, ସଃ—ସେ, ଅବିକମ୍ପେନ—ନିଃସନ୍ଦେହରେ, ଅଥବା ଅବିକମ୍ପେନ—ଅଚଳ, ଯୋଗେନ—ତତ୍ତ୍ୱ ଜ୍ଞାନରେ, ଯୁଜ୍ୟତେ—ଯୁକ୍ତ ହୁଅନ୍ତି, ନ—ନାହିଁ, ଅତ୍ର—ଏଥିରେ, ସଂଶୟଃ—ସନ୍ଦେହ । ୭ ।

ଅନୁବାଦ ।

ଯେଉଁ ବ୍ୟକ୍ତି ଆମ୍ଭର ଏହି ବିଭୂତି ଓ ଯୋଗକୁ ଯଥାର୍ଥରୂପେ ଜାଣନ୍ତି, ସେ ଅଚଳ ତତ୍ତ୍ୱଜ୍ଞାନ ଲାଭ କରନ୍ତି, ଏଥିରେ ସଂଶୟ ନାହିଁ । ୭ ।

ବିଶଦବ୍ୟାଖ୍ୟା ।

ଏହି ଅଧ୍ୟାୟର ଚତୁର୍ଥ, ପଞ୍ଚମ ଓ ଷଷ୍ଠ ଶ୍ଳୋକରେ ଏବଂ ସପ୍ତମ, ଅଷ୍ଟମ ଓ ନବମ ଅଧ୍ୟାୟରେ ଆମ୍ଭର ଯେଉଁ ବିଭୂତି ବିଷୟ ବର୍ଣ୍ଣନ କରା ହୋଇଅଛି ତାହା, ଏବଂ 'ଯୋଗ' ଅର୍ଥାତ୍ ଜଗତର ପ୍ରତ୍ୟେକ ପଦାର୍ଥ ନିର୍ମାଣ କରିବା ବିଷୟରେ ଆମ୍ଭର ଯେଉଁ ସାମର୍ଥ୍ୟ, ତାହା ମଧ୍ୟ, ଯେଉଁ ବ୍ୟକ୍ତି, ଶାସ୍ତ୍ରପାଠ ବା ଗୁରୁ ଉପଦେଶଦ୍ୱାରା ଯଥାର୍ଥରୂପେ ଜାଣି ପାରନ୍ତି, ତାଙ୍କର ତତ୍ତ୍ୱଜ୍ଞାନ ନିଶ୍ଚଳ ଅର୍ଥାତ୍ ସମାଧିଯୁକ୍ତ ହୁଏ, ସୁତରାଂ ତାଙ୍କର ଅଜ୍ଞାତ ଆଉ କିଛି ରହେ ନାହିଁ, ଏଥିରେ କିଛିମାତ୍ର ସନ୍ଦେହ ନାହିଁ । ୭ ।

ଶ୍ଳୋକଃ ।

* ଅହଂ ସର୍ବସ୍ୟ ପ୍ରଭବୋ, ମତ୍ତଃ ସର୍ବଂ ପ୍ରବର୍ତ୍ତତେ ।

ଇତି ମତ୍ୱା ଭଜନ୍ତେ ମାଂ, ବୁଧା ଭାବସମନ୍ୱିତାଃ । ୮ ।

ଅନ୍ୱୟଃ ।

ଅହଂ ସର୍ବସ୍ୟ ପ୍ରଭବଃ, ସର୍ବଂ ମତ୍ତଃ ପ୍ରବର୍ତ୍ତତେ । ବୁଧାଃ ଇତି ମତ୍ୱା ଭାବସମନ୍ୱିତାଃ ମାଂ ଭଜନ୍ତେ । ୮ ।

ଟୀକା ।

ଯଥା ଚ ବିଭୂତି-ଯୋଗଯୋର୍ଜ୍ଞାନେ ସମ୍ୟକ୍ ଜ୍ଞାନାବାପ୍ତିସ୍ତଦର୍ଶୟତି । ଅହମିତ୍ୟାଦି ଚତୁର୍ଭିଃ । ଅହଂ ସର୍ବସ୍ୟ ଜଗତଃ ପ୍ରଭବୋ ଉତ୍ପତ୍ତି-ମନ୍ୱାଦିରୂପ-ବିଭୂତି-ଦ୍ୱାରେଣୋତ୍ପତ୍ତିହେତୁଃ ମତ୍ତ ଏବ ଚ ସର୍ବସ୍ୟ ବୁଦ୍ଧିର୍ଜ୍ଞାନମସମ୍ମୋହ ଇତ୍ୟାଦି ସର୍ବଂ ପ୍ରବର୍ତ୍ତତେ । ଇତ୍ୟେବଂ ମତ୍ୱା ଅବବୁଧ୍ୟ ବୁଧା ବିବେକିନୋ ଭାବସମନ୍ୱିତାଃ ପ୍ରୀତିଯୁକ୍ତା ମାଂ ଭଜନ୍ତେ । ୮ ।

ପଦବ୍ୟାଖ୍ୟା ।

ଅହଂ—ଅମ୍ଭେ, ସର୍ବସ୍ୟ—ସମସ୍ତ ଜଗତର, ପ୍ରଭବଃ—କାରଣ—ଉତ୍ପତ୍ତିର ହେତୁ, ମତ୍ତଃ—ଅମ୍ଭଠାରୁ, ସର୍ବଂ—ବୁଦ୍ଧି ଜ୍ଞାନପ୍ରଭୃତି ସବୁ, ପ୍ରବର୍ତ୍ତତେ—ଉତ୍ପନ୍ନ ହୁଏ, ଇତି ମତ୍ୱା—ଏହା ଜାଣି, ଭଜନ୍ତେ ମାଂ—ଅମ୍ଭଙ୍କୁ ସେବା କରନ୍ତି, ବୁଧାଃ—ପଣ୍ଡିତମାନେ, ଭାବସମନ୍ୱିତାଃ—ପ୍ରୀତିଯୁକ୍ତ ହୋଇ । ୮ ।

ଅନୁବାଦ ।

ଅମ୍ଭେ ସମସ୍ତ ଜଗତର କାରଣ ଓ ଅମ୍ଭଠାରୁ (ବୁଦ୍ଧି ଜ୍ଞାନପ୍ରଭୃତି) ସମସ୍ତ ଉତ୍ପନ୍ନ ହୁଏ । ପଣ୍ଡିତମାନେ ଏହା ଜାଣି ପ୍ରୀତିଯୁକ୍ତ ହୋଇ ଅମ୍ଭଙ୍କୁ ଭଜନ କରନ୍ତି । ୮ ।



Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଆମ୍ଭେ ଭୃଗୁଆଦି ସପ୍ତ ମହର୍ଷି, ସନକାଦି ଚାରି ମହର୍ଷି, ଏବଂ ସ୍ୱାୟମ୍ଭୂବପ୍ରଭୃତି ଚଉଦ ମନୁ ମନରୁ ଜାତ କଲୁଁ, ସେମାନେ ନାନା ଉପାୟରେ ବ୍ରାହ୍ମଣାଦି ଚାରି ବର୍ଣ୍ଣର ପ୍ରଜା ସୃଷ୍ଟି କଲେ, ସୁତରାଂ ଆମ୍ଭେ ଜଗତରେ ପ୍ରାଣି ଉତ୍ପତ୍ତିର ଏକମାତ୍ର ମୂଳକାରଣ ଅଟୁଁ, ଏବଂ ବୁଦ୍ଧି, ଜ୍ଞାନ, ମୋହଶୂନ୍ୟତା ଓ ଅହିଂସା, ସମତା, ତୁଷ୍ଟିପ୍ରଭୃତି ବିବିଧ ଭାବ ଆମ୍ଭଠାରୁ ଉତ୍ପନ୍ନ ହୋଇଅଛି, ବିବେକମାନେ ଏହିପ୍ରକାର ଜାଣି ପ୍ରୀତିଯୁକ୍ତ ହୋଇ ଆମ୍ଭର ଉପାସନା କରନ୍ତି । ୮ ।

ଶ୍ଳୋକଃ ।

* ମଚ୍ଚିତ୍ତା ମଦ୍‌ଗତପ୍ରାଣା, ବୋଧୟନ୍ତଃ [illegible] ।

କଥୟନ୍ତଶ୍ଚ ମାଂ ନିତ୍ୟଂ, ତୁଷ୍ୟନ୍ତି ଚ ରମନ୍ତି ଚ । ୯ ।

ଅନ୍ୱୟଃ ।

ମଚ୍ଚିତ୍ତାଃ ଚ ମଦ୍‌ଗତପ୍ରାଣାଃ (ତେ) ପରସ୍ପରଂ ବୋଧୟନ୍ତଃ ଚ ନିତ୍ୟଂ ମାଂ କଥୟନ୍ତଃ ତୁଷ୍ୟନ୍ତି ଚ ରମନ୍ତି । ୯ ।

ଟୀକା ।

ପ୍ରୀତିପୂର୍ବକଂ ଭଜନମାହ । ମଚ୍ଚିତ୍ତା ଇତି । ମୟ୍ୟେବ ଚିତ୍ତଂ ଯେଷାଂ ତେ ମଚ୍ଚିତ୍ତାଃ, ମାମେବ ଗତାଃ ପ୍ରାପ୍ତାଃ ପ୍ରାଣା ଇନ୍ଦ୍ରିୟାଣି ଯେଷାଂ ତେ ମଦ୍‌ଗତପ୍ରାଣାଃ ମଦର୍ପିତଜୀବନା ଇତି ବା ଏବମ୍ଭୂତାସ୍ତେ ବୁଧା ଅନ୍ୟୋଽନ୍ୟଂ ମାଂ ନ୍ୟାୟୋପେତୈଃ ଶ୍ରୁତ୍ୟାଦିପ୍ରମାଣୈର୍ବୋଧୟନ୍ତୋ ବୁଦ୍ଧ୍ୟା ଚ ମାଂ କଥୟନ୍ତଃ ସାନ୍ତ୍ୱୀର୍ଯ୍ୟାଦିଭିଃ ସନ୍ତଃ ନିତ୍ୟଂ ତୁଷ୍ୟନ୍ତି ଅନୁମୋଦନେନ ତୁଷ୍ଟିଂ ଯାନ୍ତି, ରମନ୍ତି ଚ ନିର୍ବୃତିଂ ଯାନ୍ତି । ୯ ।

ପଦବ୍ୟାଖ୍ୟା ।

ମଚ୍ଚିତ୍ତାଃ—ଆମ୍ଭଠାରେ ନିବିଷ୍ଟମନା, ମଦ୍‌ଗତପ୍ରାଣାଃ—ଆମ୍ଭଠାରେ (ପ୍ରାଣ) ଇନ୍ଦ୍ରିୟ ବା ଜୀବନ ଅର୍ପଣ କରି, ବୋଧୟନ୍ତଃ—ବୁଝାନ୍ତି, ପରସ୍ପରଂ—ଅନ୍ୟୋଽନ୍ୟରେ, କଥୟନ୍ତଃ—କୀର୍ତ୍ତନ କରନ୍ତି, ଚ—ପୁଣି, ମାଂ—ଆମ୍ଭଙ୍କୁ, ନିତ୍ୟଂ—ସର୍ବଦା, ତୁଷ୍ୟନ୍ତି—ସନ୍ତୋଷ ପ୍ରାପ୍ତ ହୁଅନ୍ତି, ଚ—ପୁଣି, ରମନ୍ତି ଚ—ଶାନ୍ତି ସୁଖ ଅନୁଭବ କରନ୍ତି । ୯ ।

ଅନୁବାଦ ।

(ସେମାନେ) ଆମ୍ଭଠାରେ ମନ, ପ୍ରାଣ ଓ ଇନ୍ଦ୍ରିୟମାନଙ୍କୁ ଅର୍ପଣ କରି, ପରସ୍ପରରେ ଆମ୍ଭ କଥା ବୁଝାନ୍ତି ଓ କୀର୍ତ୍ତନ କରି ସନ୍ତୋଷ ଏବଂ ଶାନ୍ତି ଲାଭ କରନ୍ତି । ୯ ।

ବିଶଦବ୍ୟାଖ୍ୟା ।

'ପଣ୍ଡିତମାନେ ଏହା ଜାଣି ପ୍ରୀତିଯୁକ୍ତ ହୋଇ ଆମ୍ଭଙ୍କୁ ଭଜନ କରନ୍ତି,' ବୋଲି ପୂର୍ବ ଶ୍ଳୋକରେ ଲେଖା ଯାଇଅଛି, ଏ ଶ୍ଳୋକରେ ସେହି ପ୍ରୀତିଯୁକ୍ତ ଭଜନର ପ୍ରଣାଳୀ ଶ୍ରୀଭଗବାନ୍ ବ୍ୟାଖ୍ୟା କରୁଅଛନ୍ତି ।

ସେ ପଣ୍ଡିତମାନେ ଆମ୍ଭଠାରେ ମନ ଅର୍ପଣ କରନ୍ତି, ଅର୍ଥାତ୍ ଆମ୍ଭ ଭିନ୍ନ ଅନ୍ୟ କୌଣସି ଦେବତାଠାରେ ମନ ଦିଅନ୍ତି ନାହିଁ । ଆମ୍ଭଠାରେ ପ୍ରାଣ—ଜୀବନ ବା ଚକ୍ଷୁରାଦି ଇନ୍ଦ୍ରିୟମାନ ଅର୍ପଣ କରନ୍ତି । ପୁଣି ପରସ୍ପରରେ ଅର୍ଥାତ୍ ଆପଣାର ସମଶ୍ରେଣୀର ବ୍ୟକ୍ତିମାନଙ୍କୁ ଶ୍ରୁତି ପ୍ରମାଣ

ଓ ଯୁକ୍ତି ପ୍ରୟୋଗଦ୍ୱାରା ଆମ୍ଭ କଥା ବୁଝାନ୍ତି ଓ ସେମାନଙ୍କଠାରୁ ଆପେ ବୁଝନ୍ତି । ସେହିପରି ଆମ୍ଭର ଗୁଣାନୁବାଦ କୀର୍ତ୍ତନ କରି, ଅଥବା ଆପଣାଠାରୁ ନ୍ୟୂନ ଶିଷ୍ୟାଦିଙ୍କ ନିକଟରେ ବ୍ୟାଖ୍ୟା କରି ସନ୍ତୋଷ ଲାଭ କରନ୍ତି, ଏବଂ ସେହି ସନ୍ତୋଷ ହେତୁରୁ ଶାନ୍ତି ସୁଖ ଅନୁଭବ କରନ୍ତି । ମହାତ୍ମା ପତଞ୍ଜଳି କହିଅଛନ୍ତି, ଯେ "ସନ୍ତୋଷାଦନୁତ୍ତମସୁଖଲାଭଃ" ଅର୍ଥାତ୍ ସନ୍ତୋଷରୁ ସର୍ବଶ୍ରେଷ୍ଠ 'ଶାନ୍ତି' ସୁଖ ଲାଭ ହୁଏ । ଆହୁରି ପୁରାଣରେ ମଧ୍ୟ ପ୍ରମାଣ ଅଛି, ଯେ,—"ଯଚ୍ଚ କାମସୁଖଂ ଲୋକେ ଯଚ୍ଚ ଦିବ୍ୟଂ ମହତ୍ ସୁଖଂ । ତୃଷ୍ଣାକ୍ଷୟସୁଖସ୍ୟୈତତ୍ କଳାଂ ନାର୍ହତି ଷୋଡଶୀଂ ।" ଅର୍ଥାତ୍ ଜଗତରେ କାମ୍ୟଫଳ ଲାଭରେ ଯେଉଁ ଉତ୍କୃଷ୍ଟ ସୁଖ ମିଳେ, ତାହା ସନ୍ତୋଷଜନିତ ସୁଖର ଷୋଡଶାଂଶର ଏକ ଅଂଶକୁ ଲକ୍ଷ୍ୟ ନୁହେ ।

ଅତଏବ ସନ୍ତୋଷ ହେତୁରୁ ସେମାନେ ଶାନ୍ତି ସୁଖ ଲାଭ କରନ୍ତି । ୯ ।

ଶ୍ଳୋକଃ ।

* ତେଷାଂ ସତତଯୁକ୍ତାନାଂ, ଭଜତାଂ ପ୍ରୀତିପୂର୍ବକଂ ।
ଦଦାମି ବୁଦ୍ଧିଯୋଗଂ ତଂ, ଯେନ ମାମୁପଯାନ୍ତି ତେ । ୧୦ ।

ଅନ୍ୱୟଃ ।

ସତତଯୁକ୍ତାନାଂ ପ୍ରୀତିପୂର୍ବକଂ ଭଜତାଂ ତେଷାଂ ତଂ ବୁଦ୍ଧିଯୋଗଂ ଦଦାମି, ଯେନ, ତେ ମାଂ ଉପଯାନ୍ତି । ୧୦ ।

ଟୀକା ।

ଏବମ୍ଭୂତାନାଂ ଚ ସମ୍ୟଗ୍‌ଜ୍ଞାନମହଂ ଦଦାମୀତ୍ୟାହ । ତେଷାମିତି । ଏବଂ ସତତ ଯୁକ୍ତାନାଂ ମଯ୍ୟାସକ୍ତଚିତ୍ତାନାଂ ପ୍ରୀତିପୂର୍ବକଂ ଭଜତାଂ ତଂ ବୁଦ୍ଧିରୂପଂ ଯୋଗମୁପାୟଂ ଦଦାମି । ତମିତ ନଂ ? ଯେନୋପାୟେନ ତେ ମଦ୍ଭକ୍ତା ମାଂ ପ୍ରାପ୍ନୁବନ୍ତି । ୧୦ ।

ପଦବ୍ୟାଖ୍ୟା ।

ତେଷାଂ—ସେହି, ସତତଯୁକ୍ତାନାଂ—ସର୍ବଦା ଈଶ୍ୱରସକ୍ତ, ଭଜତାଂ—ଭଜନକାରମାନଙ୍କୁ, ପ୍ରୀତିପୂର୍ବକଂ—ପ୍ରୀତିର ସହିତ, ଦଦାମି—ପ୍ରଦାନ କରୁ, ବୁଦ୍ଧିଯୋଗଂ—ତତ୍ତ୍ୱଜ୍ଞାନର ଉପାୟରୂପ, ତଂ—ସେହି, ଯେନ—ଯେଉଁ ବୁଦ୍ଧିଯୋଗଦ୍ୱାରା, ମାଂ—ଆମ୍ଭଙ୍କୁ, ଉପଯାନ୍ତି—ପ୍ରାପ୍ତ ହୁଅନ୍ତି, ତେ—ସେମାନେ । ୧୦ ।

ଅନୁବାଦ ।

ସର୍ବଦା ଏକାଗ୍ରଚିତ୍ତ ଓ ପ୍ରୀତିପୂର୍ବକ ଭଜନକାରମାନଙ୍କୁ ଆମ୍ଭେ ବୁଦ୍ଧିଯୋଗ ପ୍ରଦାନ କରୁଁ, ତାହାଦ୍ୱାରା ସେମାନେ ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି । ୧୦ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, କି ଯେଉଁମାନେ ସର୍ବଦା ଆମ୍ଭଠାରେ ଆସକ୍ତ ଚିତ୍ତ ହୋଇ ପ୍ରୀତିର ସହିତ ଆମ୍ଭର ଆରାଧନା କରନ୍ତି, ସେହି ଆରାଧନାରେ ଆମ୍ଭେ ପ୍ରୀତ ହୋଇ ଓ ଅନୁଗ୍ରହ କରି ତାହାଙ୍କୁ ବୁଦ୍ଧିଯୋଗ ପ୍ରଦାନ କରୁଁ ଅର୍ଥାତ୍ ଆମ୍ଭର କୃପାରେ ସେମାନଙ୍କର ବୁଦ୍ଧି ସୁନିର୍ମଳ ହୁଏ । ସେହି ବୁଦ୍ଧିଦ୍ୱାରା ସେମାନେ ପରମାତ୍ମ ଜ୍ଞାନ ଲାଭ କରନ୍ତି । ସାଧାରଣ ବୁଦ୍ଧିରେ ପରମାତ୍ମା ପ୍ରତିବିମ୍ବିତ ହୁଅନ୍ତି ନାହିଁ, କିମ୍ବା ଶାସ୍ତ୍ରାଦି ପାଠଦ୍ୱାରା ବୁଦ୍ଧି ସେପରି ନିର୍ମଳ ହୁଏ

ନାହିଁ, ଯହିଁରେ କି ବ୍ରହ୍ମଜ୍ଞାନ ଲାଭ ହେବ । ଅତଏବ ନିର୍ମଳ ବୁଦ୍ଧି ଯୋଗ ଲାଭ କରିବାର ଏକମାତ୍ର ଉପାୟ, ଭଗବତ୍ କୃପା ଓ ସେହି କୃପା ମିଳିବାର ଏକ ମାତ୍ର ଉପାୟ ପ୍ରୀତିପୂର୍ବକ ଏକାଗ୍ର ଭକ୍ତି ।

ଫଳକଥା ଏହି କି ସାଧନଦ୍ୱାରା ଭଗବତ୍ତତ୍ତ୍ୱ ଲାଭ ହୁଏ, ସାଧନ ନ କଲେ କିଛି ଫଳ ହୁଏ ନାହିଁ । ୧୦ ।

ଶ୍ଳୋକଃ ।

॥ ତେଷାମେବାନୁକମ୍ପାର୍ଥମହମଜ୍ଞାନଜଂ ତମଃ ।

ନାଶୟାମ୍ୟାତ୍ମଭାବସ୍ଥୋ, ଜ୍ଞାନଦୀପେନ ଭାସ୍ୱତା । ୧୧ ।

ଅନ୍ୱୟଃ ।

ତେଷାଂ ଏବ ଅନୁକମ୍ପାର୍ଥଂ ଆତ୍ମଭାବସ୍ଥଃ ଅହଂ ଭାସ୍ୱତା ଜ୍ଞାନଦୀପେନ ଅଜ୍ଞାନଜଂ ତମଃ ନାଶୟାମି । ୧୧ ।

ଟୀକା ।

ବୁଦ୍ଧିଯୋଗଂ ଦତ୍ୱା ଚ ତତ୍ପ୍ରାପ୍ତିପର୍ଯ୍ୟନ୍ତଂ ତମାବସ୍ଥାଦ୍ୟାବଦାବୃତଂ ସଂସାରଂ ନାଶୟାମୀତ୍ୟାହ । ତେଷାମିତି । ତେଷାମନୁକମ୍ପାର୍ଥମନୁଗ୍ରହାର୍ଥମେବାଜ୍ଞାନାତ୍ତଂ ତମଃ ସଂସାରାଖ୍ୟଂ ନାଶୟାମି, କୁତ୍ର ସ୍ଥିତଃ ସନ୍ କେନ ବା ସାଧନେନ ତମୋନାଶପ୍ରସାଧ୍ୟତ ଅହ, ଆତ୍ମଭାବସ୍ଥୋବୁଦ୍ଧିବୃତ୍ତୌ ସ୍ଥିତଃ ସନ୍, ଭାସ୍ୱତା ବଟୂରତା ଜ୍ଞାନଲକ୍ଷଣେନ ଦୀପେନ ନାଶୟାମି । । ୧୧ ।

ପଦବ୍ୟାଖ୍ୟା ।

ତେଷାଂ—ସେମାନଙ୍କର, ଏବ—କେବଳ, ଅନୁକମ୍ପାର୍ଥଂ—ଅନୁଗ୍ରହ ନିମିତ୍ତ, ଅହଂ—ଆମ୍ଭେ, ଅଜ୍ଞାନଜଂ—ଅଜ୍ଞାନରୁ ଜାତ, ତମଃ—ସଂସାରରୂପ ଅନ୍ଧକାରକୁ, ନାଶୟାମି—ନାଶ କରୁଁ, ଆତ୍ମଭାବସ୍ଥଃ—ଆତ୍ମଭାବରେ ଅର୍ଥାତ୍ ବୁଦ୍ଧିବୃତ୍ତିରେ ସ୍ଥିତ ହୋଇ, ଜ୍ଞାନଦୀପେନ—ଜ୍ଞାନରୂପ ପ୍ରଦୀପଦ୍ୱାରା, ଭାସ୍ୱତା—ଉଜ୍ଜ୍ୱଳ । ୧୧ ।

ଅନୁବାଦ ।

ସେମାନଙ୍କ ପ୍ରତି କେବଳ ଅନୁଗ୍ରହ କରିବାକୁ, ଆମ୍ଭେ ବୁଦ୍ଧିବୃତ୍ତିରେ ପ୍ରବେଶ କରି ଉଜ୍ଜ୍ୱଳ ଜ୍ଞାନଦୀପଦ୍ୱାରା ଅଜ୍ଞାନଜନିତ (ସଂସାରରୂପ) ଅନ୍ଧକାରକୁ ବିନାଶ କରୁଁ । ୧୧ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, କି ଯେଉଁମାନେ ଏକାଗ୍ର ମନରେ ପ୍ରୀତିପୂର୍ବକ ଆମ୍ଭର ଆରାଧନା କରନ୍ତି, ଆମ୍ଭେ, ଯେ ତାଙ୍କୁ କେବଳ ବୁଦ୍ଧିଯୋଗହିଁ ପ୍ରଦାନ କରି ନିଶ୍ଚିନ୍ତ ଥାଉଁ, ତାହା ନୁହେ । ସେହି ବୁଦ୍ଧିବୃତ୍ତି, କାଳେ ଅଜ୍ଞାନଜନିତ ସଂସାରରୂପ ଅନ୍ଧାରରେ ବିକଶିତ ହୋଇ ନ ପାରିବ, ସେଥିପାଇଁ ଆମ୍ଭେ ସେହି ଭକ୍ତମାନଙ୍କୁ ଅନୁଗ୍ରହ କରିବାଲାଗି, ସେ ଅଜ୍ଞାନଜନିତ ସଂସାରରୂପ ଅନ୍ଧକାରକୁ ବିନାଶ କରୁଁ । ଅନ୍ଧକାର ବିନାଶ କରିବାକୁ ଅସ୍ତ୍ର ଶସ୍ତ୍ର ଆବଶ୍ୟକ ହୁଏ ନାହିଁ, କେବଳ ଆଲୋକର ପ୍ରୟୋଜନ, ଅତଏବ ଆମ୍ଭେ ସେହି ଭକ୍ତର ବୁଦ୍ଧିବୃତ୍ତିରେ ଅବସ୍ଥିତ ହୋଇ ଅଥବା ଆତ୍ମାରୂପରେ ସ୍ଥିତ ହୋଇ ଉଜ୍ଜ୍ୱଳ ଜ୍ଞାନ ଆଲୋକଦ୍ୱାରା ଉକ୍ତ ସଂସାରରୂପ ଅନ୍ଧକାରକୁ ବିନାଶ କରୁ, ଅର୍ଥାତ୍ ବୁଦ୍ଧି ନିର୍ମଳ କରିବା ସଙ୍ଗେ ତହିଁରେ

Digitized by PPRACHIN, SOA

ଜ୍ଞାନରୂପ ଆଲୋକ ପ୍ରଦୀପ୍ତ କରଦେଉଁ । ସୁତରାଂ ଭକ୍ତ, ନିର୍ମଳ ବୁଦ୍ଧି ସାହାଯ୍ୟରେ ଜ୍ଞାନାଲୋକଦ୍ୱାରା ପରମାତ୍ମଜ୍ଞାନ ଲାଭ କରନ୍ତି । ୧୧ ।

ଶ୍ଳୋକଃ ।

ଅର୍ଜୁନ ଉବାଚ ।—ପରଂ ବ୍ରହ୍ମ ପରଂ ଧାମ, ପବିତ୍ରଂ ପରମଂ ଭବାନ୍ ।
ପୁରୁଷଂ ଶାଶ୍ୱତଂ ଦିବ୍ୟ,ମାଦିଦେବମଜଂ ବିଭୁଂ । ୧୨ ।

ଅନ୍ୱୟଃ ।

ଅର୍ଜୁନଃ ଉବାଚ ।—(ହେ କୃଷ୍ଣ) ! ଭବାନ୍ ପରଂବ୍ରହ୍ମ, ପରଂଧାମ (ଯତଃ ତ୍ୱାଂ) ପବିତ୍ରଂ ପରମଂ ପୁରୁଷଂ ଶାଶ୍ୱତଂ ଦିବ୍ୟଂ ଆଦିଦେବ ଅଜଂ ବିଭୁଂ (ଆହୁଃ) । ୧୨ ।

ଟୀକା ।

ସଂକ୍ଷେପେଣୋକ୍ତାଂ ବିଭୂତିଂ ବିସ୍ତରେଣ ଜିଜ୍ଞାସୁର୍ଭଗବନ୍ତଂ ସ୍ତୁବନ୍ନର୍ଜୁନ ଉବାଚ । ପରଂବ୍ରହ୍ମେତି ସପ୍ତଭିଃ । ପରଂବ୍ରହ୍ମ ପରଂଧାମ ଚ ଆଶ୍ରୟଃ ପରମଂ ପବିତ୍ରଂ ଭବାନେବ, କୁତ ଇତ୍ୟତ ଆହ, ଯତଃ ଶାଶ୍ୱତଂ ନିତ୍ୟଂ ପୁରୁଷଂ ତଥା ଦିବ୍ୟଂ ଦ୍ୟୋତନାତ୍ମକଂ ସ୍ୱୟଂ ପ୍ରକାଶଂ ଆଦିଶ୍ଚାସୌ ଦେବଶ୍ଚେତି ତଂ ଦେବାନାମାଦିଭୂତମିତ୍ୟର୍ଥଃ ତଥା ଅଜଂ ଅଜନ୍ମାନଂ ବିଭୁଂ ଚ ବ୍ୟାପକଂ ତ୍ୱାମେବାହୁଃ । ୧୨ ।

ପଦବ୍ୟାଖ୍ୟା ।

ପରଂବ୍ରହ୍ମ—ଶୁଦ୍ଧସଚ୍ଚିଦାନନ୍ଦ, ପରଂଧାମ—ସର୍ବଶ୍ରେଷ୍ଠ ଆଶ୍ରୟ, ପବିତ୍ର—ବିଶୁଦ୍ଧ, ପରମଂ—ଉତ୍କୃଷ୍ଟ, ଭବାନ୍—ଆପଣ, ପୁରୁଷଂ—(ଆତ୍ମା) ପୁରୁଷ, ଶାଶ୍ୱତଂ—ନିତ୍ୟ, ଦିବ୍ୟଂ—ପ୍ରକାଶସ୍ୱରୂପ, ଆଦିଦେବଂ—ଦେବତାମାନଙ୍କର ଆଦି ପୁରୁଷ, ଅଜଂ—ଜନ୍ମରହିତ, ବିଭୁଂ—ସର୍ବବ୍ୟାପକ । ୧୨ ।

ଅନୁବାଦ ।

ଅର୍ଜୁନ କହିଲେ, (ହେ କୃଷ୍ଣ !) ଆପଣ ପରଂବ୍ରହ୍ମ ଓ ପରମ ଆଶ୍ରୟ, (ଏବଂ ମୁନିମାନେ ଆପଣଙ୍କୁ) ପବିତ୍ର, ସର୍ବଶ୍ରେଷ୍ଠ, ନିତ୍ୟ, ପ୍ରକାଶସ୍ୱରୂପ, ଆଦିଦେବ ଓ ଜନ୍ମଶୂନ୍ୟ ଏବଂ ସର୍ବବ୍ୟାପକ ବୋଲି କହିଅଛନ୍ତି । ୧୨ ।

ବିଶଦବ୍ୟାଖ୍ୟା ।

ବିଭୂତି ବିଷୟରେ ଅଧିକ କେତେକ ତତ୍ତ୍ୱକଥା ଜାଣିବା ଅଭିପ୍ରାୟରେ ଅର୍ଜୁନ, ଶ୍ରୀଭଗବାନଙ୍କୁ ସ୍ତୁତି କରି କହୁଅଛନ୍ତି,—ହେ କୃଷ୍ଣ ! ଆପଣ ପରଂବ୍ରହ୍ମ, ଅର୍ଥାତ୍ ମନ, ବୁଦ୍ଧି ଓ ଜ୍ଞାନାଦିର ଅଗୋଚର, ଅତଏବ ଉପାସନାର ଅତୀତ ଅଟନ୍ତି । ଏ ଜଗତ୍ ଆପଣଙ୍କୁ ଆଶ୍ରୟ କରି ରହିଅଛି, ଅତଏବ ଆପଣ ସର୍ବଶ୍ରେଷ୍ଠ ଆଶ୍ରୟ ଅଟନ୍ତି । ଏକଥା, ଯେ କେବଳ ମୁଁ କହୁଅଛି, ତାହା ନୁହେ । (ପରଶ୍ଳୋକଲିଖିତ) ଋଷିମାନେ, ଆପଣଙ୍କୁ ଏହି ପ୍ରକାରେ ସ୍ତୁତି କରିଅଛନ୍ତି, ଯେ—'ଆପଣ ପବିତ୍ର' ଅର୍ଥାତ୍ କୌଣସି ପ୍ରକାର ପାପ ଆପଣଙ୍କୁ ସ୍ପର୍ଶ କରି ନାହିଁ । ଆପଣ 'ଶାଶ୍ୱତ' ଅର୍ଥାତ୍ ସର୍ବକାଳସ୍ଥାୟୀ, 'ଦିବ୍ୟ' ଅର୍ଥାତ୍ ପ୍ରକାଶ ସ୍ୱରୂପ । ଆପଣଙ୍କଠାରୁ ସମସ୍ତ ଦେବତା ଜାତ ହୋଇଅଛନ୍ତି, ଅତଏବ ଆପଣ ଆଦିଦେବ, ଆପଣଙ୍କର କେହି କାରଣ ନୁହନ୍ତି, ଅତଏବ ଆପଣ 'ଅଜ' ଅର୍ଥାତ୍ ଜନ୍ମଶୂନ୍ୟ, ଏବଂ ଆପଣ 'ବିଭୁ'—ସର୍ବବ୍ୟାପୀ ଅତଏବ 'ପରମ' ଅର୍ଥାତ୍ ସର୍ବଶ୍ରେଷ୍ଠ ଅଟନ୍ତି । ୧୨ ।

Digitized by PPRACHIN, SOA

ଶ୍ଳୋକଃ ।

ଆହୁସ୍ତ୍ୱାମୃଷୟଃ ସର୍ବେ, ଦେବର୍ଷିର୍ନାରଦସ୍ତଥା ।
ଅସିତୋଦେବଲୋବ୍ୟାସଃ, ସ୍ୱୟଂ ଚୈବ ବ୍ରବୀଷି ମେ । ୧୩ ।

ଅନ୍ୱୟଃ ।

(ଯତ) ତ୍ୱାଂ ଦେବର୍ଷିଃ ନାରଦଃ ତଥା ଅସିତଃ ଦେବଲଃ ବ୍ୟାସଃ (ଏତେ) ସର୍ବେ ଋଷୟଃ ଆହୁଃ, ସ୍ୱୟଂ ଚ ଏବ ମେ ବ୍ରବୀଷି । ୧୩ ।

ଟୀକା ।

**ବେ ତେ ଯଦର୍ଥାଦ୍ ।** ଆହୁରିତି । ଋଷୟୋଭୃଗ୍ୱାଦୟଃ ସର୍ବେ ଦେବର୍ଷିସ୍ତୁ ନାରଦଃ ଅସିତସ୍ତୁ ଦେବଲସ୍ତୁ ବ୍ୟାସସ୍ତୁ ସ୍ୱୟଂ ତ୍ୱମେବ ସାକ୍ଷାନ୍ମେ ମହ୍ୟଂ ବ୍ରବୀଷି । ୧୩ ।

ପଦବ୍ୟାଖ୍ୟା ।

ଆହୁଃ—କହନ୍ତି, ତ୍ୱାଂ—ଆପଣଙ୍କୁ, ଋଷୟଃ—ଋଷିମାନେ, ସର୍ବେ—ସମସ୍ତ, ଦେବର୍ଷିଃ ନାରଦଃ—ନାରଦ ନାମକ ଦେବଋଷି, ତଥା—ସେହିପରି, ଅସିତଃ—ଅସିତ ନାମକ ଋଷି, ଦେବଲଃ—ଦେବଲ ନାମକ ଋଷି, ବ୍ୟାସଃ—ପରାଶର ପୁତ୍ର ବ୍ୟାସଦେବ, ସ୍ୱୟଂ ଚ ଏବ—ନିଜେ ମଧ୍ୟ, ବ୍ରବୀଷି—କହୁଅଛନ୍ତି, ମେ—ମତେ । ୧୩ ।

ଅନୁବାଦ ।

ଅସିତ, ଦେବଲ ଓ ବ୍ୟାସପ୍ରଭୃତି ଋଷିମାନେ ଆଉ ଦେବର୍ଷି ନାରଦ ଆପଣଙ୍କୁ (ଏହିପ୍ରକାର) କହିଅଛନ୍ତି, ଏବଂ ଆପଣ ନିଜେ ମଧ୍ୟ, ମତେ, ତାହା କହୁଅଛନ୍ତି । ୧୩ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ଋଷିମାନେ ଭଗବାନଙ୍କୁ ପରବ୍ରହ୍ମ, ସର୍ବଶ୍ରେଷ୍ଠ ପୁରୁଷ, ନିତ୍ୟ, ପ୍ରକାଶସ୍ୱରୂପ, ଆଦିଦେବ ଓ ଜନ୍ମଶୂନ୍ୟ ଏବଂ ସର୍ବବ୍ୟାପକ ବୋଲି କହିଥିବାର ଲେଖା ଯାଇଅଛି । ଯେଉଁ ଋଷିମାନେ ଏପରି କହିଅଛନ୍ତି, ସେମାନଙ୍କର ନାମ, ଅର୍ଜୁନ ଏ ଶ୍ଳୋକରେ କହୁଅଛନ୍ତି :—

ହେ ଭଗବନ୍ ! ଅସିତ, ଦେବଲ ଓ ବ୍ୟାସପ୍ରଭୃତି ଋଷିମାନେ ଏବଂ ନାରଦ ପ୍ରଭୃତି ଦେବର୍ଷିମାନେ ଆପଣଙ୍କୁ ଏହିପ୍ରକାର ବର୍ଣ୍ଣନ କରିଅଛନ୍ତି । ଯଥା—

ଏଷ ନାରାୟଣଃ ଶ୍ରୀମାନ୍ କ୍ଷୀରାର୍ଣ୍ଣବନିକେତନଃ ।
ନାଗପର୍ଯ୍ୟଙ୍କମୁତ୍ସୃଜ୍ୟେହ୍ୟାଗତୋମଥୁରାପୁରୀଂ । ୧ ।
ପୁଣ୍ୟା ଦ୍ୱାରାବତୀ ତତ୍ର ଯତ୍ରାସ୍ତେ ମଧୁସୂଦନଃ ।
ସାକ୍ଷାଦେବ ପୁରାଣୋଽସୌ ସ ହି ଧର୍ମଃ ସନାତନଃ । ୨ ।
ଚତୁର୍ବେଦବିଦୋବିପ୍ରା ଯେ ଚାଧ୍ୟାତ୍ମବିଦୋଜନାଃ ।
ତେ ବଦନ୍ତି ମହାତ୍ମାନଂ କୃଷ୍ଣଂ ଧର୍ମସନାତନଂ । ୩ ।
ପବିତ୍ରାଣାଂ ହି ଗୋବିନ୍ଦଃ ପବିତ୍ରଂ ପରମୁଚ୍ୟତେ ।
ପୁଣ୍ୟାନାମପି ପୁଣ୍ୟୋଽସୌ ମଙ୍ଗଲାନାଂ ଚ ମଙ୍ଗଳଂ । ୪ । ଇତ୍ୟାଦ

(ରାମାନୁଜଭାଷ୍ୟୋଦ୍ଧୃତ ବଚନ) ।

Digitized by PPRACHIN, SOA

ମୁନିମାନଙ୍କଠାରୁ ଉପରୋକ୍ତ ପ୍ରକାରେ ଶୁଣିଥିଲି, ଆପଣ ମଧ୍ୟ ନିଜର ବିଭୂତି ବର୍ଣ୍ଣନ-ବେଳେ, ତାହା କହିଲେ, ସୁତରାଂ ଆପଣ, ଯେ ପରଂବ୍ରହ୍ମ ଓ ପରମ ଆଶ୍ରୟ, ଏ ବିଷୟରେ ମୋହର କିଛିମାତ୍ର ସଂଶୟ ନାହିଁ । ୧୩ ।

ଶ୍ଳୋକଃ ।

ସର୍ବମେତଦୃତଂ ମନ୍ୟେ, ଯନ୍ମାଂ ବଦସି କେଶବ ।
ନ ହି ତେ ଭଗବନ୍ ବ୍ୟକ୍ତିଂ, ବିଦୁର୍ଦ୍ଦେବା ନ ଦାନବାଃ । ୧୪ ।

ଅନ୍ୱୟଃ ।

ହେ କେଶବ ! ଯତ୍ ମାଂ ବଦସି ଏତତ୍ ସର୍ବଂ ଋତଂ ମନ୍ୟେ । ହେ ଭଗବନ୍ ! ତେ ବ୍ୟକ୍ତିଂ ଦେବାଃ ନ ହି ବିଦୁଃ ଦାନବାଃ ନ । ୧୪ ।

ଟୀକା ।

ଅତୋମମେଦାନୀଂ ଭୃଶମୈଶ୍ୱର୍ୟ୍ୟେସମ୍ଭାବନା ନିବୃତ୍ତେତ୍ୟାହ । ସର୍ବମେତଦିତି । ଏତତ୍ ଭବାନେବ ପରଂବ୍ରହ୍ମେ-ତ୍ୟାଦି ସର୍ବମପି ଋତଂ ସତ୍ୟଂ ମନ୍ୟେ ଯନ୍ମାଂ ପ୍ରତି ତ୍ୱଂ କଥୟସି ସୁରଗଣା ଇତ୍ୟାଦ, ତଦପି ସତ୍ୟମେବ ମନ୍ୟେ ଇତ୍ୟାହ, ନ ହୀତି । ହେ ଭଗବସ୍ତବ ବ୍ୟକ୍ତିଂ ଦେବା ନ ବିଦୁଃ, ଅସ୍ମଦନୁଗ୍ରହାର୍ଥମିୟମଭିବ୍ୟକ୍ତିରିତି ନ ଜାନନ୍ତି, ଦାନବାସ୍ତୁ ଅସ୍ମନ୍ନିଗ୍ରହାର୍ଥମିତି ନ ବିଦୁରେବେତି । ୧୪ ।

ପଦବ୍ୟାଖ୍ୟା ।

ସର୍ବଂ—ସବୁ, ଏତତ୍—ଏହା, ଋତଂ—ସତ୍ୟ, ମନ୍ୟେ—ମଣୁଅଛି, ଯତ୍—ଯାହା, ମାଂ—ମତେ, ବଦସି—କହୁଅଛନ୍ତି, କେଶବ—ହେ କେଶବ, ନ ହି—ନାହିଁ, ତେ—ଆପଣଙ୍କର, ଭଗବନ୍—ହେ ଷଡୈଶ୍ୱର୍ଯ୍ୟଶାଳିନ୍—ଶ୍ରୀକୃଷ୍ଣ । ବ୍ୟକ୍ତିଂ—ପ୍ରକାଶ ବା ଆବିର୍ଭାବକୁ, ବିଦୁଃ—ଜାଣନ୍ତି, ଦେବାଃ—ଦେବତାମାନେ, ନ—ନାହିଁ, ଦାନବାଃ—ଦାନବମାନେ । ୧୪ ।

ଅନୁବାଦ ।

ହେ କେଶବ ! ଆପଣ, ଯାହା ମୋତେ କହୁଅଛନ୍ତି, ତାହା ସବୁ ସତ୍ୟ ବୋଲି ମୁ ଜାଣିଲି । ହେ ଭଗବନ୍ ! ଦେବତାମାନେ କି ଦାନବମାନେ (କେହି) ଆପଣଙ୍କର ପ୍ରଭାବ ଜାଣନ୍ତି ନାହିଁ । ୧୪ ।

ବିଶଦବ୍ୟାଖ୍ୟା ।

ହେ କେଶବ ! ଆପଣ, ଯାହା ମୋତେ କହିଥିଲେ କି "ନମେ ବିଦୁଃ ସୁରଗଣାଃ ପ୍ରଭବଂ ନ ମହର୍ଷୟଃ" ଅର୍ଥାତ୍ ଦେବତା କି ମହର୍ଷି କେହି ଆମ୍ଭର ଜନ୍ମର କାରଣ ଜାଣନ୍ତି ନାହିଁ । ତାହା, ଏବଂ ଆପଣ, ଯେ ପରମବ୍ରହ୍ମ ଓ ପରମଆଶ୍ରୟ, ଇତ୍ୟାଦି ସମସ୍ତ କଥା, ମୁ ସତ୍ୟ ବୋଲି ମଣିଲି, କାହିଁକି ନା ଆପଣଙ୍କ କଥାରେ ଅବିଶ୍ୱାସ କରିବାର କୌଣସି କାରଣ ଦେଖୁ ନାହିଁ, ବରଂ ପୂର୍ବରେ ଅସିତ, ଦେବଳ ଓ ବ୍ୟାସପ୍ରଭୃତି ଋଷିମାନେ ଓ ଦେବର୍ଷି ନାରଦପ୍ରଭୃତି ଆପଣଙ୍କର ବିଭୂତି ବିଷୟରେ, ଯାହା କହିଥିଲେ, ଆପଣଙ୍କ କଥା ସହିତ ତାହା ସମ୍ପୂର୍ଣ୍ଣରୂପେ ମିଳୁଅଛି । ଅତଏବ ଏ ସବୁ ସତ୍ୟ ଅଟେ । ଆପଣ, ଯେ ଦେବତାମାନଙ୍କ ଅନୁଗ୍ରହ କରିବା-ପାଇଁ ଓ ଦାନବମାନଙ୍କୁ ନିଗ୍ରହ କରିବାକୁ ଆବିର୍ଭୂତ ହୋଇଅଛନ୍ତି, ତାହା ଦେବତା କି

Digitized by PPRACHIN, SOA

ରାକ୍ଷସ କେହି ଜାଣିପାରୁ ନାହାନ୍ତି । କାହିଁକ ନା ଆପଣ ଦୟା କରି ବୁଝାଇ ନ ଦେଲେ, ନିଜ ବୁଦ୍ଧିବଳରେ ତାହା କିଏ ବୁଝି ପାରିବ ? ଆପଣ, କେବଳ ମୋତେ ଅନୁଗ୍ରହ କରି ନିଜର ବିଭୂତି ଓ ଐଶ୍ୱର୍ଯ୍ୟ ବୁଝାଇ ଦେଲେ ବୋଲି, ମୁଁ ଏହା ବୁଝିପାରି ସତ୍ୟ ବୋଲି ଜାଣିଲି ।୧୪।

ଶ୍ଲୋକଃ ।

* ସ୍ୱୟମେବାତ୍ମନାତ୍ମାନଂ, ବେତ୍ଥ ତ୍ୱଂ ପୁରୁଷୋତ୍ତମ ।
ଭୂତଭାବନ ଭୂତେଶ, ଦେବଦେବ ଜଗତ୍ପତେ । ୧୫ ।

ଅନ୍ୱୟଃ ।

ହେ ପୁରୁଷୋତ୍ତମ !, ହେ ଭୂତଭାବନ !, ହେ ଭୂତେଶ !, ହେ ଦେବଦେବ !, ହେ ଜଗତ୍ପତେ !, ତ୍ୱଂ ଆତ୍ମାନଂ ଆତ୍ମନା ସ୍ୱୟଂ ଏବ ବେତ୍ଥ । ୧୫ ।

ଟୀକା ।

କିଂ ତର୍ହି । ସ୍ୱୟମିତି । ସ୍ୱୟମେବ ତ୍ୱମାତ୍ମାନଂ ବେତ୍ଥ ଜାନାସି ନାନ୍ୟଃ, ତଦପ୍ୟାତ୍ମନା ସ୍ୱେନୈବ ବେତ୍ଥ, ନ ସାଧନାନ୍ତରେଣ । ଅତ୍ୟାଦରେଣ ବହୁଧା ସମ୍ବୋଧୟତି । ହେ ପୁରୁଷୋତ୍ତମ ! ପୁରୁଷୋତ୍ତମତ୍ୱେ ହେତୁଗର୍ଭସମ୍ବୋଧନାନି, ହେ ଭୂତଭାବନ ଭୂତୋତ୍ପାଦକ ! ଭୂତାନାମୀଶ ନିୟନ୍ତଃ !, ଦେବାନାମାଦିତ୍ୟାଦୀନାଂ ଦେବ ପ୍ରକାଶକ ! ଜଗତଃପତେ, ବିଶ୍ୱପାଳକ ! । ୧୫ ।

ପଦବ୍ୟାଖ୍ୟା ।

ସ୍ୱୟଂ—ନିଜେ, ଏବ—କେବଳ, ବେତ୍ଥ—ଜାଣନ୍ତି, ତ୍ୱଂ—ଆପଣ, ପୁରୁଷୋତ୍ତମ—ହେ ପୁରୁଷଶ୍ରେଷ୍ଠ !, ଭୂତଭାବନ—ହେ ଭୂତ ଉତ୍ପାଦକ ! ଭୂତେଶ—ହେ ଜଗତ ନିୟାମକ !, ଦେବଦେବ—ହେ ଦେବପୂଜ୍ୟ !, ଜଗତ୍ପତେ —ହେ ଜଗତ୍ପାଳକ । ୧୫ ।

ଅନୁବାଦ ।

ହେ ପୁରୁଷୋତ୍ତମ ! ହେ ଭୂତଭାବନ ! ହେ ଭୂତେଶ ! ହେ ଦେବଦେବ ! ହେ ଜଗତ୍ପତେ ! ଆପଣ, ନିଜେ କେବଳ ଆପଣାଦ୍ୱାରା ଆପଣାକୁ ଜାଣନ୍ତି । ୧୫ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ ଅତ୍ୟନ୍ତ ଆଦରରେ ଶ୍ରୀଭଗବାନଙ୍କୁ ସମ୍ବୋଧନ କଲେ, ହେ ପୁରୁଷୋତ୍ତମ ! ଅର୍ଥାତ୍ ହେ ପୁରୁଷ ଶ୍ରେଷ୍ଠ ! ଆପଣ ନିଜେ ଆପଣାକୁ ଜାଣନ୍ତି । କାହାରଠାରୁ ଉପଦେଶ ପ୍ରାପ୍ତ ହୋଇ ଅଥବା କୌଣସି ପ୍ରକାରରେ ସାଧନ ଅଭ୍ୟାସ କରି, ଯେ ଆପଣାକୁ ଆପଣ ଜାଣନ୍ତି, ତାହା ନୁହେ, କାହିଁକ ନା ଆପଣ ସମସ୍ତ ପୁରୁଷଙ୍କଠାରୁ ଶ୍ରେଷ୍ଠ ଅଟନ୍ତି, ଆପଣଙ୍କୁ ଆଉ ଉପଦେଶ ଦେବ କିଏ ? ଏବଂ ଆପଣ ବା ଆଉ କେଉଁ ପୁରୁଷର ଆରାଧନାଦି ସାଧନ କରିବେ ? ତେବେ ଆପଣ ଆପଣାକୁ ଜାଣିଲେ କିପରି ? ନା ଆପଣାଦ୍ୱାରା, ଅର୍ଥାତ୍ ନିଜସ୍ୱରୂପ ଅନୁଭବଦ୍ୱାରା ଆପଣାକୁ ଜାଣିଲେ । ପରଂବ୍ରହ୍ମ ଭିନ୍ନ, ତାହା ଆଉ କାହାର ଜାଣିବାର କ୍ଷମତା ନାହିଁ ।

ଶ୍ରୀଭଗବାନ୍, ଯେ ସର୍ବ ପୁରୁଷାପେକ୍ଷା ଶ୍ରେଷ୍ଠ, ତାହା ପରବର୍ତ୍ତୀ ସମ୍ବୋଧନମାନଙ୍କଦ୍ୱାରା ଅର୍ଜ୍ଜୁନ, ସଙ୍କେତରେ ପ୍ରକାଶ କରୁଅଛନ୍ତି ।

Digitized by PPRACHIN, SOA

ହେ ଭୂତଭାବନ! ଅର୍ଥାତ୍ ହେ ସମସ୍ତ ଭୂତ ଉତ୍ପାଦକ! ହେ ଭୂତେଶ! ଅର୍ଥାତ୍ ହେ ଭୂତଗଣର ନିୟାମକ ବା ଶାସନକାରିନ୍, ହେ ଦେବଦେବ ! ଅର୍ଥାତ୍ ବ୍ରହ୍ମା, ରୁଦ୍ର ଓ ଇନ୍ଦ୍ରାଦି ସକଳ ଦେବତାଙ୍କର ପୂଜନୀୟ । ପୁଣି ହେ ଜଗତ୍ପତେ! ଅର୍ଥାତ୍ ସର୍ବ ଜଗତର ପାଳକ!, ଉପରୋକ୍ତ ସମ୍ବୋଧନମାନଙ୍କରୁ ସହଜରେ ଜଣା ଯାଉଅଛି, ଯେ ଏପରି ଗୁଣ ଆଉ କୌଣସି ପୁରୁଷଙ୍କର ନାହିଁ, ସୁତରାଂ ଭଗବାନ୍, ଯେ ପୁରୁଷଶ୍ରେଷ୍ଠ ଏବଂ ସେ, ଯେ କାହାଠାରୁ ଉପଦେଶ ନ ପାଇ ଓ କୌଣସି ପୁରୁଷଙ୍କର ଆରାଧନା ସାଧନ ନ କରି ଆତ୍ମତତ୍ତ୍ୱ ଅବଗତ ହେବେ, ସେଥିରେ ଆଉ ସନ୍ଦେହ କଅଣ ଅଛି ? । ୧୫ ।

ଶ୍ଳୋକଃ ।

ବକ୍ତୁମର୍ହସ୍ୟଶେଷେଣ, ଦିବ୍ୟା ହ୍ୟାତ୍ମବିଭୂତୟଃ ।
ଯାଭିର୍ବିଭୂତିଭିର୍ଲୋକାନିମାଂସ୍ତ୍ୱଂ ବ୍ୟାପ୍ୟ ତିଷ୍ଠସି । ୧୬ ।

ଅନ୍ୱୟଃ ।

ଦିବ୍ୟାଃ ଆତ୍ମବିଭୂତୟଃ ତ୍ୱଂ ଅଶେଷେଣ ବକ୍ତୁଂ ଅର୍ହସି , ଯାଭିଃ ବିଭୂତିଭିଃ ତ୍ୱଂ ଇମାନ୍ ଲୋକାନ୍ ବ୍ୟାପ୍ୟ ତିଷ୍ଠସି । ୧୬ ।

ଟୀକା ।

ଯସ୍ମାଦେବମାତ୍ମବ୍ୟକ୍ତିଂ ତ୍ୱମେବ ବେତ୍ସି ନ ଦେବାଦୟସ୍ତସ୍ମାଦ୍ବକ୍ତୁମିତି । ଯା ଆତ୍ମନସ୍ତବ ଦିବ୍ୟା ଅଦ୍ଭୁତା ବିଭୂତୟସ୍ତାଃ ସର୍ବା ବକ୍ତୁଂ ତ୍ୱମେବାର୍ହସି, ଯୋଗ୍ୟୋଽସି, ଯାଭିରିତ ବିଭୂତୀନାଂ ବିଶେଷଣଂ ସ୍ପଷ୍ଟାର୍ଥଂ । ୧୬ ।

ପଦବ୍ୟାଖ୍ୟା ।

ବକ୍ତୁଂ—କହିବାକୁ, ଅର୍ହସି—ଯୋଗ୍ୟ ଅଟନ୍ତି, ଅଶେଷେଣ—ନିଃଶେଷରୂପରେ, ଦିବ୍ୟାଃ—ଅଦ୍ଭୁତ, ହି—ନିଶ୍ଚୟ, ଆତ୍ମବିଭୂତୟଃ—ନିଜର ଗୁଣ ଓ ଶକ୍ତି ସବୁ, ଯାଭିଃ ବିଭୂତିଭିଃ—ଯେଉଁ ସବୁ ବିଭୂତିଦ୍ୱାରା, ଲୋକାନ୍ ଇମାନ୍—ଏହି (ସ୍ୱର୍ଗାଦି) ଲୋକମାନଙ୍କୁ, ତ୍ୱଂ—ଆପଣ, ବ୍ୟାପ୍ୟ—ବ୍ୟାପି କରି, ତିଷ୍ଠସି—ସ୍ଥିତ ଅଛନ୍ତି । ୧୬ ।

ଅନୁବାଦ ।

ଆପଣ, ଯେଉଁ ସବୁ ବିଭୂତିଦ୍ୱାରା ଏହି ସ୍ୱର୍ଗାଦି ଲୋକମାନଙ୍କୁ ବ୍ୟାପି ରହିଅଛନ୍ତି, ସେହି ସବୁ ଅଦ୍ଭୁତ ଆତ୍ମବିଭୂତି ସମ୍ପୂର୍ଣ୍ଣରୂପେ ବର୍ଣ୍ଣନ କରନ୍ତୁ । ୧୬ ।

ବିଶଦବ୍ୟାଖ୍ୟା ।

ଅର୍ଜୁନ କହୁଅଛନ୍ତି, ହେ ଭଗବନ୍ ! ଆପଣଙ୍କ ବିଭୂତି ଭିନ୍ନ, ଜଗତରେ ଆଉ କିଛି ସ୍ୱତନ୍ତ୍ର ପଦାର୍ଥ ନାହିଁ, ଏବଂ ଆପଣଙ୍କ ଭିନ୍ନ, ସେହି ସବୁ ବିଭୂତି ବିଷୟ, ଆଉ କେହି ସମ୍ପୂର୍ଣ୍ଣରୂପେ ଜାଣନ୍ତି ନାହିଁ; ଆପଣ ସର୍ବଜ୍ଞ ଓ ସର୍ବବ୍ୟାପକ, ଅତଏବ ଆପଣ, ଯେଉଁ ବିଭୂତିଦ୍ୱାରା ସମସ୍ତ ଜଗତକୁ ବ୍ୟାପି ରହିଅଛନ୍ତି, ସେହି ଆଶ୍ଚର୍ଯ୍ୟ ବିଭୂତି, ସମ୍ପୂର୍ଣ୍ଣରୂପେ ମତେ ବୁଝାଇ ଦେବା ହେଉନ୍ତୁ । ୧୬ ।

Digitized by PPRACHIN, SOA

ଶ୍ଳୋକଃ ।

କଥଂ ବିଦ୍ୟାମହଂ ଯୋଗିଂସ୍ତ୍ୱାଂ ସଦା ପରିଚିନ୍ତୟନ୍ ।
କେଷୁ କେଷୁ ଚ ଭାବେଷୁ, ଚିନ୍ତ୍ୟୋଽସି ଭଗବନ୍ ମୟା । ୧୭ ।

ଅନ୍ୱୟଃ ।

ହେ ଯୋଗିନ୍ ! ତ୍ୱାଂ ସଦା ପରିଚିନ୍ତୟନ୍ ଅହଂ କଥଂ ବିଦ୍ୟାଂ, ହେ ଭଗବନ୍ ! କେଷୁ କେଷୁ ଚ ଭାବେଷୁ ମୟା ଚିନ୍ତ୍ୟଃ ଅସି । ୧୭ ।

ଟୀକା ।

କଥନପ୍ରୟୋଜନଂ ଦର୍ଶୟନ୍ ପ୍ରାର୍ଥୟତେ, କଥମିତି ଦ୍ୱାଭ୍ୟାଂ । ହେ ଯୋଗିନ୍ ! କଥଂ କୈର୍ବିଭୂତିଭେଦୈଃ ସଦା ପରିଚିନ୍ତୟନ୍ନହଂ ତ୍ୱାଂ ବିଦ୍ୟାଂ ଜାନୀୟାଂ ନନୁ ଚେତନାଚେତନେଷୁ ଚିନ୍ତ୍ୟୋଽସି ତ୍ୱଂ କେଷୁ କେଷୁ ପଦାର୍ଥେଷୁ ମୟା ଚିନ୍ତନୀୟୋଽସି । ୧୭ ।

ପଦବ୍ୟାଖ୍ୟା ।

କଥଂ—କିପରି, ବିଦ୍ୟାଂ—ଜାଣିପାରିବି, ଅହଂ—ମୁଁ, ଯୋଗିନ୍—ହେ ଜ୍ଞାନୈଶ୍ୱର୍ଯ୍ୟଶକ୍ତିସମ୍ପନ୍ନ ! ତ୍ୱାଂ—ଆପଣଙ୍କୁ, ସଦା—ସର୍ବଦା, ପରିଚିନ୍ତୟନ୍—ଧ୍ୟାନ କରି, କେଷୁ କେଷୁ ଚ ଭାବେଷୁ—କେଉଁ କେଉଁ ପଦାର୍ଥମାନଙ୍କରେ, ଚିନ୍ତ୍ୟଃ ଅସି—ତୁମ୍ଭଙ୍କୁ ଚିନ୍ତା କରିବି, ଭଗବନ୍—ହେ ଶ୍ରୀକୃଷ୍ଣ !, ମୟା—ମୁଁ । ୧୭ ।

ଅନୁବାଦ ।

ହେ ଯୋଗିନ୍ ! ମୁଁ ସର୍ବଦା କିପରି ଚିନ୍ତା କଲେ, ଆପଣଙ୍କୁ ଜାଣି ପାରିବି ? ଆଉ କେଉଁ୨ ପଦାର୍ଥରେ ମୁଁ ଆପଣଙ୍କୁ ଧ୍ୟାନ କରିବି ? । ୧୭ ।

ବିଶଦବ୍ୟାଖ୍ୟା ।

ଅର୍ଜୁନ କହୁଅଛନ୍ତି, ହେ ଯୋଗିନ୍ ! ଅର୍ଥାତ୍ ହେ ଅନନ୍ତଜ୍ଞାନ ଓ ଅନନ୍ତ ଐଶ୍ୱର୍ଯ୍ୟଯୁକ୍ତ ପୁରୁଷ ! ଆପଣଙ୍କର ବିଭୂତି ଅନନ୍ତ, ଆପଣ କେଉଁ ଭାବରେ କେଉଁ ଠାରେ ବିରାଜିତ ଅଛନ୍ତି, ତାହା ନିଶ୍ଚୟ କରିବା ମୋହପରି କ୍ଷୁଦ୍ର ଶକ୍ତିଯୁକ୍ତ ବ୍ୟକ୍ତିର ଅସମ୍ଭବ । ଅତଏବ ହେ ଭଗବନ୍ ! * ଅନୁଗ୍ରହ କରି କିପରି ଚିନ୍ତାଦ୍ୱାରା ଏବଂ କେଉଁ କେଉଁ ପଦାର୍ଥରେ ଚିନ୍ତା କଲେ, ଆପଣଙ୍କୁ ଜାଣି ପାରିବି, ତାହା ମୋତେ କହିବା ହେଉନ୍ତୁ, କାହିଁକି ନା ଆପଣ ସର୍ବଜ୍ଞ, ଆପଣଙ୍କ ଭିନ୍ନ, ମତେ ଆଉ ଏ ପ୍ରଶ୍ନର ଉତ୍ତର କିଏ ଦେବ ? । ୧୭ ।

ଶ୍ଳୋକଃ ।

ବିସ୍ତରେଣାତ୍ମନୋ ଯୋଗଂ, ବିଭୂତିଂ ଚ ଜନାର୍ଦ୍ଦନ ।
ଭୂୟଃ କଥୟ ତୃପ୍ତିର୍ହି, ଶୃଣ୍ୱତୋ ନାସ୍ତି ମେଽମୃତଂ । ୧୮ ।

---

* ଯେ ଉତ୍ପତ୍ତି, ବିନାଶ, ଜୀବମାନଙ୍କର ଶୁଭ ଓ ଅଶୁଭଫଳ, ଏବଂ ବିଦ୍ୟା ଓ ଅବିଦ୍ୟା ଜାଣନ୍ତି, ସେ ଭଗବାନ୍ ଅର୍ଥାତ୍ ସର୍ବଜ୍ଞ, ଯଥା ।—ଉତ୍ପତ୍ତିଂ ଚ ବିନାଶଂ ଚ ଭୂତାନାଂ ଚ ଗତାଗତଂ । ବେତ୍ତି ବିଦ୍ୟାମବିଦ୍ୟାଂ ଚ ସବାଚ୍ୟୋ ଭଗବାନିତି । ଅଥବା—ଭଗ = ଷଡ଼୍ ପ୍ରକାର ଐଶ୍ୱର୍ଯ୍ୟ; ଯଥା;—ଐଶ୍ୱର୍ଯ୍ୟସ୍ୟ ସମଗ୍ରସ୍ୟ ବୀର୍ଯ୍ୟସ୍ୟ ଯଶସଃ ଶ୍ରିୟଃ । ଜ୍ଞାନବୈରାଗ୍ୟୟୋଶ୍ଚୈବ ଷଣ୍ଣାଂ ଭଗ ଇତୀରଣା । ଅର୍ଥାତ୍ ସମଗ୍ର ଐଶ୍ୱର୍ଯ୍ୟ, ବୀର୍ଯ୍ୟ, ଯଶ, ଶ୍ରୀ, ଜ୍ଞାନ ଓ ବୈରାଗ୍ୟ, ଏ ଛଅଟିକୁ 'ଭଗ' ବୋଲାଯାଏ । ଏ ଛଅଗୁଣ ଯାହାଙ୍କର ଅଛି, ତାଙ୍କୁ ଭଗବାନ୍ ବୋଲାଯାଏ ।

Digitized by PPRACHIN, SOA

### ଅନ୍ୱୟଃ ।

ହେ ଜନାର୍ଦ୍ଦନ ! ଆତ୍ମନଃ ଯୋଗଂ ଚ ବିଭୂତିଂ ବିସ୍ତରେଣ ଭୂୟଃ କଥୟ, ହି ଅମୃତଂ ଶୃଣ୍ୱତଃ ମମ ତୃପ୍ତିଃ ନାସ୍ତି । ୧୮ ।

### ଟୀକା ।

ତଦେବ ବହୁର୍ମୁଖେଽପି ତତ୍ରେ ତତ୍ର ତତ୍ର ବିଭୂତିଭେଦେନ ଚିନ୍ତିତ୍ରେବ ଯଥା ଭବେତ୍ତଥା ବିସ୍ତରେଣ କଥୟେତ୍ୟାହ, ବିସ୍ତରେଣେତି । ଆତ୍ମନସ୍ତବ ଯୋଗଂ ସର୍ବଜ୍ଞତ୍ୱ-ସର୍ବଶକ୍ତିତ୍ୱାଦିଲକ୍ଷଣଂ ଯୋଗୈଶ୍ୱର୍ଯ୍ୟଂ ବିଭୂତିଂ ଚ ବିସ୍ତରେଣ ପୁନଃ କଥୟ, ଯତସ୍ତବ ବାକ୍ୟମମୃତରୂପଂ ଶୃଣ୍ୱତୋମମ ତୃପ୍ତି ରଳଂବୁଦ୍ଧିର୍ନାସ୍ତି । ୧୮ ।

### ପଦବ୍ୟାଖ୍ୟା ।

ବିସ୍ତରେଣ—ବିସ୍ତାରରୂପରେ, ଆତ୍ମନଃ—ଆପଣଙ୍କର, ଯୋଗଂ—ଶକ୍ତି ଐଶ୍ୱର୍ଯ୍ୟ ଓ ଜ୍ଞାନାଦିକୁ, ବିଭୂତିଂ ଚ—ବିଭୂତିକୁ ମଧ୍ୟ, ଜନାର୍ଦ୍ଦନ—ହେ ଜନମନୋରଥପୂରକ !, ଭୂୟଃ—ପୁନର୍ବାର, କଥୟ—କହିବା ହେଉନ୍ତୁ, ତୃପ୍ତିଃ—ଶ୍ରବଣେଚ୍ଛାନିବୃତ୍ତି, ହି—ଯେହେତୁ, ଶୃଣ୍ୱତଃ—ଶ୍ରବଣକାରୀ, ନାସ୍ତି—ନାହିଁ, ମେ—ମୋହର, ଅମୃତଂ—ଅମୃତସଦୃଶ ବାକ୍ୟ । ୧୮ ।

### ଅନୁବାଦ ।

ହେ ଜନାର୍ଦ୍ଦନ ! ଆପଣଙ୍କର ଯୋଗ ଓ ବିଭୂତିକୁ ପୁନର୍ବାର ବିସ୍ତାରିତରୂପେ ବର୍ଣ୍ଣନ କରନ୍ତୁ । କାହିଁକି ନା ଆପଣଙ୍କର ଅମୃତମୟ ବଚନ ଶୁଣି, ମୋହର ତୃପ୍ତି ହେଉନାହିଁ ।୧୮।

### ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ କହୁଅଛନ୍ତି, ହେ ଜନାର୍ଦ୍ଦନ ! (ଜନୈରର୍ଦ୍ଦ୍ୟତେ ପ୍ରାର୍ଥ୍ୟତେ ମନୋରଥପୂରଣାର୍ଥଂ) ଆପଣଙ୍କୁ ଜନମାନେ ଆପଣା ୨ର ଅଭିଳାଷ ପୂରଣ ନିମିତ୍ତ ପ୍ରାର୍ଥନା କରନ୍ତି, ଅତଏବ ମୋହର ଏହି ପ୍ରାର୍ଥନା, ଯେ ଆପଣ ଅନୁଗ୍ରହ କରି ନିଜର ଜ୍ଞାନ, ଐଶ୍ୱର୍ଯ୍ୟ ଓ ଶକ୍ତିରୂପ ଯୋଗକୁ ଏବଂ ଧ୍ୟାନର ଅବଲମ୍ବନସ୍ୱରୂପ ବିଭୂତିକୁ ପୁନର୍ବାର ବିସ୍ତାରିତରୂପେ ବର୍ଣ୍ଣନ କରନ୍ତୁ କାହିଁକି ନା ଉକ୍ତ କଥାଗୁଡିକ ଏପରି ମନୋହର, ଯେ ତାହା ଅନ୍ୟ ବ୍ୟକ୍ତିଙ୍କଠାରୁ ଶୁଣିଲେ ମଧ୍ୟ, ପ୍ରୀତିପ୍ରଦ ହୁଅନ୍ତି, ମାତ୍ର ଆପଣ ନିଜେ ବ୍ୟାଖ୍ୟା କରିବାରୁ ତାହା ଅମୃତପରି ସୁଖକର ବୋଧ ହେଉଅଛି, ସୁତରାଂ ମୋହର ତୃପ୍ତି ହେଉ ନାହିଁ ଅର୍ଥାତ୍ ପୁନଃ ପୁନଃ ଶୁଣିବାକୁ ଇଚ୍ଛା ହେଉଅଛି । ଅତଏବ ସପ୍ତମ, ଅଷ୍ଟମ ଓ ନବମ ଅଧ୍ୟାୟରେ ସଂକ୍ଷେପରେ ବର୍ଣ୍ଣିତ ବିଭୂତି ଯୋଗକୁ ଆପଣ ବିସ୍ତାରିତରୂପେ ପୁନର୍ବାର କହିବା ହେଉନ୍ତୁ । ୧୮ ।

### ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—ହନ୍ତ ତେ କଥୟିଷ୍ୟାମି, ଦିବ୍ୟା ହ୍ୟାତ୍ମବିଭୂତୟଃ ।
ପ୍ରାଧାନ୍ୟତଃ କୁରୁଶ୍ରେଷ୍ଠ, ନାସ୍ତ୍ୟନ୍ତୋ ବିସ୍ତରସ୍ୟ ମେ । ୧୯ ।

### ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ହନ୍ତ ହେ କୁରୁଶ୍ରେଷ୍ଠ ! ମେ ଯାଃ ଦିବ୍ୟାଃ ଆତ୍ମବିଭୂତୟଃ ତାଃ ପ୍ରାଧାନ୍ୟତଃ ତେ କଥୟିଷ୍ୟାମି, ହି ବିସ୍ତରସ୍ୟ ଅନ୍ତଃ ନାସ୍ତି । ୧୯ ।

ଟୀକା ।

ଏବଂ ପ୍ରାର୍ଥିତଃ ସନ୍ ଶ୍ରୀଭଗବାନ୍ ଉବାଚ । ହନ୍ତେତି । ହନ୍ତେତ୍ୟନୁକମ୍ପାସମ୍ବୋଧନେ । ଦିବ୍ୟା ଯା ମଦ୍‌ବିଭୂତୟସ୍ତାଃ ପ୍ରାଧାନ୍ୟେନ ତୁଭ୍ୟଂ କଥୟିଷ୍ୟାମି, ଯତୋ ବୈ ବାନ୍ତରସ୍ୟ ବିଭୂତିବିସ୍ତାରସ୍ୟ ମଦୀୟସ୍ୟାନ୍ତୋ ନାସ୍ତି ଅତଃ ପ୍ରଧାନଭୂତାଃ କତିଚନ୍ଦ୍ୱର୍ଣୟିଷ୍ୟାମି । ୧୯ ।

ପଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ଉବାଚ—ଶ୍ରୀଭଗବାନ୍ କହିଲେ, ହନ୍ତ—ଆହା ( ଦୟାସୂଚକ ସମ୍ବୋଧନ ), ତେ—ତୁମ୍ଭଙ୍କୁ, କଥୟିଷ୍ୟାମି—କହିବୁଁ, ଦିବ୍ୟାଃ—ଅଦ୍ଭୁତ, ହି—ନିଶ୍ଚୟ, ଆତ୍ମବିଭୂତୟଃ—ଆପଣାର ବିଭୂତି ସବୁ, ପ୍ରାଧାନ୍ୟତଃ—ପ୍ରାଧାନ୍ୟରେ କୁରୁଶ୍ରେଷ୍ଠ—ହେ କୁରୁକୁଳପ୍ରଧାନ, ନ ଅସ୍ତି—ନାହିଁ, ଅନ୍ତଃ—ସୀମା—ଇୟତ୍ତା, ବିସ୍ତାରସ୍ୟ—ବିଭୂତିବିସ୍ତାରର, ମେ—ଆମ୍ଭର । ୧୯ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ହେ କୁରୁଶ୍ରେଷ୍ଠ ! ଆମ୍ଭର ବିଭୂତି ବିସ୍ତାରର ଅନ୍ତ ନାହିଁ (ତଥାପି) ପ୍ରଧାନ ୨ ଯେଉଁ ଆତ୍ମବିଭୂତି, ତାହା, ତୁମ୍ଭଙ୍କୁ କହିବା । ୧୯ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍, ଅର୍ଜ୍ଜୁନଙ୍କର ପ୍ରାର୍ଥନାରେ ଦୟାଯୁକ୍ତ ହୋଇ କହିଲେ, ହେ କୁରୁକୁଳଶ୍ରେଷ୍ଠ ! ଆମ୍ଭର ବିଭୂତିକୁ ବିସ୍ତୃତ କରି କହିବାକୁ ଗଲେ ବହୁକାଳରେ ମଧ୍ୟ, ତାହା ସରିବ ନାହିଁ । ତଥାପି, ପ୍ରଧାନ ୨ ଯେଉଁ ବିଭୂତି କଥା ଅଛି, ତାହା ତୁମ୍ଭଙ୍କୁ କହିବା ଅର୍ଥାତ୍ ତୁମ୍ଭେ ଯେଉଁ ୨ ଭାବରେ ଆମ୍ଭଙ୍କୁ ଚିନ୍ତା କରି ଜାଣି ପାରିବ, ସେହି ୨ ଭାବ ଓ ଅନ୍ୟାନ୍ୟ ପ୍ରଧାନ ୨ ଭାବମାନ ତୁମ୍ଭଙ୍କୁ କହିବା । ୧୯ ।

ଶ୍ଲୋକଃ ।

ଅହମାତ୍ମା ଗୁଡ଼ାକେଶ, ସର୍ବଭୂତାଶୟସ୍ଥିତଃ ।
ଅହମାଦିଶ୍ଚ ମଧ୍ୟଞ୍ଚ, ଭୂତାନାମନ୍ତ ଏବ ଚ । ୨୦ ।

ଅନ୍ୱୟଃ ।

ହେ ଗୁଡ଼ାକେଶ ! ଅହଂ ସର୍ବଭୂତାଶୟସ୍ଥିତଃ ଆତ୍ମା ଚ ଅହଂ ଭୂତାନାଂ ଆଦିଃ ଚ ମଧ୍ୟଂ ଚ ଅନ୍ତଃ ଏବ । ୨୦ ।

ଟୀକା ।

ତତ୍ର ପ୍ରଥମମୈଶ୍ୱରଂ ରୂପଂ କଥୟତି, ଅହମିତି । ହେ ଗୁଡ଼ାକେଶ ! ସର୍ବେଷାଂ ଭୂତାନାମାଶୟେଷ୍ୱନ୍ତଃକରଣେଷୁ ସର୍ବଜ୍ଞତ୍ୱାଦିଗୁଣୈର୍ନିୟନ୍ତୃତ୍ୱେନାବସ୍ଥିତଃ ପରମାତ୍ମାହଂ ଆଦିର୍ଜନ୍ମ, ମଧ୍ୟଂ ସ୍ଥିତିଃ, ଅନ୍ତଃ ସଂହାରଃ, ସର୍ବଭୂତାନାଂ ଜନ୍ମାଦିହେତୁସ୍ତାହମେବେତ୍ୟର୍ଥଃ । ୨୦ ।

ପଦବ୍ୟାଖ୍ୟା ।

ଅହଂ—ଆମ୍ଭେ, ଆତ୍ମା—ପରମାତ୍ମା, ଗୁଡ଼ାକେଶ—ହେ ଜିତନିଦ୍ର (ଅର୍ଜ୍ଜୁନ !), ସର୍ବଭୂତାଶୟସ୍ଥିତଃ—ସମସ୍ତ ପ୍ରାଣିମାନଙ୍କର ଅନ୍ତଃକରଣରେ ଅବସ୍ଥିତ, ଅହଂ—ଆମ୍ଭେ, ଆଦିଃ ଚ—ଉତ୍ପତ୍ତିକାରଣ, ମଧ୍ୟଂ ଚ—ସ୍ଥିତି ହେତୁ, ଭୂତାନାଂ—ସମସ୍ତ ଜଗତର, ଅନ୍ତଃ ଏବ ଚ—ନାଶର କାରଣ ମଧ୍ୟ ଅଟୁଁ । ୨୦ ।

Digitized by PPRACHIN, SOA

### ଅନୁବାଦ ।

ହେ ଗୁଡ଼ାକେଶ ! ଅମ୍ଭେ ସର୍ବପ୍ରାଣୀଙ୍କ ଅନ୍ତଃକରଣସ୍ଥିତ ଆତ୍ମା ଓ ଅମ୍ଭେ ସମସ୍ତ ପ୍ରାଣିଙ୍କର ଜନ୍ମ, ସ୍ଥିତି ଓ ମରଣର କାରଣ ଅଟୁଁ । ୨୦ ।

### ବଶଦବାକ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଜିତନିଦ୍ର—ଆଲସ୍ୟହୀନ ଅର୍ଜୁନ ! ଅମ୍ଭେ ପ୍ରାଣିମାନଙ୍କର ଅନ୍ତରାତ୍ମା, ଅର୍ଥାତ୍ ପ୍ରାଣୀ, ଆପଣାକୁ ଆପେ ଚିହ୍ନି ପାରିଲେ, ଆମ୍ଭଙ୍କୁ ଜାଣି ପାରିବେ । ଅମ୍ଭେ ସମସ୍ତ ପ୍ରାଣିଙ୍କର ଆଦି, ମଧ୍ୟ ଓ ଅନ୍ତ ଅଟୁଁ, ଅର୍ଥାତ୍ ପ୍ରାଣିମାନଙ୍କ ଉତ୍ପତ୍ତି, ସ୍ଥିତି ଓ ବିନାଶର କାରଣ ଅଟୁଁ ।

ଫଳକଥା ଏହି କି ମନୁଷ୍ୟ ଆପଣାକୁ ଆପେ ଜାଣିଲେ, ଅଥବା ଆମ୍ଭଙ୍କୁ ଜଗତର ସମସ୍ତ ଘଟନାର ମୂଳକାରଣ ବୋଲି ଜାଣିଲେ, ଆମ୍ଭର ସ୍ୱରୂପ ଅବଗତ ହେବେ । ୨୦ ।

### ଶ୍ଳୋକଃ ।

ଆଦିତ୍ୟାନାମହଂ ବିଷ୍ଣୁର୍ଜ୍ୟୋତିଷାଂ ରବିରଂଶୁମାନ୍ ।
ମରୀଚିର୍ମରୁତାମସ୍ମି, ନକ୍ଷତ୍ରାଣାମହଂ ଶଶୀ । ୨୧ ।

### ଅନ୍ୱୟଃ ।

ଅହଂ ଆଦିତ୍ୟାନାଂ ବିଷ୍ଣୁଃ, ଜ୍ୟୋତିଷାଂ ଅଂଶୁମାନ୍ ରବିଃ, ଅହଂ ମରୁତାଂ ମରୀଚିଃ, ନକ୍ଷତ୍ରାଣାଂ ଶଶୀ (ଚ) ଅସ୍ମି । ୨୧ ।

### ଟୀକା ।

ଇଦାନୀଂ ବିଭୂତୀଃ କଥୟତି, ଆଦିତ୍ୟାନାମିତି ଯାବତ୍ସମାପ୍ତି । ଆଦିତ୍ୟାନାଂ ତୁ ଦ୍ୱାଦଶାଦିତ୍ୟାନାଂ ମଧ୍ୟେ ବିଷ୍ଣୁର୍ନାମାହଂ । ଜ୍ୟୋତିଷାଂ ପ୍ରକାଶକାନାଂ ମଧ୍ୟେ ଅଂଶୁମାନ୍ ବିଶ୍ୱବ୍ୟାପିରଶ୍ମିଯୁକ୍ତୋ ରବିଃ ସୂର୍ଯ୍ୟୋଽହଂ, ମରୁତାଂ ବାୟୂନାଂ ମଧ୍ୟେ ମରୀଚିନାମାହମସ୍ମି, ଯଦ୍ୱା ସପ୍ତମରୁଦ୍ଗଣା ଦେବବିଶେଷାସ୍ତେଷାଂ ମଧ୍ୟେ । ନକ୍ଷତ୍ରାଣାଂ ମଧ୍ୟେ ଚନ୍ଦ୍ରୋଽହଂ, ଅତ୍ର ଆଦିତ୍ୟାନାମହଂ ବିଷ୍ଣୁରିତ୍ୟାଦିଷୁ ପ୍ରାୟଶୋ ନିର୍ଦ୍ଧାରଣେ ଷଷ୍ଠୀ । କ୍ୱଚିତ୍ ଭୂତାନାମସ୍ମି ଚେତନେତ୍ୟାଦିଷୁ ସମ୍ବନ୍ଧେ ଷଷ୍ଠୀ ଇତି ଚନ୍ଦ୍ରୈବ ଦର୍ଶୟିଷ୍ୟାମଃ । ବିଷ୍ଣୁରିତ୍ୟାଦିଷ୍ୱବତାରେଽପି ତ୍ରିବାତଶଦ୍ୟୁମାତ୍ରବିବକ୍ଷୟା ବିଭୂତିତ୍ୱେନ ନିର୍ଦ୍ଦିଶ୍ୟତେ । ଅତଃପରଂ ସ୍ପଷ୍ଟାର୍ଥତ୍ୱେଽପି କ୍ୱଚିତ୍କିଂଚିଦ୍ୱ୍ୟାଖ୍ୟାସ୍ୟାମଃ । ୨୧ ।

### ପଦବ୍ୟାଖ୍ୟା ।

ଆଦିତ୍ୟାନାଂ—ଦ୍ୱାଦଶ ଆଦିତ୍ୟମାନଙ୍କ ମଧ୍ୟରେ, ଅହଂ—ଅମ୍ଭେ, ବିଷ୍ଣୁଃ—ବିଷ୍ଣୁନାମକ ଆଦିତ୍ୟ, ଜ୍ୟୋତିଷାଂ—ପ୍ରକାଶକମାନଙ୍କ ମଧ୍ୟରେ, ରବିଃ—ସୂର୍ଯ୍ୟ, ଅଂଶୁମାନ୍—କିରଣମାଳୀ, ମରୀଚିଃ—ମରୀଚି ନାମକ ବାୟୁ, ମରୁତାଂ—ଉନପଞ୍ଚାଶ ପବନ ମଧ୍ୟରେ ଅଥବା ସପ୍ତ ମରୁଦ୍ଗଣ ମଧ୍ୟରେ, ଅସ୍ମି—ଅଟୁଁ, ନକ୍ଷତ୍ରାଣାଂ—ନକ୍ଷତ୍ରମାନଙ୍କ ମଧ୍ୟରେ, ଅହଂ—ଅମ୍ଭେ, ଶଶୀ—ଚନ୍ଦ୍ର ଅଟୁଁ । ୨୧ ।

### ଅନୁବାଦ ।

ଅମ୍ଭେ ଆଦିତ୍ୟମାନଙ୍କ ମଧ୍ୟରେ ବିଷ୍ଣୁ, ପ୍ରକାଶକମାନଙ୍କ ମଧ୍ୟରେ ଦୀପ୍ତିମାନ୍ ସୂର୍ଯ୍ୟ ଓ ମରୁତମାନଙ୍କ ମଧ୍ୟରେ ମରୀଚି ଏବଂ ନକ୍ଷତ୍ରମାନଙ୍କ ମଧ୍ୟରେ ଚନ୍ଦ୍ର ଅଟୁଁ । ୨୧ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, ଯେ ୧ ଧାତା, ୨ ଅର୍ଯ୍ୟମା, ୩ ମିତ୍ର, ୪ ବରୁଣ, ୫ ଅଂଶୁ, ୬ ଭଗ, ୭ ଇନ୍ଦ୍ର, ୮ ବିବସ୍ୱାନ୍, ୯ ପୂଷା, ୧୦ ପର୍ଜ୍ଜନ୍ୟ, ୧୧ ତ୍ୱଷ୍ଟା ଓ ୧୨ ବିଷ୍ଣୁ ବୋଲି, ଯେ ବାରଗୋଟି ଆଦିତ୍ୟ ଅଛନ୍ତି, ସେମାନଙ୍କ ମଧ୍ୟରେ ବିଷ୍ଣୁନାମା ଆଦିତ୍ୟ ଆମ୍ଭେ ଅଟୁଁ । ଅଗ୍ନି ପ୍ରଭୃତି ଯେତେ ପ୍ରକାଶକ ପଦାର୍ଥ ଅଛନ୍ତି, ସେମାନଙ୍କ ମଧ୍ୟରେ ଆମ୍ଭେ, ସର୍ବ ପ୍ରକାଶର ମୂଳକାରଣ ସୂର୍ଯ୍ୟସ୍ୱରୂପ ଅଟୁଁ । ସେହିପରି ୪୯ ବାୟୁ ମଧ୍ୟରେ ଅଥବା ସପ୍ତ ମରୁଦ୍‌ଗଣ ମଧ୍ୟରେ ଆମ୍ଭେ ମରୀଚି ନାମା ବାୟୁ ଅଟୁଁ ଓ ଅଶ୍ୱିନୀ ଆଦି ସପ୍ତବିଂଶତି ନକ୍ଷତ୍ରମାନଙ୍କ ମଧ୍ୟରେ ନକ୍ଷତ୍ରାଧିପତି ଚନ୍ଦ୍ର ସ୍ୱରୂପ ଅଟୁଁ, ଅଥବା ମୃଗଶିର ନକ୍ଷତ୍ର ଅଟୁଁ । (ନକ୍ଷତ୍ରାଭିଧାନରେ ମୃଗଶିର ନକ୍ଷତ୍ରର, ଯେତେ ନାମ ଅଛି, ସେ ସବୁ ପ୍ରାୟ ଚନ୍ଦ୍ରଙ୍କର ନାମ, ଯଥା—ସୌମ୍ୟୋମୃଗଶିର ସୋମୋ, ନିଶାନାଥୋନିଶାପତିଃ) ।

ଫଳକଥା ଏହି କି ଯେଉଁ ପଦାର୍ଥ ମଧ୍ୟରେ, ଯାହା ସର୍ବଶ୍ରେଷ୍ଠ, ଶ୍ରୀଭଗବାନଙ୍କର ବିଭୂତି ପ୍ରଧାନରୂପରେ ସେହିଠାରେ ପ୍ରକାଶିତ । ଅନ୍ୟାନ୍ୟ ପ୍ରକାଶକ, ବାୟୁ ଓ ନକ୍ଷତ୍ରରେ, ଯେ ଭଗବାନଙ୍କର ବିଭୂତି ନାହିଁ, ତାହା ନୁହେଁ, ଏ ଶ୍ଳୋକ ଲିଖିତ ବିଷ୍ଣୁ, ରବି, ମରୀଚି ଓ ଚନ୍ଦ୍ର ପ୍ରଭୃତି, କେବଳ ବିଭୂତିର ପ୍ରାଧାନ୍ୟ ବର୍ଣ୍ଣନପାଇଁ ଉଲ୍ଲେଖ କରି ହୋଇଅଛି । ବିଶେଷତଃ ଶ୍ରୀଭଗବାନ୍ କହିଅଛନ୍ତି, ଯେ 'ଆମ୍ଭର ପ୍ରଧାନ ବିଭୂତି ତୁମ୍ଭଙ୍କୁ କହିବା' । ୨୧ ।

ଶ୍ଳୋକଃ ।

ବେଦାନାଂ ସାମବେଦୋଽସ୍ମି, ଦେବାନାମସ୍ମି ବାସବଃ ।
ଇନ୍ଦ୍ରିୟାଣାଂ ମନଶ୍ଚାସ୍ମି, ଭୂତାନାମସ୍ମି ଚେତନା । ୨୨ ।

ଅନ୍ୱୟଃ ।

(ଅହଂ) ବେଦାନାଂ ସାମବେଦଃ ଅସ୍ମି, ଦେବାନାଂ ବାସବଃ ଅସ୍ମି, ଇନ୍ଦ୍ରିୟାଣାଂ ଚ ମନଃ ଅସ୍ମି, ଭୂତାନାଂ ଚେତନା ଅସ୍ମି । ୨୨ ।

ଟୀକା ।

ବେଦାନାମିତି । ବାସବଃ ଇନ୍ଦ୍ରଃ, ଭୂତାନାଂ ସମ୍ବନ୍ଧିନୀ ଚେତନା ଜ୍ଞାନଶକ୍ତିରହମସ୍ମି । ୨୨ ।

ପଦବ୍ୟାଖ୍ୟା ।

ବେଦାନାଂ—ବେଦମାନଙ୍କ ମଧ୍ୟରେ, ସାମବେଦଃ ଅସ୍ମି—ସାମବେଦ ଅଟୁଁ, ଦେବାନାଂ—ଦେବତାମାନଙ୍କ ମଧ୍ୟରେ ଅସ୍ମି—ଅଟୁଁ, ବାସବଃ—ଇନ୍ଦ୍ର, ଇନ୍ଦ୍ରିୟାଣାଂ—ଇନ୍ଦ୍ରିୟମାନଙ୍କ ମଧ୍ୟରେ, ମନଃ ଚ ଅସ୍ମି—ମନ ଅଟୁଁ, ଭୂତାନାଂ—ପ୍ରାଣିମାନଙ୍କର, ଅସ୍ମି—ଅଟୁଁ, ଚେତନା—ଜ୍ଞାନଶକ୍ତି । ୨୨ ।

ଅନୁବାଦ ।

ଆମ୍ଭେ ବେଦମାନଙ୍କ ମଧ୍ୟରେ ସାମବେଦ, ଦେବତାମାନଙ୍କ ମଧ୍ୟରେ ଇନ୍ଦ୍ର, ଇନ୍ଦ୍ରିୟମାନଙ୍କ ମଧ୍ୟରେ ମନ ଓ ପ୍ରାଣିମାନଙ୍କର ଚେତନା ଶକ୍ତି ଅଟୁଁ । ୨୨ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଯଦ୍ୟପି ଋକ୍, ଯଜୁଃ ଓ ଅଥର୍ବ ବେଦ ଭଗବାନଙ୍କର ବିଭୂତି, (ଅର୍ଥାତ୍ ଶକ୍ତି) ତଥାପି, ସ୍ତୁତି ଓ ସ୍ୱର ମାଧୁର୍ଯ୍ୟ ଥିବାରୁ ସାମବେଦରେ ତାଙ୍କର ବିଶେଷ ବିଭୂତି ପ୍ରକାଶିତ । ଅଗ୍ନି, ଯମ ଓ ବରୁଣାଦି ଦେବତାମାନଙ୍କଠାରେ ବିଭୂତିର ଅଭାବ ନ ଥିଲେ ସୁଦ୍ଧା, ଇନ୍ଦ୍ର ଶତକ୍ରତୁ ଓ ଦେବରାଜ ଥିବାରୁ ତାଙ୍କଠାରେ ପରମେଶ୍ୱରଙ୍କର ବିଭୂତି ପ୍ରଧାନରୂପରେ ପ୍ରକାଶିତ । ମନ, କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟମାନଙ୍କର ଚାଳକ, ଅତଏବ ଭଗବାନଙ୍କର ବିଭୂତି, ସେହି ମନଃ ସ୍ୱରୂପରେ ପ୍ରକାଶିତ । ପ୍ରାଣିମାନଙ୍କର ଚେତନା ଅର୍ଥାତ୍ ଜ୍ଞାନଶକ୍ତି ନ ଥିଲେ, ଜଡ଼ ଦେହଦ୍ୱାରା କୌଣସି କାର୍ଯ୍ୟହିଁ ସାଧିତ ହୁଅନ୍ତା ନାହିଁ, ଅତଏବ ପରମେଶ୍ୱରଙ୍କ ବିଭୂତି ସେହି ଚେତନାରୂପରେ ପ୍ରାଣି ଦେହରେ ପ୍ରକାଶିତ ।

ଫଳକଥା ଏହି ଯେ ବିଭୁଙ୍କ ବିଭୂତିର ବିଶେଷ ବିକାଶ ହେତୁରୁ, ବେଦ ମଧ୍ୟରେ ସାମ, ଦେବ ମଧ୍ୟରେ ଇନ୍ଦ୍ର, ଇନ୍ଦ୍ରିୟ ମଧ୍ୟରେ ମନ ଓ ପ୍ରାଣିଦେହରେ ଚେତନା ପ୍ରଧାନ ହୋଇଅଛନ୍ତି । ୨୨ ।

ଶ୍ଲୋକଃ ।

ରୁଦ୍ରାଣାଂ ଶଙ୍କରଶ୍ଚାସ୍ମି, ବିତ୍ତେଶୋ ଯକ୍ଷରକ୍ଷସାଂ ।
ବସୂନାଂ ପାବକଶ୍ଚାସ୍ମି, ମେରୁଃ ଶିଖରିଣାମହଂ । ୨୩ ।

ଅନ୍ୱୟଃ ।

ରୁଦ୍ରାଣାଂ ଶଙ୍କରଃ ଅସ୍ମି ଚ ଯକ୍ଷରକ୍ଷସାଂ ବିତ୍ତେଶଃ, ବସୂନାଂ ପାବକଃ ଚ ଶିଖରିଣାଂ ମେରୁଃ ଅସ୍ମି । ୨୩ ।

ଟୀକା ।

ରୁଦ୍ରାଣାମିତି । ରକ୍ଷସାମପି କ୍ରୂରତ୍ୱାଦିସାମ୍ୟାତ୍ ଯକ୍ଷୈଃ ସହୈକୀକୃତ୍ୟ ନିର୍ଦ୍ଦେଶଃ, ତେଷାଂ ମଧ୍ୟେ ବିତ୍ତେଶଃ କୁବେରୋଽସ୍ମି, ପାବକୋଽଗ୍ନିଃ, ଶିଖରିଣାଂ ଶିଖରବତାମୁଚ୍ଛ୍ରିତାନାଂ ମଧ୍ୟେ ମେରୁଃ । ୨୩ ।

ପଦବ୍ୟାଖ୍ୟା ।

ରୁଦ୍ରାଣାଂ—ରୁଦ୍ରମାନଙ୍କ ମଧ୍ୟରେ, ଶଙ୍କରଃ ଚ ଅସ୍ମି—ଶଙ୍କର ଅର୍ଥାତ୍ ଶିବ ଅଟେଁ, ବିତ୍ତେଶଃ—ଧନାଧ୍ୟକ୍ଷ—କୁବେର, ଯକ୍ଷରକ୍ଷସାଂ—ଯକ୍ଷ ଓ ରାକ୍ଷସମାନଙ୍କ ମଧ୍ୟରେ, ବସୂନାଂ—ଅଷ୍ଟବସୁ ମଧ୍ୟରେ, ପାବକଃ ଚ ଅସ୍ମି—ଅଗ୍ନି ଅଟେଁ, ମେରୁଃ—ସୁମେରୁ ପର୍ବତ, ଶିଖରିଣାଂ—ପର୍ବତମାନଙ୍କ ମଧ୍ୟରେ, ଅହଂ—ଅମ୍ଭେ । ୨୩ ।

ଅନୁବାଦ ।

ଅମ୍ଭେ ରୁଦ୍ରମାନଙ୍କ ମଧ୍ୟରେ ଶଙ୍କର, ଯକ୍ଷ ଓ ରାକ୍ଷସମାନଙ୍କ ମଧ୍ୟରେ କୁବେର, ବସୁମାନଙ୍କ ମଧ୍ୟରେ ଅଗ୍ନି ଓ ପର୍ବତମାନଙ୍କ ମଧ୍ୟରେ ସୁମେରୁ ଅଟୁଁ । ୨୩ ।

ବିଶଦବ୍ୟାଖ୍ୟା ।

ରୁଦ୍ରମାନଙ୍କ ମଧ୍ୟରେ ଶଙ୍କରଙ୍କ*ଠାରେ ଭଗବତ୍ ବିଭୂତି ବିଶେଷରୂପେ ପ୍ରକଟିତ

* ରୁଦ୍ରଙ୍କର ଅନେକ ନାମ ଅଛି, ତାହା ମଧ୍ୟରୁ ଶିବଦ୍ୱାଦଶ ନାମରେ ଯେଉଁ ନାମ ଅଛି, ତାହା ଏହି; ଯଥା,—୧ ମହାଦେବ, ୨ ମହେଶ୍ୱର, ୩ ଶଙ୍କର, ୪ ବୃଷଭଧ୍ୱଜ, ୫ କୃତ୍ତିବାସ, ୬ କାମାଙ୍ଗନାଶନ, ୭ ଦେବଦେବେଶ, ୮ ନୀଳକଣ୍ଠ, ୯ ଈଶ୍ୱର, ୧୦ ପାର୍ବତୀପତି, ୧୧ ରୁଦ୍ର, ୧୨ ଶିବ ।

Digitized by PPRACHIN, SOA

ବୋଲି, ସେ, ନିଜ ଭକ୍ତମାନଙ୍କୁ ମୁକ୍ତି ପ୍ରଦାନ କରିବାରେ ସକ୍ଷମ । କୁବେର ଧନାଧ୍ୟକ୍ଷ ହେତୁରୁ ଯକ୍ଷମାନଙ୍କ ମଧ୍ୟରେ ଶ୍ରେଷ୍ଠ ଓ ଶିବର ସୁହୃତ ହେତୁରୁ ରକ୍ଷମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଭଗବାନ୍‌ଙ୍କ ବିଭୂତି ସେହି କୁବେର ରୂପରେ ପ୍ରକାଶିତ । ଅଷ୍ଟବସୁ† ମଧ୍ୟରେ ତେଜ-ସ୍ୱିତା ଗୁଣରେ ଅଗ୍ନି ପ୍ରଧାନ । ପର୍ବତମାନଙ୍କ ମଧ୍ୟରେ ଉଚ୍ଚତା, ରତ୍ନ ଓ ସୁବର୍ଣ୍ଣମୟାଦି ହେତୁରୁ ମେରୁ ପ୍ରଧାନ । ଭଗବାନଙ୍କ ବିଭୂତି, ସେହି ଅଗ୍ନି ଓ ମେରୁ ରୂପରେ ପ୍ରକାଶିତ ହୋଇ-ଅଛି । ୨୩ ।

## ଶ୍ଳୋକଃ ।

ପୁରୋଧସାଞ୍ଚ ମୁଖ୍ୟଂ ମାଂ, ବିଦ୍ଧି ପାର୍ଥ ବୃହସ୍ପତିଂ ।
ସେନାନୀନାମହଂ ସ୍କନ୍ଦଃ, ସରସାମସ୍ମି ସାଗରଃ । ୨୪ ।

## ଅନ୍ୱୟଃ ।

ହେ ପାର୍ଥ ! ମାଂ ପୁରୋଧସାଂ ମୁଖ୍ୟଂ ବୃହସ୍ପତିଂ ବିଦ୍ଧି, ଅହଂ ସେନାନୀନାଂ ସ୍କନ୍ଦଃ ଚ ସରସାଂ ସାଗରଃ ଅସ୍ମି । ୨୪ ।

## ଟୀକା ।

ପୁରୋଧସାମିତି । ପୁରୋଧସାଂ ମଧ୍ୟେ ଦେବପୁରୋହିତତ୍ୱାନ୍ମୁଖ୍ୟଂ ବୃହସ୍ପତିଂ ମାଂ ବିଦ୍ଧି । ସେନାନୀନାଂ ସେନା-ପତୀନାଂ ମଧ୍ୟେ ଦେବସେନାପତିଃ ସ୍କନ୍ଦୋଽହମସ୍ମି, ସରସାଂ ସ୍ଥିରଜଳାଶୟାନାଂ ମଧ୍ୟେ ସମୁଦ୍ରୋଽସ୍ମି । ୨୪ ।

## ପଦବ୍ୟାଖ୍ୟା ।

ପୁରୋଧସାଂ—ପୁରୋହିତମାନଙ୍କ ମଧ୍ୟରେ, ମୁଖ୍ୟଂ—ପ୍ରଧାନ, ବିଦ୍ଧି—ଜାଣ, ପାର୍ଥ—ହେ ଅର୍ଜ୍ଜୁନ ! ବୃହସ୍ପତିଂ—ଦେବଗୁରୁ. ସେନାନୀନାଂ—ସେନାପତିମାନଙ୍କ ମଧ୍ୟରେ, ଅହଂ—ଅମ୍ଭେ, ସ୍କନ୍ଦଃ—କାର୍ତ୍ତିକେୟ, ସରସାଂ—ସ୍ଥିର-ଜଳାଶୟମାନଙ୍କ ମଧ୍ୟରେ, ଅସ୍ମି—ଅଟୁଁ, ସାଗରଃ—ସମୁଦ୍ର । ୨୪ ।

## ଅନୁବାଦ ।

ହେ ପାର୍ଥ ! ଅମ୍ଭଙ୍କୁ ପୁରୋହିତମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୃହସ୍ପତି ବୋଲି ଜାଣ । ଅମ୍ଭେ, ସେନାପତିମାନଙ୍କ ମଧ୍ୟରେ କାର୍ତ୍ତିକେୟ ଓ ସ୍ଥିର ଜଳାଶୟମାନଙ୍କ ମଧ୍ୟରେ ସମୁଦ୍ର ଅଟୁଁ । ୨୪ ।

## ବିଶଦବ୍ୟାଖ୍ୟା ।

ସମସ୍ତ ରାଜାମାନଙ୍କ ମଧ୍ୟରେ ଦେବରାଜ ଇନ୍ଦ୍ର ଶ୍ରେଷ୍ଠ, ସେହିପରି ରାଜପୁରୋହିତ-ମାନଙ୍କ ମଧ୍ୟରେ, ଦେବରାଜ ପୁରୋହିତ ବୃହସ୍ପତି ଶ୍ରେଷ୍ଠ । ଶ୍ରୀଭଗବାନ୍ କହୁଅଛନ୍ତି,

---

ରୁଦ୍ର ଏଗାରଟି ବୋଲି ସର୍ବତ୍ର ପ୍ରସିଦ୍ଧ ଅଛି, ଏକାଦଶ ରୁଦ୍ରଙ୍କର ନାମ ନାନାଲୋକେ ନାନାପ୍ରକାର କହନ୍ତି, ମାତ୍ର ସେ ସବୁ ନାମରେ 'ଶଙ୍କର' ନାମ ନ ଥିବାରୁ ଏବଂ 'ପ୍ରକୃତିବାଦ' ଅଭିଧାନ ଅନୁସାରେ ସେ ସବୁ ନାମ, ଗଣଦେବତା-ଙ୍କର ଥିବାରୁ ଏ ସ୍ଥଳରେ ତାହା ଉଲ୍ଲେଖ କରିବାର ପ୍ରୟୋଜନ ନାହିଁ । ଉପରଲିଖିତ ଦ୍ୱାଦଶ ନାମ ମଧ୍ୟରୁ ଏକାଦ-ଶରେ 'ରୁଦ୍ର' ଏହି ନାମ ଥିବାରୁ ବୋଧ ହୁଏ 'ଏକାଦଶରୁଦ୍ର' ଏପରି ପ୍ରସିଦ୍ଧ ହୋଇଅଛି ।

† ଅଷ୍ଟବସୁ ଯଥା;—୧ ଦ୍ରୋଣ, ୨ ପ୍ରାଣ, ୩ ଧ୍ରୁବ, ୪ ଅର୍କ, ୫ ଅଗ୍ନି (ପାବକ), ୬ ବାୟୁ, ୭ ବସୁ, ୮ ବିଭାବସୁ ।

Digitized by PPRACHIN, SOA

ହେ ଅର୍ଜୁନ ! ସେହି ବୃହସ୍ପତି ଦେବଗୁରୁ ଆମ୍ଭର ବିଭୂତି ବୋଲି ଜାଣ । ସମସ୍ତ ସେନାପତି ମଧ୍ୟରେ ଦେବସେନାପତି କାର୍ତ୍ତିକେୟ ଶ୍ରେଷ୍ଠ, ସେ, ଆମ୍ଭର ବିଭୂତି । ସମସ୍ତ ଜଳାଶୟ ମଧ୍ୟରେ ସାଗର ପ୍ରଧାନ, ଆମ୍ଭର ବିଭୂତି କେବଳ ସେହି ପ୍ରାଧାନ୍ୟର କାରଣ ଅଟେ । ୨୪ ।

ଶ୍ଳୋକଃ ।

* ମହର୍ଷୀଣାଂ ଭୃଗୁରହଂ, ଗିରାମସ୍ମ୍ୟେକମକ୍ଷରଂ ।
ଯଜ୍ଞାନାଂ ଜପଯଜ୍ଞୋଽସ୍ମି, ସ୍ଥାବରାଣାଂ ହିମାଳୟଃ ।

ଅନ୍ୱୟଃ ।

ଅହଂ ମହର୍ଷୀଣାଂ ଭୃଗୁଃ, ଗିରାଂ ଏକଂ ଅକ୍ଷରଂ ଅସ୍ମି, ଯଜ୍ଞାନାଂ ଜପଯଜ୍ଞଃ, ସ୍ଥାବରାଣାଂ ହିମାଳୟଃ ଅସ୍ମି । । ୨୫ ।

ଟୀକା ।

ମହର୍ଷୀଣାମିତି । ଗିରାଂ ବାଚାଂ ପଦାତ୍ମିକାନାଂ ମଧ୍ୟେ ଏକମକ୍ଷରମୋଙ୍କାରାଖ୍ୟଂ ପଦମସ୍ମି । ୨୫ ।

ପଦବ୍ୟାଖ୍ୟା ।

ମହର୍ଷୀଣାଂ ମହର୍ଷିମାନଙ୍କ ମଧରେ, ଭୃଗୁଃ—ଭୃଗୁନାମା ମହର୍ଷି, ଅହଂ—ଅମ୍ଭେ, ଗିରାଂ—ବାକ୍ୟମାନଙ୍କ ମଧରେ, ଅସ୍ମି—ଅଟୁଁ, ଏକଂ ଅକ୍ଷରଂ—ଏକଅକ୍ଷର ଅର୍ଥାତ୍ ଓଁକାର, ଯଜ୍ଞାନାଂ—ଦ୍ୱାଦଶପ୍ରକାର ଯଜ୍ଞ ମଧରେ, ଜପଯଜ୍ଞଃ ଅସ୍ମି—ଜପଯଜ୍ଞ ଅଟୁଁ, ସ୍ଥାବରାଣାଂ—ଅଚଳ ପଦାର୍ଥମାନଙ୍କ ମଧରେ, ହିମାଳୟଃ—ହିମାଳୟ ନାମକ ପର୍ବତ । ୨୫ ।

ଅନୁବାଦ ।

ଅମ୍ଭେ, ମହର୍ଷିମାନଙ୍କ ମଧ୍ୟରେ ଭୃଗୁ, ବାକ୍ୟ ମଧ୍ୟରେ ଓଁକାର, ଯଜ୍ଞ ମଧ୍ୟରେ ଜପଯଜ୍ଞ ଓ ଅଚଳପଦାର୍ଥମାନଙ୍କ ମଧ୍ୟରେ ହିମାଳୟ ପର୍ବତ ଅଟୁଁ । ୨୫ ।

ବିଶଦବ୍ୟାଖ୍ୟା ।

ଭୃଗୁ ସପ୍ତମହର୍ଷିମାନଙ୍କ * ମଧ୍ୟରେ ଅତି ତେଜସ୍ୱୀ, ସେ, ବିଷ୍ଣୁଙ୍କ ବକ୍ଷସ୍ଥଳରେ ପଦାଘାତ କରିଥିଲେ ବୋଲି ପୁରାଣରେ ପ୍ରସିଦ୍ଧ ଅଛି । ଶ୍ରୀଭଗବାନ୍ କହୁଅଛନ୍ତି, ସେହି ତେଜସ୍ୱୀ ଭୃଗୁ, ଆମ୍ଭର ବିଭୂତି ମାତ୍ର । ଅର୍ଥବୋଧକ ଯେତେପ୍ରକାର ବାକ୍ୟ—ଶବ୍ଦ—ପଦଅଛି ତନ୍ମଧ୍ୟରେ ବ୍ରହ୍ମବୋଧକ ଓଁକାର ସର୍ବଶ୍ରେଷ୍ଠ । ଶ୍ରୀଭଗବାନଙ୍କ ବିଭୂତି ସେହି ଓଁକାରରୂପରେ ବାକ୍ୟ ମଧ୍ୟରେ ପ୍ରକାଶିତ ହୋଇଅଛି । ଅଗ୍ନିଷ୍ଟୋମ ଅଶ୍ୱମେଧାଦି ଯେତେପ୍ରକାର ଯଜ୍ଞଅଛି, ଅଥବା ଚତୁର୍ଥ ଅଧ୍ୟାୟରେ ଯେଉଁ ଦ୍ୱାଦଶପ୍ରକାର ଯଜ୍ଞର ଉଲ୍ଲେଖ କରା ହୋଇଅଛି, ତନ୍ମଧ୍ୟରେ 'ଜପଯଜ୍ଞ' ଅର୍ଥାତ୍ ଶ୍ରୀଭଗବାନଙ୍କ ନାମ ଜପ କରିବାରୂପ ଯଜ୍ଞରେ ପଶୁହିଂସା କିମ୍ବା କାୟକ୍ଲେଶ ଅଥବା ଅର୍ଥବ୍ୟୟାଦି ନଥିବା ଓ ସର୍ବଯଜ୍ଞର ଫଳଠାରୁ ସେ ଯଜ୍ଞର ଫଳ ଉତ୍କୃଷ୍ଟ ଥିବାରୁ ତାହା ଶ୍ରେଷ୍ଠ ଅଟେ । ସେହି ପ୍ରଧାନ ଜପଯଜ୍ଞରେ ପରମେଶ୍ୱରଙ୍କ ବିଭୂତି ପ୍ରକାଶିତ । ପୁଣି ଯେତେପ୍ରକାର ଅଚଳପଦାର୍ଥଅଛି, ତନ୍ମଧ୍ୟରେ ହିମାଳୟ ପ୍ରଧାନ; କାହିଁକି ନା ତାହା

* ସପ୍ତ ମହର୍ଷିମାନଙ୍କର ନାମ ଏହି ଅଧ୍ୟାୟ ଷଷ୍ଠଶ୍ଳୋକର ବିଶଦବ୍ୟାଖ୍ୟାରେ ଦେଖ ।

Digitized by PPRACHIN, SOA

ଅବସ୍ଥିତରେ ସବୁ ଅଚଳ ଅପେକ୍ଷା ବଡ଼, ରତ୍ନମଣ୍ଡିତ, ଔଷଧପୂର୍ଣ୍ଣ ଓ ପତିତପାବନୀ ଗଙ୍ଗାଙ୍କ ଜନ୍ମସ୍ଥାନ ଏବଂ ଈଶ୍ୱରପରାୟଣ ମୁନି ଋଷିମାନଙ୍କର ନିବାସ । ଅତଏବ ଶ୍ରୀଭଗବାନଙ୍କ ବିଭୂତି ସେହି ହିମାଳୟରେ ପ୍ରକାଶିତ । ୨୫ ।

ଶ୍ଳୋକଃ ।

ଅଶ୍ୱତ୍ଥଃ ସର୍ବବୃକ୍ଷାଣାଂ, ଦେବର୍ଷୀଣାଂ ଚ ନାରଦଃ ।
ଗନ୍ଧର୍ବାଣାଂ ଚିତ୍ରରଥଃ, ସିଦ୍ଧାନାଂ କପିଳୋ ମୁନିଃ । ୨୬ ।

ଅନ୍ୱୟଃ ।

(ଅହଂ) ସର୍ବବୃକ୍ଷାଣାଂ ଅଶ୍ୱତ୍ଥଃ ଦେବର୍ଷୀଣାଂ ନାରଦଃ, ଗନ୍ଧର୍ବାଣାଂ ଚିତ୍ରରଥଃ, ସିଦ୍ଧାନାଂ କପିଳଃ ମୁନିଃ (ଅସ୍ମି) । ୨୬ ।

ଟୀକା ।

ଅଶ୍ୱତ୍ଥ ଇତି । ଦେବା ଏବ ସନ୍ତୋଯେ ମନ୍ତ୍ରଦର୍ଶନେନ ଋଷିତ୍ୱଂ ପ୍ରାପ୍ତାସ୍ତେଷାଂ ମଧ୍ୟେ ନାରଦୋଽସ୍ମି, ସିଦ୍ଧାନାମୁତ୍ପତ୍ତିତ ଏବାଧିଗତ-ପରମାର୍ଥ-ତତ୍ତ୍ୱାନାଂ ମଧ୍ୟେ କପିଲାଖ୍ୟୋମୁନିରସ୍ମି । ୨୬ ।

ପଦବ୍ୟାଖ୍ୟା ।

ଅଶ୍ୱତ୍ଥଃ—ଅଶ୍ୱତ୍ଥ ନାମକ ବୃକ୍ଷ, ସର୍ବବୃକ୍ଷାଣାଂ—ସବୁ ବୃକ୍ଷମାନଙ୍କ ମଧ୍ୟରେ, ଦେବର୍ଷୀଣାଂ—ମନ୍ତ୍ରସିଦ୍ଧିଦ୍ୱାରା ଋଷି ହୋଇଥିବା ଦେବତାମାନଙ୍କ ମଧ୍ୟରେ, ନାରଦଃ—ନାରଦ ନାମକ ଦେବର୍ଷି, ଗନ୍ଧର୍ବାଣାଂ—ଗନ୍ଧର୍ବମାନଙ୍କ ମଧ୍ୟରେ, ଚିତ୍ରରଥଃ—ଚିତ୍ରରଥ ନାମକ ଗନ୍ଧର୍ବ, ସିଦ୍ଧାନାଂ—ଜନ୍ମହେଲା ମାତ୍ରକେ ପରମାର୍ଥ ତତ୍ତ୍ୱ ଜାଣିଥିବା ଲୋକମାନଙ୍କ ମଧ୍ୟରେ, କପିଳଃ ମୁନିଃ—କପିଳ ନାମକ ମୁନି ଅଟେଁ । ୨୬ ।

ଅନୁବାଦ ।

ଆମ୍ଭେ, ସମସ୍ତ ବୃକ୍ଷ ମଧ୍ୟରେ ଅଶ୍ୱତ୍ଥ, ଦେବର୍ଷି ମଧ୍ୟରେ ନାରଦ ଓ ଗନ୍ଧର୍ବ ମଧ୍ୟରେ ଚିତ୍ରରଥ ଏବଂ ସିଦ୍ଧମାନଙ୍କ ମଧ୍ୟରେ କପିଳ ମୁନି ଅଟେଁ । ୨୬ ।

ବିଶଦବ୍ୟାଖ୍ୟା ।

ନାନାପ୍ରକାର ଗୁଣ ଏକାଧାରରେ ଥିବାରୁ ଅଶ୍ୱତ୍ଥ, ବୃକ୍ଷମାନଙ୍କ ମଧ୍ୟରେ ଶ୍ରେଷ୍ଠ ଜ୍ଞାନ ଓ ଭକ୍ତିବଳରେ ନାରଦ ସର୍ବଦେବର୍ଷି ମଧ୍ୟରେ ପ୍ରଧାନ, ରୂପରେ ଓ ସଙ୍ଗୀତବିଦ୍ୟାରେ 'ଚିତ୍ରରଥ' ଗନ୍ଧର୍ବ ମଧ୍ୟରେ ଅଗ୍ରଗଣ୍ୟ, ପରମାର୍ଥ ତତ୍ତ୍ୱରେ ସିଦ୍ଧି ଲାଭ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ମହାତ୍ମା କପିଳମୁନି ଅତି ପ୍ରସିଦ୍ଧ ଅଟନ୍ତି । ଶ୍ରୀଭଗବାନଙ୍କ ବିଭୂତି ସେହି ବୃକ୍ଷଶ୍ରେଷ୍ଠ ଅଶ୍ୱତ୍ଥ, ଦେବର୍ଷି ପ୍ରଧାନ ନାରଦ ଓ ଗନ୍ଧର୍ବାଗ୍ରଗଣ୍ୟ ଚିତ୍ରରଥ ଏବଂ ପ୍ରସିଦ୍ଧ ଜ୍ଞାନୀ କପିଳ ମୁନି ରୂପରେ ପ୍ରକାଶିତ ହୋଇଅଛି । ୨୬ ।

ଶ୍ଳୋକଃ ।

ଉଚ୍ଚୈଃଶ୍ରବସମଶ୍ୱାନାଂ, ବିଦ୍ଧି ମାମମୃତୋଦ୍ଭବଂ ।
ଐରାବତଂ ଗଜେନ୍ଦ୍ରାଣାଂ, ନରାଣାଂ ଚ ନରାଧିପଂ । ୨୭ ।

Digitized by PPRACHIN, SOA

ଅନ୍ୱୟଃ ।

ମାଂ ଅଶ୍ୱାନାଂ ଅମୃତୋଦ୍ଭବ ଉଚ୍ଚୈଃଶ୍ରବସ, ଗଜେନ୍ଦ୍ରାଣାଂ ଐରାବତଂ, ନରାଣାଂ ଚ ନରାଧିପଂ ବିଦ୍ଧି । ୨୭ ।

ଟୀକା ।

ଉଚ୍ଚୈଃଶ୍ରବସମିତ୍ୟାଦି ଅମୃତାର୍ଥଂ କ୍ଷୀରୋଦାବ୍ଧିମଥନାଦୁଦ୍ଭୂତଂ ଉଚ୍ଚୈଃଶ୍ରବସ୍‌ନାମାଶ୍ୱଂ ମତ୍ତ୍ୱିଭୂତଂ ବିଦ୍ଧି । ଅମୃତୋଦ୍ଭବମିତ୍ୟେତଦୈରାବତେଽପି ସମ୍ବଧ୍ୟତେ । ନରାଧିପଂ ରାଜାନଂ ମାଂ ବିଦ୍ଧି । ୨୭ ।

ପଦବ୍ୟାଖ୍ୟା

ଉଚ୍ଚୈଃଶ୍ରବସ—ଉଚ୍ଚୈଃଶ୍ରବା ନାମକ ଅଶ୍ୱ, ଅଶ୍ୱାନାଂ—ଘୋଡାମାନଙ୍କ ମଧ୍ୟରେ, ବିଦ୍ଧି—ଜାଣ, ମାଂ—ଆମ୍ଭଙ୍କୁ, ଅମୃତୋଦ୍ଭବ—ଅମୃତ ନିମିତ୍ତ ମଥିତ କ୍ଷୀର ସମୁଦ୍ରରୁ ଜାତ, ଐରାବତଂ—ଐରାବତ ନାମକ ହସ୍ତୀ, ଗଜେନ୍ଦ୍ରାଣାଂ—ହସ୍ତି ଶ୍ରେଷ୍ଠମାନଙ୍କ ମଧ୍ୟରେ, ନରାଣାଂ—ମନୁଷ୍ୟମାନଙ୍କ ମଧ୍ୟରେ, ନରାଧିପଂ—ରାଜା ବୋଲି ଜାଣ । ୨୭ ।

ଅନୁବାଦ ।

ଆମ୍ଭଙ୍କୁ ଅଶ୍ୱମାନଙ୍କ ମଧ୍ୟରେ (ସାଗରମନ୍ଥନ ସମୟରେ) ଅମୃତ ସହିତ ଜାତ ଉଚ୍ଚୈଃଶ୍ରବା ଓ ହସ୍ତିଶ୍ରେଷ୍ଠମାନଙ୍କ ମଧ୍ୟରେ ଐରାବତ ଏବଂ ମନୁଷ୍ୟମାନଙ୍କ ମଧ୍ୟରେ ରାଜା ବୋଲି ଜାଣ । ୨୭ ।

ଦୃଷ୍ଟାନ୍ତବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, ଅଶ୍ୱମାନଙ୍କ ମଧ୍ୟରେ ଉଚ୍ଚୈଃଶ୍ରବା ପ୍ରଧାନ । ଦେବତା ଓ ଅସୁର ମିଳିତ ହୋଇ ସମୁଦ୍ର ମନ୍ଥନ କଲାବେଳେ ଅମୃତ ସହିତ ଉଚ୍ଚୈଃଶ୍ରବା ଅଶ୍ୱ ଓ ଐରାବତ ହସ୍ତୀ ଏବଂ ଲକ୍ଷ୍ମୀ, ପାରିଜାତ ବୃକ୍ଷ ପ୍ରଭୃତି ନାନାପ୍ରକାର ଉତ୍କୃଷ୍ଟ ଦେବଭୋଗ୍ୟ ପଦାର୍ଥମାନ ବାହାରିଥିଲା । ଅମୃତସହିତ ଉତ୍ପନ୍ନ ସେହି ଉଚ୍ଚୈଶ୍ରବା ଆମ୍ଭର ବିଭୂତି । ପୁଣି ହସ୍ତିଶ୍ରେଷ୍ଠ (ଅର୍ଥାତ୍ ହସ୍ତି ଯୂଥପତି)ମାନଙ୍କ ମଧ୍ୟରେ ସମୁଦ୍ରମନ୍ଥନରୁ ଉତ୍ପନ୍ନ ଐରାବତ ହସ୍ତୀ ଆମ୍ଭର ବିଭୂତି ଅଟେ, ଆଉ ମନୁଷ୍ୟମାନଙ୍କ ମଧ୍ୟରେ ରାଜା ଶ୍ରେଷ୍ଠ ଅଟନ୍ତି । ସେହି ନରଶ୍ରେଷ୍ଠ ରାଜା ଆମ୍ଭର ବିଭୂତି ବୋଲି ଜାଣ । ୨୭ ।

ଶ୍ଳୋକଃ ।

ଆୟୁଧାନାମହଂ ବଜ୍ରଂ, ଧେନୂନାମସ୍ମି କାମଧୁକ୍ ।
ପ୍ରଜନଶ୍ଚାସ୍ମି କନ୍ଦର୍ପଃ, ସର୍ପାଣାମସ୍ମି ବାସୁକିଃ । ୨୮ ।

ଅନ୍ୱୟଃ ।

ଅହଂ ଆୟୁଧାନାଂ ବଜ୍ରଂ, ଧେନୂନାଂ କାମଧୁକ୍ ଅସ୍ମି । ପ୍ରଜନଃ କନ୍ଦର୍ପଃ ଅସ୍ମି ଚ ସର୍ପାଣାଂ ବାସୁକିଃ ଅସ୍ମି । ୨୮ ।

ଟୀକା ।

ଆୟୁଧାନାମିତି । କାମାନ୍ ଦୋଗ୍ଧୀତି କାମଧୁକ୍ ପ୍ରଜନଃ ପ୍ରଜୋତ୍ପତ୍ତିହେତୁଃ କନ୍ଦର୍ପଃ କାମୋଽସ୍ମି ନ କେବଳଂ ସମ୍ଭୋଗ-ମାତ୍ର-ପ୍ରଧାନଃ କାମୋମଦ୍ବିଭୂତିରଶାସ୍ତ୍ରୀୟତ୍ୱାତ୍, ସର୍ପାଣାଂ ସବିଷାଣାଂ ରାଜା ବାସୁକିରସ୍ମି । ୨୮ ।

ପଦବ୍ୟାଖ୍ୟା ।

ଆୟୁଧାନାଂ—ଅସ୍ତ୍ରମାନଙ୍କ ମଧ୍ୟରେ, ଅହଂ—ଆମ୍ଭେ, ବଜ୍ରଂ—ବଜ୍ର ନାମକ ଅସ୍ତ୍ର, ଧେନୂନାଂ—ଗାଭୀମାନଙ୍କ ମଧ୍ୟରେ, ଅସ୍ମି—ଅଟୁ, କାମଧୁକ୍—ଯାହା କାମନା କର ଦୁହିଁବ ତାହା ପ୍ରଦାନ କରିବା ଗାଈ, ପ୍ରଜନଃ—ସନ୍ତାନ

ଉତ୍ପତ୍ତିର ହେତୁ, ଚ—ପୁଣି, ଅସ୍ମି—ଅଟେଁ, କନ୍ଦର୍ପଃ—କାମ, ସର୍ପାଣାଂ—(ଏକଶିର) ସର୍ପମାନଙ୍କ ମଧ୍ୟରେ, ଅସ୍ମି—ଅଟେଁ, ବାସୁକିଃ—ସର୍ପରାଜ । ୨୮ ।

ଅନୁବାଦ ।

ଅମ୍ଭେ ଅସ୍ତ୍ର ମଧ୍ୟରେ ବଜ୍ର ଓ ଧେନୁ ମଧ୍ୟରେ କାମଧେନୁ ଅଟୁଁ । ଅମ୍ଭେ ପ୍ରଜାଉତ୍ପତ୍ତିର ହେତୁସ୍ୱରୂପ କାମଦେବ ଓ ସର୍ପମଧ୍ୟରେ ବାସୁକି ଅଟୁଁ । ୨୮ ।

ବିଶଦବ୍ୟାଖ୍ୟା ।

ଦଧୀଚମୁନିଙ୍କ ଅସ୍ଥିଦ୍ୱାରା ବୃତ୍ରାସୁର ବଧନିମିତ୍ତ ବଜ୍ର ପ୍ରସ୍ତୁତ ହୋଇଥିଲା, ଶ୍ରୀଭଗବାନ୍ କହୁଅଛନ୍ତି, ସେହି—ଅସ୍ତ୍ରଶ୍ରେଷ୍ଠ ବଜ୍ର ଆମ୍ଭର ବିଭୂତି । ସମୁଦ୍ରମନ୍ଥନକାଳରେ ବଶିଷ୍ଠ, ଯେଉଁ ଧେନୁ ଲାଭ କରିଥିଲେ, ତାହାକୁ କାମଧେନୁ ବୋଲାଯାଏ । ଅନ୍ୟାନ୍ୟ ଧେନୁଙ୍କଠାରୁ କେବଳ ଦୁଗ୍ଧ ମାତ୍ର ଦୋହନ କରାଯାଏ, କିନ୍ତୁ କାମଧେନୁଠାରୁ, ଯାହା ବାଞ୍ଛା କରିବ, ତାହା ପ୍ରାପ୍ତ ହୁଏ । ଶ୍ରୀଭଗବାନ୍ କହୁଅଛନ୍ତି, ଆମ୍ଭର ବିଭୂତି ଧେନୁ ମଧ୍ୟରେ କାମଧେନୁ ରୂପରେ ପ୍ରକାଶିତ । ପୁଣି ଆମ୍ଭର ବିଭୂତି କାମଦେବ ଅଟେ । କେବଳ ସ୍ୱଜାୟା ବା ପରଜାୟା ସ୍ତ୍ରୀ ସହବାସ କରି ଇନ୍ଦ୍ରିୟବୃତ୍ତି ଚରିତାର୍ଥ କରିବାରୂପ କାମ ନୁହେ—ସନ୍ତାନୋତ୍ପତ୍ତିର ଅଥବା ବଂଶରକ୍ଷାର କାରଣସ୍ୱରୂପ ଶାସ୍ତ୍ରସମ୍ମତ, ଯେ କାମ, ତାହାଇ ଆମ୍ଭର ବିଭୂତି । ଏକଶିର-ସର୍ପମାନଙ୍କ ମଧ୍ୟରେ ସର୍ପରାଜ ବାସୁକିରୂପରେ ଆମ୍ଭର ବିଭୂତି ପ୍ରକାଶିତ ହୋଇଅଛି । ୨୮ ।

ଶ୍ଳୋକଃ ।

ଅନନ୍ତଶ୍ଚାସ୍ମି ନାଗାନାଂ, ବରୁଣୋ ଯାଦସାମହଂ ।
ପିତୃଣାମର୍ଯ୍ୟମା ଚାସ୍ମି, ଯମଃ ସଂଯମତାମହଂ । ୨୯ ।

ଅନ୍ୱୟଃ ।

ଅହଂ ନାଗାନାଂ ଅନନ୍ତଃ ଚ ଯାଦସାଂ ବରୁଣଃ ଅସ୍ମି । ଅହଂ ପିତୃଣାଂ ଅର୍ଯ୍ୟମା ଚ ସଂଯମତାଂ ଯମଃ ଅସ୍ମି । ୨୯ ।

ଟୀକା ।

ଅନନ୍ତ ଇତି । ନାଗାନାଂ ନିର୍ବିଷାଣାଂ ରାଜା ଅନନ୍ତଃ ଶେଷୋଽହମସ୍ମି, ଯାଦସାଂ ଜଳଚରାଣାଂ ମଧ୍ୟେ ରାଜା ବରୁଣୋଽସ୍ମି, ପିତୃଣାଂ ରାଜା ଅର୍ଯ୍ୟମାସ୍ମି, ସଂଯମତାଂ ନିଗ୍ରହଂ କୁର୍ବତାଂ ମଧ୍ୟେ ଯମୋଽସ୍ମି । ୨୯ ।

ପଦବ୍ୟାଖ୍ୟା ।

ଅନନ୍ତଃ—ନାଗରାଜ୍—ଶେଷଦେବ, ଚ—ପୁଣି, ଅସ୍ମି—ଅଟେଁ, ନାଗାନାଂ—ବହୁଶିରବିଶିଷ୍ଟ ସର୍ପମାନଙ୍କ ମଧ୍ୟରେ ବରୁଣଃ—ବରୁଣ ଦେବତା—ଜଳ ଓ ଜଳଚରମାନଙ୍କର ରାଜା, ଯାଦସାଂ—ଜଳଚରମାନଙ୍କ ମଧ୍ୟରେ, ଅହଂ—ଅମ୍ଭେ, ପିତୃଣାଂ—ପିତୃମାନଙ୍କ ମଧ୍ୟରେ, ଅର୍ଯ୍ୟମା—ପିତୃଗଣ ମଧ୍ୟରେ ଶ୍ରେଷ୍ଠ ଅର୍ଯ୍ୟମା ନାମକ ଦେବଯୋନି, ଚ—ପୁଣି, ଅସ୍ମି—ଅଟେଁ, ଯମଃ—ଯମ ନାମକ ଯୋଗାଙ୍ଗ, ସଂଯମତାଂ—ଇନ୍ଦ୍ରିୟାଦି ନିଗ୍ରହକାରୀମାନଙ୍କର । ୨୯ ।

ଅନୁବାଦ ।

ଅମ୍ଭେ, ନାଗମାନଙ୍କ ମଧ୍ୟରେ ଅନନ୍ତ, ଜଳଚରମାନଙ୍କ ମଧ୍ୟରେ ବରୁଣ ଓ ପିତୃଗଣ ମଧ୍ୟରେ ଅର୍ଯ୍ୟମା ଏବଂ ସଂଯମକାରୀମାନଙ୍କର ଯମ ଅଟୁଁ । ୨୯ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ସର୍ପ ଓ ନାଗ ଏ ଦୁଇ ଭିନ୍ନଜାତି । କାହାର୨ ମତରେ ସର୍ପ ସବିଷ ଓ ନାଗ ନିର୍ବିଷ ଅଟନ୍ତି । ପୁଣି କେହି୨ କହନ୍ତି, ସର୍ପଙ୍କର ଏକ ମସ୍ତକ ଓ ନାଗ ବହୁମସ୍ତକଯୁକ୍ତ । ନାଗମାନଙ୍କ ମଧ୍ୟରେ ଅନନ୍ତ, ସହସ୍ରମସ୍ତକ ନାଗରାଜ । ଶ୍ରୀଭଗବାନ୍ କହୁଅଛନ୍ତି, ଆମ୍ଭର ବିଭୂତି, ସେହି ଅନନ୍ତରୂପରେ ପ୍ରକାଶିତ । ଜଳଚରଗଣଙ୍କର ଓ ଜଳର ରାଜା—ବରୁଣ, ସେହି ବରୁଣ ଆମ୍ଭର ବିଭୂତି । ପିତୃଗଣ ମଧ୍ୟରେ ଅର୍ଯ୍ୟମା ସର୍ବଶ୍ରେଷ୍ଠ, ଆମ୍ଭର ବିଭୂତି, ସେହି ଅର୍ଯ୍ୟମାରୂପରେ ପ୍ରକାଶିତ ହୋଇଅଛି । ପୁଣି ଯେଉଁମାନେ ସଂଯମକାରୀ ଅର୍ଥାତ୍ ଅନ୍ତଃକରଣକୁ ବହିର୍ବୃତ୍ତିରୁ ଦମନ କରି ପରମାତ୍ମ ଚିନ୍ତାରେ ନିଯୁକ୍ତ କରନ୍ତି, ସେମାନଙ୍କ ପକ୍ଷରେ ଆମ୍ଭେ 'ଯମ'ନାମକ ଯୋଗାଙ୍ଗସ୍ୱରୂପ ଅଟୁଁ । ଯମ କାହାକୁ କହନ୍ତି ? ଯଥା—

"ଅହିଂସା ସତ୍ୟମସ୍ତେୟଂ ବ୍ରହ୍ମଚର୍ଯ୍ୟଂ ଦୟାର୍ଜବଂ ।
କ୍ଷମା ଧୃତିର୍ମିତାହାରଃ ଶୌଚଞ୍ଚେ ତୀର୍ତ୍ତିତା ଦଶ" । ଇତ୍ୟାଦି
(ଚତୁର୍ଥ ଅଧ୍ୟାୟର ଅଷ୍ଟାବିଂଶତି ଶ୍ଳୋକର ବିଶଦବ୍ୟାଖ୍ୟା ଦେଖ)

କାହାର୨ ମତରେ ସଂଯମକାରୀ ଅର୍ଥାତ୍ ନିୟମକାରୀଙ୍କ ମଧ୍ୟରେ ପକ୍ଷପାତଶୂନ୍ୟ ଧର୍ମରାଜ ଯମରୂପରେ ଭଗବାନଙ୍କର ବିଭୂତି ପ୍ରକାଶିତ ହୋଇଅଛି । ୨୯ ।

ଶ୍ଳୋକଃ ।

ପ୍ରହ୍ଲାଦଶ୍ଚାସ୍ମି ଦୈତ୍ୟାନାଂ, କାଳଃ କଳୟତାମହଂ ।
ମୃଗାଣାଂ ଚ ମୃଗେନ୍ଦ୍ରୋଽହଂ, ବୈନତେୟଶ୍ଚ ପକ୍ଷିଣାଂ । ୩୦ ।

ଅନ୍ୱୟଃ ।

ଅହଂ ଦୈତ୍ୟାନାଂ ପ୍ରହ୍ଲାଦଃ ଚ କଳୟତାଂ କାଳଃ ଅସ୍ମି । ଅହଂ ମୃଗାଣାଂ ମୃଗେନ୍ଦ୍ରଃ ଚ ପକ୍ଷିଣାଂ ବୈନତେୟଃ ( ଅସ୍ମି ) । ୩୦ ।

ଟୀକା ।

ପ୍ରହ୍ଲାଦ ଇତି । କଳୟତାଂ ବଶୀକୁର୍ବତାଂ ଗଣୟତାଂ ବା ମଧ୍ୟେ କାଳୋଽହମସ୍ମି । ମୃଗେନ୍ଦ୍ରଃ ସିଂହଃ ପକ୍ଷିଣାଂ ମଧ୍ୟେ ଗରୁଡୋଽସ୍ମି । ୩୦ ।

ପଦବ୍ୟାଖ୍ୟା ।

ପ୍ରହ୍ଲାଦଃ—ରକ୍ଷସରାଜ ହିରଣ୍ୟକଶିପୁଙ୍କର ବିଷ୍ଣୁଭକ୍ତ ପୁତ୍ର, ଚ—ପୁଣି, ଅସ୍ମି—ଅଟୁଁ, ଦୈତ୍ୟାନାଂ—ଅସୁରମାନଙ୍କ ମଧ୍ୟରେ, କାଳଃ—ସମୟ, କଳୟତାଂ—ଗଣନାକାରମାନଙ୍କ ମଧ୍ୟରେ, ଅହଂ—ଆମ୍ଭେ, ମୃଗାଣାଂ—ପଶୁମାନଙ୍କ ମଧ୍ୟରେ, ଚ—ପୁଣି, ମୃଗେନ୍ଦ୍ରଃ—ସିଂହ, ବୈନତେୟଃ—ବିନତା-ପୁତ୍ର ଗରୁଡ, ଚ—ପୁଣି, ପକ୍ଷିଣାଂ—ପକ୍ଷିମାନଙ୍କ ମଧ୍ୟରେ । ୩୦ ।

ଅନୁବାଦ ।

ଆମ୍ଭେ ଦୈତ୍ୟମାନଙ୍କ ମଧ୍ୟରେ ପ୍ରହ୍ଲାଦ, ଗଣନାକାରମାନଙ୍କ ମଧ୍ୟରେ 'କାଳ' ଓ ପଶୁମାନଙ୍କ ମଧ୍ୟରେ ସିଂହ ଏବଂ ପକ୍ଷିମାନଙ୍କ ମଧ୍ୟରେ ଗରୁଡ ଅଟୁଁ । ୩୦ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

କଶ୍ୟପଙ୍କ ଔରସରେ ଦିତିଙ୍କ ଗର୍ଭରେ ଦୈତ୍ୟମାନଙ୍କର ଜନ୍ମ, ସେମାନେ ରଜୋଗୁଣୀ, କୁଟିଳ ଓ କଳହପ୍ରିୟ, ମାତ୍ର ସେହି ଦୈତ୍ୟମାନଙ୍କର ରାଜା ହିରଣ୍ୟକଶିପୁଙ୍କର ପୁତ୍ର ରୂପରେ ସତ୍ତ୍ୱଗୁଣୀ ବିଷ୍ଣୁଭକ୍ତାଗ୍ରଗଣ୍ୟ ପ୍ରହ୍ଲାଦ ନାମକ, ଯେଉଁ ମହାତ୍ମା ଜନ୍ମିଥିଲେ, ସେ, ଆମ୍ଭର ବିଭୂତି । ଘଟନାସମୂହର ଗଣନାକାରୀମାନଙ୍କ ମଧ୍ୟରେ ଅଖଣ୍ଡରୂପେ ବର୍ତ୍ତମାନ 'କାଳ' (ସମୟ) ମଧ୍ୟ ଆମ୍ଭର ବିଭୂତି । ପୁଣି ପଶୁମାନଙ୍କ ମଧ୍ୟରେ ମହା ପ୍ରତାପଶାଳୀ ସିଂହରୂପରେ ଓ ଆକାଶଗାମୀ ପକ୍ଷିମାନଙ୍କ ମଧ୍ୟରେ ତ୍ରିଲୋକଗାମୀ ପକ୍ଷିରାଜ ଗରୁଡରୂପରେ ଆମ୍ଭର ବିଭୂତି ପ୍ରକଟିତ ହୋଇଅଛି । ୩୦ ।

ଶ୍ଳୋକଃ ।

* ପବନଃ ପବତାମସ୍ମି, ରାମଃ ଶସ୍ତ୍ରଭୃତାମହଂ ।
ଝଷାଣାଂ ମକରଶ୍ଚାସ୍ମି, ସ୍ରୋତସାମସ୍ମି ଜାହ୍ନବୀ । ୩୧ ।

ଅନ୍ୱୟଃ ।

ଅହଂ ପବତାଂ ପବନଃ, ଶସ୍ତ୍ରଭୃତାଂ ରାମଃ ଅସ୍ମି, ଝଷାଣାଂ ମକରଃ ଅସ୍ମି, ଚ ସ୍ରୋତସାଂ ଜାହ୍ନବୀ ଅସ୍ମି । ୩୧

ଟୀକା ।

ପବନ ଇତି । ପବତାଂ ପାବୟିତୃଣାଂ ବେଗବତାଂ ବା ମଧ୍ୟେ ବାୟୁରହମସ୍ମି, ରାମୋ ଦାଶରଥିଃ, ଝଷାଣାଂ ମତ୍ସ୍ୟାନାଂ ମଧ୍ୟେ ମକରୋନାମ ମତ୍ସ୍ୟଜାତିବିଶେଷୋଽହଂ, ସ୍ରୋତସାଂ ପ୍ରବାହୋଦକାନାଂ ମଧ୍ୟେ ଭାଗୀରଥୀ । ୩୧ ।

ପଦବ୍ୟାଖ୍ୟା ।

ପବନଃ—ବାୟୁ, ପବତାଂ—ପବିତ୍ରକାରୀ ବା ବେଗବନ୍ତମାନଙ୍କ ମଧ୍ୟରେ, ଅସ୍ମି—ଅଟେଁ, ରାମଃ—ସୀତାପତି, ଶସ୍ତ୍ରଭୃତାଂ—ଶସ୍ତ୍ରଧାରୀମାନଙ୍କ ମଧ୍ୟରେ, ଅହଂ—ଆମ୍ଭେ, ଝଷାଣାଂ—ମତ୍ସ୍ୟମାନଙ୍କ ମଧ୍ୟରେ, ମକରଃ—ମଗର (ଏକପ୍ରକାର ମତ୍ସ୍ୟ,) ଚ—ପୁଣି, ଅସ୍ମି—ଅଟେଁ, ସ୍ରୋତସାଂ—ବେଗବତୀ ନଦୀମାନଙ୍କ ମଧ୍ୟରେ, ଅସ୍ମି—ଅଟେଁ, ଜାହ୍ନବୀ—ଜହ୍ନୁକନ୍ୟା—ଭଗୀରଥୀ—ଗଙ୍ଗା । ୩୧ ।

ଅନୁବାଦ ।

ଆମ୍ଭେ ବେଗଗାମିମାନଙ୍କ ମଧ୍ୟରେ ପବନ, ଶସ୍ତ୍ରଧାରୀମାନଙ୍କ ମଧ୍ୟରେ ରାମଚନ୍ଦ୍ର ଓ ମତ୍ସ୍ୟମାନଙ୍କ ମଧ୍ୟରେ ମକର ଏବଂ ପ୍ରବାହିନୀ ନଦୀ ମଧ୍ୟରେ ଗଙ୍ଗା ଅଟେଁ । ୩୧ ।

ବିଶଦବ୍ୟାଖ୍ୟା ।

ବେଗଗାମୀ ପଦାର୍ଥ ମଧ୍ୟରେ ବଳଶାଳିତା ଓ ଅତିବେଗ ହେତୁରୁ ବାୟୁ ପ୍ରଧାନ ଅଟେ, ଶ୍ରୀଭଗବାନଙ୍କ ବିଭୂତି, ସେହି ବାୟୁରୂପରେ ପ୍ରକାଶିତ । ଶସ୍ତ୍ରଧାରୀମାନଙ୍କ ମଧ୍ୟରେ ରାକ୍ଷସକୁଳ ବିନାଶକ ଦଶରଥନନ୍ଦନ ସୀତାପତି ରାମଚନ୍ଦ୍ର ଶ୍ରେଷ୍ଠ ଅଟନ୍ତି, ପରମେଶ୍ୱରଙ୍କ ବିଭୂତି, ତାଙ୍କଠାରେ ବିଶେଷରୂପେ ପ୍ରକଟିତ । ମତ୍ସ୍ୟଜାତି ମଧ୍ୟରେ ମକର, ଅତ୍ୟନ୍ତ ତେଜସ୍ୱୀ ଓ ଗଙ୍ଗାଦେବୀଙ୍କ ବାହନ ବୋଲି, ପ୍ରସିଦ୍ଧ । ସେହି ମକର, ପରମେଶ୍ୱରଙ୍କର ବିଭୂତି ଅଟେ ।

Digitized by PPRACHIN, SOA

ପ୍ରବାହିନୀ (ନଦୀ)ମାନଙ୍କ ମଧ୍ୟରେ ବିଷ୍ଣୁପାଦାଗ୍ର-ସମ୍ଭୂତା —ପତିତପାବନୀ ଗଙ୍ଗା ସର୍ବପ୍ରଧାନା, ବିଶ୍ୱପତିଙ୍କ ବିଭୂତି, ସେହି ଗଙ୍ଗାରୂପରେ ପ୍ରକାଶିତ ଅଟେ । ୩୧ ।

ଶ୍ଲୋକଃ ।

ସର୍ଗାଣାମାଦିରନ୍ତଶ୍ଚ, ମଧ୍ୟଂ ଚୈବାହମର୍ଜୁନ ।
ଅଧ୍ୟାତ୍ମବିଦ୍ୟା ବିଦ୍ୟାନାଂ, ବାଦଃ ପ୍ରବଦତାମହଂ । ୩୨ ।

ଅନ୍ୱୟଃ ।

ହେ ଅର୍ଜୁନ ! ଅହଂ ସର୍ଗାଣାଂ ଆଦିଃ, ଅନ୍ତଃ, ମଧ୍ୟଂ, ଚ ବିଦ୍ୟାନାଂ ଅଧ୍ୟାତ୍ମବିଦ୍ୟା (ଅସ୍ମି) ଚ ଅହଂ ପ୍ରବଦତାଂ ବାଦଃ (ଅସ୍ମି) । ୩୨ ।

ଟୀକା ।

ସର୍ଗାଣାମିତି । ସୃଜ୍ୟନ୍ତ ଇତି ସର୍ଗା ଆକାଶାଦୟସ୍ତେଷାମାଦିରନ୍ତଶ୍ଚ ମଧ୍ୟଂ ଚୈବାହଂ । ଅହମାଦିଶ୍ଚ ମଧ୍ୟଞ୍ଚେତ୍ୟତ୍ର ସୃଷ୍ଟ୍ୟାଦିକର୍ତ୍ତୃତ୍ୱଂ ପାରମେଶ୍ୱର୍ଯ୍ୟମୁକ୍ତଂ, ଅତ୍ର ତୁ ସୃଷ୍ଟିସ୍ଥିତି-ପ୍ରଳୟା ମଜ୍ଜିଭୂତତ୍ୱେନ ଧ୍ୟେୟା ଇତ୍ୟୁଚ୍ୟତ ଇତି ବିଶେଷଃ, ଅଧ୍ୟାତ୍ମ-ବିଦ୍ୟା ଆତ୍ମବିଦ୍ୟା, ପ୍ରବଦତାଂ ବାଦିନାଂ ସମ୍ବନ୍ଧିନୋବାଦଜଳ୍ପ-ବିତଣ୍ଡାଖ୍ୟାସ୍ତ୍ରିସ୍ରଃ କଥାଃ ପ୍ରସିଦ୍ଧାସ୍ତାସାଂ ମଧ୍ୟେ ବାଦୋଽହଂ । ଯତ୍ର ଦ୍ୱାଭ୍ୟାମପି ପ୍ରମାଣତର୍କାଭ୍ୟାଂ ସ୍ୱପକ୍ଷଃ ସ୍ଥାପ୍ୟତେ । ଯତ୍ର ପରପକ୍ଷଶ୍ଛଳ-ଜାତି-ନିଗ୍ରହସ୍ଥାନୈର୍ଦ୍ଦୂଷ୍ୟ-ତେ ସ ଜଳ୍ପୋନାମ, ଯତ୍ର ତ୍ୱେକଃ ସ୍ୱପକ୍ଷଂ ସ୍ଥାପୟତି ଅନ୍ୟସ୍ତୁ ଛଳଜାତି-ନିଗ୍ରହସ୍ଥାନୈସ୍ତତ୍ପକ୍ଷଂ ଦୂଷୟତି ନ ତୁ ସ୍ୱପକ୍ଷଂ ସ୍ଥାପ-ୟତି ସା ବିତଣ୍ଡା ନାମ କଥା, ତତ୍ର ଜଳ୍ପବିତଣ୍ଡେ ବିଜିଗୀଷମାଣୟୋର୍ବାଦିନୋଃ ଶକ୍ତିପରୀକ୍ଷାମାତ୍ରଫଲେ ବାଦସ୍ତୁ ବୀତରା-ଗୟୋଃ ଶିଷ୍ୟାଚାର୍ଯ୍ୟୟୋରନ୍ୟୟୋର୍ବା ତତ୍ତ୍ୱନିର୍ଣ୍ଣୟଫଳଃ ଅତୋଽସୌ ଶ୍ରେଷ୍ଠତ୍ୱାନ୍ମଦ୍ବିଭୂତିରିତ୍ୟର୍ଥଃ । ୩୨ ।

ପଦବ୍ୟାଖ୍ୟା ।

ସର୍ଗାଣାଂ—ସୃଷ୍ଟିମାନଙ୍କର, ଆଦିଃ—ଜନ୍ମର କାରଣ, ଅନ୍ତଃ—ବିନାଶର କାରଣ, ମଧ୍ୟଂ—ସ୍ଥିତିର କାରଣ, ଚ—ପୁଣି, ଏବ—କେବଳ, ଅହଂ—ଅମ୍ଭେ, ଅର୍ଜୁନ—ହେ ଅର୍ଜୁନ !, ଅଧ୍ୟାତ୍ମବିଦ୍ୟା—ମୁକ୍ତିର କାରଣ ଆତ୍ମବିଦ୍ୟା, ବିଦ୍ୟାନାଂ—ଶାସ୍ତ୍ରମାନଙ୍କ ମଧ୍ୟରେ, ବାଦଃ—ସିଦ୍ଧାନ୍ତ ନିରୂପକ ଯୁକ୍ତି, ପ୍ରବଦତାଂ—ବକ୍ତାମାନଙ୍କର, ଅହଂ—ଅମ୍ଭେ । ୩୨

ଅନୁବାଦ ।

ହେ ଅର୍ଜୁନ! ଆମ୍ଭେ ସୃଷ୍ଟିର ଆଦି ଅନ୍ତ ଓ ମଧ୍ୟ ଅଟୁଁ ଏବଂ ଆମ୍ଭେ ବିଦ୍ୟା ମଧ୍ୟରେ ଅଧ୍ୟାତ୍ମବିଦ୍ୟା ଓ ଯୁକ୍ତିକାରମାନଙ୍କର ଯୁକ୍ତିରେ ବାଦ ଅଟୁଁ । ୩୨ ।

ବିଶଦବ୍ୟାଖ୍ୟା ।

ପରମେଶ୍ୱର, ଯେ ଚେତନପଦାର୍ଥର ଆଦି, ମଧ୍ୟ ଓ ଅନ୍ତ, ତାହା, ପୂର୍ବରେ କୁହା ଯାଇଅଛି । ଏ ଶ୍ଲୋକରେ ସମସ୍ତ ସୃଷ୍ଟପଦାର୍ଥର ଉତ୍ପତ୍ତି ସ୍ଥିତି ଓ ବିନାଶ, ଯେ ତାଙ୍କର ବିଭୂତି, ତାହା, ଶ୍ରୀଭ-ଗବାନ୍ କହିଲେ । ଯେଉଁ ବିଦ୍ୟାଦ୍ୱାରା ଆତ୍ମଜ୍ଞାନ—ବ୍ରହ୍ମଜ୍ଞାନ ଜନ୍ମେ, ତାହା ହିଁ ଅଧ୍ୟାତ୍ମବିଦ୍ୟା । ସକଳବିଦ୍ୟା ଅପେକ୍ଷା, ତାହା ଶ୍ରେଷ୍ଠ, ପରମେଶ୍ୱରଙ୍କର ବିଭୂତି, ସେହି ଅଧ୍ୟାତ୍ମ ବିଦ୍ୟାରୂପରେ ପ୍ରକାଶିତ । ପରସ୍ପର ତର୍କକାରମାନଙ୍କର ଯୁକ୍ତି, ତିନି ଶ୍ରେଣୀରେ ବିଭକ୍ତ । ଯଥା;—ବାଦ, ଜଳ୍ପ ଓ ବିତଣ୍ଡା । ରାଗ, ଦ୍ୱେଷ ଓ ଜୟ ଇଚ୍ଛାରହିତ ହୋଇ ତତ୍ତ୍ୱନିରୂପଣପାଇଁ ପ୍ରମାଣ ଓ ତର୍କାଦି ପ୍ରୟୋଗ କରି ଉଭୟପକ୍ଷର ଯେଉଁ ପ୍ରଶ୍ନୋତ୍ତର ହୁଏ ତାହାକୁ 'ବାଦ' ବୋଲାଯାଏ । ଜୟଇଚ୍ଛାରେ ଛଳାଦିଦ୍ୱାରା ବିପକ୍ଷମତ ଖଣ୍ଡନ କରି ସ୍ୱପକ୍ଷ ସ୍ଥାପନ କଲେ, ତାକୁ 'ଜଳ୍ପ' ଏବଂ

Digitized by PPRACHIN, SOA

ତର୍କକାରୀ ଦୁଇଜଣଙ୍କ ମଧ୍ୟରେ ଜଣେ ସ୍ୱପକ୍ଷ ସ୍ଥାପନ କରୁଥିବ, ଅନ୍ୟ ଜଣକ ଯଦି ନିଜମତ ସ୍ଥାପନ ନ କରି କେବଳ ଛଳାଦିଦ୍ୱାରା ପୂର୍ବୋକ୍ତ ବ୍ୟକ୍ତିର ମତରେ ଦୋଷ ପ୍ରଦାନ କରେ, ତେବେ, ତାକୁ 'ବିତଣ୍ଡା' ବୋଲାଯାଏ । କେବଳ ଜୟଇଚ୍ଛା ବଶୀଭୂତ ଲୋକେ ଜଳ୍ପ ବା ବିତଣ୍ଡା କରନ୍ତି, ମାତ୍ର ଗୁରୁ-ଶିଷ୍ୟ ବା ଶତ୍ରୁତା ଓ ଶତ୍ରୁତା ରହିତ ସାଧୁମାନେ ବାଦର ଆଶ୍ରୟ ଗ୍ରହଣ କରନ୍ତି । ବାଦ, ଜଳ୍ପ ଓ ବିତଣ୍ଡା ମଧ୍ୟରୁ ପ୍ରକୃତ ତତ୍ତ୍ୱ ନିରୂପକ 'ବାଦ' ସର୍ବଶ୍ରେଷ୍ଠ । ଭଗବାନ୍ ଆପଣାର ବିଭୂତିକୁ ସେହି ବାଦରୂପରେ ପ୍ରକାଶ କରି ଅଛନ୍ତି । ୩୨ ।

### ଶ୍ଳୋକଃ ।

ଅକ୍ଷରାଣାମକାରୋଽସ୍ମି, ଦ୍ୱନ୍ଦ୍ୱଃ ସାମାସିକସ୍ୟ ଚ ।
ଅହମେବାକ୍ଷୟଃ କାଲୋ, ଧାତାହଂ ବିଶ୍ୱତୋମୁଖଃ । ୩୩ ।

### ଅନ୍ୱୟଃ ।

ଅହଂ ଅକ୍ଷରାଣାଂ ଅକାରଃ ଚ ସାମାସିକସ୍ୟ ଦ୍ୱନ୍ଦ୍ୱଃ ଅସ୍ମି । ଅହଂ ଅକ୍ଷୟଃ କାଲଃ ଅହଂ ବିଶ୍ୱତୋମୁଖଃ ଧାତା ଏବ । ୩୩ ।

### ଟୀକା ।

ଅକ୍ଷରାଣାମିତି । ଅକ୍ଷରାଣାଂ ବର୍ଣ୍ଣାନାଂ ମଧ୍ୟେ ଅକାରୋଽସ୍ମି ତସ୍ୟ ସର୍ବବାଙ୍ମୟତ୍ୱେନ ଶ୍ରେଷ୍ଠତ୍ୱାତ୍ । ତଥାଚ ଶ୍ରୁତିଃ ଅକାରୋବୈ ସର୍ବା ବାକ୍ ସୈଷା ସ୍ପର୍ଶୋଷ୍ମଭିର୍ବ୍ୟଜ୍ୟମାନା ବହ୍ୱୀ ନାନାରୂପା ଭବତୀତି, ସ୍ମୃତେରିତି ଶ୍ରୈଷ୍ଠ୍ୟଂ । ସାମାସିକସ୍ୟ ସମାସସମୂହସ୍ୟ ମଧ୍ୟେ ଦ୍ୱନ୍ଦ୍ୱଃ ରାମକୃଷ୍ଣାବିତ୍ୟାଦି ସମାସୋଽସ୍ମି ଉଭୟପଦପ୍ରଧାନତ୍ୱେନ ଶ୍ରେଷ୍ଠତ୍ୱାତ୍ । ଅକ୍ଷୟଃ ପ୍ରବାହରୂପଃ କାଲୋଽହମସ୍ମି । କାଲଃ କଲୟତାମହମିତ୍ୟତ୍ରାପୂର୍ବଗଣନାତ୍ମକଃ, ସମ୍ବତ୍ସରଶତାଦ୍ୟାୟୁଃସ୍ୱରୂପଃ-କାଲ ଉକ୍ତଃ ସ ଚ ତସ୍ମିନ୍ନାୟୁଷି କ୍ଷୀଣେ ସତି କ୍ଷୀୟତେ ଅତ୍ର ତୁ ପ୍ରବାହାତ୍ମକୋଽକ୍ଷୟଃ କାଲଃ ଉଚ୍ୟତ ଇତି ବିଶେଷଃ, କର୍ମଫଳ-ବିଧାତୃଣାଂ ମଧ୍ୟେ ବିଶ୍ୱତୋମୁଖୋଧାତା ସର୍ବ-କର୍ମ-ଫଳ-ବିଧାତାହମିତ୍ୟର୍ଥଃ । ୩୩ ।

### ପଦବ୍ୟାଖ୍ୟା ।

ଅକ୍ଷରାଣାଂ—ଅକ୍ଷରମାନଙ୍କ ମଧ୍ୟରେ, ଅକାରଃ ଅସ୍ମି—ଅମ୍ଭେ ଅକାର ଅଟୁଁ, ଦ୍ୱନ୍ଦ୍ୱଃ—ଦ୍ୱନ୍ଦ୍ୱସମାସ, ସାମାସିକସ୍ୟ ଚ—(ଚପ୍ରକାର) ସମାସମାନଙ୍କ ମଧ୍ୟରେ, ଅହମେବ—ଅମ୍ଭେ କେବଳ, ଅକ୍ଷୟଃ କାଲଃ—ଅବିନାଶୀ କାଳ, ଧାତାହଂ—ଅମ୍ଭେ ଶୁଭାଶୁଭ କର୍ମର ଫଳଦାତା ଅଟୁଁ, ବିଶ୍ୱତୋମୁଖଃ—ସର୍ବବ୍ୟାପୀ ଓ ସର୍ବଶକ୍ତିମାନ୍ । ୩୩ ।

### ଅନୁବାଦ ।

ଅକ୍ଷରମାନଙ୍କ ମଧ୍ୟରେ ଆମ୍ଭେ 'ଅ'କାର ଓ ସମାସମାନଙ୍କ ମଧ୍ୟରେ 'ଦ୍ୱନ୍ଦ୍ୱ' ସମାସ ଅଟୁଁ । ଅମ୍ଭେ 'ଅକ୍ଷୟ' କାଳ ଓ (କର୍ମ ଫଳଦାତାମାନଙ୍କ ମଧ୍ୟରେ) 'ବିଶ୍ୱତୋମୁଖ' ଅର୍ଥାତ୍ ସର୍ବ କର୍ମ ଫଳଦାତା ଅଟୁଁ । ୩୩ ।

### ବିଶଦବ୍ୟାଖ୍ୟା ।

ଅକାର, ବର୍ଣ୍ଣମାନଙ୍କରେ ଶ୍ରେଷ୍ଠ, କାହିଁକି ନା ତାହା, ସର୍ବ ବଚନମୟ ଅଟେ । ଶ୍ରୁତିରେ ପ୍ରମାଣ ଅଛି, ଯେ "ଅକାରୋବୈ ସର୍ବା ବାକ୍" ଇତ୍ୟାଦି, ଅର୍ଥାତ୍—ଅକାର ସର୍ବବାକ୍ ସ୍ୱରୂପ ଅଟେ । ଯେହେତୁ ତାହା ବ୍ୟଞ୍ଜନବର୍ଣ୍ଣ (କ, ଖ ପ୍ରଭୃତି) ସହିତ ମିଳିତ ହୋଇ ନାନା ରୂପ ଧାରଣ କରେ ଓ ଅକାରାଦି ସ୍ୱରବର୍ଣ୍ଣ ବ୍ୟତିରେକେ, ବ୍ୟଞ୍ଜନବର୍ଣ୍ଣ କଦାପି ଉଚ୍ଚାରିତ

Digitized by PPRACHIN, SOA

ହୋଇ ପାରନ୍ତି ନାହିଁ । ଅପର, ଏକାକ୍ଷର କୋଷ ମତରେ "ଅକାରୋ ବାସୁଦେବଃ ସ୍ୟାତ୍" ଅର୍ଥାତ୍ ଅକାରର ଅର୍ଥ ବାସୁଦେବ । ଅତଏବ ଅକାର, ସବ ବର୍ଣ୍ଣଠାରୁ ଶ୍ରେଷ୍ଠ ଅଟେ । ଶ୍ରୀଭଗବାନ୍ କହୁଅଛନ୍ତି, ଯେ ତାଙ୍କର ବିଭୂତି, ସେହି ଅକାର ରୂପରେ ପ୍ରକାଶିତ ଅଟେ ।

ବ୍ୟାକରଣରେ ତତ୍ପୁରୁଷ, କର୍ମଧାରୟ, ଅବ୍ୟୟୀଭାବ, ବହୁବ୍ରୀହି, ଦ୍ୱିଗୁ ଓ ଦ୍ୱନ୍ଦ୍ୱ ନାମରେ ଛ ଗୋଟି ସମାସ ଅଛି, ତନ୍ମଧ୍ୟରୁ ତତ୍ପୁରୁଷ ସମାସରେ ଉତ୍ତର ପଦର ପ୍ରାଧାନ୍ୟ ଲକ୍ଷିତ ହୁଏ । ଯଥା—ନନ୍ଦର-ନନ୍ଦନ=ନନ୍ଦନନ୍ଦନ, ଏଠାରେ ଉତ୍ତର ପଦ 'ନନ୍ଦନ'ର ପ୍ରାଧାନ୍ୟ ଲକ୍ଷିତ ହେଲା । କର୍ମଧାରୟ ସମାସରେ ଗୋଟିଏ ବିଶେଷଣ ଓ ଅପର ପଦଟି ବିଶେଷ୍ୟ ଅଟେ, ଯଥା—ନୀଳ ଅଟେ ଉତ୍ପଳ=ନୀଳୋତ୍ପଳ, ଏ ସ୍ଥଳେ ନୀଳ=ବିଶେଷଣ ଓ ଉତ୍ପଳ=ବିଶେଷ୍ୟ ଅଟେ । ଅବ୍ୟୟୀଭାବ ସମାସରେ ପ୍ରାୟ ପୂର୍ବ ପଦର ପ୍ରାଧାନ୍ୟ ଥାଏ, ଯଥା—କୂଳର ନିକଟ =ଉପକୂଳ, ଏଠାରେ ପୂର୍ବପଦ କୂଳ ପ୍ରଧାନ ଅଟେ । ବହୁବ୍ରୀହି ସମାସରେ ପୂର୍ବ ଓ ଉତ୍ତର ଦୁଇ ପଦର ପ୍ରାଧାନ୍ୟ ନ ରହି ଅନ୍ୟ ଏକ ପଦର ଶ୍ରେଷ୍ଠତା ପ୍ରତିପାଦିତ ହୁଏ, ଯଥା—ଦୀର୍ଘ ଅଟେ ବାହୁ ଯାହାର=ସେ ଦୀର୍ଘବାହୁ । ଏସ୍ଥଳେ ଦୀର୍ଘବାହୁ ଶବ୍ଦର ଅର୍ଥ—ଦୀର୍ଘ ନୁହେ କି ବାହୁ ନୁହେ, ତଦ୍ୱିଶିଷ୍ଟ ଏକ ବ୍ୟକ୍ତି ଅଟେ । ଦ୍ୱିଗୁ ସମାସରେ ସଂଖ୍ୟାବାଚକ ଶବ୍ଦର ନିତାନ୍ତ ଆବଶ୍ୟକ, ଯଥା—ତିନି ଭୁବନର ସମଷ୍ଟି=ତ୍ରିଭୁବନ, ଏସ୍ଥଳେ 'ତ୍ରି' ସଂଖ୍ୟାବାଚକ ପଦ । ମାତ୍ର 'ଦ୍ୱନ୍ଦ୍ୱ' ସମାସରେ ସେପରି କିଛି ପକ୍ଷପାତ ଦୋଷ ନ ଥାଇ ଉଭୟ ପଦର ଶ୍ରେଷ୍ଠତା ଲକ୍ଷିତ ହୁଏ । ଯଥା—ରାମ ଓ କୃଷ୍ଣ=ରାମକୃଷ୍ଣ, ଏଠାରେ 'ରାମ ଓ କୃଷ୍ଣ' ଏପରି ଭିନ୍ନ ପଦର, ଯେ ଅର୍ଥ, 'ରାମକୃଷ୍ଣ' ଏହି ସମାସାନ୍ତ ପଦର ମଧ୍ୟ ସେହି ଅର୍ଥ, ସେଥିପାଇଁ ଦ୍ୱନ୍ଦ୍ୱ ସମାସ, ଅନ୍ୟ ସମାସମାନଙ୍କଠାରୁ ଶ୍ରେଷ୍ଠ ଅଟେ । ଶ୍ରୀଭଗବାନଙ୍କର ବିଭୂତି, ସେହି ଦ୍ୱନ୍ଦ୍ୱ ସମାସରୂପରେ ପ୍ରକଟିତ ।

କଳା, କାଷ୍ଠା, ନିମେଷ, ମୁହୂର୍ତ୍ତ ଦ୍ୱାରା ଅକ୍ଷୟରୂପେ ଅର୍ଥାତ୍ ଅବିନାଶିରୂପରେ, ଯେଉଁ କାଳ ବିଦ୍ୟମାନ, ତାହା ପରମେଶ୍ୱରଙ୍କର ବିଭୂତି ଅଟେ । ଇତି ପୂର୍ବରେ ସଂଖ୍ୟା ଗଣନାକାରମାନଙ୍କ ମଧ୍ୟରେ ଆମ୍ଭେ 'କାଳ' ଅଟୁଁ । ଇତ୍ୟାଦି ବଚନରେ, ଯେ କାଳ ଶବ୍ଦର ଉଲ୍ଲେଖ କରି ଯାଇଅଛି, ତାହା ଆୟୁର୍ଗଣନାର କାଳ ଅଟେ । ଶତାଧିକ ବର୍ଷ ପରେ ମନୁଷ୍ୟର ଆୟୁଃ କ୍ଷୀଣ ହେଲେ, ସେ କାଳର କ୍ଷୟ ହୁଏ, ମାତ୍ର ଏ ଶ୍ଳୋକ ଲିଖିତ 'କାଳ' ଅଖଣ୍ଡ ଅର୍ଥାତ୍ ନିତ୍ୟ ଅଟେ, ସୁତରାଂ ପୂର୍ବୋକ୍ତ କାଳ ଓ ଏ ଶ୍ଳୋକ ଲିଖିତ କାଳର ବିଶେଷ ପ୍ରଭେଦ ଅଛି ।

ଅନ୍ୟାନ୍ୟ ଦେବତାମାନେ କର୍ମର ନିର୍ଦ୍ଦିଷ୍ଟ ଫଳମାତ୍ର ପ୍ରଦାନ କରନ୍ତି, ମାତ୍ର ପରମେଶ୍ୱରଙ୍କ ପରି ଚତୁର୍ବର୍ଗ ଫଳ ପ୍ରଦାନ କରିବାର କ୍ଷମତା କାହାର ନାହିଁ । ପରମେଶ୍ୱରଙ୍କ ଫଳଦାନ କ୍ଷମତା ବିଶ୍ୱତୋମୁଖ ଅର୍ଥାତ୍ ସର୍ବକର୍ମର ସବ ପ୍ରକାର ଫଳ ପ୍ରଦାନରେ ସମର୍ଥ ଅଟେ । ସେଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ ଫଳଦାତାମାନଙ୍କ ମଧ୍ୟରେ ଆମ୍ଭେ 'ବିଶ୍ୱତୋମୁଖ' ଅର୍ଥାତ୍ ସର୍ବକର୍ମ ଫଳଦାତା ଅଟୁଁ । ୩୩ ।

Digitized by PPRACHIN, SOA

## ଶ୍ଳୋକଃ ।

ମୃତ୍ୟୁଃ ସର୍ବହରଶ୍ଚାହ, ମୁଦ୍ଭବଶ୍ଚ ଭବିଷ୍ୟତାଂ ।
କୀର୍ତ୍ତିଃ ଶ୍ରୀର୍ବାକ୍ ଚ ନାରୀଣାଂ, ସ୍ମୃତିର୍ମେଧା ଧୃତିଃ କ୍ଷମା । ୩୪ ।

## ଅନ୍ୱୟଃ ।

ଅହଂ ସର୍ବହରଃ ମୃତ୍ୟୁଃ ଚ ଭବିଷ୍ୟତାଂ ଉଦ୍ଭବଃ । ନାରୀଣାଂ କୀର୍ତ୍ତିଃ, ଶ୍ରୀଃ ବାକ୍, ସ୍ମୃତିଃ, ମେଧା, ଧୃତିଃ, ଚ କ୍ଷମା (ଅସ୍ମି) । ୩୪ ।

## ଟୀକା ।

ମୃତ୍ୟୁରିତି । ସଂହାରକାଣାଂ ମଧ୍ୟେ ସର୍ବହରୋ ମୃତ୍ୟୁରହଂ ଭବିଷ୍ୟତାଂ ଭାବିକଲ୍ୟାଣାନାଂ ପ୍ରାଣିନାମୁଦ୍ଭବୋଽଭ୍ୟୁଦୟୋଽହଂ ନାରୀଣାଂ ମଧ୍ୟେ କୀର୍ତ୍ତ୍ୟାଦ୍ୟାଃ ସପ୍ତଦେବତାରୂପାଃ ସ୍ତ୍ରିୟୋଽହଂ ଯାସାମାଭାସମାତ୍ରଯୋଗେନ ପ୍ରାଣିନଃ ଶ୍ଲାଘ୍ୟା ଭବନ୍ତୀତି ତାଃ କୀର୍ତ୍ତ୍ୟାଦ୍ୟାଃ ସ୍ତ୍ରିୟୋ ମଦ୍ବିଭୂତୟଃ । ୩୪ ।

## ପଦବ୍ୟାଖ୍ୟା ।

ମୃତ୍ୟୁଃ—ମରଣ ବା ଯମ, ସର୍ବହରଃ—ସର୍ବପ୍ରାଣି-ବିନାଶକ, ଚ—ପୁଣି, ଅହଂ—ଅମ୍ଭେ, ଉଦ୍ଭବଃ—ଉଦୟ ବା ଉତ୍ପାଦକ, ଭବିଷ୍ୟତାଂ—ବର୍ତ୍ତମାନ ସମୟ ପରେ ଉତ୍ପନ୍ନ ହେବେ, ଯେଉଁ ପ୍ରାଣିମାନେ, ସେମାନଙ୍କର, କୀର୍ତ୍ତିଃ—ସୁଖ୍ୟାତି, ଶ୍ରୀଃ—ସମ୍ପତ୍ତି ବା ଦେହକାନ୍ତି, ବାକ୍—ବାଣୀ, ଚ—ପୁଣି, ନାରୀଣାଂ—ସ୍ତ୍ରୀମାନଙ୍କ ମଧ୍ୟରେ, ସ୍ମୃତିଃ—ସ୍ମରଣ ଶକ୍ତି, ମେଧା—ଅନେକାର୍ଥ-ଧାରଣାଶକ୍ତି, ଧୃତିଃ—ଧୈର୍ଯ୍ୟଶକ୍ତି, କ୍ଷମା—ସହିଷ୍ଣୁତା । ୩୪ ।

## ଅନୁବାଦ ।

ଅମ୍ଭେ ସର୍ବସଂହାରକ ମୃତ୍ୟୁ ଓ ଭବିଷ୍ୟତ୍ ପ୍ରାଣିମାନଙ୍କର ଉଦ୍ଭବ ଅଟୁଁ ଏବଂ ଅମ୍ଭେ ସ୍ତ୍ରୀମାନଙ୍କ ମଧ୍ୟରେ କୀର୍ତ୍ତି, ଶ୍ରୀ, ବାଣୀ, ସ୍ମୃତି, ମେଧା, ଧୃତି ଓ କ୍ଷମା ଅଟୁଁ । ୩୪ ।

## ବିଶଦବ୍ୟାଖ୍ୟା ।

ରୋଗ ଶୋକାଦି କାରଣମାନ ଜୀବର ବଳ, ବୁଦ୍ଧି ପ୍ରଭୃତି ଗୋଟିଏ୨ ବିଶେଷ ଶକ୍ତି ହରଣ କରିପାରେ, ମାତ୍ର ମୃତ୍ୟୁ, ପ୍ରାଣିମାନଙ୍କର ସର୍ବଶକ୍ତି ହରଣ କରେ । ଶ୍ରୀଭଗବାନ୍ କହୁଅଛନ୍ତି, ଅମ୍ଭର ବିଭୂତି, ସେହି ସର୍ବସଂହାରକ ମୃତ୍ୟୁରୂପରେ ପ୍ରକାଶିତ । ଭବିଷ୍ୟତରେ ଯେଉଁ ପ୍ରାଣିମାନେ ଜନ୍ମିବେ, ଅଥବା ଭବିଷ୍ୟତରେ ଯେଉଁ ଜଗତ୍ ପ୍ରକାଶିତ ହେବ, ତାହାର ଉଦ୍ଭବ ଅର୍ଥାତ୍ ବୀଜ ଅମ୍ଭେ ଅଟୁଁ ।

ଫଳକଥା ଏହି କି ଭବିଷ୍ୟତ୍ ଜଗତ୍ ଓ ସେ ଜଗତର ପ୍ରାଣିବର୍ଗ ଆମ୍ଭର ବିଭୂତିରୁ ପ୍ରକାଶିତ ହେବ ।

ସଂସାରରେ ଯେତେ ସ୍ତ୍ରୀ ଅଛନ୍ତି, ତନ୍ମଧ୍ୟରୁ କୀର୍ତ୍ତି, ଶ୍ରୀ, ବାଣୀ, ସ୍ମୃତି, ମେଧା, ଧୃତି ଓ କ୍ଷମା ଏହି ସାତଗୋଟି ଧର୍ମଙ୍କର ପତ୍ନୀ ବୋଲି, ସର୍ବଶ୍ରେଷ୍ଠା ଅଟନ୍ତି । ଅମ୍ଭର ବିଭୂତି, ସେହି ସପ୍ତ ସ୍ତ୍ରୀରୂପରେ ପ୍ରକାଶିତ ଅଛି । (ଉପରୋକ୍ତ ସାତ ସ୍ତ୍ରୀର ଅର୍ଥ ପଦବ୍ୟାଖ୍ୟାରେ ଦେଖ) । ୩୪ ।

Digitized by PPRACHIN, SOA

ଶ୍ଲୋକଃ ।

ବୃହତ୍ସାମ ତଥା ସାମ୍ନାଂ, ଗାୟତ୍ରୀ ଛନ୍ଦସାମହଂ ।
ମାସାନାଂ ମାର୍ଗଶୀର୍ଷୋଽହ,ମୃତୂନାଂ କୁସୁମାକରଃ । ୩୫ ।

ଅନ୍ୱୟଃ ।

ଅହଂ ସାମ୍ନାଂ ବୃହତ୍ସାମ, ତଥା ଛନ୍ଦସାଂ ଗାୟତ୍ରୀ ( ଅସ୍ମି ) ଅହଂ ମାସାନାଂ ମାର୍ଗଶୀର୍ଷଃ ଋତୂନାଂ କୁସୁମାକରଃ (ଅସ୍ମି) । ୩୫ ।

ଟୀକା ।

ବୃହଦତ । ତ୍ୱାଂ ଇଦ୍ଧି ହବାମହ ଇତ୍ୟସ୍ୟାଂ ଋଚ ଗୀୟମାନଂ ବୃହତ୍ସାମାହଂ । ତେନ ଚେନ୍ଦ୍ରଃ ସର୍ବେଶ୍ୱରତ୍ୱେନ ସ୍ତୂୟତ ଇତ ଶ୍ରୈଷ୍ଠ୍ୟଂ, ଛନ୍ଦୋବଶିଷ୍ଟାନାଂ ମଧ୍ୟେ ଗାୟତ୍ରୀମନ୍ତ୍ରୋଽହଂ ଦ୍ୱିଜତ୍ୱାପାଦକତ୍ୱେନ ସୋମାହରଣେନ ଚ ଶ୍ରେଷ୍ଠତ୍ୱାତ୍, କୁସୁମାକରୋବସନ୍ତଃ । ୩୫ ।

ପଦବ୍ୟାଖ୍ୟା ।

ବୃହତ୍ସାମ—ବୃହତ୍‌ସାମ ନାମକ ଋକ୍, ସାମ୍ନାଂ—ସାମବେଦ ମଧ୍ୟରେ, ଗାୟତ୍ରୀ—ଗାୟତ୍ରୀ ନାମକ ମନ୍ତ୍ର, ଛନ୍ଦସାଂ—ଛନ୍ଦୋଯୁକ୍ତ ମନ୍ତ୍ରମାନଙ୍କ ମଧ୍ୟରେ, ଅହଂ—ଆମ୍ଭେ, ମାସାନାଂ—ମାସମାନଙ୍କ ମଧ୍ୟରେ, ମାର୍ଗଶୀର୍ଷଃ—ମାର୍ଗଶିର ମାସ, ଅହଂ—ଆମ୍ଭେ, ଋତୂନାଂ—ଋତୁମାନଙ୍କ ମଧ୍ୟରେ, କୁସୁମାକରଃ—ବସନ୍ତ ଋତୁ । ୩୫ ।

ଅନୁବାଦ ।

ଆମ୍ଭେ ସାମବେଦ ମଧ୍ୟରେ ବୃହତ୍ସାମ, ଛନ୍ଦ ମଧ୍ୟରେ ଗାୟତ୍ରୀ, ମାସ ମଧ୍ୟରେ ମାର୍ଗଶିର ଓ ଋତୁ ମଧ୍ୟରେ ବସନ୍ତ ଅଟୁଁ । ୩୫ ।

ବିଶଦବ୍ୟାଖ୍ୟା ।

ଏହି ଅଧ୍ୟାୟର ୨୨ଶ ଶ୍ଲୋକରେ ଶ୍ରୀଭଗବାନଙ୍କ ବିଭୂତି, ଯେ ସାମବେଦ, ତାହା କଥିତ ହୋଇଅଛି । ସେହି ସାମବେଦ ମଧ୍ୟରେ 'ତ୍ୱାଂ ଇଦ୍ଧି ହବାମହେ' ଅର୍ଥାତ୍ ହେ ଇନ୍ଦ୍ର (ବ୍ରହ୍ମ) ତୁମ୍ଭଙ୍କୁ ଆହୁତ ପ୍ରଦାନ କରୁଅଛୁଁ ଇତ୍ୟାଦି ଇନ୍ଦ୍ର (ବ୍ରହ୍ମ) ସ୍ତୁତି, ଯେଉଁ ଅଂଶରେ ଅଛି, ତାହାକୁ ବୃହତ୍‌ସାମ ବୋଲାଯାଏ । ଶ୍ରୀଭଗବାନଙ୍କ ବିଭୂତି ସେହି ବୃହତ୍‌ସାମରେ ପ୍ରକାଶିତ ବୋଲି ଏ ଶ୍ଲୋକରେ କୁହାଗଲା । ବେଦର ମନ୍ତ୍ରଭାଗରେ ଯେତେପ୍ରକାର ଛନ୍ଦଃ ଅଛି, ତନ୍ମଧ୍ୟରେ ଗାୟତ୍ରୀ ( ଚତୁର୍ବିଂଶାକ୍ଷର ଛନ୍ଦଃ ) ମୁଖ୍ୟପାଠ୍ୟ ବୋଲି ଅଥବା ଗାୟତ୍ରୀ ଦ୍ୱିଜତ୍ୱ ସମ୍ପାଦିକା ବୋଲି ଭଗବାନଙ୍କ ବିଭୂତି, ସେହି ଗାୟତ୍ରୀରୂପରେ ପ୍ରକାଶିତ । ମାର୍ଗଶିର ମାସରେ ଉତ୍ତାପ ଅଳ୍ପ ହୁଏ ଏବଂ ଶାଳୀଧାନ୍ୟ ସୁପକ୍ୱ ଓ ନାନାପ୍ରକାର ଶାକାଦି ଉତ୍ପନ୍ନ ହୁଏ ବୋଲି ପରମେଶ୍ୱରଙ୍କ ବିଭୂତି ସେହି ମାର୍ଗଶିରରୂପରେ ପ୍ରକାଶିତ । ପୁଣି ବସନ୍ତ ଋତୁରେ ପ୍ରାୟ ସମସ୍ତ ବୃକ୍ଷରେ ନବପଲ୍ଲବ ଓ କୁସୁମ ଉତ୍ପନ୍ନ ହୁଏ ଏବଂ ସୁଗନ୍ଧରେ ଦିଗ ଆମୋଦିତ ଓ ଦେବତା ପିତୃଙ୍କର ସନ୍ତୋଷଜନକ ମଧୁ ସଞ୍ଚିତ ଏବଂ ସୁଗନ୍ଧ ସମୀରଣ ସଞ୍ଚାଳନଦ୍ୱାରା ରୋଗୀ ସୁସ୍ଥ ହୁଏ । ଆଉ ସାଧାରଣ ଲୋକମାନଙ୍କର ସ୍ୱାସ୍ଥ୍ୟ ବୃଦ୍ଧି ହୁଏ । ଏହି ସବୁ

Digitized by PPRACHIN, SOA

କାରଣରୁ ଅନ୍ୟାନ୍ୟ ଋତୁଠାରୁ ବସନ୍ତ ଋତୁ ଶ୍ରେଷ୍ଠ । ସେହି ବସନ୍ତ ପରମେଶ୍ୱରଙ୍କର ବିଭୂତି ଅଟେ । ୩୫ ।

ଶ୍ଲୋକଃ ।

।ଽ ।  ।  ।ଽ ।
ଦ୍ୟୂତଂ ଛଳୟତାମସ୍ମି, ତେଜସ୍ତେଜସ୍ୱିନାମହଂ ।
।  ।  ।  ।  ।  ।ଽ ।
ଜୟୋଽସ୍ମି ବ୍ୟବସାୟୋଽସ୍ମି, ସତ୍ତ୍ୱଂ ସତ୍ତ୍ୱବତାମହଂ । ୩୬ ।

ଅନ୍ୱୟଃ ।

ଅହଂ ଛଳୟତାଂ ଦ୍ୟୂତଂ, ତେଜସ୍ୱିନାଂ ତେଜଃ ଅସ୍ମି । ଅହଂ (ଜେତୃଣାଂ) ଜୟଃ ଅସ୍ମି, (ବ୍ୟବସାୟିନାଂ) ବ୍ୟବସାୟଃ, ସତ୍ତ୍ୱବତାଂ ସତ୍ତ୍ୱଂ ଅସ୍ମି । ୩୬ ।

ଟୀକା ।

ଦ୍ୟୂତମିତି । ଛଳୟତାମନ୍ୟୋଽନ୍ୟବଞ୍ଚନାପରାଣାଂ ସମ୍ବନ୍ଧି ଦ୍ୟୂତମସ୍ମି, ତେଜସ୍ୱିନାଂ ପ୍ରଭାବବତାଂ ତେଜଃ ପ୍ରଭାବୋଽସ୍ମି, ଜେତୃଣାଂ ଜୟୋଽସ୍ମି ବ୍ୟବସାୟିନାମୁଦ୍ୟମବତାଂ ବ୍ୟବସାୟ ଉଦ୍ୟମୋଽସ୍ମି, ସତ୍ତ୍ୱବତାଂ ସାତ୍ତ୍ୱିକାନାଂ ସତ୍ତ୍ୱମହଂ । ୩୬ ।

ପଦବ୍ୟାଖ୍ୟା ।

ଦ୍ୟୂତଂ—ଜୁଆଖେଳ, ଛଳୟତାଂ—ଛଳନାକାରୀମାନଙ୍କ, ଅସ୍ମି—ଅଟେ, ତେଜଃ—ପ୍ରଭାବ, ତେଜସ୍ୱିନାଂ—ତେଜସ୍ୱିମାନଙ୍କର, ଅହଂ—ଅମ୍ଭେ, ଜୟଃ—ଜୟସ୍ୱରୂପ, ଅସ୍ମି—ଅଟେ, ବ୍ୟବସାୟୋଽସ୍ମି—ଉଦ୍ୟମ ଅଟେ, ସତ୍ତ୍ୱବତାଂ—ସତ୍ତ୍ୱଗୁଣିମାନଙ୍କର, ଅହଂ—ଅମ୍ଭେ । ୩୬ ।

ଅନୁବାଦ ।

ଅମ୍ଭେ ପ୍ରବଞ୍ଚକମାନଙ୍କର ଜୁଆଖେଳ ଓ ତେଜସ୍ୱିମାନଙ୍କର ତେଜ ଅଟୁଁ । ଅମ୍ଭେ (ଜେତାମାନଙ୍କର) ଜୟ, ( ଉଦ୍ୟମକାରୀମାନଙ୍କର ) ଉଦ୍ୟମ ଓ ସାତ୍ତ୍ୱିକମାନଙ୍କର ସତ୍ତ୍ୱ ଅଟୁଁ । ୩୬ ।

ବିଶଦବ୍ୟାଖ୍ୟା ।

ପରକୁ ପ୍ରତାରଣା କରିବା ବିଷୟରେ ପ୍ରବଞ୍ଚକ (ଠକ) ମାନଙ୍କର ଯେତେ ଉପାୟ ଅଛି, ଦ୍ୟୂତକ୍ରୀଡ଼ା ତନ୍ମଧ୍ୟରେ ପ୍ରଧାନ । ସେହି ଦ୍ୟୂତ, ଭଗବାନଙ୍କର ବିଭୂତି । ତେଜସ୍ୱୀ ଲୋକ ଯେଉଁ ପ୍ରଭାବ ବଳରେ ଅନ୍ୟକୁ ଆଜ୍ଞାବଦ୍ଧ କରି ରଖନ୍ତି, ସେହି ପ୍ରଭାବ ମଧ୍ୟ, ପ୍ରଭୁଙ୍କ ବିଭୂତି । ଜେତା, ଯେଉଁ ଜୟ ହେତୁରୁ ଉଲ୍ଲାସ ପ୍ରାପ୍ତ ହୁଅନ୍ତି, ପରମେଶ୍ୱରଙ୍କ ବିଭୂତି, ସେହି 'ଜୟ'ରୂପରେ ପ୍ରକାଶିତ । ଉଦ୍ୟମି ବ୍ୟକ୍ତି, ଯେଉଁ ଉଦ୍ୟମ ବଳରେ ନାନାପ୍ରକାର ସୁଖ ପ୍ରାପ୍ତ ହୁଅନ୍ତି, ସେହି ଉଦ୍ୟମ ପରମେଶ୍ୱରଙ୍କ ବିଭୂତି ଭିନ୍ନ, ଆଉ କିଛି ନୁହେ । ସତ୍ତ୍ୱଗୁଣିମାନେ ଯେଉଁ ସତ୍ତ୍ୱଗୁଣ ପ୍ରଭାବରେ ଅନ୍ୟ ( ରଜୋଗୁଣୀ ବା ତମୋଗୁଣୀ ) ବ୍ୟକ୍ତିଙ୍କଠାରୁ ଶ୍ରେଷ୍ଠ, ଅଥବା, ବଳବାନ ବ୍ୟକ୍ତି, ଯେଉଁ (ସତ୍ତ୍ୱ) ବଳ ଯୋଗରେ ଦୁର୍ବଳକୁ ପରାଭବ କରେ, ସେହି ସତ୍ତ୍ୱଗୁଣ ବା ସେହି ବଳ, ପରମେଶ୍ୱରଙ୍କ ବିଭୂତିମାତ୍ର । ୩୬ ।

Digitized by PPRACHIN, SOA

ଶ୍ଳୋକଃ ।

ବୃଷ୍ଣୀନାଂ ବାସୁଦେବୋଽସ୍ମି, ପାଣ୍ଡବାନାଂ ଧନଞ୍ଜୟଃ ।
ମୁନୀନାମପ୍ୟହଂ ବ୍ୟାସଃ, କବୀନାମୁଶନାଃ କବିଃ । ୩୭ ।

ଅନ୍ୱୟଃ ।

ଅହଂ ବୃଷ୍ଣୀନାଂ ବାସୁଦେବଃ, ପାଣ୍ଡବାନାଂ ଧନଞ୍ଜୟଃ, ମୁନୀନାଂ ଅପି ବ୍ୟାସଃ, କବୀନାଂ ଉଶନାଃ କବିଃ ଅସ୍ମି । ୩୭ ।

ଟୀକା ।

ବୃଷ୍ଣୀନାମିତି । ବାସୁଦେବୋଯୋଽହଂ ତ୍ୱାମୁପଦିଶାମି, ଧନଞ୍ଜୟସ୍ତ୍ୱମେବ ମଦ୍ଭକ୍ତଃ ମୁନୀନାଂ ବେଦାର୍ଥମନନଶୀଳାନାଂ ବେଦବ୍ୟାସୋଽସ୍ମି, କବୀନାଂ ଶାସ୍ତ୍ରଦର୍ଶିନାମୁଶନାନାମା କବିଃ ଶୁକ୍ରଃ । ୩୭ ।

ପଦବ୍ୟାଖ୍ୟା ।

ବୃଷ୍ଣୀନାଂ—ବୃଷ୍ଣି ବଂଶୀୟମାନଙ୍କ ମଧ୍ୟରେ, ବାସୁଦେବଃ ଅସ୍ମି—ବସୁଦେବଙ୍କ ପୁତ୍ର ଅଟେଁ, ପାଣ୍ଡବାନାଂ—ପାଣ୍ଡୁପୁତ୍ରମାନଙ୍କ ମଧ୍ୟରେ, ଧନଞ୍ଜୟଃ—ଅର୍ଜୁନ, ମୁନୀନାଂ—ବେଦାର୍ଥ ଚିନ୍ତାକାରମାନଙ୍କ ମଧ୍ୟରେ, ଅପି—ମଧ୍ୟ, ଅହଂ—ଅମ୍ଭେ, ବ୍ୟାସଃ—ବେଦବ୍ୟାସ, କବୀନାଂ—କବିମାନଙ୍କ ମଧ୍ୟରେ, ଉଶନାଃ କବିଃ—ଶୁକ୍ରାଚାର୍ଯ୍ୟ ନାମକ କବି । ୩୭ ।

ଅନୁବାଦ ।

ଅମ୍ଭେ ବୃଷ୍ଣିବଂଶୀୟମାନଙ୍କ ମଧ୍ୟରେ ବାସୁଦେବ, ପାଣ୍ଡବମାନଙ୍କ ମଧ୍ୟରେ ଅର୍ଜୁନ ଓ ମୁନିମାନଙ୍କ ମଧ୍ୟରେ ବ୍ୟାସଦେବ ଏବଂ କବିମାନଙ୍କ ମଧ୍ୟରେ ଶୁକ୍ରନାମା କବି ଅଟୁଁ । ୩୭ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, ବୃଷ୍ଣି ବଂଶରେ ବସୁଦେବଙ୍କ ପୁତ୍ରରୂପରେ ଭୂଭାର ହରଣ କରିବା ଓ ବ୍ରହ୍ମଜ୍ଞାନ ପ୍ରଚାର କରିବା ନିମିତ୍ତ, ଯେଉଁ କୃଷ୍ଣାବତାର, ତାହା ପରମେଶ୍ୱରଙ୍କ ବିଭୂତି । ପାଣ୍ଡବମାନଙ୍କ ମଧ୍ୟରେ ଶ୍ରୀକୃଷ୍ଣଙ୍କର ପ୍ରାଣସଖା, ଯେ ତୁମ୍ଭେ, (ଅର୍ଜୁନ) ତାହା ମଧ୍ୟ, ସେହି ସର୍ବେଶ୍ୱରଙ୍କର ବିଭୂତି । ମୁନି ଅର୍ଥାତ୍ ବେଦାର୍ଥ ଚିନ୍ତାକାରମାନଙ୍କ ମଧ୍ୟରେ ବେଦ ପ୍ରଚାରକ ବ୍ୟାସଦେବଙ୍କଠାରେ ପରମେଶ୍ୱରଙ୍କର ବିଶେଷ ବିଭୂତି ପ୍ରକାଶିତ । ଆଉ ଶାସ୍ତ୍ରର ସୂକ୍ଷ୍ମାର୍ଥ ବୁଝିବାକୁ ବିଶେଷ ସମର୍ଥ, ଯେ ଶୁକ୍ର କବି, ସେ ମଧ୍ୟ, ସେହି ଭଗବାନଙ୍କ ବିଭୂତି ଅଟନ୍ତି ।୩୭।

ଶ୍ଳୋକଃ ।

ଦଣ୍ଡୋଦମୟତାମସ୍ମି, ନୀତିରସ୍ମି ଜିଗୀଷତାଂ ।
ମୌନଂ ଚୈବାସ୍ମି ଗୁହ୍ୟାନାଂ, ଜ୍ଞାନଂ ଜ୍ଞାନବତାମହଂ । ୩୮ ।

ଅନ୍ୱୟଃ ।

ଅହଂ ଦମୟତାଂ ଦଣ୍ଡଃ ଅସ୍ମି, ଜିଗୀଷତାଂ ନୀତିଃ ଅସ୍ମି, ଗୁହ୍ୟାନାଂ ମୌନଂ, ଚ ଅହଂ ଜ୍ଞାନବତାଂ ଏବ ଜ୍ଞାନଂ ଅସ୍ମି । ୩୮ ।

ଟୀକା ।

ଦଣ୍ଡ ଇତି । ଦମୟତାଂ ଦମନକର୍ତ୍ତୄଣାଂ ସମ୍ବନ୍ଧୀ ଦଣ୍ଡୋଽସ୍ମି, ଯେନାସଂଯତା ଅପି ସଂଯତା ଭବନ୍ତି, ସ ଦଣ୍ଡୋ-

ମସ୍ମିଭୂତଃ, କେଭୂମିକ୍ଷଭାଂ ସମ୍ବନ୍ଧୀ ସାମାଦ୍ୟୁପାୟୁଭୂତା ନୀତଃଅସ୍ମି, ଗୁହ୍ୟାନାଂ ଗୋପ୍ୟାନାଂ ଗୋପନହେତୁର୍ମୌନ-ବଚନମସ୍ମି, ନ ହି ତୁଷ୍ଣୀଂସ୍ଥିତସ୍ୟାଭିପ୍ରାୟୋ ଜ୍ଞାୟତେ, ଜ୍ଞାନବତାଂ ତତ୍ତ୍ୱଜ୍ଞାନିନାଂ ଯତ୍ ଜ୍ଞାନଂ ତଦହମସ୍ମି । ୩୮ ।

ପଦବ୍ୟାଖ୍ୟା ।

ଦଣ୍ଡଃ—ଶାସନ, ଦମୟତାଂ—ଶାସନକାରୀମାନଙ୍କର, ଅସ୍ମି—ଅଟେଁ, ନୀତଃ ଅସ୍ମି—ସାମ, ଦାନ, ଭେଦ ଓ ଦଣ୍ଡ ଏହି ଚାରିପ୍ରକାର ରାଜନୀତି ଅଟେଁ, ଜିଗୀଷତାଂ—ଜୟେଚ୍ଛୁ ରାଜାମାନଙ୍କର, ମୌନଂ—ତୁନ ହୋଇ ରହିବା, ଚ ଏବ ଅସ୍ମି—(ଅହେ) କେବଳ ଅଟେଁ, ଗୁହ୍ୟାନାଂ—ଗୋପନୀୟ କଥା ମଧ୍ୟରେ, ଜ୍ଞାନଂ—ଅତ୍ମଜ୍ଞାନ, ଜ୍ଞାନବତାଂ—ଜ୍ଞାନୀମାନଙ୍କର, ଅହଂ—ଅମ୍ଭେ । ୩୮ ।

ଅନୁବାଦ ।

**ଅମ୍ଭେ ଶାସନକାରୀମାନଙ୍କର ଶାସନ, ଜୟାଭିଳାଷିମାନଙ୍କର ନୀତି, ଗୋପନୀୟ ବିଷୟ ମଧ୍ୟରେ ମୌନ ଓ ଜ୍ଞାନୀମାନଙ୍କର ଜ୍ଞାନ ଅଟେଁ । ୩୮ ।**

ବିଶଦବ୍ୟାଖ୍ୟା ।

ଅତ୍ୟାଚାରୀ ପ୍ରଜା ବା ବିପଥଗାମୀ (ଶିଷ୍ୟ) ଛାତ୍ରମାନଙ୍କୁ ଶାସନରେ ରଖିବାପାଇଁ ରାଜା ବା ଶିକ୍ଷକ, ଯେଉଁ ଦଣ୍ଡ ପ୍ରଦାନ କରନ୍ତି, ସେହି 'ଦଣ୍ଡ' ଭଗବାନଙ୍କର ବିଭୂତି । ରାଜାମାନେ ଶତ୍ରୁପକ୍ଷୀୟମାନଙ୍କୁ ବଶୀଭୂତ କରିବାକୁ ସାମ, ଦାନ, ଭେଦ ଓ ଦଣ୍ଡ * ନାମରେ ଯେଉଁ ଚାରିପ୍ରକାର ଉପାୟ ଅବଲମ୍ବନ କରନ୍ତି, ତାହାକୁ ନୀତି ବୋଲାଯାଏ ଓ ସେହି, ନୀତି ଈଶ୍ୱରଙ୍କର ବିଭୂତି ଅଟେ ।

ମୌନଲୋକର ଅଭିପ୍ରାୟ କେହି ଜାଣି ପାରନ୍ତି ନାହିଁ, ଅତଏବ ମୌନଭାବ ଗୋପନୀୟ କଥାର କାରଣ ଅଟେ, ସେହି ମୌନଭାବ ଭଗବଦ୍‌ବିଭୂତି, ଅଥବା ଗୋପନୀୟ ଭାବ ମଧ୍ୟରେ, ସନ୍ନ୍ୟାସ ସହିତ ଶ୍ରବଣ ମନନପୂର୍ବକ ଆତ୍ମାର ନିଦିଧ୍ୟାସନରୂପ, ଯେ ମୌନଭାବ, ତାହା ଈଶ୍ୱର ବିଭୂତି ଅଟେ ।

ଜ୍ଞାନୀମାନେ ଯେଉଁ ଜ୍ଞାନବଳରେ ବ୍ରହ୍ମତ୍ୱ ଲାଭ କରି ପାରନ୍ତି, ସେହି ଜ୍ଞାନ, ସର୍ବଜ୍ଞ ପରମେଶ୍ୱରଙ୍କର ବିଭୂତି ଅଟେ । ୩୮ ।

ଶ୍ଳୋକଃ ।

ଯଚ୍ଚାପି ସର୍ବଭୂତାନାଂ, ବୀଜଂ ତଦହମର୍ଜୁନ ।
ନ ତଦସ୍ତି ବିନା ଯତ୍ସ୍ୟାତ୍, ମୟା ଭୂତଂ ଚରାଚରଂ । ୩୯ ।

ଅନ୍ୱୟଃ ।

ହେ ଅର୍ଜୁନ ! ଯତ୍ ଚ ସର୍ବଭୂତାନାଂ ଅପି ବୀଜଂ, ତତ୍ (ଅହଂ) ଅସ୍ମି, ମୟା ବିନା ଯତ୍ ଚରାଚରଂ ଭୂତଂ ସ୍ୟାତ୍ ତତ୍ ନ ଅସ୍ତି । ୩୯ ।

---

* ସାମ = ପ୍ରିୟ ବାକ୍ୟଦ୍ୱାରା ବଶୀକରଣ, ଦାନ = ଅର୍ଥାଦିଦ୍ୱାରା ବଶ କରିବା, ଭେଦ = ଶତ୍ରୁ ସୈନ୍ୟ ମଧ୍ୟରେ ପରସ୍ପର ବିବାଦ ଜନ୍ମାଇ ଦେବା ଓ ଦଣ୍ଡ = ଯୁଦ୍ଧ ଘୋଷଣା କରିବା ।

Digitized by PPRACHIN, SOA

ଟୀକା ।

ଯଚ୍ଚାପୀତି । ଯଦପି ସର୍ବଭୂତାନାଂ ବୀଜଂ ପ୍ରରୋହକାରଣଂ ତଦହଂ । ତତ୍ର ହେତୁଃ, ମୟା ବିନା ଯତ୍ ସ୍ୟାତ୍ ଭବେ-ଦିତଭମଚରଂ ବା ଭୂତଂ ନାସ୍ତ୍ୟେବେତି । ୩୯ ।

ପଦବ୍ୟାଖ୍ୟା ।

ଯତ୍—ଯାହା, ଚ—ପୁଣି, ଅପି—ମଧ୍ୟ, ସର୍ବଭୂତାନାଂ—ସମସ୍ତ ଜଗତର, ବୀଜଂ—ଆଦିକାରଣ ବା ଉତ୍ପତ୍ତିର କାରଣ, ତତ୍—ତାହା, ଅହଂ—ଅମ୍ଭେ, ଅର୍ଜୁନ—ହେ ପାର୍ଥ, ନ—ନାହିଁ, ତତ୍—ତାହା, ଅସ୍ତି—ଅଛି, ବିନା—ବ୍ୟତିରେକେ, ଯତ୍—ଯାହା, ସ୍ୟାତ୍—ହେବ, ମୟା—ଅମ୍ଭ, ଭୂତଂ—ଜଗତ୍, ଚରାଚରଂ—ଚର ଓ ଅଚର ଅର୍ଥାତ୍ ଜଙ୍ଗମ ଓ ସ୍ଥାବର । ୩୯ ।

ଅନୁବାଦ ।

ହେ ଅର୍ଜୁନ ! ଅମ୍ଭେ ସମସ୍ତ ଜଗତର ଆଦି କାରଣ ଅଟୁଁ । ଯାହାଙ୍କ ନା ଅମ୍ଭ ବ୍ୟତି-ରେକେ ଉତ୍ପନ୍ନ ହୋଇପାରେ, ଏପରି ସ୍ଥାବର ବା ଜଙ୍ଗମ କିଛି ନାହିଁ । ୩୯ ।

ବିଶଦବ୍ୟାଖ୍ୟା ।

ବୃକ୍ଷର କାରଣ, ଯେପରି ବୀଜ, ସମସ୍ତ ଜଗତର କାରଣ, ସେହିପରି ପରମେଶ୍ୱର । ବୀଜ ନ ଥିଲେ, ଯେପରି ବୃକ୍ଷ ଉତ୍ପନ୍ନ ହୋଇ ନ ପାରେ, ସେହିପରି, ପରମେଶ୍ୱରଙ୍କ ବିଭୂତି ଭିନ୍ନ, ଜଗତରେ କୌଣସି ପ୍ରକାର ଘଟନା ହୋଇ ନ ପାରେ । ଶ୍ରୀଭଗବାନ୍ ଆପଣାର ପ୍ରଧାନ୨ କେତେକ ବିଭୂତିର କଥା ବ୍ୟାଖ୍ୟା କରି ଶେଷରେ ଏହି କଥା କହିଲେ, ଯେ ଜଗତରେ ସଚଳ ବା ଅଚଳ କୌଣସି ବସ୍ତୁ ଅମ୍ଭର ବିଭୂତି ବ୍ୟତିରେକେ ଉତ୍ପନ୍ନ ହୋଇ ନ ପାରେ । ଅର୍ଥାତ୍ ଏ ଅଧ୍ୟାୟ ବର୍ଣ୍ଣିତ ବସ୍ତୁଭିନ୍ନ, ଆଉ ବର୍ଣ୍ଣନ କରିବାକୁ ଯେତେ ପଦାର୍ଥ ବା ଘଟନା ଅବଶିଷ୍ଟ ରହିଲା, ସେ ସମସ୍ତ ମଧ୍ୟ, ଅମ୍ଭର ବିଭୂତି ଅଟେ । ୩୯ ।

ଶ୍ଳୋକଃ ।

ନାନ୍ତୋଽସ୍ତି ମମ ଦିବ୍ୟାନାଂ, ବିଭୂତୀନାଂ ପରନ୍ତପ ।
ଏଷ ତୂଦ୍ଦେଶତଃ ପ୍ରୋକ୍ତୋ, ବିଭୂତେର୍ବିସ୍ତରୋ ମୟା । ୪୦ ।

ଅନ୍ୱୟଃ ।

ହେ ପରନ୍ତପ ! ମମ ଦିବ୍ୟାନାଂ ବିଭୂତୀନାଂ ଅନ୍ତଃ ନ ଅସ୍ତି, ତୁ ଏଷଃ ବିଭୂତେଃ ବିସ୍ତରଃ ମୟା ଉଦ୍ଦେଶତଃ ପ୍ରୋକ୍ତଃ । ୪୦ ।

ଟୀକା ।

ପ୍ରକରଣାର୍ଥମୁପସଂହରତି । ନାନ୍ତୋଽସ୍ତୀତି । ଅନନ୍ତତ୍ୱାତ୍ ବିଭୂତୀନାଂ ତାଃ ସାକଲ୍ୟେନ ବକ୍ତୁଂ ନ ଶକ୍ୟନ୍ତେ, ଏଷ ତୁ ବିଭୂତିବିସ୍ତର ଉଦ୍ଦେଶତଃ ସଂକ୍ଷେପତଃ ପ୍ରୋକ୍ତଃ । ୪୦ ।

ପଦବ୍ୟାଖ୍ୟା ।

ନ—ନାହିଁ, ଅନ୍ତଃ—ସୀମା, ଅସ୍ତି—ଅଛି, ମମ—ଅମ୍ଭର, ଦିବ୍ୟାନାଂ ବିଭୂତୀନାଂ—ଅଲୌକିକ ବିଭୂତିମାନଙ୍କର, ପରନ୍ତପ—ହେ ଶତ୍ରୁତାପନ (ଅର୍ଜୁନ) !, ଏଷଃ—ଏହି, ତୁ—କିନ୍ତୁ, ଉଦ୍ଦେଶତଃ—ସଂକ୍ଷେପରେ, ପ୍ରୋକ୍ତଃ—କହିଲୁଁ ବିଭୂତେଃ ବିସ୍ତରଃ—ବିଭୂତିର ବିସ୍ତାରକୁ, ମୟା—ଅମ୍ଭେ । ୪୦ ।

Digitized by PPRACHIN, SOA

### ଅନୁବାଦ ।

ହେ ପରନ୍ତପ ! ଆମ୍ଭର ଦିବ୍ୟ ବିଭୂତିର ଅନ୍ତ ନାହିଁ । କିନ୍ତୁ ଆମ୍ଭେ ସଂକ୍ଷେପରେ ଏହି ବିଭୂତି ବିସ୍ତାରକୁ କହିଲୁଁ । ୪୦ ।

### ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ କାମକ୍ରୋଧାଦି-ଶତ୍ରୁ-ତାପନ ! ଆମ୍ଭର ଅଲୌକିକ ବିଭୂତିର ଅନ୍ତ ନାହିଁ ଅର୍ଥାତ୍ ତାହା ବର୍ଣ୍ଣନାଦ୍ୱାରା ଶେଷ କରାଯାଇ ନ ପାରେ । କେବଳ ତୁମ୍ଭର ପ୍ରାର୍ଥନା ଅନୁସାରେ ଆମ୍ଭେ ଏତେବେଳଯାଏ, ଯେଉଁ ବିଭୂତି ବିଷୟ ବର୍ଣ୍ଣନ କଲୁଁ, ତାହା ଅତି ସଂକ୍ଷେପରେ କହିଲୁଁ । ଫଳତଃ ବିଭୂତି କଥା ବର୍ଣ୍ଣନାଦ୍ୱାରା ଶେଷ କରିବା ଅସମ୍ଭବ ଅଟେ । ୪୦ ।

### ଶ୍ଳୋକଃ ।

ଯଦ୍‌ଯଦ୍‌ବିଭୂତିମତ୍‌ସତ୍ତ୍ୱଂ, ଶ୍ରୀମଦୂର୍ଜ୍ଜିତମେବ ବା ।
ତତ୍ତଦେବାବଗଚ୍ଛ ତ୍ୱଂ, ମମ ତେଜୋଽଂଶସମ୍ଭବଂ । ୪୧ ।

### ଅନ୍ୱୟଃ ।

ଯତ୍ ଯତ୍ ସତ୍ତ୍ୱଂ ବିଭୂତିମତ୍, ଶ୍ରୀମତ୍ ଊର୍ଜ୍ଜିତଂ ଏବ ବା ତତ୍ ତତ୍ ଏବ ମମ ତେଜୋଂଶସମ୍ଭବ (ଇତି) ତ୍ୱଂ ଅବଗଚ୍ଛ । ୪୧ ।

### ଟୀକା ।

ପୂର୍ବସ୍ତ ସାକାଂକ୍ଷଂ ପ୍ରତି କଥନମ୍ ସାକଲ୍ୟେନ କଥୟତି । ଯଦ୍‌ଯଦିତି । ବିଭୂତିମଦୈଶ୍ୱର୍ଯ୍ୟଯୁକ୍ତଂ, ଶ୍ରୀମତ୍ ସମ୍ପତ୍ତିଯୁକ୍ତଂ ଊର୍ଜ୍ଜିତଂ କେନାପି ପ୍ରଭାବବଲାଦିନା ଗୁଣେନାତିଶୟିତଂ । ଯଦ୍ୟତ୍ ସତ୍ତ୍ୱଂ ବସ୍ତୁମାତ୍ରଂ ତତ୍ତଦେବ ମମ ତେଜସଃ ପ୍ରଭାବସ୍ୟାଂଶେନ ସମ୍ଭୂତଂ ଜାନୀହି । ୪୧ ।

### ପଦବ୍ୟାଖ୍ୟା ।

ଯତ୍ ଯତ୍—ଯେଉଁ ଯେଉଁ, ବିଭୂତିମତ୍—ଐଶ୍ୱର୍ଯ୍ୟଯୁକ୍ତ, ସତ୍ତ୍ୱଂ—ଦ୍ରବ୍ୟ, ଶ୍ରୀମତ୍—ସମ୍ପତ୍ତିଯୁକ୍ତ, ଊର୍ଜ୍ଜିତଂ—ଉନ୍ନତ ଏବ—କେବଳ, ବା—ଅଥବା, ତତ୍ ତତ୍—ସେହି ସେହି (ଦ୍ରବ୍ୟକୁ), ଏବ—ନିଶ୍ଚୟ, ଅବଗଚ୍ଛ—ଜାଣ, ତ୍ୱଂ—ତୁମ୍ଭେ, ମମ—ଆମ୍ଭର, ତେଜୋଂଶସମ୍ଭବଂ—ତେଜର ଅଂଶରୁ ଉତ୍ପନ୍ନ । ୪୧ ।

### ଅନୁବାଦ ।

ଯେଉଁ ୨ ଦ୍ରବ୍ୟ, ଐଶ୍ୱର୍ଯ୍ୟଯୁକ୍ତ, ସମ୍ପତ୍ତିଯୁକ୍ତ ଅଥବା ପ୍ରଭାବ ବଳାଦି ଗୁଣଦ୍ୱାରା ଶ୍ରେଷ୍ଠ, ସେହି ୨ ପଦାର୍ଥ, ଆମ୍ଭର ତେଜର ଅଂଶରୁ ଉତ୍ପନ୍ନ ବୋଲି ତୁମ୍ଭେ ଜାଣ । ୪୧ ।

### ବିଶଦବ୍ୟାଖ୍ୟା ।

ଶେଷରେ ଶ୍ରୀଭଗବାନ୍ ଏହି କଥା ଅର୍ଜ୍ଜୁନଙ୍କୁ କହୁଅଛନ୍ତି, ଯେ ହେ ଅର୍ଜ୍ଜୁନ ! ଏ ଜଗତରେ, ଯେଉଁ ପଦାର୍ଥ ଉତ୍କୃଷ୍ଟ, ସୁନ୍ଦର ଅଥବା ଅସାଧାରଣ ଗୁଣଯୁକ୍ତ, ସେହି ୨ ପଦାର୍ଥ ଆମ୍ଭର ତେଜ ଅଂଶରୁ ଅର୍ଥାତ୍ ବିଶେଷ ବିଭୂତିରୁ ଜାତ, ଏହା ତୁମ୍ଭେ ଜାଣ ।

Digitized by PPRACHIN, SOA

ଫଳକଥା ଏହି କି ଅମ୍ଭେ କହି ନ ଥିବା ପଦାର୍ଥ ମଧ୍ୟରୁ, ଯେଉଁ ୨ ପଦାର୍ଥର ଋଚ୍ଛ ଶ୍ରେଷ୍ଠତା ଅଛୁ ଦେଖିବ, ତହିଁରେ କେବଳ ଅମ୍ଭର ବିଭୂତିର ପ୍ରାଧାନ୍ୟ ଅଛି, ଏହା ଜାଣିବ । ୪୧ ।

ଶ୍ଳୋକଃ ।

ଅଥବା ବହୁନୈତେନ, କିଂ ଜ୍ଞାତେନ ତବାର୍ଜ୍ଜୁନ ।
ବିଷ୍ଟଭ୍ୟାହମିଦଂ କୃତ୍ସ୍ନ, ମେକାଂଶେନ ସ୍ଥିତୋଜଗତ୍ । ୪୨ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗ-ବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସମ୍ବାଦେ ବିଭୂତିଯୋଗୋନାମ ଦଶମୋଽଧ୍ୟାୟଃ । ୧୦ ।

———*———

ଅନ୍ୱୟଃ ।

ହେ ଅର୍ଜ୍ଜୁନ ! ଅଥବା ଏତେନ ବହୁନା ଜ୍ଞାତେନ ତବ କିଂ ? ଅହଂ ଇଦଂ କୃତ୍ସ୍ନଂ ଜଗତ୍ ଏକାଂଶେନ ବିଷ୍ଟଭ୍ୟ ସ୍ଥିତଃ (ଅସ୍ମି) । ୪୨ ।

ଇତି ଶ୍ରୀଭଗବଦ୍‌ଗୀତାୟାଂ ଅନ୍ୱୟେ ଦଶମୋଽଧ୍ୟାୟଃ । ୧୦ ।

---

ଟୀକା ।

ଅଥବା କମେତେନ ପରିଚ୍ଛିନ୍ନବିଭୂତିଦର୍ଶନେନ । ସର୍ବତ୍ର ସମଦୃଷ୍ଟିମେବ କୁର୍ବିତ୍ୟାହ । ଅଥବେତି । ବହୁନା ପୃଥକ୍ ଜ୍ଞାତେନ କିଂ ତବ କାର୍ଯ୍ୟଂ ଯସ୍ମାଦିଦଂ ସର୍ବଂ ଜଗଦେକାଂଶେନୈକଦେଶମାତ୍ରେଣ ବିଷ୍ଟଭ୍ୟ ଧୃତ୍ୱା ବ୍ୟାପ୍ୟେତି ବା ଅହମେବା-ବସ୍ଥିତଃ ନ ମଦ୍‌ବ୍ୟତିରିକ୍ତଂ କିଞ୍ଚିଦସ୍ତି । ପାଦୋଽସ୍ୟ ବିଶ୍ୱାଭୂତାନୀତି ଶ୍ରୁତେଃ ।

ଇତ୍ଥମ୍ବୃନ୍ଦାରତଷ୍ଟି ତ୍ରେ ବହୁଧୀବିଭ ସତ୍ୟପି ।
ଈଶଦୃଷ୍ଟିବିଧାନାୟ ବିଭୂତିର୍ଦଶମେଽବ୍ରବୀତ୍ । ୪୨ ।
ଇତି ଶ୍ରୀଭଗବଦ୍‌ଗୀତାୟାଂ ସ୍ୱାମିକୃତଟୀକାୟାଂ ଦଶମୋଽଧ୍ୟାୟଃ । ୧୦ ।

---

ପଦବ୍ୟାଖ୍ୟା ।

ଅଥବା—ଅବା, ବହୁନା—ଅନେକ, ଏତେନ—ଏହି, କିଂ—କି ପ୍ରୟୋଜନ ?, ଜ୍ଞାତେନ—ଜାଣିବାଦ୍ୱାରା, ତବ—ତୁମ୍ଭର, ଅର୍ଜ୍ଜୁନ—ହେ ଅର୍ଜ୍ଜୁନ ! ବିଷ୍ଟଭ୍ୟ—ଧାରଣ କରି ଅଥବା ବ୍ୟାପି କରି, ଅହଂ—ଅମ୍ଭେ, ଇଦଂ—ଏହି, କୃତ୍ସ୍ନଂ—ସମ୍ପୂର୍ଣ୍ଣ, ଏକାଂଶେନ—ଏକ ଅଂଶରେ, ସ୍ଥିତଃ—ଅବସ୍ଥିତ ଅଛୁଁ, ଜଗତ୍—ସଂସାରକୁ । ୪୨ ।

ଇତି ଶ୍ରୀଭଗବଦ୍‌ଗୀତା—ପଦବ୍ୟାଖ୍ୟାୟାଂ ଦଶମୋଽଧ୍ୟାୟଃ । ୧୦ ।

---

ଅନୁବାଦ ।

ଅଥବା ହେ ଅର୍ଜ୍ଜୁନ । ଏହିପରି ବହୁତ କଥା ଜାଣିବାରେ ତୁମ୍ଭର କି ପ୍ରୟୋଜନ ? (ଏତିକି ଜାଣ, ଯେ) ଅମ୍ଭେ ଏହି ସମ୍ପୂର୍ଣ୍ଣ ଜଗତକୁ (ଆପଣାର) ଏକ ଅଂଶଦ୍ୱାରା ବ୍ୟାପିକରି ରହିଅଛୁଁ । ୪୨ ।

ଇତି ଶ୍ରୀଭଗବଦ୍‌ଗୀତାର ଉତ୍କଳାନୁବାଦରେ ଦଶମ ଅଧ୍ୟାୟ ସମାପ୍ତ । ୧୦ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, ହେ ଅର୍ଜୁନ! ଆମ୍ଭେ ନିଜର ବିଭୂତି ବିଷୟରେ ଯେତେ ପୃଥକ୍ ୨ କଥା କହିଲୁଁ, ତାହା ଅଳ୍ପଜ୍ଞାନୀମାନଙ୍କ ନିମିତ୍ତ, ଅର୍ଥାତ୍ ସେମାନେ ସେହିପରି ଭିନ୍ନ ୨ ପଦାର୍ଥରେ ଆମ୍ଭଙ୍କୁ ଚିନ୍ତା କରିବେ । ମାତ୍ର ତୁମ୍ଭେ ଉତ୍ତମାଧିକାରୀ, ତୁମ୍ଭର ଜ୍ଞାନ ଜନ୍ମିଅଛି, ତୁମ୍ଭର ଏପ୍ରକାର ବହୁତ ବିଭୂତି କଥା ଜାଣିବାର କିଛି ପ୍ରୟୋଜନ ନାହିଁ । ତୁମ୍ଭେ କେବଳ ଏତିକି ଜାଣ, ଯେ ଏ ସମସ୍ତ ଜଗତକୁ ଆମ୍ଭେ ଏକାଂଶଦ୍ୱାରା ବ୍ୟାପି କରି ରହିଅଛୁଁ । ତୁମ୍ଭେ ଆମ୍ଭର ଏହି ବିରାଟରୂପକୁ ଧ୍ୟାନ କର ।

ଏକାଦଶ ଅଧ୍ୟାୟରେ ଯେଉଁ ବିରାଟରୂପର ବର୍ଣ୍ଣନ କରିଯିବ, ଏ ଅଧ୍ୟାୟର ଶେଷରେ ତାହାର ସୂଚନା ଶ୍ରୀଭଗବାନ୍ ଏହିପ୍ରକାର ଦେଖାଇଲେ । ୪୨ ।

ଇତି ଶ୍ରୀଭଗବଦ୍ଗୀତାର ବିଶଦବ୍ୟାଖ୍ୟାରେ ଦଶମ ଅଧ୍ୟାୟ ସମାପ୍ତ । ୧୦ ।



# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ଏକାଦଶୋଽଧ୍ୟାୟଃ ।

### ବିଶ୍ୱରୂପ-ଦର୍ଶନଂ ।

ଶ୍ଲୋକଃ ।

ଅର୍ଜ୍ଜୁନ ଉବାଚ ।—ମଦନୁଗ୍ରହାୟ ପରମଂ, ଗୁହ୍ୟମଧ୍ୟାତ୍ମସଂଜ୍ଞିତଂ ।
ଯତ୍ତ୍ୱୟୋକ୍ତଂ ବଚସ୍ତେନ, ମୋହୋଽୟଂ ବିଗତୋ ମମ । ୧ ।

ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ । (ହେ ଭଗବନ୍) ମଦନୁଗ୍ରହାୟ ଯତ୍ ପରମଂ ଗୁହ୍ୟଂ ଅଧ୍ୟାତ୍ମସଂଜ୍ଞିତଂ ବଚଃ ତ୍ୱୟା ଉକ୍ତଂ ତେନ ମମ ଅୟଂ ମୋହଃ ବିଗତଃ । ୧ ।

ସ୍ୱାମିକୃତଟୀକା ।

ଉକ୍ତୈର୍ବିଭୂତିଭିଃ ପ୍ରୋଚ୍ୟ ରୂପସ୍ୟ ପରସ୍ୟ ହରିଃ ।
ତଦ୍ଦୃକ୍ଷୋରର୍ଜ୍ଜୁନସ୍ୟାଥ ବିଶ୍ୱରୂପମଦର୍ଶୟତ୍ ।

ପୂର୍ବାଧ୍ୟାୟାନ୍ତେ ବିଷ୍ଟଭ୍ୟାହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗଦିତି ବିଶ୍ୱାତ୍ମକଂ ପାରମେଶ୍ୱରରୂପମୁପକ୍ଷିପ୍ତଂ ତଦ୍ଦ୍ରଷ୍ଟୁଂ ପୂର୍ବୋକ୍ତମନୁବଦନ୍ନର୍ଜ୍ଜୁନ ଉବାଚ । ମଦନୁଗ୍ରହାୟେତି ଚତୁର୍ଭିଃ । ମମାନୁଗ୍ରହାୟ ଶୋକନିବୃତ୍ତୟେ ପରମଂ ପରମାତ୍ମନିଷ୍ଠଂ ଗୁହ୍ୟଂ ଗୋପ୍ୟମପି ଅଧ୍ୟାତ୍ମସଂଜ୍ଞିତମାତ୍ମାନାତ୍ମବିବେକବିଷୟଂ ଯତ୍ତ୍ୱୟୋକ୍ତଂ ବଚଃ ଅଶୋଚ୍ୟାନନ୍ୱଶୋଚସ୍ତ୍ୱମିତ୍ୟାଦି ଷଷ୍ଠାଧ୍ୟାୟପର୍ଯ୍ୟନ୍ତଂ ଯଦ୍ବାକ୍ୟଂ ତେନ ମମାୟଂ ମୋହୋଽହଂ ହନ୍ତା ଏତେ ହନ୍ୟନ୍ତ ଇତ୍ୟାଦିଲକ୍ଷଣଭ୍ରମୋ ବିଗତୋ ବିନଷ୍ଟଃ ଆତ୍ମନଃ କର୍ତ୍ତୃତ୍ୱାଦ୍ୟଭାବୋକ୍ତେଃ । ୧ ।

ପଦବ୍ୟାଖ୍ୟା ।

ଅର୍ଜ୍ଜୁନଃ ଉବାଚ—ଅର୍ଜ୍ଜୁନ କହିଲେ, ମଦନୁଗ୍ରହାୟ—ମୋହଠାରେ ଅନୁଗ୍ରହ କରିବା ନିମିତ୍ତ, ପରମଂ ଗୁହ୍ୟଂ—ଅତି ଗୋପନୀୟ, ଅଧ୍ୟାତ୍ମସଂଜ୍ଞିତଂ—ଅଧ୍ୟାତ୍ମନାମକ, ଯତ୍ତ୍ୱୟୋକ୍ତଂ—ଯାହା ଆପଣ କହିଲେ, ବଚଃ—ବଚନକୁ, ତେନ—ତାହାଦ୍ୱାରା, ମୋହଃ ଅୟଂ—ଏହି ମୋହ (ଅଜ୍ଞାନ), ବିଗତଃ—ଦୂର ହେଲା, ମମ—ମୋହର । ୧ ।

ଅନୁବାଦ ।

ଅର୍ଜ୍ଜୁନ କହିଲେ ( ହେ କୃଷ୍ଣ ! ଆପଣ ) ମୋହପ୍ରତି ଅନୁଗ୍ରହ କରି ପରମଗୋପନୀୟ ଆତ୍ମବିଷୟକ, ଯେଉଁ ବଚନ କହିଲେ, ତାହାଦ୍ୱାରା ମୋହର ଏହି ମୋହ ଦୂର ହେଲା । ୧ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ କହିଲେ, ହେ ଭଗବନ୍ ! ପ୍ରଥମ ଅଧ୍ୟାୟରେ, ଯୁଦ୍ଧାର୍ଥ ଉପସ୍ଥିତ କୌରବ-ମାନଙ୍କୁ ବଧ କଲେ ପାପ ହେବ, ଇତ୍ୟାଦି ମୋହର ଭ୍ରମ ହୋଇଥିଲା । ସପ୍ତମ, ଅଷ୍ଟମ ଓ ନବମ ଅଧ୍ୟାୟମାନଙ୍କରେ ସଂକ୍ଷେପରେ ଏବଂ ଦଶମ ଅଧ୍ୟାୟରେ ବିଶେଷରୂପରେ ବିଭୂତି-ଯୋଗ ଓ ଷଷ୍ଠାଧ୍ୟାୟ ପର୍ଯ୍ୟନ୍ତ ପରମ ଗୋପନୀୟ ଅଧ୍ୟାତ୍ମଜ୍ଞାନ, ଯାହା ତୁ ଆପଣ ଅନୁଗ୍ରହ କରି ମତେ ବୁଝାଇଲେ, ତାହାଦ୍ୱାରା ମୋହର ସେହି ଭ୍ରମ ବିଦୂରିତ ହେଲା; ଅର୍ଥାତ୍ ଏବେ ମୁଁ ସମ୍ପୂର୍ଣ୍ଣରୂପେ ବୁଝିପାରିଲି, ଯେ ଜଗତର ପ୍ରତ୍ୟେକ ବିଷୟ ଆପଣଙ୍କ ବିଭୂତିର ପ୍ରକାଶମାତ୍ର ଏବଂ ଜୀବର କିଛିମାତ୍ର କର୍ତ୍ତୃତ୍ୱ ନାହିଁ ।

ଏ ସ୍ଥଳରେ ଏପରି ଆଶଙ୍କା ହୋଇପାରେ, ଯେ ଧର୍ମକ୍ଷେତ୍ର କୁରୁକ୍ଷେତ୍ରରେ ଅର୍ଜ୍ଜୁନ-ଙ୍କର, ଯେଉଁ ସତ୍ତ୍ୱଗୁଣର ଉଦୟ ହୋଇଥିଲା ଏବଂ ଯାହା ବଳରେ ସେ, ଆତ୍ମୀୟ ବଧରେ ପାପ ହେବ ବୋଲି କହି ଯୁଦ୍ଧରୁ ନିବୃତ୍ତ ହେଉଥିଲେ, ତାହା, ଯେବେ ମୋହ ବା ଭ୍ରମ ହେଲା, ତେବେ ଆଉ ଲୋକେ ଧର୍ମକ୍ଷେତ୍ର ତୀର୍ଥାଦିକୁ ଯିବେ କାହିଁକି ? ଭ୍ରମ ଅର୍ଜ୍ଜିବାକୁ କେଉଁ ବୁଦ୍ଧିମାନ୍ ବ୍ୟକ୍ତି ତୀର୍ଥଯାତ୍ରା କରିବ ? ତାହାର ଉତ୍ତରରେ ଏହି କଥା କୁହା ଯାଇପାରେ, ଯେ ଧର୍ମକ୍ଷେତ୍ର ପ୍ରଭାବରେ, ଯେଉଁ ସତ୍ତ୍ୱଗୁଣ ଉଦୟ ହୋଇଥିଲା, ତାହା ମାୟାର ଅଧୀନ । କାହିଁକି ନା ମାୟା ତ୍ରିଗୁଣମୟୀ ଅଟେ । ମାୟାମୟ ଜଗତରେ କେବଳ ସତ୍ତ୍ୱଗୁଣର ଶ୍ରେଷ୍ଠତା, କିନ୍ତୁ ଜ୍ଞାନରୂପ ଆଲୋକରେ ମାୟାର ପ୍ରବେଶ କରିବାର ଅଧିକାର ନାହିଁ । ସୁତରାଂ ସତ୍ତ୍ୱ-ଗୁଣର ଶ୍ରେଷ୍ଠତା କେଉଁଠାରୁ ଆସିବ ? ମାୟାମୟ ଜଗତ୍ ଦ୍ୱୈତଜ୍ଞାନର—ଭେଦଜ୍ଞାନର ଆଧାର, ଯେତେବେଳ ଯାଏ ଭେଦଜ୍ଞାନ ରହିବ, ସେତେବେଳ ଯାଏ 'ସେ' 'ମୁଁ' 'ତୁ' ଇତ୍ୟାଦି ପ୍ରଭେଦ ଓ ପରକୁ ମାରିଲେ ପାପ ହେବ ଓ ତୀର୍ଥକୁ ଗଲେ ପୁଣ୍ୟ ହେବ ଇତ୍ୟାଦି ସତ୍ତ୍ୱଗୁଣ-କାର୍ଯ୍ୟର ଶ୍ରେଷ୍ଠତା ପ୍ରବଳ ରହିବ, ମାତ୍ର ଜ୍ଞାନ ଉଦୟ ହେଲେ, ମାୟା ବିଦୂରିତ ହୁଏ ଓ ମାୟା ସଙ୍ଗେ ମାୟାମୟ ଜଗତର ଭେଦଜ୍ଞାନ ଓ ସତ୍ତ୍ୱଗୁଣର ଶ୍ରେଷ୍ଠତା ବିଦୂରିତ ହୁଏ ।

ଅର୍ଜ୍ଜୁନଙ୍କର ଆତ୍ମଜ୍ଞାନ ଉଦୟ ହୋଇ ନ ଥିବା ପର୍ଯ୍ୟନ୍ତ, କୌରବଗଣ ତାଙ୍କର ଭ୍ରାତା, ଭୀଷ୍ମ ପିତାମହ ଓ ଦ୍ରୋଣ ଗୁରୁ ଇତ୍ୟାଦି ଭେଦଜ୍ଞାନ ତାଙ୍କର ପ୍ରବଳ ଥିଲା । ଧର୍ମ-କ୍ଷେତ୍ର ପ୍ରଭାବରେ ମାୟାର ଅଂଶ ମାତ୍ର ଯେଉଁ ସତ୍ତ୍ୱଗୁଣ ଉଦୟ ହୋଇଥିଲା ଏବଂ ଯାହା ପ୍ରଭାବରେ ଆତ୍ମୀୟ ଲୋକଙ୍କୁ ବଧ କଲେ ପାପ ହେବ ବୋଲି ସେ ଜାଣିଥିଲେ, ସେହି ମୋହ ବା ଭ୍ରମ, ତାଙ୍କର ଏବେ ଆତ୍ମଜ୍ଞାନ ପ୍ରକାଶ ହେବାରୁ, ବିଦୂରିତ ହେଲା । କେବଳ, ଯେ-ତେଦିନ ଯାଏ ଶରୀର ଥିବ, ତେତେଦିନ ଯାଏ କର୍ମ କରିବା ଉଚିତ ବୋଲି ଓ ଲୋକଶିକ୍ଷା-ପାଇଁ କର୍ମ କରଣୀୟ ବୋଲି ଏବଂ ନିଷ୍କାମକର୍ମଦ୍ୱାରା ଚିତ୍ତ ଶୁଦ୍ଧି ହୋଇ ଜ୍ଞାନର ସ୍ଥିରତା ଜାତ ହୁଏ ବୋଲି, ସେ, ବର୍ଣ୍ଣାଶ୍ରମିକ କର୍ମ କଲେ ଅର୍ଥାତ୍ ଯୁଦ୍ଧରେ ପ୍ରବୃତ୍ତ ହେଲେ । ୧ ।

Digitized by PPRACHIN, SOA

### ଶ୍ଳୋକଃ ।

ଭବାପ୍ୟୟୌ ହି ଭୂତାନାଂ, ଶ୍ରୁତୌ ବିସ୍ତରଶୋ ମୟା ।
ତ୍ୱତ୍ତଃ କମଳପତ୍ରାକ୍ଷ, ମାହାତ୍ମ୍ୟମପି ଚାବ୍ୟୟଂ । ୨ ।

### ଅନ୍ୱୟଃ ।

ହେ କମଳପତ୍ରାକ୍ଷ ! ଭୂତାନାଂ ହି ଭବାପ୍ୟୟୌ ତ୍ୱତ୍ତଃ, ମୟା ବିସ୍ତରଶଃ ଶ୍ରୁତୌ ଅବ୍ୟୟଂ ମାହାତ୍ମ୍ୟଂ ଅପି ଚ (ଶ୍ରୁତଂ) । ୨ ।

### ଟୀକା ।

ତଦ୍ ଭବେତ । ଭୂତାନାଂ ଭବାପ୍ୟୟୌ ସୃଷ୍ଟିପ୍ରଳୟୌ ତ୍ୱତ୍ତଃ ସକାଶାଦେବ ଭବତଃ ଇତି ଶ୍ରୁତୌ ମୟା । ଅହଂ କୃତ୍ସ୍ନସ୍ୟ ଜଗତଃ ପ୍ରଭବଃ ପ୍ରଳୟସ୍ତଥେତ୍ୟାଦୌ ବିସ୍ତରଶଃ ପୁନଃ ପୁନଃ, କମଳସ୍ୟ ପତ୍ରେ ଇବ ସୁପ୍ରସନ୍ନେ ବିଶାଳେ ଅକ୍ଷିଣୀ ଯସ୍ୟ ତବ, ହେ କମଳପତ୍ରାକ୍ଷ ! ମାହାତ୍ମ୍ୟମପି ଚାବ୍ୟୟଂ ଅକ୍ଷୟଂ ଶ୍ରୁତଂ ବିଶ୍ୱସୃଷ୍ଟ୍ୟାଦିକର୍ତ୍ତୃତ୍ୱେଽପି ସଦ୍-ନିର୍ଲିପ୍ତତ୍ୱେଽପି ଶୁଭାଶୁଭକର୍ମକାରୟିତୃତ୍ୱେଽପି ବନ୍ଧମୋକ୍ଷାଦିବିଚିତ୍ରଫଳଦାତୃତ୍ୱେଽପି ନୈର୍ଘୃଣ୍ୟବୈଷମ୍ୟାସଙ୍ଗୌଦାସୀନ୍ୟାଦି-ଲକ୍ଷଣମପରିମିତଂ ମତ୍ତ୍ୱତ୍ତଃ ଶ୍ରୁତଂ ଅବ୍ୟକ୍ତଂ ବ୍ୟକ୍ତିମାପନ୍ନଂ ମନ୍ୟନ୍ତେ ମାମବୁଦ୍ଧୟ ଇତି, ମୟା ତତମିଦଂ ସର୍ବମିତି, ନ ଚ ମାଂ ତାନି କର୍ମାଣୀତି, ସମୋଽହଂ ସର୍ବଭୂତେଷ୍ୱିତ୍ୟାଦିନା ଚ ତତ୍ତଦ୍‌ପ୍ରକରଣାନ୍ୟପି ଗୀତାନାମହଂ କର୍ଣ୍ଣୈର୍ବ୍ୟାଦ ମହା-ନ୍ମୋମୋହଃ ବିଗତ ଇତି ଭାବଃ । ୨ ।

### ପଦବ୍ୟାଖ୍ୟା ।

ଭବାପ୍ୟୟୌ—ଉତ୍ପତ୍ତି ଓ ବିନାଶ, ହି—ନିଶ୍ଚୟ, ଭୂତାନାଂ—ସମସ୍ତ ଜଗତର, ଶ୍ରୁତୌ—ଶ୍ରବଣ କଲି, ବିସ୍ତରଶଃ—ବାରମ୍ବାର, ମୟା—ମୁଁ, ତ୍ୱତ୍ତଃ—ଆପଣଙ୍କଠାରୁ, କମଳପତ୍ରାକ୍ଷ—ହେ ପଦ୍ମପଲାଶଲୋଚନ !, ମାହାତ୍ମ୍ୟଂ—ମହତ୍ତ୍ୱ, ଅପି ଚ—ମଧ୍ୟ, ଅବ୍ୟୟଂ—ଅକ୍ଷୟ । ୨ ।

### ଅନୁବାଦ ।

ହେ କମଳପତ୍ରାକ୍ଷ ! ଆପଣଙ୍କଠାରୁ, ଯେ ଭୂତମାନଙ୍କର ଉତ୍ପତ୍ତି ଓ ବିନାଶ ହୁଏ, ତାହା ଏବଂ (ଆପଣଙ୍କର) ଅକ୍ଷୟ ମାହାତ୍ମ୍ୟ, ବିସ୍ତୃତରୂପେ ମୁଁ ଶ୍ରବଣ କଲି । ୨ ।

### ବିଶଦବ୍ୟାଖ୍ୟା ।

ଅର୍ଜୁନ କହୁଅଛନ୍ତି, ହେ କମଳପତ୍ରାକ୍ଷ ଶ୍ରୀକୃଷ୍ଣ ! ସମସ୍ତ ଜଗତର ଉତ୍ପତ୍ତି ଓ ବିନାଶ, ଯେ ଆପଣଙ୍କଠାରୁ ହେଉଅଛି, ତାହା ମୁଁ ବିସ୍ତୃତରୂପେ ଆପଣଙ୍କଠାରୁ ଶୁଣିଲି । ଆପଣଙ୍କର ଉପାଧିଯୁକ୍ତ ମାହାତ୍ମ୍ୟ ଓ ଉପାଧିଶୂନ୍ୟ ମାହାତ୍ମ୍ୟ ମଧ୍ୟ ଆପଣଙ୍କ ଶ୍ରୀମୁଖରୁ ଶୁଣିଲି ।

ଏ ଶ୍ଳୋକରେ 'କମଳପତ୍ରାକ୍ଷ' ସମ୍ବୋଧନଦ୍ୱାରା ପଦ୍ମପତ୍ର ତୁଲ୍ୟ ସୁନ୍ଦର ଲୋଚନଯୁକ୍ତ ସାକାର (ଉପାଧିଯୁକ୍ତ) ମୂର୍ତ୍ତିର ଯେପରି ସୂଚନା ହୋଇଅଛି, ସେହିପରି ପକ୍ଷାନ୍ତରେ ମୁକ୍ତିର ଏକମାତ୍ର କାରଣ ଓ ବ୍ରହ୍ମାନନ୍ଦ ସୁଖର ପ୍ରକାଶକ, ଯେ ଆତ୍ମଜ୍ଞାନ, ତାହାଦ୍ୱାରା, ଯାହାଙ୍କୁ ଲାଭ କରାଯାଏ, ସେହି ନିରାକାର ଓ ଉପାଧିଶୂନ୍ୟ ପରମାତ୍ମାଙ୍କର ଅର୍ଥ ମଧ୍ୟ, ପ୍ରକାଶିତ ହୋଇ-ଅଛି । ଯଥା:—କଂ ବ୍ରହ୍ମାନନ୍ଦସୁଖଂ ଅଲତି ପ୍ରକାଶୟତି ଇତି କମଲଂ—ଆତ୍ମଜ୍ଞାନଂ । ଅର୍ଥାତ୍ ବ୍ରହ୍ମାନନ୍ଦ ସୁଖର ପ୍ରକାଶକ ଆତ୍ମଜ୍ଞାନକୁ 'କମଳ' ବୋଲାଯାଏ । ତାହା, ସଂସାରରୂପ ସମୁଦ୍ରରେ ପଡ଼ିଥିବା ଜୀବକୁ ତ୍ରାଣ କରେ ବୋଲି (ପତନାତ୍ ତ୍ରାୟତେ ଇତି ପତ୍ରଂ) 'ପତ୍ର'

Digitized by PPRACHIN, SOA

ନାମରେ କଥିତ, ସେହି ପତ୍ରରୂପ କମଳଦ୍ୱାରା ଅର୍ଥାତ୍ ମୁକ୍ତିର ହେତୁରୂପ ଆତ୍ମଜ୍ଞାନଦ୍ୱାରା (ଅକ୍ଷ୍ୟତେ ଗମ୍ୟତେ ଇତି) ତାହାଙ୍କୁ ଲାଭ କରାଯାଏ, ଅତଏବ, ସେହି ନିର୍ଗୁଣ ଶୁଦ୍ଧ ବ୍ରହ୍ମଙ୍କୁ 'କମଳପତ୍ରାକ୍ଷ' ବୋଲାଯାଏ । ୨ ।

ଶ୍ଳୋକଃ ।

ଏବମେତଦ୍ୟଥାତ୍ଥ ତ୍ୱମାତ୍ମାନଂ ପରମେଶ୍ୱର ।
ଦ୍ରଷ୍ଟୁମିଚ୍ଛାମି ତେ ରୂପମୈଶ୍ୱରଂ ପୁରୁଷୋତ୍ତମ । ୩

ଅନ୍ୱୟଃ ।

ହେ ପରମେଶ୍ୱର । ତ୍ୱଂ ଯଥା ଆତ୍ମାନଂ ଆତ୍ଥ, ଏତତ୍ ଏବ, ହେ ପୁରୁଷୋତ୍ତମ ! ତେ ଐଶ୍ୱରଂ ରୂପଂ ଦ୍ରଷ୍ଟୁଂ ଇଚ୍ଛାମି । ୩ ।

ଟୀକା ।

କିଞ୍ଚ ଏବମେତଦିତି । ଭବାପ୍ୟୟୌ ହି ଭୂତାନାମିତ୍ୟାଦି ମହ୍ୟଂ ଶ୍ରୁତଂ ଯଥା ତେଦାତ୍ମାନଂ ତ୍ୱମାତ୍ଥ ବିଷ୍ଟଭ୍ୟା-ହମିଦଂ କୃତ୍ସ୍ନମେକାଂଶେନ ସ୍ଥିତୋ ଜଗଦିତ୍ୟେବ କଥୟସି, ହେ ପରମେଶ୍ୱର ! ଏତଦେବମେବ ଅତ୍ରାପ୍ୟବିଶ୍ୱାସୋ ମମ ନାସ୍ତି, ତଥାପି ହେ ପୁରୁଷୋତ୍ତମ ! ତବୈଶ୍ୱର୍ୟ୍ୟଂ, ଜ୍ଞାନୈଶ୍ୱର୍ୟ୍ୟଶକ୍ତି-ବୀର୍ୟ୍ୟାଦିଭିଃ ସମ୍ପନ୍ନଂ ରୂପଂ କୌତୁହଳାଦହଂ ଦ୍ରଷ୍ଟୁମିଚ୍ଛାମି । । ୩ ।

ପଦବ୍ୟାଖ୍ୟା ।

ଏବ—ଏହି ପ୍ରକାର, ଏତତ୍—ଏହା, ଯଥା ଆତ୍ଥ—ଯେପରି କହିଲେ, ତ୍ୱଂ—ଆପଣ, ଆତ୍ମାନଂ—ଆପଣାକୁ, ପରମେଶ୍ୱର—ହେ ଶ୍ରେଷ୍ଠଶକ୍ତିଶାଳିନ୍ !, ଦ୍ରଷ୍ଟୁଂ—ଦେଖିବାକୁ, ଇଚ୍ଛାମି—ଇଚ୍ଛା କରୁଅଛି, ତେ—ଆପଣଙ୍କର, ରୂପଂ—ରୂପକୁ, ଐଶ୍ୱରଂ—ଈଶ୍ୱରସମ୍ବନ୍ଧୀୟ, ପୁରୁଷୋତ୍ତମ—ହେ ପୁରୁଷଶ୍ରେଷ୍ଠ । । ୩ ।

ଅନୁବାଦ ।

ହେ ପରମେଶ୍ୱର ! ଆପଣ ନିଜ ବୃତ୍ତାନ୍ତ, ଯେପରି ବର୍ଣ୍ଣନ କଲେ, ତାହା ଯଥାର୍ଥ । (ତଥାପି) ହେ ପୁରୁଷୋତ୍ତମ ! ମୁଁ ଆପଣଙ୍କର ସେହି ଈଶ୍ୱରରୂପ ଦର୍ଶନ କରିବାକୁ ଇଚ୍ଛା କରୁଅଛି । ୩ ।

ବିଶଦବ୍ୟାଖ୍ୟା ।

ଅର୍ଜୁନ କହୁଅଛନ୍ତି, ହେ ପରମେଶ୍ୱର ! ଅର୍ଥାତ୍ ହେ ସର୍ବଶ୍ରେଷ୍ଠ ମହାତ୍ମନ୍ ! ଆପଣ, ନିଜର ବିଭୂତି ବିଷୟ ବର୍ଣ୍ଣନ କରି କହିଅଛନ୍ତି, ଯେ ଏ ସମସ୍ତ ଜଗତକୁ ଆପଣ ଏକାଂଶରେ ଧାରଣ କରି ରହିଅଛନ୍ତି, ତାହା ଯଥାର୍ଥ । କାହିଁକି ନା ମହାତ୍ମାମାନଙ୍କର ବଚନ ଯଥାର୍ଥ । ଆପଣ ସର୍ବଶ୍ରେଷ୍ଠ ମହାତ୍ମା, ସୁତରାଂ ଆପଣଙ୍କଠାରେ ମୋହର ଅଣୁମାତ୍ର ଅବିଶ୍ୱାସ ନାହିଁ । କେବଳ, ମୋହର କୌତୁହଳ ବୃଦ୍ଧି ହେବାରୁ ଓ ଏ ଜୀବନ ସାର୍ଥକ କରିବା ପାଇଁ ଆପଣଙ୍କର ସେହି ଐଶ୍ୱରରୂପ ଅର୍ଥାତ୍ ଯେଉଁ ରୂପର ଏକାଂଶରେ ଆପଣ ଏହି ସମସ୍ତ ଜଗତକୁ ଧାରଣ କରିଅଛନ୍ତି, ତାହା ଦେଖିବାକୁ ମୋହର ଇଚ୍ଛା ହେଉଅଛି । ୩ ।

ଶ୍ଳୋକଃ ।

ମନ୍ୟସେ ଯଦି ତଚ୍ଛକ୍ୟଂ, ମୟା ଦ୍ରଷ୍ଟୁମିତି ପ୍ରଭୋ ।

ଯୋଗେଶ୍ୱର ତତୋ ମେ ତ୍ୱଂ, ଦର୍ଶୟାତ୍ମାନମବ୍ୟୟଂ । ୪ ।

ଅନ୍ୱୟଃ ।

ହେ ପ୍ରଭୋ ! ତତ୍ ରୂପଂ ମୟା ଦ୍ରଷ୍ଟୁଂ ଶକ୍ୟଂ, ଇତି ଯଦି ମନ୍ୟସେ, ତତଃ ହେ ଯୋଗେଶ୍ୱର ! ତ୍ୱଂ ଅବ୍ୟୟଂ ଅତ୍ମାନଂ ମେ ଦର୍ଶୟ । ୪ ।

ଟୀକା ।

ନ ଗୃହଂ ଦ୍ରଷ୍ଟୁମିଚ୍ଛାମୀତ୍ୟେତାବତୈବ ତ୍ୱୟା ତଦ୍ରୂପଂ ଦର୍ଶୟିତବ୍ୟଂ, କିଂ ତର୍ହି, ମନ୍ୟସ ଇତ । ଯୋଗିନ ଏବ ଯୋଗାସ୍ତେଷାମୀଶ୍ୱର । ମୟାର୍ଜୁନେନ ତଦ୍ରୂପଂ ଦ୍ରଷ୍ଟୁଂ ଶକ୍ୟମିତ ଯଦି ମନ୍ୟସେ ତତସ୍ତର୍ହି ତଦ୍ରୂପଂ ପରମାତ୍ମାନମବ୍ୟୟଂ ନତ୍ୟଂ ମମ ଦର୍ଶୟ । ୪ ।

ପଦବ୍ୟାଖ୍ୟା ।

ମନ୍ୟସେ—ମନେ କରନ୍ତି, ଯଦି—ଯେବେ, ତତ୍—ସେହି, ଶକ୍ୟଂ—ଯୋଗ୍ୟ, ମୟା—ମୁଁ, ଦ୍ରଷ୍ଟୁଂ—ଦେଖିବାକୁ, ଇତି—ଏହା, ପ୍ରଭୋ—ହେ ପ୍ରଭୋ !, ଯୋଗେଶ୍ୱର—ହେ ଯୋଗିଶ୍ରେଷ୍ଠ !, ତତଃ—ତେବେ, ମେ—ମତେ ତ୍ୱଂ—ଆପଣ, ଦର୍ଶୟ—ଦେଖାଇବା ହେଉନ୍ତୁ, ଆତ୍ମାନଂ—ଆପଣାକୁ—ନିଜରୂପକୁ, ଅବ୍ୟୟଂ—ଅବିନାଶୀ । ୫ ।

ଅନୁବାଦ ।

ହେ ପ୍ରଭୋ ! ମୁଁ ସେହି ରୂପ ଦର୍ଶନ କରିବାକୁ ଯୋଗ୍ୟ ବୋଲି, ଯଦି ଆପଣ ମନେ କରନ୍ତି, ତେବେ, ହେ ଯୋଗେଶ୍ୱର ! (ଆପଣଙ୍କର ସେହି) ଅବିନାଶୀ ନିଜରୂପ ମତେ ଦେଖାଇବା ହେଉନ୍ତୁ । ୪ ।

ବିଶଦବ୍ୟାଖ୍ୟା ।

ଅର୍ଜୁନ କହିଲେ, ହେ ପ୍ରଭୋ ! ମୁଁ ଦେଖିବାକୁ ଇଚ୍ଛା କଲେ ମଧ୍ୟ, ସେରୂପ ଦର୍ଶନ କରିବାର ଯୋଗ୍ୟତା ମୋହର ଅଛି କି ନାହିଁ, ତାହା ମତେ ଜଣା ନାହିଁ, ଆପଣ ପ୍ରଭୁ, ଅର୍ଥାତ୍ ଉତ୍ତ୍ୟର ଯୋଗ୍ୟତା ପରୀକ୍ଷକ । ଅତଏବ ଆପଣ, ଯଦି ମନେ କରନ୍ତି, ଯେ ମୁଁ, ସେ ରୂପ ଦର୍ଶନ କରିବାକୁ ଯୋଗ୍ୟ, ତେବେ, ମତେ ସେହି ଅବ୍ୟୟ ରୂପ ଦେଖାଇବା ହେଉନ୍ତୁ । ପୁଣି ଆପଣ ଯୋଗିଶ୍ରେଷ୍ଠ—ଅଣିମାଦି ଅଷ୍ଟୈଶ୍ୱର୍ଯ୍ୟଯୁକ୍ତ । ଏ ରଣସଙ୍କୁଳ କୁରୁକ୍ଷେତ୍ରରେ ବିଶ୍ୱରୂପ ଧାରଣ କରିବାକୁ ଆପଣ ସହଜରେ ପାରନ୍ତି; ଅଥବା, ସେ ରୂପ ଦର୍ଶନ କରିବା ବିଷୟରେ ମୁଁ ଅଯୋଗ୍ୟ ହେଲେ ମଧ୍ୟ, ତାହା ମତେ ଦେଖାଇବା ଆପଣଙ୍କ ପକ୍ଷରେ ଅସମ୍ଭବ ନୁହେ । ୪ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—ପଶ୍ୟ ମେ ପାର୍ଥ ରୂପାଣି, ଶତଶୋଽଥ ସହସ୍ରଶଃ ।

ନାନାବିଧାନି ଦିବ୍ୟାନି, ନାନାବର୍ଣ୍ଣାକୃତୀନି ଚ । ୫ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ହେ ପାର୍ଥ । ଶତଶଃ ଅଥ ସହସ୍ରଶଃ ନାନାବିଧାନି ଦିବ୍ୟାନି ଚ ନାନାବର୍ଣ୍ଣା-କୃତୀନି ମେ ରୂପାଣି ପଶ୍ୟ । ୫ ।

ଟୀକା ।

ଏବଂ ପ୍ରାର୍ଥିତଃ ସନ୍ନତ୍ୟଦ୍ଭୁତଂ ରୂପଂ ଦର୍ଶୟିଷ୍ୟନ୍ ସାବଧାନୋଭବେତ୍ୟେବମର୍ଜ୍ଜୁନମଭିମୁଖୀକରୋତି । ଶ୍ରୀଭଗବାନ୍ ଉବାଚ । ପଶ୍ୟେତି ଚତୁର୍ଭିଃ । ରୂପସ୍ୟୈକତ୍ୱେଽପି ନାନାବିଧତ୍ୱାତ୍ ପ୍ରାଣୀତ ବହୁବଚନଂ ଅପରିମିତାନି ଅନେକପ୍ରକାରାଣି ଦିବ୍ୟାନ୍ୟଲୌକିକାନି ମମ ରୂପାଣି ପଶ୍ୟ, ବର୍ଣ୍ଣାଃ ଶୁକ୍ଳକୃଷ୍ଣାଦୟଃ ଆକୃତୟଃ ଅବୟବବିଶେଷାଃ ନାନା ଅନେକା ବର୍ଣ୍ଣା ଆକୃତୟଶ୍ଚ ଯେଷାଂ ତାନି ନାନାବର୍ଣ୍ଣାକୃତୀନି । ୫ ।

ପଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ଉବାଚ—ଭଗବାନ୍ କହିଲେ, ପଶ୍ୟ—ଦେଖ, ମେ—ଆମ୍ଭର, ପାର୍ଥ—ହେ ଅର୍ଜ୍ଜୁନ !, ରୂପାଣି—ରୂପମାନଙ୍କୁ, ଶତଶଃ—ଶତପ୍ରକାର, ଅଥ—ଅନନ୍ତର ବା ଅଥବା, ସହସ୍ରଶଃ—ହଜାରପ୍ରକାର, ନାନାବିଧାନି—ନାନାପ୍ରକାର, ଦିବ୍ୟାନି—ଅଲୌକିକ—ଅସାଧାରଣ, ନାନାବର୍ଣ୍ଣାକୃତୀନି ଚ—ନାନାପ୍ରକାର ବର୍ଣ୍ଣ ଓ ନାନାପ୍ରକାର ଆକୃତିଯୁକ୍ତ । ୫ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ହେ ପାର୍ଥ ! ଆମ୍ଭର ନାନାବର୍ଣ୍ଣ ଓ ନାନା ଆକୃତିବିଶିଷ୍ଟ ଶତ ଶତ ଓ ସହସ୍ର ସହସ୍ର ଅଥବା ନାନାପ୍ରକାର ଦିବ୍ୟରୂପ ଦର୍ଶନ କର । ୫ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ତୁମ୍ଭେ ଆମ୍ଭର ଐଶ୍ୱର୍ଯ୍ୟ ରୂପ ଦେଖିବାକୁ ଇଚ୍ଛା କରିଥିଲ, ମାତ୍ର ସାବଧାନ ହୋଇ ଆମ୍ଭର ରୂପ ସବୁ ଦର୍ଶନ କର । ସେ ରୂପର ସଂଖ୍ୟା ନାହିଁ, ତାହା ଶତ୨ ସହସ୍ର୨ ବା ନାନାବିଧ ଅଟେ ଓ ତାହା ଶୁକ୍ଳ, କୃଷ୍ଣ, ପୀତ, ରକ୍ତାଦି ନାନାପ୍ରକାର ବର୍ଣ୍ଣଯୁକ୍ତ ଓ ମନୁଷ୍ୟ, ଦେବ, ରାକ୍ଷସ, ବ୍ୟାଘ୍ର, ସିଂହ, ଗଜ ପ୍ରଭୃତି ନାନା ଆକାର-ବିଶିଷ୍ଟ ଏବଂ ଅଲୌକିକ ଓ ଅପୂର୍ବ ଅଟେ । ୫ ।

ଶ୍ଳୋକଃ ।

ପଶ୍ୟାଦିତ୍ୟାନ୍ ବସୂନ୍ ରୁଦ୍ରା,ନଶ୍ୱିନୌ ମରୁତସ୍ତଥା ।
ବହୂନ୍ୟଦୃଷ୍ଟପୂର୍ବାଣି, ପଶ୍ୟାଶ୍ଚର୍ଯ୍ୟାଣି ଭାରତ । ୬ ।

ଅନ୍ୱୟଃ ।

ହେ ଭାରତ ! (ମମ ଦେହେ) ଆଦିତ୍ୟାନ୍ ବସୂନ୍ ରୁଦ୍ରାନ୍ ଅଶ୍ୱିନୌ ମରୁତଃ ପଶ୍ୟ, ତଥା ଅଦୃଷ୍ଟପୂର୍ବାଣି ବହୂନି ଆଶ୍ଚର୍ଯ୍ୟାଣି ପଶ୍ୟ । ୬ ।

ଟୀକା ।

ତାନ୍ୟେବାହ , ପଶ୍ୟେତି । ଆଦିତ୍ୟାଦୀନ୍ ମମ ଦେହେ ପଶ୍ୟ, ମରୁତଃ ଏକୋନପଞ୍ଚାଶତ୍ ଦେବତାବିଶେଷାନ୍ ଅଦୃଷ୍ଟପୂର୍ବାଣି ତ୍ୱୟା ଗନ୍ୟେନ ବା ପୂର୍ବମଦୃଷ୍ଟାନି ରୂପାଣି । ୬ ।

ପଦବ୍ୟାଖ୍ୟା ।

ପଶ୍ୟ—ଦେଖ, ଆଦିତ୍ୟାନ୍—ଦ୍ୱାଦଶସୂର୍ଯ୍ୟଙ୍କୁ, ବସୂନ୍—ଅଷ୍ଟବସୁମାନଙ୍କୁ, ରୁଦ୍ରାନ୍—ଏକାଦଶ ରୁଦ୍ରଙ୍କୁ,

Digitized by PPRACHIN, SOA

ଅଶ୍ୱିନୌ—ଅଶ୍ୱିନୀକୁମାର ଦ୍ୱୟଙ୍କୁ, ମରୁତଃ—ଊନପଞ୍ଚାଶତ୍ ପବନମାନଙ୍କୁ, ତଥା—ସେହିପରି, ବହୂନି—ଅନେକ, ଅଦୃଷ୍ଟପୂର୍ବାଣି—ଯାହା ପୂର୍ବରେ ଦେଖା ନ ଥିଲା, ପଶ୍ୟ—ଦେଖ, ଆଶ୍ଚର୍ଯ୍ୟାଣି—ଅଦ୍ଭୁତ, ଭାରତ—ହେ ଭରତବଂଶଜ ।। ୬ ।

## ଅନୁବାଦ ।

ହେ ଭାରତ ! (ଆମ୍ଭ ଦେହରେ) ଆଦିତ୍ୟବର୍ଗ, ବସୁସମୂହ, ରୁଦ୍ରଗଣ ଓ ଅଶ୍ୱିନୀକୁମାର ଦ୍ୱୟ, ଏବଂ ମରୁତମାନଙ୍କୁ ଦେଖ, ଅଧିକ ଯାହା କେହି କେବେ ଦେଖି ନାହିଁ, ଏପରି ବହୁବିଧ ଆଶ୍ଚର୍ଯ୍ୟରୂପ ଅବଲୋକନ କର । ୬ ।

## ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, ହେ ଭରତବଂଶଜ ଅର୍ଜ୍ଜୁନ ! ଆମ୍ଭର ଏହି ବିଶ୍ୱରୂପରେ ତୁମ୍ଭେ ଦ୍ୱାଦଶ ଆଦିତ୍ୟ,* ଅଷ୍ଟ ବସୁ, ଏକାଦଶ ରୁଦ୍ର† ଓ ଊନପଞ୍ଚାଶତ ପବନ‡ ଏବଂ ଅଶ୍ୱିନୀକୁମାରଦ୍ୱୟଙ୍କୁ ଦର୍ଶନ କର । ଭରତ ବଂଶ ଅତି ପ୍ରାଚୀନ, ମାତ୍ର ସେମାନେ ବା ଜଗତର ଅନ୍ୟ କେହି, ଆଜ ଯାଏ, ଯେଉଁ ରୂପ କେବେ ଦେଖି ନାହାନ୍ତି, ସେପରି ଅନେକ ଆଶ୍ଚର୍ଯ୍ୟ ରୂପ ମଧ୍ୟ, ସେହି ବିଶ୍ୱରୂପରେ ଦେଖ ।

ବ୍ରହ୍ମାଦି ଦେବତା ଓ ଭୃଗୁ-ସନକାଦି ମହର୍ଷିମାନେ, ଯେଉଁ ବିଶ୍ୱରୂପ ଦର୍ଶନ କର ନାହାନ୍ତି, ଭଗବାନଙ୍କଠାରେ ଏକାନ୍ତ ଭକ୍ତି କଲେ, ସେ ସେହି ବିଶ୍ୱରୂପ ଏବଂ ଅନ୍ୟାନ୍ୟ ଦେବତାଙ୍କର ସ୍ୱରୂପ ମଧ୍ୟ, ଦେଖା ଯାଇ ପାରେ, ଏହା ଏ ଶ୍ଲୋକରୁ ବୁଝାଯାଉଅଛି । ୬ ।

---

* ଦ୍ୱାଦଶାଦିତ୍ୟଙ୍କ ନାମ ଦଶମ ଅଧ୍ୟାୟ ୨୧ ଶ୍ଲୋକର ବିଶଦବ୍ୟାଖ୍ୟାରେ ଦେଖ ।

† ଅଷ୍ଟବସୁ ଓ ଏକାଦଶ ରୁଦ୍ର ଏମାନଙ୍କର ନାମ ଦଶମ ଅଧ୍ୟାୟ ୨୩ଶ ଶ୍ଲୋକର ବିଶଦବ୍ୟାଖ୍ୟାରେ ଦେଖ ।

‡ ଊନପଞ୍ଚାଶତ୍ ବାୟୁନାମାନି ଯଥା—

ଏକଜ୍ୟୋତିଶ୍ଚ ଦ୍ୱିଜ୍ୟୋତିସ୍ତ୍ରିଜ୍ୟୋତିର୍ଜ୍ୟୋତିରେବ ଚ । ଏକଶକ୍ରୋ ଦ୍ୱିଶକ୍ରଶ୍ଚ ତ୍ରିଶକ୍ରଶ୍ଚ ମହାବଳଃ ।
ଇନ୍ଦ୍ରଶ୍ଚ ଗତ୍ୟଦୃଶ୍ୟଶ୍ଚ ତତଃ ପତିସକୃତ୍‌ପରଃ । ମିତଶ୍ଚ ସଂମିତଶ୍ଚୈବ ସୁମିତଶ୍ଚ ମହାବଳଃ ।
ଋତଜିତ୍ ସତ୍ୟଜିଚ୍ଚୈବ ସୁଷେଣଃ ସେନଜିତ୍‌ତଥା । ଅନ୍ତିମିତ୍ରୋଽନମିତ୍ରଶ୍ଚ ପୁରୁମିତ୍ରୋଽପରାଜିତଃ ।
ଋତଶ୍ଚ ଋତବାହୁଶ୍ଚ ଧର୍ତ୍ତା ଚ ଧରୁଣୋ ଧ୍ରୁବଃ । ବିଧାରଣୋନାମ ତଥା ଦେବଦେବୋ ମହାବଳଃ ।
ଇଦୃକ୍ଷଶ୍ଚାପ୍ୟଦୃକ୍ଷଶ୍ଚ ଏତେ ଦଶ ମିତାଶିନଃ । ତତଃ ପ୍ରସଦୃକ୍ଷଶ୍ଚ ସରଭଶ୍ଚ ମହାଯଶାଃ ।
ଧାତା ଦୁର୍ଗୋ ଧ୍ୱନିର୍ଭୀମସ୍ତ୍ୱଭିଯୁକ୍ତସ୍ତ୍ୱପାକ୍ଷହ୍ୱଃ । ଯୁଦ୍‌ବର୍ପୁରନାଯୋଽଥ ବାସଃ କାମୋ ଜୟୋ ବିରାଟ୍ ।
ଇତ୍ୟେକୋନାସ୍ତ ପଞ୍ଚାଶନ୍ମରୁତଃ ପୂର୍ବସମ୍ଭବାଃ । ଇତି ବହ୍ନିପୁରାଣେ ଗଣଭେଦନାମାଧ୍ୟାୟଃ ।

ଅର୍ଥାତ୍—୧ ଏକଜ୍ୟୋତି, ୨ ଦ୍ୱିଜ୍ୟୋତି, ୩ ତ୍ରିଜ୍ୟୋତି, ୪ ଜ୍ୟୋତି, ୫ ଏକଶକ୍ର, ୬ ଦ୍ୱିଶକ୍ର, ୭ ତ୍ରିଶକ୍ର, ୮ ମହାବଳ, ୯ ଇନ୍ଦ୍ର, ୧୦ ଗତ୍ୟଦୃଶ୍ୟ, ୧୧ ପତିସକୃତ୍, ୧୨ ପର, ୧୩ ମିତ, ୧୪ ସଂମିତ, ୧୫ ସୁମିତ, ୧୬ ଋତଜିତ୍, ୧୭ ସତ୍ୟଜିତ୍, ୧୮ ସୁଷେଣ, ୧୯ ସେନଜିତ୍, ୨୦ ଅନ୍ତିମିତ୍ର, ୨୧ ଅନମିତ୍ର, ୨୨ ପୁରୁମିତ୍ର, ୨୩ ଅପରାଜିତ, ୨୪ ଋତ, ୨୫ ଋତବାହୁ, ୨୬ ଧର୍ତ୍ତା, ୨୭ ଧରୁଣ, ୨୮ ଧ୍ରୁବ, ୨୯ ବିଧାରଣ, ୩୦ ଦେବଦେବ, ୩୧ ଇଦୃକ୍ଷ, ୩୨ ଅଦୃକ୍ଷ, ୩୩ ପ୍ରସଦୃକ୍ଷ, ୩୪ ସରଭ, ୩୫ ମହାଯଶା, ୩୬ ଧାତା, ୩୭ ଦୁର୍ଗ, ୩୮ ଧ୍ୱନି,

## ଶ୍ଳୋକଃ ।

ଇହୈକସ୍ଥଂ ଜଗତ୍ କୃତ୍ସ୍ନଂ, ପଶ୍ୟାଦ୍ୟ ସଚରାଚରଂ ।
ମମ ଦେହେ ଗୁଡ଼ାକେଶ, ଯଚ୍ଚାନ୍ୟଦ୍ଦ୍ରଷ୍ଟୁମିଚ୍ଛସି । ୭ ।

## ଅନ୍ୱୟଃ ।

ହେ ଗୁଡ଼ାକେଶ! ଅଦ୍ୟ ଇହ ମମ ଦେହେ ସଚରାଚରଂ କୃତ୍ସ୍ନଂ ଜଗତ୍ ଏକସ୍ଥଂ ଯତ୍ ଚ ଅନ୍ୟତ୍ ଦ୍ରଷ୍ଟୁଂ ଇଚ୍ଛସି, (ତତ୍) ପଶ୍ୟ । ୭ ।

## ଟୀକା ।

କିଞ୍ଚ ଇହୈକସ୍ଥମିତି । ଇତ୍ଥଂ ତତ୍ର ପରିଭ୍ରମତା ବର୍ଷକୋଟିଭିରପିଦ୍ରଷ୍ଟୁମଶକ୍ୟଂ କୃତ୍ସ୍ନମପି ଚରାଚରସହିତଂ ଜଗଂଦିହାସ୍ମିନ୍ ମମ ଦେହେଽବୟବରୂପେଣୈକତ୍ରୈଂଷ୍ଠି ତମଦ୍ୟାଧୁନୈବ ପଶ୍ୟ ଯଚ୍ଚାନ୍ୟଜ୍ଜଗଦାଶ୍ରୟଭୂତଂ କାରଣସ୍ୱରୂପଂ ଜଗଦଂଷ୍ଠାବସ୍ଥାବିଶେଷାଦିକଂ ଜୟପରାଜୟାଦିକଞ୍ଚ ଯଚ୍ଚ ଯଦପ୍ୟନ୍ୟଦ୍ଦ୍ରଷ୍ଟୁମିଚ୍ଛସି ତତ୍ ସର୍ବଂ ପଶ୍ୟ । ୭ ।

## ପଦବ୍ୟାଖ୍ୟା ।

ଇହ—ଏହି (ଆମ୍ଭ ଦେହରେ), ଏକସ୍ଥଂ—ଏକତ୍ରସ୍ଥିତ ବା ଏକାଂଶରେ ସ୍ଥିତ, ଜଗତ୍—ସଂସାର, କୃତ୍ସ୍ନଂ—ସମଗ୍ର, ପଶ୍ୟ—ଦେଖ, ଅଦ୍ୟ—ଆଜି—ବର୍ତ୍ତମାନ, ସଚରାଚରଂ—ଜଙ୍ଗମ ଓ ସ୍ଥାବର ସହିତ, ମମ ଦେହେ—ଆମ୍ଭ ଦେହରେ, ଗୁଡ଼ାକେଶ—ହେ ଜିତନିଦ୍ର—ଅର୍ଜ୍ଜୁନ!, ଯତ୍—ଯାହା, ଚ—ପୁନର୍ବାର, ଅନ୍ୟତ୍—ଆଉ, ଦ୍ରଷ୍ଟୁଂ ଇଚ୍ଛସି—ଦେଖିବାକୁ ଇଚ୍ଛା କରୁଅଛ । ୭ ।

## ଅନୁବାଦ ।

ହେ ଗୁଡ଼ାକେଶ! ଆମ୍ଭର ଏହି ଦେହରେ ଏକତ୍ର ସ୍ଥିତ ସଚରାଚର ଜଗତ୍ ଏବଂ ଅନ୍ୟ ଯାହା କିଛି, ତୁମ୍ଭେ ଦେଖିବାକୁ ଇଚ୍ଛା କରୁଅଛ (ତାହା) ଦେଖ । ୭ ।

## ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ! ଦଶମ ଅଧ୍ୟାୟ ଶେଷରେ ଆମ୍ଭେ କହିଥିଲୁଁ, ଯେ ସଚରାଚର ଜଗତକୁ ଆମ୍ଭେ ଏକାଂଶରେ ଧାରଣ କରି ରହିଅଛୁଁ । ଏବେ, ସେହି ଚରାଚର ସହିତ ସମସ୍ତ ଜଗତ୍, ଯେ ଆମ୍ଭର ଏକାଂଶରେ ଏକତ୍ରରେ ରହିଅଛି, ତାହା ତୁମ୍ଭେ ଦେଖ । ଜଗତମଣ୍ଡଳର ସର୍ବତ୍ର ଭ୍ରମଣ କରି କୋଟି୨ ବର୍ଷରେ ତୁମ୍ଭେ, ଯାହା ଦେଖି ପାରି ନ ଥାନ୍ତ, ତତ୍ ସମସ୍ତ, ଆମ୍ଭର ଏହି ବିଶ୍ୱରୂପରେ ଦର୍ଶନ କର । ଏବଂ ଆଉ ଯାହା ତୁମ୍ଭେ ଦେଖିବାକୁ ଇଚ୍ଛା କର, ଅର୍ଥାତ୍ ଏ ଯୁଦ୍ଧରେ କାହାର ଜୟ ଓ କାହାର ପରାଜୟ ହେବ, ତାହା ମଧ୍ୟ, ଏ ବିଶ୍ୱରୂପରେ ଦର୍ଶନ କର । କାହିଁକି ନା ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନ ସମସ୍ତ ଘଟନା, ଏହି ବିଶ୍ୱରୂପରେ ବିଦ୍ୟମାନ ଥିବାର ଦେଖି ପାରିବ । ୭ ।

---

୩୯ ଭୀମ, ୪୦ ଅଭିଯୁକ୍ତ, ୪୧ ଅପାତ୍, ୪୨ ସତ୍, ୪୩ ଯୁକ୍ତ, ୪୪ ଯସ୍ମ, ୪୫ ଅନାର୍ଯ୍ୟ, ୪୬ ବାପ, ୪୭ କାମ, ୪୮ ଜୟ, ୪୯ ବିରାଟ ଇତ୍ୟାଦି ।

§ ଅଶ୍ୱୀରୂପଧାରିଣୀ ସୂର୍ଯ୍ୟପତ୍ନୀ ସ୍ୱାଷ୍ଟ୍ରୀର ଗର୍ଭରେ ସୂର୍ଯ୍ୟଙ୍କ ଔରସରେ ଜାତ ହୋଇଥିବା ଯମଜ ସନ୍ତାନଙ୍କୁ ଅଶ୍ୱିନୀକୁମାର ବୋଲିଯାଏ । ସେ ଦୁଇ ସନ୍ତାନ ଏକଦେହରେ ଦୁଇ ମୁଣ୍ଡ ହୋଇ ଜନ୍ମିଥିଲେ ।

### ଶ୍ଳୋକଃ ।

ନ ତୁ ମାଂ ଶକ୍ୟସେ ଦ୍ରଷ୍ଟୁମନେନୈବ ସ୍ୱଚକ୍ଷୁଷା ।
ଦିବ୍ୟଂ ଦଦାମି ତେ ଚକ୍ଷୁଃ, ପଶ୍ୟ ମେ ଯୋଗମୈଶ୍ୱରଂ । ୮ ।

### ଅନ୍ୱୟଃ ।

ତୁ ଅନେନ ଏବ ସ୍ୱଚକ୍ଷୁଷା ମାଂ ଦ୍ରଷ୍ଟୁଂ ନ ଶକ୍ୟସେ, ତେ ଦିବ୍ୟଂ ଚକ୍ଷୁଃ ଦଦାମି (ତେନ) ମେ ଐଶ୍ୱରଂ ଯୋଗଂ ପଶ୍ୟ । ୮ ।

### ଟୀକା ।

ଯଦୁକ୍ତମର୍ଜ୍ଜୁନେନ ମନ୍ୟସେ ଯଦି ତଚ୍ଛକ୍ୟମିତି ତତ୍ରାହ । ନତୁ ମାମିତି । ଅନେନୈବ ତୁ ପ୍ରାକୃତେନ ଚର୍ମଚକ୍ଷୁଷା ମାଂ ଦ୍ରଷ୍ଟୁଂ ନ ଶକ୍ୟସେ ଶକ୍ତୋ ନ ଭବିଷ୍ୟସି ଅତୋ ଦିବ୍ୟମଲୌକିକଂ ଜ୍ଞାନାତ୍ମକଂ ଚକ୍ଷୁସ୍ତୁଭ୍ୟଂ ଦଦାମି, ମମୈଶ୍ୱରମସାଧାରଣଂ ଯୋଗଂ ଯୁକ୍ତିମଘଟନଘଟନାସାମର୍ଥ୍ୟଂ ପଶ୍ୟ । ୮ ।

### ପଦବ୍ୟାଖ୍ୟା ।

ନ—ନାହିଁ, ତୁ—କିନ୍ତୁ, ମାଂ—ଆମ୍ଭଙ୍କୁ, ଶକ୍ୟସେ—ସମର୍ଥ ହେବ, ଦ୍ରଷ୍ଟୁଂ—ଦେଖିବାକୁ, ଅନେନ—ଏହି, ଏବ—କେବଳ, ସ୍ୱ ଚକ୍ଷୁଷା—ନିଜ ଚକ୍ଷୁଦ୍ୱାରା, ଦିବ୍ୟଂ—ଅସାଧାରଣ, ଦଦାମି—ଦେଉଅଛୁଁ, ତେ—ତୁମ୍ଭଙ୍କୁ, ଚକ୍ଷୁଃ—ଚକ୍ଷୁକୁ, ପଶ୍ୟ—ଦେଖ, ମେ—ଆମ୍ଭର, ଯୋଗଂ—ଅଘଟନ କଥା ଘଟାଇବାବିଷୟକ ସାମର୍ଥ୍ୟକୁ, ଐଶ୍ୱରଂ—ଈଶ୍ୱରସମ୍ବନ୍ଧୀୟ । ୮ ।

### ଅନୁବାଦ ।

କିନ୍ତୁ, ତୁମ୍ଭେ ନିଜର ଏହି (ଚର୍ମ) ଚକ୍ଷୁଦ୍ୱାରା ଆମ୍ଭଙ୍କୁ ଦେଖିବାକୁ ସମର୍ଥ ହେବ ନାହିଁ, ଆମ୍ଭେ ତୁମ୍ଭଙ୍କୁ ଦିବ୍ୟ (ଜ୍ଞାନ) ଚକ୍ଷୁ ପ୍ରଦାନ କରୁଅଛୁଁ (ତଦ୍ୱାରା) ଆମ୍ଭର ଐଶ୍ୱରିକ ଯୋଗ ଦର୍ଶନ କର । ୮ ।

### ବିଶଦବ୍ୟାଖ୍ୟା ।

ମନୁଷ୍ୟ, ସାଧାରଣ ଚର୍ମଚକ୍ଷୁରେ ବା ମନ ଓ ବୁଦ୍ଧିଦ୍ୱାରା ଭଗବାନଙ୍କୁ ଦର୍ଶନ ବା ଅନୁଭବ କରିପାରେ ନାହିଁ । ସେଥିପାଇଁ ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ତୁମ୍ଭେ ଏ ଚର୍ମଚକ୍ଷୁରେ ଆମ୍ଭର ବିଶ୍ୱରୂପ ଦର୍ଶନ କରି ପାରିବ ନାହିଁ, ସେ ରୂପ ଦର୍ଶନ କରିବାକୁ ଦିବ୍ୟ (ଜ୍ଞାନାତ୍ମକ) ଚକ୍ଷୁର ପ୍ରୟୋଜନ । ଆମ୍ଭେ ତୁମ୍ଭଙ୍କୁ ଦିବ୍ୟ ଚକ୍ଷୁ ପ୍ରଦାନ କଲୁଁ, ଏବେ ଆମ୍ଭର ଐଶ୍ୱରିକ ଯୋଗ ଅର୍ଥାତ୍ ଅଘଟନ ଘଟାଇବା ବିଷୟରେ ଆମ୍ଭର, ଯେଉଁ ସାମର୍ଥ୍ୟ ଅଛି, ତାହା ଦର୍ଶନ କର ।

ବିନା ପ୍ରାର୍ଥନାରେ ଭଗବାନ୍, ଅର୍ଜ୍ଜୁନଙ୍କୁ ଦିବ୍ୟ ଚକ୍ଷୁ ପ୍ରଦାନ କରିବାଦ୍ୱାରା ଭକ୍ତପ୍ରତି ତାଙ୍କର ଅତିଶୟ ଅନୁଗ୍ରହ ଥିବାର ପ୍ରକାଶ କଲେ । ୮ ।

ସଞ୍ଜୟ ଉବାଚ ।—ଏବମୁକ୍ତ୍ୱା ତତୋ ରାଜନ୍, ମହାଯୋଗେଶ୍ୱରୋ ହରିଃ ।
ଦର୍ଶୟାମାସ ପାର୍ଥାୟ, ପରମଂ ରୂପମୈଶ୍ୱରଂ । ୯ ।

Digitized by PPRACHIN, SOA

ଅନ୍ୱୟଃ ।

ସଞ୍ଜୟଃ ଉବାଚ । ହେ ରାଜନ୍ ! ତତଃ ମହାଯୋଗେଶ୍ୱରଃ ହରିଃ ଏବ ଉକ୍ତ୍ୱା ପାର୍ଥାୟ ପରମଂ ଐଶ୍ୱରଂ ରୂପଂ ଦର୍ଶୟାମାସ । ୯ ।

ଟୀକା ।

ଏବମୁକ୍ତ୍ୱା ଭଗବାନର୍ଜ୍ଜୁନାୟ ସ୍ୱରୂପଂ ଦର୍ଶିତବାଂସ୍ତତ ସ୍ୱରୂପଂ ଦୃଷ୍ଟ୍ୱାର୍ଜ୍ଜୁନଃ ଶ୍ରୀକୃଷ୍ଣଂ ବିଜ୍ଞାପିତବାନତୀମଂ ଘର୍ଥଂ ତତ୍ତ୍ୱୈଃ ଶ୍ଲୋକୈଃ ଧୃତରାଷ୍ଟ୍ରଂ ପ୍ରତି ସଞ୍ଜୟଃ ଉବାଚ, ଏବମୁକ୍ତ୍ୱେତି । ହେ ରାଜନ୍ ଧୃତରାଷ୍ଟ୍ର, ମହାଂଶ୍ଚାସୌ ଯୋଗେଶ୍ୱରଶ୍ଚ ହରିଃ ପରମମୈଶ୍ୱରଂ ରୂପଂ ଦର୍ଶିତବାନ୍ । ୯ ।

ପଦବ୍ୟାଖ୍ୟା ।

ସଞ୍ଜୟଃ ଉବାଚ—ସଞ୍ଜୟ କହିଲେ, ଏବ—ଏ ପ୍ରକାର, ଉକ୍ତ୍ୱା—କହି, ତତଃ—ତଦନନ୍ତର, ରାଜନ୍—ହେ ଧୃତରାଷ୍ଟ୍ର !, ମହାଯୋଗେଶ୍ୱରଃ—ମହା ଯୋଗିମାନଙ୍କ ମଧ୍ୟରେ ଶ୍ରେଷ୍ଠ, ହରିଃ—ଭଗବାନ୍, ଦର୍ଶୟାମାସ—ଦେଖାଇଲେ, ପାର୍ଥାୟ—ଅର୍ଜ୍ଜୁନଙ୍କୁ, ପରମଂ ରୂପଂ—ଉତ୍କୃଷ୍ଟ ରୂପକୁ, ଐଶ୍ୱରଂ—ଈଶ୍ୱର ସମ୍ବନ୍ଧୀୟ । ୯ ।

ଅନୁବାଦ ।

ସଞ୍ଜୟ କହିଲେ, ହେ ରାଜନ୍ ! ତହିଁଉତ୍ତାରୁ ମହା ଯୋଗେଶ୍ୱର ହରି ଏହିପ୍ରକାର କହି ଅର୍ଜ୍ଜୁନଙ୍କୁ ଐଶ୍ୱରୀୟ ଉତ୍କୃଷ୍ଟରୂପ ଦେଖାଇଲେ । ୯ ।

ବିଶଦବ୍ୟାଖ୍ୟା ।

ଯୋଗିମାନେ, ଯୋଗବଳରେ ନାନାପ୍ରକାର ଅଲୌକିକ ଘଟନା ଦେଖାଇ ପାରନ୍ତି । ଶ୍ରୀଭଗବାନ୍, ମହାଯୋଗିମାନଙ୍କ ମଧ୍ୟରେ ଶ୍ରେଷ୍ଠ—ସୁତରାଂ ଅର୍ଜ୍ଜୁନଙ୍କୁ ଦିବ୍ୟ ଚକ୍ଷୁଃ ପ୍ରଦାନ କରିବା ଓ ଅର୍ଜ୍ଜୁନ ଭିନ୍ନ ଯୁଦ୍ଧସ୍ଥଳରେ ଉପସ୍ଥିତ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କୁ ବିଶ୍ୱରୂପ ଦେଖା ନ ଦେବା, ତାଙ୍କ ପକ୍ଷରେ ଅସମ୍ଭବ ନୁହେ । ଏହି କଥା ଓ ଭଗବାନଙ୍କର ଅର୍ଜ୍ଜୁନଙ୍କ ପ୍ରତି ଅଶେଷ ଦୟା ଥିବା ଏବଂ ସେହି ହେତୁରୁ ଅର୍ଜ୍ଜୁନଙ୍କର ନିଶ୍ଚୟ ଜୟ ହେବା ଇତ୍ୟାଦି କଥା ଇଙ୍ଗିତରେ କହିବାପାଇଁ, ଧୃତରାଷ୍ଟ୍ରଙ୍କୁ ସଞ୍ଜୟ କହିଲେ, ହେ ରାଜନ୍ ! ମହାଯୋଗେଶ୍ୱର ହରି—ଏ ପ୍ରକାର (ଅର୍ଥାତ୍ ୫ ମଠାରୁ ୮ମ ଶ୍ଲୋକରେ ଯାହାସବୁ ବର୍ଣ୍ଣିତ ହେଲା, ତାହା) କହି ଅର୍ଜ୍ଜୁନଙ୍କୁ ନିଜର ବିଶ୍ୱରୂପ ଦେଖାଇଲେ । ୯ ।

ଶ୍ଲୋକଃ ।

ଅନେକବକ୍ତ୍ରନୟନ,ମନେକାଦ୍ଭୁତଦର୍ଶନଂ ।

ଅନେକଦିବ୍ୟାଭରଣଂ, ଦିବ୍ୟାନେକୋଦ୍ୟତାୟୁଧଂ । ୧୦ ।

ଅନ୍ୱୟଃ ।

ଅନେକବକ୍ତ୍ରନୟନଂ ଅନେକାଦ୍ଭୁତଦର୍ଶନଂ ଅନେକଦିବ୍ୟାଭରଣଂ ଦିବ୍ୟାନେକୋଦ୍ୟତାୟୁଧଂ (ରୂପଂ ଦର୍ଶୟାମାସ) । ୧୦ ।

ଟୀକା ।

ତଦ୍ରୂପଂ ବିବୃଣୋତି । ଅନେକବକ୍ତ୍ରନୟନମିତି । ଅନେକାନି ବକ୍ତ୍ରାଣି ନୟନାନି ଚ ଯସ୍ମିନ୍ ତତ୍, ଅନେକାନାମଦ୍ଭୁତାନାଂ ଦର୍ଶନଂ ଯସ୍ମିଂସ୍ତତ୍ ଅନେକାନି ଦିବ୍ୟାଭରଣାନି ଯସ୍ମିଂସ୍ତତ୍ ଦିବ୍ୟାନି ଅନେକାନି ଉଦ୍ୟତାନ୍ୟାୟୁଧାନି ଯସ୍ମିଂସ୍ତତ୍ । ୧୦ ।

Digitized by PPRACHIN, SOA

### ପଦବ୍ୟାଖ୍ୟା ।

ଅନେକବକ୍ତ୍ରନୟନଂ—ଯହିଁରେ ଅନେକ ମୁଖ ଓ ଅନେକ ନେତ୍ର ଅଛି, ଅନେକାଦ୍ଭୁତଦର୍ଶନଂ—ଯହିଁରେ ଅସଂଖ୍ୟ ଅଦ୍ଭୁତ (ପଦାର୍ଥର) ଦର୍ଶନ ଅଛି, ଅନେକ ଦିବ୍ୟାଭରଣଂ—ଯହିଁରେ ବହୁତ ଉଜ୍ଜ୍ୱଳ ଅଳଙ୍କାର ଅଛି, ଦିବ୍ୟାନେକୋଦ୍ୟତାୟୁଧଂ—ଯହିଁରେ ଉଜ୍ଜ୍ୱଳ ଓ ଉତ୍ତୋଳିତ ଅନେକ ଅସ୍ତ୍ର ଶସ୍ତ୍ର ଅଛି । ୧୦ ।

### ଅନୁବାଦ ।

ଅନେକ ମୁଖ, ଅନେକ ନେତ୍ର, ଅନେକ ଅଦ୍ଭୁତ ଦୃଶ୍ୟଯୁକ୍ତ ଓ ଅସଂଖ୍ୟ ଉଜ୍ଜ୍ୱଳ ଆଭରଣମଣ୍ଡିତ ଏବଂ ଅନେକ ଉତ୍ତୋଳିତ ଦିବ୍ୟ ଆୟୁଧ ସୁଶୋଭିତ (ରୂପ ଦେଖାଇଲେ) ।୧୦।

### ବିଶଦବ୍ୟାଖ୍ୟା ।

ଭକ୍ତବତ୍ସଳ ଭଗବାନ୍, ଭକ୍ତ ଅର୍ଜ୍ଜୁନଙ୍କୁ ଯେଉଁ ବିଶ୍ୱରୂପ ଦେଖାଇଲେ, ତହିଁରେ ଅନେକ ମୁଖ, ଅନେକ ନେତ୍ର ଅଛି । ଅର୍ଥାତ୍ ସେ ରୂପରେ ଦେବତାଠାରୁ କୀଟ ପର୍ଯ୍ୟନ୍ତ ନାନାପ୍ରକାର ଜୀବର ମୁଖ ଓ ନେତ୍ର ପ୍ରକାଶ ପାଉଅଛି । ସୁତରାଂ ତହିଁରେ ଅନେକ ପ୍ରକାର ଅଦ୍ଭୁତ ଦୃଶ୍ୟ ଦେଖା ଯାଉଅଛି । ଏ ପ୍ରକାର ଅଦ୍ଭୁତ ଦୃଶ୍ୟ ଥିବାର ଅନ୍ୟଏକ କାରଣ ଏହି, ଯେ ନାନାପ୍ରକାର ଅଲୌକିକ ଉଜ୍ଜ୍ୱଳ ଆଭରଣଦ୍ୱାରା ସେରୂପ ମଣ୍ଡିତ ହୋଇଅଛି ଓ ତହିଁରେ ଅସଂଖ୍ୟ ଦିବ୍ୟମନ୍ତ୍ର ଅସ୍ତ୍ରଶସ୍ତ୍ରାଦି ଉତ୍ତୋଳିତ କରାହୋଇ ରହିଅଛି । ୧୦ ।

### ଶ୍ଳୋକଃ ।

ଦିବ୍ୟମାଲ୍ୟାମ୍ବରଧରଂ, ଦିବ୍ୟଗନ୍ଧାନୁଲେପନଂ ।
ସର୍ବାଶ୍ଚର୍ଯ୍ୟମୟଂ ଦେବ,ମନନ୍ତଂ ବିଶ୍ୱତୋମୁଖଂ । ୧୧ ।

### ଅନ୍ୱୟଃ ।

ଦିବ୍ୟମାଲ୍ୟାମ୍ବରଧରଂ, ଦିବ୍ୟଗନ୍ଧାନୁଲେପନଂ ସର୍ବାଶ୍ଚର୍ଯ୍ୟମୟଂ ଦେବ ଅନନ୍ତଂ ବିଶ୍ୱତୋମୁଖଂ (ରୂପଂ ଦର୍ଶୟାମାସ) । ୧୧ ।

### ଟୀକା ।

କିଞ୍ଚ ଦିବ୍ୟେତି । ଦିବ୍ୟାନି ମାଲ୍ୟାନ୍ୟମ୍ବରାଣି ଚ ଧାରୟତୀତି ତତ୍ ତଥା—ଦିବ୍ୟୋଗନ୍ଧୋ ଯସ୍ୟ ତାଦୃଶମନୁଲେପନଂ ଯସ୍ୟ ତତ୍, ସର୍ବାଶ୍ଚର୍ଯ୍ୟମୟମନେକାଶ୍ଚର୍ଯ୍ୟପ୍ରାୟଂ ଦେବ ଦ୍ୟୋତନାତ୍ମକଂ ଅନନ୍ତମପରିଚ୍ଛିନ୍ନଂ ବିଶ୍ୱତଃ ସର୍ବତୋମୁଖାନି ଯସ୍ମିଂସ୍ତତ୍ । ୧୧ ।

### ପଦବ୍ୟାଖ୍ୟା ।

ଦିବ୍ୟମାଲ୍ୟାମ୍ବରଧରଂ—ସୁନ୍ଦର ମାଳା ଓ ବସ୍ତ୍ରଧାରୀ, ଦିବ୍ୟଗନ୍ଧାନୁଲେପନଂ—ସ୍ୱର୍ଗୀୟ ସୁଗନ୍ଧ-ଅଙ୍ଗରାଗଯୁକ୍ତ, ସର୍ବାଶ୍ଚର୍ଯ୍ୟମୟଂ—ସମସ୍ତ ଆଶ୍ଚର୍ଯ୍ୟପୂର୍ଣ୍ଣ, ଦେବ—ପ୍ରକାଶବନ୍ତ, ଅନନ୍ତଂ—ଅସୀମ, ବିଶ୍ୱତୋମୁଖଂ—ସବୁ ଦିଗରେ ମୁଖଯୁକ୍ତ । ୧୧ ।

### ଅନୁବାଦ ।

ଦିବ୍ୟମାଳା ଓ ବସ୍ତ୍ର ଶୋଭିତ, ଦିବ୍ୟଗନ୍ଧ ଚର୍ଚ୍ଚିତ, ସର୍ବଆଶ୍ଚର୍ଯ୍ୟମୟ, ପ୍ରକାଶମୟ, ଅନନ୍ତ ଓ ସର୍ବଦିଗରେ ମୁଖଯୁକ୍ତ (ରୂପ ଦେଖାଇଲେ) । ୧୧ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍, ଅର୍ଜ୍ଜୁନଙ୍କୁ ଯେଉଁ ବିଶ୍ୱରୂପ ଦେଖାଇଲେ, ତାହା ନାନାପ୍ରକାର ମଣି ମାଣିକ୍ୟ ଓ ପୁଷ୍ପ ପତ୍ରାଦି ଶୋଭିତ ମାଳା ଏବଂ ପୀତାମ୍ବର ପ୍ରଭୃତି ନାନାବିଧ ବସ୍ତ୍ରରେ ମଣ୍ଡିତ ଅଟେ । ଅଗୁରୁଚନ୍ଦନ ଓ କସ୍ତୁରୀ ଆଦି ନାନାପ୍ରକାର ସୁଗନ୍ଧ ଦ୍ରବ୍ୟଦ୍ୱାରା, ସେ ଦେହ ଅନୁଲିପ୍ତ ବା ଚର୍ଚ୍ଚିତ ହୋଇଅଛି ଏବଂ ତହିଁରେ ତେଜ, ବଳ, ବୀର୍ଯ୍ୟ, ରୂପ, ଗୁଣ ଓ ଶକ୍ତି ଏବଂ ଅଙ୍ଗ ପ୍ରତ୍ୟଙ୍ଗ ଆଦି, ଯେ କୌଣସି ବିଷୟର ଆଲୋଚନା କଲେ, ଆଶ୍ଚର୍ଯ୍ୟ ବୋଧହୁଏ, ସୁତରାଂ ତାହା ସର୍ବାଶ୍ଚର୍ଯ୍ୟମୟ । ସେ ରୂପ ପ୍ରକାଶରେ ସମସ୍ତ ଜଗତ ପ୍ରକାଶିତ ହୋଇଅଛି; ପୁଣି ସେ ରୂପର ପରିଚ୍ଛେଦ ବା ସୀମା ନାହିଁ, ଅର୍ଥାତ୍ କେଉଁଠାରୁ ଆରମ୍ଭ ହୋଇ କେଉଁଠାରେ ଶେଷ ହୋଇଅଛି, ତାହାର ଇୟତ୍ତା ନାହିଁ । ଅତଏବ ସେ ରୂପ ବିଶ୍ୱତୋମୁଖ ଅର୍ଥାତ୍ ଜଗତର ଯେଉଁ ପ୍ରଦେଶରୁ ଚାହିଁବ, ସେ ପ୍ରଦେଶକୁ ସେ ରୂପର ମୁଖ ଦେଖାଯିବ ।

ଫଳକଥା ଏହି କି ସେ ରୂପ ବର୍ଣ୍ଣନ କରିବା ତ ଦୂରର କଥା, ମନରେ କଳ୍ପନା ସୁଦ୍ଧା, କରି ଯାଇ ନ ପାରେ, କାହିଁକି ନା ତାହା ଜ୍ଞାନାତ୍ମକ ଚକ୍ଷୁଃ ଭିନ୍ନ, କୌଣସି ସ୍ଥୂଳ ଇନ୍ଦ୍ରିୟ ଅଥବା ମନ ବୁଦ୍ଧି ପ୍ରଭୃତିଦ୍ୱାରା ଅନୁଭବ କରାଯିବାର ବିଷୟ ନୁହେ । ୧୧ ।

ଶ୍ଲୋକଃ ।

ଦିବି ସୂର୍ଯ୍ୟସହସ୍ରସ୍ୟ, ଭବେଦ୍ଯୁଗପଦୁତ୍ଥିତା ।
ଯଦି ଭାଃ ସଦୃଶୀ ସା ସ୍ୟାଦ୍ଭାସସ୍ତସ୍ୟ ମହାତ୍ମନଃ । ୧୨ ।

ଅନ୍ୱୟଃ ।

ଯଦି ଦିବି ସୂର୍ଯ୍ୟସହସ୍ରସ୍ୟ ଭାଃ ଯୁଗପତ୍ ଉତ୍ଥିତା ଭବେତ୍ (ତର୍ହି) ସା ଭାଃ ତସ୍ୟ ମହାତ୍ମନଃ ଭାସଃ ସଦୃଶୀ ସ୍ୟାତ୍ । ୧୨ ।

ଟୀକା ।

ବିଶ୍ୱରୂପଦୀପ୍ତେର୍ନିରୂପମତ୍ୱମାହ, ଦିବି ସୂର୍ଯ୍ୟେତି । ଦିବି ଅକାଶେ ସୂର୍ଯ୍ୟସହସ୍ରସ୍ୟ ଯୁଗପଦୁତ୍ଥିତସ୍ୟ ଯଦି ଯୁଗପଦୁତ୍ଥିତା ଭାଃ ପ୍ରଭା ଭବେତ୍ତର୍ହି ସା ମହାତ୍ମନୋବିଶ୍ୱରୂପସ୍ୟ ଭାସଃ ପ୍ରଭାୟାଃ କଥଞ୍ଚିତ୍ ସଦୃଶୀ ସ୍ୟାତ୍ ଅନ୍ୟୋପମା ନାସ୍ତ୍ୟେବେତ୍ୟର୍ଥଃ ତଥାଭୂତଂ ରୂପଂ ଦର୍ଶୟାମାସେତି ପୂର୍ବେଣୈବାନ୍ୱୟଃ । ୧୨ ।

ପଦବ୍ୟାଖ୍ୟା ।

ଦିବି—ଅକାଶରେ, ସୂର୍ଯ୍ୟସହସ୍ରସ୍ୟ—ହଜାର ସୂର୍ଯ୍ୟର, ଭବେତ୍—ହେବ. ଯୁଗପଦୁତ୍ଥିତା—ଏକାବେଳକେ ଉଦିତ, ଯଦି—ଯେବେ, ଭାଃ—କିରଣ, ସଦୃଶୀ—ସମାନ—ତୁଲ୍ୟ, ସା—ସେ, ସ୍ୟାତ୍—ହୋଇପାରେ, ତସ୍ୟ—ସେହି, ଭାସଃ—ଦୀପ୍ତିର, ମହାତ୍ମନଃ—ବିଶ୍ୱରୂପର । ୧୨ ।

ଅନୁବାଦ ।

ଯେବେ, ଆକାଶରେ ସହସ୍ରସୂର୍ଯ୍ୟର ଜ୍ୟୋତି, ଏକାବେଳକେ ଉଦୟ ହେବ, ତେବେ ଅବା, ସେହି ଜ୍ୟୋତି, ବିଶ୍ୱରୂପ ଜ୍ୟୋତିର ସମାନ ହୋଇପାରେ । ୧୨ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଭଗବାନ୍, ଭକ୍ତକୁ ଯେଉଁ ବିଶ୍ୱରୂପ ଦେଖାଇଲେ, ତାହା ଏପରି ତେଜୋବିଶିଷ୍ଟ, ଯେ ତାହାର ତୁଳନା ନାହିଁ, ଆକାଶରେ, ଯଦି ଏକାବେଳକେ ହଜାର ସୂର୍ଯ୍ୟ ଉଦୟ ହୋଇ କିରଣ ବିସ୍ତାର କରନ୍ତି, ତେବେ ଏହା, ସେହି ବିଶ୍ୱରୂପର ଦୀପ୍ତି ସହିତ ତୁଳନା ହୋଇପାରେ । ଫଳତଃ ଆକାଶରେ ସହସ୍ର ସୂର୍ଯ୍ୟ ଏକାବେଳକେ କଦାପି ଉଦିତ ହେବେ ନାହିଁ, ତେଣୁ ସେ ବିଶ୍ୱରୂପର ଦୀପ୍ତି ସହିତ ତୁଳନା ଦିଆଯାଇ ପାରିବ ନାହିଁ । ୧୨ ।

ଶ୍ଲୋକଃ ।

ତତ୍ରୈକସ୍ଥଂ ଜଗତ୍ କୃତ୍ସ୍ନଂ, ପ୍ରବିଭକ୍ତମନେକଧା ।
ଅପଶ୍ୟଦ୍ଦେବଦେବସ୍ୟ, ଶରୀରେ ପାଣ୍ଡବସ୍ତଦା ୧୩ ।

ଅନ୍ୱୟଃ ।

ତଦା ପାଣ୍ଡବଃ ଅନେକଧା ପ୍ରବିଭକ୍ତଂ କୃତ୍ସ୍ନଂ ଜଗତ୍ ତତ୍ର ଦେବଦେବସ୍ୟ ଶରୀରେ ଏକସ୍ଥଂ ଅପଶ୍ୟତ୍ । ୧୩ ।

ଟୀକା ।

ତତଃ କିଂବୃତମିତ୍ୟପେକ୍ଷାୟାମାହ, ତତ୍ରେତି । ଅନେକଧା ପ୍ରବିଭକ୍ତଂ ନାନାବିଭାଗେନାବସ୍ଥିତଂ କୃତ୍ସ୍ନଂ ଜଗତ୍ ଦେବଦେବସ୍ୟ ଶରୀରେ ତଦବୟବତ୍ୱେନୈକତ୍ର ବ୍ୟବସ୍ଥିତଂ ତଦା ପାଣ୍ଡବୋଽର୍ଜ୍ଜୁନୋଽପଶ୍ୟତ୍ । ୧୩ ।

ପଦବ୍ୟାଖ୍ୟା ।

ତତ୍ର—ସେହି, ଏକସ୍ଥଂ—ଏକତ୍ର ବର୍ତ୍ତମାନ, ଜଗତ୍—ସଂସାର, କୃତ୍ସ୍ନଂ—ସମଗ୍ର, ପ୍ରବିଭକ୍ତଂ—ବିଭାଗଯୁକ୍ତ, ଅନେକଧା—ନାନାପ୍ରକାର, ଅପଶ୍ୟତ୍—ଦେଖିଲେ, ଦେବଦେବସ୍ୟ—ଦେବପୂଜ୍ୟ ଶ୍ରୀଭଗବାନଙ୍କର, ଶରୀରେ—ଦେହରେ—ବିଶ୍ୱରୂପରେ, ପାଣ୍ଡବଃ—ଅର୍ଜ୍ଜୁନ, ତଦା—ସେହି ସମୟରେ । ୧୩ ।

ଅନୁବାଦ ।

ଅର୍ଜ୍ଜୁନ, ସେତେବେଳେ ନାନାପ୍ରକାର ବିଭାଗଯୁକ୍ତ ସମସ୍ତ ସଂସାରକୁ ଦେବଦେବଙ୍କ ବିଶ୍ୱରୂପର ଏକାଂଶରେ ସ୍ଥିତ ହୋଇଥିବାର ଦେଖିଲେ । ୧୩ ।

ବିଶଦବ୍ୟାଖ୍ୟା ।

ଦଶମ ଅଧ୍ୟାୟ ଶେଷରେ ଶ୍ରୀଭଗବାନ୍ କହିଥିଲେ, ଯେ ଏ ସମସ୍ତ ଜଗତକୁ ଆମ୍ଭେ ଏକାଂଶରେ ଧାରଣ କରି ରହିଅଛୁଁ । ବର୍ତ୍ତମାନ ଅର୍ଜ୍ଜୁନ ବିଶ୍ୱରୂପରେ ସେହି କଥା ଦେଖିବାକୁ ଇଚ୍ଛା କରନ୍ତେ, ସପ୍ତପାତାଳ ଓ ଭୂଲୋକ, ଭୁବର୍ଲୋକ ଓ ସ୍ୱର୍ଲୋକ ପ୍ରଭୃତି ସପ୍ତସ୍ୱର୍ଗ, ପିତୃଲୋକ, ଚନ୍ଦ୍ରଲୋକ, ଓ ସୂର୍ଯ୍ୟଲୋକ ଇତ୍ୟାଦି ନାନାବିଭାଗଯୁକ୍ତ ସମଗ୍ର ଜଗତ୍, ସେହି ଦେବାଧିଦେବ ଶ୍ରୀଭଗବାନଙ୍କ ବିଶ୍ୱରୂପରେ ସାମାନ୍ୟ ଗୋଟିଏ ଅବୟବ ପରି ଏକାଂଶରେ ସ୍ଥିତ ହୋଇଥିବାର ଦେଖିଲେ । ୧୩ ।

ଶ୍ଲୋକଃ ।

ତତଃ ସ ବିସ୍ମୟାବିଷ୍ଟୋ, ହୃଷ୍ଟରୋମା ଧନଞ୍ଜୟଃ ।
ପ୍ରଣମ୍ୟ ଶିରସା ଦେବଂ, କୃତାଞ୍ଜଲିରଭାଷତ । ୧୪ ।

Digitized by PPRACHIN, SOA

### ଅନ୍ୱୟଃ ।

ତତଃ ବିସ୍ମୟାବିଷ୍ଟଃ ହୃଷ୍ଟରୋମା ସଃ ଧନଞ୍ଜୟଃ ଶିରସା ଦେବ ପ୍ରଣମ୍ୟ କୃତାଞ୍ଜଳିଃ (ସନ୍) ଅଭାଷତ । ୧୪ ।

### ଟୀକା ।

ଏବ ଦୃଷ୍ଟ୍ୱା କିଂ କୃତବାନିତ୍ୟପେକ୍ଷାୟାମାହ, ତତ ଇତି । ତତୋ ଦର୍ଶନାନନ୍ତରଂ ବିସ୍ମୟେନାବିଷ୍ଟୋ ବ୍ୟାପ୍ତଃ ସନ୍ ହୃଷ୍ଟାନ୍ୟୁତ୍ପୁଲକିତାନି ରୋମାଣି ଯସ୍ୟ ସ ଧନଞ୍ଜୟସ୍ତମେବ ଦେବ ଶିରସା ପ୍ରଣମ୍ୟ କୃତାଞ୍ଜଳିଃ ସମ୍ପୁଟୀକୃତହସ୍ତୋ ଭୂତ୍ୱା ଅଭାଷତ ଉକ୍ତବାନ୍ । ୧୪ ।

### ପଦବ୍ୟାଖ୍ୟା ।

ତତଃ—ତହିଁ ଉତ୍ତାରୁ ଅର୍ଥାତ୍ ବିଶ୍ୱରୂପର ଏକାଂଶରେ ଜଗତ୍ ସ୍ଥିତ, ଏହା ଦେଖିବା ପରେ, ସଃ—ସେହି, ବିସ୍ମୟାବିଷ୍ଟଃ—ଆଶ୍ଚର୍ଯ୍ୟାନ୍ୱିତ, ହୃଷ୍ଟରୋମା—ଯାହା ଦେହରେ ଲୋମ ସବୁ ପୁଲକିତ ବା କଣ୍ଟକିତ ହୋଇଅଛି, ଧନଞ୍ଜୟଃ—ଅର୍ଜୁନ, ପ୍ରଣମ୍ୟ—ନମସ୍କାର କରି, ଶିରସା—ମସ୍ତକଦ୍ୱାରା, ଦେବଂ—ବିଶ୍ୱରୂପଧାରୀଙ୍କୁ, କୃତାଞ୍ଜଳିଃ—ଯୋଡ଼ ହସ୍ତ ହୋଇ, ଅଭାଷତ—କହିଲେ । ୧୪ ।

### ଅନୁବାଦ ।

**ତହିଁ ଉତ୍ତାରୁ ଆଶ୍ଚର୍ଯ୍ୟାନ୍ୱିତ ଓ ପୁଲକିତ କଳେବର ଅର୍ଜୁନ, ଭଗବାନଙ୍କୁ ନତ ମସ୍ତକରେ ନମସ୍କାର କରି ହାତ ଯୋଡ଼ି କହିଲେ । ୧୪ ।**

### ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ପୂର୍ବରେ ଯାହା କହିଥିଲେ, ଅର୍ଜୁନ ବିଶ୍ୱରୂପରେ ସେହି କଥା ଦେଖିବାରୁ ଆଶ୍ଚର୍ଯ୍ୟାନ୍ୱିତ ହେଲେ ଓ ତାଙ୍କର ଦେହ ପୁଲକିତ ହେଲା । ସେ, ରାଜସୂୟ ଯଜ୍ଞ ସମୟରେ ସମସ୍ତ ରାଜାଙ୍କୁ ଜୟ କରିଥିବା ଓ ମହାଦେବଙ୍କୁ ଯୁଦ୍ଧରେ ଜୟ କରି ପାଶୁପତ ଅସ୍ତ୍ର ଲାଭ କରିଥିବା ପ୍ରଭୃତି ବୀରତ୍ୱ ଗର୍ବ ତ୍ୟାଗ କରି, ବିଶ୍ୱରୂପୀ ଶ୍ରୀଭଗବାନଙ୍କ ଚରଣରେ ରତ୍ନଖଚିତ ମୁକୁଟ ଶୋଭିତ ମସ୍ତକ ଅବନତ କଲେ, ଏବଂ କରଯୋଡ଼ି ସ୍ତୁତି ଆରମ୍ଭ କଲେ । ୧୪ ।

### ଶ୍ଳୋକଃ ।

ଅର୍ଜୁନ ଉବାଚ ।

* ପଶ୍ୟାମି ଦେବାଂସ୍ତବ ଦେବ ଦେହେ, ସର୍ବାଂସ୍ତଥା ଭୂତବିଶେଷସଂଘାନ୍ ।
ବ୍ରହ୍ମାଣମୀଶଂ କମଳାସନସ୍ଥ,-ମୃଷୀଂଶ୍ଚ ସର୍ବାନୁରଗାଂଶ୍ଚ ଦିବ୍ୟାନ୍ । ୧୫ ।

### ଅନ୍ୱୟଃ ।

ଅର୍ଜୁନଃ ଉବାଚ । ହେ ଦେବ ! ତବ ଦେହେ ସର୍ବାନ୍ ଦେବାନ୍ ତଥା ଭୂତବିଶେଷସଂଘାନ୍ କମଳାସନସ୍ଥଂ ଈଶଂ ବ୍ରହ୍ମାଣଂ ସର୍ବାନ୍ ଋଷୀନ୍ ଚ ଦିବ୍ୟାନ୍ ଉରଗାନ୍ ପଶ୍ୟାମି । ୧୫ ।

### ଟୀକା ।

ଦର୍ଶନମେବାହ । ପଶ୍ୟାମୀତି ସପ୍ତଦଶଭିଃ । ହେ ଦେବ ! ତବ ଦେହେ ଦେବାନାଦିତ୍ୟାଦୀନ୍ ପଶ୍ୟାମି ତଥା ସର୍ବାନ୍ ଭୂତବିଶେଷାଣାଂ ଜରାୟୁଜାଣ୍ଡଜାଦୀନାଂ ସଂଘାଂଶ୍ଚ ତଥା ଦିବ୍ୟାନୃଷୀନ୍ ଉରଗାଂଶ୍ଚ ତକ୍ଷକାଦୀନ୍ ତଥା ତେଷାଂ ଦେବାଦୀନାମୀଶଂ ସ୍ୱାମିନଂ ବ୍ରହ୍ମାଣଂ ଚ କମ୍ଭୂତଂ କମଳାସନସ୍ଥଂ ପୃଥିବୀପଦ୍ମକର୍ଣ୍ଣିକାୟାଂ ମେରୌ ସ୍ଥିତମିତ୍ୟର୍ଥଃ ଯଦ୍ୱା ନାଭିପଦ୍ମାସନସ୍ଥିତ । ୧୫ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ପଶ୍ୟାମି—ଦେଖୁଅଛି, ଦେବାନ୍—ଆଦିତ୍ୟ ଓ ବସୁ ଆଦି ଦେବତାମାନଙ୍କୁ, ତବ—ଆପଣଙ୍କର, ଦେବ—ହେ ଭଗବନ୍ ! ଦେହେ—ଶରୀରରେ, ସର୍ବାନ୍—ସବୁ, ତଥା—ସେହିପରି, ଭୂତବିଶେଷସଂଘାନ୍—(ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍ଭିଜ୍ଜାଦି) ପ୍ରାଣିସମୂହଙ୍କୁ, ବ୍ରହ୍ମାଣଂ—ବ୍ରହ୍ମାଙ୍କୁ, ଈଶଂ—ଦେବତାମାନଙ୍କର ଶ୍ରେଷ୍ଠ ବା ପ୍ରଜାମାନଙ୍କ ସ୍ୱାମୀ, କମଳାସନସ୍ଥଂ—ପୃଥିବୀରୂପ ପଦ୍ମର ମେରୁରୂପ କର୍ଣ୍ଣିକାରେ ସ୍ଥିତ ବା ଆପଣଙ୍କ ନାଭିକମଳରୁ ଜାତ, ଋଷୀନ୍—ଋଷିମାନଙ୍କୁ, ଚ—ପୁଣି, ସର୍ବାନ୍—ସମସ୍ତ, ଉରଗାନ୍ ଚ—ସର୍ପମାନଙ୍କୁ, ଦିବ୍ୟାନ୍—ଅଲୌକିକ । ୧୫ ।

ଅନୁବାଦ ।

ଅର୍ଜୁନ କହିଲେ, ହେ ଦେବ ! ଆପଣଙ୍କ ଦେହରେ ଦେବତା ସକଳ, ପ୍ରାଣିବର୍ଗ, ପଦ୍ମାସନସ୍ଥିତ ଦେବଶ୍ରେଷ୍ଠ ବ୍ରହ୍ମା, ସମସ୍ତ ଋଷି ଓ ଦିବ୍ୟ ସର୍ପମାନଙ୍କୁ ଦେଖୁଅଛି । ୧୫ ।

ବିଶଦବ୍ୟାଖ୍ୟା ।

ଅର୍ଜୁନ କହିଲେ, ହେ ଦେବଦେବ ! ଆପଣଙ୍କ ଦେହରେ ଦ୍ୱାଦଶ ଆଦିତ୍ୟ ଓ ଅଷ୍ଟ ବସୁ ଏବଂ ଇନ୍ଦ୍ରାଦି ସମସ୍ତ ଦେବତାଙ୍କୁ ଦେଖୁଅଛି, ପୁଣି ଜରାୟୁଜ (ମନୁଷ୍ୟ, ପଶୁପ୍ରଭୃତି) ଅଣ୍ଡଜ (ପକ୍ଷୀ, କୁମ୍ଭୀର, ସର୍ପାଦି) ସ୍ୱେଦଜ (ମଶକ, ଦଂଶାଦି) ଓ ଉଦ୍ଭିଜ୍ଜ (ବୃକ୍ଷ ଲତାଦି) ଇତ୍ୟାଦି ସମସ୍ତ ପ୍ରାଣିବର୍ଗଙ୍କୁ ମଧ୍ୟ ଦେଖୁଅଛି । ପୁଣି ଦେବତା ଓ ପ୍ରାଣିମାନଙ୍କର ସୃଷ୍ଟିକର୍ତ୍ତା ଚତୁର୍ମୁଖ-ବ୍ରହ୍ମା, ଯେ କି ଆପଣଙ୍କ ନାଭିଜାତ ପଦ୍ମରୂପ ଆସନରେ ସ୍ଥିତ ଅଛନ୍ତି, ତାଙ୍କୁ ଓ ଭୃଗୁ ବଶିଷ୍ଠ ପ୍ରଭୃତି ସମସ୍ତ ଋଷିମାନଙ୍କୁ, ଏବଂ ବାସୁକି, ଅନନ୍ତ ତକ୍ଷକ ପ୍ରଭୃତି ସମସ୍ତ ଅଲୌକିକ 'ଉରଗ' (ସର୍ପ)ମାନଙ୍କୁ ଦେଖୁଅଛି ।

ଫଳକଥା ଏହି କି ଆପଣ ବିଭୂତି ଅଧ୍ୟାୟରେ ଯେଉଁ ୨ କଥାର ବର୍ଣ୍ଣନା କରିଥିଲେ, ତାହା ସମସ୍ତ ଆପଣଙ୍କର ଏହି ବିଶ୍ୱରୂପରେ ମୁଁ ଦେଖୁଅଛି । ୧୫ ।

ଶ୍ଲୋକଃ ।

* ଅନେକବାହୂଦରବକ୍ତ୍ରନେତ୍ରଂ, ପଶ୍ୟାମି ତ୍ୱାଂ ସର୍ବତୋଽନନ୍ତରୂପଂ ।
ନାନ୍ତଂ ନ ମଧ୍ୟଂ ନ ପୁନସ୍ତବାଦିଂ, ପଶ୍ୟାମି ବିଶ୍ୱେଶ୍ୱର ବିଶ୍ୱରୂପ ॥ ୧୬ ॥

ଅନ୍ୱୟଃ ।

ହେ ବିଶ୍ୱେଶ୍ୱର ! ହେ ବିଶ୍ୱରୂପ ! ଅନେକବାହୂଦରବକ୍ତ୍ରନେତ୍ରଂ ଅନନ୍ତରୂପଂ ତ୍ୱାଂ ସର୍ବତଃ ପଶ୍ୟାମି, ପୁନଃ ତବ ଅନ୍ତଂ ନ ପଶ୍ୟାମି ନ ମଧ୍ୟଂ ନ ଆଦିଂ (ଚ ପଶ୍ୟାମି) । ୧୬ ।

ଟୀକା ।

କିଞ୍ଚ ଅନେକେତି । ଅନେକାନି ବାହ୍ୱାଦୀନି ଯସ୍ୟ ତାଦୃଶଂ ତ୍ୱାଂ ପଶ୍ୟାମି ଅନନ୍ତାନି ରୂପାଣି ଯସ୍ୟ ତଂ ତ୍ୱାଂ ସର୍ବତଃ ପଶ୍ୟାମି, ତବ ତୁ ଅନ୍ତଂ ମଧ୍ୟଂ ଆଦିଂ ଚ ନ ପଶ୍ୟାମି ସର୍ବଗତତ୍ୱାତ୍ । ୧୬ ।

ପଦବ୍ୟାଖ୍ୟା ।

ଅନେକବାହୂଦରବକ୍ତ୍ରନେତ୍ରଂ—ଅସଂଖ୍ୟ ହସ୍ତ, ଉଦର, ମୁଖ ଓ ଚକ୍ଷୁଯୁକ୍ତ, ପଶ୍ୟାମି—ଦେଖୁଅଛି, ତ୍ୱାଂ—ଆପଣଙ୍କୁ, ସର୍ବତଃ—ସବୁ ସ୍ଥାନରେ, ଅନନ୍ତରୂପଂ—ଅସୀମରୂପଧାରୀ, ନାନ୍ତଂ—ସୀମାକୁ (ଦେଖୁ) ନାହିଁ, ନ ମଧ୍ୟଂ—

ମଧ୍ୟଂ ମଧ୍ୟ (ଦେଖୁ) ନାହିଁ, ନ ପୁନସ୍ତବାଦିଂ—ପୁଣି ଅପଣଙ୍କର ଆଦି (ଦେଖୁ) ନାହିଁ, ପଶ୍ୟାମି—ଦେଖୁଅଛି, ବିଶ୍ୱେଶ୍ୱର—ହେ ଜଗଦୀଶ୍ୱର!, ବିଶ୍ୱରୂପ—ହେ ସର୍ବତୋରୂପ! । ୧୬ ।

### ଅନୁବାଦ ।

ହେ ବିଶ୍ୱରୂପ-ବିଶ୍ୱେଶ୍ୱର! ଅପଣଙ୍କର ଅନେକ ବାହୁ, ଉଦର, ମୁଖ ଓ ନେତ୍ରଯୁକ୍ତ, ଅସୀମରୂପ ସର୍ବତ୍ର ଦେଖୁଅଛି । କିନ୍ତୁ ଅପଣଙ୍କର ଆଦି, ମଧ୍ୟ ଓ ଅନ୍ତ ମୁଁ ଦେଖି ପାରୁ ନାହିଁ । ୧୬ ।

### ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ କହୁଅଛନ୍ତି, ହେ ଭଗବାନ୍‌ର ବିଶ୍ୱରୂପ। ଅପଣଙ୍କ ଏହି ବିଶ୍ୱରୂପ ଦେଖି ମୁଁ ଜାଣି ପାରିଲି, ଯେ ଆପଣଙ୍କର ବାହୁ ଅସଂଖ୍ୟ, ଉଦର ଅନେକ, ମୁଖ ଗଣନାର ଅତୀତ ଏବଂ ନେତ୍ର ମଧ୍ୟ ଅସଂଖ୍ୟ ଏବଂ ସେହି ହେତୁରୁ ମୁଁ ଅପଣଙ୍କ ରୂପର ଆଦି, ଅନ୍ତ ଓ ମଧ୍ୟ ଦେଖି ପାରୁ ନାହିଁ, କାହିଁକି ନା ଏହିରୂପ ଅନନ୍ତ ଅର୍ଥାତ୍ ସୀମା ରହିତ ଅଟେ । ୧୬ ।

### ଶ୍ଲୋକଃ ।

କିରୀଟିନଂ ଗଦିନଂ ଚକ୍ରିଣଂ ଚ, ତେଜୋରାଶିଂ ସର୍ବତୋଦୀପ୍ତିମନ୍ତଂ ।
ପଶ୍ୟାମି ତ୍ୱାଂ ଦୁର୍ନିରୀକ୍ଷ୍ୟଂ ସମନ୍ତା, ଦ୍ଦୀପ୍ତାନଳାର୍କଦ୍ୟୁତିମପ୍ରମେୟଂ । ୧୭ ।

### ଅନ୍ୱୟଃ ।

ତ୍ୱାଂ କିରୀଟିନଂ ଗଦିନଂ ଚକ୍ରିଣଂ ତେଜୋରାଶିଂ ସର୍ବତଃ ଦୀପ୍ତିମନ୍ତଂ ଦୀପ୍ତାନଳାର୍କଦ୍ୟୁତିଂ ଅପ୍ରମେୟଂ (ଅତଃ) ଦୁର୍ନିରୀକ୍ଷ୍ୟଂ ସମନ୍ତାତ୍ ପଶ୍ୟାମି । ୧୭ ।

### ଟୀକା ।

କିଞ୍ଚ କିରୀଟିନମିତି । ମୁକୁଟବନ୍ତଂ ଗଦାବନ୍ତଂ ଚକ୍ରବନ୍ତଂ ସର୍ବତୋଦୀପ୍ତିମନ୍ତଂ ତେଜଃପୁଞ୍ଜରୂପଂ ତଥା ଦୁର୍ନିରୀକ୍ଷ୍ୟଂ ଦ୍ରଷ୍ଟୁମଶକ୍ୟଂ, ତତ୍ର ହେତୁଃ ଦୀପ୍ତସ୍ୟୋରନଳାର୍କୟୋର୍ଦ୍ଦ୍ୟୁତିରିବ ଦ୍ୟୁତିର୍ୟସ୍ୟ ତଂ ଅତଏବାପ୍ରମେୟଂ ଏବମ୍ଭୂତ ଇତ୍ୟନ୍ତେରୂମଶକ୍ୟଂ ତ୍ୱାଂ ସମନ୍ତତଃ ପଶ୍ୟାମି । ୧୭ ।

### ପଦବ୍ୟାଖ୍ୟା ।

କିରୀଟିନଂ—ମୁକୁଟଧାରୀ, ଗଦିନଂ—ଗଦାଧାରୀ, ଚକ୍ରିଣଂ—ଚକ୍ରଧାରୀ, ଚ—ପୁଣି, ତେଜୋରାଶିଂ—ତେଜଃପୁଞ୍ଜରୂପ, ସର୍ବତଃ—ସର୍ବତ୍ର, ଦୀପ୍ତିମନ୍ତଂ—ପ୍ରକାଶବାନ୍, ପଶ୍ୟାମି—ଦେଖୁଅଛି, ତ୍ୱାଂ—ଅପଣଙ୍କୁ, ଦୁର୍ନିରୀକ୍ଷ୍ୟଂ—ଦୁଃଖରେ-ଦର୍ଶନୀୟ, ସମନ୍ତାତ୍—ଚତୁର୍ଦ୍ଦିଗରେ, ଦୀପ୍ତାନଳାର୍କଦ୍ୟୁତିଂ—ପ୍ରଜ୍ୱଳିତ ଅଗ୍ନି ଓ ସୂର୍ଯ୍ୟଙ୍କ ପରି ଦୀପ୍ତିମାନ୍, ଅପ୍ରମେୟଂ—ଅବୁଝନୀୟ ଅର୍ଥାତ୍ ମନ ଓ ବଚନର ଅଗୋଚର । ୧୭ ।

### ଅନୁବାଦ ।

ଅପଣ, ମୁକୁଟ, ଗଦା ଓ ଚକ୍ରଯୁକ୍ତ, ତେଜୋରାଶିସ୍ୱରୂପ, ସର୍ବତ୍ର ପ୍ରକାଶମାନ, ପ୍ରଦୀପ୍ତ ଅଗ୍ନି ଓ ସୂର୍ଯ୍ୟପରି ଦୀପ୍ତିମାନ୍ ଓ ଅସୀମ, ଅତଏବ ଦୁର୍ଦ୍ଦର୍ଶନୀୟ ହେଲେହେଁ (ମୁଁ) ଅପଣଙ୍କୁ ସର୍ବତ୍ର ଦେଖୁଅଛି । ୧୭ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ କହୁଅଛନ୍ତି, ହେ ଭଗବନ୍ ! ଆପଣ ମୁକୁଟମଣ୍ଡିତ, ଗଦା ଓ ଚକ୍ରାଦି ଅସ୍ତ୍ରଯୁକ୍ତ, ପୁଣି ତେଜଃପୁଞ୍ଜରୂପୀ ଅଟନ୍ତି । ଆପଣଙ୍କ ରୂପ ସର୍ବତ୍ର ପ୍ରକାଶମାନ ଅର୍ଥାତ୍ ରୂପର ଆଭାରେ ଚତୁର୍ଦ୍ଦିଗ ଆଲୋକିତ ହୋଇଅଛି । ଆପଣଙ୍କ ରୂପ ପ୍ରଦୀପ୍ତ ଅଗ୍ନି ଓ ସୂର୍ଯ୍ୟପରି ଆଭାବିଶିଷ୍ଟ ପୁଣି ଅପ୍ରମେୟ ଅର୍ଥାତ୍ ତାହା କିପରି ବା କେତେବଡ଼, ତାହା ପ୍ରମାଣ କରିଯାଇ ନ ପାରେ । ସୁତରାଂ ଆପଣ, ସାଧାରଣ ଚକ୍ଷୁରେ ଦୁର୍ଦ୍ଦର୍ଶନୀୟ ହେଲେହେଁ ଅର୍ଥାତ୍ ସାଧାରଣ ଲୋକେ ଆପଣଙ୍କର ଏ ରୂପକୁ ଦେଖିବାକୁ ଅସମର୍ଥ ହେଲେ ମଧ୍ୟ, ଆପଣଙ୍କ ପ୍ରଦତ୍ତ ଦିବ୍ୟ ଚକ୍ଷୁଦ୍ୱାରା ମୁଁ ଆପଣଙ୍କୁ ଦେଖୁଅଛି । ୧୭ ।

ଶ୍ଳୋକଃ ।

* ତ୍ୱମକ୍ଷରଂ ପରମଂ ବେଦିତବ୍ୟଂ, ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନଂ ।
ତ୍ୱମବ୍ୟୟଃ ଶାଶ୍ୱତଧର୍ମଗୋପ୍ତା, ସନାତନସ୍ତ୍ୱଂ ପୁରୁଷୋ ମତୋ ମେ । ୧୮ ।

ଅନ୍ୱୟଃ ।

(ହେ ପ୍ରଭୋ) ତ୍ୱଂ ପରମଂ ବେଦିତବ୍ୟଂ ଅକ୍ଷରଂ, ତ୍ୱଂ ଅସ୍ୟ ବିଶ୍ୱସ୍ୟ ପରଂ ନିଧାନଂ, ତ୍ୱଂ ଅବ୍ୟୟଃ ଶାଶ୍ୱତଧର୍ମଗୋପ୍ତା, (ଅତଃ) ତ୍ୱଂ ସନାତନଃ ପୁରୁଷଃ ମେ ମତଃ । ୧୮ ।

ଟୀକା ।

ଯସ୍ମାଦେବ ତବାତର୍କ୍ୟମୈଶ୍ୱର୍ଯ୍ୟଂ ତସ୍ମାତ୍ତ୍ୱମିତି । ତ୍ୱମେବ ଅକ୍ଷରଂ ପରମଂ ପରଂବ୍ରହ୍ମ କଥମ୍ଭୂତଂ ବେଦିତବ୍ୟଂ ମୁମୁକ୍ଷୁଭିର୍ଜ୍ଞାତବ୍ୟଂ, ତ୍ୱମେବାସ୍ୟ ବିଶ୍ୱସ୍ୟ ପରଂ ନିଧାନଂ ନିଧୀୟତେଽସ୍ମିନ୍ନିତି ନିଧାନଂ ପ୍ରକୃଷ୍ଟାଶ୍ରୟଃ, ଅତଏବ ତ୍ୱମବ୍ୟୟୋ-ନିତ୍ୟଃ ଶାଶ୍ୱତସ୍ୟ ନିତ୍ୟସ୍ୟ ଧର୍ମସ୍ୟ ଗୋପ୍ତା ପାଳକଃ, ସନାତନଶ୍ଚିରନ୍ତନଃ ପୁରୁଷୋ ମତୋ ମେ ସମ୍ମତୋଽସି । ୧୮ ।

ପଦବ୍ୟାଖ୍ୟା ।

ତ୍ୱଂ—ଆପଣ, ଅକ୍ଷରଂ—ବ୍ରହ୍ମ, ପରମଂ—ସର୍ବୋତ୍ତମ, ବେଦିତବ୍ୟଂ—ଜାଣିବାର ଯୋଗ୍ୟ, ତ୍ୱଂ—ଆପଣ, ଅସ୍ୟ—ଏହି, ବିଶ୍ୱସ୍ୟ—ଜଗତର, ପରଂନିଧାନଂ—ଏକମାତ୍ର ଆଶ୍ରୟସ୍ଥାନ, ତ୍ୱଂ ଅବ୍ୟୟଃ—ଆପଣ ଅବିନାଶୀ, ଶାଶ୍ୱତଧର୍ମଗୋପ୍ତା—ନିତ୍ୟଧର୍ମର ପାଳକ, ସନାତନଃ—ଚିରସ୍ଥାୟୀ—ନିତ୍ୟ, ତ୍ୱଂ—ଆପଣ, ପୁରୁଷଃ—ପୁରୁଷ ଅଟନ୍ତି, ମତଃ ମେ—ଏହା ମୋହର ସମ୍ମତ । ୧୮ ।

ଅନୁବାଦ ।

(ହେ ପ୍ରଭୋ !) ଆପଣ ପରଂବ୍ରହ୍ମ ଓ ଆପଣ ଜ୍ଞାତବ୍ୟ; ଆପଣ ଏ ଜଗତର ପରମଆଶ୍ରୟ; ଆପଣ ଅବିନାଶୀ ଓ ନିତ୍ୟଧର୍ମର ପାଳକ ଏବଂ ଆପଣ ହିଁ ମୋ ମତରେ ନିତ୍ୟ ପରମାତ୍ମା ପୁରୁଷ ଅଟନ୍ତି । ୧୮ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ, ଭଗବାନଙ୍କର ଅସାଧାରଣ ଐଶ୍ୱର୍ଯ୍ୟ ଦର୍ଶନ କରି କହୁଅଛନ୍ତି, ହେ ପ୍ରଭୋ ! ଏବେ ମୁଁ ଜାଣିପାରୁଅଛି, ଯେ ବେଦାନ୍ତାଦି ଶାସ୍ତ୍ରରେ ଯେଉଁ ପରଂବ୍ରହ୍ମଙ୍କ କଥା ଲେଖାଅଛି, ଆପଣ, ସେହି ପରଂବ୍ରହ୍ମ । ବେଦାନ୍ତ ଶାସ୍ତ୍ରର ଶ୍ରବଣ ମନନଦ୍ୱାରା ମୋକ୍ଷାଭିଳାଷିମାନେ

ଆପଣଙ୍କୁ ଜାଣିବାକୁ ଚେଷ୍ଟା କରନ୍ତି । ଆପଣ ଏ ପ୍ରପଞ୍ଚଜଗତର ଏକମାତ୍ର ଆଶ୍ରୟ ବା ଅଧିଷ୍ଠାନସ୍ୱରୂପ ଅଟନ୍ତି । ଅତଏବ ଆପଣ ଅବ୍ୟୟ ଓ ବେଦୋକ୍ତ ନିତ୍ୟଧର୍ମ (ଆର୍ଯ୍ୟଧର୍ମ)ର ପାଳକ ଅଟନ୍ତି । ଏହି ସବୁ ଅସାଧାରଣ ଗୁଣ ଆପଣଙ୍କଠାରେ ଥିବାରୁ ଆପଣ, ଯେ ନିତ୍ୟ ଓ ପରମାତ୍ମା ପୁରୁଷ ଅଟନ୍ତି, ତହିଁରେ ମୋହର ଲେଶମାତ୍ର ସଂଶୟ ନାହିଁ । ୧୮ ।

ଶ୍ଲୋକଃ ।

* ଅନାଦି-ମଧ୍ୟାନ୍ତମନନ୍ତବୀର୍ଯ୍ୟ, ମନନ୍ତବାହୁଂ ଶଶିସୂର୍ଯ୍ୟନେତ୍ରଂ ।
ପଶ୍ୟାମି ତ୍ୱାଂ ଦୀପ୍ତହୁତାଶବକ୍ତ୍ରଂ, ସ୍ୱତେଜସା ବିଶ୍ୱମିଦଂ ତପନ୍ତଂ । ୧୯ ।

ଅନ୍ୱୟଃ ।

ଅନାଦିମଧ୍ୟାନ୍ତଂ ଅନନ୍ତବୀର୍ଯ୍ୟଂ ଅନନ୍ତବାହୁଂ ଶଶି-ସୂର୍ଯ୍ୟନେତ୍ରଂ ଦୀପ୍ତହୁତାଶବକ୍ତ୍ରଂ ସ୍ୱତେଜସା ଇଦଂ ବିଶ୍ୱଂ ତପନ୍ତଂ ତ୍ୱାଂ ପଶ୍ୟାମି । ୧୯ ।

ଟୀକା ।

କିଞ୍ଚ ଅନାଦୀତି । ଅନାଦିମଧ୍ୟାନ୍ତଂ ଉତ୍ପତ୍ତି-ସ୍ଥିତି-ଲୟରହିତଂ, ଅନନ୍ତଂ ବୀର୍ଯ୍ୟଂ ପ୍ରଭାବୋ ଯସ୍ୟ ତଂ ଅନନ୍ତା ବାହବୋ ଯସ୍ୟ ତଂ ଶଶିସୂର୍ଯ୍ୟୌ ନେତ୍ରେ ଯସ୍ୟ ତାଦୃଶଂ ତ୍ୱାଂ ପଶ୍ୟାମି ତଥା ଦୀପ୍ତୋ ହୁତାଶୋଽଗ୍ନିର୍ବକ୍ତ୍ରେଷୁ ଯସ୍ୟ ତଂ ସ୍ୱତେଜସା ଇଦଂ ବିଶ୍ୱଂ ତପନ୍ତଂ ସନ୍ତାପୟନ୍ତଂ ପଶ୍ୟାମି । ୧୯ ।

ପଦବ୍ୟାଖ୍ୟା ।

ଅନାଦିମଧ୍ୟାନ୍ତଂ—ଉତ୍ପତ୍ତି ସ୍ଥିତି ଓ ଲୟରହିତ, ଅନନ୍ତବୀର୍ଯ୍ୟଂ—ଅସୀମ ପ୍ରଭାବବିଶିଷ୍ଟ, ଅନନ୍ତବାହୁଂ—ଅସଂଖ୍ୟ ଭୁଜବିଶିଷ୍ଟ, ଶଶିସୂର୍ଯ୍ୟନେତ୍ରଂ—ଚନ୍ଦ୍ର ଓ ସୂର୍ଯ୍ୟ ଯାହାଙ୍କର ଚକ୍ଷୁ, ପଶ୍ୟାମି—ଦେଖୁଅଛି, ତ୍ୱାଂ—ଆପଣଙ୍କୁ, ଦୀପ୍ତହୁତାଶବକ୍ତ୍ରଂ—ପ୍ରଜ୍ୱଳିତ ଅଗ୍ନିପରି ମୁଖ ଯାହାଙ୍କର, ସ୍ୱତେଜସା—ନିଜ ତେଜରେ, ବିଶ୍ୱଂ ଇଦଂ—ଏହି ଜଗତକୁ, ତପନ୍ତଂ—ସେ ଉତ୍ତପ୍ତ କରୁଅଛନ୍ତି ତାଙ୍କୁ । ୧୯ ।

ଅନୁବାଦ ।

ଆପଣ ଉତ୍ପତ୍ତି ସ୍ଥିତି ଓ ଲୟରହିତ, ଅସୀମ ପ୍ରଭାବଶାଳୀ, ଅସଂଖ୍ୟ ବାହୁବିଶିଷ୍ଟ, ଚନ୍ଦ୍ର ଓ ସୂର୍ଯ୍ୟ ଏ ଦୁହେଁ ଆପଣଙ୍କର ନେତ୍ର ଓ ପ୍ରଜ୍ୱଳିତ ଅଗ୍ନିପରି ଆପଣଙ୍କ ମୁଖ ଏବଂ ଆପଣ ନିଜ ତେଜଦ୍ୱାରା ଏହି ଜଗତକୁ ସନ୍ତପ୍ତ କରୁଅଛନ୍ତି, ଏହା ମୁଁ ଦେଖୁଅଛି । ୧୯ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ କହିଲେ, ହେ ଦେବଦେବ ! ଆପଣ ଉତ୍ପତ୍ତି, ସ୍ଥିତି ଓ ଲୟରହିତ ଅର୍ଥାତ୍ ସର୍ବପ୍ରକାର ବିକାରଶୂନ୍ୟ, ଅଥବା ଆପଣଙ୍କ ବିଶ୍ୱରୂପର ଆଦି ଅନ୍ତ ଓ ମଧ୍ୟ ନାହିଁ, ତାହା ଅସୀମ ଅଟେ । ଆପଣଙ୍କର ବୀର୍ଯ୍ୟ ଅର୍ଥାତ୍ ପ୍ରଭାବ ଅନନ୍ତ ବା ଅପରିମେୟ ଅଟେ । ଆପଣଙ୍କର ବାହୁ ଅନନ୍ତ ବା ଅସଂଖ୍ୟ । ଆପଣଙ୍କର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ମଧ୍ୟ ଅସଂଖ୍ୟ । ନିର୍ମଳ ଜ୍ୟୋତିର ଆଧାର, ଯେ ଚନ୍ଦ୍ର ଓ ସୂର୍ଯ୍ୟ, ସେ ଦୁହେଁ ଆପଣଙ୍କ ନେତ୍ରସ୍ୱରୂପ ହୋଇଅଛନ୍ତି, ଅର୍ଥାତ୍ ଆପଣଙ୍କର ଅନନ୍ତ ମୁଖରେ ଅସଂଖ୍ୟ ଚନ୍ଦ୍ର ଓ ଅସଂଖ୍ୟ ସୂର୍ଯ୍ୟ ନେତ୍ରରୂପରେ ଶୋଭା ପାଉଅଛନ୍ତି । ଆପଣଙ୍କ ମୁଖରୁ ପ୍ରଜ୍ୱଳିତ ଅଗ୍ନି ପ୍ରକାଶିତ ହେଉଅଛି, ଅଥବା ଆପଣଙ୍କ ମୁଖର

Digitized by PPRACHIN, SOA

ଅଛ, ପ୍ରଦୀପ୍ତ ଅଗ୍ନି ପରି ଉଜ୍ଜ୍ୱଳ ଅଟେ ଏବଂ ଆପଣ, ନିଜର ତେଜଦ୍ୱାରା 'ଏ ସମସ୍ତ ଜଗତକୁ ଉତ୍ତପ୍ତ କରୁଅଛନ୍ତି । ଏହି ସବୁ କଥା, ମୁଁ ଆପଣଙ୍କ ପ୍ରଦତ୍ତ ଦିବ୍ୟ ଚକ୍ଷୁଦ୍ୱାରା ଦେଖୁଅଛି ।୧୯।

ଶ୍ଳୋକଃ ।

✽ ଦ୍ୟାବାପୃଥିବ୍ୟୋରିଦମନ୍ତରଂ ହି, ବ୍ୟାପ୍ତଂ ତ୍ୱୟୈକେନ ଦିଶଶ୍ଚ ସର୍ବାଃ ।
ଦୃଷ୍ଟ୍ୱାଦ୍ଭୁତଂ ରୂପମିଦଂ ତବୋଗ୍ରଂ, ଲୋକତ୍ରୟଂ ପ୍ରବ୍ୟଥିତଂ ମହାତ୍ମନ୍ । ୨୦ ।

ଅନ୍ୱୟଃ ।

ହେ ମହାତ୍ମନ୍ ! ଦ୍ୟାବାପୃଥିବ୍ୟୋଃ ଇଦଂ ଅନ୍ତରଂ ଏକେନ ତ୍ୱ ତ୍ୱୟା ବ୍ୟାପ୍ତଂ ଚ ସର୍ବାଃ ଦିଶଃ (ବ୍ୟାପ୍ତାଃ,) ତବ ଇଦଂ ଅଦ୍ଭୁତଂ ଉଗ୍ରଂ ରୂପଂ ଦୃଷ୍ଟ୍ୱା ଲୋକତ୍ରୟଂ ପ୍ରବ୍ୟଥିତଂ (ଇତି ପଶ୍ୟାମି) । ୨୦ ।

ଟୀକା ।

କିଞ୍ଚ ଦ୍ୟାବାପୃଥିବ୍ୟୋରିତି । ଦ୍ୟାବାପୃଥିବ୍ୟୋରିଦମନ୍ତରମନ୍ତରିକ୍ଷଂ ତ୍ୱୟୈବୈକେନ ବ୍ୟାପ୍ତଂ, ଦିଶଶ୍ଚ ସର୍ବା ବ୍ୟାପ୍ତାଃ ଅଦ୍ଭୁତମଦୃଷ୍ଟପୂର୍ବଂ ତବୋଗ୍ରମିଦମୁଗ୍ରଂ ଘୋରଂ ରୂପଂ ଦୃଷ୍ଟ୍ୱା ଲୋକତ୍ରୟଂ ପ୍ରବ୍ୟଥିତମତଭୀତଂ ପଶ୍ୟାମୀତି ପୂର୍ବସ୍ୟୈବାନୁଷଙ୍ଗଃ । ୨୦ ।

ପଦବ୍ୟାଖ୍ୟା ।

ଦ୍ୟାବାପୃଥିବ୍ୟୋଃ—ସ୍ୱର୍ଗ ଓ ପୃଥିବୀ ଏ ଦୁହିଙ୍କର, ଇଦଂ—ଏହି, ଅନ୍ତରଂ—ମଧ୍ୟବର୍ତ୍ତିସ୍ଥାନ—ଆକାଶ, ହି—ନିଶ୍ଚୟ, ବ୍ୟାପ୍ତଂ—ପରିପୂରିତ, ତ୍ୱୟା—ଆପଣଙ୍କଦ୍ୱାରା, ଏକେନ—ଏକା, ଦିଶଶ୍ଚ ସର୍ବାଃ—ସମସ୍ତ ଦିଗ ମଧ୍ୟ, ଦୃଷ୍ଟ୍ୱା—ଦେଖି କରି, ଅଦ୍ଭୁତଂ—ଆଶ୍ଚର୍ଯ୍ୟ, ରୂପଂ—ଅକୃତି, ଇଦଂ—ଏହି, ତବ—ଆପଣଙ୍କର, ଉଗ୍ରଂ—ଭୟଙ୍କର, ଲୋକତ୍ରୟଂ—ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଏହି ତ୍ରିଭୁବନ, ପ୍ରବ୍ୟଥିତଂ—ଭୀତ ବା ବିଚଳିତ, ମହାତ୍ମନ୍—ହେ ମହାତ୍ମନ୍ ! ।୨୦।

ଅନୁବାଦ ।

ହେ ମହାତ୍ମନ୍ ! ସ୍ୱର୍ଗ ଓ ମର୍ତ୍ତ୍ୟର ମଧ୍ୟବର୍ତ୍ତୀ ଆକାଶ ଏବଂ ସମସ୍ତ ଦିଗମାନଙ୍କୁ ଏକା ଆପଣ ବ୍ୟାପି ରହିଅଛନ୍ତି । ଆପଣଙ୍କର ଏହି ଅଦ୍ଭୁତ ଓ ଉଗ୍ରରୂପ ଦେଖି ତ୍ରିଲୋକ ଭୟତ୍ରସ୍ତ ହୋଇଥିବାର (ମୁଁ ଦେଖୁଅଛି) । ୨୦ ।

ବିଶଦବ୍ୟାଖ୍ୟା ।

ହେ ମହାତ୍ମନ୍ ବିଶ୍ୱରୂପ ! ଆପଣଙ୍କ ପ୍ରଦତ୍ତ ଦିବ୍ୟଚକ୍ଷୁଦ୍ୱାରା ମୁଁ ଦେଖୁଅଛି, ଯେ ସ୍ୱର୍ଗ ଓ ମର୍ତ୍ତ୍ୟ ଏ ଦୁହିଁଙ୍କର, ଯେଉଁ ଅନ୍ତର ଅର୍ଥାତ୍ ମର୍ତ୍ତ୍ୟଲୋକଠାରୁ ସ୍ୱର୍ଗଲୋକ ପର୍ଯ୍ୟନ୍ତ ମଧ୍ୟରେ ଯେତେ ସ୍ଥାନ ଅଛି, ତହିଁରେ ଏବଂ ସମସ୍ତ ଦିଗମାନଙ୍କରେ ଏକା ଆପଣ ବ୍ୟାପି ରହିଅଛନ୍ତି—ଅର୍ଥାତ୍ ଆପଣଙ୍କ ଭିନ୍ନ, ଆଉ କିଛିମାତ୍ର ପଦାର୍ଥ, ପୃଥିବୀ ଓ ସ୍ୱର୍ଗର ମଧ୍ୟବର୍ତ୍ତୀ ସ୍ଥାନରେ ନାହିଁ । ପୁଣି ଯଦିଚ ଯୁଦ୍ଧକ୍ଷେତ୍ରରେ ସମୁପସ୍ଥିତ ସୈନ୍ୟମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତି (ଦିବ୍ୟ ଚକ୍ଷୁ ଅଭାବରେ) ଆପଣଙ୍କର ରୂପ ଦେଖି ପାରୁ ନାହାନ୍ତି, ତଥାପି, ଆପଣଙ୍କର ଅଘଟନ କଥା ଘଟାଇବା ବିଷୟରେ, ଯେଉଁ ସାମର୍ଥ୍ୟ ଅଛି, ତାହାର ପ୍ରଭାବରେ ମୁଁ ଦେଖୁଅଛି, ଯେ ସ୍ୱର୍ଗସ୍ଥ ଦେବବୃନ୍ଦ ଓ ପୃଥିବୀସ୍ଥ ଲୋକବର୍ଗ ଏବଂ ଅନ୍ତରୀକ୍ଷବାସୀ ଯକ୍ଷ ଓ ଗନ୍ଧର୍ବକୁଳ ଆପଣଙ୍କର ଏ ଅଦ୍ଭୁତ ଓ ଅତି ଭୟାନକ ରୂପ ଦର୍ଶନରେ ବ୍ୟଥିତ ହୋଇଅଛନ୍ତି । ଫଳତଃ ଆପଣଙ୍କର ରୂପ, କେହି

Digitized by PPRACHIN, SOA

ଦେଖି ପାରୁ ନାହାନ୍ତି କି ଭୟ ପ୍ରାପ୍ତ ହେଉ ନାହାନ୍ତି, ଏହା ସତ, ମାତ୍ର ଆପଣଙ୍କ ପ୍ରଦତ୍ତ ଦିବ୍ୟ ଚକ୍ଷୁଦ୍ୱାରା ଏହି ଐଶ୍ୱରିକ ଯୋଗ—ଅର୍ଥାତ୍ ଅଘଟନ ଘଟାଇବା କ୍ଷମତାକୁ ମୁଁ ଦେଖୁଅଛି ।୨୦।

ଶ୍ଳୋକଃ ।

* ଅମୀ ହି ତ୍ୱାଂ ସୁରସଙ୍ଘା ବିଶନ୍ତି, କେଚିଦ୍ଭୀତାଃ ପ୍ରାଞ୍ଜଳୟୋ ଗୃଣନ୍ତି ।
ସ୍ୱସ୍ତୀତ୍ୟୁକ୍ତ୍ୱା ମହର୍ଷିସିଦ୍ଧସଙ୍ଘାଃ, ସ୍ତୁବନ୍ତି ତ୍ୱାଂ ସ୍ତୁତିଭିଃ ପୁଷ୍କଳାଭିଃ । ୨୧ ।

ଅନ୍ୱୟଃ ।

ଅମୀ ହି ସୁରସଙ୍ଘାଃ ଭୀତାଃ ତ୍ୱା ବିଶନ୍ତି, କେଚିତ୍ ପ୍ରାଞ୍ଜଳୟଃ (ସନ୍ତଃ) ଗୃଣନ୍ତି, ମହର୍ଷିସିଦ୍ଧସଙ୍ଘାଃ ସ୍ୱସ୍ତି ଇତି ଉକ୍ତ୍ୱା ପୁଷ୍କଳାଭିଃ ସ୍ତୁତିଭିଃ ତ୍ୱାଂ ସ୍ତୁବନ୍ତି । ୨୧ ।

ଟୀକା ।

କିଞ୍ଚ ଅମୀ ହୀତି । ଅମୀ ସୁରସଙ୍ଘାଃ ଭୀତାଃ ସନ୍ତସ୍ତ୍ୱାଂ ବିଶନ୍ତି ଶରଣଂ ପ୍ରବିଶନ୍ତି, ତେଷାଂ ମଧ୍ୟେ କେଚିଦତିଭୀତା ଦୂରତ ଏବ ସ୍ଥିତ୍ୱା କୃତସମ୍ପୁଟକରଯୁଗଳାଃ ସନ୍ତୋ ଗୃଣନ୍ତି, ଜୟଜୟ ରକ୍ଷରକ୍ଷେତି ପ୍ରାର୍ଥୟନ୍ତେ । ସ୍ପଷ୍ଟମନ୍ୟତ୍ । ୨୧ ।

ପଦବ୍ୟାଖ୍ୟା ।

ଅମୀ—ଏହି, ହି—ନିଶ୍ଚୟ, ତ୍ୱା—ଆପଣଙ୍କୁ, ସୁରସଙ୍ଘାଃ—ଦେବତାସମୂହ, ବିଶନ୍ତି—ଶରଣ ପଶୁଅଛନ୍ତି, କେଚିତ୍—କେହି୨, ଭୀତାଃ—ଭୀତ ହୋଇ, ପ୍ରାଞ୍ଜଳୟଃ—କୃତାଞ୍ଜଳି ପୂର୍ବରେ, ଗୃଣନ୍ତି—ବିନୟରେ ଜୟ୨ ଇତ୍ୟାଦି କହୁଅଛନ୍ତି, ସ୍ୱସ୍ତି ଇତି ଉକ୍ତ୍ୱା—ଜଗତର ମଙ୍ଗଳ ହେଉ, ଏହା କହି, ମହର୍ଷି ସିଦ୍ଧସଙ୍ଘାଃ—ମହର୍ଷି ଓ ସିଦ୍ଧମାନେ, ସ୍ତୁବନ୍ତି—ସ୍ତବ କରୁଅଛନ୍ତି, ସ୍ତୁତିଭିଃ ପୁଷ୍କଳାଭିଃ—ଉତ୍କୃଷ୍ଟ ସ୍ତୁତିଦ୍ୱାରା । ୨୧ ।

ଅନୁବାଦ ।

ଏହି* ଦେବତାମାନେ, ଭୀତ ହୋଇ ଆପଣଙ୍କଠାରେ ଶରଣ ପଶୁଅଛନ୍ତି, ଆଉ କେହି୨ (ଅତି ଭୟରେ ରକ୍ଷା କର ରକ୍ଷା କର ବୋଲି) କରଯୋଡ଼ି ପ୍ରାର୍ଥନା କରୁଅଛନ୍ତି । ମହର୍ଷି ଓ ସିଦ୍ଧମାନେ, ସ୍ୱସ୍ତି ଉଚ୍ଚାରଣ ପୂର୍ବକ, ସ୍ତୁତିଦ୍ୱାରା ଆପଣଙ୍କୁ ସ୍ତବ କରୁଅଛନ୍ତି । ୨୧ ।

ବିଶଦବ୍ୟାଖ୍ୟା ।

ଇନ୍ଦ୍ର, ଆଦିତ୍ୟ ଓ ବସୁ ପ୍ରଭୃତି ଏହି ଦେବତାମାନେ, ଯେଉଁମାନଙ୍କର ଅଂଶ କି ଭୂଭାର ହରଣପାଇଁ ଯୋଦ୍ଧାରୂପରେ କୁରୁକ୍ଷେତ୍ରରେ ଉପସ୍ଥିତ, ସେମାନେ, ଭୟପ୍ରାପ୍ତ ହୋଇ ଆପଣଙ୍କ ଠାରେ ଶରଣ ପଶୁଅଛନ୍ତି ଓ ସେମାନଙ୍କ ମଧ୍ୟରୁ କେହି୨ ଅଥବା ସ୍ୱର୍ଗସ୍ଥ ଦେବତାମାନଙ୍କ ମଧ୍ୟରୁ କେହି୨ ଅତି ଭୟରେ, ଆପଣଙ୍କ ନିକଟକୁ ଆସି ନ ପାରି, ଦୂରରୁ ଆମ୍ଭମାନଙ୍କୁ ରକ୍ଷା କର ରକ୍ଷା କର ବୋଲି, ଉଚ୍ଚରେ କୃତାଞ୍ଜଳି ପୂର୍ବରେ ପ୍ରାର୍ଥନା କରୁ ଅଛନ୍ତି । ଭୃଗୁ ଓ ବଶିଷ୍ଠାଦି ମହର୍ଷିମାନେ ଏବଂ କପିଳାଦି ସିଦ୍ଧମାନେ, ସ୍ୱସ୍ତି ଅର୍ଥାତ୍ ଜଗତର ମଙ୍ଗଳ ହେଉ, ଏହା କହି, ଅତି ଉତ୍କୃଷ୍ଟ ସ୍ତୁତିଦ୍ୱାରା ଆପଣଙ୍କୁ ସ୍ତବ କରୁଅଛନ୍ତି ।

---

* ଭୂଭାର ହରଣ ନିମିତ୍ତ ମନୁଷ୍ୟରୂପରେ ପୃଥିବୀରେ ଅବତୀର୍ଣ୍ଣ ହୋଇ ଯୋଦ୍ଧାରୂପରେ କୁରୁକ୍ଷେତ୍ରରେ ଯେଉଁମାନେ ଉପସ୍ଥିତ ଅଛନ୍ତି, ସେହି ଦେବତାମାନେ ।

Digitized by PPRACHIN, SOA

"ଅମୀ ହି ତ୍ୱାସୁରସଙ୍ଘାଃ" ଏ ବାକ୍ୟକୁ (ତ୍ୱା-ଅସୁରସଙ୍ଘାଃ) ଏପରି ପଦଚ୍ଛେଦ କଲେ, ଅସୁରାଂଶରେ ଜାତ—ଦୁର୍ଯ୍ୟୋଧନାଦି ଓ ସୈନ୍ୟମାନଙ୍କ ମଧ୍ୟରେ ଅଭ କେହି (ଅଗ୍ନିରେ ପତଙ୍ଗ ପଡ଼ିଲାପରି) ଆପଣଙ୍କଠାରେ ପ୍ରବିଷ୍ଟ ହେଉଅଛନ୍ତି, ଏପରି ଅର୍ଥ କରାଯାଇପାରେ ।୨୧।

ଶ୍ଳୋକଃ ।

ରୁଦ୍ରାଦିତ୍ୟା ବସବୋ ଯେ ଚ ସାଧ୍ୟା, ବିଶ୍ୱେଽଶ୍ୱିନୌ ମରୁତଶ୍ଚୋଷ୍ମପାଶ୍ଚ ।
ଗନ୍ଧର୍ବଯକ୍ଷାସୁରସିଦ୍ଧସଙ୍ଘା, ବୀକ୍ଷନ୍ତେ ତ୍ୱାଂ ବିସ୍ମିତାଶ୍ଚୈବ ସର୍ବେ ।୨୨।

ଅନ୍ୱୟଃ ।

ରୁଦ୍ରାଦିତ୍ୟାଃ ବସବଃ ଚ ଯେ ସାଧ୍ୟାଃ ବିଶ୍ୱେ ଅଶ୍ୱିନୌ ମରୁତଃ ଚ ଉଷ୍ମପାଃ ଚ ଗନ୍ଧର୍ବଯକ୍ଷାସୁରସିଦ୍ଧସଙ୍ଘାଃ (ତେ) ସର୍ବେ ଏବ ବିସ୍ମିତାଃ ତ୍ୱାଂ ବୀକ୍ଷନ୍ତେ ।୨୨।

ଟୀକା ।

କିଞ୍ଚ ରୁଦ୍ରେତି । ରୁଦ୍ରାଶ୍ଚ ଆଦିତ୍ୟାଶ୍ଚ ବସବଶ୍ଚ ଯେ ଚ ସାଧ୍ୟା ନାମ ଦେବାଃ ବିଶ୍ୱେ ଦେବାଃ ଅଶ୍ୱିନୌ ଦେବୌ ମରୁତୋ ମରୁଦ୍ଗଣାଶ୍ଚ ଉଷ୍ମାଣଂ ପିବନ୍ତୀତି ଉଷ୍ମପାଃ ପିତରଃ "ଉଷ୍ମଭାଗା ହି ପିତରଃ" ଇତି ଶ୍ରୁତେଃ, ସ୍ମୃତେଶ୍ଚ-"ଯାବଦୁଷ୍ଣଂ ଭବେଦନ୍ନଂ ତାବଦଶ୍ନନ୍ତି ବାଗ୍ୟତାଃ । ତାବଦଶ୍ନନ୍ତି ପିତରୋ ଯାବନ୍ନୋକ୍ତା ହବିର୍ଗୁଣାଃ" । ଗନ୍ଧର୍ବାଶ୍ଚ ଯକ୍ଷାଶ୍ଚ ଅସୁରାଶ୍ଚ ବିରୋଚନାଦୟଃ ସିଦ୍ଧସଙ୍ଘାଃ ସିଦ୍ଧାନାଂ ସଙ୍ଘାଶ୍ଚ ସର୍ବ ଏବ ବିସ୍ମିତାଃ ସନ୍ତସ୍ତ୍ୱାଂ ବୀକ୍ଷନ୍ତ ଇତ୍ୟନ୍ୱୟଃ ।୨୨।

ପଦବ୍ୟାଖ୍ୟା ।

ରୁଦ୍ରାଦିତ୍ୟାଃ—ଏକାଦଶ ରୁଦ୍ର ଓ ଦ୍ୱାଦଶ ଆଦିତ୍ୟ, (ଅଜ ୧, ଏକପାଦ ୨, ଅହିର୍ବୁଧ୍ନ ୩, ପିନାକୀ ୪, ଅପରାଜିତ ୫, ତ୍ର୍ୟମ୍ବକ ୬, ମହେଶ୍ୱର ୭, ବୃଷାକପି ୮, ଶମ୍ଭୁ ୯, ହର ୧୦, ଈଶ୍ୱର ୧୧, ଓ ଦ୍ୱାଦଶ ଆଦିତ୍ୟଙ୍କ ନାମ ୧୦ମ ଅଃ ୨୧ଶ ଶ୍ଳୋକର ପଦବ୍ୟାଖ୍ୟାରେ ଦେଖ), ବସବଃ—ଅଷ୍ଟବସୁ (ଦଶମ ଅଧ୍ୟାୟ ୨୩ ଶ୍ଳୋକର ନୋଟ ଦେଖ), ଯେଚ—ଯେଉଁ, ସାଧ୍ୟାଃ—ସାଧ୍ୟ ନାମକ ଦେବତାମାନେ,-(୧ମନ, ୨ମନ୍ତା, ୩ପ୍ରାଣ, ୪ନର, ୫ପାନ, ୬ବୀର୍ଯ୍ୟବାନ୍, ୭ବିନିର୍ଭୟ, ୮ନୟ, ୯ଦଂସ, ୧୦ନାରାୟଣ, ୧୧ବୃଷ, ୧୨ପ୍ରଭୁ, ଏହି ବାରପ୍ରକାର ସାଧ୍ୟ ଦେବତା); ବିଶ୍ୱେ—ଦଶ ବିଶ୍ୱେଦେବା—(୧କ୍ରତୁଃ, ୨ଦକ୍ଷଃ, ୩ବସୁଃ, ୪ସତ୍ୟଃ, ୫କାମଃ, ୬କାଳ, ତଥା ୭ଧ୍ୱନିଃ, ୮ରୋଚକ, ୯ଶ୍ଚାଦ୍ରବା ଶ୍ଚୈବ ତଥାଚାନ୍ୟେ ୧୦ପୁରୂରବାଃ, ପ୍ରକୃତିବାଦ), ଅଶ୍ୱିନୌ—ଅଶ୍ୱିନୀକୁମାରଦ୍ୱୟ, ମରୁତଃ—ଊନପଞ୍ଚାଶତ୍ ପବନ, (ଊନପଞ୍ଚାଶପବନଙ୍କ ନାମ ଏହି ଅଧ୍ୟାୟ ୬ଷ୍ଠ ଶ୍ଳୋଃ ପଃ ବ୍ୟାଃ ଦେଖ) ଉଷ୍ମପାଃ ଚ—ଉଷ୍ମପାନକାରୀ ପିତୃଗଣ, ଗନ୍ଧର୍ବଯକ୍ଷାସୁରସିଦ୍ଧସଙ୍ଘାଃ—ଗନ୍ଧର୍ବ, ଯକ୍ଷ ଓ ରାକ୍ଷସ ଏବଂ ସିଦ୍ଧସମୂହ, ବୀକ୍ଷନ୍ତେ ତ୍ୱାଂ—ଆପଣଙ୍କୁ ଦେଖୁଅଛନ୍ତି, ବିସ୍ମିତାଶ୍ଚ—ଆଶ୍ଚର୍ଯ୍ୟଯୁକ୍ତ ହୋଇ, ଏବ—କେବଳ, ସର୍ବେ—ସମସ୍ତେ ।୨୨।

ଅନୁବାଦ ।

(ହେ ଭଗବନ୍ !) ରୁଦ୍ର, ଆଦିତ୍ୟ, ବସୁ, ସାଧ୍ୟ, ବିଶ୍ୱେଦେବା, ଅଶ୍ୱିନୀକୁମାରଦ୍ୱୟ, ମରୁଦ୍ଗଣ, ଉଷ୍ମଭୋଜୀ (ପିତୃଗଣ) ଏବଂ ଗନ୍ଧର୍ବ, ଯକ୍ଷ, ଅସୁର ଓ ସିଦ୍ଧ, ଏମାନେ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଆପଣଙ୍କୁ ଦେଖୁଅଛନ୍ତି ।୨୨।

ବିଶଦବ୍ୟାଖ୍ୟା । ୧

ଅର୍ଜୁନ କହୁଅଛନ୍ତି, ହେ ବିଶ୍ୱରୂପ ! ଆପଣଙ୍କର ଏହି ଅଦ୍ଭୁତ ରୂପ ଦର୍ଶନ କରି ଏକାଦଶ ରୁଦ୍ର, ଦ୍ୱାଦଶ ଆଦିତ୍ୟ, ଅଷ୍ଟ ବସୁ, ଦ୍ୱାଦଶ ସାଧ୍ୟ, ଅଶ୍ୱିନୀକୁମାରଦ୍ୱୟ ଓ ଊନପଞ୍ଚାଶ ପବନ,

Digitized by PPRACHIN, SOA

ଉଷ୍ମଭୋଜୀ ପିତୃଗଣ ଏବଂ ଗନ୍ଧର୍ବ (ଦେବଗାୟକ), ଯକ୍ଷ (କୁବେର ଅନୁଚର), ଅସୁର (ବିରୋଚନ, ବାଣାସୁରାଦି ) ଓ ସିଦ୍ଧ (କପିଳାଦି) ଏମାନେ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହେଉଅଛନ୍ତି । କାରଣ ଏପରି ରୂପ, କେବେ କେହି ଦେଖି ନ ଥିଲେ ।

ପିତୃମାନଙ୍କୁ (ଉଷ୍ମପାଃ) ଉଷ୍ମଭୋଜୀ କହିବାର ତାତ୍ପର୍ଯ୍ୟ ଏହି, ଯେ ଶ୍ରାଦ୍ଧାଦି ସମୟରେ ମନ୍ତ୍ରଦ୍ୱାରା ନିବେଦିତ ଦଧି, ଦୁଗ୍ଧ, ଘୃତ ଓ ଅନ୍ନାଦିର ଉଷ୍ମ ଅର୍ଥାତ୍ ସାର ଓ ତେଜଃ ଅଂଶକୁ ସେମାନେ ଗ୍ରହଣ କରନ୍ତି । ଯେଉଁମାନେ 'ଶ୍ରାଦ୍ଧ' କଥା ଶୁଣି, ନିବେଦିତ ଦ୍ରବ୍ୟର ପରିମାଣ ହ୍ରାସ ହେଉ ନ ଥିବା ହେତୁରେ ପିତୃଲୋକର ଅସ୍ତିତ୍ୱରେ ଅବିଶ୍ୱାସ କରନ୍ତି, ସେମାନେ, ଥରେ 'ଉଷ୍ମପାଃ' ଶବ୍ଦର ଅର୍ଥ ବୁଝିବାକୁ ଚେଷ୍ଟା କରନ୍ତୁ । ୨୨ ।

ଶ୍ଳୋକଃ ।

* ରୂପଂ ମହତ୍ତେ ବହୁବକ୍ତ୍ରନେତ୍ରଂ, ମହାବାହୋ ବହୁବାହୂରୁପାଦଂ ।
ବହୂଦରଂ ବହୁଦଂଷ୍ଟ୍ରାକରାଳଂ, ଦୃଷ୍ଟ୍ୱା ଲୋକାଃ ପ୍ରବ୍ୟଥିତାସ୍ତଥାହଂ । ୨୩ ।

ଅନ୍ୱୟଃ ।

ହେ ମହାବାହୋ ! ବହୁବକ୍ତ୍ରନେତ୍ରଂ ବହୁବାହୂରୁପାଦଂ ବହୂଦରଂ ବହୁଦଂଷ୍ଟ୍ରାକରାଳଂ ତେ ମହତ୍ ରୂପଂ ଦୃଷ୍ଟ୍ୱା ଅହଂ ତଥା ଲୋକାଃ ପ୍ରବ୍ୟଥିତାଃ । ୨୩ ।

ଟୀକା ।

କିଞ୍ଚ ରୂପମିତି । ହେ ମହାବାହୋ ମହଦତିବୃଦ୍ଧଂ ତବ ରୂପଂ ଦୃଷ୍ଟ୍ୱା ଲୋକାଃ ସର୍ବେ ପ୍ରବ୍ୟଥିତାଃ ଅତିଭୀତାଃ ତଥାହଂ ଚ ପ୍ରବ୍ୟଥିତୋଽସ୍ମି । କୀଦୃଶଂ ରୂପଂ ଦୃଷ୍ଟ୍ୱା ବହୂନି ବକ୍ତ୍ରାଣି ନେତ୍ରାଣି ଚ ଯସ୍ମିନ୍ ତତ୍, ବହବୋ ବାହବ ଊରବଃ ପାଦାଶ୍ଚ ଯସ୍ମିଂସ୍ତତ୍, ବହୂନ୍ୟୁଦରାଣି ଯସ୍ମିଂସ୍ତତ୍, ବହୁଭିର୍ଦଂଷ୍ଟ୍ରାଭିଃ କରାଳଂ ବିକୃତଂ ରୌଦ୍ରମିତ୍ୟର୍ଥଃ ।

ପଦବ୍ୟାଖ୍ୟା ।

ରୂପଂ—ରୂପକୁ, ମହତ୍—ବିଶାଳ, ତେ—ଆପଣଙ୍କର, ବହୁବକ୍ତ୍ରନେତ୍ରଂ—ଅସଂଖ୍ୟ ମୁଖ ଓ ଅସଂଖ୍ୟ ଚକ୍ଷୁବିଶିଷ୍ଟ, ମହାବାହୋ—ହେ ଆଜାନୁଲମ୍ବିତ ଭୁଜ !; ବହୁବାହୂରୁପାଦଂ—ବହୁତ ଭୁଜ ଊରୁ ଓ ପାଦବିଶିଷ୍ଟ, ବହୂଦରଂ—ଅନେକ ଉଦରଯୁକ୍ତ, ବହୁଦଂଷ୍ଟ୍ରାକରାଳଂ—ଅସଂଖ୍ୟ ତୀକ୍ଷ୍ଣ ଦନ୍ତ ଥିବାରୁ ଭୟଙ୍କର, ଦୃଷ୍ଟ୍ୱା—ଦେଖି, ଲୋକାଃ—ପ୍ରାଣିମାନେ, ପ୍ରବ୍ୟଥିତାଃ—ଅତ୍ୟନ୍ତ ଭୟରୁ ଦୁଃଖିତ ଓ କମ୍ପିତ, ତଥା ଅହଂ—ସେହିପରି ମୁଁ ମଧ୍ୟ । ୨୩ ।

ଅନୁବାଦ ।

ହେ ମହାବାହୋ ! ଲୋକମାନେ ଆପଣଙ୍କର ବହୁ ମୁଖ, ବହୁନେତ୍ର ଓ ବହୁ ଉଦରଯୁକ୍ତ, ଅନେକ ଉରୁ ଓ ଚରଣବିଶିଷ୍ଟ ଏବଂ ବହୁ ସୁତୀକ୍ଷ୍ଣ ଦନ୍ତ ଥିବାରୁ ଭୟାନକ ବିଶାଳରୂପ ଦେଖି ଭୀତ ହେଉଅଛନ୍ତି ଏବଂ ମୁଁ ମଧ୍ୟ ସେହିପରି ଭୀତ ହେଉଅଛି । ୨୩ ।

ବିଶଦବ୍ୟାଖ୍ୟା ।

ଅର୍ଜୁନ କହୁଅଛନ୍ତି, ହେ ମହାବାହୋ ! ଆପଣଙ୍କର ଏ ବିଶ୍ୱରୂପ ଅତି ବୃହତ୍, ପୁଣି ସେଥିରେ ବହୁତ ମୁଖ, ଅନେକ ନେତ୍ର, ଅସଂଖ୍ୟ ଉଦର, ସଂଖ୍ୟାତୀତ ଉରୁ ଓ ଚରଣଅଛି । ଏବଂ ବହୁ ସୁତୀକ୍ଷ୍ଣ ଦୀର୍ଘ ଦନ୍ତରାଜି ଥିବାରୁ, ସେ ରୂପ, ଅତି ଭୟାନକ ହୋଇଅଛି । ସମସ୍ତଲୋକ

Digitized by PPRACHIN, SOA

ସେ ରୂପକୁ ଦେଖି ସଂହାରମୂର୍ତ୍ତି ମନେ କରି ଭୀତ ହେଉଅଛନ୍ତି ଏବଂ ମୋହର ମଧ୍ୟ ଭୟ ହେଉଅଛି ।

ଏ ଶ୍ଳୋକରେ ଅର୍ଜ୍ଜୁନ ଲୋକେ ଭୀତ ହେଉଥିବାର ସ୍ପଷ୍ଟ ପ୍ରକାଶ କଲେ । ଅର୍ଜ୍ଜୁନଙ୍କର ଏପରି ଭୟ ହୋଇଅଛି, ଯେ ସେ ଲୋକେ, ଭଗବାନଙ୍କଠାରୁ ଦିବ୍ୟ ଚକ୍ଷୁ ଲାଭ କରିଥିବାରୁ ଏ ବିଶ୍ୱରୂପ ତାଙ୍କୁ ଦିଶୁଅଛି,—ଅଉ କାହାରିକୁ (ଦିବ୍ୟ ଚକ୍ଷୁ ଅଭାବରେ) ଦିଶୁ ନାହିଁ, ଏକଥାଟି ସେ ଭୁଲି ଯାଇ ଲୋକମାନେ ଭୟ ପାଉଥିବାର କହୁଅଛନ୍ତି, ଅଥବା ଐଶ୍ୱରିକ ଯୋଗର ମହିମା ଏହିପରି ବିଚିତ୍ର । ୨୩ ।

ଶ୍ଳୋକଃ ।

* ନଭଃସ୍ପୃଶଂ ଦୀପ୍ତମନେକବର୍ଣ୍ଣଂ, ବ୍ୟାତ୍ତାନନଂ ଦୀପ୍ତବିଶାଳନେତ୍ରଂ ।
ଦୃଷ୍ଟ୍ୱା ହି ତ୍ୱାଂ ପ୍ରବ୍ୟଥିତାନ୍ତରାତ୍ମା, ଧୃତିଂ ନ ବିନ୍ଦାମି ଶମଂ ଚ ବିଷ୍ଣୋ । ୨୪ ।

ଅନ୍ୱୟଃ ।

ହେ ବିଷ୍ଣୋ ! ନଭଃସ୍ପୃଶଂ, ଦୀପ୍ତଂ, ଅନେକବର୍ଣ୍ଣଂ, ବ୍ୟାତ୍ତାନନଂ ଦୀପ୍ତବିଶାଳନେତ୍ରଂ ତ୍ୱାଂ ଦୃଷ୍ଟ୍ୱା ପ୍ରବ୍ୟଥିତାନ୍ତରାତ୍ମା (ସନ୍) ଧୃତିଂ ଶମଂ ଚ ନ ବିନ୍ଦାମି । ୨୪ ।

ଟୀକା ।

ନ କେବଲଂ ଭୀତୋଽହମେତାବଦେବ, କିମ୍ପି ତୁ ନଭ ଇତି । ନଭଃ ସ୍ପୃଶତୀତି ନଭଃସ୍ପୃକ୍ ତଂ ଅନ୍ତରୀକ୍ଷବ୍ୟାପିନମିତ୍ୟର୍ଥଃ, ଦୀପ୍ତଂ ତେଜୋଯୁକ୍ତଂ, ଅନେକେ ବର୍ଣ୍ଣା ଯସ୍ୟ ତଂ ବ୍ୟାତ୍ତାନି ବିବୃତାନ୍ୟାନନାନି ଯସ୍ୟ ତଂ ଦୀପ୍ତାନି ବିଶାଲାନି ନେତ୍ରାଣି ଯସ୍ୟ ତଂ ଏବମ୍ଭୂତଂ ତୁ ତ୍ୱାଂ ଦୃଷ୍ଟ୍ୱା ପ୍ରବ୍ୟଥିତୋଽନ୍ତରାତ୍ମା ମନୋ ଯସ୍ୟ ସୋଽହଂ ଧୃତିଂ ଧୈର୍ଯ୍ୟମୁପଶମଂ ଚ ନ ଲଭେ । ୨୪ ।

ପଦବ୍ୟାଖ୍ୟା ।

ନଭଃସ୍ପୃଶଂ—ଗଗନସ୍ପର୍ଶୀ, ଦୀପ୍ତଂ—ତେଜସ୍ୱୀ, ଅନେକ ବର୍ଣ୍ଣଂ—ବହୁବର୍ଣ୍ଣବିଶିଷ୍ଟ, ବ୍ୟାତ୍ତାନନଂ—ପ୍ରସାରିତ ମୁଖ, ଦୀପ୍ତବିଶାଳନେତ୍ରଂ—ଉଜ୍ଜ୍ୱଳ ବୃହତ୍ ଚକ୍ଷୁ ବିଶିଷ୍ଟ, ଦୃଷ୍ଟ୍ୱା—ଦେଖି, ହି—ନିଶ୍ଚିତ, ତ୍ୱାଂ—ଆପଣଙ୍କୁ, ପ୍ରବ୍ୟଥିତାନ୍ତରାତ୍ମା—ବ୍ୟଥିତମନା ହୋଇ, ଧୃତିଂ—ଧୈର୍ଯ୍ୟକୁ, ନ ବିନ୍ଦାମି—ଲାଭ କରି ପାରୁ ନାହିଁ, ଶମଂ ଚ—ଶାନ୍ତିକୁ ମଧ୍ୟ, ବିଷ୍ଣୋ—ହେ ବିଶ୍ୱବ୍ୟାପକ ! । ୨୪ ।

ଅନୁବାଦ ।

ହେ ବିଷ୍ଣୋ ! ଆପଣଙ୍କୁ ଗଗନସ୍ପର୍ଶୀ, ତେଜସ୍ୱୀ, ନାନା ବର୍ଣ୍ଣବିଶିଷ୍ଟ, ପ୍ରସାରିତ ମୁଖ ଓ ଉଜ୍ଜ୍ୱଳ ବିଶାଳ ନେତ୍ରବିଶିଷ୍ଟ ଦେଖି, ବ୍ୟଥିତମନା ହୋଇ ମୁଁ ଧୈର୍ଯ୍ୟ ଓ ଶାନ୍ତି ଲାଭ କରି ପାରୁ ନାହିଁ । ୨୪ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ, ଯେ କେବଳ ଭୟ ପ୍ରାପ୍ତ ହୋଇଅଛନ୍ତି, ତାହା ନୁହେ । ସେ କହୁଅଛନ୍ତି, ହେ ବିଶ୍ୱରୂପଧାରି ବିଶ୍ୱବ୍ୟାପକ ! ଆପଣଙ୍କର ମୂର୍ତ୍ତି ଗଗନସ୍ପର୍ଶୀ, ପୁଣି ତାହା ଏପରି ଦୀପ୍ତିମନ୍ତ, ଯେ ମୋହର ଚକ୍ଷୁ, ତାହା ସହ୍ୟ କରି ପାରୁ ନାହିଁ । ଆପଣଙ୍କର ରୂପ ନାନା ପ୍ରକାର ବର୍ଣ୍ଣ-ଯୁକ୍ତ ଓ ଆପଣ ସମସ୍ତ ମୁଖମାନ ବିସ୍ତାରିତ କରିଅଛନ୍ତି, ଅର୍ଥାତ୍ 'ଆଁ' କରିଅଛନ୍ତି । ଆପଣ-

Digitized by PPRACHIN, SOA

ଙ୍କର ବଡ଼, ଓ ଉଜ୍ଜ୍ୱଳ ଅନେକ ନେତ୍ର ଅଛି, ଏ ସବୁ ଦେଖି ମୁଁ ଧୈର୍ଯ୍ୟଧାରଣ କରି ପାରୁ ନାହିଁ, ବା ଶାନ୍ତ ହୋଇ ରହି ପାରୁ ନାହିଁ, କାହିଁକି ନା ମୋହର ଅନ୍ତରାତ୍ମା—ମନ ବଡ଼ ବ୍ୟଥିତ ହେଉଅଛି । ୨୪ ।

ଶ୍ଳୋକଃ ।

* ଦଂଷ୍ଟ୍ରାକରାଳାନି ଚ ତେ ମୁଖାନି, ଦୃଷ୍ଟ୍ୱୈବ କାଳାନଳସନ୍ନିଭାନି ।
ଦିଶୋ ନ ଜାନେ ନ ଲଭେ ଚ ଶର୍ମ, ପ୍ରସୀଦ ଦେବେଶ ଜଗନ୍ନିବାସ । ୨୫ ।

ଅନ୍ୱୟଃ ।

ହେ ଦେବେଶ ! ଦଂଷ୍ଟ୍ରାକରାଳାନି ଚ କାଳାନଳସନ୍ନିଭାନି ତେ ମୁଖାନି ଏବ ଦୃଷ୍ଟ୍ୱା ଦିଶଃ ନ ଜାନେ ଚ ଶର୍ମ ନ ଲଭେ, (ଅତଃ) ହେ ଜଗନ୍ନିବାସ ! ପ୍ରସୀଦ । ୨୫ ।

ଟୀକା ।

ଦଂଷ୍ଟ୍ରେତି । ହେ ଦେବେଶ ! ତବ ମୁଖାନି ଦୃଷ୍ଟ୍ୱା ଭୟାବେଶେନ ଦିଶୋ ନ ଜାନାମି ଶର୍ମ ଚ ସୁଖଂ ନ ଲଭେ, ହେ ଜଗନ୍ନିବାସ ! ପ୍ରସନ୍ନୋଭବ, କୀଦୃଶାନି ମୁଖାନି ଦୃଷ୍ଟ୍ୱା ଦଂଷ୍ଟ୍ରାଭିଃ କରାଳାନି, କାଳାନଳଃ ପ୍ରଳୟାଗ୍ନି ସ୍ତତ୍ସଦୃଶାନି । ୨୫ ।

ପଦବ୍ୟାଖ୍ୟା ।

ଦଂଷ୍ଟ୍ରାକରାଳାନି ଚ—ତୀକ୍ଷ୍ଣଦନ୍ତ ହେତୁରୁ ଭୟଙ୍କର, ତେ ମୁଖାନି—ଆପଣଙ୍କର ମୁଖ ସବୁ, ଦୃଷ୍ଟ୍ୱା ଏବ—ଦେଖିବାମାତ୍ରକେ, କାଳାନଳସନ୍ନିଭାନି—ପ୍ରଳୟ କାଳର ଅଗ୍ନି ସଦୃଶ, ଦିଶଃ—ଦିଗମାନଙ୍କୁ, ନ ଜାନେ—ଜାଣି ପାରୁ ନାହିଁ ବା ଚିହ୍ନି ପାରୁ ନାହିଁ, ନ ଲଭେ—ପ୍ରାପ୍ତ ହେଉ ନାହିଁ, ଚ—ପୁଣି, ଶର୍ମ—ସୁଖ, ପ୍ରସୀଦ—ପ୍ରସନ୍ନ ହୁଅନ୍ତୁ, ଦେବେଶ—ହେ ଦେବେଶ୍ୱର !, ଜଗନ୍ନିବାସ—ହେ ଜଗତର ଆଧାର । ୨୫ । ।

ଅନୁବାଦ ।

ହେ ଦେବେଶ ! ଆପଣଙ୍କର, ତୀକ୍ଷ୍ଣଦନ୍ତ ହେତୁରୁ ଭୟଙ୍କର ଓ ପ୍ରଳୟାଗ୍ନି ସଦୃଶ ମୁଖ ମଣ୍ଡଳ ଦେଖି, ମୁଁ ଦିଗ ସବୁକୁ ଚିହ୍ନି ପାରୁ ନାହିଁ, କି (ମନର) ସୁଖ ଲାଭ କରି ପାରୁ ନାହିଁ । ଅତଏବ ହେ ଜଗନ୍ନିବାସ ! (ଆପଣ) ପ୍ରସନ୍ନ ହୁଅନ୍ତୁ । ୨୫ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ କହୁଅଛନ୍ତି, ହେ ଦେବଦେବ ! ମୁଁ ମନେ କରିଥିଲି, ଯେ ଆପଣଙ୍କର ଅଲୌକିକ ବିଶ୍ୱରୂପ ଦର୍ଶନ କରି ପରମ ସୁଖ ଲାଭ କରିବି, ମାତ୍ର ମୋହର ଦୁର୍ଭାଗ୍ୟ, ଯେ ଆପଣ, ଯେଉଁ ରୂପ ଧାରଣ କରିଅଛନ୍ତି, ତାହା ଅତି ଭୟଙ୍କର । କାହିଁକି ନା ତାହା ବଡ଼, ତୀକ୍ଷ୍ଣ ଦନ୍ତଯୁକ୍ତ ଓ ପ୍ରଳୟ କାଳର ଅଗ୍ନି ସଦୃଶ ଦୀପ୍ତିମାନ୍ ମୁଖମଣ୍ଡଳରେ ଶୋଭିତ ହୋଇ-ଅଛି । ସେ ରୂପ ଦର୍ଶନରେ ମୋହର ଦିଗ ଭ୍ରମ ହେଉଅଛି, ଅର୍ଥାତ୍ କେଉଁ ଆଡ଼େ ପୂର୍ବ କେଉଁ ଆଡ଼େ ପଶ୍ଚିମ ତାହା ମୁଁ ଠିକଣା କରି ପାରୁ ନାହିଁ । ଦିଗ ଚିହ୍ନିବାର ପ୍ରଧାନ ଚିହ୍ନ ଚନ୍ଦ୍ର ସୂର୍ଯ୍ୟ । ମାତ୍ର ଆପଣଙ୍କର ବହୁ ମୁଖରେ ବହୁ ଚନ୍ଦ୍ର ଓ ବହୁ ସୂର୍ଯ୍ୟ ବିରାଜିତ ଥିବାରୁ ସହଜରେ ଦିଗ ଭ୍ରମ ହେଉଅଛି । ଏହି ସବୁ କାରଣରୁ ମୋହ ମନରେ ଉଦ୍‌ବେଗ, ଭୟ ଓ

Digitized by PPRACHIN, SOA

ଗୃହିତଲ୍ଧ ଜନ୍ମିବାରୁ ମୋହର ସମସ୍ତ ସୁଖ ବିନଷ୍ଟ ହେଉଅଛୁ, ଅତଏବ ହେ ଜଗନ୍ନିବାସ ! ଆପଣ ପ୍ରସନ୍ନ ହୋଇ ଏ ବିଶ୍ୱରୂପ ସଂହରଣ କରନ୍ତୁ । ୨୫ ।

ଶ୍ଳୋକଃ ।

* ଅମୀ ଚ ତ୍ୱାଂ ଧୃତରାଷ୍ଟ୍ରସ୍ୟ ପୁତ୍ରାଃ, ସର୍ବ୍ବୈଃ ସହୈବାବନିପାଲସଂଘୈଃ ।
ଭୀଷ୍ମୋଦ୍ରୋଣଃ ସୂତପୁତ୍ରସ୍ତଥାସୌ, ସହାସ୍ମଦୀୟୈରପି ଯୋଧମୁଖ୍ୟୈଃ । ୨୬ ।

ଅନ୍ୱୟଃ ।

ଅମୀ ଧୃତରାଷ୍ଟ୍ରସ୍ୟ ପୁତ୍ରାଃ, ଭୀଷ୍ମଃ, ଦ୍ରୋଣଃ, ତଥା ଅସୌ ସୂତପୁତ୍ରଃ, ସର୍ବ୍ବୈଃ ଅବନିପାଳସଂଘୈଃ ସହ, ଅପି ଅସ୍ମଦୀୟୈଃ ଯୋଧ ମୁଖ୍ୟୈଃ ସହ ତ୍ୱାଂ (ବିଶନ୍ତି) । ୨୭ ।

ଟୀକା ।

ଯଚାନ୍ୟଦ୍‌ଦ୍ରଷ୍ଟୁମିଚ୍ଛସୀତ୍ୟନେନାର୍ଜ୍ଜୁନ୍ ସଂଗ୍ରାମେ ଭବ ଜୟପରାଜୟାଦିକଂ ମମ ଦେହେ ପଶ୍ୟେତି ଯଦ୍‌ଭଗବତୋକ୍ତଂ ତଦଦାନୀଂ ପଶ୍ୟନ୍ନାହ, ଅମୀ ଚେତି ପଞ୍ଚଭିଃ । ଅମୀ ଧୃତରାଷ୍ଟ୍ରସ୍ୟ ପୁତ୍ରାଃ ଦୁର୍ଯ୍ୟୋଧନାଦୟଃ ସର୍ବୈଃବନିପାଳାନାଂ ଜୟଦ୍ରଥାଦୀନାଂ ସଙ୍ଘଂ ସଂଘୈଃ ସମୂହୈଃ ସହୈବ ତବ ବକ୍ତ୍ରାଣି ଦଂଷ୍ଟ୍ରାଚୂର୍ଣ୍ଣିତରେଣାଦ୍ୟଃ, ତଥା ଭୀଷ୍ମଶ୍ଚ ଦ୍ରୋଣଶ୍ଚାସୌ ସୂତପୁତ୍ରଶ୍ଚ କର୍ଣ୍ଣଃ ନ କେବଳଂ ତ ଏବ ବିଶନ୍ତି ଅପି ତୁ ପ୍ରତଯୋଦ୍ଧାବୋଽସ୍ମଦୀୟା ଯେ ଯୋଧମୁଖ୍ୟାଃ ଶିଖଣ୍ଡି-ଧୃଷ୍ଟଦ୍ୟୁମ୍ନାଦିପ୍ରଭୃତୈଃ ସହ । ୨୭ ।

ପଦବ୍ୟାଖ୍ୟା ।

ଅମୀ ଚ—ଏହି, ତ୍ୱାଂ—ଆପଣଙ୍କୁ, ଧୃତରାଷ୍ଟ୍ରସ୍ୟ ପୁତ୍ରାଃ—ଧୃତରାଷ୍ଟ୍ରଙ୍କ ପୁତ୍ର ଦୁର୍ଯ୍ୟୋଧନାଦମାନେ, ସର୍ବେ—ସମସ୍ତ, ସହ ଏବ—ସହିତ, ଅବନିପାଳସଂଘୈଃ—ରାଜାମାନଙ୍କ, ଭୀଷ୍ମଃ—ଗଙ୍ଗାପୁତ୍ର—ପ୍ରସିଦ୍ଧ ବୀର, ଦ୍ରୋଣଃ—ଧନୁର୍ବ୍ବିଦ୍ୟା ଗୁରୁ, ସୂତପୁତ୍ରଃ—କର୍ଣ୍ଣ, ତଥା ଅସୌ—ସେହିପରି ଏହି, ସହ—ସହିତ, ଅସ୍ମଦୀୟୈଃ—ଆମ୍ଭମାନଙ୍କ ପକ୍ଷୀୟ, ଅପି—ମଧ୍ୟ, ଯୋଧମୁଖ୍ୟୈଃ—ପ୍ରଧାନ ବୀର । ୨୭ ।

ଅନୁବାଦ ।

ରାଜାମାନଙ୍କ ସହିତ ଧୃତରାଷ୍ଟ୍ରଙ୍କର ଏହି ସମସ୍ତ ପୁତ୍ରମାନେ ଓ ଆମ୍ଭ ପକ୍ଷୀୟ ପ୍ରଧାନ ବୀରଙ୍କ ସହିତ ଭୀଷ୍ମ, ଦ୍ରୋଣ ଓ କର୍ଣ୍ଣ ( ଏମାନେ ସମସ୍ତେ ) ଆପଣଙ୍କଠାରେ ପ୍ରବେଶ କରୁଅଛନ୍ତି । ୨୬ ।

ଭଣବବ୍ୟାଖ୍ୟା ।

ଭଗବାନ୍ ଏହି ଅଧ୍ୟାୟର ୭ମ ଶ୍ଳୋକରେ ଅର୍ଜ୍ଜୁନଙ୍କୁ କହିଥିଲେ, ଯେ ଆମ୍ଭର ବିଶ୍ୱରୂପରେ ସଚରାଚର ଜଗତ୍ ଏକାଂଶରେ ସ୍ଥିତ ହୋଇଥିବାର ଦେଖ ଏବଂ ଆଉ ଯାହା ତୁ ଦେଖିବାକୁ ଇଚ୍ଛା କରୁଅଛୁ, ତାହା ମଧ୍ୟ ଦେଖ । ଅର୍ଜ୍ଜୁନ ଏ ଯୁଦ୍ଧରେ କାହାର ଜୟ ହେବ ଓ କାହାର ପରାଜୟ ହେବ, ତାହା ଜାଣିବାକୁ ଇଚ୍ଛା କରିଥିଲେ; ସେ, ବିଶ୍ୱରୂପରେ ତାହା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ କହୁଅଛନ୍ତି, ହେ ଭଗବନ୍ ! ଧୃତରାଷ୍ଟ୍ରଙ୍କର ଏହି ସମସ୍ତ ପୁତ୍ରମାନେ (ଅର୍ଥାତ୍ ଧୃତରାଷ୍ଟ୍ରଙ୍କର ବୈଶ୍ୟାଗର୍ଭଜାତ ଯୁଯୁତ୍ସୁ ନାମକ ପୁତ୍ର ଭିନ୍ନ, ବ୍ୟାସଙ୍କ ବରରେ ଗାନ୍ଧାରି ଗର୍ଭରୁ କୁଷ୍ମାଣ୍ଡାକୃତି ଏକ ଚର୍ମ ମୁଣ୍ଡାରୁ ଦୁର୍ଯ୍ୟୋଧନାଦି ଯେଉଁ ଶତପୁତ୍ର

Digitized by PPRACHIN, SOA

ଜନ୍ମିଥିଲେ, ସେମାନେ) ଓ ଯୁଦ୍ଧ ନିମିତ୍ତ ସମାଗତ ରାଜନ୍ୟମଣ୍ଡଳୀ ଏବଂ ଭୀଷ୍ମ ଦ୍ରୋଣ ଓ କର୍ଣ୍ଣ ଏବଂ ଅସ୍ମ ପକ୍ଷୀୟ ପ୍ରଧାନ ବୀରମାନେ, ଏ ସମସ୍ତେ, ଆପଣଙ୍କଠାରେ ପ୍ରବେଶ କରୁଅଛନ୍ତି, ଅର୍ଥାତ୍ ତୀକ୍ଷ୍ଣ ଦନ୍ତ ହେତୁରୁ ଅତି ଭୟାନକ ଆପଣଙ୍କର, ଯେଉଁ ମୁଖଗହ୍ୱର, ତହିଁରେ ପଶି ଯାଉଅଛନ୍ତି । ୨୬ ।

ଶ୍ଳୋକଃ ।

* ବକ୍ତ୍ରାଣି ତେ ତ୍ୱରମାଣା ବିଶନ୍ତି, ଦଂଷ୍ଟ୍ରାକରାଳାନି ଭୟାନକାନି ।
କେଚିଦ୍ୱିଲଗ୍ନା ଦଶନାନ୍ତରେଷୁ, ସନ୍ଦୃଶ୍ୟନ୍ତେ ଚୂର୍ଣ୍ଣିତୈରୁତ୍ତମାଙ୍ଗୈଃ । ୨୭ ।

ଅନ୍ୱୟଃ ।

(ତେ) ତ୍ୱରମାଣାଃ ଦଂଷ୍ଟ୍ରାକରାଳାନି ଭୟାନକାନି ତେ ବକ୍ତ୍ରାଣି ବିଶନ୍ତି । ଚୂର୍ଣ୍ଣିତୈଃ ଉତ୍ତମାଙ୍ଗୈଃ କେଚିତ୍ ଦଶନାନ୍ତରେଷୁ ବିଲଗ୍ନାଃ ସନ୍ଦୃଶ୍ୟନ୍ତେ । ୨୭ ।

ଟୀକା ।

ବକ୍ତ୍ରାଣୀତି । ଏତେ ସର୍ବେ ତ୍ୱରମାଣା ଧାବନ୍ତସ୍ତବ ଦଂଷ୍ଟ୍ରାଭିଃ ବିକୃତାନି କରାଳାନି ଭୟଙ୍କରାଣି ବକ୍ତ୍ରାଣି ବିଶନ୍ତି, ତେଷାଂ ମଧ୍ୟେ କେଚିତ୍ ଚୂର୍ଣ୍ଣିତୈରୁତ୍ତମାଙ୍ଗୈଃ ଶିରୋଭିରୁପଲକ୍ଷିତା ଦନ୍ତସନ୍ଧିଷୁ ସଂଶ୍ଳିଷ୍ଟାଃ ସନ୍ଦୃଶ୍ୟନ୍ତେ । ୨୭ ।

ପଦବ୍ୟାଖ୍ୟା ।

ବକ୍ତ୍ରାଣି—ମୁଖମାନଙ୍କୁ, ତେ—ଆପଣଙ୍କର, ତ୍ୱରମାଣାଃ—ଉଦ୍‌ବେଗଯୁକ୍ତ ହୋଇ, ବିଶନ୍ତି—ପ୍ରବେଶ କରୁଅଛନ୍ତି, ଦଂଷ୍ଟ୍ରାକରାଳାନି—ବୃହତ୍ ଦନ୍ତ ଥିବାରୁ ବିକଟ, ଭୟାନକାନି—ଭୟଙ୍କର, କେଚିତ୍—କେହି୨, ବିଲଗ୍ନାଃ—ଲାଗି ରହିଅଛନ୍ତି, ଦଶନାନ୍ତରେଷୁ—ଦନ୍ତସନ୍ଧିମାନଙ୍କରେ, ସନ୍ଦୃଶ୍ୟନ୍ତେ—ଦେଖା ଯାଉଅଛନ୍ତି, ଚୂର୍ଣ୍ଣିତୈଃ—ଖଣ୍ଡ୨, ଉତ୍ତମାଙ୍ଗୈଃ—ମସ୍ତକଦ୍ୱାରା । ୨୭ ।

ଅନୁବାଦ ।

( ସେମାନେ ) ବେଗଯୁକ୍ତ ହୋଇ ଆପଣଙ୍କ ବୃହଦ୍‌ଦନ୍ତବିକଟାଳ ଭୟଙ୍କର ମୁଖ ମଧ୍ୟରେ ପ୍ରବେଶ କରୁଅଛନ୍ତି । (ସେମାନଙ୍କ ମଧ୍ୟରୁ) କେହି୨ ( ଆପଣଙ୍କ ) ଦାନ୍ତସନ୍ଧିରେ ଲାଗି ରହିଅଛନ୍ତି ଓ ସେମାନଙ୍କର ମସ୍ତକ ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ଯାଉଥିବାର ଦେଖା ଯାଉ-ଅଛି । ୨୭ ।

ବିଷଦବ୍ୟାଖ୍ୟା ।

ସେହି ଧୃତରାଷ୍ଟ୍ରତନୟ ଓ ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଏବଂ ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନାଦିମାନେ ଆପଣଙ୍କ ମୁଖ-ଗହ୍ୱର ମଧ୍ୟରେ ପ୍ରବେଶ କରୁଅଛନ୍ତି । ସେ ମୁଖ-ଗହ୍ୱର ଅତି ଭୟଙ୍କର, କାହିଁକି ନା, ବଡ଼୨ ତୀକ୍ଷ୍ଣ ଦନ୍ତ ଯୋଗେ, ତାହା ଅତି ବିକଟ ହୋଇଅଛି ।

ଯେଉଁମାନେ, ଆପଣଙ୍କ ମୁଖଗହ୍ୱର ମଧ୍ୟରେ ପ୍ରବେଶ କରୁଅଛନ୍ତି, ସେମାନଙ୍କ ମଧ୍ୟରୁ କେହି୨ ଆପଣଙ୍କ ଦନ୍ତ-ସନ୍ଧିରେ ଲାଗି ରହିଅଛନ୍ତି, ପୁଣି ସେମାନଙ୍କର ମସ୍ତକ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ ଯାଉଥିବାର ଅର୍ଥାତ୍ ବିଶାଳ ଦନ୍ତାଘାତରେ ପେଶି ହୋଇ ଯାଉଥିବାର ଦେଖା ଯାଉଅଛି । ୨୭ ।

Digitized by PPRACHIN, SOA

ଶ୍ଳୋକଃ ।

* ଯଥା ନଦୀନାଂ ବହବୋଽମ୍ବୁବେଗାଃ, ସମୁଦ୍ରମେବାଭିମୁଖା ଦ୍ରବନ୍ତି ।
ତଥା ତବାମୀ ନରଲୋକବୀରା, ବିଶନ୍ତି ବକ୍ତ୍ରାଣ୍ୟଭିତୋ ଜ୍ୱଳନ୍ତି । ୨୮ ।

ଅନ୍ୱୟଃ ।

ଯଥା ନଦୀନାଂ ବହବଃ ଅମ୍ବୁବେଗାଃ ସମୁଦ୍ରଂ ଏବ ଅଭିମୁଖାଃ ଦ୍ରବନ୍ତି, ତଥା ଅମୀ ନରଲୋକବୀରାଃ ଅଭିତୋ ଜ୍ୱଳନ୍ତି ତବ ବକ୍ତ୍ରାଣି ବିଶନ୍ତି । ୨୮ ।

ଟୀକା ।

ପ୍ରବେଶନେ ଦୃଷ୍ଟାନ୍ତମାହ, ଯଥେତି । ନଦୀନାମନେକମାର୍ଗପ୍ରବୃତ୍ତାନାଂ ବହବୋଽମ୍ବୁନାଂ ବାରିଣାଂ ବେଗାଃ ପ୍ରବାହାଃ ସମୁଦ୍ରାଭିମୁଖାଃ ସନ୍ତୋ ଯଥା ସମୁଦ୍ରମେବ ବିଶନ୍ତି, ତଥା ଅମୀ ଯେ ନରଲୋକବୀରାସ୍ତେଽଭିତୋ ଜ୍ୱଳନ୍ତି ସର୍ବତଃ ପ୍ରଦୀପ୍ୟମାନାନି ତବ ବକ୍ତ୍ରାଣି ପ୍ରବିଶନ୍ତି । ୨୮ ।

ପଦବ୍ୟାଖ୍ୟା ।

ଯଥା—ଯେପରି, ନଦୀନାଂ—ନଈମାନଙ୍କର, ବହବଃ ଅମ୍ବୁବେଗାଃ—ଅସଂଖ୍ୟ ଜଳପ୍ରବାହ, ସମୁଦ୍ରଂ ଏବ—ସମୁଦ୍ର ଅଭିକୁ କେବଳ, ଅଭିମୁଖାଃ—ମୁଖ କରି, ଦ୍ରବନ୍ତି—ପ୍ରବାହିତ ହୁଅନ୍ତି; ତଥା—ସେହିପରି, ତବ—ଆପଣଙ୍କର, ଅମୀ—ଏହି, ନରଲୋକବୀରାଃ—ପୃଥିବୀସ୍ଥିତ ବୀରମାନେ, ବିଶନ୍ତି—ପ୍ରବେଶ କରୁଅଛନ୍ତି, ବକ୍ତ୍ରାଣି—ମୁଖମାନଙ୍କୁ, ଅଭିତଃ ଜ୍ୱଳନ୍ତି—ସର୍ବତ୍ର ପ୍ରକାଶିତ । ୨୮ ।

ଅନୁବାଦ ।

(ହେ ଭଗବନ୍ !) ଯେପରି, ନଦୀମାନଙ୍କର ବହୁଧା ପ୍ରବାହିତ ଜଳସମୂହ, ସମୁଦ୍ରାଭିମୁଖ ହୋଇ, (ତହିଁରେ) ପ୍ରବେଶ କରେ, ସେହିପରି, ମନୁଷ୍ୟଲୋକସ୍ଥିତ ଏହି ବୀରମାନେ ଆପଣଙ୍କର ସର୍ବତ୍ର ପ୍ରକାଶିତ ମୁଖ ମଧ୍ୟରେ ପ୍ରବେଶ କରୁଅଛନ୍ତି । ୨୮ ।

ବିଶଦବ୍ୟାଖ୍ୟା ।

ନଦୀମାନ ସମୁଦ୍ର ନିକଟରେ ପ୍ରାୟ ବହୁଧାରରେ ବିଭକ୍ତ ହୁଅନ୍ତି । ମାତ୍ର ପ୍ରତ୍ୟେକ ଧାରର, ସେହି ସମୁଦ୍ରାଭିମୁଖରେ ଗତି ହୁଏ ଓ ପ୍ରତ୍ୟେକ ଧାର ସମୁଦ୍ରରେ ପଡେ । ଅର୍ଜ୍ଜୁନ କହୁଅଛନ୍ତି, ହେ ଭଗବନ୍ ! ସେହିପରି ଏ ମର୍ତ୍ତ୍ୟଭୁବନସ୍ଥିତ ସମସ୍ତ ବୀର, ନାନାଦିଗରୁ ଆସି ଆପଣଙ୍କ ମୁଖଗହ୍ୱରରେ ଅନାୟତ୍ତ ହୋଇ ପ୍ରବେଶ କରୁଅଛନ୍ତି । ସବୁ ଦିଗରେ ଆପଣଙ୍କର ମୁଖ ପ୍ରକାଶ ଥିବାରୁ, ଯେ, ଯେଉଁ ଦିଗରୁ ଇଚ୍ଛା, ସେ ଦିଗରୁ ଆସିଲେହେଁ, ସେ ମୁଖଗହ୍ୱରରେ ପଶୁଅଛନ୍ତି । ୨୮ ।

ଶ୍ଳୋକଃ ।

* ଯଥା ପ୍ରଦୀପ୍ତଂ ଜ୍ୱଳନଂ ପତଙ୍ଗା, ବିଶନ୍ତି ନାଶାୟ ସମୃଦ୍ଧବେଗାଃ ।
ତଥୈବ ନାଶାୟ ବିଶନ୍ତି ଲୋକା, ସ୍ତବାପି ବକ୍ତ୍ରାଣି ସମୃଦ୍ଧବେଗାଃ । ୨୯ ।

Digitized by PPRACHIN, SOA

### ଅନ୍ୱୟଃ ।

ଯଥା ପତଙ୍ଗାଃ ନାଶାୟ ପ୍ରଦୀପ୍ତଂ ଜ୍ୱଳନଂ ସମୃଦ୍ଧବେଗାଃ ବିଶନ୍ତି, ତଥା ଲୋକାଃ ଅପି ନାଶାୟ ଏବ ସମୃଦ୍ଧ-ବେଗାଃ ତବ ବକ୍ତ୍ରାଣି ବିଶନ୍ତି । ୨୯ ।

### ଟୀକା ।

ଅବଶତ୍ୱେନ ପ୍ରବେଶେ ନଦୀବେଗଦୃଷ୍ଟାନ୍ତ ଉକ୍ତୋ ବୁଦ୍ଧିପୂର୍ବକପ୍ରବେଶେ ଦୃଷ୍ଟାନ୍ତମାହ, ଯଥେତି । ପ୍ରଦୀପ୍ତଂ ଜ୍ୱଳନ୍ତମଗ୍ନିଂ ପତଙ୍ଗାଃ ଶଲଭ ବୁଦ୍ଧିପୂର୍ବକଂ ସମୃଦ୍ଧୋବେଗୋଯେଷାଂ ତେ, ଯଥା ନାଶାୟ ମରଣାୟୈବ ବିଶନ୍ତି, ତଥୈବ ଲୋକା ଏତେ ଜନା ଅପି ଭବନ୍ମୁଖାନି ପ୍ରବିଶନ୍ତି । ୨୯ ।

### ପଦବ୍ୟାଖ୍ୟା ।

ଯଥା—ଯେପରି, ପ୍ରଦୀପ୍ତଂ—ଜ୍ୱଳନ୍ତ, ଜ୍ୱଳନଂ—ଅଗ୍ନି, ପତଙ୍ଗାଃ—ଶଲଭମାନେ, ବିଶନ୍ତି—ପ୍ରବେଶ କରନ୍ତି, ନାଶାୟ—ମରଣ ଲାଗି, ସମୃଦ୍ଧବେଗାଃ—ଅତି ବେଗରେ, ତଥା ଏବ—ସେହିପରି, ନାଶାୟ—ମରଣ ନିମିତ୍ତ, ବିଶନ୍ତି—ପ୍ରବେଶ କରୁଅଛନ୍ତି, ଲୋକାଃ—ଜନମାନେ, ତବ—ଆପଣଙ୍କର, ଅପି—ମଧ୍ୟ, ବକ୍ତ୍ରାଣି—ମୁଖମାନଙ୍କରେ ସମୃଦ୍ଧବେଗାଃ—ବର୍ଦ୍ଧିତ ବେଗ ହୋଇ । ୨୯ ।

### ଅନୁବାଦ ।

(ହେ ଭଗବନ୍ !) ଯେପରି ପତଙ୍ଗମାନେ, ମରଣ ଲାଗି ପ୍ରଜ୍ୱଳିତ ଅଗ୍ନିରେ ଅତିବେଗ-ରେ ଧାବିତ ହୋଇ ପ୍ରବେଶ କରନ୍ତି, ସେହିପରି, ଲୋକମାନେ ମଧ୍ୟ ବର୍ଦ୍ଧିତ ବେଗ ହୋଇ, କେବଳ ମରଣ ପାଇଁ, ଆପଣଙ୍କ ମୁଖରେ ପ୍ରବେଶ କରୁଅଛନ୍ତି । ୨୯ ।

### ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ, ନଦୀଜଳ ସମୁଦ୍ରରେ ପଶିବା କଥା ଉଦାହରଣ ଦିଆ ଯାଇଥିଲା, ମାତ୍ର ନଦୀଜଳ ଜଡ଼ ପଦାର୍ଥ ବୋଲି, ସଜୀବ ସଚେତନ ଜନ୍ତୁର ଉଦାହରଣ ଦେଇ ଏ ଶ୍ଳୋକ-ରେ ଅର୍ଜୁନ କହୁଅଛନ୍ତି, କି ହେ ଭଗବନ୍! ପତଙ୍ଗମାନେ ଜ୍ୱଳନ୍ତ ଅଗ୍ନିରେ ପଡ଼ିଲେ ମୃତ୍ୟୁ ନିଶ୍ଚୟ ହେବ, ଏହା ଜାଣି କରି ସୁଦ୍ଧା, ଯେପରି ଅତିବେଗରେ ତହିଁରେ ପଶନ୍ତି, ସେହିପରି, ଏ ଲୋକମାନେ ମଧ୍ୟ, କେବଳ ନିଜର ମରଣ ନିମିତ୍ତ ଅତି ଦ୍ରୁତବେଗରେ ଆପଣଙ୍କ ମୁଖ ମଧ୍ୟ-ରେ ପ୍ରବେଶ କରୁଅଛନ୍ତି । ୨୯ ।

### ଶ୍ଳୋକଃ ।

* ଲେଲିହ୍ୟସେ ଗ୍ରସମାନଃ ସମନ୍ତାତ୍, ଲୋକାନ୍ ସମଗ୍ରାନ୍ ବଦନୈର୍ଜ୍ୱଳଦ୍ଭିଃ ।
ତେଜୋଭିରାପୂର୍ଯ୍ୟ ଜଗତ୍ ସମଗ୍ରଂ, ଭାସସ୍ତବୋଗ୍ରାଃ ପ୍ରତପନ୍ତି ବିଷ୍ଣୋ । ୩୦ ।

### ଅନ୍ୱୟଃ ।

ହେ ବିଷ୍ଣୋ ! ଜ୍ୱଳଦ୍ଭିଃ ବଦନୈଃ ସମଗ୍ରାନ୍ ଲୋକାନ୍ ଗ୍ରସମାନଃ, (ଓଷ୍ଠପୁଟାଦିକଂ) ସମନ୍ତାତ୍ ଲେଲିହ୍ୟସେ, ତବ ଉଗ୍ରାଃ ଭାସଃ ତେଜୋଭିଃ ସମଗ୍ରଂ ଜଗତ୍ ଆପୂର୍ଯ୍ୟ ପ୍ରତପନ୍ତି । ୩୦ ।

### ଟୀକା ।

ତତଃ କିମତ ଆହ । ଲେଲିହ୍ୟସେ ଇତି । ଗ୍ରସମାନୋଽପି ତ୍ୱଂ ସମଗ୍ରାନ୍ ଲୋକାନ୍ ସର୍ବାନ୍ ଏତାନ୍ ଗ୍ରସିତ୍ୱା ସର୍ବତୋ

ଲେଲିହ୍ୟସେ ଗ୍ରସମାନେନ ଭକ୍ଷୟସି, ତୈଃ ଜ୍ୱଳଦ୍ଭିର୍ବଦନୈଃ କିଂ ହେ ବିଷ୍ଣୋ । ତବ ଭାସୋଗ୍ରାଃ ତେଜୋଭିର୍ବିସ୍ଫୁ-ରଣୈଃ ସମଗ୍ରଂ ଜଗତ୍ ବ୍ୟାପ୍ୟ ଗଭୀରାଃ ସତ୍ୟଃ ପ୍ରତପନ୍ତି ସନ୍ତାପୟନ୍ତି । ୩୦ ।

ପଦବ୍ୟାଖ୍ୟା ।

ଲେଲିହ୍ୟସେ—ବାରମ୍ବାର ଅସ୍ୱାଦନ କରୁଅଛନ୍ତି ଅର୍ଥାତ୍ (ରୁଧିରକ୍ତ ଓଷ୍ଠପୁଟକୁ) ଚାଟୁଅଛନ୍ତି, ଗ୍ରସମାନଃ—ଗ୍ରାସ କରି, ସମନ୍ତାତ୍—ସବୁ ଦିଗରେ, ଲୋକାନ୍ ସମଗ୍ରାନ୍—ସମସ୍ତ ଲୋକମାନଙ୍କୁ, ବଦନୈଃ—ମୁଖମାନଙ୍କଦ୍ୱାରା, ଜ୍ୱଳଦ୍ଭିଃ—ଜ୍ୱଳନ୍ତ, ତେଜୋଭିଃ—ତେଜଦ୍ୱାରା, ଆପୂର୍ଯ୍ୟ—ପୂର୍ଣ୍ଣ କରି—ବ୍ୟାପି କରି, ଜଗତ୍ ସମଗ୍ରଂ—ସମସ୍ତ ଜଗତକୁ, ଭାସଃ—ଦୀପ୍ତି ସବୁ, ତବ—ଆପଣଙ୍କର, ଉଗ୍ରାଃ—ତୀକ୍ଷ୍ଣ, ପ୍ରତପନ୍ତି—ସନ୍ତପ୍ତ କରୁଅଛନ୍ତି, ବିଷ୍ଣୋ—ହେ ସର୍ବବ୍ୟାପକ । । ୩୦ ।

ଅନୁବାଦ ।

ହେ ସର୍ବବ୍ୟାପକ ! ଆପଣ, ପ୍ରଜ୍ୱଳିତ (ଅଗ୍ନିତୁଲ୍ୟ) ବଦନଦ୍ୱାରା ସବୁ ଦିଗରେ ସମସ୍ତ ଲୋକଙ୍କୁ ଗ୍ରାସ କରି (ରୁଧିରକ୍ତ ଓଷ୍ଠପୁଟକୁ) ବାରମ୍ବାର ଲେହନ କରୁଅଛନ୍ତି । ଆପଣଙ୍କର ପ୍ରଖର ଦୀପ୍ତି ସବୁ, ଆପଣାର ତେଜଦ୍ୱାରା ସମସ୍ତ ଜଗତକୁ ପୂର୍ଣ୍ଣ କରି ସନ୍ତପ୍ତ କରୁଅଛି । ୩୦ ।

ବିଶଦବ୍ୟାଖ୍ୟା ।

ହେ ସର୍ବବ୍ୟାପକ ! ବୀରମାନେ, ଯେ କେବଳ ମରିବାକୁ ଆପଣା ଇଚ୍ଛାରେ ଆପଣଙ୍କ ମୁଖ ମଧ୍ୟରେ ପ୍ରବେଶ କରୁଅଛନ୍ତି, ତାହା ନୁହେ । ଆପଣ ମଧ୍ୟ, ସମସ୍ତ ଜଗତକୁ ଗ୍ରାସ କରିବାକୁ ଇଚ୍ଛୁକ । ଆପଣଙ୍କର ଗ୍ରାସଇଚ୍ଛାରୂପ ଆକର୍ଷଣ ବଳରେ, ଜୀବମାନେ ଚତୁର୍ଦ୍ଦିଗରୁ ଆପଣଙ୍କ ମୁଖ ମଧ୍ୟକୁ ଆସୁଅଛନ୍ତି, ଏବଂ ଆପଣ ପ୍ରଦୀପ୍ତ ମୁଖଦ୍ୱାରା ସେମାନଙ୍କୁ ଭକ୍ଷଣ କରୁ-ଅଛନ୍ତି, ଭକ୍ଷଣ କରିବାବେଳେ, ସେମାନଙ୍କ ଦେହରୁ ରକ୍ତ ବାହାରି ଆପଣଙ୍କର ଓଷ୍ଠାଦରେ ଲାଗିବାରୁ ଆପଣ, ତାହା ବାରମ୍ବାର ଚାଟୁଅଛନ୍ତି । ଅଥବା, ଆହୁରି ଅଧିକ ଲୋକ ଗ୍ରାସ କରିବା ଇଚ୍ଛାରେ ଅତୃପ୍ତିସୂଚକ ଓଷ୍ଠାବଲେହନ ପ୍ରକାଶ କରୁଅଛନ୍ତି । ଆପଣଙ୍କର ଏହି ସର୍ବ ସଂହାରିଣୀ ଉଗ୍ର ଦୀପ୍ତି ସବୁ, ତେଜରେ ଜଗତକୁ ବ୍ୟାପି ରହିଅଛି ଓ ସନ୍ତପ୍ତ କରୁଅଛି । । ୩୦ ।

ଶ୍ଳୋକଃ ।

ଓଁ ଆଖ୍ୟାହି ମେ କୋ ଭବାନୁଗ୍ରରୂପୋ, ନମୋଽସ୍ତୁ ତେ ଦେବବର ପ୍ରସୀଦ ।
ବିଜ୍ଞାତୁମିଚ୍ଛାମି ଭବନ୍ତମାଦ୍ୟଂ, ନ ହି ପ୍ରଜାନାମି ତବ ପ୍ରବୃତ୍ତିଂ । ୩୧ ।

ଅନ୍ୱୟଃ ।

ହେ ଦେବବର ! ଉଗ୍ରରୂପଃ ଭବାନ୍ କଃ (ଇତି) ମେ ଆଖ୍ୟାହି, ତେ ନମଃ ଅସ୍ତୁ (ତ୍ୱଂ) ପ୍ରସୀଦ । ଆଦ୍ୟଂ ଭବନ୍ତଂ ବିଜ୍ଞାତୁଂ ଇଚ୍ଛାମି, ହି ତବ ପ୍ରବୃତ୍ତିଂ ନ ପ୍ରଜାନାମି । ୩୧ ।

ଟୀକା ।

ଯତ ଏବ ତସ୍ମାତ୍ ଆଖ୍ୟାହୀତି । ଭବାନ୍ ଉଗ୍ରରୂପଃ କଃ ଇତ୍ୟାଖ୍ୟାହି କଥୟ, ତୁଭ୍ୟଂ ନମଃ ଅସ୍ତୁ, ହେ ଦେବବର ! ପ୍ରସୀଦ ପ୍ରସନ୍ନୋଭବ, ଭବନ୍ତମାଦ୍ୟଂ ପୁରୁଷଂ ବିଶେଷେଣ ଜ୍ଞାତୁମିଚ୍ଛାମି, ଯତସ୍ତବ ପ୍ରବୃତ୍ତିଂ ଚେଷ୍ଟାଂ କିମର୍ଥମେବଂ ପ୍ରବୃ-ତ୍ତୋଽସୀତି ନ ଜାନାମି, ଏବମୁକ୍ତସ୍ୟ ତବ ପ୍ରବୃତ୍ତିଂ ବାର୍ତ୍ତାମପି ନ ଜାନାମୀତି ବା । ୩୧ ।

### ପଦବ୍ୟାଖ୍ୟା ।

ଆଖ୍ୟାହି—କହିବା ହେଉନ୍ତୁ, ମେ—ମତେ କୋଭବାନ୍—ଆପଣ କିଏ ? ଉଗ୍ରରୂପଃ—ଉଗ୍ର ମୂର୍ତ୍ତିଧାରୀ, ନମୋଽସ୍ତୁତେ—ଆପଣଙ୍କୁ ନମସ୍କାର, ଦେବବର—ହେ ଦେବେଶ !, ପ୍ରସୀଦ—ପ୍ରସନ୍ନ ହେଉନ୍ତୁ, ବିଜ୍ଞାତୁଂ—ବିଶେଷ-ରୂପେ ଜାଣିବାକୁ, ଇଚ୍ଛାମି—ଇଚ୍ଛା କରୁଅଛି, ଭବନ୍ତଂ—ଆପଣଙ୍କୁ, ଆଦ୍ୟଂ—ସର୍ବ କାରଣସ୍ୱରୂପ, ନ ହି ପ୍ରଜାନାମି—ଯେହେତୁ ଜାଣେ ନାହିଁ, ତବ—ଆପଣଙ୍କର, ପ୍ରବୃତ୍ତିଂ—ଚେଷ୍ଟା ବା ବୃତ୍ତାନ୍ତ । ୩୧ ।

### ଅନୁବାଦ ।

ହେ ଦେବଶ୍ରେଷ୍ଠ ! ଏହି ଉଗ୍ରମୂର୍ତ୍ତିଧାରୀ ଆପଣ କିଏ ? (ଏହା) ମତେ କହିବା ହେଉନ୍ତୁ । ଆପଣଙ୍କୁ ନମସ୍କାର, (ଆପଣ) ପ୍ରସନ୍ନ ହେଉନ୍ତୁ । ସର୍ବକାରଣସ୍ୱରୂପ ଆପଣଙ୍କୁ ବିଶେଷରୂପେ (ମୁଁ) ଜାଣିବାକୁ ଇଚ୍ଛା କରୁଅଛି, ଯେହେତୁ, ଆପଣଙ୍କର ବୃତ୍ତାନ୍ତ (ମୁଁ) ଜାଣେ ନାହିଁ । ୩୧ ।

### ବିଶଦବ୍ୟାଖ୍ୟା ।

ହେ ଦେବଦେବ ! ଏହି ବିଶ୍ୱସଂହାରଣୀ ମୂର୍ତ୍ତି ଧାରଣକାରୀ ଆପଣ କିଏ ? କାଳାନ୍ତକ ଯମ, ସଂହାରକାରୀ ରୁଦ୍ର, କି ପ୍ରଳୟକାଳର ବୈଶ୍ୱାନର ଅଥବା ଆପଣ, ଆଉ କେହି ଅଟନ୍ତି ?– ତାହା ମତେ ବୁଝାଇ ଦେବା ହେଉନ୍ତୁ । ହେ ଭଗବନ୍ ବିଶ୍ୱବ୍ୟାପକ ! ଆପଣଙ୍କୁ ନମସ୍କାର କରୁଅଛି, ଆପଣ ଅନୁଗ୍ରହ କର, ପ୍ରସନ୍ନ ହେଉନ୍ତୁ ଅର୍ଥାତ୍ ଏ ଭୟାନକ କ୍ରୂର-ମୂର୍ତ୍ତି ତ୍ୟାଗ କରିବା ହେଉନ୍ତୁ । ଆପଣ, ସର୍ବକାରଣସ୍ୱରୂପ । ଆପଣଙ୍କୁ ବିଶେଷରୂପେ ଜାଣିବାକୁ ମୋହର ଇଚ୍ଛା ହେଉଅଛି । କାହିଁକି ନା ମୁଁ ଆପଣଙ୍କର ଅନୁଗ୍ରହପାତ୍ର, ପ୍ରିୟସଖା ଓ ଅନୁଗତ ଶିଷ୍ୟ ହେଲେ ମଧ୍ୟ, ଆପଣଙ୍କର ଏ ମୂର୍ତ୍ତି ଧାରଣ କରିବାର ବୃତ୍ତାନ୍ତ ବା ଚେଷ୍ଟା ଚରିତ୍ର, କିଛି ଜାଣେ ନାହିଁ, ଆପଣ ଅନୁଗ୍ରହ କରି ନ ବୁଝାଇଲେ, ନିଜ ବୁଦ୍ଧି ବିବେକଦ୍ୱାରା କି କେହି ଆପଣଙ୍କୁ ଚିହ୍ନି ପାରେ ? ଅତଏବ ପ୍ରସନ୍ନ ହୋଇ, ଏ ଭୟାନକ ମୂର୍ତ୍ତି ତ୍ୟାଗ କରି, ଆପଣ କିଏ, ତାହା ମତେ କହିବା ହେଉନ୍ତୁ । ୩୧ ।

### ଶ୍ଳୋକଃ ।

### ଶ୍ରୀଭଗବାନୁବାଚ ।

* କାଲୋଽସ୍ମି ଲୋକକ୍ଷୟକୃତ୍ ପ୍ରବୃଦ୍ଧୋ, ଲୋକାନ୍ ସମାହର୍ତ୍ତୁମିହ ପ୍ରବୃତ୍ତଃ ।
ଋତେଽପି ତ୍ୱାଂ ନ ଭବିଷ୍ୟନ୍ତି ସର୍ବେ, ଯେଽବସ୍ଥିତାଃ ପ୍ରତ୍ୟନୀକେଷୁ ଯୋଧାଃ । ୩୨ ।

### ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । (ଅହଂ) ଲୋକକ୍ଷୟକୃତ୍ ପ୍ରବୃଦ୍ଧଃ କାଲଃ ଅସ୍ମି, ଲୋକାନ୍ ସମାହର୍ତ୍ତୁଂ ଇହ ପ୍ରବୃତ୍ତଃ । ପ୍ରତ୍ୟନୀକେଷୁ ଯେ ଯୋଧାଃ ଅବସ୍ଥିତାଃ (ତେ) ସର୍ବେ, ତ୍ୱାଂ ଋତେ ଅପି ନ ଭବିଷ୍ୟନ୍ତି । ୩୨ ।

### ଟୀକା ।

ଏବଂ ପ୍ରାର୍ଥିତଃ ସନ୍ ଶ୍ରୀଭଗବାନୁବାଚ । କାଲ ଇତି ତ୍ରିଭିଃ । ଲୋକାନାଂ କ୍ଷୟକର୍ତ୍ତା ପ୍ରବୃଦ୍ଧୋଽତ୍ୟୁଗ୍ରଃ କାଲୋଽସ୍ମି । ଲୋକାନ୍ ପ୍ରାଣିନଃ ସଂହର୍ତ୍ତୁମିହ ଲୋକେ ପ୍ରବୃତ୍ତୋଽସ୍ମି, ଅତ ଋତେ ତ୍ୱାଂ ହନ୍ତାରଂ ବିନା ନ ଭବିଷ୍ୟନ୍ତି

ଜୀବିଷ୍ୟନ୍ତି, କେ ତେ? ପ୍ରତ୍ୟନୀକେଷୁ ଅନୀକାନି ଅନୀକାନି ପ୍ରତି, ଭୀଷ୍ମଦ୍ରୋଣାଦୀନାଂ ସର୍ବାସୁ ସେନାସୁ ଯେ ଯୋଦ୍ଧାରୋଽବସ୍ଥିତାସ୍ତେ ସର୍ବେଽପି । ୩୨ ।

## ପଦବ୍ୟାଖ୍ୟା ।

ଶ୍ରୀଭଗବାନୁବାଚ—ଶ୍ରୀଭଗବାନ୍ କହିଲେ, କାଲୋଽସ୍ମି—କାଳସ୍ୱରୂପ ଅଟଇଁ, ଲୋକକ୍ଷୟକୃତ୍—ସମସ୍ତ ପ୍ରାଣି-କ୍ଷୟକାରୀ, ପ୍ରବୃଦ୍ଧଃ—ଅତି ଉତ୍କଟ, ଲୋକାନ୍—ପ୍ରାଣିମାନଙ୍କୁ, ସମାହର୍ତ୍ତୁଂ—ସଂହାର କରିବାକୁ, ଇହ—ଏହି ପୃଥିବୀରେ, ପ୍ରବୃତ୍ତଃ—ଚେଷ୍ଟିତ, ଋତେଽପି ତ୍ୱାଂ—ତୁମ୍ଭ ବ୍ୟତିରେକେ ମଧ୍ୟ ଅର୍ଥାତ୍ ତୁମ୍ଭେ ଯୁଦ୍ଧ ନ କଲେ ସୁଦ୍ଧା, ନ ଭବିଷ୍ୟନ୍ତି—ରହିବେ ନାହିଁ, ସର୍ବେ—ସମସ୍ତେ, ଯେଽବସ୍ଥିତାଃ—ଯେଉଁମାନେ ଉପସ୍ଥିତ ଅଛନ୍ତି, ପ୍ରତ୍ୟନୀକେଷୁ—ବିପକ୍ଷ ସୈନ୍ୟମାନଙ୍କ ମଧ୍ୟରେ, ଯୋଧାଃ—ଯୋଦ୍ଧାମାନେ । ୩୨ ।

## ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ଅମ୍ଭେ ଲୋକକ୍ଷୟକାରୀ ଉତ୍କଟ କାଳସ୍ୱରୂପ । ଏହି ପୃଥିବୀରେ ପ୍ରାଣିମାନଙ୍କୁ ବିନାଶ କରିବାକୁ ପ୍ରବୃତ୍ତ ହୋଇଅଛୁଁ । ତୁମ୍ଭେ ଯୁଦ୍ଧ ନ କଲେ ସୁଦ୍ଧା, ବିପକ୍ଷ ସୈନ୍ୟ ମଧ୍ୟରେ ଅବସ୍ଥିତ ସମସ୍ତ ଯୋଦ୍ଧା (ଜୀବିତ) ରହିବେ ନାହିଁ ।

## ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ ଏପରି ପ୍ରାର୍ଥନା କରିବାରୁ, ଭକ୍ତବତ୍ସଳ ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ଯେଉଁ କାଳଦ୍ୱାରା ସମସ୍ତ ପ୍ରାଣୀ ବିନଷ୍ଟ ହୁଅନ୍ତି, ଅମ୍ଭେ ସେହି ଉତ୍କଟ କାଳସ୍ୱରୂପ ଅଟୁଁ । ଏହି ଯୁଦ୍ଧକ୍ଷେତ୍ରସ୍ଥିତ ପ୍ରାଣିମାନଙ୍କୁ ସଂହାର କରିବାକୁ ଅମ୍ଭେ ପ୍ରବୃତ୍ତ ହୋଇଅଛୁଁ । ସୁତରାଂ ତୁମ୍ଭେ ଯୁଦ୍ଧ ନ କଲେ ମଧ୍ୟ, ଅମ୍ଭେ ପ୍ରବୃତ୍ତ ହୋଇଥିବାରୁ ତୁମ୍ଭର ବିପକ୍ଷ ଦଳରେ ଥିବା ଭୀଷ୍ମ ଦ୍ରୋଣ ପ୍ରଭୃତି ସମସ୍ତ ବୀର ନଷ୍ଟ ହେବେ, କେହି ଜୀବିତ ରହିବେ ନାହିଁ ।

'ଯେବେ—ତୁମ୍ଭେ ଯୁଦ୍ଧ ନ କଲେ ମଧ୍ୟ, ଭୀଷ୍ମ ଦ୍ରୋଣାଦି କୌରବ ପକ୍ଷୀୟ ବୀରଙ୍କର ମୃତ୍ୟୁ ନିଶ୍ଚୟ ହେବ, ତେବେ, ତୁମ୍ଭେ ବଧ କଲେ ପାପ ହେବ, ଇତ୍ୟାଦି ଆଶଙ୍କା ବୃଥାରେ କାହିଁକି କରୁଅଛ ? । ଅତଏବ, ଯେଉଁ କାର୍ଯ୍ୟ କରିବାକୁ ଆସିଅଛ, ତାହା କର' ଶ୍ରୀଭଗବାନଙ୍କର ଏହି ଅଭିପ୍ରାୟ ଏ ଶ୍ଳୋକରୁ ପ୍ରକାଶିତ ହେଉଅଛି । ୩୨ ।

## ଶ୍ଳୋକଃ ।

* ତସ୍ମାତ୍ତ୍ୱମୁତ୍ତିଷ୍ଠ ଯଶୋ ଲଭସ୍ୱ, ଜିତ୍ୱା ଶତ୍ରୂନ୍ ଭୁଂକ୍ଷ୍ୱ ରାଜ୍ୟଂ ସମୃଦ୍ଧଂ ।
ମୟୈବୈତେ ନିହତାଃ ପୂର୍ବମେବ, ନିମିତ୍ତମାତ୍ରଂ ଭବ ସବ୍ୟସାଚିନ୍ ।୩୩।

## ଅନ୍ୱୟଃ ।

ହେ ସବ୍ୟସାଚିନ୍ ତସ୍ମାତ୍ ତ୍ୱଂ ଉତ୍ତିଷ୍ଠ, ଶତ୍ରୂନ୍ ଜିତ୍ୱା ସମୃଦ୍ଧଂ ରାଜ୍ୟଂ ଭୁଂକ୍ଷ୍ୱ, ଯଶଃ ଲଭସ୍ୱ ମୟା ଏବ ଏତେ ପୂର୍ବଂ ଏବ ନିହତାଃ (ତ୍ୱଂ) ନିମିତ୍ତମାତ୍ରଂ ଭବ । ୩୩ ।

## ଟୀକା ।

ତସ୍ମାଦିତି । ଯସ୍ମାଦେବଂ ତସ୍ମାତ୍ତ୍ୱଂ ଯୁଦ୍ଧାୟୋତ୍ତିଷ୍ଠ, ଦେବୈରପି ଦୁର୍ଜ୍ଜୟା ଭୀଷ୍ମାଦୟୋଽର୍ଜ୍ଜୁନେନ ନିର୍ଜ୍ଜିତା ଇତ୍ୟେବଂରୂପଂ ଯଶୋ ଲଭସ୍ୱ ପ୍ରାପ୍ନୁହି, ଅଯତ୍ନତଶ୍ଚ ଶତ୍ରୂନ୍ ଜିତ୍ୱା ସମୃଦ୍ଧଂ ରାଜ୍ୟଂ ଭୁଂକ୍ଷ୍ୱ, ଏତେ ଚ ତବ ଶତ୍ରବଃ ତ୍ୱଦ୍ୟୁଦ୍ଧାତ୍ ପୂର୍ବ-

ନେବଂ ମୟୈବ କାଲାତ୍ମନା ନିହତପ୍ରାୟାସ୍ତ୍ୱମପି ତ୍ୱଂ ନିମିତ୍ତମାତ୍ରଂ ଭବ, ହେ ସବ୍ୟସାଚନ୍ ସବ୍ୟେନ ବାମେନ ହସ୍ତେନ ସାତନ୍ଧୁଂ ଶରାନ ସନ୍ଧାତୁଂ ଶୀଳଂ ଯସ୍ୟେତି ବ୍ୟୁତ୍ପତ୍ତ୍ୟା ବାମେନାପି ବାଣକ୍ଷେପାତ୍ ସବ୍ୟସାଚୀତ୍ୟୁଚ୍ୟତେ । ୩୩ ।

## ପଦବ୍ୟାଖ୍ୟା ।

ତସ୍ମାତ୍—ସେହି ହେତୁରୁ, ତ୍ୱଂ—ତୁମ୍ଭେ, ଉତ୍ତିଷ୍ଠ—(ଯୁଦ୍ଧ ନିମିତ୍ତ) ଉଠ, ଯଶୋଲଭସ୍ୱ—ସୁଖ୍ୟାତି ଲାଭକର, ଜିତ୍ୱା—ଜୟ କରି, ଶତ୍ରୂନ୍—ଶତ୍ରୁମାନଙ୍କୁ, ଭୁଙ୍କ୍ଷ୍ୱ—ଭୋଗ କର, ରାଜ୍ୟଂ—ରାଜ୍ୟକୁ, ସମୃଦ୍ଧଂ—ସମୃଦ୍ଧିଶାଳୀ ବା ନିଷ୍କଣ୍ଟକ, ମୟୈବ—ଅମ୍ଭଦ୍ୱାରା, ଏତେ—ଏମାନେ, ନିହତାଃ—ହତପ୍ରାୟ ହୋଇଅଛନ୍ତି, ପୂର୍ବମେବ—ତୁମ୍ଭର ଯୁଦ୍ଧ କରିବା ପୂର୍ବରୁ, ନିମିତ୍ତମାତ୍ରଂ—କାରଣମାତ୍ର ବା ସାକ୍ଷୀସ୍ୱରୂପ, ଭବ—ହୁଅ, ସବ୍ୟସାଚନ୍—ହେ ସବ୍ୟସାଚନ୍! ଅର୍ଥାତ୍ ବାମହସ୍ତଦ୍ୱାରା ମଧ୍ୟ ଶରନିକ୍ଷେପ କରିବାକୁ ସମର୍ଥ । ୩୩ ।

## ଅନୁବାଦ ।

ଅତଏବ, ତୁମ୍ଭେ ଉଠ, ଶତ୍ରୁଙ୍କୁ ଜୟ କରି ନିଷ୍କଣ୍ଟକ ରାଜ୍ୟ ଭୋଗ କର ଓ ଯଶୋଲାଭ କର । ହେ ସବ୍ୟସାଚନ୍! ଏମାନଙ୍କୁ ଅମ୍ଭେ ପୂର୍ବରୁ ହତପ୍ରାୟ କରିଅଛୁଁ, ତୁମ୍ଭେ, କେବଳ ନିମିତ୍ତମାତ୍ର ହୁଅ । ୩୩ ।

## ବିଶଦବ୍ୟାଖ୍ୟା ।

ପୂର୍ବଶ୍ଲୋକରେ ଶ୍ରୀଭଗବାନ୍ କହିଥିଲେ, ହେ ଅର୍ଜ୍ଜୁନ! ତୁମ୍ଭେ ଯୁଦ୍ଧ ନ କଲେ ମଧ୍ୟ, ବିପକ୍ଷଦଳରେ ଥିବା ସମସ୍ତ ଯୋଦ୍ଧା ଜୀବିତ ରହିବେ ନାହିଁ । ଏ ଶ୍ଳୋକରେ କହୁଅଛନ୍ତି, ହେ ସବ୍ୟସାଚନ୍! ସେହି କାରଣରୁ, ଅର୍ଥାତ୍ ବିପକ୍ଷଦଳରେ ମୃତ୍ୟୁ ସୁନିଶ୍ଚିତ ଥିବାରୁ, ତୁମ୍ଭେ ଯୁଦ୍ଧ କରିବାକୁ ଉଠ । ଶତ୍ରୁମାନଙ୍କୁ ସହଜରେ ଜୟ କରି ନିଷ୍କଣ୍ଟକ ରାଜ୍ୟ ଭୋଗ କର ଏବଂ 'ଯେଉଁ ଭୀଷ୍ମ ଓ ଦ୍ରୋଣାଦିଙ୍କୁ ଦେବତାମାନେ ସୁଦ୍ଧା, ଜୟ କରି ପାରନ୍ତି ନାହିଁ, ତାହାଙ୍କୁ, ଅର୍ଜ୍ଜୁନ ଅନାୟାସରେ ଜୟ କଲେ । ଅତଏବ, ଅର୍ଜ୍ଜୁନ ମହା ବୀର ଅଟନ୍ତି' ଇତ୍ୟାଦି ପ୍ରକାରର ସୁଖ୍ୟାତି ଲାଭ କର । ତୁମ୍ଭେତ ଦେଖୁଅଛ, ଯେ ତୁମ୍ଭର ଯୁଦ୍ଧ କରିବା ପୂର୍ବରୁ ଅମ୍ଭେ, ଏମାନଙ୍କୁ ହତପ୍ରାୟ କରିଅଛୁଁ—ଅର୍ଥାତ୍ ଅମ୍ଭର ସଂହାରଣୀ ମୂର୍ତ୍ତିଦ୍ୱାରା ଏମାନଙ୍କର ସମସ୍ତ ଶକ୍ତି ଅପହୃତ ହୋଇଅଛି । ତୁମ୍ଭେ ଲୋକଦୃଷ୍ଟିରେ ସେମାନଙ୍କର ବଧଭାଗୀ ହେବ ସତ, କିନ୍ତୁ ପ୍ରକୃତରେ ସେମାନେ, ନିଜ ନିଜ କର୍ମଦୋଷରେ ସମସ୍ତ ଶକ୍ତି ହରାଇ ମୃତପ୍ରାୟ ହେଲେଣି, ଏପରି ସ୍ଥଳେ, ତାଙ୍କୁ ବଧ କରିବାରେ ତୁମ୍ଭର ପାପ ହେବାର ଆଶଙ୍କା ବୃଥାମାତ୍ର । ଅତଏବ, ଯୁଦ୍ଧ କରିବାକୁ ଉଚିତ ହୁଅ ।

ଅର୍ଜ୍ଜୁନ 'ସବ୍ୟ' ଅର୍ଥାତ୍ ବାମହସ୍ତରେ ମଧ୍ୟ, ଶରସନ୍ଧାନ କରିବାକୁ ସମର୍ଥ ବୋଲି, ଭଗବାନ୍ ତାଙ୍କୁ 'ସବ୍ୟସାଚନ୍' ସମ୍ବୋଧନ କଲେ, ଅର୍ଥାତ୍ ଯେ, ବାମ ଓ ଦକ୍ଷିଣ ଉଭୟ ହସ୍ତରେ ଶରସନ୍ଧାନ କରିପାରେ, ସେ, କେବଳ ଦକ୍ଷିଣହସ୍ତରେ ଶସ୍ତ୍ରପ୍ରୟୋଗକାରୀ ଭୀଷ୍ମାଦିଙ୍କୁ ସହଜରେ ଜୟ କରି ପାରିବ, ଏହା ସଙ୍କେତରେ ଅର୍ଜ୍ଜୁନଙ୍କୁ ସ୍ମରଣ କରାଇ ଦେଲେ ।୩୩।

### ଶ୍ଳୋକଃ ।

* ଦ୍ରୋଣଂ ଚ ଭୀଷ୍ମଂ ଚ ଜୟଦ୍ରଥଂ ଚ, କର୍ଣ୍ଣଂ ତଥାନ୍ୟାନପି ଯୋଧବୀରାନ୍ ।
ମୟା ହତାଂସ୍ତ୍ୱଂ ଜହି ମା ବ୍ୟଥିଷ୍ଠା, ଯୁଧ୍ୟସ୍ୱ ଜେତାସି ରଣେ ସପତ୍ନାନ୍ । ୩୪ ।

### ଅନ୍ୱୟଃ ।

ଦ୍ରୋଣଂ ଚ ଭୀଷ୍ମଂ ଜୟଦ୍ରଥଂ ଚ କର୍ଣ୍ଣଂ ତଥା ମୟା ହତାନ୍ ଅନ୍ୟାନ୍ ଅପି ଯୋଧବୀରାନ୍ ତ୍ୱଂ ଜହି, ମା ବ୍ୟଥିଷ୍ଠାଃ ରଣେ ସପତ୍ନାନ୍ ଜେତାସି, (ଅତଃ) ଯୁଧ୍ୟସ୍ୱ । ୩୪ ।

### ଟୀକା ।

ନ ଚୈତଦ୍‌ବିଦ୍ମଃ କତରନ୍ନୋ ଗରୀୟୋ ଯଦ୍ୱା ଜୟେମ ଯଦି ବା ନୋ ଜୟେୟୁଃ । ଇତ ଯା ଅଶଙ୍କା ସାପି ନ କାର୍ଯ୍ୟେ-ତ୍ୟାହ, ଦ୍ରୋଣମିତି । ଯେଭ୍ୟସ୍ତ୍ୱଂ ଶଙ୍କସେ ତାନ୍ ଦ୍ରୋଣାଦୀନ୍ ମୟୈବ ହତାନ୍ ତ୍ୱଂ ଜହି ଘାତୟ ମା ବ୍ୟଥିଷ୍ଠାଃ ଭୟଂ ମା-କାର୍ଷୀଃ ସପତ୍ନାନ୍ ଶତ୍ରୂନ୍ ରଣେ ଯୁଦ୍ଧେ ନିଶ୍ଚିତଂ ଜେତାସି ଜେଷ୍ୟସି । ୩୪ ।

### ପଦବ୍ୟାଖ୍ୟା ।

ଦ୍ରୋଣଂ ଚ—ଦ୍ରୋଣାଚାର୍ଯ୍ୟ, ଭୀଷ୍ମଂ ଚ—ପିତାମହ ଭୀଷ୍ମଦେବଙ୍କୁ, ଜୟଦ୍ରଥଂ ଚ—ଦୁର୍ଯ୍ୟୋଧନଙ୍କ ଭଗିନୀପତି ଜୟଦ୍ରଥ ନାମକ ରାଜାଙ୍କୁ, କର୍ଣ୍ଣଂ ଚ—ସୂତ-ପୁତ୍ର କର୍ଣ୍ଣ ରଥୀଙ୍କୁ, ତଥା ଅନ୍ୟାନ୍ ଅପି—ସେହିପରି, ଅନ୍ୟମାନଙ୍କୁ ମଧ୍ୟ, ଯୋଧବୀରାନ୍—ଯୋଦ୍ଧାମାନଙ୍କୁ, ମୟା ହତାନ୍—ଅସ୍ମଦ୍ୱାରା ହତପ୍ରାୟ, ତ୍ୱଂ—ତୁମ୍ଭେ, ଜହି—ବିନାଶ କର, ମା ବ୍ୟଥିଷ୍ଠାଃ—ବ୍ୟଥିତ—ଭୀତ ହୁଅ ନାହିଁ, ଯୁଧ୍ୟସ୍ୱ—ଯୁଦ୍ଧ କର, ଜେତାସି—ଜୟ କରିବ, ରଣେ—ଯୁଦ୍ଧରେ, ସପତ୍ନାନ୍—ଶତ୍ରୁମାନଙ୍କୁ । ୩୪ ।

### ଅନୁବାଦ ।

ଆମ୍ଭଦ୍ୱାରା ( ପୂର୍ବରୁ ) ହତପ୍ରାୟ ଦ୍ରୋଣ, ଭୀଷ୍ମ, ଜୟଦ୍ରଥ, କର୍ଣ୍ଣ ଏବଂ ଅନ୍ୟାନ୍ୟ ବୀର ଯୋଦ୍ଧାମାନଙ୍କୁ ତୁମ୍ଭେ ବଧ କର, ଭୟ କର ନାହିଁ । ଯୁଦ୍ଧରେ ଶତ୍ରୁମାନଙ୍କୁ (ନିଶ୍ଚୟ) ଜୟ କରିବ (ଅତଏବ) ଯୁଦ୍ଧ କର । ୩୪ ।

### ବିଶେଷବ୍ୟାଖ୍ୟା ।

ଦ୍ରୋଣାଚାର୍ଯ୍ୟ=ବ୍ରହ୍ମତେଜବିଶିଷ୍ଟ ଓ ଧନୁର୍ବେଦଶିକ୍ଷକ ; ଭୀଷ୍ମ=ପିତାମହ, ଇଚ୍ଛାମୃତ୍ୟୁ ଓ ଦିବ୍ୟାସ୍ତ୍ରସମ୍ପନ୍ନ ଏବଂ ପର୍ଶୁରାମଙ୍କ ସହିତ ଦ୍ୱନ୍ଦ୍ୱ ଯୁଦ୍ଧରେ ଯୁଦ୍ଧା, ଅପରାଜିତ ; ଜୟଦ୍ରଥ=ନିଜେ ମହାଯୋଦ୍ଧା, ଦିବ୍ୟାସ୍ତ୍ରଯୁକ୍ତ ଓ ଶିବଭକ୍ତ ଏବଂ ତାଙ୍କର ବୃଦ୍ଧପିତା 'କ୍ଷତ୍ର', ଏପରି ସଙ୍କଳ୍ପ କରି ତପସ୍ୟା କରୁଅଛନ୍ତି, କି ଯଦି କେହି ଜୟଦ୍ରଥଙ୍କର ଶିରଚ୍ଛେଦ କରି ଭୂମିରେ ନିକ୍ଷେପ କରିବ, ତେବେ,ତାହାର ଶିର ତତ୍‌କ୍ଷଣାତ୍ ଛିନ୍ନ ହେବ ; ପୁଣି କର୍ଣ୍ଣ=ଅକ୍ଷୟ କବଚ କୁଣ୍ଡଳଧାରୀ, ଏକଘ୍ନୀ ଶସ୍ତ୍ରସମ୍ପନ୍ନ, ସୂର୍ଯ୍ୟଙ୍କପରି ତେଜସ୍ୱୀ ଏବଂ ସୂର୍ଯ୍ୟାତ୍ମଜ ; ସେହିପରି କୃପାଚାର୍ଯ୍ୟ ଓ ଭୂରିଶ୍ରବା ଏବଂ ଅଶ୍ୱତ୍ଥାମାଦି ବୀରମାନେ, ଅମିତବଳ ଅଟନ୍ତି, ଏମାନଙ୍କୁ ଜୟ କରିବା କି ସହଜ କଥା ? କାଳେ, ଅର୍ଜ୍ଜୁନ ଏପରି ଅଶଙ୍କା କରିବେ, ସେଥିପାଁଇ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଏମାନେ ସମସ୍ତେ ପୂର୍ବରୁ ଆମ୍ଭଦ୍ୱାରା ହତପ୍ରାୟ ହୋଇଅଛନ୍ତି, ମୃତବତ୍ ବ୍ୟକ୍ତିକୁ ମାରିବାକୁ ଭୟ ବା ଭାବନା କରିବା ଆବଶ୍ୟକ ନାହିଁ । ଅତଏବ, ବୃଥାରେ ଭୀତ ବା ଚିନ୍ତିତ ହୁଅ ନାହିଁ । ଯୁଦ୍ଧ

Digitized by PPRACHIN, SOA

କରିବାକୁ ସଜ୍ଜିତ ହୋଇ ଅସିଅଛ, କାପୁରୁଷପରି ନିବୃତ୍ତ ହୁଅ ନା, ତୁମ୍ଭେ ନିଶ୍ଚୟ ଶତ୍ରୁମାନଙ୍କୁ ଜୟ କରିବ, ଅତଏବ ଯୁଦ୍ଧ କର । ୩୪ ।

### ଶ୍ଲୋକଃ ।

ସଞ୍ଜୟ ଉବାଚ ।—ଏତଚ୍ଛ୍ରୁତ୍ୱା ବଚନଂ କେଶବସ୍ୟ, କୃତାଞ୍ଜଳିର୍ବେପମାନଃ କିରୀଟୀ ।
ନମସ୍କୃତ୍ୟ ଭୂୟ ଏବାହ କୃଷ୍ଣଂ, ସଗଦ୍ଗଦଂ ଭୀତଭୀତଃ ପ୍ରଣମ୍ୟ । ୩୫ ।

### ଅନ୍ୱୟଃ ।

ସଞ୍ଜୟଃ ଉବାଚ । କିରୀଟୀ କେଶବସ୍ୟ ଏତତ୍ ବଚନଂ ଶ୍ରୁତ୍ୱା ବେପମାନଃ କୃତାଞ୍ଜଳିଃ (ସନ୍) ନମସ୍କୃତ୍ୟ ଭୂୟଃ ଏବ ଭୀତଭୀତଃ ସଗଦ୍ଗଦଂ ପ୍ରଣମ୍ୟ କୃଷ୍ଣଂ ଆହ । ୩୫ ।

### ଟୀକା ।

ତତୋଽପ୍ୟନନ୍ତରଂ ତଦେବ ଧୃତରାଷ୍ଟ୍ରଂ ପ୍ରତି ସଞ୍ଜୟଃ ଉବାଚ । ଏତଦିତି । ଏତତ୍ ପୂର୍ବୋକ୍ତଶ୍ଲୋକତ୍ରୟାତ୍ମକଂ କେଶବସ୍ୟ ବଚନଂ ଶ୍ରୁତ୍ୱା ବେପମାନଃ କମ୍ପମାନଃ କିରୀଟୀ ଅର୍ଜ୍ଜୁନଃ କୃତାଞ୍ଜଳିଃ ସମ୍ପୁଟୀକୃତହସ୍ତଃ କୃଷ୍ଣଂ ନମସ୍କୃତ୍ୟ ପୁନରପ୍ୟାହ ଉକ୍ତବାନ୍, କଥମାହ ଭୟହର୍ଷାଦ୍ୟାବେଶବଶାତ୍ ଗଦ୍‌ଗଦେନ କଣ୍ଠକମ୍ପେନ ସହ ବର୍ତ୍ତତ ଇତି ସଗଦ୍ଗଦଂ ଯଥା ସ୍ୟାତ୍ତଥା, କିଞ୍ଚ ଭୀତାଦପି ଭୀତଃ ସନ୍ ପ୍ରଣମ୍ୟ ଅବନତୋଭୂତ୍ୱା ଆହ । ୩୫ ।

### ପଦବ୍ୟାଖ୍ୟା ।

ଏତତ୍—ଏହି, ଶ୍ରୁତ୍ୱା—ଶ୍ରବଣ କରି, ବଚନଂ—କଥାକୁ, କେଶବସ୍ୟ—ଶ୍ରୀକୃଷ୍ଣଙ୍କର, କୃତାଞ୍ଜଳିଃ—ଯୋଡ଼ହାତ କରି, ବେପମାନଃ—କମ୍ପିତ କଳେବର, କିରୀଟୀ—ଅର୍ଜ୍ଜୁନ, ନମସ୍କୃତ୍ୟ—ନମସ୍କାର କରି, ଭୂୟଃ ଏବ—ବାରମ୍ବାର, ଆହ—କହିଲେ, କୃଷ୍ଣଂ—ଶ୍ରୀକୃଷ୍ଣଙ୍କୁ, ସଗଦ୍ଗଦଂ—ଗଦ୍ଗଦସ୍ୱରରେ, ଭୀତଭୀତଃ—ଡରି ଡରି, ପ୍ରଣମ୍ୟ—ଅବନତ ହୋଇ । ୩୫ ।

### ଅନୁବାଦ ।

ସଞ୍ଜୟ କହିଲେ; (ହେ ଧୃତରାଷ୍ଟ୍ର !) ଅର୍ଜ୍ଜୁନ, ଶ୍ରୀଭଗବାନଙ୍କର ଏହି କଥା ଶୁଣି କୃତାଞ୍ଜଳି ଓ କମ୍ପିତକଳେବର ଏବଂ ଭୟ ବିହ୍ୱଳ ହୋଇ ନମସ୍କାରପୂର୍ବକ ଅବନତମସ୍ତକରେ ଗଦ୍ଗଦସ୍ୱରରେ ପୁନର୍ବାର ଶ୍ରୀକୃଷ୍ଣଙ୍କୁ କହିଲେ । ୩୫ ।

### ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍, ଅର୍ଜ୍ଜୁନଙ୍କୁ ଯେଉଁ୨ କଥା କହିଲେ, ତାହା ଶୁଣି, ଅର୍ଜ୍ଜୁନ କଣ କଲେ, ଏହା ଜାଣିବାକୁ ଧୃତରାଷ୍ଟ୍ରଙ୍କର କୌତୁହଳ ବର୍ଦ୍ଧିତ ହୋଇଥିବାର ଜାଣି, ସଞ୍ଜୟ କହିଲେ, ହେ ଧୃତରାଷ୍ଟ୍ର ! ଶ୍ରୀକୃଷ୍ଣଙ୍କର ଏହି ପ୍ରକାର ବଚନ ଶୁଣି, ଅର୍ଜ୍ଜୁନ କମ୍ପିତ କଳେବର ହେଲେ ଅର୍ଥାତ୍ ଭୟରେ ତାହାଙ୍କର ଦେହ ଥରି ଉଠିଲା, ସୁତରାଂ ସେ ହାତ ଯୋଡ଼ି ଭଗବାନଙ୍କୁ ନମସ୍କାର କଲେ । ସେ, ଏପରି ଭୀତ ହୋଇଥିଲେ, ଯେ କଥା କହିଲା ବେଳକୁ ତାଙ୍କର ସ୍ୱର କମ୍ପିତ ହୋଇ ସ୍ପଷ୍ଟ ଉଚ୍ଚାରିତ ହେଲା ନାହିଁ । ସୁତରାଂ ଶ୍ରୀକୃଷ୍ଣଙ୍କୁ ସେ, ପୁନର୍ବାର ନମସ୍କାର କରି କହିବାକୁ ଆରମ୍ଭ କଲେ । ୩୫ ।

Digitized by PPRACHIN, SOA

## ଶ୍ଲୋକଃ ।

## ଅର୍ଜ୍ଜୁନ ଉବାଚ ।

* ସ୍ଥାନେ ହୃଷୀକେଶ ତବ ପ୍ରକୀର୍ତ୍ତ୍ୟା, ଜଗତ୍ ପ୍ରହୃଷ୍ୟତ୍ୟନୁରଜ୍ୟତେ ଚ ।
ରକ୍ଷାଂସି ଭୀତାନି ଦିଶୋ ଦ୍ରବନ୍ତି, ସର୍ବେ ନମସ୍ୟନ୍ତି ଚ ସିଦ୍ଧସଙ୍ଘାଃ । ୩୬ ।

## ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ । ହେ ହୃଷୀକେଶ ! ତବ ପ୍ରକୀର୍ତ୍ତ୍ୟା ଜଗତ୍ ପ୍ରହୃଷ୍ୟତି ଚ ଅନୁରଜ୍ୟତେ ଚ ରକ୍ଷାଂସି ଭୀତାନି ଦିଶଃ ଦ୍ରବନ୍ତି ଚ ସର୍ବେ ସିଦ୍ଧସଙ୍ଘାଃ ନମସ୍ୟନ୍ତି (ଇତି) ସ୍ଥାନେ । ୩୬ ।

## ଟୀକା ।

ସ୍ଥାନେ ଇତ୍ୟେକାଦଶଭିରର୍ଜ୍ଜୁନୋକ୍ତିଃ, ସ୍ଥାନେ ଇତ୍ୟବ୍ୟୟଂ ଯୁକ୍ତମିତ୍ୟସ୍ମିନ୍ନର୍ଥେ, ହେ ହୃଷୀକେଶ ! ଯତ ଏବଂ ତ୍ୱମଦ୍ଭୁତପ୍ରଭାବୋ ଭକ୍ତବତ୍ସଲଶ୍ଚାତସ୍ତବ ପ୍ରକୀର୍ତ୍ତ୍ୟା ମାହାତ୍ମ୍ୟସଙ୍କୀର୍ତ୍ତନେନ ନ କେବଲମହମେବ ପ୍ରହୃଷ୍ୟାମୀତି କିନ୍ତୁ ଜଗତ୍ ସର୍ବଂ ପ୍ରହୃଷ୍ୟତି ପ୍ରକର୍ଷେଣ ହର୍ଷଂ ପ୍ରାପ୍ନୋତି, ଏତତ୍ ସ୍ଥାନେ, ଯୁକ୍ତମିତ୍ୟର୍ଥଃ । ତଥା ଜଗଦନୁରଜ୍ୟତେ ଚ ଅନୁରାଗମୁପୈତି ଇତି ଯତ୍ତଥା ରକ୍ଷାଂସି ଭୀତାନି ସନ୍ତି ଦିଶଃ ପ୍ରତି ଦ୍ରବନ୍ତି ପଲାୟନ୍ତେ ଇତି ଯତ୍, ସର୍ବେ ଯୋଗତପୋମନ୍ତ୍ରାଦିସିଦ୍ଧାନାଂ ସଙ୍ଘା ନମସ୍ୟନ୍ତି ପ୍ରଣମନ୍ତୀତି ଯତ୍, ଏତଚ୍ଚ ସ୍ଥାନେ ଯୁକ୍ତମେବେତି ନ ଚିତ୍ରମିତ୍ୟର୍ଥଃ । ୩୬ ।

## ପଦବ୍ୟାଖ୍ୟା ।

ସ୍ଥାନେ—ଉଚିତ, ହୃଷୀକେଶ—ହେ ସମସ୍ତ ଇନ୍ଦ୍ରିୟମାନଙ୍କ ଈଶ୍ୱର !, ତବ—ଆପଣଙ୍କର, ପ୍ରକୀର୍ତ୍ତ୍ୟା—ନାମ କୀର୍ତ୍ତନ ବା ଶ୍ରବଣଦ୍ୱାରା, ଜଗତ୍—ସଂସାର ଅର୍ଥାତ୍ ସଂସାରର ପ୍ରାଣିବର୍ଗ, ପ୍ରହୃଷ୍ୟତି—ହର୍ଷପ୍ରାପ୍ତ ହୁଅନ୍ତି, ଅନୁରଜ୍ୟତେ ଚ—(ଆପଣଙ୍କ ବିଷୟରେ) ଅନୁରାଗଯୁକ୍ତ ହୁଅନ୍ତି, ରକ୍ଷାଂସି—ରାକ୍ଷସମାନେ, ଭୀତାନି—ଭୀତ ହୋଇ, ଦିଶୋଦ୍ରବନ୍ତି—ଦିଗ୍‌ଦିଗନ୍ତରକୁ ପଲାୟନ କରନ୍ତି, ସର୍ବେ—ସମସ୍ତେ, ନମସ୍ୟନ୍ତି—ନମସ୍କାର କରନ୍ତି, ଚ ସିଦ୍ଧସଙ୍ଘାଃ— ଆଉ ସିଦ୍ଧଗଣ ମାନେ । ୩୬ ।

## ଅନୁବାଦ ।

ଅର୍ଜ୍ଜୁନ କହିଲେ, ହେ ହୃଷୀକେଶ ! ଆପଣଙ୍କ ମହିମା କୀର୍ତ୍ତନରେ, ଯେ ସମସ୍ତ ଜଗତ୍ ହୃଷ୍ଟ ଓ ଅନୁରାଗଯୁକ୍ତ ହୁଏ, ରାକ୍ଷସମାନେ ଭୟରେ ଅନ୍ୟ ଦିଗକୁ ପଲାୟନ କରନ୍ତି ଏବଂ ସିଦ୍ଧଗଣମାନେ ନମସ୍କାର କରନ୍ତି, ଏହା ଯୁକ୍ତିସଙ୍ଗତ ଅଟେ । ୩୬ ।

## ଭାବଦବ୍ୟାଖ୍ୟା ।

ଅର୍ଜ୍ଜୁନ କହିଲେ, ହେ ହୃଷୀକେଶ ! ଅର୍ଥାତ୍ ହେ ଇନ୍ଦ୍ରିୟପ୍ରବର୍ତ୍ତକ ! ଆପଣଙ୍କର ଶକ୍ତି ଅପରିମିତ, ପୁଣି ଆପଣ, ଭକ୍ତବତ୍ସଳ ଅଟନ୍ତି, ସୁତରାଂ ଆପଣଙ୍କର ଗୁଣ ଓ ନାମ କୀର୍ତ୍ତନ କଲେ, ଜଗତର ସମସ୍ତ ପ୍ରାଣୀ, ଯେ ହୃଷ୍ଟ ଓ ଅନୁରକ୍ତ ହେବେ, ଏଥିରେ ବିଚିତ୍ର କଣ ଅଛି ? ଅର୍ଥାତ୍ ଏହା ସ୍ୱତଃସିଦ୍ଧ କଥା; ଆଉ ରାକ୍ଷସମାନେ, ଯେ ଆପଣଙ୍କର ଏହି ସଂହାରଣୀ ମୂର୍ତ୍ତି ଦେଖି, ଭୟରେ ଦିଗ ଦିଗନ୍ତରକୁ ପଳାଇଯିବେ, ଏଥିରେ ଆଉ ସନ୍ଦେହ କଣ ଅଛି ? ପୁଣି ଆପଣ ଭକ୍ତବତ୍ସଳ ଥିବାର ଜାଣି ଓ ଆପଣଙ୍କର ଦୁଷ୍ଟନିବାରଣ ପ୍ରତିଜ୍ଞା ଶୁଣି, ସିଦ୍ଧମାନେ, ଯେ ଆପଣଙ୍କୁ ନମସ୍କାର କରିବେ ତାହାତ ନିଃସନ୍ଦେହ ଅଟେ ।

Digitized by PPRACHIN, SOA

ଏ ଶ୍ଲୋକଟି ରାକ୍ଷସାଦି ଭୂତଯୋନିଜନିତ ଉପଦ୍ରବ ନିବାରଣପାଇଁ ମନ୍ତ୍ରଶାସ୍ତ୍ରରେ ପ୍ରସିଦ୍ଧ ଅଟେ । ଅଷ୍ଟାକ୍ଷର ନାରାୟଣ ମନ୍ତ୍ର* ଓ ସୁଦର୍ଶନାସ୍ତ୍ର ମନ୍ତ୍ରରେ† ସମ୍ପୁଟ କରି ପାଠ କରିବାର ବିଧି ଅଛି । ୩୬ ।

## ଶ୍ଲୋକଃ ।

କସ୍ମାଚ୍ଚ ତେ ନ ନମେରନ୍ମହାତ୍ମନ୍, ଗରୀୟସେ ବ୍ରହ୍ମଣୋଽପ୍ୟାଦିକର୍ତ୍ରେ ।
ଅନନ୍ତ ଦେବେଶ ଜଗନ୍ନିବାସ, ତ୍ୱମକ୍ଷରଂ ସଦସତ୍ତତ୍ପରଂ ଯତ୍ । ୩୭ ।

## ଅନ୍ୱୟଃ ।

ହେ ମହାତ୍ମନ୍ ! ବ୍ରହ୍ମଣଃ ଅପି ଗରୀୟସେ ଚ ଆଦିକର୍ତ୍ରେ ତେ କସ୍ମାତ୍ ନ ନମେରନ୍, ହେ ଅନନ୍ତ ! ହେ ଦେବେଶ ! ହେ ଜଗନ୍ନିବାସ ! ଯତ୍ ଅକ୍ଷରଂ, ସତ୍, ଅସତ୍, ପରଂ ତତ୍ (ସର୍ବଂ) ତ୍ୱଂ । ୩୭ ।

## ଟୀକା ।

ତର୍ହି ହେତୁମାହ, କସ୍ମାଦିତି । ହେ ମହାତ୍ମନ୍ ! ହେ ଅନନ୍ତ ! ହେ ଦେବେଶ ! ହେ ଜଗନ୍ନିବାସ ! କସ୍ମାଦ୍ଧେତୋସ୍ତେ ତୁଭ୍ୟଂ ନ ନମେରନ୍ ନ ନମସ୍କାରଂ କୁର୍ଯ୍ୟୁଃ କଥମ୍ଭୂତାୟ ବ୍ରହ୍ମଣୋଽପି ଗରୀୟସେ ଗୁରୁତରାୟ ଆଦିକର୍ତ୍ରେ ଚ ବ୍ରହ୍ମଣୋଽପି ଜନକାୟ କିଞ୍ଚ ସଦ୍‌ବ୍ୟକ୍ତଂ ଅସଦବ୍ୟକ୍ତଂ ଚ ତାଭ୍ୟାଂ ପରଂ ମୂଳକାରଣଂ ଯଦକ୍ଷରଂ ବ୍ରହ୍ମ ତଚ୍ଚ ତ୍ୱମେବ ଏତୈର୍ନିବନ୍ଧନୈର୍ହେତୁଭିସ୍ତ୍ୱାଂ ସର୍ବେ ନମସ୍ୟନ୍ତୀତି ନ ଚିତ୍ରମିତ୍ୟର୍ଥଃ । ୩୭ ।

## ପଦବ୍ୟାଖ୍ୟା ।

କସ୍ମାତ୍—କେଉଁ ହେତୁରୁ, ତେ—ଆପଣଙ୍କୁ, ନ ନମେରନ୍—ନମସ୍କାର ନ କରିବେ, ମହାତ୍ମନ୍—ହେ ପରମୋଦାରଚିତ୍ତ !, ଗରୀୟସେ—ଗୁରୁତର, ବ୍ରହ୍ମଣଃ ଅପି—ବ୍ରହ୍ମାଙ୍କଠାରୁ—ବା ବ୍ରହ୍ମାଙ୍କର ମଧ୍ୟ, ଆଦିକର୍ତ୍ରେ—ଆଦିକର୍ତ୍ତା, ଅନନ୍ତ—ହେ ଅନ୍ତଶୂନ୍ୟ !, ଦେବେଶ—ହେ ଦେବଶ୍ରେଷ୍ଠ ! ଜଗନ୍ନିବାସ—ହେ ଜଗତର ଆଶ୍ରୟ !, ତ୍ୱଂ—ଆପଣ, ଅକ୍ଷରଂ—ବ୍ରହ୍ମ, (ଅବିନାଶି), ସତ୍—ବ୍ୟକ୍ତ, ଅସତ୍—ଅବ୍ୟକ୍ତ, ତତ୍—ତାହା, ପରଂ—ଅତୀତ, ଯତ୍—ଯେ । ୩୭ ।

## ଅନୁବାଦ ।

ହେ ମହାତ୍ମନ୍ ! ହେ ଅନନ୍ତ ! ହେ ଦେବେଶ ! ହେ ଜଗନ୍ନିବାସ ! ଆପଣଙ୍କୁ (ସିଦ୍ଧମାନେ) ନମସ୍କାର ନ କରିବେ କାହିଁକି ? ଆପଣ ତ ବ୍ରହ୍ମାଙ୍କ ଅପେକ୍ଷା ମଧ୍ୟ, ଗୁରୁତର ଓ ତାଙ୍କର ଜନକ ଅଟନ୍ତି, ପୁଣି ଆପଣ, ସତ୍ ଓ ଅସତ୍ (ପ୍ରକୃତି) ଏବଂ ଯେ ଦୁଇରୁ ଅତୀତ, ଯେ ଅବିନାଶୀ ବ୍ରହ୍ମ, ସେହି ବ୍ରହ୍ମ ମଧ୍ୟ ଆପଣ ଅଟନ୍ତି । ୩୭ ।

## ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ କହୁଅଛନ୍ତି, ହେ ଭଗବନ୍ ! ଆପଣଙ୍କୁ ସମସ୍ତେ କାହିଁକି ନମସ୍କାର ନ କରିବେ ? ଅର୍ଥାତ୍ ଆପଣ ସମସ୍ତଙ୍କର ନମସ୍କରଣୀୟ ଅଟନ୍ତି, ଏଥିରେ କିଛି ମାତ୍ର ସନ୍ଦେହ ନାହିଁ ।

---

* ଅଷ୍ଟାକ୍ଷର ନାରାୟଣ ମନ୍ତ୍ର ଯଥା;—"ଓଁ ନମୋନାରାୟଣାୟ" ।

† ସୁଦର୍ଶନମନ୍ତ୍ର ଯଥା,—ସୁଦର୍ଶନମନ୍ତ୍ରସ୍ୟ, ପ୍ରଜାପତି ଋଷିଃ, ଗାୟତ୍ରୀ ଛନ୍ଦଃ, ଅସ୍ତ୍ରରୂପୀ ଶ୍ରୀକୃଷ୍ଣୋ ଦେବତା, ପୂଜାଙ୍ଗ ବିନିଯୋଗଃ —ପରେ "ଓଁ ସୁଦର୍ଶନାୟ ଅସ୍ତ୍ରାୟ ଫଟ୍" ।

Digitized by PPRACHIN, SOA

ଆପଣ, ମହାତ୍ମା ଅର୍ଥାତ୍ ମହତ୍ ସ୍ୱରୂପଯୁକ୍ତ । ଆପଣ ଅନନ୍ତ ଅର୍ଥାତ୍ ଦେଶ, କାଳ ଓ ବସ୍ତୁ ପରିଚ୍ଛେଦ ରହିତ ଅଟନ୍ତି । ଏ ସମସ୍ତ ଜଗତର ଏକମାତ୍ର ଆଶ୍ରୟ, ଆପଣ ଅଟନ୍ତି । ଆପଣ, ଜଗତ୍‌ସ୍ରଷ୍ଟା ବ୍ରହ୍ମାଙ୍କ ଅପେକ୍ଷା ଗୁରୁତର ଓ ସେହି ବ୍ରହ୍ମାଙ୍କର ମଧ୍ୟ, ଉତ୍ପତ୍ତିର କାରଣ ଅଟନ୍ତି । ଆପଣ, ସତ୍ ଅର୍ଥାତ୍ ବ୍ୟକ୍ତ, ଅଥବା, ନାମ ଓ ରୂପବିଶିଷ୍ଟ କାର୍ଯ୍ୟ (ଜଗତ୍) ସ୍ୱରୂପ ଅଟନ୍ତି । ପୁଣି ଆପଣ ଅସତ୍, ଅର୍ଥାତ୍ ଅବ୍ୟକ୍ତ ଅଥବା ନାମ ରୂପାଦିର ଅତୀତ, କାରଣସ୍ୱରୂପ ଅଟନ୍ତି । ଅର୍ଥାତ୍ ସତ୍ ଓ ଅସତ୍ ବା କାର୍ଯ୍ୟ ଓ କାରଣସ୍ୱରୂପରେ ଅବସ୍ଥିତ, ଯେ ପ୍ରକୃତିତତ୍ତ୍ୱ ତାହା, ଆପଣ ଅଟନ୍ତି । ଅନନ୍ତର ସତ୍ ଓ ଅସତ୍ ଏ ଦୁଇରୁ (ପ୍ରକୃତିରୁ) ଅତୀତ, ଯେ ଅବିନାଶି ବ୍ରହ୍ମ, ଅର୍ଥାତ୍ ଜୀବତତ୍ତ୍ୱ, ତାହା ମଧ୍ୟ ଆପଣ ଅଟନ୍ତି । ଅଥବା ଆପଣଙ୍କର ସ୍ୱରୂପାଦି କେହି ଦେଖି ନ ଥିବାରୁ ଆପଣଙ୍କୁ 'ଅସତ୍' ଏବଂ ଆପଣଙ୍କର ଅସ୍ତିତ୍ୱରେ କାହାରି ସନ୍ଦେହ ନ ଥିବାରୁ ଆପଣଙ୍କୁ 'ସତ୍' ବୋଲାଯାଏ ।

ଏ ସ୍ଥଳେ ହିନ୍ଦିଭାଷାରେ ଜଣେ ବିଖ୍ୟାତ କବିଙ୍କର, ଗୋଟିଏ କବିତା, ଆମ୍ଭମାନଙ୍କର ମନେ ପଡ଼ିଲା, ତାହା ଆବଶ୍ୟକ ବୋଧେ ଏଠାରେ ଲେଖିଲୁଁ । ଯଥା,—'ହଏ କହୋତ ହଏ ନହିଁ ଉହିଁ କହା ନ ଯାୟ । ହଏ ନହିଁ କେ ବିଚ୍‌ମେ ସବ୍‌ହିଁ ମେରା ସମାୟ' । ଅର୍ଥାତ୍ ଈଶ୍ୱର ଅଛନ୍ତି, ଏହା କହିଲେ, ଦେଖାଇ ଦିଆଯାଇ ପାରିବ ନାହିଁ, ପୁଣି ଈଶ୍ୱର ନାହାନ୍ତି, ଏହା ମଧ୍ୟ କୁହାଯାଇ ନ ପାରେ । ଅତଏବ ଆମ୍ଭର ସ୍ୱାମୀ (ଈଶ୍ୱର) ଅସ୍ତି ଓ ନାସ୍ତି ଦୁଇ କଥାର ମଧ୍ୟରେ ବିଦ୍ୟମାନ, ଅର୍ଥାତ୍ ସତ୍ ଓ ଅସତ୍ ଦୁଇରୁ ଅତୀତ ଅଟନ୍ତି ।

ଏହି ସବୁ ଗୁଣ ଥିବାରୁ ଆପଣ ସିଦ୍ଧମାନଙ୍କର ନମସ୍କରଣୀୟ ଅଟନ୍ତି । ୩୭ ।

## ଶ୍ଲୋକଃ ।

ତ୍ୱମାଦିଦେବଃ ପୁରୁଷଃ ପୁରାଣ,ସ୍ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନଂ ।
ବେତ୍ତାସି ବେଦ୍ୟଂ ଚ ପରଂ ଚ, ଧାମ ତ୍ୱୟା ତତଂ ବିଶ୍ୱମନନ୍ତରୂପ । ୩୮ ।

## ଅନ୍ୱୟଃ ।

ତ୍ୱଂ ଆଦିଦେବଃ ପୁରାଣଃ ପୁରୁଷଃ, ତ୍ୱଂ ଅସ୍ୟ ବିଶ୍ୱସ୍ୟ ପରଂ ନିଧାନଂ । (ତ୍ୱଂ) ବେତ୍ତା ଚ ବେଦ୍ୟଂ ଚ ପରଂ ଧାମ ଅସି, ହେ ଅନନ୍ତରୂପ ! ଇଦଂ ବିଶ୍ୱଂ ତ୍ୱୟା ତତଂ । ୩୮ ।

## ଟୀକା ।

କିଞ୍ଚ ତ୍ୱମାଦିଦେବ ଇତି । ତ୍ୱମାଦିଦେବୋଦେବାନାମାଦିଃ ଯତଃ ପୁରାଣୋଽନାଦିଃ ପୁରୁଷସ୍ତ୍ୱମତ ଏବ ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନଂ ଲୟସ୍ଥାନଂ ତଥା ବିଶ୍ୱସ୍ୟ ବେତ୍ତା ଜ୍ଞାତା ତ୍ୱଂ ଯଚ୍ଚ ବେଦ୍ୟଂ ବସ୍ତୁଜାତଂ ପରଂ ଚ ଧାମ, ବୈଷ୍ଣବଂ ପଦଂ ତଦପି ତ୍ୱମେବାସି ଯତ ଏବ ହେ ଅନନ୍ତରୂପ! ତ୍ୱୟୈବେଦଂ ବିଶ୍ୱଂ ତତଂ ବ୍ୟାପ୍ତଂ ଏତୈଷ୍ଟ ସପ୍ତ-ଭିର୍ହେତୁଭିସ୍ତ୍ୱମେବ ନମସ୍କାର୍ଯ୍ୟ ଇତ୍ୟର୍ଥଃ । ୩୮ ।

## ପଦବ୍ୟାଖ୍ୟା ।

ତ୍ୱଂ—ଆପଣ, ଆଦିଦେବଃ—ଦେବତାମାନଙ୍କର ଆଦି କାରଣ, ପୁରୁଷଃ—ସମସ୍ତ ଶରୀରବର୍ତ୍ତି—ବ୍ୟାପକ, ପୁରାଣଃ—ପୁରାତନ ଅର୍ଥାତ୍ ଅନାଦି, ତ୍ୱଂ—ଆପଣ, ଅସ୍ୟ ବିଶ୍ୱସ୍ୟ—ଏହି ଜଗତର, ପରଂ ନିଧାନଂ—ଶ୍ରେଷ୍ଠ ଆଶ୍ରୟ, ବେତ୍ତା ଅସି

Digitized by PPRACHIN, SOA

(ଆପଣ) ଜ୍ଞାତା ଅଟନ୍ତି, ବେଦ୍ୟଂ—ଜ୍ଞାତବ୍ୟ, ପରଂ ଚ ଧାମ—ଉତ୍ତମ ସ୍ଥାନ, ତ୍ୱୟା ତତଂ—ଆପଣ ବ୍ୟାପି ଅଛନ୍ତି, ବିଶ୍ୱଂ—ଜଗତକୁ, ଅନନ୍ତ ରୂପ—ହେ ଅସୀମରୂପ—ହେ ବିଶ୍ୱରୂପ ! । ୩୮ ।

ଅନୁବାଦ ।

ହେ ଅନନ୍ତରୂପ ! ଆପଣ, ଆଦିଦେବ ଓ ପୁରାଣ ପୁରୁଷ ଅଟନ୍ତି । ଆପଣ, ଏ ଜଗତର ଏକମାତ୍ର ଲୟସ୍ଥାନ ଅଟନ୍ତି, ଆପଣ ଜ୍ଞାତା, ଜ୍ଞେୟ ଓ ପରମ ଧାମ ଅଟନ୍ତି । ପୁଣି ଆପଣହିଁ ଏ ଜଗତକୁ ବ୍ୟାପି ରହିଅଛନ୍ତି । ୩୮ ।

ବିଶଦବ୍ୟାଖ୍ୟା ।

ହେ ବିଶ୍ୱରୂପ ! ଆପଣ, ସମସ୍ତ ଦେବତାଙ୍କର ଆଦିକାରଣ ଅଟନ୍ତି, ଆପଣ ପୁରାତନ ଅର୍ଥାତ୍ ଅନାଦି ଅଟନ୍ତି । ପୁରୁଷ ଅର୍ଥାତ୍ (ପୁର) ଶରୀର ମାତ୍ରରେ ଆପଣ, ଅନ୍ତର୍ଯ୍ୟାମୀରୂପରେ ବିଦ୍ୟମାନ, ପ୍ରଳୟ କାଳରେ ଏ ଜଗତ୍ ଆପଣଙ୍କଠାରେ ଲୟପ୍ରାପ୍ତ ହୁଏ, ଅତଏବ ଆପଣ, ଏହାର ନିଧାନ ଅର୍ଥାତ୍ ଲୟସ୍ଥାନ ଅଟନ୍ତି । ଆପଣ, ଏ ଜଗତର ଉତ୍ପତ୍ତି, ସ୍ଥିତି ଓ ଲୟ ଇତ୍ୟାଦି ସମସ୍ତ କଥାର ଜ୍ଞାତା ଅଟନ୍ତି, ପୁଣି ଜଗତର ସମସ୍ତ ପ୍ରାଣୀ ଆପଣଙ୍କୁ ଜାଣିବାକୁ ଇଚ୍ଛୁକ । ଆପଣ, ବିଷ୍ଣୁଙ୍କର ସଚ୍ଚିଦାନନ୍ଦ, ଘନ ଓ ଅବିଦ୍ୟାବର୍ଜ୍ଜିତ ପରମ ପଦ ବା ବୈକୁଣ୍ଠ ଅଟନ୍ତି । ଆପଣ, ଏ ଜଗତକୁ ବ୍ୟାପି ରହିଅଛନ୍ତି, ଅର୍ଥାତ୍ ଆପଣଙ୍କ ସତ୍ତାଭିନ୍ନ, ଜଗତରେ ଆଉ କିଛି ସ୍ୱତନ୍ତ୍ର ପଦାର୍ଥ ନାହିଁ । ଏ ଶ୍ଳୋକ ଲିଖିତ ସପ୍ତ ପ୍ରକାର ଗୁଣ ଥିବାରୁ ଆପଣ, ଯେ ସମସ୍ତଙ୍କର ନମସ୍କରଣୀୟ ଅଟନ୍ତି, ଏଥିରେ ଆଉ ବିଚିତ୍ର କଣ ? । ୩୮ ।

ଶ୍ଳୋକଃ ।

* ବାୟୁର୍ଯମୋଽଗ୍ନିର୍ବରୁଣଃ ଶଶାଙ୍କଃ, ପ୍ରଜାପତିସ୍ତ୍ୱଂ ପ୍ରପିତାମହଶ୍ଚ ।
ନମୋନମସ୍ତେଽସ୍ତୁ ସହସ୍ରକୃତ୍ୱଃ ପୁନଶ୍ଚ ଭୂୟୋଽପି ନମୋନମସ୍ତେ । ୩୯ ।

ଅନ୍ୱୟଃ ।

ତ୍ୱଂ ବାୟୁଃ ଯମଃ ଅଗ୍ନିଃ ବରୁଣଃ ଶଶାଙ୍କଃ ପ୍ରଜାପତିଃ ଚ ପ୍ରପିତାମହଃ (ଅସି, ଅତଃ) ତେ ସହସ୍ରକୃତ୍ୱଃ ନମୋନମଃ ଅସ୍ତୁ ଚ ଭୂୟଃ ଅପି ନମୋନମଃ ପୁନଃ ଚ ତେ ଅସ୍ତୁ । ୩୯ ।

ଟୀକା ।

ଇତଶ୍ଚ ସର୍ବୈସ୍ତ୍ୱମେବ ନମସ୍କାର୍ଯ୍ୟଃ ସର୍ବଦେବାତ୍ମକତ୍ୱାଦିତ୍ୟାହ ସ୍ତୁବନ୍ ସ୍ୱୟମପି ନମସ୍କରୋତି । ବାୟୁରିତି । ବାୟ୍ୱାଦିରୂପସ୍ତ୍ୱମିତି ସର୍ବଦେବାତ୍ମକତ୍ୱୋପଲକ୍ଷଣାର୍ଥମୁକ୍ତଂ ପ୍ରଜାପତିଃ ପିତାମହସ୍ତସ୍ୟାପି ଜନକତ୍ୱାତ୍ ପ୍ରପିତାମହସ୍ତ୍ୱଂ ଅତସ୍ତେଭ୍ୟଂ ସହସ୍ରକୃତ୍ୱଃ ସହସ୍ରଶୋନମୋଽସ୍ତୁ ପୁନଃ ସହସ୍ରକୃତ୍ୱୋନମୋଽସ୍ତୁ ଭୂୟୋଽପି ପୁନରପି ସହସ୍ରକୃତ୍ୱୋନମୋନମ ଇତି । ୩୯ ।

ପଦବ୍ୟାଖ୍ୟା ।

ବାୟୁଃ—ପବନ, ଯମଃ—ଦଣ୍ଡଧର, ଅଗ୍ନିଃ—ବୈଶ୍ୱାନର, ବରୁଣଃ—ସମୁଦ୍ରାଧିଷ୍ଠାତା, ଶଶାଙ୍କଃ—ଚନ୍ଦ୍ର, ପ୍ରଜାପତିଃ—ପିତାମହ ବ୍ରହ୍ମା, ତ୍ୱଂ—ଆପଣ, ପ୍ରପିତାମହଶ୍ଚ—ବ୍ରହ୍ମାଙ୍କର ଜନକ, ନମୋନମଃ—ନମସ୍କାର, ତେ—ଆପଣଙ୍କୁ, ଅସ୍ତୁ—ହେଉ, ସହସ୍ରକୃତ୍ୱଃ—ସହସ୍ର ବାର, ପୁନଶ୍ଚ—ପୁଣି ହଜାର ବାର (ଅସଂଖ୍ୟ), ଭୂୟଃ ଅପି—ପୁନରପି, ନମୋନମଃ—ନମସ୍କାର, ତେ— ଆପଣଙ୍କୁ । ୩୯ ।

Digitized by PPRACHIN, SOA

### ଅନୁବାଦ ।

(ହେ ଭଗବନ୍!) ଆପଣ ବାୟୁ, ଯମ, ଅଗ୍ନି, ବରୁଣ, ଚନ୍ଦ୍ର, ପ୍ରଜାପତି ଏବଂ ପ୍ରପିତାମହ ଅଟନ୍ତି, ଅତଏବ ଆପଣଙ୍କୁ ସହସ୍ର ବାର ନମସ୍କାର ଓ ପୁଣି ବାରମ୍ବାର ନମସ୍କାର କରୁଅଛୁ । ୩୯ ।

### ବିଶଦବ୍ୟାଖ୍ୟା ।

ହେ ସର୍ବଦେବସ୍ୱରୂପି ଭଗବନ୍! ଆପଣ ବାୟୁରୂପେ ପ୍ରବାହିତ ହୋଇ, ପ୍ରାଣିମାନଙ୍କର ପ୍ରାଣ ରକ୍ଷା କରୁଅଛନ୍ତି, ଯମରୂପରେ ପ୍ରାଣିମାନଙ୍କର ବିନାଶ କରୁଅଛନ୍ତି । ଆପଣ ଅଗ୍ନି (ଉତ୍ତାପ) ରୂପରେ ତେଜଦ୍ୱାରା ଜଗତକୁ ଉତ୍ତପ୍ତ କରୁଅଛନ୍ତି, ଏବଂ ଆପଣ ହିଁ ପୁଣି ବରୁଣ (ଜଳ) ରୂପରେ ସମସ୍ତ ଶୀତଳ କରୁଅଛନ୍ତି । ଆପଣ ଚନ୍ଦ୍ରରୂପରେ ବିମଳ ଓ ଶୀତଳ କିରଣ ପ୍ରଦାନ କରି, ଜଗତକୁ ଆହ୍ଲାଦିତ ଓ ଶୋଭିତ କରୁଅଛନ୍ତି । ଆପଣ ପ୍ରଜାପତି-ବ୍ରହ୍ମାରୂପରେ ଜଗତ୍ ସୃଷ୍ଟି କରୁଅଛନ୍ତି, ଏମନ୍ତ କି ଜଗତ୍‌ସ୍ରଷ୍ଟା ବ୍ରହ୍ମାଙ୍କର ମଧ୍ୟ ଆପଣ ଜନକ ହୋଇ, ପ୍ରପିତାମହ ଅଟନ୍ତି । ଅତଏବ, ହେ ସର୍ବଦେବସ୍ୱରୂପ! ଆପଣ, ସମସ୍ତଙ୍କର ନମସ୍କରଣୀୟ । ମୁଁ ସହସ୍ର ବାର ଆପଣଙ୍କୁ ନମସ୍କାର କରୁଅଛି ପୁନଃ ସହସ୍ର ଓ ପୁନରପି ସହସ୍ର ବାର ଅର୍ଥାତ୍ ଅସଂଖ୍ୟ ବାର ନମସ୍କାର କରୁଅଛି । ୩୯ ।

### ଶ୍ଲୋକଃ ।

* ନମଃ ପୁରସ୍ତାଦଥ ପୃଷ୍ଠତସ୍ତେ, ନମୋଽସ୍ତୁ ତେ ସର୍ବତ ଏବ ସର୍ବ ।
ଅନନ୍ତବୀର୍ଯ୍ୟାମିତବିକ୍ରମସ୍ତ୍ୱଂ, ସର୍ବଂ ସମାପ୍ନୋଷି ତତୋଽସି ସର୍ବଃ । ୪୦ ।

### ଅନ୍ୱୟଃ ।

ହେ ସର୍ବ! ତେ ପୁରସ୍ତାତ୍ ନମଃ ଅଥ ପୃଷ୍ଠତଃ ସର୍ବତଃ ଏବ ନମଃ ଅସ୍ତୁ । ଅନନ୍ତବୀର୍ଯ୍ୟାମିତବିକ୍ରମଃ ତ୍ୱଂ ସର୍ବଂ ସମାପ୍ନୋଷି ତତଃ ସର୍ବଃ ଅସି । ୪୦ ।

### ଟୀକା ।

ଭକ୍ତିଶ୍ରଦ୍ଧାଦ୍ୟାତିଶୟେନ ନମସ୍କାରେଷୁ ତୃପ୍ତିମନଧିଗଚ୍ଛନ୍ ପୁନରପି ବହୁଶଃ ପ୍ରଣମତି, ନମ ଇତି । ହେ ସର୍ବ! ସର୍ବାତ୍ମନ୍! ସର୍ବାସୁ ଦିକ୍ଷୁ ତୁଭ୍ୟଂ ନମୋଽସ୍ତୁ । ସର୍ବାତ୍ମତ୍ୱମୁପପାଦୟନ୍ନାହ । ଅନନ୍ତଂ ବୀର୍ଯ୍ୟଂ ସାମର୍ଥ୍ୟଂ ଯସ୍ୟ ତଥା ଅମିତୋ ବିକ୍ରମଃ ପରାକ୍ରମୋଯସ୍ୟ ସ ଏବମ୍ଭୂତସ୍ତ୍ୱଂ ସର୍ବଂ ବିଶ୍ୱଂ ସମ୍ୟଗନ୍ତର୍ବହିଶ୍ଚ ସମାପ୍ନୋଷି ବ୍ୟାପ୍ନୋଷି ସୁବର୍ଣ୍ଣମିବ କନକକୁଣ୍ଡଳାଦି ସ୍ୱକାର୍ଯ୍ୟଂ ବ୍ୟାପ୍ୟ ବର୍ତ୍ତସେ ଅତଃ ସର୍ବସ୍ୱରୂପୋଽସି । ୪୦ ।

### ପଦବ୍ୟାଖ୍ୟା ।

ନମଃ—ନମସ୍କାର, ପୁରସ୍ତାତ୍—ଅଗ୍ରରେ, ଅଥ—ତତ୍‌ପରେ, ପୃଷ୍ଠତଃ—ପଶ୍ଚାଦ୍‌ଭାଗରେ, ତେ—ଆପଣଙ୍କୁ, ନମୋଽସ୍ତୁ ତେ—ଆପଣଙ୍କୁ ନମସ୍କାର, ସର୍ବତଃ ଏବ—ସବୁ ଆଡେ ଓ ସବୁ ବେଳେ, ସର୍ବ—ହେ ସର୍ବସ୍ୱରୂପ, ଅନନ୍ତବୀର୍ଯ୍ୟାମିତବିକ୍ରମଃ—ଅସୀମ କ୍ଷମତା ଓ ଅପରିମିତ ବଳଯୁକ୍ତ, ତ୍ୱଂ—ଆପଣ, ସର୍ବଂ—ସମସ୍ତଙ୍କୁ, ସମାପ୍ନୋଷି—ପ୍ରାପ୍ତ ହୋଇଅଛନ୍ତି ବା ବ୍ୟାପି ଅଛନ୍ତି, ତତଃ—ସେହିହେତୁରୁ, ଅସି—ଅଟନ୍ତି, ସର୍ବଃ—ସର୍ବସ୍ୱରୂପ । ୪୦ ।

### ଅନୁବାଦ ।

ହେ ସର୍ବରୂପ!, ମୁଁ ଆପଣଙ୍କର ସମ୍ମୁଖରେ, ପୃଷ୍ଠଭାଗରେ ଏବଂ ସର୍ବଦିଗରେ ସର୍ବଦା

ନମସ୍କାର କରୁଅଛୁ । ଆପଣ, ଅସୀମ କ୍ଷମତା ଓ ଅପରିମିତ ବଳଶାଳୀ ଅଟନ୍ତି, ପୁଣି ସମସ୍ତ ଜଗତକୁ ବ୍ୟାପି ଅଛନ୍ତି, ସେହିହେତୁରୁ ଆପଣ, ସର୍ବସ୍ୱରୂପ ଅଟନ୍ତି । ୪୦ ।

ବିଶଦବ୍ୟାଖ୍ୟା ।

ଭଗବାନ୍ ଆଦି, ଅନ୍ତ ଓ ମଧ୍ୟ ଶୂନ୍ୟ ହେଲେ ସୁଦ୍ଧା, ଭକ୍ତମାନେ ତାହାଙ୍କୁ (ସାକାର କଳ୍ପନାରେ) ଆଦି, ଅନ୍ତ ଓ ମଧ୍ୟାଦିଯୁକ୍ତ ବୋଲି ଅଙ୍ଗୀକାର କରିଅଛନ୍ତି ; ଅତଏବ ଅର୍ଜୁନ, ସେହି ଭକ୍ତମାନଙ୍କ ସ୍ୱୀକୃତ ପଥ ଅନୁସାରେ ଭଗବାନଙ୍କୁ ସୀମାଯୁକ୍ତ ବୋଲି କଳ୍ପନା କରି, ତାହାଙ୍କର ସମ୍ମୁଖ, ପୃଷ୍ଠ ଓ ସର୍ବଦିଗରେ ନମସ୍କାର କଲେ । ଅଥବା ସମ୍ମୁଖରେ — ସମସ୍ତ କର୍ମର ଆଦ୍ୟରେ, ପୃଷ୍ଠରେ କି ସକଳ କର୍ମର ଶେଷରେ, ଏବଂ ସର୍ବତଃ ଅର୍ଥାତ୍ କର୍ମର ଆରମ୍ଭଠାରୁ ଶେଷ ପର୍ଯ୍ୟନ୍ତ ସବୁ ସମୟରେ ନମସ୍କାର ହେଉ ବୋଲି କହିଲେ ଏବଂ ଆହୁରି କହିଲେ,—

ହେ ଭଗବନ୍! ଆପଣଙ୍କର କ୍ଷମତା ଅସୀମ, ଅତଏବ ଆପଣ ସମ୍ମୁଖ, ପୃଷ୍ଠ ଓ ପାର୍ଶ୍ୱାଦି ବର୍ଣ୍ଣିତ ସସୀମ ମୂର୍ତ୍ତି ଧାରଣ କରି ପାରନ୍ତି । ଆପଣଙ୍କର ବିକ୍ରମ, ବଳ ବା ବୀର୍ଯ୍ୟରୂପ ଅପରିମିତ, ଅର୍ଥାତ୍ ପରିମାଣର ଅତୀତ ଅଟେ । ସଂକ୍ଷେପରେ କହିବାକୁ ଗଲେ, ଆପଣ ସର୍ବଶକ୍ତିମାନ୍ ଅତଏବ, ଆପଣ ସର୍ବସ୍ୱରୂପ ଅଟନ୍ତି ଓ ସେହିହେତୁରୁ ଆପଣଙ୍କ ସର୍ବଦିଗରେ ମୁଁ ସର୍ବଦା ନମସ୍କାର କରୁଅଛୁ । ୪୦ ।

ଶ୍ଲୋକଃ ।

* ସଖେତି ମତ୍ୱା ପ୍ରସଭଂ ଯଦୁକ୍ତଂ, ହେ କୃଷ୍ଣ ହେ ଯାଦବ ହେ ସଖେତି ।
ଅଜାନତା ମହିମାନଂ ତବେଦଂ, ମୟା ପ୍ରମାଦାତ୍ ପ୍ରଣୟେନ ବାପି । ୪୧ ।

ଅନ୍ୱୟଃ ।

(ହେ ଭଗବନ୍!) ତବ ଇଦଂ (ରୂପଂ) ମହିମାନଂ (ଚ) ଅଜାନତା ମୟା ସଖା ଇତି ମତ୍ୱା ବା ପ୍ରଣୟେନ ପ୍ରମାଦାତ୍ ଅପି ହେ କୃଷ୍ଣ, ହେ ଯାଦବ, ହେ ସଖେ! ଇତି ପ୍ରସଭଂ ଯତ୍ ଉକ୍ତଂ (ତତ୍ ତ୍ୱାଂ କ୍ଷାମୟେ) । ୪୧ ।

ଟୀକା ।

ଇଦାନୀଂ ଭଗବନ୍ତଂ କ୍ଷମାପୟତି, ସଖେତି ଦ୍ୱାଭ୍ୟାଂ । ତ୍ୱାଂ ପ୍ରାକୃତଃ ସଖେତ୍ୟେବ ମତ୍ୱା ପ୍ରସଭଂ ହଠାତ୍ ତିରସ୍କାରେଣ ଯଦୁକ୍ତଂ ତତ୍କ୍ଷାମୟେ ତ୍ୱାମିତ୍ୟୁତ୍ତରେଣାନ୍ୱୟଃ କିଂ ତତ୍ ହେ କୃଷ୍ଣ ! ହେ ଯାଦବ ! ହେ ସଖେତି ଚ ସନ୍ଧିର୍ଗାର୍ଷଃ ପ୍ରସଭୋକ୍ତୌ ହେତୁଃ ତବ ମହିମାନମିଦଂ ଚ ବିଶ୍ୱରୂପମଜାନତା ମୟା ପ୍ରମାଦାତ୍ ପ୍ରଣୟେନ ସ୍ନେହେନ ବା ଯଦୁକ୍ତମିତି । ୪୧ ।

ପଦବ୍ୟାଖ୍ୟା ।

ସଖା—ମିତ୍ର, ଇତି—ଏହା, ମତ୍ୱା—ମଣିକରି, ପ୍ରସଭଂ—ହଠାତ୍, ଯଦୁକ୍ତଂ—ଯାହା କହିଅଛି, ହେ କୃଷ୍ଣ ହେ ଯାଦବ ହେ ସଖେ—ହେ କୃଷ୍ଣ !, ହେ ଯଦୁନାଥ !, ହେ ମିତ୍ର !, ଇତି—ଏପ୍ରକାର, ଅଜାନତା—ନ ଜାଣି, ମହିମାନଂ—ମହିମାକୁ, ତବ—ଆପଣଙ୍କର, ଇଦଂ—ବିଶ୍ୱରୂପକୁ, ମୟା—ମୁଁ, ପ୍ରମାଦାତ୍—ଅସାବଧାନ ହେତୁରୁ, ପ୍ରଣୟେନ ବା—ପ୍ରୀତି ହେତୁରୁ ଅବା, ଅପି—ମଧ୍ୟ, । ୪୧ ।

ଅନୁବାଦ ।

ଆପଣଙ୍କର ଏ ବିଶ୍ୱରୂପ ଓ ମହିମାକୁ ନ ଜାଣି ଅସାବଧାନତା ବା (ଆପଣଙ୍କୁ) ସଖା ମନେ କରି ପ୍ରଣୟ ହେତୁରୁ ମୁଁ ଅବଜ୍ଞାପୂର୍ବକ, ହେ କୃଷ୍ଣ ! ହେ ଯାଦବ ! ହେ ସଖେ ! ଇତ୍ୟାଦି ଯାହା କହିଥିଲି, (ତାହାପାଇଁ କ୍ଷମାପ୍ରାର୍ଥନା କରୁଅଛି) । ୪୧ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ କହୁଅଛନ୍ତି, ହେ ଭଗବନ୍ ! ଅଜ ଆପଣଙ୍କ ପ୍ରଦତ୍ତ ଦିବ୍ୟଚକ୍ଷୁଦ୍ୱାରା ଆପଣଙ୍କର ଏ ବିଶ୍ୱରୂପ ଦେଖିଲି ଓ ଅଧ୍ୟାତ୍ମ ଉପଦେଶଦ୍ୱାରା ଆପଣଙ୍କର ମହିମା ଅବଗତ ହେଲି, ମାତ୍ର ଇତପୂର୍ବରୁ ଆପଣଙ୍କର ମହିମା ଜାଣି ନ ଥିବାରୁ ଅସାବଧାନ ହୋଇ ଅଥବା ଆପଣଙ୍କୁ ମୋହର ସଖା ବା ମିତ୍ର ବୋଲି ଜାଣି, ପ୍ରୀତି ହେତୁରୁ, ଯେଉଁ ଅନାଦର ବା ଅନୁଚିତ ବ୍ୟବହାର କରିଥିଲି ଏବଂ ହେ କୃଷ୍ଣ ! ହେ ଯାଦବ ! ହେ ସଖେ ! ଇତ୍ୟାଦି ଯେଉଁ ଲୌକିକ ସମ୍ବୋଧନ କରିଥିଲି, ସେଥିରେ ମୋହର ଯାହା କିଛି ଅପରାଧ ହୋଇଅଛି, ତାହା ମତେ କ୍ଷମା କରିବା ହେଉନ୍ତୁ । ୪୧ ।

ଶ୍ଳୋକଃ ।

ଯଚ୍ଚାବହାସାର୍ଥମସତ୍କୃତୋଽସି, ବିହାରଶଯ୍ୟାସନଭୋଜନେଷୁ ।
ଏକୋଽଥବାପ୍ୟଚ୍ୟୁତ ତତ୍ସମକ୍ଷଂ, ତତ୍ କ୍ଷାମୟେ ତ୍ୱାମହମପ୍ରମେୟଂ । ୪୨ ।

ଅନ୍ୱୟଃ ।

ହେ ଅଚ୍ୟୁତ ! ବିହାରଶଯ୍ୟାସନଭୋଜନେଷୁ ଏକଃ ଅଥବା ତତ୍ସମକ୍ଷଂ ଅବହାସାର୍ଥଂ ଯତ୍ ଚ ଅସତ୍କୃତଃ ଅସି ଅପ୍ରମେୟଂ ତ୍ୱାଂ ଅହଂ ତତ୍ କ୍ଷାମୟେ । ୪୨ ।

ଟୀକା ।

କିଞ୍ଚ ଯଚ୍ଚେତି । ହେ ଅଚ୍ୟୁତ ! ଯଚ୍ଚ ପରିହାସାର୍ଥଂ କ୍ରୀଡାଦିଷୁ ତିରସ୍କୃତୋଽସି ଏକଃ କେବଲଃ ସଖୀନ୍ ବିନା ରହସି ସ୍ଥିତ ଇତ୍ୟର୍ଥଃ ଅଥବା ତତ୍ସମକ୍ଷଂ ତେଷାଂ ପରିହସତାଂ ସଖୀନାଂ ସମକ୍ଷଂ ପ୍ରତ୍ୟକ୍ଷମପି ତତ୍ ସର୍ବମପରାଧଜାତଂ ତ୍ୱାମପ୍ରମେୟଂ ଅଚିନ୍ତ୍ୟପ୍ରଭାବଂ କ୍ଷାମୟେ କ୍ଷମାଂ କାରୟାମି । ୪୨ ।

ପଦବ୍ୟାଖ୍ୟା ।

ଯତ୍ ଚ—ଯାହା, ଅବହାସାର୍ଥଂ—ପରିହାସ ନିମିତ୍ତ, ଅସତ୍କୃତଃ ଅସି—ତିରସ୍କୃତ ହୋଇଅଛନ୍ତି, ବିହାରଶଯ୍ୟାସନଭୋଜନେଷୁ—ବିହାର (ଭ୍ରମଣାଦି) ଶଯ୍ୟା (ଶୋଇବା) ଆସନ (ବସିବା) ଓ ଭୋଜନ (ଖାଇବା) ଇତ୍ୟାଦି କର୍ମମାନଙ୍କରେ, ଏକଃ—ଏକାକୀ, ଅଥବା ଅପି—ଅବା, ଅଚ୍ୟୁତ—ହେ ନିର୍ବିକାର !, ତତ୍ସମକ୍ଷଂ—ସେ (ପରିହାସକାରୀ) ମାନଙ୍କ ସାକ୍ଷାତରେ, ତତ୍—ସେହି ସବୁ ଅପରାଧ (ନିମିତ୍ତ), କ୍ଷାମୟେ—କ୍ଷମାପ୍ରାର୍ଥନା କରୁଅଛି, ତ୍ୱାଂ—ଆପଣଙ୍କୁ, ଅହଂ—ମୁଁ, ଅପ୍ରମେୟଂ—ପରିମାଣରୁ ଅତୀତ । ୪୨ ।

ଅନୁବାଦ ।

ହେ ଅଚ୍ୟୁତ ! ବିହାର, ଶୟନ, ଆସନ, ଓ ଭୋଜନାଦିରେ ଏକାକୀ ଅବା (ପରିହାସି) ଲୋକ ସମକ୍ଷରେ ଆପଣଙ୍କୁ ପରିହାସରେ, ଯାହା ତିରସ୍କାର କରିଥିଲି, ସେଥିପାଇଁ ଅଚିନ୍ତ୍ୟ ପ୍ରଭାବ ଆପଣଙ୍କୁ ମୁଁ କ୍ଷମାପ୍ରାର୍ଥନା କରୁଅଛି । ୪୨ ।

Digitized by PPRACHIN, SOA

ବଂଶଦତ୍ତବ୍ୟାଖ୍ୟା ।

ଅର୍ଜ୍ଜୁନ କହୁଅଛନ୍ତି, ହେ ଅଚ୍ୟୁତ ! ମୁଁ ଆପଣଙ୍କୁ ସଖା ବୋଲି ଜାଣିଥିବାରୁ କ୍ରୀଡ଼ା-ସମୟରେ, ଶୋଇଲାବେଳେ, ଅଥବା ସିଂହାସନାଦିରେ ବସିଥିବା କାଳରେ, ଆପଣ ଏକାକୀ ଥିଲେ, ବା ସଖାଦି ବନ୍ଧୁବର୍ଗରେ ବେଷ୍ଟିତ ଥିଲେ ସୁଦ୍ଧା, ମୁଁ ପରିହାସ ଛଳରେ କେତେ ତିରସ୍କାର କରିଅଛି । ଏବେ ଜାଣିପାରିଲି, ଯେ ଆପଣ, ପରମପୁରୁଷ ଓ ଅଚ୍ୟୁତ ଅର୍ଥାତ୍ ଘୃଣା, ଦ୍ୱେଷାଦି ମାନସିକ ବିକାର ରହିତ ଏବଂ ପ୍ରମାଣ ପ୍ରମେୟାଦିର ଅତୀତ । ଅତଏବ ବିନୟଭାବରେ ମୋହର ସେହି ପୂର୍ବକୃତ ଅପରାଧ ନିମିତ୍ତ, ଆପଣଙ୍କୁ କ୍ଷମାପ୍ରାର୍ଥନା କରୁଅଛି, ଅପରାଧ ମାର୍ଜ୍ଜନା କରିବା ହେଉନ୍ତୁ । ୪୨ ।

ଶ୍ଳୋକଃ ।

* ପିତାସି ଲୋକସ୍ୟ ଚରାଚରସ୍ୟ, ତ୍ୱମସ୍ୟ ପୂଜ୍ୟଶ୍ଚ ଗୁରୁର୍ଗରୀୟାନ୍ ।
ନ ତ୍ୱତ୍ସମୋଽସ୍ତ୍ୟଭ୍ୟଧିକଃ କୁତୋଽନ୍ୟୋ, ଲୋକତ୍ରୟେଽପ୍ୟପ୍ରତିମପ୍ରଭାବ । ୪୩ ।

ଅନ୍ୱୟଃ ।

ହେ ଅପ୍ରତିମପ୍ରଭାବ ! ତ୍ୱଂ ଅସ୍ୟ ଚରାଚରସ୍ୟ ଲୋକସ୍ୟ ପିତା, ପୂଜ୍ୟଃ ଗୁରୁଃ ଚ ଗରୀୟାନ୍ ଅସି, ଲୋକତ୍ରୟେ ଅନ୍ୟଃ ତ୍ୱତ୍ସମଃ ଅପି ନ ଅସ୍ତି ଅଭ୍ୟଧିକଃ କୁତଃ ? । ୪୩ ।

ଟୀକା ।

ଅଚିନ୍ତ୍ୟପ୍ରଭାବତ୍ୱମେବାହ, ପିତେତି । ନ ବିଦ୍ୟତେ ପ୍ରତିମା ଉପମା ଯସ୍ୟ ସୋଽପ୍ରତିମଃ ତଥାବିଧଃ ପ୍ରଭାବୋ ଯସ୍ୟ ତବ, ହେ ଅପ୍ରତିମପ୍ରଭାବ ! ତ୍ୱମସ୍ୟ ଚରାଚରସ୍ୟ ଲୋକସ୍ୟ ପିତା ଜନକୋଽସି ଅତଏବ ପୂଜ୍ୟଶ୍ଚ ଗୁରୁଶ୍ଚ ଗୁରୋରପି ଗରୀୟାଂଶ୍ଚ ଗୁରୁତରଃ ଅତୋ ଲୋକତ୍ରୟେଽପି ତ୍ୱତ୍ସମ ଏବ ତାବଦନ୍ୟୋ ନାସ୍ତି ପରମେଶ୍ୱରଦନ୍ୟସ୍ୟାଭାବାତ୍ ତ୍ୱତ୍ତୋଽଧିକଃ ପୁନଃ କୁତଃ ସ୍ୟାତ୍ । ୪୩ ।

ପଦବ୍ୟାଖ୍ୟା ।

ପିତା ଅସି—ଉତ୍ପତ୍ତିକର୍ତ୍ତା ଅଟନ୍ତି, ଲୋକସ୍ୟ—ଜଗତର, ଚରାଚରସ୍ୟ—ଜଙ୍ଗମ ଓ ସ୍ଥାବରାତ୍ମକ, ତ୍ୱଂ—ଆପଣ, ଅସ୍ୟ—ଏହି, ପୂଜ୍ୟଶ୍ଚ—ପୂଜନୀୟ, ଗୁରୁଃ—ଉପଦେଶକ, ଗରୀୟାନ୍—ଗୁରୁତର, ନ ତ୍ୱତ୍ସମଃ ଅସ୍ତି—ଆପଣଙ୍କ ସମାନ ହୋଇ ନାହିଁ, ଅଭ୍ୟଧିକଃ—ଶ୍ରେଷ୍ଠ, କୁତଃ—କେଉଁଠାରୁ, ଅନ୍ୟଃ—ଅନ୍ୟ ଜଣେ, ଲୋକତ୍ରୟେଽପି—ତିନିଲୋକରେ ସୁଦ୍ଧା, ଅପ୍ରତିମପ୍ରଭାବ—ହେ ଅତୁଲପରାକ୍ରମ ! । ୪୩ ।

ଅନୁବାଦ ।

ହେ ଅତୁଲପ୍ରଭାବ ! ଏହି ଚରାଚର ଜଗତର ଆପଣ ପିତା, ପୁଣି ପୂଜ୍ୟ, ଗୁରୁ ଓ ଗୁରୁର ମଧ୍ୟ ଗୁରୁ ଅଟନ୍ତି । ଏ ତିନିଲୋକରେ ଆପଣଙ୍କ ସମାନ ଆଉ ଜଣେ ସୁଦ୍ଧା, କେହି ନାହିଁ (ତେବେ) ଶ୍ରେଷ୍ଠ କେଉଁଠାରୁ ଆସିବ ? । ୪୩ ।

ବଂଶଦତ୍ତବ୍ୟାଖ୍ୟା ।

ଅର୍ଜ୍ଜୁନ କହିଲେ, ହେ ଭଗବନ୍ ! ଆପଣଙ୍କ ପ୍ରଭାବ ଅତୁଳନୀୟ ଅଟେ । ଆପଣଙ୍କଠାରୁ ଚରାଚର ଜଗତ ଉତ୍ପନ୍ନ ହୋଇଅଛି, ଅତଏବ, ଆପଣ ଏହାର ପିତା । ଆପଣ ଦେବତାମା-

Digitized by PPRACHIN, SOA

ନଙ୍କର ସ୍ରଷ୍ଟା, ଦେବତା, ଅତଏବ ଆପଣ ସମସ୍ତଙ୍କର ପୂଜ୍ୟ । ଆପଣ ବେଦାଦି ଶାସ୍ତ୍ରର ଉପଦେଷ୍ଟା, ଅତଏବ 'ଗୁରୁ'; ଆପଣଙ୍କ ଅପେକ୍ଷା ଆଉ କେହି ଶ୍ରେଷ୍ଠ ନାହିଁ, ଅତଏବ ଆପଣ 'ଗରୀୟାନ୍' ଅଟନ୍ତି । ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ, ଏ ତ୍ରିଲୋକରେ ଆପଣଙ୍କର ସମାନ ଆଉ ଜଣେ କେହି ନାହିଁ, ତେବେ ଆପଣଙ୍କ ଅପେକ୍ଷା ଶ୍ରେଷ୍ଠ କେଉଁଠାରୁ ଆସିବ ? ଶ୍ରୁତିରେ ମଧ୍ୟ ପ୍ରମାଣ ଅଛି, ଯେ "ନ ତତ୍ସମଶ୍ଚାଭ୍ୟଧିକଶ୍ଚ ଦୃଶ୍ୟତେ" ଅର୍ଥାତ୍ ତାହାଙ୍କ ସମାନ କିମ୍ବା ତାଙ୍କଠାରୁ ଉତ୍କୃଷ୍ଟ ଆଉ କିଛି ଦେଖା ଯାଏ ନାହିଁ । ୪୩ ।

ଶ୍ଳୋକଃ ।

ତସ୍ମାତ୍ ପ୍ରଣମ୍ୟ ପ୍ରଣିଧାୟ କାୟଂ, ପ୍ରସାଦୟେ ତ୍ୱାମହମୀଶମୀଡ୍ୟଂ ।
ପିତେବ ପୁତ୍ରସ୍ୟ ସଖେବ ସଖ୍ୟୁଃ, ପ୍ରିୟଃ ପ୍ରିୟାୟାର୍ହସି ଦେବ ସୋଢୁଂ । ୪୪ ।

ଅନ୍ୱୟଃ ।

ତସ୍ମାତ୍ କାୟଂ ପ୍ରଣିଧାୟ ଈଡ୍ୟଂ ଈଶଂ ତ୍ୱାଂ ପ୍ରଣମ୍ୟ ଅହଂ ପ୍ରସାଦୟେ । ହେ ଦେବ ! ପୁତ୍ରସ୍ୟ ପିତା ଇବ, ସଖ୍ୟୁଃ ସଖା ଇବ, ପ୍ରିୟାୟାଃ ପ୍ରିୟଃ (ଇବ) ସୋଢୁଂ ଅର୍ହସି । ୪୪ ।

ଟୀକା ।

ଯସ୍ମାଦେବଂ ତସ୍ମାଦିତି । ତସ୍ମାତ୍ତ୍ୱାମୀଶଂ ଜଗତ ଈଡ୍ୟଂ ସ୍ତୁତ୍ୟଂ ପ୍ରସାଦୟାମି, କଥଂ କାୟଂ ପ୍ରଣିଧାୟ ଦଣ୍ଡବନ୍ନିପାତ୍ୟ, ପ୍ରଣମ୍ୟ ପ୍ରକର୍ଷେଣ ନତ୍ୱା । ଅତସ୍ତ୍ୱଂ ମମାପରାଧଂ ସୋଢୁଂ କ୍ଷନ୍ତୁମର୍ହସି । କସ୍ୟ କ ଇବ ପୁତ୍ରସ୍ୟାପରାଧଂ କୃପୟା ପିତା ଯଥା ସହତେ, ସଖ୍ୟୁର୍ମିତ୍ରସ୍ୟାପରାଧଂ ସଖା ତତ୍ପାଦବନ୍ଧୁର୍ଯଥା ସହତେ, ପ୍ରିୟଶ୍ଚ ପ୍ରିୟସ୍ୟାପରାଧଂ ତତ୍ପ୍ରିୟାର୍ଥଂ ଯଥା ତଦ୍ୱତ୍ । ୪୪ ।

ପଦବ୍ୟାଖ୍ୟା ।

ତସ୍ମାତ୍—ସେହି ହେତୁରୁ, ପ୍ରଣମ୍ୟ—ନମସ୍କାର କରି, ପ୍ରଣିଧାୟ—(ଭୂମିରେ) ସ୍ଥାପନ କରି, କାୟଂ—ଶରୀରକୁ, ପ୍ରସାଦୟେ—ପ୍ରସନ୍ନ କରିବାକୁ ଇଚ୍ଛା କରୁଅଛି, ତ୍ୱାଂ—ଆପଣଙ୍କୁ, ଅହଂ—ମୁଁ, ଈଶଂ—ଜଗତ୍ସ୍ୱାମୀ, ଈଡ୍ୟଂ—ଜଗତ୍ପୂଜ୍ୟ, ପିତା ଇବ—ପିତାପରି, ପୁତ୍ରସ୍ୟ—ପୁତ୍ରର, ସଖେବ—ସଖାପରି ସଖ୍ୟୁଃ—ମିତ୍ରର, ପ୍ରିୟଃ—ପତି ବା ଅସ୍ୱାମୀ, ପ୍ରିୟାୟାଃ—ପତ୍ନୀର, ଅର୍ହସି—ଯୋଗ୍ୟ ହେଉନ୍ତୁ, ଦେବ—ହେ ଜ୍ୟୋତିଃ ସ୍ୱରୂପ !, ସୋଢୁଂ—(ମୋହର ଅପରାଧ) କ୍ଷମା କରିବାକୁ । ୪୪ ।

ଅନୁବାଦ ।

ସେହି ହେତୁରୁ ଜଗତ୍ସ୍ୱାମୀ ଓ ସର୍ବପୂଜ୍ୟ ଯେ ଆପଣ, ଆପଣଙ୍କୁ ଭୂମିଷ୍ଠ ହୋଇ ନମସ୍କାର କରି ପ୍ରସନ୍ନ କରିବାକୁ ପ୍ରାର୍ଥନା କରୁଅଛି । ହେ ଦେବ ! ଯେପରି ପିତା ପୁତ୍ରର, ସଖା ମିତ୍ରର, ଓ ପତି ପତ୍ନୀର (ଅପରାଧ କ୍ଷମା କରେ) ସେପରି, ଆପଣ ମୋହର ଅପରାଧ କ୍ଷମା କରନ୍ତୁ । ୪୪ ।

ବିଶଦବ୍ୟାଖ୍ୟା ।

ଅର୍ଜୁନ କହୁଅଛନ୍ତି, ହେ ଦେବ ! ଆପଣ, ଏ ଜଗତର ଈଶ ଓ ବ୍ରହ୍ମାଦି ଦେବତାଙ୍କର ମଧ୍ୟ ବନ୍ଦନୀୟ ଅଟନ୍ତି । ଆପଣଙ୍କୁ ସାଷ୍ଟାଙ୍ଗ ଭୂମିଷ୍ଠ ନମସ୍କାର କରି କ୍ଷମା ପ୍ରାର୍ଥନା କରୁଅଛି, ଯେ ଆପଣ, ମୋହର ସମସ୍ତ ଅପରାଧ କ୍ଷମା କରନ୍ତୁ । ଶିଶୁର ପିତାଭିନ୍ନ ଆଉ କେହି ଶରଣ ନାହିଁ,

Digitized by PPRACHIN, SOA

ସଖାର ମନକଥା ସଖାଭିନ୍ନ ଆଉ କେହି ବୁଝନ୍ତି ନାହିଁ, ପତିଭିନ୍ନ, ପତ୍ନୀର ଅନ୍ୟଗତି ନାହିଁ । ସୁତରାଂ ଶିଶୁପୁତ୍ରର ଅପରାଧକୁ ପିତା, ଓ ମିତ୍ରର ଅପରାଧକୁ ମିତ୍ର, ଏବଂ ସ୍ତ୍ରୀର ଅପରାଧକୁ ସ୍ୱାମୀ କ୍ଷମା କରେ । ପୁତ୍ର, ପିତାର ଯେପରି ଅନୁଗତ, ସଖା, ଯେପରି ସଖାଠାରେ ସ୍ନେହବଦ୍ଧ ଓ ପତ୍ନୀ, ଯେପରି ପତିର ଅଧୀନା, ମୁଁ, ସେହିପରି ଆପଣଙ୍କର ଅନୁଗତ, ସ୍ନେହବଦ୍ଧ ଓ ଅଧୀନ ଅଟେ । ତେବେ, ଆପଣଙ୍କ ଭିନ୍ନ, ମତେ ଆଉ କିଏ କ୍ଷମା କରିବ ? ଅତଏବ ମୋହର ଅପରାଧ କ୍ଷମା କରନ୍ତୁ । ୪୪ ।

ଶ୍ଲୋକଃ ।

ଅଦୃଷ୍ଟପୂର୍ବଂ ହୃଷିତୋଽସ୍ମି ଦୃଷ୍ଟ୍ୱା, ଭୟେନ ଚ ପ୍ରବ୍ୟଥିତଂ ମନୋ ମେ ।
ତଦେବ ମେ ଦର୍ଶୟ ଦେବ ରୂପଂ ପ୍ରସୀଦ ଦେବେଶ ଜଗନ୍ନିବାସ । ୪୫ ।

ଅନ୍ୱୟଃ ।

ଅଦୃଷ୍ଟପୂର୍ବଂ (ରୂପଂ) ଦୃଷ୍ଟ୍ୱା ହୃଷିତଃ ଅସ୍ମି ଚ ମେ ମନଃ ଭୟେନ ପ୍ରବ୍ୟଥିତଂ, ହେ ଦେବେଶ! ତତ୍ ଏବ ରୂପଂ ମେ ଦର୍ଶୟ, ହେ ଜଗନ୍ନିବାସ ! ପ୍ରସୀଦ । ୪୫ ।

ଟୀକା ।

ଏବଂ କ୍ଷମୟିତ୍ୱା ପ୍ରାର୍ଥୟତେ । ଅଦୃଷ୍ଟେତ୍ୟାଦିନା । ହେ ଦେବ! ପୂର୍ବମଦୃଷ୍ଟଂ ତବ ରୂପଂ ଦୃଷ୍ଟ୍ୱା ହୃଷିତୋହୃଷ୍ଟୋଽସ୍ମି ତଥା ଭୟେନ ଚ ମେ ମନଃ ପ୍ରବ୍ୟଥିତଂ ପ୍ରଚଳିତଂ ତସ୍ମାନ୍ମମ ବ୍ୟଥାନିବୃତ୍ତୟେ ତଦେବ ରୂପଂ ଦର୍ଶୟ ହେ ଦେବେଶ! ହେ ଜଗନ୍ନିବାସ ! ପ୍ରସନ୍ନୋଭବ । ୪୫ ।

ପଦବ୍ୟାଖ୍ୟା ।

ଅଦୃଷ୍ଟପୂର୍ବଂ— ପୂର୍ବରେ ଦେଖା ଯାଇ ନ ଥିବା ( ରୂପକୁ ), ହୃଷିତଃ ଅସ୍ମି— ହୃଷ୍ଟ ( ହର୍ଷପ୍ରାପ୍ତ ) ହୋଇ ଅଛି, ଦୃଷ୍ଟ୍ୱା— ଦେଖି, ଭୟେନ ଚ— ଭୟରେ, ପ୍ରବ୍ୟଥିତଂ— ବ୍ୟାକୁଳ, ମନଃ— ଚିତ୍ତ, ମେ— ମୋହର, ତତ୍-ଏବ—କେବଳ ସେହି, ମେ— ମତେ, ଦର୍ଶୟ— ଦେଖାଇବା ହେଉନ୍ତୁ, ଦେବେଶ— ହେ ଦେବଶ୍ରେଷ୍ଠ!, ଜଗନ୍ନିବାସ —ହେ ବିଶ୍ୱାଧାର ! । ୪୫ ।

ଅନୁବାଦ ।

ହେ ଦେବେଶ! ଆପଣଙ୍କର ଏହି ଅପୂର୍ବ ରୂପ ଦର୍ଶନ କରି ମୁଁ ସନ୍ତୁଷ୍ଟ ହେଲି ସତ, ମାତ୍ର ମୋହର ମନ ଭୟରେ ବ୍ୟାକୁଳ ହେଉଅଛି । ହେ ଜଗନ୍ନିବାସ! ପ୍ରସନ୍ନ ହୋଇ ସେହି ପୂର୍ବ ମନୋହର ରୂପ, ମତେ ଦେଖାଇବା ହେଉନ୍ତୁ । ୪୫ ।

ବିଶଦବ୍ୟାଖ୍ୟା ।

ଅର୍ଜୁନ କହିଲେ, ହେ ଦେବେଶ ! ଆପଣଙ୍କର ଏ ବିଶ୍ୱରୂପ, ମୁଁ କିବା ଆଉ କେହି କେବେ ଦେଖି ନାହିଁ । ସୁତରାଂ ଏ ଆଶ୍ଚର୍ଯ୍ୟରୂପ ଦେଖି ମୁଁ ବିସ୍ମିତ, ମୋହିତ ଓ ସନ୍ତୁଷ୍ଟ ହେଲି ସତ, ମାତ୍ର ଏ ବିକଟ ଭୟଙ୍କର ରୂପ ଦର୍ଶନରେ ମୋହର ମନ, ଭୟରେ ବ୍ୟାକୁଳ ହେଉଅଛି । ଆପଣଙ୍କର ରୂପ, ଯେ ଅନନ୍ତ ଐଶ୍ୱର୍ଯ୍ୟ ଓ ମହିମାପ୍ରକାଶକ, ତାହା ସତ, ମାତ୍ର ତାହାର ବିଶାଳତା, ମୋହର କ୍ଷୁଦ୍ର ମନ ଧାରଣ କରିବାକୁ ଅସମର୍ଥ, ଅତଏବ ହେ ଜଗନ୍ନିବାସ! ଆପଣ, ପ୍ରସନ୍ନ ହୋଇ ସେହି ଭକ୍ତମନୋହର ନବଜଳଧର ଶ୍ୟାମଳ ମଧୁରମୂର୍ତ୍ତିରେ ଦର୍ଶନ ଦେବା ହେଉନ୍ତୁ । ୪୫ ।

Digitized by PPRACHIN, SOA

ଶ୍ଲୋକଃ ।

କିରୀଟିନଂ ଗଦିନଂ ଚକ୍ରହସ୍ତ,ମିଚ୍ଛାମି ତ୍ୱାଂ ଦ୍ରଷ୍ଟୁମହଂ ତଥୈବ ।
ତେନୈବ ରୂପେଣ ଚତୁର୍ଭୁଜେନ, ସହସ୍ରବାହୋ ଭବ ବିଶ୍ୱମୂର୍ତ୍ତେ । ୪୬ ।

ଅନ୍ୱୟଃ ।

ହେ ସହସ୍ରବାହୋ ! ହେ ବିଶ୍ୱମୂର୍ତ୍ତେ ! ଅହଂ ତଥା କିରୀଟିନଂ ଗଦିନଂ ଚକ୍ରହସ୍ତଂ ଏବ ତ୍ୱାଂ ଦ୍ରଷ୍ଟୁଂ ଇଚ୍ଛାମି ( ଅତଃ ) ତେନ ଏବ ଚତୁର୍ଭୁଜେନ ରୂପେଣ ଭବ । ୪୬ ।

ଟୀକା ।

ତଦେବ ରୂପଂ ବିଶେଷୟନ୍ନାହ । କିରୀଟିନମିତି । କିରୀଟବନ୍ତଂ ଗଦାବନ୍ତଂ ଚକ୍ରହସ୍ତଂ ଚ ତ୍ୱାଂ ଦ୍ରଷ୍ଟୁମିଚ୍ଛାମି ଯଥା ପୂର୍ବଂ ଦୃଷ୍ଟୋଽସି ତଥୈବ । ଅତଃ ହେ ସହସ୍ରବାହୋ ! ହେ ବିଶ୍ୱମୂର୍ତ୍ତେ ! ଇଦଂ ବିଶ୍ୱରୂପଂ ଉପସଂହୃତ୍ୟ ତେନୈବ କିରୀଟାଦିଯୁକ୍ତେନ ଚତୁର୍ଭୁଜେନ ରୂପେଣ ଭବ ଆବିର୍ଭବ । ତଦନେନ ଶ୍ରୀକୃଷ୍ଣମର୍ଜ୍ଜୁନଃ ପୂର୍ବମପି କିରୀଟାଦିଯୁକ୍ତମେବ ପଶ୍ୟତୀତି ଗମ୍ୟତେ, ଯତ୍ତୁ ପୂର୍ବମୁକ୍ତଂ ବିଶ୍ୱରୂପଦର୍ଶନେ କିରୀଟିନଂ ଗଦିନଂ ଚକ୍ରିଣଂ ଚ ପଶ୍ୟାମୀତି, ତଦଦ୍ଭୁତକିରୀଟାଦ୍ୟଭିପ୍ରାୟେଣ, ଯଦ୍ୱା ଏତାବନ୍ତଂ କାଲଂ ଯଂ ତ୍ୱାଂ କିରୀଟିନଂ ଗଦିନଂ ଚକ୍ରିଣଂ ଚ ସୁପ୍ରସନ୍ନମପଶ୍ୟଂ ତମେବେଦାନୀଂ ତେଜୋରାଶିଂ ଦୁର୍ନିରୀକ୍ଷ୍ୟଂ ପଶ୍ୟାମୀତ୍ୟେବମତ୍ର ବଚନସ୍ୟ ବ୍ୟକ୍ତିରିତ୍ୟବିରୋଧଃ । ୪୬ ।

ପଦବ୍ୟାଖ୍ୟା ।

କିରୀଟିନଂ— ମୁକୁଟଧାରୀ, ଗଦିନଂ— ଗଦାଧାରୀ, ଚକ୍ରହସ୍ତଂ— ଚକ୍ରଧାରୀ, ଇଚ୍ଛାମି— ଇଚ୍ଛା କରୁଅଛି, ତ୍ୱାଂ— ଆପଣଙ୍କୁ, ଦ୍ରଷ୍ଟୁଂ— ଦେଖିବାକୁ, ଅହଂ— ମୁଁ, ତଥୈବ— ସେହିପରି କେବଳ, ତେନ ଏବ ରୂପେଣ— କେବଳ ସେହି ରୂପରେ, ଚତୁର୍ଭୁଜେନ— ଚାରିଭୁଜବିଶିଷ୍ଟ, ସହସ୍ରବାହୋ— ହେ ଅସଂଖ୍ୟଭୁଜବିଶିଷ୍ଟ !, ଭବ— ହୁଅ, ବିଶ୍ୱମୂର୍ତ୍ତେ— ହେ ବିଶ୍ୱରୂପ ! । ୪୬ ।

ଅନୁବାଦ ।

ହେ ସହସ୍ରବାହୋ ! ମୁଁ ଆପଣଙ୍କୁ ସେହି ପ୍ରକାର କିରୀଟ, ଗଦା ଓ ଚକ୍ରଧାରୀ ରୂପରେ ଦେଖିବାକୁ ଇଚ୍ଛା କରୁଅଛି । ହେ ବିଶ୍ୱମୂର୍ତ୍ତେ ! ବର୍ତ୍ତମାନ, କେବଳ ସେହି ଚତୁର୍ଭୁଜ ମୂର୍ତ୍ତିରେ ( ଆପଣ ) ଆବିର୍ଭୂତ ହେଉନ୍ତୁ । ୪୬ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ କହିଲେ, ହେ ସହସ୍ରଭୁଜ ! ଆପଣଙ୍କର ସେହି ଶଂଖ-ଚକ୍ର-ଗଦା-ପଦ୍ମ-ଧାରୀ ଓ ମୁକୁଟମଣ୍ଡିତ ଚତୁର୍ଭୁଜ ମୂର୍ତ୍ତି ଦେଖିବାକୁ ମୋହର ବଡ଼ ଇଚ୍ଛା ହେଉଅଛି, ଅତଏବ ହେ ବିଶ୍ୱ-ମୂର୍ତ୍ତେ ! ଅନୁଗ୍ରହ କରି ନାନା ଉତ୍ତୋଳିତ ଅସ୍ତ୍ରଧାରୀ ଅସଂଖ୍ୟ ଭୁଜବିଶିଷ୍ଟ ଓ ପ୍ରଜ୍ୱଳିତ ହୁତାଶନ ସମ ମୁଖମଣ୍ଡଳଯୁକ୍ତ ଭୟଙ୍କର ମୂର୍ତ୍ତି ପରିବର୍ତ୍ତରେ, ସେହି ଭକ୍ତଜନମନୋଲୋଭା ପରମଶୋଭା-ଯୁକ୍ତ ଚତୁର୍ଭୁଜ ମୂର୍ତ୍ତି ଧାରଣ କରିବା ହେଉନ୍ତୁ । ୪୬ ।

ଶ୍ଲୋକଃ ।

ଶ୍ରୀଭଗବାନୁବାଚ ।

* ମୟା ପ୍ରସନ୍ନେନ ତବାର୍ଜ୍ଜୁନେଦଂ, ରୂପଂ ପରଂ ଦର୍ଶିତମାତ୍ମଯୋଗାତ୍ ।
ତେଜୋମୟଂ ବିଶ୍ୱମନନ୍ତମାଦ୍ୟଂ, ଯନ୍ମେ ତ୍ୱଦନ୍ୟେନ ନ ଦୃଷ୍ଟପୂର୍ବଂ । ୪୭ ।

Digitized by PPRACHIN, SOA

### ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ହେ ଅର୍ଜ୍ଜୁନ ! ପ୍ରସନ୍ନେନ ମୟା ମେ ଇଦଂ ତେଜୋମୟଂ ଅନନ୍ତଂ ଆଦ୍ୟଂ ପରଂ ବିଶ୍ୱଂ ରୂପଂ ଆତ୍ମଯୋଗାତ୍ ଦର୍ଶିତଂ ଯତ୍ ତ୍ୱଦନ୍ୟେନ ନ ଦୃଷ୍ଟପୂର୍ବ୍ବଂ । ୪୭ ।

### ଟୀକା ।

ଏବଂ ପ୍ରାର୍ଥିତଃ ସନ୍ତ୍ରସ୍ତମାଶ୍ୱାସୟନ୍ ଶ୍ରୀଭଗବାନୁବାଚ । ମୟେତି ତ୍ରିଭିଃ । ହେ ଅର୍ଜ୍ଜୁନ ! କିମିତି ତ୍ୱଂ ବିଭେଷି ଯତୋ ମୟା ପ୍ରସନ୍ନେନ କୃପୟା ତବେଦଂ ପରମୁତ୍ତମଂ ରୂପଂ ଦର୍ଶିତଂ ଆତ୍ମନୋ ମମ ଯୋଗାତ୍ ଯୋଗମାୟାସାମର୍ଥ୍ୟାତ୍ ପରତ୍ୱମେବାହ, ତେଜୋମୟଂ ବିଶ୍ୱାତ୍ମକମନନ୍ତମାଦ୍ୟଂ ଚ ଯନ୍ମମ ରୂପଂ ତ୍ୱଦନ୍ୟେନ ତ୍ୱାଦୃଶାଦ୍‌ଭକ୍ତାଦନ୍ୟେନ ପୂର୍ବ୍ବଂ ନ ଦୃଷ୍ଟଂ । ୪୭ ।

### ପଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ଉବାଚ—ଶ୍ରୀଭଗବାନ୍ କହିଲେ, ମୟା—ଆମ୍ଭେ, ପ୍ରସନ୍ନେନ—ସନ୍ତୁଷ୍ଟ ହୋଇ, ତବ—ତୁମ୍ଭଙ୍କୁ, ଅର୍ଜ୍ଜୁନ—ହେ ଅର୍ଜ୍ଜୁନ !, ଇଦଂ—ଏହି, ରୂପଂ—ରୂପକୁ, ପରଂ—ଉତ୍କୃଷ୍ଟ, ଦର୍ଶିତଂ—ଦେଖାଇଲୁଁ, ଆତ୍ମଯୋଗାତ୍—ଆପଣାର ଯୋଗବଳରେ, ତେଜୋମୟଂ—ତେଜଃସ୍ୱରୂପ, ବିଶ୍ୱଂ—ବିଶ୍ୱାତ୍ମକ ବା ବିଶ୍ୱରୂପ, ଅନନ୍ତଂ—ଅସୀମ, ଆଦ୍ୟଂ—ଜଗତ୍‌କାରଣ, ଯତ୍ ମେ—ଯେଉଁ ରୂପକୁ ଆମ୍ଭର, ତ୍ୱଦନ୍ୟେନ—ତୁମ୍ଭ ପରି ଭକ୍ତମାନଙ୍କ ଭିନ୍ନ କେହି, ନ ଦୃଷ୍ଟପୂର୍ବ୍ବଂ—ପୂର୍ବ୍ବରେ ଦେଖି ନ ଥିଲେ । ୪୭ ।

### ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ଆମ୍ଭେ ପ୍ରସନ୍ନ ହୋଇ ଆତ୍ମଯୋଗବଳରେ ଏହି ତେଜୋମୟ, ଅସୀମ, ଅନାଦି ଓ ଉତ୍କୃଷ୍ଟ ବିଶ୍ୱରୂପ ତୁମ୍ଭଙ୍କୁ ଦେଖାଇଲୁଁ । ଯାହା କି ତୁମ୍ଭ ଭିନ୍ନ ଆଉ କେହି ଏଥି ପୂର୍ବ୍ବରୁ ଦେଖି ନାହାନ୍ତି । ୪୭ ।

### ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ, ବାରମ୍ବାର ବିଶ୍ୱରୂପ ତ୍ୟାଗ କରିବାକୁ ଭଗବାନଙ୍କୁ ପ୍ରାର୍ଥନା କରିବାରୁ, ଶ୍ରୀଭଗବାନ୍ କହୁଅଛନ୍ତି, ହେ ଅର୍ଜ୍ଜୁନ ! ଆମ୍ଭର ଏହି ଯେଉଁ ବିଶ୍ୱରୂପ, ଏହା ତେଜୋମୟ ଅଟେ, ଏହାର ସୀମା ନାହିଁ କି ଆଦି ନାହିଁ, ସୁତରାଂ ଏହା ସମସ୍ତ ରୂପ ଅପେକ୍ଷା ଶ୍ରେଷ୍ଠ ଅଟେ । ଏଥି ପୂର୍ବ୍ବରୁ ଧୃତରାଷ୍ଟ୍ରଙ୍କ ଭବନରେ ଭୀଷ୍ମାଦିଙ୍କୁ ଓ ଶୈଶବ କାଳରେ ମାତା ଯଶୋଦାଙ୍କୁ ଏବଂ ମଥୁରା ଗମନ ସମୟରେ ଅକ୍ରୂରଙ୍କୁ ବିଶ୍ୱରୂପ ଦେଖାଇଥିଲୁଁ ସତ, ମାତ୍ର ସେ ରୂପ ବର୍ତ୍ତମାନର ଏହି ବିଶ୍ୱରୂପର ଏକ ଅଂଶମାତ୍ର, ଏପରି ସର୍ବ୍ବବ୍ୟାପୀ କି ସର୍ବ୍ବାଙ୍ଗସମ୍ପନ୍ନ ନ ଥିଲା । ଏରୂପକୁ ତୁମ୍ଭ ଭିନ୍ନ, ଆଉ କେହି ଆଜ ଯାଏ ଦେଖି ନାହାନ୍ତି । ଆମ୍ଭେ ପ୍ରସନ୍ନ ହୋଇ କୃପା କରି ଆପଣାର ଯୋଗ ବଳରେ ତୁମ୍ଭଙ୍କୁ ଏହା ଦେଖାଇଲୁଁ । ମାତ୍ର ତୁମ୍ଭେ ସେଥିରେ କାହିଁକି ଭୟ କରୁଅଛ ? ତୁମ୍ଭଙ୍କୁ ଭୟ ଦେଖାଇବାକୁ ଆମ୍ଭେ ଏ ରୂପ ଦେଖାଇ ନାହୁଁ ।୪୭।

### ଶ୍ଳୋକଃ ।

ନ ବେଦଯଜ୍ଞାଧ୍ୟୟନୈର୍ନ ଦାନୈର୍ନ ଚ କ୍ରିୟାଭିର୍ନ ତପୋଭିରୁଗ୍ରୈଃ ।
ଏବଂରୂପଃ ଶକ୍ୟୋଽହଂ ନୃଲୋକେ, ଦ୍ରଷ୍ଟୁଂ ତ୍ୱଦନ୍ୟେନ କୁରୁପ୍ରବୀର । ୪୮ ।

Digitized by PPRACHIN, SOA

ଅନ୍ୱୟଃ ।

ହେ କୁରୁପ୍ରବୀର ! ଏବଂ ରୂପଃ ଅହଂ ନୃଲୋକେ ତ୍ୱଦନ୍ୟେନ ବେଦଯଜ୍ଞାଧ୍ୟୟନୈଃ ନ ଦ୍ରଷ୍ଟୁଂ ଶକ୍ୟଃ ନ ଦାନୈଃ ନ କ୍ରିୟାଭିଃ ନ ଉଗ୍ରୈଃ ତପୋଭିଃ (ଦ୍ରଷ୍ଟୁଂ ଶକ୍ୟଃ) । ୪୮ ।

ଟୀକା ।

ଏତଦ୍ଦର୍ଶନମତିଦୁର୍ଲ୍ଲଭଂ ଲବ୍ଧ୍ୱା ତ୍ୱଂ କୃତାର୍ଥୋଽସୀତ୍ୟାହ । ନ ବେଦେତି । ବେଦାଧ୍ୟୟନବ୍ୟତିରେକେଣ ଯଜ୍ଞାଧ୍ୟୟନସ୍ୟାଶକ୍ୟତ୍ୱାତ୍ ଯଜ୍ଞଶବ୍ଦେନ ଯଜ୍ଞବିଦ୍ୟାଃ କଳ୍ପସୂତ୍ରାଦ୍ୟା ଲକ୍ଷ୍ୟନ୍ତେ, ବେଦାନାଂ ଯଜ୍ଞବିଦ୍ୟାନାଂ ଚାଧ୍ୟୟନୈରିତ୍ୟର୍ଥଃ, ନ ଚ ଦାନୈଃ ନ ଚ କ୍ରିୟାଭିରଗ୍ନିହୋତ୍ରାଦିଭିର୍ନ ଚୋଗ୍ରୈସ୍ତପୋଭିଶ୍ଚାନ୍ଦ୍ରାୟଣାଦିଭିରେବଂ ରୂପୋଽହଂ ତ୍ୱତ୍ତୋଽନ୍ୟେନ ମନୁଷ୍ୟଲୋକେ ଦ୍ରଷ୍ଟୁଂ ଶକ୍ୟଃ, ଅପି ତୁ ତ୍ୱମେବ କେବଳଂ ମତ୍ପ୍ରସାଦେନ ଦୃଷ୍ଟ୍ୱା କୃତାର୍ଥୋଽସି । ୪୮ ।

ପଦବ୍ୟାଖ୍ୟା ।

ନ—ନାହିଁ, ବେଦଯଜ୍ଞାଧ୍ୟୟନୈଃ—ବେଦ ଓ ଯଜ୍ଞ ବିଦ୍ୟାର ଅଧ୍ୟୟନଦ୍ୱାରା, ନ ଦାନୈଃ—ଦାନଦ୍ୱାରା ନୁହେ, ନ ଚ କ୍ରିୟାଭିଃ—ଅଗ୍ନିହୋତ୍ରାଦି କର୍ମଦ୍ୱାରା ନୁହେ, ନ ତପୋଭିଃ ଉଗ୍ରୈଃ—କଠିନ (ଚାନ୍ଦ୍ରାୟଣାଦି) ତପସ୍ୟାଦ୍ୱାରା ମଧ୍ୟ ନୁହେ, ଏବଂ ରୂପଃ—ଏପ୍ରକାର (ବିଶ୍ୱ) ରୂପଧାରୀ, ଶକ୍ୟଃ—ସମର୍ଥ, ଅହଂ—ଆମ୍ଭଙ୍କୁ, ନୃଲୋକେ—ମନୁଷ୍ୟଲୋକରେ (ପୃଥିବୀରେ), ଦ୍ରଷ୍ଟୁଂ—ଦେଖିବାକୁ, ତ୍ୱଦନ୍ୟେନ—ତୁମ୍ଭ ଭିନ୍ନ ଅନ୍ୟ, କୁରୁପ୍ରବୀର—ହେ କୁରୁକୁଳଶ୍ରେଷ୍ଠ ! । ୪୮ ।

ଅନୁବାଦ ।

ହେ କୁରୁଶ୍ରେଷ୍ଠ ! ମନୁଷ୍ୟଲୋକରେ ବେଦପାଠ, ଯଜ୍ଞାନୁଷ୍ଠାନ, ଦାନ, କର୍ମ ଓ କଠୋର ତପସ୍ୟାଦିଦ୍ୱାରା ମଧ୍ୟ, ତୁମ୍ଭ ଭିନ୍ନ, କେହି ଆମ୍ଭର ବିଶ୍ୱରୂପ ଦେଖିବାକୁ ସମର୍ଥ ହୋଇ ନାହାନ୍ତି । ୪୮ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ କୁରୁକୁଳଶ୍ରେଷ୍ଠ ଅର୍ଜ୍ଜୁନ ! ତୁମ୍ଭେ ଆମ୍ଭର ଏହି ବିଶ୍ୱରୂପ ଦର୍ଶନରେ ଭୀତ ହେଉଅଛ, ମାତ୍ର ଏ ପୃଥିବୀରେ କେତେ ଲୋକ, ଅର୍ଥ ବିଚାରପୂର୍ବକ ସମସ୍ତ ବେଦ ଓ ଯଜ୍ଞବିଦ୍ୟା ଅର୍ଥାତ୍ କଳ୍ପସୂତ୍ରାଦି ଅଧ୍ୟୟନ କରି, ତୁଳାପୁରୁଷ, କନ୍ୟା, ଗୋ, ଅନ୍ନ, ସୁବର୍ଣ୍ଣାଦି ଦାନ କରି, ପୁଣି ଅଗ୍ନିହୋତ୍ର ଓ ଅଶ୍ୱମେଧାଦି କର୍ମର ଅନୁଷ୍ଠାନ, ଏବଂ କୃଚ୍ଛ୍ରଚାନ୍ଦ୍ରାୟଣ ଓ ଇନ୍ଦ୍ରିୟସଂଯମାଦି ରୂପ କଠୋର ତପସ୍ୟା କରି ମଧ୍ୟ, ଆମ୍ଭଙ୍କୁ ଏ ବିଶ୍ୱରୂପ ଧାରଣ କରିବାର ଦେଖି ନାହାନ୍ତି, ଅର୍ଥାତ୍ ଆମ୍ଭର ଏ ବିଶ୍ୱରୂପ ଦର୍ଶନ କରିବାକୁ ସମର୍ଥ ହୋଇ ନାହାନ୍ତି, କେବଳ ତୁମ୍ଭ ପ୍ରତି ଆମ୍ଭେ ଅନୁଗ୍ରହ କରି ଏ ରୂପ ତୁମ୍ଭଙ୍କୁ ଦେଖାଇଲୁଁ । ଏଥିରେ ତୁମ୍ଭେ କୃତାର୍ଥ ନ ହୋଇ ଭୟ କରୁଅଛ କାହିଁକି ? । ୪୮ ।

ଶ୍ଳୋକଃ ।

ମା ତେ ବ୍ୟଥା ମା ଚ ବିମୂଢ଼ଭାବୋ, ଦୃଷ୍ଟ୍ୱା ରୂପଂ ଘୋରମୀଦୃଙ୍ମମେଦଂ ।
ବ୍ୟପେତଭୀଃ ପ୍ରୀତମନାଃ ପୁନସ୍ତ୍ୱଂ, ତଦେବ ମେ ରୂପମିଦଂ ପ୍ରପଶ୍ୟ । ୪୯ ।

Digitized by PPRACHIN, SOA

### ଅନ୍ୱୟଃ ।

ଈଦୃକ୍ ଘୋରଂ ଇଦଂ ମମ ରୂପଂ ଦୃଷ୍ଟ୍ୱା ତେ ବ୍ୟଥା ମା ଚ ବିମୂଢ଼ଭାବଃ ମା (ଭୂତ୍) । ବ୍ୟପେତଭୀଃ ପ୍ରୀତମନାଃ ତ୍ୱଂ ତତ୍ ଏବ ମେ ଇଦଂ ରୂପଂ ପୁନଃ ପ୍ରପଶ୍ୟ । ୪୯ ।

### ଟୀକା ।

ଏବମପି ଚେତ୍ତ୍ୱେଦଂ ଘୋରଂ ରୂପଂ ଦୃଷ୍ଟ୍ୱା ବ୍ୟଥା ଭବତି, ତର୍ହି ତଦେବ ରୂପଂ ଦର୍ଶୟାମୀତ୍ୟାହ । ମା ତେ ଇତି । ଈଦୃକ୍ ଈଦୃଶଂ ଘୋରଂ ମଦୀୟଂ ରୂପଂ ଦୃଷ୍ଟ୍ୱା ତେ ବ୍ୟଥା ମାସ୍ତୁ ବିମୂଢ଼ଭାବୋ ବିମୂଢ଼ତ୍ୱଂ ଚ ମାସ୍ତୁ ବିଗତଭୟଃ ପ୍ରୀତମନାଶ୍ଚ ସନ୍ ପୁନସ୍ତ୍ୱଂ ତଦେବେଦଂ ମମ ରୂପଂ ପ୍ରକର୍ଷେଣ ପଶ୍ୟ । ୪୯ ।

### ପଦବ୍ୟାଖ୍ୟା ।

ମା ତେ ବ୍ୟଥା—ତୁମ୍ଭର ବ୍ୟଥା ନ ହେଉ, ମା ଚ ବିମୂଢ଼ଭାବଃ—ବିହ୍ୱଳତା ମଧ୍ୟ ନ ହେଉ, ଦୃଷ୍ଟ୍ୱା—ଦେଖି, ରୂପଂ—ରୂପକୁ, ଘୋରଂ—ଭୟାନକ, ଈଦୃକ୍—ଏପ୍ରକାର, ମମ ଇଦଂ—ଆମ୍ଭର ଏହି, ବ୍ୟପେତଭୀଃ—ନିର୍ଭୟ, ପ୍ରୀତମନାଃ—ପ୍ରସନ୍ନ, ପୁନଃ—ପୁଣି, ତ୍ୱଂ—ତୁମ୍ଭେ, ତତ୍—ସେହି, ଏବ—କେବଳ, ମେ—ଆମ୍ଭର, ରୂପଂ—ରୂପକୁ, ଇଦଂ—ଏହି, ପ୍ରପଶ୍ୟ—ଉତ୍ତମରୂପେ ଦର୍ଶନ କର । ୪୯ ।

### ଅନୁବାଦ ।

ଆମ୍ଭର ଏପରି ଭୟାନକ ଏହି ଘୋରରୂପ ଦେଖି ତୁମ୍ଭେ ବ୍ୟଥିତ ଓ ବିମୋହିତ ହୁଅ ନାହିଁ । ବର୍ତ୍ତମାନ ଭୟ ପରିତ୍ୟାଗପୂର୍ବକ ପ୍ରୀତମନା ହୋଇ ଆମ୍ଭର ସେହି ପୂର୍ବରୂପ ପୁନର୍ବାର ଦର୍ଶନ କର । ୪୯ ।

### ବିଶଦବ୍ୟାଖ୍ୟା ।

ଭକ୍ତବତ୍ସଳ ଶ୍ରୀଭଗବାନ୍ ଦେଖିଲେ, ଯେ ଭକ୍ତ ଅର୍ଜ୍ଜୁନ, ତାଙ୍କର ବହୁମୁଖ, ବହୁଭୁଜ, ବହୁଉରୁ ଓ ବହୁଚରଣବିଶିଷ୍ଟ ବିଶ୍ୱରୂପ ଦେଖି ଭୀତ ଏବଂ ମୋହିତ ହୋଇଅଛନ୍ତି ଏବଂ ସେ ରୂପ ପରିହାର କରି ପୂର୍ବରୂପ ଧାରଣ କରିବାକୁ ପ୍ରାର୍ଥନା କରୁଅଛନ୍ତି । ଅର୍ଜ୍ଜୁନଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ଆମ୍ଭର ଏପରି ଭୟାନକ ବିଶ୍ୱରୂପ ଦେଖି ତୁମ୍ଭର ଆଉ ଭୟ କରିବାର କି ମୋହପ୍ରାପ୍ତ ହେବାର ପ୍ରୟୋଜନ ନାହିଁ । ତୁମ୍ଭେ ଏବେ ନିର୍ଭୟ ହୋଇ ପ୍ରୀତିଯୁକ୍ତ ମନରେ ଆମ୍ଭର ସେହି ପୂର୍ବର ଚତୁର୍ଭୁଜ ମୂର୍ତ୍ତି ଅବଲୋକନ କର । ୪୯ ।

### ଶ୍ଳୋକଃ ।

ସଞ୍ଜୟ ଉବାଚ ।

ଇତ୍ୟର୍ଜ୍ଜୁନଂ ବାସୁଦେବସ୍ତଥୋକ୍ତ୍ୱା, ସ୍ୱକଂ ରୂପଂ ଦର୍ଶୟାମାସ ଭୂୟଃ ।
ଆଶ୍ୱାସୟାମାସ ଚ ଭୀତମେନଂ, ଭୂତ୍ୱା ପୁନଃ ସୌମ୍ୟବପୁର୍ମହାତ୍ମା । ୫୦ ।

### ଅନ୍ୱୟଃ ।

ସଞ୍ଜୟଃ ଉବାଚ । ବାସୁଦେବଃ ଅର୍ଜ୍ଜୁନଂ ଇତି ଉକ୍ତ୍ୱା ସ୍ୱକଂ ରୂପଂ ତଥା ଭୂୟଃ ଦର୍ଶୟାମାସ ଚ ମହାତ୍ମା ସୌମ୍ୟବପୁଃ ଭୂତ୍ୱା ପୁନଃ ଭୀତଂ ଏନଂ ଆଶ୍ୱାସୟାମାସ । ୫୦ ।

Digitized by PPRACHIN, SOA

ଟୀକା ।

ଏବମୁକ୍ତ୍ୱା ପ୍ରାକ୍ତନମେବ ରୂପଂ ଦର୍ଶିତବାନିତ ସଞ୍ଜୟଃ ଉବାଚ । ଇତୀତ । ବାସୁଦେବୋଽର୍ଜ୍ଜୁନମିତ୍ୟୁକ୍ତ୍ୱା ଯଥା ପୂର୍ବମାସୀତ୍ତଥୈବ କିରୀଟଗଦାଦିଯୁକ୍ତଂ ଚତୁର୍ଭୁଜଂ ସ୍ୱୀୟଂ ରୂପଂ ପୁନର୍ଦର୍ଶୟାମାସ ଏନମର୍ଜ୍ଜୁନଂ ଭୀତମେବ ପ୍ରସନ୍ନବପୁର୍ଭୂତ୍ୱା ପୁନରପ୍ୟାଶ୍ୱାସିତବାନ୍ ମହାତ୍ମା ବଶ୍ୟରୂପଃ କୃପାଳୁରତ ବା । ୫୦ ।

ପଦବ୍ୟାଖ୍ୟା ।

ସଞ୍ଜୟଃ ଉବାଚ—ସଞ୍ଜୟ କହିଲେ, ଇତି—ଏହା, ଅର୍ଜ୍ଜୁନଂ—ଅର୍ଜ୍ଜୁନଙ୍କୁ, ବାସୁଦେବଃ—ଶ୍ରୀକୃଷ୍ଣ, ତଥା—ସେହିପରି, ଉକ୍ତ୍ୱା—କହିକରି, ସ୍ୱକଂ ରୂପଂ—ନିଜରୂପକୁ, ଦର୍ଶୟାମାସ—ଦେଖାଇଲେ, ଭୂୟଃ—ପୁନର୍ବାର, ଆଶ୍ୱାସୟାମାସ—ଶାନ୍ତ୍ୱନା ପ୍ରଦାନ କଲେ, ଭୀତଂ—ଭୟାତୁର, ଏନଂ—ଏହାଙ୍କୁ ଅର୍ଥାତ୍ ଅର୍ଜ୍ଜୁନଙ୍କୁ, ଭୂତ୍ୱା—ହୋଇ, ପୁନଃ—ପୁନର୍ବାର, ସୌମ୍ୟବପୁଃ—ଶାନ୍ତମୂର୍ତ୍ତି, ମହାତ୍ମା—ଦୟାରୂପୀ ବା କୃପାଳୁ । ୫୦ ।

ଅନୁବାଦ ।

ସଞ୍ଜୟ କହିଲେ, ହେ ଧୃତରାଷ୍ଟ୍ର! ବାସୁଦେବ, ଏ ପ୍ରକାର କହି ଅର୍ଜ୍ଜୁନଙ୍କୁ ପୁନର୍ବାର ନିଜ (ଚତୁର୍ଭୁଜ) ମୂର୍ତ୍ତି ଦେଖାଇଲେ ଏବଂ ଶାନ୍ତମୂର୍ତ୍ତି ହୋଇ ଭୟାତୁର ଅର୍ଜ୍ଜୁନଙ୍କୁ ଆଶ୍ୱାସ ପ୍ରଦାନ କଲେ । ୫୦ ।

ବିଶଦବ୍ୟାଖ୍ୟା ।

ସଞ୍ଜୟ, ଧୃତରାଷ୍ଟ୍ରଙ୍କୁ କହିଲେ, ହେ ଧୃତରାଷ୍ଟ୍ର ! ଭକ୍ତବତ୍ସଳ ଭଗବାନ୍ ବାସୁଦେବ ଏହିପରି (ପୂର୍ବ ତିନଶ୍ଳୋକୋକ୍ତ) ବଚନମାନ କହି, ନିଜର ପୂର୍ବରୂପ ଦେଖାଇଲେ ଅର୍ଥାତ୍ ଯେଉଁ ରୂପ ଦେଖିବାକୁ ଭକ୍ତ ଅର୍ଜ୍ଜୁନ, ସର୍ବଦା ଲାଳାୟିତ, ସେହି ମୂର୍ତ୍ତି ଧାରଣ କଲେ । ଶଙ୍ଖ, ଚକ୍ର, ଗଦା ଓ ପଦ୍ମଶୋଭିତ ଭୁଜଚତୁଷ୍ଟୟ କିରୀଟ ଓ କୁଣ୍ଡଳମଣ୍ଡିତ ମସ୍ତକ ଏବଂ କୌସ୍ତୁଭ ଓ ବନମାଳାଦି ବିଭୂଷିତ ଶ୍ୟାମସୁନ୍ଦର କଳେବର ହୋଇ, ଭୟାତୁର ଅର୍ଜ୍ଜୁନଙ୍କୁ ଆଶ୍ୱାସ ପ୍ରଦାନ କଲେ ଅର୍ଥାତ୍ ଅର୍ଜ୍ଜୁନଙ୍କର ଭୟ ନାଶ କରି ଧୈର୍ଯ୍ୟ ପ୍ରଦାନ କଲେ । ୫୦ ।

ଶ୍ଳୋକଃ ।

ଅର୍ଜ୍ଜୁନ ଉବାଚ ।—ଦୃଷ୍ଟ୍ୱେଦଂ ମାନୁଷଂ ରୂପଂ, ତବ ସୌମ୍ୟଂ ଜନାର୍ଦ୍ଦନ ।
ଇଦାନୀମସ୍ମି ସଂବୃତ୍ତଃ, ସଚେତାଃ ପ୍ରକୃତିଂ ଗତଃ । ୫୧ ।

ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ । ହେ ଜନାର୍ଦ୍ଦନ ! ତବ ଇଦଂ ସୌମ୍ୟଂ ମାନୁଷଂ ରୂପଂ ଦୃଷ୍ଟ୍ୱା ଇଦାନୀଂ ( ଅହଂ ) ସଚେତାଃ ପ୍ରକୃତିଂ ଗତଃ (ସନ୍) ସଂବୃତ୍ତଃ ଅସ୍ମି । ୫୧ ।

ଟୀକା ।

ତତୋଽର୍ଜ୍ଜୁନଃ ପ୍ରକୃତିସ୍ଥଃ ସନ୍ନାହ ଦୃଷ୍ଟ୍ୱେତି । ସଚେତାଃ ପ୍ରସନ୍ନଚିତ୍ତଃ ଇଦାନୀଂ ସଂବୃତ୍ତୋଽସ୍ମି, ପ୍ରକୃତିଂ ସ୍ୱାସ୍ଥ୍ୟଂ ପ୍ରାପ୍ତୋଽସ୍ମି, ଶେଷଂ ସ୍ପଷ୍ଟଂ । ୫୧ ।

ପଦବ୍ୟାଖ୍ୟା ।

ଅର୍ଜ୍ଜୁନଃ ଉବାଚ—ଅର୍ଜ୍ଜୁନ କହିଲେ, ଦୃଷ୍ଟ୍ୱା—ଦେଖି, ଇଦଂ—ଏହି, ମାନୁଷଂ ରୂପଂ—ମନୁଷ୍ୟାକାର ରୂପ,

Digitized by PPRACHIN, SOA

ତବ—ଆପଣଙ୍କର, ସୌମ୍ୟଂ—ଶାନ୍ତ ଓ ସୁନ୍ଦର, ଜନାର୍ଦ୍ଦନ—ହେ ନରକାମନାଦାୟକ !, ଇଦାନୀଂ—ବର୍ତ୍ତମାନ, ଅସ୍ମି—ହେଉଅଛି, ସମ୍ବୃତ୍ତଃ—ଏକାଗ୍ରମନା ବା ପ୍ରବୃତ୍ତ, ସଚେତାଃ—ପ୍ରସନ୍ନ ଓ ସ୍ଥିରଚିତ୍ତ, ପ୍ରକୃତିଂ—ସ୍ୱାସ୍ଥ୍ୟକୁ, ଗତଃ—ପ୍ରାପ୍ତ । ୫୧ ।

ଅନୁବାଦ ।

ଅର୍ଜ୍ଜୁନ କହିଲେ, ହେ ଜନାର୍ଦ୍ଦନ ! ଆପଣଙ୍କର ଏହି ଶାନ୍ତ ଓ ସୁନ୍ଦର ମନୁଷ୍ୟାକାର ରୂପ ଦର୍ଶନ କରି, ବର୍ତ୍ତମାନ ମୁଁ ସ୍ଥିରମନା ହେଲି ଓ ସ୍ୱାସ୍ଥ୍ୟ ଲାଭ କଲି । ୫୧ ।

ବିଶଦବ୍ୟାଖ୍ୟା ।

ଅର୍ଜ୍ଜୁନ, ବିଶ୍ୱରୂପର ଅନନ୍ତତା ହୃଦୟରେ ଧାରଣ କରି ନ ପାରି ଏବଂ ଭୟାନକତାରେ ବିକଳଚିତ୍ତ ହୋଇ, ସେ ରୂପ ତ୍ୟାଗ କରିବାକୁ ଭଗବାନଙ୍କୁ ପ୍ରାର୍ଥନା କରିଥିଲେ । ତାଙ୍କର ସେହି ପ୍ରାର୍ଥନା ଅନୁସାରେ ଭଗବାନ୍ ବାସୁଦେବ, ନିଜର ପୂର୍ବ ମନୁଷ୍ୟାକାର ମୂର୍ତ୍ତି ଧାରଣ କରିବାରୁ ଅର୍ଜ୍ଜୁନ ଆଶ୍ୱସ୍ତ ହୋଇ କହିଲେ, ହେ ଜନମନୋରଥ-ପୂରକ ଶ୍ରୀକୃଷ୍ଣ ! ଆପଣଙ୍କର ଏହି ଶାନ୍ତ ଓ ସୁନ୍ଦର ମନୁଷ୍ୟାକାର ନବଘନରୂପ ଦର୍ଶନ କରି, ଏବେ ମୋହର ବ୍ୟାକୁଳ ମନ ସ୍ଥିର ହେଲା ଏବଂ ମୁଁ ଅଧୈର୍ଯ୍ୟ ହସ୍ତରୁ ନିସ୍ତାର ପାଇ ସୁସ୍ଥ ହେଲି । ୫୧ ।

ଶ୍ଲୋକଃ ।

ଶ୍ରୀଭଗବାନୁବାଚ ।— ସୁଦୁର୍ଦ୍ଦର୍ଶମିଦଂ ରୂପଂ, ଦୃଷ୍ଟବାନସି ଯନ୍ମମ ।
ଦେବା ଅପ୍ୟସ୍ୟ ରୂପସ୍ୟ, ନିତ୍ୟଂ ଦର୍ଶନକାଂକ୍ଷିଣଃ । ୫୨ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । (ହେ ଅର୍ଜ୍ଜୁନ !) ଯତ୍ ସୁଦୁର୍ଦ୍ଦର୍ଶଂ ଇଦଂ ମମ ରୂପଂ ଦୃଷ୍ଟବାନ୍ ଅସି ଦେବାଃ ଅପି ଅସ୍ୟ ରୂପସ୍ୟ ନିତ୍ୟଂ ଦର୍ଶନକାଂକ୍ଷିଣଃ ( ଭବନ୍ତି ) । ୫୨ ।

ଟୀକା ।

କୃତସ୍ୟାନୁଗ୍ରହସ୍ୟାତ୍ୟୁତ୍କର୍ଷଂ ଦର୍ଶୟନ୍ ଶ୍ରୀଭଗବାନୁବାଚ । ସୁଦୁର୍ଦ୍ଦର୍ଶମିତି । ଯନ୍ମମ ବିଶ୍ୱରୂପଂ ଦୃଷ୍ଟବାନସି ଇଦଂ ସୁଦୁର୍ଦ୍ଦର୍ଶମତ୍ୟନ୍ତଂ ଦ୍ରଷ୍ଟୁମଶକ୍ୟଂ ଅତୋ ଦେବା ଅପ୍ୟସ୍ୟ ରୂପସ୍ୟ ନିତ୍ୟଂ ସର୍ବଦା ଦର୍ଶନମିଚ୍ଛନ୍ତି କେବଳଂ ନ ପୁନର୍ଦୃଷ୍ଟଂ ପଶ୍ୟନ୍ତି । ୫୨ ।

ପଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ଉବାଚ—ଶ୍ରୀଭଗବାନ୍ କହିଲେ, ସୁଦୁର୍ଦ୍ଦର୍ଶଂ—ଅତ୍ୟନ୍ତ ଦୁର୍ଦ୍ଦର୍ଶନୀୟ, ଇଦଂ ରୂପଂ—ଏହି ରୂପକୁ, ଦୃଷ୍ଟବାନ୍ ଅସି—ଦେଖିଲ, ଯତ୍—ଯେଉଁ, ମମ—ଆମ୍ଭର, ଦେବା ଅପି—ଦେବତାମାନେ ମଧ୍ୟ, ଅସ୍ୟ ରୂପସ୍ୟ—ଏହି ରୂପର, ନିତ୍ୟଂ—ସର୍ବଦା, ଦର୍ଶନକାଂକ୍ଷିଣଃ—ଦର୍ଶନାଭିଳାଷୀ ଅଟନ୍ତି । ୫୨ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ (ହେ ଅର୍ଜ୍ଜୁନ !) ତୁମ୍ଭେ ଆମ୍ଭର ଯେଉଁ ( ବିଶ୍ୱ ) ରୂପ ଦର୍ଶନ କଲ, ତାହା ସହଜରେ ଦୃଷ୍ଟିଗୋଚର ହୁଏ ନାହିଁ । ଦେବତାମାନେ ମଧ୍ୟ, ସେ ରୂପ ଦେଖିବାକୁ ସର୍ବଦା ଅଭିଳାଷୀ ଅଟନ୍ତି । ୫୨ ।

Digitized by PPRACHIN, SOA

ବଙ୍ଗଳବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ଆମ୍ଭର ତୁମ୍ଭପ୍ରତି ଉପରେ ଅନୁଗ୍ରହ, ତାହା ଦେଖ । ତୁମ୍ଭେ ଆମ୍ଭର ଯେଉଁ ଭୟାନକ ବିଶ୍ୱରୂପ ଦେଖିଲ, ତାହା ବାସ୍ତବିକ 'ସୁ-ଦୁର୍ଦ୍ଦର୍ଶ' ଅର୍ଥାତ୍ ଅତି କଷ୍ଟରେ ଦେଖାଯାଏ । ଆମ୍ଭର ସେହି ବିଶ୍ୱରୂପ ଦେଖିବାକୁ ଦେବତାମାନେ ସର୍ବଦା ଅଭିଳାଷୀ, ମାତ୍ର ସେମାନେ, ଅଦ୍ୟାବଧି ତାହା ଦେଖି ପାରି ନାହାନ୍ତି ଏବଂ କେବେ, ଯେ ସେ ରୂପ ଦେଖି ପାରିବେ, ତାହାର କୌଣସି ସମ୍ଭାବନା ନାହିଁ । କେବଳ, ତୁମ୍ଭର ଭକ୍ତିଗୁଣରେ ଆମ୍ଭେ ସନ୍ତୁଷ୍ଟ ହୋଇ ତୁମ୍ଭଙ୍କୁ ସେ ବିଶ୍ୱରୂପ ଦେଖାଇଲୁଁ । ୫୨ ।

ଶ୍ଳୋକଃ ।

ନାହଂ ବେଦୈର୍ନ ତପସା, ନ ଦାନେନ ନ ଚେଜ୍ୟୟା ।
ଶକ୍ୟ ଏବମ୍ବିଧୋ ଦ୍ରଷ୍ଟୁଂ, ଦୃଷ୍ଟବାନସି ଯନ୍ମମ । ୫୩ ।

ଅନ୍ୱୟଃ ।

ମମ ଯତ୍ (ରୂପଂ) ଦୃଷ୍ଟବାନ୍ ଅସି, ଏବମ୍ବିଧଃ ଅହଂ ନ ବେଦୈଃ ନ ତପସା, ନ ଦାନେନ ଚ ନ ଇଜ୍ୟୟା ଦ୍ରଷ୍ଟୁଂ ଶକ୍ୟଃ । ୫୩ ।

ଟୀକା ।

ତତ୍ର ହେତୁମାହ । ନାହମିତି । ସ୍ପଷ୍ଟାର୍ଥଂ । ୫୩ ।

ପଦବ୍ୟାଖ୍ୟା ।

ନ—ନୋହୁଁ, ଅହଂ—ଅମ୍ଭେ, ବେଦୈଃ—ବେଦାଧ୍ୟୟନଦ୍ୱାରା, ନ ତପସା—ତପସ୍ୟାଦ୍ୱାରା ନୋହୁଁ, ନ ଦାନେନ—ଦାନଦ୍ୱାରା ନୋହୁଁ, ନ ଚ ଇଜ୍ୟୟା—ଯଜ୍ଞଦ୍ୱାରା ମଧ୍ୟ ନୋହୁଁ, ଶକ୍ୟଃ—ଯୋଗ୍ୟ, ଏବମ୍ବିଧଃ—ଏହିପ୍ରକାର ଅର୍ଥାତ୍ ଏପରି ବିଶ୍ୱରୂପ ଧାରଣ କରି, ଦ୍ରଷ୍ଟୁଂ—ଦର୍ଶନର, ଦୃଷ୍ଟବାନ୍ ଅସି—ଦେଖିଲ, ଯତ୍—ଯେଉଁ ରୂପକୁ, ମମ—ଆମ୍ଭର । ୫୩ ।

ଅନୁବାଦ ।

(ହେ ଅର୍ଜ୍ଜୁନ !) ତୁମ୍ଭେ ଆମ୍ଭର ଯେଉଁ ରୂପ ଦର୍ଶନ କଲ, ସେ ରୂପ, ବେଦାଧ୍ୟୟନ, ତପସ୍ୟା, ଦାନ, ଅଥବା ଯଜ୍ଞଦ୍ୱାରା ମଧ୍ୟ କେହି ଦେଖି ପାରନ୍ତି ନାହିଁ । ୫୩ ।

ବଙ୍ଗଳବ୍ୟାଖ୍ୟା ।

ଶ୍ରୀଭଗବାନ୍ ଅର୍ଜ୍ଜୁନଙ୍କୁ କହିଲେ, ହେ ଅର୍ଜ୍ଜୁନ ! ତୁମ୍ଭେ ଆମ୍ଭର ଯେଉଁ ବିଶ୍ୱରୂପ ଦର୍ଶନ କଲ, ଆମ୍ଭଙ୍କୁ କେହି ସେ ରୂପରେ ଦେଖି ନାହାନ୍ତି । କେତେ କେତେ ଉପାସକ ଅର୍ଥ ବିଚାର-ପୂର୍ବକ ବେଦାଧ୍ୟୟନ କରିଅଛନ୍ତି, କେତେ କେତେ ସାଧକ କୃଚ୍ଛ୍ରଚାନ୍ଦ୍ରାୟଣ, ଦର୍ଶପୌର୍ଣ୍ଣମାସ, ପଞ୍ଚାଗ୍ନି, ଉପବାସ ଓ ଇନ୍ଦ୍ରିୟସଂଯମାଦିରୂପ ତପସ୍ୟା କରିଅଛନ୍ତି, କେତେ ଦୟାଳୁ ବ୍ୟକ୍ତି ଗୋ, ଭୂମି, ସୁବର୍ଣ୍ଣ ଓ ଅନ୍ନପ୍ରଭୃତି ଦାନ କରିଅଛନ୍ତି, ଏବଂ କେତେ କେତେ କର୍ମାନୁଷ୍ଠାନୀ ଅଶ୍ୱମେଧ ଓ ଅଗ୍ନି-ହୋତ୍ରାଦି ଯାଗ କରିଅଛନ୍ତି, ମାତ୍ର ଆମ୍ଭର ସେ ବିଶ୍ୱରୂପ କେହି ଅଦ୍ୟାପି ଦେଖି ନାହାନ୍ତି, କେବଳ ଭକ୍ତି ଗୁଣରେ ତୁମ୍ଭେ ତାହା ଦେଖିଲ ।

Digitized by PPRACHIN, SOA

ଭଗବାନଙ୍କର ବିଶ୍ୱରୂପ, ଯେ ବେଦାଧ୍ୟୟନ, ଦାନ ଓ ତପସ୍ୟାଦଦ୍ୱାରା ଦୃଷ୍ଟିଗୋଚର ହୁଏ ନା, ତାହା ଭଗବାନ୍ ଏହି ଅଧ୍ୟାୟର ୪୮ ଶ୍ଳୋକରେ ଥରେ କହିଥିଲେ ସୁଦ୍ଧା, ଅର୍ଜ୍ଜୁନଙ୍କର ଦୃଢ଼ ପ୍ରତ୍ୟୟପାଇଁ ପୁନର୍ବାର ଏ ଶ୍ଳୋକରେ କହିଲେ । ୫୩ ।

ଶ୍ଳୋକଃ ।

ଭକ୍ତ୍ୟା ତ୍ୱନନ୍ୟୟା ଶକ୍ୟ, ଅହମେବମ୍ବିଧୋଽର୍ଜ୍ଜୁନ ।
ଜ୍ଞାତୁଂ ଦ୍ରଷ୍ଟୁଂ ଚ ତତ୍ତ୍ୱେନ, ପ୍ରବେଷ୍ଟୁଂ ଚ ପରନ୍ତପ । ୫୪ ।

ଅନ୍ୱୟଃ ।

ହେ ଅର୍ଜ୍ଜୁନ ! ହେ ପରନ୍ତପ ! ତୁ ଏବମ୍ବିଧଃ ଅହଂ ଅନନ୍ୟୟା ଭକ୍ତ୍ୟା ତତ୍ତ୍ୱେନ ଜ୍ଞାତୁଂ, ଦ୍ରଷ୍ଟୁଂ ଚ ପ୍ରବେଷ୍ଟୁଂ ଶକ୍ୟଃ । ।୫୪। ।

ଟୀକା ।

ତର୍ହି କେନୋପାୟେନ ଦ୍ରଷ୍ଟୁଂ ଶକ୍ୟସେ ଇତ୍ୟାହ, ଭକ୍ତ୍ୟା ତ୍ୱିତି । ଅନନ୍ୟୟା ମଦେକନିଷ୍ଠୟା ଭକ୍ତ୍ୟା ତୁ ଏବମ୍ଭୂତୋ- ବିଶ୍ୱରୂପୋଽହଂ ତତ୍ତ୍ୱେନ ପରମାର୍ଥତୋ ଜ୍ଞାତୁଂ ଶକ୍ୟଃ ଶାସ୍ତ୍ରତୋ ଦ୍ରଷ୍ଟୁଂ ପ୍ରତ୍ୟକ୍ଷତଃ ପ୍ରବେଷ୍ଟୁଂ ଚ ତାଦାତ୍ମ୍ୟେନ ଶକ୍ୟୋ- ନାନ୍ୟୈରୁପାୟୈଃ । ୫୪ ।

ପଦବ୍ୟାଖ୍ୟା ।

ଭକ୍ତ୍ୟା—ଭକ୍ତିଦ୍ୱାରା, ତୁ—କିନ୍ତୁ, ଅନନ୍ୟୟା—ଏକାନ୍ତ ଅର୍ଥାତ୍ ଆମ୍ଭ ଭିନ୍ନ ଅନ୍ୟଠାରେ ମନ ନ ଦେବା, (ଭକ୍ତିରେ) ଶକ୍ୟଃ—ସମର୍ଥ, ଅହଂ—ଆମ୍ଭଙ୍କୁ, ଏବମ୍ବିଧଃ—ଏପ୍ରକାର, ଅର୍ଜ୍ଜୁନ—ହେ ଅର୍ଜ୍ଜୁନ !, ଜ୍ଞାତୁଂ—ଜାଣିବାକୁ, ଦ୍ରଷ୍ଟୁଂ ଚ—ଦେଖିବାକୁ, ତତ୍ତ୍ୱେନ—ଯଥାର୍ଥରେ, ପ୍ରବେଷ୍ଟୁଂ ଚ—ପ୍ରବେଶ କରିବାକୁ, ପରନ୍ତପ—ହେ ଶତ୍ରୁତାପନ । । ୫୪ ।

ଅନୁବାଦ ।

କିନ୍ତୁ ହେ ପରନ୍ତପ ଅର୍ଜ୍ଜୁନ ! ପ୍ରାଣୀ, କେବଳ ଏକାନ୍ତ ଭକ୍ତିଦ୍ୱାରା ଆମ୍ଭର ଏପ୍ରକାର ରୂପ, ଯଥାର୍ଥରୂପେ ଜାଣିବାକୁ ଓ ଦେଖିବାକୁ ସମର୍ଥ ହୁଏ, ଏବଂ (ଆମ୍ଭଠାରେ) ଲୀନ ହୋଇ ପାରେ । ୫୪ ।

ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ ଶ୍ରୀଭଗବାନ୍ କହିଥିଲେ, ଯେ ବେଦାଧ୍ୟୟନ ବା ଯଜ୍ଞାନୁଷ୍ଠାନ ବା ତପସ୍ୟାଦଦ୍ୱାରା କେହି ଆମ୍ଭର ଏ ବିଶ୍ୱରୂପ ଦେଖି ପାରନ୍ତି ନାହିଁ । ଏଥିରେ କାଳେ ଅର୍ଜ୍ଜୁନ- ଙ୍କର ଏପରି ଆଶଙ୍କା ହେବ, ଯେ କୌଣସି ଉପାୟଦ୍ୱାରା ହିଁ ଆପଣଙ୍କର ଏ ରୂପ ଦେଖା ଯିବ ନାହିଁ ? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ କେବଳ ଆମ୍ଭଠାରେ ଏକାନ୍ତ ଭକ୍ତି କଲେ, ଏ ରୂପ ଦେଖା ଯାଇ ପାରେ । ଯେଉଁମାନେ କହନ୍ତି, ଯେ ବେଦାଧ୍ୟୟନ ନ କଲେ, ବା ବେଦବିହିତ ଯଜ୍ଞକର୍ମାଦିର ଅନୁଷ୍ଠାନ ନ କଲେ, ଈଶ୍ୱର ସାକ୍ଷାତ୍କାର ହୁଏ ନା, ସେମାନଙ୍କର ସେ ମତ ଭ୍ରାନ୍ତିମୂଳକ ଓ ଯେଉଁମାନେ କହନ୍ତି, ପଞ୍ଚାଗ୍ନି ପ୍ରଭୃତି କଠିନ ତପସ୍ୟା ନ କଲେ, ଆତ୍ମଜ୍ଞାନ ଲାଭ ହୁଏ ନା, ସେମାନେ ଭ୍ରାନ୍ତ, ଏବଂ ଯେଉଁମାନଙ୍କ ମତରେ ଗୋ, ଭୂମି, କନ୍ୟା ପ୍ରଭୃତି ଦାନ ପରମପଦ ଲାଭର ଏକମାତ୍ର ଉପାୟ, ସେମାନେ ମଧ୍ୟ ଭ୍ରମ-

Digitized by PPRACHIN, SOA

ପ୍ରମାଦଯୁକ୍ତ । ସେହିପରି ନିର୍ବିକଳ୍ପ ସମାଧି ନ କଲେ, ବ୍ରହ୍ମ ଦର୍ଶନ ହେବ ନାହିଁ, ବୋଲି ଯେଉଁ-ମାନେ କହନ୍ତି, ସେମାନେ ମଧ୍ୟ ଅଭ୍ରାନ୍ତ ନୁହନ୍ତି । କାହିଁକି ନା ପରମେଶ୍ୱର ସାକ୍ଷାତ୍କାର ବା ଆତ୍ମଜ୍ଞାନ ଲାଭ ଅଥବା ପରମପଦ ପ୍ରାପ୍ତି, କେବଳ ଏକାନ୍ତ ଭକ୍ତିଦ୍ୱାରା ହୁଏ । ଯୋଗ, ବେଦ-ବିହିତ କର୍ମ ଓ ତପସ୍ୟା ଏବଂ ଦାନାଦି କଲେ, ଯେ ଫଳ ଲାଭ ହୁଏ ନା, ତାହା ନୁହେ, ମାତ୍ର ସେହି ସବୁ କର୍ମ ଭକ୍ତିବର୍ଜିତ ହେଲେ, କଦାପି ସଫଳ ହୁଏ ନାହିଁ । ପରନ୍ତୁ ଏକାନ୍ତ ଭକ୍ତିଦ୍ୱାରା ସହଜରେ ବ୍ରହ୍ମସ୍ୱରୂପ ଜ୍ଞାନ ଓ ବ୍ରହ୍ମଦର୍ଶନ ଏବଂ ବ୍ରହ୍ମାନୁଭବ ଲାଭ କରାଯାଏ । ୫୪ ।

ଶ୍ଳୋକଃ ।

* ମତ୍କର୍ମକୃନ୍ମତ୍ପରମୋ, ମଦ୍ଭକ୍ତଃ ସଙ୍ଗବର୍ଜିତଃ ।
ନିର୍ବୈରଃ ସର୍ବଭୂତେଷୁ, ଯଃ ସ ମାମେତି ପାଣ୍ଡବ । ୫୫ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗ-ବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସମ୍ବାଦେ ବିଶ୍ୱରୂପଦର୍ଶନୋ-ନାମୈକାଦଶୋଽଧ୍ୟାୟଃ ।

ଅନ୍ୱୟଃ ।

ହେ ପାଣ୍ଡବ! ଯଃ ମତ୍କର୍ମକୃତ୍ ମତ୍ପରମଃ ମଦ୍ଭକ୍ତଃ ସଙ୍ଗବର୍ଜିତଃ ସର୍ବଭୂତେଷୁ ନିର୍ବୈରଃ ସଃ ମାଂ ଏତି । ୫୫ ।

ଇତି ଶ୍ରୀଭଗବଦ୍ଗୀତାୟାଂ ଅନ୍ୱୟେ ଏକାଦଶୋଽଧ୍ୟାୟଃ । ୧୧ ।

ଟୀକା ।

ଅତଃ ସର୍ବଶାସ୍ତ୍ରାର୍ଥସାରଂ ପରମରହସ୍ୟଂ ଶୃଣ୍ୱିତ୍ୟାହ । ମତ୍କର୍ମକୃଦିତି । ମଦର୍ଥଂ କର୍ମ କରୋତୀତି ମତ୍କର୍ମକୃତ୍, ଅହମେବ ପରମଃ ପୁରୁଷାର୍ଥୋଯସ୍ୟ ସଃ ମମୈବ ଭକ୍ତ ଅତଏବ ପୁତ୍ରାଦିଷୁ ସଙ୍ଗବର୍ଜିତଃ ନିର୍ବୈରଶ୍ଚ ସର୍ବଭୂତେଷୁ ଏବଂ-ଭୂତୋଯଃ ସ ମାଂ ପ୍ରାପ୍ନୋତି ନାନ୍ୟ ଇତି ।

ଦେବୈରପି ସୁଦୁର୍ଦର୍ଶଂ ତପୋଯଜ୍ଞାଦି-କୋଟିଭିଃ ।
ଉକ୍ତାୟ ଭଗବାନେବଂ ବିଶ୍ୱରୂପମଦର୍ଶୟତ୍ । ୫୫ ।
ଇତି ଶ୍ରୀଭଗବଦ୍ଗୀତାୟାଂ ସ୍ୱାମିକୃତଟୀକାୟାଂ ଏକାଦଶୋଽଧ୍ୟାୟଃ । ୧୧ ।

ପଦବ୍ୟାଖ୍ୟା ।

ମତ୍କର୍ମକୃତ୍—ଆମ୍ଭ ନିମିତ୍ତ କର୍ମକାରୀ ବା (୯ମ ଅଧ୍ୟାୟର ୨୭ ଶ୍ଳୋକାନୁସାରେ) ସମସ୍ତ କର୍ମର ଫଳ ଆମ୍ଭଠାରେ ଅର୍ପଣକାରୀ, ମତ୍ପରମଃ—ଯେ ଆମ୍ଭ ଭିନ୍ନ ଅନ୍ୟକୁ ଉତ୍କୃଷ୍ଟ ଜ୍ଞାନ କରନ୍ତି, ଅଥବା କେବଳ ଆମ୍ଭେ ଯାହାଙ୍କର ପୁରୁଷାର୍ଥ, ମଦ୍ଭକ୍ତଃ—ଆମ୍ଭଠାରେ ଭକ୍ତି କରନ୍ତି, ସଙ୍ଗବର୍ଜିତଃ—ପୁତ୍ରାଦି ସଙ୍ଗତ୍ୟାଗୀ ବା କର୍ମଫଳତ୍ୟାଗୀ, ନିର୍ବୈରଃ—ଶତ୍ରୁତା-ବର୍ଜିତ, ସର୍ବଭୂତେଷୁ—ସମସ୍ତ ପ୍ରାଣିଙ୍କଠାରେ, ଯଃ—ଯେଉଁ ବ୍ୟକ୍ତି, ସଃ—ସେହି ବ୍ୟକ୍ତି, ମାଂ ଏତି—ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି, ପାଣ୍ଡବ—ହେ ପାଣ୍ଡୁପୁତ୍ର ଅର୍ଜୁନ । । ୫୫ ।

ଇତି ଶ୍ରୀଭଗବଦ୍ଗୀତା-ପଦବ୍ୟାଖ୍ୟାୟାଂ ଏକାଦଶୋଽଧ୍ୟାୟଃ ।

Digitized by PPRACHIN, SOA

ଅନୁବାଦ ।

ହେ ପାଣ୍ଡବ! ଯେଉଁ ବ୍ୟକ୍ତି ଆମ୍ଭ ନିମିତ୍ତ କର୍ମ କରନ୍ତି, ଆମ୍ଭଠାରେ ଆସକ୍ତ ରହନ୍ତି, ଆମ୍ଭର ଭକ୍ତ ହୁଅନ୍ତି, ସର୍ବସଂସର୍ଗବର୍ଜିତ ହୁଅନ୍ତି, ଏବଂ ସର୍ବ ପ୍ରାଣିଙ୍କଠାରେ ଶତ୍ରୁତାରହିତ ହୁଅନ୍ତି, ସେହି ବ୍ୟକ୍ତି ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି । ୫୫ ।

ଇତି ଶ୍ରୀଭଗବଦ୍‌ଗୀତାର ଉତ୍କଳାନୁବାଦରେ ଏକାଦଶ ଅଧ୍ୟାୟ ସମାପ୍ତ । ୧୧ ।

ବିଶଦବ୍ୟାଖ୍ୟା ।

ହେ ଅର୍ଜୁନ! ଯେଉଁ ବ୍ୟକ୍ତି ଯଜ୍ଞାଦି ବେଦବିହିତ କର୍ମର ଫଳ ବାଞ୍ଛା ନ କରି, କେବଳ ଆମ୍ଭର ଅନୁଗ୍ରହ ପ୍ରାପ୍ତି ଆଶାରେ ଆମ୍ଭ ନିମିତ୍ତ କର୍ମ କରନ୍ତି, ବା କର୍ମ କରି ତାହା ଆମ୍ଭଠାରେ ଅର୍ପଣ କରନ୍ତି ଓ ଆମ୍ଭଙ୍କୁ ପରମପୁରୁଷାର୍ଥ ମଣି ଓ ଆମ୍ଭ ଭିନ୍ନ, ଆଉ କେହି ଶ୍ରେଷ୍ଠ ନାହାନ୍ତି ଜାଣି, ଆମ୍ଭଠାରେ ସର୍ବଦା ଆସକ୍ତ ରହନ୍ତି, ପୁଣି ଆମ୍ଭଠାରେ ଏକାନ୍ତ ଭକ୍ତି କରନ୍ତି ଏବଂ ପୁତ୍ର କଳତ୍ରାଦି ବ୍ୟକ୍ତି ଓ ସ୍ୱର୍ଣ୍ଣ ରତ୍ନାଦି ପଦାର୍ଥ ଏବଂ କର୍ମର ଫଳରେ ସଙ୍ଗବର୍ଜିତ ଅର୍ଥାତ୍ ଆସକ୍ତିହୀନ ହୁଅନ୍ତି, ଏବଂ କୌଣସି ଜୀବପ୍ରତି ହିଂସା ବା ଶତ୍ରୁତା ନ କରନ୍ତି, ସେହି କେବଳ ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି ।

ଏ ଶ୍ଳୋକଟି ଭଗବଦ୍‌ଗୀତାର ସାରାଂଶ ଅଟେ । କାହିଁକି ନା ଗୀତାରେ କର୍ମଯୋଗ, ଜ୍ଞାନଯୋଗ ଓ ସାଧନଯୋଗ ଏବଂ ଭକ୍ତିଯୋଗ ପ୍ରଭୃତି ନାନା କଥାର ଉପଦେଶ ଥିଲେ ହେଁ ଭକ୍ତି ବ୍ୟତିରେକେ କୌଣସି ଉପାୟ, ଯେ ସଫଳ ହୋଇ ପାରେ ନାହିଁ, ତାହା ସ୍ପଷ୍ଟ ଲେଖାଅଛି, ସେହି ଭକ୍ତିର ସାର ଉପଦେଶ ଅର୍ଥାତ୍ ଭକ୍ତର ଯେପରି ଆଚରଣ ଓ ଚେଷ୍ଟା ଚରିତ୍ରାଦି ହେବା ଅବଶ୍ୟକ, ତାହା ଏହି ଶ୍ଳୋକରେ ସଂକ୍ଷେପରେ କୁହା ଯାଇଅଛି । ୫୫ ।

ଇତି ଶ୍ରୀଭଗବଦ୍‌ଗୀତାର ବିଶଦବ୍ୟାଖ୍ୟାରେ ଏକାଦଶ ଅଧ୍ୟାୟ ସମାପ୍ତ ।

Digitized by PPRACHIN, SOA

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ଦ୍ୱାଦଶୋଽଧ୍ୟାୟଃ ।

### ଭକ୍ତିଯୋଗଃ ।

ଶ୍ଳୋକଃ ।

ଅର୍ଜ୍ଜୁନ ଉବାଚ ।—ଏବଂ ସତତଯୁକ୍ତା ଯେ, ଭକ୍ତାସ୍ତ୍ୱାଂ ପର୍ଯ୍ୟୁପାସତେ ।
ଯେ ଚାପ୍ୟକ୍ଷରମବ୍ୟକ୍ତଂ, ତେଷାଂ କେ ଯୋଗବିତ୍ତମାଃ । ୧ ।

ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ । ଏବଂ ସତତଯୁକ୍ତାଃ ଯେ ଭକ୍ତାଃ ତ୍ୱାଂ ଯେ ଚ ଅପି ଅବ୍ୟକ୍ତଂ ଅକ୍ଷରଂ ପର୍ଯ୍ୟୁପାସତେ ତେଷାଂ ଯୋଗବିତ୍ତମାଃ କେ ? । ୧ ।

ସ୍ୱାମିକୃତଟୀକା ।

ନିର୍ଗୁଣୋପାସନସ୍ୟୈବ ସଗୁଣୋପାସନସ୍ୟ ଚ ।
ଶ୍ରେୟଃ କତରଦିତ୍ୟେତନ୍ନିର୍ଣ୍ଣେତୁଂ ଦ୍ୱାଦଶୋଦ୍ୟମଃ । ୧ ।

ପୂର୍ବାଧ୍ୟାୟାନ୍ତେ ମତ୍କର୍ମକୃତ୍ ମତ୍ପରମୋ ମଦ୍ଭକ୍ତ ଇତ୍ୟେବଂ ଭକ୍ତିନିଷ୍ଠସ୍ୟ ଶ୍ରେଷ୍ଠତ୍ୱମୁକ୍ତଂ, କୌନ୍ତେୟ ପ୍ରତିଜାନୀହୀତ୍ୟାଦିନା ଚ ତତ୍ର ତତ୍ରୈବ ଶ୍ରେଷ୍ଠତ୍ୱଂ ନିର୍ଣ୍ଣୀତଂ, ତଥା ତେଷାଂ ଜ୍ଞାନୀ ନିତ୍ୟଯୁକ୍ତ ଏକଭକ୍ତିର୍ବିଶିଷ୍ୟତ ଇତ୍ୟାଦିନା, ସର୍ବଂ ଜ୍ଞାନପ୍ଲବେନୈବ ବୃଜିନଂ ସନ୍ତରିଷ୍ୟସୀତ୍ୟାଦିନା ଚ ଜ୍ଞାନନିଷ୍ଠସ୍ୟ ଶ୍ରେଷ୍ଠତ୍ୱମୁକ୍ତଂ ଏବମୁଭୟୋଃ ଶ୍ରୈଷ୍ଠ୍ୟବିଶେଷଜିଜ୍ଞାସୟା ଭଗବନ୍ତମର୍ଜ୍ଜୁନ ଉବାଚ, ଏବମିତି । ଏବଂ ସର୍ବକର୍ମାର୍ପଣାଦିନା, ସତତଯୁକ୍ତା ତ୍ୱନ୍ନିଷ୍ଠାଃ ସନ୍ତୋ ଯେ ଭକ୍ତାସ୍ତ୍ୱାଂ ବିଶ୍ୱରୂପଂ ସର୍ବଜ୍ଞଂ ସର୍ବଶକ୍ତିଂ ପର୍ଯ୍ୟୁପାସତେ ଧ୍ୟାୟନ୍ତି, ଯେ ଚାପ୍ୟକ୍ଷରଂ ବ୍ରହ୍ମ ଚାବ୍ୟକ୍ତଂ ନିର୍ବିଶେଷମୁପାସତେ ତେଷାମୁଭୟେଷାଂ ମଧ୍ୟେ କେଽତିଶୟେନ ଯୋଗବିଦୋଽତିଶ୍ରେଷ୍ଠା ଇତ୍ୟର୍ଥଃ । ୧ ।

ପଦବ୍ୟାଖ୍ୟା ।

ଅର୍ଜ୍ଜୁନଃ ଉବାଚ—ଅର୍ଜ୍ଜୁନ କହିଲେ, ଏବଂ—ଏହି ପ୍ରକାର, ସତତଯୁକ୍ତାଃ—ସର୍ବଦା ଅନୁରକ୍ତ ବା ଏକାନ୍ତଚିତ୍ତ, ଯେ ଭକ୍ତାଃ—ଯେଉଁ ଭକ୍ତମାନେ, ତ୍ୱାଂ—ଆପଣଙ୍କୁ, ପର୍ଯ୍ୟୁପାସତେ—ଉପାସନା କରନ୍ତି, ଯେ ଚାପି—ଯେଉଁମାନେ ମଧ୍ୟ, ଅକ୍ଷରଂ—ଅବିନାଶି, ଅବ୍ୟକ୍ତଂ—ମୂର୍ତ୍ତିହୀନ (ବ୍ରହ୍ମ), ତେଷାଂ—ସେମାନଙ୍କ ମଧ୍ୟରେ, କେ—କେଉଁମାନେ, ଯୋଗବିତ୍ତମାଃ—ଶ୍ରେଷ୍ଠଯୋଗୀ ଅଟନ୍ତି ? । ୧ ।

ଅନୁବାଦ ।

ଅର୍ଜ୍ଜୁନ (ଶ୍ରୀକୃଷ୍ଣଙ୍କୁ) କହିଲେ, ଯେଉଁ ଭକ୍ତମାନେ ଏକାନ୍ତଚିତ୍ତ ହୋଇ ଆପଣଙ୍କୁ

Digitized by PPRACHIN, SOA

ଏହିପରି (ସଗୁଣଭାବରେ) ଉପାସନା କରନ୍ତି ଓ ଯେଉଁମାନେ ଅକ୍ଷର ଅବ୍ୟକ୍ତ (ନିର୍ଗୁଣ) ବ୍ରହ୍ମଙ୍କୁ ଉପାସନା କରନ୍ତି, ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ ଯୋଗୀ କେଉଁମାନେ ? । ୧ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ୭ମ ଅଧ୍ୟାୟ ୧୯ଶ ଶ୍ଳୋକରେ "ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ ମାଂ ପ୍ରପଦ୍ୟତେ । ବାସୁଦେବଃ ସର୍ବମିତି ସ ମହାତ୍ମା ସୁଦୁର୍ଲ୍ଲଭଃ" ଇତ୍ୟାଦି ବଚନରେ ଆପଣାକୁ ନିର୍ଗୁଣ ଓ ନିରାକାରରୂପରେ ବ୍ୟାଖ୍ୟା କରିଅଛନ୍ତି, ପୁଣି ଏକାଦଶ ଅଧ୍ୟାୟର ୪୮ ଶ୍ଳୋକରେ "ନାହଂ ବେଦୈର୍ନ ତପସା ନ ଦାନେନ ନ ଚେଜ୍ୟୟା" ଇତ୍ୟାଦି ବଚନରେ ଆପଣାକୁ ସଗୁଣ ଓ ସାକାରଭାବରେ ବର୍ଣ୍ଣନା କରିଅଛନ୍ତି । ସେହିହେତୁରୁ ଏକାଦଶ ଅଧ୍ୟାୟର ଶେଷ ଶ୍ଳୋକରେ "ମତ୍କର୍ମକୃତ୍ ମତ୍ପରମୋମଦ୍ଭକ୍ତଃ ସଙ୍ଗବର୍ଜ୍ଜିତଃ" ଇତ୍ୟାଦି ବଚନରେ ଯେ, ଆପଣାକୁ ସଗୁଣଭାବରେ ବର୍ଣ୍ଣନା କଲେ, କି ନିର୍ଗୁଣଭାବରେ ବର୍ଣ୍ଣନା କଲେ, ତାହା ଅର୍ଜ୍ଜୁନ ଉତ୍ତମରୂପେ ଜାଣି ନ ପାରିବାରୁ ପ୍ରଶ୍ନ କଲେ, ହେ ଶ୍ରୀକୃଷ୍ଣ ! ଯେଉଁମାନେ ଏକାନ୍ତଚିତ୍ତରେ ଏ ପ୍ରକାର ଆପଣଙ୍କୁ ଅର୍ଥାତ୍ ଆପଣ, ସର୍ବଜ୍ଞ ଓ ସର୍ବଶକ୍ତିମାନ୍ ଅଥବା ସଗୁଣ ଓ ସାକାର ଅଟନ୍ତି, ଏହା ଭାବି ପୂଜା କରନ୍ତି, ଆଉ ଯେଉଁମାନେ ଅକ୍ଷର ଅବ୍ୟକ୍ତ ଅର୍ଥାତ୍ ନିର୍ଗୁଣ ଓ ନିରାକାର ବ୍ରହ୍ମଙ୍କୁ ଉପାସନା କରନ୍ତି, ସେମାନଙ୍କ ମଧ୍ୟରୁ ଶ୍ରେଷ୍ଠ କିଏ ? ଅର୍ଥାତ୍ ସଗୁଣ ଉପାସକ ଶ୍ରେଷ୍ଠ କି ନିର୍ଗୁଣ ଉପାସକ ଶ୍ରେଷ୍ଠ ? ।

ଫଳକଥା ଏହି କି ମୁଁ ଆପଣଙ୍କୁ ସଗୁଣ ଓ ସାକାରଭାବରେ ପୂଜା କରିବି କି ନିର୍ଗୁଣ ଓ ନିରାକାର ଜାଣି ଉପାସନା କରିବି, ତାହା ମତେ କହିବା ହେଉନ୍ତୁ । ୧ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—* ମୟ୍ୟାବେଶ୍ୟ ମନୋଯେ ମାଂ, ନିତ୍ୟଯୁକ୍ତା ଉପାସତେ ।
ଶ୍ରଦ୍ଧୟା ପରୟୋପେତା,ସ୍ତେ ମେ ଯୁକ୍ତତମା ମତାଃ । ୨ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ଯେ ମୟି ମନଃ ଆବେଶ୍ୟ ନିତ୍ୟଯୁକ୍ତାଃ ପରୟା ଶ୍ରଦ୍ଧୟା ଉପେତାଃ (ସନ୍ତଃ) ମାଂ ଉପାସତେ ତେ ଯୁକ୍ତତମାଃ ମେ ମତାଃ । ୨ ।

ଟୀକା ।

ତତ୍ର ପ୍ରଥମାଃ ଶ୍ରେଷ୍ଠା ଇତ୍ୟୁତ୍ତରଂ ଶ୍ରୀଭଗବାନୁବାଚ । ମୟୀତି । ମୟି ପରମେଶ୍ୱରେ ସର୍ବଜ୍ଞତ୍ୱାଦିଗୁଣବିଶିଷ୍ଟେ ମନଃ ଆବେଶ୍ୟ ଏକାଗ୍ରଂ କୃତ୍ୱା ନିତ୍ୟଯୁକ୍ତା ମଦର୍ଥକର୍ମାନୁଷ୍ଠାନାଦିନା ମନ୍ନିଷ୍ଠାଃ ସନ୍ତଃ ଶ୍ରେଷ୍ଠୟା ଶ୍ରଦ୍ଧୟା ଯୁକ୍ତା ଯେ ମାମୁପାସତେ ତେ ଯୁକ୍ତତମା ମମାଭିମତାଃ । ୨ ।

ପଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ଉବାଚ—ଭଗବାନ୍ କହିଲେ, ମୟି—ଆମ୍ଭଠାରେ, ଆବେଶ୍ୟ—ନିଯୁକ୍ତ କରି, ମନଃ—ଚିତ୍ତକୁ, ଯେ—ଯେଉଁମାନେ, ମାଂ—ଆମ୍ଭକୁ, ନିତ୍ୟଯୁକ୍ତାଃ—ଆମ୍ଭଠାରେ ନିତ୍ୟଯୁକ୍ତ ହୋଇ, ଉପାସତେ—ଉପାସନା କରନ୍ତି,

Digitized by PPRACHIN, SOA

ଶ୍ରଦ୍ଧୟା ପରୟା—ସମ୍ପୂର୍ଣ୍ଣ ଶ୍ରଦ୍ଧାରେ, ଉପେତାଃ—ଯୁକ୍ତ ହୋଇ, ତେ—ସେହିମାନେ, ମେ—ଆମ୍ଭର, ଯୁକ୍ତତମାଃ—ସର୍ବଶ୍ରେଷ୍ଠ ଯୋଗୀ, ମତାଃ—ସମ୍ମତ । ୨ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ଯେଉଁମାନେ ଆମ୍ଭଠାରେ ମନୋନିବେଶ କରି ଓ ନିଷ୍ଠାବନ୍ତ ହୋଇ ସମ୍ପୂର୍ଣ୍ଣ ଶ୍ରଦ୍ଧାରେ ଆମ୍ଭର ଉପାସନା କରନ୍ତି, ସେମାନେ ଆମ୍ଭ ମତରେ ସର୍ବଶ୍ରେଷ୍ଠ ଯୋଗୀ ଅଟନ୍ତି । ୨ ।

ବିଶଦବ୍ୟାଖ୍ୟା ।

ଅର୍ଜୁନଙ୍କ ପ୍ରଶ୍ନ ଶୁଣି ଶ୍ରୀଭଗବାନ୍ କହିଲେ, ହେ ଅର୍ଜୁନ ! ଆମ୍ଭଙ୍କୁ ସର୍ବଜ୍ଞ ଓ ସର୍ବଶକ୍ତିମାନ୍ ଏବଂ ସ୍ୱସ୍ୱରୂପ ଜାଣି, ଆମ୍ଭଠାରେ ଯେଉଁମାନେ ମନୋନିବେଶ କରନ୍ତି ଏବଂ ଆମ୍ଭର ନିମିତ୍ତ କର୍ମ କରି ଆମ୍ଭଠାରେ ଫଳାଦି ଅର୍ପଣ କରନ୍ତି, ସମ୍ପୂର୍ଣ୍ଣ ଶ୍ରଦ୍ଧା ଓ ଭକ୍ତିଯୁକ୍ତ ହୋଇ ଆମ୍ଭର ପୂଜା କରନ୍ତି, ସଂକ୍ଷେପରେ କହିବାକୁ ଗଲେ, ଯେଉଁମାନେ ସଗୁଣ ଓ ସାକାରଭାବରେ ଆମ୍ଭଙ୍କୁ ଉପାସନା କରନ୍ତି, ଆମ୍ଭ ମତରେ ସେହିମାନେ ସର୍ବଶ୍ରେଷ୍ଠ ଯୋଗୀ ଅଟନ୍ତି । ୨ ।

ଶ୍ଳୋକଃ ।

* ଯେ ତ୍ୱକ୍ଷରମନିର୍ଦ୍ଦେଶ୍ୟମବ୍ୟକ୍ତଂ ପର୍ଯ୍ୟୁପାସତେ ।
ସର୍ବତ୍ରଗମଚିନ୍ତ୍ୟଂ ଚ, କୂଟସ୍ଥମଚଳଂ ଧ୍ରୁବଂ । ୩ ।

ଅନ୍ୱୟଃ ।

ଯେ ତୁ ଅନିର୍ଦ୍ଦେଶ୍ୟଂ ଅବ୍ୟକ୍ତଂ ସର୍ବତ୍ରଗଂ ଅଚିନ୍ତ୍ୟଂ କୂଟସ୍ଥଂ ଅଚଳଂ ଚ ଧ୍ରୁବଂ ଅକ୍ଷରଂ ପର୍ଯ୍ୟୁପାସତେ (ତେ ମାଂ ପ୍ରାପ୍ନୁବନ୍ତି) । ୩ ।

ଟୀକା ।

ତର୍ହିତରେ କିଂ ନ ଶ୍ରେଷ୍ଠା ଇତ୍ୟତ ଆହ । ଯେ ତ୍ୱିତି ଦ୍ୱାଭ୍ୟାଂ । ଯେ ତ୍ୱକ୍ଷରଂ ପର୍ଯ୍ୟୁପାସତେ ଧ୍ୟାୟନ୍ତି ତେଽପି ମାମେବ ପ୍ରାପ୍ନୁବନ୍ତୀତି ଦ୍ୱୟୋରନ୍ୱୟଃ । ଅକ୍ଷରସ୍ୟ ଲକ୍ଷଣଂ ଅନିର୍ଦ୍ଦେଶ୍ୟମିତ୍ୟାଦି । ଅନିର୍ଦ୍ଦେଶ୍ୟଶବ୍ଦେନ ନିର୍ଦ୍ଦେଷ୍ଟୁମଶକ୍ୟଂ ଯତୋଽବ୍ୟକ୍ତଂ ରୂପାଦିହୀନଂ ସର୍ବତ୍ରଗଂ ସର୍ବବ୍ୟାପି ଅବ୍ୟକ୍ତତ୍ୱାଦେବାଚିନ୍ତ୍ୟଂ କୂଟସ୍ଥଂ କୂଟେ ମାୟାପ୍ରପଞ୍ଚେଽଧିଷ୍ଠାନତ୍ୱେନାବସ୍ଥିତଂ ଅଚଳଂ ସ୍ପନ୍ଦନରହିତଂ ଅତଏବ ଧ୍ରୁବଂ ନିତ୍ୟଂ ବୃଦ୍ଧ୍ୟାଦିରହିତଂ, ସ୍ପଷ୍ଟମନ୍ୟତ୍ । ୩ ।

ପଦବ୍ୟାଖ୍ୟା ।

ଯେ ତୁ—ଆଉ ଯେଉଁମାନେ, ଅକ୍ଷରଂ—ଅବିନାଶି, ଅନିର୍ଦ୍ଦେଶ୍ୟଂ—ଇନ୍ଦ୍ରିୟାଦିର ଅଗୋଚର, ଅବ୍ୟକ୍ତଂ—ନିରାକାରଙ୍କୁ, ପର୍ଯ୍ୟୁପାସତେ—ଉପାସନା କରନ୍ତି, ସର୍ବତ୍ରଗଂ—ସର୍ବବ୍ୟାପି ଅଚିନ୍ତ୍ୟଂ ଚ—ଚିନ୍ତାର ଅତୀତ, କୂଟସ୍ଥଂ—ମାୟା ପ୍ରପଞ୍ଚରେ ଅବସ୍ଥିତ, ଅଚଳଂ—ସ୍ପନ୍ଦନରହିତ ଧ୍ରୁବଂ—ନିତ୍ୟ ଅର୍ଥାତ୍ ବୃଦ୍ଧିକ୍ଷୟାଦିଶୂନ୍ୟ । ୩ ।

ଅନୁବାଦ ।

ଆଉ ଯେଉଁମାନେ ଅନିର୍ଦ୍ଦେଶ୍ୟ, ନିରାକାର, ସର୍ବବ୍ୟାପି, ଅଚିନ୍ତ୍ୟ, କୂଟସ୍ଥ, ଅଚଳ, ଧ୍ରୁବ ଓ ଅକ୍ଷର (ନିର୍ଗୁଣ ବ୍ରହ୍ମ)ଙ୍କୁ ଉପାସନା କରନ୍ତି (ସେମାନେ ମଧ୍ୟ ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି) । ୩ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ଶ୍ରୀଭଗବାନ୍ କହିଥିଲେ, ଯେଉଁମାନେ ଆମ୍ଭର ସଗୁଣମୂର୍ତ୍ତିର ଉପାସନା କରନ୍ତି, ଆମ୍ଭ ମତରେ ସେହିମାନେ ଶ୍ରେଷ୍ଠ ଅଟନ୍ତି, ଏଥିରେ ବାଲେ ଅର୍ଜ୍ଜୁନଙ୍କର ଏପରି ସନ୍ଦେହ ହେବ, କି ଯେଉଁମାନେ ନିର୍ଗୁଣ ଉପାସକ, ସେମାନଙ୍କର କି ତେବେ ମୁକ୍ତି ହୁଏ ନାହିଁ ? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, କି ଯେଉଁମାନେ ନିର୍ଗୁଣ ଉପାସକ, ସେମାନେ ମଧ୍ୟ, ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ମୁକ୍ତ ହୁଅନ୍ତି । ଯେବେ ସଗୁଣ ଓ ନିର୍ଗୁଣ ଉଭୟ ଉପାସକଙ୍କର ଫଳ ସମାନ, ତେବେ ସଗୁଣ ଉପାସନା ଅପେକ୍ଷା କାହିଁକି ନିର୍ଗୁଣ ଉପାସନା ନିକୃଷ୍ଟ, ତାହା ଏହି ଅଧ୍ୟାୟର ୫ମ ଶ୍ଳୋକରେ ବୁଝାଯିବ । ଏବେ ଆମ୍ଭର ନିର୍ଗୁଣ ଉପାସନା ବିଷୟ ତାହା ଶ୍ରବଣ କର । ଉପାସକଙ୍କର ଜାଣିବା ଉଚିତ, ଯେ ଆମ୍ଭେ 'ଅକ୍ଷର' ଅର୍ଥାତ୍ କ୍ଷୟାଦି ବିକାରଶୂନ୍ୟ, ପୁଣି 'ଅନିର୍ଦ୍ଦେଶ୍ୟ' ଅର୍ଥାତ୍ ଆମ୍ଭଙ୍କୁ କୌଣସି ପ୍ରକାରେ ନିର୍ଦ୍ଦେଶ କରି ଯାଇ ପାରେ ନାହିଁ । କାହିଁକି ନା ଜାତି, ଗୁଣ, କ୍ରିୟା ଓ ସମ୍ବନ୍ଧଦ୍ୱାରା ବ୍ୟକ୍ତି ନିର୍ଦ୍ଦେଶ କରାଯାଏ । ଯଥା;—ରାମ, (ଜାତି) ମନୁଷ୍ୟ ଓ କ୍ଷତ୍ରିୟ (ଗୁଣ) ଶ୍ୟାମଳବର୍ଣ୍ଣ, (କ୍ରିୟା) ରାବଣାଦିର ବିନାଶକ ଓ (ସମ୍ବନ୍ଧ) ଦଶରଥଙ୍କର ପୁତ୍ର, ଜନକନନ୍ଦିନୀ ସୀତାଙ୍କର ପତି ଇତ୍ୟାଦି । ମାତ୍ର କେହି ଆମ୍ଭଙ୍କୁ ସେପ୍ରକାର କୌଣସି ଉପାୟରେ ନିର୍ଦ୍ଦେଶ କରି ପାରନ୍ତି ନାହିଁ, କାହିଁକି ନା ଆମ୍ଭେ 'ଅବ୍ୟକ୍ତ' ଅର୍ଥାତ୍ ଆକାର ଓ କ୍ରିୟାଦି ଶୂନ୍ୟ । କିନ୍ତୁ ଆମ୍ଭେ ନିରାକାର ଓ ନିର୍ଗୁଣ ହେଲେ ସୁଦ୍ଧା 'ସର୍ବବ୍ୟାପୀ' ଅଟୁଁ ଅର୍ଥାତ୍ ସର୍ବତ୍ର ଆମ୍ଭର ସତ୍ତା ବିଦ୍ୟମାନ ଅଛି । ପୁଣି ଆମ୍ଭେ 'ଅଚିନ୍ତ୍ୟ' ଅର୍ଥାତ୍ ଚିନ୍ତାର ଅତୀତ ଅଟୁଁ । କାହିଁକି ନା ଚିନ୍ତା ମନର ଧର୍ମ, ମନ ଏକ ସମୟରେ କୌଣସି ପଦାର୍ଥର ଏକଦେଶ ମାତ୍ର ଚିନ୍ତା କରି ପାରେ, କିନ୍ତୁ ସମସ୍ତ ଅଂଶ ଚିନ୍ତା କରି ନ ପାରେ, ଆମ୍ଭେ ସର୍ବବ୍ୟାପୀ, ଆମ୍ଭଙ୍କୁ ମନ କିପରି ଚିନ୍ତା କରି ପାରିବ ? ଶ୍ରୁତିରେ ପ୍ରମାଣ ଅଛି, ଯେ "ଯତୋବାଚୋନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ" ଅର୍ଥାତ୍ ଯାହାଙ୍କୁ ଲାଭ କରି ନ ପାରି ମନର ସହିତ ବଚନ ଅକୃତକାର୍ଯ୍ୟ ହୋଇ ଫେରି ଆସେ ।

ଯାହା ମିଥ୍ୟା ଅଥଚ ସତ୍ୟପରି ପ୍ରତୀତ ହୁଏ, ତାହାକୁ 'କୂଟ' ବୋଲାଯାଏ । ଏସ୍ଥଳରେ କାର୍ଯ୍ୟସମୂହ ସହିତ 'ଅଜ୍ଞାନ' ଅର୍ଥାତ୍ ମାୟା କୂଟ ନାମରେ ପ୍ରସିଦ୍ଧ । ଆମ୍ଭେ ସେହି କୂଟରେ ଅଧିଷ୍ଠାନରୂପରେ ବିରାଜିତ ବୋଲି 'କୂଟସ୍ଥ' ଅଟୁଁ । ଜନ୍ମ, ମରଣ, କ୍ଷୟ, ବୃଦ୍ଧି ପ୍ରଭୃତି ବିକାରଦ୍ୱାରା ଆମ୍ଭେ ବିଚଳିତ ହେଉଁ ନାହିଁ, ସୁତରାଂ ଆମ୍ଭେ 'ଅଚଳ' ଏବଂ ସର୍ବପ୍ରକାର ପରିଣାମଶୂନ୍ୟ ବୋଲି ଆମ୍ଭେ 'ଧ୍ରୁବ' ଅର୍ଥାତ୍ ନିତ୍ୟ । ଯେଉଁ ଉପାସକ ଏକାଗ୍ରଚିତ୍ତରେ ଉପରୋକ୍ତ ପ୍ରକାରେ ଧ୍ୟାନ କରନ୍ତି, ସେହି ବ୍ୟକ୍ତି ଆମ୍ଭଙ୍କୁ ଅର୍ଥାତ୍ ନିର୍ଗୁଣ ବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି । ୩ ।

ଶ୍ଳୋକଃ ।

* ସନ୍ନିୟମ୍ୟେନ୍ଦ୍ରିୟଗ୍ରାମଂ, ସର୍ବତ୍ର ସମବୁଦ୍ଧୟଃ ।
ତେ ପ୍ରାପ୍ନୁବନ୍ତି ମାମେବ, ସର୍ବଭୂତହିତେରତାଃ । ୪ ।

### ଅନ୍ୱୟଃ ।

ତେ ଇନ୍ଦ୍ରିୟଗ୍ରାମଂ ସନ୍ନିୟମ୍ୟ ସର୍ବତ୍ର ସମବୁଦ୍ଧୟଃ ସର୍ବଭୂତହିତେ ରତାଃ ମାଂ ଏବ ପ୍ରାପ୍ନୁବନ୍ତି । ୪ ।

### ଟୀକା ।

(ପୂର୍ବଶ୍ଳୋକରେ ଦେଖ)

### ପଦବ୍ୟାଖ୍ୟା ।

ସନ୍ନିୟମ୍ୟ—ସଂଯତ କରି ଅଥବା ଆୟତ୍ତ କରି, ଇନ୍ଦ୍ରିୟଗ୍ରାମଂ—ଇନ୍ଦ୍ରିୟସମୂହକୁ, ସର୍ବତ୍ର—ସବୁଠାରେ, ଅର୍ଥାତ୍ ଦେଶ, କାଳ ଓ ପାତ୍ରରେ, ସମବୁଦ୍ଧୟଃ—ସମାନ ଜାଣି, ତେ—ସେମାନେ, ପ୍ରାପ୍ନୁବନ୍ତି—ପ୍ରାପ୍ତ ହୁଅନ୍ତି ମାଂ ଏବ—ଆମ୍ଭଙ୍କୁ କେବଳ, ସର୍ବଭୂତହିତେ ରତାଃ—ସମସ୍ତ ପ୍ରାଣିମାନଙ୍କର ହିତୈଷୀ । ୪ ।

### ଅନୁବାଦ ।

ସେହି ଭକ୍ତମାନେ, ଇନ୍ଦ୍ରିୟସମୂହକୁ ଉତ୍ତମରୂପେ ସଂଯତ କରି ସର୍ବତ୍ର ସମବୁଦ୍ଧି ଓ ସର୍ବପ୍ରାଣିଙ୍କ ହିତସାଧନରେ ରତ ହୋଇ (ନିର୍ଗୁଣ ବ୍ରହ୍ମଙ୍କର ଉପାସନା କରି) ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି । ୪ ।

### ବିଶଦବ୍ୟାଖ୍ୟା ।

ନିର୍ଗୁଣ ବ୍ରହ୍ମଙ୍କୁ ଯେଉଁ ଭାବରେ ଧ୍ୟାନ କରିବାକୁ ହୁଏ, ତାହା ପୂର୍ବଶ୍ଳୋକରେ ବିଶଦ-ରୂପେ ବୁଝାଇ ଦିଆ ଯାଇଅଛି । ଯେଉଁମାନେ ନିର୍ଗୁଣ ଉପାସକ, ସେମାନଙ୍କର ସାଧନର ଅବଶିଷ୍ଟ ଅଂଶ ଏ ଶ୍ଳୋକରେ ବୁଝାଇ ଦିଆ ଯାଉଅଛି ।

ଉପାସକମାନଙ୍କର ସର୍ବତ୍ର ସମବୁଦ୍ଧି ହେବା ଉଚିତ ଅର୍ଥାତ୍ ଦରିଦ୍ର ଧନୀ, ମୂର୍ଖ ପଣ୍ଡିତ, ବାଳକ ବୃଦ୍ଧ, ବ୍ରାହ୍ମଣ ଶୂଦ୍ର, ମୃଗ ଓ ଶ୍ୱାନ ଏବଂ କୀଟ ଓ ପତଙ୍ଗାଦି ଏ ସମସ୍ତେ ସମାନ ବା ସେହି ସର୍ବବ୍ୟାପି ବ୍ରହ୍ମଙ୍କର ସତ୍ତା ମାତ୍ର, ଏପରି ଦୃଢ ପ୍ରତୀତି କରିବା ପ୍ରୟୋଜନ । ପୁଣି ସମସ୍ତ ପ୍ରାଣିଙ୍କର ହିତସାଧନରେ ତତ୍ପର ହେବା ଆବଶ୍ୟକ । ଏପ୍ରକାର ଗୁଣବିଶିଷ୍ଟ ଉପାସକ, ଆପଣାର ସମସ୍ତ ଇନ୍ଦ୍ରିୟମାନଙ୍କୁ ଯମ ନିୟମାଦି ଯୋଗାଙ୍ଗ ସାଧନଦ୍ୱାରା ସମ୍ପୂର୍ଣ୍ଣରୂପେ ବଶୀଭୂତ କରି, ନିର୍ଗୁଣ ବ୍ରହ୍ମଙ୍କୁ ପୂର୍ବଶ୍ଳୋକର ବର୍ଣ୍ଣିତ ଉପାୟରେ ଧ୍ୟାନ କଲେ, କେବଳ ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ନିର୍ଗୁଣ ବ୍ରହ୍ମ ଭିନ୍ନ, ଅନ୍ୟ କୌଣସି ଦେବତାଙ୍କୁ ପ୍ରାପ୍ତ ହୁଅନ୍ତି ନାହିଁ ।

ଏ ସ୍ଥଳରେ ଏପରି ଆପତ୍ତି ହୋଇପାରେ, କି ଯେଉଁ ଶ୍ରୀକୃଷ୍ଣ, ଅର୍ଜୁନଙ୍କୁ ଉପଦେଶ ଦେଉ-ଅଛନ୍ତି, ସେ, ଯେ ସଗୁଣ ଓ ସାକାର, ସେଥିରେ ଆଉ ସନ୍ଦେହ ନାହିଁ । ପୁଣି ସେ ନିଜେ, ଏହି ଅଧ୍ୟାୟର ୨ୟ ଶ୍ଳୋକରେ ଆପଣାକୁ ସଗୁଣ ଓ ସାକାର ବ୍ରହ୍ମ ବୋଲି ପରିଚୟ ଦେଇଅଛନ୍ତି । ଏପରି ସ୍ଥଳେ, ସେ ପୁଣି ଏ ଶ୍ଳୋକରେ, 'ସାଧକମାନେ ଆମ୍ଭଙ୍କୁ ଅର୍ଥାତ୍ ନିର୍ଗୁଣ ବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି' ବୋଲି କହି, ଆପଣାକୁ କିପରି ନିର୍ଗୁଣବ୍ରହ୍ମ ନାମରେ ପରିଚୟ ଦେଲେ ? ଏହାର ଉତ୍ତରରେ ଏହି କଥା ବୋଲି ଯାଇପାରେ, ଯେ ଜୀବ, ଆତ୍ମା ଓ ପରମାତ୍ମା ମଧ୍ୟରେ ଉପାଧିଗତ ପ୍ରଭେଦ ଥିଲେ ସୁଦ୍ଧା, ଆତ୍ମଜ୍ଞାନରୂପ ଯୋଗବଳରେ, ଏକତା ବା ଅଭେଦଭାବ ସ୍ୱୀକାର କରିବାକୁ ହୁଏ । ମନେ କର, ଗଙ୍ଗାନଦୀରୁ ଗୋଟିଏ ଶାଖାଯୁକ୍ତ କୃତ୍ରିମ-ପୟଃ-ପ୍ରଣାଳୀ ( ନାଳ ଓ କେନାଲ ) ପ୍ରସ୍ତୁତ କରି ଯାଇଅଛି । ତାହା ହେଲେ ଗଙ୍ଗା, ନାଳ ଓ

Digitized by PPRACHIN, SOA

କରନ୍ତାନ୍ତ ଏମାନ ନାମଦ୍ୱାରା ପୃଥକ୍ ୨ ହେଲେ ସୁଦ୍ଧା, ଜଳଦ୍ୱାରା ସମସ୍ତେ ଏକ ରହିଛନ୍ତି । ସେହିପରି ବ୍ରହ୍ମ, ଈଶ୍ୱର ଓ ଜୀବ ମଧ୍ୟରେ ଉପାଧିଗତ ପ୍ରଭେଦ ଥିଲେ ସୁଦ୍ଧା, ଚୈତନ୍ୟାଂଶରେ ଏକତା ଅଛି ।

ପୁଣି ଭଗବାନ୍ ଶ୍ରୀକୃଷ୍ଣ, ଏହି ଗୀତାର ଚତୁର୍ଥ ଅଧ୍ୟାୟ ୧୧ଶ-ଶ୍ଳୋକରେ ଏହା ମଧ୍ୟ କହିଅଛନ୍ତି, ଯେ—"ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହଂ" ଅର୍ଥାତ୍ ଯେଉଁ ଉପାସକ-ଆମ୍ଭଙ୍କୁ ଯେପରି ଉପାସନା କରନ୍ତି, ଆମ୍ଭେ ତାଙ୍କୁ ସେହିପରି ଅନୁଗ୍ରହ କରୁଁ । ଫଳକଥା ଏହି କି, ଉପାସକଭେଦରେ ଆମ୍ଭେ ଭିନ୍ନ ୨ ହେଉଁ ଅର୍ଥାତ୍ ସଗୁଣ ଉପାସକଙ୍କ ପକ୍ଷରେ ଆମ୍ଭେ ସଗୁଣ ଓ ସାକାର ଏବଂ ନିର୍ଗୁଣ ଉପାସକଙ୍କ ପକ୍ଷରେ ଆମ୍ଭେ ନିର୍ଗୁଣ ଓ ନିରାକାର ଅଟୁଁ । କିନ୍ତୁ ପ୍ରକୃତରେ ସଗୁଣ ଓ ନିର୍ଗୁଣ ମଧ୍ୟରେ ସ୍ୱରୂପଗତ କୌଣସି ପ୍ରଭେଦ ନାହିଁ, କେବଳ କାର୍ଯ୍ୟଭେଦରେ ଉପାଧିଗତ ପ୍ରଭେଦ ମାତ୍ର ।

ଏହି ଗୀତାରେ ଭଗବାନ୍, ଅନେକ ସ୍ଥଳରେ ଆପଣାଙ୍କୁ ସଗୁଣବ୍ରହ୍ମ ଓ ନିର୍ଗୁଣବ୍ରହ୍ମ ଏବଂ ବସୁଦେବ-ନନ୍ଦନ ବୋଲି, ପରିଚୟ ଦେଇଅଛନ୍ତି, ସେ ସବୁସ୍ଥଳରେ ଏହି ଅନୁସାରେ ସାମଞ୍ଜସ୍ୟ କରିବାକୁ ହେବ ।

ଭଗବାନ୍ ଶ୍ରୀକୃଷ୍ଣ କେବଳ, ଯେ ଆପଣାଙ୍କୁ ଅବତାର, ସଗୁଣ ଓ ନିର୍ଗୁଣରୂପେ ଆତ୍ମା ଅଂଶରେ ନାନାପ୍ରକାର କରି ପରିଚୟ ଦେଇଅଛନ୍ତି, ତାହା ନୁହେ, ଜଡପଦାର୍ଥସହିତ ମଧ୍ୟ, ଆପଣାଙ୍କୁ ଅଭିନ୍ନ ବୋଲି ପରିଚୟ ଦେଇଅଛନ୍ତି । ତ୍ରୟୋଦଶ ଅଧ୍ୟାୟରେ ସେ ଆପଣାଙ୍କୁ କ୍ଷେତ୍ର ଓ କ୍ଷେତ୍ରଜ୍ଞରୂପରେ ବ୍ୟାଖ୍ୟା କରିଅଛନ୍ତି । କ୍ଷେତ୍ର=ଜଡପଦାର୍ଥ ଓ କ୍ଷେତ୍ରଜ୍ଞ=ଚେତନ ପଦାର୍ଥ, ଏହା ସମସ୍ତେ ସ୍ୱୀକାର କରନ୍ତି, ମାତ୍ର ଭଗବାନ୍, ଆପଣାଙ୍କୁ ସେହି କ୍ଷେତ୍ର ଓ କ୍ଷେତ୍ରଜ୍ଞ ଦୁଇ କଥା ବୋଲି ବର୍ଣ୍ଣନ କରିଅଛନ୍ତି ।

ଫଳକଥା ଏହି ଯେ ଏକ ଅଖଣ୍ଡ ଓ ଅଦ୍ୱିତୀୟ ବ୍ରହ୍ମସତ୍ତା ଭିନ୍ନ, ଜଗତରେ ଆଉ କିଛି ସ୍ୱତନ୍ତ୍ର ପଦାର୍ଥ ନାହିଁ, ଏହା ବେଦାନ୍ତଦର୍ଶନର ମତ ଥିବାରୁ, ଭଗବାନ୍, ସେହି ମତ ଅନୁସାରେ ଆପଣାଙ୍କୁ ଜଡ ଓ ଚୈତନ୍ୟ ଏବଂ ଚୈତନ୍ୟ ମଧ୍ୟରେ ପୁଣି ଜୀବ, ଆତ୍ମା ଓ ପରମାତ୍ମା ଇତ୍ୟାଦି ସବୁସ୍ୱରୂପରେ ବ୍ୟାଖ୍ୟା କରିଅଛନ୍ତି । ୪ ।

ଶ୍ଳୋକଃ ।

କ୍ଲେଶୋଽଧିକତରସ୍ତେଷା,ମବ୍ୟକ୍ତାସକ୍ତଚେତସାଂ ।

ଅବ୍ୟକ୍ତା ହି ଗତିର୍ଦୁଃଖଂ ଦେହବଦ୍ଭିରବାପ୍ୟତେ । ୫ ।

ଅନ୍ୱୟଃ ।

ଅବ୍ୟକ୍ତାସକ୍ତଚେତସାଂ ତେଷାଂ କ୍ଲେଶଃ ଅଧିକତରଃ, ହି ଦେହବଦ୍ଭିଃ ଅବ୍ୟକ୍ତା ଗତିଃ ଦୁଃଖଂ ଅବାପ୍ୟତେ । ୫ ।

ଟୀକା ।

ନନ୍ ତେଽପି ତ୍ୱାମେବ ପ୍ରାପ୍ନୁବନ୍ତି ତର୍ହି ତେଷାଂ ସ୍ୱଭଜନାଦ୍ୱିଂ କୁତ ଉତ୍ୟପେକ୍ଷାସ୍ୟାଂ କ୍ଲେଶାତ୍କ୍ଲେଶକୃତଂ ବିଶେଷ-

ମାତ୍ର । କ୍ଲେଶ ଇତି ଦ୍ୱିଭ୍ୟାଂ । ଅବ୍ୟକ୍ତେ ନିର୍ବିଶେଷେ ବ୍ରହ୍ମଣି ଆସକ୍ତଂ ଚେତୋ ଯେଷାଂ ତେଷାଂ କ୍ଲେଶୋଽଧିକତରଃ ହି ଯସ୍ମାଦବ୍ୟକ୍ତବିଷୟା ଗତିର୍ନିଷ୍ଠା ଦେହାଭିମାନବଦ୍ଭିର୍ଦୁଃଖଂ ଯଥା ଭବତି ଏବମବାପ୍ୟତେ ଦେହାତ୍ମାଭିମାନିନାଂ ତଦ୍ଧ୍ୟଂ ପ୍ରତ୍ୟକ୍ ପ୍ରବଣତ୍ୱସ୍ୟ ଦୁର୍ଘଟତ୍ୱାଦିତି ଭାବଃ । ୫ ।

ପଦବ୍ୟାଖ୍ୟା ।

କ୍ଲେଶଃ—କଷ୍ଟ—ଦୁଃଖ, ଅଧିକତରଃ—ଅତିଶୟ, ତେଷାଂ—ସେମାନଙ୍କର, ଅବ୍ୟକ୍ତାସକ୍ତଚେତସାଂ—ନିର୍ଗୁଣ ବ୍ରହ୍ମରେ ଆସକ୍ତମନା, ଅବ୍ୟକ୍ତା—ନିର୍ଗୁଣ ବିଷୟିଣୀ, ହି—ଯେହେତୁ, ଗତିଃ—ନିଷ୍ଠା—ଧାରଣା, ଦୁଃଖଂ—ଦୁଃଖରେ—କଷ୍ଟରେ, ଦେହବଦ୍ଭିଃ—ଦେହଧାରୀମାନେ, ଅବାପ୍ୟତେ—ପ୍ରାପ୍ତ ହୁଅନ୍ତି । ୫ ।

ଅନୁବାଦ ।

ନିର୍ଗୁଣ ବ୍ରହ୍ମରେ ଆସକ୍ତଚିତ୍ତ ହେବାରୁ, ସେମାନଙ୍କର କଷ୍ଟ ଅଧିକ ହୁଏ । ଯାହାଁକି ନା ଦେହାଭିମାନିମାନେ, ନିର୍ଗୁଣବିଷୟକ ନିଷ୍ଠା, ଅତି କଷ୍ଟରେ ପ୍ରାପ୍ତ ହୁଅନ୍ତି । ୫ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍, ଏହି ଅଧ୍ୟାୟର ତୃତୀୟ ଶ୍ଳୋକରେ କହିଲେ, କି ଯେଉଁମାନେ ନିର୍ଗୁଣ ବ୍ରହ୍ମଙ୍କର ଉପାସନା କରନ୍ତି, ସେମାନେ ମଧ୍ୟ, ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି । ଏଥିରେ ଅର୍ଜୁନଙ୍କର ଏପରି ଆଶଙ୍କା ହେଲା, କି ନିର୍ଗୁଣ ଉପାସକମାନଙ୍କର ଯଦି ସେହି ବ୍ରହ୍ମଲାଭ ହେଲା, ତେବେ ସଗୁଣ ଉପାସକମାନଙ୍କର, ଆଉ ଶ୍ରେଷ୍ଠତା ରହିଲା କେଉଁଠାରେ ? ଅର୍ଜୁନଙ୍କର ସେହି ଆଶଙ୍କା ନିବାରଣପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ନିର୍ଗୁଣ ଓ ସଗୁଣ ଉଭୟ ଉପାସକ, ଆମ୍ଭଙ୍କୁ ପ୍ରାପ୍ତ ହୁଅନ୍ତି, ଏବଂ ଉପାସନା ସାଧନରେ ଦୁହିଙ୍କର କଷ୍ଟ ହୁଏ ସତ, ମାତ୍ର ନିର୍ଗୁଣ ଉପାସକଙ୍କର କଷ୍ଟ, ଅତି ଅଧିକ ପରିମାଣରେ ହୁଏ । ଯାହାଁକି ନା ଉପାସକ ଦେହଧାରୀ ଅଟନ୍ତି, ସୁତରାଂ ତାଙ୍କର ଧାରଣା ଓ ଚିନ୍ତା ଇତ୍ୟାଦି ସମସ୍ତ ବୃତ୍ତି, ସାକାର ବିଷୟିଣୀ ଅଟେ । ନିରାକାର ବା ନିର୍ଗୁଣବିଷୟିଣୀ ଧାରଣା ବା ନିଷ୍ଠା ଲାଭକରିବା, ତାଙ୍କ ପକ୍ଷରେ ଅଧିକ କଷ୍ଟକର । ନିର୍ଗୁଣ-ବିଷୟିଣୀ ନିଷ୍ଠା ନ ହେଲେ ଅର୍ଥାତ୍ ଦେହାଭିମାନ ପରିତ୍ୟାଗ ନ କଲେ, ନିର୍ଗୁଣ ବ୍ରହ୍ମ ଲାଭ ହୋଇ ନ ପାରେ, ଦେହଧାରୀ ଉପାସକ ପକ୍ଷରେ, ନିର୍ଗୁଣନିଷ୍ଠା (ଦେହାଭିମାନ ତ୍ୟାଗ) କଷ୍ଟସାଧ୍ୟ, ସୁତରାଂ ନିର୍ଗୁଣ ବ୍ରହ୍ମଲାଭ ଅତି କଷ୍ଟକର ବ୍ୟାପାର । ମାତ୍ର ସଗୁଣ-ଉପାସକଙ୍କର ଉପାସନା ପ୍ରଣାଳୀ, ଧ୍ୟେୟପଦାର୍ଥର ସାକାରତା ହେତୁ, ନିର୍ଗୁଣ ବ୍ରହ୍ମ ଉପାସନା ଅପେକ୍ଷା, ସହଜ ଅଟେ । ସୁତରାଂ ତହିଁରେ ବ୍ରହ୍ମଲାଭ ସହଜସାଧ୍ୟ ବୋଲି, ତାହା ଶ୍ରେଷ୍ଠ ଅଟେ ।

ନବମ ଅଧ୍ୟାୟର ଦ୍ୱିତୀୟ ଶ୍ଳୋକରେ, ଯେ "ସୁସୁଖଂ କର୍ତ୍ତୁଂ" ଅର୍ଥାତ୍ 'ଆତ୍ମଜ୍ଞାନ ବା ନିର୍ଗୁଣବ୍ରହ୍ମୋପାସନା ସୁଖସାଧ୍ୟ' ବୋଲି ଲେଖା ଅଛି, ତାହା କେବଳ ଦେହାଭିମାନ ପରି-ତ୍ୟାଗୀ ଆତ୍ମଜ୍ଞାନୀଙ୍କ ପକ୍ଷରେ, କିନ୍ତୁ ଏ ଶ୍ଳୋକରେ ଆତ୍ମଜ୍ଞାନ ଜନ୍ମି ନ ଥିବା ବ୍ୟକ୍ତିଙ୍କି ଲକ୍ଷ୍ୟ କରା ଯାଇଅଛି ।

ଫଳକଥା ଏହି କି, ଦେହାଭିମାନରହିତ ଆତ୍ମଜ୍ଞାନସମ୍ପନ୍ନ ସାଧକଙ୍କ ପକ୍ଷରେ ନିର୍ଗୁଣ

Digitized by PPRACHIN, SOA

ଉପାସନା ସୁଖସାଧ୍ୟ, କିନ୍ତୁ ଅମ୍ଭଜ୍ଞାନ ଜନ୍ମି ନ ଥିବା ଦେହାଭିମାନ ସାଧକଙ୍କ ପକ୍ଷରେ, ସଗୁଣ ଉପାସନା, ଶ୍ରେଷ୍ଠ ଅଟେ । ୫ ।

ଶ୍ଳୋକଃ ।

* ଯେ ତୁ ସର୍ବାଣି କର୍ମାଣି, ମୟି ସନ୍ନ୍ୟସ୍ୟ ମତ୍ପରାଃ ।
ଅନନ୍ୟେନୈବ ଯୋଗେନ, ମାଂ ଧ୍ୟାୟନ୍ତ ଉପାସତେ ।୬।

ଅନ୍ୱୟଃ ।

ଯେ ତୁ ସର୍ବାଣି କର୍ମାଣି ମୟି ସନ୍ନ୍ୟସ୍ୟ ମତ୍ପରାଃ ଅନନ୍ୟେନ ଏବ ଯୋଗେନ ମାଂ ଧ୍ୟାୟନ୍ତଃ ଉପାସତେ (ତେଷାଂ ଅହଂ ସମୁଦ୍ଧର୍ତ୍ତା) । ୬ ।

ଟୀକା ।

ମଦ୍ଭକ୍ତାନାଂ ତୁ ମତ୍ପ୍ରସାଦାଦନାୟାସେନୈବ ସିଦ୍ଧିର୍ଭବତୀତ୍ୟାହ । ଯେ ତ୍ୱିତି ଦ୍ୱାଭ୍ୟାଂ । ଯେ ମୟି ପରମେଶ୍ୱରେ ସର୍ବାଣି କର୍ମାଣି ସନ୍ନ୍ୟସ୍ୟ ସମର୍ପ୍ୟ ମତ୍ପରା ଭୂତ୍ୱା ମାଂ ଧ୍ୟାୟନ୍ତୋଽନନ୍ୟେନ ନ ବିଦ୍ୟତେଽନ୍ୟୋ ଭଜନୀୟୋ ଯସ୍ମିନ୍ ତେନୈକାନ୍ତଭକ୍ତିଯୋଗେନୋପାସତ ଇତ୍ୟର୍ଥଃ । ୬ ।

ପଦବ୍ୟାଖ୍ୟା ।

ଯେ ତୁ—କିନ୍ତୁ ଯେଉଁମାନେ, ସର୍ବାଣି କର୍ମାଣି—ସମସ୍ତ କର୍ମମାନଙ୍କୁ, ମୟି ସନ୍ନ୍ୟସ୍ୟ—ଅମ୍ଭଠାରେ ଅର୍ପଣ କରି, ମତ୍ପରାଃ—ଅମ୍ଭଠାରେ ଆସକ୍ତ ହୋଇ, ଅନନ୍ୟେନ ଏବ ଯୋଗେନ—କେବଳ ଏକାନ୍ତ ଭକ୍ତିଯୋଗଦ୍ୱାରା, ମାଂ—ଅମ୍ଭଙ୍କୁ, ଧ୍ୟାୟନ୍ତଃ—ଧ୍ୟାନ କରି, ଉପାସତେ—ଉପାସନା କରନ୍ତି । ୬ ।

ଅନୁବାଦ ।

କିନ୍ତୁ, ଯେଉଁମାନେ, ସମସ୍ତ କର୍ମ ଅମ୍ଭଠାରେ ଅର୍ପଣପୂର୍ବକ ଆସକ୍ତ ହୋଇ ଏକାନ୍ତ ଭକ୍ତିଯୋଗରେ, କେବଳ ଅମ୍ଭଙ୍କୁ ଧ୍ୟାନ କରି ଉପାସନା କରନ୍ତି, (ସେମାନଙ୍କୁ ଅମ୍ଭେ ଉଦ୍ଧାର କରୁଁ) । ୬ ।

ବିଶଦବ୍ୟାଖ୍ୟା ।

କାଳେ, ଅର୍ଜୁନ ମନେ କରିବେ, ଯେ ନିର୍ଗୁଣ ଉପାସକମାନଙ୍କର ଉପାସନାରେ ଅଧିକ କଷ୍ଟ ହେଲେ, ଫଳ ମଧ୍ୟ ଉତ୍କୃଷ୍ଟ ହେଉଥିବ, ଏଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ସଗୁଣ ଓ ନିର୍ଗୁଣ ଉପାସକଙ୍କ ମଧ୍ୟରେ ଫଳର କିଞ୍ଚିନ୍ମାତ୍ର ତାରତମ୍ୟ ନାହିଁ, ବରଂ ନିର୍ଗୁଣ ଉପାସକଙ୍କର ଗୁରୁସେବନ, ଶ୍ରବଣ, ମନନ ଓ ନିଦିଧ୍ୟାସନାଦି କଠିନ ସାଧନଦ୍ୱାରା, ଯେଉଁ ଫଳଲାଭ ହୁଏ, ସଗୁଣ ଉପାସକମାନେ, କେବଳ ପ୍ରୀତିପୂର୍ବକ ଏକାନ୍ତଭକ୍ତିରେ ପୂଜା କରି ଶେଷକୁ ସେହି ଫଳଲାଭ କରନ୍ତି ।

ଫଳକଥା ଏହି କି ସଗୁଣ ବ୍ରହ୍ମଉପାସକମାନେ ସମସ୍ତ କର୍ମ (ଅର୍ଥାତ୍ ଆସନ, ଶୟନ, ଭୋଜନ, ଗମନ, କଥନ, ଶ୍ରବଣପ୍ରଭୃତି ସମସ୍ତ କ୍ରିୟା) ଅମ୍ଭଠାରେ ଅର୍ପଣ କରନ୍ତି ଓ ଅମ୍ଭଠାରେ ଆସକ୍ତ ହୋଇ ଏକାଗ୍ର ଭକ୍ତି କରନ୍ତି, ଏବଂ ଅମ୍ଭଙ୍କୁ ସର୍ବବ୍ୟାପୀ ଓ ସର୍ବଶକ୍ତିମାନ୍ ରୂପରେ ଧ୍ୟାନ କରି ଉପାସନା କରନ୍ତି, ସୁତରାଂ ଅମ୍ଭେ ଅନୁଗ୍ରହ କରି ତାହାଙ୍କୁ, ସଂସାରରୁ

ଉଦ୍ଧାର କରୁଁ, ମାତ୍ର ନିର୍ଗୁଣ ଉପାସକମାନେ, ଅତି କଠିନ ନିରାକାର ବିଷୟକ ଧ୍ୟାନଦ୍ୱାରା ସେ ଫଳଲାଭ କରନ୍ତି । ୬ ।

ଶ୍ଳୋକଃ ।

* ତେଷାମହଂ ସମୁଦ୍ଧର୍ତ୍ତା, ମୃତ୍ୟୁସଂସାରସାଗରାତ୍ ।
ଭବାମି ନ ଚିରାତ୍ପାର୍ଥ, ମୟ୍ୟାବେଶିତଚେତସାଂ । ୭ ।

ଅନ୍ୱୟଃ ।

ହେ ପାର୍ଥ ! ମୟି ଆବେଶିତଚେତସାଂ ତେଷାଂ ଅହଂ ମୃତ୍ୟୁସଂସାରସାଗରାତ୍ ନ ଚିରାତ୍ ସମୁଦ୍ଧର୍ତ୍ତା ଭବାମି । ୭ ।

ଟୀକା ।

ଏବଂ ମୟ୍ୟାବେଶିତଂ ଚେତୋଯୈସ୍ତେଷାଂ ମୃତ୍ୟୁଯୁକ୍ତାତ୍ ସଂସାରସାଗରାଦହଂ ସମ୍ୟଗୁଦ୍ଧର୍ତ୍ତା ଅଚିରେଣ ଭବାମି । ୭ ।

ପଦବ୍ୟାଖ୍ୟା ।

ତେଷାଂ—ସେମାନଙ୍କର, ଅହଂ—ଆମ୍ଭେ, ସମୁଦ୍ଧର୍ତ୍ତା—ଉଦ୍ଧାର କରିବା କର୍ତ୍ତା, ମୃତ୍ୟୁସଂସାରସାଗରାତ୍—ଜନ୍ମ ମରଣପୂର୍ଣ୍ଣ ସଂସାରରୂପ ସମୁଦ୍ରରୁ, ଭବାମି—ହେଉଁ, ନ ଚିରାତ୍—ଅବିଳମ୍ବରେ ଅର୍ଥାତ୍ ଶୀଘ୍ର, ପାର୍ଥ—ହେ ଅର୍ଜ୍ଜୁନ !, ମୟି—ଆମ୍ଭଠାରେ, ଆବେଶିତଚେତସାଂ—ନିବିଷ୍ଟ ଚିତ୍ତ । ୭ ।

ଅନୁବାଦ ।

ହେ ପାର୍ଥ ! ଆମ୍ଭଠାରେ ନିବିଷ୍ଟଚିତ୍ତ ସେହି (ପୂର୍ବୋକ୍ତ) ଭକ୍ତମାନଙ୍କୁ, ଆମ୍ଭେ ମୃତ୍ୟୁପୂର୍ଣ୍ଣ ସଂସାର ସାଗରରୁ ଅବିଳମ୍ବରେ ଉଦ୍ଧାର କରୁଁ । ୭ ।

ବିଶଦବ୍ୟାଖ୍ୟା ।

ଯେଉଁ ସଗୁଣ ଉପାସକମାନେ, ଆପଣାର ସମସ୍ତ କର୍ମ ଆମ୍ଭଠାରେ ଅର୍ପଣ କରି ଏକାଗ୍ର ଭକ୍ତିରେ ଆମ୍ଭଙ୍କୁ ସର୍ବବ୍ୟାପୀ ଓ ସର୍ବଶକ୍ତିମାନ୍ ରୂପରେ ଧ୍ୟାନ କରି ଉପାସନା କରନ୍ତି, ସେହି ଭକ୍ତମାନଙ୍କର ମନ, ଆମ୍ଭଠାରେ ନିବିଷ୍ଟ ଅର୍ଥାତ୍ ଅତ୍ୟନ୍ତ ଆସକ୍ତ ହୋଇଥାଏ । ଏଣୁକରି ତାଙ୍କର ସେହି ଭକ୍ତିରେ ପ୍ରୀତ ହୋଇ, ଆମ୍ଭେ ଅବିଳମ୍ବରେ ତାଙ୍କୁ ଏ ମୃତ୍ୟୁପୂର୍ଣ୍ଣ ଅନିତ୍ୟ ସଂସାର ସାଗରରୁ ଉଦ୍ଧାର କରୁଁ ଅର୍ଥାତ୍ ଦେବଯାନ ମାର୍ଗରେ ବ୍ରହ୍ମ ଲୋକକୁ ନେଇ, ସେଠାରୁ ହିରଣ୍ୟଗର୍ଭ ସହିତରେ ମିଶ୍ରିତ କରି ମୁକ୍ତି ପ୍ରଦାନ କରୁଁ । ୭ ।

ଶ୍ଳୋକଃ ।

* ମୟ୍ୟେବ ମନ ଆଧତ୍ସ୍ୱ, ମୟି ବୁଦ୍ଧିଂ ନିବେଶୟ ।
ନିବସିଷ୍ୟସି ମୟ୍ୟେବ, ଅତ ଊର୍ଦ୍ଧ୍ୱଂ ନ ସଂଶୟଃ । ୮ ।

Digitized by PPRACHIN, SOA

### ଅନ୍ୱୟଃ ।

(ହେ ଅର୍ଜ୍ଜୁନ !) ମୟି ଏବ ମନଃ ଆଧତ୍ସ୍ୱ, ବୁଦ୍ଧିଂ ମୟି ନିବେଶୟ, ଅତଃ ଊର୍ଦ୍ଧ୍ୱଂ ମୟି ଏବ ନିବସିଷ୍ୟସି (ଅତ୍ର) ସଂଶୟଃ ନ । ୮ ।

### ଟୀକା ।

ଯସ୍ମାଦେବଂ ତସ୍ମାନ୍ମୟ୍ୟେବେତି । ମୟ୍ୟେବ ସଂକଳ୍ପବିକଳ୍ପାତ୍ମକଂ ମନ ଆଧତ୍ସ୍ୱ, ସ୍ଥିରୀକୁରୁ ବୁଦ୍ଧିମପି ବ୍ୟବସାୟାତ୍ମିକାଂ ମୟ୍ୟେବ ନିବେଶୟ ଏବଂ କୁର୍ବନ୍ ମତ୍ପ୍ରସାଦେନ ଲବ୍ଧଜ୍ଞାନଃ ସନ୍ ଊର୍ଦ୍ଧ୍ୱଂ ଦେହାନ୍ତେ ମୟ୍ୟେବ ନିବସିଷ୍ୟସି ମଦାତ୍ମନା-ବାସଂ କରିଷ୍ୟସି ନାତ୍ର ସଂଶୟଃ । ତଥାଚ ଶ୍ରୁତିଃ । ଦେହାନ୍ତେ ଦେବଃ ପରଂବ୍ରହ୍ମ ତାରକଂ ବ୍ୟାଚଷ୍ଟେ ଇତି । ୮ ।

### ପଦବ୍ୟାଖ୍ୟା ।

ମୟ୍ୟେବ—ଅମ୍ଭଠାରେ କେବଳ, ମନଃ ଆଧତ୍ସ୍ୱ—ମନକୁ ସ୍ଥିରରୂପେ ସ୍ଥାପନ କର, ମୟି—ଅମ୍ଭଠାରେ, ବୁଦ୍ଧିଂ ବୁଦ୍ଧିକୁ, ନିବେଶୟ—ନିଯୁକ୍ତ କର, ନିବସିଷ୍ୟସି—ବାସ କରିବ—ଲୀନ ହୋଇ ଯିବ, ମୟ୍ୟେବ—ଅମ୍ଭରଠାରେ, ଅତ ଊର୍ଦ୍ଧ୍ୱଂ—ଏହାଉତ୍ତାରୁ ଅର୍ଥାତ୍ ଦେହ ତ୍ୟାଗ ପରେ, ନ ସଂଶୟଃ—ସନ୍ଦେହ ନାହିଁ । ୮ ।

### ଅନୁବାଦ ।

**(ହେ ଅର୍ଜ୍ଜୁନ !) ତୁମ୍ଭେ ମନ ଓ ବୁଦ୍ଧିକୁ କେବଳ ଆମ୍ଭଠାରେ ଲଗାଅ । ତାହା ହେଲେ, ଦେହାନ୍ତରେ ତୁମ୍ଭେ, ଆମ୍ଭଠାରେ ଲୀନ ହେବ, ଏଥିରେ ସନ୍ଦେହ ନାହିଁ । ୮ ।**

### ବିଶଦବ୍ୟାଖ୍ୟା ।

ହେ ଅର୍ଜ୍ଜୁନ ! ତୁମ୍ଭେ ସମସ୍ତ ବିଷୟରୁ ମନକୁ ପ୍ରତ୍ୟାବୃତ୍ତ କରି, କେବଳ ଆମ୍ଭଠାରେ ସ୍ଥାପନ କର ଅର୍ଥାତ୍ ଆମ୍ଭ ଭିନ୍ନ ଅନ୍ୟ କିଛି ଚିନ୍ତା କର ନା । ଏବଂ ବ୍ୟବସାୟାତ୍ମିକା ବା ନିଶ୍ଚୟାତ୍ମିକା ବୁଦ୍ଧିକୁ ଆମ୍ଭଠାରେ ସ୍ଥାପନ କର ଅର୍ଥାତ୍ ବୁଦ୍ଧିବୃତ୍ତି ପ୍ରୟୋଗଦ୍ୱାରା କେବଳ ଆମ୍ଭର ତତ୍ତ୍ୱ ଆଲୋଚନା କର ଓ ଆମ୍ଭର ଶକ୍ତି, ଐଶ୍ୱର୍ଯ୍ୟ ପ୍ରଭୃତିକୁ ହୃଦୟରେ ଧାରଣ କର । ତାହା ହେଲେ, ଦେହାନ୍ତରେ ଅର୍ଥାତ୍ ମରଣ ସମୟରେ ତୁମ୍ଭେ, ଆମ୍ଭଠାରେ ଅଭେଦରୂପରେ ବାସ କରିବ ଅର୍ଥାତ୍ ଆମ୍ଭଠାରେ ମିଳି ଯିବ, ଏଥିରେ କିଛିମାତ୍ର ସନ୍ଦେହ ନାହିଁ ।

ଫଳକଥା ଏହି ଯେ ଏକାନ୍ତ ଭକ୍ତି ସହିତ ମନ ଓ ବୁଦ୍ଧିକୁ ପରମେଶ୍ୱରଙ୍କଠାରେ ଲଗାଇଲେ ଅର୍ଥାତ୍ ଧାରଣା ଓ ଧ୍ୟାନ କଲେ, ଆପଣା ସ୍ୱୟଂ ଆତ୍ମଜ୍ଞାନ ଉଦୟ ହୁଏ, ସୁତରାଂ ମରଣ ପରେ ଆତ୍ମା ଈଶ୍ୱରଙ୍କଠାରେ ମିଳିତ ହୋଇ ଯାଏ । ୮ ।

### ଶ୍ଳୋକଃ ।

* ଅଥ ଚିତ୍ତଂ ସମାଧାତୁଂ, ନ ଶକ୍ନୋଷି ମୟି ସ୍ଥିରଂ ।
ଅଭ୍ୟାସଯୋଗେନ ତତୋ, ମାମିଚ୍ଛାପ୍ତୁଂ ଧନଞ୍ଜୟ । ୯ ।

### ଅନ୍ୱୟଃ ।

ହେ ଧନଞ୍ଜୟ ! ଅଥ ମୟି ଚିତ୍ତଂ ସ୍ଥିରଂ ସମାଧାତୁଂ ନ ଶକ୍ନୋଷି (ଚେତ୍) ତତଃ ଅଭ୍ୟାସଯୋଗେନ ମାଂ ଆପ୍ତୁଂ ଇଚ୍ଛ । ୯ ।

Digitized by PPRACHIN, SOA

ଟୀକା ।

ଅଥାଶକ୍ତଂ ପ୍ରତି ସୁଗମୋପାୟମାହ । ଅଥେତି । ସ୍ଥିରଂ ଯଥା ଭବତ୍ୟେବଂ ମୟି ଚିତ୍ତଂ ଧାରୟିତୁଂ ଯଦି ଶକ୍ନୋନ ଭବସି ତର୍ହି ବକ୍ଷିପ୍ତଂ ଚିତ୍ତଂ ପୁନଃପୁନଃ ପ୍ରତ୍ୟାହୃତ୍ୟ ମଦନୁସ୍ମରଣଲକ୍ଷଣୋଯୋଽଭ୍ୟାସଯୋଗସ୍ତେନ ମାଂ ପ୍ରାପ୍ତୁମିଚ୍ଛ ପ୍ରଯତ୍ନଂ କୁରୁ । ୯ ।

ପଦବ୍ୟାଖ୍ୟା ।

ଅଥ—ଏଥିଉତ୍ତାରୁ, ଚିତ୍ତଂ—ମନକୁ, ସମାଧାତୁଂ—ସ୍ଥାପନ କରିବାକୁ, ନ ଶକ୍ନୋଷି—ଯଦି ସମର୍ଥ ନ ହୁଅ, ମୟି—ଆମ୍ଭଠାରେ, ସ୍ଥିରଂ—ନିଶ୍ଚଳ ଭାବରେ, ଅଭ୍ୟାସ ଯୋଗେନ—ଅଭ୍ୟାସରୂପ ଯୋଗଦ୍ୱାରା, ତତଃ—ତେବେ, ମାଂ—ଆମ୍ଭଙ୍କୁ, ଇଚ୍ଛ—ଇଚ୍ଛା କର, ଆପ୍ତୁଂ—ପାଇବାକୁ, ଧନଞ୍ଜୟ—ହେ ଅର୍ଜ୍ଜୁନ! । ୯ ।

ଅନୁବାଦ ।

ହେ ଧନଞ୍ଜୟ! ଯଦି ଆମ୍ଭଠାରେ ମନକୁ ସ୍ଥିରଭାବରେ ସ୍ଥାପନ କରିବାକୁ ଅସମର୍ଥ ହୁଅ, ତେବେ ଅଭ୍ୟାସ ଯୋଗଦ୍ୱାରା ଆମ୍ଭଙ୍କୁ ପାଇବାକୁ ଇଚ୍ଛା (ଚେଷ୍ଟା) କର । ୯ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ! ତୁମ୍ଭେ ଯଦି, ଆମ୍ଭଠାରେ ମନକୁ ସ୍ଥିରଭାବରେ ସ୍ଥାପନ କରିବାକୁ ଅସମର୍ଥ ହୁଅ, ଅର୍ଥାତ୍ ଯଦି ତୁମ୍ଭର ଧ୍ୟାନ, ଦୀର୍ଘ କାଳସ୍ଥାୟୀ ନ ହୁଏ, ତେବେ, ପ୍ରତ୍ୟାହାର ନାମକ ଯୋଗାଙ୍ଗ ସାଧନ କର, ଅର୍ଥାତ୍ ଅଭ୍ୟାସ ଯୋଗଦ୍ୱାରା, ବିକ୍ଷିପ୍ତ ଚିତ୍ତକୁ ପୁନଃପୁନଃ ବିଷୟରୁ ପ୍ରତ୍ୟାବର୍ତ୍ତନ କର, ଆମ୍ଭର ଧ୍ୟାନରେ ନିଯୁକ୍ତ କର, ଓ ଆମ୍ଭଙ୍କୁ ପାଇବାକୁ ଯତ୍ନ କର, ତାହା ହେଲେ, କ୍ରମେ ମନର ସ୍ଥିରତା ଜନ୍ମିବ, ସୁତରାଂ ପୂର୍ବଶ୍ଳୋକ ବର୍ଣ୍ଣିତ ଉପାୟରେ ଆମ୍ଭଙ୍କୁ ପ୍ରାପ୍ତ ହେବ । ୯ ।

ଶ୍ଳୋକଃ ।

* ଅଭ୍ୟାସେଽପ୍ୟସମର୍ଥୋଽସି, ମତ୍କର୍ମପରମୋଭବ ।
ମଦର୍ଥମପି କର୍ମାଣି, କୁର୍ବନ୍ ସିଦ୍ଧିମବାପ୍ସ୍ୟସି । ୧୦ ।

ଅନ୍ୱୟଃ ।

ଅଭ୍ୟାସେ ଅପି ଅସମର୍ଥଃ ଅସି (ଚେତ୍) ମତ୍କର୍ମପରମଃ ଭବ । ମଦର୍ଥଂ କର୍ମାଣି କୁର୍ବନ୍ ଅପି ସିଦ୍ଧିଂ ଅବାପ୍ସ୍ୟସି । ୧୦ ।

ଟୀକା ।

ଯଦି ପୁନର୍ନୈବ ତସ୍ମାତ୍, ଅଭ୍ୟାସ ଇତି । ଯଦି ପୁନରଭ୍ୟାସେଽପ୍ୟଶକ୍ତୋଽସି ତର୍ହି ମତ୍ପ୍ରୀତ୍ୟର୍ଥାନି ଯାନି କର୍ମାଣି ଏକାଦଶ୍ୟୁପବାସ-ବ୍ରତପୂଜା-ପରିଚର୍ଯ୍ୟା-ନାମସଂକୀର୍ତ୍ତନାଦୀନି ତଦନୁଷ୍ଠାନମେବ ପରମଂ ଯସ୍ୟ ତାଦୃଶୋଭବ ଏବମ୍ଭୂତାନି କର୍ମାଣ୍ୟପି ମଦର୍ଥଂ କୁର୍ବନ୍ ମୋକ୍ଷଂ ପ୍ରାପ୍ସ୍ୟସି । ୧୦ ।

ପଦବ୍ୟାଖ୍ୟା ।

ଅଭ୍ୟାସେଽପି—ଅଭ୍ୟାସ ଯୋଗରେ ମଧ୍ୟ, ଅସମର୍ଥୋଽସି—(ଯେବେ) ଅସମର୍ଥ ହୁଅ, ମତ୍କର୍ମପରମଃ ଭବ—ଆମ୍ଭ ନିମିତ୍ତ କର୍ମ କରିବାକୁ ଶ୍ରେଷ୍ଠ ମନେ କରି ତହିଁରେ ନିଯୁକ୍ତ ହୁଅ, ମଦର୍ଥଂ ଅପି—ଆମ୍ଭର ନିମିତ୍ତ, କର୍ମାଣି—କର୍ମମାନଙ୍କୁ, କୁର୍ବନ୍—କଲେ, ସିଦ୍ଧିଂ—ସିଦ୍ଧିକୁ, ଅବାପ୍ସ୍ୟସି—ପ୍ରାପ୍ତ ହେବ । ୧୦ ।

Digitized by PPRACHIN, SOA

### ଅନୁବାଦ ।

ଅଭ୍ୟାସଯୋଗରେ ମଧ୍ୟ, ଯଦି ଅସମର୍ଥ ହୁଅ, ତେବେ ଆମ୍ଭର ପ୍ରୀତି ପାଇଁ କର୍ମାନୁଷ୍ଠାନ କର । ଆମ୍ଭ ନିମିତ୍ତ କର୍ମ କଲେ ମଧ୍ୟ, ତୁମ୍ଭେ ସିଦ୍ଧି ପ୍ରାପ୍ତ ହେବ । ୧୦ ।

### ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜୁନ ! ତୁମ୍ଭେ ଯଦି ଅଭ୍ୟାସ ଯୋଗ ବା 'ପ୍ରତ୍ୟାହାର' କରିବା ବିଷୟରେ ଅସମର୍ଥ ହୁଅ, ତେବେ, କେବଳ ଆମ୍ଭର ପ୍ରୀତି ନିମିତ୍ତ କର୍ମପରାୟଣ ହୁଅ ଅର୍ଥାତ୍ ଆମ୍ଭ ନିମି କର୍ମ କର ବସ୍ତୁତଃ ଆମ୍ଭର ଗୁଣ କୀର୍ତ୍ତନ କରିବ, ସୁଖରେ ବା ଦୁଃଖରେ ସର୍ବଦା ଆମ୍ଭଙ୍କୁ ସ୍ମରଣ କରିବ, ଆମ୍ଭର ପ୍ରତିମାଚରଣରେ ସେବା କରିବ, ପୁଷ୍ପ, ଚନ୍ଦନ ଓ ଧୂପ ଦୀପାଦି ଦ୍ୱାରା ଆମ୍ଭର ପୂଜା କରିବ, ଶରୀର, ମନ ଓ ବାକ୍ୟଦ୍ୱାରା ଆମ୍ଭଙ୍କୁ ନମସ୍କାର କରିବ, ଆପଣାକୁ ଆମ୍ଭର ଦାସ ବୋଲି ବିଶ୍ୱାସ କରିବ, ଅଥବା ଆମ୍ଭଙ୍କୁ ବନ୍ଧୁ ବୋଲି ଜ୍ଞାନ କରିବ, ଏବଂ ତୁମ୍ଭର ମନ ଓ ପ୍ରାଣ ଆମ୍ଭଠାରେ ସମର୍ପଣ କରିବ ।

ଫଳକଥା, ଏହି କି ଶ୍ରବଣ, କୀର୍ତ୍ତନ, ସ୍ମରଣ, ବନ୍ଦନ, ପୂଜନ, ପ୍ରଣାମ, ଦାସ୍ୟ, ସଖ୍ୟ ଓ ଆତ୍ମ ସମର୍ପଣ, ଏହି ନବଧା ଭକ୍ତିଯୋଗ ବା ଏହା ମଧ୍ୟରୁ ଯେ କୌଣସି ଅଙ୍ଗର ଅନୁଷ୍ଠାନ କରିବ, ତାହା ହେଲେ, ତୁମ୍ଭେ ସିଦ୍ଧି ଲାଭ କରି ପାରିବ । ଅର୍ଥାତ୍ ତୁମ୍ଭର ଚିତ୍ତ ଶୁଦ୍ଧ ଓ ସ୍ଥିର ହେବ । ଚିତ୍ତ ଶୁଦ୍ଧ ଓ ସ୍ଥିର ହେଲେ, ତାହାକୁ ଆମ୍ଭଠାରେ ସ୍ଥିର ଭାବରେ ସ୍ଥାପନ କରି ଦେହାନ୍ତେ ଆମ୍ଭଠାରେ ଲୀନ ହେବ । ୧୦ ।

### ଶ୍ଲୋକଃ ।

* ଅଥୈତଦପ୍ୟଶକ୍ତୋଽସି, କର୍ତ୍ତୁଂ ମଦ୍ୟୋଗମାଶ୍ରିତଃ ।
ସର୍ବକର୍ମଫଳତ୍ୟାଗଂ, ତତଃ କୁରୁ ଯତାତ୍ମବାନ୍ । ୧୧ ।

### ଅନ୍ୱୟଃ ।

ଅଥ ଏତତ୍ ଅପି କର୍ତ୍ତୁଂ ଅଶକ୍ତଃ ଅସି (ଚେତ୍) ତତଃ ମଦ୍ୟୋଗଂ ଆଶ୍ରିତଃ (ସନ୍) ଯତାତ୍ମବାନ୍ (ଭୂତ୍ୱା) ସର୍ବକର୍ମଫଳତ୍ୟାଗଂ କୁରୁ । ୧୧ ।

### ଟୀକା ।

ଅତ୍ୟନ୍ତଂ ଭଗବଦ୍ଧର୍ମପରିନିଷ୍ଠାସାମର୍ଥ୍ୟଶକ୍ତସ୍ୟ ପକ୍ଷାନ୍ତରମାହ, ଅଥୈତ । ଯଦ୍ୟେତଦପି କର୍ତ୍ତୁଂ ନ ଶକ୍ନୋଷି ତର୍ହି ମଦ୍ୟୋଗଂ ମଦେକଶରଣଂ ତ୍ୱମାଶ୍ରିତଃ ସନ୍ ସର୍ବେଷାଂ ଦୃଷ୍ଟାଦୃଷ୍ଟାର୍ଥାନାମାବଶ୍ୟକାନାଂ ଅଗ୍ନିହୋତ୍ରାଦିକର୍ମଣାଂ ଫଳାନି ଯତଚିତ୍ତୋଭୂତ୍ୱା ପରିତ୍ୟଜ, ଏତଦୁକ୍ତଂ ଭବତି, ମୟା ତାବଦୀଶ୍ୱରାଜ୍ଞୟା ଯଥାଶକ୍ତି କର୍ମାଣି କର୍ତ୍ତବ୍ୟାନି ଫଳଂ ତାବତ୍ କର୍ମବଶ୍ୟଂ ବା ପରମେଶ୍ୱରାଧୀନମିତ୍ୟେବ ମତ୍ୱା ଭବନାଶେପ୍ୟ ଫଳାସକ୍ତିଂ ପରିତ୍ୟଜ୍ୟ ବର୍ତ୍ତମାନୋମତ୍ପ୍ରସାଦେନ କୃତାର୍ଥୋଭବିଷ୍ୟସୀତି ତାତ୍ପର୍ଯ୍ୟଂ । ୧୧ ।

### ପଦବ୍ୟାଖ୍ୟା ।

ଅଥ—ଯେବେ, ଏତଦପି—ଏହା ମଧ୍ୟ, ଅଶକ୍ତୋଽସି—ଅସମର୍ଥ ହୁଅ, କର୍ତ୍ତୁଂ—କରିବାକୁ, ମଦ୍ୟୋଗଂ—ଆମ୍ଭ ଶରଣ ଅର୍ଥାତ୍ ଆମ୍ଭକୁ କେବଳ, ଆଶ୍ରିତଃ—ଆଶ୍ରୟ କରି, ସର୍ବକର୍ମଫଳତ୍ୟାଗଂ—ସମସ୍ତ କର୍ମର ଫଳତ୍ୟାଗ, ତତଃ—ତେବେ, କୁରୁ—କର, ଯତାତ୍ମବାନ୍—ସଂଯତଚିତ୍ତ ହୋଇ । ୧୧ ।

Digitized by PPRACHIN, SOA

ଅନୁବାଦ ।

ଯେବେ ଏହା ମଧ୍ୟ କରିବାକୁ ଅସମର୍ଥ ହୁଅ, ତେବେ ଆମ୍ଭଠାରେ ଶରଣାପନ୍ନ ଓ ସଂଯତମନା ହୋଇ ସର୍ବକର୍ମର ଫଳ ପରିତ୍ୟାଗ କର । ୧୧ ।

ବିଶଦବ୍ୟାଖ୍ୟା ।

ଯାଲେ ଅର୍ଜୁନ, ପୂର୍ବୋକ୍ତ ପ୍ରଣାଳୀରେ କର୍ମ ଅନୁଷ୍ଠାନ କରିବା କଷ୍ଟକର ବୋଲି ଭାବିବେ, ସେଥିପାଇଁ ଶ୍ରୀଭଗବାନ୍ ଅନ୍ୟଏକ ସହଜ ଉପାୟ କହୁଅଛନ୍ତି ଯେ ହେ ଅର୍ଜୁନ ! ଯଦି ନବଧାଭକ୍ତି ସମନ୍ୱିତ ଶ୍ରବଣ କୀର୍ତ୍ତନାଦି କର୍ମ କରିବାରେ ଅସମର୍ଥ ହୁଅ, ତେବେ ଆମ୍ଭଠାରେ ଶରଣ ପଶ, ଏବଂ ସମସ୍ତ କର୍ମ ଆମ୍ଭଠାରେ ଅର୍ପଣପୂର୍ବକ ଚକ୍ଷୁଃ କର୍ଣ୍ଣାଦି ସମସ୍ତ ଇନ୍ଦ୍ରିୟମାନଙ୍କୁ ସଂଯତ କରି ନିତ୍ୟ ଓ ନୈମିତ୍ତିକ ସମସ୍ତ କର୍ମର ଫଳ ପରିତ୍ୟାଗ କର ଅର୍ଥାତ୍ ନିଷ୍କାମଭାବରେ କର୍ମାନୁଷ୍ଠାନ କର, ତାହା ହେଲେ ତୁମ୍ଭର କ୍ରମେ ମୋକ୍ଷପ୍ରାପ୍ତି ହେବ । ୧୧ ।

ଶ୍ଳୋକଃ ।

* ଶ୍ରେୟୋହି ଜ୍ଞାନମଭ୍ୟାସାତ୍, ଜ୍ଞାନାଦ୍ଧ୍ୟାନଂ ବିଶିଷ୍ୟତେ ।
ଧ୍ୟାନାତ୍ କର୍ମଫଳତ୍ୟାଗ,ସ୍ତ୍ୟାଗାଚ୍ଛାନ୍ତିରନନ୍ତରଂ । ୧୨ ।

ଅନ୍ୱୟଃ ।

ଅଭ୍ୟାସାତ୍ ଜ୍ଞାନଂ ହି ଶ୍ରେୟଃ, ଜ୍ଞାନାତ୍ ଧ୍ୟାନଂ, ଧ୍ୟାନାତ୍ କର୍ମଫଳତ୍ୟାଗଃ ବିଶିଷ୍ୟତେ, ତ୍ୟାଗାତ୍ ଅନନ୍ତରଂ ଶାନ୍ତିଃ । ୧୨ ।

ଟୀକା ।

ତମିମଂ ଫଳତ୍ୟାଗଂ ସ୍ତୌତି, ଶ୍ରେୟ ଇତି । ସମ୍ୟକ୍ ଜ୍ଞାନରହିତାଦଭ୍ୟାସାତ୍ ଯୁକ୍ତିସହିତୋପଦେଶପୂର୍ବକଂ ଜ୍ଞାନଂ ଶ୍ରେଷ୍ଠଂ, ତସ୍ମାଦପି ତତ୍ପୂର୍ବକଂ ଧ୍ୟାନଂ ବିଶିଷ୍ଟଂ ଭବତି "ତଂ ପଶ୍ୟତେ ନିଷ୍କଳଂ ଧ୍ୟାୟମାନଃ" ଇତି ଶ୍ରୁତେଃ ତସ୍ମାଦପ୍ୟୁକ୍ତଲକ୍ଷଣଃ କର୍ମଫଳତ୍ୟାଗଃ ଶ୍ରେଷ୍ଠଃ, ତସ୍ମାଦେବମ୍ଭୂତତ୍ୟାଗାତ୍ କର୍ମସୁ ତତ୍ଫଳେ ଚ ସକ୍ତିନିବୃତ୍ତ୍ୟା ମତ୍ପ୍ରସାଦେନ ସମନନ୍ତରମେବ ସଂସାରଶାନ୍ତିର୍ଭବତି । ୧୨ ।

ପଦବ୍ୟାଖ୍ୟା ।

ଶ୍ରେୟଃ—ଉତ୍ତମ—ଶ୍ରେଷ୍ଠ, ହି—ନିଶ୍ଚୟ, ଜ୍ଞାନଂ—ଆତ୍ମଜ୍ଞାନ—ବ୍ରହ୍ମଜ୍ଞାନ, ଅଭ୍ୟାସାତ୍—କର୍ମଯୋଗ ଅଭ୍ୟାସ ଅପେକ୍ଷା, ଜ୍ଞାନାତ୍—ଜ୍ଞାନ ଅପେକ୍ଷା, ଧ୍ୟାନଂ—ଜ୍ଞାନପୂର୍ବକ ଧ୍ୟାନ, ବିଶିଷ୍ୟତେ—ଶ୍ରେଷ୍ଠ ଅଟେ, ଧ୍ୟାନାତ୍—ଧ୍ୟାନଠାରୁ, କର୍ମଫଳତ୍ୟାଗଃ—କର୍ମର ଫଳତ୍ୟାଗ (ଶ୍ରେଷ୍ଠ ଅଟେ), ତ୍ୟାଗାତ୍—ଫଳ ତ୍ୟାଗ କରିବାରୁ, ଶାନ୍ତିଃ—ଶାନ୍ତଭାବ ଅର୍ଥାତ୍ ମୁକ୍ତି, ଅନନ୍ତରଂ—ଏହା ପରେ—ଅର୍ଥାତ୍ ଫଳତ୍ୟାଗ କରିବା ପରେ ଅଥବା ତତ୍କ୍ଷଣାତ୍ । ୧୨ ।

ଅନୁବାଦ ।

ଅଭ୍ୟାସଯୋଗ ଅପେକ୍ଷା, ଜ୍ଞାନ ଶ୍ରେଷ୍ଠ ଓ ଜ୍ଞାନଠାରୁ ଧ୍ୟାନ ଅଧିକ ଅଟେ । ପୁଣି ଧ୍ୟାନ ଅପେକ୍ଷା, କର୍ମଫଳ ପରିତ୍ୟାଗ ଶ୍ରେଷ୍ଠ ଅଟେ, କାହିଁକି ନା ଫଳ ପରିତ୍ୟାଗ ଉତ୍ତାରୁ ଶାନ୍ତି ଲାଭ ହୁଏ । ୧୨ ।

Digitized by PPRACHIN, SOA

ଭାଷାପଦବ୍ୟାଖ୍ୟା ।

ଶ୍ରବଣ, କୀର୍ତ୍ତନ, ସ୍ମରଣ, ବନ୍ଦନ ଓ ପାଦସେବାଦି, ଯେ ନବବିଧ ଭକ୍ତିର କଥା ଏଥି ପୂର୍ବରେ କୁହା ଯାଇଅଛି, ତାହା ଅଭ୍ୟାସ ଅପେକ୍ଷା (ପରୋକ୍ଷ) ଜ୍ଞାନ ଶ୍ରେଷ୍ଠ । କାହିଁକି ନା ଜ୍ଞାନଲାଭ ନିମିତ୍ତ ଭକ୍ତ ଶ୍ରବଣ କୀର୍ତ୍ତନାଦି ଅଭ୍ୟାସ କରିବାକୁ ହୁଏ । ମାତ୍ର ଜ୍ଞାନ ଜନ୍ମିଲା ପରେ ଯେଉଁ 'ଧ୍ୟାନ' ରୂପ ଉପାୟରେ ପରମାତ୍ମା ସାକ୍ଷାତ୍କାର ଲାଭ ହୁଏ, ସେହି ଧ୍ୟାନ ବା ନିଦିଧ୍ୟାସନ (ଅପରୋକ୍ଷ ଜ୍ଞାନ) ବ୍ରହ୍ମ ସାକ୍ଷାତ୍କାରର ଅବ୍ୟବହିତ ବା ପ୍ରଧାନ ହେତୁ ବୋଲି, ତାହା ଜ୍ଞାନ ଅପେକ୍ଷା ଶ୍ରେଷ୍ଠ । ମାତ୍ର ଧ୍ୟାନଦ୍ୱାରା ଅଜ୍ଞାନ ନିବୃତ୍ତି ଶୀଘ୍ର ହୁଏ ନା । କିନ୍ତୁ ଫଳକାମନାରହିତ ହୋଇ କର୍ମାନୁଷ୍ଠାନ କଲେ, ପୁନର୍ବାର ଜନ୍ମଗ୍ରହଣର ବୀଜସ୍ୱରୂପ, ଯେ ବାସନା, ତାହା ସମୂଳେ ବିନଷ୍ଟ ହୁଏ । ଜନ୍ମାନ୍ତରର ମୂଳବୀଜସ୍ୱରୂପ ବାସନା ନଷ୍ଟ ହେବାରୁ, ଧର୍ମାଧର୍ମ ରୂ ଅଦୃଷ୍ଟ ସଞ୍ଚିତ ହୋଇ ପାରେ ନାହିଁ, ସୁତରାଂ ଜୀବ, ଶାନ୍ତି ବା ମୋକ୍ଷ ଲାଭ କରେ, ଅତଏବ ଧ୍ୟାନ ଅପେକ୍ଷା ସର୍ବକର୍ମର ଫଳତ୍ୟାଗ ଶ୍ରେଷ୍ଠ ଅଟେ । ୧୨ ।

ଶ୍ଳୋକଃ ।

ଅଦ୍ୱେଷ୍ଟା ସର୍ବଭୂତାନାଂ, ମୈତ୍ରଃ କରୁଣ ଏବ ଚ ।
ନିର୍ମମୋ ନିରହଙ୍କାରଃ, ସମଦୁଃଖସୁଖଃ କ୍ଷମୀ । ୧୩ ।

ଅନ୍ୱୟଃ ।

ସର୍ବଭୂତାନାଂ ଅଦ୍ୱେଷ୍ଟା ମୈତ୍ରଃ ଚ କରୁଣଃ ନିର୍ମମଃ ଏବ ନିରହଙ୍କାରଃ ସମଦୁଃଖସୁଖଃ କ୍ଷମୀ (ସଃ ମେ ପ୍ରିୟଃ) । ୧୩ ।

ଟୀକା ।

ଏବମ୍ଭୂତସ୍ୟ ଭକ୍ତସ୍ୟ କ୍ଷିପ୍ରମେବ ପରମେଶ୍ୱରପ୍ରସାଦହେତୂନ୍ ଧର୍ମାନାହ, ଅଦ୍ୱେଷ୍ଟେତ୍ୟଷ୍ଟଭିଃ । ସର୍ବଭୂତାନାଂ ଯଥାଯଥମଦ୍ୱେଷ୍ଟା, ମୈତ୍ରଃ କରୁଣଶ୍ଚ ଉତ୍ତମେଷୁ ଦ୍ୱେଷଶୂନ୍ୟଃ ସମେଷୁ ମିତ୍ରତୟା ବର୍ତ୍ତତେ ଇତି ମୈତ୍ରଃ, ହୀନେଷୁ କୃପାଳୁରିତ୍ୟର୍ଥଃ । ନିର୍ମମୋ ନିରହଙ୍କାରଶ୍ଚ କୃପାତ୍ତ୍ୱାଦେବାନ୍ୟୈଃ ସମେ ସୁଖଦୁଃଖେ ଯସ୍ୟ ସଃ, କ୍ଷମୀ କ୍ଷମାଶୀଳଃ । ୧୩ ।

ପଦବ୍ୟାଖ୍ୟା ।

ଅଦ୍ୱେଷ୍ଟା—ଦ୍ୱେଷଶୂନ୍ୟ, ସର୍ବଭୂତାନାଂ—ସମସ୍ତ ପ୍ରାଣିମାନଙ୍କ ପ୍ରତି, ମୈତ୍ରଃ—ହିତୈଷୀ, କରୁଣ ଏବ ଚ—ଆପଣା ଅପେକ୍ଷା ହୀନରେ ଦୟାଳୁ, ନିର୍ମମଃ—ମମତାଶୂନ୍ୟ, ନିରହଙ୍କାରଃ—ଅହଙ୍କାରରହିତ, ସମଦୁଃଖସୁଖଃ—ଦୁଃଖ ଓ ସୁଖରେ ସମାନଜ୍ଞାନ, କ୍ଷମୀ—କ୍ଷମାଶୀଳ । ୧୩ ।

ପଦବ୍ୟାଖ୍ୟା ।

ଯେ, ସମସ୍ତ ପ୍ରାଣୀଙ୍କ ପ୍ରତି ଦ୍ୱେଷଶୂନ୍ୟ, ହିତୈଷୀ ଓ ଦୟାଳୁ ଏବଂ ଯେ, ମମତାଶୂନ୍ୟ, ଅହଙ୍କାରବର୍ଜିତ ଓ ସୁଖଦୁଃଖରେ ସମାନଜ୍ଞାନୀ ଏବଂ କ୍ଷମାଶୀଳ ଅଟନ୍ତି । (ସେ, ଆମ୍ଭର ପ୍ରିୟ ଅଟନ୍ତି) । ୧୩ ।

ଭାଷାପଦବ୍ୟାଖ୍ୟା ।

ଯେଉଁ ସାଧକ, ଜଗତର ସମସ୍ତ ପ୍ରାଣୀଙ୍କ ପ୍ରତି ଦ୍ୱେଷଶୂନ୍ୟ ଅର୍ଥାତ୍ ନିଜେ କାହାର

Digitized by PPRACHIN, SOA

ପ୍ରତି ଶତ୍ରୁତା କରନ୍ତି ନାହିଁ, ବା ତାଙ୍କର ଆଉ କେହି ଶତ୍ରୁ ଅଛି ବୋଲି ଭାବନ୍ତି ନାହିଁ, ଯେ, ସମସ୍ତ ପ୍ରାଣୀଙ୍କର ହିତୈଷୀ ଅର୍ଥାତ୍ ସମସ୍ତଙ୍କ ମଙ୍ଗଳ ବିଧାନରେ ସଚେଷ୍ଟ ଓ ସମସ୍ତଙ୍କ ଦୁଃଖ ବିନାଶରେ ତତ୍ପର, ପୁଣି ଜଗତର କୌଣସି ପଦାର୍ଥ ପ୍ରତି ଯାହାଙ୍କର ମମତା (ଅର୍ଥାତ୍ 'ଆମ୍ଭର' ଏପରି ଜ୍ଞାନ) ନାହିଁ, ଏବଂ ଯାହାଙ୍କର ଦେହାଦିରେ 'ଅହଂ' ଭାବ ନାହିଁ, ସୁଖ ଓ ଦୁଃଖରେ ଯାହାଙ୍କର ସମାନ ଭାବ ଅର୍ଥାତ୍ ସୁଖରେ ଯେ ପ୍ରଫୁଲ୍ଲ ହୁଅନ୍ତି ନାହିଁ ବା ଦୁଃଖରେ ବିମର୍ଷ ହୁଅନ୍ତି ନାହିଁ, ସର୍ବଦା ଏକ ପରମାନନ୍ଦଭାବରେ ଅବିଚଳିତ ଥାନ୍ତି. ଏବଂ ଯେ, କ୍ଷମାଶୀଳ ଅର୍ଥାତ୍ କୌଣସି ବ୍ୟକ୍ତିଦ୍ୱାରା ତିରସ୍କୃତ ବା ପୀଡ଼ାପ୍ରାପ୍ତ ହେଲେ, ତାଙ୍କୁ ଦଣ୍ଡ ଦେବାର ଶକ୍ତି ଥିଲେ ମଧ୍ୟ, ଦଣ୍ଡ ନ ଦେଇ କ୍ଷମା କରନ୍ତି, ସେହି ବ୍ୟକ୍ତି ଆମ୍ଭର ପ୍ରିୟ ଅଟନ୍ତି । ୧୩ ।

ଶ୍ଲୋକଃ ।

* ସନ୍ତୁଷ୍ଟଃ ସତତଂ ଯୋଗୀ, ଯତାତ୍ମା ଦୃଢ଼ନିଶ୍ଚୟଃ ।
ମୟ୍ୟର୍ପିତମନୋବୁଦ୍ଧି, ର୍ଯୋମଦ୍ଭକ୍ତଃ ସ ମେ ପ୍ରିୟଃ । ୧୪ ।

ଅନ୍ୱୟଃ ।

ଯଃ ସନ୍ତୁଷ୍ଟଃ ସତତଂ ଯୋଗୀ, ଯତାତ୍ମା, ଦୃଢ଼ନିଶ୍ଚୟଃ, ମୟି ଅର୍ପିତମନୋବୁଦ୍ଧିଃ ମଦ୍ଭକ୍ତଃ, ସଃ ମେ ପ୍ରିୟଃ । ୧୪ ।

ଟୀକା ।

ସନ୍ତୁଷ୍ଟ ଇତି । ସତତଂ ଲାଭେଽଲାଭେ ଚ ସନ୍ତୁଷ୍ଟଃ ପ୍ରସନ୍ନଚିତ୍ତଃ ଯୋଗୀ ଅପ୍ରମତ୍ତଃ ଯତାତ୍ମା ସଂଯତସ୍ୱଭାବଃ ଦୃଢ଼ୋମର୍ତ୍ତ୍ୱ ଏବେ ନିଶ୍ଚୟୋଽସ୍ୟ ମୟ୍ୟର୍ପିତେ ମନୋବୁଦ୍ଧୀ ଯେନ ଏବମ୍ଭୂତୋ ଯୋ ମଦ୍ଭକ୍ତଃ ସ ମେ ପ୍ରିୟଃ । ୧୪ ।

ପଦବ୍ୟାଖ୍ୟା ।

ସନ୍ତୁଷ୍ଟଃ—ଲାଭ ଓ ଅଲାଭରେ ପ୍ରସନ୍ନଚିତ୍ତ, ସତତଂ—ନିରନ୍ତର, ଯୋଗୀ—ଯୋଗାଭ୍ୟାସୀ—ପ୍ରମାଦହୀନ, ଯତାତ୍ମା—ଜିତେନ୍ଦ୍ରିୟ, ଦୃଢ଼ନିଶ୍ଚୟଃ—ଅଚଳବିଶ୍ୱାସୀ, ମୟି—ଆମ୍ଭଠାରେ, ଅର୍ପିତମନୋବୁଦ୍ଧିଃ—ମନ ଓ ବୁଦ୍ଧିକୁ ସମର୍ପଣ କରିଥାନ୍ତି; ଯଃ—ଯେଉଁ ବ୍ୟକ୍ତି, ମଦ୍ଭକ୍ତଃ—ଆମ୍ଭର ଭକ୍ତ, ସଃ ମେ ପ୍ରିୟଃ—ସେ ବ୍ୟକ୍ତି ଆମ୍ଭର ପ୍ରିୟ ଅଟନ୍ତି । ୧୪ ।

ଅନୁବାଦ ।

ଯେଉଁ ବ୍ୟକ୍ତି, ସର୍ବଦା ସନ୍ତୁଷ୍ଟ, ଯୋଗାଭ୍ୟାସୀ, ଜିତେନ୍ଦ୍ରିୟ ଓ ଅଚଳବିଶ୍ୱାସୀ ଏବଂ ଯେ, ଆମ୍ଭଠାରେ ମନ ଓ ବୁଦ୍ଧି ଅର୍ପଣ କରି ଭକ୍ତିପରାୟଣ ହୁଅନ୍ତି, ସେ ଆମ୍ଭର ପ୍ରିୟ ଅଟନ୍ତି । ୧୪ ।

ବିଶଦବ୍ୟାଖ୍ୟା ।

ଯେଉଁ ବ୍ୟକ୍ତି, ଲାଭରେ ଓ ହାନିରେ, ସମ୍ପଦରେ ଓ ବିପଦରେ ପ୍ରସନ୍ନ ଚିତ୍ତ, ଯେ, ଯୋଗାଭ୍ୟାସାଧନଦ୍ୱାରା ଭ୍ରମ-ପ୍ରମାଦ-ଶୂନ୍ୟ, ଯେ, ମନର ସହିତ ସମସ୍ତ ଇନ୍ଦ୍ରିୟମାନଙ୍କୁ ଆୟତ୍ତ ବା ବଶୀଭୂତ କରିଅଛନ୍ତି, ଯାହାଙ୍କର ବିଶ୍ୱାସ ଆମ୍ଭଠାରେ ଅଚଳ ଓ ଯେ, ଆପଣାର ମନ ଓ ବୁଦ୍ଧିକୁ ଆମ୍ଭଠାରେ ସମର୍ପଣ କରିଅଛନ୍ତି ଏବଂ ଯେ, ଆମ୍ଭଠାରେ ଭକ୍ତିପରାୟଣ ଅଟନ୍ତି, ସେହି ବ୍ୟକ୍ତି, ଆମ୍ଭର ପ୍ରିୟ ଅଟନ୍ତି । ସୁତରାଂ ଆମ୍ଭ ଅନୁଗ୍ରହରେ ଶୀଘ୍ର ପରମଶାନ୍ତି ପ୍ରାପ୍ତ ହୁଅନ୍ତି । ୧୪ ।

Digitized by PPRACHIN, SOA

ଶ୍ଳୋକଃ ।

* ଯସ୍ମାନ୍ନୋଦ୍ୱିଜତେ ଲୋକୋ, ଲୋକାନ୍ନୋଦ୍ୱିଜତେ ଚ ଯଃ ।
ହର୍ଷାମର୍ଷଭୟୋଦ୍ୱେଗୈ,ର୍ମୁକ୍ତୋ ଯଃ ସ ଚ ମେ ପ୍ରିୟଃ । ୧୫ ।

ଅନ୍ୱୟଃ ।

ଲୋକଃ ଯସ୍ମାତ୍ ନ ଉଦ୍ୱିଜତେ, ଚ ଯଃ ଲୋକାତ୍ ନ ଉଦ୍ୱିଜତେ ଚ ଯଃ ହର୍ଷାମର୍ଷଭୟୋଦ୍ୱେଗୈଃ ମୁକ୍ତଃ, ସଃ ମେ ପ୍ରିୟଃ । ୧୫ ।

ଟୀକା ।

କିଞ୍ଚ ଯସ୍ମାଦିତି । ଯସ୍ମାତ୍ ସକାଶାତ୍ ଲୋକୋ ଜନୋ ନୋଦ୍ୱିଜତେ ଭୟଶଙ୍କୟା କ୍ଷୋଭଂ ନ ପ୍ରାପ୍ନୋତି, ଯଶ୍ଚ ଲୋକାନ୍ନୋଦ୍ୱିଜତେ, ଯଶ୍ଚ ସ୍ୱାଭାବିକୈର୍ହର୍ଷାଦିଭିର୍ମୁକ୍ତଃ, ତତ୍ର ହର୍ଷଃ ସ୍ୱସ୍ୟେଷ୍ଟଲାଭେ ଉତ୍ସାହଃ, ଅମର୍ଷଃ ପରସ୍ୟ ଲାଭେଽସହନଂ, ଭୟଂ ତ୍ରାସଃ, ଉଦ୍ୱେଗୋ ଭୟାଦିନିମିତ୍ତଶ୍ଚିତ୍ତକ୍ଷୋଭଃ, ଏତୈର୍ବିମୁକ୍ତୋ ଯୋ ମଦ୍ଭକ୍ତଃ ସ ମେ ପ୍ରିୟଃ । ୧୫ ।

ପଦବ୍ୟାଖ୍ୟା ।

ଯସ୍ମାତ୍—ଯାହାଠାରୁ, ନ ଉଦ୍ୱିଜତେ—ଉଦ୍ୱେଗପ୍ରାପ୍ତ ହୁଅନ୍ତି ନାହିଁ, ଲୋକଃ—ପ୍ରାଣୀ, ଲୋକାତ୍—ପ୍ରାଣିଙ୍କଠାରୁ, ନ ଉଦ୍ୱିଜତେ ଚ ଯଃ—ଯେ ପୁଣି ଉଦ୍ୱେଗପ୍ରାପ୍ତ ହୁଅନ୍ତି ନାହିଁ, ହର୍ଷାମର୍ଷଭୟୋଦ୍ୱେଗୈଃ—ପ୍ରସନ୍ନତା, ଦ୍ୱେଷ, ତ୍ରାସ ଓ ଆକୁଳତାରୁ, ମୁକ୍ତଃ—ମୁକ୍ତିପ୍ରାପ୍ତ, ଯଃ—ଯେଉଁ ବ୍ୟକ୍ତି, ସ ଚ—ସେ ମଧ୍ୟ, ମେ ପ୍ରିୟଃ—ଆମ୍ଭର ପ୍ରିୟ ଅଟନ୍ତି । ୧୫ ।

ଅନୁବାଦ ।

ଯାହାଙ୍କଠାରୁ ଲୋକେ ଉଦ୍ୱେଗପ୍ରାପ୍ତ ହୁଅନ୍ତି ନାହିଁ ଓ ଯେ, ଲୋକମାନଙ୍କଠାରୁ ନିଜେ ଉଦ୍ୱେଗପ୍ରାପ୍ତ ହୁଅନ୍ତି ନାହିଁ ଏବଂ ଯେ, ହର୍ଷ, ଦ୍ୱେଷ, ଭୟ ଓ ଆକୁଳତାଶୂନ୍ୟ ଅଟନ୍ତି, ସେ ମଧ୍ୟ ଆମ୍ଭର ପ୍ରିୟ ଅଟନ୍ତି । ୧୫ ।

ବିଶଦବ୍ୟାଖ୍ୟା ।

ଯେ, ଶରୀର, ମନ ଓ ବଚନଦ୍ୱାରା ଅନ୍ୟ ପ୍ରାଣିଙ୍କୁ ପୀଡ଼ା ଦିଅନ୍ତି ନାହିଁ ବୋଲି, ତାଙ୍କୁ କେହି ଭୟ କରନ୍ତି ନାହିଁ ଓ ଯେ, ମନୁଠାରେ ଈଶ୍ୱର ଭିନ୍ନ, ଆଉ କିଛି ଅନୁଭବ କରୁ ନ ଥିବାରୁ, କାହାରିଠାରୁ ଭୟ ପ୍ରାପ୍ତ ହୁଅନ୍ତି ନାହିଁ, ଓ ଯେ, ଇଷ୍ଟଲାଭରେ ହର୍ଷପ୍ରାପ୍ତ ଓ ପରର ଲାଭରେ ଦ୍ୱେଷଯୁକ୍ତ ହୁଅନ୍ତି ନାହିଁ ପୁଣି ଯେ, ବ୍ୟାଘ୍ରାଦି ହିଂସ୍ରଜନ୍ତୁ ଓ ଭୂତାଦି ଦେବଯୋନି ପ୍ରଭୃତି କୌଣସି ପ୍ରାଣିଙ୍କୁ ଭୟ କରନ୍ତି ନାହିଁ ଏବଂ କୌଣସି ଅବସ୍ଥାରେ ଯେ, ଆକୁଳ ହୁଅନ୍ତି ନାହିଁ, ସେ ମଧ୍ୟ, ଆମ୍ଭର ପ୍ରିୟ ଅଟନ୍ତି । ୧୫ ।

ଶ୍ଳୋକଃ ।

* ଅନପେକ୍ଷଃ ଶୁଚିର୍ଦକ୍ଷ, ଉଦାସୀନୋ ଗତବ୍ୟଥଃ ।
ସର୍ବାରମ୍ଭପରିତ୍ୟାଗୀ, ଯୋ ମଦ୍ଭକ୍ତଃ ସ ମେ ପ୍ରିୟଃ । ୧୬ ।

ଅନ୍ୱୟଃ ।

ଯଃ ମଦ୍ଭକ୍ତଃ ଅନପେକ୍ଷଃ ଶୁଚିଃ ଦକ୍ଷଃ ଉଦାସୀନଃ ଗତବ୍ୟଥଃ ସର୍ବାରମ୍ଭପରିତ୍ୟାଗୀ, ସଃ ମେ ପ୍ରିୟଃ । ୧୬ ।

Digitized by PPRACHIN, SOA

ଟୀକା ।

କିଞ୍ଚ ଅନପେକ୍ଷ ଇତି । ଅନପେକ୍ଷୋ ଯଦୃଚ୍ଛୋପସ୍ଥିତେଽପ୍ୟର୍ଥେ ନିସ୍ପୃହଃ ଶୁଚିର୍ବାହ୍ୟାଭ୍ୟନ୍ତରଶୌଚସମ୍ପନ୍ନଃ ଦକ୍ଷୋଽନଳସଃ, ଉଦାସୀନଃ ପକ୍ଷପାତରହିତଃ ଗତବ୍ୟଥଃ ଅଧିଶୂନ୍ୟଃ ସର୍ବାନ୍ ଦୃଷ୍ଟାଦୃଷ୍ଟାର୍ଥାନାରମ୍ଭାନୁଦ୍ୟମାନ୍ ପରିତ୍ୟକ୍ତୁଂ ଶୀଳଂ ଯସ୍ୟ ସଃ ଏବମ୍ଭୂତଃ ସନ୍ ଯୋ ମଦ୍ଭକ୍ତଃ ସ ମେ ପ୍ରିୟଃ । ୧୬ ।

ପଦବ୍ୟାଖ୍ୟା ।

ଅନପେକ୍ଷଃ—ଅଯତ୍ନଲବ୍ଧ ଦ୍ରବ୍ୟରେ ମଧ୍ୟ ସ୍ପୃହାହୀନ, ଶୁଚିଃ—ବାହ୍ୟ ଓ ଅନ୍ତରରେ ଶୁଦ୍ଧ, ଦକ୍ଷଃ—ଆଳସ୍ୟରହିତ, ଉଦାସୀନଃ—ପକ୍ଷପାତଶୂନ୍ୟ, ଗତବ୍ୟଥଃ—ମାନସିକପୀଡାଶୂନ୍ୟ, ସର୍ବାରମ୍ଭପରିତ୍ୟାଗୀ—ସମସ୍ତ ଉଦ୍ୟମତ୍ୟାଗୀ, ଯୋ ମଦ୍ଭକ୍ତଃ—ଯେ ଆମ୍ଭର ଭକ୍ତ, ସଃ ମେ ପ୍ରିୟଃ—ସେ ଆମ୍ଭର ପ୍ରିୟ ଅଟନ୍ତି । ୧୬ ।

ଅନୁବାଦ ।

ଆମ୍ଭର ଯେଉଁ ଭକ୍ତ, ନିରପେକ୍ଷ, ଶୁଚି, ଆଳସ୍ୟହୀନ, ଉଦାସୀନ, ଓ ମାନସିକପୀଡା-ବର୍ଜିତ ଏବଂ ସର୍ବପ୍ରକାର (ସକାମ) ଉଦ୍ୟମତ୍ୟାଗୀ, ସେ, ଆମ୍ଭର ପ୍ରିୟ ଅଟନ୍ତି । ୧୬ ।

ବିଶଦବ୍ୟାଖ୍ୟା ।

ଆମ୍ଭର ଯେଉଁ ଭକ୍ତ, ବିନାଯତ୍ନରେ ପ୍ରାପ୍ତ ବା ଅନାୟାସଲବ୍ଧ ଦ୍ରବ୍ୟରେ ମଧ୍ୟ ଭୋଗାଭିଳାଷରହିତ, ଯାହାଙ୍କର ବାହ୍ୟ ଓ ଅଭ୍ୟନ୍ତର ସର୍ବଦା ପବିତ୍ର, ଅର୍ଥାତ୍ ଯେ, ସ୍ନାନାଦିଦ୍ୱାରା ବାହ୍ୟଶୁଦ୍ଧି ଓ କାମକ୍ରୋଧାଦି ରିପୁ ଦମନଦ୍ୱାରା ଅନ୍ତରଶୁଦ୍ଧି କରିଅଛନ୍ତି, ଯେ, ଆଳସ୍ୟହୀନ ଅର୍ଥାତ୍ କର୍ତ୍ତବ୍ୟପାଳନରେ ସର୍ବଦା ତତ୍ପର, ଯେ, ଶତ୍ରୁ ବା ମିତ୍ର କାହାରି ପ୍ରତି କୌଣସି ବିଷୟରେ ପକ୍ଷପାତ କରନ୍ତି ନାହିଁ, ଓ ଯେ, ଲୋକନିନ୍ଦା ବା ତିରସ୍କାରାଦିଦ୍ୱାରା ଅଥବା ରୋଗ, ଶୋକ ଓ ଆଘାତାଦିଦ୍ୱାରା ମନରେ ବ୍ୟଥା ପ୍ରାପ୍ତ ହୁଅନ୍ତି ନାହିଁ ଏବଂ ଯେ, ଫଳ ପାଇବା ଉଦ୍ଦେଶ୍ୟରେ କୌଣସି ପ୍ରକାର ଉଦ୍ୟମ କରନ୍ତି ନାହିଁ, ସେହି ବ୍ୟକ୍ତି ଆମ୍ଭର ପ୍ରିୟ ଅଟନ୍ତି । ୧୬ ।

ଶ୍ଳୋକଃ ।

* ଯୋ ନ ହୃଷ୍ୟତି ନ ଦ୍ୱେଷ୍ଟି, ନ ଶୋଚତି ନ କାଂକ୍ଷତି ।
ଶୁଭାଶୁଭପରିତ୍ୟାଗୀ, ଭକ୍ତିମାନ୍ ଯଃ ସ ମେ ପ୍ରିୟଃ । ୧୭ ।

ଅନ୍ୱୟଃ ।

ଯଃ ନ ହୃଷ୍ୟତି, ନ ଦ୍ୱେଷ୍ଟି, ନ ଶୋଚତି, ନ କାଂକ୍ଷତି, ଯଃ ଶୁଭାଶୁଭପରିତ୍ୟାଗୀ ଭକ୍ତିମାନ୍, ସଃ ମେ ପ୍ରିୟଃ । ୧୭ ।

ଟୀକା ।

କିଞ୍ଚ ଯ ଇତି । ପ୍ରିୟଂ ପ୍ରାପ୍ୟ ଯୋ ନ ହୃଷ୍ୟତି, ଅପ୍ରିୟଂ ପ୍ରାପ୍ୟ ଯୋ ନ ଦ୍ୱେଷ୍ଟି, ଇଷ୍ଟାର୍ଥନାଶେ ସତି ଯୋ ନ ଶୋଚତି, ଅପ୍ରାପ୍ତମର୍ଥଂ ଯୋ ନ କାଂକ୍ଷତି ଶୁଭାଶୁଭେ ପୁଣ୍ୟପାପେ ପରିତ୍ୟକ୍ତୁଂ ଶୀଳଂ ଯସ୍ୟ ସଃ ଏବମ୍ଭୂତୋ ଭୂତ୍ୱା ଯୋ ମଦ୍ଭକ୍ତିମାନ୍ ସ ମେ ପ୍ରିୟଃ । ୧୭ ।

ପଦବ୍ୟାଖ୍ୟା ।

ଯଃ—ଯେଉଁ ପୁରୁଷ, ନ ହୃଷ୍ୟତି—ହୃଷ୍ଟ ହୁଅନ୍ତି ନାହିଁ, ନ ଦ୍ୱେଷ୍ଟି—ଦ୍ୱେଷ କରନ୍ତି ନାହିଁ, ନ ଶୋଚତି—

### ଶ୍ଳୋକଃ ।

* ଯେ ତୁ ଧର୍ମାମୃତମିଦଂ, ଯଥୋକ୍ତଂ ପର୍ଯ୍ୟୁପାସତେ ।
ଶ୍ରଦ୍ଦଧାନା ମତ୍ପରମା, ଭକ୍ତାସ୍ତେଽତୀବ ମେ ପ୍ରିୟାଃ ।୨୦ ।

ଇତି ଶ୍ରୀ ମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସମ୍ବାଦେ ଭକ୍ତିଯୋଗୋନାମ ଦ୍ୱାଦଶୋଽଧ୍ୟାୟଃ । ୧୨ ।

---

### ଅନ୍ୱୟଃ ।

ତୁ ଶ୍ରଦ୍ଦଧାନାଃ ମତ୍ପରମାଃ ଯେ ଭକ୍ତାଃ ଇଦଂ ଯଥୋକ୍ତଂ ଧର୍ମାମୃତଂ ପର୍ଯ୍ୟୁପାସତେ ତେ ମେ ଅତୀବ ପ୍ରିୟାଃ । ୨୦ ।

ଇତି ଶ୍ରୀଭଗବଦ୍‌ଗୀତାୟାଂ ଅନ୍ୱୟେ ଦ୍ୱାଦଶୋଽଧ୍ୟାୟଃ । ୧୨ ।

---

### ଟୀକା ।

ଉକ୍ତଂ ଧର୍ମଜାତଂ ସଫଲମୁପସଂହରତି, ଯେ ତ୍ୱିତି । ଯଥୋକ୍ତମୁକ୍ତପ୍ରକାରଂ ଧର୍ମମେବାମୃତଂ ଅମୃତତ୍ୱସାଧନତ୍ୱାତ୍, ଧର୍ମ୍ୟାମୃତମିତି କେଚିତ୍ପଠନ୍ତି ଯେ ତଦୁପାସତେ ଅନୁତିଷ୍ଠନ୍ତି ଶ୍ରଦ୍ଧାଂ କୁର୍ବନ୍ତୋମତ୍ପରମାଶ୍ଚ ସନ୍ତୋମଦ୍ଭକ୍ତାସ୍ତେଽତୀବ ମେ ପ୍ରିୟା ଇତି ।

ଦୁଃଖମବ୍ୟକ୍ତବର୍ତ୍ମୈତଦ୍ଧୃଷ୍ଟ୍ୱବଶ୍ୟମତୋ ବୁଧଃ ।
ସୁଖଂ କୃଷ୍ଣପଦାମ୍ଭୋଜଂ ଭକ୍ତିସତ୍ପଥବାନ୍ ଭଜେତ୍ । ୨୦ ।

ଇତି ଶ୍ରୀଭଗବଦ୍‌ଗୀତାୟାଂ ସ୍ୱାମିକୃତଟୀକାୟାଂ ଦ୍ୱାଦଶୋଽଧ୍ୟାୟଃ । ୧୨ ।

---

### ପଦବ୍ୟାଖ୍ୟା ।

ଯେ ତୁ—କିନ୍ତୁ ଯେଉଁମାନେ, ଧର୍ମାମୃତଂ—ଧର୍ମରୂପ ଅମୃତକୁ, ଇଦଂ—ଏହି, ଯଥୋକ୍ତଂ—ଯେପରି (ପୂର୍ବଶ୍ଳୋକମାନଙ୍କରେ) କୁହାଗଲା, ପର୍ଯ୍ୟୁପାସତେ—ସମ୍ପୂର୍ଣ୍ଣରୂପେ ଉପାସନା କରନ୍ତି, ଶ୍ରଦ୍ଦଧାନାଃ—ଶ୍ରଦ୍ଧାଯୁକ୍ତ ହୋଇ, ମତ୍ପରମାଃ—ଏକାନ୍ତଭକ୍ତିରେ ଆମ୍ଭର ଧ୍ୟାନାଦି କରନ୍ତି, ଭକ୍ତାଃ—ଭକ୍ତ, ତେ—ସେମାନେ, ଅତୀବ—ଅତିଶୟ, ମେ ପ୍ରିୟାଃ—ଆମ୍ଭର ପ୍ରିୟ ଅଟନ୍ତି । ୨୦ ।

ଇତି ଶ୍ରୀଭଗବଦ୍‌ଗୀତା-ପଦବ୍ୟାଖ୍ୟାୟାଂ ଦ୍ୱାଦଶୋଽଧ୍ୟାୟଃ । ୧୨ ।

---

### ଅନୁବାଦ ।

କିନ୍ତୁ, ଯେଉଁମାନେ ପୂର୍ବୋକ୍ତ ଏହି ଅମୃତତୁଲ୍ୟ ଧର୍ମର ଉପାସନା କରନ୍ତି ଓ ଶ୍ରଦ୍ଧାଳୁ ହୋଇ ଆମ୍ଭଠାରେ ଧ୍ୟାନପରାୟଣ ହୁଅନ୍ତି, ସେହି ଭକ୍ତମାନେ ଆମ୍ଭର ଅତି ପ୍ରିୟ ଅଟନ୍ତି । ୨୦ ।

ଇତି ଶ୍ରୀଭଗବଦ୍‌ଗୀତାର ଉତ୍କଳାନୁବାଦରେ ଦ୍ୱାଦଶ ଅଧ୍ୟାୟ ସମାପ୍ତ । ୧୨ ।

---

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଏ ଅଧ୍ୟାୟର ୧୩ଶ ଠାରୁ ୧୯ଶ ପର୍ଯ୍ୟନ୍ତ ୭ ଶ୍ଳୋକରେ ଭକ୍ତର ଯେଉଁ ସବୁ ଲକ୍ଷଣ ଲେଖା ହୋଇଅଛି, ସେହିପରି ଲକ୍ଷଣ ଯୁକ୍ତ ହୋଇ, ଯେଉଁ ଭକ୍ତମାନେ ଏ ଅମୃତ ତୁଲ୍ୟ ଧର୍ମର ଉପାସନା କରନ୍ତି ଓ ଆମ୍ଭଙ୍କୁ ସର୍ବଶ୍ରେଷ୍ଠ ମନେ କରି ଏକାନ୍ତ ଶ୍ରଦ୍ଧା ଓ ଭକ୍ତିରେ ଆମ୍ଭର ଧ୍ୟାନାଦି କରନ୍ତି, ସେମାନେ ଆମ୍ଭର ଅତି ପ୍ରିୟ ଅଟନ୍ତି ଅର୍ଥାତ୍ ଆମ୍ଭେ ପ୍ରୀତ ହୋଇ ତାଙ୍କୁ ସହଜରେ ଓ ଶୀଘ୍ର ମୋକ୍ଷ ପ୍ରଦାନ କରୁଁ ।

ଭକ୍ତିପୂର୍ବକ ଉପାସନା କଲେ, କି ପ୍ରକାର ଭଗବାନଙ୍କୁ ଲାଭ କରାଯାଏ, କି ପ୍ରକାରେ ଉପାସନା କରାଯାଏ, କିପରି ଭକ୍ତିକରିବାକୁ ହୁଏ, ଭକ୍ତର ଲକ୍ଷଣ କଣ ? ଭକ୍ତି ବ୍ୟତୀତ, ଯେ କୌଣସି ସାଧନ ସିଦ୍ଧ ହୁଏ ନାହିଁ, ଭକ୍ତପ୍ରତି ଭଗବାନ୍ ଅନୁଗ୍ରହ କରି କେତେ ଅପ୍ରାର୍ଥିତ ବିଷୟ ପ୍ରଦାନ କରନ୍ତି, ପ୍ରକୃତ ଭକ୍ତର ନିର୍ମଳ ପ୍ରକୃତି କି ପ୍ରକାର ଅଟେ, ଇତ୍ୟାଦି ବିଷୟମାନ ସବିସ୍ତାରେ ଗୀତାର ଦ୍ୱିତୀୟ ଷଟ୍କରେ ଅର୍ଥାତ୍ ୭ମଠାରୁ ୧୨ ପର୍ଯ୍ୟନ୍ତ ୬ ଅଧ୍ୟାୟରେ ବିଶେଷରୂପେ ବର୍ଣ୍ଣିତ ହେଲା । ୨୦ ।

ଇତି ଶ୍ରୀଭଗବଦ୍‌ଗୀତାର ବିଶଦବ୍ୟାଖ୍ୟାରେ ଦ୍ୱାଦଶ ଅଧ୍ୟାୟ ସମାପ୍ତ ।୧୨।

("ତତ୍" ପଦବୋଧକ ଦ୍ୱିତୀୟ ଷଟ୍କ ସମାପ୍ତ ।)



Digitized by PPRACHIN, SOA

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ତ୍ରୟୋଦଶୋଽଧ୍ୟାୟଃ ।

### ପ୍ରକୃତିପୁରୁଷ-ବିବେକ ଯୋଗଃ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।— ଇଦଂ ଶରୀରଂ କୌନ୍ତେୟ, କ୍ଷେତ୍ରମିତ୍ୟଭିଧୀୟତେ ।

ଏତଦ୍ ଯୋ ବେତ୍ତି ତଂ ପ୍ରାହୁଃ, କ୍ଷେତ୍ରଜ୍ଞ ଇତି ତଦ୍ବିଦଃ । ୧ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ହେ କୌନ୍ତେୟ ! ଇଦଂ ଶରୀରଂ କ୍ଷେତ୍ରଂ ଇତି ଅଭିଧୀୟତେ, ଯଃ ଏତତ୍ ବେତ୍ତି, ତଦ୍ବିଦଃ ତଂ କ୍ଷେତ୍ରଜ୍ଞଃ ଇତି ପ୍ରାହୁଃ । ୧ ।

ଟୀକା ।

ଭକ୍ତାନାମହମୁଦ୍ଧର୍ତ୍ତା ସଂସାରାଦିତ୍ୟବାଦି ଯତ୍ ।

ତ୍ରୟୋଦଶେଽଥ ତତ୍ସିଦ୍ଧୌ ତତ୍ତ୍ୱଜ୍ଞାନମୁଦୀର୍ୟ୍ୟତେ ।

ତେଷାମହଂ ସମୁଦ୍ଧର୍ତ୍ତା ମୃତ୍ୟୁସଂସାରସାଗରାତ୍ । ଭବାମି ନ ଚିରାତ୍ ପାର୍ଥେତି ପ୍ରାକ୍ ପ୍ରତିଜ୍ଞାତଂ ତତ୍ତ୍ୱଜ୍ଞାନଂ ବିନା ସଂସାରୋଦ୍ଧରଣଂ ନ ସମ୍ଭବତୀତି ତତ୍ତ୍ୱଜ୍ଞାନୋପଦେଶାର୍ଥଂ ପ୍ରକୃତିପୁରୁଷବିବେକାଧ୍ୟାୟ ଆରଭ୍ୟତେ, ତତ୍ର ଯତ୍ ସପ୍ତମାଧ୍ୟାୟେ ଅପରାପରା ଚେତି ପ୍ରକୃତିଦ୍ୱୟମୁକ୍ତଂ ତୟୋରବିବେକାଜ୍ଜୀବଭାବମାପନ୍ନସ୍ୟ ଚିଦଂଶସ୍ୟେଶ୍ୱରସ୍ୟ ସଂସାରଃ ଯାବାଂଶ୍ଚ ଜ୍ଞାନୋପଯୋଗାର୍ଥମୀଶ୍ୱରସ୍ୟ ସୃଷ୍ଟ୍ୟାଦିଷୁ ପ୍ରବୃତ୍ତିସ୍ତଦେବ ପ୍ରକୃତିଦ୍ୱୟଂ କ୍ଷେତ୍ର-କ୍ଷେତ୍ରଜ୍ଞ-ପଦବାଚ୍ୟଂ ପରସ୍ପରବିବିକ୍ତଂ ତତ୍ତ୍ୱତୋ ନିରୂପୟିଷ୍ୟନ୍ ଶ୍ରୀଭଗବାନୁବାଚ, ଇଦମିତି । ଇଦଂ ଭୋଗାୟତନଂ ଶରୀରଂ କ୍ଷେତ୍ରମିତ୍ୟଭିଧୀୟତେ ସଂସାରସ୍ୟ ପ୍ରରୋହଭୂମିତ୍ୱାତ୍ । ଏତଦ୍ ଯୋ ବେତ୍ତି, ଅହଂ ମମେତି ମନ୍ୟତେ ତଂ କ୍ଷେତ୍ରଜ୍ଞଂ ପ୍ରାହୁଃ । କୃଷୀବଲବତ୍ ତତ୍ ଫଳଭୋକ୍ତୃତ୍ୱାତ୍ ତଦ୍ବିଦଃ କ୍ଷେତ୍ରକ୍ଷେତ୍ରଜ୍ଞୟୋର୍ବିବେକଜ୍ଞାଃ । ୧ ।

ପଦବ୍ୟାଖ୍ୟା ।

ଇଦଂ ଶରୀରଂ—ଏହି ଶରୀର, କୌନ୍ତେୟ—ହେ କୁନ୍ତୀପୁତ୍ର ଅର୍ଜ୍ଜୁନ !, କ୍ଷେତ୍ରଂ ଇତି ଅଭିଧୀୟତେ—'କ୍ଷେତ୍ର' ଏହି ନାମରେ କଥିତ ହୁଏ, ଏତତ୍—ଏହାକୁ, ଯଃ ବେତ୍ତି—ଯେ ଜାଣନ୍ତି, ତଂ—ତାହାଙ୍କୁ, ପ୍ରାହୁଃ—କହନ୍ତି, କ୍ଷେତ୍ରଜ୍ଞଃ ଇତି—କ୍ଷେତ୍ରଜ୍ଞ ବୋଲି, ତଦ୍ବିଦଃ—କ୍ଷେତ୍ର ଓ କ୍ଷେତ୍ରଜ୍ଞବିଷୟ ଯେଉଁମାନେ ଜାଣନ୍ତି । ୧ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ହେ କୌନ୍ତେୟ ! ଏହି ଦେହ, 'କ୍ଷେତ୍ର' ନାମରେ କଥିତ ଓ ଏହାକୁ ଯେ, ଜାଣନ୍ତି, ତାଙ୍କୁ ଜ୍ଞାନୀମାନେ କ୍ଷେତ୍ରଜ୍ଞ ବୋଲି କହନ୍ତି । ୧ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଗୀତାର ପ୍ରଥମ ଷଟ୍କରେ 'ଆତ୍ମା'ର ଅମରତା ଓ ବ୍ୟାପକତା ଇତ୍ୟାଦି ନିର୍ଣ୍ଣୟଦ୍ୱାରା 'ତ୍ୱଂ' ପଦ ନିରୂପିତ ହୋଇଅଛି । ଦ୍ୱିତୀୟ ଷଟ୍କରେ ଈଶ୍ୱରଙ୍କ ବିଭୂତି ଓ ମାହାତ୍ମ୍ୟ ଇତ୍ୟାଦି ବିଷୟମାନ ବ୍ୟାଖ୍ୟା କରିବାଦ୍ୱାରା 'ତତ୍' ପଦ ନିରୂପିତ ହେଲା । ବର୍ତ୍ତମାନ ତ୍ୱଂ ଓ ତତ୍ ଏହି ଦୁଇପଦର ଅଭେଦଭାବ ଅର୍ଥାତ୍ 'ଅସି' ପଦର ଅର୍ଥ କିମ୍ବା ତତ୍ତ୍ୱଜ୍ଞାନ ନିରୂପଣ ପାଇଁ ତୃତୀୟ ଷଟ୍କ ଆରମ୍ଭ କରି ହେଉଅଛି ।

'ତତ୍ତ୍ୱମସି' ମହାବାକ୍ୟରେ ପ୍ରଥମରେ 'ତତ୍' ଓ ଦ୍ୱିତୀୟରେ 'ତ୍ୱଂ' ଥିବାସ୍ଥଳେ ଗୀତାର ପ୍ରଥମ ଷଟ୍କରେ 'ତ୍ୱଂ' ଓ ଦ୍ୱିତୀୟ ଷଟ୍କରେ 'ତତ୍' ପଦର ଅର୍ଥ ପ୍ରକାଶିତ ହେଲା କାହିଁକି ? ଏପରି ସନ୍ଦେହ ସହଜରେ ହୋଇପାରେ । ମାତ୍ର 'ତତ୍ତ୍ୱମସି' ମହାବାକ୍ୟଟି ସଂସ୍କୃତ ଛନ୍ଦୋବନ୍ଧରେ ଲେଖା ହୋଇଥିବାରୁ ଆଗ ତତ୍ ଓ ପରେ ତ୍ୱଂ ପଦ ସ୍ଥାପିତ ହୋଇଅଛି । କିନ୍ତୁ ଅନ୍ୱୟ କରି ଲେଖିଲେ 'ତ୍ୱଂ ତତ୍ ଅସି' ଏହିପରି ହେବ ଓ ସେହି ଅନୁସାରେ ଗୀତାର ଷଟ୍କ ସବୁ ବିଭକ୍ତ ହୋଇଅଛି ।

ଶ୍ରୀଭଗବାନ୍ ଦ୍ୱାଦଶ ଅଧ୍ୟାୟର ସପ୍ତମ ଶ୍ଳୋକରେ "ତେଷାମହଂ ସମୁଦ୍ଧର୍ତ୍ତା ମୃତ୍ୟୁସଂସାର ସାଗରାତ୍" ଇତ୍ୟାଦି ବଚନଦ୍ୱାରା ସାତ୍ତ୍ୱିକ ଶ୍ରଦ୍ଧାବାନ୍ ସାଧକଙ୍କୁ ମୃତ୍ୟୁପୂର୍ଣ୍ଣ ସଂସାରସାଗରରୁ ଉଦ୍ଧାର କରିବାକୁ ପ୍ରତିଜ୍ଞା କରିଅଛନ୍ତି, ମାତ୍ର ଆତ୍ମଜ୍ଞାନ ନ ହେଲେ କଦାପି ମୁକ୍ତି ହୁଏ ନାହିଁ, ଯେହେତୁ ବେଦରେ ପ୍ରମାଣ ଅଛି, ଯେ, "ତରତି ଶୋକମାତ୍ମବିତ୍"—ଅର୍ଥାତ୍ କେବଳ ଆତ୍ମଜ୍ଞାନୀ ବ୍ୟକ୍ତି ଶୋକରୁ ପରିତ୍ରାଣ ପାଆନ୍ତି । ପୁଣି ସ୍ମୃତିରେ ମଧ୍ୟ ପ୍ରମାଣ ଅଛି, ଯେ— "ତରତ୍ୟବିଦ୍ୟାଂ ବିତତାଂ ହୃଦି ଯସ୍ମିନ୍ନିବେଶିତେ" । ଅର୍ଥାତ୍ ଆତ୍ମଜ୍ଞାନ ହୃଦୟରେ ସ୍ଥାନପ୍ରାପ୍ତ ହେଲେ, ଜୀବ ଏହି ବିସ୍ତୃତ ମାୟାରୁ ପରିତ୍ରାଣ ପାଇ ପାରେ ଇତ୍ୟାଦି । ସେହି ଆତ୍ମଜ୍ଞାନର ସବିଶେଷ ଉପଦେଶ ଦେବାକୁ ଶ୍ରୀଭଗବାନ୍ ତ୍ରୟୋଦଶ ଅଧ୍ୟାୟ ଆରମ୍ଭ କରି ସଂସାରର ଅର୍ଥାତ୍ କର୍ମଫଳର ବୀଜ ଅଙ୍କୁରିତ ହେବା ପକ୍ଷରେ, ଭୂମିସ୍ୱରୂପ, ଯେ ଦେହ ଓ ସେଦେହରେ ଥାଇ 'ଅହଂ' 'ମମ' ଇତ୍ୟାଦି ଅଭିମାନଯୁକ୍ତ, ଯେ ଆତ୍ମା, ତାହାର ବିଷୟ ବୁଝାଉ ଅଛନ୍ତି,— ହେ କୁନ୍ତୀପୁତ୍ର ଅର୍ଜ୍ଜୁନ ! ଶ୍ରୋତ୍ରାଦି ଦଶ ଇନ୍ଦ୍ରିୟ, ମନ, ବୁଦ୍ଧି, ଚିତ୍ତ, ଅହଂକାର ଓ ପ୍ରାଣାଦି ପଞ୍ଚ ବାୟୁର ଆଧାର ଏବଂ ସୁଖ ଦୁଃଖର ଭୋଗସ୍ଥାନ, ଯେ ଦେହ, ତାହାକୁ 'କ୍ଷେତ୍ର' ବୋଲାଯାଏ, ଏବଂ ଏହି ଶରୀର ମଧ୍ୟରେ ରହି ଯେ, 'ମୁଁ' ଓ 'ମୋହର' ଇତ୍ୟାଦି ଅଭିମାନଯୁକ୍ତ, ତାହାଙ୍କୁ 'କ୍ଷେତ୍ରଜ୍ଞ' ବୋଲାଯାଏ । କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କ ବିଷୟରେ ଯେଉଁମାନେ ବିଜ୍ଞ, ସେହିମାନେ ଏପରି କହିଅଛନ୍ତି ।

ଏ ଅଧ୍ୟାୟ ଆରମ୍ଭରେ କୌଣସି୨ ପୁସ୍ତକରେ ଅର୍ଜ୍ଜୁନଙ୍କର ପ୍ରଶ୍ନସ୍ୱରୂପ ନିମ୍ନଲିଖିତ ଶ୍ଳୋକଟି ଥିବାର ଦେଖାଯାଏ, ଯଥା—"ଅର୍ଜ୍ଜୁନ ଉବାଚ । ପ୍ରକୃତିଂ ପୁରୁଷଂଚୈବ କ୍ଷେତ୍ରଂ କ୍ଷେତ୍ରଜ୍ଞମେବ ଚ । ଏତଦ୍ବେଦିତୁମିଚ୍ଛାମି ଜ୍ଞାନଂ ଜ୍ଞେୟଂ ଚ କେଶବ" ଅର୍ଥାତ୍ 'ଅର୍ଜ୍ଜୁନ କହୁଅଛନ୍ତି, ହେ କେଶବ ! ପ୍ରକୃତି, ପୁରୁଷ, କ୍ଷେତ୍ର, କ୍ଷେତ୍ରଜ୍ଞ ଓ ଜ୍ଞାନ ଏବଂ ଜ୍ଞେୟ, ଏମାନ ମୁଁ

Digitized by PPRACHIN, SOA

ଜାଣିବାକୁ ଇଚ୍ଛା କରୁଅଛୁ, ମତେ କହିବା ହେଉନ୍ତୁ' । ମାତ୍ର ଶ୍ରୀଭଗବଦ୍‌ଗୀତା 'ସପ୍ତଶତୀ' ଅର୍ଥାତ୍ ସେଥିରେ ୭୦୦ ଶ୍ଳୋକ ରହିବାର କଥା, ଏ ଶ୍ଳୋକଟି ମିଶାଇଲେ ୭୦୧ ହେଉଅଛୁ, ପୁଣି ଶଙ୍କର ସ୍ୱାମୀ, ରାମାନୁଜ, ମଧୁସୂଦନସରସ୍ୱତୀ ଓ ଶ୍ରୀଧରସ୍ୱାମୀ ପ୍ରଭୃତି ପ୍ରସିଦ୍ଧ ଟୀକାକାରମାନେ ଏ ଶ୍ଳୋକର କଛି ଉଲ୍ଲେଖ କରି ନାହାନ୍ତି, ଏହି ସବୁ କାରଣରୁ ଏ ଶ୍ଳୋକଟି ବ୍ୟାସଦେବଙ୍କର ଲେଖା ନୁହେ ବୋଲି ସ୍ପଷ୍ଟ ଜଣା ଯିବାରୁ ମୂଳରେ ଦିଆଗଲା ନାହିଁ । ୧ ।

ଶ୍ଳୋକଃ ।

କ୍ଷେତ୍ରଜ୍ଞଂ ଚାପି ମାଂ ବିଦ୍ଧି, ସର୍ବକ୍ଷେତ୍ରେଷୁ ଭାରତ ।
କ୍ଷେତ୍ରକ୍ଷେତ୍ରଜ୍ଞୟୋର୍ଜ୍ଞାନଂ, ଯତ୍ତଜ୍ଜ୍ଞାନଂ ମତଂ ମମ । ୨ ।

ଅନ୍ୱୟଃ ।

ହେ ଭାରତ ! ସର୍ବକ୍ଷେତ୍ରେଷୁ ଚ ଅପି ମାଂ କ୍ଷେତ୍ରଜ୍ଞଂ ବିଦ୍ଧି, କ୍ଷେତ୍ରକ୍ଷେତ୍ରଜ୍ଞୟୋଃ ଯତ୍ ଜ୍ଞାନଂ ତତ୍ ଜ୍ଞାନଂ ମମ ମତଂ । ୨ ।

ଟୀକା ।

ତଦେବଂ ସଂସାରିଣଃ ସ୍ୱରୂପମୁକ୍ତମିଦାନୀଂ ତସ୍ୟୈବ ପାରମାର୍ଥିକମସଂସାରିସ୍ୱରୂପମାହ । କ୍ଷେତ୍ରଜ୍ଞମିତି । ତଂ ଚି କ୍ଷେତ୍ରଜ୍ଞଂ ସଂସାରିଣଂ ଜୀବଂ ବସ୍ତୁତଃ ସର୍ବକ୍ଷେତ୍ରେଷ୍ୱନୁଗତଂ ମାମେବ ବିଦ୍ଧି, ତତ୍ତ୍ୱମସୀତ ଶ୍ରୁତ୍ୟୁପଲକ୍ଷିତେନ ତଦଂଶେନ ମଦୁପଦେଶାଦ୍ଭାହ । ଅଦର୍ଥମେତତ୍ ଜ୍ଞାନଂ ବ୍ରୂହି । କ୍ଷେତ୍ରକ୍ଷେତ୍ରଜ୍ଞୟୋର୍ଯଦ୍ୱୈଲକ୍ଷଣ୍ୟେନ ଜ୍ଞାନଂ ତଦେବ ମୋକ୍ଷହେତୁତ୍ୱାତ୍ ଜ୍ଞାନଂ ମମ ମତଂ, ଅନ୍ୟତ୍ତୁ ବୃଥା ପାଣ୍ଡିତ୍ୟଂ ବନ୍ଧହେତୁତ୍ୱାଦିତ୍ୟର୍ଥଃ । ତଦୁକ୍ତଂ ।

ତତ୍କର୍ମ ଯନ୍ନ ବନ୍ଧାୟ ସା ବିଦ୍ୟା ଯା ବିମୁକ୍ତୟେ ।
ଆୟାସାୟ ପରଂ କର୍ମ ବିଦ୍ୟାନ୍ୟା ଶିଳ୍ପନୈପୁଣମିତି । ୨ ।

ପଦବ୍ୟାଖ୍ୟା ।

କ୍ଷେତ୍ରଜ୍ଞଂ ଚ—କ୍ଷେତ୍ରଜ୍ଞ, ଅପି—ମଧ୍ୟ, ମାଂ ବିଦ୍ଧି—ଆମ୍ଭଙ୍କୁ ଜାଣ, ସର୍ବକ୍ଷେତ୍ରେଷୁ—ସମସ୍ତ କ୍ଷେତ୍ରରେ, ଭାରତ—ହେ ଭରତ ବଂଶଜ । କ୍ଷେତ୍ରକ୍ଷେତ୍ରଜ୍ଞୟୋଃ ଜ୍ଞାନଂ ଯତ୍—କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କୁ ଯେଉଁ ଜାଣିବା, ତଜ୍ଜ୍ଞାନଂ—ତାହା ହିଁ ଜ୍ଞାନ, ମତଂ ମମ—ଆମ୍ଭର ସମ୍ମତ । ୨ ।

ଅନୁବାଦ ।

ହେ ଭରତବଂଶଜ ! ସମସ୍ତକ୍ଷେତ୍ରରେ ଆମ୍ଭଙ୍କୁ କ୍ଷେତ୍ରଜ୍ଞ ବୋଲି ଜାଣ । ଆଉ ଆମ୍ଭ ମତରେ କ୍ଷେତ୍ର ଓ କ୍ଷେତ୍ରଜ୍ଞ ଚହ୍ନିବାହିଁ ପ୍ରକୃତ ଜ୍ଞାନ ଅଟେ । ୨ ।

ତତ୍ତ୍ୱବ୍ୟାଖ୍ୟା ।

ପୂର୍ବଶ୍ଳୋକରେ କୁହା ଯାଇଅଛୁ, ଯେ ଶରୀରକୁ କ୍ଷେତ୍ର ଓ ଶରୀର ମଧ୍ୟରେ ଥାଇ ମୁଁ ଓ ମୋହର ଇତ୍ୟାଦି ଅଭିମାନଯୁକ୍ତ, ଯେ ଜୀବାତ୍ମା, ତାଙ୍କୁ କ୍ଷେତ୍ରଜ୍ଞ ବୋଲାଯାଏ । ସେ କଥାର ଅଭିପ୍ରାୟ ଏହି କି ଆତ୍ମା ଅବିଦ୍ୟାଶ୍ରୟରେ ରହି ଆପଣାର ବ୍ୟାପକତା ଭୁଲି ନ ଯାଇ ଯେବେ କେବଳ ଗୋଟିଏ ମାତ୍ର ଶରୀରକୁ ଆପଣାର କ୍ଷେତ୍ର (ସ୍ଥାନ) ବୋଲି ମଣନ୍ତି ଓ ଅହଂ, ମମ ପ୍ରଭୃତି ଅଭିମାନଯୁକ୍ତ ହୋଇ, ଆପଣାକୁ ସୁଖୀ ଓ ଦୁଃଖୀ ବୋଲି ମନେ କରନ୍ତି, ତେବେ ତାହାଙ୍କୁ 'କ୍ଷେତ୍ରଜ୍ଞ' ଅର୍ଥାତ୍ ସଂସାରୀ ବୋଲାଯାଏ । ମାତ୍ର ସେହି କ୍ଷେତ୍ରଜ୍ଞ ବା ଜୀବାତ୍ମା,

Digitized by PPRACHIN, SOA

ଯେ ପରମାତ୍ମାଙ୍କଠାରୁ ଅଭିନ୍ନ ଅର୍ଥାତ୍ ତତ୍ତ୍ୱ ଅଂଶରେ ଜୀବାତ୍ମା ଓ ପରମାତ୍ମାଙ୍କର, ଯେ ଐକ୍ୟ ଅଛି, ତାହା ଏ ଶ୍ଳୋକରେ ବୁଝାଇ ଦିଆ ଯାଉଅଛି । ଶ୍ରୀଭଗବାନ୍ କହୁଅଛନ୍ତି, ସମସ୍ତ କ୍ଷେତ୍ରରେ ଅର୍ଥାତ୍ ସର୍ବପ୍ରକାର ଶରୀରରେ ଅନୁଗତ, ଯେ କ୍ଷେତ୍ରଜ୍ଞରୂପୀ ଜୀବାତ୍ମା, ତାହା ଆମ୍ଭେ ଅଟୁଁ, ଅର୍ଥାତ୍ ଆମ୍ଭେ କ୍ଷେତ୍ରଜ୍ଞରୂପରେ ସମସ୍ତ କ୍ଷେତ୍ରରେ ସମଷ୍ଟିରୂପରେ ବିରାଜିତ ଅଛୁଁ । 'କ୍ଷେତ୍ରଜ୍ଞଂ ଚାପି' ଏହି ବାକ୍ୟ ମଧ୍ୟରେ ଥିବା 'ଚ ଅପି' ଏହି ଦୁଇ ଶବ୍ଦଦ୍ୱାରା ଏହା ସୂଚିତ ହେଉଅଛି, ଯେ ଆମ୍ଭେ ( ଭଗବାନ୍ ) କ୍ଷେତ୍ରସ୍ୱରୂପ ମଧ୍ୟ ଅଟୁଁ, ଅର୍ଥାତ୍ ପଞ୍ଚୀକୃତ ଓ ଅପଞ୍ଚୀକୃତ ପଞ୍ଚମହାଭୂତଦ୍ୱାରା ନିର୍ମିତ ଶରୀର ଆମ୍ଭଠାରୁ ଭିନ୍ନ ଆଉ କିଛି ନୁହେ । କ୍ଷେତ୍ର ଓ କ୍ଷେତ୍ରଜ୍ଞବିଷୟକ ଯେଉଁ ଜ୍ଞାନ, ତାହାହିଁ ଆମ୍ଭ ମତରେ ପ୍ରକୃତ ଜ୍ଞାନ ଅଟେ, ଅର୍ଥାତ୍ କ୍ଷେତ୍ର ବା ଶରୀର = ଜଡପଦାର୍ଥ ଓ କ୍ଷେତ୍ରଜ୍ଞ ବା ଜୀବାତ୍ମା = ଅବିଦ୍ୟାଶ୍ରିତ ଚୈତନ୍ୟପଦାର୍ଥ ଓ ପରମାତ୍ମା = ଅବିଦ୍ୟାର ଅଜ୍ଞାତ ଓ ଚୈତନ୍ୟସ୍ୱରୂପୀ ଅଟନ୍ତି, ଇତ୍ୟାଦି ଯେଉଁ ଜ୍ଞାନ, ଅଥବା କ୍ଷେତ୍ର ଓ କ୍ଷେତ୍ରଜ୍ଞ ସମୁଦାୟ ପଦାର୍ଥରେ ଆମ୍ଭେ ଅଛୁଁ ଅର୍ଥାତ୍ ଆମ୍ଭେ ସର୍ବବ୍ୟାପକ ଓ ସର୍ବସ୍ୱରୂପ ଅଟୁଁ, ଇତ୍ୟାଦି ଯେଉଁ ଜ୍ଞାନ, ତାହା ଶ୍ରେଷ୍ଠ ଅଟେ ।

ଫଳକଥା ଏହି କି ଅବିଦ୍ୟା ହେତୁରୁ ଜୀବାତ୍ମା ଓ ପରମାତ୍ମାଙ୍କର ପ୍ରଭେଦ ଜଣା ଯାଉଅଛି ସତ, ମାତ୍ର ପ୍ରକୃତରେ ସେ ଦୁହେଁ ଏକ ଅଟନ୍ତି, ଏପରି ଜ୍ଞାନ ଅର୍ଥାତ୍ 'ତତ୍ତ୍ୱମସି' ପ୍ରଭୃତି ମହାବାକ୍ୟଘଟିତ, ଯେ ଜ୍ଞାନ, ତାହା ମୋକ୍ଷର କାରଣ ବୋଲି ଶ୍ରେଷ୍ଠ ଅଟେ । ଅଉ ଜଡବିଜ୍ଞାନ ବା ସାଂସାରିକ ସୁଖର ବିଷୟ ଜ୍ଞାନ ବା ଅର୍ଥନୀତି, ରାଜନୀତି ଓ ସମାଜନୀତି ପ୍ରଭୃତି ଯେଉଁ ଜ୍ଞାନ, ତାହା ସଂସାରବନ୍ଧନର ହେତୁ ଥିବାରୁ କେବଳ ବୃଥା ବାକ୍ଚାତୁରୀ ଅଟେ । ଯେହେତୁ ସ୍ମୃତିରେ ପ୍ରମାଣ ଅଛି, ଯେ —

"ତତ୍କର୍ମ ଯନ୍ନ ବନ୍ଧାୟ ସା ବିଦ୍ୟା ଯା ଚ ମୁକ୍ତୟେ ।
ଆୟାସାୟ ପରଂ କର୍ମ ବିଦ୍ୟାନ୍ୟା ଶିଳ୍ପନୈପୁଣଂ ।

ଅର୍ଥାତ୍ ଯାହାଦ୍ୱାରା ସଂସାରବନ୍ଧନ ନ ହୁଏ, ତାହା ପ୍ରକୃତ କର୍ମ ଓ ଯାହାଦ୍ୱାରା ମୁକ୍ତିଲାଭ ହୁଏ, ତାହା ପ୍ରକୃତ ବିଦ୍ୟା, ଅର୍ଥାତ୍ ପ୍ରକୃତ ଜ୍ଞାନ ଅଟେ, ତଦ୍ଭିନ୍ନ ଅପର କର୍ମରେ କେବଳ ପରିଶ୍ରମ ସାର ଓ ଅନ୍ୟ ବିଦ୍ୟାରେ କେବଳ ଶିଳ୍ପଚାତୁରୀ ପ୍ରକାଶ ହୁଏ । ୨ ।

ଶ୍ଳୋକଃ ।

ତତ୍ କ୍ଷେତ୍ରଂ ଯଚ୍ଚ ଯାଦୃକ୍ ଚ, ଯଦ୍ବିକାରି ଯତଶ୍ଚ ଯତ୍ ।
ସ ଚ ଯୋ ଯତ୍ପ୍ରଭାବଶ୍ଚ, ତତ୍ ସମାସେନ ମେ ଶୃଣୁ । ୩ ।

ଅନ୍ୱୟଃ ।

ତତ୍ କ୍ଷେତ୍ରଂ ଯତ୍ ଚ ଯାଦୃକ୍ ଚ ଯଦ୍ବିକାରି ଯତଃ ଚ ଯତ୍; ସଃ ଚ ଯତ୍ପ୍ରଭାବଃ ଚ ଯଃ, ତତ୍ ମେ ସମାସେନ ଶୃଣୁ । ୩ ।

ଟୀକା ।

ଅଥ ଯଦ୍ୟପି ଚତୁର୍ବିଂଶତିଭେଦଭିନ୍ନା ପ୍ରକୃତିଃ କ୍ଷେତ୍ରମିତ୍ୟୁକ୍ତଂ ତଥାପି ଦେହରୂପେଣୈବ ପରିଣତାଯାମେବ

ତସ୍ୟାମନ୍ତଂ ବିବେକାବିବେକଃ ସ୍ଫୁଟ ଇତି, ତତ୍ତ୍ୱବେଦାର୍ଥମିଦଂ ଶରୀରଂ କ୍ଷେତ୍ରମିତ୍ୟୁକ୍ତଂ ତଦେବ ପ୍ରପଞ୍ଚୟିଷ୍ୟନ୍ ପ୍ରତିଜାନୀତେ, ତଦିତି । ଯଦୁକ୍ତଂ ମୟା ତତ୍ କ୍ଷେତ୍ରଂ ଯଚ୍ଚ ସ୍ୱରୂପତୋ ଜଡଦୃଶ୍ୟାଦିସ୍ୱଭାବଂ ଯାଦୃକ୍ ଯାଦୃଶଂ ଇଚ୍ଛାଦିଧର୍ମକଂ ଯଦ୍‌ବିକାରି ଯୈରିନ୍ଦ୍ରିୟାଦିବିକାରୈର୍ଯୁକ୍ତଂ ଯତଶ୍ଚ ପ୍ରକୃତିପୁରୁଷସଂଯୋଗାଦ୍ଭବତି, ଯଦିତି ଯୈଃ ପ୍ରକାରୈଃ ସ୍ଥାବରଜଙ୍ଗମାଦିଭେଦୈର୍ଭିନ୍ନମିତ୍ୟର୍ଥଃ, ସ ଚ କ୍ଷେତ୍ରଜ୍ଞୋ ଯତ୍ ସ୍ୱରୂପୋ ଯତ୍ପ୍ରଭାବଶ୍ଚ ଅଚିନ୍ତ୍ୟୈଶ୍ୱର୍ଯ୍ୟଯୋଗେନ ଯୈଃ ପ୍ରଭାବୈଃ ସଂଯୁକ୍ତସ୍ତତ୍ ସଂକ୍ଷେପତୋ ମତ୍ତଃ ଶୃଣୁ । ୩ ।

ପଦବ୍ୟାଖ୍ୟା ।

ତତ୍ କ୍ଷେତ୍ରଂ—ସେହି କ୍ଷେତ୍ର (ଶରୀର), ଯତ୍ ଚ—ଯେଉଁ ସ୍ୱରୂପ, ଯାଦୃକ୍ ଚ—ଯେଉଁ ପ୍ରକାର, ଯଦ୍‌ବିକାରି—ଯେଉଁ ବିକାରଯୁକ୍ତ, ଯତଃ ଚ—ଯେଉଁଠାରୁ (ଉତ୍ପନ୍ନ), ଯତ୍—ଯେପରି ପ୍ରଭେଦଯୁକ୍ତ, ସ ଚ—ସେହି କ୍ଷେତ୍ରଜ୍ଞ, ଯଃ—ଯେ ଅଟନ୍ତି, ଯତ୍ପ୍ରଭାବଶ୍ଚ—ଯେଉଁ ପ୍ରକାର ମାହାତ୍ମ୍ୟଯୁକ୍ତ, ତତ୍—ସେହି ସବୁ କଥା, ସମାସେନ—ସଂକ୍ଷେପରେ, ମେ—ଆମ୍ଭଠାରୁ, ଶୃଣୁ—ଶ୍ରବଣ କର । ୩ ।

ଅନୁବାଦ ।

ସେହି (ଦେହରୂପି) କ୍ଷେତ୍ର, ଯେଉଁ ସ୍ୱରୂପ, ଯେପ୍ରକାର ଧର୍ମବିଶିଷ୍ଟ, ଯେପରି ବିକାରଯୁକ୍ତ, ଯହିଁରୁ ଉତ୍ପନ୍ନ ଓ ଯେପରି ପ୍ରଭେଦଯୁକ୍ତ ଏବଂ ସେହି (ଜୀବାତ୍ମାରୂପୀ) କ୍ଷେତ୍ରଜ୍ଞ, ଯାହା ଓ ଯେପରି ପ୍ରଭାବବିଶିଷ୍ଟ, ତାହା ସବୁ ସଂକ୍ଷେପରେ ଆମ୍ଭଠାରୁ ଶ୍ରବଣ କର । ୩ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜୁନ ! ଆମ୍ଭେ ଯେଉଁ 'କ୍ଷେତ୍ର'ର କଥା କହିଥିଲୁଁ ତାହା କି ସ୍ୱରୂପ ଅର୍ଥାତ୍ ତାହାର ସାଧାରଣ ଲକ୍ଷଣ କଣ ? ଏବଂ ସେ ଇଚ୍ଛା ଦ୍ୱେଷାଦି କି-ପ୍ରକାର ଧର୍ମ ବିଶିଷ୍ଟ ଓ ସେଥିରେ କିପରି ଇନ୍ଦ୍ରିୟାଦି ବିକାର ଅଛି, ପୁଣି ତାହା କେଉଁଠାରୁ ଉତ୍ପନ୍ନ ହୁଏ, ଆଉ ତାହା ସ୍ଥାବରଜଙ୍ଗମାଦି ରୂପରେ କିପରି ପ୍ରଭେଦଯୁକ୍ତ, ତାହା ଆମ୍ଭେ ତୁମ୍ଭଙ୍କୁ କହିବା ; ଆଉ ଯେଉଁ 'କ୍ଷେତ୍ରଜ୍ଞ' ବିଷୟ କହିଥିଲୁଁ, ସେହି କ୍ଷେତ୍ରଜ୍ଞଙ୍କର କି ଲକ୍ଷଣ ଓ କି ପ୍ରଭାବ, (ମାହାତ୍ମ୍ୟ ବା ଐଶ୍ୱର୍ଯ୍ୟ) ତାହା ମଧ୍ୟ, ତୁମ୍ଭଙ୍କୁ ସଂକ୍ଷେପରେ କହିବା, ତୁମ୍ଭେ ଶ୍ରବଣ କର ।

ଫଳକଥା ଏହି କି କ୍ଷେତ୍ର ଓ କ୍ଷେତ୍ରଜ୍ଞ ଏ ଦୁଇ ବିଷୟର ସମସ୍ତ ତତ୍ତ୍ୱ ସଂକ୍ଷେପରେ ଆମ୍ଭଠାରୁ ଶ୍ରବଣ କର । ୩ ।

ଶ୍ଳୋକଃ ।

* ଋଷିଭିର୍ବହୁଧା ଗୀତଂ, ଛନ୍ଦୋଭିର୍ବିବିଧୈଃ ପୃଥକ୍ ।
ବ୍ରହ୍ମସୂତ୍ରପଦୈଶ୍ଚୈବ, ହେତୁମଦ୍ଭିର୍ବିନିଶ୍ଚିତୈଃ । ୪ ।

ଅନ୍ୱୟଃ ।

ଋଷିଭିଃ, ବିବିଧୈଃ ଛନ୍ଦୋଭିଃ, ଚ ହେତୁମଦ୍ଭିଃ ବିନିଶ୍ଚିତୈଃ ବ୍ରହ୍ମସୂତ୍ରପଦୈଃ ଏବ ବହୁଧା ପୃଥକ୍ ଗୀତଂ । ୪ ।

ଟୀକା ।

କୈଃ ବିସ୍ତରେଣୋକ୍ତସ୍ୟାସ୍ୟ ସଂକ୍ଷେପ ଇତ୍ୟପେକ୍ଷାୟାମାହ । ଋଷିଭିରିତି । ଋଷିଭିର୍ବଶିଷ୍ଠାଦିଭିର୍ଯୋଗଶାସ୍ତ୍ରେଷୁ ଧ୍ୟାନଧାରଣାଦିବିଷୟତ୍ୱେନ ଦେହାଦିସ୍ୱରୂପେଣ ବହୁଧା ଗୀତଂ ନିରୂପିତଂ, ଛନ୍ଦୋଭିର୍ବେଦୈର୍ନିତ୍ୟନୈମିତ୍ତିକକାମ୍ୟକର୍ମ-

Digitized by PPRACHIN, SOA

ବିବିଧୈଃ ଛନ୍ଦୋଭିର୍ବେଦୈଃ ନାନାପୂଜନୀୟଦେବତାରୂପେଣ ଗୀତଂ । ବ୍ରହ୍ମଣଃ ସୂତ୍ରୈଃ ପଦୈଶ୍ଚ, ବ୍ରହ୍ମ ସୂଚ୍ୟତେ ସୂଚ୍ୟତେ ଏଭିରିତି ବ୍ରହ୍ମସୂତ୍ରାଣି, ଯତୋବା ଇମାନି ଭୂତାନି ଜାୟନ୍ତେ ଇତ୍ୟାଦୀନି ତଟସ୍ଥଲକ୍ଷଣପରାଣି ଉପନିଷଦ୍ବାକ୍ୟାନି, ତଥା ବ୍ରହ୍ମ ପଦ୍ୟତେ ସାକ୍ଷାତ୍ ଜ୍ଞାୟତେ ଏଭିରିତି ସ୍ୱରୂପଲକ୍ଷଣପରାଣି ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ ଇତ୍ୟାଦୀନି ତୈଶ୍ଚ ବହୁଧା ଗୀତଂ, କିନ୍ତୁ ହେତୁମଦ୍ଭିଃ ସଦେବ ସୌମ୍ୟେଦମଗ୍ର ଆସୀତ, କଥମସତଃ ସଜ୍ଜାୟେତ ଇତି, କୋହ୍ୟେବାନ୍ୟାତ୍ କଃ ପ୍ରାଣ୍ୟାତ୍ ଯଦେଷ ଆକାଶ ଆନନ୍ଦୋ ନ ସ୍ୟାତ୍ ଏଷ ହ୍ୟେବାନନ୍ଦୟତି ଇତ୍ୟାଦିଯୁକ୍ତିମଦ୍ଭିଃ । ଅନ୍ୟାତ୍ ଅପାନଚେଷ୍ଟାଂ କଃ କୁର୍ଯ୍ୟାତ ପ୍ରାଣ୍ୟାତ୍ ପ୍ରାଣବ୍ୟାପାରଂ ବା କଃ କୁର୍ଯ୍ୟାଦିତ ଶ୍ରୁତିପଦୟୋରର୍ଥଃ । ବିନିଶ୍ଚିତୈରୁପକ୍ରମୋପସଂହାରୈକବାକ୍ୟତୟା ଅସଂଦିଗ୍ଧାର୍ଥପ୍ରତିପାଦକୈରିତ୍ୟର୍ଥଃ । ଅତଏବଂ ମେ ତୈର୍ବିସ୍ତରେଣୋକ୍ତଂ ଦୁଃଖଗ୍ରହଂ ସଂକ୍ଷେପତସ୍ତୁଭ୍ୟଂ କଥୟିଷ୍ୟାମି ତତ୍ ଶୃଣୁ ଇତ୍ୟର୍ଥଃ । ଯଦ୍ୱା ଅଥାତୋ ବ୍ରହ୍ମଜିଜ୍ଞାସା ଇତ୍ୟାଦୀନି ବ୍ରହ୍ମସୂତ୍ରାଣି ଗୃହ୍ୟନ୍ତେ ତାନ୍ୟେବ ବ୍ରହ୍ମ ପଦ୍ୟତେ ନିଶ୍ଚୀୟତେ ଏଭିରିତି ପଦାନି ତୈର୍ହେତୁମଦ୍ଭିର୍ଜନ୍ମାଦ୍ୟସ୍ୟ ଯତଃ ଈକ୍ଷତେର୍ନାଶବ୍ଦଂ ଆନନ୍ଦମୟୋଽଭ୍ୟାସାଦିତ୍ୟାଦିଯୁକ୍ତିମଦ୍ଭିର୍ବିନିଶ୍ଚିତାର୍ଥୈଃ, ଶେଷଂ ସମାନଂ । ୪ ।

ପଦବ୍ୟାଖ୍ୟା ।

ଋଷିଭିଃ—ଋଷିମାନେ, ବହୁଧା—ବହୁ ପ୍ରକାର, ଗୀତଂ—ଗାୟନ କରିଅଛନ୍ତି ଅର୍ଥାତ୍ ନିର୍ଣ୍ଣୟ କରିଅଛନ୍ତି, ଛନ୍ଦୋଭିଃ—ବେଦମାନେ ମଧ୍ୟ, ବିବିଧୈଃ—ବିବିଧ ଅର୍ଥାତ୍ ନିତ୍ୟନୈମିତ୍ତିକ ଓ କାମ୍ୟ କର୍ମାଦି ବିଷୟକ, ପୃଥକ୍—ଭିନ୍ନ ଭିନ୍ନ, ବ୍ରହ୍ମସୂତ୍ରପଦୈଃ—ତଟସ୍ଥ ଓ ସ୍ୱରୂପଲକ୍ଷଣଯୁକ୍ତ ଉପନିଷଦମାନ, ହେତୁମଦ୍ଭିଃ—ଯୁକ୍ତିବିଶିଷ୍ଟ, ବିନିଶ୍ଚିତୈଃ—ନିଃସଂଶୟ । ୪ ।

ଅନୁବାଦ ।

ଋଷିମାନେ, ଋଗାଦି ବିବିଧ ବେଦମାନେ ଓ ଯୁକ୍ତିଯୁକ୍ତ ଏବଂ ନିଃସଂଶୟ ବ୍ରହ୍ମନିରୂପକ ଉପନିଷତ୍ମାନେ (ଏହି କ୍ଷେତ୍ର ଓ କ୍ଷେତ୍ରଜ୍ଞର ବିଷୟ) ପୃଥକ୍ରୂପେ ବହୁପ୍ରକାର ନିର୍ଣ୍ଣୟ କରିଅଛନ୍ତି । ୪ ।

ବିଶଦବ୍ୟାଖ୍ୟା ।

ଯଦି ଅର୍ଜ୍ଜୁନ, ଏପରି ମନେ କରିବେ, ଯେ 'ହେ ଭଗବନ୍ ! ଆପଣ ତ କ୍ଷେତ୍ର ଓ କ୍ଷେତ୍ରଜ୍ଞ ବିଷୟ ସଂକ୍ଷେପରେ କହିବେ, ତେବେ କି ଏହି ବିଷୟ ଆଉ କେହି ବିସ୍ତୃତରୂପେ କହିଅଛନ୍ତି ? ଏଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ହେ ଅର୍ଜ୍ଜୁନ । ଏହି କ୍ଷେତ୍ର ଓ କ୍ଷେତ୍ରଜ୍ଞ ବିଷୟକୁ ବଶିଷ୍ଠାଦି ଋଷିମାନେ ଯୋଗବାଶିଷ୍ଠ ପ୍ରଭୃତି ଗ୍ରନ୍ଥରେ ବିସ୍ତୃତରୂପେ ବ୍ୟାଖ୍ୟା କରିଅଛନ୍ତି । ପୁଣି ଋକ୍ ପ୍ରଭୃତି ବେଦରେ ନାନାପ୍ରକାର କର୍ମ୍ମର ଉପଦେଶ ଦେବା ସମୟରେ, କର୍ମ୍ମ ଓ କର୍ମ୍ମର ଉପାସ୍ୟ ଦେବତାରୂପେ, ବିସ୍ତୃତଭାବେ ବର୍ଣ୍ଣିତ କରା ହୋଇଅଛି । ଆଉ ବ୍ରହ୍ମସୂତ୍ରପଦ ଅର୍ଥାତ୍ ତଟସ୍ଥଲକ୍ଷଣ ଓ ସ୍ୱରୂପଲକ୍ଷଣଯୁକ୍ତ ଉପନିଷତ୍, ଯାହା କି ନାନାପ୍ରକାର ଯୁକ୍ତିଦ୍ୱାରା ନିଃସଂଶୟରୂପେ ନିଶ୍ଚିତ ହୋଇଅଛି, ତହିଁରେ ମଧ୍ୟ, ଏହି କ୍ଷେତ୍ର ଓ କ୍ଷେତ୍ରଜ୍ଞ ବିଷୟ ବହୁପ୍ରକାରେ କୀର୍ତ୍ତିତ ହୋଇଅଛି । 'ବ୍ରହ୍ମସୂତ୍ରପଦ' ଏହି ପଦଟିକୁ ବିଯୋଜିତ କରି ଦେଖିଲେ, 'ବ୍ରହ୍ମସୂତ୍ର' ଓ 'ବ୍ରହ୍ମପଦ' ଏହିପରି ଦୁଇଗୋଟି ପଦ ହେଉଅଛି, ତନ୍ମଧ୍ୟରୁ 'ବ୍ରହ୍ମସୂତ୍ର' ପଦର ଅର୍ଥ—(ବ୍ରହ୍ମ ସୂଚ୍ୟତେ, ସୂଚ୍ୟତେ ଅନେନ) ଯାହାଦ୍ୱାରା ବ୍ରହ୍ମର ସୂଚନା ମାତ୍ର ଜଣାଯାଏ, ଅର୍ଥାତ୍ ସାକ୍ଷାତ୍ଭାବରେ ବ୍ରହ୍ମନିରୂପିତ ନ ହୋଇ ପ୍ରକାରାନ୍ତରେ ବ୍ରହ୍ମନିରୂପଣ କରାଯାଏ । ଦାର୍ଶନିକ ଭାଷାରେ ଏହାକୁ ତଟସ୍ଥଲକ୍ଷଣ ବୋଲାଯାଏ । ଯଥା;—"ଯତୋବା ଇମାନି ଭୂତାନି ଜାୟନ୍ତେ ଯେନ ଜାତାନି ଜୀବନ୍ତି ଯତ୍ପ୍ରୟନ୍ତ୍ୟଭିସମ୍ବିଶନ୍ତି" ଅର୍ଥାତ୍ ଯାହାଙ୍କଠାରୁ ଏହି

Digitized by PPRACHIN, SOA

ପ୍ରାଣୀମାନେ ଜାତ ହୁଅନ୍ତି ଓ ଜାତ ହୋଇ ଜୀବତ ଥାନ୍ତି ଏବଂ ବିନାଶ ସମୟରେ ଯାହାଙ୍କଠାରେ ପ୍ରବିଷ୍ଟ ହୁଅନ୍ତି ସେହି ବ୍ରହ୍ମ । ଏ ବାକ୍ୟରେ ବ୍ରହ୍ମପଦାର୍ଥର ସ୍ୱରୂପ ସାକ୍ଷାତ୍‌ଭାବରେ ବର୍ଣ୍ଣିତ ନ ହୋଇ ପ୍ରାଣିମାନଙ୍କର ଜନ୍ମ, ସ୍ଥିତି ଓ ପ୍ରଳୟର କର୍ତ୍ତୃରୂପରେ ପ୍ରକାରାନ୍ତରରେ ବର୍ଣ୍ଣିତ ହୋଇଅଛି । ଏହି ପ୍ରକାର ଉପନିଷଦ୍‌ମାନ ତଟସ୍ଥଲକ୍ଷଣଯୁକ୍ତ ବା 'ବ୍ରହ୍ମସୂତ୍ର' ନାମରେ ପରିଚିତ । ମାତ୍ର ଯହିଁରେ ବ୍ରହ୍ମଙ୍କ ସ୍ୱରୂପ ସାକ୍ଷାତ୍ ଭାବରେ ବର୍ଣ୍ଣିତ ହୁଏ, ତାହାକୁ (ବ୍ରହ୍ମ-ପଦ୍ୟତେ ସାକ୍ଷାତ୍ ଜ୍ଞାୟତେ ଅନେନ) 'ବ୍ରହ୍ମପଦ' ବୋଲାଯାଏ । ଦାର୍ଶନିକ ଭାଷାରେ ତାହାକୁ ସ୍ୱରୂପଲକ୍ଷଣ ବୋଲାଯାଏ । ଯଥା;—"ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ" ଅର୍ଥାତ୍ ବ୍ରହ୍ମ ସତ୍ୟ-ସ୍ୱରୂପ, ଜ୍ଞାନସ୍ୱରୂପ ଓ ଅନନ୍ତ ଅଟନ୍ତି ।

ଏହିପରି ତଟସ୍ଥ ଓ ସ୍ୱରୂପ ଲକ୍ଷଣଯୁକ୍ତ ଯେଉଁ ବ୍ରହ୍ମସୂତ୍ର ଓ ବ୍ରହ୍ମପଦମାନ ଅର୍ଥାତ୍ ଉପନିଷତ୍ ସମୂହ, ତହିଁରେ ମଧ୍ୟ, ଏହି କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କ ବିଷୟ ବହୁ ପ୍ରକାରରେ ନିର୍ଣ୍ଣୟ କର ହୋଇଅଛି । ସେହି ସବୁ ଉପନିଷତ୍ ବାକ୍ୟ 'ହେତୁମତ୍' ଅର୍ଥାତ୍ ଯୁକ୍ତିଯୁକ୍ତ ଅଟେ । ଯଥା,—(ଛାନ୍ଦୋଗ୍ୟଉପନିଷଦ ଦେଖ) ଏକ ସମୟରେ ଉଦ୍ଦାଳକ ଋଷି ଆପଣାର ପୁତ୍ର ଶ୍ୱେତକେତୁ ଋଷିଙ୍କୁ ଜଗତ୍ ସମ୍ବନ୍ଧରେ ବୁଝାଇ କହିଲେ, "ସଦେବ ସୌମ୍ୟେଦମଗ୍ର ଆସୀଦେକମେବା-ଦ୍ୱିତୀୟଂ," ଅର୍ଥାତ୍ ହେ ପ୍ରିୟଦର୍ଶନ ! ଏହି ଦୃଶ୍ୟମାନ ଜଗତ୍ ସତ୍ ଓ ପୂର୍ବରୁ ଅବ୍ୟକ୍ତରୂପ-ରେ ଥିଲା, ଏହା ଏକ ଓ ଅଦ୍ୱିତୀୟ ଅଟେ ଇତ୍ୟାଦି । ଏହା କହିବା ପରେ ପୁନର୍ବାର କହିଲେ, "ତଦ୍ଧୈକ ଆହୁରସଦେକମେବାଦ୍ୱିତୀୟଂ, ତସ୍ମାଦସତଃ ସଜ୍ଜାୟେତ," ଅର୍ଥାତ୍ କେହି କହନ୍ତି, ଏହି ଜଗତ୍ ଏକ ଓ ଅଦ୍ୱିତୀୟ ହେଲେହେଁ ପୂର୍ବରେ ଅସତ୍ (ଅଭାବ) ଥିଲା, ସେହି ଅସତରୁ ଏହି ସତ୍ (ଦୃଶ୍ୟମାନ) ଜଗତ୍ ଉତ୍ପନ୍ନ ହୋଇଅଛି, ଇତ୍ୟାଦି । ନାସ୍ତିକାଦିଙ୍କର ଏହି ମତ ପ୍ରକାଶ କରି, ତାହାର ଖଣ୍ଡନ ପାଇଁ ପୁନର୍ବାର କହିଲେ, "କୁତସ୍ତୁ ଖଲୁ ସୌମ୍ୟେବଂ ସ୍ୟାଦିତି ହୋବାଚ କଥମସତଃ ସଜ୍ଜାୟେତ" ଅର୍ଥାତ୍ ହେ ପ୍ରିୟଦର୍ଶନ ! ଅସତ୍‌ରୁ ସତ୍ ଉତ୍ପନ୍ନ ହେଲା, ଏହା କିପରି ସମ୍ଭବ ହୋଇ ପାରେ ? କାରଣ ଯେହି ବନ୍ଧ୍ୟାପୁତ୍ର, ଶଶକଶୃଙ୍ଗ, ବା ଆକାଶ ପୁଷ୍ପପରି କେବେହେଁ ନ ଥାନ୍ତା, ତେବେ ତାହାର ପ୍ରକାଶ ହୁଅନ୍ତା କିପରି ? ପ୍ରକୃତରେ ଏହା ଅବ୍ୟକ୍ତ ବୀଜରୂପରେ ଥିଲା । ବୀଜରୁ କାଣ୍ଡ, ଶାଖା, ପ୍ରଶାଖା, ପୁଷ୍ପ ଓ ଫଳ ଶୋଭିତ ବୃକ୍ଷ ପ୍ରକାଶିତ ହେଲାପରି, ସେହି ଅବ୍ୟକ୍ତ ଅଥଚ 'ସତ୍' ବୀଜରୁ ଏହା ବର୍ତ୍ତମାନ ଆକାରରେ ପ୍ରକାଶିତ ହୋଇଅଛି, ଇତ୍ୟାଦି । ପୁଣି କହିଲେ, କେହି କେହି ଏପରି କହନ୍ତି 'ଜୀବାତ୍ମା' ବୋଲି କୌଣସି ସ୍ୱତନ୍ତ୍ର ପଦାର୍ଥ ନାହିଁ, ଏହି ପାଞ୍ଚଭୌତିକ ଶରୀରର ସଂଯୋଗ ବିଯୋଗର ବିଶେଷ ନିୟମ ଅନୁସାରେ ଏଥିରେ ଚେତନା ଉତ୍ପନ୍ନ ହୁଏ, ମାତ୍ର ତାହା ଭ୍ରମା-ତ୍ମକ, ଯେହେତୁ "କୋହ୍ୟେବାନ୍ୟାତ୍ କଃ ପ୍ରାଣ୍ୟାତ୍ ଯଦେଷ ଆକାଶ ଆନନ୍ଦୋନସ୍ୟାତ୍ ଏଷ ହ୍ୟେବାନନ୍ଦୟତି ଇତ୍ୟାଦି" ଅର୍ଥାତ୍ ଆକାଶରୂପୀ, ଆନନ୍ଦମୟ ଆତ୍ମା ଯଦି ନ ଥାନ୍ତା, ତେବେ କିଏସେ ପ୍ରଶ୍ୱାସ ତ୍ୟାଗ କରନ୍ତା ଓ ନିଃଶ୍ୱାସ ଗ୍ରହଣ କରନ୍ତା ? ଏହି ଜୀବାତ୍ମାଙ୍କ ଏଥିରେ ଥାଇ ଏହାକୁ ଚାଳନ କରୁଅଛନ୍ତି, ଇତ୍ୟାଦି ଅନେକ ପ୍ରକାର ଯୁକ୍ତିରେ ଉପନିଷତ୍ ପୂର୍ଣ୍ଣ

Digitized by PPRACHIN, SOA

ଅଟେ, ପୁଣି ସେହି ଉପନିଷତ୍ର ବଚନଷ୍ଟିଜ ଅର୍ଥାତ୍ ଉପକ୍ରମ ଓ ଉପସଂହାରରେ* ଏକ ପ୍ରକାର ବାକ୍ୟ ଥିବାରୁ ତାହା ସବୁ ନିଃସନ୍ଦେହ ଅର୍ଥ ପ୍ରକାଶକ ଅଟେ ।

ଏ ଶ୍ଳୋକରେ କ୍ଷେତ୍ର ଓ କ୍ଷେତ୍ରଜ୍ଞ ବିଷୟରେ ବଶିଷ୍ଠାଦି ଋଷିମାନେ ଯୋଗବାଶିଷ୍ଠ ପ୍ରଭୃତି ଗ୍ରନ୍ଥରେ ବହୁତ ପ୍ରକାର ବର୍ଣ୍ଣନ କରିଅଛନ୍ତି, ଏହା କହିବାଦ୍ୱାରା ଭଗବାନଙ୍କ ସ୍ୱରୂପ ଜ୍ଞାନସମ୍ବନ୍ଧରେ ଯୋଗଶାସ୍ତ୍ର ଯେ ଉପଯୋଗୀ ଅଟେ, ତାହା ପ୍ରତିପନ୍ନ ହେଉଅଛି । ସେହିପରି ଋଗ୍‌ବେଦ ବେଦର ଉଲ୍ଲେଖ କରିବାଦ୍ୱାରା କର୍ମକାଣ୍ଡ (ଭକ୍ତିଯୋଗ)ର ଉପଯୋଗିତା ଓ 'ବ୍ରହ୍ମସୂତ୍ରପଦ' ଏହି ପଦ ପ୍ରୟୋଗଦ୍ୱାରା ଜ୍ଞାନକାଣ୍ଡର ଉପଯୋଗିତା ମଧ୍ୟ ପ୍ରମାଣିତ ହେଉଅଛି । ।୪।

ଶ୍ଳୋକଃ ।

ମହାଭୂତାନ୍ୟହଂକାରୋ, ବୁଦ୍ଧିରବ୍ୟକ୍ତମେବ ଚ ।
ଇନ୍ଦ୍ରିୟାଣି ଦଶୈକଞ୍ଚ, ପଞ୍ଚ ଚେନ୍ଦ୍ରିୟଗୋଚରାଃ । ୫ ।

ଅନ୍ୱୟଃ ।

ମହାଭୂତାନି, ଅହଂକାରଃ, ବୁଦ୍ଧିଃ, ଚ, ଅବ୍ୟକ୍ତଂ ଏବ, ଇନ୍ଦ୍ରିୟାଣି ଦଶ ଚ ଏକଂ, ପଞ୍ଚ, ଇନ୍ଦ୍ରିୟଗୋଚରାଃ । ୫ ।

ଟୀକା ।

ତତ୍ କ୍ଷେତ୍ରସ୍ୱରୂପମାହ, ମହାଭୂତାନୀତ୍ୟାଭ୍ୟାଂ । ମହାଭୂତାନି ଭୂମ୍ୟାଦୀନି ପଞ୍ଚ ଅହଂକାରସ୍ତତ୍କାରଣଭୂତଃ ବୁଦ୍ଧି-ର୍ଜ୍ଞାନାତ୍ମକଂ ମହତ୍ତତ୍ତ୍ୱଂ ଅବ୍ୟକ୍ତଂ ମୂଳପ୍ରକୃତିଃ, ଇନ୍ଦ୍ରିୟାଣି ଦଶ ବାହ୍ୟାନି ଜ୍ଞାନକର୍ମେନ୍ଦ୍ରିୟାଣି, ଏକଞ୍ଚ ମନଃ, ଇନ୍ଦ୍ରିୟଗୋଚରାଶ୍ଚ ପଞ୍ଚତନ୍ମାତ୍ରରୂପାଏବ ଶବ୍ଦାଦୟ ଆକାଶାଦିବିଶେଷଗୁଣତୟା ବ୍ୟକ୍ତାଃ ସନ୍ତ ଇନ୍ଦ୍ରିୟବିଷୟାଃ ପଞ୍ଚ, ତଦେବଂ ଚତୁର୍ବିଂଶତି ତତ୍ତ୍ୱାନ୍ୟୁକ୍ତାନି । ୫ ।

ପଦବ୍ୟାଖ୍ୟା ।

ମହାଭୂତାନି—ପୃଥିବୀ, ଜଳ, ତେଜ, ବାୟୁ ଓ ଆକାଶ ଏହି ପଞ୍ଚ ମହା ଭୂତ, ଅହଂକାରଃ—ମହାଭୂତର କାରଣ, ବୁଦ୍ଧିଃ—ବୁଝିପାରିବା ଶକ୍ତି, ଅବ୍ୟକ୍ତଂ—ମୂଳପ୍ରକୃତି, ଏବ ଚ—ଅହିତ, ଇନ୍ଦ୍ରିୟାଣି ଦଶୈକଞ୍ଚ—ପାଞ୍ଚ ଜ୍ଞାନେନ୍ଦ୍ରିୟ ଓ ପାଞ୍ଚ କର୍ମେନ୍ଦ୍ରିୟ ଏବଂ ମନ ଏହିପରି ଏକାଦଶ ଇନ୍ଦ୍ରିୟ, ପଞ୍ଚ ଚେନ୍ଦ୍ରିୟଗୋଚରାଃ—ଜ୍ଞାନେନ୍ଦ୍ରିୟଙ୍କର ପାଞ୍ଚଗୋଟି ବିଷୟ । ଯଥା,—ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ । ୫ ।

ଅନୁବାଦ ।

ପଞ୍ଚ ମହାଭୂତ, ଅହଂକାର, ବୁଦ୍ଧି, ଅବ୍ୟକ୍ତ, ଦଶଇନ୍ଦ୍ରିୟ ଓ ମନ ଏବଂ ଇନ୍ଦ୍ରିୟର ପାଞ୍ଚ ବିଷୟ । ୫ ।

ବିଶଦବ୍ୟାଖ୍ୟା ।

କ୍ଷିତି, ଅପ, ତେଜଃ, ବାୟୁ ଓ ଆକାଶ ଏହି ପାଞ୍ଚଟିକୁ ପଞ୍ଚମହାଭୂତ ବୋଲି, ସେହି ପାଞ୍ଚଟିର କାରଣସ୍ୱରୂପ ଅଭିମାନାତ୍ମକ ବୃତ୍ତିକୁ ଅହଂକାର ବୋଲାଯାଏ । ଅହଂକାରର କାରଣସ୍ୱରୂପ ଅଧ୍ୟବସାୟ ଲକ୍ଷଣ ଯେ ମହତ୍ତତ୍ତ୍ୱ, ତାହା ଏ ସ୍ଥଳେ ବୁଦ୍ଧି ନାମରେ ପରିଚିତ,

* ଉପକ୍ରମ ଓ ଉପସଂହାର ଶବ୍ଦ ଅଧ୍ୟାୟ ୧୮ ଶ୍ଳୋକର ବିଶଦବ୍ୟାଖ୍ୟାର ଟିପ୍ପଣୀରେ ଦେଖ ।

Digitized by PPRACHIN, SOA

ସୃଷ୍ଟିର କାରଣସ୍ୱରୂପିଣୀ ସତ୍ତ୍ୱ, ରଜ ଓ ତମୋଗୁଣାତ୍ମିକା ପ୍ରକୃତିର ନାମ ଅବ୍ୟକ୍ତ, ସେହି ଅବ୍ୟକ୍ତ, ସମସ୍ତଙ୍କର କାରଣସ୍ୱରୂପ, ମାତ୍ର କାହାର କାର୍ଯ୍ୟ ନୁହେ, ଫଳତଃ ଏହି କି, ଅବ୍ୟକ୍ତ ବା ପ୍ରକୃତିରୁ ମହତ୍ତତ୍ତ୍ୱ ବା ବୁଦ୍ଧି, ତହିଁରୁ ଅହଂକାର ଓ ଅହଂକାରରୁ ପଞ୍ଚ ମହାଭୂତ ଜାତ ହୋଇଅଛନ୍ତି, ଅବ୍ୟକ୍ତଠାରୁ ଏହି ମହାଭୂତ ପର୍ଯ୍ୟନ୍ତ ପଦାର୍ଥକୁ ଅଷ୍ଟ ପ୍ରକୃତି ବୋଲି ସାଂଖ୍ୟ-ବାଦମାନେ କହନ୍ତି । ମାତ୍ର ବେଦାନ୍ତ ବାଦମାନେ ଭିନ୍ନ ପ୍ରକାର ଅର୍ଥ କରନ୍ତି, ସେମାନଙ୍କ ମତରେ, ପରମେଶ୍ୱରଙ୍କର ମାୟା ନାମକ ଅପୂର୍ବ ଶକ୍ତିକୁ 'ଅବ୍ୟକ୍ତ' ବୋଲାଯାଏ । ଜଗତ୍ ସୃଷ୍ଟି ବିଷୟରେ ମାୟାର 'ଈକ୍ଷଣ' ନାମରେ ଯେଉଁ ବୃତ୍ତି ବିଶେଷ ଅଛି, ତାହାକୁ ଏ ସ୍ଥଳ-ରେ ବୁଦ୍ଧି କୁହାଯାଇଅଛି । ପୁଣି "ବହୁସ୍ୟାଂ ପ୍ରଜାୟେୟ" ଅର୍ଥାତ୍ ପରମେଶ୍ୱରଙ୍କର ବହୁତ ହେବା ବିଷୟକ ସଂକଳ୍ପରୂପ ମାୟାର ବୃତ୍ତି ବିଶେଷକୁ ଅହଂକାର ବୋଲି, ଏ ସ୍ଥଳେ କୁହାଯାଇଅଛି । ଆଉ (ତସ୍ମାଦ୍ୱା ଏତସ୍ମାଦାତ୍ମନ ଆକାଶଃ ସମ୍ଭୂତ ଆକାଶାଦ୍‌ବାୟୁର୍ବାୟୋରଗ୍ନିରଗ୍ନେ-ରାପ ଅଦ୍ଭ୍ୟଃ ପୃଥିବୀ) ଇତ୍ୟାଦି ଶ୍ରୁତି ବଚନରେ କଥିତ ଆକାଶାଦିକୁ ଏ ସ୍ଥଳରେ ପଞ୍ଚ ମହା-ଭୂତ ବୋଲାଯାଇଅଛି । ଚକ୍ଷୁ, କର୍ଣ୍ଣ, ନାସା, ଜିହ୍ୱା ଓ ତ୍ୱକ୍ ଏହି ପାଞ୍ଚ ଜ୍ଞାନେନ୍ଦ୍ରିୟ ଓ ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ ଏହି ପାଞ୍ଚ କର୍ମେନ୍ଦ୍ରିୟ, ଏହିପରି ସର୍ବସୁଦ୍ଧା ଦଶ ଗୋଟି ଇନ୍ଦ୍ରିୟ ଓ ସଂକଳ୍ପ ବିକଳ୍ପାତ୍ମକ ମନ । ରୂପ, ରସ, ଗନ୍ଧ, ଶବ୍ଦ, ସ୍ପର୍ଶ ଏହି ପାଞ୍ଚଟି ଉକ୍ତ ଦଶ ଇନ୍ଦ୍ରିୟର ବିଷୟ ଅର୍ଥାତ୍ ପଞ୍ଚ ଜ୍ଞାନେନ୍ଦ୍ରିୟଦ୍ୱାରା ଜଣାଯାଏ ବୋଲି, ସେମାନେ ଜ୍ଞାନେନ୍ଦ୍ରିୟର ବିଷୟ ଓ କର୍ମେନ୍ଦ୍ରିୟମାନଙ୍କର କାର୍ଯ୍ୟ ବୋଲି ସେମାନଙ୍କର ମଧ୍ୟ ବିଷୟ ଅଟନ୍ତି ।

ପୂର୍ବୋକ୍ତ ଅଷ୍ଟ ପ୍ରକୃତି, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ଓ ପଞ୍ଚ ବିଷୟ ଏବଂ ମନ ଏପରି ୨୪ ଗୋଟିକୁ ସାଂଖ୍ୟମତରେ ଚତୁର୍ବିଂଶତି ତତ୍ତ୍ୱ ବୋଲାଯାଏ । ୫ ।

ଶ୍ଳୋକଃ ।

ଇଚ୍ଛା ଦ୍ୱେଷଃ ସୁଖଂ ଦୁଃଖଂ, ସଂଘାତଶ୍ଚେତନା ଧୃତିଃ ।
ଏତତ୍‌କ୍ଷେତ୍ରଂ ସମାସେନ, ସବିକାରମୁଦାହୃତଂ । ୬ ।

ଅନ୍ୱୟଃ ।

ଇଚ୍ଛା, ଦ୍ୱେଷଃ, ସୁଖଂ, ଦୁଃଖଂ, ସଂଘାତଃ, ଚେତନା, ଧୃତିଃ, ଏତତ୍, ସବିକାରଂ, କ୍ଷେତ୍ରଂ, ସମାସେନ, ଉଦାହୃତଂ । ୬ ।

ଟୀକା ।

କିଞ୍ଚ । ଇଚ୍ଛାଦୟଃ ପ୍ରସିଦ୍ଧାଃ, ସଂଘାତଃ ଶରୀରଂ, ଚେତନା ଜ୍ଞାନାତ୍ମିକା ମନୋବୃତ୍ତିଃ, ଧୃତିଃ ଧୈର୍ଯ୍ୟଂ, ଏତେ ଚେଚ୍ଛାଦୟୋ ଦୃଶ୍ୟତ୍ୱାନ୍ନାତ୍ମଧର୍ମା ଅପି ତୁ ମନୋଧର୍ମାଃ ଅତଃ କ୍ଷେତ୍ରାନ୍ତଃପାତିନ ଏବୋପଲକ୍ଷଣଞ୍ଚୈତତ୍ ସଂକଳ୍ପାଦୀନାଂ, ତଥାଚ ଶ୍ରୁତିଃ—କାମଃ ସଂକଳ୍ପୋ ବିଚିକିତ୍ସା ଶ୍ରଦ୍ଧା ଅଶ୍ରଦ୍ଧା ଧୃତିରଧୃତି ର୍ହ୍ରୀର୍ଧୀର୍ଭୀରିତ୍ୟେତତ୍ ସର୍ବଂ ମନ ଏବେତି, ଅନେନ ପାଦତ୍ରିତୟ ପ୍ରୋକ୍ତାଃ କ୍ଷେତ୍ରଧର୍ମା ଦର୍ଶିତାଃ ଏତତ୍ କ୍ଷେତ୍ରଂ ସବିକାରମିତ୍ୟାଦିବିକାରସହିତଂ ସଂକ୍ଷେପେଣ ଭୁକ୍ତଂ ମୟୋକ୍ତମିତି କ୍ଷେତ୍ରୋପସଂହାରଃ । ୬ ।

ପଦବ୍ୟାଖ୍ୟା ।

<u>ଇଚ୍ଛା</u>—ସ୍ପୃହା, <u>ଦ୍ୱେଷଃ</u>—ବିରକ୍ତି, <u>ସୁଖଂ ଦୁଃଖଂ</u>—ସୁଖ ଓ ଦୁଃଖ, <u>ସଂଘାତଃ</u>—(ଏମାନଙ୍କର) ସମୂହ ଅର୍ଥାତ

Digitized by PPRACHIN, SOA

ଶରୀର, ଚେତନା—ଜ୍ଞାନାତ୍ମିକା ମନୋବୃତ୍ତି, ଧୃତଃ—ଧାରଣା—ଧୈର୍ଯ୍ୟ, ଏତତ୍—ଏହି, କ୍ଷେତ୍ରଂ—କ୍ଷେତ୍ର (ଶରୀର)କୁ, ସମାସେନ—ସଂକ୍ଷେପରେ, ସବିକାରଂ—ବିକାର ସହିତ, ଉଦାହୃତଂ—କହିଲୁଁ । ୭ ।

ଅନୁବାଦ ।

(ଆଉ) ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ, ଶରୀର, ଚେତନା ଓ ଧୈର୍ଯ୍ୟ ଇତ୍ୟାଦି ବିକାର-ଯୁକ୍ତ କ୍ଷେତ୍ର ବିଷୟ ସଂକ୍ଷେପରେ କହିଲୁଁ । ୭ ।

ବିଶଦବ୍ୟାଖ୍ୟା ।

ସୁଖାଦି ପାଇବା ବିଷୟରେ ମନରେ ଯେଉଁ ସ୍ପୃହା ଜନ୍ମେ, ତାହାକୁ ଏ ସ୍ଥାନରେ 'ଇଚ୍ଛା' କୁହା ଯାଇଅଛି, ଦୁଃଖାଦିରେ ଯେଉଁ ବିରକ୍ତି ବା ଇଷ୍ଟନାଶରେ ଯେଉଁ ଅସନ୍ତୋଷ ଜନ୍ମେ, ତାହାକୁ ଦ୍ୱେଷ ବୋଲାଯାଏ । ଇଷ୍ଟ ପ୍ରାପ୍ତିରେ ଯେଉଁ ଆନନ୍ଦାନୁଭବ ହୁଏ, ତାହାକୁ ସୁଖ ଓ ତହିଁର ବିପରୀତ ଭାବର ନାମ ଦୁଃଖ ।

ପଞ୍ଚମହାଭୂତର ପରିଣାମ ସ୍ୱରୂପ ଯେ ଇନ୍ଦ୍ରିୟଗଣ, ତାହା ସହିତ ଶରୀରକୁ ସଙ୍ଘାତ ବୋଲାଯାଏ । ସ୍ୱରୂପ ଜ୍ଞାନର ପ୍ରକାଶକ ବାହ୍ୟଜ୍ଞାନବିଷୟିଣୀ ଚିତ୍ତବୃତ୍ତି ବିଶେଷକୁ ଚେତନା ବୋଲାଯାଏ । ବ୍ୟାକୁଳିତ ଇନ୍ଦ୍ରିୟାଦିକୁ ସୁସ୍ଥ ରଖିବା ବିଷୟରେ ଯେଉଁ ଯତ୍ନ କରାଯାଏ ତାହାକୁ ଧୃତି କହନ୍ତି । ଏ ସ୍ଥଳରେ ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ ଇତ୍ୟାଦି ଶବ୍ଦଦ୍ୱାରା ଅନ୍ତଃକରଣର ସମସ୍ତ ଧର୍ମପ୍ରତି ଲକ୍ଷ୍ୟକରା ହୋଇଅଛି । ଅନ୍ତଃକରଣର ବୃତ୍ତିମାନଙ୍କର ନାମ ବେଦରେ ଏହିପରି ଉକ୍ତ ହୋଇଅଛି । ଯଥା;—କାମଃ ସଙ୍କଳ୍ପୋବିଚିକିତ୍ସା, ଶ୍ରଦ୍ଧା, ଅଶ୍ରଦ୍ଧା, ଧୃତିରଧୃତି ହ୍ରୀ ର୍ଧୀର୍ଭୀରିତ୍ୟେତତ୍ସର୍ବଂ ମନ ଏବ," ଅର୍ଥାତ୍ ଇଚ୍ଛା, ସଙ୍କଳ୍ପ, ସଂଶୟ, ଶ୍ରଦ୍ଧା ଅଶ୍ରଦ୍ଧା, ଧୃତି, ଅଧୃତି, ଲଜ୍ଜା, ବୁଦ୍ଧି ଓ ଭୟ ଏମାନ ମନଃ ସ୍ୱରୂପ ଅଟନ୍ତି, ଅର୍ଥାତ୍ ଅନ୍ତଃକରଣର ଧର୍ମ ଅଟନ୍ତି ।

ପଞ୍ଚମହାଭୂତଠାରୁ ଆରମ୍ଭ କରି ଧୃତି ପର୍ଯ୍ୟନ୍ତ ପୂର୍ବୋକ୍ତ ସମସ୍ତ ଜଡ ପଦାର୍ଥ କ୍ଷେତ୍ର-ରୂପ ସାକ୍ଷିଦ୍ୱାରା ଭାସ ମାନ (ପ୍ରକାଶିତ) ହେଉଥିବାରୁ କ୍ଷେତ୍ରଜ୍ଞରୁ ଭିନ୍ନ ଅଟନ୍ତି । ସେହି ସବୁ ଜଡ ପଦାର୍ଥକୁ ଅମ୍ଭେ ସଂକ୍ଷେପରେ 'କ୍ଷେତ୍ର' ଏହି ନାମରେ କଥନ କଲୁଁ । ଅର୍ଥାତ୍ ଏହା ଦ୍ୱାରା 'କ୍ଷେତ୍ରର' ସ୍ୱରୂପ ବ୍ୟାଖ୍ୟା କରାଗଲା ଓ କ୍ଷେତ୍ରଜ୍ଞଦ୍ୱାରା ସେମାନ ପ୍ରକାଶିତ ହେଉଥିବାରୁ କ୍ଷେତ୍ରଜ୍ଞରୁ ଭିନ୍ନ ଅଟନ୍ତି, ଏହାଦ୍ୱାରା କ୍ଷେତ୍ର ଓ କ୍ଷେତ୍ରଜ୍ଞର ପ୍ରଭେଦ ବୁଝାଇ ଦିଆଗଲା ।

ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ, ଚେତନା ଓ ଧୈର୍ଯ୍ୟ ଇତ୍ୟାଦିଦ୍ୱାରା ସେହି କ୍ଷେତ୍ରର ସାମାନ୍ୟ ଧର୍ମ ବୁଝାଇ ଦିଆଗଲା । ପୁଣି ସେ କ୍ଷେତ୍ର 'ସବିକାର' ଅର୍ଥାତ୍ ଅସ୍ତିତ୍ୱ, ଜନ୍ମ, ବୃଦ୍ଧି, ଅବସ୍ଥାନ୍ତର ପ୍ରାପ୍ତି, କ୍ଷୟ ଓ ବିନାଶ ଏହି ଛ ପ୍ରକାର ବିକାରଯୁକ୍ତ ଅଟେ, ଅର୍ଥାତ୍ ଅନିତ୍ୟ ଅଟେ, ଅଥବା ପଞ୍ଚମହାଭୂତର ପରିଣାମ (ରୂପାନ୍ତର) ସ୍ୱରୂପ ଯେ ଇନ୍ଦ୍ରିୟଗଣ ତତ୍ସହିତ ଶରୀରକୁ ସଙ୍ଘାତ ବୋଲାଯାଏ, ଇତ୍ୟାଦି ବାକ୍ୟରେ ଇନ୍ଦ୍ରିୟମାନଙ୍କୁ ପଞ୍ଚମହାଭୂତର 'ବିକାର' ବୋଲି ବର୍ଣ୍ଣନ କରା ଯାଇଥିବାରୁ କ୍ଷେତ୍ର ଯେପରି ବିକାରଯୁକ୍ତ ତାହା ବୁଝାଇ ଦିଆଗଲା । ସେହି କ୍ଷେତ୍ର ନାମକ ଜଡବର୍ଗ ମଧ୍ୟରୁ କିଏସେ କାହିଁରୁ ଜାତ ହୁଏ, ତାହା ମଧ୍ୟ ପଞ୍ଚମ ଶ୍ଳୋକରେ

Digitized by PPRACHIN, SOA

ଅବ୍ୟକ୍ତଠାରୁ ପଞ୍ଚମହାଭୂତ ପର୍ଯ୍ୟନ୍ତ ଅଷ୍ଟ ପ୍ରକୃତି ବ୍ୟାଖ୍ୟା କଲାବେଳେ ସଂକ୍ଷେପରେ ବୁଝାଇ ଦେଲୁଁ । ଅତଏବ କ୍ଷେତ୍ରସମ୍ବନ୍ଧରେ ଯାହା କଚ୍ଛ କହିବାର ଥିଲା, ତାହା ଏହି ସଂକ୍ଷେପରେ ତୁମ୍ଭଙ୍କୁ ବୁଝାଇ ଦେଲୁଁ । ଏବେ କ୍ଷେତ୍ରଜ୍ଞର କଥା ଶ୍ରବଣ କର । ୬ ।

ଶ୍ଳୋକଃ ।

ଅମାନିତ୍ୱମଦମ୍ଭିତ୍ୱ, ମହିଂସା କ୍ଷାନ୍ତିରାର୍ଜ୍ଜବଂ ।
ଆଚାର୍ଯ୍ୟୋପାସନଂ ଶୌଚଂ, ସ୍ଥୈର୍ଯ୍ୟମାତ୍ମବିନିଗ୍ରହଃ । ୭ ।

ଅନ୍ୱୟଃ ।

ଅମାନିତ୍ୱଂ [୧], ଅଦମ୍ଭିତ୍ୱଂ [୨], ଅହିଂସା [୩], କ୍ଷାନ୍ତିଃ [୪], ଆର୍ଜ୍ଜବଂ [୫], ଆଚାର୍ଯ୍ୟୋପାସନଂ [୬], ଶୌଚଂ [୭], ସ୍ଥୈର୍ଯ୍ୟଂ [୮], ଆତ୍ମବିନିଗ୍ରହଃ [୯] (ଜ୍ଞାନମିତି ପ୍ରୋକ୍ତଂ) । ୭ ।

ଟୀକା ।

ଇଦାନୀମମାନିତ୍ୱମିତ୍ୟାଦି ପଞ୍ଚଭିଃ ପୂର୍ବୋକ୍ତଲକ୍ଷଣାତ୍ କ୍ଷେତ୍ରାଦତଦଧିକୃତସ୍ୟା କ୍ଷେତ୍ରଂ ଶୁଦ୍ଧଂ କ୍ଷେତ୍ରଜ୍ଞଂ ବସ୍ତୁରେଣ ବର୍ଣ୍ଣୟିଷ୍ୟନ୍ ତତ୍ତ୍ୱଜ୍ଞାନ ସାଧନାନ୍ୟାହ, ଅମାନିତ୍ୱମିତି ।

ଅମାନିତ୍ୱଂ ସ୍ୱଗୁଣଶ୍ଳାଘାରାହିତ୍ୟଂ, ଅଦମ୍ଭିତ୍ୱଂ ଦମ୍ଭରାହିତ୍ୟଂ, ଅହିଂସା ପରପୀଡାବର୍ଜ୍ଜନଂ, କ୍ଷାନ୍ତିଃ ସହିଷ୍ଣୁତ୍ୱଂ, ଆର୍ଜ୍ଜବମବକ୍ରତା, ଆଚାର୍ଯ୍ୟୋପାସନଂ ସଦ୍ଗୁରୁ ସେବନଂ । ଶୌଚଂ ବାହ୍ୟମାଭ୍ୟନ୍ତରଂ ଚ, ତତ୍ର ବାହ୍ୟଂ ମୃଜ୍ଜଲାଦିନା, ଆଭ୍ୟନ୍ତରଞ୍ଚ ରାଗାଦି ମଳକ୍ଷାଳନଂ, ତଥାଚ ସ୍ମୃତିଃ । ଶୌଚଂ ଚ ଦ୍ୱିବିଧଂ ପ୍ରୋକ୍ତଂ ବାହ୍ୟମାଭ୍ୟନ୍ତରଂ ତଥା । ମୃଜ୍ଜଲାଭ୍ୟାଂ ସ୍ମୃତଂ ବାହ୍ୟଂ ଭାବଶୁଦ୍ଧିସ୍ତଥାନ୍ତରମିତି । ସ୍ଥୈର୍ଯ୍ୟଂ ସନ୍ମାର୍ଗେ ପ୍ରବୃତ୍ତସ୍ୟ ତଦେକନିଷ୍ଠତା, ଆତ୍ମବିନିଗ୍ରହଃ ଶରୀରସଂଯମଃ ଏତଜ୍ଜ୍ଞାନମିତି ପ୍ରୋକ୍ତମିତି ପଞ୍ଚମେନାନ୍ୱୟଃ । ୭ ।

ପଦବ୍ୟାଖ୍ୟା ।

ଅମାନିତ୍ୱଂ—ନିଜ ପ୍ରଶଂସାରେ ଗର୍ବଶୂନ୍ୟତା, ଅଦମ୍ଭିତ୍ୱଂ—ଦମ୍ଭଶୂନ୍ୟତା, ଅହିଂସା—ପରପୀଡାବର୍ଜ୍ଜନ, କ୍ଷାନ୍ତିଃ—କ୍ଷମା—ସହିଷ୍ଣୁତା, ଆର୍ଜ୍ଜବଂ—ସରଳତା, ଆଚାର୍ଯ୍ୟୋପାସନଂ—ସଦ୍ଗୁରୁ ସେବା, ଶୌଚଂ—ବାହ୍ୟ ଓ ଅଭ୍ୟନ୍ତର ଶୁଦ୍ଧି, ସ୍ଥୈର୍ଯ୍ୟଂ—ଅବଲମ୍ବିତ ମାର୍ଗରେ ସ୍ଥିରତା, ଆତ୍ମବିନିଗ୍ରହଃ—ଶରୀର ସଂଯମ । ୭ ।

ଅନୁବାଦ ।

ଅଭିମାନଶୂନ୍ୟତା, ଦମ୍ଭହୀନତା, ଅହିଂସା, କ୍ଷମା, ସରଳତା, ସଦ୍ଗୁରୁସେବା, ପବିତ୍ରତା, ସ୍ଥିରତା ଓ ଶରୀରସଂଯମ (ଏ ସବୁକୁ ଜ୍ଞାନସାଧନ ବୋଲାଯାଏ) । ୭ ।

ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ 'କ୍ଷେତ୍ର'ର ସଂକ୍ଷେପ ବର୍ଣ୍ଣନ ହୋଇ ଯାଇଅଛି, ବର୍ତ୍ତମାନ କ୍ଷେତ୍ରଜ୍ଞ ଚିହ୍ନିବାର ପ୍ରଧାନ ସାଧନ ଯେ ଜ୍ଞାନ, ତାହାର ବିଷୟ କୁହା ଯାଉଅଛି, ୧ ଆପଣାର ଗୁଣର ପ୍ରଶଂସାରେ ଅଭିମାନଶୂନ୍ୟ ହେବା, ୨ କୌଣସି ବିଷୟରେ ଗର୍ବ ନ କରିବା, ୩ ମନ, ବଚନ ଓ ଶରୀରଦ୍ୱାରା କାହାରିକୁ ପୀଡ଼ା ନ ଦେବା, ୪ ପୀଡାଦାୟୀ ବା ତିରସ୍କାରକର୍ତ୍ତାକୁ ଦଣ୍ଡ ଦେବାର କ୍ଷମତା ଥିଲେସୁଦ୍ଧା ଦଣ୍ଡ ନ ଦେବା, ୫ କପଟତା ତ୍ୟାଗ କରି ସରଳ ହେବା, ୬ ବ୍ରହ୍ମନିଷ୍ଠ ଗୁରୁଙ୍କୁ ସେବା କରିବା, ୭ ମୃତ୍ତିକା ଓ ଜଳାଦିଦ୍ୱାରା ବାହ୍ୟଶୁଦ୍ଧି ଓ ରାଗଦ୍ୱେଷାଦି

ପରିତ୍ୟାଗପୂର୍ବକ ଅନ୍ତରିକଶୁଦ୍ଧି ସମ୍ପାଦନ କରିବା, ୮ ଏବଂ ଅବଲମ୍ବିତ ସତ୍ପଥରୁ ବିଚଳିତ ନ ହୋଇ ତହିଁରେ ସ୍ଥିର ରହିବା, ୯ ମନ ଓ ଶରୀରକୁ ମୁକ୍ତି ବିରୋଧୀ ବିଷୟ ବ୍ୟାପାରରୁ ନିବୃତ୍ତ କରି ବ୍ରହ୍ମସ୍ୱରୂପରେ ନିଯୁକ୍ତ କରିବା ପ୍ରଭୃତି କାର୍ଯ୍ୟକୁ, ଜ୍ଞାନସାଧନ ବୋଲାଯାଏ । ୭ ।

### ଶ୍ଳୋକଃ ।

। ।୧ ।୪ । ।

ଇନ୍ଦ୍ରିୟାର୍ଥେଷୁ ବୈରାଗ୍ୟ, ମନହଂକାରମେବ ଚ ।

।

ଜନ୍ମ ମୃତ୍ୟୁ ଜରାବ୍ୟାଧି, ଦୁଃଖ ଦୋଷାନୁଦର୍ଶନଂ । ୮ ।

### ଅନ୍ୱୟଃ ।

୧୦ ୧୧ ୧୨

ଇନ୍ଦ୍ରିୟାର୍ଥେଷୁ ବୈରାଗ୍ୟଂ, ଚ, ଅନହଂକାରଃ, ଏବ ଜନ୍ମ ମୃତ୍ୟୁ ଜରାବ୍ୟାଧି ଦୁଃଖଦୋଷାନୁଦର୍ଶନଂ (ଜ୍ଞାନମିତିପ୍ରୋକ୍ତଂ) ।୮।

### ଟୀକା ।

କିଞ୍ଚ ଇନ୍ଦ୍ରିୟାର୍ଥେଷ୍ୱିତି । ଜନ୍ମାଦିଷୁ ଦୁଃଖ ଦୋଷୟୋରନୁଦର୍ଶନଂ ପୁନଃ ପୁନରାଲୋଚନଂ ଦୁଃଖରୂପସ୍ୟ ଦୋଷସ୍ୟାନୁଦର୍ଶନମିତିବା ସ୍ପଷ୍ଟମନ୍ୟତ୍ । ୮ ।

### ପଦବ୍ୟାଖ୍ୟା ।

ଇନ୍ଦ୍ରିୟାର୍ଥେଷୁ—ଇନ୍ଦ୍ରିୟମାନଙ୍କର ବିଷୟରେ (ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧରେ), ବୈରାଗ୍ୟଂ—ଆସକ୍ତିଶୂନ୍ୟତା ଅନହଂକାରଃ—ଅହଂକାରର ଅଭାବ—ବିନୟ—ନମ୍ରତା, ଏବ ଚ—ଅପର, ଜନ୍ମ ମୃତ୍ୟୁ ଜରାବ୍ୟାଧି ଦୁଃଖ ଦୋଷାନୁଦର୍ଶନଂ—ଜନ୍ମ, ମରଣ, ବାର୍ଦ୍ଧକ୍ୟ ଓ ରୋଗଇତ୍ୟାଦି ଦୁଃଖ ଏବ ଦୋଷର ପୁନଃପୁନଃ ଅଲୋଚନା । ୮ ।

### ଅନୁବାଦ ।

ଇନ୍ଦ୍ରିୟଗଣର ବିଷୟମାନଙ୍କରେ ଅନାସକ୍ତି, ନିରହଂକାର ଏବଂ ଜନ୍ମ ମୃତ୍ୟୁ ବାର୍ଦ୍ଧକ୍ୟ ଓ ରୋଗ ଇତ୍ୟାଦି ଦୁଃଖ ଓ ଦୋଷର ପୁନଃପୁନ ଆଲୋଚନାକୁ (ଜ୍ଞାନସାଧନ ବୋଲାଯାଏ) । ୮ ।

### ବିଶଦବ୍ୟାଖ୍ୟା ।

(୧୦) ଶ୍ରୋତ୍ରାଦି ଇନ୍ଦ୍ରିୟମାନଙ୍କୁ ଶବ୍ଦାଦି ବିଷୟରେ ଆସକ୍ତ ନ ରଖିବା, (୧୧) ଅହଂକାର ଶୂନ୍ୟ ହେବା ଏବଂ (୧୨) ସଂସାରରେ ଜନ୍ମ ହେବାକୁ ହେଲେ ମାତୃଗର୍ଭରେ କ୍ଲେଦପୂର୍ଣ୍ଣ ଜରାୟୁରେ ବାସ, ଯୋନିଦ୍ୱାରବାଟେ ନିର୍ଗମନ, ମୃତ୍ୟୁ ସମୟରେ ପ୍ରାଣ ମର୍ମ ସବୁକୁ ଭେଦ କରି ବାହାରି ବାରେ ଅସହ୍ୟ ଯନ୍ତ୍ରଣା ଓ ବାତପିତ୍ତ କଫାଦି ପ୍ରକୁପିତ ହୋଇ ନାନାପ୍ରକାର ରୋଗ ଜାତ ହେଲେ ତଜ୍ଜନିତ ପୀଡ଼ା, ଏହିପରି ନାନା ଦୁଃଖ ଓ ଦେହର ଅଶୁଚିତା ଓ ବାର୍ଦ୍ଧକ୍ୟାଦି ପରିଣାମଜନିତ ଦୋଷ ସବୁକୁ ବାରମ୍ବାର ଆଲୋଚନା କରିବାକୁ ଜ୍ଞାନସାଧନ ବୋଲାଯାଏ । ଅର୍ଥାତ୍ ଅହଙ୍କାରଶୂନ୍ୟ ହୋଇ, ଇନ୍ଦ୍ରିୟ ବଶୀଭୂତ କରି, ଜନ୍ମମରଣ ଜରାବ୍ୟାଧି ଇତ୍ୟାଦିର ଦୁଃଖ ଓ ଦୋଷ ପୁନଃପୁନଃ ଅନୁସନ୍ଧାନ କଲେ ସଂସାରରେ ଜନ୍ମ ହେବା ଅଭିଳାଷ କମି ଯିବ ଓ ତତ୍ତ୍ୱଜ୍ଞାନ ପ୍ରତି ମନ ଅଧିକ ଅନୁରକ୍ତ ହେବ । ୮ ।

Digitized by PPRACHIN, SOA

ଶ୍ଳୋକଃ ।

* ଅସକ୍ତିରନଭିଷ୍ୱଙ୍ଗଃ, ପୁତ୍ରଦାରଗୃହାଦିଷୁ ।
ନିତ୍ୟଂ ଚ ସମଚିତ୍ତତ୍ୱ, ମିଷ୍ଟାନିଷ୍ଟୋପପତ୍ତିଷୁ । ୯ ।

ଅନ୍ୱୟଃ ।

ପୁତ୍ରଦାରଗୃହାଦିଷୁ ଅସକ୍ତିଃ, ଅନଭିଷ୍ୱଙ୍ଗଃ, ଚ ନିତ୍ୟଂ ଇଷ୍ଟାନିଷ୍ଟୋପପତ୍ତିଷୁ ସମଚିତ୍ତତ୍ୱଂ (ଜ୍ଞାନମିତି ପ୍ରୋକ୍ତଂ) । ୯ ।

ଟୀକା ।

କିଞ୍ଚ ଅସକ୍ତିରିତି । ପୁତ୍ରଦାରାଦିଷୁ ଅସକ୍ତିଃ ପ୍ରୀତିତ୍ୟାଗଃ, ଅନଭିଷ୍ୱଙ୍ଗଃ ପୁତ୍ରାଦୀନାଂ ସୁଖେଦୁଃଖେବା ଅହମେବ ସୁଖୀ ଦୁଃଖୀ ଚେତ୍ୟାଧ୍ୟାସାତିରେକାଭାବଃ, ଇଷ୍ଟାନିଷ୍ଟୟୋରୁପପତ୍ତିଷୁ ପ୍ରାପ୍ତିଷୁ ନିତ୍ୟଂ ସର୍ବଦା ସମଚିତ୍ତତ୍ୱଂ । ୯ ।

ପଦବ୍ୟାଖ୍ୟା ।

ଅସକ୍ତିଃ—ପ୍ରୀତିହୀନତା—ଆସକ୍ତିଶୂନ୍ୟତା, ଅନଭିଷ୍ୱଙ୍ଗଃ—ପୁତ୍ରାଦିଙ୍କର ସୁଖରେ ସୁଖୀ, ଦୁଃଖରେ ଦୁଃଖୀ ନ ହେବା, ପୁତ୍ରଦାରଗୃହାଦିଷୁ—ପୁତ୍ର, ଭାର୍ଯ୍ୟା ଓ ଗୃହାଦିରେ, ନିତ୍ୟଂ—ସର୍ବଦା, ଚ—ପୁଣି, ସମଚିତ୍ତତ୍ୱଂ—ସମାନ ବୁଦ୍ଧି ହେବା, ଇଷ୍ଟାନିଷ୍ଟୋପପତ୍ତିଷୁ—ଇଷ୍ଟ ଓ ଅନିଷ୍ଟ ପ୍ରାପ୍ତିରେ । ୯ ।

ଅନୁବାଦ ।

ପୁତ୍ର, ଭାର୍ଯ୍ୟା ଓ ଗୃହାଦିରେ ଆସକ୍ତ ନ ହେବା (ସେମାନଙ୍କ ସୁଖରେ ବା ଦୁଃଖରେ) ସମ୍ପର୍କ ନ ରଖିବା ଏବଂ ଇଷ୍ଟ ଓ ଅନିଷ୍ଟପ୍ରାପ୍ତିରେ ସର୍ବଦା ସମାନ ଜ୍ଞାନ ରଖିବାକୁ (ଜ୍ଞାନ-ସାଧନ ବୋଲାଯାଏ) । ୯ ।

ବିଶଦବ୍ୟାଖ୍ୟା ।

(୧୩) ପୁତ୍ର, ଭାର୍ଯ୍ୟା ଓ ଗୃହାଦିରେ ଆସକ୍ତ ହେଲେ ଜ୍ଞାନସାଧନରେ ବାଧା ହୁଏ, ଅତଏବ ସେ ସବୁରେ ଅନାସକ୍ତି ଅର୍ଥାତ୍ ଆସକ୍ତିଶୂନ୍ୟ ହେବା ଉଚିତ । (୧୪) ପୁଣି ପୁତ୍ର ଭାର୍ଯ୍ୟାଦିଙ୍କର ସୁଖରେ ଆପଣାକୁ ସୁଖୀ ଓ ସେମାନଙ୍କ ଦୁଃଖରେ ଆପଣାକୁ ଦୁଃଖୀ ଜ୍ଞାନ କଲେ ଅର୍ଥାତ୍ ତନ୍ମୟ ହେଲେ ଜ୍ଞାନସାଧନ ହୋଇ ପାରିବ ନାହିଁ, ଏଣୁକରି ସେମାନଙ୍କ ସୁଖଦୁଃଖରେ ସମ୍ପର୍କହୀନ ହେବା ଜ୍ଞାନସାଧନ ପକ୍ଷରେ ପ୍ରୟୋଜନ । (୧୫) ସେହିପରି ଇଷ୍ଟପ୍ରାପ୍ତିରେ ପ୍ରଫୁଲ୍ଲ ବା ଅନିଷ୍ଟ-ପ୍ରାପ୍ତିରେ ବିଷାଦଯୁକ୍ତ ନ ହୋଇ ଇଷ୍ଟପ୍ରାପ୍ତି ଓ ଅନିଷ୍ଟପ୍ରାପ୍ତି ଏ ଦୁଇ କଥାରେ ସର୍ବଦା ସମଚିତ୍ତ ହେବା ଉଚିତ । ଏହି ସବୁ କାର୍ଯ୍ୟକୁ ଜ୍ଞାନସାଧନ ବୋଲାଯାଏ । ୯ ।

ଶ୍ଳୋକଃ ।

ମୟି ଚାନନ୍ୟଯୋଗେନ, ଭକ୍ତିରବ୍ୟଭିଚାରିଣୀ ।
ବିବିକ୍ତଦେଶସେବିତ୍ୱ,ମରତିର୍ଜନସଂସଦି । ୧୦ ।

### ଅନ୍ୱୟଃ ।

୧୨ ୧୬ ୧୮

ମୟି ଅନନ୍ୟଯୋଗେନ ଅବ୍ୟଭିଚାରିଣୀ ଭକ୍ତିଃ, ବିବିକ୍ତଦେଶସେବିତ୍ୱଂ, ଚ ଜନସଂସଦି ଅରତିଃ, (ଜ୍ଞାନଂ ଇତି ପ୍ରୋକ୍ତଂ) । ୧୦ ।

### ଟୀକା ।

କିଞ୍ଚ ମୟୀତି । ମୟି ପରମେଶ୍ୱରେଽନନ୍ୟଯୋଗେନ ସର୍ବାତ୍ମଦୃଷ୍ଟ୍ୟା ଅବ୍ୟଭିଚାରିଣୀ ଏକାନ୍ତାଭକ୍ତିଃ, ବିବିକ୍ତଃ ଶୁଦ୍ଧଃ ଚିତ୍ତପ୍ରସାଦକରସ୍ତଂ ଦେଶଂ ସେବିତୁଂ ଶୀଳଂ ଯସ୍ୟ ତସ୍ୟଭାବସ୍ତତ୍ତ୍ୱଂ, ପ୍ରାକୃତାନାଂ ଜନାନାଂ ସଂସଦି ସମାଜେଽରତିରପ୍ରୀତିଶ୍ଚ । ୧୦ ।

### ପଦବ୍ୟାଖ୍ୟା ।

ମୟି ଚ—ଆମ୍ଭଠାରେ ପୁଣି, ଅନନ୍ୟଯୋଗେନ—ଭଗବାନଙ୍କଠାରୁ ଅନ୍ୟ କେହି ଶ୍ରେଷ୍ଠ ନାହିଁ ଏପରି ନିଶ୍ଚୟଦ୍ୱାରା, ଭକ୍ତିଃ—ପ୍ରୀତି, ଅବ୍ୟଭିଚାରିଣୀ—(କୌଣସି ପ୍ରବଳ କାରଣଦ୍ୱାରା ଯାହା ବାରଣ କରି ନ ହୁଏ ଏ ପ୍ରକାର) ଏକାନ୍ତ ଅବିଚ୍ଛେଦ, ବିବିକ୍ତଦେଶସେବିତ୍ୱଂ—ପବିତ୍ର ଦେଶରେ ବାସ କରିବା, ଅରତିଃ—ଅଶ୍ରଦ୍ଧା—ଅପ୍ରୀତି, ଜନସଂସଦି—(ସଂସାରୀ) ମନୁଷ୍ୟମାନଙ୍କ ମେଳରେ । ୧୦ ।

### ଅନୁବାଦ ।

ସର୍ବାତ୍ମଦୃଷ୍ଟିରେ ଆମ୍ଭଠାରେ ଏକାନ୍ତଭକ୍ତି, ପବିତ୍ର ସ୍ଥାନରେ ଅବସ୍ଥିତି, ଓ ସଂସାରୀ ଜନସମାଜରେ ଅପ୍ରୀତିକୁ (ଜ୍ଞାନସାଧନ ବୋଲାଯାଏ) । ୧୦ ।

### ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି (୧୬) ଜ୍ଞାନସାଧକର ଆମ୍ଭଠାରେ ଏକାନ୍ତଭକ୍ତି ଅର୍ଥାତ୍ କୌଣସି ପ୍ରତିକୂଳ ଘଟନା ଉପସ୍ଥିତ ହେଲେ ସୁଦ୍ଧା ଯାହା ବିଚଳିତ ନ ହୁଏ, ଏ ପ୍ରକାର ପ୍ରୀତି କରିବା ପ୍ରୟୋଜନ । କିନ୍ତୁ (୧୭) ଏକାନ୍ତଭକ୍ତି ଜନ୍ମିବା ବିଷୟରେ ବାଧାଜନକ ଯେ ଅପବିତ୍ର ସ୍ଥାନ ସେଠାରେ ବାସ ନ କରି ଯେଉଁ ସ୍ଥାନ ପବିତ୍ର ଓ ଚିତ୍ତପ୍ରଫୁଲ୍ଲକର ସେପରି ସ୍ଥାନରେ ବାସ କରିବା ଉଚିତ । ଆଉ (୮) ସଂସାରୀ ମନୁଷ୍ୟମାନଙ୍କର ସମାଜରେ ରହିଲେ କାଳେ ମନରେ ବିଷୟ ସ୍ପୃହା ଜନ୍ମିବ, ସେଥିପାଇଁ ସେପରି ଜନସମାଜରେ ଅଶ୍ରଦ୍ଧା ବା ଅରୁଚି ହେବା ମଧ୍ୟ ପ୍ରୟୋଜନ । ଏହି ସବୁ କାର୍ଯ୍ୟକୁ ଜ୍ଞାନସାଧନ ବୋଲାଯାଏ । ୧୦ ।

### ଶ୍ଲୋକଃ ।

ଅଧ୍ୟାତ୍ମଜ୍ଞାନନିତ୍ୟତ୍ୱଂ, ତତ୍ତ୍ୱଜ୍ଞାନାର୍ଥଦର୍ଶନଂ ।
ଏତଜ୍ଜ୍ଞାନମିତି ପ୍ରୋକ୍ତ,ମଜ୍ଞାନଂ ଯଦତୋଽନ୍ୟଥା । ୧୧ ।

### ଅନ୍ୱୟଃ ।

୧୯ ୨୦

ଅଧ୍ୟାତ୍ମଜ୍ଞାନନିତ୍ୟତ୍ୱଂ ତତ୍ତ୍ୱଜ୍ଞାନାର୍ଥଦର୍ଶନଂ ଏତତ୍ ଜ୍ଞାନଂ ଇତି ପ୍ରୋକ୍ତଂ ଅତଃ ଅନ୍ୟଥା ଯତ୍ (ତତ୍) ଅଜ୍ଞାନଂ ।

। ୧୧ ।

## ଟୀକା ।

କିଞ୍ଚ ଅଧ୍ୟାତ୍ମେତି । ଆତ୍ମାନମଧିକୃତ୍ୟ ବର୍ତ୍ତମାନଂ ଜ୍ଞାନଂ, ତସ୍ମିନ୍ନିତ୍ୟତ୍ୱଂ ନିତ୍ୟଭାବଃ ତତ୍ତ୍ୱଂପଦାର୍ଥଶୁଦ୍ଧିନିଷ୍ଠତ୍ୱମିତ୍ୟର୍ଥଃ, ତତ୍ତ୍ୱଜ୍ଞାନସ୍ୟାର୍ଥଃ ପ୍ରୟୋଜନଂ ମୋକ୍ଷସ୍ତସ୍ୟ ଦର୍ଶନଂ ମୋକ୍ଷସ୍ୟ ସର୍ବୋତ୍କୃଷ୍ଟତ୍ୱାଲୋଚନମିତ୍ୟର୍ଥଃ । ଏତଦମାନିତ୍ୱମଦମ୍ଭିତ୍ୱାଦି ବିଂଶତିସଙ୍ଖ୍ୟକଂ ଯଦୁକ୍ତମେତଜ୍‌ଜ୍ଞାନମିତି ପ୍ରୋକ୍ତଂ ବଶିଷ୍ଠାଦିଭିର୍ଜ୍ଞାନସାଧନତ୍ୱାତ୍, ଅତୋଽନ୍ୟଥା ଅସ୍ମାଦ୍ବିପରୀତଂ ମାନିତ୍ୱାଦି ଯତ୍ତଦଜ୍ଞାନମିତି ଜ୍ଞାନବିରୋଧିତ୍ୱାତ୍, ଅତଃ ସର୍ବଥା ତ୍ୟାଜ୍ୟମିତ୍ୟର୍ଥଃ । ୧୧ ।

## ପଦବ୍ୟାଖ୍ୟା ।

ଅଧ୍ୟାତ୍ମଜ୍ଞାନନିତ୍ୟତ୍ୱଂ—ଆତ୍ମ ଓ ଅନାତ୍ମ ବସ୍ତୁରବିଷୟକ ଜ୍ଞାନରେ ନିଷ୍ଠା, ତତ୍ତ୍ୱଜ୍ଞାନାର୍ଥଦର୍ଶନଂ—ମୋକ୍ଷର ସର୍ବଶ୍ରେଷ୍ଠତା ଆଲୋଚନା କରିବା, ଏତତ୍—ଏହି ସବୁ କାର୍ଯ୍ୟକୁ, ଜ୍ଞାନଂ ଇତି ପ୍ରୋକ୍ତଂ—ଜ୍ଞାନସାଧନ ବୋଲାଯାଏ, ଅଜ୍ଞାନଂ ଯଦତୋଽନ୍ୟଥା—ଏଥିରୁ ଯାହା ଅନ୍ୟପ୍ରକାର, ତାହା ଅଜ୍ଞାନ । ୧୧ ।

## ଅନୁବାଦ ।

ଅଧ୍ୟାତ୍ମ ଜ୍ଞାନରେ ନିଷ୍ଠା ଓ ତତ୍ତ୍ୱଜ୍ଞାନର ପ୍ରୟୋଜନ ଆଲୋଚନା; ଏହାକୁ ଜ୍ଞାନସାଧନ ବୋଲାଯାଏ ଓ ଏଥିରୁ ଯାହା ଭିନ୍ନ, ତାହା ଅଜ୍ଞାନସ୍ୱରୂପ ଅଟେ । ୧୧ ।

## ବିଶଦବ୍ୟାଖ୍ୟା ।

(୧୯) ଆତ୍ମ ଓ ଅନାତ୍ମ ପଦାର୍ଥର ବିଚାର ଯହିଁରେ ହୁଏ, ତାହାକୁ ଅଧ୍ୟାତ୍ମଜ୍ଞାନ ବୋଲାଯାଏ, ଅଥବା ଆତ୍ମସମ୍ବନ୍ଧୀୟ ତତ୍ତ୍ୱ ଯାହାଦ୍ୱାରା ଜଣାଯାଏ, ତାହାକୁ ଅଧ୍ୟାତ୍ମଜ୍ଞାନ ବୋଲାଯାଏ । ସେହି ଅଧ୍ୟାତ୍ମଜ୍ଞାନରେ ନିଷ୍ଠା ଅର୍ଥାତ୍ ସର୍ବଦା ଏକାଗ୍ରତା ରଖିବା, ଏବଂ (୨୦) ତତ୍ତ୍ୱଜ୍ଞାନର ପ୍ରୟୋଜନ, ଯେ ମୋକ୍ଷଲାଭ, ତାହାର ଆଲୋଚନା କରିବା ଅର୍ଥାତ୍ ମୋକ୍ଷ, ଯେ ସବୁ ଫଳ ଅପେକ୍ଷା ଶ୍ରେଷ୍ଠ, ତାହା ବିଚାର କରିବା, ଏମାନଙ୍କୁ ଜ୍ଞାନସାଧନ ବୋଲାଯାଏ ।

ଏ ଅଧ୍ୟାୟର ୭ମ ଶ୍ଳୋକଠାରୁ ଏ ଶ୍ଳୋକ ପର୍ଯ୍ୟନ୍ତ ଯେତେଗୋଟି କାର୍ଯ୍ୟର ବିବରଣ ଦିଆଗଲା ତାହାକୁ ଅର୍ଥାତ୍ ଅଭିମାନଶୂନ୍ୟତା ଓ ଦମ୍ଭହୀନତା ପ୍ରଭୃତି ବିଂଶତି କାର୍ଯ୍ୟକୁ ବଶିଷ୍ଠାଦି ଋଷିମାନେ 'ଜ୍ଞାନ' ବୋଲି କହିଅଛନ୍ତି, କାହିଁକି ନା ଏ କାର୍ଯ୍ୟଗୁଡ଼ିକ କରି ନ ପାରିଲେ, କଦାପି ଜ୍ଞାନ ଜନ୍ମିବ ନାହିଁ, ଆଉ ଏଥିରୁ ଯାହା ଭିନ୍ନ ଅର୍ଥାତ୍ ମାନିତ୍ୱ ଦମ୍ଭିତ୍ୱ ପ୍ରଭୃତି, ତାହା ଅଜ୍ଞାନ ଅଟେ । ଅତଏବ ସେହି ମାନ, ଦମ୍ଭ ପ୍ରଭୃତି ଅଜ୍ଞାନସାଧନ ସମ୍ପୂର୍ଣ୍ଣରୂପେ ତ୍ୟାଗ କରିବା ଉଚିତ । ୧୧ ।

## ଶ୍ଳୋକଃ ।

ଜ୍ଞେୟଂ ଯତ୍ତତ୍ ପ୍ରବକ୍ଷ୍ୟାମି, ଯଜ୍‌ଜ୍ଞାତ୍ୱାମୃତମଶ୍ନୁତେ ।
ଅନାଦିମତ୍ ପରଂ ବ୍ରହ୍ମ, ନ ସତ୍ତନ୍ନାସଦୁଚ୍ୟତେ । ୧୨ ।

## ଅନ୍ୱୟଃ ।

ଯତ୍ ଜ୍ଞେୟଂ ଯତ୍ ଜ୍ଞାତ୍ୱା ଅମୃତଂ ଅଶ୍ନୁତେ, ତତ୍ ଅନାଦିମତ୍ ପରଂ ବ୍ରହ୍ମ ପ୍ରବକ୍ଷ୍ୟାମି, ତତ୍ ନ 'ସତ୍' ନ ଅସତ୍ ଉଚ୍ୟତେ । ୧୨ ।

Digitized by PPRACHIN, SOA

## ଟୀକା ।

ଏବଂ ସାଧନୈର୍ଜ୍ଞେୟଂ ତଦାହ, ଜ୍ଞେୟମିତ ଷଡ୍‌ଭିଃ । ଯଜ୍ଜ୍ଞେୟଂ ତତ୍ ପ୍ରବକ୍ଷ୍ୟାମି । ଶ୍ରୋତୁରାଦରସିଦ୍ଧୟେ ଜ୍ଞାନଫଳଂ ଦର୍ଶୟତି ଯଦ୍‌ଜ୍ଞାତ୍ୱା ଅମୃତଂ ମୋକ୍ଷଂ ପ୍ରାପ୍ନୋତି, କିଂ ତତ୍ ଅନାଦିମତ୍ ଅବ୍ୟାଦ୍ୟନାଦିମତ୍, ପରଂ ନିରତିଶୟଂ ବ୍ରହ୍ମ । ଅନାଦ୍ୟନ୍ତୋ ଭାବ ଏବୈବଂ ବହୁବ୍ରୀହିଣା ଅନାଦିମଦ୍ୱେତି ଚେତ୍ପି ପୁନର୍ମତୁପ୍ ପ୍ରତ୍ୟୟଃ ଛାନ୍ଦସଃ, ଯଦ୍ୱା ଅନାଦିଚ ମତ୍ପରଂ ଚେତି ପଦଦ୍ୱୟଂ, ମମ ବିଷ୍ଣୋଃ ପରଂ ନିର୍ବିଶେଷରୂପଂ ବ୍ରହ୍ମେତ୍ୟର୍ଥଃ, ତଦେବାହ, ନ ସଦିତ୍ୟାଦି, ଅନାଶ୍ରିତ ମପ୍ରତ୍ୟକ୍ଷ ଚେତ ପଦଦ୍ୱୟଂ, ମମ ବିଷ୍ଣୋଃ ପରଂ ନିର୍ବିଶେଷରୂପଂ ବ୍ରହ୍ମେତ୍ୟର୍ଥଃ, ତଦେବାହ, ନ ସଦିତ୍ୟାଦି, ବିଧିମୁଖେନ ପ୍ରମାଣସ୍ୟ ବିଷୟଃ ସଚ୍ଛବ୍ଦେନୋଚ୍ୟତେ, ନିଷେଧବିଷୟସ୍ତ୍ୱସଚ୍ଛବ୍ଦେନୋଚ୍ୟତେ ଇଦଂ ତୁ ତଦୁଭୟବିଲକ୍ଷଣମବିଷୟତ୍ୱାଦିତ୍ୟର୍ଥଃ । ୧୨ ।

### ପଦବ୍ୟାଖ୍ୟା ।

ଜ୍ଞେୟଂ ଯତ୍—ଯାହା ଜାଣିବା ଯୋଗ୍ୟ, ତତ୍ ପ୍ରବକ୍ଷ୍ୟାମି—ତାହା ଉତ୍ତମରୂପେ କହୁଅଛୁଁ, ଯତ୍ ଜ୍ଞାତ୍ୱା—ଯାହା ଜାଣିଲେ, ଅମୃତଂ—ମୋକ୍ଷକୁ, ଅଶ୍ନୁତେ—ପ୍ରାପ୍ତ ହୁଅନ୍ତି, ଅନାଦିମତ୍—ଆଦିଶୂନ୍ୟ—ନିତ୍ୟ, ପରଂବ୍ରହ୍ମ—ନିର୍ଗୁଣ ବ୍ରହ୍ମ, ନ ସତ୍—ବିଦ୍ୟମାନ ନୁହନ୍ତି, ତତ୍—ତାହା, ନ ଅସତ୍—ଅବିଦ୍ୟମାନ ନୁହନ୍ତି; ଉଚ୍ୟତେ—କଥିତ ଅଛି । ୧୨ ।

### ଅନୁବାଦ ।

ଯାହା ‘ଜ୍ଞେୟ’ ଓ ଯାହା ଜାଣିଲେ (ଜୀବ) ମୋକ୍ଷ ପ୍ରାପ୍ତ ହୁଏ, ସେହି ଅନାଦି ପରଂବ୍ରହ୍ମଙ୍କ ବିଷୟ (ତୁମ୍ଭଙ୍କୁ) କହୁଅଛୁଁ । ସେହି ବ୍ରହ୍ମ, ସତ୍ ନୁହନ୍ତି ଓ ଅସତ୍ ନୁହନ୍ତି ବୋଲି କଥିତ ଅଛି । ୧୨ ।

### ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, ହେ ଅର୍ଜ୍ଜୁନ ! ପୂର୍ବୋକ୍ତ କୋଡ଼ିଏ ପ୍ରକାର ଜ୍ଞାନସାଧନ ଦ୍ୱାରା ଯେଉଁ ବ୍ରହ୍ମଙ୍କୁ ଜାଣିବାକୁ ହୁଏ, ସେହି ଜ୍ଞେୟ ପରଂବ୍ରହ୍ମଙ୍କର ବିଷୟ ଆମ୍ଭେ କହୁଅଛୁଁ ଶ୍ରବଣ କର । ସେହି ପରଂବ୍ରହ୍ମଙ୍କୁ ଜାଣିଲେ, ଲୋକେ ଅମୃତ ଅର୍ଥାତ୍ ମୋକ୍ଷ ପ୍ରାପ୍ତ ହୁଅନ୍ତି । ଅତଏବ ତୁମ୍ଭେ ତାହା ଶ୍ରବଣ କର । ଉକ୍ତ ‘ଜ୍ଞେୟ’ ବ୍ରହ୍ମ ‘ଅନାଦିମତ୍’ ଅର୍ଥାତ୍ ଆଦିଶୂନ୍ୟ=ନିତ୍ୟ ଅଟନ୍ତି, ଅଥବା ସେ ବ୍ରହ୍ମ, ଅନାଦି ଅର୍ଥାତ୍ ନିତ୍ୟ ଅଟନ୍ତି ଏବଂ “ମତ୍ପର” ଅର୍ଥାତ୍ ଆମ୍ଭଠାରୁ ପର=ଶ୍ରେଷ୍ଠ ଅଟନ୍ତି ଓ ସେ ‘ସତ୍’ ନୁହନ୍ତି, ବା ‘ଅସତ୍’ ନୁହନ୍ତି ବୋଲି ଶାସ୍ତ୍ରରେ କଥିତ ଅଛନ୍ତି । ୧୨ ।

### ଶ୍ଳୋକଃ ।

* ସର୍ବତଃ ପାଣିପାଦଂ ତତ୍, ସର୍ବତୋଽକ୍ଷିଶିରୋମୁଖମ୍ ।
ସର୍ବତଃ ଶ୍ରୁତିମଲ୍ଲୋକେ, ସର୍ବମାବୃତ୍ୟ ତିଷ୍ଠତି । ୧୩ ।

### ଅନ୍ୱୟଃ ।

ତତ୍ ସର୍ବତଃ ପାଣିପାଦଂ, ସର୍ବତଃ ଅକ୍ଷିଶିରୋମୁଖଂ, ସର୍ବତଃ ଶ୍ରୁତିମତ୍, ଲୋକେ ସର୍ବଂ ଆବୃତ୍ୟ ତିଷ୍ଠତି । ୧୩ ।

### ଟୀକା ।

ତଦ୍ଦେବଂ ବ୍ରହ୍ମଣଃ ସଦସଦ୍ୱିଲକ୍ଷଣତ୍ୱେ ସତି ସର୍ବଂ ଶୂନ୍ୟଂ ବ୍ରହ୍ମୈବେତି ସର୍ବାନିତ୍ୟାଦି ଶ୍ରୁତିବିରୋଧେନ

* ସତ୍ ନୁହନ୍ତି ବା ଅସତ୍ ନୁହନ୍ତି ଏ କଥାର ବ୍ୟାଖ୍ୟା ଷୋଡଶାଧ୍ୟାୟର ୨୬ ଶ୍ଳୋକରେ ଲେଖାଯିବ ଦେଖ ।

ତ୍ୟାଶକ୍ୟ ପରସ୍ୟ ଶକ୍ତିର୍ବିବିଧୈବ ଶ୍ରୂୟତେ, ସ୍ୱାଭାବିକୀ ଜ୍ଞାନବଳକ୍ରିୟା ଚେତ୍ୟାଦି ଶ୍ରୁତିପ୍ରସିଦ୍ଧ୍ୟା ଅଚିନ୍ତ୍ୟଶକ୍ତ୍ୟା ସର୍ବାତ୍ମକଂ ତସ୍ୟ ଦର୍ଶୟିତୁମାହ ସର୍ବତ ଇତି ପଞ୍ଚଭିଃ । ସର୍ବତଃ ସର୍ବତ୍ର ପାଣୟଃ ପାଦାଶ୍ଚ ଯସ୍ୟ ତତ୍, ସର୍ବତୋଽକ୍ଷୀଣି ଶିରାଂସି ମୁଖାନି ଚ ଯସ୍ୟ ତତ୍, ସର୍ବତଃ ଶ୍ରୁତିମତ୍ ଶ୍ରବଣେନ୍ଦ୍ରିୟୈର୍ଯୁକ୍ତଂ ସତ୍, ଲୋକେ ସର୍ବମାବୃତ୍ୟ ବ୍ୟାପ୍ୟ ତିଷ୍ଠତି, ସର୍ବପ୍ରାଣିପ୍ରବୃତ୍ତିଭିଃ ପାଣ୍ୟାଦିଭିରୁପାଧିଭିଃ ସର୍ବବ୍ୟବହାରାସ୍ପଦତ୍ୱେନ ତିଷ୍ଠତୀତ୍ୟର୍ଥଃ । ୧୩ ।

## ପଦବ୍ୟାଖ୍ୟା ।

ସର୍ବତଃ ପାଣିପାଦଂ—ସର୍ବତ୍ର ହସ୍ତ ଓ ପାଦବଶିଷ୍ଟ ଅର୍ଥାତ୍ ସମସ୍ତ ପ୍ରାଣିଦେହରେ ଥିବା ହସ୍ତ ପଦରେ ଶକ୍ତିରୂପରେ ରହି ସେମାନଙ୍କୁ ସ୍ୱ ସ୍ୱ କାର୍ଯ୍ୟରେ ପ୍ରବୃତ୍ତ କରୁଅଛନ୍ତି, ତତ୍—ସେହି ଜ୍ଞେୟ ବ୍ରହ୍ମ, ସର୍ବତୋଽକ୍ଷିଶିରୋମୁଖଂ—ସର୍ବତ୍ର ଚକ୍ଷୁ, ମସ୍ତକ ଓ ମୁଖବଶିଷ୍ଟ ଅର୍ଥାତ୍ ସର୍ବ ପ୍ରାଣିଦେହରେ ଥିବା ଚକ୍ଷୁ, ମସ୍ତକ ଓ ମୁଖରେ ଶକ୍ତିରୂପରେ ଅବସ୍ଥିତ, ସର୍ବତଃ ଶ୍ରୁତିମତ୍—ସର୍ବତ୍ର ଶ୍ରବଣେନ୍ଦ୍ରିୟଯୁକ୍ତ ଅର୍ଥାତ୍ ସର୍ବ ପ୍ରାଣିଙ୍କର ଶ୍ରବଣେନ୍ଦ୍ରିୟର ଶକ୍ତିସ୍ୱରୂପ, ଲୋକେ—ପ୍ରାଣିଦେହରେ, ସର୍ବଂ—ସବୁ ଜଡପଦାର୍ଥକୁ, ଆବୃତ୍ୟ—ବ୍ୟାପିକରି, ତିଷ୍ଠତି—ରହିଅଛନ୍ତି । ୧୩ ।

## ଅନୁବାଦ ।

ସେହି ବ୍ରହ୍ମ, ସର୍ବ ପ୍ରାଣିଙ୍କ ଦେହରେ, ହସ୍ତ, ପାଦ, ଚକ୍ଷୁ, ମୁଖ, ମସ୍ତକ ଓ କର୍ଣ୍ଣର ଶକ୍ତିରୂପରେ ବର୍ତ୍ତମାନ ଅଛନ୍ତି ଏବଂ ପ୍ରାଣିଦେହରେ ସମସ୍ତ ଜଡପଦାର୍ଥକୁ ବ୍ୟାପିକରି ରହିଅଛନ୍ତି । ୧୩ ।

## ବିଶଦବ୍ୟାଖ୍ୟା ।

ପୂର୍ବୋକ୍ତ କୋଡିଏ ପ୍ରକାର ଜ୍ଞାନସାଧନଦ୍ୱାରା ଯେଉଁ ଜ୍ଞେୟ ପଦାର୍ଥ ଜଣା ଯାନ୍ତି, ସେହି ପରଂବ୍ରହ୍ମଙ୍କ ବିଷୟ ଏ ଶ୍ଳୋକରେ ବ୍ୟାଖ୍ୟା କରା ହେଉଅଛି । ସେହି ପରଂବ୍ରହ୍ମ, ସର୍ବତ୍ର ପାଣି ଓ ପାଦବିଶିଷ୍ଟ ଅଟନ୍ତି ଅର୍ଥାତ୍ ସର୍ବ ପ୍ରାଣିଙ୍କ ଦେହରେ ଯେଉଁ ପାଦ ଓ ପାଣି ଅଛି, ତହିଁରେ ଶକ୍ତିରୂପରେ ସେହି ପରଂବ୍ରହ୍ମ ରହି ତାହାକୁ ସ୍ୱ ସ୍ୱ କାର୍ଯ୍ୟରେ ପ୍ରବୃତ୍ତ କରାଉଅଛନ୍ତି । ସେହିପରି ସେ, ସର୍ବତ୍ର ଚକ୍ଷୁ, ମସ୍ତକ ଓ ମୁଖବିଶିଷ୍ଟ ଅଟନ୍ତି ଅର୍ଥାତ୍ ତାଙ୍କର ସତ୍ତା ହେତୁ ସର୍ବ ପ୍ରାଣିଙ୍କର ଚକ୍ଷୁ, ମସ୍ତକ ଓ ମୁଖ କାର୍ଯ୍ୟକ୍ଷମ ହୁଏ । ପୁଣି ସେ, ସର୍ବତ୍ର ଶ୍ରବଣେନ୍ଦ୍ରିୟଯୁକ୍ତ ଅଟନ୍ତି ଅର୍ଥାତ୍ ସମସ୍ତ ପ୍ରାଣିଙ୍କ ଶ୍ରବଣେନ୍ଦ୍ରିୟରେ ସେ, ଶକ୍ତିରୂପରେ ବିରାଜିତ ଅଛନ୍ତି ।

ଏ ଶ୍ଳୋକରେ ପାଦ, ପାଣି ଓ ମୁଖ ଏହି ଶବ୍ଦ ଗୁଡ଼ିକଦ୍ୱାରା ସମସ୍ତ କର୍ମେନ୍ଦ୍ରିୟ ପ୍ରତି ଲକ୍ଷ୍ୟ କରା ହୋଇଅଛି, ଏବଂ ସେହିପରି ଶ୍ରବଣ ଓ ଚକ୍ଷୁ ଶବ୍ଦଦ୍ୱାରା ସମସ୍ତ ଜ୍ଞାନେନ୍ଦ୍ରିୟ ଗ୍ରହଣ କରିବାକୁ ହେବ ।

ସେହି ଜ୍ଞେୟ ବ୍ରହ୍ମ, ଲୋକରେ ଅର୍ଥାତ୍ ପ୍ରାଣିଦେହରେ ସମସ୍ତ ଜଡ ପଦାର୍ଥକୁ ବ୍ୟାପି କରି ରହିଅଛନ୍ତି ଅର୍ଥାତ୍ ପ୍ରାଣି ଦେହରେ ଥିବା ଚର୍ମ, ରକ୍ତ, ମାଂସ, ଅସ୍ଥି, ମେଦ ଓ ମଜ୍ଜା ପ୍ରଭୃତି ସମସ୍ତ ପଦାର୍ଥ, ସେହି ପରଂବ୍ରହ୍ମଙ୍କ ସତ୍ତା ଅବଲମ୍ବନ କରି ସ୍ୱ ସ୍ୱ କାର୍ଯ୍ୟ କରୁଅଛନ୍ତି ।

ଫଳକଥା ଏହି କି, ପରଂବ୍ରହ୍ମ କ୍ଷେତ୍ରଜ୍ଞ ଅର୍ଥାତ୍ ଜୀବରୂପରେ ଦେହରୂପ ଜଡପଦାର୍ଥକୁ ବ୍ୟାପି କରି ରହିଅଛନ୍ତି । ୧୩ ।

Digitized by PPRACHIN, SOA

### ଶ୍ଳୋକଃ ।

* ସର୍ବେନ୍ଦ୍ରିୟଗୁଣାଭାସଂ, ସର୍ବେନ୍ଦ୍ରିୟବିବର୍ଜ୍ଜିତଂ ।
ଅସକ୍ତଂ ସର୍ବଭୃଚ୍ଚୈବ, ନିର୍ଗୁଣଂ ଗୁଣଭୋକ୍ତୃ ଚ । ୧୪ ।

### ଅନ୍ୱୟଃ ।

ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜ୍ଜିତଂ ଅସକ୍ତଂ ଏବ ଚ ସର୍ବଭୃତ୍ ନିର୍ଗୁଣଂ ଚ ଗୁଣଭୋକ୍ତୃ (ଭବତ) । ୧୪ ।

### ଟୀକା ।

କିଞ୍ଚ ସର୍ବେନ୍ଦ୍ରିୟେତି । ସର୍ବେଷାଂ ଚକ୍ଷୁରାଦୀନାମିନ୍ଦ୍ରିୟାଣାଂ ଗୁଣେଷୁ ରୂପାଦ୍ୟାକାରାସୁ ବୃତ୍ତିଷୁ ତତ୍ତଦାକାରେଣାଭାସତ ଇତି, ତଥା ସର୍ବେନ୍ଦ୍ରିୟାଣି ଗୁଣାଂଶ୍ଚ ତଦ୍ବୃତ୍ତିଷ୍ୱାଭାସୟତୀତି ବା, ସର୍ବୈରିନ୍ଦ୍ରିୟୈର୍ବିବର୍ଜ୍ଜିତଂ ଚ । ତଥା ଚ ଶ୍ରୁତିଃ— ଅପାଣିପାଦୋ ଜବନୋ ଗ୍ରହୀତା, ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ ଇତ୍ୟାଦି, ଅସକ୍ତଂ ସଙ୍ଗଶୂନ୍ୟଂ ତଥାପି ସର୍ବଂ ବିଭର୍ତ୍ତୀତି ସର୍ବଭୃତ୍ ସର୍ବସ୍ୟାଧାରଭୂତଂ ତଥୈବ ନିର୍ଗୁଣଂ ସତ୍ତ୍ୱାଦିଗୁଣରହିତଂ ଗୁଣଭୋକ୍ତୃ ଚ ଗୁଣାନାଂ ସତ୍ତ୍ୱାଦୀନାଂ ଭୋକ୍ତୃ ପାଳକଂ । ୧୪ ।

### ପଦବ୍ୟାଖ୍ୟା ।

ସର୍ବେନ୍ଦ୍ରିୟଗୁଣାଭାସ—ସମସ୍ତ ଇନ୍ଦ୍ରିୟମାନଙ୍କର ଗୁଣରୂପରେ ପ୍ରକାଶମାନ, ସର୍ବେନ୍ଦ୍ରିୟବିବର୍ଜ୍ଜିତଂ—ପ୍ରକୃତରେ ସର୍ବ ପ୍ରକାର ଇନ୍ଦ୍ରିୟଶୂନ୍ୟ, ଅସକ୍ତଂ—ଆସକ୍ତିରହିତ, ସର୍ବଭୃଚ୍ଚୈବ—ସର୍ବପ୍ରାଣିପାଳକ, ନିର୍ଗୁଣଂ—ସତ୍ତ୍ୱ, ରଜଃ ଓ ତମୋଗୁଣଶୂନ୍ୟ, ଗୁଣଭୋକ୍ତୃଚ—ଗୁଣମାନଙ୍କର ପାଳକ । ୧୪ ।

### ଅନୁବାଦ ।

ସେ, ସର୍ବପ୍ରକାର ଇନ୍ଦ୍ରିୟ ବର୍ଜ୍ଜିତ, ଅଥଚ ସକଳ ଇନ୍ଦ୍ରିୟ ଓ ସେମାନଙ୍କ ବିଷୟ ସମୂହର ପ୍ରକାଶକ; ସେ, ଆସକ୍ତିଶୂନ୍ୟ ହୋଇ ମଧ୍ୟ, ସର୍ବ ଜଗତର ଧାରକ ଏବଂ ଗୁଣାତୀତ ହୋଇ ସୁଦ୍ଧା, ଗୁଣ ପାଳକ ଅଟନ୍ତି । ୧୪ ।

### ବିଶଦବ୍ୟାଖ୍ୟା ।

ସେହି ପରଂବ୍ରହ୍ମ, ଯେ କି ମୋକ୍ଷାଭିଳାଷିମାନଙ୍କର ଜ୍ଞେୟ ଅଟନ୍ତି; ସେ, ନିରାକାର, ସୁତରଂ ତାଙ୍କର ଇନ୍ଦ୍ରିୟ ନାହିଁ । କିନ୍ତୁ ତାଙ୍କର ଶକ୍ତି ବ୍ୟତିରେକେ ଅନ୍ୟ କୌଣସି ପ୍ରାଣିର କୌଣସି ଇନ୍ଦ୍ରିୟ ପରିଚାଳିତ ହୋଇ ନ ପାରେ । ଅତଏବ ସେ, ସକଳ ଇନ୍ଦ୍ରିୟ ଓ ସେମାନଙ୍କର ଶବ୍ଦ ସ୍ପର୍ଶାଦି ଯେଉଁ ବିଷୟ ଅଛି, ସେ ସବୁର ପ୍ରକାଶକ ଅଟନ୍ତି । ଶ୍ରୁତିରେ ପ୍ରମାଣ ଅଛି, ଯେ "ଅପାଣିପାଦୋଜବନୋଗ୍ରହୀତା ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ" ଅର୍ଥାତ୍ ତାଙ୍କର ହସ୍ତ ନାହିଁ, ସେ, ଗ୍ରହଣ କରନ୍ତି, ପାଦ ନାହିଁ, ଦ୍ରୁତ ଗମନ କରନ୍ତି, ଚକ୍ଷୁ ନାହିଁ, ସବୁ ଦେଖି ପାରନ୍ତି ଓ କର୍ଣ୍ଣ ନାହିଁ, ଅଥଚ ସବୁ ଶ୍ରବଣ କରି ପାରନ୍ତି ଇତ୍ୟାଦି ।

ସେହି ପରଂବ୍ରହ୍ମ, ଅସକ୍ତ ଅର୍ଥାତ୍ ସଙ୍ଗ ବା ଆସକ୍ତି ବର୍ଜ୍ଜିତ, କାହିଁକି ନା ସେ କାହାର ସହିତ କୌଣସି ପ୍ରକାର ସମ୍ପର୍କଯୁକ୍ତ ନୁହନ୍ତି, ତଥାପି, ସର୍ବଭୃତ ଅର୍ଥାତ୍ ସର୍ବ ଜଗତର ପାଳକ ବା ଧାରକ ଅଟନ୍ତି, ଯେହେତୁ ସେ, ବ୍ରହ୍ମାରୂପରେ ସର୍ଜ୍ଜନା, ବିଷ୍ଣୁରୂପରେ ପାଳନ ଓ ରୁଦ୍ରରୂପରେ ସଂହାର କରନ୍ତି ବୋଲି ଶ୍ରୁତି, ସ୍ମୃତି ଓ ପୁରାଣରେ ପ୍ରମାଣ ଅଛି ।

Digitized by PPRACHIN, SOA

ପୁଣି ସେ, ନିର୍ଗୁଣ ଅର୍ଥାତ୍ ଗୁଣାତୀତ, କାହିଁକି ନା ସତ୍ତ୍ୱ, ରଜଃ ଓ ତମଃ ଏହି ଗୁଣ-ତ୍ରୟର ସମଷ୍ଟି ବା ମାୟା, ତାହାଙ୍କୁ ସ୍ପର୍ଶ କରି ନାହିଁ; କିନ୍ତୁ ସେ, ଗୁଣଭୋକ୍ତା ଅର୍ଥାତ୍ ସତ୍ତ୍ୱାଦି ଗୁଣମାନଙ୍କର ପାଳକ ଅଟନ୍ତି; ଶ୍ରୁତିରେ ପ୍ରମାଣ ଅଛି, ଯେ "ସର୍ବାଧ୍ୟକ୍ଷଃ ସର୍ବଭୂତାଧିବାସଃ" ଅର୍ଥାତ୍ ସମସ୍ତ ଜଗତର ପ୍ରଭୁ ଓ ସର୍ବ ପ୍ରାଣୀଙ୍କଠାରେ ଅଧିଷ୍ଠାନ କରନ୍ତି, ଅତଏବ ସେ ଗୁଣ ପାଳକ ଅଟନ୍ତି । ୧୪ ।

### ଶ୍ଲୋକଃ ।

* ବହିରନ୍ତଶ୍ଚ ଭୂତାନା,ମଚରଂ ଚରମେବ ଚ ।
ସୂକ୍ଷ୍ମତ୍ୱାତ୍ତଦବିଜ୍ଞେୟଂ, ଦୂରସ୍ଥଂ ଚାନ୍ତିକେ ଚ ତତ୍ । ୧୫ ।

### ଅନ୍ୱୟଃ ।

ତତ୍ ଭୂତାନାଂ ବହିଃ ଅନ୍ତଃ ଚ ଅଚରଂ ଚରଂ ଏବ ଚ, ତତ୍ ସୂକ୍ଷ୍ମତ୍ୱାତ୍ ଅବିଜ୍ଞେୟଂ ଦୂରସ୍ଥଂ ଚ ଅନ୍ତିକେ ଚ । ୧୫ ।

### ଟୀକା ।

କିଞ୍ଚ ବହିରିତି । ଭୂତାନାଂ ଚରାଚରାଣାଂ ସ୍ୱକାର୍ଯ୍ୟାଣାଂ ବହିରନ୍ତଶ୍ଚ ତଦେବ ସୁବର୍ଣ୍ଣମିବ କଟକକୁଣ୍ଡଳାଦୀନାଂ, ଜଳତରଙ୍ଗାଣାମନ୍ତର୍ବହିର୍ଜଳମିବ, ଅଚରଂ ସ୍ଥାବରଂ, ଚରଂ ଚ ଜଙ୍ଗମଂ ଭୂତଜାତଂ ତଦେବ କାରଣାତ୍ମକତ୍ୱାତ୍ କାର୍ଯ୍ୟସ୍ୟ ଏବମପି ସୂକ୍ଷ୍ମତ୍ୱାତ୍ ରୂପାଦିହୀନତ୍ୱାତ୍ ତଦବିଜ୍ଞେୟଂ ଇଦଂ ତଦିତି ସ୍ପଷ୍ଟଜ୍ଞାନାର୍ହଂ ନ ଭବତି ଏତଦବିଦୁଷାଂ ଯୋଜନଲକ୍ଷାନ୍ତରିତମିବ ଦୂରସ୍ଥଂ, ତ ସଦକାସ୍ୱସ୍ଥଃ ପ୍ରକୃତେଃ ପରତ୍ୱାତ୍ ବିଦୁଷାଂ ପୁନଃ ପ୍ରତ୍ୟଗାତ୍ମତ୍ୱାଦନ୍ତିକେ ଚ, ତତ୍ ସନ୍ନିହିତଂ ତଥା ଚ ମନ୍ତ୍ରଃ—ତଦେଜତି ତନ୍ନୈଜତି ତଦ୍ଦୂରେ ତଦ୍ୱନ୍ତିକେ । ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସ୍ୟ ବାହ୍ୟତ ଇତି । ଏଜତି—ଚଳତି । ନୈଜତି—ନ ଚଳତି । ତତ୍ ଉ ଅନ୍ତିକେ ଇତି ଚ୍ଛେଦଃ । ୧୫ ।

### ପଦବ୍ୟାଖ୍ୟା ।

ବହିରନ୍ତଶ୍ଚ—ବାହାରେ ଓ ଭିତରେ, ଭୂତାନାଂ—ପ୍ରାଣିମାନଙ୍କର—ପଦାର୍ଥମାନଙ୍କର, ଅଚରଂ ଚରମେବ ଚ—ସ୍ଥାବର ଓ ଜଙ୍ଗମ, ସୂକ୍ଷ୍ମତ୍ୱାତ୍—ଅତିସୂକ୍ଷ୍ମ ବୋଲି, ତତ୍ ଅବିଜ୍ଞେୟଂ—ସେ, ଅଜ୍ଞେୟ ଅଟନ୍ତି ଅର୍ଥାତ୍ ତାହାଙ୍କୁ କେହି ଜାଣି ପାରନ୍ତି ନାହିଁ, ଦୂରସ୍ଥଂ ଚ—ବହୁତ ଦୂରରେ ଅଛନ୍ତି, ଅନ୍ତିକେ ଚ—ନିକଟରେ ମଧ୍ୟ ଅଛନ୍ତି, ତତ୍—ସେହି ବ୍ରହ୍ମ । ୧୫ ।

### ଅନୁବାଦ ।

ସେହି ବ୍ରହ୍ମ, ଜଗତର ବାହାରେ ଓ ଭିତରେ ଅଛନ୍ତି, ପୁଣି ସେ, (ଅଧିଷ୍ଠାନରୂପରେ) ସ୍ଥାବର ଓ ଜଙ୍ଗମ ଅଟନ୍ତି, ସୂକ୍ଷ୍ମ ହେତୁରୁ ସେ, ଜଣା ଯାଉନାହାନ୍ତି । ସେ, ଦୂରରେ ଅଛନ୍ତି ଏବଂ ନିକଟରେ ମଧ୍ୟ ଅଛନ୍ତି । ୧୫ ।

### ବିଶଦବ୍ୟାଖ୍ୟା ।

ମୋକ୍ଷାଭିଳାଷିମାନଙ୍କର ଜ୍ଞେୟ ସେହି ବ୍ରହ୍ମ, ଏ ଜଗତସ୍ଥ ସମସ୍ତ ଭୂତ ( ପ୍ରାଣୀ ବା ପଦାର୍ଥ )ର ବାହାରେ ଓ ଭିତରେ ଅଛନ୍ତି ଅର୍ଥାତ୍ ଜଳତରଙ୍ଗର ବାହାରେ ଓ ଭିତରେ ଯେପରି ଜଳ ହିଁ, ଅନ୍ୟ ପଦାର୍ଥ ନାହିଁ, ସ୍ୱର୍ଣ୍ଣାଳଂକାରର ବାହାରେ ଓ ଭିତରେ ଯେପରି

Digitized by PPRACHIN, SOA

ସୁବର୍ଣ୍ଣ ଭିନ୍ନ ଅନ୍ୟ ପଦାର୍ଥ ନ ଥାଏ, ସେହିପରି ଏ ଜଗତର ସମସ୍ତ ପଦାର୍ଥର ବାହାରେ ଓ ଭିତରେ ସେହି ବ୍ରହ୍ମ ଭିନ୍ନ, ଆଉ କିଛି ନାହିଁ, ଯେହେତୁ ସେ ବ୍ରହ୍ମ, ସର୍ବବ୍ୟାପି ଓ ସର୍ବାତ୍ମକ ଅଟନ୍ତି ।

ପୁଣି ସେ ବ୍ରହ୍ମ, ଅଚର ଅର୍ଥାତ୍ ସ୍ଥାବର ବା ଅଚଳ ଅଟନ୍ତି ଏବଂ ଚର ବା ଜଙ୍ଗମ ଅଟନ୍ତି ଅର୍ଥାତ୍ ସ୍ଥାବର ବା ଜଙ୍ଗମ ଯାହାକିଛି ଆମ୍ଭେମାନେ ଦେଖୁଁ, ତାହା ମାୟାର କାର୍ଯ୍ୟ । ସେହି ମାୟା ନିଜେ କିଛି କରି ପାରେ ନାହିଁ, ବ୍ରହ୍ମସନ୍ନିଧାନ ହେତୁରୁ ଅର୍ଥାତ୍ ବ୍ରହ୍ମଙ୍କର ପ୍ରତିବମ୍ବ ତହିଁରେ ପଡ଼ିବାରୁ ସେ, ଜଗତ ସୃଷ୍ଟି କରେ । ବ୍ରହ୍ମଙ୍କର ସତ୍ତା ନ ଥିଲେ, ଜଗତରେ କିଛି ଦେଖା ଯାଆନ୍ତା ନାହିଁ ଅର୍ଥାତ୍ ଯାହାକିଛି ସ୍ଥାବର ଓ ଜଙ୍ଗମ ଦେଖାଯାଏ, ତାହା ଈଶ୍ୱର ସତ୍ତା ଅଟେ ।

କିନ୍ତୁ ସେ ସୂକ୍ଷ୍ମ ଅର୍ଥାତ୍ ରୂପାଦି ଶୂନ୍ୟ ବୋଲି 'ଅବିଜ୍ଞେୟ' ଅଟନ୍ତି, ଅର୍ଥାତ୍ ତାହାଙ୍କୁ (ଆତ୍ମଜ୍ଞାନୀଭିନ୍ନ) ଆଉ କେହି ଜାଣି ପାରନ୍ତି ନାହିଁ । ଏମନ୍ତ କି ଆତ୍ମଜ୍ଞାନଶୂନ୍ୟ ବ୍ୟକ୍ତି, ସହସ୍ର କୋଟି ବର୍ଷ ଭ୍ରମଣ କରି ମଧ୍ୟ, ତାହାଙ୍କୁ ପାଇ ପାରିବ ନାହିଁ, ଏପରି 'ଦୂରରେ' ସେ, ଅଛନ୍ତି, ମାତ୍ର ଜ୍ଞାନୀମାନଙ୍କ ପକ୍ଷରେ ସେ, ଅତି 'ନିକଟରେ' ଥାନ୍ତି, କାହିଁକି ନା ସେ ପରଂବ୍ରହ୍ମ ଆତ୍ମସ୍ୱରୂପଥିବାରୁ ଆତ୍ମଜ୍ଞାନୀମାନେ ତାହାଙ୍କୁ ସହଜରେ ଜାଣି ପାରନ୍ତି । ୧୫ ।

ଶ୍ଳୋକଃ ।

ଅବିଭକ୍ତଂ ଚ ଭୂତେଷୁ, ବିଭକ୍ତମିବ ଚ ସ୍ଥିତଂ ।
ଭୂତଭର୍ତ୍ତୃ ଚ ତଜ୍ଜ୍ଞେୟଂ, ଗ୍ରସିଷ୍ଣୁ ପ୍ରଭବିଷ୍ଣୁ ଚ । ୧୬ ।

ଅନ୍ୱୟଃ ।

(ତତ୍) ଜ୍ଞେୟଂ ଭୂତେଷୁ ଅବିଭକ୍ତଂ ଚ ବିଭକ୍ତଂ ଇବ ସ୍ଥିତଂ । ତତ୍ ଭୂତଭର୍ତ୍ତୃ ଚ ଗ୍ରସିଷ୍ଣୁ ଚ ପ୍ରଭବିଷ୍ଣୁ । ୧୬ ।

ଟୀକା ।

କିଞ୍ଚ ଅବିଭକ୍ତମିତି । ଭୂତେଷୁ—ସ୍ଥାବରଜଙ୍ଗମାତ୍ମକେଷୁ ଅବିଭକ୍ତଂ କାରଣାତ୍ମନାଽଭିନ୍ନଂ କାର୍ଯ୍ୟାତ୍ମନା ବିଭକ୍ତଂ ଭିନ୍ନମିବ ସ୍ଥିତଂ ଚ ସମୁଦ୍ରାତ୍ମା ତଂ ଫେନାଦି ସମୁଦ୍ରାଦନ୍ୟନ୍ନ ଭବତି ତତ୍ ସ୍ୱରୂପମେବୋକ୍ତଂ ଜ୍ଞେୟଂ ଭୂତାନାଂ ଭର୍ତ୍ତୃ ଚ ପୋଷକଂ ସ୍ଥିତିକାଲେ, ପ୍ରଳୟକାଲେ ଚ ଗ୍ରସିଷ୍ଣୁ ଗ୍ରସନଶୀଳଂ ସୃଷ୍ଟିକାଲେ ଚ ପ୍ରଭବିଷ୍ଣୁ ନାନାକାର୍ଯ୍ୟାତ୍ମନା ପ୍ରଭବନଶୀଳଂ । ୧୬ ।

ପଦବ୍ୟାଖ୍ୟା ।

ଅବିଭକ୍ତଂ ଚ—ମିଳିତ—ଅଭିନ୍ନ, ଭୂତେଷୁ—ଜଗତରେ, ବିଭକ୍ତଂ ଇବ ଚ—ଭିନ୍ନପରି, ସ୍ଥିତଂ—ରହିଅଛନ୍ତି, ଭୂତଭର୍ତ୍ତୃ ଚ—ଜଗତ୍‌ପାଳକ, ତତ୍—ଜ୍ଞେୟଂ—ସେହି ଜ୍ଞେୟ ଅର୍ଥାତ୍ ଜ୍ଞାନଯୋଗ୍ୟ, (ବ୍ରହ୍ମ), ଗ୍ରସିଷ୍ଣୁ—ଗ୍ରାସକାରୀ—ସଂହାରକର୍ତ୍ତା, ପ୍ରଭବିଷ୍ଣୁ ଚ—ପ୍ରଭବକର୍ତ୍ତା—ଉତ୍ପତ୍ତିକାରକ । ୧୬ ।

ଅନୁବାଦ ।

ସେହି ଜ୍ଞେୟ (ବ୍ରହ୍ମ), ଜଗତରେ ଅଭିନ୍ନ ଭାବରେ ଥାଇଁ ଭିନ୍ନପରି ସ୍ଥିତ ହୋଇଅଛନ୍ତି ଏବଂ ସେ, ଜଗତର ପାଳକ, ସଂହାରକାରୀ ଓ ଉତ୍ପତ୍ତିକର୍ତ୍ତା ଅଟନ୍ତି । ୧୬ ।

ଦଶପଦବ୍ୟାଖ୍ୟା ।

ମୋକ୍ଷାଭିଳାଷିମାନେ, ଯେଉଁ ବ୍ରହ୍ମଙ୍କୁ ଜାଣିବାକୁ ଇଚ୍ଛାକରନ୍ତି, ପ୍ରକୃତରେ ସେହି

Digitized by PPRACHIN, SOA

ବ୍ରହ୍ମଙ୍କର ସତ୍ତାଭିନ୍ନ, ଜଗତରେ ଆଉ ଅନ୍ୟ ପଦାର୍ଥ ନାହିଁ—ଅର୍ଥାତ୍ ଜଗତ ତାଙ୍କଠାରୁ ଅଭିନ୍ନ ଅଟେ, ତଥାପି ସେ, ସ୍ଥୂଳଦୃଷ୍ଟିରେ ଜଗତରୁ ଭିନ୍ନ ହୋଇ ଅବସ୍ଥାନ କରୁଥିବାର ବୋଧ ହେଉଅଛି । ସେହି ବ୍ରହ୍ମ, ଜଗତକୁ ପାଳନ କରୁଅଛନ୍ତି ବା ଜଗତକୁ ଧାରଣ କରୁଅଛନ୍ତି । ସେହିପରି ସେ, ଜଗତର ବିନାଶକର୍ତ୍ତା ଓ ଉତ୍ପତ୍ତିକର୍ତ୍ତା ମଧ୍ୟ ଅଟନ୍ତି ।

ଫଳକଥା ଏହି କି ଜଗତର ସୃଷ୍ଟି, ସ୍ଥିତି ଓ ପ୍ରଳୟ ବିଷୟରେ ସେ, ଏକମାତ୍ର କାରଣ ଅଟନ୍ତି, ତାଙ୍କ ଭିନ୍ନ ଆଉ କେହି କାରଣ ବା କର୍ତ୍ତା ନାହାନ୍ତି । ୧୬ ।

ଶ୍ଳୋକଃ ।

ଜ୍ୟୋତିଷାମପି ତଜ୍ଜ୍ୟୋତି, ସ୍ତମସଃ ପରମୁଚ୍ୟତେ ॥
ଜ୍ଞାନଂ ଜ୍ଞେୟଂ ଜ୍ଞାନଗମ୍ୟଂ, ହୃଦି ସର୍ବସ୍ୟ ବିଷ୍ଠିତଂ । ୧୭ ।

ଅନ୍ୱୟଃ ।

ତତ୍ ଜ୍ୟୋତିଷାଂ ଅପି ଜ୍ୟୋତିଃ, ତମସଃ ପରଂ, ଜ୍ଞାନଂ, ଜ୍ଞେୟଂ ଚ ଜ୍ଞାନଗମ୍ୟଂ, ସର୍ବସ୍ୟ ହୃଦି ବିଷ୍ଠିତଂ (ଇତି) ଉଚ୍ୟତେ ॥ ୧୭ ॥

ଟୀକା ।

କିଞ୍ଚ ଜ୍ୟୋତିଷାମପୀତି । ଜ୍ୟୋତିଷାଂ ସୂର୍ଯ୍ୟାଦୀନାମପି ତତ୍ ଜ୍ୟୋତିଃ ପ୍ରକାଶକଂ, ଯେନ ସୂର୍ଯ୍ୟସ୍ତପତି ତେଜସେଦ୍ଧଃ ନ ତତ୍ର ସୂର୍ଯ୍ୟୋଭାତି ନ ଚନ୍ଦ୍ରତାରକଂ ନେମା ବିଦ୍ୟୁତୋଭାନ୍ତି କୁତୋଽୟମଗ୍ନିଃ ତମେବ ଭାନ୍ତମନୁଭାତି ସର୍ବଂ ତସ୍ୟ ଭାସା ସର୍ବମିଦଂ ବିଭାତୀତ୍ୟାଦି ଶ୍ରୁତେଃ । ଅତଏବ ତମସୋଽଜ୍ଞାନାତ୍ ପରଂ ତେନାସ୍ପୃଷ୍ଟମୁଚ୍ୟତେ । ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ଇତ୍ୟାଦି ଶ୍ରୁତେଃ । ଜ୍ଞାନଂ ଚ ତଦେବ ବୁଦ୍ଧିବୃତ୍ତାବଭିବ୍ୟକ୍ତଂ, ତଦେବ ରୂପାଦ୍ୟାକାରେଣ ଜ୍ଞେୟଂ ଚ ଜ୍ଞାନଗମ୍ୟଂ ଚ ତଦେବ ଅମାନିତ୍ୱାଦିଲକ୍ଷଣେନ ପୂର୍ବୋକ୍ତଜ୍ଞାନସାଧନେନ ପ୍ରାପ୍ୟମିତ୍ୟର୍ଥଃ, ଜ୍ଞାନଗମ୍ୟଂ ବଶିନଷ୍ଟି, ସର୍ବସ୍ୟ ପ୍ରାଣିମାତ୍ରସ୍ୟ ହୃଦି ବିଶେଷେଣାପ୍ରଚ୍ୟୁତସ୍ୱରୂପେଣ ନିୟନ୍ତୃତୟା ସ୍ଥିତଂ, ଧିଷ୍ଠିତମିତି ପାଠେ ଅଧିଷ୍ଠାୟ ସ୍ଥିତମିତ୍ୟର୍ଥଃ । ୧୭ ।

ପଦବ୍ୟାଖ୍ୟା ।

ଜ୍ୟୋତିଷାମପି—ଚନ୍ଦ୍ରସୂର୍ଯ୍ୟାଦି ପ୍ରକାଶମାନ ପଦାର୍ଥମାନଙ୍କର ମଧ୍ୟ, ତତ୍—ସେହି ବ୍ରହ୍ମ, ଜ୍ୟୋତିଃ—ଅଲୋକ—ପ୍ରଭା, ତମସଃ ପରଂ—ଅବିଦ୍ୟା ବା ଅନ୍ଧକାରରୁ ଅତୀତ, ଉଚ୍ୟତେ—ବେଦାଦି ଶାସ୍ତ୍ରରେ କଥିତ ଅଛି । ଜ୍ଞାନଂ—ଜ୍ଞାନସ୍ୱରୂପ, ଜ୍ଞେୟଂ—ଜାଣିବାର ଯୋଗ୍ୟ, ଜ୍ଞାନଗମ୍ୟଂ—ଜ୍ଞାନଦ୍ୱାରା ପ୍ରାପ୍ୟ, ହୃଦି ସର୍ବସ୍ୟ—ସମସ୍ତଙ୍କ ହୃଦୟରେ, ବିଷ୍ଠିତଂ—ବିଶେଷରୂପରେ ସ୍ଥିତ, ପକ୍ଷାନ୍ତରେ = ଧିଷ୍ଠିତଂ—ଅଧିଷ୍ଠାନ କରୁଅଛନ୍ତି । ୧୭ ।

ଅନୁବାଦ ।

ସେହି ବ୍ରହ୍ମ, ସୂର୍ଯ୍ୟାଦି ଜ୍ୟୋତିର୍ମୟ ପଦାର୍ଥମାନଙ୍କର ଜ୍ୟୋତିଃସ୍ୱରୂପ, (ଅତଏବ) ତମୋରୂପ ଅଜ୍ଞାନର ଅତୀତ ଅଟନ୍ତି, ସେ, ଜ୍ଞାନ, ଜ୍ଞେୟ ଓ ଜ୍ଞାନଗମ୍ୟ ଅଟନ୍ତି, ଏବଂ ସମସ୍ତଙ୍କ ହୃଦୟରେ ( ଆତ୍ମା ରୂପରେ ) ଅଧିଷ୍ଠିତ କରୁଅଛନ୍ତି । ୧୭ ।

ବିଶଦବ୍ୟାଖ୍ୟା ।

ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି ଏବଂ ବିଦ୍ୟୁତ୍ ପ୍ରଭୃତି ଯେତେ ପ୍ରକାର ଜ୍ୟୋତିର୍ମୟ ପଦାର୍ଥ ଅଛି, ପରଂବ୍ରହ୍ମ ସେମାନଙ୍କର ପ୍ରକାଶଶକ୍ତି ଅଟନ୍ତି ଅର୍ଥାତ୍ ସେହି ବ୍ରହ୍ମଙ୍କର ଦିବ୍ୟ ଜ୍ୟୋତି-ଦ୍ୱାରା ସୂର୍ଯ୍ୟ ଓ ଚନ୍ଦ୍ରାଦିମାନେ ଜ୍ୟୋତିର୍ମୟ ହୋଇଅଛନ୍ତି । ଶ୍ରୁତିରେ ପ୍ରମାଣ ଅଛି, ଯେ—

"ଯେନ ସୂର୍ଯ୍ୟସ୍ତପତି" ଅର୍ଥାତ୍ ଯାହାଙ୍କ ତେଜରେ ସୂର୍ଯ୍ୟ ଉତ୍ତାପ ପ୍ରଦାନ କରୁଅଛନ୍ତି । ପୁଣି, "ତସ୍ୟ ଭାସା ସର୍ବମିଦଂ ବିଭାତି" ଅର୍ଥାତ୍ ସେହି ପରଂବ୍ରହ୍ମଙ୍କ ଦୀପ୍ତିଦ୍ୱାରା ଏହି ଚନ୍ଦ୍ର, ସୂର୍ଯ୍ୟ ଓ ଗ୍ରହାଦିମାନେ ଦୀପ୍ତିମନ୍ତ ହୋଇଅଛନ୍ତି ଇତ୍ୟାଦି ।

ଚନ୍ଦ୍ର ସୂର୍ଯ୍ୟାଦି ଜଡ଼ପଦାର୍ଥ ସହିତ ଏହିପରି ସମ୍ବନ୍ଧ ଅଛି ବୋଲି, କାଳେ ଅର୍ଜ୍ଜୁନ ମନେ କରିବେ, ଯେ 'ତେବେ ପରଂବ୍ରହ୍ମ କି ଜଡ ସ୍ୱଭାବଯୁକ୍ତ ଅଟନ୍ତି ?' ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ—ସେ ବ୍ରହ୍ମ, ତମଃଶକ୍ତି—ଅର୍ଥାତ୍ ଜଗତ୍-ପ୍ରପଞ୍ଚର କାରଣ, ଯେ ମାୟାରୂପ ଅନ୍ଧକାର, ତହିଁରୁ ଅତୀତ ଅଟନ୍ତି; ଫଳକଥା ଏହି କି—ମାୟା ତାହାଙ୍କୁ ସ୍ପର୍ଶ କରି ପାରେ ନାହିଁ । ବେଦରେ ପ୍ରମାଣ ଅଛି, ଯେ—"ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍"—ଅର୍ଥାତ୍ ସେ ବ୍ରହ୍ମ, ସୂର୍ଯ୍ୟପରି ସ୍ୱପ୍ରକାଶ ଓ ଅବିଦ୍ୟାରୂପ ଅନ୍ଧକାରର ପର (ଅର୍ଥାତ୍ ମାୟାରୁ ଅତୀତ) ଅଟନ୍ତି । ଏହି ସବୁ କାରଣରୁ ଅର୍ଥାତ୍ ସେ, ସର୍ବ ଜଗତର ପ୍ରକାଶକ ଥିବା ଓ ଅବିଦ୍ୟା ତାଙ୍କୁ ସ୍ପର୍ଶ କରି ପାରୁ ନ ଥିବାରୁ ସେ, ଜ୍ଞାନସ୍ୱରୂପ ଅଟନ୍ତି ଓ ମୋକ୍ଷାଭିଳାଷିମାନେ ଯାହାଙ୍କୁ ଜାଣିବାକୁ ଚେଷ୍ଟା କରନ୍ତି, ସେହି ଜ୍ଞେୟସ୍ୱରୂପ ମଧ୍ୟ ଅଟନ୍ତି । ଆଉ ଏହି ଅଧ୍ୟାୟର ୫ମଠାରୁ ଦ୍ୱାଦଶ ଶ୍ଳୋକ ପର୍ଯ୍ୟନ୍ତ ଅଠ ଶ୍ଳୋକରେ ଅଭିମାନଶୂନ୍ୟତା ପ୍ରଭୃତି, ଯେଉଁ ବିଂଶତି ପ୍ରକାର ଜ୍ଞାନସାଧନର କଥା ଲେଖାଅଛି, ସେହି ସାଧନଦ୍ୱାରା ତାଙ୍କର ସାକ୍ଷାତ୍କାର ଲାଭ ହୁଏ, ଅତଏବ ସେ, ଜ୍ଞାନଗମ୍ୟ ଅଟନ୍ତି । ପୁଣି ସର୍ବ ପ୍ରାଣୀଙ୍କ ହୃଦୟରେ ସେ ଆତ୍ମାସ୍ୱରୂପରେ ଅଧିଷ୍ଠାନ କରୁଅଛନ୍ତି, ଏକଥା ବଶିଷ୍ଠାଦି ଋଷିମାନେ କହିଅଛନ୍ତି । ୧୭ ।

ଶ୍ଳୋକଃ ।

ଇତି କ୍ଷେତ୍ରଂ ତଥା ଜ୍ଞାନଂ, ଜ୍ଞେୟଂ ଚୋକ୍ତଂ ସମାସତଃ ।
ମଦ୍ଭକ୍ତ ଏତଦ୍ ବିଜ୍ଞାୟ, ମଦ୍ଭାବାୟୋପପଦ୍ୟତେ । ୧୮ ।

ଅନ୍ୱୟଃ ।

ଇତି କ୍ଷେତ୍ରଂ ତଥା ଜ୍ଞାନଂ, ଜ୍ଞେୟଂ ଚ ସମାସତଃ ଉକ୍ତଂ, ଏତତ୍ ବିଜ୍ଞାୟ ମଦ୍ଭକ୍ତଃ ମଦ୍ଭାବାୟ ଉପପଦ୍ୟତେ । ୧୮

ଟୀକା ।

ଉକ୍ତଂ କ୍ଷେତ୍ରାଦିକମଧିକାରିଫଳସହିତମୁପସଂହରତି । ଇତୀତି । ଇତ୍ୟେବଂ କ୍ଷେତ୍ରଂ ମହାଭୂତାଦି-ଧୃତ୍ୟନ୍ତଂ, ତଥା ଜ୍ଞାନଂ ଚ ଅମାନିତ୍ୱାଦି-ତତ୍ତ୍ୱଜ୍ଞାନାର୍ଥଦର୍ଶନାନ୍ତଂ, ଜ୍ଞେୟଂ ଚ ଅନାଦିମତ୍ପରଂବ୍ରହ୍ମେତ୍ୟାଦି-ବିଷ୍ଠିତମିତ୍ୟନ୍ତଂ, ବଶିଷ୍ଠାଦିଭିର୍ବିସ୍ତରେଣୋକ୍ତଂ, ସର୍ବମପି ମୟା ସଂକ୍ଷେପେଣୋକ୍ତଂ, ଏତଚ୍ଚ ପୂର୍ବାଧ୍ୟାୟୋକ୍ତଲକ୍ଷଣୋ ମଦ୍ଭକ୍ତୋ ବିଜ୍ଞାୟ ମଦ୍ଭାବାୟ ବ୍ରହ୍ମତ୍ୱାୟୋପପଦ୍ୟତେ ଯୋଗ୍ୟୋ ଭବତି । ୧୮ ।

ପଦବ୍ୟାଖ୍ୟା ।

ଇତି—ଏ ପ୍ରକାର, କ୍ଷେତ୍ରଂ—କ୍ଷେତ୍ର (ଶରୀର), ତଥା—ସେହିପରି, ଜ୍ଞାନଂ—ବୋଧ, ଜ୍ଞେୟଂ ଚ—ଜାଣିବା-ଯୋଗ୍ୟ (ବ୍ରହ୍ମ), ଉକ୍ତଂ ସମାସତଃ—ସଂକ୍ଷେପରେ କହିଲୁଁ, ମଦ୍ଭକ୍ତଃ—ଆମ୍ଭର ଭକ୍ତ, ଏତତ୍—ଏହାକୁ, ବିଜ୍ଞାୟ—ସମ୍ପୂର୍ଣ୍ଣରୂପେ ଜାଣି, ମଦ୍ଭାବାୟ—ଆମ୍ଭର ଭାବ—ଅର୍ଥାତ୍ ବ୍ରହ୍ମତ୍ୱ ନିମିତ୍ତ, ଉପପଦ୍ୟତେ—ଯୋଗ୍ୟ ହୁଅନ୍ତି । ୧୮ ।

Digitized by PPRACHIN, SOA

## ଅନୁବାଦ ।

କ୍ଷେତ୍ର, ଜ୍ଞାନ ଓ ଜ୍ଞେୟ ଏମାନ ଏହିପରି ସଂକ୍ଷେପରେ କହିଲୁଁ, ଏହା ଜାଣି ଆମ୍ଭର ଭକ୍ତ, ଆମ୍ଭ ସ୍ୱରୂପକୁ ପ୍ରାପ୍ତ ହୁଅନ୍ତି । ୧୮ ।

## ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ଆମ୍ଭେ ଏହି ଅଧ୍ୟାୟର ୫ମ ଓ ୬ଷ୍ଠ ଦୁଇଶ୍ଳୋକରେ 'କ୍ଷେତ୍ର' ବିଷୟ ଓ ୭ମଠାରୁ ୧୨ଶ ପର୍ଯ୍ୟନ୍ତ ଶ୍ଳୋକମାନଙ୍କରେ 'ଜ୍ଞାନ'ର କଥା ଏବଂ ୧୩ଶଠାରୁ ୧୭ଶ ପର୍ଯ୍ୟନ୍ତ ଶ୍ଳୋକମାନଙ୍କରେ 'ଜ୍ଞେୟ'ର ବିବରଣ ସଂକ୍ଷେପରେ କହିଲୁଁ । ଏ ବିଷୟମାନଙ୍କର ବିଶେଷ ବର୍ଣ୍ଣନ, ବଶିଷ୍ଠାଦି ଋଷିମାନେ ଯୋଗ ବାଶିଷ୍ଠ ପ୍ରଭୃତି ଗ୍ରନ୍ଥରେ କହିଅଛନ୍ତି । ଏହି ତତ୍ତ୍ୱକୁ ଉତ୍ତମରୂପେ ଜାଣିଲେ, ଆମ୍ଭର ଭକ୍ତ* ଆମ୍ଭର ରୂପ ପ୍ରାପ୍ତ ହେବାର ଯୋଗ୍ୟ ହୁଅନ୍ତି ଅର୍ଥାତ୍ ବ୍ରହ୍ମତ୍ୱ ଲାଭରେ ଅଧିକାରୀ ହୁଅନ୍ତି । ୧୮ ।

## ଶ୍ଳୋକଃ ।

ପ୍ରକୃତିଂ ପୁରୁଷଂ ଚୈବ, ବିଦ୍ଧ୍ୟନାଦୀ ଉଭାବପି ।
ବିକାରାଂଶ୍ଚ ଗୁଣାଂଶ୍ଚୈବ, ବିଦ୍ଧି ପ୍ରକୃତିସମ୍ଭବାନ୍ । ୧୯ ।

## ଅନ୍ୱୟଃ ।

ପ୍ରକୃତିଂ ପୁରୁଷଂ ଚ ଏବ ଉଭୌ ଅପି ଅନାଦୀ ବିଦ୍ଧି । ବିକାରାନ୍ ଚ ଗୁଣାନ୍ ଚ ପ୍ରକୃତିସମ୍ଭବାନ୍ ଏବ ବିଦ୍ଧି । ୧୯ ।

## ଟୀକା ।

ତଦେବଂ ତତ୍ କ୍ଷେତ୍ରଂ ଯଚ୍ଚ ଯାଦୃକ୍ ଚେତ୍ୟେତାବତ୍ ପ୍ରପଞ୍ଚିତମିଦାନୀଂ ତୁ ଯଦ୍ବିକାରି ଯତଶ୍ଚ ଯତ୍ । ସ ଚ ଯୋ ଯତ୍ପ୍ରଭାବଶ୍ଚେତ୍ୟେତତ୍ ପୂର୍ବପ୍ରତିଜ୍ଞାତମେବ ପ୍ରକୃତି-ପୁରୁଷୟୋଃ ସଂସାରହେତୁତ୍ୱକଥନେନ ପ୍ରପଞ୍ଚୟତି, ପ୍ରକୃତିମିତି ପଞ୍ଚଭିଃ । ତତ୍ର ପ୍ରକୃତିପୁରୁଷୟୋରାଦିମତ୍ତ୍ୱେ ତୟୋରପି ପ୍ରକୃତ୍ୟନ୍ତରେଣ ଭାବ୍ୟମିତ୍ୟନବସ୍ଥାପତ୍ତିଃ ସ୍ୟାଦତସ୍ତାବୁଭାବନାଦୀ ବିଦ୍ଧି, ଅନାଦେରୀଶ୍ୱରସ୍ୟ ଶକ୍ତିତ୍ୱାତ୍ ପ୍ରକୃତେରନାଦିତ୍ୱଂ, ପୁରୁଷୋଽପି ତଦଂଶତ୍ୱାଦନାଦିରେବ, ଅତଏବ ପରମେଶ୍ୱରସ୍ୟ ତତ୍କ୍ଲୀ-ନାଶାନାଦିତ୍ୱଂ ଶ୍ରୀମଚ୍ଛଙ୍କରଭଗବଦ୍ଭାଷ୍ୟକୃଦ୍ଭିରତିପ୍ରବନ୍ଧେନୋପପାଦିତମିତି ଗ୍ରନ୍ଥ-ବାହୁଲ୍ୟାନ୍ନାସ୍ମାଭିଃ ପ୍ରପଞ୍ଚ୍ୟତେ, ବିକାରାଂଶ୍ଚ ଦେହେନ୍ଦ୍ରିୟାଦୀନ୍ ଗୁଣାଂଶ୍ଚ ଗୁଣପରିଣାମାନ୍ ସୁଖଦୁଃଖମୋହାଦୀନ୍ ପ୍ରକୃତେଃ ସମ୍ଭୂତାନ୍ ବିଦ୍ଧି । ୧୯ ।

## ପଦବ୍ୟାଖ୍ୟା ।

ପ୍ରକୃତିଂ—ମାୟାକୁ, ପୁରୁଷଂ ଚ ଏବ—(ପୁର ଅର୍ଥାତ୍ ଶରୀରରେ ଯେ, ଅନ୍ତର୍ଯ୍ୟାମିରୂପରେ ବସିଅଛନ୍ତି, ସେହି) ପୁରୁଷଙ୍କୁ ଅଧିକ, ବିଦ୍ଧି—ଜାଣ, ଅନାଦୀ—ଜନ୍ମ ଶୂନ୍ୟ ବୋଲି, ଉଭୌ ଅପି—ଦୁହିଙ୍କୁ ମଧ୍ୟ, ବିକାରାଂଶ୍ଚ—ଶରୀର ଓ ଇନ୍ଦ୍ରିୟାଦି ବିକାରମାନଙ୍କୁ, ଗୁଣାଂଶ୍ଚ—(ସୁଖ, ଦୁଃଖ ଓ ମୋହାଦି) ଗୁଣର ପରିଣାମ ବା ଫଳମାନଙ୍କୁ ମଧ୍ୟ, ବିଦ୍ଧି—ଜାଣ, ପ୍ରକୃତିସମ୍ଭବାନ୍—ପ୍ରକୃତିରୁ ଜାତ ବୋଲି । ୧୯ ।

## ଅନୁବାଦ ।

ପ୍ରକୃତି ଓ ପୁରୁଷ ଏ ଦୁହିଙ୍କୁ ଅନାଦି ବୋଲି, ଏବଂ ବିକାର ଓ ଗୁଣ ଏମାନଙ୍କୁ ପ୍ରକୃତିରୁ ଜାତ ବୋଲି ଜାଣ । ୧୯ ।

* ଭକ୍ତର ଲକ୍ଷଣ ଦ୍ୱାଦଶ ଅଧ୍ୟାୟରେ ଦେଖ ।

Digitized by PPRACHIN, SOA

### ବିଶଦବ୍ୟାଖ୍ୟା ।

ଶ୍ରୀ ଭଗବାନ୍ କହୁଅଛନ୍ତି, ହେ ଅର୍ଜ୍ଜୁନ ! ସପ୍ତମ ଅଧ୍ୟାୟରେ ଯେଉଁ ଜଡ଼ରୂପା 'ଅପରା' ପ୍ରକୃତିର କଥା କହିଥିଲୁଁ ଏବଂ ଏ ଅଧ୍ୟାୟରେ ଯାହାକୁ 'କ୍ଷେତ୍ର' ବୋଲି ତୁମ୍ଭକୁ ଜଣାଇ ଦେଲୁଁ, ତାହାର ନାମ 'ପ୍ରକୃତି' । ପୁଣି ସପ୍ତମ ଅଧ୍ୟାୟରେ, ଯେଉଁ ଜୀବରୂପା 'ପରା' ପ୍ରକୃତିର କଥା କହିଥିଲୁଁ, ଏବଂ ଏ ଅଧ୍ୟାୟରେ 'କ୍ଷେତ୍ରଜ୍ଞ' ବୋଲି ଯାହାର ପରିଚୟ ଦେଲୁଁ, ତାକୁ 'ପୁରୁଷ' ବୋଲାଯାଏ । ସେହି ପ୍ରକୃତି ଓ ପୁରୁଷ ଦୁହେଁ, ଅନାଦି ଅଟନ୍ତି । କ୍ଷେତ୍ର ବା ପ୍ରକୃତି, ଅନାଦି ଈଶ୍ୱରଙ୍କର ଶକ୍ତି ବୋଲି, ଆପେ ମଧ୍ୟ ଅନାଦି, ଓ ସେ, କ୍ଷେତ୍ରଜ୍ଞ ବା ପୁରୁଷ, ସେ, ଈଶ୍ୱରଙ୍କର ଅଂଶ ବୋଲି ଅନାଦି ଅଟେ । ଆକାଶାଦି ପଞ୍ଚମହାଭୂତ ଓ ପାଞ୍ଚ କର୍ମେନ୍ଦ୍ରିୟ ଏବଂ ପାଞ୍ଚ ଜ୍ଞାନେନ୍ଦ୍ରିୟ ଓ ମନ, ଏହିପରି ଦେହ ଓ ଇନ୍ଦ୍ରିୟମାନଙ୍କୁ 'ବିକାର' ବୋଲାଯାଏ । ସୁଖ, ଦୁଃଖ ଓ ମୋହ ଉତ୍ପାଦକ, ଯେ ସତ୍ତ୍ୱ, ରଜ ଓ ତମଃ, ଏମାନଙ୍କୁ 'ଗୁଣ' ବୋଲାଯାଏ । ସେହି ବିକାର ଓ ଗୁଣ ଏ ସମସ୍ତେ, ପ୍ରକୃତିରୁ ଜାତ ଅଟନ୍ତି ବୋଲି ଜାଣ । ୧୯ ।

### ଶ୍ଳୋକଃ ।

କାର୍ଯ୍ୟକାରଣକର୍ତ୍ତୃତ୍ୱେ ହେତୁଃ ପ୍ରକୃତିରୁଚ୍ୟତେ ।
ପୁରୁଷଃ ସୁଖଦୁଃଖାନାଂ ଭୋକ୍ତୃତ୍ୱେ ହେତୁରୁଚ୍ୟତେ । ୨୦ ।

### ଅନ୍ୱୟଃ ।

ପ୍ରକୃତିଃ କାର୍ଯ୍ୟକାରଣକର୍ତ୍ତୃତ୍ୱେ ହେତୁଃ ଉଚ୍ୟତେ, ପୁରୁଷଃ ସୁଖଦୁଃଖାନାଂ ଭୋକ୍ତୃତ୍ୱେ ହେତୁଃ ଉଚ୍ୟତେ । ୨୦ ।

### ଟୀକା ।

ବିକାରାଣାଂ ପ୍ରକୃତିସମ୍ବନ୍ଧଂ ଦର୍ଶୟନ୍ ପୁରୁଷସ୍ୟ ସଂସାରହେତୁତ୍ୱଂ ଦର୍ଶୟତି । କାର୍ଯ୍ୟେତି । କାର୍ଯ୍ୟଂ ଶରୀରଂ କାରଣାନି ସୁଖଦୁଃଖସାଧନାନୀନ୍ଦ୍ରିୟାଣି ତେଷାଂ କର୍ତ୍ତୃତ୍ୱେ ତଦାକାରପରିଣାମେ ପ୍ରକୃତିର୍ହେତୁରୁଚ୍ୟତେ କପିଳାଦିଭିଃ ପୁରୁଷୋ ଜୀବସ୍ତୁ ତତ୍କୃତସୁଖଦୁଃଖାନାଂ ଭୋକ୍ତୃତ୍ୱେ ହେତୁରୁଚ୍ୟତେ, ଅୟଂ ଭାବଃ, ଯଦ୍ୟପ୍ୟଚେତନାୟାଃ ପ୍ରକୃତେଃ ସ୍ୱତଃ କର୍ତ୍ତୃତ୍ୱଂ ନ ସମ୍ଭବତି, ତଥା ପୁରୁଷସ୍ୟାପ୍ୟବିକାରିଣୋ ଭୋକ୍ତୃତ୍ୱଂ ନ ସମ୍ଭବତି, ତଥାପି କର୍ତ୍ତୃତ୍ୱଂ ନାମ କ୍ରିୟାନିର୍ବର୍ତ୍ତକତ୍ୱଂ, ତଚ୍ଚାଚେତନସ୍ୟାପି ଚେତନାଦୃଷ୍ଟବଶାତ୍ ଚୈତନ୍ୟାଧିଷ୍ଠିତତ୍ୱାତ୍ ସମ୍ଭବତି, ଯଥା ବହ୍ନେରୂର୍ଦ୍ଧ୍ୱଜ୍ୱଳନଂ ବାୟୋସ୍ତିର୍ଯ୍ୟଗ୍ଗମନଂ, ବତ୍ସାଦୃଷ୍ଟବଶାତ୍ ସ୍ତନ୍ୟପୟଃ କ୍ଷରଣମିତ୍ୟାଦି, ଅତଃ ପୁରୁଷସନ୍ନିଧାନାତ୍ ପ୍ରକୃତେଃ କର୍ତ୍ତୃତ୍ୱମୁଚ୍ୟତେ, ଭୋକ୍ତୃତ୍ୱଂ ଚ ସୁଖଦୁଃଖସଂବେଦନଂ ତଚ୍ଚ ଚେତନଧର୍ମ ଏବେତି ପ୍ରକୃତିସନ୍ନିଧାନାତ୍ ପୁରୁଷସ୍ୟ ଭୋକ୍ତୃତ୍ୱମୁଚ୍ୟତ ଇତି । ୨୦ ।

### ପଦବ୍ୟାଖ୍ୟା ।

କାର୍ଯ୍ୟକାରଣକର୍ତ୍ତୃତ୍ୱେ—ଶରୀର ଓ ଇନ୍ଦ୍ରିୟାଦିମାନଙ୍କର ଆକାର ପ୍ରବର୍ତ୍ତନାଦିରେ । ହେତୁଃ—କାରଣ, ପ୍ରକୃତିଃ—ମାୟା, ଉଚ୍ୟତେ—କଥିତହୁଏ, ପୁରୁଷଃ—ଜୀବାତ୍ମା, ସୁଖଦୁଃଖାନାଂ—ସୁଖ ଓ ଦୁଃଖ ଏ ମାନଙ୍କର, ଭୋକ୍ତୃତ୍ୱେ—ଭୋଗକରିବା ବିଷୟରେ, ହେତୁଃ—କାରଣ, ଉଚ୍ୟତେ—କୁହାଯାଏ । ୨୦ ।

### ଅନୁବାଦ ।

ଶରୀର ଓ ଇନ୍ଦ୍ରିୟମାନଙ୍କର କାର୍ଯ୍ୟନିର୍ବାହ ବିଷୟରେ ପ୍ରକୃତି କାରଣ ଓ ସୁଖ-ଦୁଃଖର ଭୋଗ ବିଷୟରେ ପୁରୁଷ, କାରଣ ବୋଲି କଥିତ ଅଛି । ୨୦ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଶରୀରକୁ କାର୍ଯ୍ୟ ବୋଲାଯାଏ ଏବଂ ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ଓ ମନ, ବୁଦ୍ଧି, ଚିତ୍ତ ଏପରି ତେରଟିକୁ କାରଣ ବୋଲାଯାଏ । ଏହି କାର୍ଯ୍ୟ ଓ କାରଣ ବା ଶରୀର ଓ ଇନ୍ଦ୍ରିୟାଦିଙ୍କର କର୍ତ୍ତୃତ୍ୱ ବିଷୟରେ ଅର୍ଥାତ୍ କାର୍ଯ୍ୟନିର୍ବାହ ବିଷୟରେ ପ୍ରକୃତିହିଁ ହେତୁ ଅଟେ । ଫଳକଥା ଏହି କି, ପ୍ରକୃତି ଅନୁସାରେ ଶରୀର ଓ ଇନ୍ଦ୍ରିୟାଦିମାନଙ୍କର କାର୍ଯ୍ୟ ଚଳୁଅଛି । ସେଥିରେ ଆଉ କେହି କର୍ତ୍ତା ନୁହନ୍ତି । ଏଥିରେ, ଏପରି ଆପତ୍ତି ହୋଇପାରେ, ଯେ ପ୍ରକୃତି ତ ଜଡ଼ସ୍ୱରୂପା, ତାହାର କର୍ତ୍ତୃତ୍ୱ ହେଲା କପରି ? ତାହାର ଉତ୍ତର ଦେବା ପୂର୍ବରୁ ଦେଖିବା ଉଚିତ, ଯେ କର୍ତ୍ତା କାହାକୁ ବୋଲାଯାଏ ? କ୍ରିୟାନିର୍ବାହକକୁ କର୍ତ୍ତା ବୋଲାଯାଏ, ଏହାହିଁ ସର୍ବବାଦି ସମ୍ମତ ଅଟେ । ମାତ୍ର ଅଗ୍ନିର, ଉପରକୁ ଶିଖା ଉତ୍ତୋଳନ କରିବା ଏବଂ ବାୟୁର ତିର୍ଯ୍ୟକ୍ ଭାବରେ ଗମନ କରିବା, ସନ୍ତାନ-ଦର୍ଶନରେ ମାତାର ସ୍ତନରୁ ଦୁଗ୍ଧର କ୍ଷରଣହେବା ପ୍ରଭୃତି କ୍ରିୟା ନିର୍ବାହକତା ଅଛି, ଅଥଚ ଅଗ୍ନି, ବାୟୁ ଏବଂ ସ୍ତନଦୁଗ୍ଧ ଏ ସବୁ ଜଡ଼ ପଦାର୍ଥ, ତେବେ ପ୍ରକୃତି ଜଡ଼ପଦାର୍ଥ ବୋଲି ତାହାର କର୍ତ୍ତୃତ୍ୱ କି ହେବ ନାହିଁକି ?

ସୁଖ ଓ ଦୁଃଖ ଏମାନଙ୍କୁ ଭୋଗ କରିବା ବିଷୟରେ, ଜୀବରୂପୀ ପୁରୁଷ ବା କ୍ଷେତ୍ରଜ୍ଞ କାରଣ ଅଟନ୍ତି ବୋଲି ଶାସ୍ତ୍ରରେ କଥିତ ଅଛି ଅର୍ଥାତ୍ ମୁଁ ସୁଖୀ, ସେ ଦୁଃଖୀ ଇତ୍ୟାଦି ଜ୍ଞାନ ଜୀବରୂପୀ କ୍ଷେତ୍ରଜ୍ଞ ପୁରୁଷଠାରେ ଆରୋପିତ ହୁଏ ।

ଏକଖଣ୍ଡ ଲୌହକୁ ଅଗ୍ନିରେ ଉତ୍ତପ୍ତ କରି ଲୋହିତ ବର୍ଣ୍ଣ କଲେ, ସେଥିରେ ଯେପରି ଲୌହ ଓ ଅଗ୍ନିର ପ୍ରଭେଦ ବୁଝିହୁଏ ନାହିଁ, ସେହିପରି ପ୍ରକୃତି ଓ ପୁରୁଷ ଅଭେଦରୂପେ ମିଳିତ ହୋଇ କର୍ତ୍ତା ଓ ଭୋକ୍ତା ଥିଲେ ସୁଦ୍ଧା, ଶାସ୍ତ୍ରରେ ପ୍ରକୃତିକୁ କର୍ତ୍ତା ଓ ପୁରୁଷକୁ ଭୋକ୍ତା ବୋଲି କୁହା ହୋଇଅଛି । ଫଳତଃ ପ୍ରକୃତି ଓ ପୁରୁଷ ଏ ଦୁହିଙ୍କୁ ଅନୁଭବ ବ୍ୟତିରେକେ ପ୍ରତ୍ୟକ୍ଷ ଦ୍ୱାରା ପୃଥକ୍ ୨ ରୂପେ କେହି ଦେଖି ପାରନ୍ତି ନାହିଁ । ୨୦ ।

ଶ୍ଳୋକଃ ।

* ପୁରୁଷଃ ପ୍ରକୃତିସ୍ଥୋହି, ଭୁଂକ୍ତେ ପ୍ରକୃତିଜାନ୍ ଗୁଣାନ୍ ।
କାରଣଂ ଗୁଣସଙ୍ଗୋଽସ୍ୟ, ସଦସଦ୍ୟୋନିଜନ୍ମସୁ । ୨୧ ।

ଅନ୍ୱୟଃ ।

ପୁରୁଷଃ ହି ପ୍ରକୃତିସ୍ଥଃ (ସନ୍) ପ୍ରକୃତିଜାନ୍ ଗୁଣାନ୍ ଭୁଂକ୍ତେ ଅସ୍ୟ ସଦସଦ୍ୟୋନିଜନ୍ମସୁ ଗୁଣସଙ୍ଗଃ କାରଣଂ ଭବତି । ୨୧ ।

ଟୀକା ।

ତଥାପ୍ୟବିକାରିଣୋଜନ୍ମରହିତସ୍ୟ ଚ ଭୋକ୍ତୃତ୍ୱଂ କଥମିତ୍ୟତଆହ, ପୁରୁଷ ଇତି । ହି ଯସ୍ମାତ୍ ପ୍ରକୃତିସ୍ଥଃ ତତ୍କାର୍ଯ୍ୟେ ଦେହେ ତାଦାତ୍ମ୍ୟେନ ସ୍ଥିତଃ ପୁରୁଷଃ ଅତସ୍ତଜ୍ଜନିତାନ୍ ସୁଖଦୁଃଖାଦୀନ୍ ଭୁଂକ୍ତେ, ଅସ୍ୟ ଚ ପୁରୁଷସ୍ୟ ସତୀଷୁ ଦେବାଦି-ଯୋନିଷୁ ଅସତୀଷୁ ତିର୍ଯ୍ୟଗାଦିଯୋନିଷୁ ଯାନି ଜନ୍ମାନି, ତେଷୁ ଗୁଣସଙ୍ଗୋଗୁଣୈଃ ଶୁଭାଶୁଭ କର୍ମକାରିଭିରିନ୍ଦ୍ରିୟୈଃ ସଙ୍ଗଃ କାରଣମିତ୍ୟର୍ଥଃ । ୨୧ ।

୮

ପଦବ୍ୟାଖ୍ୟା ।

ପୁରୁଷଃ—ଜୀବାତ୍ମା, ପ୍ରକୃତିସ୍ଥଃ—ଶରୀର ଓ ଇନ୍ଦ୍ରିୟାଦିରେ ସ୍ଥିତ ହୋଇ, ଭୁଙ୍କ୍ତେ—ଭୋଗ କରନ୍ତି, ପ୍ରକୃତିଜାନ୍—ଶରୀରରୁ ଉତ୍ପନ୍ନ, ଗୁଣାନ୍—ଗୁଣମାନଙ୍କୁ ଅର୍ଥାତ୍ ସୁଖ ଓ ଦୁଃଖକୁ, କାରଣଂ—ହେତୁ, ଗୁଣସଙ୍ଗୋଽସ୍ୟ—ଏହାର ଗୁଣ ସଂସର୍ଗ, ସଦସଦ୍ୟୋନିଜନ୍ମସୁ—ଉତ୍ତମ (ଦେବାଦି) ଅଧମ (ତିର୍ଯ୍ୟକ୍ ଆଦି) ଯୋନିରେ ଜନ୍ମ ବିଷୟରେ । ୨୧ ।

ଅନୁବାଦ ।

ଜୀବାତ୍ମା, ପ୍ରକୃତିରେ ଅବସ୍ଥିତ ହେବାରୁ ପ୍ରକୃତିଜନିତ ସୁଖଦୁଃଖାଦିକୁ ଭୋଗ କରନ୍ତି । ଏହି ଜୀବାତ୍ମାଙ୍କର ସତ୍ ବା ଅସତ୍ ଯୋନିରେ ଜନ୍ମ ବିଷୟରେ ଗୁଣସଙ୍ଗ ( ଇନ୍ଦ୍ରିୟାସକ୍ତି ) କେବଳ କାରଣ ଅଟେ । ୨୧ ।

ବିଶଦବ୍ୟାଖ୍ୟା ।

— ପୁରୁଷ ଅର୍ଥାତ୍ ଜୀବାତ୍ମା, ପ୍ରକୃତି ସହିତ ଅଭେଦରୂପେ ମିଳିତ ହୋଇଥିବାରୁ ପ୍ରକୃତିରୁ ଉତ୍ପନ୍ନ ହୋଇଥିବା ସୁଖ ଓ ଦୁଃଖକୁ ଭୋଗ କରନ୍ତି ଏବଂ ପ୍ରକୃତିଜନିତ ଗୁଣସଙ୍ଗ ଅନୁସାରେ ଜୀବାତ୍ମାଙ୍କର ଉତ୍ତମ ବା ଅଧମ ଯୋନିରେ ଜନ୍ମ ହୁଏ ଅର୍ଥାତ୍ ଜୀବାତ୍ମା, ସତ୍ତ୍ୱ ଗୁଣରେ ଆସକ୍ତ ହେଲେ, ଦେବଯୋନିରେ, ରଜୋଗୁଣାସକ୍ତ ହେଲେ, ମନୁଷ୍ୟଯୋନିରେ ଓ ତମୋଗୁଣାସକ୍ତ ହେଲେ, ପଶୁଯୋନିରେ ଜନ୍ମଗ୍ରହଣ କରନ୍ତି ଏବଂ ତ୍ରିଗୁଣର ସଙ୍ଗବର୍ଜିତ ହେଲେ ଅର୍ଥାତ୍ ଆପଣାକୁ ସତ୍ତ୍ୱାଦିଗୁଣତ୍ରୟରେ ନିର୍ଲିପ୍ତ ବୋଲି ବୁଝି ପାରିଲେ, ଯୋନିଜନ୍ମର ଆଉ ଆଶଙ୍କା ନ ଥାଏ ।

କେହି କେହି ଶୁଭ ବା ଅଶୁଭ କର୍ମକାରୀ ଇନ୍ଦ୍ରିୟମାନଙ୍କୁ ଗୁଣ ବୋଲି କହନ୍ତି, ସେମାନଙ୍କ ମତରେ ଜୀବାତ୍ମାଙ୍କର ଗୁଣସଙ୍ଗ ଅର୍ଥାତ୍ ଇନ୍ଦ୍ରିୟାସକ୍ତି ଯୋନିଜନ୍ମ ବିଷୟରେ କାରଣ ଅଟେ । ୨୧ ।

ଶ୍ଲୋକଃ ।

* ଉପଦ୍ରଷ୍ଟାନୁମନ୍ତା ଚ, ଭର୍ତ୍ତା ଭୋକ୍ତା ମହେଶ୍ୱରଃ ।
ପରମାତ୍ମେତି ଚାପ୍ୟୁକ୍ତୋ, ଦେହେଽସ୍ମିନ୍ ପୁରୁଷଃ ପରଃ । ୨୨ ।

ଅନ୍ୱୟଃ ।

ଅସ୍ମିନ୍ ଦେହେ (ସ୍ଥିତଃ) ଅପି ପୁରୁଷଃ ପରଃ, ଉପଦ୍ରଷ୍ଟା, ଅନୁମନ୍ତା, ଚ ଭର୍ତ୍ତା, ଭୋକ୍ତା, ମହେଶ୍ୱରଃ ପରମାତ୍ମା ଇତି ଉକ୍ତଃ । ୨୨ ।

ଟୀକା ।

ଇତଶ୍ଚୈବଂ ପ୍ରକାରେଣ ପ୍ରକୃତ୍ୟବିବେକାଦେବ ପୁରୁଷସ୍ୟ ସଂସାରୋ ନ ତୁ ସ୍ୱରୂପତ ଇତ୍ୟାଶୟେନ ତସ୍ୟ ସ୍ୱରୂପମାହ । ଉପଦ୍ରଷ୍ଟେତି । ଅସ୍ମିନ୍ ପ୍ରକୃତିକାର୍ଯ୍ୟେ ଦେହେ ବର୍ତ୍ତମାନୋଽପି ପୁରୁଷଃ ପରୋ ଭିନ୍ନ ଏବ ନ ତଦ୍ଗୁଣୈ ର୍ୟୁଜ୍ୟତ ଇତ୍ୟର୍ଥଃ, ତତ୍ର ହେତବଃ ଯସ୍ମାଦୁପଦ୍ରଷ୍ଟା ପୃଥଗ୍ଭୂତ ଏବ ସମୀପେ ସ୍ଥିତ୍ୱା ଦ୍ରଷ୍ଟା ସାକ୍ଷୀତ୍ୟର୍ଥଃ । ତଥା ଅନୁମନ୍ତା ଅନୁମୋଦିତୈବ ସନ୍ନିଧିମାତ୍ରେଣାନୁଗ୍ରାହକଃ ସାକ୍ଷୀ ଚେତା କେବଲୋ ନିର୍ଗୁଣଶ୍ଚେତ୍ୟାଦି ଶ୍ରୁତେଃ, ତଥା ଈଶ୍ୱରେଣ ରୂପେଣ ଭର୍ତ୍ତା ବିଧାରକଃ, ଭୋକ୍ତା ପାଳକ ଇତି ଚ, ମହାଂଶ୍ଚାସାବୀଶ୍ୱରଶ୍ଚେତି ବ୍ରହ୍ମାଦୀନାମପି ପତିରିତି ଚ ପରମାତ୍ମା ଅନ୍ତର୍ଯ୍ୟାମୀ ଚେତ୍ୟୁକ୍ତଃ ଶ୍ରୁତ୍ୟା, ତଥା ଚ ଶ୍ରୁତିଃ—ଏଷ ସର୍ବେଶ୍ୱର ଏଷ ଭୂତାଧିପତିରେଷ ଲୋକପାଳ ଇତ୍ୟାଦି । ୨୨ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଉପଦ୍ରଷ୍ଟା—ନିକଟରେ ଦେଖିବା ବ୍ୟକ୍ତି, ଅନୁମନ୍ତା—ଅନୁମୋଦନକାରୀ, ଭର୍ତ୍ତା—ବିଧାନକର୍ତ୍ତା, ଭୋକ୍ତା—ପାଳନକର୍ତ୍ତା, ମହେଶ୍ୱରଃ—ପ୍ରଜାପତି ପ୍ରଭୃତିଙ୍କର ପ୍ରଭୁ, ପରମାତ୍ମା—ଅନ୍ତର୍ଯ୍ୟାମୀ, ଇତି ଚ ଅପି—ଏହା ମଧ୍ୟ, ଉକ୍ତଃ—କଥିତ, ଦେହେଽସ୍ମିନ୍—ଏହି ଦେହରେ, ପୁରୁଷଃ—ଜୀବାତ୍ମା, ପରଃ—ସ୍ୱତନ୍ତ୍ର—ଭିନ୍ନ । ୨୨ ।

ଅନୁବାଦ ।

ପୁରୁଷ, ଏହି ଦେହରେ ଥିଲେ ମଧ୍ୟ, (ଏଥିରୁ) ପୃଥକ୍ ଅଟନ୍ତି, (କାହିଁକି ନା) ସେ, ଉପଦ୍ରଷ୍ଟା, ଅନୁମୋଦନକାରୀ, ଭର୍ତ୍ତା, ଭୋକ୍ତା ଓ ମହେଶ୍ୱର ଏବଂ ପରମେଶ୍ୱର ବୋଲି ଶ୍ରୁତିରେ କଥିତ ଅଛି । ୨୨ ।

ବିଶଦବ୍ୟାଖ୍ୟା ।

ଆତ୍ମା, ଦେହରେ ଅବସ୍ଥାନ କଲାବେଳେ, ଦେହ ସହିତରେ ଅଭେଦଭାବରେ ମିଳିଥିଲେ ସୁଦ୍ଧା, ଦେହରୁ ସମ୍ପୂର୍ଣ୍ଣରୂପେ ପୃଥକ୍ ଓ ନିର୍ଲିପ୍ତ ଅଟନ୍ତି । ଯେପରି ସ୍ୱଚ୍ଛ ସ୍ଫଟିକ ନିକଟରେ ରକ୍ତବର୍ଣ୍ଣ ପୁଷ୍ପ ରଖିଲେ, ସ୍ଫଟିକର ବର୍ଣ୍ଣ ଲୋହିତ ଦେଖାଯାଏ, ମାତ୍ର ପ୍ରକୃତରେ ତାହା ଲୋହିତ ନୁହେ, ସେହିପରି ପ୍ରକୃତିର ସହିତ ମିଳିତ ହୋଇଥିବାରୁ 'ମୁଁ ସୁଖୀ', 'ମୁଁ ଦୁଃଖୀ' ଇତ୍ୟାଦି ଜ୍ଞାନ, ଆତ୍ମାଙ୍କଠାରେ ଆରୋପ କରାଯାଏ ସତ, ମାତ୍ର ଆତ୍ମା ସମ୍ପୂର୍ଣ୍ଣରୂପେ ପୃଥକ୍ ଓ ନିର୍ଲିପ୍ତ ଅଟନ୍ତି । କାହିଁକି ନା ସେ, ଉପଦ୍ରଷ୍ଟା ଅର୍ଥାତ୍ ଅଭିପ୍ରାୟଶୂନ୍ୟଦର୍ଶକ । ମନେକର କୌଣସି ବିଦ୍ୟାଳୟର ଛାତ୍ରଙ୍କୁ ଶିକ୍ଷକ ଉପଦେଶ ଦେଲାବେଳେ, ତୁମ୍ଭେ, ନିକଟରେ ରହି ଦେଖୁଅଛ, ଶିକ୍ଷକ ଛାତ୍ରଙ୍କୁ ଯେଉଁ ଉପଦେଶ ଦେଉଅଛନ୍ତି, ତାହା ଭଲ ହେଉଅଛି କି ମନ୍ଦ ହେଉଅଛି ଏହା ଜାଣି ପାରିଲେ ସୁଦ୍ଧା, ତୁମ୍ଭେ ତାଙ୍କୁ କିଛିମାତ୍ର ନ କହି ଉଦାସୀନପରି ରହିଲ, ଏପରି ସ୍ଥଳେ ତୁମ୍ଭଙ୍କୁ 'ଉପଦ୍ରଷ୍ଟା' ବୋଲାଯାଇ ପାରେ । ଜୀବାତ୍ମା, କେବଳ ସେହିପରି ଦେହ ଓ ଇନ୍ଦ୍ରିୟାଦିର କାର୍ଯ୍ୟ ଦେଖୁ ଥିବାରୁ ତାହାଙ୍କୁ ଉପଦ୍ରଷ୍ଟା ବୋଲାଯାଏ । ଦେହ ଓ ଇନ୍ଦ୍ରିୟାଦିଙ୍କ ସବୁ କାର୍ଯ୍ୟରେ ପ୍ରବୃତ୍ତ ନ ହେଲେ ସୁଦ୍ଧା, ସେ ନିତାନ୍ତ ସମୀପବର୍ତ୍ତୀ ଥିବାରୁ ତାହାଙ୍କୁ 'ଅନୁମନ୍ତା' କୁହାଯାଏ । ସେହି ଆତ୍ମାଙ୍କର ସତ୍ତା ବ୍ୟତିରେକେ ଦେହ, ଇନ୍ଦ୍ରିୟ ଓ ମନ ଏବଂ ବୁଦ୍ଧି ପ୍ରଭୃତିର ସ୍ଫୂର୍ତ୍ତି କି ପୁଷ୍ଟି କିଛିହିଁ ହୋଇପାରେ ନାହିଁ, ଏହିହେତୁରୁ ତାଙ୍କୁ 'ଭର୍ତ୍ତା' ବୋଲାଯାଏ ଓ ସେ ନିର୍ବିକାର ଏବଂ ନିର୍ଲିପ୍ତ ହେଲେ ସୁଦ୍ଧା, ବୁଦ୍ଧି ଆଦିରେ ପ୍ରତିବିମ୍ବିତ ବିଷୟ ସମୂହକୁ ଅନୁଭବ କରନ୍ତି ବୋଲି, ତାଙ୍କୁ 'ଭୋକ୍ତା' ବୋଲାଯାଏ । ସେ, ସମସ୍ତଙ୍କର ଆତ୍ମା ବୋଲି ମହାନ୍ ଓ ସ୍ୱାଧୀନ ବୋଲି 'ଈଶ୍ୱର' ଅଟନ୍ତି, ଏବଂ ଜଡ଼ପଦାର୍ଥଠାରୁ ଉତ୍କୃଷ୍ଟ ବୋଲି 'ପରମାତ୍ମା' ନାମରେ ବେଦରେ କଥିତ ହୋଇଅଛନ୍ତି । ଜଡ଼ବର୍ଗଠାରୁ ଉତ୍କୃଷ୍ଟ ପଦାର୍ଥକୁ ପରମ ବୋଲାଯାଏ, ଆତ୍ମା ସର୍ବୋତ୍କୃଷ୍ଟ ବୋଲି ତାହାଙ୍କୁ ପରମାତ୍ମା ବୋଲାଯାଏ । ଚାର୍ବାକମତାବଲମ୍ବୀମାନଙ୍କପରି ଯେଉଁମାନେ ଦେହକୁ ଆତ୍ମା ବୋଲି ମନେ କରନ୍ତି, ସେମାନଙ୍କ ଦୃଷ୍ଟିରେ ଆତ୍ମା 'ଭୋକ୍ତା' ଅଟନ୍ତି । ଯେଉଁମାନଙ୍କ ମତରେ ଆତ୍ମା କର୍ତ୍ତୃତ୍ୱାଦି ଅଭିମାନଯୁକ୍ତ, ସେମାନେ ଆତ୍ମାକୁ 'ଭର୍ତ୍ତା' ବୋଲନ୍ତି । ବସ୍ତୁ ଉପରେ ଯେଉଁ ପୂର୍ବକାର୍ଯ୍ୟ ହୋଇଥାଏ, ସେହିପରି ଯେଉଁମାନେ ଆତ୍ମାଙ୍କୁ

Digitized by PPRACHIN, SOA

ଦେହେନ୍ଦ୍ରିୟାଦିର ଅବ୍ୟବହିତ ସମୀପବର୍ତ୍ତୀ ମନେ କରନ୍ତି, ସେମାନଙ୍କ ମତରେ ଆତ୍ମା 'ଅନୁମନ୍ତା' । ମାତ୍ର ଯେଉଁମାନେ ଆତ୍ମାଙ୍କୁ ସକଳ କାର୍ଯ୍ୟରେ ଉଦାସୀନରୂପେ ମନେ କରନ୍ତି, ସେମାନଙ୍କ ମତରେ ଆତ୍ମା 'ଉପଦ୍ରଷ୍ଟା' ଓ ସେହିପରି ଉପରୋକ୍ତ ସମସ୍ତ ଅବସ୍ଥା ଆତ୍ମାଙ୍କର ଅଧୀନ ବୋଲି ଯେଉଁମାନେ ମନେ କରନ୍ତି, ସେମାନେ କହନ୍ତି, ଯେ ଆତ୍ମା 'ମହେଶ୍ୱର' ଅର୍ଥାତ୍ ଜଗତ୍‌ପ୍ରଭୁ । କହିବାକୁ ଗଲେ, ଆତ୍ମା ଏ ସମସ୍ତ ଅବସ୍ଥାଯୁକ୍ତ ହିଁ ପ୍ରକୃତରେ ପ୍ରତ୍ୟେକ ଅବସ୍ଥାର ଅତୀତ ଓ ଅଖଣ୍ଡ ଅଟନ୍ତି । ୨୨ ।

ଶ୍ଲୋକଃ ।

* ଯ ଏବଂ ବେତ୍ତି ପୁରୁଷଂ, ପ୍ରକୃତିଂ ଚ ଗୁଣୈଃ ସହ ।
ସର୍ବଥା ବର୍ତ୍ତମାନୋଽପି, ନ ସ ଭୂୟୋଽଭିଜାୟତେ । ୨୩ ।

ଅନ୍ୱୟଃ ।

ଯଃ ଏବଂ ପୁରୁଷଂ ଚ ଗୁଣୈଃ ସହ ପ୍ରକୃତିଂ ବେତ୍ତି, ସଃ ସର୍ବଥା ବର୍ତ୍ତମାନଃ ଅପି ଭୂୟଃ ନ ଅଭିଜାୟତେ । ୨୩ ।

ଟୀକା ।

ଏବଂ ପ୍ରକୃତିପୁରୁଷବିବେକଜ୍ଞାନଂ ସ୍ତୌତି । ଯ ଏବମିତି । ଏବଂ ଉପଦ୍ରଷ୍ଟୃତ୍ୱାଦିରୂପେଣ ପୁରୁଷଂ ଯୋ ବେତ୍ତି, ପ୍ରକୃତିଂ ଚ ଗୁଣୈଃ ସୁଖଦୁଃଖାଦିପରିଣାମୈଃ ସହିତାଂ ଯୋ ବେତ୍ତି, ସ ପୁରୁଷଃ ସର୍ବଥା ବିଧିମତିଲଙ୍ଘ୍ୟ ବର୍ତ୍ତମାନୋଽପି ପୁନର୍ନାଭିଜାୟତେ ମୁଚ୍ୟତ ଏବେତ୍ୟର୍ଥଃ । ୨୩ ।

ପଦବ୍ୟାଖ୍ୟା ।

ଯଃ—ଯେଉଁ ମନୁଷ୍ୟ, ଏବଂ—ଏହି ପ୍ରକାର, ବେତ୍ତି—ଜାଣନ୍ତି, ପୁରୁଷଂ—କ୍ଷେତ୍ରଜ୍ଞ ପୁରୁଷକୁ, ପ୍ରକୃତିଂ ଚ—ମାୟାକୁ ମଧ୍ୟ, ଗୁଣୈଃ ସହ—ସତ୍ତ୍ୱ, ରଜ ଓ ତମ ଏହି ଗୁଣତ୍ରୟ ସହିତ ଅଥବା ବିକାରାଦି ଗୁଣରୁ ସହିତ, ସର୍ବଥା—ସବୁପ୍ରକାର ଅବସ୍ଥାରେ, ବର୍ତ୍ତମାନୋଽପି—ରହିଲେ ମଧ୍ୟ, ନ—ନାହିଁ, ସଃ—ସେହି ବ୍ୟକ୍ତି, ଭୂୟଃ—ପୁନର୍ବାର, ଅଭିଜାୟତେ—ଉତ୍ପନ୍ନ ହୁଅନ୍ତି । ୨୩ ।

ଅନୁବାଦ ।

ଯେଉଁ ବ୍ୟକ୍ତି, ପୂର୍ବୋକ୍ତ ପ୍ରକାରେ ପୁରୁଷଙ୍କୁ ଓ ଗୁଣସହିତ ପ୍ରକୃତିକୁ ଜାଣନ୍ତି, ସେ, ସର୍ବଥା ଅର୍ଥାତ୍ ଯେ କୌଣସି ଅବସ୍ଥାରେ ଥିଲେ ସୁଦ୍ଧା, ପୁନର୍ବାର ଜନ୍ମଗ୍ରହଣ କରନ୍ତି ନାହିଁ । ୨୩ ।

ବିଶଦବ୍ୟାଖ୍ୟା ।

ଯେଉଁ ବ୍ୟକ୍ତି, କ୍ଷେତ୍ରଜ୍ଞ ପୁରୁଷକୁ ଉପଦ୍ରଷ୍ଟା, ଅନୁମୋଦନକାରୀ, ଭର୍ତ୍ତା, ଭୋକ୍ତା ଓ ମହେଶ୍ୱର ଏବଂ ପରମାତ୍ମା ବୋଲି ଜାଣନ୍ତି ଏବଂ କ୍ଷେତ୍ରରୂପ ପ୍ରକୃତିକୁ ବିକାରାଦି ଗୁଣର ସହିତ ଜାଣନ୍ତି, ଅଥବା ସତ୍ତ୍ୱ, ରଜଃ ଓ ତମୋଗୁଣ ସହିତରେ ମାୟାକୁ ଜାଣି ପାରନ୍ତି, ସେ ବ୍ୟକ୍ତି, ଯେ କୌଣସି ଅବସ୍ଥାରେ ଥିଲେ ମଧ୍ୟ, ତାଙ୍କର ଆଉ ପୁନର୍ଜନ୍ମ ହୁଏ ନାହିଁ ଅର୍ଥାତ୍ ସେ, ମୁକ୍ତ ହୋଇଯାନ୍ତି ।

ଫଳକଥା ଏହି କି ଯାହାଙ୍କର ଆତ୍ମଜ୍ଞାନ ଜାତ ହୁଏ ଓ ଯେ, ଆତ୍ମାଦିକ ଜଡଦେହ,

Digitized by PPRACHIN, SOA

ଯେ ଅବତଥ୍ୟ ବା ମିଥ୍ୟା, ତାହା ଜାଣି ପାରନ୍ତି, ସେ, ପ୍ରାରବ୍ଧ କର୍ମରେ ବେଷ୍ଟିତ ଥିଲେ ସୁଦ୍ଧା, ମୁକ୍ତିପ୍ରାପ୍ତ ହୁଅନ୍ତି । ୨୩ ।

### ଶ୍ଳୋକଃ ।

ଧ୍ୟାନେନାତ୍ମନି ପଶ୍ୟନ୍ତି, କେଚଦାତ୍ମାନମାତ୍ମନା ।
ଅନ୍ୟେ ସାଂଖ୍ୟେନ ଯୋଗେନ, କର୍ମଯୋଗେନ ଚାପରେ । ୨୪ ।

### ଅନ୍ୱୟଃ ।

କେଚତ୍ ଆତ୍ମାନଂ ଆତ୍ମନା ଧ୍ୟାନେନ ଆତ୍ମନି ପଶ୍ୟନ୍ତି, ଅନ୍ୟେ ସାଂଖ୍ୟେନ ଯୋଗେନ, ଚ ଅପରେ କର୍ମଯୋଗେନ (ପଶ୍ୟନ୍ତି) । ୨୪ ।

### ଟୀକା ।

ଏବମ୍ଭୂତବକ୍ତ୍ରାତ୍ମଜ୍ଞାନସାଧନ-ବିକଳ୍ପାନାହ । ଧ୍ୟାନେନେତି ଦ୍ୱାଭ୍ୟାଂ । ଧ୍ୟାନେନାତ୍ମାକାରପ୍ରତ୍ୟୟସ୍ୱୟା ବୁଦ୍ଧ୍ୟା ଆତ୍ମନି ଦେହ ଏବ ଅତ୍ମନା ମନସା ଏବମାତ୍ମାନଂ କେଚତ୍ ପଶ୍ୟନ୍ତି, ଅନ୍ୟେ ତୁ ସାଂଖ୍ୟେନ ପ୍ରକୃତିପୁରୁଷବୈଲକ୍ଷଣ୍ୟାଲୋଚନେନ ଯୋଗେନାଷ୍ଟାଙ୍ଗେନ, ଅପରେ ଚ କର୍ମଯୋଗେନ, ପଶ୍ୟନ୍ତୀତି ସର୍ବତ୍ରାନୁଷଙ୍ଗଃ, ଏତେଷାଂ ଚ ଧ୍ୟାନାଦୀନାଂ ଯଥାଯୋଗଂ କ୍ରମସମୁଚ୍ଚୟେ ସତ୍ୟପି ତତ୍ତନ୍ନିଷ୍ଠାଭେଦାଭିପ୍ରାୟେଣ ବିକଳ୍ପୋକ୍ତିଃ । ୨୪ ।

### ପଦବ୍ୟାଖ୍ୟା ।

ଧ୍ୟାନେନ—ଧ୍ୟାନଦ୍ୱାରା, ଆତ୍ମନି—ଶରୀରରେ, ପଶ୍ୟନ୍ତି—ଦେଖନ୍ତି, କେଚତ୍—କେହି୨, ଆତ୍ମାନଂ—ଆତ୍ମାଙ୍କୁ, ଆତ୍ମନା—ମନରେ, ଅନ୍ୟେ—ଅନ୍ୟ ଲୋକମାନେ, ସାଂଖ୍ୟେନ ଯୋଗେନ—ସାଙ୍ଖ୍ୟ ଯୋଗଦ୍ୱାରା, କର୍ମଯୋଗେନ—କର୍ମ ଯୋଗଦ୍ୱାରା, ଚ ଅପରେ—ଏବଂ ଅନ୍ୟ ଲୋକମାନେ । ୨୪ ।

### ଅନୁବାଦ ।

କେହି୨ ମନରେ ଧ୍ୟାନଦ୍ୱାରା ଆତ୍ମାଙ୍କୁ ଦେହ ମଧ୍ୟରେ ଦେଖନ୍ତି । କେହି ସାଙ୍ଖ୍ୟ-ଯୋଗଦ୍ୱାରା ଓ କେହି ବା କର୍ମ ଯୋଗଦ୍ୱାରା ଆତ୍ମଦର୍ଶନ କରନ୍ତି । ୨୪ ।

### ବିଶଦବ୍ୟାଖ୍ୟା ।

ଆତ୍ମଜ୍ଞାନ ଲାଭର, ଯେ ଅନେକ ପ୍ରକାର ଉପାୟ ଅଛି, ତାହା ଏ ଶ୍ଳୋକରେ ଶ୍ରୀ-ଭଗବାନ୍ ବୁଝାଉ ଅଛନ୍ତି, ଯଥା;—କେହି ମନଦ୍ୱାରା ଧ୍ୟାନ କରି ଦେହ ମଧ୍ୟରେ ଆତ୍ମଦର୍ଶନ କରନ୍ତି ଅର୍ଥାତ୍ ଶ୍ରବଣ ଓ ମନନର ଫଳରୂପ ନିଦଧ୍ୟାସନ*ଦ୍ୱାରା ଆତ୍ମସାକ୍ଷାତ୍କାର ଲାଭ କରନ୍ତି । କେହି ଅବା ସାଙ୍ଖ୍ୟ ଯୋଗଦ୍ୱାରା ଅର୍ଥାତ୍ ପ୍ରକୃତି ଓ ପୁରୁଷର ପ୍ରଭେଦ ବିଚାରଦ୍ୱାରା କ୍ଷେତ୍ରଜ୍ଞ ପୁରୁଷ ବା ଆତ୍ମାଙ୍କୁ ଚହ୍ନି ପାରନ୍ତି, ଅଥବା (କାହାରି୨ ମତରେ) ନିତ୍ୟାନିତ୍ୟ ବିବେକଜନକ ବେଦାନ୍ତାଦି ଶାସ୍ତ୍ର ଶ୍ରବଣ ମନନ କରି କ୍ରମେ ନିଦଧ୍ୟାସନ ବା ଧ୍ୟାନ ଯୋଗଦ୍ୱାରା ବ୍ରହ୍ମସାକ୍ଷା-ତ୍କାର ଲାଭ କରନ୍ତି । ଆଉ କେହି୨ କର୍ମଯୋଗ ଅର୍ଥାତ୍ କର୍ମ ଅନୁଷ୍ଠାନଦ୍ୱାରା ଚିତ୍ତ ଶୁଦ୍ଧି ଲାଭ କରି କ୍ରମେ ଶ୍ରବଣ ମନନ ଓ ତତ୍ପରେ ଧ୍ୟାନ ଯୋଗଦ୍ୱାରା ଆତ୍ମଦର୍ଶନ କରନ୍ତି ।

ଏ ଶ୍ଳୋକଲିଖିତ ଉପାୟମାନଙ୍କ ମଧ୍ୟରୁ ପ୍ରଥମଟି ଅର୍ଥାତ୍ ବେଦାନ୍ତାଦି ବାକ୍ୟର

* ନିଦଧ୍ୟାସନ = ଏକାଗ୍ର ଚିନ୍ତା ।

Digitized by PPRACHIN, SOA

ନିଦିଧ୍ୟାସନ ବା ଧ୍ୟାନଯୋଗ, ଉତ୍ତମ ଅଧିକାରୀଙ୍କର ଓ ସାଙ୍ଖ୍ୟଯୋଗ, ମଧ୍ୟମ ଅଧିକାରୀଙ୍କର ଏବଂ କର୍ମଯୋଗ, ମନ୍ଦାଧିକାରୀମାନଙ୍କର ଅବଲମ୍ବନୀୟ ଅଟେ । ୨୪ ।

## ଶ୍ଳୋକଃ ।

* ଅନ୍ୟେ ତ୍ୱେବମଜାନନ୍ତଃ, ଶ୍ରୁତ୍ୱାନ୍ୟେଭ୍ୟ ଉପାସତେ ।
ତେଽପି ଚାତିତରନ୍ତ୍ୟେବ, ମୃତ୍ୟୁଂ ଶ୍ରୁତିପରାୟଣାଃ । ୨୫ ।

## ଅନ୍ୱୟଃ ।

ତୁ ଅନ୍ୟେ ଏବଂ ଅଜାନନ୍ତଃ ଅନ୍ୟେଭ୍ୟଃ ଶ୍ରୁତ୍ୱା ଉପାସତେ, ତେ ଚ ଅପି ଶ୍ରୁତିପରାୟଣାଃ (ସନ୍ତଃ) ମୃତ୍ୟୁଂ ଅତିତରନ୍ତି ଏବ । ୨୫ ।

## ଟୀକା ।

ଅତିମନ୍ଦାଧିକାରିଣାଂ ନିସ୍ତାରୋପାୟମାହ । ଅନ୍ୟେ ତ୍ୱିତି । ଅନ୍ୟେ ତୁ ସାଙ୍ଖ୍ୟଯୋଗାଦିମାର୍ଗେଣ ଏବମୁପଦ୍ରଷ୍ଟୃତ୍ୱାଦିଲକ୍ଷଣମାତ୍ମାନଂ ସାକ୍ଷାତ୍ କର୍ତ୍ତୁମଜାନନ୍ତୋଽନ୍ୟେଭ୍ୟ ଆଚାର୍ଯ୍ୟେଭ୍ୟ ଉପଦେଶତଃ ଶ୍ରୁତ୍ୱା ଉପାସତେ ଧ୍ୟାୟନ୍ତି, ତେଽପି ଚ ଶ୍ରଦ୍ଧୟା ଉପଦେଶଶ୍ରବଣପରାୟଣାଃ ସନ୍ତୋ ମୃତ୍ୟୁଂ ସଂସାରଂ ଶନୈରତିତରନ୍ତ୍ୟେବ । ୨୫ ।

## ପଦବ୍ୟାଖ୍ୟା ।

ଅନ୍ୟେ ତୁ—ଅନ୍ୟ କେହି୨, ଏବଂ ଅଜାନନ୍ତଃ—ଆତ୍ମଦର୍ଶନର ଏହି ଉପାୟମାନ ନ ଜାଣି, ଶ୍ରୁତ୍ୱା—ଶୁଣି, ଅନ୍ୟେଭ୍ୟଃ—ଅପର ବ୍ୟକ୍ତି (ଆଚାର୍ଯ୍ୟ)ଙ୍କଠାରୁ, ଉପାସତେ—କର୍ମଯୋଗଦ୍ୱାରା ଉପାସନା କରନ୍ତି, ତେ ଅପି ଚ—ସେମାନେ ମଧ୍ୟ, ଅତିତରନ୍ତି ଏବ—ନିଶ୍ଚୟ ତରି ଯାନ୍ତି, ମୃତ୍ୟୁଂ—ମରଣକୁ ଅର୍ଥାତ୍ ସଂସାର ବନ୍ଧନକୁ, ଶ୍ରୁତିପରାୟଣାଃ—ଉପଦେଶ ଶୁଣିବା ବ୍ୟକ୍ତି । ୨୫ ।

## ଅନୁବାଦ ।

ଅନ୍ୟର କେହି୨, ଏପ୍ରକାର ଉପାୟମାନ ନ ଜାଣି, ଅପର ବ୍ୟକ୍ତିଙ୍କଠାରୁ ଶ୍ରବଣ କରି ଉପାସନା କରନ୍ତି । ଶୁଣିବା କଥା ଅନୁସାରେ ଶ୍ରଦ୍ଧାଯୁକ୍ତ ହୋଇ କର୍ମ କରନ୍ତି ବୋଲି, ସେମାନେ ମଧ୍ୟ, ସଂସାରରୁ ମୁକ୍ତ ହୁଅନ୍ତି । ୨୫ ।

## ବିଶଦବ୍ୟାଖ୍ୟା ।

ଯେଉଁମାନେ ପୂର୍ବୋକ୍ତ ଧ୍ୟାନଯୋଗ, ସାଙ୍ଖ୍ୟଯୋଗ ଓ କର୍ମ ଯୋଗରୂପ ଉପାୟମାନ ନ ଜାଣନ୍ତି, ସେମାନେ, ଯେବେ ସାଧୁ ଓ ଜ୍ଞାନିବ୍ୟକ୍ତିଙ୍କ ନିକଟରୁ ଆତ୍ମଦର୍ଶନର ଉପଦେଶ ଶ୍ରବଣ କରନ୍ତି ଏବଂ ସେହି କଥାରେ ଅଚଳ ଶ୍ରଦ୍ଧା ସ୍ଥାପନ କରି ସେହିପରି ଅନୁଷ୍ଠାନ କରନ୍ତି, ତେବେ ସଂସାର ବନ୍ଧନରୁ ମୁକ୍ତ ହୋଇ ପାରନ୍ତି ।

ପୂର୍ବ ଶ୍ଳୋକରେ ଉତ୍ତମ, ମଧ୍ୟମ ଓ ଅଧମ ଅଧିକାରୀଙ୍କ ପକ୍ଷରେ ଆତ୍ମଜ୍ଞାନର ଉପାୟ କୁହା ଯାଇଥିଲା, ଏ ଶ୍ଳୋକଲିଖିତ ଉପାୟଟି ଅଧମତର ଅଧିକାରୀଙ୍କ ପକ୍ଷରେ କଥିତ ହେଲା ।

ଶ୍ଲୋକଃ ।

* ଯାବତ୍ ସଂଜାୟତେ କିଞ୍ଚିତ୍, ସତ୍ତ୍ୱଂ ସ୍ଥାବରଜଙ୍ଗମଂ ।

କ୍ଷେତ୍ରକ୍ଷେତ୍ରଜ୍ଞସଂଯୋଗାତ୍, ତଦ୍ବିଦ୍ଧି ଭରତର୍ଷଭ । ୨୬ ।

ଅନ୍ୱୟଃ ।

ହେ ଭରତର୍ଷଭ ! ସ୍ଥାବରଜଙ୍ଗମଂ ଯାବତ୍ କିଞ୍ଚିତ୍ ସତ୍ତ୍ୱଂ ସଂଜାୟତେ, ତତ୍ କ୍ଷେତ୍ରକ୍ଷେତ୍ରଜ୍ଞସଂଯୋଗାତ୍ (ଇତି) ବିଦ୍ଧି । ୨୬ ।

ଟୀକା ।

ତତ୍ର କର୍ମଯୋଗସ୍ୟ ତୃତୀୟଚତୁର୍ଥପଞ୍ଚମେଷୁ ପ୍ରପଞ୍ଚିତତ୍ୱାତ୍, ଧ୍ୟାନଯୋଗସ୍ୟ ଚ ଷଷ୍ଠାଷ୍ଟମୟୋଃ ପ୍ରପଞ୍ଚିତତ୍ୱାତ୍, ଧ୍ୟାନାଦେସ୍ତୁ ସାଙ୍ଖ୍ୟବିବକ୍ତାନୁପଦଷଯୁକ୍ତାତ୍ ସାଙ୍ଖ୍ୟମେବ ପ୍ରପଞ୍ଚୟନ୍ନାହ । ଯାବଦିତି ଯାବଦଧ୍ୟାୟସମାପ୍ତି । ଯାବତ୍ କିଞ୍ଚିତ୍ ବସ୍ତୁମାତ୍ରଂ ସମ୍ପଦ୍ୟତେ ତତ୍ ସର୍ବଂ କ୍ଷେତ୍ରକ୍ଷେତ୍ରଜ୍ଞୟୋର୍ଯୋଗାଦବିବେକକୃତତାଦାତ୍ମ୍ୟାଧ୍ୟାସା ଭବତୀତି ଜାନୀହି ।

ପଦବ୍ୟାଖ୍ୟା । ।୯୬।

ଯାବତ୍—ଯେ, ସଞ୍ଜାୟତେ—ଉତ୍ପନ୍ନ ହୁଏ, କିଞ୍ଚିତ୍—କିଛି, ସତ୍ତ୍ୱଂ—ପ୍ରାଣୀ ବା ପଦାର୍ଥ, ସ୍ଥାବରଜଙ୍ଗମଂ—ଅଚଳ ଓ ସଚଳ, କ୍ଷେତ୍ରକ୍ଷେତ୍ରଜ୍ଞସଂଯୋଗାତ୍—ପ୍ରକୃତି ଓ ପୁରୁଷସଂସର୍ଗରୁ, ତତ୍—ସେ ସବୁ ହୁଏ ବୋଲି, ବିଦ୍ଧି—ଜାଣ, ଭରତର୍ଷଭ—ହେ ଭରତକୁଳ ଶ୍ରେଷ୍ଠ—ଅର୍ଜୁନ ! । ୨୬ ।

ଅନୁବାଦ ।

ହେ ଭରତକୁଳତିଳକ ଅର୍ଜୁନ ! ଯାହାକିଛି ସ୍ଥାବର ଓ ଜଙ୍ଗମ ପଦାର୍ଥ ଉତ୍ପନ୍ନ ହୁଏ, ତାହାସବୁ କ୍ଷେତ୍ର ଓ କ୍ଷେତ୍ରଜ୍ଞ ଏ ଦୁହିଙ୍କ ସଂଯୋଗରୁ ଉତ୍ପନ୍ନ ହୁଏ ବୋଲି ଜାଣ । ୨୬ ।

ବିଶଦବ୍ୟାଖ୍ୟା ।

ଗୀତାର ତୃତୀୟ, ଚତୁର୍ଥ ଓ ପଞ୍ଚମ ଅଧ୍ୟାୟମାନଙ୍କରେ କର୍ମଯୋଗର ଏବଂ ଷଷ୍ଠ ଓ ଅଷ୍ଟମ ଅଧ୍ୟାୟରେ ଧ୍ୟାନ ଯୋଗର ବର୍ଣ୍ଣନ କରି ଏ ଅଧ୍ୟାୟର ଅବଶିଷ୍ଟ ଶ୍ଲୋକମାନଙ୍କରେ ସାଙ୍ଖ୍ୟଯୋଗ ଅର୍ଥାତ୍ ପ୍ରକୃତି ଓ ପୁରୁଷର ବର୍ଣ୍ଣନ କରିବା ଇଚ୍ଛା କରି ଶ୍ରୀଭଗବାନ୍ କହୁଅଛନ୍ତି, ହେ ଭରତକୁଳମଣ୍ଡନ ଅର୍ଜୁନ ! ଏ ଜଗତରେ ସ୍ଥାବର ଓ ଜଙ୍ଗମ ଯାହା କିଛି ପଦାର୍ଥ ଉତ୍ପନ୍ନ ହୁଏ, ସେ ସବୁ ସେହି ପ୍ରକୃତି ଓ ପୁରୁଷ ସଂସର୍ଗରୁ ଉତ୍ପନ୍ନ ହୁଏ ଅର୍ଥାତ୍—ମାୟାର ବ୍ରହ୍ମସନ୍ନିଧାନ ହେତୁରୁ ସେ ସବୁ ପ୍ରକାଶିତ ହୁଏ ଏହା ଜାଣ । ୨୬ ।

ଶ୍ଲୋକଃ ।

ସମଂ ସର୍ବେଷୁ ଭୂତେଷୁ, ତିଷ୍ଠନ୍ତଂ ପରମେଶ୍ୱରଂ ।

ବିନଶ୍ୟତ୍ସ୍ୱବିନଶ୍ୟନ୍ତଂ, ଯଃ ପଶ୍ୟତି ସ ପଶ୍ୟତି । ୨୭ ।

ଅନ୍ୱୟଃ ।

ସର୍ବେଷୁ ଭୂତେଷୁ ସମଂ ତିଷ୍ଠନ୍ତଂ ବିନଶ୍ୟତ୍ସୁ, ଅବିନଶ୍ୟନ୍ତଂ ପରମେଶ୍ୱରଂ ଯଃ ପଶ୍ୟତି, ସଃ ପଶ୍ୟତି । ୨୭ ।

ଟୀକା ।

ଏବମେତଦୁକ୍ତଂ ସଂସାରକାରଣମ୍ । ତନ୍ନିବୃତ୍ତୟେ ତତ୍ତ୍ୱଜ୍ଞାନବିଷୟଂ ସମ୍ୟଗ୍ଦର୍ଶନମାହ । ସମମିତି । ସ୍ଥାବରଜଙ୍ଗମା-

ତ୍ମକେଷୁ ଭୂତେଷୁ ନିର୍ବିଶେଷସ୍ୱରୂପେଣ ସମଂ ଯଥା ଭବତ୍ୟେବ ତିଷ୍ଠନ୍ତଂ ପରମାତ୍ମାନଂ ଯଃ ପଶ୍ୟତି ଅତଏବ ତେଷୁ ବିନଶ୍ୟତ୍ସ୍ୱପ୍ୟବିନଶ୍ୟନ୍ତଂ ଯଃ ପଶ୍ୟତି ସ ଏବ ସମ୍ୟକ୍ ପଶ୍ୟତି ନାନ୍ୟ ଇତ୍ୟର୍ଥଃ । ୨୭ ।

ପଦବ୍ୟାଖ୍ୟା ।

ସମଂ—ସମାନଭାବରେ, ସର୍ବେଷୁ ଭୂତେଷୁ—ସ୍ଥାବର ଜଙ୍ଗମାତ୍ମକ ସମସ୍ତ ପଦାର୍ଥରେ, ତିଷ୍ଠନ୍ତଂ—ବିରାଜମାନ, ପରମେଶ୍ୱରଂ—ପରମେଶ୍ୱରଙ୍କୁ, ବିନଶ୍ୟତ୍ସୁ—ଅନିତ୍ୟ—ବିନାଶଶୀଳ, ଅବିନଶ୍ୟନ୍ତଂ—ଅବିନାଶୀ ହେବାର—ବିନାଶ ନ ହେବାର, ଯଃ ପଶ୍ୟତି—ଯେ ଦେଖନ୍ତି, ସଃ ପଶ୍ୟତି—ସେ ପ୍ରକୃତ ଦର୍ଶନ କରନ୍ତି । ୨୭ ।

ଅନୁବାଦ ।

ସର୍ବଭୂତରେ ସମଭାବରେ ବିରାଜିତ ପରମେଶ୍ୱର, ସମସ୍ତ ଜଗତ ବିନଷ୍ଟ ହେଲେ ସୁଦ୍ଧା, ବିନାଶପ୍ରାପ୍ତ ହୁଅନ୍ତି ନାହିଁ, ଏହା ଯେ, ଜାଣନ୍ତି ସେ, ପ୍ରକୃତ ଜ୍ଞାନୀ ଅଟନ୍ତି । ୨୭ ।

ବିଶଦବ୍ୟାଖ୍ୟା ।

ଜଗତ ଓ ଜଗତସ୍ଥ ସମସ୍ତ ପଦାର୍ଥ ଅନିତ୍ୟ । ଏହି ସବୁ ସ୍ଥାବରଜଙ୍ଗମାତ୍ମକ ପଦାର୍ଥରେ ପରମେଶ୍ୱର (ଆତ୍ମା) ସମାନଭାବରେ ବିରାଜମାନ ଅଛନ୍ତି; କିନ୍ତୁ ଏ ଜଗତ ବିନଷ୍ଟ ହେଲେ ସୁଦ୍ଧା, ସେ ଆତ୍ମାଙ୍କୁ ଯେ, ଅବିନାଶୀରୂପେ ଦେଖନ୍ତି ଅର୍ଥାତ୍ ଜଗତ ଅନିତ୍ୟ ଓ ଆତ୍ମା ନିତ୍ୟ, ଏହା ଯେ, ଉତ୍ତମରୂପେ ହୃଦୟଙ୍ଗମ କରି ପାରନ୍ତି, ସେ, ପ୍ରକୃତ ଦର୍ଶନ କରନ୍ତି ଅର୍ଥାତ୍ ସେ ସମ୍ୟକ୍‌ଦର୍ଶୀ ବା ଆତ୍ମଜ୍ଞାନୀ ଅଟନ୍ତି । ୨୭ ।

ଶ୍ଳୋକଃ ।

* ସମଂ ପଶ୍ୟନ୍ ହି ସର୍ବତ୍ର, ସମବସ୍ଥିତମୀଶ୍ୱରଂ ।
ନ ହିନସ୍ତ୍ୟାତ୍ମନାତ୍ମାନଂ, ତତୋ ଯାତି ପରାଂ ଗତିଂ । ୨୮ ।

ଅନ୍ୱୟଃ ।

ହି ସର୍ବତ୍ର ସମବସ୍ଥିତଂ ଈଶ୍ୱରଂ ସମଂ ପଶ୍ୟନ୍ ଆତ୍ମାନଂ ଆତ୍ମନା ନ ହିନସ୍ତି, ତତଃ ପରାଂ ଗତିଂ ଯାତି । ୨୮ ।

ଟୀକା ।

କୁତ ଇତ୍ୟତ ଆହ । ସମଂ ପଶ୍ୟନ୍ନିତି । ସର୍ବତ୍ର ଭୂତମାତ୍ରେ ସମଂ ସମ୍ପୂର୍ଣ୍ଣମପ୍ରଚ୍ୟୁତସ୍ୱରୂପେଣାବସ୍ଥିତଂ ପରମାତ୍ମାନଂ ପଶ୍ୟନ୍ ହି ଯସ୍ମାତ୍ ଆତ୍ମନା ସ୍ୱେନୈବାତ୍ମାନଂ ନ ହିନସ୍ତି ଅବିଦ୍ୟୟା ସଚ୍ଚିଦାନନ୍ଦସ୍ୱରୂପମାତ୍ମାନଂ ତିରସ୍କୃତ୍ୟ ନ ବିନାଶୟତି ତତଶ୍ଚ ପରାଂ ଗତିଂ ମୋକ୍ଷଂ ପ୍ରାପ୍ନୋତି । ଯସ୍ତ୍ୱେବଂ ନ ପଶ୍ୟତି ସ ହି ଦେହାତ୍ମଦର୍ଶୀ ଦେହେନ ସହାତ୍ମାନଂ ହିନସ୍ତି । ତଥାଚ ଶ୍ରୁତିଃ, ଅସୂର୍ଯ୍ୟା ନାମ ତେ ଲୋକା ଅନ୍ଧେନ ତମସାବୃତାଃ । ତାଂସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି ଯେ କେ ଚାତ୍ମହନୋ ଜନା ଇତି । ୨୮ ।

ପଦବ୍ୟାଖ୍ୟା ।

ସମଂ—ସମାନ, ପଶ୍ୟନ୍—ଦେଖି ହି—ଯେଣୁ କରି, ସର୍ବତ୍ର—ସର୍ବଭୂତରେ, ସମବସ୍ଥିତଂ—ପରିପୂର୍ଣ୍ଣଭାବରେ ଅବସ୍ଥିତମାନ, ଈଶ୍ୱରଂ—ପରମେଶ୍ୱରଙ୍କୁ, ନ ହିନସ୍ତି—ହିଂସା ନ କରନ୍ତି—ବଧ ନ କରନ୍ତି, ଆତ୍ମନା—ନିଜେ, ଆତ୍ମାନଂ ପରମାତ୍ମାଙ୍କୁ, ତତଃ—ସେହି ହେତୁରୁ, ଯାତି—ପ୍ରାପ୍ତ ହୁଅନ୍ତି, ପରାଂ ଗତିଂ—ମୋକ୍ଷକୁ । ୨୮ ।

ଅନୁବାଦ ।

ଯେହେତୁରୁ (ଜ୍ଞାନୀ ବ୍ୟକ୍ତି) ପରମେଶ୍ୱରଙ୍କୁ ସବୁଠାରେ ସମ୍ପୂର୍ଣ୍ଣରୂପେ ଅବସ୍ଥାନ କରି-

Digitized by PPRACHIN, SOA

ବାର ଦେଖି, ଅପେ ଆତ୍ମାଦ୍ୱାରା ଆତ୍ମାକୁ ବିନଷ୍ଟ କରନ୍ତି ନାହିଁ, ତେଣୁକରି (ସେ) ମୋକ୍ଷପ୍ରାପ୍ତ ହୁଅନ୍ତି । ୨୮ ।

### ବିଶଦବ୍ୟାଖ୍ୟା ।

ପରମାତ୍ମା ପରମେଶ୍ୱର ସବୁଠାରେ ସମାନଭାବରେ ଅବସ୍ଥିତ କରୁଅଛନ୍ତି, ମାତ୍ର ଏ ସମସ୍ତ ଜଡ଼ଜଗତ ବିନଷ୍ଟ ହେଲେ ସୁଦ୍ଧା, ତାଙ୍କର ବିନାଶ ନାହିଁ, ଏହା ଜ୍ଞାନଲୋକେ ଜାଣନ୍ତି । କିନ୍ତୁ ଅଜ୍ଞାନଲୋକେ ଅବିଦ୍ୟାରେ ଆବୃତ ହୋଇ ଶରୀରକୁ ଆତ୍ମା ବୋଲି ଜାଣୁଥିବାରୁ ଶରୀର ବିନାଶରେ ଆତ୍ମା ବିନଷ୍ଟ ହୁଏ ବୋଲି ଜାଣନ୍ତି, ସୁତରାଂ ସେମାନେ ଆତ୍ମଘାତୀ ଅଟନ୍ତି । ଜ୍ଞାନମାନେ ଆତ୍ମାର ନିତ୍ୟତା—ଅବିନାଶିତା ଜାଣିଥିବାରୁ ଆତ୍ମାକୁ ବିନାଶ କରନ୍ତି ନାହିଁ ଅର୍ଥାତ୍ ଅବିଦ୍ୟାଦ୍ୱାରା ଆବୃତ ହୋଇ ଆତ୍ମଘାତୀ ହୁଅନ୍ତି ନାହିଁ, ସେହିହେତୁରୁ ସେ, ମୋକ୍ଷପ୍ରାପ୍ତ ହୁଅନ୍ତି । ଆତ୍ମଘାତମାନେ ମୋକ୍ଷପ୍ରାପ୍ତ ହୁଅନ୍ତି ନାହିଁ । ଶ୍ରୁତିରେ ମଧ୍ୟ ପ୍ରମାଣ ଅଛି, ଯେ (ଟୀକାରେ ଶ୍ରୁତି ଦେଖ) । ଆତ୍ମଘାତୀ ଲୋକମାନେ ଅନ୍ଧତମସାବୃତ ନରକକୁ ଗମନ କରନ୍ତି ଇତ୍ୟାଦି । ସ୍ମୃତିରେ ମଧ୍ୟ ପ୍ରମାଣ ଅଛି, ଯେ—"କିଂ ତେନ ନ କୃତଂ ପାପଂ ଚୌରେଣାତ୍ମାପହାରିଣା । ଯୋଽନ୍ୟଥା ସନ୍ତମାତ୍ମାନମନ୍ୟଥା ପ୍ରତିପଦ୍ୟତେ" । ଅର୍ଥାତ୍—ଏକଭାବରେ କି ନିତ୍ୟ ସ୍ୱରୂପରେ ଥିବା ଆତ୍ମାଙ୍କୁ ଯେ, କି ଅନ୍ୟଭାବରେ ଅର୍ଥାତ୍ ବିନାଶଶୀଳରୂପରେ ପ୍ରତିପାଦନ କରେ, ସେହି ଆତ୍ମାପହାରୀ ଚୌର କେଉଁ ପାପ ନ କରେ ? ଅର୍ଥାତ୍ ସବୁ ପାପ କରେ । ଇତ୍ୟାଦି । ୨୮ ।

### ଶ୍ଳୋକଃ ।

* ପ୍ରକୃତ୍ୟୈବ ଚ କର୍ମାଣି, କ୍ରିୟମାଣାନି ସର୍ବଶଃ ।
ଯଃ ପଶ୍ୟତି ତଥାତ୍ମାନ, ମକର୍ତ୍ତାରଂ ସ ପଶ୍ୟତି । ୨୯ ।

### ଅନ୍ୱୟଃ ।

କର୍ମାଣି ପ୍ରକୃତ୍ୟା ଏବ ସର୍ବଶଃ କ୍ରିୟମାଣାନି (ଇତି) ତଥା ଚ ଆତ୍ମାନଂ ଅକର୍ତ୍ତାରଂ ଯଃ ପଶ୍ୟତି, ସଃ ପଶ୍ୟତି । ୨୯ ।

### ଟୀକା ।

ନନୁ ଶୁଭାଶୁଭକର୍ମକର୍ତ୍ତୃତ୍ୱେନ ବୈଷମ୍ୟେ ଦୃଶ୍ୟମାନେ କଥମାତ୍ମନଃ ସମତ୍ୱମିତ୍ୟାଶଙ୍କ୍ୟାହ । ପ୍ରକୃତ୍ୟୈବେତି । ପ୍ରକୃତ୍ୟୈବ ଦେହେନ୍ଦ୍ରିୟାକାରେଣ ପରିଣତୟା ସର୍ବଶଃ ସର୍ବୈଃ ପ୍ରକାରୈଃ କ୍ରିୟମାଣାନି କର୍ମାଣି ଯଃ ପଶ୍ୟତି, ତଥାତ୍ମାନଞ୍ଚାକର୍ତ୍ତାରଂ ଦେହାଭିମାନେନୈବାତ୍ମନଃ କର୍ତ୍ତୃତ୍ୱଂ ନ ସ୍ୱତ ଇତ୍ୟେବଂ ଯଃ ପଶ୍ୟତି ସ ଏବ ସମ୍ୟକ୍‌ପଶ୍ୟତି ନାନ୍ୟ ଇତ୍ୟର୍ଥଃ । ୨୯ ।

### ପଦବ୍ୟାଖ୍ୟା ।

ପ୍ରକୃତ୍ୟା ଏବ ଚ—ପ୍ରକୃତିଦ୍ୱାରା କେବଳ, କର୍ମାଣି—କର୍ମସକଳ, କ୍ରିୟମାଣାନି—କରା ହେଉ ଅଛନ୍ତି, ସର୍ବଶଃ—ସବୁ ପ୍ରକାରେ, ଯଃ ପଶ୍ୟତି—ଯେ, ଦେଖନ୍ତି, ତଥା—ସେହିପରି, ଆତ୍ମାନଂ—ଆତ୍ମାଙ୍କୁ, ଅକର୍ତ୍ତାରଂ—ଅକର୍ତ୍ତା ବୋଲି, ସଃ ପଶ୍ୟତି—ସେହି ପ୍ରକୃତ ଦର୍ଶୀ ଅଟନ୍ତି । ୨୯ ।

### ଅନୁବାଦ ।

କର୍ମମାନ କେବଳ ପ୍ରକୃତିଦ୍ୱାରା ସର୍ବ ପ୍ରକାରେ କରା ହେଉଥିବା ଓ ଆତ୍ମା ଅକର୍ତ୍ତା ଥିବାର ଯେ ଦେଖନ୍ତି, ସେ, ପ୍ରକୃତଦର୍ଶୀ ଅଟନ୍ତି । ୨୯ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଏ ଜଗତରେ ଯେତେ ପ୍ରକାର କର୍ମ ହେଉଅଛି, ତାହା କେବଳ ପ୍ରକୃତିଦ୍ୱାରା ହେଉଅଛି ଅର୍ଥାତ୍ ପ୍ରକୃତି ସବୁ ପ୍ରକାରେ ସମସ୍ତ କର୍ମର କର୍ତ୍ତ୍ରୀ ଅଟେ, ପ୍ରକୃତିଭିନ୍ନ ଆଉ କେହି କୌଣସି ପ୍ରକାରେ କର୍ମ କରି ପାରନ୍ତି ନାହିଁ । ସୁତରାଂ ଆତ୍ମା ଅକର୍ତ୍ତା । ଯେଉଁ ବ୍ୟକ୍ତି ଏହି ପ୍ରକାର ଦର୍ଶନ କରନ୍ତି ଅର୍ଥାତ୍ କର୍ମ ସବୁ ପ୍ରକୃତିଦ୍ୱାରା କୃତ ହେଉଅଛି, ଆତ୍ମା କର୍ତ୍ତା ନୁହେଁ, ଏହା ଯେ, ଜାଣନ୍ତି, ସେ, ପ୍ରକୃତଦର୍ଶୀ ଅଟନ୍ତି । ୨୯ ।

ଶ୍ଳୋକଃ ।

* ଯଦା ଭୂତପୃଥଗ୍‌ଭାବ, ମେକସ୍ଥମନୁପଶ୍ୟତି

ଅତଏବ ଚ ବିସ୍ତାରଂ, ବ୍ରହ୍ମ ସମ୍ପଦ୍ୟତେ ତଦା । ୩୦ ।

ଅନ୍ୱୟଃ ।

ଯଦା ଭୂତପୃଥଗ୍‌ଭାବଂ ଏକସ୍ଥଂ ତତଃ ଏବ ଚ ବିସ୍ତାରଂ ଅନୁପଶ୍ୟତି, ତଦା ବ୍ରହ୍ମ ସଂପଦ୍ୟତେ । ୩୦ ।

ଟୀକା ।

ତଦାତ୍ମଂ ଭୂତାନାମପି ପ୍ରକୃତିଭାବନ୍ମାତ୍ରତ୍ୱେନାଭେଦାତ୍ ଭୂତଭେଦକୃତମପ୍ୟାତ୍ମନୋଭେଦମପଶ୍ୟନ୍ ବ୍ରହ୍ମତ୍ୱମୁପୈତୀତ୍ୟାହ । ଯଦେତି । ଯଦା ଭୂତାନାଂ ସ୍ଥାବରଜଙ୍ଗମାନାଂ ପୃଥଗ୍‌ଭାବଂ ଭେଦଂ ଏକସ୍ଥଂ ଏକସ୍ୟାମେବେଶ୍ୱରଶକ୍ତିରୂପାୟାଂ ପ୍ରକୃତୌ ପ୍ରଳୟେ ସ୍ଥିତମନୁପଶ୍ୟତି ଆଲୋଚୟତି ଅତଏବ ତସ୍ୟା ଏବ ପ୍ରକୃତେଃ ସକାଶାଦ୍‌ଭୂତାନାଂ ବିସ୍ତାରଂ ସୃଷ୍ଟିସମୟେ ଅନୁପଶ୍ୟତି ତଦା ପ୍ରକୃତିଭାବନ୍ମାତ୍ରତ୍ୱେନ ଭୂତାନାମପ୍ୟଭେଦଂ ପଶ୍ୟନ୍ ପରିପୂର୍ଣ୍ଣଂ ବ୍ରହ୍ମ ସଂପଦ୍ୟତେ, ବ୍ରହ୍ମୈବ ଭବତୀତ୍ୟର୍ଥଃ । ୩୦ ।

ପଦବ୍ୟାଖ୍ୟା ।

ଯଦା—ଯେଉଁ ସମୟରେ, ଭୂତପୃଥଗ୍‌ଭାବଂ—ସମସ୍ତ ଜଗତର ନାନା ପ୍ରକାର ସ୍ୱରୂପକୁ, ଏକସ୍ଥଂ—ଏକ ପ୍ରକୃତିରେ ସ୍ଥିତ, ଅନୁପଶ୍ୟତି—ବାରଂବାର ଦେଖନ୍ତି, ଅତଃ ଏବଚ—ଏହି ପ୍ରକୃତିଠାରୁ କେବଳ, ବିସ୍ତାରଂ—(ସଂପୂର୍ଣ୍ଣ ଜଗତର) ବିସ୍ତାରକୁ, ବ୍ରହ୍ମ ସଂପଦ୍ୟତେ—ବ୍ରହ୍ମତ୍ୱ ଲାଭ ହୁଏ, ତଦା—ସେହି ସମୟରେ । ୩୦ ।

ଅନୁବାଦ ।

(ଜ୍ଞାନୀ) ଯେତେବେଳେ ଭିନ୍ନ ଭିନ୍ନ ସୃଷ୍ଟିକୁ ଏକ ଈଶ୍ୱର ଶକ୍ତିରୂପ ପ୍ରକୃତିରେ ଅବସ୍ଥିତ, ପୁଣି ତହିଁରୁ ବିସ୍ତୃତ ହେବାର ଦେଖନ୍ତି, ସେତେବେଳେ ତାଙ୍କର ବ୍ରହ୍ମତ୍ୱ ହୁଏ । ୩୦ ।

ବିଶଦବ୍ୟାଖ୍ୟା ।

ଏ ଜଗତର ନାନା ପ୍ରକାର ଅବସ୍ଥା ହେଲେସୁଦ୍ଧା, ଏବଂ ଏଥିରେ ନାନା ପ୍ରକାର ପୃଥକ୍ ପୃଥକ୍ ପଦାର୍ଥ ଥିଲେ ସୁଦ୍ଧା, ସେ ସମସ୍ତ 'ଏକସ୍ଥ' ଅର୍ଥାତ୍ ଏକ ପରମେଶ୍ୱରଙ୍କର ଶକ୍ତିରୂପ ପ୍ରକୃତିରେ ସ୍ଥିତ । ଯେପରି କୁଣ୍ଡଳ, ବଳୟ ଓ ହାର ପ୍ରଭୃତି ବିଭିନ୍ନ ପ୍ରକାର ଅଳଙ୍କାର ଏକ ସୁବର୍ଣ୍ଣଦ୍ୱାରାନିର୍ମିତ ଅର୍ଥାତ୍ କୁଣ୍ଡଳ, ବଳୟ ଓ ହାରାଦିର ନାମ ଓ ରୂପ ଗତ ପ୍ରଭେଦ ଥିଲେ ସୁଦ୍ଧା, ତାହା କେବଳ ସୁବର୍ଣ୍ଣ ଅଟେ, ସେହିପରି, ଏ ଜଗତର ଜଳ, ନକ୍ଷତ୍ର, ମୃତ୍ତିକା ଓ ପ୍ରସ୍ତରାଦି ନାମ

ଓ ରୂପଦ୍ୱାରା ପୃଥକ୍ ହେଲେ ହେଁ, ଏକ ପ୍ରକୃତିରେ ସ୍ଥିତ ବୋଲି 'ଏକସ୍ଥ' ଅର୍ଥାତ୍ ଏକପ୍ରକୃତିର ଅନ୍ତର୍ଗତ ଅଟେ । ପୁଣି ସମସ୍ତ ଜଗତ୍ ସେହି ପ୍ରକୃତିରୁ ବିସ୍ତୃତ ହୁଏ ଅର୍ଥାତ୍ ସୃଷ୍ଟି ସମୟରେ ସେହି ପ୍ରକୃତିରୁ ପୂର୍ବ ପୂର୍ବ ଅନୁସାରେ ବିକଶିତ ହୁଏ । ଜ୍ଞାନୀ ଯେତେବେଳେ ଏ ପ୍ରକାର ଦର୍ଶନ କରନ୍ତି ଅର୍ଥାତ୍ ନାମ ଓ ରୂପ ହେତୁରୁ ଜଗତ୍ ଭିନ୍ନ ଭିନ୍ନ ବୋଲି ବୋଧ ହେଉଥିଲେ ହେଁ, ତାହା ପରମେଶ୍ୱରଙ୍କର ପ୍ରକୃତିରୂପା ଏକ ଶକ୍ତିରେ ସ୍ଥିତ ଓ ସେହି ପ୍ରକୃତିରୁ ଭିନ୍ନ ଭିନ୍ନ ରୂପରେ ବିକଶିତ ହେଉଅଛି ବୋଲି ଜାଣନ୍ତି, ଫଳତଃ ଯେତେବେଳେ ଏହି ପ୍ରପଞ୍ଚ ଜଗତ୍ ଏକ ବ୍ରହ୍ମ ଭିନ୍ନ, ଆଉ କିଛି ନୁହେ ବୋଲି ଜାଣନ୍ତି, ସେତେବେଳେ, ସେ, ବ୍ରହ୍ମତ୍ୱ ଲାଭ କରନ୍ତି ।

ଫଳକଥା ଏହି କି ସମସ୍ତ ଜଗତରେ ଅଦ୍ୱିତୀୟ ଅନୁଭବ ହେଲେ ମୋକ୍ଷ ଲାଭ ହୁଏ । ୩୦ ।

ଶ୍ଳୋକଃ ।

ଅନାଦିତ୍ୱାନ୍ନିର୍ଗୁଣତ୍ୱାତ୍, ପରମାତ୍ମାୟମବ୍ୟୟଃ ।
ଶରୀରସ୍ଥୋଽପି କୌନ୍ତେୟ, ନ କରୋତି ନ ଲିପ୍ୟତେ । ୩୧ ।

ଅନ୍ୱୟଃ ।

ହେ କୌନ୍ତେୟ ! ଅୟଂ ପରମାତ୍ମା ଅନାଦିତ୍ୱାତ୍ ନିର୍ଗୁଣତ୍ୱାତ୍ ଅବ୍ୟୟଃ, ଶରୀରସ୍ଥଃ ଅପି ନ କରୋତି ନ ଲିପ୍ୟତେ । ୩୧ ।

ଟୀକା ।

ତଥାପି ସଂସାରଦଶାୟାଂ ଦେହସମ୍ବନ୍ଧନିମିତ୍ତୈଃ କର୍ମଭିସ୍ତତ୍ତଜ୍ଜନିତୈଃ ସୁଖଦୁଃଖାଦିଭିର୍ବୈଷମ୍ୟଂ ଦୁଷ୍ପରିହରମିତି କୁତଃ, ସମଦର୍ଶନଂ ତତ୍ରାହ । ଅନାଦିତ୍ୱାଦିତି । ଉତ୍ପତ୍ତିମତ୍ ଏବ ହି ନାଶଃ । ଯତ୍ ଗୁଣବତ୍ତସ୍ୟ ଗୁଣନାଶେ ବ୍ୟୟୋ ଭବତି ଅୟନ୍ତୁ ପରମାତ୍ମା ଅନାଦିର୍ନିର୍ଗୁଣଶ୍ଚ ଅତୋଽବ୍ୟୟଃ ଅବିକାରୀତ୍ୟର୍ଥଃ । ତସ୍ମାତ୍ ଶରୀରେ ସ୍ଥିତୋଽପି ନ କିଞ୍ଚିତ୍ କରୋତି ନ ଚ କର୍ମଫଳୈର୍ଲିପ୍ୟତେ । ୩୧ ।

ପଦବ୍ୟାଖ୍ୟା ।

ଅନାଦିତ୍ୱାତ୍—ଅନାଦି ହେବାରୁ, ନିର୍ଗୁଣତ୍ୱାତ୍—ଗୁଣଶୂନ୍ୟ ହେବାରୁ, ପରମାତ୍ମାୟଂ—ଏହି ପରମାତ୍ମା, ଅବ୍ୟୟଃ—ଅବିନାଶୀ, ଶରୀରସ୍ଥୋଽପି—ଶରୀରରେ ଥିଲେ ହେଁ, କୌନ୍ତେୟ—ହେ କୁନ୍ତୀପୁତ୍ର !, ନ କରୋତି—କିଛି କର୍ମ କରନ୍ତି ନାହିଁ, ନ ଲିପ୍ୟତେ—କର୍ମ ଫଳରେ ଲିପ୍ତ ହୁଅନ୍ତି ନାହିଁ । ୩୧

ଅନୁବାଦ ।

ହେ କୌନ୍ତେୟ ! ଏହି ପରମାତ୍ମା ଅନାଦି ଓ ନିର୍ଗୁଣ ବୋଲି ଅବ୍ୟୟ ଅଟନ୍ତି ଏବଂ ଶରୀରରେ ଥିଲେ ହେଁ, କୌଣସି କର୍ମ କରନ୍ତି ନାହିଁ ଓ ତହିଁରେ ଲିପ୍ତ ହୁଅନ୍ତି ନାହିଁ । ୩୧ ।

ବିଶଦବ୍ୟାଖ୍ୟା ।

ଆତ୍ମା ଜନ୍ମଶୂନ୍ୟ ହେବାରୁ ଅନାଦି ଓ ତ୍ରିଗୁଣାତୀତ ବୋଲି ନିର୍ଗୁଣ ଅଟନ୍ତି । ପୁଣି ତାହାଙ୍କର କୌଣସି ପ୍ରକାର 'ବ୍ୟୟ' ଅର୍ଥାତ୍ ବିକାର ନାହିଁ ବୋଲି ସେ, 'ଅବ୍ୟୟ' ଅର୍ଥାତ୍ ଅବିନାଶୀ ଅଟନ୍ତି । ସୁତରାଂ ସେ, ଶରୀରରେ ଥିଲେ ହେଁ, କୌଣସି ପ୍ରକାର କର୍ମ କରନ୍ତି ନାହିଁ । ଆଉ ଶରୀରସ୍ଥ ଇନ୍ଦ୍ରିୟାଦିଦ୍ୱାରା କୌଣସି କର୍ମ କରାଗଲେ, ତହିଁରେ ସେ, ଲିପ୍ତ ହୁଅନ୍ତି ନାହିଁ ।

Digitized by PPRACHIN, SOA

ଯେପରି ଜଳରେ ସୂର୍ଯ୍ୟଙ୍କର ଯେଉଁ ପ୍ରତିବିମ୍ବ ପଡ଼ି ଥାଏ, ଜଳ ଚଞ୍ଚଳ ହେଲେ, ତାହା ଚଞ୍ଚଳ ହୁଏ ସତ, ମାତ୍ର ପ୍ରକୃତ ସୂର୍ଯ୍ୟ ଚଞ୍ଚଳ ହୁଅନ୍ତି ନାହିଁ ଓ ଜଳ ଶୁଖି ଗଲେ ପ୍ରକୃତ ସୂର୍ଯ୍ୟ ବିନଷ୍ଟ ହୁଅନ୍ତି ନାହିଁ, ସେହିପରି ଶରୀରମଧ୍ୟରେ ପରମାତ୍ମାଙ୍କର ଯେଉଁ ପ୍ରତିବିମ୍ବ ଅଛି, ତାହା ଶରୀରକୃତ ପାପ ପୁଣ୍ୟର କର୍ତ୍ତା ଓ ଭୋକ୍ତା ବୋଲି ପ୍ରତୀତ ହେଉଥିଲେ ସୁଦ୍ଧା, ପ୍ରକୃତ ଆତ୍ମା ଅକର୍ତ୍ତା ଓ ଅଭୋକ୍ତା ଅଟନ୍ତି । ୩୧ ।

ଶ୍ଳୋକଃ ।

* ଯଥା ସର୍ବଗତଂ ସୌକ୍ଷ୍ମ୍ୟାଦାକାଶଂ ନୋପଲିପ୍ୟତେ ।
ସର୍ବତ୍ରାବସ୍ଥିତୋ ଦେହେ, ତଥାତ୍ମା ନୋପଲିପ୍ୟତେ । ୩୨ ।

ଅନ୍ୱୟଃ ।

ଯଥା ସର୍ବଗତଂ ଆକାଶଂ, ସୌକ୍ଷ୍ମ୍ୟାତ୍ ନ ଉପଲିପ୍ୟତେ, ତଥା ସର୍ବତ୍ର ଦେହେ ଅବସ୍ଥିତଃ ଆତ୍ମା, ନ ଉପଲିପ୍ୟତେ । ୩୨ ।

ଟୀକା ।

ଅତ୍ର ହେତୁଂ ସଦୃଷ୍ଟାନ୍ତମାହ, ଯଥେତି । ଯଥା ସର୍ବଗତଂ ପଙ୍କାଦିଷ୍ୱବସ୍ଥିତଂ ଆକାଶଂ ସୌକ୍ଷ୍ମ୍ୟାତ୍ ପଙ୍କାଦିଭିର୍ନୋପଲିପ୍ୟତେ, ତଥା ସର୍ବତ୍ର ଉତ୍ତମେ ମଧ୍ୟମେ ଅଧମେ ବା ଦେହେଽବସ୍ଥିତୋଽପ୍ୟାତ୍ମା ନୋପଲିପ୍ୟତେ ଦୈହିକୈର୍ଦୋଷଗୁଣୈର୍ନ ଯୁଜ୍ୟତ ଇତ୍ୟର୍ଥଃ । ୩୨ ।

ପଦବ୍ୟାଖ୍ୟା ।

ଯଥା—ଯେପରି, ସର୍ବଗତଂ—ସର୍ବବ୍ୟାପକ, ସୌକ୍ଷ୍ମ୍ୟାତ୍—ସୂକ୍ଷ୍ମ ହେବାରୁ, ଆକାଶଂ—ଗଗନ, ନ ଉପଲିପ୍ୟତେ—କୌଣସି ପଦାର୍ଥରେ ଉପଲିପ୍ତ (ସଂଲଗ୍ନ) ହୁଏ ନାହିଁ, ସର୍ବତ୍ର—ଉତ୍ତମ, ମଧ୍ୟମ ଓ ଅଧମ ସର୍ବ ପ୍ରକାର, ଅବସ୍ଥିତଂ—ସ୍ଥିତ, ଦେହେ—ଶରୀରରେ, ତଥାତ୍ମା—ସେହିପରି ଆତ୍ମା, ନ ଉପଲିପ୍ୟତେ—ଉପଲିପ୍ତ ହୁଅନ୍ତି ନାହିଁ । ୩୨ ।

ଅନୁବାଦ ।

ଯେପରି ସର୍ବବ୍ୟାପକ ଆକାଶ, ନିଃସଙ୍ଗ ହେବାରୁ କୌଣସି ପଦାର୍ଥରେ ଲିପ୍ତ ହୁଏ ନାହିଁ, ସେହିପରି ଆତ୍ମା, ସର୍ବ ପ୍ରକାର ଶରୀରରେ ଥିଲେସୁଦ୍ଧା, କାହିଁରେ ଲିପ୍ତ ହୁଅନ୍ତି ନାହିଁ । ୩୨ ।

ବିଶଦବ୍ୟାଖ୍ୟା ।

ଆକାଶ ସର୍ବବ୍ୟାପୀ, ତାହା ଜଳରେ, ପଙ୍କରେ ଓ ମୃତ୍ତିକାଦିରେ ଥିଲେହେଁ ସୁଦ୍ଧା, ଅସଙ୍ଗ ସ୍ୱଭାବ ହେତୁରୁ ସେହି ସବୁ ଜଳାଦି ପଦାର୍ଥରେ ଲିପ୍ତ ହୁଏ ନାହିଁ ଅର୍ଥାତ୍ ଜଳ ବା ପଙ୍କ, ଆକାଶ ଦେହରେ ଲାଗେ ନାହିଁ । ସେହିପରି ଆତ୍ମା, ଅସଙ୍ଗଭାବରେ ସର୍ବ ପ୍ରକାର ଦେହରେ ଅର୍ଥାତ୍ ଦେବତାଦି ଉତ୍ତମ ଶରୀର, ମନୁଷ୍ୟାଦି ମଧ୍ୟମ ଶରୀର ଓ ପଶୁ ପକ୍ଷ୍ୟାଦି ଅଧମ ଶରୀରରେ ଥିଲେ ସୁଦ୍ଧା, ଶରୀରକୃତ ଦୋଷ ବା ଗୁଣରେ ଲିପ୍ତ ହୁଅନ୍ତି ନାହିଁ । ୩୨ ।

Digitized by PPRACHIN, SOA

ଶ୍ଳୋକଃ ।

* ଯଥା ପ୍ରକାଶୟତ୍ୟେକଃ, କୃତ୍ସ୍ନଂ ଲୋକମିମଂ ରବିଃ ।
କ୍ଷେତ୍ରଂ କ୍ଷେତ୍ରୀ ତଥା କୃତ୍ସ୍ନଂ, ପ୍ରକାଶୟତି ଭାରତ । ୩୩ ।

ଅନ୍ୱୟଃ ।

ହେ ଭାରତ ! ଏକଃ ରବିଃ ଯଥା ଇମଂ କୃତ୍ସ୍ନଂ ଲୋକଂ ପ୍ରକାଶୟତି, କ୍ଷେତ୍ରୀ କୃତ୍ସ୍ନଂ କ୍ଷେତ୍ରଂ ତଥା ପ୍ରକାଶୟତି । ୩୩ ।

ଟୀକା ।

ଅସଙ୍ଗତ୍ୱାଲ୍ଲେପୋନାସ୍ତୀତ୍ୟାକାଶଦୃଷ୍ଟାନ୍ତେନ ଦର୍ଶିତଂ ପ୍ରକାଶକତ୍ୱାଚ୍ଚ ପ୍ରକାଶ୍ୟଧର୍ମୈର୍ନ ଯୁଜ୍ୟତ ଇତି ରବି ଦୃଷ୍ଟାନ୍ତେନାହ, ଯଥା ପ୍ରକାଶୟତୀତ । ସ୍ପଷ୍ଟୋଽର୍ଥଃ । ୩୩ ।

ପଦବ୍ୟାଖ୍ୟା ।

ଯଥା—ଯେପରି, ପ୍ରକାଶୟତି—ପ୍ରକାଶ କରନ୍ତି, ଏକଃ—ଏକ, କୃତ୍ସ୍ନଂ—ସମସ୍ତ, ଲୋକଂ ଇମଂ—ଏହି ଲୋକ ଅର୍ଥାତ୍ ଭୁବନକୁ, ରବିଃ—ସୂର୍ଯ୍ୟ, କ୍ଷେତ୍ରଂ—ଶରୀରକୁ, କ୍ଷେତ୍ରୀ—କ୍ଷେତ୍ରସ୍ୱାମୀ ଅର୍ଥାତ୍ ଆତ୍ମା, ତଥା—ସେହିପରି, କୃତ୍ସ୍ନଂ—ସମ୍ପୂର୍ଣ୍ଣ ପ୍ରକାଶୟତି—ପ୍ରକାଶ କରନ୍ତି, ଭାରତ—ହେ ଭରତବଂଶଜ ! । ୩୩ ।

ଅନୁବାଦ ।

ହେ ଭାରତ ! ଏକ ସୂର୍ଯ୍ୟ, ଯେପରି ଏହି ସମଗ୍ର ଭୁବନକୁ ପ୍ରକାଶ କରୁଅଛନ୍ତି, ସେହିପରି କ୍ଷେତ୍ରୀ (ଆତ୍ମା) ସମସ୍ତ କ୍ଷେତ୍ରକୁ ପ୍ରକାଶ କରୁଅଛନ୍ତି । ୩୩ ।

ବିଶଦବ୍ୟାଖ୍ୟା ।

ସୂର୍ଯ୍ୟ ଗୋଟିଏ ହେଲେ ସୁଦ୍ଧା, ଯେପରି ସମସ୍ତ ଭୁବନକୁ ପ୍ରକାଶିତ କରନ୍ତି, ଅଥଚ ଜଗତର ପାପ ପୁଣ୍ୟରେ ଲିପ୍ତ ନୁହନ୍ତି, ସେହିପରି କ୍ଷେତ୍ରମଧ୍ୟସ୍ଥ କ୍ଷେତ୍ରସ୍ୱାମୀ (ଆତ୍ମା) ସମସ୍ତ କ୍ଷେତ୍ରକୁ ଅର୍ଥାତ୍ ସମସ୍ତ ଶରୀରକୁ ପ୍ରକାଶିତ ଅର୍ଥାତ୍ ସଚେତନ କରନ୍ତି ।

ବେଦରେ ମଧ୍ୟ ପ୍ରମାଣ ଅଛି, ଯେ—"ସୂର୍ଯ୍ୟୋଯଥା ସର୍ବଲୋକସ୍ୟ ଚକ୍ଷୁର୍ନ ଲିପ୍ୟତେ ଚକ୍ଷୁଷୈର୍ବାହ୍ୟଦୋଷୈଃ । ଏକସ୍ତଥା ସର୍ବଭୂତାନ୍ତରାତ୍ମା ନ ଲିପ୍ୟତେ ଲୋକଦୁଃଖେନ ବାହ୍ୟଃ" ଅର୍ଥାତ୍ ସର୍ବଲୋକର ପ୍ରକାଶକ 'ସୂର୍ଯ୍ୟ', ଯେପରି ବାହ୍ୟପଦାର୍ଥର ଦୋଷରେ ଦୂଷିତ ହୁଅନ୍ତି ନାହିଁ, ସେହିପରି ସର୍ବ ପ୍ରାଣୀଙ୍କର ଅନ୍ତରରେ ସ୍ଥିତ, ଯେ 'ଆତ୍ମା', ସେ, ଶୋକ ଦୁଃଖାଦିରେ ଲିପ୍ତ ହୁଅନ୍ତି ନାହିଁ । ୩୩ ।

ଶ୍ଳୋକଃ ।

* କ୍ଷେତ୍ରକ୍ଷେତ୍ରଜ୍ଞୟୋରେବ,ମନ୍ତରଂ ଜ୍ଞାନଚକ୍ଷୁଷା ।
ଭୂତପ୍ରକୃତିମୋକ୍ଷଂ ଚ, ଯେ ବିଦୁର୍ଯାନ୍ତି ତେ ପରଂ । ୩୪ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗ-

Digitized by PPRACHIN, SOA

ଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସମ୍ବାଦେ ପ୍ରକୃତିପୁରୁଷବିବେକ-ଯୋଗୋନାମ ତ୍ରୟୋଦଶୋଽଧ୍ୟାୟଃ ।

---*---

### ଅନ୍ୱୟଃ ।

କ୍ଷେତ୍ରକ୍ଷେତ୍ରଜ୍ଞୟୋଃ ଏବ ଅନ୍ତରଂ ଚ ଭୂତପ୍ରକୃତିମୋକ୍ଷଂ ଜ୍ଞାନଚକ୍ଷୁଷା ଯେ ବିଦୁଃ, ତେ ପରଂ ଯାନ୍ତି । ୩୪ ।

ଇତି ଶ୍ରୀଭଗବଦ୍‌ଗୀତାସୁ ଅନ୍ୱୟେ ତ୍ରୟୋଦଶୋଽଧ୍ୟାୟଃ । ୧୩ ।

---

### ଟୀକା ।

ଅଧ୍ୟାୟାର୍ଥମୁପସଂହରତି । କ୍ଷେତ୍ରକ୍ଷେତ୍ରଜ୍ଞୟୋରିତି । ଏବମୁକ୍ତପ୍ରକାରେଣ କ୍ଷେତ୍ରକ୍ଷେତ୍ରଜ୍ଞୟୋରନ୍ତରଂ ଭେଦଂ ବିବେକଜ୍ଞାନଲକ୍ଷଣେନ ଚକ୍ଷୁଷା ଯେ ବିଦୁଃ, ତଥା ଯେୟମୁକ୍ତା ଭୂତାନାଂ ପ୍ରକୃତିଃ ତସ୍ୟାଃ ସକାଶାତ୍ ମୋକ୍ଷଂ ମୋକ୍ଷୋପାୟଂ ଧ୍ୟାନାଦିକଞ୍ଚ ଯେ ବିଦୁଃ, ତେ ପରଂ ପଦଂ ଯାନ୍ତି ।

ବିବିକ୍ତୌ ଯେନ ତତ୍ତ୍ୱେନ ମିଶ୍ରୌ ପ୍ରକୃତିପୂରୁଷୌ ।
ତଂ ବନ୍ଦେ ପରମାନନ୍ଦଂ ନନ୍ଦନନ୍ଦନମୀଶ୍ୱରଂ । ୩୪ ।

ଇତି ଶ୍ରୀଭଗବଦ୍‌ଗୀତାସୁ ସ୍ୱାମିକୃତଟୀକାୟାଂ ତ୍ରୟୋଦଶୋଽଧ୍ୟାୟଃ । ୧୩ ।

---

### ପଦବ୍ୟାଖ୍ୟା ।

କ୍ଷେତ୍ରକ୍ଷେତ୍ରଜ୍ଞୟୋଃ—କ୍ଷେତ୍ର ଓ କ୍ଷେତ୍ରଜ୍ଞ ଅର୍ଥାତ୍ ଶରୀର ଓ ଜୀବାତ୍ମା ଏ ଦୁହିଁଙ୍କର, ଏବ—ଏହିପରି, ଅନ୍ତରଂ—ଭେଦକୁ, ଜ୍ଞାନଚକ୍ଷୁଷା—ଜ୍ଞାନରୂପ ଚକ୍ଷୁଦ୍ୱାରା, ଭୂତପ୍ରକୃତିମୋକ୍ଷଂ ଚ—ଭୂତ ପ୍ରକୃତି ଅର୍ଥାତ୍ ଜଡସ୍ୱଭାବରୁ ମୋକ୍ଷ ହେବାର ଉପାୟକୁ ମଧ୍ୟ, ଯେ ବିଦୁଃ—ଯେ ଜାଣନ୍ତି, ଯାନ୍ତି ତେ ପରଂ—ସେ ପରମପଦକୁ ପ୍ରାପ୍ତ ହୁଅନ୍ତି । ୩୪ ।

ଇତି ଶ୍ରୀଭଗବଦ୍‌ଗୀତା-ପଦବ୍ୟାଖ୍ୟାୟାଂ ତ୍ରୟୋଦଶୋଽଧ୍ୟାୟଃ । ୧୩ ।

---

### ଅନୁବାଦ ।

କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କର ଏହି ପ୍ରକାର ପ୍ରଭେଦ ଓ ଭୂତପ୍ରକୃତିରୁ ମୁକ୍ତ ହେବାର ଉପାୟକୁ ଯେଉଁମାନେ ଜ୍ଞାନ ଚକ୍ଷୁଦ୍ୱାରା ଜାଣି ପାରନ୍ତି, ସେହିମାନେ ପରମପଦ ପ୍ରାପ୍ତ ହୁଅନ୍ତି । ୩୪ ।

ଇତି ଶ୍ରୀଭଗବଦ୍‌ଗୀତାର ଉତ୍କଳାନୁବାଦରେ ତ୍ରୟୋଦଶ ଅଧ୍ୟାୟ ସମାପ୍ତ । ୧୩ ।

---

### ତତ୍ତ୍ୱବ୍ୟାଖ୍ୟା ।

ଏ ଅଧ୍ୟାୟରେ କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କର ପ୍ରଭେଦ ବୁଝାଇ ଦିଆ ଯାଇଅଛି ଅର୍ଥାତ୍ କ୍ଷେତ୍ର ବା ଶରୀର ଜଡ, ପରିଚ୍ଛିନ୍ନ, କର୍ମାଦିସାଧକ ଓ ବିକାରଯୁକ୍ତ; କ୍ଷେତ୍ରଜ୍ଞ ବା ଆତ୍ମା, ଚେତନ, ଅପରିଚ୍ଛିନ୍ନ, ଅକର୍ତ୍ତା ଓ ଅଭୋକ୍ତା ଏବଂ ସର୍ବ ପ୍ରକାର ବିକାରଶୂନ୍ୟ ଇତ୍ୟାଦି କଥା ବୁଝାଇ ଦିଆ ଯାଇଅଛି । ଯେଉଁ ବ୍ୟକ୍ତି ଉକ୍ତ ପ୍ରଭେଦକୁ ଏବଂ ଭୂତପ୍ରକୃତିରୁ ଅର୍ଥାତ୍ ଜଡ ପ୍ରକୃତିରୁ କି ଉପାୟରେ ମୁକ୍ତି ପାଇବାକୁ ହେବ, ତାହାମଧ୍ୟ, ଜ୍ଞାନଦ୍ୱାରା ଜାଣି ପାରନ୍ତି, ସେମାନେ ବିଷ୍ଣୁଙ୍କର ପରମପଦ ଅର୍ଥାତ୍ ବ୍ରହ୍ମତ୍ୱ ଲାଭ କରନ୍ତି । ୩୪ ।

ଇତି ଶ୍ରୀଭଗବଦ୍‌ଗୀତାର ତତ୍ତ୍ୱବ୍ୟାଖ୍ୟାରେ ତ୍ରୟୋଦଶ ଅଧ୍ୟାୟ ସମାପ୍ତ । ୧୩ ।

Digitized by PPRACHIN, SOA

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ଚତୁର୍ଦ୍ଦଶୋଽଧ୍ୟାୟଃ ।

### ଗୁଣତ୍ରୟ-ବିଭାଗ-ଯୋଗଃ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—ପରଂ ଭୂୟଃ ପ୍ରବକ୍ଷ୍ୟାମି, ଜ୍ଞାନାନାଂ ଜ୍ଞାନମୁତ୍ତମଂ ।
ଯଜ୍‌ଜ୍ଞାତ୍ୱା ମୁନୟଃ ସର୍ବେ, ପରାଂ ସିଦ୍ଧିମିତୋ ଗତାଃ । ୧ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ଜ୍ଞାନାନାଂ ଉତ୍ତମଂ ପରଂ ଜ୍ଞାନଂ ଭୂୟଃ ପ୍ରବକ୍ଷ୍ୟାମି । ଯତ୍ ଜ୍ଞାତ୍ୱା ସର୍ବେ ମୁନୟଃ ଇତଃ ପରାଂ ସିଦ୍ଧିଂ ଗତାଃ । ୧ ।

ସ୍ୱାମିକୃତଟୀକା ।

ପୁଂପ୍ରକୃତ୍ୟୋଃ ସ୍ୱତନ୍ତ୍ରତ୍ୱଂ ବାରୟନ୍ ଗୁଣସଙ୍ଗତଃ ।
ପ୍ରାହ ସଂସାରବୈଚିତ୍ର୍ୟଂ ବିସ୍ତରେଣ ଚତୁର୍ଦ୍ଦଶେ ।

ଯାବତ୍ ସଞ୍ଜାୟତେ କିଞ୍ଚିତ୍ ସତ୍ତ୍ୱଂ ସ୍ଥାବରଜଙ୍ଗମଂ । କ୍ଷେତ୍ରକ୍ଷେତ୍ରଜ୍ଞସଂଯୋଗାତ୍ତଦ୍ୱିଦ୍ଧି ଇତ୍ୟୁକ୍ତଂ । ସ ଚ କ୍ଷେତ୍ରକ୍ଷେତ୍ରଜ୍ଞୟୋଃ ସଂଯୋଗୋ ନିରୀଶ୍ୱରସାଙ୍ଖ୍ୟାନାମିବ ନ ସ୍ୱାତନ୍ତ୍ର୍ୟେଣ କିନ୍ତ୍ୱୀଶ୍ୱରେଚ୍ଛୟୈବେତି କଥନପୂର୍ବ୍ବକଂ କାରଣଂ ଗୁଣସଙ୍ଗୋଽସ୍ୟ ସଦସଦ୍ୟୋନିଜନ୍ମସ୍ୱିତ୍ୟନେନୋକ୍ତଂ ସତ୍ତ୍ୱାଦିଗୁଣକୃତଂ ସଂସାରବୈଚିତ୍ର୍ୟଂ ପ୍ରପଞ୍ଚୟିଷ୍ୟନ୍ନେବମ୍ଭୂତଂ ବକ୍ଷ୍ୟମାଣମର୍ଥଂ ସ୍ତ୍ରୌତି, ପରଂ ଭୂୟ ଇତି ଦ୍ୱାଭ୍ୟାଂ । ପରଂ ପରମାତ୍ମନିଷ୍ଠଂ ଜ୍ଞାନଂ ପୂର୍ବୋକ୍ତମପି ଜ୍ଞାନମୁପଦେଶଂ ଭୂୟୋଽପି ଭୂୟଃ ପ୍ରକର୍ଷେଣ ବକ୍ଷ୍ୟାମି କଥମ୍ଭୂତଂ—ଜ୍ଞାନାନାଂ ତପଃକର୍ମ୍ମାଦିବିଷୟାଣାଂ ମଧ୍ୟେ ଉତ୍ତମଂ ମୋକ୍ଷହେତୁତ୍ୱାତ୍ । ତଦେବାହ, ଯଜ୍‌ଜ୍ଞାତ୍ୱା ମୁନୟୋ ମନନଶୀଳାଃ ସର୍ବେ ଇତୋ ଦେହବନ୍ଧନାତ୍ ପରାଂ ସିଦ୍ଧିଂ ମୋକ୍ଷଂ ପ୍ରାପ୍ତାଃ । ୧ ।

ପଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ଉବାଚ—ଶ୍ରୀଭଗବାନ୍ କହିଲେ, ପରଂ—ପରମାତ୍ମନିଷ୍ଠ, ଭୂୟଃ—ପୁନର୍ବାର, ପ୍ରବକ୍ଷ୍ୟାମି—କହିବା, ଜ୍ଞାନାନାଂ—ତପ, ଯଜ୍ଞ ଓ ଦାନାଦି ବିଷୟକ ଜ୍ଞାନମାନଙ୍କ ମଧ୍ୟରେ, ଜ୍ଞାନଂ ଉତ୍ତମଂ—ଉତ୍କୃଷ୍ଟ ଜ୍ଞାନକଥା, ଯତ୍ ଜ୍ଞାତ୍ୱା—ଯାହା ଜାଣି, ମୁନୟଃ ସର୍ବେ—ସମସ୍ତ ମୁନିମାନେ, ପରାଂ ସିଦ୍ଧିଂ—ଉତ୍କୃଷ୍ଟ ସିଦ୍ଧି—ଅର୍ଥାତ୍ ମୁକ୍ତିକୁ, ଇତଃ—ଏହି ଦେହବନ୍ଧନରୁ, ଗତାଃ—ପ୍ରାପ୍ତ ହୋଇଅଛନ୍ତି । ୧ ।

Digitized by PPRACHIN, SOA

### ଅନୁବାଦ ।

ସମସ୍ତ ଜ୍ଞାନ ମଧ୍ୟରେ ଉତ୍କୃଷ୍ଟ ପରମାତ୍ମବିଷୟ ଜ୍ଞାନ କଥା ପୁନର୍ବାର କହିବା । ଯାହା ଜାଣି, ସମସ୍ତ ମୁନିମାନେ ଏହି ସଂସାରରୁ (ଦେହବନ୍ଧନରୁ) ମୋକ୍ଷ ଲାଭ କରିଅଛନ୍ତି । । ୧ ।

### ବିଶଦବ୍ୟାଖ୍ୟା ।

ତ୍ରୟୋଦଶ ଅଧ୍ୟାୟର ୨୬ଶ ଶ୍ଳୋକରେ ଶ୍ରୀଭଗବାନ୍ କହିଥିଲେ, ଯେ—'ଯାହା କିଛି ସ୍ଥାବର ଓ ଜଙ୍ଗମ ପଦାର୍ଥ ଉତ୍ପନ୍ନ ହୁଏ, ତାହା ସବୁ କ୍ଷେତ୍ର ଓ କ୍ଷେତ୍ରଜ୍ଞ ଏହି ଦୁହିଙ୍କ ସଂଯୋଗରୁ ଉତ୍ପନ୍ନ ହୁଏ ବୋଲି ଜାଣ' । ଏଥିରେ ବାଳେ ଅର୍ଜ୍ଜୁନ ମନେ କରିବେ, ଯେ ସାଙ୍ଖ୍ୟବାଦମାନେ ପ୍ରକୃତି ଓ ପୁରୁଷଭିନ୍ନ, ଈଶ୍ୱର ମାନନ୍ତି ନାହିଁ, ଏଠାରେ ତ ଶ୍ରୀକୃଷ୍ଣ ସେହି ସାଙ୍ଖ୍ୟ ମତର ପୋଷକତା କଲେ ? ତାହା ନୁହେ । ଶ୍ରୀଭଗବାନ୍ ସାଙ୍ଖ୍ୟମତ ଖଣ୍ଡନ କରି କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କର, ଯେ ସଂଯୋଗ ସେ, କିପରି ସର୍ବଶକ୍ତିମାନ୍ ପରମେଶ୍ୱରଙ୍କର ଇଚ୍ଛାର ଅଧୀନ ଅଟେ ଏବଂ ପ୍ରାଣି ଜନ୍ମର ପ୍ରଧାନ କାରଣ, ଯେ ଗୁଣସଂସର୍ଗ, ସେହି ଗୁଣ କେତେ ପ୍ରକାର ଓ ତାହା କିପରି ଜୀବକୁ ବନ୍ଧନ କରେ ଇତ୍ୟାଦି ବିଷୟ ଏବଂ ପୂର୍ବ ଅଧ୍ୟାୟର ଶେଷଶ୍ଳୋକ ଲକ୍ଷିତ ଭୂତପ୍ରକୃତିରୁ କିପରି ମୋକ୍ଷ ପାଇବାକୁ ହୁଏ, ତାହା ବର୍ଣ୍ଣନ କରିବାକୁ ଚତୁର୍ଦ୍ଦଶ ଅଧ୍ୟାୟ ଆରମ୍ଭ କଲେ ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ଏଥିପୂର୍ବରୁ ଆମ୍ଭେ ତୁମ୍ଭକୁ ଅନେକବାର ଜ୍ଞାନର କଥା କହିଅଛୁଁ, ମାତ୍ର ତୁମ୍ଭର ଦୃଢ ପ୍ରତ୍ୟୟପାଇଁ ପୁନର୍ବାର ସେହି ଜ୍ଞାନକଥା କହିବୁଁ । ଯଜ୍ଞ, ତପସ୍ୟା ଓ ଦାନାଦି, ଜ୍ଞାନର ବହିରଙ୍ଗ ସାଧନ ଓ ଅମାନିତ୍ୱ* ଅଦମ୍ଭିତ୍ୱ† ଇତ୍ୟାଦି ଜ୍ଞାନର ଅନ୍ତରଙ୍ଗ ସାଧନ କଥା, ଏଥିପୂର୍ବେ (୧୩ଶ ଅଧ୍ୟାୟ ୭ମଠାରୁ ୧୧ଶ ଯାଏ ୫ ଶ୍ଳୋକରେ) ତୁମ୍ଭକୁ କହିଥିଲୁଁ ମାତ୍ର ଏଥର ଯେଉଁ ଜ୍ଞାନର କଥା ତୁମ୍ଭକୁ କହିବା, ତାହା ପରମାତ୍ମବିଷୟ ଅଟେ, ସୁତରାଂ ପୂର୍ବୋକ୍ତ ଦୁଇ ପ୍ରକାର ଜ୍ଞାନ ଅପେକ୍ଷା, ଏହା ଶ୍ରେଷ୍ଠ ଅଟେ । ଏହି ପରମାତ୍ମଜ୍ଞାନ ବିଷୟ ଜାଣିଥିବାରୁ ବଶିଷ୍ଠାଦି ମୁନିମାନେ ପରମପଦ ଲାଭ କରିଅଛନ୍ତି । ୧ ।

### ଶ୍ଳୋକଃ ।

ଇଦଂ ଜ୍ଞାନମୁପାଶ୍ରିତ୍ୟ, ମମ ସାଧର୍ମ୍ମ୍ୟମାଗତାଃ ।
ସର୍ଗେଽପି ନୋପଜାୟନ୍ତେ, ପ୍ରଳୟେ ନ ବ୍ୟଥନ୍ତି ଚ ॥ ୨ ॥

### ଅନ୍ୱୟଃ ।

ଇଦଂ ଜ୍ଞାନଂ ଉପାଶ୍ରିତ୍ୟ ମମ ସାଧର୍ମ୍ମ୍ୟଂ ଆଗତାଃ (ସନ୍ତଃ) ସର୍ଗେ ନ ଉପଜାୟନ୍ତେ, ଚ ପ୍ରଳୟେ ଅପି ନ ବ୍ୟଥନ୍ତି । ୨ ।

* ନମ୍ରତା ।
† ଦମ୍ଭଶୂନ୍ୟତା ।

## ଟୀକା ।

କିଞ୍ଚ ଇଦମିତି । ଇଦଂ ବକ୍ଷ୍ୟମାଣଂ ଜ୍ଞାନମୁପାଶ୍ରିତ୍ୟ ଜ୍ଞାନସାଧନମନୁଷ୍ଠାୟ ମମ ସାଧର୍ମ୍ମ୍ୟଂ ମଦ୍ରୂପତ୍ୱଂ ପ୍ରାପ୍ତାଃ ସନ୍ତଃ ସର୍ଗେଽପି ବ୍ରହ୍ମାଦିଷୂତ୍ପଦ୍ୟମାନେଷୁ ଅପି ନୋତ୍ପଦ୍ୟନ୍ତେ । ତଥା ପ୍ରଳୟେଽପି ନ ବ୍ୟଥନ୍ତି ପ୍ରଳୟଦୁଃଖଂ ନାନୁଭବନ୍ତି ପୁନରାବୃତ୍ତିରହିତା ଭବନ୍ତୀତ୍ୟର୍ଥଃ । ୨ ।

## ପଦବ୍ୟାଖ୍ୟା ।

ଇଦଂ ଜ୍ଞାନଂ—ଏହି ଜ୍ଞାନକୁ, ଉପାଶ୍ରିତ୍ୟ—ଆଶ୍ରୟ କଲେ, ମମ—ଆମ୍ଭର, ସାଧର୍ମ୍ମ୍ୟଂ—ସମାନ ଧର୍ମତା ଅର୍ଥାତ୍ ସମାନ ଗୁଣକୁ, ଆଗତାଃ—ପ୍ରାପ୍ତ ହୋଇ, ସର୍ଗେଽପି—ସୃଷ୍ଟି ସମୟରେ ମଧ, ନ ଉପଜାୟନ୍ତେ—ଜାତ ହୁଅନ୍ତି ନାହିଁ, ପ୍ରଳୟେ—ପ୍ରଳୟକାଳରେ, ନ ବ୍ୟଥନ୍ତି ଚ—ବ୍ୟଥା ପ୍ରାପ୍ତ ହୁଅନ୍ତି ନାହିଁ । ୨ ।

## ଅନୁବାଦ ।

ଏହି ଜ୍ଞାନକୁ ଆଶ୍ରୟ କଲେ, (ସାଧକ) ଆମ୍ଭ ସ୍ୱରୂପ ପ୍ରାପ୍ତ ହୋଇ ସୃଷ୍ଟି ସମୟରେ ଜାତ ବା ପ୍ରଳୟ ସମୟରେ ବ୍ୟଥିତ ହୁଅନ୍ତି ନାହିଁ । ୨ ।

## ବିଶଦବ୍ୟାଖ୍ୟା ।

ଆମ୍ଭେ ଯେଉଁ ପରମାତ୍ମତତ୍ତ୍ୱ ଜ୍ଞାନ କଥା କହିବୁଁ, ତାହା ଆଶ୍ରୟ କଲେ ଅର୍ଥାତ୍ ସେହି ପରମାତ୍ମତତ୍ତ୍ୱ ଜ୍ଞାନ ସାଧନ କଲେ, ସାଧକ ବ୍ୟକ୍ତି ଆମ୍ଭ ସ୍ୱରୂପ ପ୍ରାପ୍ତ ହୁଅନ୍ତି ଅର୍ଥାତ୍ ଆମ୍ଭଠାରେ ଯେତେଗୁଡ଼ିଏ ଅନାଦିତ୍ୱ ଓ ଅବିନାଶିତା ପ୍ରଭୃତି ଧର୍ମ (ଗୁଣ) ଅଛି, ସାଧକ ତାହା ପ୍ରାପ୍ତ ହୁଅନ୍ତି । ସଂକ୍ଷେପରେ କହିଲେ, ସାଧକ ଆମ୍ଭ ସହିତ ମିଶିଯାନ୍ତି । ସୁତରାଂ ତତ୍ପରେ ସେ ଆଉ ପୁନର୍ବାର ଜନ୍ମଗ୍ରହଣ କରନ୍ତି ନାହିଁ ବା ପ୍ରଳୟ ସମୟରେ ମୃତ୍ୟୁ ଯନ୍ତ୍ରଣା ରୂପ ବ୍ୟଥା ପ୍ରାପ୍ତ ହୁଅନ୍ତି ନାହିଁ ଅର୍ଥାତ୍ ତାଙ୍କର ଆଉ ପୁନର୍ଜନ୍ମ ହୁଏ ନାହିଁ । ୨ ।

## ଶ୍ଳୋକଃ ।

* ମମ ଯୋନିର୍ମହଦ୍ବ୍ରହ୍ମ, ତସ୍ମିନ୍ ଗର୍ଭଂ ଦଧାମ୍ୟହଂ ।
ସମ୍ଭବଃ ସର୍ବଭୂତାନାଂ, ତତୋ ଭବତି ଭାରତ । ୩ ।

## ଅନ୍ୱୟଃ ।

ହେ ଭାରତ ! ମହତ୍ ବ୍ରହ୍ମ ମମ ଯୋନିଃ । ତସ୍ମିନ୍ ଅହଂ ଗର୍ଭଂ ଦଧାମି ତତଃ ସର୍ବଭୂତାନାଂ ସମ୍ଭବଃ ଭବତି । ୩ ।

## ଟୀକା ।

ତଦେବଂ ପ୍ରଶଂସୟା ଶ୍ରୋତାରମଭିମୁଖୀକୃତ୍ୟ ପରମେଶ୍ୱରାଧୀନୟୋଃ ପ୍ରକୃତିପୁରୁଷୟୋଃ ସର୍ବଭୂତୋତ୍ପତ୍ତିଂ ପ୍ରତି ହେତୁତ୍ୱଂ ନ ତୁ ସ୍ୱତନ୍ତ୍ରୟୋରିତି ଏବମ୍ଭୂତମର୍ଥଂ କଥୟତି, ମମେତି । ଦେଶତଃ କାଳତଶ୍ଚାପରିଚ୍ଛିନ୍ନତ୍ୱାନ୍ମହତ୍ ବୃଂହଣତ୍ୱାତ୍ ସ୍ୱକାର୍ଯ୍ୟାଣାଂ ବୃଦ୍ଧିହେତୁତ୍ୱାଦ୍ବା ବ୍ରହ୍ମ ପ୍ରକୃତିସ୍ତଦେବ ମମ ପରମେଶ୍ୱରସ୍ୟ ଯୋନିର୍ଗର୍ଭାଧାନସ୍ଥାନଂ ତସ୍ମିନ୍ନହଂ ଗର୍ଭଂ ଜଗଦ୍ବିସ୍ତାରହେତୁଂ ଚିଦାଭାସଂ ଦଧାମି ନିକ୍ଷିପାମି ପ୍ରଳୟେ ମୟି ଲୀନଂ ସନ୍ତମବିଦ୍ୟାକାମକର୍ମାନୁଶୟବନ୍ତଂ କ୍ଷେତ୍ରଜ୍ଞଂ ସୃଷ୍ଟିସମୟେ ଭୋଗ୍ୟେନ କ୍ଷେତ୍ରେଣ ସଂଯୋଜୟାମି ଇତ୍ୟର୍ଥଃ, ତତୋ ଗର୍ଭାଧାନାତ୍ ସର୍ବଭୂତାନାଂ ବ୍ରହ୍ମାଦୀନାଂ ସମ୍ଭବ ଉତ୍ପତ୍ତିର୍ଭବତି । ୩ ।

## ପଦବ୍ୟାଖ୍ୟା ।

ମମ ଯୋନିଃ—ଆମ୍ଭର ବୀଜବପନସ୍ଥାନ, ମହତ୍ ବ୍ରହ୍ମ—ତ୍ରିଗୁଣମୟୀ ମାୟା (ଅର୍ଥାତ୍ ପ୍ରକୃତି), ତସ୍ମିନ୍—ସେହି ପ୍ରକୃ-



Digitized by PPRACHIN, SOA

ତରେ, ଗର୍ଭଂ—ଗର୍ଭକୁ, ଦଧାମି—ସ୍ଥାପନକରୁ, ଅହଂ—ଆମ୍ଭେ, ସମ୍ଭବଃ—ଉତ୍ପତ୍ତି, ସର୍ବଭୂତାନାଂ—ସମସ୍ତ ଭୂତଙ୍କର, ତତଃ—ତାହାଠାରୁ, ଭବତ—ହୁଏ, ଭାରତ—ହେ ଭରତବଂଶଜ ।। ୩ ।

ଅନୁବାଦ ।

ହେ ଭାରତ ! ମହତ୍ ବ୍ରହ୍ମ (ବିଶାଳ ପ୍ରକୃତି) ଆମ୍ଭର ଗର୍ଭାଧାନ ସ୍ଥାନ ଅଟେ, ଆମ୍ଭେ ତହିଁରେ ଗର୍ଭାଧାନ—ଅର୍ଥାତ୍ ବୀଜ ବପନ କରୁଁ, ସେହି ଗର୍ଭରୁ ସମସ୍ତ ପ୍ରାଣିଙ୍କର ଉତ୍ପତ୍ତି ହୁଏ । ୩ ।

ବିଶଦବ୍ୟାଖ୍ୟା ।

ଶ୍ରୀ ଭଗବାନ୍ କହିଲେ, ହେ ଭରତବଂଶଜ—ଅର୍ଜ୍ଜୁନ ! ଆମ୍ଭର ପ୍ରକୃତି, ସମସ୍ତ ଜଗତକୁ ଆବରଣ କରିଅଛି ବୋଲି, ଜଗତଅପେକ୍ଷା ବଡ଼, ସୁତରାଂ 'ମହତ୍', ଏବଂ ଜଗତର ସମସ୍ତ କାର୍ଯ୍ୟ, ସେହି ପ୍ରକୃତିର ଅଧୀନରେ ବୃଂହିତ ଅର୍ଥାତ୍ ବର୍ଦ୍ଧିତ ହୁଏ, ଏଣୁକରି ତାହାକୁ 'ବ୍ରହ୍ମ' ବୋଲାଯାଏ । ସେହି ମହତ୍ ବ୍ରହ୍ମରୂପିଣୀ—ତ୍ରିଗୁଣାତ୍ମିକା ଆମ୍ଭର ପ୍ରକୃତି, ଜଗତର ଗର୍ଭାଶୟ ସ୍ୱରୂପ । ସେଥିରେ ଆମ୍ଭେ ଜଗତବିସ୍ତାରର କାରଣସ୍ୱରୂପ, ସେ ଚିଦାଭାସ ଅର୍ଥାତ୍ ଜୀବର ପ୍ରଭବସ୍ୱରୂପ ବୀଜ, ତାହା ବପନକରୁଁ, ତହିଁରୁ ହିରଣ୍ୟଗର୍ଭାଦି ସମସ୍ତ ଜୀବ ଉତ୍ପନ୍ନ ହୁଅନ୍ତି ।

ଫଳକଥା ଏହି କି ଯେପରି କୌଣସି ସ୍ତ୍ରୀ, ପୁରୁଷ ସଂସର୍ଗ ବ୍ୟତିରେକେ ଗର୍ଭଧାରଣ କରିପାରେ ନାହିଁ, ସେହିପରି ଆମ୍ଭର ଚିଦାଭାସ, ଯେ କ୍ଷେତ୍ରଜ୍ଞ, ତାଙ୍କ ବ୍ୟତିରେକେ ତ୍ରିଗୁଣାତ୍ମିକା ପ୍ରକୃତି, ଜଗତ୍ ଉତ୍ପନ୍ନ କରିପାରେ ନାହିଁ ।

ପୂର୍ବ ଅଧ୍ୟାୟରେ କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କ ସଂଯୋଗରୁ ସମସ୍ତ ଭୂତ ଉତ୍ପନ୍ନ ହୁଏ ବୋଲି ଶ୍ରୀଭଗବାନ୍ କହିଥିଲେ, ଏଶ୍ଳୋକଦ୍ୱାରା ସେହି କ୍ଷେତ୍ର ଓ କ୍ଷେତ୍ରଜ୍ଞଙ୍କ ସଂଯୋଗ, ଯେ ଈଶ୍ୱର ଇଚ୍ଛାର ଅଧୀନ, ତାହା ବୁଝାଇ ଦେଲେ । ୩ ।

ଶ୍ଳୋକଃ ।

* ସର୍ବଯୋନିଷୁ କୌନ୍ତେୟ, ମୂର୍ତ୍ତୟଃ ସମ୍ଭବନ୍ତି ଯାଃ ।
ତାସାଂ ବ୍ରହ୍ମ ମହଦ୍ୟୋନି, ରହଂ ବୀଜପ୍ରଦଃ ପିତା । ୪ ।

ଅନ୍ୱୟଃ ।

ହେ କୌନ୍ତେୟ ! ସର୍ବଯୋନିଷୁ ଯାଃ ମୂର୍ତ୍ତୟଃ ସମ୍ଭବନ୍ତି, ମହତ୍ ବ୍ରହ୍ମ ତାସାଂ ଯୋନିଃ, ଅହଂ ବୀଜପ୍ରଦଃ ପିତା ।୪।

ଟୀକା ।

ନ କେବଳଂ ସୃଷ୍ଟ୍ୟୁପକ୍ରମ ଏବ ମଦଧିଷ୍ଠାଭ୍ୟାଂ ପ୍ରକୃତିପୁରୁଷାଭ୍ୟାଂ, ଅୟଂ ଭୂତୋତ୍ପତ୍ତିପ୍ରକାରୋଽପି ତୁ ସର୍ବଦୈବେତ୍ୟାହ, ସର୍ବେତି । ସର୍ବାସୁ ଯୋନିଷୁ ମନୁଷ୍ୟାଦ୍ୟାସୁ ଯା ମୂର୍ତ୍ତୟଃ ସ୍ଥାବରଜଙ୍ଗମାତ୍ମିକା ଉତ୍ପଦ୍ୟନ୍ତେ ତାସାଂ ମୂର୍ତ୍ତୀନାଂ ମହଦ୍‌ବ୍ରହ୍ମ ପ୍ରକୃତିର୍ଯୋନିର୍ମାତୃସ୍ଥାନୀୟା ଅହଂ ଚ ବୀଜପ୍ରଦଃ ପିତା—ଗର୍ଭାଧାନକର୍ତ୍ତା ପିତା । ୪ ।

ପଦବ୍ୟାଖ୍ୟା ।

ସର୍ବଯୋନିଷୁ—ମନୁଷ୍ୟାଦି ସମସ୍ତ ଯୋନିରେ, କୌନ୍ତେୟ—ହେ କୁନ୍ତୀପୁତ୍ର !, ମୂର୍ତ୍ତୟଃ—ମୂର୍ତ୍ତିମାନେ, ସମ୍ଭବନ୍ତି ଯାଃ—ଯେ ଉତ୍ପନ୍ନ ହୁଅନ୍ତି, ତାସାଂ—ସେମାନଙ୍କର, ବ୍ରହ୍ମ ମହତ୍—ପ୍ରକୃତି, ଯୋନିଃ—ମାତୃସ୍ୱରୂପା, ଅହଂ—ଆମ୍ଭେ, ବୀଜପ୍ରଦଃ ପିତା—ବୀଜଦାତା ପିତା । ୪ ।

Digitized by PPRACHIN, SOA

ଅନୁବାଦ ।

ହେ କୌନ୍ତେୟ ! ମନୁଷ୍ୟାଦି ସମସ୍ତ ଯୋନିରେ ଯେଉଁସବୁ ମୂର୍ତ୍ତି ଉତ୍ପନ୍ନ ହୁଅନ୍ତି, ସେମାନଙ୍କର ମହତ୍ ବ୍ରହ୍ମ (ପ୍ରକୃତି) ମାତା ଓ ଆମ୍ଭେ ବୀଜଦାତା ପିତା ଅଟୁଁ । ୪ ।

ତାତ୍ପର୍ଯ୍ୟବ୍ୟାଖ୍ୟା ।

ଶ୍ରୀ ଭଗବାନ୍ କହିଲେ, ହେ କୁନ୍ତୀପୁତ୍ର—ଅର୍ଜ୍ଜୁନ ! ଦେବତାଦି ଉତ୍ତମ ଯୋନି ଓ ମନୁଷ୍ୟାଦି ମଧ୍ୟମ ଯୋନି ଏବଂ ପଶୁପକ୍ଷ୍ୟାଦି ଅଧମଯୋନି ଅର୍ଥାତ୍ ଯେ କୌଣସି ପ୍ରକାର ଯୋନିରେ ଜୀବ ଉତ୍ପନ୍ନ ହେଉ ପଛକେ, ପ୍ରକୃତି ସେହି ଜୀବର ମାତାସ୍ୱରୂପା ଓ ଆମ୍ଭେ ସେହି ଜୀବର ବୀର୍ଯ୍ୟଦାତା ପିତାସ୍ୱରୂପ ଅଟୁଁ । ଅର୍ଥାତ୍ ଆମ୍ଭର ଚିଦାଭାସ ରୂପ ବୀଜ ବ୍ୟତିରେକେ ପ୍ରକୃତିର ସାଧ୍ୟ ନାହିଁ, ଯେ ସେ, କୌଣସି ପ୍ରକାର ଜୀବ ଉତ୍ପନ୍ନ କରି ପାରିବ । ୪ ।

ଶ୍ଲୋକଃ ।

ସତ୍ତ୍ୱଂ ରଜସ୍ତମ ଇତି ଗୁଣାଃ ପ୍ରକୃତିସମ୍ଭବାଃ ।
ନିବଧ୍ନନ୍ତି ମହାବାହୋ ଦେହେ ଦେହିନମବ୍ୟୟମ୍ । ୫ ।

ଅନ୍ୱୟଃ ।

ହେ ମହାବାହୋ ! ସତ୍ତ୍ୱଂ, ରଜଃ, ତମଃ ଇତି ପ୍ରକୃତିସମ୍ଭବାଃ ଗୁଣାଃ ଦେହେ ଅବ୍ୟୟଂ ଦେହିନଂ ନିବଧ୍ନନ୍ତି । ୫ ।

ଟୀକା ।

ତଦେବଂ ପରମେଶ୍ୱରାଧୀନାଭ୍ୟାଂ ପ୍ରକୃତିପୁରୁଷାଭ୍ୟାଂ ସର୍ବଭୂତୋତ୍ପତ୍ତିଂ ନିରୂପ୍ୟେଦାନୀଂ ପ୍ରକୃତିସଙ୍ଗେନ ପୁରୁଷସ୍ୟ ସଂସାରଂ ପ୍ରପଞ୍ଚୟତି, ସତ୍ତ୍ୱମିତ୍ୟାଦିଚତୁର୍ଦ୍ଦଶଭିଃ । ସତ୍ତ୍ୱଂ ରଜଃ ତମ ଇତ୍ୟେବଂ ସଂଜ୍ଞକାସ୍ତ୍ରୟୋଗୁଣାଃ ପ୍ରକୃତିସମ୍ଭବାଃ-ପ୍ରକୃତେଃ ସମ୍ଭବା—ଗୁଣଭେଦେଶାଂ ତେ ତଯୋର୍ମ୍ମାଃ ଗୁଣସାମ୍ୟଂ ପ୍ରକୃତିଃ ତସ୍ୟାଃ ସକାଶାତ୍ ପୃଥକ୍ତ୍ୱେନାଭିବ୍ୟକ୍ତାଃ ସନ୍ତଃ ପ୍ରକୃତିକାର୍ଯ୍ୟେ ଦେହେ ତାଦାତ୍ମ୍ୟେନ ସ୍ଥିତଂ ଦେହିନଂ ତଦଂଶଂ ବସ୍ତୁତୋଽବ୍ୟୟଂ ନିର୍ବ୍ବିକାରମେବ ସନ୍ତଂ ନିବଧ୍ନନ୍ତି ସ୍ୱକାର୍ଯ୍ୟୈଃ ସୁଖଦୁଃଖମୋହାଦିଭିଃ ସଂଯୋଜୟନ୍ତୀତ୍ୟର୍ଥଃ । ୫ ।

ପଦବ୍ୟାଖ୍ୟା ।

ସତ୍ତ୍ୱଂ—ସତ୍ତ୍ୱଗୁଣ, ରଜଃ—ରଜୋଗୁଣ, ତମଃ—ତମୋଗୁଣ, ଇତି ଗୁଣାଃ—ଏହି ତିନିଗୁଣ, ପ୍ରକୃତିସମ୍ଭବାଃ—ମାୟାରୁ ଉତ୍ପନ୍ନ, ନିବଧ୍ନନ୍ତି—ବନ୍ଧନ କରନ୍ତି, ମହାବାହୋ—ହେ ଅର୍ଜ୍ଜୁନ !, ଦେହେ—ଶରୀରରେ, ଦେହିନଂ—ଜୀବାତ୍ମାକୁ, ଅବ୍ୟୟଂ—ନିର୍ବ୍ବିକାର ବା ଅବିନାଶୀ । ୫ ।

ଅନୁବାଦ ।

ହେ ମହାବାହୋ ! ପ୍ରକୃତିରୁ ଜାତ ସତ୍ତ୍ୱ, ରଜ ଓ ତମ ଏହି ଗୁଣତ୍ରୟ, ଅବିନାଶୀ ଜୀବକୁ ଦେହରେ ବନ୍ଧନ କରନ୍ତି । ୫ ।

ତାତ୍ପର୍ଯ୍ୟବ୍ୟାଖ୍ୟା ।

ସତ୍ତ୍ୱ, ରଜଃ ଓ ତମ ଏହି ତିନି ଗୁଣର ସାମ୍ୟାବସ୍ଥାକୁ ପ୍ରକୃତି ବୋଲାଯାଏ । ଏହି ଗୁଣତ୍ରୟର ବୈଷମ୍ୟ ହେଲେ ଅର୍ଥାତ୍ କୌଣସି ଏକ ଗୁଣର ଆଧିକ୍ୟ ହେଲେ, ସେହି ତତ୍ତ୍ୱଗୁଣ, ପ୍ରକୃତିକୁ ସ୍ୱତନ୍ତ୍ରରୂପେ ବାହାରି ହୁଏ, ଗୁଣତ୍ରୟ ଏହିପରି ଭିନ୍ନ ଭିନ୍ନ ହୋଇ ପ୍ରକୃତିରୁ

ଉତ୍ପନ୍ନ ହୁଅନ୍ତି । ପ୍ରକୃତିରୁ ସ୍ୱଭାବତଃ ପ୍ରକାଶିତ ସେହି ଗୁଣତ୍ରୟ, ନିର୍ବିକାର ଓ ଅବିନାଶୀ ଜୀବାତ୍ମାଙ୍କୁ ଦେହରେ ବନ୍ଧନ କରନ୍ତି ଅର୍ଥାତ୍ ଅମୃତର ଚିତ୍ ଅଂଶ, ସେହି ପୂର୍ବୋକ୍ତ ତ୍ରିଗୁଣ ସହିତ ମିଳିତ ହେଲେ, ଦେହର ସହିତ ତାଙ୍କର ଅଭେଦଭାବ ଅଧ୍ୟାସିତ (ଭ୍ରମରେ ଆରୋପିତ) ହୁଏ । ସୁତରାଂ ସେ, ଶୋକ ମୋହାଦି ପାଶରେ ଆବଦ୍ଧ ହେଲାପରି ଜଣା ଯାଆନ୍ତି । ଯେପରି କୌଣସି ପାତ୍ରରେ ଜଳ ରଖି ତହିଁରେ ସୂର୍ଯ୍ୟର ପ୍ରତିବିମ୍ବ ପକାଇଲେ, ଜଳରେ ସୂର୍ଯ୍ୟ ଥିବାର ବୋଧ ହୁଏ ଓ ଜଳର କମ୍ପନଦ୍ୱାରା ପ୍ରତିବିମ୍ବର କମ୍ପନ ହେବାରୁ ସୂର୍ଯ୍ୟ କମ୍ପିତ ହେଉଅଛନ୍ତି ବୋଲି ପ୍ରତୀତ ହୁଏ, କିନ୍ତୁ ବାସ୍ତବରେ ସୂର୍ଯ୍ୟ କମ୍ପିତ ହେଉ ନ ଥାନ୍ତି, ସେହିପରି, ପ୍ରକୃତରେ ବିକାରଶୂନ୍ୟ ଜୀବାତ୍ମାଙ୍କର ସତ୍ତ୍ୱାଦି ଗୁଣର ସହିତ ସଂଯୋଗ ହେବାରୁ, ପ୍ରକୃତିର କାର୍ଯ୍ୟ, ଯେ ଦେହ, ତହିଁରେ ଜୀବାତ୍ମା ଆବଦ୍ଧ ହେଲାପରି ବୋଧ ହୁଏ ଅର୍ଥାତ୍ ଜୀବାତ୍ମା ଦେହର ପରିବର୍ତ୍ତନ ଅନୁସାରେ କୃଶ ବା ସ୍ଥୂଳ ଅଥବା ସୁଖୀ ବା ଦୁଃଖୀ ବୋଲି ଲୋକ ଦୃଷ୍ଟିରେ ପ୍ରତୀତ ହୁଅନ୍ତି । କିନ୍ତୁ ବାସ୍ତବରେ ସେ ଅସଙ୍ଗ ଓ ନିର୍ଲିପ୍ତ ଅଟନ୍ତି । ୫ ।

ଶ୍ଳୋକଃ ।

॥ ତତ୍ର ସତ୍ତ୍ୱଂ ନିର୍ମଳତ୍ୱାତ୍, ପ୍ରକାଶକମନାମୟଂ ।
ସୁଖସଙ୍ଗେନ ବଧ୍ନାତି, ଜ୍ଞାନସଙ୍ଗେନ ଚାନଘ । ୬ ।

ଅନ୍ୱୟଃ ।

ହେ-ଅନଘ ! ତତ୍ର ନିର୍ମଳତ୍ୱାତ୍ ପ୍ରକାଶକଂ ଅନାମୟଂ ସତ୍ତ୍ୱଂ ସୁଖସଙ୍ଗେନ ଚ ଜ୍ଞାନସଙ୍ଗେନ ବଧ୍ନାତି । ୬ ।

ଟୀକା ।

ତତ୍ର ସତ୍ତ୍ୱସ୍ୟ ଲକ୍ଷଣଂ ବନ୍ଧକତ୍ୱପ୍ରକାରଞ୍ଚାହ,ତତ୍ରେତି । ତତ୍ର ତେଷାଂ ଗୁଣାନାଂ ମଧ୍ୟେ ସତ୍ତ୍ୱଂ ନିର୍ମଳତ୍ୱାତ୍ ସ୍ୱଚ୍ଛତ୍ୱାତ୍ ସ୍ଫଟିକମଣିରିବ ପ୍ରକାଶକଂ ଭାସ୍ୱରଂ ଅନାମୟଂ ଚ ନିରୁପଦ୍ରବ ଶାନ୍ତମିତ୍ୟର୍ଥଃ, ଅତଃ ଶାନ୍ତତ୍ୱାତ୍ ସ୍ୱକାର୍ଯ୍ୟେଣ ସୁଖେନ ଯଃ ସଙ୍ଗସ୍ତେନ ବଧ୍ନାତି, ପ୍ରକାଶକତ୍ୱାଚ୍ଚ ସ୍ୱକାର୍ଯ୍ୟେଣ ଜ୍ଞାନେନ ଯଃ ସଙ୍ଗସ୍ତେନ ଚ ବଧ୍ନାତି । ହେ ଅନଘ—ଅପାପ ! ଅହଂ ସୁଖୀ ଜ୍ଞାନୀଚେତି ମନୋଧର୍ମାଂସ୍ତଦଭିମାନିନ କ୍ଷେତ୍ରଜ୍ଞେ ସଂଯୋଜୟତୀତ୍ୟର୍ଥଃ । ୬ ।

ପଦବ୍ୟାଖ୍ୟା ।

ତତ୍ର—ସେହି ତିନି ଗୁଣ ମଧ୍ୟରେ, ସତ୍ତ୍ୱଂ—ସତ୍ତ୍ୱଗୁଣ, ନିର୍ମଳତ୍ୱାତ୍—ନିର୍ମଳ ବୋଲି, ପ୍ରକାଶକଂ—ପ୍ରକାଶକାରୀ, ଅନାମୟଂ—ଉପଦ୍ରବ ରହିତ ଅର୍ଥାତ୍ ଶାନ୍ତ, ସୁଖସଙ୍ଗେନ—ସୁଖ ଆସକ୍ତିରେ, ବଧ୍ନାତି—ଆବଦ୍ଧ କରେ, ଜ୍ଞାନସଙ୍ଗେନ ଚ—ଜ୍ଞାନ ଅଭିଳାଷରେ ମଧ୍ୟ, ଅନଘ—ହେ ପାପରହିତ ଅର୍ଜ୍ଜୁନ !, ୬ ।

ଅନୁବାଦ ।

ହେ ନିଷ୍ପାପ ଅର୍ଜ୍ଜୁନ ! ସେହି ଗୁଣମାନଙ୍କ ମଧ୍ୟରେ ନିର୍ମଳତ୍ୱ ହେତୁରୁ ପ୍ରକାଶକ ଓ ଉପଦ୍ରବଶୂନ୍ୟ ସତ୍ତ୍ୱଗୁଣ (ଜୀବାତ୍ମାଙ୍କୁ) ସୁଖ ଓ ଜ୍ଞାନ ଇଚ୍ଛାରେ ଆବଦ୍ଧ କରେ । ୬ ।

ବିଶଦବ୍ୟାଖ୍ୟା ।

ସତ୍ତ୍ୱ, ରଜଃ ଓ ତମଃ ଏହି ତିନି ଗୁଣ ମଧ୍ୟରେ ସତ୍ତ୍ୱଗୁଣ ନିର୍ମଳ ଅର୍ଥାତ୍ ସ୍ୱଚ୍ଛ ଅଟେ, ସୁତରାଂ ତାହା ପ୍ରକାଶକ ଅର୍ଥାତ୍ ମାୟାର ଆବରଣଶକ୍ତି ଭେଦ କରି ପରମାତ୍ମାଙ୍କର ଜ୍ୟୋତି

Digitized by PPRACHIN, SOA

ପ୍ରକାଶ କରି ପାରେ ଏବଂ ତାହା ଉପଦ୍ରବଶୂନ୍ୟ ଅର୍ଥାତ୍ ଶାନ୍ତ ଅଟେ । ସେହି ସତ୍ତ୍ୱଗୁଣ, ଜୀବାତ୍ମାଙ୍କୁ ସୁଖସଙ୍ଗ ଓ ଜ୍ଞାନସଙ୍ଗରେ ଆବଦ୍ଧ କରି ରଖେ । ଏସ୍ଥଳରେ ସୁଖ ଓ ଜ୍ଞାନ ଏହି ଦୁଇ ଶବ୍ଦଦ୍ୱାରା ଅନ୍ତଃକରଣର ପରିଣାମ ବିଶେଷରୂପ, ଯେ ସୁଖ ଓ ଜ୍ଞାନ, ତାହାହିଁ ବୁଝା ଯାଇଅଛି, ପରମାନନ୍ଦ ସୁଖ ବା ଆତ୍ମଜ୍ଞାନରୂପ ଜ୍ଞାନର କଥା ବୁଝା ଯାଇ ନାହିଁ । ପୂର୍ବେ (ଇଚ୍ଛା ଦ୍ୱେଷଃ ସୁଖଂ ଦୁଃଖଂ ସଙ୍ଘାତଶ୍ଚେତନା ଧୃତିଃ) ଇତ୍ୟାଦି ବଚନରେ ଏହି ସୁଖ ଓ ଚେତନା ଅର୍ଥାତ୍ ଜ୍ଞାନର କଥା କୁହାଯାଇ ଦିଆ ଯାଇଅଛି । ଇଚ୍ଛା ଦ୍ୱେଷାଦି ପରି ଏହି ସୁଖ ଓ ଜ୍ଞାନ, କ୍ଷେତ୍ରର ଧର୍ମ ଅଟନ୍ତି । ଏହି ସୁଖ ଓ ଜ୍ଞାନର, ଆତ୍ମା ସହିତ ଅଧ୍ୟାସ ଅର୍ଥାତ୍ ମାୟାକଳ୍ପିତ ଅଭେଦ ହେତୁରୁ ଲୋକଦୃଷ୍ଟିରେ ଜୀବାତ୍ମା ଆପଣାକୁ ସୁଖୀ ଓ ଜ୍ଞାତା ବୋଲି ଜାଣନ୍ତି । ୬ ।

ଶ୍ଳୋକଃ ।

ରଜୋ ରାଗାତ୍ମକଂ ବିଦ୍ଧି, ତୃଷ୍ଣାସଙ୍ଗସମୁଦ୍ଭବଂ ।
ତନ୍ନିବଧ୍ନାତି କୌନ୍ତେୟ, କର୍ମସଙ୍ଗେନ ଦେହିନଂ । ୭ ।

ଅନ୍ୱୟଃ ।

ହେ କୌନ୍ତେୟ ! ତୃଷ୍ଣାସଙ୍ଗସମୁଦ୍ଭବଂ ରଜଃ ରାଗାତ୍ମକଂ ବିଦ୍ଧି । ତତ୍ କର୍ମସଙ୍ଗେନ ଦେହିନଂ ନିବଧ୍ନାତି । ୭ ।

ଟୀକା ।

ରଜସୋଲକ୍ଷଣଂ ବନ୍ଧକତ୍ୱଂ ଚାହ । ରଜ ଇତି । ରଜଃସଂଜ୍ଞକଂ ଗୁଣଂ ରାଗାତ୍ମକମନୁରଞ୍ଜନରୂପଂ ବିଦ୍ଧି, ଅତଏବ ତୃଷ୍ଣାସଙ୍ଗସମୁଦ୍ଭବଂ ତୃଷ୍ଣା ଅପ୍ରାପ୍ତାଭିଲାଷଃ, ସଙ୍ଗଃ ପ୍ରାପ୍ତେଽର୍ଥେ ପ୍ରୀତିଃ ବିଶେଷେଣାସକ୍ତିସ୍ତୟୋସ୍ତୃଷ୍ଣାସଙ୍ଗୟୋଃ ସମୁଦ୍ଭବୋ-ଯସ୍ମାତ୍ ତଦ୍ରଜୋ ଦେହିନଂ ଦୃଷ୍ଟାଦୃଷ୍ଟାର୍ଥେଷୁ କର୍ମସୁ ସଙ୍ଗେନାସକ୍ତ୍ୟା ନିତରାଂ ବଧ୍ନାତି, ତୃଷ୍ଣାସଙ୍ଗାଭ୍ୟାଂ ହି କର୍ମସ୍ୱାସକ୍ତି-ର୍ଭବତି ଇତ୍ୟର୍ଥଃ । ୭ ।

ପଦବ୍ୟାଖ୍ୟା ।

ରଜଃ—ରଜୋଗୁଣକୁ, ରାଗାତ୍ମକଂ—ଅନୁରାଗସ୍ୱରୂପ, ବିଦ୍ଧି—ଜାଣ, ତୃଷ୍ଣାସଙ୍ଗସମୁଦ୍ଭବଂ—ଅପ୍ରାପ୍ତ ପଦାର୍ଥରେ ଇଚ୍ଛା ଏବଂ ପ୍ରାପ୍ତ ପଦାର୍ଥରେ ବିଶେଷ ପ୍ରୀତିଜନକ, ତତ୍—ସେହି ରଜୋଗୁଣ, ନିବଧ୍ନାତି—ବନ୍ଧନ କରେ, କୌନ୍ତେୟ—ହେ କୁନ୍ତୀପୁତ୍ର !, କର୍ମସଙ୍ଗେନ—କର୍ମ ଫଳର ଆସକ୍ତିରେ, ଦେହିନଂ—ଦେହଧାରୀ ଜୀବାତ୍ମାଙ୍କୁ । ୭ ।

ଅନୁବାଦ ।

ହେ କୌନ୍ତେୟ ! ତୃଷ୍ଣା ଓ ଆସକ୍ତିର ଉତ୍ପାଦକ ରଜୋଗୁଣକୁ ଅନୁରାଗସ୍ୱରୂପ ବୋଲି ଜାଣ । ତାହା କର୍ମାସକ୍ତିଦ୍ୱାରା ଜୀବାତ୍ମାଙ୍କୁ ବନ୍ଧନ କରେ । ୭ ।

ବିଶଦବ୍ୟାଖ୍ୟା ।

ଯେଉଁ ପଦାର୍ଥ ଆପଣାର ନାହିଁ, ତାହା ପାଇବା ପାଇଁ ମନରେ ଯେଉଁ ଅତିବାଞ୍ଛା ଜନ୍ମେ, ତାକୁ ତୃଷ୍ଣା ବୋଲାଯାଏ, ଏବଂ ଆପଣାର ଥିବା ପଦାର୍ଥ ପ୍ରତି ଯେଉଁ ବିଶେଷ ପ୍ରୀତି ଜାତ ହୁଏ, ତାହାକୁ ଆସଙ୍ଗ ଅର୍ଥାତ୍ ଆସକ୍ତି ବୋଲାଯାଏ । ରଜୋଗୁଣ, ସେହି ତୃଷ୍ଣା ଓ ଆସକ୍ତିର ଉତ୍ପାଦକ ଅଟେ, ଅତଏବ ତାହା ଅନୁରାଗାତ୍ମକ, ଯେହେତୁ ଅନୁରାଗ ବା ରଙ୍ଗ ରଜୋଗୁଣର ଲକ୍ଷଣ ଅଟେ । ଅଜ୍ଞାନ ଆବୃତ ଜୀବ, ଅପ୍ରାପ୍ତ ପଦାର୍ଥ ପାଇବା ଓ ପ୍ରାପ୍ତ ପଦାର୍ଥ

ତ୍ୟାଗ ନ କରିବାକୁ ନାନା ପ୍ରକାର କର୍ମରେ ଆସକ୍ତ ହୁଏ । ସୁତରାଂ ରଜୋଗୁଣ, ସେହି କର୍ମାସକ୍ତିଦ୍ୱାରା ଜୀବାତ୍ମାଙ୍କୁ ବନ୍ଧନ କରେ ॥୭ ।

ଶ୍ଳୋକଃ ।

* ତମସ୍ତ୍ୱଜ୍ଞାନଜଂ ବିଦ୍ଧି, ମୋହନଂ ସର୍ବଦେହିନାଂ ।
ପ୍ରମାଦାଲସ୍ୟନିଦ୍ରାଭି, ସ୍ତନ୍ନିବଧ୍ନାତି ଭାରତ । ୮ ।

ଅନ୍ୱୟଃ ।

ହେ ଭାରତ ! ସର୍ବଦେହିନାଂ ମୋହନଂ ତମଃ ତୁ ଅଜ୍ଞାନଜଂ ବିଦ୍ଧି । ତତ୍ ପ୍ରମାଦାଲସ୍ୟନିଦ୍ରାଭିଃ ନିବଧ୍ନାତି । ୮

ଟୀକା ।

ତମସୋଲକ୍ଷଣଂ ବିବକ୍ଷୁ ଶୃଣୁ ତମ ଇତି । ତମସ୍ତ୍ୱଜ୍ଞାନାତ୍ ଜାତଂ ଆବରଣଶକ୍ତିପ୍ରଧାନାତ୍ ପ୍ରକୃତ୍ୟଂଶାଦୁଦ୍ଭୂତଂ ବିଦ୍ଧୀତ୍ୟର୍ଥଃ । ଅତଃ ସର୍ବେଷାଂ ଦେହିନାଂ ମୋହନଂ ଭ୍ରାନ୍ତିଜନକଂ ଅତଏବ ପ୍ରମାଦେନାଲସ୍ୟେନ ନିଦ୍ରୟା ଚ ତଦ୍ଦେହିନଂ ନିବଧ୍ନାତି । ଅତ୍ର ପ୍ରମାଦୋଽବଧାନଂ ଅଲସ୍ୟମନୁଦ୍ୟମଃ, ନିଦ୍ରା ଚିତ୍ତସ୍ୟାବସାଦଃ—ଇତ୍ୟର୍ଥଃ । ୮ ।

ପଦବ୍ୟାଖ୍ୟା ।

ତମସ୍ତୁ—ତମୋଗୁଣକୁ, ଅଜ୍ଞାନଜଂ ବିଦ୍ଧି—ଅଜ୍ଞାନରୁ ଜାତବୋଲି ଜାଣ, ମୋହନଂ ସର୍ବଦେହିନାଂ—ସମସ୍ତ ପ୍ରାଣୀଙ୍କର ମୋହଜନକ, ପ୍ରମାଦାଲସ୍ୟନିଦ୍ରାଭିଃ—ଅସାବଧାନତା, ଆଳସ୍ୟ ଓ ନିଦ୍ରାଦ୍ୱାରା, ତତ୍—ସେହି ତମୋଗୁଣ ନିବଧ୍ନାତି—ଜୀବାତ୍ମାଙ୍କୁ ବନ୍ଧନ କରେ, ଭାରତ—ହେ ଭରତବଂଶଜ । ୮ ।

ଅନୁବାଦ ।

ହେ ଭାରତ ! ସମସ୍ତ ପ୍ରାଣୀମାନଙ୍କର ମୋହଜନକ 'ତମୋଗୁଣ' ଅଜ୍ଞାନରୁ ଜାତ ବୋଲି ଜାଣ । ସେହି ତମୋଗୁଣ, ପ୍ରମାଦ ଆଳସ୍ୟ ଓ ନିଦ୍ରାଦ୍ୱାରା ଜୀବାତ୍ମାଙ୍କୁ ବନ୍ଧନ କରେ । ୮ ।

ବିଶଦବ୍ୟାଖ୍ୟା ।

ପ୍ରକୃତିର ଯେଉଁ ଅଂଶରେ ଆବରଣ ଶକ୍ତିର ପ୍ରାଧାନ୍ୟ, ସେହି ଅଂଶରୁ ଅର୍ଥାତ୍ ଆବରଣ ଶକ୍ତିରୂପ ଅଜ୍ଞାନରୁ ତମୋଗୁଣର ଜନ୍ମ । ତମୋଗୁଣଦ୍ୱାରା ସତ୍ ପଦାର୍ଥରେ ଅସତ୍ ଭ୍ରମ ଜାତ ହୁଏ, ଅତଏବ ତାହା ଦେହାଭିମାନୀ ଜୀବଙ୍କର ମୋହଜନକ ଅଟେ । ତମୋଗୁଣର ଉଦୟ ହେଲେ କାର୍ଯ୍ୟକାଳରେ ଲୋକଙ୍କର ପ୍ରମାଦ ଅର୍ଥାତ୍ ପଦାର୍ଥର ସ୍ୱରୂପ ଜ୍ଞାନରେ ଅସାମର୍ଥ୍ୟ ଏବଂ ଆଳସ୍ୟ ଓ ନିଦ୍ରା ଇତ୍ୟାଦି ନାନାପ୍ରକାର ବିଘ୍ନ ଉପସ୍ଥିତ ହୁଏ ; ସୁତରାଂ ଜୀବ, ସତ୍ ପଦାର୍ଥ (ତତ୍ତ୍ୱଜ୍ଞାନ) ଲାଭ କରିପାରେ ନାହିଁ କି ସଂସାର ବନ୍ଧନରୁ ମୁକ୍ତ ହୋଇ ପାରେ ନାହିଁ, ଅର୍ଥାତ୍—ପ୍ରମାଦ, ଆଳସ୍ୟ ଓ ନିଦ୍ରାଦ୍ୱାରା ତମୋଗୁଣ ଜୀବାତ୍ମାଙ୍କୁ ବନ୍ଧନ କରେ ।

ଏ ଶ୍ଳୋକରେ ଥିବା ପ୍ରମାଦ ଶବ୍ଦଦ୍ୱାରା ତମୋଗୁଣ, ଯେ ସତ୍ତ୍ୱଗୁଣର ବିରୋଧୀ, ତାହା ଜଣା ଯାଉଅଛି, କାହିଁକି ନା ସତ୍ତ୍ୱଗୁଣର କାର୍ଯ୍ୟ = ପ୍ରକାଶ ଅର୍ଥାତ୍ ପଦାର୍ଥର ସ୍ୱରୂପଜ୍ଞାନରେ ସାମର୍ଥ୍ୟ, ମାତ୍ର ପ୍ରମାଦ = ସ୍ୱରୂପଜ୍ଞାନରେ ଅସମର୍ଥତା, ତମୋଗୁଣର କାର୍ଯ୍ୟ ଅଟେ । ସୁତରାଂ ତମୋଗୁଣ, ସତ୍ତ୍ୱଗୁଣର ବିରୋଧୀ । ସେହିପରି 'ଆଳସ୍ୟ' ଶବ୍ଦଦ୍ୱାରା ତମୋଗୁଣ

Digitized by PPRACHIN, SOA

ରଜୋଗୁଣର ବିରୋଧୀ ଥିବାର ଜଣା ଯାଉଅଛି । କାହିଁକି ନା ରଜୋଗୁଣର କାର୍ଯ୍ୟ = କର୍ମରେ ପ୍ରବୃତ୍ତି, ମାତ୍ର ତମୋଗୁଣର କାର୍ଯ୍ୟ ଆଳସ୍ୟ, ତଦ୍ବିପରୀତ ଅଟେ । ପୁଣି ନିଦ୍ରା ସମ୍ପନ୍ନରେ ସ୍ୱରୂପ ଜ୍ଞାନ କିମ୍ବା କର୍ମ ପ୍ରବୃତ୍ତି ନ ଥାଏ ବୋଲି, ସେହି ନିଦ୍ରା ଶବ୍ଦଦ୍ୱାରା ତମୋଗୁଣ, ସତ୍ତ୍ୱ ଓ ରଜଃ ଉଭୟ ଗୁଣର ବିରୋଧୀ ଥିବାର ଜଣା ଗଲା । ୮ ।

ଶ୍ଳୋକଃ ।

* ସତ୍ତ୍ୱଂ ସୁଖେ ସଞ୍ଜୟତି, ରଜଃ କର୍ମଣି ଭାରତ ।
ଜ୍ଞାନମାବୃତ୍ୟ ତୁ ତମଃ, ପ୍ରମାଦେ ସଞ୍ଜୟତ୍ୟୁତ । ୯ ।

ଅନ୍ୱୟଃ ।

ହେ ଭାରତ ! ସତ୍ତ୍ୱଂ ସୁଖେ, ରଜଃ କର୍ମଣି ସଞ୍ଜୟତି, ତମଃ ତୁ ଜ୍ଞାନଂ ଆବୃତ୍ୟ ଉତ ପ୍ରମାଦେ ସଞ୍ଜୟତି । ୯ ।

ଟୀକା ।

ସତ୍ତ୍ୱାଦୀନାମେବ ସ୍ୱ ସ୍ୱ କାର୍ଯ୍ୟକରଣେ ସାମର୍ଥ୍ୟାତିଶୟମାହ । ସତ୍ତ୍ୱମିତି । ସତ୍ତ୍ୱଂ ସୁଖେ ସଞ୍ଜୟତି ସଂଶ୍ଳେଷୟତି, ଦୁଃଖଶୋକାଦିକାରଣେ ସତ୍ୟପି ସୁଖାଭିମୁଖମେବ ଦେହିନଂ କରୋତୀତ୍ୟର୍ଥଃ ଏବଂ ସୁଖାଦିକାରଣେ ସତ୍ୟପି ରଜଃ କର୍ମଣ୍ୟେବ ସଞ୍ଜୟତି, ତମସ୍ତୁ ମହତ୍‌ସଙ୍ଗେନୋତ୍ପଦ୍ୟମାନମପି ଜ୍ଞାନମାବୃତ୍ୟାଚ୍ଛାଦ୍ୟ ପ୍ରମାଦେ ସଞ୍ଜୟତି, ମହଦ୍ଭିରୁପଦିଶ୍ୟମାନସ୍ୟାର୍ଥସ୍ୟାନବଧାନେ ଯୋଜୟତି ଉତ ଅପି ଆଳସ୍ୟାଦାବପି ସଂଯୋଜୟତୀତ୍ୟର୍ଥଃ । ୯ ।

ପଦବ୍ୟାଖ୍ୟା ।

ସତ୍ତ୍ୱଂ—ସତ୍ତ୍ୱଗୁଣ, ସୁଖେ—ସୁଖରେ, ସଞ୍ଜୟତି—ନିଯୁକ୍ତ କରେ, ରଜଃ—ରଜୋଗୁଣ, କର୍ମଣି—କର୍ମରେ, ଭାରତ—ହେ ଅର୍ଜ୍ଜୁନ !, ଜ୍ଞାନଂ ଆବୃତ୍ୟ—ବୁଦ୍ଧିକୁ ଆବରଣ କରି, ତୁ—ପୁଣି, ତମଃ—ତମୋଗୁଣ, ପ୍ରମାଦେ—ଅସାବଧାନତାରେ, ସଞ୍ଜୟତି—ନିଯୁକ୍ତ କରେ, ଉତ—ଅଧିକନ୍ତୁ ଆଳସ୍ୟାଦିରେ ମଧ୍ୟ । ୯ ।

ଅନୁବାଦ ।

ହେ ଭାରତ ! ସତ୍ତ୍ୱଗୁଣ ସୁଖରେ, ରଜୋଗୁଣ କର୍ମରେ ଏବଂ ତମୋଗୁଣ ଜ୍ଞାନକୁ ଆବରଣ କରି ପ୍ରମାଦ ଓ ଆଳସ୍ୟାଦିରେ (ଜୀବକୁ) ନିଯୁକ୍ତ କରେ । ୯ ।

ବିଶଦବ୍ୟାଖ୍ୟା ।

ପୂର୍ବ ତିନି ଶ୍ଳୋକରେ ସତ୍ତ୍ୱ, ରଜ ଓ ତମ ଏହି ତିନିଗୁଣର ଲକ୍ଷଣ ଓ କାର୍ଯ୍ୟ କୁହାଯାଇଅଛି । ଏ ଶ୍ଳୋକରେ କେଉଁ କାର୍ଯ୍ୟରେ କେଉଁ ଗୁଣର ଅଧିକ ଉତ୍କର୍ଷ ଅଛି, ତାହା ବ୍ୟାଖ୍ୟା କରି ଯାଉଅଛି । ତିନିଗୁଣ ମଧ୍ୟରୁ ସତ୍ତ୍ୱଗୁଣ ଜୀବାତ୍ମାଙ୍କୁ ସୁଖରେ ନିଯୁକ୍ତ କରେ ଅର୍ଥାତ୍ ସତ୍ତ୍ୱଗୁଣର ପ୍ରବଳତା ହେଲେ, ଜୀବର କର୍ମାସକ୍ତି ଓ ଶୋକ, ମୋହ, ନିଦ୍ରା, ଆଳସ୍ୟ ପ୍ରଭୃତି ଉପସ୍ଥିତ ଥିଲେ ସୁଦ୍ଧା, ସୁଖ ଓ ଜ୍ଞାନାଭିଳାଷ ବୃଦ୍ଧି ହୁଏ । ସେହିପରି ରଜୋଗୁଣ, ଜୀବାତ୍ମାଙ୍କୁ କର୍ମରେ ଆସକ୍ତ କରେ ଅର୍ଥାତ୍ ରଜୋଗୁଣ ପ୍ରବଳ ହେଲେ, ଜୀବର ସୁଖାଦି ଅଭିଳାଷ, ଆଳସ୍ୟ ଓ ନିଦ୍ରାଦି ଥିଲେ ସୁଦ୍ଧା, ବୈଦିକ ଓ ଲୌକିକ ନାନାପ୍ରକାର କର୍ମରେ ପ୍ରବୃତ୍ତି ବୃଦ୍ଧି ହୁଏ ଏବଂ ତମୋଗୁଣ ପ୍ରବଳ ହେଲେ, ସତ୍ତ୍ୱଗୁଣର କାର୍ଯ୍ୟସ୍ୱରୂପ ଜ୍ଞାନକୁ ଆବରଣ କରି ପ୍ରମାଦ ଅର୍ଥାତ୍ ଅସାବଧାନତା ଓ ଭ୍ରମବୃଦ୍ଧି କରେ ।

Digitized by PPRACHIN, SOA

ଏ ଶ୍ଳୋକସ୍ଥିତ 'ଉତ' ଶବ୍ଦଦ୍ୱାରା ଏହା ସୂଚିତ ହେଉଅଛି, ଯେ ତମୋଗୁଣ ପ୍ରବଳ ହେଲେ, ଜୀବାତ୍ମା, ନିଦ୍ରା, ତନ୍ଦ୍ରା ଓ ଆଳସ୍ୟାଦି କାର୍ଯ୍ୟର ମଧ୍ୟ ବଶୀଭୂତ ହୋଇ ପଡନ୍ତି ।୯।

## ଶ୍ଳୋକଃ ।

* ରଜସ୍ତମଶ୍ଚାଭିଭୂୟ, ସତ୍ତ୍ୱଂ ଭବତି ଭାରତ ।
ରଜଃ ସତ୍ତ୍ୱଂ ତମଶ୍ଚୈବ, ତମଃ ସତ୍ତ୍ୱଂ ରଜସ୍ତଥା ।୧୦।

## ଅନ୍ୱୟଃ ।

ହେ ଭାରତ ! ସତ୍ତ୍ୱଂ, ରଜଃ ଚ ତମଃ ଅଭିଭୂୟ, ରଜଃ,—ସତ୍ତ୍ୱଂ, ତମଃ ଏବ (ଅଭିଭୂୟ), ତଥା ତମଃ,—ସତ୍ତ୍ୱଂ, ରଜଃ (ଅଭିଭୂୟ) ଭବତି ।୧୦।

## ଟୀକା ।

ତର୍ହି ହେତ୍ୱଭାବ, ରଜ ଇତି । ରଜସ୍ତମଶ୍ଚେତି ଗୁଣଦ୍ୱୟମଭିଭୂୟ ତିରସ୍କୃତ୍ୟ ସତ୍ତ୍ୱଂ ଭବତି, ଅଦୃଷ୍ଟବଶାଦୁଦ୍ଭବତି ଅତଃ ସ୍ୱକାର୍ଯ୍ୟେ ସୁଖାଦୌ ସଞ୍ଜୟତୀତ୍ୟର୍ଥଃ ଏବ ରଜୋଽପି ସତ୍ତ୍ୱଂ ତମଶ୍ଚେତି ଗୁଣଦ୍ୱୟମଭିଭୂୟୋଦ୍ଭବତି ଅତଃ ସ୍ୱକାର୍ଯ୍ୟେ ତୃଷ୍ଣାସଙ୍ଗାଦୌ ସଞ୍ଜୟତି ଏବ ତମୋଽପି ସତ୍ତ୍ୱଂ ରଜଶ୍ଚୋଭାବପି ଗୁଣାବଭିଭୂୟୋଦ୍ଭବତି ଅତଃ ସ୍ୱକାର୍ଯ୍ୟେ ପ୍ରମାଦାଲସ୍ୟାଦୌ ସଞ୍ଜୟତୀତ୍ୟର୍ଥଃ ।

## ପଦବ୍ୟାଖ୍ୟା ।

ରଜଃ—ରଜୋଗୁଣକୁ, ତମଶ୍ଚ—ଏବଂ ତମୋଗୁଣକୁ, ଅଭିଭୂୟ—ନିବର୍ତ୍ତିତ କରି, ସତ୍ତ୍ୱଂ—ସତ୍ତ୍ୱଗୁଣ, ଭବତି—ଉଦ୍ଭବ ହୁଏ, ଭାରତ—ହେ ଅର୍ଜ୍ଜୁନ !, ରଜଃ—ରଜୋଗୁଣ, ସତ୍ତ୍ୱଂ ତମଶ୍ଚୈବ—ସତ୍ତ୍ୱ ଓ ତମୋଗୁଣକୁ, ତମଃ—ତମୋଗୁଣ, ସତ୍ତ୍ୱଂ ରଜସ୍ତଥା—ସେହିପରି ସତ୍ତ୍ୱ ଓ ରଜୋଗୁଣକୁ ।୧୦।

## ଅନୁବାଦ ।

**ହେ ଭାରତ ! ରଜ ଓ ତମଗୁଣକୁ ପରାସ୍ତ କରି ସତ୍ତ୍ୱ ଗୁଣ, ପୁଣି ସତ୍ତ୍ୱ ଓ ତମୋଗୁଣକୁ ପରାଭବ କରି ରଜୋଗୁଣ, ସେହିପରି ସତ୍ତ୍ୱ ଓ ରଜୋଗୁଣକୁ ପରାଭବ କରି ତମୋଗୁଣ, ପ୍ରବଳ ହୁଏ (ଏହିପରି ସେମାନେ ସ୍ୱ ସ୍ୱ କାର୍ଯ୍ୟ ସମ୍ପାଦନ କରନ୍ତି) ।୧୦।**

## ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ କୁହାଯାଇଅଛି, ଯେ ଗୁଣତ୍ରୟ ମଧ୍ୟରୁ ଯେଉଁ ଗୁଣ ପ୍ରବଳ ହୁଏ, ସେ, ଜୀବାତ୍ମାଙ୍କୁ ତାହାର କାର୍ଯ୍ୟରେ ସଂଯୁକ୍ତ କରେ, ମାତ୍ର ଯେଉଁ ଗୁଣ, କି ପରିମାଣରେ ବର୍ଦ୍ଧିତ ହେଲେ, କାହାର କାର୍ଯ୍ୟରେ ଜୀବାତ୍ମାଙ୍କୁ ବନ୍ଧନ କରିପାରେ, ତାହା ଏ ଶ୍ଳୋକରେ ବୁଝାଇ ଦିଆଯାଉଅଛି । ଯଦି ପ୍ରାରବ୍ଧବଶରୁ କାହାର ସତ୍ତ୍ୱଗୁଣ ଏପରି ବର୍ଦ୍ଧିତ ହୁଏ, ଯେ ତାହା, ରଜ ଓ ତମୋଗୁଣକୁ ପରାସ୍ତ ବା ଆବରଣ କରି ଆପେ ପ୍ରକାଶିତ ହୁଏ, ତେବେ ଜୀବାତ୍ମାଙ୍କୁ ସୁଖ ଓ ଜ୍ଞାନାଭିଳାଷରେ ନିଯୁକ୍ତ କରେ । ଯଦି କାହାର ରଜୋଗୁଣ, ଏପରି ପ୍ରବଳ ହୁଏ, ଯେ ତାହା ସତ୍ତ୍ୱ ଏବଂ ତମ ଏ ଦୁଇ ଗୁଣକୁ ପରାଭବ ବା ଆବରଣ କରି ଆପେ ପ୍ରକାଶିତ ହୁଏ, ତେବେ ତାହା ଜୀବାତ୍ମାଙ୍କୁ ନାନାପ୍ରକାର କର୍ମରେ ଆସକ୍ତ କରାଏ । ସେହିପରି ଯଦି କାହାର ତମୋଗୁଣ ଏପରି ପ୍ରବଳ ହୁଏ, ଯେ ତାହାଦ୍ୱାରା ସତ୍ତ୍ୱ ଓ ରଜୋ-

Digitized by PPRACHIN, SOA

ଗୁଣ ପରାସ୍ତ ହୁଏ, ତେବେ ସେହି ତମୋଗୁଣ ସତ୍ତ୍ୱଗୁଣର କାର୍ଯ୍ୟସ୍ୱରୂପ ଜ୍ଞାନକୁ ଆବରଣ କରି ଜୀବାତ୍ମାଙ୍କୁ ପ୍ରମାଦ ଆଳସ୍ୟ ଓ ନିଦ୍ରାଦିରେ ଅଭିଭୂତ କରେ ।

ଫଳକଥା ଏହି ଯେ କୌଣସି ଗୁଣ ଅନ୍ୟ ଦୁଇଗୁଣକୁ ପରାସ୍ତ କରିବାକୁ ବର୍ଦ୍ଧିତ ହେଲେ, ତାକୁ 'ପ୍ରବଳ' ବୋଲାଯାଏ ଓ ସେହି ପ୍ରବଳ ଗୁଣ, ଜୀବାତ୍ମାଙ୍କୁ ନିଜ କାର୍ଯ୍ୟରେ ନିଯୁକ୍ତ କରେ, କିନ୍ତୁ ଗୁଣତ୍ରୟର ସାମାନ୍ୟ ଇତର ବିଶେଷ ହେଲେ, ଜୀବାତ୍ମା କୌଣସି ବିଶେଷ ଏକ ଗୁଣର କାର୍ଯ୍ୟରେ ନିଯୁକ୍ତ ନ ହୋଇ ଅନିୟମିତରୂପେ ସମସ୍ତ ଗୁଣର କର୍ମ କରନ୍ତି । ୧୦ ।

ଶ୍ଲୋକଃ ।

ସର୍ବଦ୍ୱାରେଷୁ ଦେହେଽସ୍ମିନ୍, ପ୍ରକାଶ ଉପଜାୟତେ ।
ଜ୍ଞାନଂ ଯଦା ତଦା ବିଦ୍ୟାଦ୍ୱିବୃଦ୍ଧଂ ସତ୍ତ୍ୱମିତ୍ୟୁତ । ୧୧ ।

ଅନ୍ୱୟଃ ।

ଅସ୍ମିନ୍ ଦେହେ ସର୍ବଦ୍ୱାରେଷୁ ଯଦା ଜ୍ଞାନଂ ପ୍ରକାଶଃ ଉପଜାୟତେ ତଦା ସତ୍ତ୍ୱଂ ବିବୃଦ୍ଧଂ ଇତି ବିଦ୍ୟାତ୍ ଉତ । ୧୧ ।

ଟୀକା ।

ତଦେବଂ ସତ୍ତ୍ୱାଦୀନାଂ ବୃଦ୍ଧାନାଂ ଲିଙ୍ଗାନ୍ୟାହ, ସର୍ବଦ୍ୱାରେଷ୍ୱିତି ତ୍ରିଭିଃ । ଅସ୍ମିନ୍ନାତ୍ମନୋ ଭୋଗାୟତନେ ଦେହେ ସର୍ବେଷ୍ୱପି ଦ୍ୱାରେଷୁ ଶ୍ରୋତ୍ରାଦିଷୁ ଯଦା ଶବ୍ଦାଦିଜ୍ଞାନାତ୍ମକଃ ପ୍ରକାଶ ଉପଜାୟତେ ଉତ୍ପଦ୍ୟତେ ତଦା ତେନ ପ୍ରକାଶଲିଙ୍ଗେନ ସତ୍ତ୍ୱଂ ବିବୃଦ୍ଧଂ ବିଦ୍ୟାତ୍ ଜାନୀୟାତ୍ ଉତ ସୁଖାଦିଲିଙ୍ଗେନାପି ଜାନୀୟାଦିତ୍ୟୁକ୍ତଂ । ୧୧ ।

ପଦବ୍ୟାଖ୍ୟା ।

<u>ସର୍ବଦ୍ୱାରେଷୁ</u>—ସମସ୍ତ ଦ୍ୱାରମାନଙ୍କରେ, <u>ଦେହେ</u>—ଶରୀରରେ, <u>ଅସ୍ମିନ୍</u>—ଏହି, <u>ପ୍ରକାଶଃ ଉପଜାୟତେ</u>—ପ୍ରକାଶ ହୁଏ, <u>ଜ୍ଞାନଂ</u>—ଜ୍ଞାନ, <u>ଯଦା</u>—ଯେଉଁ ସମୟରେ, <u>ତଦା ବିଦ୍ୟାତ୍</u>—ସେତେବେଳେ ଜାଣିବ, <u>ବିବୃଦ୍ଧଂ</u>—ବଢି-ଅଛି, <u>ସତ୍ତ୍ୱଂ</u>—ସତ୍ତ୍ୱଗୁଣ, <u>ଇତି</u>—ଏହା, <u>ଉତ</u>—ଅଥବା, (ସୁଖାଦିଦ୍ୱାରା ମଧ୍ୟ) । ୧୧ ।

ଅନୁବାଦ ।

ଯେତେବେଳେ, ଏହି ଦେହରେ ସମସ୍ତ ଇନ୍ଦ୍ରିୟମାନଙ୍କ ଦ୍ୱାରରେ ଜ୍ଞାନର ପ୍ରକାଶ ହୁଏ, ସେତେବେଳେ ସତ୍ତ୍ୱଗୁଣ ବଢିଅଛି ବୋଲି ଜାଣିବ । ୧୧ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ଯେଉଁ ଗୁଣ ଯେ ପରିମାଣରେ ବର୍ଦ୍ଧିତ ହେଲେ, ତାକୁ 'ପ୍ରବଳ' ବୋଲା-ଯାଏ, ତାହା କୁହାଯାଇଅଛି । ଏ ଶ୍ଳୋକରେ ସତ୍ତ୍ୱଗୁଣ ପ୍ରବଳ ହେଲେ, ଯେ ଯେ ଲକ୍ଷଣ ପ୍ରକାଶିତ ହୁଏ, ତାହା, ବ୍ୟାଖ୍ୟା କରାଯାଉଅଛି ।

ଯେତେବେଳେ ଭୋଗର କ୍ଷେତ୍ରସ୍ୱରୂପ ଏହି ଦେହରେ ଚକ୍ଷୁ, କର୍ଣ୍ଣ, ନାସିକା ଓ ଚର୍ମ ପ୍ରଭୃତି ସମସ୍ତ ଜ୍ଞାନେନ୍ଦ୍ରିୟମାନଙ୍କରେ ଜ୍ଞାନ ପ୍ରକାଶରୂପରେ ଉଦୟ ହେବ ଅର୍ଥାତ୍ କୌଣସି ପ୍ରକାର ବାଧା ଇତ୍ୟାଦି ନ ଥିବ ଓ ସମସ୍ତ ଇନ୍ଦ୍ରିୟମାନେ ସୁନ୍ଦରରୂପେ ନିଜ ନିଜ କାର୍ଯ୍ୟ ତତ୍ତ୍ୱ-

Digitized by PPRACHIN, SOA

ଜ୍ଞାନର ଅନୁକୂଳରେ ପ୍ରବାହ ହଉଛି, ସେତେବେଳେ ଜାଣିବ, ଯେ ସତ୍ତ୍ୱଗୁଣ ବର୍ଦ୍ଧିତ ଅର୍ଥାତ୍ ପ୍ରବଳ ହୋଇଅଛି ।

ଏ ଶ୍ଳୋକରେ ଥିବା 'ଉତ' ଶବ୍ଦଦ୍ୱାରା ଏହା ମଧ୍ୟ ସୂଚିତ ହେଉଅଛି, ଯେ ଧର୍ମ (ଶାସ୍ତ୍ର) ଓ ଜ୍ଞାନାଭିଳାଷ ବୃଦ୍ଧି ହେଲେ ମଧ୍ୟ, ଜାଣିବ, ଯେ ସତ୍ତ୍ୱଗୁଣ ପ୍ରବଳ ହୋଇଅଛି ।
।୧୧।

ଶ୍ଳୋକଃ ।

ଲୋଭଃ ପ୍ରବୃତ୍ତିରାରମ୍ଭଃ, କର୍ମଣାମଶମଃ ସ୍ପୃହା ।
ରଜସ୍ୟେତାନି ଜାୟନ୍ତେ, ବିବୃଦ୍ଧେ ଭରତର୍ଷଭ ।।୧୨।

ଅନ୍ୱୟଃ ।

ହେ ଭରତର୍ଷଭ ! ରଜସି ବିବୃଦ୍ଧେ ସତି ଲୋଭଃ, ପ୍ରବୃତ୍ତିଃ, କର୍ମଣାଂ ଆରମ୍ଭଃ, ଅଶମଃ, ସ୍ପୃହା, ଏତାନି ଜାୟନ୍ତେ ।୧୨।

ଟୀକା ।

କିଞ୍ଚ ଲୋଭ ଇତି । ଲୋଭୋ ଧନାଦ୍ୟାଗମେ ସତ୍ୟପି ପୁନଃପୁନର୍ବର୍ଦ୍ଧମାନୋଽଭିଲାଷଃ ପ୍ରବୃତ୍ତିର୍ନିତ୍ୟଂ କୁର୍ବଦ୍ରୂପତା, କର୍ମଣାମାରମ୍ଭୋ ଗୃହାଦିନିର୍ମାଣୋଦ୍ୟମଃ, ଅଶମଃ ଇଦଂ କୃତ୍ୱେଦଂ କରିଷ୍ୟାମି ଇତ୍ୟାଦି ସଙ୍କଳ୍ପବିକଳ୍ପାନୁପରମଃ, ସ୍ପୃହା ଉଚ୍ଚାବଚେଷୁ ଦୃଷ୍ଟମାତ୍ରେଷୁ ବସ୍ତୁଷୁ ଇତସ୍ତତୋଲିପ୍ସା, ରଜସି ବିବୃଦ୍ଧେ ସତି ଏତାନି ଲିଙ୍ଗାନି ଜାୟନ୍ତେ ଏଭିର୍ଲିଙ୍ଗୈ ରଜୋଗୁଣସ୍ୟ ବୃଦ୍ଧିଂ ଜାନୀୟାଦିତ୍ୟର୍ଥଃ ।୧୨।

ପଦବ୍ୟାଖ୍ୟା ।

ଲୋଭଃ—ଧନଲାଭ ହେଲେ ମଧ୍ୟ ସର୍ବଦା ତାହାର ବୃଦ୍ଧି ବିଷୟରେ ଇଚ୍ଛା, ପ୍ରବୃତ୍ତିଃ—ସଂସାରକର୍ମରେ ସଦା ସର୍ବଦା ମନଃସଂଯୋଗ, ଆରମ୍ଭଃ—ଉଦ୍ୟମ, କର୍ମଣାଂ—କର୍ମମାନଙ୍କର, ଅଶମଃ—ଅଶାନ୍ତି ଅର୍ଥାତ୍ ଏ କର୍ମ କଲା ପରେ ସେ କର୍ମ କରିବ, ତାହା ପୂର୍ଣ୍ଣ କରି ଅନ୍ୟ କର୍ମ କରିବ, ଏହିପରି ସର୍ବଦା ଇଚ୍ଛା ବଢାଇବା, ସ୍ପୃହା—ଯାହାରି କୌଣସି ବସ୍ତୁ ଦେଖି ତାହା ଯେ କୌଣସି ପ୍ରକାରେ ପାଇବାର ଇଚ୍ଛା, ରଜସି—ରଜୋଗୁଣ, ଏତାନି—ଏମାନେ, ଜାୟନ୍ତେ—ଜନ୍ମ ହୁଅନ୍ତି, ବିବୃଦ୍ଧେ—ବଢିଲେ, ଭରତର୍ଷଭ—ହେ ଭରତକୁଳଶ୍ରେଷ୍ଠ ।।୧୨।

ଅନୁବାଦ ।

ହେ ଭରତକୁଳଶ୍ରେଷ୍ଠ ! ରଜୋଗୁଣର ବୃଦ୍ଧି ହେଲେ, ଲୋଭ, କର୍ମମାନଙ୍କର ଉଦ୍ୟମ, ପ୍ରବୃତ୍ତି ଅଶାନ୍ତି ଆଉ ଅଭିଲାଷ ଏମାନେ ଜାତ ହୁଅନ୍ତି ।୧୨।

ତତ୍ତ୍ୱବ୍ୟାଖ୍ୟା ।

ସତ୍ତ୍ୱଗୁଣ ବଢିଲେ, ଯେଉଁ ୨ ଲକ୍ଷଣ ପ୍ରକାଶିତ ହୁଏ, ତାହା ପୂର୍ବଶ୍ଳୋକରେ କୁହାଯାଇଅଛି, ଏ ଶ୍ଳୋକରେ ରଜୋଗୁଣ ବୃଦ୍ଧିପ୍ରାପ୍ତ ହେଲେ, ଯେଉଁ ୨ ଲକ୍ଷଣ ପ୍ରକାଶିତ ହୁଏ, ତାହା ବ୍ୟାଖ୍ୟା କରାଯାଉଅଛି ।

ନାନାପ୍ରକାର ଅର୍ଥ ଉପାର୍ଜନ ହେଉଥିଲେ ସୁଦ୍ଧା, ନୂତନ ୨ ପ୍ରକାର ଉପାୟଦ୍ୱାରା ସେହି ଧନକୁ ବର୍ଦ୍ଧିତ କରିବାର ଅଭିଳାଷକୁ 'ଲୋଭ' ବୋଲାଯାଏ ସର୍ବଦା ସଂସାରକର୍ମରେ ଯେଉଁ ଆସକ୍ତି, ତାହାକୁ 'ପ୍ରବୃତ୍ତି' କୁହାଯାଏ । ନୂତନ ୨ ଗୃହ ନିର୍ମାଣ ପ୍ରଭୃତି ନାନା-

Digitized by PPRACHIN, SOA

ପ୍ରକାର କର୍ମ କରିବାରେ ଯେଉଁ ଉଦ୍ୟମ ବା ଉଦ୍ଯୋଗ, ତାହା 'ଆରମ୍ଭ' ନାମରେ ପରିଚିତ । ଯେତେପ୍ରକାର କର୍ମ କଲେ ମଧ୍ୟ, ତହିଁରେ ତୃପ୍ତ ନ ହୋଇ ଅଧିକ କର୍ମ କରିବା ଇଚ୍ଛାର ନାମ 'ଅଶମ' (ଅଶାନ୍ତି), ଅନ୍ୟର ସମ୍ପତ୍ତିକୁ ଯେ କୌଣସି ଉପାୟରେ ଗ୍ରହଣ କରିବାର ଇଚ୍ଛାକୁ ଏଠାରେ 'ସ୍ପୃହା' ବୋଲି କୁହା ଯାଇଅଛି । ରଜୋଗୁଣ ବୃଦ୍ଧି ପ୍ରାପ୍ତ ହେଲେ, ଯେହି ଲୋଭ, ପ୍ରବୃତ୍ତି, କର୍ମାରମ୍ଭ, ଅଶମ ଓ ସ୍ପୃହା ଜାତ ହୁଏ ଅର୍ଥାତ୍ ଲୋଭ, ପ୍ରବୃତ୍ତି, କର୍ମରେ ଉଦ୍ୟମ ଓ ଅଶାନ୍ତି ଏବଂ ପରଦ୍ରବ୍ୟଗ୍ରହଣାଭିଳାଷ ଜନ୍ମିଲେ ଜାଣିବ, ସେ ରଜୋଗୁଣ ବୃଦ୍ଧି-ପ୍ରାପ୍ତ ହୋଇଅଛି । ୧୨ ।

ଶ୍ଲୋକଃ ।

ଅପ୍ରକାଶୋଽପ୍ରବୃତ୍ତିଶ୍ଚ ପ୍ରମାଦୋ ମୋହ ଏବ ଚ ।
ତମସ୍ୟେତାନି ଜାୟନ୍ତେ ବିବୃଦ୍ଧେ କୁରୁନନ୍ଦନ । ୧୩ ।

ଅନ୍ୱୟଃ ।

ହେ କୁରୁନନ୍ଦନ ! ତମସି ବିବୃଦ୍ଧେ ଅପ୍ରକାଶଃ ଅପ୍ରବୃତ୍ତିଃ ଚ ପ୍ରମାଦଃ ମୋହଃ ଏବ ଚ, ଏତାନି ଜାୟନ୍ତେ । ୧୩ ।

ଟୀକା ।

ଅପ୍ରକାଶ ଇତି । ଅପ୍ରକାଶୋ ବିବେକଭ୍ରଂଶଃ ଅପ୍ରବୃତ୍ତିରନୁଦ୍ୟମଃ ପ୍ରମାଦଃ କର୍ତ୍ତବ୍ୟାର୍ଥାନୁସନ୍ଧାନରାହିତ୍ୟଂ ମୋହୋ ମିଥ୍ୟାଭିନିବେଶଃ ଏତାନି ଲିଙ୍ଗାନି ତମସି ବିବୃଦ୍ଧେ ସତି ଜାୟନ୍ତେ ଏତୈସ୍ତମସୋ ବୃଦ୍ଧିଂ ଜାନୀୟାଦିତ୍ୟର୍ଥଃ । ୧୩ ।

ପଦବ୍ୟାଖ୍ୟା ।

ଅପ୍ରକାଶଃ—ବିବେକଭ୍ରଂଶ, ଅପ୍ରବୃତ୍ତିଃ—ଉଦ୍ୟମହୀନତା, ପ୍ରମାଦଃ—ଅସାବଧାନତା, ମୋହଃ—ଭ୍ରମ, ଏବ ଚ—ଏହିପରି ମଧ୍ୟ, ତମସି—ତମୋଗୁଣ, ଏତାନି—ଏମାନେ, ଜାୟନ୍ତେ—ପ୍ରକାଶ ହୁଅନ୍ତି, ବିବୃଦ୍ଧେ—ବୃଦ୍ଧି ପ୍ରାପ୍ତ ହେଲେ, କୁରୁନନ୍ଦନ—ହେ କୁରୁବଂଶଜାତ ଅର୍ଜ୍ଜୁନ ! । ୧୩ ।

ଅନୁବାଦ ।

ହେ କୁରୁନନ୍ଦନ ! ତମୋଗୁଣ ବୃଦ୍ଧି ପ୍ରାପ୍ତ ହେଲେ, ବିବେକଭ୍ରଂଶ, ଅପ୍ରବୃତ୍ତି, ପ୍ରମାଦ ଓ ମୋହ ଏମାନେ ଜାତ ହୁଅନ୍ତି । ୧୩ ।

ବିଶଦବ୍ୟାଖ୍ୟା ।

ଜ୍ଞାନ ପ୍ରକାଶର କାରଣରୂପ ଗୁରୁବାକ୍ୟ ଓ ଶାସ୍ତ୍ରର ଉପଦେଶ ପ୍ରାପ୍ତ ହେଲେହେଁ, ବିବେକ ବୁଦ୍ଧିର ଯେବେ ବିକାଶ ନୁହେଁ, ତେବେ ତାକୁ 'ଅପ୍ରକାଶ' ଅର୍ଥାତ୍ ବିବେକଭ୍ରଂଶ ବୋଲାଯାଏ । 'ଏହା କର୍ତ୍ତବ୍ୟ କରଣୀୟ' ଏହା ଜାଣିକରି ମଧ୍ୟ, ତହିଁରେ ଉଦ୍ୟମ ନ କରିବାକୁ 'ଅପ୍ରବୃତ୍ତି' ବୋଲାଯାଏ । କୌଣସି ସତ୍କାର୍ଯ୍ୟ କରିବାକୁ ସଙ୍କଳ୍ପ କଲେହେଁ, ଉପଯୁକ୍ତ ସମୟରେ ତାହା ସ୍ମରଣ ନ ହେବାକୁ 'ପ୍ରମାଦ' । ଅସତ୍କର୍ମରେ ସଦ୍‌ବୁଦ୍ଧି ଅଥବା ଭ୍ରମ ବୁଦ୍ଧିକୁ 'ମୋହ' ବୋଲା ଯାଏ । ଏହି ସବୁ ବୃତ୍ତିଗୁଡ଼ିକ ତମୋଗୁଣ ବୃଦ୍ଧିର ଲକ୍ଷଣ ଅର୍ଥାତ୍ ଏହି ଅପ୍ରକାଶ, ଅପ୍ରବୃତ୍ତି, ପ୍ରମାଦ ଓ ମୋହ ଇତ୍ୟାଦି ବୃତ୍ତିର ଉଦୟ ହେଲେ, ଜାଣିବ ଯେ, ତମୋଗୁଣ ବୃଦ୍ଧି ପ୍ରାପ୍ତ ହୋଇଅଛି । ୧୩ ।

Digitized by PPRACHIN, SOA

ଶ୍ଳୋକଃ ।

ଯଦା ସତ୍ତ୍ୱେ ପ୍ରବୃଦ୍ଧେ ତୁ, ପ୍ରଳୟଂ ଯାତି ଦେହଭୃତ୍ ।
ତଦୋତ୍ତମବିଦାଂ ଲୋକା,ନମଳାନ୍ ପ୍ରତିପଦ୍ୟତେ । ୧୪ ।

ଅନ୍ୱୟଃ ।

ସତ୍ତ୍ୱେ ପ୍ରବୃଦ୍ଧେତୁ ଯଦା ଦେହଭୃତ୍ ପ୍ରଳୟଂ ଯାତି, ତଦା ଉତ୍ତମବିଦାଂ ଅମଳାନ୍ ଲୋକାନ୍ ପ୍ରତିପଦ୍ୟତେ । ୧୪ ।

ଟୀକା ।

ମରଣସମୟେ ବୃଦ୍ଧାନାଂ ସତ୍ତ୍ୱାଦୀନାଂ ଫଳବିଶେଷମାହ, ଯଦେତି ଦ୍ୱାଭ୍ୟାଂ । ସତ୍ତ୍ୱେ ବୃଦ୍ଧେ ସତି ଯଦା ଜୀବୋ ମୃତ୍ୟୁଂ ପ୍ରାପ୍ନୋତି ତଦୋତ୍ତମାନ୍ ହିରଣ୍ୟଗର୍ଭାଦୀନ୍ ବିଦନ୍ତି ଉପାସତେ ଇତି ଉତ୍ତମବିଦଃ ତେଷାଂ ଯେ ଅମଳାଃ ପ୍ରକାଶମୟା ଲୋକାଃ ସୁଖୋପଭୋଗସ୍ଥାନବିଶେଷାସ୍ତାନ୍ ପ୍ରତିପଦ୍ୟତେ ପ୍ରାପ୍ନୋତି । ୧୪ ।

ପଦବ୍ୟାଖ୍ୟା ।

ଯଦା—ଯେବେ, ସତ୍ତ୍ୱେପ୍ରବୃଦ୍ଧେ ତୁ—ସତ୍ତ୍ୱଗୁଣ ବୃଦ୍ଧି ସମୟରେ, ପ୍ରଳୟଂ ଯାତି—ମୃତ୍ୟୁକୁ ପ୍ରାପ୍ତ ହୁଅନ୍ତି, ଦେହଭୃତ୍—ଦେହଧାରୀ (ଜୀବାତ୍ମା), ତଦା—ତେବେ, ଉତ୍ତମବିଦାଂ—ହିରଣ୍ୟଗର୍ଭାଦି ଉତ୍ତମ ଦେବତାମାନଙ୍କୁ ଉପାସନା କରୁଥିବା ବ୍ୟକ୍ତିମାନଙ୍କର, ଲୋକାନ୍—ସ୍ଥାନମାନଙ୍କୁ, ଅମଳାନ୍—ପ୍ରକାଶମୟ, ପ୍ରତିପଦ୍ୟତେ—ପ୍ରାପ୍ତ ହୁଅନ୍ତି । ୧୪ ।

ଅନୁବାଦ ।

ସତ୍ତ୍ୱଗୁଣ ବଢ଼ିଥିବା ସମୟରେ, ଯେବେ ଦେହଧାରୀ ମୃତ୍ୟୁ ପ୍ରାପ୍ତ ହୁଅନ୍ତି, ତେବେ ଉତ୍ତମ ଅର୍ଥାତ୍ ହିରଣ୍ୟଗର୍ଭାଦିଙ୍କ ଉପାସକମାନଙ୍କର ନିର୍ମଳ ସ୍ଥାନକୁ ପ୍ରାପ୍ତ ହୁଅନ୍ତି । ୧୪ ।

ବିଶଦବ୍ୟାଖ୍ୟା ।

ହିରଣ୍ୟଗର୍ଭ ପ୍ରଭୃତି ଦେବତାଙ୍କୁ 'ଉତ୍ତମ' ବୋଲାଯାଏ । ସେହି ଦେବତାଙ୍କ ଉପାସକମାନେ 'ଉତ୍ତମବିତ୍' ନାମରେ ପରିଚିତ । ସେମାନେ ଯେଉଁ ଲୋକରେ (ଦେହ ତ୍ୟାଗ ପରେ) ବାସ କରନ୍ତି, ତାହା ସୁଖକର ଓ ପ୍ରକାଶମୟ ଅଟେ । ସତ୍ତ୍ୱଗୁଣ ବୃଦ୍ଧି ପ୍ରାପ୍ତ ହୋଇଥିବା ସମୟରେ ଦେହୀ ଦେହ ତ୍ୟାଗ କଲେ, ସେହି ସୁଖପ୍ରଦ ଓ ପ୍ରକାଶମୟ ସ୍ଥାନ ଅର୍ଥାତ୍ ଦେବଲୋକକୁ ପ୍ରାପ୍ତ ହୁଅନ୍ତି । ୧୪ ।

ଶ୍ଳୋକଃ ।

ରଜସି ପ୍ରଳୟଂ ଗତ୍ୱା, କର୍ମସଙ୍ଗିଷୁ ଜାୟତେ ।
ତଥା ପ୍ରଲୀନସ୍ତମସି, ମୂଢଯୋନିଷୁ ଜାୟତେ । ୧୫ ।

ଅନ୍ୱୟଃ ।

ରଜସି ପ୍ରଳୟଂ ଗତ୍ୱା କର୍ମସଙ୍ଗିଷୁ ଜାୟତେ । ତଥା ତମସି ପ୍ରଲୀନଃ ମୂଢଯୋନିଷୁ ଜାୟତେ । ୧୫ ।

ଟୀକା ।

କିଞ୍ଚ ରଜସୀତି । ରଜସି ବୃଦ୍ଧେ ସତି ମୃତ୍ୟୁଂ ପ୍ରାପ୍ୟ କର୍ମସଙ୍ଗିଷୁ ମନୁଷ୍ୟେଷୁ ଜାୟତେ । ତଥା ତମସି ବୃଦ୍ଧେ ସତି ପ୍ରଲୀନୋମୃତୋମୂଢଯୋନିଷୁ ପଶ୍ୱାଦିଷୁ ଜାୟତେ । ୧୫ ।

ପଦବ୍ୟାଖ୍ୟା ।

ରଜସି—ରଜୋଗୁଣ ବଢି ଥିବା ସମୟରେ, ପ୍ରଳୟଂ ଗତ୍ୱା—ମରଣ ପ୍ରାପ୍ତ ହେଲେ, କର୍ମସଙ୍ଗିଷୁ—କର୍ମାସକ୍ତ ଅର୍ଥାତ୍ ମନୁଷ୍ୟମାନଙ୍କ ମଧ୍ୟରେ, ଜାୟତେ—ଉତ୍ପନ୍ନ ହୁଏ, ତଥା—ସେହିପରି, ପ୍ରଲୀନଃ—ମୃତ ହେଲେ, ତମସି—ତମୋଗୁଣ ବଢିଥିବା ସମୟରେ, ମୂଢଯୋନିଷୁ—ପଶ୍ୱାଦି ଯୋନିରେ, ଜାୟତେ—ଜନ୍ମ ପ୍ରାପ୍ତ ହୁଏ । ୧୫ ।

ଅନୁବାଦ ।

ରଜୋଗୁଣ ବଢି ଥିବା ସମୟରେ ଦେହତ୍ୟାଗ କଲେ, ମନୁଷ୍ୟ ଯୋନିରେ ଓ ସେହିପରି ତମୋଗୁଣ ବଢି ଥିବା ସମୟରେ ମୃତ ହେଲେ, ପଶୁପ୍ରଭୃତି ଯୋନିରେ ଜାତ ହୁଏ । ୧୫ ।

ବିଶଦବ୍ୟାଖ୍ୟା ।

ରଜୋଗୁଣର ପ୍ରଧାନ କାର୍ଯ୍ୟ ଏହି ଯେ, ତାହା ଜୀବାତ୍ମାଙ୍କୁ କର୍ମାସକ୍ତିରେ ଆବଦ୍ଧ କରେ । ଅତଏବ ସେହି ରଜୋଗୁଣ ବଢି ଥିବା ସମୟରେ ଜୀବାତ୍ମା, ଯଦି ଶରୀର ତ୍ୟାଗ କରନ୍ତି, ତେବେ କର୍ମାସକ୍ତ ମନୁଷ୍ୟ-ଯୋନିରେ ଜନ୍ମ ଗ୍ରହଣ କରନ୍ତି । ସେହି ବର୍ଦ୍ଧିତ ରଜୋଗୁଣର ସ୍ୱଭାବ ଅନୁସାରେ ଜୀବାତ୍ମା ଭଲ ବା ମନ୍ଦ ମନୁଷ୍ୟ ଘରେ ଜାତ ହୁଅନ୍ତି ଅର୍ଥାତ୍ ମରଣ ବେଳକୁ ରଜୋଗୁଣ ବଢିଥିବା ଜୀବ, ଯଦି ପୁଷ୍କରିଣୀ ଖନନ, ଅତିଥିଶାଳା ନିର୍ମାଣ ଓ ଯାଗାଦି କାର୍ଯ୍ୟ ସମ୍ପାଦନରେ ଇଚ୍ଛା କରନ୍ତି, ତେବେ ବ୍ରାହ୍ମଣ ବା କ୍ଷତ୍ରିୟ ଘରେ ଅଥବା ଧନୀ ବ୍ୟକ୍ତି ଘରେ ଜନ୍ମ ଗ୍ରହଣ କରନ୍ତି, ଏବଂ ମରଣ ସମୟକୁ ବର୍ଦ୍ଧିତ ରଜୋଗୁଣ ଯଦି ଜୀବାତ୍ମାଙ୍କୁ ମୃଗୟା-ବ୍ୟସନ ବା ପରସ୍ୱ ଅପହରଣାଦି ନିକୃଷ୍ଟ କର୍ମରେ ନିଯୁକ୍ତ କରିଥାଏ, ତେବେ, ଜୀବାତ୍ମା ବ୍ୟାଧ, ଜୁଆରି ଓ ଚୋର ପ୍ରଭୃତି ନିକୃଷ୍ଟ ମନୁଷ୍ୟ ଗୃହରେ ଜାତ ହୁଅନ୍ତି । ସେହିପରି ତମୋଗୁଣ ବୃଦ୍ଧି ସମୟରେ ଦେହୀ ଦେହ ତ୍ୟାଗ କଲେ, ପଶୁପ୍ରଭୃତି ମୂଢଯୋନିରେ ଜାତ ହୁଅନ୍ତି ଓ ବର୍ଦ୍ଧିତ ତମୋଗୁଣର ସ୍ୱଭାବ ଅନୁସାରେ ପଶୁ, ପକ୍ଷୀ, କୀଟ, ପତଙ୍ଗ ବା ବୃକ୍ଷାଦି ଯୋନିରେ ଜନ୍ମ ଗ୍ରହଣ କରନ୍ତି । ୧୫ ।

ଶ୍ଳୋକଃ ।

* କର୍ମଣଃ ସୁକୃତସ୍ୟାହୁଃ, ସାତ୍ତ୍ୱିକଂ ନିର୍ମଳଂ ଫଳଂ ।
ରଜସସ୍ତୁ ଫଳଂ ଦୁଃଖ,ମଜ୍ଞାନଂ ତମସଃ ଫଳଂ । ୧୬ ।

ଅନ୍ୱୟଃ ।

ସୁକୃତସ୍ୟ କର୍ମଣଃ ସାତ୍ତ୍ୱିକଂ ନିର୍ମଳଂ ଫଳଂ, ତୁ ରଜସଃ ଦୁଃଖଂ ଫଳଂ, ତମସଃ ଅଜ୍ଞାନଂ ଫଳଂ ଆହୁଃ । ୧୬ ।

ଟୀକା ।

ଇଦାନୀଂ ସତ୍ତ୍ୱାଦୀନାଂ ଗ୍ରାନୁରୂପକର୍ମଦ୍ୱାରେଣ ବିଚିତ୍ରଫଳହେତୁତ୍ୱମାହ । କର୍ମଣ ଇତି । ସୁକୃତସ୍ୟ ସାତ୍ତ୍ୱିକସ୍ୟ କର୍ମଣଃ ସାତ୍ତ୍ୱିକଂ—ସତ୍ତ୍ୱପ୍ରଧାନଂ ନିର୍ମଳଂ ପ୍ରକାଶବହୁଳଂ ସୁଖଂ ଫଳମାହୁଃ କପିଳାଦୟଃ, ରଜସ ଇତି ରାଜସସ୍ୟ କର୍ମଣ ଇତ୍ୟର୍ଥଃ, କର୍ମଫଳକଥନସ୍ୟ ପ୍ରକୃତତ୍ୱାତ୍ ତସ୍ୟ ଦୁଃଖଂ ଫଳ ମାହୁଃ, ତମସ ଇତି ତାମସସ୍ୟ କର୍ମଣ ଇତ୍ୟର୍ଥଃ ତସ୍ୟାଜ୍ଞାନଂ ମୂଢତ୍ୱଂ ଫଳମାହୁଃ ସାତ୍ତ୍ୱିକାଦିକର୍ମଲକ୍ଷଣଂଚୈତତ୍ ସଙ୍ଗରହିତମିତ୍ୟାଦିନା ଅଷ୍ଟାଦଶେଽଧ୍ୟାୟେ ବକ୍ଷ୍ୟତି । ୧୬ ।

Digitized by PPRACHIN, SOA

### ପଦବ୍ୟାଖ୍ୟା ।

କର୍ମଣଃ—କର୍ମର, ସୁକୃତସ୍ୟ—ସାତ୍ତ୍ୱିକ, ଆହୁଃ—କହିଅଛନ୍ତି, ସାତ୍ତ୍ୱିକଂ—ସୁଖଦାୟକ, ନିର୍ମଳଂ—ପ୍ରକାଶବନ୍ତ, ଫଳଂ—ଫଳ, ରଜସଃ ତୁ ଫଳଂ ଦୁଃଖଂ—ରାଜସକର୍ମର ଫଳ ଦୁଃଖ, ଅଜ୍ଞାନଂ ତମସଃ ଫଳଂ—ଅଜ୍ଞାନ ତାମସ କର୍ମର ଫଳ । ୧୬ ।

### ଅନୁବାଦ ।

ସାତ୍ତ୍ୱିକକର୍ମର ଫଳ ନିର୍ମଳ ସୁଖ, ରାଜସକର୍ମର ଫଳ ଦୁଃଖ ଏବଂ ତାମସକର୍ମର ଫଳ ଅଜ୍ଞାନ ବୋଲି (କପିଳାଦି ମହର୍ଷିମାନେ) କହିଅଛନ୍ତି । ୧୬ ।

### ତଶଦବ୍ୟାଖ୍ୟା ।

ସାତ୍ତ୍ୱିକ କର୍ମର ଫଳ, ସତ୍ତ୍ୱ ପ୍ରଧାନ ନିର୍ମଳ ସୁଖ । ସେହିପରି ରାଜସିକ କର୍ମରେ ପାପ-ମିଶ୍ରିତ ପୁଣ୍ୟ ଥିବାରୁ ଅଳ୍ପ ସୁଖ ଏବଂ ଅଧିକ ଦୁଃଖ-ମିଶ୍ରିତ ଫଳ ପ୍ରାପ୍ତ ହୁଏ ଏବଂ ତାମସ କର୍ମରେ କେବଳ ଅଜ୍ଞାନ ଅର୍ଥାତ୍ ବିବେକଭ୍ରଂଶରୂପ ଦୁଃଖ ଫଳ ଲାଭ ହୁଏ ବୋଲି କପିଳାଦି ମହର୍ଷିମାନେ କହିଅଛନ୍ତି । ୧୬ ।

### ଶ୍ଳୋକଃ ।

* ସତ୍ତ୍ୱାତ୍ ସଞ୍ଜାୟତେ ଜ୍ଞାନଂ, ରଜସୋ ଲୋଭ ଏବ ଚ ।
ପ୍ରମାଦମୋହୌ ତମସୋ, ଭବତୋଽଜ୍ଞାନମେବ ଚ ॥ ୧୭ ॥

### ଅନ୍ୱୟଃ ।

ସତ୍ତ୍ୱାତ୍ ଜ୍ଞାନଂ, ରଜସଃ ଚ ଲୋଭ ଏବ ସଞ୍ଜାୟତେ, ତମସଃ ପ୍ରମାଦମୋହୌ ଭବତଃ ଚ ଅଜ୍ଞାନଂ ଏବ । ୧୭ ।

### ଟୀକା ।

ତତ୍ରୈବ ହେତୁମାହ, ସତ୍ତ୍ୱାଦିତି । ସତ୍ତ୍ୱାତ୍ ଜ୍ଞାନଂ ସଞ୍ଜାୟତେ, ଅତଃ ସାତ୍ତ୍ୱିକସ୍ୟ କର୍ମଣଃ ପ୍ରକାଶବହୁଳଂ ସୁଖଂ ଫଳଂ ଭବତି, ରଜସୋ ଲୋଭୋ ଜାୟତେ ତସ୍ୟ ଚ ଦୁଃଖହେତୁତ୍ୱାତ୍ ତତ୍ପୂର୍ବକସ୍ୟ କର୍ମଣୋ ଦୁଃଖଂ ଫଳଂ ଭବତି, ତମସସ୍ତୁ ପ୍ରମାଦମୋହାଜ୍ଞାନାନି ଭବନ୍ତି ଅତସ୍ତାମସସ୍ୟ କର୍ମଣୋଽଜ୍ଞାନମାତ୍ରଂ ପ୍ରାପ୍ୟଂ ଫଳଂ ଭବତୀତି ଯୁକ୍ତମେବେତ୍ୟର୍ଥଃ । ୧୭ ।

### ପଦବ୍ୟାଖ୍ୟା ।

ସତ୍ତ୍ୱାତ୍—ସତ୍ତ୍ୱଗୁଣରୁ, ସଞ୍ଜାୟତେ—ଜାତ ହୁଏ, ଜ୍ଞାନଂ—ଅନ୍ତଃକରଣ ଶୁଦ୍ଧିଦ୍ୱାରା ପ୍ରାପ୍ତ ଜ୍ଞାନ, ରଜସଃ—ରଜୋଗୁଣରୁ, ଲୋଭ ଏବ ଚ—ଲୋଭ ଅର୍ଥାତ୍ କେବଳ ବିଷୟବାସନା, ପ୍ରମାଦମୋହୌ—ଅସାବଧାନତା ଓ ମିଥ୍ୟାଜ୍ଞାନ, ତମସଃ—ତମୋଗୁଣରୁ, ଭବତଃ—ହୁଅନ୍ତି, ଅଜ୍ଞାନ ଏବ ଚ—ଅଜ୍ଞାନ ମଧ୍ୟ । ୧୭ ।

### ଅନୁବାଦ ।

ସତ୍ତ୍ୱଗୁଣରୁ ଜ୍ଞାନ, ରଜୋଗୁଣରୁ ଲୋଭ ଏବଂ ତମୋଗୁଣରୁ ପ୍ରମାଦ, ମୋହ ଓ ଅଜ୍ଞାନ, ଏମାନେ ଉତ୍ପନ୍ନ ହୁଅନ୍ତି । ୧୭ ।

### ତଶଦବ୍ୟାଖ୍ୟା ।

ସତ୍ତ୍ୱଗୁଣ ହେତୁରୁ ସମସ୍ତ ଇନ୍ଦ୍ରିୟ ଦ୍ୱାରରେ ସ୍ୱ ସ୍ୱ ବିଷୟ ଗ୍ରହଣରୂପ ନିର୍ମଳ ଶକ୍ତି ପ୍ରକା-

Digitized by PPRACHIN, SOA

ଶିତ ହୁଏ ଓ ଇନ୍ଦ୍ରିୟରୁ ଶବ୍ଦାଦି ବିଷୟଜ୍ଞାନ ଜାତ ହୁଏ । ସେପରି ଜ୍ଞାନ ଜାତ ହେଲେ, ନିର୍ମଳ ସୁଖ ଅନୁଭବ ହୁଏ । ରଜୋଗୁଣର ଲକ୍ଷଣ କର୍ମାସକ୍ତି, ତାହାଦ୍ୱାରା ଜୀବ, ବାରମ୍ବାର କର୍ମରେ ଆସକ୍ତ ହୁଏ ଅର୍ଥାତ୍ ଏ କର୍ମ ଅପେକ୍ଷା ଅନ୍ୟ କର୍ମରେ ଅଧିକ ଫଳ ଲାଭ ହେବ ଓ ତାହା ଅପେକ୍ଷା ଅପର କର୍ମରେ ଅଧିକତର ଫଳ ଲାଭ ହେବ ଇତ୍ୟାଦି ପ୍ରକାରର ଲୋଭ ଜାତ ହୁଏ, ସୁତରାଂ ଲୋଭହେତୁରୁ ନାନା କର୍ମରେ ପ୍ରବୃତ୍ତ ହେବାରୁ ଶେଷରେ ଦୁଃଖ ମାତ୍ର ଫଳ ହୁଏ । ସେହିପରି ତମୋଗୁଣରୁ ଅସାବଧାନତା ଓ ମିଥ୍ୟାଭିନିବେଶ ଜାତ ହୁଏ ଅର୍ଥାତ୍ ଦେହାଦିରେ ଅହଂଜ୍ଞାନ ପ୍ରବଳ ହୁଏ । ସେହିହେତୁରୁ ସଂସାରବନ୍ଧନରୂପ ଦୁଃଖର କାରଣ ଯେ ଅଜ୍ଞାନ, ତାହାହିଁ ଫଳରୂପେ ଲବ୍ଧ ହୁଏ ଅର୍ଥାତ୍ ଜୀବ, ପୁନଃପୁନଃ ସଂସାରରେ ଜନ୍ମ ଗ୍ରହଣ କରେ । ୧୭ ।

ଶ୍ଳୋକଃ ।

* ଊର୍ଦ୍ଧ୍ୱଂ ଗଚ୍ଛନ୍ତି ସତ୍ତ୍ୱସ୍ଥା, ମଧ୍ୟେ ତିଷ୍ଠନ୍ତି ରାଜସାଃ ।
ଜଘନ୍ୟଗୁଣବୃତ୍ତିସ୍ଥା, ଅଧୋ ଗଚ୍ଛନ୍ତି ତାମସାଃ । ୧୮ ।

ଅନ୍ୱୟଃ ।

ସତ୍ତ୍ୱସ୍ଥାଃ ଊର୍ଦ୍ଧ୍ୱଂ ଗଚ୍ଛନ୍ତି, ରାଜସାଃ ମଧ୍ୟେ ତିଷ୍ଠନ୍ତି, ଜଘନ୍ୟଗୁଣବୃତ୍ତିସ୍ଥାଃ ତାମସାଃ ଅଧଃ ଗଚ୍ଛନ୍ତି । ୧୮ ।

ଟୀକା ।

ଇଦାନୀଂ ସତ୍ତ୍ୱାଦିବୃତ୍ତିଶୀଳାନାଂ ଫଳଭେଦମାହ । ଊର୍ଦ୍ଧ୍ୱମିତି । ସତ୍ତ୍ୱସ୍ଥାଃ ସତ୍ତ୍ୱବୃତ୍ତିପ୍ରଧାନାଃ ଊର୍ଦ୍ଧ୍ୱଂ ଗଚ୍ଛନ୍ତି, ସତ୍ତ୍ୱୋତ୍କର୍ଷତାରତମ୍ୟାଦୁତ୍ତରୋତ୍ତରଶତଗୁଣାନନ୍ଦାନ୍ ମନୁଷ୍ୟଗନ୍ଧର୍ବପିତୃଦେବାଦିଲୋକାନ୍ ସତ୍ୟଲୋକପର୍ଯ୍ୟନ୍ତାନ ପ୍ରାପ୍ନୁବନ୍ତୀତ୍ୟର୍ଥଃ । ରାଜସାସ୍ତୁ ତୃଷ୍ଣାଦ୍ୟାକୁଳା ମଧ୍ୟେ ତିଷ୍ଠନ୍ତି, ମନୁଷ୍ୟଲୋକ ଏବୋତ୍ପଦ୍ୟନ୍ତେ । ଜଘନ୍ୟୋନିକୃଷ୍ଟଃ ତମୋଗୁଣସ୍ତସ୍ୟ ବୃତ୍ତିଃ ପ୍ରମାଦମୋହାଦିଃ ତତ୍ର ସ୍ଥିତାଃ ଅଧୋ ଗଚ୍ଛନ୍ତି, ତମୋବୃତ୍ତିତାରତମ୍ୟାତ୍ତିର୍ଯ୍ୟକ୍ତ୍ୱଂ ନରକେଷୂତ୍ପଦ୍ୟନ୍ତେ । ୧୮ ।

ପଦବ୍ୟାଖ୍ୟା ।

ଊର୍ଦ୍ଧ୍ୱଂ ଗଚ୍ଛନ୍ତି—ସତ୍ୟ ଓ ସ୍ୱର୍ଗାଦି ଉଚ୍ଚଲୋକମାନଙ୍କୁ ଯାଆନ୍ତି, ସତ୍ତ୍ୱସ୍ଥାଃ—ସତ୍ତ୍ୱଗୁଣକୁ ଆଶ୍ରୟ କରିବା ବ୍ୟକ୍ତିମାନେ, ମଧ୍ୟେ—ମନୁଷ୍ୟାଦି ଲୋକରେ, ତିଷ୍ଠନ୍ତି—ବାସ କରନ୍ତି, ରାଜସାଃ—ରଜୋଗୁଣିମାନେ, ଜଘନ୍ୟଗୁଣବୃତ୍ତିସ୍ଥାଃ—ନିକୃଷ୍ଟଗୁଣାଶ୍ରୟୀମାନେ, ଅଧୋ ଗଚ୍ଛନ୍ତି—ନୀଚ—ନରକ କିମ୍ବା ପଶୁ, ପକ୍ଷୀ, କୀଟ, ସର୍ପ, ପତଙ୍ଗାଦି ଶରୀର ପ୍ରାପ୍ତ ହୁଅନ୍ତି, ତାମସାଃ—ତମୋଗୁଣିମାନେ । ୧୮ ।

ଅନୁବାଦ ।

ସତ୍ତ୍ୱଗୁଣାବଲମ୍ବିଲୋକେ ସ୍ୱର୍ଗାଦି ଊର୍ଦ୍ଧ୍ୱଲୋକକୁ ଗମନ କରନ୍ତି, ରଜୋଗୁଣିମାନେ ମର୍ତ୍ତ୍ୟଲୋକରେ ଅବସ୍ଥାନ କରନ୍ତି ଏବଂ ନିକୃଷ୍ଟବ୍ୟବହାରୀ ତମୋଗୁଣିମାନେ ଅଧୋଗତିକୁ ପ୍ରାପ୍ତ ହୁଅନ୍ତି । ୧୮ ।

ଭଗବଦ୍ବ୍ୟାଖ୍ୟା ।

ସତ୍ତ୍ୱଗୁଣୀ ଲୋକମାନେ ସତ୍ତ୍ୱଗୁଣର ତାରତମ୍ୟାନୁସାରେ ପିତୃଲୋକଠାରୁ ବ୍ରହ୍ମଲୋକ ପର୍ଯ୍ୟନ୍ତ ଊର୍ଦ୍ଧ୍ୱଲୋକକୁ ଗମନ କରନ୍ତି । ରଜୋଗୁଣୀ ଲୋକମାନେ ରଜୋଗୁଣର ନ୍ୟୂନା-

ତରେକ ଅନୁସାରେ ମନୁଷ୍ୟଲୋକରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଓ ଅନ୍ତ୍ୟଜାଦି ଯୋନିରେ ଜାତ ହୋଇ ଅବସ୍ଥାନ କରନ୍ତି । ଆଉ ନିକୃଷ୍ଟବୃତ୍ତିଧାରୀ ତମୋଗୁଣୀ ଲୋକମାନେ ତମୋଗୁଣର ଅଳ୍ପତା ବା ଆଧିକ୍ୟ ଅନୁସାରେ ପଶୁ, ପକ୍ଷୀ, କୀଟ ଓ ପତଙ୍ଗାଦି ଯୋନିରେ ଜାତ ହୋଇ ଅଧୋଗତି ପ୍ରାପ୍ତ ହୁଅନ୍ତି, ଅଥବା ଅନ୍ଧତାମିସ୍ରାଦି ନରକରେ ପତିତ ହୁଅନ୍ତି । ୧୮ ।

ଶ୍ଲୋକଃ ।

* ନାନ୍ୟଂ ଗୁଣେଭ୍ୟଃ କର୍ତ୍ତାରଂ, ଯଦା ଦ୍ରଷ୍ଟାନୁପଶ୍ୟତି ।
ଗୁଣେଭ୍ୟଶ୍ଚ ପରଂ ବେତ୍ତି, ମଦ୍ଭାବଂ ସୋଽଧିଗଚ୍ଛତି । ୧୯ ।

ଅନ୍ୱୟଃ ।

ଯଦା ହି ଦ୍ରଷ୍ଟା ଗୁଣେଭ୍ୟଃ ଅନ୍ୟଂ କର୍ତ୍ତାରଂ ନ ଅନୁପଶ୍ୟତି ଗୁଣେଭ୍ୟଃ ପରଂ ବେତ୍ତି, (ତଦା) ସଃ ମଦ୍ଭାବ ଅଧିଗଚ୍ଛତି । ୧୯ ।

ଟୀକା ।

ତଦେବଂ ପ୍ରବୃତ୍ତଗୁଣସଙ୍ଗକୃତଂ ସଂସାରପ୍ରପଞ୍ଚମୁକ୍ତ୍ୱା ଇଦାନୀଂ ତଦ୍ବ୍ୟତିରେକେଣ ମୋକ୍ଷଂ ଦର୍ଶୟତି । ନାନ୍ୟମିତି । ଯଦା ତୁ ଦ୍ରଷ୍ଟା ବିବେକୀ ଭୂତ୍ୱା ବୁଦ୍ଧ୍ୟାଦ୍ୟାକାରପରିଣତେଭ୍ୟୋଗୁଣେଭ୍ୟୋଽନ୍ୟଂ କର୍ତ୍ତାରଂ ନାନୁପଶ୍ୟତି ଅପି ତୁ ଗୁଣା ଏବ କର୍ମାଣି କୁର୍ବନ୍ତୀତି ପଶ୍ୟତି, ଗୁଣେଭ୍ୟଶ୍ଚ ପରଂ ବ୍ୟତିରିକ୍ତଂ ତତ୍ସାକ୍ଷିଣମାତ୍ମାନଂ ବେତ୍ତି, ସ ତୁ ମଦ୍ଭାବଂ ବ୍ରହ୍ମତ୍ୱମଧିଗଚ୍ଛତି ପ୍ରାପ୍ନୋତି । ୧୯ ।

ପଦବ୍ୟାଖ୍ୟା ।

ନ—ନାହିଁ, ଅନ୍ୟଂ—ଅନ୍ୟ କେହି, ଗୁଣେଭ୍ୟଃ—ଗୁଣମାନଙ୍କଠୁଁ, କର୍ତ୍ତାରଂ—କର୍ମ କରିବା ବ୍ୟକ୍ତି, ଯଦା—ଯେତେବେଳେ, ଦ୍ରଷ୍ଟା—ଦେଖିବା ବ୍ୟକ୍ତି ଅର୍ଥାତ୍ ଜୀବ, ଅନୁପଶ୍ୟତି—ବାରମ୍ବାର ଦେଖନ୍ତି, ଗୁଣେଭ୍ୟଃ ଚ ପରଂ—ଗୁଣମାନଙ୍କଠୁଁ ପୃଥକ୍, ବେତ୍ତି—ଜାଣନ୍ତି, ମଦ୍ଭାବ—ଆତ୍ମର ସ୍ୱରୂପକୁ, ସଃ—ସେହି, ଅଧିଗଚ୍ଛତି—ପ୍ରାପ୍ତ ହୁଅନ୍ତି—ବ୍ରହ୍ମତ୍ୱ ଲାଭ କରନ୍ତି । ୧୯ ।

ଅନୁବାଦ ।

**ଯେତେବେଳେ ଦ୍ରଷ୍ଟା (ଜୀବ), ଗୁଣଭିନ୍ନ, ଅନ୍ୟ କେହି କର୍ତ୍ତା ନୁହେ ବୋଲି ଜାଣନ୍ତି ଏବଂ ଗୁଣାତୀତ ଆତ୍ମାକୁ ଜାଣନ୍ତି, (ସେତେବେଳେ) ସେ, ବ୍ରହ୍ମତ୍ୱ ଲାଭ କରନ୍ତି । ୧୯ ।**

ବିଶଦବ୍ୟାଖ୍ୟା ।

'ସତ୍ତ୍ୱାଦି ଗୁଣତ୍ରୟ' ଅନ୍ତଃକରଣ, ବୁଦ୍ଧି ଓ ଇନ୍ଦ୍ରିୟାଦିରୂପରେ ପରିଣତ ହୋଇ ଅର୍ଥାତ୍ ସତ୍ତ୍ୱ ରଜଃ ଓ ତମଃ ଏହି ଗୁଣତ୍ରୟରୁ ଅନ୍ତଃକରଣ ବୁଦ୍ଧି ଓ ଇନ୍ଦ୍ରିୟାଦି ଜାତ ହୋଇ ସମସ୍ତ କର୍ମ ସମ୍ପାଦନ କରୁଅଛନ୍ତି, ଗୁଣଭିନ୍ନ, ଅନ୍ୟ କେହି କର୍ତ୍ତା ନାହାନ୍ତି, ଆଉ ଆତ୍ମା ଯେ, ସେ, ଗୁଣାତୀତ ଅର୍ଥାତ୍ ସମସ୍ତ ଗୁଣରୁ ପୃଥକ୍ ଓ କେବଳ ସାକ୍ଷୀସ୍ୱରୂପରେ ବିଦ୍ୟମାନ ଅଛନ୍ତି । ଯେତେବେଳେ ଜୀବ, ବିବେକଯୁକ୍ତ ହୋଇ ଏ ପ୍ରକାରେ ବୁଝି ପାରନ୍ତି, ସେତେବେଳେ, ତାଙ୍କର ମାୟାରୂପ ତ୍ରିଗୁଣବନ୍ଧନ ଛିନ୍ନ ହୋଇଯାଏ, ସୁତରାଂ ସେ, ଆତ୍ମର ସ୍ୱରୂପ ବ୍ରହ୍ମତ୍ୱ ଲାଭ କରନ୍ତି ଅର୍ଥାତ୍ ମୋକ୍ଷପ୍ରାପ୍ତ ହୁଅନ୍ତି ।

ଫଳକଥା ଏହି ଯେ ଆତ୍ମଜ୍ଞାନଲାଭହିଁ ମୋକ୍ଷଲାଭର ଏକମାତ୍ର ଉପାୟ ଅଟେ । ୧୯ ।

Digitized by PPRACHIN, SOA

ଶ୍ଲୋକଃ ।

* ଗୁଣାନେତାନତୀତ୍ୟ ତ୍ରୀନ୍, ଦେହୀ ଦେହସମୁଦ୍ଭବାନ୍ ।
ଜନ୍ମମୃତ୍ୟୁଜରାଦୁଃଖୈର୍ବିମୁକ୍ତୋଽମୃତମଶ୍ନୁତେ । ୨୦ ।

ଅନ୍ୱୟଃ ।

ଦେହୀ ଦେହସମୁଦ୍ଭବାନ୍ ଏତାନ୍ ତ୍ରୀନ୍ ଗୁଣାନ୍ ଅତୀତ୍ୟ ଜନ୍ମମୃତ୍ୟୁଜରାଦୁଃଖୈଃ ବିମୁକ୍ତଃ ସନ୍ ଅମୃତଂ ଅଶ୍ନୁତେ । ୨୦ ।

ଟୀକା ।

ତତଶ୍ଚ ଗୁଣକୃତସର୍ବାନର୍ଥନିବୃତ୍ତ୍ୟା କୃତାର୍ଥୋ ଭବତୀତ୍ୟାହ, ଗୁଣାନିତି । ଦେହାଦ୍ୟାକାରେଣ ସମ୍ଭବଃ ପରିଣାମୋ ଯେଷାଂ ତେ ଦେହସମୁଦ୍ଭବାସ୍ତାନେତାନ୍ ତ୍ରୀନପି ଗୁଣାନତୀତ୍ୟାତିକ୍ରମ୍ୟ ତତ୍କୃତୈର୍ଜନ୍ମାଦିଭିର୍ବିମୁକ୍ତଃ ସନ୍ନମୃତଂ ପରମାନନ୍ଦଂ ପ୍ରାପ୍ନୋତି । ୨୦ ।

ପଦବ୍ୟାଖ୍ୟା ।

ଗୁଣାନେତାନତୀତ୍ୟ ତ୍ରୀନ୍—ଏହି ତିନି ଗୁଣମାନଙ୍କୁ ଅତିକ୍ରମ କଲେ, ଦେହୀ—ଦେହଧାରୀ, ଦେହସମୁଦ୍ଭବାନ୍—ଦେହର ବୀଜସ୍ୱରୂପ, ଜନ୍ମମୃତ୍ୟୁଜରାଦୁଃଖୈଃ—ଉତ୍ପତ୍ତି, ମରଣ ଓ ବୃଦ୍ଧାବସ୍ଥାଜନିତ ଦୁଃଖରୁ, ବିମୁକ୍ତଃ—ମୁକ୍ତ ହୋଇ, ଅମୃତଂ ଅଶ୍ନୁତେ—ଅମୃତ ଅର୍ଥାତ୍ ମୋକ୍ଷରୂପ ପରମାନନ୍ଦ ପ୍ରାପ୍ତ ହୁଅନ୍ତି । ୨୦ ।

ଅନୁବାଦ ।

ଦେହୀ, ଦେହୋତ୍ପତ୍ତିର ବୀଜସ୍ୱରୂପ ଏହି ଗୁଣତ୍ରୟକୁ ଅତିକ୍ରମ କଲେ, ଜନ୍ମ, ମୃତ୍ୟୁ ଓ ଜରାଜନିତ ଦୁଃଖରୁ ବିମୁକ୍ତ ହୋଇ ମୋକ୍ଷଲାଭ କରନ୍ତି । ୨୦ ।

ବିଶଦବ୍ୟାଖ୍ୟା ।

ସତ୍ତ୍ୱାଦି ଗୁଣତ୍ରୟ ହିଁ ଦେହାଦିର ଉତ୍ପତ୍ତିର ହେତୁ ଅର୍ଥାତ୍ ସେହି ଗୁଣତ୍ରୟ ହିଁ କେବଳ ଦେହାଦିରୂପରେ ପରିଣତ ହୋଇ ଜୀବକୁ ଜନ୍ମ ମୃତ୍ୟୁର ଅଧୀନ କରେ । ଯେଉଁ ବ୍ୟକ୍ତି, ସେହି ଗୁଣତ୍ରୟର ସଙ୍ଗ ପରିହାର ବା ତ୍ୟାଗ କରନ୍ତି, ତାହାଙ୍କୁ ଜନ୍ମ, ମୃତ୍ୟୁ ଓ ଜରାର ଅଧୀନ ଆଉ ହେବାକୁ ହୁଏ ନାହିଁ । ସୁତରାଂ ଜନ୍ମ, ମୃତ୍ୟୁ ଓ ଜରାଜନିତ ଦୁଃଖରୁ ମୁକ୍ତ ହୋଇ ସେ, ପରମାନନ୍ଦରୂପ ମୋକ୍ଷଲାଭ କରନ୍ତି । ୨୦ ।

ଶ୍ଲୋକଃ ।

ଅର୍ଜ୍ଜୁନ ଉବାଚ ।—କୈର୍ଲିଙ୍ଗୈସ୍ତ୍ରୀନ୍ ଗୁଣାନେତାନତୀତୋ ଭବତି ପ୍ରଭୋ ।
କିମାଚାରଃ କଥଂ ଚୈତାଂସ୍ତ୍ରୀନ୍ ଗୁଣାନତିବର୍ତ୍ତତେ । ୨୧ ।

ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ । ହେ ପ୍ରଭୋ ! କୈଃ ଲିଙ୍ଗୈଃ ଏତାନ୍ ତ୍ରୀନ୍ ଗୁଣାନ୍ ଅତୀତଃ ଭବତି, କିମାଚାରଃ କଥଂ ଚ ଏତାନ୍ ତ୍ରୀନ୍ ଗୁଣାନ୍ ଅତିବର୍ତ୍ତତେ । ୨୧ ।

ଟୀକା ।

ଗୁଣାନେତାନତୀତ୍ୟାମୃତମଶ୍ନୁତ ଇତ୍ୟେତଚ୍ଛ୍ରୁତ୍ୱା ଗୁଣାତୀତସ୍ୟ ଲକ୍ଷଣଂ ତଦାଚାରଂ ଗୁଣାତ୍ୟୟୋପାୟଞ୍ଚ ସମ୍ୟ-

ଗୁଣତ୍ରୟ ଶୁଶ୍ରୂଷୁରର୍ଜ୍ଜୁନ ଉବାଚ, କୈରିତି । ହେ ପ୍ରଭୋ! କୈଃ ଲିଙ୍ଗୈଃ ଚିହ୍ନୈସ୍ତ୍ରୀନେତାନ୍ ଗୁଣାନତୀତୋ ଭବତୀତି ଲକ୍ଷଣଃ ପ୍ରଶ୍ନଃ, କ ଆଚାରୋଽସ୍ୟେତି କିମାଚାରଃ କଥଂ ବର୍ତ୍ତତ ଇତ୍ୟର୍ଥଃ, କଥଞ୍ଚ କେନୋପାୟେନୈତାଂସ୍ତ୍ରୀନପି ଗୁଣାନତିବର୍ତ୍ତତେ ଅତିକ୍ରାମତୀତ୍ୟର୍ଥଃ । ୨୧ ।

ପଦବ୍ୟାଖ୍ୟା ।

ଅର୍ଜ୍ଜୁନଃ ଉବାଚ—ଅର୍ଜ୍ଜୁନ କହିଲେ, କୈଃ ଲିଙ୍ଗୈଃ—କେଉଁ କେଉଁ ଚିହ୍ନମାନଙ୍କଦ୍ୱାରା, ତ୍ରୀନ୍ ଗୁଣାନ୍ ଏତାନ୍—ଏହି ତିନିଗୁଣମାନଙ୍କୁ, ଅତୀତୋ ଭବତି—ଅତିକ୍ରମ କରିଥିବା ବ୍ୟକ୍ତି ଜଣା ହୁଅନ୍ତି, ପ୍ରଭୋ—ହେ ସର୍ବସମର୍ଥ!, କିମାଚାରଃ—(ତାଙ୍କର) କି ଆଚରଣ, କଥଂ—କି ଉପାୟରେ, ଏତାନ୍ ତ୍ରୀନ୍ ଗୁଣାନ୍—ଏହି ତିନିଗୁଣମାନଙ୍କୁ, ଅତିବର୍ତ୍ତତେ—ଅତିକ୍ରମ କରନ୍ତି, ( ଅର୍ଜ୍ଜୁନଙ୍କର ତିନୋଟି ପ୍ରଶ୍ନ ଯଥା,—୧ମ ତ୍ରିଗୁଣ ରହିତର ଚିହ୍ନ, ୨ୟ ତାହାର ଆଚରଣ, ୩ୟ ତ୍ରିଗୁଣରୁ ମୁକ୍ତ ହେବାର ଉପାୟ ) । ୨୧ ।

ଅନୁବାଦ ।

ଅର୍ଜ୍ଜୁନ କହିଲେ, ହେ ପ୍ରଭୋ ! କି କି ଲକ୍ଷଣଦ୍ୱାରା ତ୍ରିଗୁଣ ଅତିକ୍ରମ କରିଥିବା ବ୍ୟକ୍ତି ଜଣା ହୁଅନ୍ତି ଓ ତାଙ୍କର ଆଚରଣ କିପରି ? ଏବଂ ସେ, କି ଉପାୟରେ ଏହି ତ୍ରିଗୁଣଙ୍କୁ ଅତିକ୍ରମ କରନ୍ତି ? । ୨୧ ।

ବିଶଦବ୍ୟାଖ୍ୟା ।

ଏତେବେଳଯାଏ ଶ୍ରୀକୃଷ୍ଣ ଯେତେ କଥା କହିଲେ, ତହିଁରୁ ସମ୍ବାଦ ଗୁଣତ୍ରୟର ଉତ୍ପତ୍ତି କ୍ରିୟା ଓ ଫଳ ଏବଂ ଗୁଣାତୀତ ପୁରୁଷଙ୍କର ମହିମା ଅର୍ଜ୍ଜୁନ ବୁଝି ପାରିଲେ । ଏବେ ଗୁଣତ୍ରୟ ତ୍ୟାଗ କରି କିପରି ମୁକ୍ତିପ୍ରାପ୍ତ ହେବେ, ଏହି ବାସନା ତାଙ୍କର ବଳବତୀ ହେବାରୁ, ସେ, ପ୍ରଶ୍ନ କରୁଅଛନ୍ତି, କି ହେ ପ୍ରଭୋ ! ଯେଉଁ ବ୍ୟକ୍ତି ଗୁଣତ୍ରୟଙ୍କୁ ଅତିକ୍ରମ କରିଅଛନ୍ତି, ତାହାଙ୍କୁ କେଉଁ କେଉଁ ଲକ୍ଷଣଦ୍ୱାରା ଚିହ୍ନିବାକୁ ହୁଏ ଅର୍ଥାତ୍ ଗୁଣାତୀତ ପୁରୁଷଙ୍କର ଲକ୍ଷଣ କଣ ? ଏବଂ ସେ, କିପରି ଆଚରଣ କରନ୍ତି ଅର୍ଥାତ୍ ଗୁଣାତୀତ ହେବାରୁ ସେ ଭ୍ରଷ୍ଟାଚାରୀ ହୁଅନ୍ତି କି ବିହିତାଚାରୀ ହୁଅନ୍ତି ? ଆଉ ସବୁ ଅନର୍ଥର ହେତୁସ୍ୱରୂପ ସେହି ଗୁଣତ୍ରୟଙ୍କୁ କି ଉପାୟଦ୍ୱାରା ଅତିକ୍ରମ କରନ୍ତି ? ତାହା ଅନୁଗ୍ରହ କରି ମୋତେ କହିବା ହେଉନ୍ତୁ । ୨୧ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।

ପ୍ରକାଶଞ୍ଚ ପ୍ରବୃତ୍ତିଞ୍ଚ, ମୋହମେବ ଚ ପାଣ୍ଡବ ।
ନ ଦ୍ୱେଷ୍ଟି ସମ୍ପ୍ରବୃତ୍ତାନି, ନ ନିବୃତ୍ତାନି କାଙ୍କ୍ଷତି । ୨୨ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ହେ ପାଣ୍ଡବ ! ପ୍ରକାଶଂ ଚ ପ୍ରବୃତ୍ତିଂ ଚ ମୋହଂ ଏବ ଚ ସମ୍ପ୍ରବୃତ୍ତାନି ନ ଦ୍ୱେଷ୍ଟି ନିବୃତ୍ତାନି ନ କାଙ୍କ୍ଷତି । ୨୨ ।

ଟୀକା ।

ସ୍ଥିତପ୍ରଜ୍ଞସ୍ୟ କା ଭାଷା ଇତ୍ୟାଦିନା ଦ୍ୱିତୀୟାଧ୍ୟାୟେ ପୃଷ୍ଟମେବ ତଦୁତ୍ତରମପି ପୂର୍ବବିଶେଷବୁଭୁତ୍ସୟା ପୁନଃ ପୃଷ୍ଟମିତି ଜ୍ଞାତ୍ୱା ପ୍ରକାରାନ୍ତରେଣ ତସ୍ୟ ଲକ୍ଷଣାଦିକଂ ଶ୍ରୀଭଗବାନୁବାଚ, ପ୍ରକାଶଂ ଚେତ୍ୟାଦି ସପ୍ତଭିଃ । ତତ୍ରୈକେନ ଲକ୍ଷଣମାହ

ପ୍ରକାଶମିତି । ପ୍ରକାଶଞ୍ଚ ସର୍ବଦ୍ୱାରେଷୁ ଦେହେଽସ୍ମିନ୍ନିତି ପୂର୍ବୋକ୍ତଂ ସତ୍ତ୍ୱକାର୍ଯ୍ୟଂ ପ୍ରବୃତ୍ତିଞ୍ଚ ରଜଃକାର୍ଯ୍ୟଂ ମୋହଞ୍ଚ ତମଃକାର୍ଯ୍ୟଂ, ଉପଲକ୍ଷଣାର୍ଥମେତତ୍ ସତ୍ତ୍ୱାଦୀନାଂ ସର୍ବାଣ୍ୟପି କାର୍ଯ୍ୟାଣି ଯଥାଯଥଂ ସମ୍ପ୍ରବୃତ୍ତାନି ସ୍ୱତଃ ପ୍ରବୃତ୍ତାନି ସନ୍ତି ଦୁଃଖବୁଦ୍ଧ୍ୟା ଯୋ ନ ଦ୍ୱେଷ୍ଟି ନିବୃତ୍ତାନି ଚ ସନ୍ତି ସୁଖବୁଦ୍ଧ୍ୟା ଯୋ ନ କାଙ୍କ୍ଷତି ଗୁଣାତୀତଃ ସ ଉଚ୍ୟତ ଇତି ଚତୁର୍ଥେନାନ୍ୱୟଃ । ୨୨ ।

ପଦବ୍ୟାଖ୍ୟା ।

ପ୍ରକାଶଞ୍ଚ—ସମସ୍ତ ଇନ୍ଦ୍ରିୟଦ୍ୱାରରେ ଜ୍ଞାନର ଉଦୟସ୍ୱରୂପ ସତ୍ତ୍ୱଗୁଣର ଧର୍ମ, ପ୍ରବୃତ୍ତିଞ୍ଚ—ନାନାପ୍ରକାର କର୍ମରେ ଆସକ୍ତିରୂପ ରଜୋଗୁଣର ଧର୍ମ, ମୋହ ଏବ ଚ—ଭ୍ରମ—ଯାହା କି ତମୋଗୁଣର ଧର୍ମ, ପାଣ୍ଡବ—ହେ ପାଣ୍ଡୁପୁତ୍ର ଅର୍ଜ୍ଜୁନ !, ନ ଦ୍ୱେଷ୍ଟି—ଦ୍ୱେଷ କରନ୍ତି ନାହିଁ, ସମ୍ପ୍ରବୃତ୍ତାନି—ସ୍ୱୟଂ ଉପସ୍ଥିତ ହେଲେ ମଧ୍ୟ, ନ ନିବୃତ୍ତାନି କାଙ୍କ୍ଷତି—ନିବୃତ୍ତ ହେଲେ ଇଚ୍ଛା କରନ୍ତି ନାହିଁ । ୨୨ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ହେ ପାଣ୍ଡବ ! ପ୍ରକାଶ, ପ୍ରବୃତ୍ତି ଓ ମୋହ ସ୍ୱୟଂ ଉପସ୍ଥିତ ହେଲେ, (ଯେଉଁ ବ୍ୟକ୍ତି) ଦ୍ୱେଷ କରନ୍ତି ନାହିଁ, ଓ ନିବୃତ୍ତ ହେଲେ ଇଚ୍ଛା କରନ୍ତି ନାହିଁ, (ସେହି ବ୍ୟକ୍ତି) ଗୁଣାତୀତ ଅଟନ୍ତି । ୨୨ ।

ବିଶଦବ୍ୟାଖ୍ୟା ।

ଦ୍ୱିତୀୟ ଅଧ୍ୟାୟରେ ଅର୍ଜ୍ଜୁନ ସ୍ଥିରବୁଦ୍ଧି ବ୍ୟକ୍ତିଙ୍କର ଲକ୍ଷଣାଦି ପ୍ରଶ୍ନ କରିଥିବାରେ, ଶ୍ରୀଭଗବାନ୍ ତାହାଁର ଯଥାର୍ଥ ଉତ୍ତର ଦେଇଥିଲେ, ତଥାପି ଅର୍ଜ୍ଜୁନ ବିଶେଷଜ୍ଞାନପାଇଁ ସେହି କଥା ପ୍ରକାରାନ୍ତରେ ପୁନର୍ବାର ପ୍ରଶ୍ନ କରୁଅଛନ୍ତି, ଏହା ଜାଣିପାରି ଶ୍ରୀଭଗବାନ୍ କହୁଅଛନ୍ତି, ହେ ଅର୍ଜ୍ଜୁନ ! ସତ୍ତ୍ୱଗୁଣର କାର୍ଯ୍ୟରୂପ ପ୍ରକାଶ, ରଜୋଗୁଣର କାର୍ଯ୍ୟରୂପ ପ୍ରବୃତ୍ତି (କର୍ମାସକ୍ତି) ଏବଂ ତମୋଗୁଣର କାର୍ଯ୍ୟରୂପ ମୋହ, ଏମାନ କୌଣସି କାରଣବଶରୁ ଆପଣାସ୍ଥାଏ ପ୍ରବୃତ୍ତ ହେଲେ, ଯେଉଁ ବ୍ୟକ୍ତି ଏଥିରେ ହାଲେ ଦୁଃଖ ଜାତ ହେବ, ଏହି ଭୟରେ ତାହାଁପ୍ରତି ଦ୍ୱେଷ ଅର୍ଥାତ୍ ଶତ୍ରୁତା ନ କରନ୍ତି ଏବଂ ସେହି ପ୍ରକାଶ, ପ୍ରବୃତ୍ତି ଓ ମୋହ ପ୍ରଭୃତି କାର୍ଯ୍ୟମାନ ଅନିତ୍ୟ ଥିବାରୁ ଆପଣାସ୍ଥାଏଁ ନିବୃତ୍ତ ହେଲେ, ଯେଉଁ ବ୍ୟକ୍ତି ସୁଖ ପାଇବା ଇଚ୍ଛାରେ ସେ ସବୁ ଆକାଂକ୍ଷା (ଅଭିଳାଷ) ନ କରନ୍ତି, ସେହି ବ୍ୟକ୍ତି ଗୁଣାତୀତ ଅଟନ୍ତି ।

ଫଳକଥା ଏହି କି, ଗୁଣତ୍ରୟର କାର୍ଯ୍ୟକୁ ଯେ, ସ୍ୱପ୍ନତୁଲ୍ୟ ଜ୍ଞାନ କରି, ତାହାଁରେ ସ୍ପୃହା ବା ଶତ୍ରୁତା ନ କରନ୍ତି, ସେହି ପୁରୁଷ ଗୁଣାତୀତ ଅଟନ୍ତି । ୨୨ ।

ଶ୍ଳୋକଃ ।

୍ ଉଦାସୀନବଦାସୀନୋ, ଗୁଣୈର୍ଯୋ ନ ବିଚାଲ୍ୟତେ ।
ଗୁଣା ବର୍ତ୍ତନ୍ତ ଇତ୍ୟେବ, ଯୋଽବତିଷ୍ଠତି ନେଙ୍ଗତେ । ୨୩ ।

ଅନ୍ୱୟଃ ।

ଯଃ ଉଦାସୀନବତ୍ ଆସୀନଃ (ସନ୍) ଗୁଣୈଃ ନ ବିଚାଲ୍ୟତେ ଗୁଣାଃ ଏବଂ ବର୍ତ୍ତନ୍ତେ ଇତି ଯଃ ତୁ ଅବତିଷ୍ଠତି ନ ଇଙ୍ଗତେ । ୨୩ ।

Digitized by PPRACHIN, SOA

ଟୀକା ।

ତଦେବ ସ୍ୱସଂବେଦ୍ୟଂ ଗୁଣାତୀତସ୍ୟ ଲକ୍ଷଣମୁକ୍ତ୍ୱା ଦ୍ୱିତୀୟପ୍ରଶ୍ନସ୍ୟ ବମାଗ୍ରଭ ଉତ୍ତ୍ୟଯୋତ୍ତରମାହ, ଉଦାସୀନ ଇତ ତ୍ରିଭିଃ । ଉଦାସୀନବତ୍ ସାକ୍ଷିତୟା ଅସୀନଃ ସ୍ଥିତଃ ସନ୍ ଗୁଣୈର୍ଗୁଣକାର୍ଯ୍ୟୈଃ ସୁଖଦୁଃଖାଦିଭିର୍ନ ଯୋବଶ୍ଲ୍ୟତେ ସ୍ୱରୂପାନ୍ନ ପ୍ରଚ୍ୟାବ୍ୟତେ ଅପି ତୁ ଗୁଣା ଏବ ସ୍ୱକାର୍ଯ୍ୟେଷୁ ବର୍ତ୍ତନ୍ତେ ଏତେନୈବ ସ୍ଥିତ୍ୱା ଏବ ତୂଷ୍ଣୀଂ ଭବେତ୍ତଷ୍ଠେନେନ ଯସ୍ତୂଷ୍ଣୀମବତିଷ୍ଠତ ପରସ୍ମୈପଦମାର୍ଷଂ, ନେଙ୍ଗତେ ନ ଚଳତ । ୨୩ ।

ପଦବ୍ୟାଖ୍ୟା ।

ଉଦାସୀନବତ୍—ଉଦାସୀନ ପରି, ଅସୀନଃ—ସ୍ଥିତ, ଗୁଣୈଃ—ଗୁଣସମୂହଦ୍ୱାରା, ଯଃ—ଯେଉଁ ପୁରୁଷ, ନ ବିଚା-ଲ୍ୟତେ—ପରିଚାଳିତ ହୁଅନ୍ତି ନାହିଁ, ଗୁଣାଃ ବର୍ତ୍ତନ୍ତ ଇତି—ଗୁଣମାନେ ଆପଣା କର୍ମ କରୁଅଛନ୍ତି ଏହା ମନେ କରି, ଏବ—ନିଶ୍ଚୟ, ଯୋଽବତିଷ୍ଠତେ—ଯେ ଅବସ୍ଥାନ କରନ୍ତି, ନେଙ୍ଗତେ—ବିଚଳିତ ହୁଅନ୍ତି ନାହିଁ । ୨୩ ।

ଅନୁବାଦ ।

**ଯେଉଁ ବ୍ୟକ୍ତି ଉଦାସୀନ ପରି ସ୍ଥିତ, ଗୁଣମାନେ ଯାହାକୁ ପରିଚାଳିତ କରି ପାରନ୍ତି ନାହିଁ, ଗୁଣମାନେ ନିଜ ନିଜ କାର୍ଯ୍ୟରେ ଲାଗିଅଛନ୍ତି, ଏପରି ଜ୍ଞାନ କରି ଯେ, ଧୀରଭାବରେ ଅବସ୍ଥିତ କରନ୍ତି, (ସେ, ଗୁଣାତୀତ ଅଟନ୍ତି) । ୨୩ ।**

ବିଷଦବ୍ୟାଖ୍ୟା ।

**ପୂର୍ବ ଶ୍ଳୋକରେ ଗୁଣାତୀତ ପୁରୁଷଙ୍କର ଯେଉଁ ଲକ୍ଷଣ ଲେଖା ହୋଇଅଛି, ତାହା 'ସ୍ୱସଂବେଦ୍ୟ' ଅର୍ଥାତ୍ ଗୁଣାତୀତ ପୁରୁଷ, ଉକ୍ତ ଲକ୍ଷଣଦ୍ୱାରା ଆପେ ଆପଣାକୁ ଚିହ୍ନି ପାରନ୍ତି । ମାତ୍ର ଏ ଶ୍ଳୋକରେ ଗୁଣାତୀତ ପୁରୁଷଙ୍କର ଯେଉଁ ଲକ୍ଷଣ ଲେଖା ଯାଉଅଛି, ତାହା 'ପର-ସଂବେଦ୍ୟ' ଅର୍ଥାତ୍ ପର ବା ଅନ୍ୟ ଲୋକେ ଏହି ଲକ୍ଷଣଦ୍ୱାରା ଗୁଣାତୀତ ପୁରୁଷଙ୍କୁ ଚିହ୍ନି ପାରନ୍ତି ।**

ଯେଉଁ ପୁରୁଷ, ଉଦାସୀନ ପରି ସ୍ଥିତ ଅର୍ଥାତ୍ ଭଲ ବା ମନ୍ଦ କୌଣସି ବିଷୟରେ ଯେ, ପକ୍ଷପାତୀ ନ ହୋଇ ପୃଥକ୍ ଭାବରେ ଅବସ୍ଥିତ, ପୁଣି ଗୁଣମାନେ ନିଜର ସୁଖ ଦୁଃଖାଦି କାର୍ଯ୍ୟଦ୍ୱାରା ଯେଉଁ ପୁରୁଷଙ୍କୁ ବିଚଳିତ କରି ନ ପାରନ୍ତି ଏବଂ ସଂସାରର ସମସ୍ତ ଘଟଣା ସତ୍ତ୍ୱାଦି ଗୁଣତ୍ରୟଦ୍ୱାରା ସାଧିତ ହେଉଅଛି, କିନ୍ତୁ ଆତ୍ମାର ସେ ସବୁ କାର୍ଯ୍ୟର ସହିତ କୌଣସି ପ୍ରକାର ସମ୍ପର୍କ ନାହିଁ, ଏହା ଜାଣି ଯେ ସ୍ଥିରଭାବରେ ଅବସ୍ଥାନ କରନ୍ତି ଓ ସୁଖ ଦୁଃଖାଦିରେ ବିଚଳିତ ନୁହନ୍ତି, ସେହି ପୁରୁଷଙ୍କୁ ଗୁଣାତୀତ ବୋଲି ଜାଣିବ ଅର୍ଥାତ୍ ଏ ଶ୍ଳୋକଲିଖିତ ଗୁଣ-ଗୁଡ଼ିକ ଗୁଣାତୀତ ପୁରୁଷଙ୍କର ଲକ୍ଷଣ ଅଟେ । ୨୩ ।

ଶ୍ଳୋକଃ ।

* ସମଦୁଃଖସୁଖଃ ସ୍ୱସ୍ଥଃ, ସମଲୋଷ୍ଟାଶ୍ମକାଞ୍ଚନଃ ।
ତୁଲ୍ୟପ୍ରିୟାପ୍ରିୟୋ ଧୀର, ସ୍ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ । ୨୪ ।

ଅନ୍ୱୟଃ ।

* ସମଦୁଃଖସୁଖଃ ସ୍ୱସ୍ଥଃ ସମଲୋଷ୍ଟାଶ୍ମକାଞ୍ଚନଃ, ତୁଲ୍ୟପ୍ରିୟାପ୍ରିୟଃ ଧୀରଃ ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ । ୨୪ ।

Digitized by PPRACHIN, SOA

ଟୀକା ।

ଅପି ଚ ସମେତି । ସମେ ଦୁଃଖସୁଖେ ଯସ୍ୟ ସଃ ସ୍ୱସ୍ଥଃ ସ୍ୱରୂପ ଏବ ସ୍ଥିତଃ ଅତଏବ ସମାନ ଲୋଷ୍ଟାଶ୍ମକାଞ୍ଚନାନି ଯସ୍ୟ ତୁଲ୍ୟେ ପ୍ରିୟାପ୍ରିୟେ ସୁଖଦୁଃଖହେତୁଭୂତେ ଯସ୍ୟ ଧୀରୋଧୀମାନ୍ ତୁଲ୍ୟା ନିନ୍ଦା ଚ ଆତ୍ମନଃ ସ୍ତୁତିଶ୍ଚ ଯସ୍ୟ । ୨୪ ।

ପଦବ୍ୟାଖ୍ୟା ।

ସମଦୁଃଖସୁଖଃ—ଦୁଃଖ ଓ ସୁଖରେ ଯାହାଙ୍କର ସମାନ ଭାବ, ସ୍ୱସ୍ଥଃ—ସ୍ୱରୂପ ଅବସ୍ଥାରେ (ଆତ୍ମାରେ) ସ୍ଥିତ, ସମଲୋଷ୍ଟାଶ୍ମକାଞ୍ଚନଃ—(ଲୋଷ୍ଟ) = ଟେକା, (ଅଶ୍ମ) = ପ୍ରସ୍ତର ଓ (କାଞ୍ଚନ) = ସୁବର୍ଣ୍ଣ ଏ ସମସ୍ତରେ ଯାହାଙ୍କର ସମାନ ବୁଦ୍ଧି, ତୁଲ୍ୟପ୍ରିୟାପ୍ରିୟଃ—ପ୍ରିୟ ଓ ଅପ୍ରିୟ ବସ୍ତୁରେ ଯାହାଙ୍କର ସମାନ ଜ୍ଞାନ, ଧୀରଃ—ସ୍ଥିରବୁଦ୍ଧି, ତୁଲ୍ୟନିନ୍ଦାତ୍ମସଂସ୍ତୁତିଃ—ଅପଣା ନିନ୍ଦା ଓ ପ୍ରଶଂସାରେ ଯାହାଙ୍କର ସମାନ ଜ୍ଞାନ । ୨୪ ।

ଅନୁବାଦ ।

ଯେ, ସୁଖ ଓ ଦୁଃଖରେ ସମାନ ଜ୍ଞାନୀ, ଆତ୍ମାରେ ଅବସ୍ଥିତ, ଲୋଷ୍ଟ୍ର, ପ୍ରସ୍ତର ଓ ସୁବର୍ଣ୍ଣରେ ସମବୁଦ୍ଧି, ପ୍ରିୟ ଓ ଅପ୍ରିୟ ପଦାର୍ଥରେ ସମଭାବାପନ୍ନ, ଧୀର ଏବଂ ନିଜର ନିନ୍ଦା ଓ ପ୍ରଶଂସାରେ ସମାନ ଜ୍ଞାନୀ, (ସେ, ଗୁଣାତୀତ ଅଟନ୍ତି) । ୨୪ ।

ବିଶଦବ୍ୟାଖ୍ୟା ।

ସୁଖ ଓ ଦୁଃଖ ଅନ୍ତଃକରଣର ବିଶେଷ୨ ବୃତ୍ତି ଅଟେ । ଅନ୍ତଃକରଣ ଅନାତ୍ମପଦାର୍ଥ ବୋଲି ଅନିତ୍ୟ ଅଟେ, ସୁତରାଂ ସୁଖ ଓ ଦୁଃଖ ମଧ୍ୟ ଅନିତ୍ୟ । ଯେଉଁ ପୁରୁଷ ସ୍ୱରୂପଭାବରେ ଅର୍ଥାତ୍ ଆତ୍ମଜ୍ଞାନରେ ଅବସ୍ଥିତ, ତାହାଙ୍କର ସୁଖ ଓ ଦୁଃଖରେ ଆସ୍ଥା ହେବ କିପରି ? ସେ, ସହଜରେ ସୁଖ ଓ ଦୁଃଖ ଦୁହିଁଙ୍କି ସ୍ୱପ୍ନବତ୍ ଅସତ୍ ଓ ମିଥ୍ୟା ଜାଣିପାରି ତହିଁରେ ଆସ୍ଥା କରନ୍ତି ନାହିଁ । ତାହାଙ୍କର ରଜୋଗୁଣ ସଙ୍ଗେ୨ ତୃଷ୍ଣା ଓ ଲୋଭାଦି ବୃତ୍ତି ବିନଷ୍ଟ ହୋଇଥିବାରୁ ଟେକା, ପଥର ଓ ସୁନାରେ ସମଭାବ ଜନ୍ମେ ଅର୍ଥାତ୍ ଟେକା ଅପେକ୍ଷା ସୁବର୍ଣ୍ଣର ଯେ କିଛି ଅଧିକ ମୂଲ୍ୟ ଅଛି, ତାହାଙ୍କର ସେ ଭେଦଜ୍ଞାନ ନ ଥାଏ । ପ୍ରିୟ ଓ ଅପ୍ରିୟ ବିଷୟରେ ଅଥବା ଶତ୍ରୁ ଓ ମିତ୍ରଠାରେ ତାହାଙ୍କର ସମାନ ବୁଦ୍ଧି, କାହିଁକି ନା ଆତ୍ମଜ୍ଞାନ ହୋଇଥିବାରୁ ସେ, ସମସ୍ତଙ୍କୁ ଏକ ଆତ୍ମାସ୍ୱରୂପ ଦେଖନ୍ତି, ସୁତରାଂ ତାଙ୍କର ଆଉ ଶତ୍ରୁ ଓ ମିତ୍ର କେଉଁଠାରୁ ଆସିବେ ? ପୁଣି କେହି ତାଙ୍କର ନିନ୍ଦା ବା ସ୍ତୁତି କଲେ, ସେ, ତହିଁରେ ସମାନଜ୍ଞାନ କରନ୍ତି, ଯେହେତୁ ଆତ୍ମଜ୍ଞାନୀ ବ୍ୟକ୍ତିଙ୍କର 'ସ୍ତାବକ' (ଖୁସାମତିଆ) ଓ 'ନିନ୍ଦୁକ' ଏ ଭେଦଜ୍ଞାନ ଥିବା ସମ୍ଭବ ନୁହେ । ଏ ସ୍ଥଳରେ ଏପରି ଆପତ୍ତି କେହି କରି ପାରନ୍ତି, ଯେ ସୁଖରେ ଓ ଦୁଃଖରେ, ଲୋଷ୍ଟ୍ର ଓ ସୁବର୍ଣ୍ଣରେ, ଶତ୍ରୁ ଓ ମିତ୍ରରେ ଏବଂ ନିନ୍ଦା ଓ ପ୍ରଶଂସାରେ ସମାନଜ୍ଞାନ ତ କେଣେ ବାତୁଳର (ପାଗଳର) ହୋଇପାରେ, ତେବେ ତାଙ୍କୁ କି ଗୁଣାତୀତ ବୋଲାଯିବ ? ସେଥିପାଇଁ ଏ ଶ୍ଳୋକରେ 'ଧୀର' ପଦ ଦିଆ ହୋଇଅଛି, ଅର୍ଥାତ୍ ସ୍ଥିରବୁଦ୍ଧି ହୋଇ ଯେ, ଉପରଉକ୍ତ ଭେଦଜ୍ଞାନବର୍ଜିତ ହେବେ, ସେହି କେବଳ ଗୁଣାତୀତ ଅଟନ୍ତି । ୨୪ ।

ଶ୍ଳୋକଃ ।

* ମାନାପମାନୟୋସ୍ତୁଲ୍ୟସ୍ତୁଲ୍ୟୋ ମିତ୍ରାରିପକ୍ଷୟୋଃ ।
ସର୍ବାରମ୍ଭପରିତ୍ୟାଗୀ, ଗୁଣାତୀତଃ ସ ଉଚ୍ୟତେ । ୨୫ ।

Digitized by PPRACHIN, SOA

## ଅନ୍ୱୟଃ ।

(ଯଃ) ମାନାପମାନୟୋଃ ତୁଲ୍ୟଃ, ମିତ୍ରାରିପକ୍ଷୟୋଃ ତୁଲ୍ୟଃ, ସର୍ବାରମ୍ଭପରିତ୍ୟାଗୀ, ସଃ ଗୁଣାତୀତଃ ଉଚ୍ୟତେ ।୨୫।

## ଟୀକା ।

କିଂଚ ମାନେତି । ମାନେ ଅପମାନେ ଚ ତୁଲ୍ୟଃ ମିତ୍ରପକ୍ଷେ ଅରିପକ୍ଷେ ଚ ତୁଲ୍ୟଃ, ସର୍ବାନ୍ ଦୃଷ୍ଟାଦୃଷ୍ଟାର୍ଥାନାରମ୍ଭାନୁଦ୍ୟମାନ୍ ପରିତ୍ୟକ୍ତୁଂ ଶୀଳଂ ଯସ୍ୟ ସ ଏବମ୍ଭୂତୋ ଯତିର୍ଗୁଣାତୀତ ଉଚ୍ୟତେ । ୨୫ ।

## ପଦବ୍ୟାଖ୍ୟା ।

ମାନାପମାନୟୋଃ—ଆଦର ଓ ଅନାଦର ଏ ଦୁଇରେ, ତୁଲ୍ୟଃ—ସମାନ, ତୁଲ୍ୟୋମିତ୍ରାରିପକ୍ଷୟୋଃ—ମିତ୍ର ଓ ଶତ୍ରୁ, ଏ ଦୁଇପକ୍ଷରେ ସମାନ, ସର୍ବାରମ୍ଭପରିତ୍ୟାଗୀ—ସମସ୍ତ କର୍ମରେ ଉଦ୍ୟୋଗହୀନ, ଗୁଣାତୀତଃ—ଗୁଣତ୍ରୟରୁ ପୃଥକ୍, ସ ଉଚ୍ୟତେ—ତାହାଙ୍କୁ ବୋଲାଯାଏ । ୨୫ ।

## ଅନୁବାଦ ।

ଯେ, ମାନ ଓ ଅପମାନରେ ସମଜ୍ଞାନୀ, ଶତ୍ରୁ ଓ ମିତ୍ରପକ୍ଷରେ ସମବୁଦ୍ଧି ଏବଂ ସମସ୍ତ କର୍ମର ଉଦ୍ୟମପରିତ୍ୟାଗୀ, ତାହାଙ୍କୁ ଗୁଣାତୀତ ବୋଲାଯାଏ । ୨୫ ।

## ବିଶଦବ୍ୟାଖ୍ୟା ।

ଯେଉଁ ବ୍ୟକ୍ତିଙ୍କୁ ପୁରସ୍କାର ଦେଲେ ଅଥବା ଆଦର କଲେ, ସେ, ସମ୍ମାନ ବୋଧରେ ତୁଷ୍ଟ ହୁଅନ୍ତି ନାହିଁ, କି ତିରସ୍କାର ବା ଅନାଦର କଲେ, ଅପମାନ ଜ୍ଞାନ କରି ରୁଷ୍ଟ ହୁଅନ୍ତି ନାହିଁ, ଯେ, ମିତ୍ର ଶତ୍ରୁ ଉଭୟ ପକ୍ଷରେ ଉଦାସୀନ ଅର୍ଥାତ୍ ଏକପକ୍ଷକୁ ଆଦର ବା ପୁରସ୍କାର ଏବଂ ଅପରପକ୍ଷକୁ ଅନାଦର ବା ତିରସ୍କାର ନ କରି ତୁଲ୍ୟ ବ୍ୟବହାର କରନ୍ତି ଏବଂ ଲୌକିକ ଓ ବୈଦିକ କୌଣସି କାର୍ଯ୍ୟ କରିବାକୁ କିଛି ମାତ୍ର ଉଦ୍ୟୋଗ କରନ୍ତି ନାହିଁ, କେବଳ ପ୍ରାରବ୍ଧକର୍ମ ଅନୁସାରେ ଯେତେବେଳେ ଯାହା ଘଟେ, ତାହା ଅନାୟାସରେ ସହ୍ୟ କରନ୍ତି, ସେହି ବ୍ୟକ୍ତି ଗୁଣାତୀତ ଅଟନ୍ତି ।

୨୩ ଶ୍ଳୋକଠାରୁ ଏପର୍ଯ୍ୟନ୍ତ ଗୁଣାତୀତ ପୁରୁଷଙ୍କର ଯେଉଁ ଲକ୍ଷଣ ସବୁ ଲେଖାଗଲା, ତାହା ପରସଂବେଦ୍ୟ ଅଟେ ଅର୍ଥାତ୍ ଅପର ବ୍ୟକ୍ତି ଏହି ସବୁ ଲକ୍ଷଣଦ୍ୱାରା ଗୁଣାତୀତ ପୁରୁଷଙ୍କୁ ଚିହ୍ନି ପାରିବେ । ୨୫ ।

## ଶ୍ଳୋକଃ ।

* ମାଂ ଚ ଯୋଽବ୍ୟଭିଚାରେଣ, ଭକ୍ତିଯୋଗେନ ସେବତେ ।
ସ ଗୁଣାନ୍ ସମତୀତ୍ୟୈତାନ୍, ବ୍ରହ୍ମଭୂୟାୟ କଳ୍ପତେ । ୨୬ ।

## ଅନ୍ୱୟଃ ।

ଯଃ ମାଂ ଚ ଅବ୍ୟଭିଚାରେଣ ଭକ୍ତିଯୋଗେନ ସେବତେ, ସଃ ଏତାନ୍ ଗୁଣାନ୍ ସମତୀତ୍ୟ ବ୍ରହ୍ମଭୂୟାୟ କଳ୍ପତେ । । ୨୬ ।

## ଟୀକା ।

କଥଂ ଚୈତାଂସ୍ତ୍ରୀନ୍ ଗୁଣାନତିବର୍ତ୍ତତ ଇତ୍ୟସ୍ୟ ପ୍ରଶ୍ନସ୍ୟୋତ୍ତରମାହ, ମାଂ ଚେତି । ଚ ଶବ୍ଦୋଽବଧାରଣାର୍ଥଃ ମାମେବ ପରମେଶ୍ୱରମବ୍ୟଭିଚାରେଣ ଏକାନ୍ତେନ ଭକ୍ତିଯୋଗେନ ଯଃ ସେବତେ ସ ଏତାନ୍ ଗୁଣାନ୍ ସମତୀତ୍ୟ ସମ୍ୟଗତୀତ୍ୟ ବ୍ରହ୍ମତ୍ୱାୟ ମୋକ୍ଷାୟ କଳ୍ପତେ ସମର୍ଥୋଭବତି । ୨୬ ।

ପଦବ୍ୟାଖ୍ୟା ।

ମାଂ ଚ—କେବଳ ଆମ୍ଭଙ୍କୁ, ଯଃ—ଯେଉଁ ବ୍ୟକ୍ତି, ଅବ୍ୟଭିଚାରେଣ ଭକ୍ତିଯୋଗେନ—ଏକାନ୍ତ ଭକ୍ତିଯୋଗଦ୍ୱାରା, ସେବତେ—ସର୍ବଦା ଧ୍ୟାନ କରନ୍ତି, ସଃ—ସେହି ବ୍ୟକ୍ତି, ଗୁଣାନ୍—ଗୁଣମାନଙ୍କୁ, ସମତୀତ୍ୟ—ସମ୍ୟକ୍‌ରୂପରେ ଅତିକ୍ରମ କରି, ଏତାନ୍—ଏହି, ବ୍ରହ୍ମଭୂୟାୟ—ମୋକ୍ଷପ୍ରାପ୍ତିନିମିତ୍ତ, କଳ୍ପତେ—ଯୋଗ୍ୟ ହୁଅନ୍ତି । ୨୬ ।

ଅନୁବାଦ ।

ଯେଉଁ ବ୍ୟକ୍ତି ଅବିଚଳିତ ଭକ୍ତିଯୋଗରେ କେବଳ ଆମ୍ଭଙ୍କୁ ସେବା କରନ୍ତି, ସେ, ଏହି ଗୁଣତ୍ରୟକୁ ଅତିକ୍ରମ କରି ମୋକ୍ଷ ନିମିତ୍ତ ଯୋଗ୍ୟ ହୁଅନ୍ତି । ୨୬ ।

ବିଶଦବ୍ୟାଖ୍ୟା ।

ଏହି ଅଧ୍ୟାୟର ଶ୍ଳୋ ୨୧ କରେ ଅର୍ଜୁନ ଯେଉଁ ତିନି ଗୋଟି ପ୍ରଶ୍ନ କରିଥିଲେ, ତାହା ମଧ୍ୟରୁ ଦୁଇଗୋଟିର ଉତ୍ତର ଅର୍ଥାତ୍ ଗୁଣାତୀତ ପୁରୁଷଙ୍କର ଲକ୍ଷଣ ଓ ଆଚାର ବା ସ୍ୱସଂବେଦ୍ୟ* ପରସଂବେଦ୍ୟ* ଲକ୍ଷଣ, ପୂର୍ବ ଶ୍ଳୋକ ପର୍ଯ୍ୟନ୍ତ ଶ୍ରୀଭଗବାନ୍ କହିଲେ, ଏ ଶ୍ଳୋକରେ ଅପର ପ୍ରଶ୍ନ ଅର୍ଥାତ୍ କି ଉପାୟରେ ଗୁଣତ୍ରୟକୁ ଅତିକ୍ରମ କରାଯାଏ, ତାହା ବ୍ୟାଖ୍ୟା କରୁଅଛନ୍ତି ।

ଯେଉଁ ବ୍ୟକ୍ତି କେବଳ ଆମ୍ଭଙ୍କୁ ଅର୍ଥାତ୍ ଭଗବାନଙ୍କୁ ଏକାନ୍ତଭକ୍ତିରେ (ଦ୍ୱାଦଶ ଅଧ୍ୟାୟୋକ୍ତ ନିଷ୍ଠା ଅନୁସାରେ) ଭଜନ କରନ୍ତି, ସେହି ବ୍ୟକ୍ତି ଗୁଣତ୍ରୟକୁ ଅତିକ୍ରମ କରି ବ୍ରହ୍ମଭାବର ବା ମୋକ୍ଷପ୍ରାପ୍ତିର ଯୋଗ୍ୟ ହୁଅନ୍ତି, ଅର୍ଥାତ୍ ମୋକ୍ଷପ୍ରାପ୍ତିର ଏକମାତ୍ର ଉପାୟ ଗୁଣାତୀତ ବା ଆତ୍ମଜ୍ଞାନୀ ହେବା ଏବଂ ଗୁଣାତୀତ ହେବାର ଏକମାତ୍ର ଉପାୟ ଭଗବାନଙ୍କଠାରେ ଏକାନ୍ତଭକ୍ତି । ଏହାହିଁ ଅର୍ଜୁନଙ୍କ ଶେଷ ପ୍ରଶ୍ନର ଉତ୍ତର ଅଟେ । ୨୬ ।

ଶ୍ଳୋକଃ ।

* ବ୍ରହ୍ମଣୋ ହି ପ୍ରତିଷ୍ଠାହମମୃତସ୍ୟାବ୍ୟୟସ୍ୟ ଚ ।
ଶାଶ୍ୱତସ୍ୟ ଚ ଧର୍ମସ୍ୟ, ସୁଖସ୍ୟୈକାନ୍ତିକସ୍ୟ ଚ । ୨୭ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନସମ୍ବାଦେ ଗୁଣତ୍ରୟବିଭାଗଯୋଗୋନାମ ଚତୁର୍ଦ୍ଦଶୋଽଧ୍ୟାୟଃ । ୧୪ ।

---

ଅନ୍ୱୟଃ ।

ଅହଂ ହି ବ୍ରହ୍ମଣଃ ଚ ଅବ୍ୟୟସ୍ୟ ଅମୃତସ୍ୟ ଚ ଶାଶ୍ୱତସ୍ୟ ଧର୍ମସ୍ୟ ଚ ଐକାନ୍ତିକସ୍ୟ ସୁଖସ୍ୟ ପ୍ରତିଷ୍ଠା । ୨୭ ।
ଇତି ଶ୍ରୀଭଗବଦ୍‌ଗୀତାୟାଂ ଅନ୍ୱୟେ ଚତୁର୍ଦ୍ଦଶୋଽଧ୍ୟାୟଃ । ୧୪ ।

---

* ସ୍ୱସଂବେଦ୍ୟ ଲକ୍ଷଣ—ଯାହାଦ୍ୱାରା ଆପେ ଆପଣାକୁ (ଗୁଣାତୀତ ବୋଲି) ଚିହ୍ନି ପାରନ୍ତି ।
* ପରସଂବେଦ୍ୟ ଲକ୍ଷଣ—ଯାହାଦ୍ୱାରା ଅପରଲୋକେ ( ଗୁଣାତୀତ ପୁରୁଷଙ୍କୁ ) ଚିହ୍ନି ପାରନ୍ତି ।

Digitized by PPRACHIN, SOA

ଟୀକା ।

ତତ୍ର ହେତୁମାହ । ବ୍ରହ୍ମଣୋହୀତି । ହି ଯସ୍ମାଦ୍ବ୍ରହ୍ମଣୋଽହଂ ପ୍ରତିଷ୍ଠା ପ୍ରତିମା ଘନୀଭୂତଂ ବ୍ରହ୍ମୈବାହଂ ଯଥା ଘନୀଭୂତପ୍ରକାଶଏବ ସୂର୍ଯ୍ୟମଣ୍ଡଳଂ ତଦ୍ୱଦିତ୍ୟର୍ଥଃ, ତଥା ଅବ୍ୟୟସ୍ୟ ନିତ୍ୟସ୍ୟ ଅମୃତସ୍ୟ ଚ ମୋକ୍ଷସ୍ୟ ନିତ୍ୟମୁକ୍ତତ୍ୱାତ୍ ତଥା ତତ୍ସାଧନସ୍ୟ ଶାଶ୍ୱତସ୍ୟ ଧର୍ମ୍ମସ୍ୟ ଚ ଶୁଦ୍ଧସତ୍ତ୍ୱାତ୍ମକତ୍ୱାତ୍ ତଥା ଐକାନ୍ତିକସ୍ୟ ଅଖଣ୍ଡିତସ୍ୟ ସୁଖସ୍ୟ ଚ ପ୍ରତିଷ୍ଠା ଅହଂ ପରମାନନ୍ଦରୂପତ୍ୱାତ୍ ଅତୋମଦ୍ଭକ୍ତେବତୋ ମଦ୍ଭାବସ୍ୟ ଅବଶ୍ୟମ୍ଭାବିତ୍ୱାତ୍ ଯୁକ୍ତମେବୋକ୍ତଂ ବ୍ରହ୍ମଭୂୟାୟ କଳ୍ପତେ ଇତି । କୃଷ୍ଣାଧୀନଗୁଣାସଙ୍ଗ ପ୍ରସକ୍ତିତଭବାମ୍ବୁଧିଂ । ବୁଦ୍ଧ୍ୱା ତରନ୍ତି ମଦ୍ଭକ୍ତା ଇତ୍ୟବାଦି ଚତୁର୍ଦ୍ଦଶେ । ୨୭ ।

ଇତି ଶ୍ରୀଭଗବଦ୍ଗୀତାୟାଂ ସ୍ୱାମିକୃତଟୀକାୟାଂ ଚତୁର୍ଦ୍ଦଶୋଽଧ୍ୟାୟଃ । ୧୪ ।

---

ପଦବ୍ୟାଖ୍ୟା ।

ବ୍ରହ୍ମଣଃ—ବ୍ରହ୍ମଙ୍କର, ହି—ଯେହେତୁ, ପ୍ରତିଷ୍ଠା—ପ୍ରତିମା, ଅହଂ—ଆମ୍ଭେ, ଅମୃତସ୍ୟ—ମୋକ୍ଷର, ଅବ୍ୟୟସ୍ୟ ଚ—ନିତ୍ୟ, ଶାଶ୍ୱତସ୍ୟ ଚ—ଅକ୍ଷୟ, ଧର୍ମ୍ମସ୍ୟ—ଧର୍ମ୍ମର, ସୁଖସ୍ୟ—ସୁଖର, ଐକାନ୍ତିକସ୍ୟ ଚ—ଅଖଣ୍ଡିତ । ୨୭ ।

ଇତି ଶ୍ରୀଭଗବଦ୍ଗୀତା-ପଦବ୍ୟାଖ୍ୟାୟାଂ ଚତୁର୍ଦ୍ଦଶୋଽଧ୍ୟାୟଃ । ୧୪ ।

---

ଅନୁବାଦ ।

ଯେହେତୁ ଆମ୍ଭେ ବ୍ରହ୍ମଙ୍କର, ନିତ୍ୟମୋକ୍ଷର ଓ ଅକ୍ଷୟଧର୍ମର ଏବଂ ଅଖଣ୍ଡିତ ସୁଖର ଆଶ୍ରୟ ଅଟୁଁ । ୨୭ ।

ଇତି ଶ୍ରୀଭଗବଦ୍ଗୀତାର ଉତ୍କଳାନୁବାଦରେ ଚତୁର୍ଦ୍ଦଶ ଅଧ୍ୟାୟ ସମାପ୍ତ । ୧୪ ।

---

ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନଙ୍କ ମନରେ ଏପରି ସନ୍ଦେହ ହେବ, ଯେ ସଗୁଣ-ଶ୍ରୀକୃଷ୍ଣଙ୍କୁ ଏକାନ୍ତ ଭକ୍ତିଯୋଗରେ ସେବା କରିବା ବ୍ୟକ୍ତି ଗୁଣାତୀତ ହେବେ, ଏହା କି ସମ୍ଭବ ? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି କି, ଆମ୍ଭେ ବ୍ରହ୍ମଙ୍କର 'ପ୍ରତିଷ୍ଠା' ଅର୍ଥାତ୍ ଆମ୍ଭେ ସୋପାଧିକ ବ୍ରହ୍ମ । ଯେପରି ସୂର୍ଯ୍ୟକିରଣର ଘନୀଭୂତ ପ୍ରକାଶକୁ ସୂର୍ଯ୍ୟମଣ୍ଡଳ ବୋଲାଯାଏ, ବସ୍ତୁତଃ କିରଣ ଓ ମଣ୍ଡଳ ମଧ୍ୟରେ କିଛିମାତ୍ର ପ୍ରଭେଦ ନାହିଁ । ସେହିପରି ନିର୍ଗୁଣବ୍ରହ୍ମ ମାୟାରୂପ ଉପାଧିଯୁକ୍ତ ହେଲେ ବାସୁଦେବାଦି ସଗୁଣମୂର୍ତ୍ତିରେ ପ୍ରକାଶିତ, ମାତ୍ର ପ୍ରକୃତରେ ସଗୁଣ ଓ ନିର୍ଗୁଣ ବ୍ରହ୍ମମଧ୍ୟରେ କିଛିମାତ୍ର ପ୍ରଭେଦ ନାହିଁ, ସୁତରାଂ ଆମ୍ଭର ସଗୁଣମୂର୍ତ୍ତିରେ ଏକାନ୍ତ ଭକ୍ତି କରିବା ବ୍ୟକ୍ତି, ଯେ ଗୁଣାତୀତ ହେବେ ସେଥିରେ ଆଉ ସନ୍ଦେହ କଣ ? ।

ଆମ୍ଭେ ନିତ୍ୟମୋକ୍ଷର 'ପ୍ରତିଷ୍ଠା' ଅର୍ଥାତ୍ ଆମ୍ଭେ ନିଜେ ମୋକ୍ଷସ୍ୱରୂପ ଅଟୁଁ, ଯେହେତୁ ଆମ୍ଭେ 'ନିତ୍ୟମୁକ୍ତ' । ପୁଣି ମୋକ୍ଷସାଧନର ଉପାୟ, ଯେ ଅକ୍ଷୟଧର୍ମ, ଆମ୍ଭେ ତାହାର ମଧ୍ୟ ପ୍ରତିଷ୍ଠା ଅଟୁଁ । କାହିଁକିନା ଆମ୍ଭେ ବିଶୁଦ୍ଧ ସତ୍ତ୍ୱସ୍ୱରୂପ ଅଟୁଁ । ସେହିପରି ଆମ୍ଭେ ଐକାନ୍ତିକ ବା ଅଖଣ୍ଡସୁଖର ମଧ୍ୟ ପ୍ରତିଷ୍ଠା ଅଟୁଁ । କାରଣ ଆମ୍ଭେ ପରମାନନ୍ଦସ୍ୱରୂପ । ଅତଏବ ଆମ୍ଭଙ୍କୁ ଏକାନ୍ତଭକ୍ତି ଯୋଗରେ ସେବା କରିବା ବ୍ୟକ୍ତି, ଯେ ଗୁଣାତୀତ ହୋଇ ମୋକ୍ଷର ଅର୍ଥାତ୍ ବ୍ରହ୍ମଭୂୟଲାଭର ଉପଯୁକ୍ତ ହେବେ, ସେଥିରେ ସନ୍ଦେହ ନାହିଁ । ୨୭ ।

ଇତି ଶ୍ରୀଭଗବଦ୍ଗୀତାର ବିଶଦବ୍ୟାଖ୍ୟାରେ ଚତୁର୍ଦ୍ଦଶ ଅଧ୍ୟାୟ ସମାପ୍ତ । ୧୪ ।

Digitized by PPRACHIN, SOA

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ପଞ୍ଚଦଶୋଽଧ୍ୟାୟଃ ।

### ପୁରୁଷୋତ୍ତମଯୋଗଃ ।

ଶ୍ରୀଭଗବାନୁବାଚ ।—ଓଁ ଊର୍ଦ୍ଧ୍ୱମୂଳମଧଃଶାଖ,ମଶ୍ୱତ୍ଥଂ ପ୍ରାହୁରବ୍ୟୟଂ ।
ଛନ୍ଦାଂସି ଯସ୍ୟ ପର୍ଣ୍ଣାନି, ଯସ୍ତଂ ବେଦ ସ ବେଦବିତ୍ । ୧ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । (ଶ୍ରୁତୟଃ ଯଂ) ଅଶ୍ୱତ୍ଥଂ ଊର୍ଦ୍ଧ୍ୱମୂଳଂ ଅଧଃଶାଖଂ ଅବ୍ୟୟଂ ପ୍ରାହୁଃ, ଛନ୍ଦାଂସି ଯସ୍ୟ ପର୍ଣ୍ଣାନି, ଯଃ ତଂ ବେଦ ସ ବେଦବିତ୍ । ୧ ।

ଟୀକା ।

ବୈରାଗ୍ୟେଣ ବିନା ଜ୍ଞାନଂ ନ ଚ ଭକ୍ତିରତଃ ସ୍ଫୁଟଂ ।
ବୈରାଗ୍ୟୋପସ୍କରଂ ଜ୍ଞାନମୀଶଃ ପଞ୍ଚଦଶେଽଦିଶତ୍ ।

ପୂର୍ବାଧ୍ୟାୟାନ୍ତେ ମାଂ ଚ ଯୋଽବ୍ୟଭିଚାରେଣ ଭକ୍ତିଯୋଗେନ ସେବତ ଇତ୍ୟାଦିନା ପରମେଶ୍ୱରମେକାନ୍ତଭକ୍ତ୍ୟା ଭଜତସ୍ତତ୍ପ୍ରସାଦଲବ୍ଧଜ୍ଞାନେନ ବ୍ରହ୍ମଭାବୋ ଭବତ ଇତ୍ୟୁକ୍ତଂ ନ ଚୈକାନ୍ତଭକ୍ତିର୍ଜ୍ଞାନଂ ବା ଅବିରକ୍ତସ୍ୟ ସମ୍ଭବତୀତି ବୈରାଗ୍ୟପୂର୍ବକଂ ଜ୍ଞାନମୁପଦେକ୍ଷ୍ୟନ୍ନାଦୌ ପ୍ରଥମଂ ତାବତ୍ ସାର୍ଦ୍ଧଶ୍ଳୋକାଭ୍ୟାଂ ସଂସାରସ୍ୱରୂପଂ ବୃକ୍ଷଂ ରୂପକାଲଙ୍କାରେଣ ବର୍ଣ୍ଣୟନ୍ ଶ୍ରୀଭଗବାନୁବାଚ । ଊର୍ଦ୍ଧ୍ୱମୂଳମିତି । ଊର୍ଦ୍ଧ୍ୱମୁତ୍ତମଃ କ୍ଷରାକ୍ଷରାଭ୍ୟାମୁତ୍କୃଷ୍ଟଃ ପୁରୁଷୋତ୍ତମୋମୂଳଂ ଯସ୍ୟ ତଂ, ଅଧଇତି ତତୋଽର୍ବାଚୀନାଃ କାର୍ଯ୍ୟୋପାଧୟୋ ହିରଣ୍ୟଗର୍ଭାଦୟୋ ଗୃହ୍ୟନ୍ତେ ତେ ତୁ ଶାଖା ଇବ ଶାଖା ଯସ୍ୟ ତଂ, ବିନଶ୍ୱରତ୍ୱେନ ଶ୍ୱଃପ୍ରଭାତପର୍ଯ୍ୟନ୍ତମପି ନ ସ୍ଥାସ୍ୟତୀତି ବିଶ୍ୱାସାନର୍ହତ୍ୱାଦଶ୍ୱତ୍ଥଂ ପ୍ରାହୁଃ ; ପ୍ରବାହରୂପେଣାବିଚ୍ଛେଦାଦବ୍ୟୟଂ ଚ ପ୍ରାହୁଃ, ଊର୍ଦ୍ଧ୍ୱମୂଳୋଽବାକ୍‌ଶାଖ ଏଷୋଽଶ୍ୱତ୍ଥଃ ସନାତନଃ ଇତ୍ୟାଦ୍ୟାଃ ଶ୍ରୁତୟଃ, ଛନ୍ଦାଂସି ବେଦା ଯସ୍ୟ ପର୍ଣ୍ଣାନି ଧର୍ମାଧର୍ମ-ପ୍ରତିପାଦନଦ୍ୱାରେଣ ଛାୟାସ୍ଥାନୀୟୈଃ କର୍ମଫଲୈଃ ସଂସାରବୃକ୍ଷସ୍ୟ ସର୍ବଜୀବାଶ୍ରୟଣୀୟତ୍ୱପ୍ରତିପାଦନାତ୍ ପର୍ଣ୍ଣସ୍ଥାନୀୟା ବେଦାଃ, ଯସ୍ତମେବମ୍ଭୂତମଶ୍ୱତ୍ଥଂ ବେଦ ସଏବ ବେଦାର୍ଥବିତ୍, ସଂସାରପ୍ରପଞ୍ଚବୃକ୍ଷସ୍ୟ ମୂଳମୀଶ୍ୱରୋ ବ୍ରହ୍ମାଦୟସ୍ତଦଂଶାଃ ଶାଖା-ସ୍ଥାନୀୟାଃ ସ ଚ ସଂସାରବୃକ୍ଷୋବିନଶ୍ୱରଃ ପ୍ରବାହରୂପେଣ ଚାଽନନ୍ତ ବେଦୋକ୍ତୈଃ କର୍ମଭିଃ ସେବ୍ୟତାମାପାଦିତଶ୍ଚ ଇତ୍ୟେ-ତାବାନେବ ହି ବେଦାର୍ଥଃ ଅତଏବ ବିଦ୍ୱାନ୍ ବେଦବିଦିତ ସ୍ତୂୟତେ । ୧ ।

ପଦବ୍ୟାଖ୍ୟା ।

ଊର୍ଦ୍ଧ୍ୱମୂଳଂ—ଊର୍ଦ୍ଧ୍ୱ ଅର୍ଥାତ୍ ପୁରୁଷୋତ୍ତମ (ବ୍ରହ୍ମ) ଯାହାର ମୂଳ, ଅଧଃଶାଖଂ—ଅଧଃ ଅର୍ଥାତ୍ ନିକୃଷ୍ଟ ହିରଣ୍ୟ-ଗର୍ଭାଦି ଯାହାର ଶାଖା, ଅଶ୍ୱତ୍ଥଂ—ଯାହା କାଲି (ଶ୍ୱଃ) ପ୍ରଭାତକୁ ରହିବ ନାହିଁ ଅର୍ଥାତ୍ ଅଚିରସ୍ଥାୟୀ, ପ୍ରାହୁଃ- -କହନ୍ତି,

Digitized by PPRACHIN, SOA

ଅବ୍ୟୟଂ—ଅବିନାଶୀ, ଛନ୍ଦାଂସି—ବେଦମାନେ, ଯସ୍ୟ—ଯାହାର, ପର୍ଣ୍ଣାନି—ପତ୍ରସବୁ, ଯଃ—ଯେଉଁ ବ୍ୟକ୍ତି, ତଂ—ସେହି ବୃକ୍ଷକୁ, ବେଦ—ଜାଣନ୍ତି, ସଃ ବେଦବିତ୍—ସେ ବେଦବିତ୍ ଅଟନ୍ତି ଅର୍ଥାତ୍ ସେ ବେଦର ପ୍ରକୃତ ଅର୍ଥ ଜାଣନ୍ତି । ।୧।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ଏ ସଂସାରରୂପ ବୃକ୍ଷର ମୂଳ ଊର୍ଦ୍ଧ୍ୱ (ମାୟୋପହିତ ଚୈତନ୍ୟ), ଓ ଶାଖା ଅଧଃ (ହିରଣ୍ୟଗର୍ଭାଦି) ଏବଂ ପତ୍ର ବେଦମାନେ ଅଟନ୍ତି । ଏହା ଅଚିରସ୍ଥାୟୀ ଓ (ପ୍ରବାହରୂପରେ) ଅବ୍ୟୟ ବୋଲି ଶ୍ରୁତିରେ ଉକ୍ତ ଅଛି । ଯେଉଁ ବ୍ୟକ୍ତି ଏହା ଜାଣନ୍ତି ସେ ବେଦବିତ୍ ଅଟନ୍ତି । ୧ ।

ବିଶଦବ୍ୟାଖ୍ୟା ।

ପୂର୍ବ ଅଧ୍ୟାୟ ଶେଷରେ ଶ୍ରୀଭଗବାନ୍ କହିଥିଲେ, ଯେ, 'ଯେଉଁ ବ୍ୟକ୍ତି ଆମ୍ଭଙ୍କୁ ଏକାନ୍ତ ଭକ୍ତିରେ ଆରାଧନା କରନ୍ତି, ସେ ବ୍ରହ୍ମତ୍ୱ ଲାଭ କରନ୍ତି' ଅର୍ଥାତ୍ ଆମ୍ଭଠାରେ ଏକାନ୍ତ ଭକ୍ତି କଲେ, ଆମ୍ଭେ ପ୍ରୀତ ହୋଇ ତାହାଙ୍କ ହୃଦୟରେ ଜ୍ଞାନରୂପ ଆଲୋକ ପ୍ରଜ୍ୱଳିତ କରି ଦେଉ, ଯାହାଦ୍ୱାରା କି ଭକ୍ତ ସଂସାରରୂପ ଅନ୍ଧକାରରୁ ପରିତ୍ରାଣ ପାଇ ମୋକ୍ଷଲାଭ କରନ୍ତି । ମାତ୍ର ବୈରାଗ୍ୟ ବ୍ୟତିରେକେ ଏକାନ୍ତ ଭକ୍ତି କି ଜ୍ଞାନ କଦାପି ଲାଭ କରା ଯାଇ ପାରେ ନାହିଁ । ସେଥିପାଇଁ ଶ୍ରୀଭଗବାନ୍ ବୈରାଗ୍ୟର ସହିତ ଜ୍ଞାନର ଉପଦେଶ ଦେବାକୁ ପଞ୍ଚଦଶ ଅଧ୍ୟାୟ ଆରମ୍ଭ କରି ପ୍ରଥମେ ସଂସାରରୂପ ବୃକ୍ଷର ବର୍ଣ୍ଣନା କରୁଅଛନ୍ତି ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜୁନ ! ଏହି ସଂସାରରୂପ ବିଚିତ୍ର ବୃକ୍ଷ 'ଊର୍ଦ୍ଧ୍ୱମୂଳ' ଓ 'ଅଧଃଶାଖ' ଅଟେ । ସାଧାରଣ ବୃକ୍ଷର ମୂଳ, ଅଧୋଭାଗରେ ଥାଏ ଓ ଶାଖା ଆଦି ଊର୍ଦ୍ଧ୍ୱଭାଗରେ ଥାଏ, ମାତ୍ର ଏ ସଂସାରବୃକ୍ଷ ଊର୍ଦ୍ଧ୍ୱମୂଳ ଓ ଅଧଃଶାଖ ଅର୍ଥାତ୍ ଏହାର ମୂଳ ଊର୍ଦ୍ଧ୍ୱରେ ଥାଏ ଏବଂ ଏହାର ଶାଖା ସବୁ ଅଧୋଭାଗରେ ଥାଏ ।

ଏ ସ୍ଥଳରେ 'ଊର୍ଦ୍ଧ୍ୱ' ଶବ୍ଦର ଅର୍ଥ ଉତ୍କୃଷ୍ଟ ଓ 'ଅଧଃ' ଶବ୍ଦର ଅର୍ଥ ନିକୃଷ୍ଟ । ଅତଏବ ଉତ୍କୃଷ୍ଟ ଅର୍ଥାତ୍ କାରଣସ୍ୱରୂପ ଯେ ପରମେଶ୍ୱର, ସେ ଏହି ସଂସାରବୃକ୍ଷର ମୂଳ ଅଟନ୍ତି ଅର୍ଥାତ୍ ପରମାତ୍ମା ପରମେଶ୍ୱରଙ୍କ ଭିନ୍ନ ଏ ସଂସାରର ଉତ୍ପତ୍ତି ହୋଇ ପାରେ ନାହିଁ । ପୁଣି ତାହାଙ୍କ ଅପେକ୍ଷା ନିକୃଷ୍ଟ ବା କାର୍ଯ୍ୟସ୍ୱରୂପ ହିରଣ୍ୟଗର୍ଭ, ବ୍ରହ୍ମା ଓ ଶିବ ପ୍ରଭୃତି ଦେବତା ଓ ଯକ୍ଷ, ଗନ୍ଧର୍ବ, ନର, ନାଗ, ରାକ୍ଷସାଦି ଜୀବମାନେ ଏହି ବୃକ୍ଷର ଶାଖାସ୍ୱରୂପ ଅଟନ୍ତି । ନାନା ପ୍ରକାର କର୍ମପ୍ରବର୍ତ୍ତକ ଛନ୍ଦ ଅର୍ଥାତ୍ ବେଦର କର୍ମକାଣ୍ଡ ସବୁ ଏ ବୃକ୍ଷର ପତ୍ରସ୍ୱରୂପ । ଏ ବୃକ୍ଷର ନାମ 'ଅଶ୍ୱତ୍ଥ' ଅର୍ଥାତ୍ ଏହା ଅଚିରସ୍ଥାୟୀ । (ଅ = ନିଷେଧାର୍ଥ 'ଶ୍ୱଃ' ଶବ୍ଦର ଅର୍ଥ = ଆଗାମୀ କାଲି, 'ସ୍ଥ' = ରହିବା, ଅର୍ଥାତ୍ ଯାହା ଆଗାମୀ କାଲିକି ନ ରହିବ, ତାହା 'ଅଶ୍ୱତ୍ଥ') ।

କିନ୍ତୁ ଏ ବୃକ୍ଷ ଅବ୍ୟୟ ଅର୍ଥାତ୍ ଅଶେଷ, କାହିଁକି ନା ଯେତେଦିନ ଯାଏ ଆତ୍ମଜ୍ଞାନ ଲାଭ ନ ହୁଏ, ତେତେଦିନ ଯାଏ ଜୀବର ମୁକ୍ତି ହୁଏ ନାହିଁ । ପୁଣି ଆତ୍ମଜ୍ଞାନ କେବେ ଜାତ ହେବ, ତାହାର କୌଣସି ନିଶ୍ଚିତ ଉତ୍ତର କେହି ଦେଇ ପାରେ ନାହିଁ, ଅତଏବ 'ଜୀବ'

Digitized by PPRACHIN, SOA

ପକ୍ଷରେ ସଂସାର 'ଅବ୍ୟୟ' ଅର୍ଥାତ୍ ଅକ୍ଷୟ ଅଟେ, ଅଥବା ପ୍ରଳୟକାଳରେ (ବ୍ରହ୍ମରାତ୍ରି-ରେ) ସଂସାର କାରଣରେ ଲୀନ ହୋଇଯାଏ ସତ, ମାତ୍ର ତାହାର ବିନାଶ ହୁଏ ନାହିଁ, ଯେହେତୁ ବ୍ରହ୍ମଦିବସ ପ୍ରାରମ୍ଭରେ ସେ ସଂସାର ପୂର୍ବକୃତ ଶୁଭାଶୁଭ କର୍ମଜନିତ ସଂସ୍କାରର ବଶବର୍ତ୍ତୀ ହୋଇ ପୁନଃ ପ୍ରକାଶିତ ହୁଏ ଅର୍ଥାତ୍ ପ୍ରଳୟ ସମୟରେ ସଂସାରର କାର୍ଯ୍ୟପ୍ରଣାଳୀ ସ୍ଥଗିତ ଥାଏ, କିନ୍ତୁ ସଂସାରର ପ୍ରବାହ* ବିନଷ୍ଟ ହୁଏ ନାହିଁ, ସୁତରାଂ ସଂସାରରୂପ ବୃକ୍ଷ ଅବିନଶ୍ୱର ଅଟେ ।

ଋଷିମାନେ ଶ୍ରୁତିରେ ଓ ପୁରାଣରେ ସଂସାରକୁ ଏପ୍ରକାର ବୃକ୍ଷର ସହିତ ତୁଳନା କରିଅଛନ୍ତି । ଯଥା,—

ଊର୍ଦ୍ଧ୍ୱମୂଳୋ ଅବାକ୍‌ଶାଖ ଏଷୋଽଶ୍ୱତ୍ଥଃ ସନାତନଃ ।

ଇତି—କଠ ଉପନିଷତ୍ ୬ଷ୍ଠ ବଲ୍ଲୀ ।

ପୁଣି ପୁରାଣବଚନ, ଯଥା—

ଅବ୍ୟକ୍ତମୂଳ ପ୍ରଭବସ୍ତସ୍ୟୈବାନୁଗ୍ରହୋତ୍ଥିତଃ ।
ବୁଦ୍ଧିସ୍କନ୍ଧମୟଶ୍ଚୈବ ଇନ୍ଦ୍ରିୟାନ୍ତର କୋଟରଃ ।
ମହାଭୂତ ବିଶାଖଶ୍ଚ ବିଷୟୈଃ ପତ୍ରବାଂସ୍ତଥା ।
ଧର୍ମାଧର୍ମ ସୁପୁଷ୍ପଶ୍ଚ ସୁଖଦୁଃଖ ଫଳୋଦୟଃ ।
ଆଜୀବ୍ୟଃ ସର୍ବଭୂତାନାଂ ବ୍ରହ୍ମବୃକ୍ଷଃ ସନାତନଃ ।
ଏତଦ୍‌ବ୍ରହ୍ମବନଂ ଚୈବ ବ୍ରହ୍ମାଚରତି ସାକ୍ଷିବତ୍ ।
ଏତଚ୍ଛିତ୍ତ୍ୱା ଚ ଭିତ୍ତ୍ୱା ଚ ଜ୍ଞାନେନ ପରମାସିନା ॥
ତତଶ୍ଚାତ୍ମଗତିଂ ପ୍ରାପ୍ୟ ତସ୍ମାନ୍ନାବର୍ତ୍ତତେ ପୁନଃ ।

ଇତ୍ୟାଦି ( ଶଙ୍କରଭାଷ୍ୟ ଓ ମଧୁସୂଦନସରସ୍ୱତୀକୃତ ଟୀକାରୁ ଉଦ୍ଧୃତ ) ।

ଅବ୍ୟକ୍ତ ଅର୍ଥାତ୍ ମାୟୋପାଧିକ ବ୍ରହ୍ମ ଏ ସଂସାରବୃକ୍ଷର ମୂଳ ଅର୍ଥାତ୍ କାରଣ, ତାଙ୍କଠାରୁ ଏହାର ଉତ୍ପତ୍ତି ଓ ତାଙ୍କର ଅନୁଗ୍ରହ (ଦୃଢ଼ତା) ରୁ ଏହା ଅଙ୍କୁରିତ ହୁଏ ।

ବୁଦ୍ଧି ଏହାର ସ୍କନ୍ଧ, କାହିଁକି ନା ସ୍କନ୍ଧଠାରୁ ବୃକ୍ଷର ନାନାପ୍ରକାର ଶାଖା ବହିର୍ଗତ ହୁଏ, ସଂସାରରେ ଜୀବ 'ବୁଦ୍ଧି' ଯୋଗରେ ଦେବତାଠାରୁ କୀଟାଦି ପର୍ଯ୍ୟନ୍ତ ନାନା ଶାଖାରେ ବିଭକ୍ତ ହୁଅନ୍ତି । ଇନ୍ଦ୍ରିୟ ସବୁ ଏ ବୃକ୍ଷର କୋଟର ଓ ଆକାଶାଦି ପଞ୍ଚମହାଭୂତ ଏ ବୃକ୍ଷର କ୍ଷୁଦ୍ରଶାଖା ( ପକ୍ଷାନ୍ତରେ ସ୍ତମ୍ଭ ବା ଗଣ୍ଡି ) ଏବଂ ଶବ୍ଦ ସ୍ପର୍ଶାଦି ବିଷୟମାନ ଏ ବୃକ୍ଷର ପତ୍ରସ୍ୱ-ରୂପ ଅଟନ୍ତି । ଧର୍ମ ଓ ଅଧର୍ମରୂପ କର୍ମ ଏ ବୃକ୍ଷର ପୁଷ୍ପ ଏବଂ ସୁଖ, ଦୁଃଖ ଏହାର ଫଳ ଅଟେ । ଏ ପ୍ରକାର ଗୁଣବିଶିଷ୍ଟ ପ୍ରବାହରୂପରେ ଚିରସ୍ଥାୟୀ ବ୍ରହ୍ମବୃକ୍ଷ (ବୃହତ୍‌ସଂସାର) ସକଳ

* ପ୍ରବାହ = ଧାରାବାହିକକ୍ରମେ ଅବିଚ୍ଛେଦରୂପେ ଚଳିବା । ଦିବସ ପରେ ରାତ୍ରି ଓ ରାତ୍ରି ପରେ ଦିବସ ହେଉଅଛି, ଶୀତ ଗ୍ରୀଷ୍ମ ଓ ବର୍ଷା ଏମାନ କ୍ରମାନ୍ୱୟେ ପରିବର୍ତ୍ତିତ ହେଉଅଛନ୍ତି । ଏପରି ସ୍ଥଳେ, ଦିବସ ରାତ୍ରି, ଶୀତ ଗ୍ରୀଷ୍ମ ଓ ବର୍ଷାଦି ଅଚିରସ୍ଥାୟୀ, ଅଥଚ ପ୍ରବାହରୂପରେ ଅବ୍ୟୟ ଅର୍ଥାତ୍ ପୁନଃପୁନଃ ପ୍ରବର୍ତ୍ତିତ ଅଟନ୍ତି । ସେହିପରି ସଂସାର ଅଚିରସ୍ଥାୟୀ, ଅଥଚ ଅବ୍ୟୟ ଅଟେ ।

Digitized by PPRACHIN, SOA

ପ୍ରାଣୀଙ୍କର ଆଶ୍ରୟସ୍ଥଳ ଅଟେ । ଜୀବରୂପୀ ବ୍ରହ୍ମଙ୍କର ଏ ସଂସାରବୃକ୍ଷ 'ବନ' ଅର୍ଥାତ୍ ଭଜନୀୟ ଆଶ୍ରୟସ୍ଥାନ ଅଟେ । ଏଥିରେ ପରମେଶ୍ୱର ସର୍ବଦା ସାକ୍ଷିପରି ବ୍ୟବହାର କରନ୍ତି ଅର୍ଥାତ୍ ଏ ସଂସାରର କୌଣସି କାର୍ଯ୍ୟରେ ସେ ଲିପ୍ତ ନୁହନ୍ତି । ଯେଉଁ ବ୍ୟକ୍ତି ଜ୍ଞାନରୂପ ଶ୍ରେଷ୍ଠଖଡ୍ଗଦ୍ୱାରା ଏ ସଂସାରରୂପ ବୃକ୍ଷ ଛେଦନ ଓ ମାୟା ଭେଦ କରି ପାରନ୍ତି, ସେ ଆତ୍ମଜ୍ଞାନ ଲାଭ କରନ୍ତି, ତାହାଙ୍କୁ ଆଉ ସଂସାରରେ ଭ୍ରମଣ କରିବାକୁ ହୁଏ ନାହିଁ ଇତ୍ୟାଦି ।

କର୍ମପ୍ରବର୍ତ୍ତକ "ଛନ୍ଦାଂସି" ବେଦ ସବୁ ଏହି ସଂସାରବୃକ୍ଷର ପତ୍ରସ୍ୱରୂପ । ପତ୍ରଦ୍ୱାରା ଯେପରି ବୃକ୍ଷର ପୁଷ୍ଟିବିଧାନ ଓ ରକ୍ଷାକାର୍ଯ୍ୟ ସାଧିତ ହୁଏ ଏବଂ ପତ୍ରଜନିତ ଛାୟା ହେତୁରୁ ପ୍ରାଣୀମାନେ ବୃକ୍ଷର ଆଶ୍ରୟ ଗ୍ରହଣ କରନ୍ତି, ସେହିପରି ବେଦର କର୍ମକାଣ୍ଡଦ୍ୱାରା ସଂସାରର ପୁଷ୍ଟି ବିଧାନ ଓ ରକ୍ଷାକାର୍ଯ୍ୟ ସାଧିତ ହେଉଅଛି ଅର୍ଥାତ୍ ବେଦୋକ୍ତ କର୍ମସମୂହ ସର୍ବବ୍ୟାପ୍ତ ହୋଇ ସଂସାରବୃକ୍ଷର ରକ୍ଷା ଓ ପୁଷ୍ଟି ବିଧାନ କରୁଅଛି ଏବଂ ସୁଖରୂପ ଫଳ ପାଇବା ଅଭିଳାଷରେ କର୍ମକାଣ୍ଡରୂପ ପତ୍ର ଅଧୀନରେ (ଛାୟାରେ) ମନୁଷ୍ୟାଦି ପ୍ରାଣୀମାନେ ଆଶ୍ରୟଗ୍ରହଣ କରୁଅଛନ୍ତି । ପତ୍ରଦ୍ୱାରା ବୃକ୍ଷର ରକ୍ଷାବିଧାନ ହୁଏ ସତ, ମାତ୍ର ତଦ୍ଦ୍ୱାରା ତାହାର ମୂଳ ଓ ପ୍ରଧାନ ଶାଖାମାନ ଆବୃତ ହୋଇଥିବାରୁ ସହଜରେ ଲୋକେ ଦେଖି ପାରନ୍ତି ନାହିଁ, ସେହିପରି କର୍ମକାଣ୍ଡ ସଂସାରବୃକ୍ଷକୁ ରକ୍ଷା କରୁଅଛି ସତ, ମାତ୍ର ତାହାର ମୂଳସ୍ୱରୂପ ପରମେଶ୍ୱର ଓ ପ୍ରଧାନ ଶାଖାସ୍ୱରୂପ ହିରଣ୍ୟଗର୍ଭାଦିଙ୍କର ସ୍ୱରୂପ ଲୋକେ ଜାଣି ପାରନ୍ତି ନାହିଁ ଅର୍ଥାତ୍ କର୍ମକାଣ୍ଡରେ ଆସକ୍ତ ଲୋକମାନେ ପ୍ରକୃତ ପରମେଶ୍ୱରତତ୍ତ୍ୱ ଜାଣି ପାରନ୍ତି ନାହିଁ । ସଂସାରରୂପ ବୃକ୍ଷର ଏହି ସମସ୍ତ ବିଷୟ ନାନାପ୍ରକାରେ ବେଦରେ ବର୍ଣ୍ଣିତ ହୋଇଅଛି, ସୁତରାଂ ଯେଉଁ ବ୍ୟକ୍ତି ସଂସାରବୃକ୍ଷର ଏହି ଗୁଣ ଓ ଅବସ୍ଥା ଉତ୍ତମରୂପେ ଜାଣନ୍ତି, ସେ ଯେ ବେଦର ଅର୍ଥ ଜାଣନ୍ତି, ଏଥିରେ ଆଉ ସନ୍ଦେହ କଣ ? । ୧ ।

### ଶ୍ଳୋକଃ ।

ଅଧଶ୍ଚୋର୍ଦ୍ଧ୍ୱଂ ପ୍ରସୃତାସ୍ତସ୍ୟ ଶାଖା, ଗୁଣପ୍ରବୃଦ୍ଧା ବିଷୟପ୍ରବାଳାଃ ।
ଅଧଶ୍ଚ ମୂଳାନ୍ୟନୁସନ୍ତତାନି, କର୍ମାନୁବନ୍ଧୀନି ମନୁଷ୍ୟଲୋକେ । ୨ ।

### ଅନ୍ୱୟଃ ।

ଗୁଣପ୍ରବୃଦ୍ଧାଃ ବିଷୟପ୍ରବାଳାଃ ତସ୍ୟ ଶାଖାଃ ଅଧଃ ଚ ଊର୍ଦ୍ଧ୍ୱଂ ଚ ପ୍ରସୃତାଃ ମନୁଷ୍ୟଲୋକେ କର୍ମାନୁବନ୍ଧୀନି ମୂଳାନି ଅଧଃ ଚ (ଊର୍ଦ୍ଧ୍ୱଂ) ଅନୁସନ୍ତତାନି । ୨ ।

### ଟୀକା ।

କିଞ୍ଚ ଅଧଶ୍ଚେତି । ହିରଣ୍ୟଗର୍ଭାଦୟଃ କାର୍ଯ୍ୟୋପାଧୟୋ ଜୀବାଃ ଶାଖାସ୍ଥାନୀୟାସ୍ତେଷୁ ମଧ୍ୟେ ଯେ ଦୁଷ୍କୃତିନସ୍ତେଽଧଃ ପଶ୍ୱାଦିଯୋନିଷୁ ପ୍ରସୃତା ବିସ୍ତାରଂ ଗତାଃ, ସୁକୃତିନସ୍ତୂର୍ଦ୍ଧ୍ୱଂ ଦେବାଦିଯୋନିଷୁ ପ୍ରସୃତାସ୍ତସ୍ୟ ସଂସାରବୃକ୍ଷସ୍ୟ ଶାଖାଃ, କିଞ୍ଚ ଗୁଣୈଃ ସତ୍ତ୍ୱାଦିବୃତ୍ତିଭିର୍ଜଲସେଚନୈରିବ ଯଥାଯଥଂ ପ୍ରବୃଦ୍ଧା—ବୃଦ୍ଧିଂ ପ୍ରାପ୍ତାଃ, କିଞ୍ଚ ବିଷୟା ରୂପାଦୟଃ ପ୍ରବାଳାଃ ପଲ୍ଲବସ୍ଥାନୀୟା ଯାସାଂ ଶାଖାଗ୍ରସ୍ଥାନୀୟାଭିରିନ୍ଦ୍ରିୟବୃତ୍ତିଭିଃ ସଂଯୁକ୍ତତ୍ୱାତ୍, କିଞ୍ଚ ଅଧଶ୍ଚ ଚଶବ୍ଦାଦୂର୍ଦ୍ଧ୍ୱଞ୍ଚ ମୂଳାନି ଅନୁସନ୍ତତାନି ବିରୂଢ଼ାନି ମୁଖ୍ୟଂ ମୂଳମୀଶ୍ୱର ଏବ ଇମାନି ତ୍ୱବାନ୍ତରାଣି ମୂଳାନି ତତ୍ତଦ୍ଭୋଗବାସନାଲକ୍ଷଣାନି ତେଷାଂ କାର୍ଯ୍ୟମାହ, ମନୁଷ୍ୟଲୋକେ କର୍ମାନୁବନ୍ଧୀନି ଇତି, କର୍ମ ଏବ ଅନୁବନ୍ଧି ଉତ୍ତରଭାବି ଯେଷାଂ ତାନି ଊର୍ଦ୍ଧ୍ୱାଧୋଲୋକେଷୁ-

Digitized by PPRACHIN, SOA

ପଦ୍ଧତ୍ତ ତତ୍‌ଭୋଗବାସନାଦନ୍ତର୍ହି କର୍ମକ୍ଷୟେ ମନୁଷ୍ୟଲୋକପ୍ରାପ୍ତାନାଂ ତତ୍‌ତଦନୁରୂପେଷୁ କର୍ମସୁ ପ୍ରବୃତ୍ତିର୍ଭବତ ତସ୍ମାଦେବ ହି କର୍ମାଧିକାରେଣାନ୍ୟେଷୁ ଲୋକେଷୁ ଅତୋମନୁଷ୍ୟଲୋକ ଇତ୍ୟୁକ୍ତଂ । ୨ ।

ପଦବ୍ୟାଖ୍ୟା ।

ଅଧଃ ଚ—ନିମ୍ନଭାଗରେ, ଊର୍ଦ୍ଧ୍ୱଂ ଚ—ଊର୍ଦ୍ଧ୍ୱଭାଗରେ, ପ୍ରସୃତାଃ—ବିସ୍ତୃତ, ତସ୍ୟ—ସେହି ସଂସାରରୂପ ବୃକ୍ଷର, ଶାଖାଃ—ଡାଳସବୁ, ଗୁଣପ୍ରବୃଦ୍ଧାଃ—ସତ୍ତ୍ୱ, ରଜଃ ଓ ତମୋଗୁଣଦ୍ୱାରା ବୃଦ୍ଧିପ୍ରାପ୍ତ, ବିଷୟପ୍ରବାଳାଃ—ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ଏହି ବିଷୟରୂପ କୋମଳ ପତ୍ରବିଶିଷ୍ଟ, ଅଧଃ ଚ—ଅଧଃ ଓ (ଊର୍ଦ୍ଧ୍ୱ), ମୂଳାନି ଚେର ସବୁ, ଅନୁସନ୍ତତାନି—ଧାରାବାହିକକ୍ରମେ ବର୍ଦ୍ଧିତ, କର୍ମାନୁବନ୍ଧୀନି—ଶୁଭାଶୁଭ କର୍ମର ପ୍ରବର୍ତ୍ତକ, ମନୁଷ୍ୟଲୋକେ—ମର୍ତ୍ତ୍ୟଲୋକରେ । ୨ ।

ଅନୁବାଦ ।

ଏହି ସଂସାରବୃକ୍ଷର ଶାଖା ସବୁ ସତ୍ତ୍ୱାଦି ଗୁଣଦ୍ୱାରା ବର୍ଦ୍ଧିତ ଓ ଶବ୍ଦାଦି ବିଷୟରୂପ ପଲ୍ଲବଯୁକ୍ତ ହୋଇ ଅଧଃ ଓ ଊର୍ଦ୍ଧ୍ୱଭାଗରେ ବିସ୍ତୃତ ହୋଇଅଛି । ମର୍ତ୍ତ୍ୟଲୋକରେ କର୍ମପ୍ରବର୍ତ୍ତକ ବାସନା ସବୁ ଏହାର ଚେରରୂପରେ ଅଧଃ ଓ ଊର୍ଦ୍ଧ୍ୱଭାଗରେ ବିସ୍ତୃତ ହୋଇଅଛି । ୨ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ କୁହାଯାଇଅଛି, ଯେ ହିରଣ୍ୟଗର୍ଭାଦି ଦେବତା ଓ ଯକ୍ଷ ରାକ୍ଷସାଦି ପ୍ରାଣୀବର୍ଗ, ସଂସାରବୃକ୍ଷର ଶାଖାସ୍ୱରୂପ ଅଟନ୍ତି । ଏ ଶ୍ଳୋକରେ ତାହା ଅଧିକ ବିଶଦରୂପେ ବୁଝାଇ ଦିଆ ଯାଉଅଛି ।

ସେ ସଂସାରବୃକ୍ଷର ଶାଖା (ଜୀବ) ସବୁ ସତ୍ତ୍ୱାଦି ଗୁଣଦ୍ୱାରା ବୃଦ୍ଧିପ୍ରାପ୍ତ ଅର୍ଥାତ୍ ଯେପରି ବୃକ୍ଷରେ ଜଳସେଚନାଦି କଲେ, ତାହାର ଶାଖାମାନ ପରିପୁଷ୍ଟ ହୁଏ, ସେହିପରି ସତ୍ତ୍ୱ, ରଜଃ ଓ ତମୋଗୁଣଦ୍ୱାରା ସର୍ବପ୍ରକାର ଜୀବଦେହ ପୁଷ୍ଟିଲାଭ କରେ । ବୃକ୍ଷଶାଖାରେ ପତ୍ର ଥାଏ, ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ଏହି ବିଷୟମାନ ସଂସାରବୃକ୍ଷର ଜୀବରୂପ ଶାଖାରେ ପତ୍ରସ୍ୱରୂପ । ବୃକ୍ଷର ଶାଖା ବର୍ଦ୍ଧିତ ହୋଇ ଉପରକୁ ଓ ତଳକୁ ମଧ୍ୟ ବିସ୍ତୃତ ହୁଏ । ସଂସାରରୂପ ବୃକ୍ଷର ଶାଖାସ୍ୱରୂପ ଜୀବବର୍ଗ ଆପଣାର କର୍ମ ଅନୁସାରେ ଊର୍ଦ୍ଧ୍ୱକୁ ବା ଅଧୋଭାଗକୁ ଗତ କରନ୍ତି ଅର୍ଥାତ୍ ଯେଉଁ ଜୀବ ସତ୍‌କର୍ମାଦିର ଅନୁଷ୍ଠାନ କରେ, ସେ ସ୍ୱର୍ଗାଦି ଊର୍ଦ୍ଧ୍ୱ-ଲୋକକୁ ବା ଦେବତାଦି ଊର୍ଦ୍ଧ୍ୱ ଅର୍ଥାତ୍ ଉତ୍କୃଷ୍ଟଯୋନିକି ପ୍ରାପ୍ତ ହୁଏ ଏବଂ ଯେଉଁ ଜୀବ ଅସତ୍‌କର୍ମର ଅନୁଷ୍ଠାନ କରେ, ସେ ନରକାଦି ଅଧୋଲୋକକୁ ବା ପଶୁ କୀଟ ପତଙ୍ଗାଦି ଅଧଃ ଅର୍ଥାତ୍ ନିକୃଷ୍ଟଯୋନିକୁ ପ୍ରାପ୍ତ ହୁଏ, ସୁତରାଂ ସଂସାରରୂପ ବୃକ୍ଷର ଜୀବରୂପ ଶାଖାମାନ ସତ୍ତ୍ୱାଦି ଗୁଣଦ୍ୱାରା ବର୍ଦ୍ଧିତ ଓ ଶବ୍ଦ ସ୍ପର୍ଶାଦି ବିଷୟରୂପ ପଲ୍ଲବମଣ୍ଡିତ ହୋଇ ଯେ ଊର୍ଦ୍ଧ୍ୱ ଓ ଅଧୋଭାଗରେ ବିସ୍ତୃତ ହୋଇଅଛି, ତହିଁରେ ଆଉ ସନ୍ଦେହ କଣ ?

ମନୁଷ୍ୟଲୋକରେ କର୍ମପ୍ରବର୍ତ୍ତକ ବାସନା ବା ଫଳକାମନା ସଂସାରବୃକ୍ଷର 'ମୂଳ' ଅର୍ଥାତ୍ ଚେରସ୍ୱରୂପ । ପୂର୍ବଶ୍ଳୋକରେ ପରମାତ୍ମା ଏହାର ମୂଳସ୍ୱରୂପ ବୋଲି ଯେ ଲେଖା ଯାଇଅଛି, ତାହା 'ଅସଲ ମୂଳ' ବା 'ମାଈଚେର' ପ୍ରତି ଲକ୍ଷ୍ୟ କରା ଯାଇଅଛି । ଏ ଶ୍ଳୋକ-

ଲକ୍ଷିତ 'ମୂଳ' ଶବ୍ଦର ଅର୍ଥ ସାଧାରଣତେର ଅର୍ଥାତ୍ ଯାହାଦ୍ୱାରା ବୃକ୍ଷ ରସାଦି ଗ୍ରହଣ କରି ଶାଖା ପ୍ରଶାଖାର ପୁଷ୍ଟି ବିଧାନ କରେ ।

ଜୀବ ଯେ କୌଣସି ଲୋକରେ ପୂର୍ବକୃତ କର୍ମଫଳ ଭୋଗ କରୁଥିବା ସମୟରେ ଯେ-ପ୍ରକାର କାମନା କରଥାଏ, ଉକ୍ତ କର୍ମଫଳ ଭୋଗ ଶେଷରେ ସେହି କାମନା ଅନୁସାରେ, ସେ ମନୁଷ୍ୟଲୋକରେ ଉତ୍କୃଷ୍ଟ ବା ନିକୃଷ୍ଟଯୋନିରେ ଜନ୍ମଗ୍ରହଣ କରି, ବାସନା ଅନୁରୂପ କର୍ମ କରେ, ସୁତରାଂ ବାସନାହିଁ ମର୍ତ୍ତ୍ୟଲୋକରେ କର୍ମପ୍ରବର୍ତ୍ତକ । ମର୍ତ୍ତ୍ୟଲୋକ ଭିନ୍ନ ଅନ୍ୟ ଲୋକରେ କର୍ମର ଅଧିକାର ନାହିଁ ବୋଲି, ଏ ଶ୍ଳୋକରେ 'ମନୁଷ୍ୟଲୋକେ' ଏପରି ବାକ୍ୟ ପ୍ରୟୋଗ କରା ହୋଇଅଛି ।

ମର୍ତ୍ତ୍ୟଲୋକରେ କର୍ମପ୍ରବର୍ତ୍ତକ ବାସନା ସଂସାରବୃକ୍ଷର ଚେରସ୍ୱରୂପ ହୋଇ ଅଧଃ* ଓ ଊର୍ଦ୍ଧ୍ୱରେ ବିସ୍ତୃତ ହୋଇଅଛି ଅର୍ଥାତ୍ ଏ ସଂସାରରେ ଅନେକ ଜୀବର ସ୍ୱର୍ଗାଦି ଊର୍ଦ୍ଧ୍ୱ-ଲୋକ ବା ଦେବତାଦି ଉତ୍କୃଷ୍ଟଯୋନି ଲାଭରେ 'ବାସନା' ଅଛି ଓ ସେହିପରି ଅନେକ ଜୀବର ନିକୃଷ୍ଟ ବା ମନ୍ଦ ବିଷୟରେ ବାସନା ଅଛି । ଉତ୍କୃଷ୍ଟ ବାସନାକୁ ଊର୍ଦ୍ଧ୍ୱବିସ୍ତୃତ ଚେର ଓ ନିକୃଷ୍ଟ ବାସନାକୁ ଅଧୋବିସ୍ତୃତ ଚେର ବୋଲି ଏ ସ୍ଥଳରେ ବ୍ୟାଖ୍ୟା କରାଗଲା । ୨ ।

ଶ୍ଳୋକଃ ।

ନ ରୂପମସ୍ୟେହ ତଥୋପଲଭ୍ୟତେ, ନାନ୍ତୋ ନ ଚାଦିର୍ନ ଚ ସମ୍ପ୍ରତିଷ୍ଠା ।
ଅଶ୍ୱତ୍ଥମେନଂ ସୁବିରୂଢମୂଲ, ମସଙ୍ଗଶସ୍ତ୍ରେଣ ଦୃଢେନ ଛିତ୍ୱା । ୩ ।

ଅନ୍ୱୟଃ ।

ଇହ ଅସ୍ୟ ତଥା ରୂପଂ ନ, ନ ଅନ୍ତଃ ନ, ଚ ଆଦିଃ ନ, ଚ ସମ୍ପ୍ରତିଷ୍ଠା ନ ଉପଲଭ୍ୟତେ, ସୁବିରୂଢମୂଲଂ ଏନଂ ଅଶ୍ୱତ୍ଥଂ ଦୃଢେନ ଅସଙ୍ଗଶସ୍ତ୍ରେଣ ଛିତ୍ୱା (ତତ୍ପଦଂ ପରିମାର୍ଗିତବ୍ୟମ୍) । ୩ ।

ଟୀକା ।

କିଞ୍ଚ ନ ରୂପମିତି । ଇହ ସଂସାରେ ସ୍ଥିତୈଃ ପ୍ରାଣିଭିରସ୍ୟ ସଂସାରବୃକ୍ଷସ୍ୟ ତଥା ଊର୍ଦ୍ଧ୍ୱମୂଲତ୍ୱାଦି ପ୍ରକାରେଣ ରୂପଂ ନୋପଲଭ୍ୟତେ, ନ ଚାନ୍ତୋଽବସାନମପର୍ଯ୍ୟନ୍ତତ୍ୱାତ୍, ନ ଚାଦିରନାଦିତ୍ୱାତ୍, ନ ଚ ସମ୍ପ୍ରତିଷ୍ଠା ସ୍ଥିତିଃ କଥଂ ତିଷ୍ଠତୀତି ନୋପଲଭ୍ୟତେ ଯସ୍ମାଦେବମ୍ଭୂତୋଽୟଂ ସଂସାରବୃକ୍ଷୋ ଦୁରବଚ୍ଛେଦୋଽନର୍ଥକରଶ୍ଚ ତସ୍ମାଦେନଂ ଦୃଢେନ ବୈରାଗ୍ୟେଣ ଶସ୍ତ୍ରେଣ ଛିତ୍ୱା ତତ୍ପଦଂ ପରିମାର୍ଗିତବ୍ୟମିତି ସର୍ବେଣ ସମ୍ବନ୍ଧଃ । ଅଶ୍ୱତ୍ଥମେନମିତି ସାର୍ଦ୍ଧେନ । ଏନମଶ୍ୱତ୍ଥଂ ସୁବିରୂଢମୂଲମତ୍ୟନ୍ତବଦ୍ଧମୂଲଂ ସନ୍ତଂ ଅସଙ୍ଗୋଽହଂ ମମତାତ୍ୟାଗସ୍ତେନ ଶସ୍ତ୍ରେଣ ଦୃଢେନ ସମ୍ୟଗ୍‌ବିଚାରେଣ ଛିତ୍ୱା ପୃଥକ୍ କୃତ୍ୱା । ୩ ।

ପଦବ୍ୟାଖ୍ୟା ।

ନ—ନାହିଁ, ରୂପଂ—ରୂପ, ଅସ୍ୟ—ଏହାର, ଇହ—ଏ ଜଗତରେ, ତଥା—ସେହିପରି, ଉପଲଭ୍ୟତେ—ଜଣାଯାଏ, ନ ଅନ୍ତଃ—ଶେଷ ଜଣା ଯାଏ ନାହିଁ, ନ ଚାଦିଃ—ମୂଳ ମଧ୍ୟ ଜଣା ଯାଏ ନାହିଁ, ନ ଚ ସମ୍ପ୍ରତିଷ୍ଠା—ସ୍ଥିତି ମଧ୍ୟ ଜଣା ଯାଏ ନାହିଁ, ଅଶ୍ୱତ୍ଥଂ—'ଅଶ୍ୱତ୍ଥ' ନାମଧାରୀ ବୃକ୍ଷକୁ, ଏନଂ—ଏହି, ସୁବିରୂଢମୂଲଂ—ସୁଦୃଢ ମୂଳ, ଅସଙ୍ଗ-ଶସ୍ତ୍ରେଣ—ବୈରାଗ୍ୟରୂପ ଅସ୍ତ୍ରଦ୍ୱାରା, ଦୃଢେନ—ଶକ୍ତ—ଟାଣ, ଛିତ୍ୱା—ଛେଦନ କରି । ୩ ।

* ଶ୍ଳୋକରେ 'ଅଧଶ୍ଚ ମୂଳାନି' ବାକ୍ୟରେ ଅଧଃଶବ୍ଦ ପରେ ଯେଉଁ 'ଚ' ପଦ ଅଛି ତାହାଦ୍ୱାରା 'ଊର୍ଦ୍ଧ୍ୱ' ପଦ ବୁଝା ଯାଉଅଛି ।

Digitized by PPRACHIN, SOA

ଅନୁବାଦ ।

ଏ ଜଗତସ୍ଥ ପ୍ରାଣୀମାନଙ୍କୁ ଏହି ସଂସାରବୃକ୍ଷର ସେପ୍ରକାର ରୂପ ଓ ଆଦି, ଅନ୍ତ ଏବଂ ସ୍ଥିତି ଜଣା ଯାଏ ନାହିଁ । ଏହି ଦୃଢ଼ମୂଳ ଅଶ୍ୱତ୍ଥବୃକ୍ଷକୁ ଦୃଢ଼ବୈରାଗ୍ୟରୂପ ଶସ୍ତ୍ରଦ୍ୱାରା ଛେଦନ କର ( ତତ୍ତ୍ୱଜ୍ଞାନ ବିଷୟରେ ଯତ୍ନଶୀଳ ହେବ ) । ୩ ।

ବିଶଦବ୍ୟାଖ୍ୟା ।

ପୂର୍ବ ଦୁଇଶ୍ଳୋକରେ ସଂସାରବୃକ୍ଷର ଯେଉଁ ପ୍ରକାର ରୂପ ବର୍ଣ୍ଣିତ କରା ହୋଇଅଛି, ଅର୍ଥାତ୍ ଉକ୍ତ ବୃକ୍ଷର ମୂଳ ପରମେଶ୍ୱର ଓ ଶାଖା ଜୀବବର୍ଗ, ଶବ୍ଦସ୍ପର୍ଶାଦି ବିଷୟମାନ ତାହାର ପତ୍ର, ଫଳ ବାସନା ତାହାର ଚେର ଇତ୍ୟାଦି; ତାହା ଏ ଜଗତର ପ୍ରାଣିମାନେ ଜାଣି ପାରନ୍ତି ନାହିଁ । ପୁଣି ସେ ବୃକ୍ଷର ଆଦି କେଉଁଠାରେ ଓ ଅନ୍ତ କେଉଁଠାରେ ଏବଂ ତାହା କିପରି କାହିଁରେ ସ୍ଥିତ, ତାହା ମଧ୍ୟ କେହି ଜାଣି ପାରନ୍ତି ନାହିଁ । କାହିଁକିନା ପ୍ରାଣିମାନେ ମାୟାଦ୍ୱାରା ମୋହିତ ଏବଂ ସଂସାରବୃକ୍ଷ ମଧ୍ୟ ଅନାଦି ଓ ଅନନ୍ତ ଅଟେ । ଅଶ୍ୱତ୍ଥ ନାମଧାରୀ ଏହି ସଂସାରବୃକ୍ଷ ଅତ୍ୟନ୍ତ ଦୃଢ଼ମୂଳ, ଅର୍ଥାତ୍ ଏହାର ମୂଳ (ବାସନା) ଏପରି ଶକ୍ତ ବା କଠିନ, ଯେ ଏହାକୁ ଉପାଡ଼ି ପକାଇବା କି ଛିଣ୍ଡାଇ ପକାଇବା ସହଜ ନୁହେ । ତେବେ ଜଗତର ସକଳପଦାର୍ଥରୁ ଆସକ୍ତିଶୂନ୍ୟ ହେଲେ ଅର୍ଥାତ୍ ମୁଁ ଓ ମୋହର ଇତ୍ୟାଦି ଅଭିମାନ ପରିତ୍ୟାଗ କଲେ, ଏ ସଂସାରରୁ ପରିତ୍ରାଣ ମିଳିପାରେ । ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ସାର ଓ ଅସାରପଦାର୍ଥର ବିବେକଦ୍ୱାରା ଦୃଢ଼ୀଭୂତ ଯେ ବୈରାଗ୍ୟରୂପ ଶସ୍ତ୍ର ତଦ୍ୱାରା ଏ ସଂସାରବୃକ୍ଷକୁ ଛେଦନ କରି ଜ୍ଞାନ ନିମିତ୍ତ ଯତ୍ନଶୀଳ ହେବ ।

ଫଳକଥା ଏହି କି ଦୃଢ଼ ବୈରାଗ୍ୟ ନ ହେଲେ ତତ୍ତ୍ୱଜ୍ଞାନ କଦାପି ଲାଭ କରି ଯାଇ ପାରେ ନାହିଁ ଓ ତତ୍ତ୍ୱଜ୍ଞାନ ଲାଭ ନ ହେଲେ, ସଂସାରରୁ ପରିତ୍ରାଣ ପାଇବାର ଅନ୍ୟ ଉପାୟ ନାହିଁ । ୩ ।

ଶ୍ଳୋକଃ ।

ତତଃ ପଦଂ ତତ୍ ପରିମାର୍ଗିତବ୍ୟଂ, ଯସ୍ମିନ୍ ଗତା ନ ନିବର୍ତ୍ତନ୍ତି ଭୂୟଃ ।
ତମେବ ଚାଦ୍ୟଂ ପୁରୁଷଂ ପ୍ରପଦ୍ୟେ, ଯତଃ ପ୍ରବୃତ୍ତିଃ ପ୍ରସୃତା ପୁରାଣୀ । ୪ ।

ଅନ୍ୱୟଃ ।

ତତଃ ଚ "ଯତଃ ପୁରାଣୀ ପ୍ରବୃତ୍ତିଃ ପ୍ରସୃତା ତଂ ଏବ ଆଦ୍ୟଂ ପୁରୁଷଂ (ଶରଣଂ) ପ୍ରପଦ୍ୟେ" (ଇତି) ତତ୍ ପଦଂ ପରିମାର୍ଗିତବ୍ୟଂ, ଯସ୍ମିନ୍ ଗତାଃ ଭୂୟଃ ନ ନିବର୍ତ୍ତନ୍ତି । ୪ ।

ଟୀକା ।

ତତ ଇତି । ତତଶ୍ଚାସ୍ୟ ମୂଳଭୂତଂ ତତ୍ ପଦଂ ବସ୍ତୁ ପରିମାର୍ଗିତବ୍ୟଂ ଅନ୍ୱେଷ୍ଟବ୍ୟଂ କୀଦୃଶଂ ଯସ୍ମିନ୍ ଗତା ସମ୍ପ୍ରାପ୍ତାଃ ସନ୍ତୋ ଭୂୟୋ ନ ନିବର୍ତ୍ତନ୍ତି ନାବର୍ତ୍ତନ୍ତେ ଇତ୍ୟର୍ଥଃ ଅନ୍ୱେଷଣପ୍ରକାରମେବାହ । ତମେବେତି । ଯତଏଷା ପୁରାଣୀ ଚିରନ୍ତନୀ ସଂସାରପ୍ରବୃତ୍ତିଃ ପ୍ରସୃତା ବିସୃତା ତମେବ ଚାଦ୍ୟଂ ପୁରୁଷଂ ପ୍ରପଦ୍ୟେ ଶରଣଂ ବ୍ରଜାମି ଇତ୍ୟେବମେକାନ୍ତଭକ୍ତ୍ୟା ଅନ୍ୱେଷ୍ଟବ୍ୟମିତ୍ୟର୍ଥଃ । ୪ ।

Digitized by PPRACHIN, SOA

### ପଦବ୍ୟାଖ୍ୟା ।

ତତଃ—ତହୁଁ ଉତ୍ତାରୁ, ପଦଂ—ବ୍ରହ୍ମପଦକୁ, ତତ୍—ସେହି, ପରିମାର୍ଗିତବ୍ୟଂ—ଉତ୍ତମରୂପେ ଅନ୍ୱେଷଣ କରିବ, ଯସ୍ମିନ୍ ଗତାଃ—ଯେଉଁ ପଦ ପ୍ରାପ୍ତ ହେଲେ, ନ ନିବର୍ତ୍ତନ୍ତି—ସଂସାରକୁ ଫେରି ଆସନ୍ତି ନାହିଁ, ଭୂୟଃ—ବାରମ୍ବାର, ତଂ ଏବ ଚ—କେବଳ ସେହି, ଆଦ୍ୟଂ ପୁରୁଷଂ—ଆଦିପୁରୁଷଙ୍କଠାରେ, ଶରଣଂ ପ୍ରପଦ୍ୟେ—ଶରଣ ପଶୁଅଛି, ଯତଃ—ଯାହାଙ୍କଠାରୁ, ପ୍ରବୃତ୍ତିଃ—ସୃଷ୍ଟି, ପ୍ରସୃତା—ବିସ୍ତୃତ ହୋଇଅଛି, ପୁରାଣୀ—ସନାତନୀ—ପୁରୁଣା । ୪ ।

### ଅନୁବାଦ ।

ତଦନନ୍ତର "ଯାହାଙ୍କଠାରୁ (ଏହି) ସନାତନ ସଂସାରପ୍ରବୃତ୍ତି ବିସ୍ତୃତ ହୋଇଅଛି, ତାହାଙ୍କଠାରେ ( ମୁଁ ) ଶରଣ ପଶୁଅଛି" (ଏପରି କହି ଏକାନ୍ତ ଭକ୍ତିରେ) ସେହି ବ୍ରହ୍ମପଦକୁ ଅନ୍ୱେଷଣ କରିବ, ଯାହା ପ୍ରାପ୍ତ ହେଲେ ଆଉ ସଂସାରକୁ ଫେରି ଆସିବାକୁ ହୁଏ ନାହିଁ। । ୪ ।

### ବିଶଦବ୍ୟାଖ୍ୟା ।

ବୈରାଗ୍ୟରୂପ ଶସ୍ତ୍ରକୁ ବିବେକଦ୍ୱାରା ଦୃଢ଼ କରି, ସଂସାରବୃକ୍ଷକୁ ଛେଦନ କଲା ପରେ, ସେହି ବ୍ରହ୍ମପଦ ଅନ୍ୱେଷଣ କରିବ, ଅର୍ଥାତ୍ ତତ୍ତ୍ୱଜ୍ଞାନ ପ୍ରାପ୍ତି ନିମିତ୍ତ ଯତ୍ନ କରିବ । ସେ ବ୍ରହ୍ମପଦ ପ୍ରାପ୍ତ ହେଲେ ଜୀବ ଆଉ ସଂସାରକୁ ଫେରି ଆସେ ନାହିଁ, ଅର୍ଥାତ୍ ଜୀବର ଆଉ ପୁନର୍ଜନ୍ମ ହୁଏ ନାହିଁ । ଯେପରି କୌଣସି ବୃହତ୍ ବୃକ୍ଷର ମୂଳ ଖୋଳିବାକୁ ହେଲେ ପ୍ରଥମରେ ବୃକ୍ଷଟି ଛେଦନ କରିବାକୁ ହୁଏ, ବୃକ୍ଷଟି ନ କାଟି ମୂଳ ଖୋଳିଲେ, ଖୋଳିବା ବ୍ୟକ୍ତି ଉପରେ ବୃକ୍ଷ ପଡ଼ି ଖୋଳୁଥିବା ବ୍ୟକ୍ତିର ଜୀବନ ନଷ୍ଟ କରିପାରେ । ସେହିପରି ସଂସାରରୂପ ବୃହତ୍ ବୃକ୍ଷର ମୂଳ ଯେ ପରମେଶ୍ୱର ତାହାଙ୍କୁ ପାଇବାକୁ ଇଚ୍ଛା କଲେ, ପ୍ରଥମେ ସଂସାରବୃକ୍ଷକୁ ଛେଦନ କରିବାକୁ ହେବ । ବୃକ୍ଷ ଛେଦନ କରିବାକୁ ଶସ୍ତ୍ରର ଆବଶ୍ୟକ ହୁଏ । ସଂସାରରୂପ ବୃକ୍ଷ ଛେଦନ କରିବାକୁ ଆସକ୍ତିଶୂନ୍ୟତା ହିଁ ଶସ୍ତ୍ରସ୍ୱରୂପ । ସେହି ଆସକ୍ତିଶୂନ୍ୟତାରୂପ ଦୃଢ଼ଶସ୍ତ୍ରଦ୍ୱାରା ସଂସାରବୃକ୍ଷକୁ ଛିନ୍ନ କରିବ । ଆସକ୍ତିଶୂନ୍ୟତା ଅର୍ଥାତ୍ ବୈରାଗ୍ୟ ଦୃଢ଼ ହେଲେ ଚେରସ୍ୱରୂପ ବାସନା ନଷ୍ଟ ହୁଏ । ବାସନା = ସଂସାରବୃକ୍ଷର ଚେର । ବାସନା ନଷ୍ଟ ହେଲେ ଅର୍ଥାତ୍ ବୃକ୍ଷର ଚେରସବୁ କଟା ଗଲେ, ବୃକ୍ଷ ସହଜରେ ଛେଦନ କରା ହେଲା । ବାସନା ତ୍ୟାଗ ନ କରି ଯେ ବ୍ରହ୍ମପଦ ପାଇବାକୁ ଚେଷ୍ଟା କରେ, ସଂସାରବୃକ୍ଷ ତାହା ଉପରେ ମାଡ଼ିପଡ଼ି ତାହାକୁ ସ୍ୱକାର୍ଯ୍ୟରୁ ଭ୍ରଷ୍ଟ କରେ । ଏଥିପାଇଁ ସଂସାରବୃକ୍ଷକୁ ଅସଙ୍ଗରୂପ ଦୃଢ଼ ଶସ୍ତ୍ରଦ୍ୱାରା ଛେଦନ କଲା ପରେ, ବ୍ରହ୍ମପଦ ପାଇବାକୁ ଯତ୍ନ କରିବ ବୋଲି ଲେଖା ହୋଇଅଛି ।

ଯେଉଁ ପରମେଶ୍ୱରଙ୍କଠାରୁ ଏହି ସନାତନ (ଅନାଦି ଅନନ୍ତ) ସଂସାର-ପ୍ରବାହ ବିସ୍ତୃତ ହୋଇଅଛି, ସେହି ଆଦିପୁରୁଷଙ୍କଠାରେ ମୁଁ ଶରଣ ପଶୁଅଛି । ଏହିପରି ଏକାନ୍ତ ଭକ୍ତି ନ କଲେ ବ୍ରହ୍ମପଦ ଲାଭ ହୁଏ ନାହିଁ । ବ୍ରହ୍ମପଦ (ତତ୍ତ୍ୱଜ୍ଞାନ) ନ ହେଲେ ମୋକ୍ଷପ୍ରାପ୍ତି ହୁଏ ନାହିଁ । ଅତଏବ ଉପରୋକ୍ତ ପ୍ରକାରରେ ଏକାନ୍ତ ଭକ୍ତି କରି ବ୍ରହ୍ମପଦ ଅନ୍ୱେଷଣ କରିବ ।

ଫଳକଥା ଏହି କି ଭକ୍ତି ଦ୍ୱାରା ଜ୍ଞାନଲାଭ ହୁଏ ଓ ଜ୍ଞାନ ହେଲେ ମୋକ୍ଷପ୍ରାପ୍ତି ହୁଏ । ୪ ।

Digitized by PPRACHIN, SOA

### ଶ୍ଳୋକଃ ।

ନିର୍ମ୍ମାନମୋହା ଜିତସଙ୍ଗଦୋଷା, ଅଧ୍ୟାତ୍ମନିତ୍ୟା ବିନିବୃତ୍ତକାମାଃ ।
ଦ୍ୱନ୍ଦ୍ୱୈର୍ବିମୁକ୍ତାଃ ସୁଖଦୁଃଖସଂଜ୍ଞୈ, ର୍ଗଚ୍ଛନ୍ତ୍ୟମୂଢ଼ାଃ ପଦମବ୍ୟୟଂ ତତ୍ । ୫ ।

### ଅନ୍ୱୟଃ ।

ନିର୍ମାନମୋହାଃ ଜିତସଙ୍ଗଦୋଷାଃ ଅଧ୍ୟାତ୍ମନିତ୍ୟାଃ ବିନିବୃତ୍ତକାମାଃ ସୁଖଦୁଃଖସଂଜ୍ଞୈଃ ଦ୍ୱନ୍ଦ୍ୱୈଃ ବିମୁକ୍ତାଃ ଅମୂଢ଼ାଃ ତତ୍ ଅବ୍ୟୟଂ ପଦଂ ଗଚ୍ଛନ୍ତି । ୫ ।

### ଟୀକା ।

ତତ୍ପ୍ରାପ୍ତୌ ସାଧନାନ୍ତରାଣି ଦର୍ଶୟନ୍ନାହ । ନିର୍ମ୍ମାନେତି । ନିର୍ଗତୌ ମାନମୋହୌ, ଅହଂକାରମିଥ୍ୟାଭିନିବେଶୌ ଯେଭ୍ୟସ୍ତେ, ଜିତଃ ପୁତ୍ରାଦିସଙ୍ଗରୂପୋ ଦୋଷୋ ଯୈସ୍ତେ, ଅଧ୍ୟାତ୍ମେ ଆତ୍ମଜ୍ଞାନେ ନିତ୍ୟାଃ ପରିନିଷ୍ଠିତାଃ, ବିଶେଷେଣ ନିବୃତ୍ତଃ କାମୋ ଯେଭ୍ୟସ୍ତେ, ସୁଖଦୁଃଖହେତୁତ୍ୱାତ୍ ସୁଖଦୁଃଖସଂଜ୍ଞୈଃ ଶୀତୋଷ୍ଣାଦିଭି ର୍ଦ୍ୱନ୍ଦ୍ୱୈ ର୍ବିମୁକ୍ତା ଅତଏବାମୂଢ଼ାଃ ନିବୃତ୍ତାବିଦ୍ୟାଃ ସନ୍ତସ୍ତଦବ୍ୟୟଂ ପଦଂ ଗଚ୍ଛନ୍ତି । ୫ ।

### ପଦବ୍ୟାଖ୍ୟା ।

ନିର୍ମାନମୋହାଃ—ଅହଙ୍କାର ଓ ମିଥ୍ୟାଭିନିବେଶଶୂନ୍ୟ, ଜିତସଙ୍ଗଦୋଷାଃ—ଆସକ୍ତିଦୋଷରହିତ, ଅଧ୍ୟାତ୍ମନିତ୍ୟାଃ—ଆତ୍ମଜ୍ଞାନରତ, ବିନିବୃତ୍ତକାମାଃ—କାମନାବର୍ଜ୍ଜିତ, ଦ୍ୱନ୍ଦ୍ୱୈଃ—ଯୁଗ୍ମରୁ, ବିମୁକ୍ତାଃ—ବିଶେଷରୂପେ ମୁକ୍ତ, ସୁଖଦୁଃଖସଂଜ୍ଞୈଃ—ସୁଖଦୁଃଖ ନାମକ, ଗଚ୍ଛନ୍ତି—ପ୍ରାପ୍ତ ହୁଅନ୍ତି, ଅମୂଢ଼ାଃ—ମୋହବର୍ଜ୍ଜିତ—ବିବେକୀମାନେ, ପଦଂ ଅବ୍ୟୟଂ ତତ୍—ସେହି ଅବିନାଶିପଦକୁ । ୫ ।

### ଅନୁବାଦ ।

ଅହଂକାର ଓ ମୋହଶୂନ୍ୟ, ଆସକ୍ତିଦୋଷରହିତ, ଆତ୍ମଜ୍ଞାନରତ, କାମନାବର୍ଜ୍ଜିତ ଓ ସୁଖଦୁଃଖ ନାମକ ଦ୍ୱନ୍ଦ୍ୱରୁ ବିମୁକ୍ତ ବିବେକୀମାନେ ସେହି ଅବିନାଶିପରମପଦ ଲାଭ କରନ୍ତି । ୫ ।

### ବିଶଦବ୍ୟାଖ୍ୟା ।

ଯେଉଁମାନେ ଅହଙ୍କାର ତ୍ୟାଗ କରି ପାରନ୍ତି ଓ ଯାହାଙ୍କର ମୋହ ବା ଭ୍ରମ ଅର୍ଥାତ୍ ଅନାତ୍ମପଦାର୍ଥରେ ଆତ୍ମଜ୍ଞାନ ଦୂରିତ ହୋଇଯାଏ, ଯେ ଧନ ପୁତ୍ରାଦିରେ ଆସକ୍ତିରୂପ ଦୋଷ-ଶୂନ୍ୟ, ଯେ ସର୍ବଦା ଅଧ୍ୟାତ୍ମବିଷୟକ ଚର୍ଚ୍ଚାରେ ରତ, ଓ ଯେ ସର୍ବପ୍ରକାର କାମନା ପରିହାର କରି ପାରନ୍ତି ଏବଂ ସୁଖ ଦୁଃଖର ହେତୁସ୍ୱରୂପ ଶୀତ, ଉଷ୍ଣ, ମାନ, ଅପମାନ, ପୁରସ୍କାର, ତିରସ୍କାରାଦି ଦ୍ୱନ୍ଦ୍ୱ ବା ଯୁଗ୍ମଭାବରୁ ବିଶେଷରୂପେ ମୁକ୍ତ ଅଟନ୍ତି, ସେହି ବିବେକୀ ବ୍ୟକ୍ତି ଭଗବାନଙ୍କର ଅବ୍ୟୟ ପରମପଦ (ମୋକ୍ଷ) ଲାଭ କରନ୍ତି । ୫ ।

### ଶ୍ଳୋକଃ ।

ନ ତଦ୍ଭାସୟତେ ସୂର୍ଯ୍ୟୋ, ନ ଶଶାଙ୍କୋ ନ ପାବକଃ ।
ଯଦ୍ଗତ୍ୱା ନ ନିବର୍ତ୍ତନ୍ତେ, ତଦ୍ଧାମ ପରମଂ ମମ ।

Digitized by PPRACHIN, SOA

### ଅନ୍ୱୟଃ ।

ତତ୍ ପଦଂ ସୂର୍ଯ୍ୟଃ ନ ଭାସୟତେ, ଶଶାଙ୍କଃ ନ, ପାବକଃ ନ, ଯତ୍ ଗତ୍ୱା ନ ନିବର୍ତ୍ତନ୍ତେ ତତ୍ ମମ ପରମଂ ଧାମ । ୬ ।

### ଟୀକା ।

ତଦେବ ଗନ୍ତବ୍ୟଂ ପଦଂ ବିଶିନଷ୍ଟି । ନ ତଦିତି । ତତ୍ ପଦଂ ସୂର୍ଯ୍ୟାଦୟୋ ନ ପ୍ରକାଶୟନ୍ତି, ଯତ୍ ପ୍ରାପ୍ୟ ଚ ନ ନିବର୍ତ୍ତନ୍ତେ ଯୋଗିନସ୍ତଦ୍ଧାମସ୍ୱରୂପଂ ପରମଂ ମମ । ଅନେନ ସୂର୍ଯ୍ୟାଦି ପ୍ରକାଶାବିଷୟତ୍ୱେନ ଜଡ଼ତ୍ୱଶୀତୋଷ୍ଣାଦି ଦୋଷ-ପ୍ରସଙ୍ଗୋ ନିରସ୍ତଃ । ୬ ।

### ପଦବ୍ୟାଖ୍ୟା ।

ନ—ନାହିଁ, ତତ୍—ତାହାକୁ, ଭାସୟତେ—ପ୍ରକାଶିତ କରନ୍ତି, ସୂର୍ଯ୍ୟଃ—ରବି, ନ ଶଶାଙ୍କଃ—ଚନ୍ଦ୍ର ମଧ୍ୟ ପ୍ରକାଶିତ କରନ୍ତି ନାହିଁ, ନ ପାବକଃ—ଅଗ୍ନି ମଧ୍ୟ ପ୍ରକାଶିତ କରନ୍ତି ନାହିଁ ଯତ୍—ଯାହାକୁ, ଗତ୍ୱା—ପ୍ରାପ୍ତ ହୋଇ, ନ ନିବର୍ତ୍ତନ୍ତେ—(ଯୋଗୀମାନେ ସଂସାରକୁ) ଫେରନ୍ତି ନାହିଁ, ତତ୍—ତାହା, ଧାମ—ସ୍ଥାନ, ପରମଂ—ଉତ୍କୃଷ୍ଟ, ମମ—ଆମ୍ଭର । ୬ ।

### ଅନୁବାଦ ।

ଯାହାକୁ ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି ପ୍ରକାଶିତ କରି ପାରନ୍ତି ନାହିଁ ଓ ଯାହା ପ୍ରାପ୍ତ ହେଲେ (ଯୋଗୀମାନେ ସଂସାରକୁ) ଫେରନ୍ତି ନାହିଁ, ତାହା ଆମ୍ଭର ପରମଧାମ ଅଟେ । ୬ ।

### ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକମାନଙ୍କରେ 'ପରମପଦ' ଅନ୍ୱେଷଣ କରିବାର ଯେଉଁ ପ୍ରଣାଳୀ ଲେଖା ହୋଇଅଛି, ଏବଂ ଯେପ୍ରକାର ବ୍ୟକ୍ତି ସେ 'ପରମପଦ' ଲାଭ କରନ୍ତି ବୋଲି ବର୍ଣ୍ଣିତ ହୋଇଅଛି, ତହିଁରୁ ସ୍ପଷ୍ଟ ଜଣା ଯାଉଅଛି, ଯେ ଇନ୍ଦ୍ରିୟ ଓ ମନର ଅତୀତ, ସତ୍, ଚିତ୍ ଓ ଆନନ୍ଦ-ସ୍ୱରୂପ ପରମାତ୍ମା ପରଂବ୍ରହ୍ମହିଁ ସେ 'ପରମପଦ' ଅଟନ୍ତି । ପରମାତ୍ମା ପରମବ୍ରହ୍ମଙ୍କ ଭିନ୍ନ ସ୍ୱତନ୍ତ୍ର ପରମପଦ ଅଛି, ଏହା କଦାପି ନୁହେ । ସେଥିପାଇଁ ପୂର୍ବଶ୍ଳୋକମାନଙ୍କରେ କୁହା ଯାଇଅଛି, ଯେ ବିବେକଦ୍ୱାରା ଦୃଢ଼ୀଭୂତ ବୈରାଗ୍ୟରୂପ ଶସ୍ତ୍ରଦ୍ୱାରା ଏ ସଂସାରବୃକ୍ଷକୁ ଛେଦନ କରି 'ପରମ-ପଦ' ଅନ୍ୱେଷଣ କରିବ ଓ ଯେଉଁ ବ୍ୟକ୍ତି ଅହଂକାରଶୂନ୍ୟ ଓ ମାୟାକଳ୍ପିତ ଜଗତକୁ ସତ୍ୟ ମଣିବାରୂପ ମିଥ୍ୟାଜ୍ଞାନବର୍ଜିତ ଏବଂ ସୁଖଦୁଃଖର ହେତୁସ୍ୱରୂପ ଯେ ଦ୍ୱନ୍ଦ୍ୱଭାବ ତହିଁରୁ ବିମୁକ୍ତ ଅର୍ଥାତ୍ ଯେ ସର୍ବପ୍ରକାର ଭେଦବୁଦ୍ଧିବର୍ଜିତ ଅଟନ୍ତି, ସେହି ବ୍ୟକ୍ତି ସେ ପରମପଦ ଲାଭ କରନ୍ତି ଓ ତାଙ୍କର ଆଉ ପୁନର୍ଜନ୍ମ ହୁଏ ନାହିଁ, କିନ୍ତୁ ପରମବ୍ରହ୍ମ ଭିନ୍ନ ଏବଂ 'ପରମପଦ' ବା 'ପରମ-ଧାମ' ତହିଁରୁ ସ୍ୱତନ୍ତ୍ର, ଏପରି ଭେଦବୁଦ୍ଧିବିଶିଷ୍ଟ ବ୍ୟକ୍ତିଙ୍କର ପୁନର୍ଜନ୍ମ ପ୍ରାପ୍ତିର ଆଶଙ୍କା ଥିବାର ସ୍ପଷ୍ଟ ଜଣା ଯାଉଅଛି, ଅତଏବ 'ପରମପଦ' ବା 'ପରମଧାମ' ଓ ପରଂବ୍ରହ୍ମ ଯେ ଏକା ପଦାର୍ଥ, ସେହି କଥା ଏ ଶ୍ଳୋକରେ ଅନୁଭବ ବିଶଦରୂପେ ବୁଝାଇ ଦିଆ ଯାଉଅଛି ।

ପରମଧାମ ବା ପରଂବ୍ରହ୍ମ ଚୈତନ୍ୟମୟ ଥିବାରୁ ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି ପ୍ରଭୃତି ଜଡ଼ପଦାର୍ଥ ତାହାଙ୍କୁ କିପରି ପ୍ରକାଶିତ କରି ପାରିବ ? ଅଥବା ପରଂବ୍ରହ୍ମସ୍ୱରୂପ ସେହି ପରମଧାମ, ମନ ଓ ଇନ୍ଦ୍ରିୟମାନଙ୍କର ଅଗୋଚର ଥିବାସ୍ଥଳେ, ମନର ଅଧିଷ୍ଠାତା ଚନ୍ଦ୍ର, ଚକ୍ଷୁରିନ୍ଦ୍ରିୟର ଅଧିଷ୍ଠାତା

Digitized by PPRACHIN, SOA

ସୂର୍ଯ୍ୟ ଓ ବଚନେନ୍ଦ୍ରିୟର ଅଧିଷ୍ଠାତା ଅଗ୍ନି ତାହାଙ୍କୁ କପରି ପ୍ରକାଶ କରି ପାରିବେ ? ଶ୍ରୁତିରେ ମଧ୍ୟ ପ୍ରମାଣ ଅଛି, ଯେ—

"ନ ତତ୍ର ସୂର୍ଯ୍ୟୋଭାତି ନ ଚନ୍ଦ୍ରତାରକଂ ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ,
ତମେବ ଭାନ୍ତମନୁଭାତି ସର୍ବଂ ତସ୍ୟ ଭାସା ସର୍ବମିଦଂ ବିଭାତି" ଇତ୍ୟାଦି ।—

ଅର୍ଥାତ୍ ସେହି ପରଂବ୍ରହ୍ମଙ୍କୁ ସୂର୍ଯ୍ୟ, ଚନ୍ଦ୍ର, ତାରକା ଓ ବିଦ୍ୟୁତ୍ ଏମାନେ ପ୍ରକାଶ କରି ପାରନ୍ତି ନାହିଁ, ଆଉ ଅଳ୍ପଶକ୍ତିଯୁକ୍ତ ଅଗ୍ନି କଥା ବା କିଏ ପଚାରେ ? ସେହି ପରଂବ୍ରହ୍ମଙ୍କ ପ୍ରକାଶରେ ଜଗତ୍ ପ୍ରକାଶିତ ଓ ତାଙ୍କର ଦୀପ୍ତିଦ୍ୱାରା ଜଗତ୍ ପ୍ରତିଭାସିତ ହେଉଅଛି, ଇତ୍ୟାଦି ।

ଫଳକଥା ଏହି କି ଚକ୍ଷୁଃ ମନ ଓ ବଚନର ଅଗୋଚର ସେହି ପରଂବ୍ରହ୍ମ ସ୍ୱପ୍ରକାଶ ଅଟନ୍ତି, ସେ ଅନୁଗ୍ରହ କରି କେବଳ ଭକ୍ତଙ୍କୁ ଦେଖା ଦିଅନ୍ତି । ତଦ୍‌ଭିନ୍ନ ସହସ୍ରପ୍ରକାର ଉପାୟ କଲେ ମଧ୍ୟ ତାଙ୍କର ଦର୍ଶନ ମିଳେ ନାହିଁ । ସେ ପରଂବ୍ରହ୍ମ ତ୍ରିଗୁଣାତ୍ମିକା ମାୟାର ଅତୀତ ବୋଲି ତାହାଙ୍କୁ ପ୍ରାପ୍ତ ହୋଇଥିବା ଯୋଗିମାନେ ତ୍ରିଗୁଣାତୀତ ହୁଅନ୍ତି । ତ୍ରିଗୁଣହିଁ ସଂସାରବନ୍ଧନର ହେତୁ । ଅତଏବ ଗୁଣାତୀତ ତତ୍ତ୍ୱଜ୍ଞାନୀ ପୁରୁଷ ଆଉ ସଂସାରକୁ ପ୍ରତ୍ୟାବର୍ତ୍ତନ କରନ୍ତି ନାହିଁ । । ୬ ।

ଶ୍ଳୋକଃ ।

* ମମୈବାଂଶୋ ଜୀବଲୋକେ, ଜୀବଭୂତଃ ସନାତନଃ ।
ମନଃଷଷ୍ଠାନୀନ୍ଦ୍ରିୟାଣି, ପ୍ରକୃତିସ୍ଥାନି କର୍ଷତି । ୭ ।

ଅନ୍ୱୟଃ ।

ମମ ଏବ ଅଂଶଃ ସନାତନଃ ଜୀବଭୂତଃ ପ୍ରକୃତିସ୍ଥାନି ମନଃ ଷଷ୍ଠାନି ଇନ୍ଦ୍ରିୟାଣି ଜୀବଲୋକେ କର୍ଷତି । ୭ ।

ଟୀକା ।

ନନୁ ଚ ତ୍ୱଦୀୟଂ ଧାମ ପ୍ରାପ୍ତାଃ ସନ୍ତୋ ଯଦି ନ ନିବର୍ତ୍ତନ୍ତେ ତର୍ହି ସର୍ବେ ସଂପଦ୍ୟେ ନ ବିଦୁଃ ସର୍ବେ ସଂପଦ୍ୟାମହ ଇତ୍ୟାଦି ଶ୍ରୁତେଃ ସୁଷୁପ୍ତିପ୍ରଳୟସମୟେ ତତ୍ ପ୍ରାପ୍ତିଃ ସର୍ବେଷାମସ୍ତୀତି କୋନାମ ସଂସାରୀ ସ୍ୟାଦିତ୍ୟାଶଙ୍କ୍ୟ ସଂସାରିଣଂ ଦର୍ଶୟତି । ମମୈବେତି ପଞ୍ଚଭିଃ । ମମୈବାଂଶୋଽୟମବିଦ୍ୟୟା ଜୀବଭୂତଃ ସନାତନଃ ସର୍ବଦା ସଂସାରିତ୍ୱେନ ପ୍ରସିଦ୍ଧଃ ଅସୌ ସୁଷୁପ୍ତିପ୍ରଳୟୟୋଃ ପ୍ରକୃତୌ ଲୀନତୟା ସ୍ଥିତାନି ମନଃ ଷଷ୍ଠଂ ଯେଷାଂ ତାନୀନ୍ଦ୍ରିୟାଣି ପୁନର୍ଜୀବଲୋକେ ସଂସାରୋପଭୋଗାର୍ଥମାକର୍ଷତି । ଏତଚ୍ଚ କର୍ମେନ୍ଦ୍ରିୟାଣାଂ ପ୍ରାଣସ୍ୟ ଚୋପଲକ୍ଷଣାର୍ଥଂ ଅୟଂ ଭାବଃ ସତ୍ୟଂ ସୁଷୁପ୍ତିପ୍ରଳୟୟୋରପି ମଦଂଶତ୍ୱାତ୍ ସର୍ବସ୍ୟାପି ଜୀବମାତ୍ରସ୍ୟ ମୟି ଲୟାଦସ୍ତ୍ୟେବ ମତ୍ପ୍ରାପ୍ତିସ୍ତଥାପ୍ୟବିଦ୍ୟାବୃତସ୍ୟ ସାନୁଶୟସ୍ୟ ସପ୍ରକୃତିକେ ମୟି ଲୟୋ ନ ତୁ ଶୁଦ୍ଧେ, ତଦୁକ୍ତଂ ଅବ୍ୟକ୍ତାଦ୍‌ବ୍ୟକ୍ତୟଃ ସର୍ବାଃ ପ୍ରଭବନ୍ତୀତ୍ୟାଦିନା ଅତଃ ପୁନଃ ସଂସାରାୟ ନିର୍ଗଚ୍ଛନ୍ ବିଦ୍ୱାନ୍ ପ୍ରକୃତୌ ଲୀନତୟା ସ୍ଥିତାନି ସ୍ୱୋପାଧିଭୂତାନୀନ୍ଦ୍ରିୟାଣ୍ୟାକର୍ଷତି, ବିଦୁଷାଂ ତୁ ଶୁଦ୍ଧସ୍ୱରୂପପ୍ରାପ୍ତେର୍ନାବୃତ୍ତିରିତି । ୭ ।

ପଦବ୍ୟାଖ୍ୟା ।

ମମ—ଆମ୍ଭର, ଏବ—କେବଳ, ଅଂଶଃ—ସୂକ୍ଷ୍ମଭାଗ, ଜୀବଲୋକେ—ଜୀବଲୋକରେ, ଜୀବଭୂତଃ—ଜୀବାତ୍ମା ହୋଇ, ସନାତନଃ—ସର୍ବଦା ପ୍ରସିଦ୍ଧ, ମନଃ ଷଷ୍ଠାନି—ମନସହିତ ଛଅଗୋଟି, ଇନ୍ଦ୍ରିୟାଣି—ଇନ୍ଦ୍ରିୟମାନଙ୍କୁ, ପ୍ରକୃତିସ୍ଥାନି—ପ୍ରକୃତିରେ ଲୀନ, କର୍ଷତି—ଆକର୍ଷଣ କରନ୍ତି । ୭ ।

Digitized by PPRACHIN, SOA

## ଅନୁବାଦ ।

କେବଳ ଆମ୍ଭର ଅଂଶ 'ଜୀବ' ନାମରେ ସର୍ବଦା ପ୍ରସିଦ୍ଧ ହୋଇ, ଜୀବଲୋକରେ ପ୍ରକୃତିସ୍ଥିତ ପଞ୍ଚ ଇନ୍ଦ୍ରିୟ ଓ ମନକୁ ଆକର୍ଷଣ କରନ୍ତି । ୭ ।

## ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ ଶ୍ରୀଭଗବାନ୍ କହିଲେ, ଯେ 'ଯାହା ପ୍ରାପ୍ତ ହେଲେ (ଯୋଗୀମାନେ ସଂସାରକୁ) ଫେରନ୍ତି ନାହିଁ, ତାହା ଆମ୍ଭର ପରମଧାମ ଅଟେ' । ଏଥିରେ କାଳେ ଅର୍ଜ୍ଜୁନଙ୍କର ଏପରି ଆଶଙ୍କା ହେବ, ଯେ ସଂଯୋଗ ହେଲେତ ବିୟୋଗ ହୁଏ, ତେବେ ଯେଉଁମାନେ ସେ ପରମଧାମକୁ ପ୍ରାପ୍ତ ହେବେ, ସେମାନଙ୍କର ଆଉ ପୁନର୍ଜ୍ଜନ୍ମ ନ ହେବ କପରି ? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଜୀବାତ୍ମା ଯଦି ସ୍ୱତନ୍ତ୍ର ଗୋଟିଏ ପଦାର୍ଥ ହୋଇଥାନ୍ତେ, ତେବେ ପରମଧାମରୂପ ଭିନ୍ନପଦାର୍ଥରେ ତାଙ୍କର ସଂଯୋଗ ହେଲେ, ବିୟୋଗର ସମ୍ଭାବନା ଥାନ୍ତା; ଅଥବା ଜୀବଲୋକ ଯଦି ତାଙ୍କର ପ୍ରକୃତ ସ୍ଥାନ ହୋଇଥାନ୍ତା, ତେବେ ପରମଧାମରୂପ ଭିନ୍ନ ସ୍ଥାନକୁ ଗତ ହେଲେ, ତାଙ୍କର ପୁନରାବର୍ତ୍ତନର ସମ୍ଭାବନା ଥାନ୍ତା, ମାତ୍ର ଜୀବାତ୍ମା ଆମ୍ଭର ଅଂଶ ଭିନ୍ନ ଆଉ କିଛି ନୁହନ୍ତି, ଓ ଆମ୍ଭ ସ୍ୱରୂପ ଭିନ୍ନ ତାହାଙ୍କର ଆଉ ଅନ୍ୟ ସ୍ୱତନ୍ତ୍ର ସ୍ଥାନ ନାହିଁ, ସେଥିପାଇଁ ସେ ଜୀବଲୋକ, ପିତୃଲୋକ, ଗନ୍ଧର୍ବଲୋକ, ସ୍ୱର୍ଗଲୋକ ଓ ବ୍ରହ୍ମଲୋକ ପ୍ରଭୃତି ଯେ କୌଣସି ଲୋକକୁ ପ୍ରାପ୍ତ ହେଲେ ସୁଦ୍ଧା ତାଙ୍କର ପୁନରାବର୍ତ୍ତନ ହେବ, ମାତ୍ର 'ପରମଧାମ' ତାଙ୍କର ପ୍ରକୃତ ସ୍ଥାନ ଥିବାରୁ ସେଠାକୁ ଗଲେ ଆଉ ପୁନରାବର୍ତ୍ତନ ହେବ ନାହିଁ ।

ଏ ଖଣ୍ଡେ ପ୍ରସ୍ତରକୁ ଚୂର୍ଣ୍ଣ କଲେ ତାହା ଯେପରି ଅସଂଖ୍ୟ ରେଣୁରେ ବିଭକ୍ତ ହୁଏ, ଓ ତାହାର ପ୍ରତ୍ୟେକ ରେଣୁ ଯେପରି ଉକ୍ତ ପ୍ରସ୍ତରର ଅଂଶ, ଜୀବାତ୍ମା କି ପରମେଶ୍ୱରଙ୍କର ସେହିପରି ଅଂଶ ? ଏପରି ପ୍ରଶ୍ନ ସହଜରେ ଲୋକଙ୍କ ମନରେ ସ୍ଥାନ ପାଇ ପାରେ, ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଅବୟବଶୂନ୍ୟ ଏକ ମହାକାଶ ସର୍ବତ୍ରବ୍ୟାପୀ ଥିଲେ ସୁଦ୍ଧା, ଯେପରି ମେଘାଦି ସଂସର୍ଗରୁ ନୀଳାକାଶ, ଶୁକ୍ଳାକାଶ ଓ ରକ୍ତାକାଶ ପ୍ରଭୃତି ଭିନ୍ନ ଭିନ୍ନ ନାମରେ କଥିତ ହୁଏ ଓ ସେହି ନୀଳାକାଶ, ଶୁକ୍ଳାକାଶ ଓ ରକ୍ତାକାଶମାନ ମହାକାଶର ଅଂଶରେ ପରିଗଣିତ ହୁଏ, ସେହିପରି ଆମ୍ଭେ ଏକ ଓ ଅଖଣ୍ଡ ଚୈତନ୍ୟସ୍ୱରୂପ ହେଲେହେଁ ତ୍ରିଗୁଣାତ୍ମିକା ପ୍ରକୃତି ସଂସର୍ଗରେ, ଆମ୍ଭର ଏକ ଏକ ଅଂଶ ଏକ ଏକ ନାମରେ କଥିତ ହୁଏ । ପ୍ରକୃତିରେ ସ୍ଥିତ ଅର୍ଥାତ୍ ପ୍ରକୃତିରୁ ବିକସିତ ମନ ଓ ପାଞ୍ଚ ଇନ୍ଦ୍ରିୟକୁ* ଆମ୍ଭର ଯେଉଁ ଅଂଶ ଆକର୍ଷଣ କରେ, ସେହି ଅଂଶହିଁ 'ଜୀବ' ନାମରେ ପରିଚିତ ।

ସୂର୍ଯ୍ୟର ଯେ ଅଂଶ ଜଳରେ ପ୍ରତିଫଳିତ ହୁଏ, ତାହା ପ୍ରତିବିମ୍ବ ନାମରେ ଖ୍ୟାତ ହୁଏ । ଜଳ ଶୁଷ୍କ ହୋଇ ଗଲେ ସେ ପ୍ରତିବିମ୍ବ ଯେପରି ସୂର୍ଯ୍ୟରେ ମିଶି ଯାଏ ଓ ଆଉ ତାହାର

* ମନର ସହିତ ଇନ୍ଦ୍ରିୟ ଅର୍ଥରେ ଶ୍ରୋତ୍ର, ତ୍ୱକ୍, ଚକ୍ଷୁ, ଜିହ୍ୱା ଓ ଘ୍ରାଣ ଏହି ପାଞ୍ଚ ଜ୍ଞାନେନ୍ଦ୍ରିୟ ଏବଂ ମନ ଏପରି ଛ ଗୋଟିକୁ ବୁଝାଉଥିଲେ ସୁଦ୍ଧା ବାକ୍, ପାଣି, ପାଦ, ପାୟୁ, ଉପସ୍ଥ ଏହି ପାଞ୍ଚ କର୍ମେନ୍ଦ୍ରିୟ ଏବଂ ପ୍ରାଣ ଏପରି ଛ ଗୋଟି ଅନ୍ୟ ଲକ୍ଷଣାଦ୍ୱାରା ବୁଝା ଯାଉଅଛି ।

ପ୍ରତ୍ୟାବର୍ତ୍ତିତ ହୁଏ ନାହିଁ, ସେହିପରି ପ୍ରକୃତିସ୍ଥିତ ମନ ଓ ପାଞ୍ଚ ଇନ୍ଦ୍ରିୟଙ୍କୁ ଆକର୍ଷଣ କରୁଥିବା ଆମ୍ଭର ଅଂଶ 'ଜୀବ'ର ଯେତେବେଳେ ତତ୍ତ୍ୱଜ୍ଞାନଦ୍ୱାରା କାଲସ୍ଥାନୀୟ ପ୍ରକୃତି ଅର୍ଥାତ୍ ମାୟା ଓ ଅବିଦ୍ୟା ବିନଷ୍ଟ ହୁଏ, ସେତେବେଳେ ଜୀବ ଆମ୍ଭ ସ୍ୱରୂପରେ ମିଶି ଯାଏ ଓ ତାହାର ଆଉ ପ୍ରତ୍ୟାବର୍ତ୍ତନ ହୁଏ ନାହିଁ । ୭ ।

ଶ୍ଳୋକଃ ।

ଶରୀରଂ ଯଦବାପ୍ନୋତି, ଯଚ୍ଚାପ୍ୟୁତ୍କ୍ରାମତୀଶ୍ୱରଃ ।
ଗୃହୀତ୍ୱୈତାନି ସଂଯାତି, ବାୟୁର୍ଗନ୍ଧାନିବାଶୟାତ୍ । ୮ ।

ଅନ୍ୱୟଃ ।

ଈଶ୍ୱରଃ ଯତ୍ ଚ ଅପି ଉତ୍କ୍ରାମତି ଯତ୍ ଶରୀରଂ ଅବାପ୍ନୋତି (ତଦା) ବାୟୁଃ ଆଶୟାତ୍ ଗନ୍ଧାନ୍ ଇବ ଏତାନି ଗୃହୀତ୍ୱା ସଂଯାତି । ୮ ।

ଟୀକା ।

ତାନ୍ୟାକୃଷ୍ୟ କିଂ କରୋତୀତ୍ୟାହ । ଶରୀରମିତି । ଯତ୍ ଯଦା ଶରୀରାନ୍ତରଂ କର୍ମବଶାଦବାପ୍ନୋତି ଯତଶ୍ଚ ଶରୀରା-ଦୁତ୍କ୍ରାମତି ଈଶ୍ୱରୋଦେହାଦୀନାଂ ସ୍ୱାମୀ ତଦା ପୂର୍ବସ୍ମାତ୍ ଶରୀରଦେତାନି ଗୃହୀତ୍ୱା ଉତ୍ତରଶରୀରଂ ସମ୍ୟକ୍ ଯାତି । ଏସ୍ମିନ୍ ସତ୍ୟପି ଇନ୍ଦ୍ରିୟଗ୍ରହଣେ ଦୃଷ୍ଟାନ୍ତଃ । ଆଶୟାତ୍ ସ୍ଥାନାତ୍ କୁସୁମାଦେଃ ସକାଶାତ୍ ଗନ୍ଧାନ୍ ଗନ୍ଧବତଃ ସୂକ୍ଷ୍ମାନଂଶାନ୍ ଗୃହୀତ୍ୱା ବାୟୁର୍ଯଥା ଗଚ୍ଛତି ତଦ୍ୱତ୍ । ୮ ।

ପଦବ୍ୟାଖ୍ୟା ।

ଶରୀରଂ—ଦେହକୁ, ଯତ୍—ଯେବେ, ଅବାପ୍ନୋତି—ପ୍ରାପ୍ତ ହୁଅନ୍ତି, ଯତ୍ ଚ ଅପି—ଯେଉଁ ଶରୀରରୁ ମଧ୍ୟ, ଉତ୍କ୍ରାମତି—ବାହାରି ଯାନ୍ତି, ଈଶ୍ୱରଃ—ଦେହାଦିର ସ୍ୱାମୀ, ଗୃହୀତ୍ୱା—ଗ୍ରହଣ କରି, ଏତାନି—ଏହି ସବୁ ଅର୍ଥାତ୍ ଇନ୍ଦ୍ରିୟଗଣ ଓ ମନକୁ, ସଂଯାତି—ଯାନ୍ତି, ବାୟୁଃ—ପବନ, ଗନ୍ଧାନ୍—ସୁବାସମାନଙ୍କୁ, ଇବ—ପରି, ଆଶୟାତ୍—ସ୍ଥାନ (ପୁଷ୍ପାଦି) ରୁ । ୮ ।

ଅନୁବାଦ ।

ଦେହସ୍ୱାମୀ (ଜୀବାତ୍ମା) ଯେତେବେଳେ ଯେଉଁ ଶରୀରରୁ ବାହାରି ଅନ୍ୟ ଶରୀର ପ୍ରାପ୍ତ ହୁଅନ୍ତି, ସେତେବେଳେ ବାୟୁ ପୁଷ୍ପାଦିରୁ ଗନ୍ଧ ଗ୍ରହଣ କଲାପରି (ସେ ଇନ୍ଦ୍ରିୟଗଣ ଓ ମନ) ଏମାନଙ୍କୁ (ସଙ୍ଗରେ) ନେଇ ଯାନ୍ତି । ୮ ।

ବିଶଦବ୍ୟାଖ୍ୟା ।

ଜୀବ ପଞ୍ଚତ୍ୱ ପ୍ରାପ୍ତ ହେଲେ ପଞ୍ଚଭୂତାତ୍ମକ ସ୍ଥୂଳଦେହ ମାଟିରେ ପଡି ରହେ ଓ ପ୍ରାଣାଦି ପଞ୍ଚବାୟୁ ବାହାରର ବାୟୁ ସହିତ ମିଶି ଯାନ୍ତି, ମାତ୍ର ଇନ୍ଦ୍ରିୟସହିତ ମନ ଅର୍ଥାତ୍ ମନୋମୟ-କୋଷ ବା ସୂକ୍ଷ୍ମଶରୀର ଜୀବର ସଙ୍ଗେ ସଙ୍ଗେ ଯାଏ, ଅର୍ଥାତ୍ ଜୀବାତ୍ମା ପୂର୍ବଦେହରେ ଥିଲା-ବେଳେ, ଯେଉଁ ଶୁଭ ବା ଅଶୁଭ କର୍ମ କରିଥାନ୍ତି, ଅଥବା ଯେଉଁ ସାଧନାଦି କରିଥାନ୍ତି, ସେହି କର୍ମ ବା ସାଧନାଦ୍ୱାରା ସେହି ଦେହସ୍ଥିତ ଇନ୍ଦ୍ରିୟ ଓ ମନ ଯେପରି ଗଠିତ ହୋଇଥାଏ, ତଦୁପଯୋଗୀ ବଶତଃ ପ୍ରେତ ପାଉଁ ଜୀବାତ୍ମା ଅନ୍ୟ ଦେହ ଗ୍ରହଣ କରିବାକୁ ବାଧ୍ୟ ହୁଅନ୍ତି,

Digitized by PPRACHIN, SOA

ଏବଂ ସେହି ନୂତନ ଦେହରେ ପ୍ରବେଶ କଲାବେଳେ, ପୂର୍ବଦେହର କର୍ମାନୁସାରେ ସଂଗଠିତ ମନ ଓ ଇନ୍ଦ୍ରିୟାଦିକୁ ସଙ୍ଗରେ ନେଇ ଯାଆନ୍ତି । ଯେପରି ବାୟୁ ସୁଗନ୍ଧ ପୁଷ୍ପାଦିରେ ଲାଗି ଅନ୍ୟ ଆଡ଼କୁ ଗଲାବେଳେ ସେହି ପୁଷ୍ପର ସୁଗନ୍ଧ ସଙ୍ଗରେ ନେଇ ଯାଏ, ସେହିପରି ଜୀବାତ୍ମା ପୂର୍ବ ଦେହ ଛାଡ଼ି ଅନ୍ୟ ଦେହକୁ ଗଲାବେଳେ, ପୂର୍ବଦେହସ୍ଥିତ ଇନ୍ଦ୍ରିୟାଦିକୁ ଅର୍ଥାତ୍ ଇନ୍ଦ୍ରିୟଶକ୍ତିକୁ ସଙ୍ଗରେ ନେଇ ଯାଆନ୍ତି । ୮ ।

ଶ୍ଳୋକଃ ।

ଶ୍ରୋତ୍ରଂ ଚକ୍ଷୁଃ ସ୍ପର୍ଶନଂ ଚ, ରସନଂ ଘ୍ରାଣମେବ ଚ ।
ଅଧିଷ୍ଠାୟ ମନଶ୍ଚାୟଂ, ବିଷୟାନୁପସେବତେ । ୯ ।

ଅନ୍ୱୟଃ ।

ଅୟଂ ଶ୍ରୋତ୍ରଂ ଚକ୍ଷୁଃ ସ୍ପର୍ଶନଂ ଚ, ରସନଂ ଚ ଘ୍ରାଣଂ ଚ ମନଃ ଏବ ଅଧିଷ୍ଠାୟ ବିଷୟାନ୍ ଉପସେବତେ । ୯ ।

ଟୀକା ।

ତାନ୍ୟେବେନ୍ଦ୍ରିୟାଣି ଦର୍ଶୟନ୍ ଯଦର୍ଥଂ ଗୃହୀତ୍ୱା ଗଚ୍ଛତି ତଦାହ ଶ୍ରୋତ୍ରମିତି । ଶ୍ରୋତ୍ରାଦୀନି ବାହ୍ୟେନ୍ଦ୍ରିୟାଣି ମନଶ୍ଚାନ୍ତଃକରଣମଧିଷ୍ଠାୟାଶ୍ରିତ୍ୟ ଶବ୍ଦାଦୀନ୍ ବିଷୟାନୟଂ ଜୀବ ଉପଭୁଙ୍‌କ୍ତେ । ୯ ।

ପଦବ୍ୟାଖ୍ୟା ।

ଶ୍ରୋତ୍ରଂ—କର୍ଣ୍ଣ, ଚକ୍ଷୁଃ—ଅକ୍ଷି, ସ୍ପର୍ଶନଂ ଚ—ସ୍ପର୍ଶେନ୍ଦ୍ରିୟ (ଚର୍ମ), ରସନଂ—ଜିହ୍ୱା, ଘ୍ରାଣଂ—ନାସିକା, ଏବ ଚ—କେବଳ, ଅଧିଷ୍ଠାୟ—ଆଶ୍ରୟ କରି, ମନଃ ଚ—ମନକୁ ମଧ୍ୟ, ଅୟଂ—ଏହି ଜୀବ, ବିଷୟାନ୍—ବିଷୟସୁଖମାନଙ୍କୁ, ଉପସେବତେ—ଉପଭୋଗ କରନ୍ତି । ୯ ।

ଅନୁବାଦ ।

ଏହି ଜୀବାତ୍ମା ଶ୍ରୋତ୍ର, ନେତ୍ର, ଘ୍ରାଣ, ରସନା, ତ୍ୱକ୍ ଏବଂ ମନ ଏମାନଙ୍କୁ ଆଶ୍ରୟ କରି (ଶବ୍ଦାଦି) ବିଷୟମାନଙ୍କୁ ଉପଭୋଗ କରନ୍ତି । ୯ ।

ବିଶଦବ୍ୟାଖ୍ୟା ।

ଏ ଶ୍ଳୋକସ୍ଥିତ 'ଘ୍ରାଣମେବ ଚ' ବାକ୍ୟମଧ୍ୟସ୍ଥିତ 'ଚ'କାରଦ୍ୱାରା ବାକ୍, ପାଣି, ପାଦ, ପାୟୁ, ଉପସ୍ଥ ଏହି ପାଞ୍ଚ କର୍ମେନ୍ଦ୍ରିୟ ଓ ପ୍ରାଣ ଏବଂ 'ମନଶ୍ଚ' ପଦର 'ଚ'କାରଦ୍ୱାରା ବୁଦ୍ଧି ଗୃହୀତ ହୋଇଅଛି । ଜୀବାତ୍ମା କେବଳ ଯେ ଶ୍ରୋତ୍ରାଦି ପାଞ୍ଚ ଇନ୍ଦ୍ରିୟ ଏବଂ ମନକୁ ଆଶ୍ରୟ କରି ବିଷୟସୁଖ ଉପଭୋଗ କରନ୍ତି ତାହା ନୁହେଁ, କିନ୍ତୁ ଶ୍ରୋତ୍ରାଦି ପାଞ୍ଚ ଜ୍ଞାନେନ୍ଦ୍ରିୟ, ବାକ୍ ଆଦି ପାଞ୍ଚ କର୍ମେନ୍ଦ୍ରିୟ ପ୍ରାଣାଦି ପଞ୍ଚବାୟୁ ଓ ମନ, ବୁଦ୍ଧି ଏହି ସପ୍ତଦଶ ପଦାର୍ଥକୁ ପୂର୍ବ ଦେହରୁ ଗ୍ରହଣ କରି ନୂତନ ଦେହରେ ସେମାନଙ୍କ ସାହାଯ୍ୟରେ ବିଷୟସୁଖ ଭୋଗ କରନ୍ତି । ଅନ୍ତଃକରଣ, ମନ, ବୁଦ୍ଧି, ଚିତ୍ତ ଏବଂ ଅହଂକାର ଏ ଚାରି ଭାଗରେ ବିଭକ୍ତ ବୋଲି ଶାସ୍ତ୍ରକାରମାନେ କହନ୍ତି । ଏଠାରେ କେବଳ ମନ ଓ ବୁଦ୍ଧି ଦୁଇଟି ଗଣନା କରାଗଲା, ଅହଂକାର ଓ ଚିତ୍ତ ଏ ଦୁଇଟି ଗ୍ରହଣ କରି ନ ହେବାର ତାତ୍ପର୍ଯ୍ୟ ଏହି ଯେ ଅହଂକାର ମନର ଅନ୍ତର୍ଗତ ଓ, ଚିତ୍ତ ବୁଦ୍ଧିର ଅନ୍ତର୍ଗତ ଅଟେ । ଯେହେତୁ ଅହଂକାର ମନର ବୃତ୍ତି ଓ ଚିତ୍ତ ବୁଦ୍ଧିର ବୃତ୍ତି ଅଟେ । ୯ ।



Digitized by PPRACHIN, SOA

ଶ୍ଳୋକଃ ।

ଉତ୍କ୍ରାମନ୍ତଂ ସ୍ଥିତଂ ବାପି, ଭୁଞ୍ଜାନଂ ବା ଗୁଣାନ୍ୱିତଂ ।
ବିମୂଢ଼ା ନାନୁପଶ୍ୟନ୍ତି, ପଶ୍ୟନ୍ତି ଜ୍ଞାନଚକ୍ଷୁଷଃ । ୧୦ ।

ଅନ୍ୱୟଃ ।

ଉତ୍କ୍ରାମନ୍ତଂ ସ୍ଥିତଂ ବା ଭୁଞ୍ଜାନଂ ବା ଗୁଣାନ୍ୱିତଂ ଅପି ବିମୂଢ଼ାଃ ନ ଅନୁପଶ୍ୟନ୍ତି, ଜ୍ଞାନଚକ୍ଷୁଷଃ ପଶ୍ୟନ୍ତି । ୧୦ ।

ଟୀକା ।

ନନୁ କାର୍ଯ୍ୟକାରଣସଂଘାତବ୍ୟତିରେକେଣାତ୍ମାନଂ ସର୍ବେଽପି କିଂ ନ ପଶ୍ୟନ୍ତି ତତ୍ରାହ । ଉତ୍କ୍ରାମନ୍ତମିତି । ଉତ୍କ୍ରାମନ୍ତଂ ଦେହାଦ୍ଦେହାନ୍ତରଂ ଗଚ୍ଛନ୍ତଂ, ତସ୍ମିନ୍ନେବ ଦେହେ ସ୍ଥିତଂ ବା ବିଷୟାନ୍ ଭୁଞ୍ଜାନଂ ବା ଗୁଣାନ୍ୱିତମିନ୍ଦ୍ରିୟାଦ୍ୟନ୍ୱିତଂ ଜୀବଂ ବିମୂଢ଼ା ନାନୁପଶ୍ୟନ୍ତି, ଜ୍ଞାନମେବ ଚକ୍ଷୁର୍ଯେଷାଂ ତେ ବିବେକିନଃ ପଶ୍ୟନ୍ତି । ୧୦ ।

ପଦାର୍ଥଃ ।

ଉତ୍କ୍ରାମନ୍ତଂ—ଦେହାନ୍ତରଗାମୀ, ସ୍ଥିତଂ ବାପି—ଅଥବା ଦେହସ୍ଥ, ଭୁଞ୍ଜାନଂ ବା—ଅଥବା ବିଷୟ ଭୋଗକାରୀ, ଗୁଣାନ୍ୱିତଂ—ଗୁଣଯୁକ୍ତ ଅର୍ଥାତ୍ ଇନ୍ଦ୍ରିୟାଦିଯୁକ୍ତ, ବିମୂଢ଼ାଃ—ଅଜ୍ଞମାନେ, ନ ଅନୁପଶ୍ୟନ୍ତି—ଜୀବଙ୍କୁ ଦେଖି ପାରନ୍ତି ନାହିଁ, ପଶ୍ୟନ୍ତି—ଦେଖି ପାରନ୍ତି, ଜ୍ଞାନଚକ୍ଷୁଷଃ—ଜ୍ଞାନରୂପ ଚକ୍ଷୁବିଶିଷ୍ଟ ଅର୍ଥାତ୍ ଜ୍ଞାନୀମାନେ । ୧୦ ।

ଅନୁବାଦ ।

ମୂଢ଼ମାନେ ଦେହାନ୍ତରଗାମୀ ବା ଦେହସ୍ଥିତ ଅଥବା ବିଷୟଭୋଗ ପ୍ରବୃତ୍ତ କିମ୍ବା ଇନ୍ଦ୍ରିୟଯୁକ୍ତ ଜୀବାତ୍ମାଙ୍କୁ ଦେଖି ପାରନ୍ତି ନାହିଁ, କିନ୍ତୁ ଜ୍ଞାନନେତ୍ରଯୁକ୍ତ (ମହାତ୍ମା)ମାନେ ଦେଖି ପାରନ୍ତି । ୧୦ ।

ଅନନ୍ତବ୍ୟାଖ୍ୟା ।

ଜୀବାତ୍ମା, ଦେହ ତ୍ୟାଗ କରି ଅନ୍ୟ ଦେହ ଗ୍ରହଣ କଲେ ବା ସେହି ଦେହରେ ଅବସ୍ଥିତ ଥିଲେ କିମ୍ବା ଶ୍ରୋତ୍ରାଦି ପାଞ୍ଚ ଜ୍ଞାନେନ୍ଦ୍ରିୟ ଓ ବାକ୍ ଆଦି ପାଞ୍ଚ କର୍ମେନ୍ଦ୍ରିୟ ଏବଂ ମନ, ବୁଦ୍ଧି, ଚିତ୍ତ ଓ ଅହଂକାର ଏହି ଅନ୍ତଃକରଣ ଚତୁଷ୍ଟୟ ଏମାନଙ୍କଦ୍ୱାରା ଶବ୍ଦାଦି ବିଷୟମାନ ଭୋଗ କରୁଥିଲେ ସୁଦ୍ଧା, ଅଥବା ସତ୍ତ୍ୱ, ରଜଃ ଓ ତମଃ ଏହି ଗୁଣମାନଙ୍କରେ କିମ୍ବା ସତ୍ତ୍ୱାଦି ଗୁଣୋତ୍ପନ୍ନ ଇନ୍ଦ୍ରିୟାଦିରେ ଯୁକ୍ତ ଥିଲେ ସୁଦ୍ଧା, ମୂଢ଼ଲୋକେ ସେ ଜୀବାତ୍ମାଙ୍କୁ ଜାଣି ପାରନ୍ତି ନାହିଁ । ଯେହେତୁ ସେମାନଙ୍କର ଅନ୍ତଃକରଣ ଶୁଦ୍ଧି ହୋଇ ନ ଥାଏ । ମାତ୍ର ଯେଉଁମାନେ ନିଷ୍କାମ କର୍ମାନୁଷ୍ଠାନଦ୍ୱାରା ଚିତ୍ତ ଶୁଦ୍ଧି ଲାଭ କରି ଆତ୍ମଜ୍ଞାନରୂପ ଚକ୍ଷୁଃ ଲାଭ କରିଥାନ୍ତି, ସେହି ମହାତ୍ମାମାନେ ଧ୍ୟାନାଦିଦ୍ୱାରା ଜୀବାତ୍ମାଙ୍କୁ ସବୁ ଅବସ୍ଥାରେ ଦେଖି ପାରନ୍ତି ଅର୍ଥାତ୍ ଜୀବାତ୍ମା, ଯେ ପରମାତ୍ମାଙ୍କର ଅଂଶ, ତାହା ବୁଝି ପାରନ୍ତି । ୧୦ ।

ଶ୍ଳୋକଃ ।

ଯତନ୍ତୋ ଯୋଗିନଶ୍ଚୈନଂ, ପଶ୍ୟନ୍ତ୍ୟାତ୍ମନ୍ୟବସ୍ଥିତଂ ।
ଯତନ୍ତୋଽପ୍ୟକୃତାତ୍ମାନୋ, ନୈନଂ ପଶ୍ୟନ୍ତ୍ୟଚେତସଃ । ୧୧ ।

Digitized by PPRACHIN, SOA

## ଅନ୍ୱୟଃ ।

ଯତନ୍ତଃ ଯୋଗିନଃ ଚ ଏନଂ ଆତ୍ମନି ଅବସ୍ଥିତଂ ପଶ୍ୟନ୍ତି, ଅକୃତାତ୍ମାନଃ ଅଚେତସଃ ଯତନ୍ତଃ ଅପି ଏନଂ ନ ପଶ୍ୟନ୍ତି । ୧୧ ।

## ଟୀକା ।

ଦୁର୍ଜ୍ଞେୟତ୍ୱମାହ, ଯତୋ ବିବେକିଷ୍ୱପି କେଚିଦ୍ ପଶ୍ୟନ୍ତି କେଚିନ୍ନ ପଶ୍ୟନ୍ତୀତ୍ୟାହ । ଯତନ୍ତ ଇତି । ଯତନ୍ତୋ ଧ୍ୟାନାଦିଭିଃ ପ୍ରଯତମାନା ଯୋଗିନଃ କେଚିଦେନମାତ୍ମାନମାତ୍ମନି ଦେହେଽବସ୍ଥିତଂ ପଶ୍ୟନ୍ତି, ଶାସ୍ତ୍ରାଭ୍ୟାସାଦିଭିର୍ଯତ୍ନଂ କୁର୍ବାଣା ଅପ୍ୟକୃତାତ୍ମାନୋଽବିଶୁଦ୍ଧଚିତ୍ତା ଅତଏବାଚେତସୋ ମନ୍ଦମତୟ ଏନଂ ନ ପଶ୍ୟନ୍ତି । ୧୧ ।

## ପଦବ୍ୟାଖ୍ୟା ।

ଯତନ୍ତଃ—ଧ୍ୟାନ ଧାରଣା ଓ ଯୋଗାଭ୍ୟାସ ପ୍ରଭୃତିଦ୍ୱାରା ଯତ୍ନବନ୍ତ, ଯୋଗିନଃ ଚ—ଯୋଗିମାନେ, ଏନଂ—ଏହି ଜୀବାତ୍ମାଙ୍କୁ, ପଶ୍ୟନ୍ତି—ଦେଖନ୍ତି, ଆତ୍ମନି—ଦେହରେ, ଅବସ୍ଥିତ—ବିରାଜମାନ, ଯତନ୍ତୋଽପି—ଶାସ୍ତ୍ରାଭ୍ୟାସାଦିଦ୍ୱାରା ଯତ୍ନ କଲେ ମଧ୍ୟ, ଅକୃତାତ୍ମାନଃ—ଅବିଶୁଦ୍ଧ ଚିତ୍ତ, ନୈନଂ ପଶ୍ୟନ୍ତି—ଏ ଜୀବାତ୍ମାଙ୍କୁ ଦେଖି ପାରନ୍ତି ନାହିଁ, ଅଚେତସଃ—ମନ୍ଦମତି । ୧୧ ।

## ଅନୁବାଦ ।

ଯତ୍ନଶୀଳ ଯୋଗିମାନେ, ଏହି ଜୀବାତ୍ମାଙ୍କୁ ଦେହରେ ଅବସ୍ଥିତ ହେବାର ଦେଖନ୍ତି (କିନ୍ତୁ) ମଳିନଚିତ୍ତ ମନ୍ଦବୁଦ୍ଧି ଲୋକମାନେ ଯତ୍ନ କଲେ ସୁଦ୍ଧା, ଏହାଙ୍କୁ ଦେଖି ପାରନ୍ତି ନାହିଁ । ୧୧ ।

## ଭାଷ୍ୟବ୍ୟାଖ୍ୟା ।

ଯେଉଁ ଯୋଗିମାନେ ନିଷ୍କାମ କର୍ମାନୁଷ୍ଠାନଦ୍ୱାରା ଆପଣାର ହୃଦୟକୁ ବିଶୁଦ୍ଧ କରିଥାନ୍ତି, ସେହିସବୁ ନିର୍ମଳଚିତ୍ତ ମହାତ୍ମାମାନେ ଧ୍ୟାନାଦି ଉପାୟଦ୍ୱାରା ଯତ୍ନ କରି ଏ ଜୀବାତ୍ମାଙ୍କୁ ଦେହରେ ଅବସ୍ଥାନ କରୁଥିବାର ଦେଖନ୍ତି ଅର୍ଥାତ୍ ସେମାନେ ଧ୍ୟାନାଦି ଉପାୟଦ୍ୱାରା ଜାଣି ପାରନ୍ତି, ଯେ ଦେହ ପୃଥକ୍ ଓ ସେଥିରେ ଅବସ୍ଥିତ କରୁଥିବା ଚୈତନ୍ୟସ୍ୱରୂପ ଜୀବାତ୍ମା ପୃଥକ୍ ଅଟନ୍ତି, ମାତ୍ର ଯେଉଁମାନେ ଅକୃତାତ୍ମା ଅର୍ଥାତ୍ ଯେଉଁମାନଙ୍କର ଚିତ୍ତଶୁଦ୍ଧି ହୋଇ ନାହିଁ, ସେହି ମନ୍ଦବୁଦ୍ଧି ଲୋକମାନେ ଶାସ୍ତ୍ରାଦି ପାଠରୂପ ଯତ୍ନ କଲେ ସୁଦ୍ଧା, ଜୀବାତ୍ମାଙ୍କର ସ୍ୱରୂପ ଅବଗତ ହୋଇ ପାରନ୍ତି ନାହିଁ ।

ଫଳକଥା ଏହିକି ଚିତ୍ତଶୁଦ୍ଧି ହିଁ ଆତ୍ମଦର୍ଶନର ଏକମାତ୍ର ଉପାୟ, ତଦ୍ଭିନ୍ନ ସହସ୍ର ଚେଷ୍ଟା କଲେ ସୁଦ୍ଧା, ତାହାଙ୍କର ଦର୍ଶନ ଲାଭ କରି ହେବ ନାହିଁ । ୧୧ ।

## ଶ୍ଳୋକଃ ।

ଯଦାଦିତ୍ୟଗତଂ ତେଜୋ, ଜଗଦ୍ଭାସୟତେଽଖିଳଂ ।
ଯଚ୍ଚନ୍ଦ୍ରମସି ଯଚ୍ଚାଗ୍ନୌ, ତତ୍ତେଜୋ ବିଦ୍ଧି ମାମକଂ । ୧୨ ।

## ଅନ୍ୱୟଃ ।

ଯତ୍ ଆଦିତ୍ୟଗତଂ ତେଜଃ ଅଖିଳଂ ଜଗତ୍ ଭାସୟତେ, ଯତ୍ ଚନ୍ଦ୍ରମସି ଚ ଯତ୍ ଅଗ୍ନୌ, ତତ୍ ତେଜଃ ମାମକଂ ବିଦ୍ଧି । ୧୨ ।

Digitized by PPRACHIN, SOA

ଟୀକା ।

ତଦେବଂ ନ ତଦ୍ଭାସୟତେ ସୂର୍ଯ୍ୟୋ ଇତ୍ୟାଦିନା ପାରମେଶ୍ୱରଂ ପରଂ ଧାମୋକ୍ତଂ, ତତ୍ପ୍ରାପ୍ତ୍ୟାକାଙ୍କ୍ଷାପୂର୍ବକବୃତ୍ତିବ୍ରଜ୍ୟା ତତ୍ତ୍ୱ ସଂସାରଶୋଽଶ୍ୱବମାଶ୍ରିତ୍ୟ ସଂସାରସ୍ୱରୂପଂ ଦେହାଦିବ୍ୟତିରିକ୍ତଂ ଦର୍ଶିତଂ, ଇଦାନୀଂ ତଦେବ ପାରମେଶ୍ୱରଂ ରୂପମନନ୍ତଶକ୍ତିତ୍ୱେନ ନିରୂପୟତି । ଯଦାଦିତ୍ୟଗତମିତି ଚତୁର୍ଭିଃ । ଅଦିତ୍ୟାଦିଷୁ ସ୍ଥିତଂ ଯଦନେକପ୍ରକାରଂ ତେଜୋବିଶ୍ୱଂ ପ୍ରକାଶୟତି ତତ୍ ସର୍ବଂ ତେଜୋ ମାମକଂ ଜାନୀହି ॥ ୧୨ ॥

ପଦଚ୍ଛେଦ ଅର୍ଥ ।

ଯତ୍—ଯେଉଁ ଆଦିତ୍ୟଗତଂ—ସୂର୍ଯ୍ୟଙ୍କଠାରେ ଥିବା ତେଜଃ—ଉତ୍ତାପ ଓ ଆଲୋକ, ଜଗତ୍ ଭାସୟତେ—ଜଗତକୁ ପ୍ରକାଶିତ କରେ, ଚନ୍ଦ୍ରମସି—ଚନ୍ଦ୍ରମାଙ୍କଠାରେ, ଯତ୍—ଯେଉଁ ତେଜ, ଚନ୍ଦ୍ରମସି—ଚନ୍ଦ୍ରମାଙ୍କଠାରେ (ଅଛି), ଯତ୍ ଚ ଅଗ୍ନୌ—ଆଉ ଯେଉଁ ତେଜ ଅଗ୍ନିରେ (ଅଛି), ତତ୍—ତାହା, ତେଜଃ—ଆଲୋକ ଓ ଉତ୍ତାପ, ବିଦ୍ଧି—ଜାଣ, ମାମକଂ—ଆମଠାରୁ ଜାତ ବୋଲି ॥ ୧୨ ॥

ଅନୁବାଦ ।

ଯେଉଁ ତେଜ, ସୂର୍ଯ୍ୟଙ୍କଠାରେ ଥାଇ ସମସ୍ତଜଗତକୁ ପ୍ରକାଶିତ କରୁଅଛି ଓ ଯାହା ଚନ୍ଦ୍ର ଏବଂ ଅଗ୍ନିଙ୍କଠାରେ ଅଛି, ସେହି ତେଜ ଆମ୍ଭଠାରୁ ଜାତ ଅଟେ ବୋଲି ଜାଣ ॥ ୧୨ ॥

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, ହେ ଅର୍ଜ୍ଜୁନ ! ସୂର୍ଯ୍ୟ ଯେଉଁ ତେଜଃ ପ୍ରଭାବରେ ଅଖିଳଜଗତକୁ ପ୍ରକାଶିତ କରନ୍ତି, ସେ ତେଜ ଆମ୍ଭଠାରୁ ଉତ୍ପନ୍ନ, ଅଥବା ସୂର୍ଯ୍ୟଙ୍କ ଅଧିଷ୍ଠାନ କ୍ଷେତ୍ର, ଯେ ଚକ୍ଷୁଃ, ସେ ଯେଉଁ ତେଜଃ ଶକ୍ତି ବଳରେ ଜଗତର ସମସ୍ତପଦାର୍ଥ ଦେଖିପାରେ ସେହି ତେଜଃଶକ୍ତି ଆମ୍ଭର ବିଭୂତିମାତ୍ର । ସେହିପରି ଯେଉଁ ତେଜଃ ପ୍ରଭାବରେ ଅଗ୍ନି ଓ ଚନ୍ଦ୍ରମା କଳେ ପ୍ରକାଶିତ ହୋଇଅଛନ୍ତି ଏବଂ ସେମାନଙ୍କର ଅଧିଷ୍ଠାନ ଭୂମି ବଚନ ଓ ମନ, ସ୍ୱକାର୍ଯ୍ୟ ସାଧନରେ ସକ୍ଷମ ହେଉଅଛି, ସେ ତେଜଃ ଆମ୍ଭଠାରୁ ଉତ୍ପନ୍ନ, ଏଥିରେ ସନ୍ଦେହ ନାହିଁ । ଶ୍ରୁତିରେ ମଧ୍ୟ ପ୍ରମାଣ ଅଛି, ଯେ—"ଯେନ ସୂର୍ଯ୍ୟସ୍ତପତି ତେଜସେଦ୍ଧଃ ଯେନ ଚକ୍ଷୂଂଷି ପଶ୍ୟନ୍ତି" ଅର୍ଥାତ୍ ଯେଉଁ ତେଜଦ୍ୱାରା ସୂର୍ଯ୍ୟ ଉତ୍ତାପ ଦେଉଅଛି ଓ (ଅଗ୍ନି) କାଷ୍ଠାଦି ଭକ୍ଷଣ (ଭସ୍ମ) କରୁଅଛି ଏବଂ ଚକ୍ଷୁଃ ରୂପାଦି ଦର୍ଶନ କରୁଅଛି, ତାହା, ଆମ୍ଭସ୍ୱରୂପ ବା ଆମ୍ଭର ବିଭୂତିମାତ୍ର, ଇତ୍ୟାଦି ॥ ୧୨ ॥

ଶ୍ଳୋକଃ ।

ଗାମାବିଶ୍ୟ ଚ ଭୂତାନି, ଧାରୟାମ୍ୟହମୋଜସା ।
ପୁଷ୍ଣାମି ଚୌଷଧୀଃ ସର୍ବାଃ, ସୋମୋ ଭୂତ୍ୱା ରସାତ୍ମକଃ ॥ ୧୩ ॥

ଅନ୍ୱୟଃ ।

ଅହଂ ଗାଂ ଆବିଶ୍ୟ ଓଜସା ଭୂତାନି ଧାରୟାମି ଚ ରସାତ୍ମକଃ ସୋମଃ ଭୂତ୍ୱା ସର୍ବାଃ ଔଷଧୀଃ ଚ ପୁଷ୍ଣାମି ॥ ୧୩ ॥

ଟୀକା ।

କିଞ୍ଚ ଗାମିତି । ଗାଂ ପୃଥିବୀମୋଜସା ବଳେନାଧିଷ୍ଠାୟାହମେବ ଚରାଚରାଣି ଭୂତାନି ଧାରୟାମି ଅହମେବ ଚ ରସମୟଃ ସୋମୋ ଭୂତ୍ୱା ବ୍ରୀହ୍ୟାଦ୍ୟୌଷଧୀଃ ସର୍ବାଃ ସଂବର୍ଦ୍ଧୟାମି ॥ ୧୩ ॥

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଗାଂ—ପୃଥିବୀ, ଆବିଶ୍ୟ ଚ—ପ୍ରବିଷ୍ଟ ହୋଇ, ଭୂତାନି—ସମସ୍ତ ଜଗତକୁ, ଧାରୟାମି—ଧାରଣ ଓ ପୋଷଣ କରୁଁ, ଅହଂ—ଅମ୍ଭେ, ଓଜସା—ଅପଣାର ଶକ୍ତିଦ୍ୱାରା, ପୁଷ୍ଣାମି ଚ—ଓ ପୋଷଣ କରୁଁ, ଔଷଧୀଃ—ଔଷଧିମାନଙ୍କୁ, ସର୍ବାଃ—ସମସ୍ତ, ସୋମୋଭୂତ୍ୱା—ଚନ୍ଦ୍ରମା ସ୍ୱରୂପ ହୋଇ, ରସାତ୍ମକଃ—ରସମୟ । ୧୩ ।

ଅନୁବାଦ ।

ଅମ୍ଭେ ପୃଥିବୀରେ ପ୍ରବିଷ୍ଟ ହୋଇ ନିଜ ଶକ୍ତିଦ୍ୱାରା ସମସ୍ତ ଭୂତ ଧାରଣ କରୁଁ ଓ ରସମୟ ଚନ୍ଦ୍ରସ୍ୱରୂପ ହୋଇ ... ଔଷଧିଙ୍କୁ ପରିପୁଷ୍ଟ କରୁଁ । ୧୩ ।

ବିଶଦବ୍ୟାଖ୍ୟା ।

ପୃଥିବୀ, ଯେ ପ୍ରାଣୀମାନଙ୍କୁ ଧାରଣ କରିଅଛି, ତାହା କେବଳ ଭଗବାନଙ୍କ ଶକ୍ତିପ୍ରଭାବ, ସେଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ ଅମ୍ଭେ ପୃଥିବୀ ମଧ୍ୟରେ ପ୍ରବିଷ୍ଟ ହୋଇ ନିଜ ଶକ୍ତିବଳରେ ଭୂତମାନଙ୍କୁ ଧାରଣ କରୁଁ । ... ରସମୟ ଓ ତାଙ୍କ କିରଣ ଗୁଣରେ ଔଷଧିମାନଙ୍କରେ ରୋଗ ... ହାରୀ କ୍ଷମତା ଜାତ ହୁଏ । ଶ୍ରୀଭଗବାନ୍ କହିଲେ ଅମ୍ଭେ ଚନ୍ଦ୍ରମା ସ୍ୱରୂପ ହୋଇ ଔଷଧିମାନଙ୍କୁ ପରିପୁଷ୍ଟ କରୁଁ ।

ଫଳକଥା ଏହିକି ପୃଥିବୀ କଳ୍ପିତ ସ୍ଥାନରେ ରହିବା ଓ ତହିଁରେ ପ୍ରାଣିମାନେ ଜୀବିତ ଥିବା ଏବଂ ପ୍ରାଣିମାନଙ୍କ ରୋଗ ନିବାରଣପାଇଁ ନାନାପ୍ରକାର ତରୁ, ଗୁଳ୍ମ, ଲତା ଓ ଫଳାଦି ପରିପୁଷ୍ଟ ହେବା ଇତ୍ୟାଦି ସମସ୍ତ କାର୍ଯ୍ୟ ଶ୍ରୀଭଗବାନଙ୍କ ବିଶେଷ ଶକ୍ତିବଳରେ ସାଧିତ ହେଉଅଛି । ୧୩ ।

ଶ୍ଳୋକଃ ।

ଅହଂ ବୈଶ୍ୱାନରୋଭୂତ୍ୱା, ପ୍ରାଣିନାଂ ଦେହମାଶ୍ରିତଃ ।
ପ୍ରାଣାପାନସମାୟୁକ୍ତଃ, ପଚାମ୍ୟନ୍ନଂ ଚତୁର୍ବିଧଂ । ୧୪ ।

ଅନ୍ୱୟଃ ।

ଅହଂ ପ୍ରାଣାପାନସମାୟୁକ୍ତଃ ବୈଶ୍ୱାନରଃ ଭୂତ୍ୱା ପ୍ରାଣିନାଂ ଦେହଂ ଆଶ୍ରିତଃ (ସନ୍) ଚତୁର୍ବିଧଂ ଅନ୍ନଂ ପଚାମି ।୧୪।

ଟୀକା ।

କିଞ୍ଚ ଅହମିତି ବୈଶ୍ୱାନରୋଜାଠରୋଽଗ୍ନିର୍ଭୂତ୍ୱା ପ୍ରାଣିନାଂ ଦେହମାଶ୍ରିତଃ ପ୍ରବିଶ୍ୟ ପ୍ରାଣାପାନାଭ୍ୟାଂ ଚ ତଦୁଦ୍ଦୀପକାଭ୍ୟାଂ ସହିତଃ ପ୍ରାଣିଭିର୍ଭୁକ୍ତଂ ଭକ୍ଷ୍ୟଂ ଭୋଜ୍ୟଂ ଲେହ୍ୟଂ ଚୋଷ୍ୟଂ ଚେତି ଚତୁର୍ବିଧମନ୍ନଂ ପଚାମି, ତତ୍ର ଯଦ୍ଦନ୍ତୈରବ—ଖଣ୍ଡ୍ୟାବଖଣ୍ଡ୍ୟ ଭକ୍ଷ୍ୟତେ ଅପୂପାଦି ତଦ୍ଭକ୍ଷ୍ୟଂ, ଯତ୍ତୁ କେବଲଂ ଜିହ୍ୱୟା ବିଲୋଡ୍ୟ ନିଗୀର୍ଯ୍ୟତେ ପାୟସାଦି ତଦ୍ଭୋଜ୍ୟଂ, ଯଜ୍ଜିହ୍ୱାୟାଂ ନିକ୍ଷିପ୍ୟ ରସାସ୍ୱାଦେନ ଶନୈଃ ନିଗୀର୍ଯ୍ୟତେ ଦ୍ରବୀଭୂତଂ ଗୁଡାଦି ତଲ୍ଲେହ୍ୟଂ, ଯତ୍ତୁ ଦଂଷ୍ଟ୍ରାଭିର୍ନିଷ୍ପୀଡ୍ୟ ରସାଂଶଂ ନିଗୀର୍ଯ୍ୟାବଶିଷ୍ଟଂ ତ୍ୟଜ୍ୟତେ ଇକ୍ଷୁଦଣ୍ଡାଦି ତଚ୍ଚୋଷ୍ୟମିତି ଚତୁର୍ବିଧସ୍ୟ ଭେଦଃ । ୧୪ ।

ପଦବ୍ୟାଖ୍ୟା ।

ଅହଂ—ଅମ୍ଭେ, ବୈଶ୍ୱାନରଃ ଭୂତ୍ୱା—ଜଠରାଗ୍ନି ହୋଇ, ପ୍ରାଣିନାଂ—ପ୍ରାଣିମାନଙ୍କର, ଦେହଂ—ଶରୀରକୁ, ଆଶ୍ରିତଃ—ଆଶ୍ରୟ କରି, ପ୍ରାଣାପାନସମାୟୁକ୍ତଃ—ପ୍ରାଣ ଓ ଅପାନ ବାୟୁରେ* ଯୁକ୍ତ ହୋଇ, ପଚାମି—ପାକ କରୁଁ, ଅନ୍ନଂ—ଭକ୍ଷ୍ୟଦ୍ରବ୍ୟ, ଚତୁର୍ବିଧଂ—ଚର୍ବ୍ୟ, ଚୋଷ୍ୟ ଓ ଲେହ୍ୟ ଏବଂ ପେୟ ଏହି ଚାରି ପ୍ରକାର । ୧୪ ।

* ପ୍ରାଣ ଓ ଅପାନ ବାୟୁର ଲକ୍ଷଣ ଚତୁର୍ଥ ଅଧ୍ୟାୟର ୨୯ ଶ୍ଳୋକରେ ଦେଖ ।

Digitized by PPRACHIN, SOA

ଅନୁବାଦ ।

ଆମ୍ଭେ ପ୍ରାଣ ଓ ଅପାନ ବାୟୁଦ୍ୱାରା ପ୍ରଜ୍ୱଳିତ ଜଠରାଗ୍ନି ରୂପରେ ପ୍ରାଣୀମାନଙ୍କର ଦେହ ଆଶ୍ରୟ କରି ଚତୁର୍ବିଧ ଖାଦ୍ୟ ପରିପାକ କରୁଁ । ୧୪ ।

ଭଗବଦ୍‌ବ୍ୟାଖ୍ୟା ।

ପ୍ରାଣିମାନଙ୍କ ଦେହରେ ଯେଉଁ ଜଠରାଗ୍ନି ଅଛି, ଯାହା ବଳରେ ସେମାନେ ଖାଦ୍ୟ ସବୁ ପରିପାକ କରନ୍ତି, [illegible] ଜଠରାଗ୍ନି ପ୍ରାଣ ଓ ଅପାନ ଅର୍ଥାତ୍ ନିଃଶ୍ୱାସ ଓ ପ୍ରଶ୍ୱାସ ଯୋଗରେ ଉଦ୍ଦୀପିତ ହୁଏ । ଶ୍ରୀଭଗବାନ୍ କହୁଅଛନ୍ତି, ଆମ୍ଭେ ସେହି ଜଠରାଗ୍ନିରୂପରେ ପ୍ରାଣି ଦେହ ଆଶ୍ରୟ କରି 'ଚତୁର୍ବିଧ' ଖାଦ୍ୟ [illegible] । ଚତୁର ପ୍ରକାର ଖାଦ୍ୟସମ୍ବନ୍ଧରେ ଅନେକ ପ୍ରକାର ମତ ଭେଦ ଅଛି [illegible] ଯଥା [illegible] (୨) ଚୋଷ୍ୟ (୩) ଲେହ୍ୟ ଓ (୪) ପେୟ । ତନ୍ମଧ୍ୟରୁ ଦନ୍ତଦ୍ୱାରା ଚର୍ବଣ କରି ଯାହା ଭକ୍ଷଣ କରାଯାଏ ତାହା — 'ଚର୍ବ୍ୟ', ଯଥା—ପିଷ୍ଟକ କ୍ଷୀରକେଳ ଇତ୍ୟାଦି । [illegible] କେବଳ ରସ ଅଂଶ ଗ୍ରହଣ କରି ଅବଶିଷ୍ଟ ପକାଇ ଦିଆଯାଏ ତାହା — 'ଚୋଷ୍ୟ', ଯଥା—ଆଖୁ [illegible] ଆମ୍ବ, ଇତ୍ୟାଦି । ଯାହା ଚାଟିକରି ଖିଆ ଯାଏ ତାହା 'ଲେହ୍ୟ', ଯଥା—ମହୁ, କ୍ଷୀରି [illegible] ଓ ଯାହା କେବଳ ପିଇ ଦେବାକୁ ହୁଏ, ତାହା — 'ପେୟ', ଯଥା—ଦୁଗ୍ଧ, ଜଳ ଇତ୍ୟାଦି । (୨) କାହାରି ମତରେ ଭକ୍ଷ୍ୟ, ଭୋଜ୍ୟ, ଲେହ୍ୟ ଓ ଚୋଷ୍ୟ ଏହି ଚାରି ପ୍ରକାର ଅଛି । ଏଥିର ବିଶେଷ ବିବରଣ ସ୍ୱାମିକୃତଟୀକାରେ ଦେଖ । (୩) କାହାରି ମତରେ ପାର୍ଥିବ, ଜଳୀୟ, ତୈଜସ ଓ ବାୟବୀୟ, ଏହି ଚାରି ପ୍ରକାର ଖାଦ୍ୟ । ଯଥା, ମନୁଷ୍ୟଙ୍କ ଖାଦ୍ୟ ବ୍ରୀହି ଯବାଦି — ପାର୍ଥିବ; ଚାତକାଦିଙ୍କ ଖାଦ୍ୟ ମେଘ ବର୍ଷିତ ଜଳଧାରା — ଜଳୀୟ । ବାଲଖିଲ୍ୟାଦି ଋଷିମାନଙ୍କର ଖାଦ୍ୟ ଅଗ୍ନି — ତୈଜସ, ଏବଂ ସର୍ପାଦିଙ୍କର ଖାଦ୍ୟ ବାୟୁ — ବାୟବୀୟ । ଇତ୍ୟାଦି ।

ଫଳକଥା ଏହି ଜଗତରେ ଯେତେ ପ୍ରାଣୀ, ଯେତେ ପ୍ରକାର ଖାଦ୍ୟ ପରିପାକ କରି ପ୍ରାଣଧାରଣ କରନ୍ତି, ସେ ସମସ୍ତ ଖାଦ୍ୟ ପରିପାକ କର୍ତ୍ତା ଜଠରାଗ୍ନି ବା ପାଚକଶକ୍ତି, ଶ୍ରୀଭଗବାନଙ୍କର ବିଭୂତି ଅଟେ । ୧୪ ।

ଶ୍ଳୋକଃ ।

ସର୍ବସ୍ୟ ଚାହଂ ହୃଦି ସନ୍ନିବିଷ୍ଟୋ, ମତ୍ତଃ ସ୍ମୃତିର୍ଜ୍ଞାନମପୋହନଂ ଚ ।
ବେଦୈଶ୍ଚ ସର୍ବୈରହମେବ ବେଦ୍ୟୋ, ବେଦାନ୍ତକୃଦ୍‌ବେଦବିଦେବ ଚାହଂ । ୧୫ ।

ଅନ୍ୱୟଃ ।

ଅହଂ ସର୍ବସ୍ୟ ହୃଦି ସନ୍ନିବିଷ୍ଟଃ ଚ ମତ୍ତଃ ସ୍ମୃତିଃ ଜ୍ଞାନଂ ଚ ଅପୋହନଂ ଚ, ଅହଂ ଏବ ସର୍ବୈଃ ବେଦୈଃ ବେଦ୍ୟଃ, ଅହଂ ବେଦାନ୍ତକୃତ୍ ଚ ବେଦବିତ୍ । ୧୫ ।

ଟୀକା ।

କିଞ୍ଚ ସର୍ବସ୍ୟେତି । ସର୍ବସ୍ୟ ପ୍ରାଣିଜାତସ୍ୟ ହୃଦି ସମ୍ୟଗନ୍ତର୍ଯ୍ୟାମିରୂପେଣ ପ୍ରବିଷ୍ଟୋଽହମତଃ ମତ୍ତ ଏବ ହେତୋଃ ପ୍ରାଣିମାତ୍ରସ୍ୟ ପୂର୍ବାନୁଭୂତାର୍ଥବିଷୟା ସ୍ମୃତିର୍ଭବତି, ଜ୍ଞାନଂ ଚ ବିଷୟେନ୍ଦ୍ରିୟ ସଂଯୋଗଜଂ ଭବତି, ଅପୋହନଂ ଚ ତୟୋଃ

ପ୍ରମୋଷୋଭବତ, ବେଦୈଶ୍ଚ ସର୍ବୈସ୍ତ୍ରବ୍ରହ୍ମେବତାରୂପେଣାହମେବ ବେଦ୍ୟଃ ବେଦାନ୍ତକୃତ୍ ତତ୍ସମ୍ପ୍ରଦାୟପ୍ରବର୍ତ୍ତକୋ-ଜ୍ଞାନଦୋଗୁରୁରହମିତ୍ୟର୍ଥଃ ବେଦବଦେବ ଚ ବେଦାର୍ଥବଦ୍ୟହମେବ । ୧୫ ।

ପଦବ୍ୟାଖ୍ୟା ।

ସର୍ବସ୍ୟ—ସମସ୍ତଙ୍କର, ଚ—ପୁଣି, ଅହଂ—ଅମ୍ଭେ, ହୃଦି—ଅନ୍ତଃକରଣରେ, ସନ୍ନିବିଷ୍ଟଃ—ସର୍ବାନ୍ତର୍ଯ୍ୟାମିରୂପରେ ପ୍ରବିଷ୍ଟ, ମତ୍ତଃ—ଅମ୍ଭଠାରୁ, ସ୍ମୃତିଃ—ସ୍ମରଣଶକ୍ତି, ଜ୍ଞାନଂ—ଇନ୍ଦ୍ରିୟମାନଙ୍କଦ୍ୱାରା ବିଷୟ ଜ୍ଞାନ, ଅପୋହନଂ ଚ—ସ୍ମୃତି ଓ ଜ୍ଞାନର ଅଭାବ, ବେଦୈଃ ଚ—ବେଦମାନଙ୍କଦ୍ୱାରା, ସର୍ବୈଃ—ସମସ୍ତ, ଅହଂ ଏବ—ଅମ୍ଭେ କେବଳ, ବେଦ୍ୟଃ—ଜ୍ଞେୟ, ବେଦାନ୍ତକୃତ୍—ସମ୍ପ୍ରଦାୟପ୍ରବର୍ତ୍ତକ ବା ଜ୍ଞାନଦାତା ଗୁରୁ, ବେଦବିତ୍—ବେଦର ପ୍ରକୃତ ମର୍ମଜ୍ଞ, ଏବ ଚ ଅହଂ—କେବଳ ଅମ୍ଭେ । ୧୫ ।

ଅନୁବାଦ ।

ଅମ୍ଭେ ସମସ୍ତଙ୍କ ହୃଦୟରେ (ଜୀବାତ୍ମାରୂପରେ) ପ୍ରବିଷ୍ଟ ଅଛୁଁ, ଅମ୍ଭ ହେତୁରୁ ସମସ୍ତଙ୍କର ସ୍ମରଣ ଓ ବିଷୟ-ଜ୍ଞାନ ଜାତ ଓ କ୍ଷୟପ୍ରାପ୍ତ ହୁଏ । ଅମ୍ଭେ ସମସ୍ତ ବେଦରେ ଜ୍ଞେୟ, ଅମ୍ଭେହିଁ ବେଦାନ୍ତ ପ୍ରଣେତା ଓ ବେଦାର୍ଥ ଜ୍ଞାନୀ ଅଟୁଁ । ୧୫ ।

ବିଶଦବ୍ୟାଖ୍ୟା ।

ଚୈତନ୍ୟସ୍ୱରୂପ ପରମାତ୍ମା ଅବିଦ୍ୟାଶ୍ରିତ ହେଲେ, ଜୀବାତ୍ମା ନାମରେ କଥିତ ହୁଅନ୍ତି, ସୁତରାଂ ପ୍ରାଣିମାନଙ୍କର ଦେହରେ ସ୍ଥିତ, ଯେ ଜୀବାତ୍ମା, ସେ, ପରମାତ୍ମା ଭିନ୍ନ ଆଉ କିଛି ନୁହନ୍ତି । ଏଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ ଅମ୍ଭେ ସମସ୍ତଙ୍କ ହୃଦୟରେ ଜୀବାତ୍ମାରୂପରେ ପ୍ରବିଷ୍ଟ ହୋଇଅଛୁଁ । ସେହି ଅମ୍ଭଚୈତନ୍ୟ ପ୍ରଭାବରେ ଜୀବାତ୍ମାଙ୍କର ପୂର୍ବକୃତ ବିଷୟମାନ ସ୍ମରଣ ହୁଏ ଓ ଇନ୍ଦ୍ରିୟଦ୍ୱାରା ବିଷୟଜ୍ଞାନ ହୁଏ, ପୁଣି ସେହି ଜୀବାତ୍ମା କାମ, କ୍ରୋଧ ଓ ମୋହାଦିର ଅଧୀନ ହେଲେ, ତାଙ୍କର ସ୍ମରଣଶକ୍ତି ଓ ଜ୍ଞାନଶକ୍ତିର ହ୍ରାସ ହୁଏ, ସେଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ ଅମ୍ଭଦ୍ୱାରା ସମସ୍ତଙ୍କର ସ୍ମରଣ ଓ ଜ୍ଞାନ ହୁଏ ଏବଂ ସେହି ଉଭୟଶକ୍ତିର ହ୍ରାସ ହୁଏ ।

ସମସ୍ତ ବେଦରେ ସେହି ପରମାତ୍ମାଙ୍କୁ ଜାଣିବା ବିଷୟରେ ନାନା ପ୍ରକାର ଉପଦେଶ ଅଛି, ଅଥବା ଋଗାଦି ବେଦରେ ଇନ୍ଦ୍ର, ବରୁଣ ଓ ମିତ୍ର ପ୍ରଭୃତି ନାମରେ ଯେଉଁ ଦେବତାଙ୍କର ଉଲ୍ଲେଖ ଅଛି, ସେ ସବୁ ସେହି ପରମାତ୍ମା ଭିନ୍ନ ଆଉ କିଛି ନୁହନ୍ତି, ଏଥିପାଇଁ ସେ ସମସ୍ତ ବେଦରେ ବେଦ୍ୟ ଅର୍ଥାତ୍ ଜ୍ଞେୟ ଅଟନ୍ତି । ଆଉ ବେଦାନ୍ତ ପ୍ରଭୃତି ଗ୍ରନ୍ଥରେ ଯେଉଁ ସମ୍ପ୍ରଦାୟ-ଭେଦ ଅଛି, ବା ଯେଉଁ ତତ୍ତ୍ୱଜ୍ଞାନର ଉପଦେଶ ଅଛି, ତାହା ତାହାଙ୍କର କୃତ ଅଟେ; ସୁତରାଂ ସେ 'ବେଦାନ୍ତକୃତ୍' ଅର୍ଥାତ୍ ସମସ୍ତଙ୍କର ଜ୍ଞାନଦାତା ଗୁରୁ ଅଟନ୍ତି ଏବଂ ସମସ୍ତ ବେଦର ଅର୍ଥ ତାହାଙ୍କ ଭିନ୍ନ ଆଉ କେହି ଜାଣନ୍ତି ନାହିଁ, ଅତଏବ ସେ 'ବେଦବିତ୍' ଅର୍ଥାତ୍ ସମସ୍ତ ବେଦର ଅର୍ଥଜ୍ଞ ଅଟନ୍ତି । ୧୫ ।

ଶ୍ଳୋକଃ ।

ଦ୍ୱାବିମୌ ପୁରୁଷୌ ଲୋକେ, କ୍ଷରଶ୍ଚାକ୍ଷର ଏବ ଚ ।
କ୍ଷରଃ ସର୍ବାଣି ଭୂତାନି, କୂଟସ୍ଥୋଽକ୍ଷର ଉଚ୍ୟତେ । ୧୬ ।

Digitized by PPRACHIN, SOA

ଅନ୍ୱୟଃ ।

**ଲୋକେ କ୍ଷରଃ ଚ ଅକ୍ଷରଃ ଏବ ଇମୌ ଦ୍ୱୌ ପୁରୁଷୌ, ସର୍ବାଣି ଭୂତାନି କ୍ଷରଃ, କୂଟସ୍ଥଃ ଅକ୍ଷରଃ ଉଚ୍ୟତେ ।** ୧୬ ।

ଟୀକା ।

**ଉପାଧ୍ୟୋ** ଭଗବାନ ପରମଂ ମମୈବ ଯଦୁକ୍ତଂ ସ୍ୱରୂପଂ ସର୍ବୋତ୍ତମତ୍ୱଂ ତଦ୍ ଦର୍ଶୟିତୁ । ଦ୍ୱାବେବ ତିଭିଃ । କ୍ଷରଶ୍ଚାକ୍ଷରଂ ଶ୍ଚେତି ଦ୍ୱାବିମୌ ପୁରୁଷୌ ଲୋକେ ପ୍ରସିଦ୍ଧୌ, ତାବେବାହ ତତ୍ର କ୍ଷରଃ ପୁରୁଷୋ ନାମ ସର୍ବାଣି ଭୂତାନି ବ୍ରହ୍ମାଦିସ୍ଥାବରାନ୍ତାନି ଶରୀରାଣି, ଅବିବେକିଲୋକସ୍ୟ ଶରୀରେଷ୍ୱେବ ପୁରୁଷତ୍ୱପ୍ରସିଦ୍ଧେଃ କୂଟୋରାଶିଃ ଶିଳାରାଶିଃ ପର୍ବତ ଇବ ଦେହେଷୁ ନଶ୍ୟତ୍ସ୍ୱପି ନିର୍ବିକାରତୟା ତିଷ୍ଠତୀତି କୂଟସ୍ଥଶ୍ଚେତନୋ ଭୋକ୍ତା ସ ତ୍ୱକ୍ଷରଃ ପୁରୁଷ ଉଚ୍ୟତେ ବିବେକିଭିଃ । ୧୬ ।

ପଦବ୍ୟାଖ୍ୟା ।

ଦ୍ୱୌ ଇମୌ—ଏହି ଦୁଇ, ପୁରୁଷୌ—ପୁରୁଷ, ଲୋକେ—ଲୋକରେ ପ୍ରସିଦ୍ଧ, କ୍ଷରଃ ଚ ଅକ୍ଷରଃ ଏବ ଚ—କ୍ଷର ଓ ଅକ୍ଷର, କ୍ଷରଃ ସର୍ବାଣି ଭୂତାନି—ତାହା ମଧ୍ୟରୁ ଉତ୍ପତ୍ତି ବିନାଶଶୀଳ କାର୍ଯ୍ୟ ଉପାଧିକ ସମସ୍ତ ଭୂତ ଅର୍ଥାତ୍ ପ୍ରାଣି ଶରୀରକୁ କ୍ଷର ବୋଲାଯାଏ, କୂଟସ୍ଥଃ—କାରଣ ଉପାଧିକ ଆବରଣ ବିକ୍ଷେପ ଗୁଣଯୁକ୍ତ ମାୟାଶକ୍ତି, ଅକ୍ଷରଃ ଉଚ୍ୟତେ—ଅକ୍ଷର ଅର୍ଥାତ୍ ଅବିନାଶୀ ବୋଲି କଥିତ ହୁଅନ୍ତି । ୧୬ ।

ଅନୁବାଦ ।

କ୍ଷର ଓ ଅକ୍ଷର ଏହି ଦୁଇ ପୁରୁଷ ଲୋକରେ ପ୍ରସିଦ୍ଧ, (ତନ୍ମଧ୍ୟରେ) ଭୂତସମୂହକୁ କ୍ଷର ଏବଂ କୂଟସ୍ଥଙ୍କୁ ଅକ୍ଷର ବୋଲାଯାଏ । ୧୬ ।

ବିଷଦବ୍ୟାଖ୍ୟା ।

ଏ ଜଗତରେ କ୍ଷର ଓ ଅକ୍ଷର ବୋଲି ଦୁଇଟି ପୁରୁଷ ପ୍ରସିଦ୍ଧ, ତନ୍ମଧ୍ୟରୁ ଉତ୍ପତ୍ତି ଓ ବିନାଶଶୀଳ ଯେ କାର୍ଯ୍ୟସମୂହ ତାହା, 'କ୍ଷର' ନାମରେ କଥିତ ଅଟେ । ଆଉ ବିନା ଆତ୍ମଜ୍ଞାନରେ ଯାହାର ବିନାଶ ହୁଏ ନାହିଁ, ଓ କ୍ଷରନାମା ପୁରୁଷର ଅର୍ଥାତ୍ ଭୂତସମୂହର ଉତ୍ପତ୍ତିର ବୀଜସ୍ୱରୂପ ଯେଉଁ 'କୂଟସ୍ଥ', ମାୟାଶକ୍ତି—ତାହା 'ଅକ୍ଷର' ପୁରୁଷ ନାମରେ କଥିତ । ପ୍ରକୃତ ପଦାର୍ଥ ଗୋପନ କରି ଅପ୍ରକୃତ ପଦାର୍ଥ ପ୍ରକାଶ କରିବାକୁ ଅର୍ଥାତ୍ ପ୍ରବଞ୍ଚନାକୁ 'କୂଟ' ବୋଲାଯାଏ, କୂଟରୂପରେ ସ୍ଥିତ = କୂଟସ୍ଥ; ଏଠାରେ 'କୂଟସ୍ଥ' ଅର୍ଥରେ ମାୟାଶକ୍ତି ବୁଝିବାକୁ ହେବ, କାହିଁକି ନା ତାହା ଜଗତର ପ୍ରତ୍ୟେକ ପଦାର୍ଥର ପ୍ରକୃତସ୍ୱରୂପ ଅପ୍ରକାଶିତ ରଖି ଅଯଥାର୍ଥରୂପ ପ୍ରକାଶିତ କରେ, ଅତଏବ ସେହି କୂଟସ୍ଥ ଅର୍ଥାତ୍ ମାୟାଶକ୍ତି କ୍ଷର, ଯେ ଭୂତସମୂହ, ତାହାର କାରଣ ଓ ଆତ୍ମଜ୍ଞାନ ବିନା ତାହାର ବିନାଶ ନାହିଁ ବୋଲି, ତାହା 'ଅକ୍ଷର' ଅଟେ ।

କାହାରି ମତରେ ଭୂତସମୂହ, ଜଡ଼ ବା ଅଚେତନ ପଦାର୍ଥ ଥିବାରୁ 'କ୍ଷର' ଅର୍ଥାତ୍ ବିନାଶଶୀଳ, ଏବଂ କୂଟସ୍ଥ ଅର୍ଥାତ୍ (କୂଟ = ସମୂହ, ସ୍ଥ = ସ୍ଥିତ) ଦେହ ସମୂହରେ ଅବସ୍ଥିତ, ଯେ ଭୋକ୍ତାରୂପୀ ଜୀବାତ୍ମା, ତାହାଙ୍କୁ 'ଅକ୍ଷର' ପୁରୁଷ ବୋଲାଯାଏ, ଯେହେତୁ ସେ, ଅବ୍ୟୟ ଓ ପରିଣାମବିହୀନ ଅଟନ୍ତି, ପୁଣି କାହାରି ମତରେ ଭୂତ ଅର୍ଥାତ୍ ବ୍ରହ୍ମାଦି ସ୍ଥାବରାନ୍ତ ପ୍ରାଣୀ କମ୍ବା = ବଦ୍ଧାତ୍ମା କ୍ଷର—କ୍ଷରଣଶୀଳ ଅର୍ଥାତ୍ ଜଡ଼ ସଂସର୍ଗଯୁକ୍ତ । ଆଉ 'କୂଟସ୍ଥ' ସ୍ୱ ସ୍ୱରୂପରେ ଅବସ୍ଥିତ ମୁକ୍ତାତ୍ମା = 'ଅକ୍ଷର' ଅର୍ଥାତ୍ ଜଡ଼ ସଂସର୍ଗରୁ ମୁକ୍ତ ।

Digitized by PPRACHIN, SOA

ଫଳକଥା ଏଥିର କାହାରି ମତରେ ଭୂତସମୂହ 'କ୍ଷର' ଓ ମାୟାଶକ୍ତି 'ଅକ୍ଷର', ଏବଂ ଅପର ମତରେ ଭୂତ ଅର୍ଥାତ୍ ଜଡ଼ସମୂହ 'କ୍ଷର' ଓ ଜୀବାତ୍ମା 'ଅକ୍ଷର' ଅଟନ୍ତି । ଅନ୍ୟ ମତରେ ବଦ୍ଧାତ୍ମା 'କ୍ଷର' ଓ ମୁକ୍ତାତ୍ମା 'ଅକ୍ଷର' ଅଟନ୍ତି । ୧୬ ।

ଶ୍ଳୋକଃ ।

ଉତ୍ତମଃ ପୁରୁଷସ୍ତ୍ୱନ୍ୟଃ, ପରମାତ୍ମେତ୍ୟୁଦାହୃତଃ ।
ଯୋ ଲୋକତ୍ରୟମାବିଶ୍ୟ, ବିଭର୍ତ୍ତ୍ୟବ୍ୟୟ ଈଶ୍ୱରଃ । ୧୭ ।

ଅନ୍ୱୟଃ ।

ତୁ ଅନ୍ୟଃ ଉତ୍ତମଃ ପୁରୁଷଃ ପରମାତ୍ମା ଇତି ଉଦାହୃତଃ, ଯଃ ଅବ୍ୟୟଃ ଈଶ୍ୱରଃ ଲୋକତ୍ରୟଂ ଆବିଶ୍ୟ ବିଭର୍ତ୍ତି । ୧୭ ।

ଟୀକା ।

ଯଦର୍ଥମେତୌ ଲକ୍ଷିତୌ ତମାହ । ଉତ୍ତମ ଇତି । ଏତାଭ୍ୟାଂ କ୍ଷରାକ୍ଷରାଭ୍ୟାମନ୍ୟୋ ବିଲକ୍ଷଣସ୍ତୂତ୍ତମଃ ପୁରୁଷଃ । ବୈଲକ୍ଷଣ୍ୟମେବାହ । ପରମଶ୍ଚାସାବାତ୍ମା ଚେତି ଉଦାହୃତ ଉକ୍ତଃ ଶ୍ରୁତିଭିଃ । ଅଚେତନ କ୍ଷରଚେତନାଦ୍ଭୋକ୍ତୃଲକ୍ଷଣାତ୍, ପରମତ୍ୱେ ଚାକ୍ଷରତ୍ୱେ ହେତୁର୍ଲକ୍ଷଣମାହ, ପରମାତ୍ମତ୍ୱମେବ ଦର୍ଶୟତି ଯୋ ଲୋକତ୍ରୟମିତି । ଯ ଈଶ୍ୱର ଈଶନଶୀଳଃ ଅବ୍ୟୟଶ୍ଚ ନିର୍ବ୍ବିକାର ଏବ ସନ୍ ଲୋକତ୍ରୟମାବିଶ୍ୟ ବିଭର୍ତ୍ତି ପାଳୟତି । ୧୭ ।

ପଦବ୍ୟାଖ୍ୟା ।

ଉତ୍ତମଃ ପୁରୁଷଃ ତୁ ଅନ୍ୟଃ—କ୍ଷର ଓ ଅକ୍ଷରଠାରୁ ଭିନ୍ନ ଯେ ପୁରୁଷ, ସେ ଉତ୍ତମ, ପରମାତ୍ମା ଇତି ଉଦାହୃତଃ—ପରମାତ୍ମା ନାମରେ କଥିତ, ଯଃ—ଯେ, ଲୋକତ୍ରୟଂ—ତିନିଲୋକକୁ, ଆବିଶ୍ୟ—ପ୍ରବେଶ କରି, ବିଭର୍ତ୍ତି—ଧାରଣ ଏବଂ ପାଳନ କରୁଅଛନ୍ତି, ଅବ୍ୟୟଃ—ଅବିନାଶୀ, ଈଶ୍ୱରଃ—ସର୍ବସମର୍ଥ । ୧୭ ।

ଅନୁବାଦ ।

(ଏଥିରୁ) ଅନ୍ୟ ଉତ୍ତମ ପୁରୁଷ ପରମାତ୍ମା ନାମରେ କଥିତ ଅଟନ୍ତି । ସେହି ଅବ୍ୟୟ ଈଶ୍ୱର ଲୋକତ୍ରୟରେ ପ୍ରବେଶ କରି (ତାହାକୁ) ଧାରଣ ଓ ପାଳନ କରୁଅଛନ୍ତି । ୧୭ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକକଥିତ କ୍ଷର ଓ ଅକ୍ଷର ପୁରୁଷ ଭିନ୍ନ ଅଦ୍ଭୁତ ଏକ ପୁରୁଷ ଅଛନ୍ତି, ତାହାଙ୍କୁ 'ଉତ୍ତମ' ବୋଲଯାଏ । ସେ ଉତ୍ତମ ପୁରୁଷ ହିଁ ଏଠାରେ ପରମାତ୍ମା ନାମରେ କଥିତ । ସେ, ଆତ୍ମାବୋଲି, 'କ୍ଷର' ବା ଅଚେତନ ପଦାର୍ଥ ଅର୍ଥାତ୍ ପ୍ରାଣିଦେହରୁ ଉତ୍ତମ ଅଟନ୍ତି; ପୁଣି ସେ, 'ପରମ', ଥିବାରୁ 'ଅକ୍ଷର' ବା କୂଟସ୍ଥ ଅମ୍ଭାଙ୍କଠାରୁ ଶ୍ରେଷ୍ଠ ଅଟନ୍ତି । ସେହି ପରମାତ୍ମା, ସର୍ବ-ଲୋକର ପ୍ରଭୁ ଅଟନ୍ତି ଏବଂ ତ୍ରିଲୋକ ମଧ୍ୟରେ ଶକ୍ତିରୂପରେ ପ୍ରବିଷ୍ଟ ହୋଇ ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ରାଦି ସମସ୍ତଙ୍କୁ ଧାରଣ ଓ ପାଳନ କରୁଅଛନ୍ତି । ୧୭ ।

ଶ୍ଳୋକଃ ।

ଯସ୍ମାତ୍ କ୍ଷରମତୀତୋଽହ,ମକ୍ଷରାଦପି ଚୋତ୍ତମଃ ।
ଅତୋଽସ୍ମି ଲୋକେ ବେଦେ ଚ, ପ୍ରଥିତଃ ପୁରୁଷୋତ୍ତମଃ । ୧୮ ।

Digitized by PPRACHIN, SOA

ଅନ୍ୱୟଃ ।

ଯସ୍ମାତ୍ ଅହଂ କ୍ଷରଂ ଅତୀତଃ ଚ ଅକ୍ଷରାତ୍ ଅପି ଉତ୍ତମଃ ଅତଃ ଲୋକେ ଚ ବେଦେ ପୁରୁଷୋତ୍ତମଃ (ଇତି) ପ୍ରଥିତଃ ଅସ୍ମି । ୧୮ ।

ଟୀକା ।

ଏବମ୍ଭୂତ ପୁରୁଷୋତ୍ତମସ୍ୟ ମମ ସ୍ୱନାମାନନିର୍ବଚନେନ ଦର୍ଶୟତି । ଯସ୍ମାଦିତି । ଯସ୍ମାତ୍ କ୍ଷରଂ ଜଡ଼ବର୍ଗମତୀତୋଽହଂ ନିତ୍ୟମୁକ୍ତତ୍ୱାଦକ୍ଷରାଚ୍ଚେତନବର୍ଗାଦପ୍ୟୁତ୍ତମସ୍ତନିୟନ୍ତୃତ୍ୱାଦତୋ ଲୋକେ ବେଦେ ଚ ପୁରୁଷୋତ୍ତମ ଇତି ପ୍ରଥିତଃ ପ୍ରଖ୍ୟାତୋଽସ୍ମି । ତଥା ଚ ଶ୍ରୁତିଃ । ସ ବା ଅୟମାତ୍ମା ସର୍ବସ୍ୟ ବଶୀ ସର୍ବସ୍ୟେଶାନଃ ସର୍ବମିଦଂ ପ୍ରଶାସ୍ତୀତ୍ୟାଦି । ୧୮ ।

ପଦବ୍ୟାଖ୍ୟା ।

ଯସ୍ମାତ୍—ଯେଉଁ ହେତୁରୁ, କ୍ଷରଂ ଅତୀତଃ—ବିନାଶି (ଜଡ଼ବର୍ଗ)ଠାରୁ ପୃଥକ୍, ଅହଂ—ଅମ୍ଭେ, ଅକ୍ଷରାଦପି—ଅବିନାଶି (ଚେତନବର୍ଗ)ଠାରୁ ମଧ୍ୟ, ଚ—ପୁଣି, ଉତ୍ତମଃ—ଶ୍ରେଷ୍ଠ, ଅତଃ—ଏହି ହେତୁରୁ, ଅସ୍ମି—ଅଟୁଁ, ଲୋକେ ବେଦେ ଚ—ଲୋକରେ ଓ ବେଦରେ ମଧ୍ୟ, ପ୍ରଥିତଃ—ଖ୍ୟାତ, ପୁରୁଷୋତ୍ତମଃ—ପୁରୁଷଶ୍ରେଷ୍ଠ । ୧୮ ।

ଅନୁବାଦ ।

ଯେହେତୁରୁ ଅମ୍ଭେ କ୍ଷରଠାରୁ ଭିନ୍ନ ଓ ଅକ୍ଷରଠାରୁ ଶ୍ରେଷ୍ଠ, ସେହି ହେତୁରୁ (ଅମ୍ଭେ) ଲୋକରେ ଓ ବେଦରେ ପୁରୁଷୋତ୍ତମ ବୋଲି ଖ୍ୟାତ ଅଟୁଁ । ୧୮ ।

ବିଶଦବ୍ୟାଖ୍ୟା ।

ଏହି ଅଧ୍ୟାୟର ଷୋଡ଼ଶ ଶ୍ଳୋକରେ ବୁଝାଇ ଦିଆ ଯାଇଅଛି, ଯେ ପ୍ରାଣିମାନଙ୍କର ଜଡ଼ଦେହ 'କ୍ଷର' ନାମରେ ଏବଂ ଜୀବାତ୍ମା 'ଅକ୍ଷର' ନାମରେ ପରିଚିତ ଅଟନ୍ତି ଏବଂ ପୂର୍ବ-ଶ୍ଳୋକରେ ବୁଝାଇ ଦିଆଗଲା, ଯେ କ୍ଷର ଓ ଅକ୍ଷର ଏ ଦୁଇରୁ ପୃଥକ୍ ଅନ୍ୟ ଏକ ଉତ୍ତମ-ପୁରୁଷ ଅଛନ୍ତି, ଯାହାଙ୍କୁ କି ପରମାତ୍ମା ବୋଲାଯାଏ । ଶ୍ରୀଭଗବାନ୍ ସେହି ପରମାତ୍ମାସ୍ୱରୂପୀ ଅଟନ୍ତି । ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଅମ୍ଭେ କ୍ଷର ଅର୍ଥାତ୍ ଜଡ଼ବର୍ଗରୁ ପୃଥକ୍ ଅଟୁଁ ଓ ଅବିଦ୍ୟାବୃତ ଚୈତନ୍ୟଠାରୁ ଶ୍ରେଷ୍ଠ ଅଟୁଁ । ସେହି ହେତୁରୁ ଅର୍ଥାତ୍ କ୍ଷର ଓ ଅକ୍ଷର ଏ ଦୁଇ ପୁରୁଷଠାରୁ ଶ୍ରେଷ୍ଠ ହେବାରୁ ସମସ୍ତଲୋକେ ଆମ୍ଭଙ୍କୁ ପୁରୁଷୋତ୍ତମ କହନ୍ତି ଏବଂ ସମସ୍ତ ବେଦ-ରେ ମଧ୍ୟ ଅମ୍ଭେ ସେହି ପୁରୁଷୋତ୍ତମ ନାମରେ ଖ୍ୟାତ ଅଟୁଁ । ୧୮ ।

ଶ୍ଳୋକଃ ।

ଯୋ ମାମେବମସମ୍ମୂଢ଼ୋ, ଜାନାତି ପୁରୁଷୋତ୍ତମଂ ।
ସ ସର୍ବବିଦ୍‌ଭଜତି ମାଂ, ସର୍ବଭାବେନ ଭାରତ । ୧୯ ।

ଅନ୍ୱୟଃ ।

ହେ ଭାରତ ! ଯଃ ଅସମ୍ମୂଢ଼ଃ ମାଂ ଏବଂ ପୁରୁଷୋତ୍ତମଂ ଜାନାତି ସଃ ସର୍ବବିତ୍ ମାଂ ସର୍ବଭାବେନ ଭଜତି । ୧୯ ।

ଟୀକା ।

ଏବମ୍ଭୂତେଶ୍ୱର ଜ୍ଞାନଃ ଫଳମାହ । ଯ ଇତି । ଏବ ନିରୁକ୍ତପ୍ରକାରେଣାସମ୍ମୂଢ଼ୋ ନିଶ୍ଚିତମତିଃ ସନ୍ ଯୋ ମାଂ ପୁରୁଷୋତ୍ତମଂ ଜାନାତି ସ ସର୍ବଭାବେନ ସର୍ବପ୍ରକାରେଣ ମାମେବ ଭଜତି ଅତଃ ସର୍ବଜ୍ଞୋ ଭବତି । ୧୯ ।

ପଦବ୍ୟାଖ୍ୟା ।

ସଃ ମାଂ ଏବ—ଯେ ଅମ୍ଭଙ୍କୁ ଏପ୍ରକାର, ଅସମ୍ମୂଢ଼ଃ—ନିଶ୍ଚିତମତ, ଜାନାତି—ଜାଣନ୍ତି, ପୁରୁଷୋତ୍ତମଂ—ପୁରୁଷଶ୍ରେଷ୍ଠ ବୋଲି, ସଃ ସର୍ବବିତ୍—ସେହି ସର୍ବଜ୍ଞ, ଭଜତି—ଉପାସନା କରନ୍ତି, ମାଂ—ଅମ୍ଭଙ୍କୁ, ସର୍ବଭାବେନ—ସର୍ବପ୍ରକାରରେ, ଭାରତ—ହେ ଅର୍ଜ୍ଜୁନ । ୧୯ ।

ଅନୁବାଦ ।

ହେ ଭାରତ ! ଯେ ସ୍ଥିରମତି ବ୍ୟକ୍ତି ଅମ୍ଭଙ୍କୁ ଏହି ପ୍ରକାରେ ପୁରୁଷୋତ୍ତମ ବୋଲି ଜାଣିପାରନ୍ତି, ସେହି ସର୍ବଜ୍ଞ ବ୍ୟକ୍ତି ଅମ୍ଭର ସର୍ବପ୍ରକାର ଉପାସନା କରନ୍ତି । ୧୯ ।

ବିଶଦବ୍ୟାଖ୍ୟା ।

ମନୁଷ୍ୟମୂର୍ତ୍ତିରେ ଅବତୀର୍ଣ୍ଣ ଶ୍ରୀଭଗବାନଙ୍କୁ ଯେଉଁ ବ୍ୟକ୍ତି କୌଣସି ପ୍ରକାର ସନ୍ଦେହ ନ କରି ନିଶ୍ଚଳଚିତ୍ତରେ ଜାଣି ପାରିବେ, ଯେ 'ସେ, ଜଗତରୁ ପୃଥକ୍ ଓ ଅମ୍ଭାରୁ ଶ୍ରେଷ୍ଠ ପରମାତ୍ମାସ୍ୱରୂପୀ ପୁରୁଷୋତ୍ତମ ଅଟନ୍ତି,' ସେ ବ୍ୟକ୍ତି ସର୍ବଜ୍ଞ ଓ ପ୍ରକୃତ ତତ୍ତ୍ୱଦର୍ଶୀ ଅଟନ୍ତି ଏବଂ ସେହି ହେତୁରୁ ସେ, ପରମେଶ୍ୱରଙ୍କର ସର୍ବପ୍ରକାର ଉପାସନା କରନ୍ତି । ଯେଉଁ ବ୍ୟକ୍ତି ଭଗବାନଙ୍କୁ ଏପରି ପୁରୁଷୋତ୍ତମ ବୋଲି ନ ଜାଣନ୍ତି ବା ଜାଣିଲେ ସୁଦ୍ଧା ସନ୍ଦେହ କରନ୍ତି, ତାହାଙ୍କ ଉପାସନା ଓ ଜ୍ଞାନ ବୃଥା ଅଟେ । ୧୯ ।

ଶ୍ଳୋକଃ ।

ଇତି ଗୁହ୍ୟତମଂ ଶାସ୍ତ୍ରମିଦମୁକ୍ତଂ ମୟାନଘ ।
ଏତଦ୍‌ବୁଦ୍ଧ୍ୱା ବୁଦ୍ଧିମାନ୍ ସ୍ୟାତ୍ କୃତକୃତ୍ୟଶ୍ଚ ଭାରତ ॥ ୨୦ ॥

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସମ୍ବାଦେ ପୁରୁଷୋତ୍ତମଯୋଗୋନାମ ପଞ୍ଚଦଶୋଽଧ୍ୟାୟଃ । ୧୫ ।

---

ଅନ୍ୱୟଃ ।

ହେ ଅନଘ ! ଇତି ଇଦଂ ଗୁହ୍ୟତମଂ ଶାସ୍ତ୍ରଂ ମୟା ଉକ୍ତଂ । ହେ ଭାରତ ! ଏତତ୍ ବୁଦ୍ଧ୍ୱା ବୁଦ୍ଧିମାନ୍ ଚ କୃତକୃତ୍ୟଃ ସ୍ୟାତ୍ । ୨୦ ।

ଇତି ଶ୍ରୀଭଗବଦ୍‌ଗୀତାୟାଂ ଅନ୍ୱୟେ ପଞ୍ଚଦଶୋଽଧ୍ୟାୟଃ । ୧୫ ।

---

ଟୀକା ।

ଅଧ୍ୟାୟାର୍ଥମୁପସଂହରତି । ଇତୀତି । ଇତ୍ୟେବଂ ସଂକ୍ଷେପପ୍ରକାରେଣ ଗୁହ୍ୟତମମତିରହସ୍ୟଂ ସମ୍ପୂର୍ଣ୍ଣଂ ଶାସ୍ତ୍ରମେବ ମୟୋକ୍ତଂ ନ ତୁ ପୂର୍ବବିଂଶତିଶ୍ଳୋକମଧ୍ୟାୟମାତ୍ରଂ । ହେ ଅନଘ ବ୍ୟସନଶୂନ୍ୟ ! ଅତ ଏବୈତଦ୍‌ବୁଦ୍ଧ୍ୱା ବୁଦ୍ଧିମାନ୍ ସମ୍ୟକ୍ ଜ୍ଞାନୀ ସ୍ୟାତ୍ କୃତକୃତ୍ୟଶ୍ଚ ସ୍ୟାତ୍ ଯୋଽପି କୋଽପି ହେ ଭାରତ । ତ୍ୱଂ କୃତକୃତ୍ୟୋଽସୀତି କିଂ ବକ୍ତବ୍ୟମିତି ଭାବଃ । ସଂସାରଶାର୍ଦ୍ଦିଂ ଛିତ୍ତ୍ୱା ଶ୍ରୀମଂ ପଞ୍ଚଦଶେ ବର୍ଣ୍ଣଃ । ପୁରୁଷୋତ୍ତମଯୋଗାଖ୍ୟେ ପରଂ ପଦମୁପାଦିଶତ୍ । ୨୦ ।

ଇତି ଶ୍ରୀଭଗବଦ୍‌ଗୀତାୟାଂ ସ୍ୱାମିଟୀକାୟାଂ ପଞ୍ଚଦଶୋଽଧ୍ୟାୟଃ । ୧୫ ।

---

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଇତି—ଏପ୍ରକାର, ଗୁହ୍ୟତମଂ—ଅତ୍ୟନ୍ତ ଗୋପନୀୟ, ଶାସ୍ତ୍ରଂ—ଶାସ୍ତ୍ର, ଇଦଂ—ଏହି, ଉକ୍ତଂ—କହିଲୁଁ, ମୟା—ଅମ୍ଭେ, ଅନଘ—ହେ ପାପରହିତ !, ଏତତ୍—ଏହା, ବୁଦ୍ଧ୍ୱା—ଜାଣିଲେ, ବୁଦ୍ଧିମାନ୍—ବିବେକବାନ, ସ୍ୟାତ୍—ହେବେ, କୃତକୃତ୍ୟଃ ଚ—କୃତାର୍ଥ ମଧ୍ୟ ହେବେ, ଭାରତ—ହେ ଅର୍ଜୁନ ! ।୨୦।

ଇତି ଶ୍ରୀ ଭଗବଦ୍‌ଗୀତା ପଦ-ବ୍ୟାଖ୍ୟାୟାଂ ପଞ୍ଚଦଶୋଽଧ୍ୟାୟଃ । ୧୫ ।

ଅନୁବାଦ ।

ହେ ନିଷ୍ପାପ ଅର୍ଜୁନ ! ଅମ୍ଭେ ସଂକ୍ଷେପରେ ଏହି ଅତିଗୋପନୀୟ ଶାସ୍ତ୍ର କହିଲୁଁ । ହେ ଭାରତ ! ଏହା ଜାଣିଲେ, ଲୋକେ ବୁଦ୍ଧିମାନ୍ ଓ କୃତାର୍ଥ ହେବେ । ୨୦ ।

ଇତି ଶ୍ରୀଭଗବଦ୍‌ଗୀତାର ଉତ୍କଳାନୁବାଦରେ ପଞ୍ଚଦଶ ଅଧ୍ୟାୟ ସମାପ୍ତ । ୧୫ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ନିଷ୍ପାପ ଅର୍ଜୁନ ! ଗୀତାର ସମୁଦାୟ ସାରକଥା ଏହି ଅଧ୍ୟାୟରେ ଅମ୍ଭେ ସଂକ୍ଷେପରେ କହିଲୁଁ । ଏହା ଜାଣିବା ଲୋକ ତପୋଯଜ୍ଞାଦି ଅନୁଷ୍ଠାନ-ଦ୍ୱାରା ନିଷ୍ପାପ ହୋଇ ଜ୍ଞାନଲାଭ କରି କୃତାର୍ଥ ହୁଅନ୍ତି, ତୁମ୍ଭେ ତ ନିଷ୍ପାପ, ସୁତରାଂ ଜ୍ଞାନାଧି-କାରୀ; ପୁଣି ଅତି ପବିତ୍ର ଭରତବଂଶରେ ଜନ୍ମଗ୍ରହଣ କରିଅଛ, ଅତଏବ ତୁମ୍ଭେ, ଯେ ଜ୍ଞାନ-ଲାଭ କରି କୃତାର୍ଥ ହେବ, ସେଥିରେ ଆଉ ସନ୍ଦେହ କଣ ?

ସଂସାରରୂପ ବୃକ୍ଷ ଛେଦ କରି ଜୀବର ପରମପଦ ଲାଭ କରିବାକୁ ହୁଏ, ତାହାର ସବିଶେଷ ବିବରଣ ଏହି ପୁରୁଷୋତ୍ତମଯୋଗ ନାମକ ଅଧ୍ୟାୟରେ ଶ୍ରୀଭଗବାନ୍ ବ୍ୟାଖ୍ୟା କଲେ । ୨୦ ।

ଇତି ଶ୍ରୀଭଗବଦ୍‌ଗୀତାର ବିଶଦବ୍ୟାଖ୍ୟାରେ ପଞ୍ଚଦଶ ଅଧ୍ୟାୟ ସମାପ୍ତ । ୧୫ ।

Digitized by PPRACHIN, SOA

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ଷୋଡ଼ଶୋଽଧ୍ୟାୟଃ ।

### ଦୈବାସୁର-ସମ୍ପଦ୍ୱିଭାଗ-ଯୋଗଃ ।

**ଶ୍ଳୋକଃ ।**

ଶ୍ରୀଭଗବାନୁବାଚ ।—ଅଭୟଂ ସତ୍ତ୍ୱସଂଶୁଦ୍ଧିର୍ଜ୍ଞାନଯୋଗବ୍ୟବସ୍ଥିତିଃ ।
ଦାନଂ ଦମଶ୍ଚ ଯଜ୍ଞଶ୍ଚ, ସ୍ୱାଧ୍ୟାୟସ୍ତପ ଆର୍ଜ୍ଜବଂ ॥ ୧ ॥

**ଅନ୍ୱୟଃ ।**

ଶ୍ରୀଭଗବାନ୍ ଉବାଚ । ଅଭୟଂ, ସତ୍ତ୍ୱସଂଶୁଦ୍ଧିଃ, ଜ୍ଞାନଯୋଗବ୍ୟବସ୍ଥିତିଃ, ଦାନଂ, ଦମଃ, ଚ ଯଜ୍ଞଃ ଚ ସ୍ୱାଧ୍ୟାୟଃ, ତପଃ, ଆର୍ଜ୍ଜବଂ ॥ ୧ ॥

**ଟୀକା ।**

ଆସୁରୀଂ ସମ୍ପଦଂ ତ୍ୟକ୍ତ୍ୱା ଦୈବୀମେବାଶ୍ରିତା ନରାଃ ।
ମୁଚ୍ୟନ୍ତ ଇତି ନିର୍ଣ୍ଣେତୁଂ ତଦ୍ୱିବେକୋଽଥ ଷୋଡଶେ ।

ପୂର୍ବାଧ୍ୟାୟାନ୍ତେ ଏତଦ୍‌ବୁଦ୍ଧ୍ୱା ବୁଦ୍ଧିମାନ୍ ସ୍ୟାତ୍ କୃତକୃତ୍ୟଶ୍ଚ ଭାରତେତ୍ୟୁକ୍ତଂ ତତ୍ର କ ଏତତ୍ତତ୍ତ୍ୱଂ ବୁଧ୍ୟତେ, କୋ ବା ନ ବୁଧ୍ୟତ ଇତ୍ୟପେକ୍ଷାୟାଂ ତତ୍ତ୍ୱଜ୍ଞାନେଽଧିକାରିଣୋଽନଧିକାରିଣଶ୍ଚ ବିବେକାର୍ଥଂ ଷୋଡଶାଧ୍ୟାୟସ୍ୟାରମ୍ଭଃ । ନନ୍ୱିତରେ ତୁ କାର୍ଯ୍ୟାର୍ଥେ ଶୁଦ୍ଧଭାବର୍ଜ୍ଜିତା ଭବନ୍ତି, ତଦୁକ୍ତଂ ଭଟ୍ଟୈଃ । ସର୍ବସ୍ୟୈବେହ କୋଽନ୍ୟଃ ସ ପ୍ରାଗାଦୋଧଗୋଚରଃ । ତତ୍ତ୍ୱସ୍ୟ ବୋଧେନ ଶକ୍ୟଂ କର୍ତ୍ତୁଂ ନିରୂପଣମିତି । ତତ୍ରାଧିକାରିବିଶେଷଣଭୂତାଂ ଦୈବୀଂ ସମ୍ପଦମାହ । ଅଭୟମିତି ତ୍ରିଭିଃ । ଅଭୟଂ ଭୟାଭାବଃ, ସତ୍ତ୍ୱସ୍ୟ ଚିତ୍ତସ୍ୟ ସଂଶୁଦ୍ଧିଃ ସୁପ୍ରସନ୍ନତା, ଜ୍ଞାନଯୋଗେ ଆତ୍ମଜ୍ଞାନୋପାୟେ ବ୍ୟବସ୍ଥିତିଃ ପରିନିଷ୍ଠା, ଦାନଂ ସ୍ୱଭୋଜ୍ୟସ୍ୟାନ୍ନାଦେର୍ଯଥୋଚିତସମ୍ବିଭାଗଃ, ଦମୋ ବାହ୍ୟେନ୍ଦ୍ରିୟସଂଯମଃ ଯଜ୍ଞୋ ଯଥାଧିକାରଂ ଦର୍ଶପୌର୍ଣ୍ଣମାସ୍ୟାଦିଃ, ସ୍ୱାଧ୍ୟାୟୋ ବ୍ରହ୍ମଯଜ୍ଞାଦିଃ, ତପ ଉତ୍ତରାଧ୍ୟାୟେ ବକ୍ଷ୍ୟମାଣଂ ଶାରୀରାଦି, ଆର୍ଜ୍ଜବମବକ୍ରତା ॥ ୧ ॥

**ପଦବ୍ୟାଖ୍ୟା ।**

ଅଭୟଂ—(ଶାସ୍ତ୍ରୋକ୍ତ ପରମାର୍ଥରେ) ଭୟ ନ କରିବା, ସତ୍ତ୍ୱସଂଶୁଦ୍ଧିଃ—ଚିତ୍ତର ପ୍ରସନ୍ନତା, ଜ୍ଞାନଯୋଗବ୍ୟବସ୍ଥିତିଃ—ଆତ୍ମଜ୍ଞାନ ଉପାୟରେ ନିଷ୍ଠା, ଦାନଂ—ଧର୍ମସଙ୍ଗତ ଉପାୟଦ୍ୱାରା ଅର୍ଜିତ ଧନାଦିକୁ ସତ୍ପାତ୍ରରେ ଅର୍ପଣ, ଦମଃ ଚ—ବାହ୍ୟ ଇନ୍ଦ୍ରିୟମାନଙ୍କୁ ସଂଯମ କରିବା, ଯଜ୍ଞଃ ଚ—ଦର୍ଶ-ପୌର୍ଣ୍ଣମାସ ଓ ଅଗ୍ନିହୋତ୍ରାଦି, ସ୍ୱାଧ୍ୟାୟଃ—ବ୍ରହ୍ମଯଜ୍ଞାଦି ଅଥବା ବେଦାଧ୍ୟୟନାଦି, ତପଃ—ଶରୀରଶୋଷକ କୃଚ୍ଛ୍ରଚାନ୍ଦ୍ରାୟଣାଦି, ଆର୍ଜ୍ଜବଂ—ସରଳତା ॥ ୧ ॥

Digitized by PPRACHIN, SOA

### ଅନୁବାଦ ।

ଶ୍ରୀଭଗବାନ୍ କହିଲେ, (ହେ ଅର୍ଜୁନ!) ଅଭୟ, ସତ୍ତ୍ୱଶୁଦ୍ଧି, ଜ୍ଞାନ ଓ ଯୋଗରେ ନିଷ୍ଠା, ଦାନ, ଦମ, ଯଜ୍ଞ, ସ୍ୱାଧ୍ୟାୟ, ତପସ୍ୟା ଓ ସରଳତା (ଏମାନ ଦୈବୀସମ୍ପଦପ୍ରାପ୍ତ ବ୍ୟକ୍ତିର ଗୁଣ ଅଟେ) । ୧ ।

### ବିଶଦବ୍ୟାଖ୍ୟା ।

ପଞ୍ଚଦଶ ଅଧ୍ୟାୟର ଦ୍ୱିତୀୟ ଶ୍ଳୋକରେ ବୁଝାଇ ଦିଆ ଯାଇଅଛି, ଯେ ପ୍ରାରବ୍ଧକର୍ମ-ଜନିତ ବାସନା, ସଂସାରରୂପ ବୃକ୍ଷର ଅବାନ୍ତର ମୂଳ ଅର୍ଥାତ୍ ଚେର, ତାହା ଶୁଭ ଓ ଅଶୁଭ ଭେଦରେ ଦୁଇ ପ୍ରକାର । ତନ୍ମଧ୍ୟରେ ମୁକ୍ତିର ହେତୁସ୍ୱରୂପା ସାତ୍ତ୍ୱିକୀ ବାସନା ଶୁଭ ଏବଂ ସଂସାରବନ୍ଧନର ହେତୁସ୍ୱରୂପା ରାଜସୀ ଓ ତାମସୀ ବାସନା ଅଶୁଭ ଅଟେ । ସାତ୍ତ୍ୱିକୀ ବାସନାକୁ ଦୈବୀସମ୍ପଦ ବୋଲାଯାଏ, ରାଜସୀ ଓ ତାମସୀ ବାସନା ଆସୁରୀ ବା ରାକ୍ଷସୀ ସମ୍ପଦ ନାମରେ ପ୍ରସିଦ୍ଧ ଅଟେ । ମୋକ୍ଷାଭିଳାଷୀ ବ୍ୟକ୍ତିଙ୍କର ଆସୁରୀ ଓ ରାକ୍ଷସୀ ସମ୍ପଦ ତ୍ୟାଗ କରି ଦୈବୀସମ୍ପଦର ଆଶ୍ରୟ ଅବଲମ୍ବନ କରିବା ଉଚିତ, ଏହି କଥା ବୁଝାଇବାକୁ ଷୋଡ଼ଶ ଅଧ୍ୟାୟ ଆରମ୍ଭ କରି ଶ୍ରୀଭଗବାନ୍, ପ୍ରଥମେ ଦୈବୀସମ୍ପଦ୍ କାହାକୁ କହନ୍ତି, ତାହା ବୁଝାଉଅଛନ୍ତି ।

ଶାସ୍ତ୍ରବିହିତ କର୍ମାନୁଷ୍ଠାନରେ ଭୟଶୂନ୍ୟ ହେବା ଅର୍ଥାତ୍ ମୁଁ ଏକା ଏପରି ଅନୁଷ୍ଠାନ କିପରି କରିବି ଅଥବା ଏପରି ଅନୁଷ୍ଠାନ କଲେ ମୋହର ଜୀବିକା ନିର୍ବାହ କିପରି ହେବ, ଏପ୍ରକାର ଭୟ ପରିତ୍ୟାଗପୂର୍ବକ ଶାସ୍ତ୍ରବିହିତ କର୍ମାନୁଷ୍ଠାନରେ ପ୍ରବୃତ୍ତ ହେବାର ନାମ ଅଭୟ । ଅନ୍ତଃକରଣକୁ ଭଗବତ୍ତତ୍ତ୍ୱ ଗ୍ରହଣ କରି ପାରିବା ଭଳି ପବିତ୍ର କରିବାକୁ 'ସତ୍ତ୍ୱସଂଶୁଦ୍ଧି' ଅର୍ଥାତ୍ ସତ୍ତ୍ୱଶୁଦ୍ଧି ବୋଲାଯାଏ । ଅଥବା ପ୍ରତାରଣା, ମାୟା ଓ ମିଥ୍ୟା ପରିତ୍ୟାଗକୁ ସତ୍ତ୍ୱଶୁଦ୍ଧି ବୋଲାଯାଏ । (ଛଳ ବା କପଟ ବ୍ୟବହାରରେ ପରକୁ ବଶୀଭୂତ କରିବାର ନାମ 'ପ୍ରତାରଣା', ମନରେ ଏକ କଥା ରଖି ବାହାରେ ଅନ୍ୟ କଥା ପ୍ରକାଶ କରିବାର ନାମ 'ମାୟା' ଓ ଅଯଥାର୍ଥ କଥା ବ୍ୟକ୍ତ କରିବାର ନାମ 'ମିଥ୍ୟା' ଅଟେ) । ବେଦାଦି ଶାସ୍ତ୍ରପାଠ ବା ଆଚାର୍ଯ୍ୟ ଉପଦେଶଦ୍ୱାରା ଆତ୍ମତତ୍ତ୍ୱ ଅବଗତ ହେବାକୁ 'ଜ୍ଞାନ' ବୋଲାଯାଏ । ଏକାଗ୍ରମନରେ ସେହି ଆତ୍ମତତ୍ତ୍ୱକୁ ଅନୁଭବ କରିବାର ନାମ 'ଯୋଗ' ଅଟେ । ସେହି ଜ୍ଞାନ ଓ ଯୋଗରେ ନିଷ୍ଠା ରଖିବାକୁ 'ଜ୍ଞାନଯୋଗବ୍ୟବସ୍ଥିତି' ବୋଲାଯାଏ । ଧର୍ମସଙ୍ଗତ ଉପାୟରେ ସ୍ୱୋପାର୍ଜିତ ସମ୍ପତ୍ତିକୁ ସତ୍ପାତ୍ରରେ ଅର୍ପଣ କରିବାର ନାମ 'ଦାନ' ଓ ବାହ୍ୟେନ୍ଦ୍ରିୟ ସଂଯମ କରିବାକୁ 'ଦମ' ବୋଲାଯାଏ । ଶାସ୍ତ୍ରବିହିତ ଦେବଯଜ୍ଞ, ପିତୃଯଜ୍ଞ ଓ ଭୂତଯଜ୍ଞାଦି ଅଥବା ଦର୍ଶପୌର୍ଣ୍ଣମାସ ଓ ଅଗ୍ନିହୋତ୍ରାଦି ଯଜ୍ଞର ଅନୁଷ୍ଠାନ, ବେଦାଦି ଅଧ୍ୟୟନ ଓ କାୟିକ, ମାନସିକ ଏବଂ ବାଚିକ ତପସ୍ୟା ଏବଂ ସରଳତା ଅର୍ଥାତ୍ ଅକପଟଭାବ । ଏହି ଗୁଣମାନ ଦୈବୀସମ୍ପଦଯୁକ୍ତ ବ୍ୟକ୍ତିଙ୍କର ପ୍ରସିଦ୍ଧ ଅଟେ । ୧ ।

### ଶ୍ଳୋକଃ ।

ଅହିଂସା ସତ୍ୟମକ୍ରୋଧସ୍ତ୍ୟାଗଃ ଶାନ୍ତିରପୈଶୁନଂ ।
ଦୟା ଭୂତେଷ୍ୱଲୋଲୁପ୍ତ୍ୱଂ, ମାର୍ଦ୍ଦବଂ ହ୍ରୀରଚାପଲଂ । ୨ ।

### ଅନ୍ୱୟଃ ।

ଅହିଂସା, ସତ୍ୟଂ, ଅକ୍ରୋଧଃ, ତ୍ୟାଗଃ, ଶାନ୍ତିଃ, ଅପୈଶୁନଂ, ଭୂତେଷୁ ଦୟା, ଅଲୋଲୁପ୍ତ୍ୱଂ, ମାର୍ଦ୍ଦବଂ, ହ୍ରୀଃ, ଅଚାପଲଂ । ୨ ।

### ଟୀକା ।

କିଞ୍ଚ ଅହିଂସେତି । ଅହିଂସା ପରପୀଡ଼ାବର୍ଜ୍ଜନଂ, ସତ୍ୟଂ ଯଥା-ଦୃଷ୍ଟାର୍ଥଭାଷଣଂ, ଅକ୍ରୋଧଃ ତାଡ଼ିତସ୍ୟାପି ଚିତ୍ତେ କ୍ରୋଧାନୁତ୍ପତ୍ତିଃ, ତ୍ୟାଗଃ ଔଦାର୍ଯ୍ୟଂ, ଶାନ୍ତିଶ୍ଚିତ୍ତୋପରତିଃ, ପୈଶୁନଂ ପରୋକ୍ଷେ ପରଦୋଷପ୍ରକାଶନଂ ତଦ୍‌ବର୍ଜ୍ଜନମପୈଶୁନଂ, ଭୂତେଷୁ ଦୀନେଷୁ ଦୟା, ଅଲୋଲୁପ୍ତ୍ୱଂ ଲୋଭାଭାବଃ ଅବର୍ଣ୍ଣଲୋପଶ୍ଚାର୍ଷଃ, ମାର୍ଦ୍ଦବଂ ମୃଦୁତ୍ୱଂ ଅକ୍ରୂରତ୍ୱଂ, ହ୍ରୀରକାର୍ଯ୍ୟପ୍ରବୃତ୍ତୌ ଲୋକଲଜ୍ଜା, ଅଚାପଲଂ ବ୍ୟର୍ଥକ୍ରିୟାରାହିତ୍ୟଂ । ୨ ।

### ପଦବ୍ୟାଖ୍ୟା ।

ଅହିଂସା—ପରକୁ ପୀଡ଼ା ନ ଦେବା, ସତ୍ୟଂ—ଯଥାର୍ଥ କହିବା, ଅକ୍ରୋଧଃ—କ୍ରୋଧଶୂନ୍ୟତା, ତ୍ୟାଗଃ—ଉଦାସୀନତା ଅର୍ଥାତ୍ ଅସକ୍ତିଶୂନ୍ୟତା, ଶାନ୍ତିଃ—ଚିତ୍ତଚାଞ୍ଚଲ୍ୟ ନିବାରଣ, ଅପୈଶୁନଂ—ପଛରେ ପରନିନ୍ଦା ନ କରିବା, ଦୟା ଭୂତେଷୁ—ପ୍ରାଣିମାନଙ୍କଠାରେ ଦୟା, ଅଲୋଲୁପ୍ତ୍ୱଂ—ନିର୍ଲ୍ଲୋଭତା, ମାର୍ଦ୍ଦବ—ମୃଦୁତା—କୋମଳତା, ହ୍ରୀଃ—ଅକର୍ତ୍ତବ୍ୟ କର୍ମ କରିବା ବିଷୟରେ ଲୋକଲଜ୍ଜା, ଅଚାପଲଂ—ବୃଥା କାର୍ଯ୍ୟ କରିବାକୁ ଚଞ୍ଚଳ ନ ହେବା । ୨ ।

### ଅନୁବାଦ ।

ଅହିଂସା, ସତ୍ୟ, ଅକ୍ରୋଧ, ଉଦାସୀନତା, ଶାନ୍ତି, ପରନିନ୍ଦା ନ କରିବା, ପ୍ରାଣିମାନଙ୍କଠାରେ ଦୟା, ନିର୍ଲ୍ଲୋଭତା, କୋମଳତା, ଲୋକଲଜ୍ଜା ଓ ଅଚଞ୍ଚଳତା ( ଏମାନେ ଦୈବୀସମ୍ପଦପ୍ରାପ୍ତ ବ୍ୟକ୍ତିର ଗୁଣ ଅଟନ୍ତି ) । ୨ ।

### ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ସାତ୍ତ୍ୱିକୀ ବାସନା ଅର୍ଥାତ୍ ଦୈବୀସମ୍ପଦପ୍ରାପ୍ତ ବ୍ୟକ୍ତିଙ୍କର କେତେକ ଚିହ୍ନ ଲେଖା ଯାଇଅଛି, ଏ ଶ୍ଳୋକରେ ଅଧିକ କେତୋଟି ଚିହ୍ନର ଉଲ୍ଲେଖ କରି ଯାଉଅଛି ।

କାୟ, ବଚନ ଓ ମନଦ୍ୱାରା ପରକୁ ପୀଡ଼ା ନ ଦେବାକୁ 'ଅହିଂସା' ବୋଲାଯାଏ । ପ୍ରକୃତ ଘଟନା ଯଥାର୍ଥରୂପେ କହିବାକୁ 'ସତ୍ୟ' ବୋଲାଯାଏ । କାହାରଦ୍ୱାରା ତିରସ୍କୃତ ବା ପୀଡ଼ା ପ୍ରାପ୍ତ ହେଲେ ସୁଦ୍ଧା, କ୍ରୁଦ୍ଧ ନ ହେବାର ନାମ 'ଅକ୍ରୋଧ' । ସର୍ବପ୍ରକାର ଆସକ୍ତିଶୂନ୍ୟ ହେବା ଅର୍ଥାତ୍ ସର୍ବବିଷୟରେ ଉଦାସୀନ ହେବାକୁ 'ତ୍ୟାଗ' ବୋଲି ଜାଣିବ । ମନରେ ନୂତନ ନୂତନ କାମନା ଉପସ୍ଥିତ ହେଲେ, ମନ ଚଞ୍ଚଳ ଓ ଆନ୍ଦୋଳିତ ହୋଇ, ଅଶାନ୍ତି ଭୋଗ କରେ; ସୁତରାଂ ମନକୁ ସର୍ବପ୍ରକାର କାମନାଶୂନ୍ୟ କରିବା 'ଶାନ୍ତି' ଅଟେ । କୌଣସି ବ୍ୟକ୍ତି ଉପସ୍ଥିତ ନ ଥିବା ସମୟରେ ତାହାର କୁତ୍ସା ବା ନିନ୍ଦା କରିବାକୁ ପୈଶୁନ ବୋଲି । ସେହି ପୈଶୁନ ତ୍ୟାଗ କରିବା ଅର୍ଥାତ୍ ପଛରେ କାହାର ନିନ୍ଦା ନ କରିବାକୁ 'ଅପୈଶୁନ' ବୋଲାଯାଏ । ଜଗତସ୍ଥ ସକଳ ପ୍ରାଣୀଙ୍କଠାରେ ଦୟା କରିବା ଅର୍ଥାତ୍ କାହାର କୌଣସି ଦୁଃଖ ଦେଖିଲେ, ତାହା ନିବାରଣରେ ଚେଷ୍ଟା କରିବା, କୌଣସି ଦ୍ରବ୍ୟରେ ଲୋଭ ନ କରିବା, କଠିନ ଭାବ ଛାଡ଼ି ମୃଦୁ ବା କୋମଳସ୍ୱଭାବ ହେବା, ଅବିହିତ କାର୍ଯ୍ୟ

Digitized by PPRACHIN, SOA

କରିବାକୁ ଲଜ୍ଜା ବୋଧ କରିବା ଏବଂ ବୃଥା କାର୍ଯ୍ୟ କରିବା ବିଷୟରେ ଚଞ୍ଚଳ—ବ୍ୟଗ୍ର ନ ହେବା ପ୍ରଭୃତି ଗୁଣମାନ ଦୈବୀସମ୍ପଦପ୍ରାପ୍ତ ବ୍ୟକ୍ତିଙ୍କର ଗୁଣ ଅଟେ । ୨ ।

ଶ୍ଲୋକଃ ।

ତେଜଃ କ୍ଷମା ଧୃତିଃ ଶୌଚମଦ୍ରୋହୋ ନାତିମାନିତା ।
ଭବନ୍ତି ସମ୍ପଦଂ ଦୈବୀମଭିଜାତସ୍ୟ ଭାରତ । ୩ ।

ଅନ୍ୱୟଃ ।

ହେ ଭାରତ ! ତେଜଃ, କ୍ଷମା, ଧୃତିଃ, ଶୌଚଂ, ଅଦ୍ରୋହଃ, ନାତିମାନିତା, ( ଏତେ ଗୁଣାଃ ) ଦୈବୀଂ ସମ୍ପଦଂ ଅଭିଜାତସ୍ୟ ଭବନ୍ତି । ୩ ।

ଟୀକା ।

କିଞ୍ଚ ତେଜ ଇତି ! ତେଜଃ ପ୍ରାଗଲ୍‌ଭ୍ୟଂ, କ୍ଷମା ପରିଭବାଦିଷୂତ୍ପଦ୍ୟମାନେଷୁ କ୍ରୋଧପ୍ରତିବନ୍ଧଃ, ଧୃତିର୍ଦୁଃଖାଦିଭିରବସାଦେ ଚିତ୍ତସ୍ୟ ସ୍ଥିରୀକରଣଂ, ଶୌଚଂ ବାହ୍ୟାଭ୍ୟନ୍ତରଶୁଦ୍ଧିଃ, ଅଦ୍ରୋହୋ ଜିଘାଂସାରାହିତ୍ୟଂ, ଅତିମାନିତା ଆତ୍ମନ୍ୟତିପୂଜ୍ୟତ୍ୱାଭିମାନଃ ତଦଭାବୋ ନାତିମାନିତା, ଏତାନ୍ୟଭୟାଦୀନି ଷଡ୍‌ବିଂଶତିପ୍ରକାରାଣି ଦୈବୀଂ ସମ୍ପଦମଭିଜାତସ୍ୟ ଭବନ୍ତି ଦେବଯୋଗ୍ୟାଂ ସାତ୍ତ୍ୱିକୀଂ ସମ୍ପଦମଭିଲକ୍ଷ୍ୟ ତଦାଭିମୁଖ୍ୟେନ ଜାତସ୍ୟ ଭାବିକଲ୍ୟାଣସ୍ୟ ପୁଂସୋଭବନ୍ତୀତ୍ୟର୍ଥଃ । ୩ ।

ପଦବ୍ୟାଖ୍ୟା ।

ତେଜଃ—ପ୍ରଗଲ୍‌ଭତା, କ୍ଷମା—ସହିଷ୍ଣୁତା, ଧୃତିଃ—ଧୈର୍ଯ୍ୟ, ଶୌଚଂ—ବାହ୍ୟ ଓ ଅନ୍ତରଶୁଦ୍ଧି, ଅଦ୍ରୋହଃ—ପରର ଅନିଷ୍ଟ କରିବା ଇଚ୍ଛା ବର୍ଜନ, ନାତିମାନିତା—ଆପଣାକୁ ଅତିମାନୀ ବୋଲି ନ ମଣିବା ଅର୍ଥାତ୍ ବିନୀତ ହେବା, ଭବନ୍ତି—(ଏହି ସବୁ ଗୁଣମାନେ) ହୁଅନ୍ତି, ସମ୍ପଦଂ ଦୈବୀଂ—ଦୈବୀସମ୍ପଦକୁ, ଅଭିଜାତସ୍ୟ—(ପ୍ରାପ୍ତ ହୋଇ) ଜାତ ହୋଇଥିବା ବ୍ୟକ୍ତିଙ୍କର, ଭାରତ—ହେ ଭରତବଂଶଜ । । ୩ ।

ଅନୁବାଦ ।

ହେ ଭାରତ ! ଦୈବୀସମ୍ପଦ ପ୍ରାପ୍ତ ହୋଇ ଜାତ ହୋଇଥିବା ବ୍ୟକ୍ତିଙ୍କର ତେଜଃ, କ୍ଷମା, ଧୈର୍ଯ୍ୟ, ଶୌଚ, ଦ୍ରୋହଶୂନ୍ୟତା ଓ ନିରଭିମାନିତା ( ଇତ୍ୟାଦି ) ଗୁଣମାନେ ହୁଅନ୍ତି । ୩ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ଦୈବୀସମ୍ପଦ ପ୍ରାପ୍ତ ହୋଇଥିବା ବ୍ୟକ୍ତିଙ୍କର କେତେକ ଲକ୍ଷଣ ଲେଖି, ଅବଶିଷ୍ଟ ଲକ୍ଷଣଗୁଡ଼ିକ ଏହି ଶ୍ଳୋକରେ ଲେଖା ଯାଉଅଛି ।

ଯେଉଁ ଗୁଣ ଥିବାରୁ ଲୋକେ ଅନ୍ୟ ନିକଟରେ ପରାସ୍ତ ନ ହୁଅନ୍ତି, ସେହି ଗୁଣକୁ ତେଜଃ ବୋଲାଯାଏ ।

କେହି ତିରସ୍କାର କଲେ ବା ପୀଡ଼ା ଦେଲେ, ତାହାକୁ ଦଣ୍ଡ ଦେବାର କ୍ଷମତା ଥିଲେ ସୁଦ୍ଧା, ଯେଉଁ ଗୁଣ ବଳରେ ଦଣ୍ଡଦାନରୁ ନିବୃତ୍ତି ଜନ୍ମେ, ତାହାକୁ କ୍ଷମା ବୋଲି ।

ଦୁଃଖାଦିଦ୍ୱାରା ଚିତ୍ତ ଅବସନ୍ନ ଅର୍ଥାତ୍ ଗ୍ଳାନିଯୁକ୍ତ ହେଲେ, ଯେଉଁ ବୃତ୍ତିଦ୍ୱାରା ତାକୁ ସ୍ଥିର ରଖାଯାଏ, ସେହି ବୃତ୍ତିର ନାମ 'ଧୃତି' ।

ସ୍ନାନାଦିଦ୍ୱାରା ବାହ୍ୟର ଓ ସତ୍କର୍ମାଦି ଅନୁଷ୍ଠାନଦ୍ୱାରା ଅନ୍ତଃକରଣର ଯେଉଁ ପବିତ୍ରତା ସମ୍ପାଦିତ ହୁଏ, ତାହା ଶୌଚ ନାମରେ ପରିଚିତ ।

'କୌଣସି ପ୍ରାଣିସହିତ 'ବିରୋଧ' ନ କରିବା ଅର୍ଥାତ୍ କାହାର ଅନିଷ୍ଟ ବାଞ୍ଛା ନ କରିବାକୁ 'ଅଦ୍ରୋହ' ବୋଲାଯାଏ ।

'ଜଗତରେ ମୁଁ ଜଣେ ପୂଜ୍ୟବ୍ୟକ୍ତି' ଇତ୍ୟାଦି ପ୍ରକାରର ଅଭିମାନ ତ୍ୟାଗ କରିବାକୁ ନାତିମାନିତା – ନିରଭିମାନତା ବୋଲି ।

ଯେଉଁମାନେ ଦୈବୀସମ୍ପଦ ପ୍ରାପ୍ତ ହୋଇ ଜାତ ହୋଇଥାନ୍ତି ଅର୍ଥାତ୍ ସାତ୍ତ୍ୱିକୀ ବାସନାନୁସାରେ ଦେହ ପ୍ରାପ୍ତ ହୋଇଥାନ୍ତି, ସେମାନଙ୍କର 'ଅଭୟ'ଠାରୁ 'ନାତିମାନିତା' ପର୍ଯ୍ୟନ୍ତ ଏହି ୨୬ ପ୍ରକାର ଗୁଣ ହୁଏ ।

ଶ୍ରୁତିରେ ମଧ୍ୟ ପ୍ରମାଣ ଅଛି, ଯେ—ପୁଣ୍ୟଃ ପୁଣ୍ୟେନ କର୍ମଣା ଭବତି ପାପଃ ପାପେନ, ଅର୍ଥାତ୍ ପୂର୍ବଜନ୍ମର ପୁଣ୍ୟ-ବାସନା ହେତୁରୁ ଲୋକେ ପରଜନ୍ମରେ ପୁଣ୍ୟକର୍ମ କରି ପବିତ୍ର ହୁଅନ୍ତି ଓ ପୂର୍ବଜନ୍ମର ପାପ-ବାସନା ହେତୁରୁ ପାପକର୍ମ କରି ପାପୀ ହୁଅନ୍ତି ଇତ୍ୟାଦି ।

ଫଳକଥା ଏହି କି ପୂର୍ବଜନ୍ମର ପୁଣ୍ୟ ବା ପାପବାସନା ଅନୁସାରେ ପରଜନ୍ମରେ ପୁଣ୍ୟ ଅବା ପାପରେ ପ୍ରବୃତ୍ତି ହୁଏ । ୩ ।

ଶ୍ଳୋକଃ ।

* ଦମ୍ଭୋଦର୍ପୋଽଭିମାନଶ୍ଚ, କ୍ରୋଧଃ ପାରୁଷ୍ୟମେବ ଚ ।
ଅଜ୍ଞାନଂ ଚାଭିଜାତସ୍ୟ, ପାର୍ଥ ସମ୍ପଦମାସୁରୀଂ । ୪ ।

ଅନ୍ୱୟଃ ।

ହେ ପାର୍ଥ ! ଆସୁରୀଂ ସମ୍ପଦଂ ଅଭିଜାତସ୍ୟ ଦମ୍ଭଃ, ଦର୍ପଃ, ଅଭିମାନଃ, ଚ କ୍ରୋଧଃ, ଚ ପାରୁଷ୍ୟଂ ଏବ (ଭବତି) । ୪ ।

ଟୀକା ।

ଆସୁରୀଂ ସମ୍ପଦମାହ । ଦମ୍ଭଇତି । ଦମ୍ଭୋଧର୍ମଧ୍ୱଜିତ୍ୱଂ, ଦର୍ପୋଧନବିଦ୍ୟାଦିନିମିତ୍ତଂ ଚିତ୍ତସ୍ୟୋତ୍ସେକଃ, ଅଭିମାନୋବ୍ୟାଖ୍ୟାତ ଏବ, କ୍ରୋଧଃ ପ୍ରସିଦ୍ଧଃ, ପାରୁଷ୍ୟଂ ନିଷ୍ଠୁରତ୍ୱଂ, ଅଜ୍ଞାନମବିବେକଃ, ଆସୁରୀମିତ୍ୟୁପଲକ୍ଷଣଂ ଆସୁରୀଣାଂ ରାକ୍ଷସାନାଞ୍ଚ ଯା ସମ୍ପତ୍ତିସ୍ତାମଭିଲକ୍ଷ୍ୟ ଜାତସ୍ୟୈତାନି ଦମ୍ଭାଦୀନି ଭବନ୍ତି । ୪ ।

ପଦବ୍ୟାଖ୍ୟା ।

ଦମ୍ଭଃ—ଅପଣାର ଧର୍ମ, ବିଦ୍ୟା, ଧନ ପ୍ରଭୃତିର ନ୍ୟୂନତାର ପରିଚୟ ପାଇଲେ ମଧ୍ୟ, ଅପଣାର ଶ୍ରେଷ୍ଠତ୍ୱ ପ୍ରକାଶ କରିବା, ଦର୍ପଃ—ଅପଣାର ଧନ ଓ ବିଦ୍ୟାଦି ବିଷୟରେ ଗର୍ବ କରିବା, ଅଭିମାନଃ ଚ—ପରଠାରୁ ସମ୍ମାନ ପାଇବାର ଇଚ୍ଛା, କ୍ରୋଧଃ—ଅପଣାର ଅଭିଳଷିତ ବିଷୟପ୍ରାପ୍ତିରେ ବାଧା ହେଲେ, ମନର ଉତ୍ତେଜନାବିଶେଷ, ପାରୁଷ୍ୟଂ—ନିଷ୍ଠୁରତା—କଟୁବଚନ, ଅଜ୍ଞାନଂ—ଅବିବେକତା, ଅଭିଜାତସ୍ୟ—ପ୍ରାପ୍ତ ହୋଇ ଜାତ ହୋଇଥିବା ବ୍ୟକ୍ତିର, ପାର୍ଥ—ହେ ପୃଥାପୁତ୍ର ଅର୍ଜୁନ !, ସମ୍ପଦମାସୁରୀଂ—ଆସୁରୀସମ୍ପଦକୁ । ୪ ।

ଅନୁବାଦ ।

ହେ ପାର୍ଥ! ଆସୁରୀସମ୍ପଦ ପ୍ରାପ୍ତ ହୋଇ ଜାତ ହୋଇଥିବା ବ୍ୟକ୍ତିର ଦମ୍ଭ, ଦର୍ପ, ଅଭିମାନ, କ୍ରୋଧ, ନିଷ୍ଠୁରତା ଓ ଅବିବେକତା ଇତ୍ୟାଦି ଗୁଣମାନେ ହୁଅନ୍ତି । ୪ ।

ବିଶଦବ୍ୟାଖ୍ୟା ।

ସଂସାରବନ୍ଧନର ହେତୁ, ଯେ ରାଜସୀ ଏବଂ ତାମସୀ ବାସନା ତାହାକୁ, ଆସୁରୀସମ୍ପଦ କୁହାଯାଏ । ଯେଉଁ ବ୍ୟକ୍ତି, ସେହି ଆସୁରୀସମ୍ପଦ ନେଇ ଜାତ ହୁଏ ଅର୍ଥାତ୍ ରାଜସୀ ବା ତାମସୀ ବାସନା ଅନୁରୂପ ଦେହ ପ୍ରାପ୍ତ ହୋଇଥାଏ, ତାହାର ଦମ୍ଭ ଦର୍ପାଦି ଗୁଣମାନ ହୁଅନ୍ତି । (ଦମ୍ଭ ଦର୍ପାଦିର ବିଶେଷ ବିବରଣ ପଦବ୍ୟାଖ୍ୟାରେ ଦେଖ) । ୪ ।

ଶ୍ଲୋକଃ ।

ଦୈବୀ ସମ୍ପଦ୍ବିମୋକ୍ଷାୟ, ନିବନ୍ଧାୟାସୁରୀ ମତା ।
ମା ଶୁଚଃ ସମ୍ପଦଂ ଦୈବୀମ୍, ଅଭିଜାତୋଽସି ପାଣ୍ଡବ । ୫ ।

ଅନ୍ୱୟଃ ।

ହେ ପାଣ୍ଡବ ! ଦୈବୀ ସମ୍ପଦ୍ ବିମୋକ୍ଷାୟ, ଆସୁରୀ ନିବନ୍ଧାୟ ମତା । (ତ୍ୱଂ) ଦୈବୀଂ ସମ୍ପଦଂ ଅଭିଜାତଃ ଅସି (ଅତଃ) ମା ଶୁଚଃ । ୫ ।

ଟୀକା ।

ଏତୟୋଃ ସମ୍ପଦୋଃ କାର୍ଯ୍ୟଂ ଦର୍ଶୟନ୍ନାହ ଦୈବୀତି । ଦୈବୀ ଯା ସମ୍ପତ୍ସା ମୁକ୍ତିମୋକ୍ଷୋପଯୋଗେ ତତ୍ତ୍ୱଜ୍ଞାନେଽଧି-କାରେ, ଆସୁରୀ ସମ୍ପଦା ଯୁକ୍ତସ୍ତୁ ନିତ୍ୟଂ ସଂସାରବନ୍ଧାୟ । ଏତତ୍ତ୍ୱ ଜନ୍ମମାତ୍ରାଧିକାରେ ନ ଭେଦ ସନ୍ଦେହାତ୍ତ୍ୱାକୁଳମର୍ଜୁନ-ମାଶ୍ୱାସୟତି । ହେ ଭରତ ! ମା ଶୁଚଃ ଶୋକଂ ମାକାର୍ଷୀଃ ଯତସ୍ତ୍ୱଂ ଦୈବୀସମ୍ପଦମଭିଜାତୋଽସି ।

ପଦବ୍ୟାଖ୍ୟା ।

ଦୈବୀ ସମ୍ପତ୍—ସାତ୍ତ୍ୱିକୀ ବାସନା, ବିମୋକ୍ଷାୟ—ସଂସାରମୁକ୍ତି ନିମିତ୍ତ, ନିବନ୍ଧାୟ—ବନ୍ଧନ ନିମିତ୍ତ, ଆସୁରୀ—ରାଜସୀ ଓ ତାମସୀ ବାସନା, ମତା—ପ୍ରସିଦ୍ଧ, ମା ଶୁଚଃ—ତୁମ୍ଭେ ଶୋକ କର ନା, ସମ୍ପଦଂ ଦୈବୀଂ—ଦୈବୀ ସମ୍ପଦ୍ ଅର୍ଥାତ୍ ସାତ୍ତ୍ୱିକୀ ବାସନାକୁ, ଅଭିଜାତଃ ଅସି—ତୁମ୍ଭେ ଅବଲମ୍ବନ କରି ଜାତ ହୋଇଅଛ, ପାଣ୍ଡବ—ହେ ପାଣ୍ଡୁପୁତ୍ର ଅର୍ଜୁନ । । ୫ ।

ଅନୁବାଦ ।

ହେ ପାଣ୍ଡବ ! ଦୈବୀ ସମ୍ପଦ ମୋକ୍ଷନିମିତ୍ତ ଓ ଆସୁରୀ ସମ୍ପଦ ବନ୍ଧନ ନିମିତ୍ତ ପ୍ରସିଦ୍ଧ ଅଟେ । (ତୁମ୍ଭେ) ଦୈବୀ ସମ୍ପଦ ଅବଲମ୍ବନ କରି ଜାତ ହୋଇଅଛ (ଅତଏବ) ଶୋକ କର ନା । ୫ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ କହିଲେ, ହେ ପାଣ୍ଡୁପୁତ୍ର ଅର୍ଜୁନ ! ସାତ୍ତ୍ୱିକୀ ବାସନା ବା ଦୈବୀସମ୍ପଦ, ମୋକ୍ଷନିମିତ୍ତ ପ୍ରସିଦ୍ଧ ଅଟେ । ଅର୍ଥାତ୍ ଯେଉଁମାନେ ଦୈବୀ ସମ୍ପଦ ଅବଲମ୍ବନପୂର୍ବକ ଜନ୍ମଗ୍ରହଣ କରନ୍ତି, ସେମାନେ ଅଭୟ, ସତ୍ତ୍ୱସଂଶୁଦ୍ଧି ପ୍ରଭୃତି (ପ୍ରଥମ ତିନି ଶ୍ଲୋକୋକ୍ତ) ୨୬ ପ୍ରକାର ଗୁଣ-ଯୁକ୍ତ ହୋଇ ତତ୍ତ୍ୱଜ୍ଞାନରେ ଅଧିକାରୀ ହୁଅନ୍ତି ।

Digitized by PPRACHIN, SOA

ଅସୁରସମ୍ପଦ୍ ବା ରାଜସୀ ଓ ତାମସୀ ବାସନା, ବନ୍ଧନନିମିତ୍ତ କଥିତ ଅଛି । ଅର୍ଥାତ୍ ଯେଉଁମାନେ ରାକ୍ଷସୀ ବା ଆସୁରୀ ବାସନା ଅବଲମ୍ବନ କରି ଜନ୍ମଗ୍ରହଣ କରିଥାନ୍ତି, ସେମାନେ କ୍ରମାଗତ କର୍ମବନ୍ଧନରେ ପଡ଼ି ଏପରି ଆବଦ୍ଧ ହୋଇଯାନ୍ତି, ଯେ ମୋକ୍ଷପ୍ରାପ୍ତି ସେମାନଙ୍କ ପକ୍ଷରେ କଷ୍ଟସାଧ୍ୟ ହୋଇ ଉଠେ ।

ଏଥିରେ କାଳେ ଅର୍ଜୁନଙ୍କର ଏପରି ସନ୍ଦେହ ହେବ, 'ଯେ ମୁଁ ସାତ୍ତ୍ୱିକୀ ବାସନା ଅବଲମ୍ବନ କରି ଜନ୍ମଗ୍ରହଣ କରିଅଛି କି ରାକ୍ଷସୀ ବା ଆସୁରୀ ବାସନା ଅବଲମ୍ବନ କରି ଜନ୍ମିଅଛି?' ଅର୍ଥାତ୍ 'ମୁଁ ମୋକ୍ଷାଧିକାରୀ କି ନା' ? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ହେ ପାଣ୍ଡବ ! ତୁମ୍ଭେ ଶୋକ କର ନା, ଯେହେତୁ ତୁମ୍ଭେ ଦୈବୀ ସମ୍ପଦ ଅର୍ଥାତ୍ ସାତ୍ତ୍ୱିକୀ ବାସନା ଅବଲମ୍ବନ କରି ଜନ୍ମିଅଛ ।

ପାଣ୍ଡୁଙ୍କର ସମସ୍ତ ସନ୍ତାନ ଦେବାଂଶରେ ଜାତ ବୋଲି ଦୈବୀସମ୍ପଦବର୍ଣ୍ଣିଷ୍ଟ, ଅତଏବ ତୁମ୍ଭେ ମଧ୍ୟ, ଦୈବୀସମ୍ପଦଯୁକ୍ତ ଅଛ, ତୁମ୍ଭର ଚିନ୍ତା କରିବା ନିଷ୍ପ୍ରୟୋଜନ । ୫ ।

ଶ୍ଳୋକଃ ।

ଦ୍ୱୌ ଭୂତସର୍ଗୌ ଲୋକେଽସ୍ମିନ୍, ଦୈବ ଆସୁର ଏବ ଚ ।
ଦୈବୋ ବିସ୍ତରଶଃ ପ୍ରୋକ୍ତଃ, ଆସୁରଂ ପାର୍ଥ ମେ ଶୃଣୁ । ୬ ।

ଅନ୍ୱୟଃ ।

ହେ ପାର୍ଥ! ଅସ୍ମିନ୍ ଲୋକେ ଦୈବଃ ଚ ଆସୁରଃ ଏବ ଭୂତସର୍ଗୌ ଦ୍ୱୌ (ପ୍ରସିଦ୍ଧୌ) । ଦୈବଃ ବିସ୍ତରଶଃ ପ୍ରୋକ୍ତଃ, ମେ ଆସୁରଂ ଶୃଣୁ । ୬ ।

ଟୀକା ।

ଅସୁର ସମ୍ପଦ୍ ସବାସନା ବର୍ଜୟିତବ୍ୟେତ୍ୟେତଦର୍ଥମାସୁରୀଂ ସମ୍ପଦଂ ପ୍ରପଞ୍ଚୟିତୁମାହ । ଦ୍ୱାବିତି । ଦ୍ୱୌ ଦ୍ୱିପ୍ରକାରୌ ଭୂତାନାଂ ସର୍ଗୌ ମେ ବଚନାତ୍ ଶୃଣୁ । ଆସୁରରାକ୍ଷସପ୍ରକୃତ୍ୟୋରେକୀକରଣେନ ଦ୍ୱୈବିଧ୍ୟଂ ଅତୋରାକ୍ଷସୀମାସୁରୀଂ ଚୈବ ପ୍ରକୃତିଂ ମୋହିନୀଂ ଶ୍ରିତାଃ ଇତ୍ୟାର୍ଦ୍ଧ ନବମାଧ୍ୟାୟୋକ୍ତପ୍ରକୃତିତ୍ରୈବିଧ୍ୟେନାବିରୋଧଃ, ସ୍ପଷ୍ଟମନ୍ୟତ୍ । ୬ ।

ପଦବ୍ୟାଖ୍ୟା ।

ଦ୍ୱୌ-ଭୂତସର୍ଗୌ—ଭୂତ ସୃଷ୍ଟି ଦୁଇ ପ୍ରକାର, ଲୋକେଽସ୍ମିନ୍—ଏହି ଲୋକରେ, ଦୈବଃ ଆସୁରଃ ଏବ ଚ—ଦୈବ ଓ ଅସୁର ନାମରେ, ଦୈବଃ—(ତାହା ମଧ୍ୟରୁ) ଦୈବୀ ସୃଷ୍ଟି, ବିସ୍ତରଶଃ ପ୍ରୋକ୍ତଃ—ବିସ୍ତୃତରୂପେ କହିଅଛୁଁ, ଆସୁରଂ—ଅସୁର ସ୍ୱଭାବକୁ, ପାର୍ଥ—ହେ ପୃଥାପୁତ୍ର ଅର୍ଜୁନ !, ମେ—ଆମ୍ଭଠାରୁ, ଶୃଣୁ—ଶୁଣ । ୬ ।

ଅନୁବାଦ ।

ହେ ପାର୍ଥ! ଏହି ଲୋକରେ ଦୈବ ଓ ଆସୁର ନାମରେ ଦୁଇ ପ୍ରକାର ଭୂତ ସୃଷ୍ଟି ପ୍ରସିଦ୍ଧ ଅଛି । ତନ୍ମଧ୍ୟରୁ ଦୈବ ସୃଷ୍ଟି (ଆମ୍ଭେ) ବିସ୍ତୃତରୂପେ କହିଅଛୁଁ, (ଏବେ) ଆସୁର ସୃଷ୍ଟି ଆମ୍ଭଠାରୁ ଶୁଣ । ୬ ।

ବିଶଦବ୍ୟାଖ୍ୟା ।

୧) ଇହ ଜଗତରେ ପ୍ରାଣିବର୍ଗ ଦୁଇ ଶ୍ରେଣୀରେ ବିଭକ୍ତ । ଏକ ଦୈବ ଓ ଅପର ଆସୁର ।

Digitized by PPRACHIN, SOA

ଯେଉଁମାନେ ସ୍ୱାଭାବିକ ରାଗଦ୍ୱେଷାଦିକୁ ଜୟ କରି ଶାସ୍ତ୍ରବିହିତ ସତ୍କର୍ମ ଅନୁଷ୍ଠାନଦ୍ୱାରା ଧର୍ମ-ପରାୟଣ ହୁଅନ୍ତି, ସେମାନେ ଦୈବସ୍ୱଭାବବିଶିଷ୍ଟ, ଆଉ ଯେଉଁମାନେ ସ୍ୱାଭାବିକ ରାଗଦ୍ୱେଷାଦିର ଅଧୀନ ହୋଇ ଶାସ୍ତ୍ରନିଷିଦ୍ଧ ଗର୍ହିତ କାର୍ଯ୍ୟର ଅନୁଷ୍ଠାନ କରନ୍ତି, ସେମାନେ ଅସୁର ସ୍ୱଭାବର ଅଟନ୍ତି ।

ଏଥି ପୂର୍ବ ୨ୟ ଅଧ୍ୟାୟରେ 'ସ୍ଥିତପ୍ରଜ୍ଞ' ବ୍ୟକ୍ତିଙ୍କର ଲକ୍ଷଣ ବର୍ଣ୍ଣନ କଲାବେଳେ, ଦ୍ୱାଦଶ ଅଧ୍ୟାୟରେ ଭଗବଦ୍ଭକ୍ତଙ୍କର ବିଷୟ ବ୍ୟାଖ୍ୟା କଲା ସମୟରେ, ତ୍ରୟୋଦଶ ଅଧ୍ୟାୟରେ ଜ୍ଞାନମାହାତ୍ମ୍ୟ କୀର୍ତ୍ତନ କରିବା ସ୍ଥଳରେ, ଚତୁର୍ଦ୍ଦଶ ଅଧ୍ୟାୟରେ ଗୁଣାତୀତ ପୁରୁଷଙ୍କ ଲକ୍ଷଣ ବର୍ଣ୍ଣନରେ ଏବଂ ଏହି ଅଧ୍ୟାୟରେ ଅଭୟ ସତ୍ତ୍ୱସଂଶୁଦ୍ଧି ଇତ୍ୟାଦି ୨୬ ପ୍ରକାର ଗୁଣ ନିର୍ଣ୍ଣୟଦ୍ୱାରା, ଦୈବସ୍ୱଭାବର ବିସ୍ତୃତ ବିବରଣ ଆମ୍ଭେ ଦେଇଅଛୁଁ; ଏବେ ଆମ୍ଭଠାରୁ ଅସୁର ସ୍ୱଭାବର ବିବରଣ ଶ୍ରବଣ କର । କାହିଁକି ନା ଅସୁର ସ୍ୱଭାବର କୁତ୍ସିତ କାର୍ଯ୍ୟ ନ ଜାଣିଲେ, ତାହା ତ୍ୟାଗ କରିବାକୁ ତୁମ୍ଭର ପ୍ରବୃତ୍ତି ହେବ କିପରି ?

ଏ ସ୍ଥଳରେ ଏପରି ଆପତ୍ତି ହୋଇ ପାରେ, ଯେ ନବମ ଅଧ୍ୟାୟରେ ଦୈବୀ, ଆସୁରୀ ଓ ରାକ୍ଷସୀ ଏପରି ତିନି ପ୍ରକୃତିର ବର୍ଣ୍ଣନ ଥିବା ସ୍ଥଳେ, ଏ ଶ୍ଳୋକରେ କେବଳ ଦୈବ ଓ ଆସୁର ଦୁଇ ପ୍ରକାର ସ୍ୱଭାବର ବର୍ଣ୍ଣନ ହେଲା କାହିଁକି ? ତାହାର ଉତ୍ତରରେ ଏହି କଥା କୁହା ଯାଇ ପାରେ, ଯେ ଆସୁରୀ ଓ ରାକ୍ଷସୀ ଏ ଦୁଇ ପ୍ରକୃତି ଯାକ ମୋକ୍ଷବିରୋଧୀ ବୋଲି ଏ ସ୍ଥଳରେ ସେ ଦୁଇ ପ୍ରକୃତିକୁ ଏକ 'ଆସୁରଭାବ' ନାମରେ ବ୍ୟାଖ୍ୟା କରି ଯାଉଅଛି । ୭ ।

ଶ୍ଳୋକଃ ।

* ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ, ଜନା ନ ବିଦୁରାସୁରାଃ ।
ନ ଶୌଚଂ ନାପି ଚାଚାରୋ, ନ ସତ୍ୟଂ ତେଷୁ ବିଦ୍ୟତେ । ୭ ।

ଅନ୍ୱୟଃ ।

ଆସୁରାଃ ଜନାଃ ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ ନ ବିଦୁଃ । ତେଷୁ ଶୌଚଂ ନ, ଆଚାରଃ ଅପି ନ, ଚ ସତ୍ୟଂ ନ ବିଦ୍ୟତେ । ୭ ।

ଟୀକା ।

ଆସୁରଂ ବିସ୍ତରଶୋ ନିରୂପୟତି । ପ୍ରବୃତ୍ତିଂ ଚେତ୍ୟାଦି ଦ୍ୱାଦଶଭିଃ । ପ୍ରବୃତ୍ତିମ୍ ଧର୍ମେ ନିବୃତ୍ତିମ୍ ଅଧର୍ମାତ୍ ଆସୁରସ୍ୱଭାବା ଜନା ନ ଜାନନ୍ତି ଅତଃ ଶୌଚମାଚାରଃ ସତ୍ୟଂ ଚ ତେଷୁ ନାସ୍ତ୍ୟେବ । ୭ ।

ପଦବ୍ୟାଖ୍ୟା ।

ପ୍ରବୃତ୍ତିଂ ଚ—ଧର୍ମରେ ଆସକ୍ତି, ନିବୃତ୍ତିଂ ଚ—ଅଧର୍ମରେ ବିରତି, ଜନାଃ—ମନୁଷ୍ୟମାନେ, ନ ବିଦୁଃ—ଜାଣନ୍ତି ନାହିଁ, ଆସୁରାଃ—ଅସୁର ସ୍ୱଭାବବିଶିଷ୍ଟ, ନ ଶୌଚଂ—ଶୌଚ ନାହିଁ, ନ ଅପି ଚ ଆଚାରଃ—ଆଚାର ମଧ୍ୟ ନାହିଁ, ନ ସତ୍ୟଂ—ସତ୍ୟ ନାହିଁ ତେଷୁ—ସେମାନଙ୍କଠାରେ, ବିଦ୍ୟତେ—ବିଦ୍ୟମାନ । ୭ ।

ଅନୁବାଦ ।

ଅସୁର ପ୍ରକୃତିର ମନୁଷ୍ୟମାନେ (ଧର୍ମରେ) ପ୍ରବୃତ୍ତି ଓ (ଅଧର୍ମରୁ) ନିବୃତ୍ତି ଜାଣନ୍ତି ନାହିଁ । ଆଉ ସେମାନଙ୍କଠାରେ ଶୌଚ, ଆଚାର ଓ ସତ୍ୟ ରହେ ନାହିଁ । ୭ ।

Digitized by PPRACHIN, SOA

ଭାଷାପଦବ୍ୟାଖ୍ୟା ।

ଦମ୍ଭ ଦର୍ପାଦି ଆସୁରସ୍ୱଭାବଯୁକ୍ତ ମନୁଷ୍ୟମାନଙ୍କର ବିହିତ କାର୍ଯ୍ୟରେ ପ୍ରବୃତ୍ତି ନ ଥାଏ ନ ନିଷିଦ୍ଧ କର୍ମରୁ ନିବୃତ୍ତି ହୁଏ ନାହିଁ; କାହିଁକି ନା ସେମାନେ, ଧର୍ମ ଜାଣନ୍ତି ନାହିଁ ବା ଧର୍ମ ପ୍ରତିପାଦକ ବେଦାଦି ବାକ୍ୟ ମଧ୍ୟ ଅବଗତ ନୁହନ୍ତି । ସେହିପରି ସେମାନେ ଅଧର୍ମ କାର୍ଯ୍ୟରେ ନିଷିଦ୍ଧ ବଚନ ଅବଗତ ନ ଥିବାରୁ ପାପକାର୍ଯ୍ୟରୁ ସେମାନଙ୍କର ନିବୃତ୍ତି ମଧ୍ୟ ହୁଏ ନାହିଁ । ଧର୍ମଜ୍ଞାନ ନ ଥିବାରୁ ଓ ଧର୍ମପ୍ରତିପାଦକ ବେଦାଦି ବଚନରେ ଅବଗତ ନ ଥିବାରୁ ଧର୍ମ୍ମ କାର୍ଯ୍ୟର ଅଙ୍ଗସ୍ୱରୂପ ବାହ୍ୟ ଓ ଅଭ୍ୟନ୍ତର ଶୌଚ ଓ ସଦାଚାର ଏବଂ ସତ୍ୟ, ସେମାନଙ୍କର ହୋଇ ପାରେ ନାହିଁ । ସେମାନେ ପ୍ରାୟ ଅଶୁଚ, କଦାଚାରରତ ଓ ମିଥ୍ୟାପରାୟଣ ହୁଅନ୍ତି । ୭ ।

ଶ୍ଲୋକଃ ।

ଅସତ୍ୟମପ୍ରତିଷ୍ଠଂ ତେ, ଜଗଦାହୁରନୀଶ୍ୱରଂ ।
ଅପରସ୍ପରସମ୍ଭୂତଂ, କିମନ୍ୟତ୍ କାମହୈତୁକଂ । ୮ ।

ଅନ୍ୱୟଃ ।

ତେ ଜଗତ୍ ଅସତ୍ୟଂ, ଅପ୍ରତିଷ୍ଠଂ, ଅନୀଶ୍ୱରଂ, ଅପରସ୍ପରସମ୍ଭୂତଂ, କାମହୈତୁକଂ ଆହୁଃ, ଅନ୍ୟତ୍ କିଂ । ୮ ।

ଟୀକା ।

ନନୁ ବେଦୋକ୍ତୟୋଃ ଧର୍ମାଧର୍ମୟୋଃ ପ୍ରବୃତ୍ତିଂ ନିବୃତ୍ତିଂ ଚ କଥଂ ନ ବିଦୁଃ, କୁତୋ ବା ଧର୍ମାଧର୍ମୟୋରନଙ୍ଗୀକାରେ ଜଗତଃ ସୁଖଦୁଃଖାଦି ବ୍ୟବସ୍ଥା ସ୍ୟାତ୍ କଥଂ ବା ଶୌଚାଚାରାଦିକଂ ଈଶ୍ୱରାଜ୍ଞାଂ ଅତଦ୍ବର୍ଜୟେନ୍ ଈଶ୍ୱରାନଙ୍ଗୀକାରେ ଚ କୁତୋ ଜଗଦୁତ୍ପତ୍ତିଃ ସ୍ୟାଦିତ ଆହ । ଅସତ୍ୟମିତି । ନାସ୍ତି ସତ୍ୟଂ ବେଦପୁରାଣାଦି ପ୍ରମାଣଂ ଯସ୍ମିଂସ୍ତାଦୃଶଂ ଜଗଦାହୁଃ, ବେଦାଦୀନାଂ ପ୍ରାମାଣ୍ୟଂ ନ ମନ୍ୟନ୍ତ ଇତ୍ୟର୍ଥଃ, ତଦୁକ୍ତଂ ତ୍ରୟୋ ବେଦସ୍ୟ କର୍ତ୍ତାରୋ ଭଣ୍ଡଧୂର୍ତ୍ତନିଶାଚରାଃ ଇତ୍ୟାଦି, ଅତଏବ ନାସ୍ତି ଧର୍ମାଧର୍ମରୂପା ପ୍ରତିଷ୍ଠା ବ୍ୟବସ୍ଥାହେତୁର୍ଯସ୍ୟ ତତ୍ ସ୍ୱାଭାବିକଂ ଜଗଦ୍‌ବୈଚିତ୍ର୍ୟମାହୁରିତ୍ୟର୍ଥଃ, ଅତଏବ ନାସ୍ତୀଶ୍ୱରଃ କର୍ତ୍ତା ବ୍ୟବସ୍ଥାପକଶ୍ଚ ଯସ୍ୟ ତାଦୃଶଂ ଜଗଦାହୁଃ । ତର୍ହି କୁତୋଽସ୍ୟ ଜଗତ ଉତ୍ପତ୍ତିଂ ବଦନ୍ତି ଇତ୍ୟତଃ ଅପରସ୍ପରସମ୍ଭୂତଂ ଇତି । ଅପରଶ୍ଚ ପରଶ୍ଚେତି ଅପରସ୍ପରଂ ଅପରସ୍ପରତୋଽନ୍ୟୋଽନ୍ୟତଃ ସ୍ତ୍ରୀପୁଂସୟୋର୍ମିଥୁନାତ୍ ସମ୍ଭୂତଂ ଜଗତ୍ କିମନ୍ୟତ୍ କାରଣମସ୍ୟ ନାସ୍ତ୍ୟନ୍ୟତ୍ କିଞ୍ଚିତ୍ କିନ୍ତୁ କାମହୈତୁକମେବ, ସ୍ତ୍ରୀପୁଂସୟୋ-ରୁଭୟୋଃ କାମ ଏବ ପ୍ରବାହରୂପେଣ ହେତୁରସ୍ୟେତ୍ୟର୍ଥଃ ।

ପଦବ୍ୟାଖ୍ୟା ।

ଅସତ୍ୟଂ—ପ୍ରମାଣହୀନ, ଅପ୍ରତିଷ୍ଠଂ—ବ୍ୟବସ୍ଥାରହିତ, ତେ—ସେମାନେ ଅର୍ଥାତ୍ ଅସୁରପ୍ରକୃତିକ ଲୋକମାନେ ଜଗତ୍—ସଂସାରକୁ, ଆହୁଃ—କହନ୍ତି, ଅନୀଶ୍ୱରଂ—କର୍ତ୍ତୃଶୂନ୍ୟ, ଅପରସ୍ପରସମ୍ଭୂତଂ—ସ୍ତ୍ରୀ ଓ ପୁରୁଷ ଏ ଦୁହିଁଙ୍କଠାରୁ ଜାତ, କିଂ ଅନ୍ୟତ୍—ଆଉ କି କାରଣ ଅଛି, କାମହୈତୁକଂ—କାମ ଏହାର ହେତୁ ଅଟେ । ୮ ।

ଅନୁବାଦ ।

ଯେଉଁ ଅସୁରପ୍ରକୃତିକ ଲୋକମାନେ ଏ ଜଗତକୁ ପ୍ରମାଣହୀନ, ବ୍ୟବସ୍ଥାରହିତ, କର୍ତ୍ତୃ-ଶୂନ୍ୟ, ସ୍ତ୍ରୀପୁରୁଷ ସଂଯୋଗରୁ ଜାତ ଓ କାମମୂଳକ ବୋଲି କହନ୍ତି, ସେମାନଙ୍କର ମତରେ ଏହାର ଅନ୍ୟ କିଛୁ କାରଣ ନାହିଁ । ୮ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନଙ୍କର ଏପରି ଆଶଙ୍କା ହେବ, ଯେ ଧର୍ମକାର୍ଯ୍ୟରେ ପ୍ରବୃତ୍ତ ହେବା ଓ ଅଧର୍ମକାର୍ଯ୍ୟରୁ ନିବୃତ୍ତ ହେବା ବେଦାଦି ଶାସ୍ତ୍ରରେ ବିଧି ଥିବା ସ୍ଥଳେ, ଆସୁରସ୍ୱଭାବର ଲୋକମାନେ, ପ୍ରବୃତ୍ତି ନିବୃତ୍ତି ନ ଜାଣନ୍ତି କିପରି ? ଯଦି ଧର୍ମ ଓ ଅଧର୍ମ ସେମାନେ ଅସ୍ୱୀକାର କରନ୍ତି, ତେବେ ସଂସାରରେ ପ୍ରତିଦିନ ଘଟୁଥିବା ସୁଖଦୁଃଖର କି ବ୍ୟବସ୍ଥା ସେମାନେ ଦିଅନ୍ତି ? ଅର୍ଥାତ୍ ସୁଖ ଓ ଦୁଃଖ କାହିଁରୁ ଉତ୍ପନ୍ନ ହୁଏ ବୋଲି ସେମାନେ କହନ୍ତି ? ଆଉ ସାକ୍ଷାତ ଈଶ୍ୱରଙ୍କ ଆଜ୍ଞାସ୍ୱରୂପ, ଯେ ଶୌଚାଚାରବିଧି, ତାହା ବା ସେମାନେ କିପରି ଲଙ୍ଘନ କରନ୍ତି ? ଯଦି ଈଶ୍ୱରଙ୍କର ଅସ୍ତିତ୍ୱରେ ସେମାନେ ଅବିଶ୍ୱାସ କରନ୍ତି, ତେବେ ଜଗତର କାହାଠାରୁ କିପରି ଉତ୍ପତ୍ତି ହେଲା ? ଏ ବିଷୟରେ ସେମାନଙ୍କର ମତ କଣ ? ଉପରୋକ୍ତ ଆଶଙ୍କାମାନ ନିବାରଣପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଆସୁରସ୍ୱଭାବର ଲୋକମାନେ ଜଗତକୁ ଅସତ୍ୟ ବୋଲି କହନ୍ତି ଅର୍ଥାତ୍ ଜଗତର ଉତ୍ପତ୍ତି ଓ ଧର୍ମାଧର୍ମ ଏବଂ ସୁଖଦୁଃଖାଦି ବିଷୟରେ ବେଦାଦି ଶାସ୍ତ୍ର ପ୍ରମାଣସ୍ୱରୂପ ହୋଇ ପାରେନା । ସେମାନଙ୍କ ମତରେ "ତ୍ରୟୋବେଦସ୍ୟ କର୍ତ୍ତାରୋ-ମୁନିଭଣ୍ଡନିଶାଚରାଃ", ଅର୍ଥାତ୍ ମୁନି, ଭଣ୍ଡ ଓ ନିଶାଚର ଏହିମାନେ ବେଦର ରଚୟିତା ଅଟନ୍ତି; ସୁତରାଂ ବେଦ ପ୍ରମାଣସ୍ୱରୂପରେ ଗୃହୀତ ହୋଇ ନ ପାରେ । ପୁଣି ସେମାନେ ଜଗତକୁ 'ଅପ୍ରତିଷ୍ଠ' ଅର୍ଥାତ୍ ବ୍ୟବସ୍ଥାବିରହିତ ବୋଲି କହନ୍ତି । ସେମାନଙ୍କ ମତରେ ଅନେକେ ପାପକାର୍ଯ୍ୟ କରି ସୁଖରେ ଜୀବନଯାତ୍ରା ନିର୍ବାହ କରୁଥିବା ଓ ଧର୍ମ କାର୍ଯ୍ୟ କରତ ବ୍ୟକ୍ତିମାନେ ଦାରୁଣ ଦୁଃଖଭୋଗ କରୁଥିବାସ୍ଥଳେ ଧର୍ମରୁ ସୁଖ ଓ ଅଧର୍ମରୁ ଦୁଃଖ ହୁଏ, ଏପରି ବ୍ୟବସ୍ଥା ଅସଙ୍ଗତ ଅଟେ । ଆଉ ଏ ଜଗତର ଯେ ଜଣେ କର୍ତ୍ତା ଅଛନ୍ତି ଅର୍ଥାତ୍ ପାପ ପୁଣ୍ୟ ଓ ସୁଖ ଦୁଃଖର ଅଥବା ଉତ୍ପତ୍ତି ସ୍ଥିତି ଓ ଲୟ ଇତ୍ୟାଦିର ବ୍ୟବସ୍ଥାପକ ବା ନିୟାମକ କେହି ଅଛନ୍ତି ତାହା ସେମାନେ ସ୍ୱୀକାର କରନ୍ତି ନାହିଁ । ସେମାନେ କହନ୍ତି ଏ ଜଗତ୍ କାମାଭିଳାଷୀ ଅପର (ସ୍ତ୍ରୀ) ଓ ପର (ପୁରୁଷଙ୍କ) ସଂଯୋଗରୁ ଉତ୍ପନ୍ନ ହୋଇଅଛି ଅର୍ଥାତ୍ କାମାଭିଳାଷ ଚରିତାର୍ଥ କରିବା ଇଚ୍ଛାରେ ସ୍ତ୍ରୀ ପୁରୁଷ ପରସ୍ପର ମିଳିତ ହୁଅନ୍ତି, ସେଥିରୁ ସନ୍ତାନ ଜାତ ହୁଏ । ଏହିପରି ପରମ୍ପରା ନିୟମରେ ଜଗତ୍ ଉତ୍ପନ୍ନ ହୋଇଅଛି, ଏଥିର ଅନ୍ୟ କୌଣସି ପ୍ରକାର କାରଣ ନାହିଁ ।

ଫଳକଥା ଏହି କି ଆସୁରୀ ବା ରାକ୍ଷସୀ ପ୍ରକୃତିର ବଶୀଭୂତ ହେବାରୁ ସେମାନଙ୍କର ମନ ସର୍ବଦା ପ୍ରମାଦଯୁକ୍ତ ହୁଏ ଓ ସେମାନେ ଆପଣା୨ର ସ୍ୱଭାବ ଅନୁସାରେ ନାନାପ୍ରକାର ବିତଣ୍ଡା ତର୍କ ଉପସ୍ଥିତ କରି ନିଷିଦ୍ଧ କାର୍ଯ୍ୟର ପୋଷକତା କରନ୍ତି । ୮ ।

ଶ୍ଳୋକଃ ।

* ଏତାଂ ଦୃଷ୍ଟିମବଷ୍ଟଭ୍ୟ, ନଷ୍ଟାତ୍ମାନୋଽଳ୍ପ-ବୁଦ୍ଧୟଃ ।
ପ୍ରଭବନ୍ତ୍ୟୁଗ୍ରକର୍ମାଣଃ, କ୍ଷୟାୟ ଜଗତୋଽହିତାଃ । ୯ ।

ଅନ୍ୱୟଃ ।

ନଷ୍ଟାତ୍ମାନଃ ଅଳ୍ପବୁଦ୍ଧୟଃ ଉଗ୍ରକର୍ମାଣଃ ଏତାଂ ଦୃଷ୍ଟିଂ ଅବଷ୍ଟଭ୍ୟ ଜଗତଃ ଅହିତାଃ (ସନ୍ତଃ) କ୍ଷୟାୟ ପ୍ରଭବନ୍ତି । ୯ ।

Digitized by PPRACHIN, SOA

ଟୀକା ।

କଞ୍ଚ ଏତାମିତ । ଏତାଂ ଲୋକାୟତକାନାଂ ଦୃଷ୍ଟିଂ ଦର୍ଶନମାଶ୍ରିତ୍ୟ ନଷ୍ଟାତ୍ମାନୋ ମଳୀମସଚିତ୍ତାଃ ସନ୍ତୋଽଳ୍ପବୁଦ୍ଧୟଃ ଦୃଷ୍ଟାର୍ଥମାତ୍ରମତୟଃ ଅତଏବୋଗ୍ରଂ ହିଂସ୍ରଂ କର୍ମ ଯେଷାଂ ତେ ଅହିତା ବୈରିଣୋଭୂତ୍ୱା ଜଗତଃ କ୍ଷୟାୟ ପ୍ରଭବନ୍ତି ଉଦ୍ଭବନ୍ତୀତ୍ୟର୍ଥଃ । ୯ ।

ପଦବ୍ୟାଖ୍ୟା ।

ଏତାଂ—ଏହି, ଦୃଷ୍ଟିଂ—ଦର୍ଶନ ଅର୍ଥାତ୍ ମତ, ଅବଷ୍ଟଭ୍ୟ—ଅବଲମ୍ବନ କରି, ନଷ୍ଟାତ୍ମାନଃ—ମଳିନଚିତ୍ତ, ଅଳ୍ପବୁଦ୍ଧୟଃ—ମନ୍ଦବୁଦ୍ଧି ଲୋକମାନେ, ପ୍ରଭବନ୍ତି—ଉତ୍ପନ୍ନ ହୁଅନ୍ତି, ଉଗ୍ରକର୍ମାଣଃ—ହିଂସ୍ର କର୍ମରେ ରତ, କ୍ଷୟାୟ—ବିନାଶ ନିମିତ୍ତ, ଜଗତଃ—ସଂସାରର, ଅହିତାଃ—ଶତ୍ରୁ । ୯ ।

ଅନୁବାଦ ।

ଏହି (ପୂର୍ବୋକ୍ତ) ମତ ଅବଲମ୍ବନ କରି ମଳିନଚିତ୍ତ ଅଳ୍ପବୁଦ୍ଧି ଉଗ୍ରକର୍ମୀ ବ୍ୟକ୍ତିମାନେ ଜଗତର ଶତ୍ରୁ ହୋଇ (ପ୍ରାଣିବର୍ଗର) ବିନାଶ ନିମିତ୍ତ ଉତ୍ପନ୍ନ ହୁଅନ୍ତି । ୯ ।

ବିଶଦବ୍ୟାଖ୍ୟା ।

ଯେଉଁମାନେ ରାକ୍ଷସ ବା ଅସୁରସ୍ୱଭାବଯୁକ୍ତ, ସେମାନଙ୍କର ଚିତ୍ତ କାମ, କ୍ରୋଧ, ଦମ୍ଭ ଓ ମୋହ ପ୍ରଭୃତିଦ୍ୱାରା ଆବୃତ ହୋଇ ମଳିନ ହୋଇଯାଏ । ସୁତରାଂ ସେମାନେ 'ଅଳ୍ପବୁଦ୍ଧି' ହୁଅନ୍ତି ଅର୍ଥାତ୍ ମଳ, ମାଂସ, ରୁଧିର, ଚର୍ମ, ଅସ୍ଥି ଓ ମଜ୍ଜା ପ୍ରଭୃତିଦ୍ୱାରା ନିର୍ମିତ ଦେହକୁ ସାର ବୋଲି ମଣନ୍ତି, ଅଥବା ପ୍ରତ୍ୟକ୍ଷ ପ୍ରମାଣଭିନ୍ନ, ଅନ୍ୟ କୌଣସି ପ୍ରମାଣ ମାନନ୍ତି ନାହିଁ ଏବଂ ଦେହକୁ ସାର ବୋଲି ମଣୁଥିବାରୁ ସେହି ଦେହର ରକ୍ଷା ନିମିତ୍ତ ପରଧନାପହରଣ ଓ ପ୍ରାଣି-ହିଂସା ପ୍ରଭୃତି ଉଗ୍ର ବା କଠିନ କର୍ମମାନ କରନ୍ତି । ଅବଶେଷରେ ଅର୍ଥାତ୍ ମୃତ୍ୟୁ ପରେ, ଜଗତର ଶତ୍ରୁ ସ୍ୱରୂପ ହୋଇ ଜଗତସ୍ଥ ପ୍ରାଣିମାନଙ୍କର ବିନାଶ ପାଇଁ ବ୍ୟାଘ୍ର ଭଲ୍ଲୂକାଦି ହିଂସ୍ର ପଶୁରୂପରେ ଜନ୍ମପରିଗ୍ରହ କରନ୍ତି । ୯ ।

ଶ୍ଳୋକଃ ।

* କାମମାଶ୍ରିତ୍ୟ ଦୁଷ୍ପୂରଂ, ଦମ୍ଭମାନମଦାନ୍ୱିତାଃ ।
ମୋହାଦ୍‌ଗୃହୀତ୍ୱା ସଦ୍‌ଗ୍ରାହାନ୍, ପ୍ରବର୍ତ୍ତନ୍ତେଽଶୁଚିବ୍ରତାଃ । ୧୦ ।

ଅନ୍ୱୟଃ ।

(ତେ) ଦମ୍ଭମାନମଦାନ୍ୱିତାଃ ଦୁଷ୍ପୂରଂ କାମଂ ଆଶ୍ରିତ୍ୟ ମୋହାତ୍ ଅସଦ୍‌ଗ୍ରାହାନ୍ ଗୃହୀତ୍ୱା ଅଶୁଚିବ୍ରତାଃ (ସନ୍ତଃ) ପ୍ରବର୍ତ୍ତନ୍ତେ । ୧୦ ।

ଟୀକା ।

ଅପି ଚ କାମମାଶ୍ରିତ୍ୟେତି । ଦୁଷ୍ପୂରଂ ପୂରୟିତୁମଶକ୍ୟଂ କାମମାଶ୍ରିତ୍ୟ ଦମ୍ଭାଦିଭିର୍ୟୁକ୍ତାଃ ସନ୍ତଃ କ୍ଷୁଦ୍ରଦେବତାରାଧନାଦୌ ପ୍ରବର୍ତ୍ତନ୍ତେ, କଥଂ ଅସଦ୍‌ଗ୍ରାହାନ୍ ଗୃହୀତ୍ୱା, ଅନେନମନ୍ତ୍ରେଣୈତାଂ ଦେବତାମାରାଧ୍ୟ ମହାନିଧୀନ୍ ସାଧୟାମ ଇତ୍ୟାଦୀନ୍ ଦୁରାଗ୍ରହାନ୍ ମୋହମାତ୍ରେଣ ସ୍ୱୀକୃତ୍ୟ ପ୍ରବର୍ତ୍ତନ୍ତେ, ଅଶୁଚିବ୍ରତାଃ ଅଶୁଚୀନି ମଦ୍ୟମାଂସାଦି-ବିଷୟାଣି ବ୍ରତାନି ଯେଷାଂ ତେ । ୧୦ ।

ପଦବ୍ୟାଖ୍ୟା ।

କାମଂ—କାମନା—ବାସନା, ଆଶ୍ରିତ୍ୟ—ଆଶ୍ରୟ କରି, ଦୁଷ୍ପୂରଂ—ଯାହା ଅତି ଦୁଃଖରେ ମଧ୍ୟ ପୂରଣ କରି

Digitized by PPRACHIN, SOA

ଯାଇ ନ ପାରେ, ଦମ୍ଭମାନମଦାନ୍ୱିତାଃ—ଅହଙ୍କାର, ଅଭିମାନ ଓ ଗର୍ବଯୁକ୍ତ, ମୋହାତ୍—ମୋହ ହେତୁରୁ, ଗୃହୀତ୍ୱା—ସ୍ୱୀକାର କରି, ଅସଦ୍‌ଗ୍ରାହାନ୍—ଅସତ୍ ସିଦ୍ଧାନ୍ତ, ଭ୍ରାନ୍ତମତ, ପ୍ରବର୍ତ୍ତନ୍ତେ—(କ୍ଷୁଦ୍ର ଦେବତାଦି ଆରାଧନାରେ) ପ୍ରବୃତ୍ତ ହୁଅନ୍ତି, ଅଶୁଚିବ୍ରତାଃ—ଅପବିତ୍ର ନିୟମରେ (ଅର୍ଥାତ୍ ମଦ୍ୟ ମାଂସାଦି ଆହାର କରି କ୍ଷୁଦ୍ରଦେବତା ଆରାଧନା କରନ୍ତି) । ୧୦ ।

## ଅନୁବାଦ ।

(ସେମାନେ) ଅହଂକାର, ଅଭିମାନ ଓ ଗର୍ବଯୁକ୍ତ ହୋଇ ଦୁଷ୍ପୂର କାମନା ଆଶ୍ରୟପୂର୍ବକ ମୋହ ହେତୁରୁ ଅସତ୍‌ସିଦ୍ଧାନ୍ତ ଗ୍ରହଣ କରି ଅପବିତ୍ର ନିୟମରେ ( ଶାସ୍ତ୍ରବିରୁଦ୍ଧ କର୍ମରେ) ପ୍ରବୃତ୍ତ ହୁଅନ୍ତି । ୧୦ ।

## ବିଶଦବ୍ୟାଖ୍ୟା ।

ରାକ୍ଷସୀ ଓ ଆସୁରୀ ପ୍ରକୃତିର ଲୋକମାନେ ଅହଂକାର, ଅଭିମାନ ଓ ଗର୍ବଯୁକ୍ତ ହୁଅନ୍ତି, ପୁଣି ଜୀବନ ଶେଷ ପର୍ଯ୍ୟନ୍ତ କାମ୍ୟବସ୍ତୁ ଭୋଗ କଲେ ସୁଦ୍ଧା, ଯେଉଁ କାମନା ପୂରଣ ହୁଏ ନା, ସେହି କାମନାକୁ ଆଶ୍ରୟ କରି ନାନା ପ୍ରକାର କ୍ଷୁଦ୍ର ବା ଉପଦେବତାର ପୂଜାରେ ପ୍ରବୃତ୍ତ ହୁଅନ୍ତି । ସେହି୨ ଦେବତା ବା ଉପଦେବତାଙ୍କୁ ପୂଜା କଲେ କାମନା ସିଦ୍ଧ ହେବ ବୋଲି, ଯେଉଁ ଅସତ୍‌ସିଦ୍ଧାନ୍ତ ବା ଭ୍ରମପ୍ରମାଦଯୁକ୍ତ ଗ୍ରନ୍ଥାଦି ଅଛି, ତାହାକୁ ଚରମ ସିଦ୍ଧାନ୍ତ ବୋଲି ଗ୍ରହଣ କରନ୍ତି ଅର୍ଥାତ୍ ଶବ ସାଧନା କଲେ ସର୍ବଜ୍ଞ ହୁଅନ୍ତି, ଶ୍ମଶାନଚଣ୍ଡୀ ପୂଜା କଲେ କବି ହୁଅନ୍ତି, ଯକ୍ଷ ସାଧନାରେ ସ୍ତ୍ରୀଜାତି ବଶୀଭୂତ ହୁଅନ୍ତି, ଭୈରବ ସାଧନାରେ ମାରଣ ହୁଏ, ଗନ୍ଧର୍ବ ସାଧନାରେ ସ୍ତମ୍ଭନ, ମୋହନ ହୁଏ, ଏବଂ ଭୂତ ପ୍ରେତାଦି ସାଧନରେ ଉଚ୍ଚାଟନ ହୁଏ, ଏହିରୂପ ଅଳୀକ କଥାରେ ପୂର୍ଣ୍ଣ ଗ୍ରନ୍ଥସବୁକୁ ଚରମସିଦ୍ଧାନ୍ତ ବୋଲି ଗ୍ରହଣ କରି ଅପବିତ୍ର ବ୍ରତୀ ହୁଅନ୍ତି । ମଦ୍ୟ ମାଂସ ଭୋଜନ, ଶ୍ମଶାନବାସ ଓ ଅସ୍ଥିମାଳା ଧାରଣ ପ୍ରଭୃତି ଅଶୁଚି କର୍ମ କରି କ୍ଷୁଦ୍ର ଦେବତା ବା ଭୂତପ୍ରେତାଦି ଉପଦେବତା ପୂଜାରେ ଅଥବା ବେଦାଦି ଶାସ୍ତ୍ରବିରୁଦ୍ଧ ଅପବିତ୍ର କର୍ମରେ ପ୍ରବୃତ୍ତ ହୁଅନ୍ତି । ୧୦ ।

## ଶ୍ଳୋକଃ ।

ଚିନ୍ତାମପରିମେୟାଂ ଚ, ପ୍ରଳୟାନ୍ତାମୁପାଶ୍ରିତାଃ ।
କାମୋପଭୋଗପରମା, ଏତାବଦିତି ନିଶ୍ଚିତାଃ । ୧୧ ।

## ଅନ୍ୱୟଃ ।

ଅପରିମେୟାଂ ଚ ପ୍ରଳୟାନ୍ତାଂ ଚିନ୍ତାଂ ଉପାଶ୍ରିତାଃ, କାମୋପଭୋଗପରମାଃ ଏତାବତ୍ ଇତି ନିଶ୍ଚିତାଃ ( ଅର୍ଥାତ୍ ଭବନ୍ତି ) । ୧୧ ।

## ଟୀକା ।

କିଞ୍ଚ ଚିନ୍ତାମିତି । ପ୍ରଳୟୋମରଣମେବାନ୍ତୋଯସ୍ୟାସ୍ତାମପରିମେୟାଂ ପରିମାତୁମଶକ୍ୟାଂ ଚିନ୍ତାମାଶ୍ରିତାଃ ନିତ୍ୟଚିନ୍ତାପରା ଇତ୍ୟର୍ଥଃ । କାମୋପଭୋଗ ଏବ ପରମୋଯେଷାଂ ତେ ଏତାବଦିତି କାମୋପଭୋଗ ଏବ ପରମଃ ପୁରୁଷାର୍ଥୋନାନ୍ୟ ଦସ୍ତୀତି କୃତନିଶ୍ଚୟା ଅର୍ଥସଞ୍ଚୟାନୀହନ୍ତ ଇତ୍ୟୁତ୍ତରେଣାନ୍ୱୟଃ, ତଥାଚ ବାର୍ହସ୍ପତ୍ୟସୂତ୍ରଂ—'କାମଏବୈକଃ ପୁରୁଷାର୍ଥ ଇତି' ଚୈତନ୍ୟବିଶିଷ୍ଟଃ କାୟଃ ପୁରୁଷ ଇତି ଚ । ୧୧ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଚିନ୍ତାଂ—ଭାବନାକୁ, ଅପରମେୟାଂ ଚ—ଅସୀମ, ପ୍ରଳୟାନ୍ତାଂ—ମୃତ୍ୟୁ ପର୍ଯ୍ୟନ୍ତ ସ୍ଥାୟିନୀ, ଉପାଶ୍ରିତାଃ—ଆଶ୍ରୟ କରି, କାମୋପଭୋଗପରମାଃ—କାମ୍ୟପଦାର୍ଥର ଉପଭୋଗକୁ ସର୍ବଶ୍ରେଷ୍ଠ ମାନି, ଏତାବତ୍—ଏହି ମାତ୍ର ସାର, ଇତି ନିଶ୍ଚିତାଃ—ଏହା ନିଶ୍ଚୟ କରି (ଅର୍ଥୋପାର୍ଜନରେ ଆସକ୍ତ ହୁଅନ୍ତି) । ୧୧ ।

ଅନୁବାଦ ।

( ସେମାନେ, ) ମରଣ ପର୍ଯ୍ୟନ୍ତ ସ୍ଥାୟିନୀ ଅସୀମ ଚିନ୍ତାର ଆଶ୍ରୟ ଗ୍ରହଣ କରନ୍ତି, କାମ୍ୟପଦାର୍ଥର ଉପଭୋଗକୁ ସର୍ବଶ୍ରେଷ୍ଠ ମଣନ୍ତି, 'ଏହାହିଁ ସାର' ... ନିଶ୍ଚୟ କରି (ଅର୍ଥ ଉପାର୍ଜନରେ ଆସକ୍ତ ହୁଅନ୍ତି) । ୧୧ ।

ବିଶଦବ୍ୟାଖ୍ୟା ।

ରାକ୍ଷସ ଓ ଆସୁରସ୍ୱଭାବର ଲୋକମାନେ କାମ୍ୟବସ୍ତୁ ଉପଭୋଗକୁ ସର୍ବଶ୍ରେଷ୍ଠ ପୁରୁଷାର୍ଥ ମନେ କରନ୍ତି ବୋଲି, ସେହି କାମ୍ୟବସ୍ତୁ ପ୍ରାପ୍ତି ନିମିତ୍ତ ଅସୀମ ଚିନ୍ତା କରନ୍ତି । ସେ ଚିନ୍ତା, ସେ ପାଞ୍ଚବର୍ଷ କି ଦଶବର୍ଷ କରି ତ୍ୟାଗ କରନ୍ତି, ତାହା ନୁହେଁ, ମରଣକାଳ ପର୍ଯ୍ୟନ୍ତ ନାନା କାମ୍ୟବସ୍ତୁ ପ୍ରାପ୍ତିପାଇଁ ନାନାପ୍ରକାର ଚିନ୍ତା କରନ୍ତି ଅର୍ଥାତ୍ ଶାନ୍ତିରୂପ ସୁଖ କଦାପି ସେମାନେ ଲାଭ କରି ପାରନ୍ତି ନାହିଁ । ସେମାନଙ୍କ ମତରେ ଦେବତା, ସ୍ୱତନ୍ତ୍ର ଆତ୍ମା ନାହିଁ ଓ ସ୍ୱର୍ଗ ନରକ ଇତ୍ୟାଦି କିଛି ନାହିଁ, କେବଳ କାମ୍ୟପଦାର୍ଥର ଉପଭୋଗ ଅର୍ଥାତ୍ ମାଳା, ଚନ୍ଦନ, ବନିତାଦି ଦ୍ରବ୍ୟର ଯଥେଷ୍ଟ ଉପଭୋଗହିଁ ପୁରୁଷାର୍ଥ ଏବଂ ସେହି ସବୁ ପଦାର୍ଥ ପ୍ରାପ୍ତି ନିମିତ୍ତ ଅର୍ଥ ନିତାନ୍ତ ପ୍ରୟୋଜନ, ସେହି ଅର୍ଥ ଉପାର୍ଜନପାଇଁ ସେମାନେ ନାନା ପ୍ରକାର ଚେଷ୍ଟା କରନ୍ତି ( ପରଶ୍ଳୋକରେ ଦେଖ )। ୧୧ ।

ଶ୍ଳୋକଃ ।

ଆଶାପାଶ ଶତୈର୍ବଦ୍ଧାଃ, କାମକ୍ରୋଧପରାୟଣାଃ ।
ଈହନ୍ତେ କାମଭୋଗାର୍ଥ,ମନ୍ୟାୟେନାର୍ଥସଞ୍ଚୟାନ୍ । ୧୨ ।

ଅନ୍ୱୟଃ ।

ଆଶାପାଶଶତୈଃ ବଦ୍ଧାଃ କାମକ୍ରୋଧପରାୟଣାଃ ତେ କାମଭୋଗାର୍ଥଂ ଅନ୍ୟାୟେନ ଅର୍ଥସଞ୍ଚୟାନ୍ ଈହନ୍ତେ । ୧୨ ।

ଟୀକା ।

ଅତଏବ ଈଶେତ । ଆଶା ଏବ ପାଶାଃ ତେଷାଂ ଶତୈଃ ବଦ୍ଧାଃ ଇତସ୍ତତ ଆକୃଷ୍ୟମାଣାଃ, କାମକ୍ରୋଧପରାୟଣାଃ କାମକ୍ରୋଧୌ ପରମୟନମାଶ୍ରୟୋଯେଷାଂ ତେ କାମଭୋଗାର୍ଥମନ୍ୟାୟେନ ଚୌର୍ଯ୍ୟାଦିନାର୍ଥାନାଂ ସଞ୍ଚୟାନ୍ ପ୍ରଶୀଡ଼ନ୍ତ ଇଚ୍ଛନ୍ତି । ୧୨ ।

ପଦବ୍ୟାଖ୍ୟା ।

ଆଶାପାଶଶତୈଃ—ଅସଂଖ୍ୟ ଆଶାରୂପ ପାଶଦ୍ୱାରା, ବଦ୍ଧାଃ—ଆବଦ୍ଧ, କାମକ୍ରୋଧପରାୟଣାଃ—କାମ ଓ କ୍ରୋଧର ବଶୀଭୂତ, ଈହନ୍ତେ—ଚେଷ୍ଟା କରନ୍ତି, କାମଭୋଗାର୍ଥଂ—କାମ୍ୟପଦାର୍ଥର ଉପଭୋଗ ନିମିତ୍ତ, ଅନ୍ୟାୟେନ—ଧର୍ମବିରୁଦ୍ଧ ଉପାୟରେ, ଅର୍ଥସଞ୍ଚୟାନ୍—ଅର୍ଥସଞ୍ଚୟମାନଙ୍କୁ (ଅର୍ଥାତ୍ ଧନ ସଞ୍ଚୟ କରିବାକୁ) । ୧୨ ।

Digitized by PPRACHIN, SOA

ଅନୁବାଦ ।

ଅସଂଖ୍ୟ ଆଶାରୂପ ପାଶରେ ଆବଦ୍ଧ ଓ କାମ କ୍ରୋଧର ବଶୀଭୂତ ହୋଇ (ସେମାନେ) ବିଷୟଭୋଗ ନିମିତ୍ତ ଅନ୍ୟାୟରେ ଧନ ସଞ୍ଚୟ କରିବାକୁ ଚେଷ୍ଟା କରନ୍ତି । ୧୨ ।

ବିଶଦବ୍ୟାଖ୍ୟା ।

ଅମୁକ ପଦାର୍ଥ ମତେ ମିଳି ପାରିବ —ଏ ପ୍ରକାର ଅନିଶ୍ଚିତ ଇଚ୍ଛାକୁ 'ଆଶା' ବୋଲା-ଯାଏ । ଆସୁରସ୍ୱଭାବର ଲୋକଙ୍କର ସେହି ଆଶା ପୁଣି ଅସଂଖ୍ୟ । ଅର୍ଥାତ୍ ବଡ ଧନୀ ହେବି, ନୀରୋଗୀ ହେବି, ସୁନ୍ଦରୀ ଯୁବତୀ ସ୍ତ୍ରୀ ସର୍ବଦା ଭୋଗ କରିବି, ବୃହତ୍ ଅଟ୍ଟାଳିକା ନିର୍ମାଣ କରାଇବି ଇତ୍ୟାଦି ବହୁପ୍ରକାର ଆଶାରୂପ ପାଶରେ ସେମାନେ ଆବଦ୍ଧ । ଯେପରି ରଜ୍ଜୁ ଇତ୍ୟାଦିଦ୍ୱାରା ପାଶ ପ୍ରସ୍ତୁତ କରି ଚୌରାଦି ଦୁଷ୍ଟ ଲୋକଙ୍କୁ ବାନ୍ଧି, ଏକ ସ୍ଥାନରୁ ଅନ୍ୟସ୍ଥା-ନକୁ ନିଆଯାଏ, ସେହିପରି ଆସୁରୀ ଓ ରାକ୍ଷସୀ ପ୍ରକୃତିର ଲୋକମାନେ, ଆଶାରୂପ ପାଶରେ ଆବଦ୍ଧ ହୋଇ ସ୍ୱସ୍ଥାନରୁ ଅର୍ଥାତ୍ ଶ୍ରେୟଃ ପଥରୁ ଭ୍ରଷ୍ଟ ହୋଇ କାମ୍ୟ ପଦାର୍ଥର ପ୍ରାପ୍ତି ନିମିତ୍ତ ଏଣେ ତେଣେ ଭ୍ରମଣ କରନ୍ତି । ପୁଣି ପରର ସୁନ୍ଦରୀ ସ୍ତ୍ରୀ ଓ ପରର ଦ୍ରବ୍ୟ ଗ୍ରହଣରୂପ କାମ ଓ ତହିଁରେ କେହି ବାଧା ଜନ୍ମାଇଲେ, ତାହାର ଅନିଷ୍ଟ କରିବା ଇଚ୍ଛାରୂପ କ୍ରୋଧହିଁ ସେମାନ-ଙ୍କର ଶ୍ରେଷ୍ଠ ଆଶ୍ରୟ । ଅର୍ଥାତ୍ କାମ ଓ କ୍ରୋଧ ଏହି ଦୁଇଟିକୁ ସେମାନେ ସର୍ବଦା ଅବଲମ୍ବନ କରିଥାନ୍ତି । କାମ୍ୟ ପଦାର୍ଥର ଉପଭୋଗପାଇଁ ଅର୍ଥ (ଧନ) ନିତାନ୍ତ ଆବଶ୍ୟକ, ଏହା ଜାଣି, ସେମାନେ ଅନ୍ୟାୟରେ ଅର୍ଥାତ୍ ଚୋରି ଓ ବଳାତ୍କାର ବା ଶାସ୍ତ୍ର ଓ ଧର୍ମବିରୁଦ୍ଧ ଅନ୍ୟାନ୍ୟ ଉପାୟଦ୍ୱାରା ଧନ ସଂଗ୍ରହ କରିବାକୁ ଚେଷ୍ଟା କରନ୍ତି ।

ଫଳକଥା ଏହି କି ସେମାନେ ଆଶାରୂପ ପାଶରେ ଆବଦ୍ଧ ହୋଇ କାମ ଓ କ୍ରୋଧର ଆଶ୍ରୟ ଗ୍ରହଣ କରି ଅବଶେଷରେ ଅନ୍ୟାୟ ଧନ ସଂଗ୍ରହରେ ଅର୍ଥାତ୍ ଲୋଭରେ ପଡନ୍ତି । ୧୨ ।

ଶ୍ଳୋକଃ ।

ଇଦମଦ୍ୟ ମୟା ଲବ୍ଧମିମଂ ପ୍ରାପ୍ସ୍ୟେ ମନୋରଥଂ ।
ଇଦମସ୍ତୀଦମପି ମେ, ଭବିଷ୍ୟତି ପୁନର୍ଧନଂ । ୧୩ ।

ଅନ୍ୱୟଃ ।

ଇଦଂ ଅଦ୍ୟ ମୟା ଲବ୍ଧଂ, ଇମଂ ମନୋରଥଂ ପ୍ରାପ୍ସ୍ୟେ, ଇଦଂ ମେ ଅସ୍ତି, ଇଦଂ ଧନଂ ଅପି ପୁନଃ ଭବିଷ୍ୟତି । ୧୩ ।

ଟୀକା ।

ତେଷାଂ ମନୋରଥଂ କଥୟନ୍ ନରକପ୍ରାପ୍ତିମାହ, ଇଦମଦ୍ୟେତି ଚତୁର୍ଭିଃ । ପ୍ରାପ୍ସ୍ୟେ—ପ୍ରାପ୍ସ୍ୟାମି, ମନୋରଥଂ ମନସଃ ପ୍ରିୟଂ, ସୁଗମମନ୍ୟତ୍ । ଏତେଷାଞ୍ଚ ତ୍ରୟାଣାଂ ଶ୍ଳୋକାନାମିତ୍ୟଜ୍ଞାନବିମୋହିତାଃ ଇତ୍ୟନେନାନ୍ତରଙ୍ଗେଣ ଷୋଡଶଶ୍ଳୋକସ୍ଥେନ ସମ୍ବନ୍ଧଃ । ୧୩ ।

Digitized by PPRACHIN, SOA

### ପଦବ୍ୟାଖ୍ୟା ।

ଇଦଂ—ଏହି ଦ୍ରବ୍ୟ, ଅଦ୍ୟ—ଆଜି—ବର୍ତ୍ତମାନ, ମୟା ଲବ୍ଧଂ—ମୁଁ ପ୍ରାପ୍ତ ହେଲି, ଇଦଂ—ଏହି, ପ୍ରାପ୍ସ୍ୟେ—ପ୍ରାପ୍ତ ହେବି, ମନୋରଥଂ—ବାଞ୍ଛିତ ବିଷୟ, ଇଦଂ ଅସ୍ତି—ଏହା ଅଛି, ଇଦଂ ଅପି—ଏହା ମଧ୍ୟ, ମେ—ମୋହର, ଭବିଷ୍ୟତି—ହେବ, ପୁନଃ—ପୁଣି, ଧନଂ—ଧନ । ୧୩ ।

### ଅନୁବାଦ ।

ଆଜି ଏହି ଦ୍ରବ୍ୟ ପାଇଲି, ଏହି ବାଞ୍ଛିତ ଦ୍ରବ୍ୟ ଶୀଘ୍ର ପାଇବି, ଏହି ଧନ ମୋହର ପୂର୍ବରୁ ଅଛି ଓ ଏହି ଧନ ପୁଣି ବର୍ଦ୍ଧିତ ହେବ । ୧୩ ।

### ବିଶଦବ୍ୟାଖ୍ୟା ।

ଅସୁରସ୍ୱଭାବର ଲୋକମାନେ ସର୍ବଦା ଧନଚିନ୍ତାରେ କାଳଯାପନ କରୁଥିବାରୁ, ଏତେ ଧନ ପାଇଲି ଓ ଏତେ ଧନ ଶୀଘ୍ର ପାଇବି, ଏତେ ଧନ ଅଛି ଓ ଏହା ବର୍ଦ୍ଧିତ ହେଲେ ଏତେ ଧନ ହେବ ଇତ୍ୟାଦି ଅସୀମ ଚିନ୍ତାରେ ନିମଗ୍ନ ଥାନ୍ତି ।

ଫଳକଥା ଏହି କି ଆସୁର ସ୍ୱଭାବର ଲୋକଙ୍କର ମନରେ ଶାନ୍ତି ନାହିଁ ଓ କାମ କ୍ରୋଧ ଏବଂ ଲୋଭ ହେତୁରୁ ସେମାନେ କ୍ରମେ୨ ଅଧୋଗତି ପ୍ରାପ୍ତ ହୁଅନ୍ତି । ୧୩ ।

### ଶ୍ଳୋକଃ ।

* ଅସୌ ମୟା ହତଃ ଶତ୍ରୁର୍ହନିଷ୍ୟେ ଚାପରାନପି ।
ଈଶ୍ୱରୋଽହମହଂ ଭୋଗୀ, ସିଦ୍ଧୋଽହଂ ବଲବାନ୍ ସୁଖୀ । ୧୪ ।

### ଅନ୍ୱୟଃ ।

ଅସୌ ଶତ୍ରୁଃ ମୟା ହତଃ ଚ ଅପରାନ୍ ଅପି ହନିଷ୍ୟେ, ଅହଂ ଈଶ୍ୱରଃ, ଅହଂ ଭୋଗୀ, ଅହଂ ସିଦ୍ଧଃ, ବଲବାନ୍ ସୁଖୀ । ୧୪ ।

### ଟୀକା ।

କିଞ୍ଚ ପ୍ରସାଦତ । ସିଦ୍ଧଃ—କୃତକୃତ୍ୟଃ, ସ୍ୱଷ୍ଟମନ୍ୟତ୍ । ୧୪ ।

### ପଦବ୍ୟାଖ୍ୟା ।

ଅସୌ—ଏହି, ମୟା—ମୁଁ, ହତଃ—ମାରିଲି, ଶତ୍ରୁଃ—ବୈରୀକୁ, ହନିଷ୍ୟେ—ବଧ କରିବି, ଚ—ପୁଣି ଅପରାନ୍ ଅପି—ଅନ୍ୟମାନଙ୍କୁ ମଧ୍ୟ, ଈଶ୍ୱରୋଽହଂ—ମୁଁ ପ୍ରଭୁ, ଅହଂ ଭୋଗୀ—ମୁଁ ଭୋଗୀ ଅର୍ଥାତ୍ ନାନାପ୍ରକାର ବିଷୟ ମୁଁ ଭୋଗ କରୁଅଛି, ସିଦ୍ଧୋଽହଂ—ମୁଁ ସବୁ ବିଷୟରେ ସିଦ୍ଧିଲାଭ କରିଅଛି, ବଲବାନ୍—ମୋହର ବଳ ଅଛି, ସୁଖୀ—ମୁଁ ନାନାପ୍ରକାର ସୁଖ ଭୋଗ କରୁଅଛି । ୧୪ ।

### ଅନୁବାଦ ।

ମୁଁ ଏହି ଶତ୍ରୁକୁ ମାରିଲି ଓ ଅନ୍ୟମାନଙ୍କୁ ବଧ କରିବି । ମୁଁ ପ୍ରଭୁ, ମୁଁ ଭୋଗୀ, ମୁଁ ସିଦ୍ଧ, ବଳବାନ୍ ଓ ସୁଖୀ ଅଟେ । ୧୪ ।

### ବିଶଦବ୍ୟାଖ୍ୟା ।

ଅମୁକ ଏପରି ଦୁର୍ଜ୍ଜୟ ଶତ୍ରୁ ଥିଲା, ତାହାକୁ ମୁଁ ବଧ କଲି, ତେବେ ଅପର ଶତ୍ରୁମା-

Digitized by PPRACHIN, SOA

ତାଙ୍କୁ ଅନାୟାସରେ ବଧ କରିବି । "ହନିଷ୍ୟେ ଚ" ଏପଦସ୍ଥ 'ଚ'କାରଦ୍ୱାରା ଏହା ମଧ୍ୟ ସୂଚିତ ହେଉଅଛି, କି କେବଳ, ଯେ ମୁଁ ଅପର ଶତ୍ରୁମାନଙ୍କୁ ବିନାଶ କରିବି, ତାହା ନୁହେଁ, ସେମାନଙ୍କ ଧନ, ଦାରା ଓ ଇତ୍ୟାଦି ସବୁକୁ ମଧ୍ୟ ହରଣ କରି ଆଣିବି । ମୋହ ସମାନ ମନୁଷ୍ୟ ଆଉ କିଏ ଅଛି, ଯେ ମୋହ ସହିତ ଶତ୍ରୁତା କରିବ ? କାହିଁକି ନା ମୁଁ ଈଶ୍ୱର ଅର୍ଥାତ୍ ସର୍ବଶକ୍ତିସମ୍ପନ୍ନ । ମୁଁ ସର୍ବପ୍ରକାର ବିଷୟଭୋଗ କରୁଅଛି, ମୁଁ ସ୍ୱାଭାବିକ ଏପରି ବଳବାନ୍, ଯେ ମତେ କେହି ସହଜରେ ଜୟ କରି ପାରିବ ନାହିଁ, ପୁଣି ମୁଁ ସୁଖୀ ଅର୍ଥାତ୍ ସର୍ବଦା ନିରୋଗୀ, ସୁତରାଂ ମୋହର ଈଶ୍ୱରତ୍ୱରେ କି ଆଉ ସନ୍ଦେହ ଅଛି ? ଅତଏବ ସାମାନ୍ୟ ମନୁଷ୍ୟ ମଧ୍ୟରେ ମୋହର ଆଉ ଶତ୍ରୁ କିଏ ହେବ ?, ଇତ୍ୟାଦି ଅଭିମାନଯୁକ୍ତ ହୋଇ ଅସୁରପ୍ରକୃତିର ଲୋକମାନେ ନରକର ପଥ ପରିଷ୍କାର କରନ୍ତି । ୧୪ ।

ଶ୍ଳୋକଃ ।

ଆଢ୍ୟୋଽଭିଜନବାନସ୍ମି, କୋଽନ୍ୟୋଽସ୍ତି ସଦୃଶୋମୟା ।
ଯକ୍ଷ୍ୟେ ଦାସ୍ୟାମି ମୋଦିଷ୍ୟେ, ଇତ୍ୟଜ୍ଞାନବିମୋହିତାଃ । ୧୫ ।

ଅନ୍ୱୟଃ ।

ଆଢ୍ୟଃ ଅଭିଜନବାନ୍ ଅସ୍ମି, ଅନ୍ୟଃ କଃ ମୟା ସଦୃଶଃ ଅସ୍ତି ? ( ଅହଂ ) ଯକ୍ଷ୍ୟେ ଦାସ୍ୟାମି, ମୋଦିଷ୍ୟେ, ଇତି ଅଜ୍ଞାନବିମୋହିତାଃ । ୧୫ ।

ଟୀକା ।

କିଂଚ ଆଢ୍ୟ ଇତି । ଆଢ୍ୟୋଧନାଦିସମ୍ପନ୍ନଃ ଅଭିଜନବାନ୍ କୁଲୀନଃ, ଯକ୍ଷ୍ୟେ ଯାଗାଦ୍ୟନୁଷ୍ଠାନେନାପି ଦୀକ୍ଷିତାନ୍ତରେଭ୍ୟଃ ସକାଶାତ୍ ମହତୀଂ ପ୍ରତିଷ୍ଠାଂ ପ୍ରାପ୍ସ୍ୟାମି, ଦାସ୍ୟାମି ସ୍ତାବକେଭ୍ୟଶ୍ଚ ମୋଦିଷ୍ୟେ ହର୍ଷଂ ପ୍ରାପ୍ସ୍ୟାମି ଇତ୍ୟେବମଜ୍ଞାନେନ ବିମୋହିତା ମିଥ୍ୟାଭିନିବେଶଂ ପ୍ରାପିତାଃ । ୧୫ ।

ପଦବ୍ୟାଖ୍ୟା ।

ଆଢ୍ୟଃ—ଧନୀ, ଅଭିଜନବାନ୍ ଅସ୍ମି—କୁଳୀନ ଅଟେ, କୋଽନ୍ୟୋଽସ୍ତି—ଆଉ କିଏ ଅଛି, ସଦୃଶଃ ମୟା—ମୋହ ସମାନ, ଯକ୍ଷ୍ୟେ—ଯାଗ କରିବି,-ଦାସ୍ୟାମି—(ସ୍ତୁତିକାରିମାନଙ୍କୁ ଧନ) ପ୍ରଦାନ କରିବି, ମୋଦିଷ୍ୟେ—ହର୍ଷପ୍ରାପ୍ତ ହେବି, ଇତି—ଏହିପରି, ଅଜ୍ଞାନେନ—ଅଜ୍ଞାନ—ଭ୍ରମଦ୍ୱାରା, ବିମୋହିତାଃ—ମୋହପ୍ରାପ୍ତ ହୁଅନ୍ତି । ୧୫ ।

ଅନୁବାଦ ।

'ମୁଁ ଧନୀ ଓ କୁଳୀନ ଅଟେ, ମୋହ ସମାନ ଆଉ କିଏ ଅଛି ? ( ମୁଁ ) ଯାଗ କରିବି, ଦାନ କରିବି ଓ ଆମୋଦପ୍ରାପ୍ତ ହେବି' ଏହିପରି ଅଜ୍ଞାନଦ୍ୱାରା ମୋହ ପ୍ରାପ୍ତ ହୁଅନ୍ତି । ୧୫ ।

ବିଶଦବ୍ୟାଖ୍ୟା ।

ଆସୁର ସ୍ୱଭାବର ପୁରୁଷ, ଆପଣାକୁ 'ଧନୀ' ବୋଲି ଏବଂ 'କୁଳୀନ' ବୋଲି ଭାବନ୍ତି, ଏମନ୍ତ କି ସେମାନଙ୍କ ସମାନ ଆଉ କୌଣସି ବ୍ୟକ୍ତି ଧନୀ ବା କୁଳୀନ ନୁହେ, ଏହା ତାଙ୍କର ଦୃଢ଼ବିଶ୍ୱାସ । ସେହି ଧନ ଓ କୁଳ ଗର୍ବରେ ଅଜ୍ଞାନ ମୋହିତ ହୋଇ ସେମାନେ ଅଧିକ ଏହା ମଧ୍ୟ ଭାବନ୍ତି, ଯେ ଆମ୍ଭେ ସମାରୋହରେ ଯାଗ କରିବୁଁ ଏବଂ ଯାଗ ଉପଲକ୍ଷରେ ସମାଗତ

Digitized by PPRACHIN, SOA

ନଟ, ଭଟ, ସ୍ତାବକ ଓ ଗାୟକ ପ୍ରଭୃତିଙ୍କୁ ଅର୍ଥଦାନ କରିବୁଁ ଓ ଅର୍ଥ ପ୍ରାପ୍ତ ହୋଇ ସେମାନେ ଆମ୍ଭର ବହୁତ ପ୍ରଶଂସା କରିବେ ଓ ସେହି ପ୍ରଶଂସା ବଚନ ଶୁଣି ଆମ୍ଭର ଯଥେଷ୍ଟ ଆମୋଦ ହେବ ଇତ୍ୟାଦି । ୧୫ ।

### ଶ୍ଲୋକଃ ।

ଅନେକଚିତ୍ତବିଭ୍ରାନ୍ତା, ମୋହଜାଲସମାବୃତାଃ ।
ପ୍ରସକ୍ତାଃ କାମଭୋଗେଷୁ, ପତନ୍ତି ନରକେଽଶୁଚୌ । ୧୬ ।

### ଅନ୍ୱୟଃ ।

ଅନେକଚିତ୍ତବିଭ୍ରାନ୍ତାଃ ମୋହଜାଲସମାବୃତାଃ କାମଭୋଗେଷୁ ପ୍ରସକ୍ତାଃ ଅଶୁଚୌ ନରକେ ପତନ୍ତି । ୧୬ ।

### ଟୀକା ।

ଏବମ୍ଭୂତା ଯତ୍ର ପ୍ରାପ୍ନୁବନ୍ତି ତଚ୍ଛୃଣୁ, ଅନେକେତି । ଅନେକେଷୁ ମନୋରଥେଷୁ ପ୍ରବୃତ୍ତଂ ଚିତ୍ତଂ ଅନେକଚିତ୍ତଂ ତେନ ବିଭ୍ରାନ୍ତା ବିକ୍ଷିପ୍ତାଃ ଅତଏବ ମୋହମୟେନ ଜାଲେନ ସମାବୃତା ମତ୍ସ୍ୟା ଇବ ସୂତ୍ରମୟେନ ଜାଲେନ ସନ୍ଦିତାଃ, ଏବ କାମଭୋଗେଷୁ ପ୍ରସକ୍ତା ଅଭିନିବିଷ୍ଟାଃ ସନ୍ତୋଽଶୁଚୌ କଶ୍ମଳେ ନରକେ ପତନ୍ତି । ୧୬ ।

### ପଦବ୍ୟାଖ୍ୟା ।

ଅନେକଚିତ୍ତବିଭ୍ରାନ୍ତାଃ—ଅନେକ ବିଷୟରେ ଚିତ୍ତ ପ୍ରବୃତ୍ତ ହେବାରୁ ଭ୍ରମଯୁକ୍ତ, ମୋହଜାଲସମାବୃତାଃ—ଅଜ୍ଞାନରୂପ ଜାଲରେ ସମ୍ପୂର୍ଣ୍ଣ ବେଷ୍ଟିତ, ପ୍ରସକ୍ତାଃ—ଆସକ୍ତ, କାମଭୋଗେଷୁ—କାମ୍ୟପଦାର୍ଥର ଭୋଗ ବିଷୟରେ, ପତନ୍ତି—ପଡନ୍ତି, ନରକେଽଶୁଚୌ—ଅପବିତ୍ର ନରକରେ ଅର୍ଥାତ୍ ରୌରବାଦି କଦର୍ଯ୍ୟ ନରକରେ । ୧୬ ।

### ଅନୁବାଦ ।

ଅନେକ ବିଷୟରେ ବିଚଳିତଚିତ୍ତ ଅଜ୍ଞାନରୂପ ଜାଲଦ୍ୱାରା ସମ୍ପୂର୍ଣ୍ଣ ବେଷ୍ଟିତ ଓ କାମ୍ୟ ପଦାର୍ଥର ଭୋଗ୍ୟ ବିଷୟରେ ଆସକ୍ତ ବ୍ୟକ୍ତିମାନେ, କୁତ୍ସିତ ନରକରେ ପଡ଼ନ୍ତି । ୧୬ ।

### ବିଶଦବ୍ୟାଖ୍ୟା ।

ଅସୁର ସ୍ୱଭାବର ପୁରୁଷମାନେ ନାନାପ୍ରକାର ବିଷୟରେ ଚିତ୍ତ ସମର୍ପଣ କରିବାରୁ ସର୍ବଦା ଭ୍ରମପ୍ରମାଦପୂର୍ଣ୍ଣ ହୁଅନ୍ତି, ସେମାନଙ୍କର ଭ୍ରାନ୍ତିର ଅଭୁତ ଗୋଟିଏ କାରଣ ଏହି, ଯେ ସେମାନେ ସର୍ବଦା ମୋହରୂପ ଜାଲରେ ବେଷ୍ଟିତ ଥାନ୍ତି । ଯେପରି ସୂତ୍ରମୟ ଜାଲରେ ପଡିଥିବା ମତ୍ସ୍ୟାଦିଙ୍କର ସ୍ୱାଧୀନତା ନ ଥାଏ, ସେମାନେ ଯେପରି ଜାଲ ପକାଇଥିବା ବ୍ୟକ୍ତିର ଅଧୀନ ହୁଅନ୍ତି, ସେହିପରି ମୋହରୂପ ଜାଲରେ ବେଷ୍ଟିତ ହୋଇ ଅସୁରସ୍ୱଭାବର ଲୋକମାନେ, ବିଷୟବାସନାର ଅଧୀନ ହୁଅନ୍ତି ଓ ସେହି କାରଣରୁ ଭ୍ରାନ୍ତିଯୁକ୍ତ ହୁଅନ୍ତି । ପୁଣି ବିଷୟ ଭୋଗ ବିଷୟରେ ସର୍ବଦା ଅତ୍ୟନ୍ତ ଆସକ୍ତ ହେବାରୁ ସେମାନେ କ୍ରମେ୨ ନାନାପ୍ରକାର ପାପ କରି ଅବଶେଷରେ ରୌରବ ଓ ବୈତରଣୀ ପ୍ରଭୃତି କୁତ୍ସିତ ଅର୍ଥାତ୍ ମଳ, ମୂତ୍ର, ଶ୍ଳେଷ୍ମା ଓ ରୁଧିରାଦି ପୂର୍ଣ୍ଣ ନରକରେ ପଡନ୍ତି

ଫଳକଥା ଏହି କି ଅଜ୍ଞାନାବୃତ ହେବାରୁ ସେମାନେ ଭ୍ରମଯୁକ୍ତ ହୋଇ ବିଷୟଭୋଗ-

Digitized by PPRACHIN, SOA

ରେ ବଢାନ୍ତି ଅଷକ୍ତ ହୁଅନ୍ତି ଓ ତଦ୍ୱାରା ନାନାପ୍ରକାର ପାପ ସଞ୍ଚିତ ହେବାରୁ ତାହାର ଫଳ ଭୋଗପାଇଁ ମହା ନରକରେ ପଡ଼ି ରହନ୍ତି । ୧୬ ।

ଶ୍ଳୋକଃ ।

ଆତ୍ମସମ୍ଭାବିତାଃ ସ୍ତବ୍ଧା, ଧନମାନମଦାନ୍ୱିତାଃ ।
ଯଜନ୍ତେ ନାମଯଜ୍ଞୈସ୍ତେ, ଦମ୍ଭେନାବିଧିପୂର୍ବକଂ । ୧୭ ।

ଅନ୍ୱୟଃ ।

ଆତ୍ମସମ୍ଭାବିତାଃ ସ୍ତବ୍ଧାଃ ଧନ-ମାନ-ମଦାନ୍ୱିତାଃ ତେ ଦମ୍ଭେନ ଅବିଧିପୂର୍ବକଂ ନାମଯଜ୍ଞୈଃ ଯଜନ୍ତେ । ୧୭ ।

ଟୀକା ।

ଯକ୍ଷ୍ୟ ଇତି ଚ ଯସ୍ତେଷାଂ ମନୋରଥ ଉକ୍ତଃ ସ କେବଳଂ ଦମ୍ଭାହଂକାରାଦିପ୍ରଧାନ ଏବ ନ ତୁ ସାତ୍ତ୍ୱିକ ଇତ୍ୟଭିପ୍ରାୟେଣାହ । ଆତ୍ମେତି ଦ୍ୱାଭ୍ୟାଂ । ଆତ୍ମନୈବ ସମ୍ଭାବିତାଃ ପୂଜ୍ୟତାଂ ନୀତାଃ ନ ତୁ ସାଧୁଭିଃ କୈଶ୍ଚିତ୍ ଅତଏବ ସ୍ତବ୍ଧା ଅନମ୍ରାଃ ଧନେନ ଯୋ ମାନୋ ମଦଶ୍ଚ ତାଭ୍ୟାଂ ସମନ୍ୱିତାଃ ସନ୍ତଃ ତେ, ନାମମାତ୍ରେଣ ଯେ ଯଜ୍ଞାସ୍ତେ ନାମଯଜ୍ଞାଃ ଯଦ୍ୱା ଦୀକ୍ଷିତଃ ସୋମଯାଜୀତ୍ୟେବମାଦି, ନାମମାତ୍ରପ୍ରସିଦ୍ଧୟେ ଯେ ଯଜ୍ଞାସ୍ତୈର୍ୟଜନ୍ତେ, କଥଂ ? ଦମ୍ଭେନ, ନ ତୁ ଶ୍ରଦ୍ଧୟା, ଅବିଧିପୂର୍ବକଂ ଚ ଯଥା ଭବତି ତଥା । ୧୭ ।

ପଦବ୍ୟାଖ୍ୟା ।

ଆତ୍ମସମ୍ଭାବିତାଃ—ଆପଣାକୁ ଆପେ ବଡ ମଣିବା ବ୍ୟକ୍ତି, ସ୍ତବ୍ଧାଃ—ଅବିନୀତ—ଉଦ୍ଧତ, ଧନମାନ-ମଦାନ୍ୱିତାଃ—ଧନଜନିତ ଅଭିମାନ ଓ ଗର୍ବରେ ପୂର୍ଣ୍ଣ ହୋଇ, ଯଜନ୍ତେ—ପୂଜା କରନ୍ତି, ନାମ ଯଜ୍ଞୈଃ—ନାମମାତ୍ର ଯଜ୍ଞଦ୍ୱାରା, ତେ—ସେମାନେ, ଦମ୍ଭେନ—ଅହଂକାରରେ, ଅବିଧିପୂର୍ବକଂ—ଶାସ୍ତ୍ରବିଧି ତ୍ୟାଗ କରି । ୧୭ ।

ଅନୁବାଦ ।

ଆପଣାକୁ ଆପେ ମର୍ଯ୍ୟାଦାବନ୍ତ ମଣି, ବିନୟରହିତ ଏବଂ ଧନଜନିତ ଅଭିମାନ ଆଉ ଗର୍ବରେ ପୂର୍ଣ୍ଣ ହୋଇ ଅସୁରସ୍ୱଭାବର ପୁରୁଷମାନେ, ଦମ୍ଭରେ ଶାସ୍ତ୍ରବିଧି ତ୍ୟାଗ କରି ନାମମାତ୍ରକ ଯଜ୍ଞ କରନ୍ତି । ୧୭ ।

ବିଶଦବ୍ୟାଖ୍ୟା ।

ସେହି ଅସୁରସ୍ୱଭାବ ପୁରୁଷମାନେ, ଆତ୍ମସମ୍ଭାବିତ ହୁଅନ୍ତି ଅର୍ଥାତ୍ ଆପେ୨ ମର୍ଯ୍ୟାଦାବନ୍ତ ବୋଲି କହି ବୁଲନ୍ତି, ମାତ୍ର କୌଣସି ଶ୍ରେଷ୍ଠ ବ୍ୟକ୍ତି ତାଙ୍କୁ କେବେହେଁ ମର୍ଯ୍ୟାଦା କରନ୍ତି ନାହିଁ । ପୁଣି ସେମାନେ 'ସ୍ତବ୍ଧ' ଅର୍ଥାତ୍ ଉଦ୍ଧତ—ବିନୟ ରହିତ ହୁଅନ୍ତି । ସେମାନଙ୍କର ନମ୍ରତା ନ ରହିବାର କାରଣ ଏହି, ଯେ ସେମାନେ 'ଧନମାନ-ମଦାନ୍ୱିତାଃ,' ଅର୍ଥାତ୍ ସେମାନଙ୍କର ସ୍ୱର୍ଣ୍ଣ ରୌପ୍ୟ ମଣି-ମୁକ୍ତାଦି ଓ ପଶୁ ଭୂମି ପ୍ରଭୃତି ଅନେକ ଦ୍ରବ୍ୟ ଥିବାରୁ ଆପଣାକୁ ଅତିଶୟ ଶ୍ରେଷ୍ଠ ବୋଲି ମନେ କରନ୍ତି ଏବଂ ତାଙ୍କ ଅପେକ୍ଷା ଆଉ କେହି ପୂଜନୀୟ ନାହାନ୍ତି ଏହି ମନେ କରି ଆପଣାର ଗୁରୁଜନଙ୍କ ପ୍ରତି ମଧ୍ୟ ଅନାସ୍ଥା ପ୍ରକାଶ କରନ୍ତି । ସେମାନେ ଆପଣାର ଶ୍ରେଷ୍ଠତାକୁ ଲୋକସମାଜରେ ବିଖ୍ୟାତ କରିବାକୁ ଯେଉଁ ଯାଗାଦି କରନ୍ତି, ତାହା ନାମମାତ୍ର ଯଜ୍ଞ ଅଟେ । କାହିଁକି ନା ବେଦାଦି ଶାସ୍ତ୍ରରେ ଯଜ୍ଞାଦି ପାଇଁ ଯେ ପ୍ରକାର ବ୍ରାହ୍ମଣ, ଯେପରି ଉପକରଣ ଓ

Digitized by PPRACHIN, SOA

ନଟ, ଭଟ, ସ୍ତାବକ ଓ ଗାୟକ ପ୍ରଭୃତିଙ୍କୁ ଅର୍ଥଦାନ କରିବୁଁ ଓ ଅର୍ଥ ପ୍ରାପ୍ତ ହୋଇ ସେମାନେ ଆମ୍ଭର ବସ୍ତୁର ପ୍ରଶଂସା କରିବେ ଓ ସେହି ପ୍ରଶଂସା ବଚନ ଶୁଣି ଆମ୍ଭର ଯଥେଷ୍ଟ ଆମୋଦ ହେବ ଇତ୍ୟାଦି । ୧୫ ।

ଶ୍ଲୋକଃ ।

ଅନେକଚିତ୍ତବିଭ୍ରାନ୍ତା, ମୋହଜାଲସମାବୃତାଃ ।
ପ୍ରସକ୍ତାଃ କାମଭୋଗେଷୁ, ପତନ୍ତି ନରକେଽଶୁଚୌ । ୧୬ ।

ଅନ୍ୱୟଃ ।

ଅନେକଚିତ୍ତବିଭ୍ରାନ୍ତାଃ ମୋହଜାଲସମାବୃତାଃ କାମଭୋଗେଷୁ ପ୍ରସକ୍ତାଃ ଅଶୁଚୌ ନରକେ ପତନ୍ତି । ୧୬ ।

ଟୀକା ।

ଏବମ୍ଭୂତା ଯତ୍ ପ୍ରାପ୍ନୁବନ୍ତି ତଚ୍ଛୃଣୁ, ଅନେକେତି । ଅନେକେଷୁ ମନୋରଥେଷୁ ପ୍ରବୃତ୍ତଂ ଚିତ୍ତଂ ଅନେକଚିତ୍ତଂ ତେନ ବିଭ୍ରାନ୍ତା ବିକ୍ଷିପ୍ତାଃ ତେନୈବ ମୋହମୟେନ ଜାଲେନ ସମାବୃତା ମତ୍ସ୍ୟା ଇବ ସୂତ୍ରମୟେନ ଜାଲେନ ସନ୍ଦିତାଃ, ଏବ କାମଭୋଗେଷୁ ପ୍ରସକ୍ତା ଅଭିନିବିଷ୍ଟାଃ ସନ୍ତୋଽଶୁଚୌ କଶ୍ମଳେ ନରକେ ପତନ୍ତି । ୧୬ ।

ପଦବ୍ୟାଖ୍ୟା ।

ଅନେକଚିତ୍ତବିଭ୍ରାନ୍ତାଃ—ଅନେକ ବିଷୟରେ ଚିତ୍ତ ପ୍ରବୃତ୍ତ ହେବାରୁ ଭ୍ରମଯୁକ୍ତ, ମୋହଜାଲସମାବୃତାଃ—ଅଜ୍ଞାନରୂପ ଜାଲରେ ସମ୍ପୂର୍ଣ୍ଣ ବେଷ୍ଟିତ, ପ୍ରସକ୍ତାଃ—ଆସକ୍ତ, କାମଭୋଗେଷୁ—କାମ୍ୟପଦାର୍ଥର ଭୋଗ ବିଷୟରେ, ପତନ୍ତି—ପଡନ୍ତି, ନରକେଽଶୁଚୌ—ଅପବିତ୍ର ନରକରେ ଅର୍ଥାତ୍ ରୌରବାଦି କଦର୍ଯ୍ୟ ନରକରେ । ୧୬ ।

ଅନୁବାଦ ।

ଅନେକ ବିଷୟରେ ବିଚଳିତଚିତ୍ତ ଅଜ୍ଞାନରୂପ ଜାଲଦ୍ୱାରା ସମ୍ପୂର୍ଣ୍ଣ ବେଷ୍ଟିତ ଓ କାମ୍ୟ ପଦାର୍ଥର ଭୋଗ୍ୟ ବିଷୟରେ ଆସକ୍ତ ବ୍ୟକ୍ତିମାନେ, କୁତ୍ସିତ ନରକରେ ପଡ଼ନ୍ତି । ୧୬ ।

ବିଶଦବ୍ୟାଖ୍ୟା ।

ଅସୁର ସ୍ୱଭାବର ପୁରୁଷମାନେ ନାନାପ୍ରକାର ବିଷୟରେ ଚିତ୍ତ ସମର୍ପଣ କରିବାରୁ ସର୍ବଦା ଭ୍ରମପ୍ରମାଦପୂର୍ଣ୍ଣ ହୁଅନ୍ତି, ସେମାନଙ୍କର ଭ୍ରାନ୍ତିର ଅନ୍ୟ ଗୋଟିଏ କାରଣ ଏହି, ଯେ ସେମାନେ ସର୍ବଦା ମୋହରୂପ ଜାଲରେ ବେଷ୍ଟିତ ଥାନ୍ତି । ଯେପରି ସୂତ୍ରମୟ ଜାଲରେ ପଡ଼ିଥିବା ମତ୍ସ୍ୟାଦିଙ୍କର ସ୍ୱାଧୀନତା ନ ଥାଏ, ସେମାନେ ଯେପରି ଜାଲ ପକାଇଥିବା ବ୍ୟକ୍ତିର ଅଧୀନ ହୁଅନ୍ତି, ସେହିପରି ମୋହରୂପ ଜାଲରେ ବେଷ୍ଟିତ ହୋଇ ଅସୁରସ୍ୱଭାବର ଲୋକମାନେ, ବିଷୟବାସନାର ଅଧୀନ ହୁଅନ୍ତି ଓ ସେହି କାରଣରୁ ଭ୍ରାନ୍ତିଯୁକ୍ତ ହୁଅନ୍ତି । ପୁଣି ବିଷୟଭୋଗ ବିଷୟରେ ସର୍ବଦା ଅତ୍ୟନ୍ତ ଆସକ୍ତ ହେବାରୁ ସେମାନେ କ୍ରମେ୨ ନାନାପ୍ରକାର ପାପ କରି ଅବଶେଷରେ ରୌରବ ଓ ବୈତରଣୀ ପ୍ରଭୃତି କୁତ୍ସିତ ଅର୍ଥାତ୍ ମଳ, ମୂତ୍ର, ଶ୍ଳେଷ୍ମା ଓ ରୁଧିରାଦି ପୂର୍ଣ୍ଣ ନରକରେ ପଡ଼ନ୍ତି

ଫଳକଥା ଏହି କି ଅଜ୍ଞାନାବୃତ ହେବାରୁ ସେମାନେ ଭ୍ରମଯୁକ୍ତ ହୋଇ ବିଷୟଭୋଗ-

Digitized by PPRACHIN, SOA

ରେ ନିତାନ୍ତ ଆସକ୍ତ ହୁଅନ୍ତି ଓ ତଦ୍ୱାରା ନାନାପ୍ରକାର ପାପ ସଞ୍ଚିତ ହେବାରୁ ତାହାର ଫଳ ଭୋଗପାଇଁ ମହା ନରକରେ ପତିତ ହୁଅନ୍ତି । ୧୬ ।

ଶ୍ଳୋକଃ ।

ଆତ୍ମସମ୍ଭାବିତାଃ ସ୍ତବ୍ଧା, ଧନମାନମଦାନ୍ୱିତାଃ ।
ଯଜନ୍ତେ ନାମଯଜ୍ଞୈସ୍ତେ, ଦମ୍ଭେନାବିଧିପୂର୍ବକଂ । ୧୭ ।

ଅନ୍ୱୟଃ ।

ଆତ୍ମସମ୍ଭାବିତାଃ ସ୍ତବ୍ଧାଃ ଧନ-ମାନ-ମଦାନ୍ୱିତାଃ ତେ ଦମ୍ଭେନ ଅବିଧିପୂର୍ବକଂ ନାମଯଜ୍ଞୈଃ ଯଜନ୍ତେ । ୧୭ ।

ଟୀକା ।

ଯକ୍ଷ୍ୟ ଇତି ଚ ଯତ୍ତେଷାଂ ମନୋରଥ ଉକ୍ତଃ ସ କେବଲଂ ଦମ୍ଭାହଂକାରାଦିପ୍ରଧାନ ଏବ ନ ତୁ ସାତ୍ତ୍ୱିକ ଇତ୍ୟଭିପ୍ରାୟେଣାହ । ଆତ୍ମେତି ଦ୍ୱାଭ୍ୟାଂ । ଆତ୍ମନୈବ ସମ୍ଭାବିତାଃ ପୂଜ୍ୟତାଂ ନୀତାଃ ନ ତୁ ସାଧୁଭିଃ କୈଶ୍ଚିତ୍ ଅତଏବ ସ୍ତବ୍ଧା ଅନମ୍ରାଃ ଧନେନ ଯୋ ମାନୋ ମଦଶ୍ଚ ତାଭ୍ୟାଂ ସମନ୍ୱିତାଃ ସନ୍ତଃ ତେ, ନାମମାତ୍ରେଣ ଯେ ଯଜ୍ଞାସ୍ତେ ନାମଯଜ୍ଞାଃ ଯଦ୍ୱା ଦୀକ୍ଷିତଃ ସୋମଯାଜୀତ୍ୟେବମାଦି, ନାମମାତ୍ରପ୍ରସିଦ୍ଧୟେ ଯେ ଯଜ୍ଞୈର୍ଯଜନ୍ତେ, କଥଂ ? ଦମ୍ଭେନ, ନ ତୁ ଶ୍ରଦ୍ଧୟା, ଅବିଧିପୂର୍ବକଂ ଚ ଯଥା ଭବତି ତଥା । ୧୭ ।

ପଦବ୍ୟାଖ୍ୟା ।

ଆତ୍ମସମ୍ଭାବିତାଃ—ଆପଣାକୁ ଆପେ ବଡ ମଣିବା ବ୍ୟକ୍ତି, ସ୍ତବ୍ଧାଃ—ଅବିନୀତ—ଉଦ୍ଧତ, ଧନମାନ-ମଦାନ୍ୱିତାଃ—ଧନଜନିତ ଅଭିମାନ ଓ ଗର୍ବରେ ପୂର୍ଣ୍ଣ ହୋଇ, ଯଜନ୍ତେ—ପୂଜା କରନ୍ତି, ନାମ ଯଜ୍ଞୈଃ—ନାମମାତ୍ର ଯଜ୍ଞଦ୍ୱାରା, ତେ—ସେମାନେ, ଦମ୍ଭେନ—ଅହଂକାରରେ, ଅବିଧିପୂର୍ବକଂ—ଶାସ୍ତ୍ରବିଧି ତ୍ୟାଗ କରି । ୧୭ ।

ଅନୁବାଦ ।

ଆପଣାକୁ ଆପେ ମର୍ଯ୍ୟାଦାବନ୍ତ ମଣି, ବିନୟରହିତ ଏବଂ ଧନଜନିତ ଅଭିମାନ ଆଉ ଗର୍ବରେ ପୂର୍ଣ୍ଣ ହୋଇ ଅସୁରସ୍ୱଭାବର ପୁରୁଷମାନେ, ଦମ୍ଭରେ ଶାସ୍ତ୍ରବିଧି ତ୍ୟାଗ କରି ନାମମାତ୍ରକ ଯଜ୍ଞ କରନ୍ତି । ୧୭ ।

ବିଶଦବ୍ୟାଖ୍ୟା ।

ସେହି ଅସୁରସ୍ୱଭାବ ପୁରୁଷମାନେ, ଆତ୍ମସମ୍ଭାବିତ ହୁଅନ୍ତି ଅର୍ଥାତ୍ ଆପେ୨ ମର୍ଯ୍ୟାଦାବନ୍ତ ବୋଲି କହି ବୁଲନ୍ତି, ମାତ୍ର କୌଣସି ଶ୍ରେଷ୍ଠ ବ୍ୟକ୍ତି ତାଙ୍କୁ କେବେହେଁ ମର୍ଯ୍ୟାଦା କରନ୍ତି ନାହିଁ । ପୁଣି ସେମାନେ 'ସ୍ତବ୍ଧ' ଅର୍ଥାତ୍ ଉଦ୍ଧତ—ବିନୟ ରହିତ ହୁଅନ୍ତି । ସେମାନଙ୍କର ନମ୍ରତା ନ ରହିବାର କାରଣ ଏହି, ଯେ ସେମାନେ 'ଧନମାନ-ମଦାନ୍ୱିତାଃ,' ଅର୍ଥାତ୍ ସେମାନଙ୍କର ସ୍ୱର୍ଣ୍ଣ ରୌପ୍ୟ ମଣି-ମୁକ୍ତାଦି ଓ ପଶୁ ଭୂମି ପ୍ରଭୃତି ଅନେକ ଦ୍ରବ୍ୟ ଥିବାରୁ ଆପଣାକୁ ଅତିଶୟ ଶ୍ରେଷ୍ଠ ବୋଲି ମନେ କରନ୍ତି ଏବଂ ତାଙ୍କ ଅପେକ୍ଷା ଆଉ କେହି ପୂଜନୀୟ ନାହାନ୍ତି ଏହି ମନେ କରି ଆପଣାର ଗୁରୁଜନଙ୍କ ପ୍ରତି ମଧ୍ୟ ଅନାସ୍ଥା ପ୍ରକାଶ କରନ୍ତି । ସେମାନେ ଆପଣାର ଶ୍ରେଷ୍ଠତାକୁ ଲୋକସମାଜରେ ବିଖ୍ୟାତ କରିବାକୁ ଯେଉଁ ଯାଗାଦି କରନ୍ତି, ତାହା ନାମମାତ୍ର ଯଜ୍ଞ ଅଟେ । କାହିଁକି ନା ବେଦାଦି ଶାସ୍ତ୍ରରେ ଯଜ୍ଞାଦି ପାଇଁ ଯେ ପ୍ରକାର ବ୍ରାହ୍ମଣ, ଯେପରି ଉପକରଣ ଓ

ହୋମ, ମନ୍ତ୍ର, ବଳ ଓ ଦକ୍ଷିଣାଦ ବଷୟରେ ଯେଉଁ ସବୁ ନିୟମ ବା ବିଧି ଅଛି, ସେ ବିଧି ଅନୁସାରେ ନ କର ଅପଣା ମନ ଅନୁସାରେ କରନ୍ତି । ସେହି ନାମମାତ୍ର ଯଜ୍ଞ, ପୁଣି ଶ୍ରଦ୍ଧାରେ ବା ଭକ୍ତିରେ ନ କର ଦମ୍ଭରେ ଅର୍ଥାତ୍ ଅନ୍ତରକ ଧର୍ମଭାବ ରହିତ ହୋଇ ବାହାରେ ଅପଣାକୁ ଧର୍ମିଷ୍ଠ ବୋଲ ପରଚୟ ଦେବାକୁ ଅନୁଷ୍ଠାନ କରନ୍ତି । ୧୭ ।

### ଶ୍ଳୋକଃ ।

* ଅହଙ୍କାରଂ ବଳଂ ଦର୍ପଂ, କାମଂ କ୍ରୋଧଂ ଚ ସଂଶ୍ରିତାଃ ।
ମାମାତ୍ମପରଦେହେଷୁ, ପ୍ରଦ୍ୱିଷନ୍ତୋଽଭ୍ୟସୂୟକାଃ । ୧୮ ।

### ଅନ୍ୱୟଃ ।

ଅହଙ୍କାରଂ, ବଳଂ, ଦର୍ପଂ, କାମଂ ଚ କ୍ରୋଧଂ ସଂଶ୍ରିତାଃ ଆତ୍ମପରଦେହେଷୁ ମାଂ ପ୍ରଦ୍ୱିଷନ୍ତଃ, ଅଭ୍ୟସୂୟକାଃ (ଯଜନ୍ତେ) । ୧୮ ।

### ଟୀକା ।

ଅବଧ୍ୟପୂର୍ବବତ୍ତ୍ୱମେବ ପ୍ରପଞ୍ଚୟତ । ଅହଙ୍କାରମିତ । ଅନ୍ୟାନ୍ୟାଧିକାନ୍ ସଂଶ୍ରିତାଃ ସନ୍ତ ଆତ୍ମପରଦେହେଷୁ ଆତ୍ମଦେହେ ପରଦେହେଷୁ ଚ ଚିଦଂଶେନ ସ୍ଥିତଂ ମାଂ ପ୍ରଦ୍ୱିଷନ୍ତୋ ଯଜନ୍ତେ ଦମ୍ଭଯଜ୍ଞେଷୁ ଶ୍ରଦ୍ଧାୟା ଅଭାବାଦାତ୍ମନୋ ବୃଥୈବ ପୀଡା ଭବତ ତଥା ପଶ୍ୱାଦୀନାମପ୍ୟବଧିନା ହିଂସାୟାଂ ଚୈତନ୍ୟଦ୍ରୋହ ଏବାବଶିଷ୍ୟତ ଇତ ପ୍ରଦ୍ୱିଷନ୍ତ ଇତ୍ୟୁକ୍ତଂ ଅଭ୍ୟସୂୟକାଃ ସନ୍ମାର୍ଗବର୍ତ୍ତିନାଂ ଗୁଣେଷୁ ଦୋଷାରୋପକାଃ । ୧୮ ।

### ପଦବ୍ୟାଖ୍ୟା ।

ଅହଙ୍କାରଂ—ଅଭିମାନ, ବଳଂ—(ଶାରୀରିକ) ପରାକ୍ରମ, ଦର୍ପଂ—ଗର୍ବ, କାମଂ—କାମନା—ବାସନା କ୍ରୋଧଂ ଚ—ଓ କୋପକୁ, ସଂଶ୍ରିତାଃ—ଆଶ୍ରୟ କର, ମାଂ—ଆମ୍ଭଙ୍କୁ, ଆତ୍ମପରଦେହେଷୁ—ନଜ ଶରୀରରେ, ଓ ପର ଦେହରେ, ପ୍ରଦ୍ୱିଷନ୍ତଃ—ହିଂସା କରନ୍ତି—ପୀଡା ଦଅନ୍ତି, ଅଭ୍ୟସୂୟକାଃ—ପର ନିନ୍ଦାକାରୀ । ୧୮ ।

### ଅନୁବାଦ ।

ଅହଙ୍କାର, ବଳ, ଦର୍ପ, କାମ ଓ କ୍ରୋଧ ଏମାନ ଆଶ୍ରୟ କର ନଜ ଦେହରେ ଓ ପର ଦେହରେ ଆମ୍ଭଙ୍କୁ ଦ୍ୱେଷ ଓ ନିନ୍ଦା କରନ୍ତି । ୧୮ ।

### ବିଶଦବ୍ୟାଖ୍ୟା ।

ଅପଣାର ଯେଉଁ ଗୁଣ ନାହିଁ, ସେହି ଗୁଣ ଥିବାର ଅଭିମାନକୁ ଏ ସ୍ଥଳରେ 'ଅହଙ୍କାର' ବୋଲ କୁହା ଯାଇଅଛି । ଅନ୍ୟ ବ୍ୟକ୍ତିକୁ ପରାଭବ କରିବା ଭଳି ଶାରୀରିକ ସାମର୍ଥ୍ୟ, ଏ ସ୍ଥଳେ 'ବଳ' ନାମରେ ଗୃହୀତ ହୋଇଅଛି । ଅପଣା ଅପେକ୍ଷା ପୂଜ୍ୟତର ବ୍ୟକ୍ତିଙ୍କୁ ଉଲ୍ଲଙ୍ଘନ କରିବାରୂପ ଦୋଷକୁ 'ଦର୍ପ' ବୋଲାଯାଏ । କୌଣସି ପ୍ରକାରେ ଅପେ ଲାଭବାନ୍ ହେବା, ଏପରି ଇଚ୍ଛାର ନାମ 'କାମନା' ଓ ପରର ଅନିଷ୍ଟ ବାଞ୍ଛାକରିବାର ନାମ କ୍ରୋଧ ଅଟେ । 'କ୍ରୋଧଂ ଚ' ଏହି ପଦରେ ଥିବା 'ଚ' କାରଦ୍ୱାରା ପରଶ୍ରୀକାତରତା ପ୍ରଭୃତି ଦୋଷ ମଧ୍ୟ ଉପଲକ୍ଷିତ ହେଉଅଛି ।

ଅସୁରସ୍ୱଭାବ ବ୍ୟକ୍ତିମାନେ ଅହଙ୍କାର, ବଳ, ଦର୍ପ, କାମ, କ୍ରୋଧ ଓ ପରଶ୍ରୀକାତରତା ପ୍ରଭୃତି ଦୋଷଯୁକ୍ତ ହୁଅନ୍ତି; ସୁତରାଂ ସେମାନଙ୍କର ନରକ ଗତି ହୁଏ ।

Digitized by PPRACHIN, SOA

'ଭଗବଦ୍‌ଭକ୍ତି ବଳରେ ସେମାନଙ୍କର କି ସଦ୍‌ଗତି ହେବ ନାହିଁ ?' ଅର୍ଜ୍ଜୁନଙ୍କର ଏ ପ୍ରକାର ଆଶଙ୍କା ନିବାରଣପାଇଁ ଶ୍ରୀ ଭଗବାନ୍ କହୁଅଛନ୍ତି, ଯେ ସେ ଆସୁରସ୍ୱଭାବର ଲୋକମାନେ ଆମ୍ଭଙ୍କୁ (ଆତ୍ମପରଦେହେଷୁ) ନିଜ ଓ ପର ଦେହରେ ଦ୍ୱେଷ କରନ୍ତି । ଅର୍ଥାତ୍ ସେମାନଙ୍କ ନିଜ ଶରୀରରେ ଓ ତାଙ୍କର ପୁତ୍ରକଳତ୍ରାଦିଙ୍କ ଦେହରେ ବୁଦ୍ଧିର ଓ କର୍ମାଦିର ସାକ୍ଷୀସ୍ୱରୂପରେ ଆମ୍ଭେ ବିରାଜିତ ଅଛୁଁ । ଆମ୍ଭର ଆଜ୍ଞାସ୍ୱରୂପ ବେଦୋକ୍ତ ଓ ସ୍ମାର୍ତ୍ତ କର୍ମାଦି ଆପେ ଅନୁଷ୍ଠାନ କରନ୍ତି ନାହିଁ କି ପୁତ୍ର କଳତ୍ରାଦିଙ୍କୁ କରାଇ ଦିଅନ୍ତି ନାହିଁ । ସୁତରାଂ ଆଜ୍ଞାଲଙ୍ଘନଦ୍ୱାରା ଆମ୍ଭର ଦ୍ୱେଷ କରନ୍ତି । ଯେହେତୁ ରାଜାଜ୍ଞା ଲଙ୍ଘନକାରମାନେ ଯେ 'ରାଜଦ୍ରୋହୀ' ଅଥବା 'ରାଜଦ୍ୱେଷୀ' ଅଟନ୍ତି, ଏହା ସବତ୍ର ପ୍ରସିଦ୍ଧ ଅଛି ।

ଅଥବା ସେମାନେ ଶ୍ରଦ୍ଧାପୂର୍ବକ ଯଜ୍ଞାଦି ଅନୁଷ୍ଠାନ ନ କରି ଦମ୍ଭପୂର୍ବକ କରୁଥିବାରୁ ତାଙ୍କର ଫଳ କିଛି ହୁଏ ନାହିଁ, କେବଳ-ଶାରୀରିକ କ୍ଲେଶ ମାତ୍ର ସାର ହୁଏ ଓ ତାହାଙ୍କ ଯଜ୍ଞରେ ଯେଉଁ ପଶୁ ବଧ କରାଯାଏ, ସେମାନଙ୍କର ସ୍ୱର୍ଗାଦି ଲାଭ ନ ହୋଇ କେବଳ ହତ୍ୟା ମାତ୍ର ସାର ହୁଏ । ସୁତରାଂ ଆସୁର ସ୍ୱଭାବ-ବ୍ୟକ୍ତିଙ୍କର ନିଜ ଦେହରେ ଓ ପଶ୍ୱାଦିଙ୍କ (ପର) ଦେହରେ ଆତ୍ମାରୂପରେ ବିଦ୍ୟମାନ, ଯେ ଆମ୍ଭେ, ଆମ୍ଭପ୍ରତି ଦ୍ୱେଷ ଆଚରଣ କରାଯାଏ ।

ଅଥବା ଆତ୍ମଦେହ ଅର୍ଥାତ୍ ରାମ କୃଷ୍ଣ ପ୍ରଭୃତି ଅବତାରରେ ଆମ୍ଭର ଯେଉଁ ଦେହ, ଓ ପରଦେହ ଅର୍ଥାତ୍ ବିଭୀଷଣ, ହନୁମାନ୍ ଓ ପ୍ରହ୍ଲାଦ ପ୍ରଭୃତି ଭକ୍ତଦେହ, ତହିଁରେ ସେମାନେ ଆମ୍ଭର ଦ୍ୱେଷ କରନ୍ତି । କାହିଁକି ନା ଆମ୍ଭଙ୍କୁ ଈଶ୍ୱରାବତାର ବୋଲି ସ୍ୱୀକାର ନ କରି କେବଳ ସାମାନ୍ୟ ମନୁଷ୍ୟ ଜ୍ଞାନରେ ଅବଜ୍ଞା କରନ୍ତି ଓ ଆମ୍ଭର ବିଶେଷ ବିଭୂତି ପ୍ରକାଶର ସ୍ଥାନ, ଯେ ଭକ୍ତଦେହ, ତାହାକୁ ସାମାନ୍ୟ ମନୁଷ୍ୟଜ୍ଞାନରେ ଭଣ୍ଡ, ନିର୍ଲ୍ଲଜ୍ଜ ଓ ମୂର୍ଖ ଇତ୍ୟାଦି ବଚନ ପ୍ରୟୋଗ କରି ଆମ୍ଭର ଅବଜ୍ଞା କରନ୍ତି । (ଏକଥା ନବମ ଅଧ୍ୟାୟର ୧୧ ଶ୍ଳୋକରେ) "ଅବଜାନନ୍ତି ମାଂ ମୂଢ଼ା ମାନୁଷୀଂ ତନୁମାଶ୍ରିତାଃ" ଇତ୍ୟାଦି ବଚନରେ ବୁଝା ଯାଇଅଛି) । ଅଥବା (ଆତ୍ମା ଏବ ପରୋଯେଷାଂ ତେ, ତେଷାଂ ଦେହାଃ ତେଷୁ) ଅର୍ଥାତ୍ ଆତ୍ମପରାୟଣ ଆତ୍ମଜ୍ଞାନ ସାଧୁମାନଙ୍କ ଦେହରେ ( ସେମାନଙ୍କୁ ଦ୍ୱେଷ କରିବା ଦ୍ୱାରା ) ଆମ୍ଭର ଶତ୍ରୁତା କରନ୍ତି ।

'ଅସୁରସ୍ୱଭାବର ଲୋକମାନଙ୍କୁ ଶିକ୍ଷାଗୁରୁ ଏସବୁ ବିଷୟ ଉତ୍ତମରୂପେ ବୁଝାଇ ଦେଲେ, ସେମାନେ କି ଭକ୍ତି କରନ୍ତେ ନାହିଁ ?' ଅର୍ଜ୍ଜୁନଙ୍କର ଏପରି ଆଶଙ୍କା ନିବାରଣ ପାଇଁ ଶ୍ରୀଭଗବାନ୍ କହିଲେ, ଯେ ସେମାନେ 'ଅଭ୍ୟସୂୟକାଃ' ଅର୍ଥାତ୍ ପରନିନ୍ଦାକାରୀ ଅଟନ୍ତି । ମନେକର ଶିକ୍ଷାଗୁରୁ ଶ୍ରୁତିର ପ୍ରମାଣ ଦେଇ କହିଲେ, ଯେ 'ସମସ୍ତଙ୍କ ପ୍ରତି ଦୟା କରିବା ଉଚିତ' କିନ୍ତୁ ଆସୁର ସ୍ୱଭାବ ଶିଷ୍ୟ ମନେ କଲେ, କେବଳ ଆମ୍ଭଠାରୁ ଅର୍ଥ ପ୍ରାପ୍ତି ଇଚ୍ଛାରେ ଆମ୍ଭଙ୍କ ପ୍ରବଞ୍ଚନା କରିବାକୁ ଏପରି କହୁଅଛନ୍ତି । ଏପରି ବିଶ୍ୱାସ ହେବାରୁ ସେ, ଶ୍ରଦ୍ଧାହୀନ ହୋଇ ଉପଦେଶ ଗ୍ରହଣ କରନ୍ତି ନାହିଁ ଓ ତାଙ୍କର ଅଶ୍ରଦ୍ଧା ଦେଖି ଗୁରୁ ମଧ୍ୟ ଆଉ ଉପଦେଶ ଦିଅନ୍ତି ନାହିଁ । ଏହିସବୁ କାରଣରୁ ଅସୁର ପ୍ରକୃତିର ଲୋକମାନଙ୍କର କଦାପି ଭକ୍ତି ହୁଏ ନାହିଁ । ସୁତରାଂ ସଦ୍‌ଗତି ହୁଏ ନାହିଁ । ୧୮ ।

Digitized by PPRACHIN, SOA

ଶ୍ଳୋକଃ ।

* ତାନହଂ ଦ୍ୱିଷତଃ କ୍ରୂରାନ୍, ସଂସାରେଷୁ ନରାଧମାନ୍ ।
କ୍ଷିପାମ୍ୟଜସ୍ରମଶୁଭାନାସୁରୀଷ୍ୱେବ ଯୋନିଷୁ ॥ ୧୯ ॥

ଅନ୍ୱୟଃ ।

ଦ୍ୱିଷତଃ, କ୍ରୂରାନ୍, ନରାଧମାନ୍, ତାନ୍ ଅଶୁଭାନ୍, ସଂସାରେଷୁ ଆସୁରୀଷୁ ଏବ ଯୋନିଷୁ ଅହଂ ଅଜସ୍ରଂ କ୍ଷିପାମି । ୧୯ ।

ଟୀକା ।

ତେଷାଂ ଚ କଦାଚିଦପ୍ୟାସୁରସ୍ୱଭାବ-ପ୍ରଚ୍ୟୁତିର୍ନ ଭବତୀତ୍ୟାହ । ତାନିତି ଦ୍ୱାଭ୍ୟାଂ । ତାନହଂ ମାଂ ଦ୍ୱିଷତଃ କ୍ରୂରାନ୍ ସଂସାରେଷୁ ଜନ୍ମମୃତ୍ୟୁମାର୍ଗେଷୁ ତତ୍ରାପ୍ୟାସୁରୀଷ୍ୱେବାତିକ୍ରୂରାସୁ ବ୍ୟାଘ୍ର-ସର୍ପାଦି-ଯୋନିଷୁ ଅଜସ୍ରମନବରତଂ କ୍ଷିପାମି ତେଷାଂ ପାପକର୍ମଣାଂ ତାଦୃଶଂ ଫଳଂ ଦଦାମୀତ୍ୟର୍ଥଃ । ୧୯ ।

ପଦବ୍ୟାଖ୍ୟା ।

ତାନ୍—ସେହି, ଅହଂ—ଅମ୍ଭେ, ଦ୍ୱିଷତଃ—ଦ୍ୱେଷକାରୀ, କ୍ରୂରାନ୍—ନିଷ୍ଠୁର, ସଂସାରେଷୁ—ଜନ୍ମ ମରଣର ମାର୍ଗ ସ୍ୱରୂପ ସଂସାରରେ, ନରାଧମାନ୍—ନରମଧ୍ୟରେ ଅଧମ, କ୍ଷିପାମି—ନିକ୍ଷେପ କରୁଁ, ଅଜସ୍ରଂ—ସର୍ବଦା, ଅଶୁଭାନ୍—ପାପିମାନଙ୍କୁ, ଆସୁରୀଷୁ ଏବ ଯୋନିଷୁ—କେବଳ ସର୍ପ ବ୍ୟାଘ୍ରାଦି ଆସୁରୀ ଯୋନିରେ । ୧୯ ।

ଅନୁବାଦ ।

ସେହି ଦ୍ୱେଷକାରୀ, ନିଷ୍ଠୁର, ନରାଧମ ପାପିମାନଙ୍କୁ ଅମ୍ଭେ ସଂସାରରେ କେବଳ (ସର୍ପ ବ୍ୟାଘ୍ରାଦି) ଆସୁରୀ ଯୋନିରେ ସର୍ବଦା ନିକ୍ଷେପ କରୁଁ । ୧୯ ।

ବିଶଦବ୍ୟାଖ୍ୟା ।

ଅନ୍ୟ ପରଦେହରେ ଭଗବତ୍ ଦ୍ୱେଷକାରୀ, ପ୍ରାଣିହିଂସାପରାୟଣ, ସର୍ବଦା ବେଦାଦି ଶାସ୍ତ୍ରନିଷିଦ୍ଧ କର୍ମପରାୟଣ, ଅତଏବ ମନୁଷ୍ୟ ମଧ୍ୟରେ ଅତି ନିନ୍ଦିତ, ଯେ ଆସୁରସ୍ୱଭାବର ଲୋକମାନେ, ସେମାନଙ୍କୁ ଅମ୍ଭେ ଏହି ସଂସାରରେ ବାରମ୍ବାର ଭ୍ରମଣ କରାଉଁ । ଅର୍ଥାତ୍ ସେମାନଙ୍କ କର୍ମର ଫଳସ୍ୱରୂପ ନାନାପ୍ରକାର ନୀଚ ଯୋନିରେ ଜାତ କରାଉଁ । ସେମାନେ ହିଂସା ପରାୟଣ ଥାନ୍ତି ବୋଲି ତାହାଙ୍କର ସ୍ୱଭାବ ଅନୁରୂପ ସର୍ପ ବା ବ୍ୟାଘ୍ରାଦି ହିଂସ୍ରକ ଜନ୍ତୁ ଯୋନିରେ ସେମାନେ ଜନ୍ମ ଗ୍ରହଣ କରନ୍ତି । ଶ୍ରୁତିରେ ପ୍ରମାଣ ଅଛି, ଯେ (ଅଥ କପୂୟଚରଣା ଅଭ୍ୟାଶୋହ ଯତେ କପୂୟାଂ ଯୋନିମାପଦ୍ୟେରନ୍ ଶ୍ୱଯୋନିଂ ବା ଶୂକରଯୋନିଂ ବା ଚଣ୍ଡାଳଯୋନିଂ ବା ଇତି ।) ଅର୍ଥାତ୍ ଶାସ୍ତ୍ର ନିଷିଦ୍ଧ କର୍ମ କରିବା ବ୍ୟକ୍ତିମାନେ ଶୀଘ୍ର ନୀଚଯୋନି ପ୍ରାପ୍ତ ହୁଅନ୍ତି । କେବେ କୁକୁର ଯୋନି, କେବେ ଶୂକର ଯୋନି, କେବେ ବା ଚଣ୍ଡାଳ ଯୋନି ପ୍ରାପ୍ତ ହୁଅନ୍ତି । ଇତ୍ୟାଦି ।

ସଂସାରରେ ଯାହା କିଛି ବୈଷମ୍ୟ ଦେଖାଯାଏ ଅର୍ଥାତ୍ ଜଣେ ଧନୀ, ଅପର ଦରିଦ୍ର, କେହି ସୁସ୍ଥ କେହିବା ରୋଗୀ, କିଏ ସୁନ୍ଦର କିଏବା କୁତ୍ସିତ, ଏକ ଧର୍ମାତ୍ମା ଅନ୍ୟ ପାପାତ୍ମା, କୌଣସି ବ୍ୟକ୍ତି ସୁଖୀ, ଅପର ବ୍ୟକ୍ତି ଦୁଃଖୀ, ଇତ୍ୟାଦି ଯେତେ ପ୍ରକାର ବୈଷମ୍ୟ ଦେଖାଯାଏ, ସେଥିର ଏକମାତ୍ର କାରଣ ଜୀବର ପୂର୍ବ ଜନ୍ମାର୍ଜିତ କର୍ମ ଫଳ । ଅର୍ଥାତ୍ ଯେ, ଯେପରି କାମନା

କରିଥାଏ, ସେହି କାମନା, ତାହାର 'ଅଦୃଷ୍ଟ' ରୂପରେ ପରିଣତ ହୋଇ ତାହାକୁ ସେହିପରି ଦେହ, ଇନ୍ଦ୍ରିୟ ଓ ବୁଦ୍ଧି ଆଦି ପ୍ରଦାନ କରେ ଏବଂ ସେ, ଯେପରି କର୍ମ କରିଥାଏ, ସେହିପରି ଫଳ ଭୋଗ କରେ । ଯେଉଁ ବ୍ୟକ୍ତି ପୁଣ୍ୟ କର୍ମର ଅନୁଷ୍ଠାନ, ସତ୍ ପ୍ରବୃତ୍ତି ଓ ଭଗବାନଙ୍କଠାରେ ଭକ୍ତି କରିଥାଏ, ସେ ଉତ୍ତମ (ବ୍ରାହ୍ମଣାଦି) ଯୋନିରେ ଜାତ ହୋଇ ଭକ୍ତିପରାୟଣ ଓ ସୁଖୀ ହୁଏ । ଆଉ ଯେ, ଶାସ୍ତ୍ର ନିଷିଦ୍ଧ କର୍ମର ଅନୁଷ୍ଠାନ, ଅସତ୍ ପ୍ରବୃତ୍ତି ଓ ଭଗବାନଙ୍କଠାରେ ଦ୍ୱେଷ କରିଥାଏ, ସେ ଚଣ୍ଡାଳ ବା କୁକୁର ଅଥବା ବ୍ୟାଘ୍ର ସର୍ପାଦି ଯୋନିରେ ଜନ୍ମ ହୁଏ ଓ ପୁନର୍ବାର ମନ୍ଦକାର୍ଯ୍ୟ କରେ, ଯେଥିରେ ଆଉ ସନ୍ଦେହ ନାହିଁ, ଏ ଶ୍ଳୋକରେ ଶ୍ରୀଭଗବାନ୍ ଯେ 'ଆସୁରସ୍ୱଭାବର ଲୋକଙ୍କୁ ଆସୁରୀ ଯୋନିରେ ଜାତ କରାଉଁ' ବୋଲି କହିଲେ, ତାହାର ଅର୍ଥ, ଏହି, ଯେ ସେମାନେ କର୍ମର ଅନୁରୂପ ଫଳ ପ୍ରାପ୍ତ ହୁଅନ୍ତି, ଭଗବାନ୍ କେବଳ କର୍ମଫଳଦାତା ଅର୍ଥାତ୍ ନିୟମରକ୍ଷକମାତ୍ର । ୧୯ ।

ଶ୍ଳୋକଃ ।

ଆସୁରୀଂ ଯୋନିମାପନ୍ନା, ମୂଢ଼ା ଜନ୍ମନି ଜନ୍ମନି ।
ମାମପ୍ରାପ୍ୟୈବ କୌନ୍ତେୟ, ତତୋ ଯାନ୍ତ୍ୟଧମାଂ ଗତିଂ । ୨୦ ।

ଅନ୍ୱୟଃ ।

ହେ କୌନ୍ତେୟ! ଆସୁରୀଂ ଯୋନିଂ ଆପନ୍ନାଃ ମୂଢ଼ାଃ ଜନ୍ମନି ଜନ୍ମନି ମାଂ ଅପ୍ରାପ୍ୟ, ତତଃ ଅଧମାଂ ଏବ ଗତିଂ ଯାନ୍ତି । ୨୦ ।

ଟୀକା ।

କିଞ୍ଚ ଆସୁରୀମିତି । ମାମପ୍ରାପ୍ୟୈବେତ୍ୟେବକାରେଣ ମତ୍‌ପ୍ରାପ୍ତିଶଙ୍କାପି କୁତସ୍ତେଷାଂ ମତ୍‌ପ୍ରାପ୍ତ୍ୟୁପାୟଂ ସନ୍ମାର୍ଗମପ୍ରାପ୍ୟ ତତୋଽପ୍ୟଧମାଂ କୃମିକୀଟାଦିଗତିଂ ଯାନ୍ତୀତ୍ୟୁକ୍ତଂ, ଶେଷଂ ସ୍ପଷ୍ଟଂ । ୨୦ ।

ପଦବ୍ୟାଖ୍ୟା ।

ଆସୁରୀଂ ଯୋନିଂ—ଅସୁର ଯୋନିକୁ, ଆପନ୍ନାଃ—ପ୍ରାପ୍ତ, ମୂଢ଼ାଃ—ଅଜ୍ଞ—ମୂର୍ଖ, ଜନ୍ମନି ଜନ୍ମନି—ପ୍ରତି ଜନ୍ମରେ ମାଂ ଅପ୍ରାପ୍ୟ—ଆମ୍ଭଙ୍କୁ ପ୍ରାପ୍ତ ନ ହୋଇ, ଏବ—କେବଳ, କୌନ୍ତେୟ—ହେ କୁନ୍ତୀପୁତ୍ର ଅର୍ଜୁନ!, ତତଃ—ସେଠାରୁ, ଯାନ୍ତି—ପ୍ରାପ୍ତ ହୁଅନ୍ତି, ଅଧମାଂ ଗତିଂ—ନୀଚ ଗତିକୁ । ୨୦ ।

ଅନୁବାଦ ।

ହେ କୌନ୍ତେୟ! ଆସୁରୀ ଯୋନିକୁ (ଥରେ) ପ୍ରାପ୍ତ ହେଲେ, ମୂଢ଼ ହୋଇ, ଜନ୍ମ ଜନ୍ମାନ୍ତରରେ ଆଉ ଆମ୍ଭଙ୍କୁ ପାଇ ପାରନ୍ତି ନାହିଁ ଓ ସେଠାରୁ (କ୍ରମେ) ନୀଚ ଯୋନିକୁ ପ୍ରାପ୍ତ ହୁଅନ୍ତି । ୨୦ ।

ବିଶଦବ୍ୟାଖ୍ୟା ।

ଶ୍ରୀ ଭଗବାନ୍ କହିଲେ, ହେ କୌନ୍ତେୟ! ଯେଉଁ ବ୍ୟକ୍ତି ଥରେ ଆସୁରୀ ଯୋନିରେ ଜାତ ହୁଏ ଅର୍ଥାତ୍ ବ୍ୟାଘ୍ର ସର୍ପାଦି ଶରୀର ଧାରଣ କରେ, ତମୋଗୁଣର ଆଧିକ୍ୟ ହେତୁରୁ ସେ, ଆଉ ଆମ୍ଭର ଆଜ୍ଞାସ୍ୱରୂପ ବେଦୋକ୍ତ କର୍ମାନୁଷ୍ଠାନର ଯୋଗ୍ୟ ହୋଇ ପାରେ ନାହିଁ,

ସୁତରାଂ ତାହାଠାରୁ ଅର୍ଥାତ୍ ବ୍ୟାଘ୍ର ସର୍ପାଦି ଯୋନିରୁ ମଧ୍ୟ ନିକୃଷ୍ଟତର କୀଟ ପତଙ୍ଗାଦି ଯୋନି ଅଥବା ସ୍ଥାବର ଯୋନି ପ୍ରାପ୍ତ ହୁଏ ।

ଏ ଶ୍ଳୋକରେ 'ମାଂ ଅପ୍ରାପ୍ୟ' ଏହି ବାକ୍ୟର ସରଳ ଅର୍ଥ 'ଆମ୍ଭଙ୍କୁ ପ୍ରାପ୍ତ ନ ହୋଇ', ମାତ୍ର ଅସୁରସ୍ୱଭାବ ବ୍ୟକ୍ତିଙ୍କର ଭଗବତ୍ ପ୍ରାପ୍ତିର କୌଣସି ସମ୍ଭାବନା ନ ଥିବା ସ୍ଥଳେ ଏଠାରେ ଏହି ନିଷେଧ ବାକ୍ୟର କୌଣସି ସାର୍ଥକତା ଦେଖା ଯାଉ ନାହିଁ । ସେଥିପାଇଁ ଟୀକାକାରମାନେ 'ମାଂ ଅପ୍ରାପ୍ୟ' ଏହି ବାକ୍ୟର ଏପରି ଲକ୍ଷଣା ଅର୍ଥ କରିଅଛନ୍ତି କି, 'ଆମ୍ଭଦ୍ୱାରା ଉପଦିଷ୍ଟ ବେଦୋକ୍ତ ମାର୍ଗର ଅଯୋଗ୍ୟ ହୋଇ ଅଥବା ଆମ୍ଭଙ୍କୁ ପାଇବାର ଉପାୟସ୍ୱରୂପ ଏତାଦୃଶ ମନୁଷ୍ୟଦେହ ପ୍ରାପ୍ତ ନ ହୋଇ' ସେମାନେ କ୍ରମେ ନିକୃଷ୍ଟ ଯୋନିରେ ଜାତ ହୁଅନ୍ତି ।

ଫଳକଥା ଏହି କି ମନୁଷ୍ୟଦେହ ପ୍ରାପ୍ତ ହୋଇଥିବା କାଳରେ, ଅସୁରସ୍ୱଭାବ ପରିହାର କରି ଦୈବୀସମ୍ପତ୍ ପାଇବାକୁ ଯତ୍ନ କରିବା ସମସ୍ତଙ୍କର ଉଚିତ । ଯେହେତୁ ଏପରି ପ୍ରମାଣ ଅଛି, ଯେ "ଇହୈବ ନରକବ୍ୟାଧେଶ୍ଚିକିତ୍ସାଂ ନ କରୋତି ଯଃ । ଗତ୍ୱା ନିରୌଷଧଂ ସ୍ଥାନଂ ସରୁଜଃ କିଂ କରିଷ୍ୟତି ।" ଅର୍ଥାତ୍ ଏହି ମନୁଷ୍ୟ ଲୋକରେ ଥାଇଁ ନରକରୂପ ବ୍ୟାଧିରୁ ମୁକ୍ତ ହେବାପାଇଁ ଯେଉଁ ଲୋକ କର୍ମରୂପ ଔଷଧଦ୍ୱାରା ଚିକିତ୍ସା ନ କରେ, ସେ କର୍ମାଧିକାରୀ ମନୁଷ୍ୟଲୋକରୁ କର୍ମରୂପ ଔଷଧଶୂନ୍ୟ ପରଲୋକକୁ ଗଲେ, ଯେଉଁଠାରେ କି ଜର୍ମଦ୍ୱାରା ଔଷଧ କରିବାର ଅଧିକାର ନାହିଁ, ସେଠାରେ ନରକଭୋଗରୂପ ରୋଗରୁ ଆଉ ପରିତ୍ରାଣ ପାଇବ କିପରି ?

ଅତଏବ ହେ କୌନ୍ତେୟ ! ତୁମ୍ଭେ ଏହି ମନୁଷ୍ୟଲୋକରେ ଥାଇ ଶାସ୍ତ୍ରୋକ୍ତ ବର୍ଣ୍ଣାଶ୍ରମିକ କର୍ମ ଯଥାବିଧି ପାଳନ କରି ବିଶୁଦ୍ଧ ଅନ୍ତଃକରଣ ହେବାକୁ ଯତ୍ନ କର । ୨୦ ।

ଶ୍ଳୋକଃ ।

* ତ୍ରିବିଧଂ ନରକସ୍ୟେଦଂ, ଦ୍ୱାରଂ ନାଶନମାତ୍ମନଃ ।
କାମଃ କ୍ରୋଧସ୍ତଥା ଲୋଭ, ସ୍ତସ୍ମାଦେତତ୍ତ୍ରୟଂ ତ୍ୟଜେତ୍ । ୨୧ ।

ଅନ୍ୱୟଃ ।

କାମଃ କ୍ରୋଧଃ ତଥା ଲୋଭଃ, ଇଦଂ ତ୍ରିବିଧଂ ନରକସ୍ୟ ଦ୍ୱାରଂ ଆତ୍ମନଃ ନାଶନଂ ତସ୍ମାତ୍ ଏତତ୍ ତ୍ରୟଂ (ମୁମୁକ୍ଷୁଃ) ତ୍ୟଜେତ୍ । ୨୧ ।

ଟୀକା ।

ଉକ୍ତାନାମାସୁରଦୋଷାଣାଂ ମଧ୍ୟେ ସକଳଦୋଷମୂଳଭୂତଂ ଦୋଷତ୍ରୟଂ ସର୍ବଥା ବର୍ଜନୀୟମିତ୍ୟାହ । ତ୍ରିବିଧମିତି । କାମଃ କ୍ରୋଧୋ ଲୋଭଶ୍ଚ ଇତୀଦଂ ତ୍ରିବିଧଂ ନରକସ୍ୟ ଦ୍ୱାରଂ ଅତଏବାତ୍ମନୋ ନାଶନଂ ନୀଚଯୋନିପ୍ରାପକଂ ତସ୍ମାଦେତତ୍ତ୍ରୟଂ ସର୍ବାତ୍ମନା ତ୍ୟଜେତ୍ । ୨୧ ।

ପଦବ୍ୟାଖ୍ୟା ।

ତ୍ରିବିଧଂ—ତିନି ପ୍ରକାର, ନରକସ୍ୟ—ନରକର, ଇଦଂ—ଏହି, ଦ୍ୱାରଂ—ପ୍ରବେଶମାର୍ଗ, ନାଶନମାତ୍ମନଃ—ଆତ୍ମାର ଅନିଷ୍ଟକାରକ ଅର୍ଥାତ୍ ନୀଚଯୋନି-ପ୍ରାପକ, କାମଃ କ୍ରୋଧଃ ତଥା ଲୋଭଃ—କାମନା, କ୍ରୋଧ ଓ ଲୋଭ,

Digitized by PPRACHIN, SOA

ତସ୍ମାତ—ସେହି ହେତୁରୁ, ଏତତ—ଏହି, ତ୍ରୟଂ—ତିନିକୁ, ତ୍ୟଜେତ—(ମୋକ୍ଷାଭିଳାଷୀ ବ୍ୟକ୍ତି) ପରିତ୍ୟାଗ କରିବେ । ୨୧ ।

ଅନୁବାଦ ।

କାମ, କ୍ରୋଧ ଓ ଲୋଭ ଏ ତିନିଟି ଆତ୍ମା-ବିନାଶର କାରଣ ଓ ନରକର ଦ୍ୱାର-ସ୍ୱରୂପ । ଅତଏବ (ମୁମୁକ୍ଷୁ ବ୍ୟକ୍ତି) ଏହି ତିନି ଦୋଷକୁ ପରିତ୍ୟାଗ କରିବେ । ୨୧ ।

ବିଶଦବ୍ୟାଖ୍ୟା ।

ପୂର୍ବେ ଅସୁର ସମ୍ପତ୍ତି ଯେତେ ପ୍ରକାର ବୋଲି ଲେଖାଅଛି, ସେ ସବୁ (ଅସୁରୀ ସମ୍ପତ୍ତି) ଯତ୍ନପୂର୍ବକ ତ୍ୟାଗ କରିବାକୁ ମନୁଷ୍ୟର ପରମାୟୁ ଅଧିକ ନାହିଁ, ତେବେ ତାହାଁରୁ ମୁକ୍ତି ପାଇବ କିପରି ? ଅର୍ଜୁନଙ୍କର ଏ ଆଶଙ୍କା ନିବାରଣ ପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ହେ ଅର୍ଜୁନ ! କାମ, କ୍ରୋଧ ଓ ଲୋଭ, ଏହି ତିନିଟି ସମସ୍ତ ଆସୁରୀ ସମ୍ପତ୍ତିର ମୂଳକାରଣ ଓ ବ୍ୟାଘ୍ର-ସର୍ପ ଓ ବୃଶ୍ଚିକାଦି ଯୋନିରେ ଜନ୍ମକାରକ ଅଟେ । ଏହି ତିନିଗୋଟି ରିପୁ ପ୍ରବଳ ହୋଇ ମନୁଷ୍ୟକୁ ସ୍ୱର୍ଗାଦି ସୁଖରୁ ବଞ୍ଚିତ କରେ ଓ ନରକାଦି ଅଧୋଗତି ପ୍ରାପ୍ତ କରାଏ । ଆତ୍ମାର ଅଧୋଗତିର ପ୍ରଧାନ କାରଣ ଏହି ତିନି ରିପୁ ଅଟନ୍ତି, ଅତଏବ ବିଦ୍ୱାନ୍ ବ୍ୟକ୍ତି ସର୍ବ-ପ୍ରକାର ଯତ୍ନ କରି କାମନା, ପରର ଅନିଷ୍ଟ ଇଚ୍ଛା ଓ ଲୋଭ ଏହି ତିନିଟିଙ୍କ ପରିତ୍ୟାଗ କରିବେ, ତାହା ହେଲେ, ସମସ୍ତ ଆସୁରୀ ସମ୍ପତ୍ତିକୁ ସହଜରେ ଜୟ କରି ପାରିବେ । ୨୧ ।

ଶ୍ଳୋକଃ ।

ଏତୈର୍ବିମୁକ୍ତଃ କୌନ୍ତେୟ, ତମୋଦ୍ୱାରୈସ୍ତ୍ରିଭିର୍ନରଃ ।
ଆଚରତ୍ୟାତ୍ମନଃ ଶ୍ରେୟସ୍ତତୋ ଯାତି ପରାଂ ଗତିଂ । ୨୨ ।

ଅନ୍ୱୟଃ ।

ହେ କୌନ୍ତେୟ ! ତମୋଦ୍ୱାରୈଃ ଏତୈଃ ତ୍ରିଭିଃ ବିମୁକ୍ତଃ ନରଃ ଆତ୍ମନଃ ଶ୍ରେୟଃ ଆଚରତି, ତତଃ ପରାଂ ଗତିଂ ଯାତି । ୨୨ ।

ଟୀକା ।

ତ୍ୟାଗେ ବଶିଷ୍ଟଫଳମାହ । ଏତୈରିତି । ତମସୋ ନରକସ୍ୟ ଦ୍ୱାରଭୂତୈରେତୈସ୍ତ୍ରିଭିଃ କାମାଦିଭିର୍ବିମୁକ୍ତୋ-ନରଃ ଆତ୍ମନଃ ଶ୍ରେୟଃ ସାଧନଂ ତପୋଯୋଗାଦିକମାଚରତି, ତତଶ୍ଚ ମୋକ୍ଷଂ ପ୍ରାପ୍ନୋତି । ୨୨ ।

ପଦବ୍ୟାଖ୍ୟା ।

ଏତୈର୍ବିମୁକ୍ତଃ—ଏମାନଙ୍କରୁ ମୁକ୍ତିପ୍ରାପ୍ତ, କୌନ୍ତେୟ—ହେ ଅର୍ଜୁନ !, ତମୋଦ୍ୱାରୈଃ—ନରକର ଦ୍ୱାରସ୍ୱରୂପ, ତ୍ରିଭିଃ—(କାମ କ୍ରୋଧ ଓ ଲୋଭ ଏହି) ତିନି, ନରଃ—ମନୁଷ୍ୟ, ଆଚରତି—ଆଚରଣ କରେ, ଆତ୍ମନଃ—ଆପଣାର, ଶ୍ରେୟଃ—ମଙ୍ଗଳ, ତତୋଯାତି—ତହୁଁ ଉତ୍ତାରୁ ପ୍ରାପ୍ତ ହୁଏ, ପରାଂ ଗତିଂ—ମୋକ୍ଷକୁ, । ୨୨ ।

ଅନୁବାଦ ।

ହେ କୌନ୍ତେୟ ! ନରକର ଦ୍ୱାରସ୍ୱରୂପ (କାମ, କ୍ରୋଧ ଓ ଲୋଭ) ଏ ତିନିରୁ ମୁକ୍ତ ହୋଇ ପାରିଲେ, ମନୁଷ୍ୟ ଆପଣାର ଶ୍ରେୟଃ ସାଧନ କରେ, ତହୁଁ ଉତ୍ତାରୁ ମୋକ୍ଷପ୍ରାପ୍ତ ହୁଏ । ୨୨ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

କାମ, କ୍ରୋଧ ଓ ଲୋଭ ଏହି ରିପୁତ୍ରୟ ମନୁଷ୍ୟର ଅଧୋଗତିର କାରଣ ଓ ନରକ ପ୍ରାପ୍ତିର ଦ୍ୱାରସ୍ୱରୂପ । ଯେତେଦିନଯାଏ ମନୁଷ୍ୟ ଏ ତିନି ରିପୁର ଅଧୀନ ଥିବ, ସେତେଦିନ ଯାଏ ତାହାର ଅଭ୍ୟୁନ୍ନତିର ସମ୍ଭାବନା ନାହିଁ—ବରଂ ନରକଗତିର ସମ୍ଭାବନା ଅଧିକ । ମାତ୍ର ଯେଉଁ ପୁରୁଷ ବିବେକବଶବର୍ତ୍ତୀ ହୋଇ ଏହି ତିନି ରିପୁର ହସ୍ତରୁ ପରିତ୍ରାଣ ପାନ୍ତି, ଅର୍ଥାତ୍ କାମ,କ୍ରୋଧ ଓ ଲୋଭକୁ ଜୟ କରି ପାରନ୍ତି, ତାହାଙ୍କର ଚିତ୍ତ, ଉପଦ୍ରବଶୂନ୍ୟ ହେବାରୁ ବେଦୋକ୍ତ ତପସ୍ୟା ଓ ଯୋଗ ପ୍ରଭୃତି କର୍ମରେ ତାଙ୍କର ପ୍ରବୃତ୍ତି ହୁଏ ଓ ସେହିସବୁ କର୍ମ କରିବାରୁ ସେ, ବିଶୁଦ୍ଧଚିତ୍ତ ହୋଇ ମୋକ୍ଷଲାଭ କରନ୍ତି । ୨୨

ଶ୍ଳୋକଃ ।

* ଯଃ ଶାସ୍ତ୍ରବିଧିମୁତ୍ସୃଜ୍ୟ, ବର୍ତ୍ତତେ କାମଚାରତଃ ।<br>
ନ ସ ସିଦ୍ଧିମବାପ୍ନୋତି, ନ ସୁଖଂ ନ ପରାଂ ଗତିଂ । ୨୩ ।

ଅନ୍ୱୟଃ ।

ଯଃ ଶାସ୍ତ୍ରବିଧିଂ ଉତ୍ସୃଜ୍ୟ କାମଚାରତଃ ବର୍ତ୍ତତେ, ସଃ ସିଦ୍ଧିଂ ନ, ସୁଖଂ ନ, ପରାଂ ଗତିଂ ନ ଅବାପ୍ନୋତି । ୨୩ ।

ଟୀକା ।

କାମାଦିତ୍ୟାଗସ୍ତୁ ସ୍ୱଧର୍ମାଚରଣଂ ବିନା ନ ସମ୍ଭବତୀତ୍ୟାହ । ଯ ଇତି । ଶାସ୍ତ୍ରବିଧିଂ ବେଦବିହିତଂ ଧର୍ମମୁତ୍ସୃଜ୍ୟ ଯଃ କାମ-ଚାରତୋଯଥେଷ୍ଟଂ ବର୍ତ୍ତତେ, ସ ସିଦ୍ଧିଂ ତତ୍ତ୍ୱଜ୍ଞାନଂ ନ ପ୍ରାପ୍ନୋତି ନ ଚ ସୁଖମୁପଶମଂ ନ ଚ ପରାଂ ଗତିଂ ମୋକ୍ଷଂ ପ୍ରାପ୍ନୋତି । ୨୩ ।

ପଦବ୍ୟାଖ୍ୟା ।

ଯଃ—ଯେଉଁ ବ୍ୟକ୍ତି, ଶାସ୍ତ୍ରବିଧିଂ—ଶାସ୍ତ୍ରୋକ୍ତ ବିଧାନ, ଉତ୍ସୃଜ୍ୟ—ତ୍ୟାଗ କରି, ବର୍ତ୍ତତେ—କର୍ମରେ ପ୍ରବୃତ୍ତ ହୁଏ, କାମଚାରତଃ—ଆପଣା ଇଚ୍ଛା ଅନୁସାରେ, ନ—ନାହିଁ, ସଃ—ସେ, ସିଦ୍ଧିଂ—ତତ୍ତ୍ୱଜ୍ଞାନ, ଅବାପ୍ନୋତି—ପ୍ରାପ୍ତ ହୁଏ, ନ ସୁଖଂ—ସୁଖ ପାଏ ନାହିଁ, ନ ପରାଂ ଗତିଂ—ମୋକ୍ଷକୁ ମଧ୍ୟ ପ୍ରାପ୍ତ ହୁଏ ନାହିଁ । ୨୩ ।

ଅନୁବାଦ ।

ଯେଉଁ ବ୍ୟକ୍ତି, ଶାସ୍ତ୍ରବିଧି ପରିତ୍ୟାଗ କରି ଇଚ୍ଛା ଅନୁସାରେ କର୍ମରେ ପ୍ରବୃତ୍ତ ହୁଏ, ସେ, (କଦାପି) ତତ୍ତ୍ୱଜ୍ଞାନ କି ସୁଖ ଅଥବା ମୋକ୍ଷଲାଭ କରି ପାରେ ନାହିଁ । ୨୩ ।

ବିଶଦବ୍ୟାଖ୍ୟା ।

କାଳେ ଅର୍ଜ୍ଜୁନ ଏପରି ଆଶଙ୍କା କରିବେ, ଯେ ବର୍ଣ୍ଣାଶ୍ରମିକ ଧର୍ମ ପାଳନ ନ କରି କେବଳ କାମ କ୍ରୋଧ ଓ ଲୋଭ ପରିତ୍ୟାଗ କଲେ ତ ଚଳିପାରେ, ତେବେ ଆଉ ଯୁଦ୍ଧରେ ପ୍ରୟୋଜନ କଣ ? ଏଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ଯେଉଁ ବ୍ୟକ୍ତି ବେଦ, ସ୍ମୃତି, ପୁରାଣ ଓ ଇତିହାସ ପ୍ରଭୃତି ଶାସ୍ତ୍ରର ବିଧାନକୁ ପରିତ୍ୟାଗ କରି, ନିଜ ଇଚ୍ଛା ଅନୁସାରେ କର୍ମ-ରେ ପ୍ରବୃତ୍ତ ହୁଅନ୍ତି ଅର୍ଥାତ୍ ଶାସ୍ତ୍ରରେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏମାନଙ୍କ ପାଇଁ ପ୍ରତିଦିନ ସନ୍ଧ୍ୟା ଉପାସନା କରିବାର ବିଧି ଓ ସମସ୍ତ ଜାତିଙ୍କ ପାଇଁ ‘ପରଦାରାଗମନ’ ନିଷେଧ

Digitized by PPRACHIN, SOA

ଥିବା ସ୍ଥଳେ, ଯେଉଁ ବ୍ୟକ୍ତି ଆପଣା ଇଚ୍ଛା ଅନୁସାରେ ସନ୍ଧ୍ୟା ଉପାସନା ତ୍ୟାଗ କରି ପରଦାରରତ ହୁଏ ଅଥବା ଏହିପରି ଅନ୍ୟ କୌଣସି ବିଧି ଲଂଘନ କରେ, ତାହାର ଚିତ୍ତ ଶୁଦ୍ଧି ହୋଇପାରେ ନାହିଁ ବୋଲି ତତ୍ତ୍ୱଜ୍ଞାନଲାଭ ହୁଏ ନାହିଁ, ପୁଣି ଇହଲୋକ ଓ ପରଲୋକରେ ସୁଖ ପାଇବାର ପ୍ରକୃତ ଉପାୟ ଶାସ୍ତ୍ରରେ ଉଲ୍ଲେଖ ଅଛି/ମାତ୍ର ସେମାନେ, ଶାସ୍ତ୍ରବିଧି ଲଙ୍ଘନ କରୁଥିବାରୁ, ସୁଖ ମଧ୍ୟ ପାଇ ପାରନ୍ତି ନାହିଁ, ଆଉ ସ୍ୱର୍ଗ ବା ମୋକ୍ଷଲାଭ, ଯେ ସେପରି ବ୍ୟକ୍ତିଙ୍କର ହୁଏ ନାହିଁ, ତହିଁରେ କି ସନ୍ଦେହ ହୋଇପାରେ ? ଅତଏବ ହେ ଅର୍ଜ୍ଜୁନ ! ତୁମ୍ଭେ ବର୍ଣ୍ଣାଶ୍ରମିକ ଧର୍ମ ତ୍ୟାଗ ନ କରି କେବଳ କାମ କ୍ରୋଧ ଓ ଲୋଭରୂପ ବୃତ୍ତି ତ୍ୟାଗ କର । ୨୩ ।

ଶ୍ଳୋକଃ ।

* ତସ୍ମାଚ୍ଛାସ୍ତ୍ରଂ ପ୍ରମାଣଂ ତେ, କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ ।
ଜ୍ଞାତ୍ୱା ଶାସ୍ତ୍ରବିଧାନୋକ୍ତଂ କର୍ମ କର୍ତ୍ତୁମିହାର୍ହସି । ୨୪ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସମ୍ବାଦେ ଦୈବାସୁରସମ୍ପଦ୍ବିଭାଗଯୋଗୋ ନାମ ଷୋଡ଼ଶୋଽଧ୍ୟାୟଃ । ୧୬ ।

---

ଅନ୍ୱୟଃ ।

ତସ୍ମାତ୍ ତେ କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ ଶାସ୍ତ୍ରଂ ପ୍ରମାଣଂ, ଇହ ଶାସ୍ତ୍ରବିଧାନୋକ୍ତଂ କର୍ମ ଜ୍ଞାତ୍ୱା କର୍ତ୍ତୁଂ ଅର୍ହସି । ୨୪ ।

ଇତି ଶ୍ରୀଭଗବଦ୍ଗୀତାୟାଂ ଅନ୍ୱୟେ ଷୋଡ଼ଶୋଽଧ୍ୟାୟଃ । ୧୬ ।

---

ଟୀକା ।

ଫଳିତମାହ । ତସ୍ମାଦିତି । ଇଦଂ କାର୍ଯ୍ୟମିଦମକାର୍ଯ୍ୟମିତ୍ୟେତସ୍ୟାଂ ବ୍ୟବସ୍ଥାୟାଂ ତେ ତବ ଶାସ୍ତ୍ରଂ ଶ୍ରୁତି ସ୍ମୃତିପୁରାଣାଦିକମେବ ପ୍ରମାଣଂ ଅତଃ ଶାସ୍ତ୍ରବିଧାନୋକ୍ତଂ କର୍ମ ଜ୍ଞାତ୍ୱା ଇହ କର୍ମାଧିକାରେ ବର୍ତ୍ତମାନଃ ଯଥାଧିକାରଂ କର୍ମ କର୍ତ୍ତୁମର୍ହସି, ତନ୍ମୂଳତ୍ୱାତ୍ ସତ୍ତ୍ୱଶୁଦ୍ଧିସମ୍ୟଗ୍ଜ୍ଞାନମୁକ୍ତୀନାମିତ୍ୟର୍ଥଃ ।

ଦେବଦୈତେୟ-ସମ୍ପତ୍ତି-ସମ୍ବିଭାଗେନ ଷୋଡ଼ଶେ ।
ତତ୍ତ୍ୱଜ୍ଞାନେଽଧିକାରସ୍ତୁ ସାତ୍ତ୍ୱିକସ୍ୟେତି ଦର୍ଶିତଂ । ୨୪ ।

ଇତି ଶ୍ରୀଭଗବଦ୍ଗୀତାୟାଂ ସ୍ୱାମିଟୀକାୟାଂ ଷୋଡ଼ଶୋଽଧ୍ୟାୟଃ । ୧୬ ।

---

ପଦବ୍ୟାଖ୍ୟା ।

ତସ୍ମାତ୍—ସେହି ହେତୁରୁ, ଶାସ୍ତ୍ରଂ—ବେଦ ସ୍ମୃତି ପୁରାଣାଦି, ପ୍ରମାଣଂ—ଅବଲମ୍ବନଯୋଗ୍ୟ, ତେ—ତୁମ୍ଭର, କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ—କି କର୍ମ କରିବା ଉଚିତ ଓ କଣ ନ କରିବା ଉଚିତ ଏ କଥା ନିଶ୍ଚୟ କରିବା ବିଷୟରେ, ଜ୍ଞାତ୍ୱା—ଜାଣିକରି, ଶାସ୍ତ୍ରବିଧାନୋକ୍ତଂ—ଶାସ୍ତ୍ରର ବିଧି ଅନୁସାରେ ଉକ୍ତ, କର୍ମ—କର୍ତ୍ତବ୍ୟ କାର୍ଯ୍ୟ, କର୍ତ୍ତୁଂ—କରିବାକୁ, ଇହ—ଏହି ମନୁଷ୍ୟଲୋକରେ, ଅର୍ହସି—ଯୋଗ୍ୟ ଅଟ (କରିବାକୁ ଯୋଗ୍ୟ ଅଟ = କରିବା ଉଚିତ) । ୨୪ ।

ଇତି ଶ୍ରୀଭଗବଦ୍ଗୀତା ପଦବ୍ୟାଖ୍ୟାୟାଂ ଷୋଡ଼ଶୋଽଧ୍ୟାୟଃ । ୧୬ ।

Digitized by PPRACHIN, SOA

### ଅନୁବାଦ ।

ସେହି ହେତୁରୁ (ହେ ଅର୍ଜୁନ !) କିଂ କର୍ମ କରିବା ଉଚିତ ଓ କଣ ନ କରିବା ଉଚିତ ଏ ବିଷୟରେ ଶାସ୍ତ୍ରହିଁ ତୁମ୍ଭର ପ୍ରମାଣସ୍ୱରୂପ, ଶାସ୍ତ୍ରବିଧାନୋକ୍ତ କର୍ମ ଅବଗତ ହୋଇ ଇହ-ଲୋକରେ ତୁମ୍ଭର କର୍ମ କରିବା ଉଚିତ । ୨୪ ।

ଇତି ଶ୍ରୀଭଗବଦ୍‌ଗୀତାର ଉତ୍କଳାନୁବାଦରେ ଷୋଡ଼ଶ ଅଧ୍ୟାୟ ସମାପ୍ତ । ୧୬ ।

---

### ବିଶଦବ୍ୟାଖ୍ୟା ।

ଯେଉଁ ହେତୁରୁ ଶାସ୍ତ୍ରବିଧି ଲଙ୍ଘନ କରି ସ୍ୱେଚ୍ଛାପୂର୍ବକ କର୍ମାନୁଷ୍ଠାନ କରିବା ବ୍ୟକ୍ତି, ସିଦ୍ଧି ବା ସୁଖ ବା ମୋକ୍ଷ କାହିଁକି ଲାଭ କରି ପାରନ୍ତି ନାହିଁ, ସେହି ହେତୁରୁ, ହେ ଅର୍ଜୁନ ! କର୍ତ୍ତବ୍ୟାକର୍ତ୍ତବ୍ୟ ସ୍ଥିର କରିବା ବିଷୟରେ ତୁମ୍ଭେ ଶାସ୍ତ୍ରକୁ ପ୍ରମାଣସ୍ୱରୂପ ଗ୍ରହଣ କର, ଅର୍ଥାତ ତୁମ୍ଭର କି ପ୍ରକାର କର୍ମ କରିବା ଉଚିତ, କିପରି କର୍ମ ନ କରିବା ଉଚିତ ଏ ବିଷୟ ସ୍ଥିର କରିବାକୁ ତୁମ୍ଭେ ଶାସ୍ତ୍ରକୁ ପ୍ରମାଣସ୍ୱରୂପେ ଗ୍ରହଣ କର ।

ଫଳକଥା ଏହି କି ଶାସ୍ତ୍ରରେ ତୁମ୍ଭପାଇଁ ଯେଉଁ କର୍ମର ବିଧି ଅଛି, ତାହା ତୁମ୍ଭେ ପାଳନ କର ଓ ଯାହା କରିବାକୁ ମନା ଅଛି, ତାହା ତୁମ୍ଭେ ତ୍ୟାଗ କର । ଶାସ୍ତ୍ରବିଧିରେ ଉକ୍ତ ଅର୍ଥାତ କ୍ଷତ୍ରିୟର ଯୁଦ୍ଧ ଅବଶ୍ୟ କର୍ତ୍ତବ୍ୟ ବୋଲି ଯାହା ଲେଖା ଅଛି, ତାହା ଅବଗତ ହୋଇ, ତୁମ୍ଭେ ଆସୁର ସ୍ୱଭାବ ତ୍ୟାଗପୂର୍ବକ କର୍ମାନୁଷ୍ଠାନ କର, ତାହା ହେଲେ, ତୁମ୍ଭର ଚିତ୍ତ ଶୁଦ୍ଧି ହୋଇ, ତତ୍ତ୍ୱଜ୍ଞାନ, ସୁଖ ଓ ମୋକ୍ଷ ସମସ୍ତ ଲାଭ ହେବ । ୨୪ ।

ଇତି ଶ୍ରୀଭଗବଦ୍‌ଗୀତାର ବିଶଦବ୍ୟାଖ୍ୟାରେ ଷୋଡ଼ଶ ଅଧ୍ୟାୟ ସମାପ୍ତ । ୧୬ ।

Digitized by PPRACHIN, SOA

# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ସପ୍ତଦଶୋଽଧ୍ୟାୟଃ ।

### ଶ୍ରଦ୍ଧାତ୍ରୟବିଭାଗ-ଯୋଗଃ ।

ଶ୍ଳୋକଃ ।

ଅର୍ଜ୍ଜୁନ ଉବାଚ ।— ଯେ ଶାସ୍ତ୍ରବିଧିମୁତ୍ସୃଜ୍ୟ, ଯଜନ୍ତେ ଶ୍ରଦ୍ଧୟାନ୍ୱିତାଃ ।
ତେଷାଂ ନିଷ୍ଠା ତୁ କା କୃଷ୍ଣ, ସତ୍ତ୍ୱମାହୋ ରଜସ୍ତମଃ । ୧ ।

ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ । ହେ କୃଷ୍ଣ ! ଯେ ତୁ ଶାସ୍ତ୍ରବିଧିଂ ଉତ୍ସୃଜ୍ୟ ଶ୍ରଦ୍ଧୟା ଅନ୍ୱିତାଃ (ସନ୍ତଃ) ଯଜନ୍ତେ, ତେଷାଂ ନିଷ୍ଠା କା, ସତ୍ତ୍ୱଂ, ରଜଃ ଆହୋ ତମଃ ? । ୧ ।

ଟୀକା ।

ଭକ୍ତ୍ୟଧିକାରହେତୂନାଂ ଶ୍ରଦ୍ଧା ମୁଖ୍ୟା ଚ ସାତ୍ତ୍ୱିକୀ ।
ଇତି ସପ୍ତଦଶେ ଗୌଣଶ୍ରଦ୍ଧାଭେଦସ୍ତ୍ରିଧୋଚ୍ୟତେ ।

ପୂର୍ବାଧ୍ୟାୟାନ୍ତେ ଯଃ ଶାସ୍ତ୍ରବିଧିମୁତ୍ସୃଜ୍ୟ ବର୍ତ୍ତତେ କାମଚାରତଃ ନ ସ ସିଦ୍ଧିମବାପ୍ନୋତୀତ୍ୟନେନ ଶାସ୍ତ୍ରୋକ୍ତବିଧିମୁତ୍ସୃଜ୍ୟ କାମଚାରେଣ ବର୍ତ୍ତମାନସ୍ୟ ଜ୍ଞାନେଽଧିକାରୋ ନାସ୍ତୀତ୍ୟୁକ୍ତଂ, ତତ୍ର ଶାସ୍ତ୍ରବିଧିମୁତ୍ସୃଜ୍ୟ କାମଚାରଂ ବିନା ଶ୍ରଦ୍ଧୟା ବର୍ତ୍ତମାନାନାଂ କିମଧିକାରୋଽସ୍ତି ବା ନାସ୍ତି ବେତି ବୁଭୁତ୍ସୟା ଅର୍ଜ୍ଜୁନ ଉବାଚ, ଯ ଇତି । ଅତ୍ର ଚ ଶାସ୍ତ୍ରବିଧିମୁତ୍ସୃଜ୍ୟ ଯଜନ୍ତ ଇତ୍ୟନେନ ଶାସ୍ତ୍ରାର୍ଥଂ ବୁଦ୍ଧ୍ୱା ତମୁଲ୍ଲଙ୍ଘ୍ୟ ବର୍ତ୍ତମାନା ନ ଗୃହ୍ୟନ୍ତେ, ତେଷାଂ ଶ୍ରଦ୍ଧୟା ଯଜନାନୁପପତ୍ତେଃ, ଆସ୍ତିକ୍ୟବୁଦ୍ଧିର୍ହି ଶ୍ରଦ୍ଧା ନ ଚାସୌ ଶାସ୍ତ୍ରବର୍ତ୍ମନ୍ୟର୍ଥେ ଶାସ୍ତ୍ରଜ୍ଞାନବତାଂ ସମ୍ଭବତି, ତାନେବାଧିକୃତ୍ୟ ତ୍ରିବିଧା ଭବତି ଶ୍ରଦ୍ଧେତି ଯଜନ୍ତେ ସାତ୍ତ୍ୱିକା ଦେବାନିତ୍ୟାଦିବ୍ୟବସ୍ଥାନୁପପତ୍ତେଶ୍ଚ ଅତୋ ନାତ୍ର ଶାସ୍ତ୍ରୋଲ୍ଲଙ୍ଘିନୋ ଗୃହ୍ୟନ୍ତେ ଅପି ତୁ କ୍ଲେଶବୁଦ୍ଧ୍ୟା ବା ଆଲସ୍ୟାଦ୍ୱା ଶାସ୍ତ୍ରାର୍ଥଜ୍ଞାନେ ପ୍ରଯତ୍ନମକୃତ୍ୱା କେବଳମାଚାରପରମ୍ପରାବଶେନ ଶ୍ରଦ୍ଧୟା କ୍ୱଚିଦ୍ଦେବତାରାଧନାଦୌ ପ୍ରବର୍ତ୍ତମାନା ଗୃହ୍ୟନ୍ତେ, ଅତୋଽୟମର୍ଥଃ, ଯେ ଶାସ୍ତ୍ରବିଧିମୁତ୍ସୃଜ୍ୟ ଦୁଃଖବୁଦ୍ଧ୍ୟା ଆଲସ୍ୟାଦ୍ୱା ଅନାଦୃତ୍ୟ କେବଳମାଚାରପ୍ରାମାଣ୍ୟେନ ଶ୍ରଦ୍ଧୟାନ୍ୱିତାଃ ସନ୍ତୋ ଯଜନ୍ତେ ତେଷାଂ ତୁ କା ନିଷ୍ଠା, କା ସ୍ଥିତିଃ କ ଆଶ୍ରୟଃ ତାମେବ ବିଶେଷେଣ ପୃଚ୍ଛତି, କିଂ ସତ୍ତ୍ୱଂ ଆହୋ କିଂ ରଜଃ ଅଥବା ତମ ଇତି ତେଷାଂ ତାଦୃଶୀ ଦେବପୂଜାଦିପ୍ରବୃତ୍ତିଃ କିଂ ସତ୍ତ୍ୱସଂଶ୍ରିତା, ରଜଃସଂଶ୍ରିତା, ତମଃସଂଶ୍ରିତା ବେତ୍ୟର୍ଥଃ, ଶ୍ରଦ୍ଧାୟାଃ ସାତ୍ତ୍ୱିକତ୍ୱାତ୍ କ୍ଲେଶବୁଦ୍ଧ୍ୟା ଆଲସ୍ୟେନ ଚ ଶାସ୍ତ୍ରାନାଦରସ୍ୟ ରାଜସତାମସତ୍ୱାତ୍ତ୍ରିଧା ସନ୍ଦେହଃ । ଯଦି ସତ୍ତ୍ୱସଂଶ୍ରିତା ତର୍ହି ତେଷାମପି ସାତ୍ତ୍ୱିକତ୍ୱାତ୍ ଯଥୋକ୍ତାତ୍ମଜ୍ଞାନେଽଧିକାରଃ ସ୍ୟାଦନ୍ୟଥା ନେତି ତାତ୍ପର୍ଯ୍ୟାର୍ଥଃ । ୧ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଅର୍ଜ୍ଜୁନଃ ଉବାଚ—ଅର୍ଜ୍ଜୁନ କହିଲେ, ଯେ—ଯେଉଁମାନେ, ଶାସ୍ତ୍ରବିଧିଂ ଉତ୍ସୃଜ୍ୟ—ଶାସ୍ତ୍ରବିଧି ଲଙ୍ଘନ କରି, ଯଜନ୍ତେ—ଯଜ୍ଞ କରନ୍ତି, ଶ୍ରଦ୍ଧୟାନ୍ୱିତାଃ—ଶ୍ରଦ୍ଧାଯୁକ୍ତ ହୋଇ, ତେଷାଂ—ସେମାନଙ୍କର, ନିଷ୍ଠା ତୁ କା—ଦୃଢ଼ବିଶ୍ୱାସ କଣ ?, କୃଷ୍ଣ—ହେ କୃଷ୍ଣ !, ସତ୍ତ୍ୱଂ—ସତ୍ତ୍ୱଗୁଣଯୁକ୍ତ, ଆହୋ—ଅଥବା, ରଜଃ ତମଃ—ରଜୋଗୁଣଯୁକ୍ତ ବା ତମୋଗୁଣ ମିଶ୍ରିତ । ୧ ।

ଅନୁବାଦ ।

ଅର୍ଜ୍ଜୁନ କହିଲେ, ହେ କୃଷ୍ଣ ! ଯେଉଁମାନେ ଶାସ୍ତ୍ରବିଧି ଲଙ୍ଘନ କରି, ଶ୍ରଦ୍ଧାଯୁକ୍ତ ହୋଇ, ଯଜନ କରନ୍ତି; ସେମାନଙ୍କର ନିଷ୍ଠା କିପରି ? ସତ୍ତ୍ୱଗୁଣଯୁକ୍ତ ବା ରଜ ଓ ତମୋଗୁଣ ମିଶ୍ରିତ ଅଟେ । ୧ ।

ବିଶଦବ୍ୟାଖ୍ୟା ।

ଶାସ୍ତ୍ରରେ ଦୈବ, ଆସୁର ଓ ରାକ୍ଷସ ତିନିପ୍ରକାର ସ୍ୱଭାବ ଥିବାର ବିଧି ଅଛି ସତ, ମାତ୍ର ମୋକ୍ଷର ଅନୁକୂଳ ଓ ପ୍ରତିକୂଳ ଭେଦରେ ତାହା ଦୁଇପ୍ରକାର ଅଟେ, ଅର୍ଥାତ୍ ଦୈବୀ ସମ୍ପତ୍ ମୋକ୍ଷର ଅନୁକୂଳ ଓ ଆସୁରୀ ଏବଂ ରାକ୍ଷସୀ ସମ୍ପତ୍ ମୋକ୍ଷର ପ୍ରତିକୂଳ ଅଟେ । ଯେଉଁମାନେ, ଶାସ୍ତ୍ରର ପ୍ରକୃତ ଅର୍ଥ ବୁଝି ପାରି ଶାସ୍ତ୍ରବିଧିରେ ଶ୍ରଦ୍ଧାଯୁକ୍ତ ହୋଇ କର୍ମ କରନ୍ତି, ସେମାନେ, ଦୈବସ୍ୱଭାବଯୁକ୍ତ ଅର୍ଥାତ୍ ଉନ୍ନତିପଥ ଆରୋହୀ, ଆଉ ଯେଉଁମାନେ, ଶାସ୍ତ୍ରବିଧି ଜାଣିକରି ମଧ୍ୟ, ତହିଁରେ ଶ୍ରଦ୍ଧା ନ କରି ନିଜ ଇଚ୍ଛା ଅନୁସାରେ କର୍ମ କରନ୍ତି, ସେମାନେ ଆସୁର ବା ରାକ୍ଷସ ସ୍ୱଭାବର ଲୋକ ଅର୍ଥାତ୍ ଅବନତିପଥାବଲମ୍ବୀ । ଏଥିରେ ଅର୍ଜ୍ଜୁନଙ୍କର ଏପରି ସନ୍ଦେହ ହେଲା, ଯେ ଯେଉଁମାନେ, ଶାସ୍ତ୍ରର ବିଧି ଜାଣିବାକୁ କଷ୍ଟ ହେବ ବୋଲି, ଆଳସ୍ୟ ବା ଔଦାସ୍ୟ କରି ଶାସ୍ତ୍ରର ଅର୍ଥ ନ ବୁଝି କେବଳ ନିଜର ପିତୃପିତାମହଙ୍କ ଆଚରିତ କର୍ମ ବୋଲି ଶ୍ରଦ୍ଧାଯୁକ୍ତ ହୋଇ କରନ୍ତି, ସେମାନଙ୍କର ନିଷ୍ଠା ସାତ୍ତ୍ୱିକୀ କିମ୍ବା ରଜସ୍ତମୋମୟୀ, ଅର୍ଥାତ୍ ସେମାନଙ୍କର ସ୍ୱଭାବ ମୋକ୍ଷର ଅନୁକୂଳ କି ପ୍ରତିକୂଳ ? ସେଥିପାଇଁ ଶ୍ରୀଭଗବାନଙ୍କୁ ପ୍ରଶ୍ନ କଲେ, 'ହେ କୃଷ୍ଣ ! ଯେଉଁମାନେ ଶାସ୍ତ୍ରବିଧି ଲଙ୍ଘନ କରି ଅର୍ଥାତ୍ ଆଳସ୍ୟାଦି ଦୋଷରେ ଶାସ୍ତ୍ରାର୍ଥ ଅବଗତ ନ ହୋଇ କେବଳ " ମହାଜନୋଯେନ ଗତଃ ସ ପନ୍ଥାଃ " ଇତ୍ୟାଦି ବଚନ ଅନୁସାରେ ବଂଶପରମ୍ପରା ଆଚରିତ କର୍ମ, ଶ୍ରଦ୍ଧାରେ ସମ୍ପାଦନ କରନ୍ତି, ସେମାନଙ୍କ ନିଷ୍ଠା, ସାତ୍ତ୍ୱିକୀ କି ରଜସ୍ତମୋଯୁକ୍ତ ଅଟେ । ୧ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ— ତ୍ରିବିଧା ଭବତି ଶ୍ରଦ୍ଧା, ଦେହିନାଂ ସା ସ୍ୱଭାବଜା ।
ସାତ୍ତ୍ୱିକୀ ରାଜସୀ ଚୈବ ତାମସୀ ଚେତି ତାଂ ଶୃଣୁ । ୨ ।

ଅନ୍ୱୟଃ ।

ଶ୍ରୀ ଭଗବାନ୍ ଉବାଚ । ଦେହିନାଂ ସ୍ୱଭାବଜା ସା ଶ୍ରଦ୍ଧା, ସାତ୍ତ୍ୱିକୀ, ଚ ରାଜସୀ ଚ ତାମସୀ ଇତି ତ୍ରିବିଧା ଏବ ଭବତି ତାଂ ଶୃଣୁ । ୨ ।

Digitized by PPRACHIN, SOA

## ଟୀକା ।

ଅତ୍ରୋତ୍ତରଂ ଶ୍ରୀଭଗବାନୁବାଚ । ତ୍ରିବିଧେତି । ଅୟମର୍ଥଃ ଶାସ୍ତ୍ରତତ୍ତ୍ୱଜ୍ଞାନତଃ ପ୍ରବର୍ତ୍ତମାନାନାଂ ପରମେଶ୍ୱରପୂଜାତପସ୍ୟା ସାତ୍ତ୍ୱିକ୍ୟେକବିଧୈବ ଭବତି ଶ୍ରଦ୍ଧା, ଲୋକାଚାରମାତ୍ରେଣ ତୁ ପ୍ରବର୍ତ୍ତମାନାନାଂ ଦେହିନାଂ ଯା ଶ୍ରଦ୍ଧା ସା ତୁ ସାତ୍ତ୍ୱିକୀ, ରାଜସୀ, ତାମସୀ ଚେତି ତ୍ରିବିଧା ଭବତି, ତତ୍ର ହେତୁଃ, ସ୍ୱଭାବଜା—ସ୍ୱଭାବଃ ପୂର୍ବସଂସ୍କାରସ୍ତସ୍ମାଜ୍ଜାତା ସ୍ୱଭାବମନ୍ୟଥା କର୍ତ୍ତୁଂ ସମର୍ଥଂ ହି ଶାସ୍ତ୍ରୀୟଂ ବିବେକଜ୍ଞାନଂ ତେଷାଂ ନାସ୍ତି, ଅତଃ କେବଲଂ ପୂର୍ବସ୍ୱଭାବେନ ଭବନ୍ତୀ ଶ୍ରଦ୍ଧା ତ୍ରିବିଧା ଭବତି, ତାମିମାଂ ତ୍ରିବିଧାଂ ଶ୍ରଦ୍ଧାଂ ଶୃଣ୍ୱିତି । ତଦୁକ୍ତଂ ବ୍ୟବସାୟାତ୍ମିକା ବୁଦ୍ଧିରେକେହ କୁରୁନନ୍ଦନେତ୍ୟାଦିନା । ୨ ।

## ପଦବ୍ୟାଖ୍ୟା ।

ଶ୍ରୀଭଗବାନୁବାଚ—ଶ୍ରୀଭଗବାନ୍ କହିଲେ, ତ୍ରିବିଧା ଭବତି—ତିନିପ୍ରକାର ଅଟେ, ଶ୍ରଦ୍ଧା—ଆସ୍ତିକ୍ୟ ବୁଦ୍ଧି, ଦେହିନାଂ—ଶରୀରଧାରୀମାନଙ୍କର, ସା ସ୍ୱଭାବଜା—ସେହି ଶ୍ରଦ୍ଧା ପୂର୍ବଜନ୍ମଜନିତ ସଂସ୍କାରରୁ ଉତ୍ପନ୍ନ, ସାତ୍ତ୍ୱିକୀ—ସତ୍ତ୍ୱଗୁଣପ୍ରଧାନା, ରାଜସୀ ଚ—ଓ ରଜୋଗୁଣପ୍ରଧାନା, ଏବ—ନିଶ୍ଚୟ, ତାମସୀ ଚ—ଓ ତମୋଗୁଣପ୍ରଧାନା, ଇତି—ଏହିପରି, ତାଂ ଶୃଣୁ—ସେହି ଶ୍ରଦ୍ଧା କଥା ଶୁଣ । ୨ ।

## ଅନୁବାଦ ।

ଶ୍ରୀ ଭଗବାନ୍ କହିଲେ, ପ୍ରାଣୀମାନଙ୍କର ପୂର୍ବଜନ୍ମ ସଂସ୍କାରରୁ ଉତ୍ପନ୍ନ ସେହି ଶ୍ରଦ୍ଧା, ସାତ୍ତ୍ୱିକୀ, ରାଜସୀ ଓ ତାମସୀ ଭେଦରେ ତିନି ପ୍ରକାର ଅଟେ । ତାହା (ଆମ୍ଭଠାରୁ) ଶୁଣ । ୨ ।

## ବିଶଦବ୍ୟାଖ୍ୟା ।

ଶ୍ରୀ ଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ଶାସ୍ତ୍ରର ପ୍ରକୃତ ଅର୍ଥ ଜାଣିବାକୁ କ୍ଲେଶ ହେବ, ଏହି ଭୟରେ, ତହିଁରେ ଯତ୍ନ ନ କରି ଅର୍ଥାତ୍ ଶାସ୍ତ୍ରର ଅର୍ଥ ନ ବୁଝି, କେବଳ ପୂର୍ବରୁ ପରମ୍ପରା ଅନୁସାରେ ଚଳି ଆସୁଥିବା କର୍ମାଦିରେ ଯେଉଁ ଶ୍ରଦ୍ଧା ହୁଏ, ସେହି ଶ୍ରଦ୍ଧା, ଦେହାଭିମାନୀମାନଙ୍କର ସ୍ୱଭାବସିଦ୍ଧ ଅଟେ । ସୁତରାଂ ସାତ୍ତ୍ୱିକୀ, ରାଜସୀ ଓ ତାମସୀ ଭେଦରେ ତାହା ତିନି ପ୍ରକାର ହୁଏ ଅର୍ଥାତ୍ ଯେଉଁ ବ୍ୟକ୍ତି ପୂର୍ବଜନ୍ମରେ ସାତ୍ତ୍ୱିକ କର୍ମ କରିଥାଏ, ତାହାର ପର ଜନ୍ମରେ ସାତ୍ତ୍ୱିକୀ ଶ୍ରଦ୍ଧା ହୁଏ ଓ ଯେ ରାଜସ କର୍ମ କରିଥାଏ, ତାହାର ରାଜସୀ, ଏବଂ ତାମସ କର୍ମ କରିଥିବା ବ୍ୟକ୍ତିର ତାମସୀ ଶ୍ରଦ୍ଧା ହୁଏ । ବର୍ତ୍ତମାନ ସେହି ତ୍ରିବିଧ ଶ୍ରଦ୍ଧାର ବିଷୟ ଆମ୍ଭଠାରୁ ଶ୍ରବଣ କର । ୨ ।

## ଶ୍ଲୋକଃ ।

। । । । ।
ସତ୍ତ୍ୱାନୁରୂପା ସର୍ବସ୍ୟ, ଶ୍ରଦ୍ଧା ଭବତି ଭାରତ ।
। । । । । । । ।
ଶ୍ରଦ୍ଧାମୟୋଽୟଂ ପୁରୁଷୋ, ଯୋ ଯଚ୍ଛ୍ରଦ୍ଧଃ ସ ଏବ ସଃ । ୩ ।

## ଅନ୍ୱୟଃ ।

ହେ ଭାରତ ! ସର୍ବସ୍ୟ ଶ୍ରଦ୍ଧା ସତ୍ତ୍ୱାନୁରୂପା ଭବତି, ଅୟଂ ପୁରୁଷଃ ଶ୍ରଦ୍ଧାମୟଃ, ଯଃ ଯଚ୍ଛ୍ରଦ୍ଧଃ ସଃ ସ ଏବ । ୩ ।

## ଟୀକା ।

ନନୁ ଶ୍ରଦ୍ଧା ସାତ୍ତ୍ୱିକ୍ୟେବ, ସତ୍ତ୍ୱକାର୍ଯ୍ୟତ୍ୱେନ, ତ୍ରୟୈବ ଶ୍ରୀଭାଗବତେ ଉକ୍ତତ୍ୱଂ ପ୍ରତି ନିର୍ଦ୍ଦିଷ୍ଟତ୍ୱାତ୍, ଯଥୋକ୍ତଂ "ଶମୋଦମସ୍ତିତିକ୍ଷେକ୍ଷା, ତପଃ ସତ୍ୟଂ ଦୟା ସ୍ମୃତିଃ, ତୁଷ୍ଟିସ୍ତ୍ୟାଗୋଽସ୍ପୃହା ଶ୍ରଦ୍ଧା ହ୍ରୀର୍ଦୟାଦିଃ ସ୍ୱନିର୍ବୃତିଃ" । ଇତ୍ୟେତାଃ

Digitized by PPRACHIN, SOA

ସତ୍ତ୍ୱକାର୍ଯ୍ୟମ୍ ଇତି । ଅତଃ କଥଂ ତସ୍ୟାସ୍ତ୍ରୈବିଧ୍ୟମୁଚ୍ୟତେ ? ସତ୍ୟଂ, ତଥାପି ରଜସ୍ତମୋମିଶ୍ରିତତ୍ୱେନ ସତ୍ତ୍ୱସ୍ୟ ତ୍ରୈବିଧ୍ୟାତ୍ ଶ୍ରଦ୍ଧାୟା ଅପି ତ୍ରୈବିଧ୍ୟଂ ଘଟତ ଇତ୍ୟାହ । ସତ୍ତ୍ୱେତି । ସତ୍ତ୍ୱାନୁରୂପା ସତ୍ତ୍ୱତାରତମ୍ୟାନୁସାରିଣୀ ସର୍ବସ୍ୟ ବିବେକିନୋଽବିବେକିନୋ ବା ଲୋକସ୍ୟ ଶ୍ରଦ୍ଧା ଭବତି, ତସ୍ମାଦୟଂ ପୁରୁଷୋ ଲୌକିକଃ ଶ୍ରଦ୍ଧାବିକାରଃ ତ୍ରିବିଧୟା ଶ୍ରଦ୍ଧୟା ବିକ୍ରିୟତ ଇତ୍ୟର୍ଥଃ, ତଦେବାହ, ଯୋ ଯଚ୍ଛ୍ରଦ୍ଧଃ ଯାଦୃଶୀ ଶ୍ରଦ୍ଧା ଯସ୍ୟ ସ ଏବ ସଃ ତାଦୃଶଶ୍ରଦ୍ଧାଯୁକ୍ତଃ । ସ ଏବ ସ ଇତି, ଯଃ ପୂର୍ବଂ ସତ୍ତ୍ୱୋତ୍କର୍ଷେଣ ସାତ୍ତ୍ୱିକଶ୍ରଦ୍ଧାଯୁକ୍ତଃ ପୁରୁଷଃ ସ ପୁନସ୍ତତ୍ସଂସ୍କାରେଣ ସାତ୍ତ୍ୱିକଶ୍ରଦ୍ଧାଯୁକ୍ତ ଏବ ଭବତି, ଯସ୍ତୁ ରଜସ ଉତ୍କର୍ଷେଣ ରାଜସଶ୍ରଦ୍ଧାଯୁକ୍ତଃ ସ ପୁନସ୍ତାଦୃଶ ଏବ ଭବତି, ଯସ୍ତୁ ତମସ ଉତ୍କର୍ଷେଣ ତାମସଶ୍ରଦ୍ଧୟା ଯୁକ୍ତଃ ସ ପୁନସ୍ତାଦୃଶ ଏବ ଭବତି, ଇତି ଲୋକାଚାରମାତ୍ରେଣ ପ୍ରଦର୍ଶିତାନେକ୍ୟେବଂ ସାତ୍ତ୍ୱିକରାଜସତାମସଶ୍ରଦ୍ଧା ବ୍ୟବସ୍ଥା, ଶାସ୍ତ୍ରଜନିତବିବେକଜନିତଶ୍ରଦ୍ଧାୟାସ୍ତୁ ସ୍ୱଭାବବିଜୟେନ ସାତ୍ତ୍ୱିକ୍ୟ ଏକୈବ ଶ୍ରଦ୍ଧେତି ପ୍ରକରଣାର୍ଥଃ । ୩ ।

## ପଦବ୍ୟାଖ୍ୟା ।

ସତ୍ତ୍ୱାନୁରୂପା—ସତ୍ତ୍ୱର ତାରତମ୍ୟ ଅନୁସାରେ, ସର୍ବସ୍ୟ—ବିବେକୀ ଓ ଅବିବେକୀ ସମସ୍ତଙ୍କର, ଶ୍ରଦ୍ଧା ଭବତି—ଶ୍ରଦ୍ଧା ହୁଏ, ଭାରତ—ହେ ଭରତବଂଶଜ ଅର୍ଜ୍ଜୁନ !, ଶ୍ରଦ୍ଧାମୟଃ ଅୟଂ ପୁରୁଷଃ—ଏହି ଜୀବାତ୍ମା ଶ୍ରଦ୍ଧାରେ ବିକାରପ୍ରାପ୍ତ ହୁଅନ୍ତି, ଯୋ ଯଚ୍ଛ୍ରଦ୍ଧଃ—ଯାହାଙ୍କର ଯେପରି ଶ୍ରଦ୍ଧା, ସ ଏବ ସଃ—ସେ, ସେହିପରି ହୁଅନ୍ତି । ୩ ।

## ଅନୁବାଦ ।

**ହେ ଭାରତ ! ସକଳ ପ୍ରାଣୀଙ୍କର ଶ୍ରଦ୍ଧା, ସତ୍ତ୍ୱ ଅନୁସାରେ ହୁଏ । ଏ ପୁରୁଷ (ଜୀବାତ୍ମା) ଶ୍ରଦ୍ଧାମୟ ଅଟନ୍ତି, ଅତଏବ ଯାହାଙ୍କର ଯେପରି ଶ୍ରଦ୍ଧା ଥାଏ, ସେ, ସେହିପରି ହୁଅନ୍ତି । ୩ ।**

## ବିଶଦବ୍ୟାଖ୍ୟା ।

ଶ୍ରୀ ଭଗବାନ୍ କହିଲେ, ହେ ଭରତବଂଶତିଳକ ଅର୍ଜ୍ଜୁନ ! ପୂର୍ବଜନ୍ମରେ ଯେଉଁ ବ୍ୟକ୍ତି ଯେପରି କର୍ମ କରିଥାଏ, ପରଜନ୍ମରେ ତାହାର ଅନ୍ତଃକରଣ ତଦନୁରୂପ ହୁଏ । ଯାହାର ଅନ୍ତଃକରଣ ଯେପରି, ତାହାର ଶ୍ରଦ୍ଧାମଧ୍ୟ ସେହିପରି ଅଟେ ଅର୍ଥାତ୍ ଯାହାର ଅନ୍ତଃକରଣ ସାତ୍ତ୍ୱିକଭାବଯୁକ୍ତ ହୋଇଥିବ, ତାହାର ସାତ୍ତ୍ୱିକୀ ଶ୍ରଦ୍ଧା ହେବ ଓ ଯାହାର ଅନ୍ତଃକରଣ ରାଜସ, ତାହାର ଶ୍ରଦ୍ଧା ରାଜସୀ ଏବଂ ତାମସ ଅନ୍ତଃକରଣବିଶିଷ୍ଟ ବ୍ୟକ୍ତିର ଶ୍ରଦ୍ଧା ତାମସୀ ହେବ, ଏଥିରେ କିଛିମାତ୍ର ସନ୍ଦେହ ନାହିଁ ।

ପୁରୁଷ (ଜୀବାତ୍ମା) ଶ୍ରଦ୍ଧାମୟ ଅର୍ଥାତ୍ ଶ୍ରଦ୍ଧାଅନୁସାରେ ତାହାଙ୍କର ଗୁଣର ପରିବର୍ତ୍ତନ ହୁଏ । ସୁତରାଂ ଯେ, ଯେପରି ଶ୍ରଦ୍ଧାଯୁକ୍ତ, ସେ, ସେହିପରି (ଗୁଣଯୁକ୍ତ) ହୁଅନ୍ତି । ଯାହାଙ୍କର ଶ୍ରଦ୍ଧା ସାତ୍ତ୍ୱିକୀ, ସେ ବ୍ୟକ୍ତି ସାତ୍ତ୍ୱିକ ଓ ଯାହାଙ୍କର ଶ୍ରଦ୍ଧା ରାଜସୀ—ସେ, ରାଜସ ଏବଂ ଯାହାଙ୍କର ଶ୍ରଦ୍ଧା ତାମସୀ, ସେ, ତାମସ ହୁଅନ୍ତି ।

ଫଳକଥା ଏହି କି ଶାସ୍ତ୍ରବିଧି ବୁଝିବାକୁ ଅଳସତା ବା ଔଦାସିନ୍ୟ କରି ପରମ୍ପରା ପ୍ରଚଳିତ କର୍ମରେ ଶ୍ରଦ୍ଧାବାନ୍ ପୁରୁଷର ନିଷ୍ଠା ଯେଉଁ ଜାତୀୟ, ତାହା ନିର୍ଣ୍ଣୟ କରିବାକୁ ହେଲେ, ତାହାଙ୍କର ଶ୍ରଦ୍ଧା କେଉଁ ଜାତୀୟ ତାହା ଠିକ କରିବା ଉଚିତ । ଯଦି ଦେଖାଯାଏ, ଯେ ତାହାଙ୍କର ଶ୍ରଦ୍ଧା ସାତ୍ତ୍ୱିକୀ ଅଟେ, ଅର୍ଥାତ୍ ତାହାଙ୍କର ଅନ୍ତଃକରଣ ସତ୍ତ୍ୱଭାବାପନ୍ନ, ତେବେ ବୁଝିବାକୁ ହେବ, ଯେ ସେ ପୁରୁଷ ସତ୍ତ୍ୱଗୁଣୀ ଓ ତାହାଙ୍କର ନିଷ୍ଠା ସାତ୍ତ୍ୱିକୀ, ସେହିପରି ତାହାଙ୍କର ଶ୍ରଦ୍ଧା, ରାଜସୀ ବା ତାମସୀ ହେଲେ, ତାହାଙ୍କର ଅନ୍ତଃକରଣ ରାଜସ ବା ତାମସ ଓ ତାହାଙ୍କର ନିଷ୍ଠା ରାଜସୀ ବା ତାମସୀ ଅଟେ । ୩ ।

Digitized by PPRACHIN, SOA

### ଶ୍ଳୋକଃ ।

ଯଜନ୍ତେ ସାତ୍ତ୍ୱିକା ଦେବାନ୍, ଯକ୍ଷରକ୍ଷାଂସି ରାଜସାଃ ।
ପ୍ରେତାନ୍ ଭୂତଗଣାଂଶ୍ଚାନ୍ୟେ, ଯଜନ୍ତେ ତାମସା ଜନାଃ ॥ ୪ ॥

### ଅନ୍ୱୟଃ ।

ସାତ୍ତ୍ୱିକାଃ ଦେବାନ୍, ରାଜସାଃ ଯକ୍ଷରକ୍ଷାଂସି ଯଜନ୍ତେ, ଅନ୍ୟେ ତାମସାଃ ଜନାଃ ପ୍ରେତାନ୍ ଚ ଭୂତଗଣାନ୍ ଯଜନ୍ତେ ॥ ୪ ।

### ଟୀକା ।

ସାତ୍ତ୍ୱିକାଦିଭେଦମେବ କାର୍ଯ୍ୟଭେଦେନ ପ୍ରପଞ୍ଚୟତି । ଯଜନ୍ତ ଇତି । ସାତ୍ତ୍ୱିକା ଜନାଃ ସତ୍ତ୍ୱପ୍ରକୃତୀନ୍ ଦେବାନେବ ଯଜନ୍ତେ ପୂଜୟନ୍ତି, ରାଜସାସ୍ତୁ ରଜଃପ୍ରକୃତୀନ୍ ଯକ୍ଷାନ୍ ରକ୍ଷାଂସି ଚ ଯଜନ୍ତେ, ଏତେଭ୍ୟୋଽନ୍ୟେ ବିଲକ୍ଷଣାସ୍ତାମସା ଜନାସ୍ତାମସାନେବ ପ୍ରେତାନ୍ ଭୂତଗଣାଂଶ୍ଚ ଯଜନ୍ତେ, ସତ୍ତ୍ୱାଦିପ୍ରକୃତୀନାଂ ତତ୍ତଦ୍ଦେବାଦୀନାଂ ପୂଜାଲିଙ୍ଗୈରେବ ସାତ୍ତ୍ୱିକାଦିତ୍ୱଂ ଜ୍ଞାତବ୍ୟମିତ୍ୟର୍ଥଃ ।

### ପଦବ୍ୟାଖ୍ୟା ।

ଯଜନ୍ତେ—ଉପାସନା କରନ୍ତି, ସାତ୍ତ୍ୱିକାଃ—ସତ୍ତ୍ୱଗୁଣିମାନେ, ଦେବାନ୍—ଦେବତାମାନଙ୍କୁ, ଯକ୍ଷରକ୍ଷାଂସି—ଯକ୍ଷ ଓ ରାକ୍ଷସମାନଙ୍କୁ, ରାଜସାଃ—ରଜୋଗୁଣିମାନେ, ପ୍ରେତାନ୍ ଭୂତଗଣାନ୍ ଚ—ପ୍ରେତ ଓ ଭୂତଗଣମାନଙ୍କୁ, ଅନ୍ୟେ—ଏହା ଭିନ୍ନ, ଯଜନ୍ତେ—ପୂଜା କରନ୍ତି, ତାମସା ଜନାଃ—ତମୋଗୁଣୀ ଲୋକମାନେ । ୪ ।

### ଅନୁବାଦ ।

ସତ୍ତ୍ୱଗୁଣିମାନେ ଦେବତାଙ୍କୁ, ରଜୋଗୁଣିମାନେ ଯକ୍ଷ ଓ ରାକ୍ଷସମାନଙ୍କୁ ପୂଜା କରନ୍ତି, ଏବଂ ଏଥିରୁ ଭିନ୍ନ ତମୋଗୁଣିମାନେ ପ୍ରେତ ଓ ଭୂତମାନଙ୍କୁ ପୂଜା କରନ୍ତି । ୪ ।

### ବିଶଦବ୍ୟାଖ୍ୟା ।

ଶାସ୍ତ୍ରବିଧି ଲଙ୍ଘନ କରି ପରମ୍ପରା ପ୍ରଚଳିତ ରୀତିର ବଶୀଭୂତ, ଯେ ପୁରୁଷ, ତାହାର ନିଷ୍ଠା କେଉଁ ଜାତୀୟ, ଏହା ସ୍ଥିର କରି ନ ପାରି ଅର୍ଜୁନ ଶ୍ରୀଭଗବାନଙ୍କୁ ପ୍ରଶ୍ନ କରିଥିଲେ, ଶ୍ରୀଭଗବାନ୍ ପୂର୍ବଶ୍ଳୋକରେ କହିଲେ, ଯେ ସେପରି ପୁରୁଷର ନିଷ୍ଠା କେଉଁ ଜାତୀୟ, ତାହା ନିର୍ଣ୍ଣୟ କରିବାକୁ ହେଲେ, ତାହାଙ୍କର ଶ୍ରଦ୍ଧା କେଉଁ ଜାତୀୟ, ତାହା ନିର୍ଣ୍ଣୟ କରିବା ଉଚିତ । ଏ ଶ୍ଳୋକରେ ସେହି ଶ୍ରଦ୍ଧା ନିର୍ଣ୍ଣୟ କରିବାର ପ୍ରଣାଳୀ ବୁଝାଉ ଅଛନ୍ତି—

ଯେଉଁ ବ୍ୟକ୍ତି ସାତ୍ତ୍ୱିକ ଅର୍ଥାତ୍ ଯାହାଙ୍କର ଅନ୍ତଃକରଣ ସତ୍ତ୍ୱଭାବାପନ୍ନ ଓ ଯାହାଙ୍କର ଶ୍ରଦ୍ଧା ସାତ୍ତ୍ୱିକୀ, ସେ, ଦେବତାମାନଙ୍କୁ ପୂଜା କରନ୍ତି ଅର୍ଥାତ୍ ଶାସ୍ତ୍ରର ଅର୍ଥ ବୁଝିବାକୁ ଯତ୍ନ ନ କରି ସ୍ୱାଭାବିକ ଶ୍ରଦ୍ଧା ଅନୁସାରେ ଯେଉଁ ବ୍ୟକ୍ତି ଦେବତା ପୂଜା କରନ୍ତି, ତାହାଙ୍କୁ ସତ୍ତ୍ୱଗୁଣୀ ବୋଲି ଜାଣିବ । ସୁତରାଂ ତାଙ୍କର ଶ୍ରଦ୍ଧା ଓ ନିଷ୍ଠା, ଯେ ସାତ୍ତ୍ୱିକୀ ଅଟେ ତହିଁରେ ଆଉ ସନ୍ଦେହ କଣ ? ସେହିପରି ରାଜସ ବ୍ୟକ୍ତି ରଜୋଗୁଣୀ କୁବେରାଦି ଯକ୍ଷ ଓ ନୈରୃତାଦି ରାକ୍ଷସଙ୍କର ପୂଜକ ହୁଅନ୍ତି ଏବଂ ତାମସ ବ୍ୟକ୍ତି ତମୋଗୁଣୀ ଭୂତ ପ୍ରେତମାନଙ୍କୁ ପୂଜା କରନ୍ତି ଅର୍ଥାତ୍ ସ୍ୱାଭାବିକୀ ଶ୍ରଦ୍ଧାର ସହିତ ଯକ୍ଷ ରାକ୍ଷସଙ୍କର ପୂଜକଙ୍କୁ ରାଜସ ବୋଲାଯାଏ ଓ ତାହାଙ୍କର

ଶ୍ରଦ୍ଧା ଏବଂ ନିଷ୍ଠା ରାଜସୀ ଅଟେ, ଏବଂ ଭୂତପ୍ରେତାଦି ପୂଜକ ତାମସ ଅଟନ୍ତି ଓ ତାହାଙ୍କର ଶ୍ରଦ୍ଧା ଏବଂ ନିଷ୍ଠାକୁ ତାମସୀ ବୋଲି ଜାଣିବ ।

ଆପଣାର ବର୍ଣ୍ଣାଶ୍ରମିକ ଧର୍ମରୁ ଭ୍ରଷ୍ଟ ହୋଇଥିବା ଲୋକେ, ସ୍ଥୂଳ ଦେହତ୍ୟାଗ କଲେ, ବାୟବୀୟ ଦେହ ଧାରଣ କରି ଏକପ୍ରକାର ଯୋନିରେ ଜନ୍ମଗ୍ରହଣ କରନ୍ତି, ତାହାଙ୍କୁ 'ପ୍ରେତ' ବୋଲାଯାଏ ଓ ସେମାନେ ଉଲ୍କାମୁଖ, କଟ ଓ ପୂତନାଦି ନାନାଶ୍ରେଣୀରେ ବିଭକ୍ତ ଅଟନ୍ତି ଏବଂ ସପ୍ତମାତୃକା ପ୍ରଭୃତିଙ୍କୁ ଭୂତଗଣ ବୋଲାଯାଏ ।

ବ୍ୟକ୍ତିବିଶେଷର ଅନିଷ୍ଟ କରିବା ଇଚ୍ଛାରେ ଭୂତପ୍ରେତାଦି ପୂଜା କରିବାର ବିଧି କୌଣସି୨ ତନ୍ତ୍ରରେ ଅଛି । ୪ ।

ଶ୍ଳୋକଃ ।

ଅଶାସ୍ତ୍ରବିହିତଂ ଘୋରଂ, ତପ୍ୟନ୍ତେ ଯେ ତପୋଜନାଃ ।
ଦମ୍ଭାହଙ୍କାରସଂଯୁକ୍ତାଃ, କାମରାଗବଲାନ୍ୱିତାଃ । ୫ ।

ଅନ୍ୱୟଃ ।

ଯେ ଜନାଃ ଦମ୍ଭାହଙ୍କାରସଂଯୁକ୍ତାଃ, କାମରାଗବଲାନ୍ୱିତାଃ (ସନ୍ତଃ) ଅଶାସ୍ତ୍ରବିହିତଂ ଘୋରଂ ତପଃ ତପ୍ୟନ୍ତେ, (ତାନ୍ ଅସୁରନିଶ୍ଚୟାନ୍ ବିଦ୍ଧି) । ୫ ।

ଟୀକା ।

ରାଜସତାମସେଷ୍ୱପି ପୂଜାବିଶେଷାନ୍ତରମାହ । ଅଶାସ୍ତ୍ରବିହିତମିତି ଦ୍ୱାଭ୍ୟାଂ । ଶାସ୍ତ୍ରବିଧିମଜାନନ୍ତୋଽପି କେଚନ ପ୍ରାଚୀନପୁଣ୍ୟସଂସ୍କାରେଣୋତ୍ତମାଃ ସାତ୍ତ୍ୱିକା ଏବ ଭବନ୍ତି । କେଚିନ୍ମଧ୍ୟମା ରାଜସା ଭବନ୍ତି, ଅଧମାସ୍ତୁ ତାମସା ଭବନ୍ତି, ଯେ ପୁନରତ୍ୟନ୍ତଂ ମନ୍ଦଭାଗ୍ୟାଃ ତେ ଗତାନୁଗତ୍ୟା ପାଷଣ୍ଡସଙ୍ଗେନ ଚ ତଦାଗ୍ରହାନୁବର୍ତ୍ତିନଃ ସନ୍ତୋଽଶାସ୍ତ୍ରବିହିତଂ ଘୋରଂ ଭୂତଭୟଙ୍କରଂ ତପସ୍ତପ୍ୟନ୍ତେ-କୁର୍ବନ୍ତି । ତତ୍ର ହେତବଃ ଦମ୍ଭାହଙ୍କାରାଭ୍ୟାଂ ସଂଯୁକ୍ତାଃ, ତଥାକାମୋଽଭିଲାଷଃ ରାଗ ଆସକ୍ତିଃ, ବଲମାଗ୍ରହଃ ଏତୈରନ୍ୱିତାଃ ସନ୍ତଃ, ତାନ୍ ଅସୁରନିଶ୍ଚୟାନ୍ ବିଦ୍ଧୀତ୍ୟୁତ୍ତରେଣାନ୍ୱୟଃ । ୫ ।

ପଦବ୍ୟାଖ୍ୟା ।

ଅଶାସ୍ତ୍ରବିହିତଂ—ଶାସ୍ତ୍ରବିଧି ବିବର୍ଜିତ, ଘୋରଂ—ଭୟଙ୍କର, ତପ୍ୟନ୍ତେ—ଅନୁଷ୍ଠାନ କରନ୍ତି, ଯେ—ଯେଉଁ, ତପଃ—ତପସ୍ୟା, ଜନାଃ—ଲୋକମାନେ, ଦମ୍ଭାହଙ୍କାରସଂଯୁକ୍ତାଃ—ଦମ୍ଭ ଓ ଅହଙ୍କାର ଯୁକ୍ତ, କାମରାଗବଲାନ୍ୱିତାଃ—ଅଭିଳାଷ, ଆସକ୍ତି ଓ ଆଗ୍ରହଯୁକ୍ତ । ୫ ।

ଅନୁବାଦ ।

ଦମ୍ଭ, ଅହଙ୍କାର, ଅଭିଳାଷ, ଆସକ୍ତି ଓ ଆଗ୍ରହଯୁକ୍ତ ହୋଇ ଯେଉଁ ଲୋକମାନେ ଶାସ୍ତ୍ରବିଧି ଲଙ୍ଘନ କରି କଠିନ ତପସ୍ୟା ଆଚରଣ କରନ୍ତି (ସେମାନଙ୍କୁ ଅସୁରସ୍ୱଭାବ ବୋଲି ଜାଣ) । ୫ ।

ବିଶଦବ୍ୟାଖ୍ୟା ।

ବେଦ ଓ ସ୍ମୃତି ପ୍ରଭୃତିରେ ଯେପରି ତପସ୍ୟାର ବିଧି ଅଛି, ତାହା ଅପେକ୍ଷା ଅତି କଠିନ—ଅତି ଭୟଙ୍କର ବିଧିରେ ଯେଉଁମାନେ ତପସ୍ୟା ଆଚରଣ କରନ୍ତି, ସୁତରାଂ ଶାସ୍ତ୍ରବିଧିବର୍ଜିତ ସ୍ୱକପୋଳକଳ୍ପିତ ତପସ୍ୟାରେ ପ୍ରବୃତ୍ତ ହୁଅନ୍ତି, ପୁଣି ଦମ୍ଭ, ଅହଂକାର, କାମ, ରାଗ ଓ

Digitized by PPRACHIN, SOA

ବଳଦ୍ୱାରା ଯୁକ୍ତ ହୁଅନ୍ତି (ସେମାନେ ଆସୁର ସ୍ୱଭାବର ଲୋକ ଅଟନ୍ତି ଏହା ନିଶ୍ଚୟରୂପେ ତୁମ୍ଭେ ଜାଣ) । ୫ ।

ଶ୍ଳୋକଃ ।

କର୍ଷୟନ୍ତଃ ଶରୀରସ୍ଥଂ, ଭୂତଗ୍ରାମମଚେତସଃ ।
ମାଂ ଚୈବାନ୍ତଃଶରୀରସ୍ଥଂ, ତାନ୍ ବିଦ୍ଧ୍ୟାସୁରନିଶ୍ଚୟାନ୍ । ୬ ।

ଅନ୍ୱୟଃ ।

(ଯେ) ଅଚେତସଃ ଶରୀରସ୍ଥଂ ଭୂତଗ୍ରାମଂ ଚ ଅନ୍ତଃଶରୀରସ୍ଥଂ ମାଂ ଏବ କର୍ଷୟନ୍ତଃ (ତପ୍ୟନ୍ତେ) ତାନ୍ ଆସୁରନିଶ୍ଚୟାନ୍ ବିଦ୍ଧି । ୬ ।

ଟୀକା ।

କିଞ୍ଚ କର୍ଷୟନ୍ତ ଇତି । ଶରୀରସ୍ଥଂ ଆରମ୍ଭକତ୍ୱେନ ଦେହେ ସ୍ଥିତଂ ଭୂତାନାଂ ପୃଥିବ୍ୟାଦୀନାଂ ଗ୍ରାମଂ ସମୂହଂ କର୍ଷୟନ୍ତୋ ବୃଥୈବୋପବାସାଦିଭିଃ କୃଶଂ କୁର୍ବନ୍ତୋଽଚେତସୋଽବିବେକିନଃ ମାଂ ଚାନ୍ତର୍ଯ୍ୟାମିତୟା ଅନ୍ତଃଶରୀରସ୍ଥଂ ଦେହମଧ୍ୟେ ସ୍ଥିତଂ ମଦାଜ୍ଞାଲଙ୍ଘନେନୈବ କର୍ଷୟନ୍ତୋ ଯେ ତପଶ୍ଚରନ୍ତି ତାନାସୁରନିଶ୍ଚୟାନ୍, ଆସୁରୋଽତିକ୍ରୂରୋ ନିଶ୍ଚୟୋ ଯେଷାଂ ତାନ୍, ବିଦ୍ଧି । ୬ ।

ପଦବ୍ୟାଖ୍ୟା ।

କର୍ଷୟନ୍ତଃ—ପୀଡ଼ା ଦେଇ—କୃଶକରି, ଶରୀରସ୍ଥଂ—ଦେହସ୍ଥିତ, ଭୂତଗ୍ରାମଂ—ପୃଥିବ୍ୟାଦି ଭୂତସମୂହକୁ ଅଚେତସଃ—ଅବିବେକି ବ୍ୟକ୍ତିମାନେ, ମାଂ ଚ ଏବ—ଆମ୍ଭଙ୍କୁ ମଧ୍ୟ, ଅନ୍ତଃଶରୀରସ୍ଥଂ—ଅନ୍ତର୍ଯ୍ୟାମିରୂପରେ ଶରୀରରେ ସ୍ଥିତ, ତାନ୍—ସେମାନଙ୍କୁ, ବିଦ୍ଧି—ଜାଣ, ଆସୁରନିଶ୍ଚୟାନ୍—ଆସୁରସ୍ୱଭାବ—ଉଗ୍ରକର୍ମୀ । ୬ ।

ଅନୁବାଦ ।

(ଯେଉଁ) ଅବିବେକିମାନେ, ଶରୀରସ୍ଥିତପୃଥିବ୍ୟାଦି ଭୂତସମୂହକୁ ଓ ଅନ୍ତଃଶରୀରସ୍ଥିତ ଆମ୍ଭଙ୍କୁ ମଧ୍ୟ, ପୀଡ଼ା ଦେଇ (ଘୋର ତପସ୍ୟା କରନ୍ତି,) ସେମାନଙ୍କୁ ଆସୁର ନିଶ୍ଚୟ ଅର୍ଥାତ୍ କ୍ରୂରସ୍ୱଭାବ ବୋଲି ଜାଣ । ୬ ।

ବିଶଦବ୍ୟାଖ୍ୟା ।

ଯେଉଁ ବ୍ୟକ୍ତିମାନେ ଶାସ୍ତ୍ରବିରୁଦ୍ଧ ଭୟଙ୍କର ତପସ୍ୟା କରନ୍ତି, ସେମାନେ ଶାସ୍ତ୍ର ଜାଣି ନ ଥିବାରୁ ବିବେକ ହୀନ ହୋଇ ସେପରି ତପସ୍ୟାରେ କୌଣସି ଫଳ ନ ଥିବାର ଜାଣି ପାରନ୍ତି ନାହିଁ, ଏହି ହେତୁ ସେପରି ଭୟଙ୍କର ତପସ୍ୟା କରି ଉପବାସ ପ୍ରଭୃତିଦ୍ୱାରା ଆପଣାର ଶରୀରକୁ ଶୁଷ୍କ କରନ୍ତି—ପୀଡ଼ା ପ୍ରଦାନ କରନ୍ତି । ଶରୀରଗତ ପୃଥିବ୍ୟାଦି ପଞ୍ଚଭୂତର ସମଷ୍ଟି, ଶରୀରକୁ ଶୁଷ୍କ କରିବାଦ୍ୱାରା ପୃଥିବ୍ୟାଦି ଭୂତସମୂହକୁ କୃଶ କରନ୍ତି ଅର୍ଥାତ୍ ପୀଡ଼ା ପ୍ରଦାନ କରନ୍ତି । ପୁଣି ଅନ୍ତଃଶରୀରରେ ଅର୍ଥାତ୍ ଶରୀର ମଧ୍ୟରେ ଜୀବ ରୂପରେ ଅଥବା ଅନ୍ତର୍ଯ୍ୟାମି-ରୂପରେ ଆମ୍ଭେ ସ୍ଥିତ ଅଛୁଁ । ଆମ୍ଭର ଆଜ୍ଞା ରୂପ ଶାସ୍ତ୍ରବିଧି ଲଙ୍ଘନ କରିବାଦ୍ୱାରା ଆମ୍ଭଙ୍କୁ ମଧ୍ୟ ପୀଡ଼ା ପ୍ରଦାନ କରନ୍ତି । ଅତଏବ ଏ ପ୍ରକାର ଶାସ୍ତ୍ର ବିରୁଦ୍ଧ ଭୟାନକ କର୍ମକାରମାନେ, ଯେ 'ଆସୁର ନିଶ୍ଚୟ' ଅର୍ଥାତ୍ ଅତି କ୍ରୂରସ୍ୱଭାବ ଅଟନ୍ତି, ସେଥିରେ ଆଉ ସନ୍ଦେହ କଣ ? । ୬ ।

Digitized by PPRACHIN, SOA

### ଶ୍ଳୋକଃ ।

ଆହାରସ୍ତ୍ୱପି ସର୍ବସ୍ୟ, ତ୍ରିବିଧୋ ଭବତି ପ୍ରିୟଃ ।
ଯଜ୍ଞସ୍ତପସ୍ତଥା ଦାନଂ, ତେଷାଂ ଭେଦମିମଂ ଶୃଣୁ ॥ ୭ ॥

### ଅନ୍ୱୟଃ ।

ତୁ ସର୍ବସ୍ୟ ପ୍ରିୟଃ ଆହାରଃ ଅପି ତ୍ରିବିଧଃ ଭବତି, ତଥା ଯଜ୍ଞଃ ତପଃ ଦାନଂ, ତେଷାଂ ଇମଂ ଭେଦଂ ଶୃଣୁ ।୭।

### ଟୀକା ।

ଆହାରାଦିଭେଦାଦପି ସାତ୍ତ୍ୱିକାଦିଭେଦଂ ଦର୍ଶୟିତୁମାହ । ଆହାରସ୍ତ୍ୱିତ୍ୟାଦି ତ୍ରୟୋଦଶଭିଃ । ସର୍ବସ୍ୟାପି ଜନସ୍ୟ ଯ ଆହାରୋଽନ୍ନାଦିଃ ସ ତୁ ଯଥାଯଥଂ ତ୍ରିବିଧଃ ପ୍ରିୟୋ ଭବତି, ତଥା ଯଜ୍ଞତପୋଦାନାନି ତ୍ରିବିଧାନି ଭବନ୍ତି, ତେଷାଂ ବକ୍ଷ୍ୟମାଣଂ ଭେଦମିମଂ ଶୃଣୁ, ଏତଚ୍ଚ ରାଜସତାମସାହାରଯଜ୍ଞାଦିପରିତ୍ୟାଗେନ ସାତ୍ତ୍ୱିକାହାରଯଜ୍ଞାଦିସେବୟା ସତ୍ତ୍ୱବୃଦ୍ଧୌ ଯତ୍ନଃ କର୍ତ୍ତବ୍ୟ ଇତ୍ୟେତଦର୍ଥଂ କଥ୍ୟତେ ।୭।

### ପଦବ୍ୟାଖ୍ୟା ।

ଆହାରଃ ତୁ ଅପି—ପୁଣି ଭୋଜନ ମଧ୍ୟ, ସର୍ବସ୍ୟ—ସମସ୍ତଙ୍କର, ତ୍ରିବିଧଃ—ତିନପ୍ରକାର, ଭବତି—ହୁଏ, ପ୍ରିୟଃ—ବାଞ୍ଛନୀୟ, ଯଜ୍ଞଃ ତପଃ ତଥା ଦାନଂ—ଯଜ୍ଞ, ତପସ୍ୟା ଓ ଦାନ ମଧ୍ୟ ତିନପ୍ରକାର, ତେଷାଂ ଭେଦଂ ଇମଂ ଶୃଣୁ—ସେମାନଙ୍କର ଏହି ପ୍ରଭେଦ ଶ୍ରବଣ କର ।୭।

### ଅନୁବାଦ ।

ପୁଣି ସମସ୍ତଙ୍କର ପ୍ରୀତିକର ଭୋଜନ ଓ ଯଜ୍ଞ, ତପ ଏବଂ ଦାନାଦି ମଧ୍ୟ ତିନପ୍ରକାର ହୁଏ, ସେମାନଙ୍କର ଏହି ପ୍ରଭେଦ ଶ୍ରବଣ କର ।୭।

### ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜୁନ ! ସତ୍ତ୍ୱାଦି ଗୁଣ ଅନୁସାରେ କେବଳ ଶ୍ରଦ୍ଧା ଓ ନିଷ୍ଠା, ଯେ ତିନପ୍ରକାର ହୁଏ, ତାହା ନୁହେ, ପ୍ରାଣିମାତ୍ରର ପ୍ରିୟ ଅଟେ, ଯେ ଆହାର, ତାହା, ଅଉ ଯଜ୍ଞ, ତପସ୍ୟା ଓ ଦାନାଦି ଅର୍ଥାତ୍ ସର୍ବପ୍ରକାର କର୍ମ ମଧ୍ୟ, ସତ୍ତ୍ୱାଦି ଗୁଣ ଭେଦରେ ତିନପ୍ରକାର ଅଟେ, ଅର୍ଥାତ୍ ଯଜ୍ଞରେ ସାତ୍ତ୍ୱିକ, ରାଜସ ଓ ତାମସ ଭେଦ ଅଛି, ତପସ୍ୟା ମଧ୍ୟ ସାତ୍ତ୍ୱିକାଦି ଭେଦରେ ତିନପ୍ରକାର, ଦାନ ମଧ୍ୟରେ କେହି ସାତ୍ତ୍ୱିକ, କେହି ରାଜସ ଓ କେହି ତାମସିକ । ସର୍ବପ୍ରାଣୀଙ୍କର ଅତି ବାଞ୍ଛନୀୟ, ଯେ ଭୋଜନ, ସେ ମଧ୍ୟ, ସାତ୍ତ୍ୱିକ ଓ ରାଜସ ଏବଂ ତାମସ ଭେଦରେ ତିନପ୍ରକାର ହୁଏ ; ସେମାନଙ୍କର ପ୍ରଭେଦ (ଅର୍ଥାତ୍ କାହାକୁ ସାତ୍ତ୍ୱିକ କାହାକୁ ରାଜସ ଓ କାହାକୁ ତାମସ ବୋଲାଯାଏ) ପରବର୍ତ୍ତୀ ଶ୍ଳୋକମାନଙ୍କରେ ଆମ୍ଭେ ବ୍ୟାଖ୍ୟା କରୁଅଛୁଁ ଶ୍ରବଣ କର ।୭।

### ଶ୍ଳୋକଃ ।

* ଆୟୁଃସତ୍ତ୍ୱବଲାରୋଗ୍ୟସୁଖପ୍ରୀତିବିବର୍ଦ୍ଧନାଃ ।
ରସ୍ୟାଃ ସ୍ନିଗ୍ଧାଃ ସ୍ଥିରା ହୃଦ୍ୟା, ଆହାରାଃ ସାତ୍ତ୍ୱିକପ୍ରିୟାଃ ।୮।

Digitized by PPRACHIN, SOA

### ଅନ୍ୱୟଃ ।

ଆୟୁଃ-ସତ୍ତ୍ୱ-ବଳା-ରୋଗ୍ୟ-ସୁଖ-ପ୍ରୀତି-ବିବର୍ଦ୍ଧନାଃ, ରସ୍ୟାଃ, ସ୍ନିଗ୍ଧାଃ, ସ୍ଥିରାଃ, (ତଥା) ହୃଦ୍ୟାଃ ଆହାରାଃ ସାତ୍ତ୍ୱିକ-ପ୍ରିୟାଃ (ଭବନ୍ତି) । ୮ ।

### ଟୀକା ।

• ତଦ୍ଦାହାରତ୍ରୈବିଧ୍ୟମାହ । ଆୟୁରିତି ତ୍ରିଭିଃ । ଆୟୁର୍ଜୀବନଂ, ସତ୍ତ୍ୱ-ମୁତ୍ସାହଃ, ବଳଂ-ଶକ୍ତିଃ, ଆରୋଗ୍ୟଂ-ରୋଗରାହିତ୍ୟଂ, ସୁଖଂ-ଚିତ୍ତପ୍ରସାଦଃ, ପ୍ରୀତିରଭିରୁଚିଃ; ଆୟୁରାଦୀନାଂ ବିବର୍ଦ୍ଧନାଃ ବିଶେଷେଣ ବୃଦ୍ଧିକରାଃ ତେ ଚ ରସ୍ୟାଃ ରସବନ୍ତଃ ସ୍ନିଗ୍ଧାଃ ସ୍ନେହଯୁକ୍ତାଃ ସ୍ଥିରାଃ ଦେହେ ସାରାଂଶେନ ଚିରକାଳାବସ୍ଥାୟିନଃ, ହୃଦ୍ୟାଃ ଦୃଷ୍ଟିମାତ୍ରାଦେବ ହୃଦୟଙ୍ଗମାଃ ଏବମ୍ଭୂତା ଆହାରା ଭକ୍ଷଭୋଜ୍ୟାଦୟଃ ସାତ୍ତ୍ୱିକପ୍ରିୟାଃ । ୮ ।

### ପଦବ୍ୟାଖ୍ୟା ।

ଆୟୁଃସତ୍ତ୍ୱବଳାରୋଗ୍ୟସୁଖପ୍ରୀତି-ବିବର୍ଦ୍ଧନାଃ—ଜୀବନ, ଉତ୍ସାହ, ସାମର୍ଥ୍ୟ, ସ୍ୱାସ୍ଥ୍ୟ, ଚିତ୍ତର ପ୍ରସନ୍ନତା ଓ ରୁଚି ଏମାନଙ୍କର ବର୍ଦ୍ଧନକାରୀ ଅର୍ଥାତ୍ ଯାହାଦ୍ୱାରା ଏମାନେ ବିଶେଷ ପରିମାଣରେ ବୃଦ୍ଧିପ୍ରାପ୍ତ ହୁଅନ୍ତି, ରସ୍ୟାଃ—ରସବନ୍ତ ଅର୍ଥାତ୍ ସୁସ୍ୱାଦୁ, ସ୍ନିଗ୍ଧାଃ—ସ୍ନେହଯୁକ୍ତ—ଚିକ୍‌କଣ, ସ୍ଥିରାଃ—ଯାହାର ଗୁଣ ବହୁତକାଳ ପର୍ଯ୍ୟନ୍ତ ଶରୀରରେ ରହେ; ହୃଦ୍ୟାଃ—ମନୋହର, ଆହାରାଃ—ଏ ପ୍ରକାର ଭୋଜନ ସବୁ, ସାତ୍ତ୍ୱିକପ୍ରିୟାଃ—ସତ୍ତ୍ୱଗୁଣି ବ୍ୟକ୍ତିଙ୍କର ପ୍ରିୟ ହୁଏ । ୮ ।

### ଅନୁବାଦ ।

ପରମାୟୁ, ଉତ୍ସାହ, ସାମର୍ଥ୍ୟ, ସ୍ୱାସ୍ଥ୍ୟ, ଚିତ୍ତପ୍ରସନ୍ନତା ଓ ରୁଚି ଏମାନଙ୍କର ବର୍ଦ୍ଧନକାରୀ, ସ୍ୱାଦୁ, ଚିକ୍‌କଣ ଓ ସ୍ଥିର ଗୁଣସମ୍ପନ୍ନ ଏବଂ ମନୋହର, ଯେ ଆହାର ସବୁ, ତାହା, ସତ୍ତ୍ୱଗୁଣି ବ୍ୟକ୍ତିଙ୍କର ପ୍ରିୟ ହୁଏ । ୮ ।

### ବିଶଦବ୍ୟାଖ୍ୟା ।

ସମସ୍ତ ପ୍ରାଣିଙ୍କର ପ୍ରିୟ, ଯେ ଆହାର, ତାହା ମଧ୍ୟ ସାତ୍ତ୍ୱିକାଦି ଭେଦରେ ତିନପ୍ରକାର ହୁଏ ବୋଲି ପୂର୍ବଶ୍ଳୋକରେ କୁହା ଯାଇଥିଲା, ଏ ଶ୍ଳୋକରେ ସାତ୍ତ୍ୱିକ ଆହାରର କଥା ବୁଝାଇ ଦିଆ ଯାଉଅଛି ।

ଯେଉଁ ଆହାର କଲେ ଆୟୁର୍ବୃଦ୍ଧି ହୁଏ, ଯହିଁରେ ଶରୀରର ଅବସନ୍ନତା ବିନଷ୍ଟ ହୋଇ ସ୍ଫୂର୍ତ୍ତି ବା ଉତ୍ସାହ ବଢେ, ଯାହାଦ୍ୱାରା ଦୁର୍ବଳ ଦେହରେ ବଳର ସଞ୍ଚାର ହୁଏ ଏବଂ ଯହିଁରେ ରୋଗ ଜନ୍ମିପାରେ ନାହିଁ ଓ ପୂର୍ବରୁ ରୋଗ ଥିଲେ ତାହାର ଶାନ୍ତି ହୁଏ, ଯାହାଦ୍ୱାରା ମନରେ ପ୍ରସନ୍ନତା ଜନ୍ମେ, ଯେଉଁ ଆହାରରେ ମନର ତୃପ୍ତି ହୁଏ, ଯାହା ଭୋଜନ କରିବାକୁ ଅଧିକ ରୁଚି ହୁଏ, ଯାହା ସୁସ୍ୱାଦୁ, ସ୍ନେହଯୁକ୍ତ ଅର୍ଥାତ୍ ଘୃତାଦି ଚିକ୍‌କଣ ପଦାର୍ଥମିଶ୍ରିତ, ଯାହାର ଗୁଣ ଶରୀରରେ ଅନେକଦିନ ଯାଏ ରହେ ଏବଂ ଯହିଁରେ ଦୁର୍ଗନ୍ଧ ବା ଅପବିତ୍ରତାଦି ଦୋଷ ନ ଥିବାରୁ ଦର୍ଶନମାତ୍ରକେ ମନୋହର ବୋଧ ହୁଏ ଅର୍ଥାତ୍ ଖାଇବାକୁ ଇଚ୍ଛା ହୁଏ, ସେହିପ୍ରକାର ଖାଦ୍ୟକୁ ସାତ୍ତ୍ୱିକପ୍ରିୟ ବୋଲାଯାଏ ।

ଫଳକଥା ଏହି କି ସାତ୍ତ୍ୱିକଲୋକମାନେ ସେହିପ୍ରକାର ଆହାରକୁ ଭଲ ମଣନ୍ତି । ୮ ।

Digitized by PPRACHIN, SOA

ଶ୍ଳୋକଃ ।

* କଟ୍ୱମ୍ଳଲବଣାତ୍ୟୁଷ୍ଣ,ତୀକ୍ଷ୍ଣରୂକ୍ଷବିଦାହିନଃ ।
ଆହାରା ରାଜସସ୍ୟେଷ୍ଟା, ଦୁଃଖଶୋକାମୟପ୍ରଦାଃ ॥ ୯ ॥

ଅନ୍ୱୟଃ ।

କଟ୍ୱମ୍ଳଲବଣାତ୍ୟୁଷ୍ଣ-ତୀକ୍ଷ୍ଣ-ରୂକ୍ଷ-ବିଦାହିନଃ, ଦୁଃଖଶୋକାମୟପ୍ରଦାଃ ଆହାରାଃ ରାଜସସ୍ୟ ଇଷ୍ଟାଃ । ୯ ।

ଟୀକା ।

ତଥା କଟ୍ୱିତି । ଅତ୍ୟର୍ଥଃ କଟ୍ୱାଦିଷୁ ସପ୍ତସ୍ୱପି ସମ୍ବଧ୍ୟତେ, ତେନ ଅତିକଟୁ ନିମ୍ବାଦିଃ, ଅତ୍ୟମ୍ଳୋଽତିଲବଣୋଽ-ତ୍ୟୁଷ୍ଣଶ୍ଚ ପ୍ରସିଦ୍ଧଃ, ଅତିତୀକ୍ଷ୍ଣୋ ମରୀଚ୍ୟାଦିଃ, ଅତିରୂକ୍ଷଃ କଙ୍ଗୁକୋଦ୍ରବାଦିଃ, ଅତିବିଦାହୀ ସର୍ଷପାଦିଃ, ଅତିକଟ୍ୱାଦୟଃ ଆହାରା ରାଜସସ୍ୟେଷ୍ଟାଃ ପ୍ରିୟାଃ, ଦୁଃଖଂ ତାତ୍କାଳିକ ହୃଦୟସନ୍ତାପାଦି, ଶୋକଃ— ପଶ୍ଚାଦ୍ଭାବିଦୌର୍ମନସ୍ୟଂ, ଆମୟୋ ରୋଗଃ, ଏତାନ୍ ପ୍ରଦଦତି ପ୍ରୟଚ୍ଛନ୍ତୀତି ତଥା । ୯ ।

ପଦବ୍ୟାଖ୍ୟା ।

କଟ୍ୱମ୍ଳ-ଲବଣାତ୍ୟୁଷ୍ଣ-ତୀକ୍ଷ୍ଣରୂକ୍ଷ-ବିଦାହିନଃ—ଅତି କଟୁ, ଅତି ଅମ୍ଳ, ଅତି ଲବଣ, ଅତି ଉଷ୍ଣ, ଅତି ତୀକ୍ଷ୍ଣ, ଅତି ଲୁଖୁରା, ଓ ଅତି ଦାହଜନକ ଦ୍ରବ୍ୟ, ଆହାରାଃ—ଭୋଜନସବୁ, ରାଜସସ୍ୟ—ରଜୋଗୁଣି ଲୋକର, ଇଷ୍ଟାଃ—ପ୍ରିୟ, ଦୁଃଖଶୋକାମୟପ୍ରଦାଃ—ଦୁଃଖ ଶୋକ ଓ ରୋଗପ୍ରଦ । ୯ ।

ଅନୁବାଦ ।

ଅତି କଟୁ, ଅତି ଅମ୍ଳ, ଅତି ଲବଣ, ଅତି ଉଷ୍ଣ, ଅତି ତୀକ୍ଷ୍ଣ; ଅତି ରୁକ୍ଷ ଓ ଅତି ପ୍ରଦାହକର ଆହାର, ରଜୋଗୁଣୀ ବ୍ୟକ୍ତିଙ୍କର ପ୍ରିୟ ଅଟେ ଏବଂ ତାହା ଦୁଃଖ ଶୋକ ଓ ରୋଗଜନକ ଅଟେ । ୯ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ସାତ୍ତ୍ୱିକ ଆହାରର ବିଷୟ ବର୍ଣ୍ଣନ କରାହୋଇଅଛି, ଏ ଶ୍ଳୋକରେ ରଜୋଗୁଣୀ ବ୍ୟକ୍ତିଙ୍କର ଯେଉଁ ଆହାର ପ୍ରିୟ, ତାହାର (ଅର୍ଥାତ୍ ରାଜସ ଆହାରର) କଥା ଲେଖାଯାଉଅଛି ।

ଯେଉଁ ଆହାର ଅତି କଟୁ, (ଯେପରି କ ନିମ୍ବ ପ୍ରଭୃତି) ଯାହା ଅତି ଅମ୍ଳ, ଯାହା ଅତି ଲୁଣିଆ, ଯାହା ଅତି ଉଷ୍ଣ, ଯାହା ଅତି ତୀକ୍ଷ୍ଣ (ଝାଗ, ଯେପରି ଲଙ୍କାମରିଚ ଇତ୍ୟାଦି) ଯାହା ଅତି ଲୁଖୁରା ଅର୍ଥାତ୍ ଯହିଁରେ ଚିକ୍କଣ ପଦାର୍ଥ ନ ଥାଏ (ଯେପରି କାଙ୍ଗୁ କୋଦୁଅ ଇତ୍ୟାଦି) ଆଉ ଯାହା ଅତି ବିଦାହୀ ଅର୍ଥାତ୍ ଦାହଜନକ, (ଯେପ୍ରକାର ରାଇ ଶୋରିଷ ପ୍ରଭୃତି) ତାହା, ରଜୋଗୁଣୀ ବ୍ୟକ୍ତିଙ୍କର ପ୍ରିୟ । ସେହିସବୁ ଆହାର ଭୋଜନ ସମୟରେ ଦୁଃଖ ଅର୍ଥାତ୍ କଟୁ ଉଷ୍ଣାଦିହେତୁ ମୁଖ ଓ ଜିହ୍ୱାଦିରେ ପୀଡ଼ା ଜନ୍ମାଏ, ଏବଂ ପରିପାକ ସମୟରେ ଶୋକ-ଅର୍ଥାତ୍ ଅବସାଦ ବା ଗ୍ଳାନି ଜନ୍ମାଏ ଏବଂ ପରିଣାମରେ ଜ୍ୱର ଆମାଶୟ ପ୍ରଭୃତି ରୋଗ ଜାତ କରାଏ । ତଥାପି ରଜୋଗୁଣୀ ବ୍ୟକ୍ତିଙ୍କର ସ୍ୱଭାବ ଅନୁରୂପ ହେବାରୁ ସେମାନଙ୍କୁ ସେହି ଆହାର ଭଲ ଲାଗେ । ୯ ।

Digitized by PPRACHIN, SOA

ଶ୍ଳୋକଃ ।

* ଯାତଯାମଂ ଗତରସଂ, ପୂତି ପର୍ଯ୍ୟୁଷିତଂ ଚ ଯତ୍ ।
ଉଚ୍ଛିଷ୍ଟମପି ଚାମେଧ୍ୟଂ, ଭୋଜନଂ ତାମସପ୍ରିୟମ୍ । ୧୦ ।

ଅନ୍ୱୟଃ ।

ଯତ୍ ଭୋଜନଂ ଯାତଯାମଂ, ଗତରସଂ, ପୂତି, ପର୍ଯ୍ୟୁଷିତଂ ଚ ଉଚ୍ଛିଷ୍ଟଂ ଅପିଚ ଅମେଧ୍ୟଂ (ତତ୍) ତାମସପ୍ରିୟଂ । ୧୦ ।

ଟୀକା ।

ଯାତଯାମମିତି । ଯାତୋଯାମଃ ପ୍ରହରୋଯସ୍ୟ ପକ୍ୱସ୍ୟୌଦନାଦେଃ, ତଦ୍ଯାତଯାମଂ ଶୈତ୍ୟାବସ୍ଥାଂ ପ୍ରାପ୍ତମିତ୍ୟର୍ଥଃ । ଗତରସଂ-ରସ୍ତିତରସଂ, ପୂତି-ଦୁର୍ଗନ୍ଧଂ, ପର୍ଯ୍ୟୁଷିତଂ-ଦିନାନ୍ତରପକ୍ୱଂ, ଉଚ୍ଛିଷ୍ଟଂ ଅନ୍ୟଭୁକ୍ତାବଶିଷ୍ଟଂ, ଅମେଧ୍ୟଂ-ଅଭକ୍ଷ୍ୟଂ-କଲଞ୍ଜାଦି, ଏବମ୍ଭୂତଂ ଭୋଜନଂ ଭୋଜ୍ୟଂ ତାମସସ୍ୟ ପ୍ରିୟଂ । ୧୦ ।

ପଦବ୍ୟାଖ୍ୟା ।

ଯାତଯାମଂ—ଯାହା ଏକ ପ୍ରହର ପୂର୍ବରୁ ସିଦ୍ଧ ବା ପ୍ରସ୍ତୁତ ହୋଇଥାଏ, ଗତରସଂ—ରସ ତପ୍ତହୀନ ଉତ୍ତାରେ ଯେଉଁ ଶିଠା ଥାଏ, ଅଥବା ସ୍ୱାଦୁହୀନ, ପୂତି—ଦୁର୍ଗନ୍ଧ, ପର୍ଯ୍ୟୁଷିତଂ ଚ ଯତ୍—ଯାହା ବାସୀ ଅର୍ଥାତ୍ ଗତ ଦିବସରେ ପ୍ରସ୍ତୁତ, ଉଚ୍ଛିଷ୍ଟଂ ଅପି ଚ—ଅନ୍ୟ ବ୍ୟକ୍ତିର ଭକ୍ଷଣାବଶିଷ୍ଟ (ଯଇଣ୍ଠା), ଅମେଧ୍ୟଂ—ଅପବିତ୍ର (ଯଥା ମଦ୍ୟ, କୁକ୍କୁଟାଦିର ମାଂସ, ରସୁଣ, ପଳାଣ୍ଡୁ ପ୍ରଭୃତି), ଭୋଜନଂ—ଆହାର, ତାମସପ୍ରିୟଂ—ତମୋଗୁଣି ବ୍ୟକ୍ତିଙ୍କର ପ୍ରିୟ । ୧୦ ।

ଅନୁବାଦ ।

ଯେଉଁ ଆହାର ଏକ ପ୍ରହର ପୂର୍ବରୁ ପ୍ରସ୍ତୁତ, ନୀରସ, ଦୁର୍ଗନ୍ଧ, ବାସୀ ଓ ଉଚ୍ଛିଷ୍ଟ ଏବଂ ଅପବିତ୍ର (ତାହା) ତମୋଗୁଣୀଙ୍କର ପ୍ରିୟ ଅଟେ । ୧୦ ।

ବିଶଦବ୍ୟାଖ୍ୟା ।

ଯେଉଁ ଅନ୍ନାଦି ପ୍ରସ୍ତୁତ ହେଲା ପରେ 'ଯାମ'=ଏକ ପ୍ରହର କାଳ ଗତ ହୋଇଥାଏ, ସୁତରାଂ ଯାହା ଅତି ଶୀତଳ ହୋଇ ଯାଇଥାଏ, ତାହାକୁ 'ଯାତଯାମ' ବୋଲାଯାଏ । ଯହିଁରୁ ରସ ଶୁଖି ଯାଇଥାଏ, ବା ଚିପୁଡ଼ି କରି ରସ ବାହାର କରି ନିଆ ଯାଇଥାଏ, ଅଥବା ଯାହା ସ୍ୱାଦୁହୀନ, ତାହାକୁ 'ଗତରସ' ବୋଲାଯାଏ । ଯେଉଁ ଭୋଜନ ବହୁତ ଦିବସ ପୂର୍ବରୁ ପ୍ରସ୍ତୁତ ହୋଇଥିବାରୁ ଅଥବା ଉପକରଣ ପଦାର୍ଥ ଦୋଷରୁ 'ପୂତିଗନ୍ଧ'ଯୁକ୍ତ, ତାହାକୁ 'ପୂତି' ବୋଲାଯାଏ । ଯାହା ଏକ ଦିବସ ପୂର୍ବରୁ ପ୍ରସ୍ତୁତ, ଅଥଚ ଦୁର୍ଗନ୍ଧ ହୋଇ ନାହିଁ, ତାହାକୁ ଏ ସ୍ଥଳରେ 'ପର୍ଯ୍ୟୁଷିତ' (ଅର୍ଥାତ୍ ବାସୀ) ନାମରେ ଉଲ୍ଲେଖ କରାଯାଇଅଛି । ଏକ ବ୍ୟକ୍ତି ଖାଇ ସାରିଲା ପରେ ଭୋଜନ ପାତ୍ରରେ ଯେଉଁ ଅବଶିଷ୍ଟ ଅନ୍ନ ଥାଏ, ତାହାକୁ 'ଉଚ୍ଛିଷ୍ଟ' ବୋଲାଯାଏ ଏବଂ ଶାସ୍ତ୍ରରେ ଯେଉଁ ସବୁ ଆହାର ନିଷିଦ୍ଧ ଅଛି, ଅଥବା ଗୁଣଭାଗ ଅପେକ୍ଷା ଯାହାର ଦୋଷ ଭାଗ ଅଧିକ, ସେ ପ୍ରକାର ଆହାରକୁ 'ଅମେଧ୍ୟ' ଅର୍ଥାତ୍ ଅଭକ୍ଷ୍ୟ ବୋଲାଯାଏ ।

ତମୋଗୁଣି ବ୍ୟକ୍ତିମାନେ ଉପରୋକ୍ତ ପ୍ରକାରର ଖାଦ୍ୟକୁ ଭଲ ମଣନ୍ତି । ଏ ସବୁ

Digitized by PPRACHIN, SOA

ଆହାର ସତ୍ତ୍ୱ ଗୁଣର ବିରୋଧୀ ଅର୍ଥାତ୍ ଏପ୍ରକାର ଆହାରଦ୍ୱାରା ସତ୍ତ୍ୱ ଗୁଣର ହ୍ରାସ ହୁଏ ଓ ତମୋଗୁଣର ବୃଦ୍ଧି ହୁଏ । ପୂର୍ବ ଶ୍ଳୋକ ଲିଖିତ ରାଜସ ଆହାର ମଧ୍ୟ, ସତ୍ତ୍ୱ ଗୁଣର ବିରୋଧୀ ଅଟେ । ୧୦ ।*

### ଶ୍ଳୋକଃ ।

* ଅଫଲାକାଂକ୍ଷିଭିର୍ଯଜ୍ଞୋ, ବିଧିଦୃଷ୍ଟୋ ଯ ଇଜ୍ୟତେ ।
ଯଷ୍ଟବ୍ୟମେବେତି ମନଃ, ସମାଧାୟ ସ ସାତ୍ତ୍ୱିକଃ । ୧୧ ।

### ଅନ୍ୱୟଃ ।

ଅଫଲାକାଂକ୍ଷିଭିଃ, ଯଷ୍ଟବ୍ୟଂ ଏବ, ଇତି ମନଃ ସମାଧାୟ ବିଧିଦୃଷ୍ଟଃ ଯଃ ଯଜ୍ଞଃ ଇଜ୍ୟତେ ସଃ ସାତ୍ତ୍ୱିକଃ । ୧୧ ।

### ଟୀକା ।

ଯଜ୍ଞୋଽପି ତ୍ରିବିଧସ୍ତତ୍ର ସାତ୍ତ୍ୱିକଂ ଯଜ୍ଞମାହ । ଅଫଲାକାଂକ୍ଷିଭିରିତି ତ୍ରିଭିଃ । ଫଳାକାଂକ୍ଷାରହିତୈଃ ପୁରୁଷୈର୍ବିଧାନାଦବଶ୍ୟକର୍ତ୍ତବ୍ୟତୟା ବିହିତୋ ଯୋ ଯଜ୍ଞ ଇଜ୍ୟତେ, ଅନୁଷ୍ଠୀୟତେ ସ ସାତ୍ତ୍ୱିକୋ ଯଜ୍ଞଃ, କଥମିଜ୍ୟତେ, ଯଷ୍ଟବ୍ୟମେବେତି ଯଜ୍ଞାନୁଷ୍ଠାନମେବ କାର୍ଯ୍ୟଂ ନାନ୍ୟତ୍ ଫଳଂ ସାଧନୀୟମିତ୍ୟେବଂ ମନଃ ସମାଧାୟ ଏକାଗ୍ରଂ କୃତ୍ୱେତ୍ୟର୍ଥଃ । ୧୧ ।

### ପଦବ୍ୟାଖ୍ୟା ।

ଅଫଲାକାଂକ୍ଷିଭିଃ—ଫଳଇଚ୍ଛା ରହିତ ବ୍ୟକ୍ତିମାନେ, ଯଜ୍ଞଃ—ଯାଗ, ବିଧିଦୃଷ୍ଟଃ—ଶାସ୍ତ୍ରବିହିତ, ଯଃ—ଯେଉଁ ଇଜ୍ୟତେ—ଅନୁଷ୍ଠାନ କରନ୍ତି, ଯଷ୍ଟବ୍ୟଂ ଏବ—ଯଜ୍ଞ କରିବା ଉଚିତ, ଇତି—ଏହିପରି, ମନଃ ସମାଧାୟ—ମନକୁ ଏକାଗ୍ର କରି, ସଃ ସାତ୍ତ୍ୱିକଃ—ତାହା ସାତ୍ତ୍ୱିକ ଅଟେ । ୧୧ ।

### ଅନୁବାଦ ।

ଫଳକାମନା ରହିତ ବ୍ୟକ୍ତିମାନେ, 'ଯଜ୍ଞ କରିବା କର୍ତ୍ତବ୍ୟ' ଏହିପରି ମନରେ ନିଶ୍ଚୟ କରି ଶାସ୍ତ୍ରବିହିତ ଯେଉଁ ଯଜ୍ଞାନୁଷ୍ଠାନ କରନ୍ତି, ତାହା ସାତ୍ତ୍ୱିକ (ଯଜ୍ଞ ଅଟେ) । ୧୧ ।

### ବିଶଦବ୍ୟାଖ୍ୟା ।

ଏହି ଅଧ୍ୟାୟର ୭ମ ଶ୍ଳୋକରେ କୁହାଯାଇଅଛି, ଯେ ସମସ୍ତଙ୍କର ପ୍ରିୟ ଭୋଜନ, ଏବଂ ଯଜ୍ଞ, ତପ ଓ ଦାନାଦି, ସାତ୍ତ୍ୱିକାଦି ଭେଦରେ ତିନି ପ୍ରକାର ହୁଏ ଇତ୍ୟାଦି । ତହିଁ ମଧ୍ୟରୁ ସାତ୍ତ୍ୱିକ, ରାଜସ ଓ ତାମସ ଭେଦରେ ତିନି ପ୍ରକାର ଭୋଜନର ବିଷୟ ପୂର୍ବ ଶ୍ଳୋକମାନଙ୍କରେ ବୁଝାଇ ଦିଆଯାଇଅଛି, ଏବେ ତିନି ପ୍ରକାର ଯଜ୍ଞର କଥା କହିବାକୁ ଆରମ୍ଭ କରି, ପ୍ରଥମରେ ସାତ୍ତ୍ୱିକ ଯଜ୍ଞର ଲକ୍ଷଣ ବର୍ଣ୍ଣନ କରାଯାଉଅଛି । ଅଗ୍ନିହୋତ୍ର, ଅଗ୍ନିଷ୍ଟୋମ, ଦର୍ଶ-ପୂର୍ଣ୍ଣ

* ରାଜସ ଆହାର 'ଅତିକଟୁ', 'ଅତିଅମ୍ଳ' ଓ 'ଅତି ଲବଣ' ଏବଂ ତାମସ ଆହାର 'ଗତରସ' = ସାତ୍ତ୍ୱିକ ଆହାର 'ରସବନ୍ତ'ର ବିରୋଧୀ ।
" 'ଅତିରୂକ୍ଷ' ଓ ତାମସ ଆହାର 'ଯାତଯାମ' = 'ସ୍ନିଗ୍ଧ'ର
" ଅତିତୀକ୍ଷ୍ଣ = ଅତିଉଗ୍ର ଓ " ପର୍ଯ୍ୟୁଷିତ = 'ସ୍ଥିରଗୁଣସମ୍ପନ୍ନ'ର
" 'ଅତିଉଷ୍ଣ' 'ଉଚ୍ଛିଷ୍ଟ' = 'ହୃଦ୍ୟ'ର
" 'ଆମୟପ୍ରଦ' 'ଅମେଧ୍ୟ' = 'ଆୟୁଃ ସତ୍ତ୍ୱାଦି ବୃଦ୍ଧିକାରୀ'ର "
" 'ଦୁଃଖ ଓ ଶୋକପ୍ରଦ' " 'ପୂତି' = " 'ସୁଖ ଓ ପ୍ରୀତିକର'ର ବିରୋଧୀ ।

Digitized by PPRACHIN, SOA

ମାସ ଓ ଜ୍ୟୋତିଷ୍ଟୋମାଦି ଯଜ୍ଞମାନ କାମ୍ୟ ଓ ନିତ୍ୟ ଭେଦରେ ଦୁଇ ପ୍ରକାର ହୁଏ । ତନ୍ମଧ୍ୟରୁ "ଦର୍ଶ ପୂର୍ଣ୍ଣମାସାଭ୍ୟାଂ ସ୍ୱର୍ଗକାମୋଯଜେତ" ଅର୍ଥାତ୍ ସ୍ୱର୍ଗକାମି ବ୍ୟକ୍ତି ଦର୍ଶ-ପୂର୍ଣ୍ଣମାସ ଯଜ୍ଞର ଅନୁଷ୍ଠାନ କରିବେ, ଇତ୍ୟାଦି ଶ୍ରୁତି ଅନୁସାରେ ଯେଉଁ ସବୁ ଯଜ୍ଞ ଅନୁଷ୍ଠିତ ହୁଏ, ତାହା 'କାମ୍ୟ' ଓ "ଯାବଜ୍ଜୀବଂ ଅଗ୍ନିହୋତ୍ରଂ ଜୁହୋତି" ଅର୍ଥାତ୍ ଯେତେ ଦିନ ଯାଏ ଜୀବିତ ଥିବ ତେତେଦିନ ଯାଏ ଅଗ୍ନିହୋତ୍ର ଯାଗ କରିବ, ଇତ୍ୟାଦି ଶ୍ରୁତି ବଚନ ଅନୁସାରେ ଫଳ କାମନା ବର୍ଜିତ ହୋଇ ଯେଉଁ ଯଜ୍ଞ ଅନୁଷ୍ଠିତ ହୁଏ, ତାହା 'ନିତ୍ୟ' ଅଟେ । ଫଳ କାମନା-ପରିତ୍ୟାଗ କରି କେବଳ ଚିତ୍ତଶୁଦ୍ଧି ପାଇଁ ଅବଶ୍ୟ କର୍ତ୍ତବ୍ୟ ବୋଧରେ ଶାସ୍ତ୍ରବିହିତ ଯେଉଁ ଯଜ୍ଞ ଅନୁଷ୍ଠିତ ହୁଏ ତାହା 'ସାତ୍ତ୍ୱିକ' ଅଟେ ।

ଫଳକଥା ଏହି କି ଶାସ୍ତ୍ର ବିଧିର କିଞ୍ଚିନ୍ମାତ୍ର ବ୍ୟତିକ୍ରମ ନ କରି କେବଳ କାମନା ପରିତ୍ୟାଗପୂର୍ବକ ଈଶ୍ୱର ଉଦ୍ଦେଶରେ ଯେଉଁ ଯଜ୍ଞ କରାଯାଏ, ତାହା ସାତ୍ତ୍ୱିକ ଅଟେ । ୧୧ ।

ଶ୍ଳୋକଃ ।

* ଅଭିସନ୍ଧାୟ ତୁ ଫଳଂ, ଦମ୍ଭାର୍ଥମପି ଚୈବ ଯତ୍ ।

ଇଜ୍ୟତେ ଭରତଶ୍ରେଷ୍ଠ, ତଂ ଯଜ୍ଞଂ ବିଦ୍ଧି ରାଜସଂ । ୧୨ ।

ଅନ୍ୱୟଃ ।

ହେ ଭରତଶ୍ରେଷ୍ଠ! ଯତ୍ (ଯଜନଂ) ତୁ ଫଳଂ ଅଭିସନ୍ଧାୟ ଅପି ଚ ଦମ୍ଭାର୍ଥଂ ଏବ ଇଜ୍ୟତେ, ତଂ ଯଜ୍ଞଂ ରାଜସଂ ବିଦ୍ଧି । ୧୨ ।

ଟୀକା ।

ରାଜସଂ ଯଜ୍ଞମାହ । ଅଭିସନ୍ଧାୟେତି । ଫଳମଭିସନ୍ଧାୟ ଉଦ୍ଦିଶ୍ୟ ଯତ୍ତୁ ଇଜ୍ୟତେ, ଯଜ୍ଞଃ କ୍ରିୟତେ, ଦମ୍ଭାର୍ଥଂ ଚ ସ୍ୱମହତ୍ତ୍ୱଖ୍ୟାପନାୟ, ତଂ ଯଜ୍ଞଂ ରାଜସଂ ବିଦ୍ଧି । ୧୨ ।

ପଦବ୍ୟାଖ୍ୟା ।

ଅଭିସନ୍ଧାୟ—ଇଚ୍ଛା କରି—ଉଦ୍ଦେଶ କରି, ତୁ—କିନ୍ତୁ, ଫଳଂ—ଫଳକୁ, ଦମ୍ଭାର୍ଥଂ ଅପି ଚ—ଆହୁରି ଆତ୍ମ-ପ୍ରଶଂସା ପାଇଁ, ଏବ—କେବଳ, ଯତ୍—ଯେଉଁ, ଇଜ୍ୟତେ—ଯାଗ କରାଯାଏ, ଭରତ ଶ୍ରେଷ୍ଠ—ହେ ଭରତକୁଳୋତ୍ତମ!, ତଂ ଯଜ୍ଞଂ—ସେହି ଯଜ୍ଞକୁ, ବିଦ୍ଧି ରାଜସଂ—ରାଜସ ବୋଲି ଜାଣ । ୧୨ ।

ଅନୁବାଦ ।

ହେ ଭରତଶ୍ରେଷ୍ଠ! କିନ୍ତୁ ଫଳ ଇଚ୍ଛା କରି କେବଳ ଆପଣାର ଖ୍ୟାତି ନିମିତ୍ତ, ଯେଉଁ ଯଜ୍ଞ ଅନୁଷ୍ଠାନ କରାଯାଏ, ତାହାକୁ ରାଜସ ବୋଲି ଜାଣ । ୧୨ ।

ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ ସାତ୍ତ୍ୱିକ ଯଜ୍ଞର କଥା କୁହା ଯାଇଅଛି, ଏ ଶ୍ଳୋକରେ ରାଜସ ଯଜ୍ଞର ବିଷୟ ବର୍ଣ୍ଣନ କରା ହେଉଅଛି ।

ହେ ଭରତକୁଳତିଳକ ଅର୍ଜୁନ! ଯେଉଁ ଯଜ୍ଞରେ ଫଳକାମନା ଥାଏ ଓ ଯାହା ଅନୁଷ୍ଠାନକାରୀର କେବଳ ଖ୍ୟାତି ବଢ଼ିବା ଉଦ୍ଦେଶ୍ୟରେ ଅର୍ଥାତ୍ 'ଅମୁକ ବ୍ୟକ୍ତି ଏପ୍ରକାର

Digitized by PPRACHIN, SOA

ବୃଦ୍ଧି ଯଜ୍ଞର ଅନୁଷ୍ଠାନ କରିଥିଲେ' ଏପରି ପ୍ରଶଂସା ପାଇବା ଇଚ୍ଛାରେ ଅନୁଷ୍ଠିତ ହୁଏ, ତାହାକୁ 'ରାଜସ' ଯଜ୍ଞ ବୋଲି ଜାଣ ।

ଫଳକଥା ଏହି କି କେବଳ ଫଳକାମନା ଅଥବା କେବଳ ଯଶୋଲାଭ ଇଚ୍ଛାରେ ଯେଉଁ ଯଜ୍ଞ ଅନୁଷ୍ଠିତ ହୁଏ, ତାହା 'ରାଜସ' ଅଟେ । ସାତ୍ତ୍ୱିକ ବ୍ୟକ୍ତିଙ୍କର ତାହା କର୍ତ୍ତବ୍ୟ ନୁହେ । ୧୨ ।

ଶ୍ଳୋକଃ ।

ବିଧିହୀନମସୃଷ୍ଟାନ୍ନଂ ମନ୍ତ୍ରହୀନମଦକ୍ଷିଣଂ ।
ଶ୍ରଦ୍ଧାବିରହିତଂ ଯଜ୍ଞଂ, ତାମସଂ ପରିଚକ୍ଷତେ । ୧୩ ।

ଅନ୍ୱୟଃ ।

ବିଧିହୀନଂ, ଅସୃଷ୍ଟାନ୍ନଂ, ମନ୍ତ୍ରହୀନଂ, ଅଦକ୍ଷିଣଂ, ଶ୍ରଦ୍ଧାବିରହିତଂ, ଯଜ୍ଞଂ ତାମସଂ ପରିଚକ୍ଷତେ । ୧୩ ।

ଟୀକା ।

ତାମସଂ ଯଜ୍ଞମାହ । ବିଧୀତି । ବିଧିହୀନଂ-ଶାସ୍ତ୍ରୋକ୍ତ ବିଧି ଶୂନ୍ୟଂ, ଅସୃଷ୍ଟାନ୍ନଂ ବ୍ରାହ୍ମଣାଦିଭ୍ୟୋଽସୃଷ୍ଟଂ ନ ଦତ୍ତା-ଦ୍ୟନ୍ନଂ ଯସ୍ମିଂସ୍ତଂ, ମନ୍ତ୍ରହୀନଂ, ଯଥୋକ୍ତଦକ୍ଷିଣାରହିତଂ, ଶ୍ରଦ୍ଧାଶୂନ୍ୟଂ ଚ ଯଜ୍ଞଂ, ତାମସଂ ପରିଚକ୍ଷତେ କଥୟନ୍ତି ଶିଷ୍ଟାଃ । ୧୩ ।

ପଦବ୍ୟାଖ୍ୟା ।

ବିଧିହୀନଂ—ଶାସ୍ତ୍ରବିଧିଶୂନ୍ୟ, ଅସୃଷ୍ଟାନ୍ନଂ—ବ୍ରାହ୍ମଣାଦିମାନଙ୍କୁ ଯହିଁରେ ଅନ୍ନ ଦିଆ ଯାଇ ନ ଥାଏ, ମନ୍ତ୍ରହୀନଂ—ଶାସ୍ତ୍ରୋକ୍ତ ମନ୍ତ୍ରବର୍ଜିତ, ଅଦକ୍ଷିଣଂ—ଯଥୋଚିତ ଦକ୍ଷିଣାଶୂନ୍ୟ, ଶ୍ରଦ୍ଧାବିରହିତଂ—ଶ୍ରଦ୍ଧାହୀନ, ଯଜ୍ଞଂ—ଯଜ୍ଞକୁ, ତାମସଂ—'ତାମସ' ବୋଲି, ପରିଚକ୍ଷତେ—ଶିଷ୍ଟମାନେ କହିଅଛନ୍ତି । ୧୩ ।

ଅନୁବାଦ ।

ଶାସ୍ତ୍ରବିଧିବର୍ଜିତ, ଅନ୍ନଦାନରହିତ, ମନ୍ତ୍ରହୀନ, ଦକ୍ଷିଣାଶୂନ୍ୟ ଓ ଶ୍ରଦ୍ଧାହୀନ ଯଜ୍ଞକୁ (ଶିଷ୍ଟ-ଲୋକମାନେ) 'ତାମସ' ଯଜ୍ଞ ବୋଲି କହନ୍ତି । ୧୩ ।

ବିଶଦବ୍ୟାଖ୍ୟା ।

ବେଦାଦି ଶାସ୍ତ୍ରରେ ଯେଉଁ ଯଜ୍ଞରେ ଯେପରି ବିଧି ଅଛି, ସେପରି ନ କରି ଆପଣା ମନ ଅନୁସାରେ ଯେଉଁ ଯଜ୍ଞର ଅନୁଷ୍ଠାନ କରାଯାଏ, ଯେଉଁ ଯଜ୍ଞ 'ଅସୃଷ୍ଟାନ୍ନ' ଅର୍ଥାତ୍ ଯହିଁରେ କୋହୁଅ-କାଙ୍ଗୁପ୍ରଭୃତି କୁତ୍ସିତ ଅନ୍ନ ଦିଆ ଯାଏ, ଅଥବା ଯହିଁରେ ବ୍ରାହ୍ମଣାଦିମାନଙ୍କୁ ଅନ୍ନ (ସୃଷ୍ଟ) ଦାନ କରା ନ ଯାଏ, କିମ୍ବା ବ୍ରାହ୍ମଣାଦିମାନଙ୍କଦ୍ୱାରା ଯହିଁରେ ଅନ୍ନ (ସୃଷ୍ଟ) ପ୍ରସ୍ତୁତ ନ ହୋଇ ଶୂଦ୍ରାଦିଙ୍କଦ୍ୱାରା ହୋଇଥାଏ, ଯେଉଁ ଯଜ୍ଞରେ ସମସ୍ତ ମନ୍ତ୍ର ଉଚ୍ଚାରିତ ନ ହୋଇ କେତେକ ଉଚ୍ଚାରଣ କରା ଯାଇ କେତେକ ତ୍ୟାଗ କରାଯାଏ, ଅଥବା ମନ୍ତ୍ର ସବୁ ଯହିଁରେ 'ଉଦାତ୍ତ' 'ଅନୁଦାତ୍ତ' ଓ 'ସ୍ୱରିତ' ଇତ୍ୟାଦି ବୈଦିକ ସ୍ୱରରେ ଉଚ୍ଚାରିତ ନ ହୁଏ, ଯହିଁରେ ଅଗ୍ନୀଧ୍ରଠାରୁ ସଦସ୍ୟ ପର୍ଯ୍ୟନ୍ତ ବ୍ରାହ୍ମଣମାନେ ଉପଯୁକ୍ତ ଦକ୍ଷିଣା ନ ପାନ୍ତି ଓ ବିଶେଷରେ ଯେଉଁ ଯଜ୍ଞ, ଯଜମାନ ଶ୍ରଦ୍ଧାପୂର୍ବକ ନ କରି କେବଳ ପ୍ରଶଂସା ପାଇବା ଇଚ୍ଛାରେ ବା ପଣ୍ଡ-

ବଧାଦ ଅଭିପ୍ରାୟରେ କରନ୍ତି, ସେହି ଯଜ୍ଞକୁ 'ତାମସ' ଯଜ୍ଞ ବୋଲାଯାଏ । ତାମସ ଯଜ୍ଞରେ ଇହଲୋକରେ ଓ ପରଲୋକରେ କୌଣସି ଫଳ ଲାଭ ହୁଏ ନାହିଁ । ୧୩ ।

ଶ୍ଳୋକଃ ।

* ଦେବଦ୍ୱିଜଗୁରୁପ୍ରାଜ୍ଞ-ପୂଜନଂ ଶୌଚମାର୍ଜ୍ଜବଂ ।
ବ୍ରହ୍ମଚର୍ଯ୍ୟମହିଂସା ଚ, ଶାରୀରଂ ତପ ଉଚ୍ୟତେ । ୧୪ ।

ଅନ୍ୱୟଃ ।

ଦେବ-ଦ୍ୱିଜ-ଗୁରୁ-ପ୍ରାଜ୍ଞ-ପୂଜନଂ, ଶୌଚଂ, ଆର୍ଜ୍ଜବଂ, ବ୍ରହ୍ମଚର୍ଯ୍ୟଂ ଚ ଅହିଂସା, ଶାରୀରଂ ତପଃ ଉଚ୍ୟତେ । ୧୪ ।

ଟୀକା ।

ତପସଃ ସାତ୍ତ୍ୱିକାଦିଭେଦଂ ଦର୍ଶୟିତୁଂ ପ୍ରଥମଂ ତାବଚ୍ଛାରୀରାଦିଭେଦେନ ତସ୍ୟ ତ୍ରୈବିଧ୍ୟମାହ । ଦେବେ- ତ୍ୟାଦି ତ୍ରିଭିଃ, ତତ୍ର ଶାରୀରମାହ । ଦେବେତି । ପ୍ରାଜ୍ଞା ଗୁରୁବ୍ୟତିରିକ୍ତା ଅନ୍ୟେଽପି ତତ୍ତ୍ୱବିଦଃ,ଦେବବ୍ରାହ୍ମଣାଦି ପୂଜନଂ ଶୌଚାଦିକଂ ଚ ଶାରୀରଂ ଶରୀରନିର୍ବର୍ତ୍ତ୍ୟଂ ତପ ଉଚ୍ୟତେ । ୧୪ ।

ପଦବ୍ୟାଖ୍ୟା ।

ଦେବଦ୍ୱିଜଗୁରୁପ୍ରାଜ୍ଞପୂଜନଂ—ଦେବତା, ବ୍ରାହ୍ମଣ, ଗୁରୁ ଓ ତତ୍ତ୍ୱଜ୍ଞାନମାନଙ୍କୁ ପୂଜା କରିବା, ଶୌଚଂ— ସ୍ନାନାଦିଦ୍ୱାରା ଶରୀରଶୁଦ୍ଧି, ଆର୍ଜ୍ଜବଂ—ସରଳତା—ଅଥବା ଅନ୍ତଃକରଣଶୁଦ୍ଧି, ବ୍ରହ୍ମଚର୍ଯ୍ୟଂ—ଶାସ୍ତ୍ରନିଷିଦ୍ଧ ସ୍ତ୍ରୀସହବାସାଦି ପରିତ୍ୟାଗ, ଅହିଂସା—ପରପୀଡାବର୍ଜନ, ଚ—ଅତ୍ରରି ଅର୍ଥାତ୍ ଅସ୍ତେୟ (ଚୋରି ନ କରିବା) ଓ ଅପରିଗ୍ରହାଦି, ଶାରୀରଂ ତପଃ—ଶାରୀରିକ ତପସ୍ୟା ବୋଲି, ଉଚ୍ୟତେ—କଥିତ ହୁଏ । ୧୪ ।

ଅନୁବାଦ ।

ଦେବତା, ଦ୍ୱିଜ, ଗୁରୁ ଓ ଜ୍ଞାନୀ ଲୋକଙ୍କର ପୂଜା, ଶୌଚ, ସରଳତା, ବ୍ରହ୍ମଚର୍ଯ୍ୟ ଏବଂ ଅହିଂସାଦିକୁ ଶାରୀରିକ ତପସ୍ୟା ବୋଲାଯାଏ । ୧୪ ।

ବିଶଦବ୍ୟାଖ୍ୟା ।

ତ୍ରିବିଧ ଯଜ୍ଞର କଥା ବର୍ଣ୍ଣନ କରି ଶ୍ରୀଭଗବାନ୍ ସାତ୍ତ୍ୱିକାଦି ଭେଦରେ ତ୍ରିବିଧ ତପସ୍ୟାର କଥା ବର୍ଣ୍ଣନ କରିବାକୁ ଆରମ୍ଭ କରୁଅଛନ୍ତି । ସେହି ତପସ୍ୟା ଶାରୀରିକ, ବାଚନିକ ଓ ମାନ- ସିକ ଭେଦରେ ପୁଣି ତିନି ପ୍ରକାର ହୁଏ । ପ୍ରଥମରେ ଶାରୀରିକ ତପସ୍ୟାର କଥା ଏ ଶ୍ଳୋକ- ରେ ବ୍ୟାଖ୍ୟା କରି ଯାଉଅଛି ।

ବ୍ରହ୍ମା, ଶିବ, ଇନ୍ଦ୍ର, ବରୁଣ, ସୂର୍ଯ୍ୟ, ପବନ ଓ ଦୁର୍ଗାଦି ଦେବତା, ସତ୍‌କ୍ରିୟାସକ୍ତ ବ୍ରାହ୍ମଣ, ପିତା, ମାତା, ଆଚାର୍ଯ୍ୟ ଓ ବୃଦ୍ଧପ୍ରଭୃତି ଗୁରୁଜନ, ଏବଂ ବେଦାଦି ଶାସ୍ତ୍ରର ତତ୍ତ୍ୱବେତ୍ତା ପଣ୍ଡିତ, ଏମାନଙ୍କୁ ଯଥାବିଧି ପୂଜା କରିବା, ଶାରୀରିକ ତପସ୍ୟାର ଏକ ଅଙ୍ଗ ଅଟେ । ତନ୍ମଧ୍ୟରେ ଯେଉଁ ଦେବତାଙ୍କୁ ପୂଜା କରିବା ବିଷୟରେ ଶାସ୍ତ୍ରରେ ଯେପରି ବିଧି ଅଛି, ସେହି ଅନୁସାରେ ଅର୍ଥାତ୍ ଅଭିଷେକ, ଉପଚାର, ନମସ୍କାର ଓ ଯଜ୍ଞପ୍ରଭୃତିଦ୍ୱାରା ପୂଜା କରିବାକୁ ହେବ । ସତ୍- କ୍ରିୟାସକ୍ତ ଦ୍ୱିଜ ଅର୍ଥାତ୍ ବ୍ରାହ୍ମଣଙ୍କୁ, ଭୋଜନ ଓ ଦକ୍ଷିଣାଦି ପ୍ରଦାନ କରି ପୂଜା କରିବ,

Digitized by PPRACHIN, SOA

ମାତା, ପିତା, ଆଚାର୍ଯ୍ୟ ଓ ବୃଦ୍ଧପ୍ରଭୃତି ଗୁରୁଜନଙ୍କୁ, ଆଜ୍ଞାପାଳନ, ସୁଶ୍ରୂଷା ଓ ଅନ୍ନ ବସ୍ତ୍ର ପ୍ରଭୃତି ପ୍ରଦାନଦ୍ୱାରା ପୂଜା କରିବ । ଆଉ ବେଦାଦି ଶାସ୍ତ୍ରର ଅର୍ଥବେତ୍ତା ପ୍ରାଜ୍ଞ (ପଣ୍ଡିତ)ମାନଙ୍କୁ (ସେମାନେ ଗୁରୁ ନ ହେଲେସୁଦ୍ଧା) ସୁଶ୍ରୂଷା ଓ ସମ୍ମାନାଦି ଦ୍ୱାରା ପୂଜା କରିବ । ଏଥିରେ ଏପରି ଆପତ୍ତି ହୋଇ ପାରେ, ଯେ 'ଦ୍ୱିଜ' ଶବ୍ଦଦ୍ୱାରା ଯେତେବେଳେ ବେଦଜ୍ଞ ବ୍ରାହ୍ମଣ ଉପଲକ୍ଷିତ ହେଉଅଛନ୍ତି, ତେତେବେଳେ 'ପ୍ରାଜ୍ଞ' ଶବ୍ଦ ଦେବାର ଆବଶ୍ୟକ କଣ ? ସେଥିପାଇଁ କେହି୨ ଟୀକାକାର ଏପରି ଅର୍ଥ କରିଅଛନ୍ତି, ଯେ 'ଦ୍ୱିଜ' ଶବ୍ଦଦ୍ୱାରା କେବଳ ବେଦଜ୍ଞ ବ୍ରାହ୍ମଣ ବା ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ବୁଝା ଯାଉଅଛି, ମାତ୍ର 'ପ୍ରାଜ୍ଞ' ଶବ୍ଦଦ୍ୱାରା ଦ୍ୱିଜଙ୍କ ପରି ଶୂଦ୍ର ବା ସ୍ତ୍ରୀଲୋକ, ଯେଉଁମାନେ କି ବେଦ ଅଧ୍ୟୟନ ନ କରିସୁଦ୍ଧା, ତତ୍ତ୍ୱଜ୍ଞାନୀ ହୋଇଥିଲେ, ସେମାନଙ୍କୁ ମଧ୍ୟ ଅଭିବାଦନାଦିଦ୍ୱାରା ପୂଜା କରିବା ଉଚିତ ଏହା ବୁଝିବାକୁ ହେବ ।

ଶୌଚ=ମୃତ୍ତିକା ଓ ଜଳପ୍ରଭୃତିଦ୍ୱାରା ଶରୀର ଶୁଦ୍ଧି କରିବା, ଆର୍ଜ୍ଜବ=ସମସ୍ତର୍ବରେ ଶାସ୍ତ୍ର ବିହିତ କାର୍ଯ୍ୟାନୁଷ୍ଠାନରେ ପ୍ରବୃତ୍ତି ଆଉ ନିଷିଦ୍ଧ କାର୍ଯ୍ୟରୁ ନିବୃତ୍ତି, ବ୍ରହ୍ମଚର୍ଯ୍ୟ=ଶାସ୍ତ୍ରନିଷିଦ୍ଧ ସ୍ତ୍ରୀସଂସର୍ଗ ପରିତ୍ୟାଗ, ଅହିଂସା=ପରପୀଡ଼ାବର୍ଜ୍ଜନ (ଏବଂ ଚକାରଦ୍ୱାରା ଚୋରି ନ କରିବା ପ୍ରଭୃତି କିମ୍ବା ବୁଝିବାକୁ ହେବ) ଏହି ସବୁ କାର୍ଯ୍ୟ ଗୁଡ଼ିକ ଶାରୀରିକ ତପସ୍ୟା ନାମରେ ପ୍ରସିଦ୍ଧ ଅଟେ । ୧୪ ।

ଶ୍ଲୋକଃ ।

* ଅନୁଦ୍ୱେଗକରଂ ବାକ୍ୟଂ, ସତ୍ୟଂ ପ୍ରିୟହିତଂ ଚ ଯତ୍ ।
ସ୍ୱାଧ୍ୟାୟାଭ୍ୟସନଂ ଚୈବ, ବାଙ୍ମୟଂ ତପ ଉଚ୍ୟତେ । ୧୫ ।

ଅନ୍ୱୟଃ ।

ଯତ୍ ବାକ୍ୟଂ ଅନୁଦ୍‌ବେଗକରଂ, ସତ୍ୟଂ ଚ ପ୍ରିୟହିତଂ (ତତ୍) ଚ ସ୍ୱାଧ୍ୟାୟାଭ୍ୟସନଂ ଏବ ବାଙ୍ମୟଂ ତପଃ ଉଚ୍ୟତେ । ୧୫ ।

ଟୀକା ।

ବାଚକଂ ତପ ଆହ ।ଅନୁଦ୍‌ବେଗକରମିତ, ଉଦ୍ୱେଗଂ ଭୟଂ ନ କରୋତୀତ୍ୟନୁଦ୍ୱେଗକରଂ ବାକ୍ୟଂ, ସତ୍ୟଂ ଶ୍ରୋତୁଃ ପ୍ରିୟଂ, ହିତଂ ଚ ପରିଣାମେ ସୁଖକରଂ, ସ୍ୱାଧ୍ୟାୟାଭ୍ୟସନଂ ବେଦାଭ୍ୟାସଶ୍ଚ ବାଙ୍ମୟଂ ବାଗ୍ ନିର୍ବର୍ତ୍ତ୍ୟଂ ତପଃ । ୧୫ ।

ପଦବ୍ୟାଖ୍ୟା ।

ଅନୁଦ୍ୱେଗକରଂ—ଯାହା ଭୟଜନକ ନୁହେ, ବାକ୍ୟଂ—ବଚନ, ସତ୍ୟଂ—ଯଥାର୍ଥ, ପ୍ରିୟହିତଂ ଚ—ଶ୍ରୋତାର ମନୋରମ ଅଥଚ ପରିଣାମରେ ସୁଖଜନକ, ଯତ୍—ଯେଉଁ, ସ୍ୱାଧ୍ୟାୟାଭ୍ୟସନଂ ଚ ଏବ—ଆଉ ବେଦାଭ୍ୟାସ ମଧ୍ୟ, ବାଙ୍ମୟଂ ତପଃ—ବାଚନିକ ତପସ୍ୟା ନାମରେ, ଉଚ୍ୟତେ—କଥିତ ହୁଏ । ୧୫ ।

ଅନୁବାଦ ।

ପରର ଭୟଜନକ ନୁହେ, ଅଥଚ ସତ୍ୟ, ପ୍ରିୟ ଓ ହିତଜନକ ଯେଉଁ ବାକ୍ୟ, ତାହା ଏବଂ ବେଦାଭ୍ୟାସ ପ୍ରଭୃତି, ବାଚନିକ ତପସ୍ୟା ନାମରେ କଥିତ ହୁଏ । ୧୫ ।

Digitized by PPRACHIN, SOA

ଭାଷ୍ୟବ୍ୟାଖ୍ୟା ।

ଯେଉଁ ବଚନ ଶୁଣିଲେ ଶ୍ରୋତାର କୌଣସି ପ୍ରକାର ଉଦ୍‌ବେଗ—ଭୟ ଜାତ ନ ହୁଏ, ଯେଉଁ ବଚନ ପ୍ରମାଣମୂଳକ ଓ ଯାହା ଅନ୍ୟ ପ୍ରମାଣଦ୍ୱାରା ବାଧା ପ୍ରାପ୍ତ ନୁହେ, ଯାହା ଶୁଣିବା ମାତ୍ରକେ ଶ୍ରୋତାକୁ ଭଲ ଲାଗେ, ପୁଣି ପରିଣାମରେ ଯାହା ଶ୍ରୋତାର ମଙ୍ଗଳଜନକ ହୁଏ, ସେହିପରି ବଚନ କହିବା ଓ ଶାସ୍ତ୍ରବିଧି ଅନୁସାରେ ବେଦ ଅଧ୍ୟୟନ କରିବାକୁ ବାଙ୍ମୟ ଅର୍ଥାତ୍ ବାଚନିକ ତପସ୍ୟା ବୋଲିଯାଏ । ୧୫ ।

ଶ୍ଲୋକଃ ।

* ମନଃପ୍ରସାଦଃ ସୌମ୍ୟତ୍ୱଂ, ମୌନମାତ୍ମବିନିଗ୍ରହଃ ।
ଭାବସଂଶୁଦ୍ଧିରିତ୍ୟେତତ୍ତପୋ ମାନସମୁଚ୍ୟତେ । ୧୬ ।

ମନଃପ୍ରସାଦଃ, ସୌମ୍ୟତ୍ୱଂ, ମୌନଂ, ଆତ୍ମବିନିଗ୍ରହଃ, ଭାବସଂଶୁଦ୍ଧିଃ, ଇତି ଏତତ୍ ମାନସଂ ତପଃ ଉଚ୍ୟତେ ।୧୬।

ଟୀକା ।

ମାନସଂ ତପ ଆହ । ମନ ଇତି । ମନଃପ୍ରସାଦଃ ସ୍ୱଚ୍ଛତା, ସୌମ୍ୟତ୍ୱମକ୍ରୂରତା, ମୌନଂ ମୁନେର୍ଭାବୋ ମନନ-ମିତ୍ୟର୍ଥଃ, ଆତ୍ମନୋ ମନସୋ ବିନିଗ୍ରହୋ ବିଷୟେଭ୍ୟଃ ପ୍ରତ୍ୟାହାରଃ, ଭାବସଂଶୁଦ୍ଧିର୍ବ୍ୟବହାରେ ମାୟାରହିତ୍ୟମିତ୍ୟେତନ୍ମାନସଂ ତପଃ । ୧୬ ।

ପଦବ୍ୟାଖ୍ୟା ।

ମନଃପ୍ରସାଦଃ—ମନର ସ୍ୱଚ୍ଛତା, ସୌମ୍ୟତ୍ୱଂ—ଅନିଷ୍ଠୁରତା, ମୌନଂ—ବାକ୍‌ସଂଯମ—ମନନ, ଆତ୍ମବିନିଗ୍ରହଃ—ମନଃସଂଯମ—ପ୍ରତ୍ୟାହାର ଅର୍ଥାତ୍ ମନକୁ ବିଷୟରୁ ନିବୃତ୍ତ କରିବା, ଭାବସଂଶୁଦ୍ଧିଃ—ବ୍ୟବହାରରେ ମାୟା ତ୍ୟାଗ କରିବା, ଇତି ଏତତ୍—ଏହା, ତପୋ ମାନସମୁଚ୍ୟତେ—ମାନସିକ ତପସ୍ୟା ନାମରେ କଥିତ । ୧୬ ।

ଅନୁବାଦ ।

ମନର ସ୍ୱଚ୍ଛତା, ବିନୟ, ମୌନଭାବ, ମନୋନିଗ୍ରହ ( ବିଷୟରୁ ମନର ନିବୃତ୍ତି ) ଓ ମାୟାରହିତ ବ୍ୟବହାର, ଏସବୁ ମାନସିକ ତପସ୍ୟା ନାମରେ କଥିତ ହୁଏ । ୧୬ ।

ଭାଷ୍ୟବ୍ୟାଖ୍ୟା ।

'ମନଃପ୍ରସାଦ' ଅର୍ଥାତ୍ ମନକୁ ବିଷୟ ଚିନ୍ତାରେ ବ୍ୟାକୁଳ ନ କରି, ସ୍ୱଚ୍ଛଭାବରେ ରଖିବା, 'ସୌମ୍ୟତ୍ୱ' ଅର୍ଥାତ୍ ସର୍ବପ୍ରାଣୀଙ୍କର ହିତଚିନ୍ତନ ଓ ଶାସ୍ତ୍ରନିଷିଦ୍ଧ ବିଷୟର ଚିନ୍ତା ତ୍ୟାଗ, ଅଥବା—ନମ୍ରତା—ବିନୟ, 'ମୌନ'—ଏକାଗ୍ରଭାବରେ ଆତ୍ମଚିନ୍ତା, 'ଆତ୍ମବିନିଗ୍ରହ'—ମନକୁ ବିଷୟରୁ ବିରତ କରିବା, ଆଉ 'ଭାବସଂଶୁଦ୍ଧି'—କାମ କ୍ରୋଧାଦିକୁ ସମ୍ପୂର୍ଣ୍ଣରୂପେ ନିବୃତ୍ତ କରିବାଦ୍ୱାରା ହୃଦୟଶୁଦ୍ଧି, ଅଥବା ନିଷ୍କପଟ ବ୍ୟବହାର । ମନଃପ୍ରସାଦଠାରୁ ଭାବସଂଶୁଦ୍ଧି ପର୍ଯ୍ୟନ୍ତ କ୍ରିୟା ଗୁଡ଼ିକ ମାନସିକ ତପସ୍ୟା ନାମରେ ପ୍ରସିଦ୍ଧ ଅଟେ । ୧୬ ।

ଶ୍ଲୋକଃ ।

* ଶ୍ରଦ୍ଧୟା ପରୟା ତପ୍ତଂ, ତପସ୍ତତ୍ତ୍ରିବିଧଂ ନରୈଃ ।
ଅଫଲାକାଂକ୍ଷିଭିର୍ଯୁକ୍ତୈଃ ସାତ୍ତ୍ୱିକଂ ପରିଚକ୍ଷତେ । ୧୭ ।

Digitized by PPRACHIN, SOA

ଅନ୍ୱୟଃ ।

ଅଫଳାକାଂକ୍ଷିଭିଃ ଯୁକ୍ତୈଃ ନରୈଃ ପରୟା ଶ୍ରଦ୍ଧୟା ତପ୍ତଂ ତତ୍ ତ୍ରିବିଧଂ ତପଃ, ସାତ୍ତ୍ୱିକଂ ପରିଚକ୍ଷତେ । ୧୭ ।

ଟୀକା ।

ତଦେବ ଶାରୀରବାଙ୍ମାନସଭେଦେନ ତ୍ରିବିଧଂ ତପୋଦର୍ଶିତଂ, ତସ୍ୟ ତ୍ରିବିଧସ୍ୟାପି ତପସଃ ସାତ୍ତ୍ୱିକାଦିଭେଦେନ ତ୍ରୈବିଧ୍ୟମାହ । ଶ୍ରଦ୍ଧୟେତ୍ୟାଦି ତ୍ରିଭିଃ । ତତ୍ ତ୍ରିବିଧମପି ତପଃ ଶ୍ରେଷ୍ଠୟା ଶ୍ରଦ୍ଧୟା ଫଳାକାଂକ୍ଷାଶୂନ୍ୟୈର୍ଯୁକ୍ତୈରେକାଗ୍ରଚିତ୍ତୈର୍ନରୈସ୍ତପ୍ତଂ ସାତ୍ତ୍ୱିକଂ କଥୟନ୍ତି । ୧୭ ।

ପଦବ୍ୟାଖ୍ୟା ।

ଶ୍ରଦ୍ଧୟା ପରୟା—ସମ୍ପୂର୍ଣ୍ଣ ଶ୍ରଦ୍ଧାରେ, ତପ୍ତଂ ତପଃ ତତ୍—ସେହି ତପ ଅନୁଷ୍ଠିତ ହେଲେ, ତ୍ରିବିଧଂ—ତିନି ପ୍ରକାର, ଅର୍ଥାତ୍ ଶାରୀରିକ, ମାନସିକ ଓ ବାଚନିକ, ନରୈଃ—ମନୁଷ୍ୟମାନଙ୍କଦ୍ୱାରା, ଅଫଳାକାଂକ୍ଷିଭିଃ—ଫଳକାମନାରହିତ, ଯୁକ୍ତୈଃ—ଏକାଗ୍ରଚିତ୍ତ, ସାତ୍ତ୍ୱିକଂ ପରିଚକ୍ଷତେ—ସାତ୍ତ୍ୱିକ ବୋଲି କହନ୍ତି । ୧୭ ।

ଅନୁବାଦ ।

ଫଳକାମନାଶୂନ୍ୟ, ଏକାଗ୍ରଚିତ୍ତ ମନୁଷ୍ୟମାନଙ୍କଦ୍ୱାରା ସମ୍ପୂର୍ଣ୍ଣ ଶ୍ରଦ୍ଧାରେ ଅନୁଷ୍ଠିତ ସେହି (ପୂର୍ବୋକ୍ତ) ତ୍ରିବିଧ ତପକୁ (ପଣ୍ଡିତମାନେ) ସାତ୍ତ୍ୱିକ ବୋଲି କହନ୍ତି । ୧୭ ।

ବିଶଦବ୍ୟାଖ୍ୟା ।

ପୂର୍ବ ତିନି ଶ୍ଳୋକରେ ଶାରୀରିକ, ମାନସିକ ଓ ବାଚନିକ ନାମରେ ତିନିପ୍ରକାର ତପସ୍ୟାର ବିବରଣ ଲେଖା ଯାଇଅଛି । ବର୍ତ୍ତମାନ ସାତ୍ତ୍ୱିକ, ରାଜସିକ ଓ ତାମସିକ ଭେଦରେ ତିନିପ୍ରକାର ତପସ୍ୟାର କଥା କହିବାକୁ ଆରମ୍ଭ କରି ଏ ଶ୍ଳୋକରେ ଶ୍ରୀ ଭଗବାନ୍ ସାତ୍ତ୍ୱିକ ତପସ୍ୟାର କଥା କହୁଅଛନ୍ତି ।

ସେହି ଶାରୀରିକାଦି ତ୍ରିବିଧ ତପସ୍ୟା, ଯଦି ଫଳକାମନା ରହିତ ଓ ସ୍ଥିରଚିତ୍ତ ବ୍ୟକ୍ତିଙ୍କଦ୍ୱାରା ଏକାନ୍ତ ଶ୍ରଦ୍ଧାରେ ଅନୁଷ୍ଠିତ ହୁଏ, ତେବେ ତାହାକୁ ସାତ୍ତ୍ୱିକ ତପସ୍ୟା ବୋଲାଯାଏ । ଅର୍ଥାତ୍ ତପସ୍ୟା ଶାରୀରିକ ହେଉ ବା ମାନସିକ ହେଉ ଅଥବା ବାଚନିକ ହେଉ, ଆପଣାର ଇଷ୍ଟପ୍ରାପ୍ତି କିମ୍ବା ଅନିଷ୍ଟ ନିବାରଣ ଇଚ୍ଛାରେ ନ ହୋଇ ଯେବେ ଅତି କର୍ତ୍ତବ୍ୟ ବୋଧରେ ଏକାନ୍ତ ଶ୍ରଦ୍ଧାରେ ଅନୁଷ୍ଠିତ ହୁଏ, ତେବେ ତାହା ସାତ୍ତ୍ୱିକ ତପସ୍ୟା ନାମରେ କଥିତ ହୁଏ । । ୧୭ ।

ଶ୍ଳୋକଃ ।

* ସତ୍କାରମାନପୂଜାର୍ଥଂ, ତପୋଦମ୍ଭେନ ଚୈବ ଯତ୍ ।
କ୍ରିୟତେ ତଦିହ ପ୍ରୋକ୍ତଂ, ରାଜସଂ ଚଳମଧ୍ରୁବମ୍ । ୧୮ ।

ଅନ୍ୱୟଃ ।

ଯତ୍ ତପଃ ସତ୍କାର-ମାନ-ପୂଜାର୍ଥଂ ଚ ଦମ୍ଭେନ ଏବ କ୍ରିୟତେ, ଚଳଂ ଅଧ୍ରୁବଂ ତତ୍ ଇହ ରାଜସଂ ପ୍ରୋକ୍ତଂ । ୧୮ ।

ଟୀକା ।

ରାଜସମାହ । ସତ୍କାରେତି । ସତ୍କାରଃ—ସାଧୁକାରଃ, ସାଧୁରୟମିତ ତାପସୋଽୟମିତ୍ୟାଦି ବାକ୍ପୂଜା, ମାନଃ—

ଅଭ୍ୟୁତ୍ଥାନାଭିବାଦନାଦିର୍ଦୈହିକୀ ପୂଜା, ପୂଜା ଧର୍ମାର୍ଥଭାବଃ, ଏତଦର୍ଥଂ ଦମ୍ଭେନ ଚ ତପଃ କ୍ରିୟତେ, ଅତଏବ ଚଳଂ ମନସ୍ୱରଂ, ଅଧ୍ରୁବଂ ଚ କ୍ଷଣିକଂ, ଯଦେବମ୍ଭୂତଂ ତପସ୍ତଦିହ ରାଜସଂ ପ୍ରୋକ୍ତଂ । ୧୮ ।

ପଦବ୍ୟାଖ୍ୟା ।

ସତ୍କାରମାନପୂଜାର୍ଥଂ—ସତ୍କାର, ମାନ ଓ ପୂଜାନିମିତ୍ତ, ତପଃ—ତପସ୍ୟା, ଦମ୍ଭେନ ଚ ଏବ—କେବଳ ଦମ୍ଭଦ୍ୱାରା, ଯତ୍—ଯେଉଁ, କ୍ରିୟତେ—କରାଯାଏ, ତତ୍—ସେହି ତପସ୍ୟା, ଇହ—ଏଠାରେ, ପ୍ରୋକ୍ତଂ—କଥିତ ହୋଇଅଛି, ରାଜସଂ—ରାଜସିକ ନାମରେ, ଚଳଂ—ଅନିଶ୍ଚିତ, ଅଧ୍ରୁବଂ—କ୍ଷଣିକ—ଅଚିରସ୍ଥାୟୀ । ୧୮ ।

ଅନୁବାଦ ।

ପ୍ରଶଂସା, ମାନ ଓ ପୂଜା ପାଇବା ନିମିତ୍ତ ଯେଉଁ ତପସ୍ୟା, କେବଳ ଦମ୍ଭରେ କରାଯାଏ, ସେହି ଅନିଶ୍ଚିତ ଓ ଅଚିରସ୍ଥାୟୀ ତପସ୍ୟା ଏ ସ୍ଥଳରେ ରାଜସ ନାମରେ କଥିତ ହୋଇଅଛି । ୧୮ ।

ବିଶଦବ୍ୟାଖ୍ୟା ।

'ଅମୁକ ବ୍ୟକ୍ତି ଉତ୍ତମ ତପସ୍ୱୀ ଅଟନ୍ତି', ଅବିବେକୀ ପୁରୁଷମାନେ ଏପରି ଯେଉଁ ସ୍ତୁତିବାକ୍ୟ ପ୍ରୟୋଗ କରନ୍ତି, ତାହାକୁ ସତ୍କାର (ପ୍ରଶଂସା) ବୋଲାଯାଏ । ଲୋକମାନେ, ଯେ ଆପଣା ଅପେକ୍ଷା ଶ୍ରେଷ୍ଠ ଲୋକକୁ ଦେଖି ଆସନ ତ୍ୟାଗ କରି ଦଣ୍ଡାୟମାନ ହୁଅନ୍ତି ଓ ପାଦ ଶୌଚ ନିମନ୍ତେ ଜଳ ଦାନ କରନ୍ତି ଏବଂ ମୁଣ୍ଡ ଲଗାଇ ନମସ୍କାର କରନ୍ତି, ସେହି ଶାରୀରିକ ସେବାକୁ 'ମାନ' ବୋଲାଯାଏ । ଆଉ ଅର୍ଥାଦି ପ୍ରଦାନ କରିବାର ନାମ 'ପୂଜା' । ଯଦି କୌଣସି ବ୍ୟକ୍ତି ଅନ୍ୟ ବ୍ୟକ୍ତିଠାରୁ ସତ୍କାର, ମାନ ଓ ପୂଜା ପାଇବାଲାଗି ଶାସ୍ତ୍ରବିଧି ପରିତ୍ୟାଗ କରି କେବଳ ଦମ୍ଭରେ ପୂର୍ବୋକ୍ତ ସେହି ଶାରୀରିକ, ମାନସିକ ଓ ବାଚନିକ ତପସ୍ୟାର ଅନୁଷ୍ଠାନ କରନ୍ତି, ତେବେ ସେହି ତପସ୍ୟାକୁ ରାଜସ ବୋଲାଯାଏ । ଉକ୍ତ ରାଜସ ତପସ୍ୟା 'ଚଳ' ବା ଅନିଶ୍ଚିତ ଅଟେ । କାରଣ ଉକ୍ତ ପ୍ରକାର ତପସ୍ୟା କଲେ, ଯେ ସତ୍କାର, ମାନ ଓ ପୂଜା ନିଶ୍ଚେ ମିଳେ, ତାହା ନୁହେ; କେହି କେହି ତାହା ଲାଭ କରନ୍ତି ସତ, ମାତ୍ର ଅନେକେ ତତ୍ପରିବର୍ତ୍ତେ ନିନ୍ଦା ପ୍ରାପ୍ତ ହୁଅନ୍ତି । ଅତଏବ ସେ ରାଜସ ତପସ୍ୟା 'ଅଧ୍ରୁବ' ଅର୍ଥାତ୍ ଅଚିରସ୍ଥାୟୀ ଅଟେ । ୧୮ ।

ଶ୍ଳୋକଃ ।

ମୂଢ଼ଗ୍ରାହେଣାତ୍ମନୋ ଯତ୍, ପୀଡ଼ୟା କ୍ରିୟତେ ତପଃ ।
ପରସ୍ୟୋତ୍ସାଦନାର୍ଥଂ ବା, ତତ୍ତାମସମୁଦାହୃତଂ । ୧୯ ।

ଅନ୍ୱୟଃ ।

ମୂଢ଼ଗ୍ରାହେଣ ଆତ୍ମନଃ ପୀଡ଼ୟା, ପରସ୍ୟ ଉତ୍ସାଦନାର୍ଥଂ ବା ଯତ୍ ତପଃ କ୍ରିୟତେ, ତତ୍ ତାମସ ଉଦାହୃତଂ ।

ଟୀକା ।

ତାମସ ତପ ଆହ । ମୂଢେତି । ମୂଢ଼ଗ୍ରାହେଣାବିବେକକୃତେନ ଦୁରାଗ୍ରହେଣାତ୍ମନଃ ପୀଡ଼ୟା ଯତ୍ତପଃ କ୍ରିୟତେ, ପରସ୍ୟ ଉତ୍ସାଦନାର୍ଥଂ ବା ଅନ୍ୟସ୍ୟ ବିନାଶାର୍ଥମଭିଚାରରୂପଂ, ତତ୍ ତାମସମୁଦାହୃତଂ କଥିତଂ । ୧୯ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ମୂଢ଼ଗ୍ରାହେଣ—ଅବିବେକଜନିତ ଦୁରାଶା ଦ୍ୱାରା, ଆତ୍ମନଃ—ଆପଣାର ଦେହ ଓ ଇନ୍ଦ୍ରିୟମାନଙ୍କର, ଯତ୍—ଯେଉଁ, ପୀଡ଼ୟା—ପୀଡ଼ାଦ୍ୱାରା, କ୍ରିୟତେ—କରାଯାଏ, ତପଃ—ତପସ୍ୟା, ପରସ୍ୟ—ଅନ୍ୟର, ଉତ୍ସାଦନାର୍ଥଂ—ବିନାଶ ନିମିତ୍ତ, ବା—ଅଥବା, ତତ୍—ସେହି ତପସ୍ୟା, ତାମସଂ ଉଦାହୃତଂ—ତାମସିକ ବୋଲି କଥିତ । ୧୯ ।

ଅନୁବାଦ ।

ଅବିବେଚନାଜନିତ ଦୁରାଶା ଦ୍ୱାରା ଆପଣାର ଦେହ ଓ ଇନ୍ଦ୍ରିୟମାନଙ୍କୁ ପୀଡ଼ା ଦେଇ ଅଥବା ଅନ୍ୟର ବିନାଶ ନିମିତ୍ତ, ଯେଉଁ ତପସ୍ୟା କରାଯାଏ, ତାହା ତାମସିକ ଅଟେ । ୧୯ ।

ବିଶଦବ୍ୟାଖ୍ୟା ।

ଯେଉଁ ଆଶା ସମ୍ବନ୍ଧରେ ଫଳବତୀ ହେବାର ସମ୍ଭାବନା ନ ଥାଏ, ତାହାକୁ 'ଦୁରାଶା' ବୋଲାଯାଏ । ଅବିବେଚନା ହିଁ ସେ ପ୍ରକାର ଦୁରାଶାର କାରଣ ଅଟେ । ଅବିବେକଜନିତ ସେହି ଦୁରାଶାର ବଶବର୍ତ୍ତୀ ହୋଇ, କେତେକ ବ୍ୟକ୍ତି, ଦେହ ଓ ଇନ୍ଦ୍ରିୟପୀଡ଼ାକର ନାନା ପ୍ରକାର ତପସ୍ୟାର ଅନୁଷ୍ଠାନ କରନ୍ତି ଅର୍ଥାତ୍ ରାଜା ହେବାକୁ ପଞ୍ଚାଗ୍ନି ସ୍ଥାପନ, ଜିତେନ୍ଦ୍ରିୟତା ଦେଖାଇବାକୁ ଲିଙ୍ଗନାଳ ଛେଦନ ଓ ଚକ୍ଷୁ ଉତ୍ପାଟନ ପ୍ରଭୃତି ବହୁ ଯାତନା କଷ୍ଟଜନକ କର୍ମର ଅନୁଷ୍ଠାନ କରନ୍ତି । ଅଥବା ପରର ବିନାଶ ସାଧନପାଇଁ, ମନ୍ତ୍ରଜପ ଓ ତନ୍ତ୍ରୋକ୍ତ ଅଭିଚାରାଦି* କରନ୍ତି । ଯେଉଁ ତପସ୍ୟା, ଆପଣାର ଇନ୍ଦ୍ରିୟ ଓ ମନର ପୀଡ଼ାଦାୟକ ଏବଂ ପରର ଅନିଷ୍ଟ ସାଧନ ଇଚ୍ଛାରେ କରାଯାଏ, ତାହାକୁ ତାମସ ବୋଲାଯାଏ । ୧୯ ।

ଶ୍ଳୋକଃ ।

* ଦାତବ୍ୟମିତି ଯଦ୍ଦାନଂ, ଦୀୟତେଽନୁପକାରିଣେ ।
ଦେଶେ କାଳେ ଚ ପାତ୍ରେ ଚ, ତଦ୍ଦାନଂ ସାତ୍ତ୍ୱିକଂ ସ୍ମୃତଂ । ୨୦ ।

ଅନ୍ୱୟଃ ।

ଯତ୍ ଦାନଂ ଦାତବ୍ୟଂ ଇତି ଦେଶେ, କାଳେ ଚ ଅନୁପକାରିଣେ, ଚ ପାତ୍ରେ ଦୀୟତେ ତତ୍ ଦାନଂ ସାତ୍ତ୍ୱିକଂ ସ୍ମୃତଂ । ୨୦ ।

ଟୀକା ।

ପୂର୍ବପ୍ରତିଜ୍ଞାତମେବ ଦାନସ୍ୟ ତ୍ରୈବିଧ୍ୟମାହ । ଦାତବ୍ୟମିତି । ଦାତବ୍ୟମେବେତ୍ୟେବଂ ନିଶ୍ଚୟେନ ଯଦ୍ଦାନଂ ଦୀୟତେ ଅନୁପକାରିଣେ—ପ୍ରତ୍ୟୁପକାରସମର୍ଥାୟ, ଦେଶେ—କୁରୁକ୍ଷେତ୍ରାଦୌ, କାଳେ—ଗ୍ରହଣାଦୌ, ପାତ୍ରେ ଚେତି ଦେଶକାଳସାହଚର୍ଯ୍ୟାତ୍ ସପ୍ତମୀ ପ୍ରଯୁକ୍ତା, ପାତ୍ରେ—ପାତ୍ରଭୂତାୟ ତପଃଶ୍ରୁତାଦିସମ୍ପନ୍ନାୟ ବ୍ରାହ୍ମଣାୟ ଇତ୍ୟର୍ଥଃ, ଯଦ୍ୱା ଚତୁର୍ଥ୍ୟେବୈଷା ପାତ୍ରେ ଇତି ଭୃଜନ୍ତଂ ରକ୍ଷକାୟ ଇତ୍ୟର୍ଥଃ, ସ ହି ସର୍ବସ୍ମାଦାପଦ୍‌ଗଣାତ୍ ଦାତାରଂ ପାତିତ ପାତା ଉଚ୍ୟତେ । ଯଦେବମ୍ଭୂତଂ ଦାନଂ ତତ୍ ସାତ୍ତ୍ୱିକଂ । ୨୦ ।

* ତନ୍ତ୍ରଶାସ୍ତ୍ରରେ ମାରଣ, ସ୍ତମ୍ଭନ, ମୋହନ, ଉଚ୍ଚାଟନ ଓ ବିଦ୍ୱେଷଣ ଏହି ଛଅପ୍ରକାର 'ଅଭିଚାର' ର କଥା ଲେଖା ଅଛି । ବିଶେଷ ବିବରଣ ତନ୍ତ୍ରସାରରେ ଦ୍ରଷ୍ଟବ୍ୟ ।

Digitized by PPRACHIN, SOA

### ପଦବ୍ୟାଖ୍ୟା ।

ଦାତବ୍ୟଂ—ଦେବା ଉଚିତ, ଇତି—ଏହି ବୁଦ୍ଧିରେ, ଯତ୍ ଦାନଂ—ଯେଉଁ ଦାନ, ଦୀୟତେ—ଦିଆ ଯାଏ, ଅନୁପକାରିଣେ—ଅନୁପକାରୀ ଅଥବା ପ୍ରତ୍ୟୁପକାର କରିବାରେ ଅସମର୍ଥ ବ୍ୟକ୍ତିକୁ, ଦେଶେ—କୁରୁକ୍ଷେତ୍ର, କାଶୀ ଓ ପ୍ରୟାଗ ପ୍ରଭୃତି ସ୍ଥାନରେ, କାଲେ ଚ—ଗ୍ରହଣାଦି ସମୟରେ, ପାତ୍ରେ ଚ—ପାତ୍ରସ୍ୱରୂପ ଅର୍ଥାତ୍ ତପସ୍ୟା ଓ ସ୍ୱାଧ୍ୟାୟଯୁକ୍ତ ବ୍ରାହ୍ମଣକୁ, ଅଥବା ତାହାଙ୍କୁ ସର୍ବ୍ବ ଆପଦରୁ ରକ୍ଷା କରିବାରେ ସମର୍ଥ ବ୍ୟକ୍ତିକୁ, ତତ୍ ଦାନଂ—ସେହି ଦାନ, ସାତ୍ତ୍ୱିକଂ ସ୍ମୃତଂ—ସାତ୍ତ୍ୱିକ ଅଟେ । ୨୦ ।

### ଅନୁବାଦ ।

'ଦାନ କରିବା କର୍ତ୍ତବ୍ୟ' ଏହି ବୁଦ୍ଧିରେ, ଯେଉଁ ଦାନ ଦେଶ, କାଳ ଓ ପାତ୍ର ବିବେଚନାରେ ଅନୁପକାରୀ ବ୍ୟକ୍ତିକୁ ଦିଆ ଯାଏ, ତାହା ସାତ୍ତ୍ୱିକ ଦାନ ଅଟେ । ୨୦ ।

### ବିଶଦବ୍ୟାଖ୍ୟା ।

ଗୃହସ୍ଥ ପ୍ରଭୃତି ଆଶ୍ରମବନ୍ତ ବ୍ୟକ୍ତିଙ୍କ ପ୍ରତି ବେଦାଦି ଶାସ୍ତ୍ରରେ, ଦେଶ, କାଳ ଓ ପାତ୍ରାଦି ବିବେଚନାରେ ଯେପରି ଦାନ ଦେବାର ଉପଦେଶ ଅଛି, ସେହି ଉପଦେଶର ବଶବର୍ତ୍ତୀ ହୋଇ 'ଦାନ କରିବା ଉଚିତ' ଏପରି ବୁଦ୍ଧିରେ ଯେଉଁ ଦାନ କରାଯାଏ, ଏବଂ ଯାହା କୁରୁକ୍ଷେତ୍ର, କାଶୀ, ଗୟା ଓ ପୁରୁଷୋତ୍ତମ ପ୍ରଭୃତି ତୀର୍ଥ (ଦେଶ)ରେ ଓ ସୂର୍ଯ୍ୟଗ୍ରହଣ, ଅମାବାସ୍ୟା, ପୂର୍ଣ୍ଣିମା ଅଥବା ସଂକ୍ରାନ୍ତି ପ୍ରଭୃତି କାଳରେ କରାଯାଏ, ତାହା ସାତ୍ତ୍ୱିକ ଅଟେ । ଆଉ ଯେଉଁ ବ୍ୟକ୍ତିଠାରୁ କୌଣସି ସମୟରେ କିଛିମାତ୍ର ଉପକାର ପାଇ ନ ଥିବ, ଅଥବା ପାଇବାର ସମ୍ଭାବନା ଓ କାମନା ନ ଥିବ, କିମ୍ବା ଯେ ବ୍ୟକ୍ତି ପ୍ରତ୍ୟୁପକାର କରିବାରେ ଅସମର୍ଥ, ସେହିପରି ବ୍ୟକ୍ତିକୁ ଉତ୍ତମ ଦେଶ ଓ ଉତ୍ତମ କାଳରେ ଯେଉଁ ଦାନ ଦିଆ ଯାଏ, ତାହା ସାତ୍ତ୍ୱିକ ଅଟେ, କିମ୍ବା ବିଦ୍ୟା ଓ ତପସ୍ୟାଦ୍ୱାରା ଯେ, ନିଜର ଓ ଦାତାର ରକ୍ଷା ବିଷୟରେ ସମର୍ଥ, ସେହିପରି ବ୍ୟକ୍ତିକୁ ଉତ୍ତମ ଦେଶ ଓ ଉତ୍ତମ କାଳରେ କର୍ତ୍ତବ୍ୟ ବୁଦ୍ଧିରେ ଯେଉଁ ଦାନ ଦିଆ ଯାଏ, ତାହାର ସାତ୍ତ୍ୱିକ ଅଟେ । ଶାସ୍ତ୍ରରେ ଦାନ ଗ୍ରହଣ କରିବା ବ୍ୟକ୍ତିର ଏହିପରି ଲକ୍ଷଣ ଲେଖାଅଛି, ଯଥା—

"ବିଦ୍ୟାତପୋଭ୍ୟାମାତ୍ମାନଂ ଦାତାରଞ୍ଚ ପାଲନକ୍ଷମ ଏବ ଗୃହ୍ଣୀୟାତ୍" ଅର୍ଥାତ୍ କେବଳ ସେହି ବ୍ୟକ୍ତି, ପ୍ରତିଗ୍ରହଣ କରିବେ, ଯେଉଁ ବ୍ୟକ୍ତି ବିଦ୍ୟା ଓ ତପସ୍ୟାଦ୍ୱାରା ଆପଣାର ଓ ଦାତାର ରକ୍ଷା ବିଷୟରେ ସମର୍ଥ ଅଟନ୍ତି । ୨୦ ।

### ଶ୍ଳୋକଃ ।

* ଯତ୍ତୁ ପ୍ରତ୍ୟୁପକାରାର୍ଥଂ, ଫଲମୁଦ୍ଦିଶ୍ୟ ବା ପୁନଃ ।
ଦୀୟତେ ଚ ପରିକ୍ଲିଷ୍ଟଂ, ତଦ୍ରାଜସମୁଦାହୃତଂ । ୨୧ ।

### ଅନ୍ୱୟଃ ।

ତୁ ଯତ୍ (ଦାନଂ) ପୁନଃ ପ୍ରତ୍ୟୁପକାରାର୍ଥଂ, ବା ଫଲଂ ଉଦ୍ଦିଶ୍ୟ, ଚ ପରିକ୍ଲିଷ୍ଟଂ ଦୀୟତେ, ତତ୍ ରାଜସଂ ଉଦାହୃତଂ । ୨୧ ।

ଟୀକା ।

ରାଜସଂ ଦାନମାହ । ଯତ୍ତ୍ୱିତି । କାଳାନ୍ତରେଣାସ୍ମାଂ ନାଂ ପ୍ରତ୍ୟୁପକରିଷ୍ୟତି ଇତ୍ୟେବମର୍ଥଂ ଫଳଂ ବା ସ୍ୱର୍ଗାଦିକମୁଦ୍ଦିଶ୍ୟ ଯତ୍ ପୁନର୍ଦାନଂ ଦୀୟତେ ପରିକ୍ଳିଷ୍ଟଂ ଚିତ୍ତକ୍ଲେଶଯୁକ୍ତଂ ଯଥା ଭବତ୍ୟେବମ୍ଭୂତଂ ତଦ୍ଦାନଂ ରାଜସମୁଦାହୃତଂ । ୨୧ ।

ପଦବ୍ୟାଖ୍ୟା ।

ଯତ୍ତୁ—ଯାହା; ପ୍ରତ୍ୟୁପକାରାର୍ଥଂ—ପ୍ରତ୍ୟୁପକାର ନିମିତ୍ତ, ଫଳଂ ଉଦ୍ଦିଶ୍ୟ ବା ପୁନଃ—ଅଥବା ସ୍ୱର୍ଗାଦି ଫଳକାମନାରେ, ଦୀୟତେ ଚ—ଦିଆ ଯାଏ, ପରିକ୍ଳିଷ୍ଟଂ—ମନରେ କଷ୍ଟ ଜ୍ଞାନ କରି, ତତ୍ ରାଜସଂ ଉଦାହୃତଂ—ତାହା ରାଜସ ଦାନର ଉଦାହରଣ ଅର୍ଥାତ୍ ତାହାକୁ ରାଜସ ଦାନ ବୋଲାଯାଏ । ୨୧ ।

ଅନୁବାଦ ।

ପୁଣି ଯେଉଁ ଦାନ, ପ୍ରତ୍ୟୁପକାର ନିମିତ୍ତରେ, ଅଥବା ସ୍ୱର୍ଗାଦି ଫଳ ଇଚ୍ଛାରେ ଓ କଷ୍ଟରେ ଦିଆ ଯାଏ, ତାହା ରାଜସ ଅଟେ । ୨୧ ।

ବିଶଦବ୍ୟାଖ୍ୟା ।

ଅମୁକ ବ୍ୟକ୍ତିକୁ ଏତେବେଳେ ଦାନ ଦେଲେ, ଅନ୍ୟ ସମୟରେ ସେ ମୋହର ଉପକାର କରିବ, ଅଥବା ଏହି ଦାନଜନିତ ପୁଣ୍ୟଦ୍ୱାରା ମୋହର ସ୍ୱର୍ଗାଦି ଫଳ ଲାଭ ହେବ, ଏପରି ଇଚ୍ଛାରେ ଯେଉଁ ଦାନ ଦିଆ ଯାଏ, କିମ୍ବା ଦାନ କରିବା ପରେ ଯଦି ଏପରି ମନେ କରେ, ଯେ 'ବୃଥାରେ ଏତେ ଟଙ୍କା ବ୍ୟୟ କଲି, ଏହା ଅପେକ୍ଷା ଅଳ୍ପ ବ୍ୟୟରେ ତ ଦାନ କାର୍ଯ୍ୟ ହୋଇଥାନ୍ତା, ଇତ୍ୟାଦି,' ତାହା ହେଲେ, ସେ ପ୍ରକାର ଦାନକୁ ଶାସ୍ତ୍ରବେତ୍ତା ପଣ୍ଡିତମାନେ ରାଜସ ଦାନ ବୋଲି କହନ୍ତି । ୨୧ ।

ଶ୍ଳୋକଃ ।

* ଅଦେଶକାଳେ ଯଦ୍ଦାନମପାତ୍ରେଭ୍ୟଶ୍ଚ ଦୀୟତେ ।
ଅସତ୍କୃତମବଜ୍ଞାତଂ, ତତ୍ତାମସମୁଦାହୃତଂ । ୨୨ ।

ଅନ୍ୱୟଃ ।

ଯତ୍ ଦାନଂ ଅଦେଶକାଳେ, ଅପାତ୍ରେଭ୍ୟଃ ଦୀୟତେ, ଚ ଅସତ୍କୃତଂ ଅବଜ୍ଞାତଂ, ତତ୍ ତାମସଂ ଉଦାହୃତଂ । ୨୨ ।

ଟୀକା ।

ତାମସଂ ଦାନମାହ । ଅଦେଶେତି । ଅଦେଶେ ଅଶୁଚିସ୍ଥାନେ, ଅକାଳେ ଅଶୌଚାଦିସମୟେ, ଅପାତ୍ରେଭ୍ୟୋ ନଟନର୍ତ୍ତକାଦିଭ୍ୟୋ ଯଦ୍ଦାନଂ ଦୀୟତେ ତତ୍, ଦେଶକାଳପାତ୍ରସମ୍ପତ୍ତାବପି ଅସତ୍କୃତଂ ପାଦପ୍ରକ୍ଷାଳନାଦିସତ୍କାରଶୂନ୍ୟଂ ଅବଜ୍ଞାତଂ ପାତ୍ରତିରସ୍କାରଯୁକ୍ତଂ, ଏବମ୍ଭୂତଂ ଦାନଂ ତାମସମୁଦାହୃତଂ । ୨୨ ।

ପଦବ୍ୟାଖ୍ୟା ।

ଅଦେଶକାଳେ—ଅପବିତ୍ର ଦେଶ ଓ ଅଶୌଚାଦି ଅଶୁଭ-ସମୟରେ, ଯଦାନଂ—ଯେଉଁ ଦାନ, ଅପାତ୍ରେଭ୍ୟଃ—ଧୂର୍ତ୍ତ, ଲମ୍ପଟ ଓ ନଟାଦି ଶାସ୍ତ୍ରନିଷିଦ୍ଧ ପାତ୍ରମାନଙ୍କୁ, ଚ—ପୁଣି, ଦୀୟତେ—ଦିଆ ଯାଏ, ଚ—ପୁଣି, ଅସତ୍କୃତଂ—(ପାତ୍ରର ପାଦପ୍ରକ୍ଷାଳନାଦି) ସତ୍କାରହୀନ, ଅବଜ୍ଞାତଂ—ଅବଜ୍ଞା ଅର୍ଥାତ୍ (ପାତ୍ର ଉଦ୍ଦେଶ୍ୟରେ) ତିରସ୍କାରର ସହିତ, ତତ୍—ସେହି ଦାନ, ତାମସଂ ଉଦାହୃତଂ—ତାମସ ଅଟେ । ୨୨ ।

## ଅନୁବାଦ ।

ଯେଉଁ ଦାନ, ଅପବିତ୍ର ସ୍ଥାନ ଓ ଅଶୁଦ୍ଧ ସମୟରେ ଅଯୋଗ୍ୟ ପାତ୍ରରେ ଦିଆ ଯାଏ, ଓ ଯାହା ସତ୍କାରହୀନ ଓ ତିରସ୍କାରଯୁକ୍ତ, ତାହା ତାମସ ଦାନ ଅଟେ । ୨୨ ।

## ବିଶଦବ୍ୟାଖ୍ୟା ।

ଯେଉଁ ସ୍ଥାନ ସ୍ୱଭାବରେ ଅପବିତ୍ର, ଅଥବା ମନ୍ଦ ଲୋକଙ୍କ ସଂସର୍ଗରେ ଦୂଷିତ ଅଟେ, ତାହା 'ଅଦେଶ', ଓ ଜ୍ୟୋତିଷଶାସ୍ତ୍ରୋକ୍ତ ମଳମାସାଦି, ଅଥବା ଅଶୌଚାଦି ସମୟ 'ଅକାଳ' ଅଟେ । ସେହି ଅଦେଶରେ ଓ ଅକାଳରେ ଯେଉଁ ଦାନ, ବିଦ୍ୟା ଓ ତପସ୍ୟାବର୍ଜିତ ବ୍ରାହ୍ମଣାଦି, ନଟ ଓ 'ଖୁସାମତିଆ' ପ୍ରଭୃତି ଅଯୋଗ୍ୟ ପାତ୍ରଙ୍କୁ ଦିଆ ଯାଏ, ତାହାକୁ ତାମସ ଦାନ ବୋଲି-ଯାଏ, ପୁଣି ଉତ୍ତମ ଦେଶ, ଉତ୍ତମ କାଳ ଓ ଉତ୍ତମ ପାତ୍ରାଦି ଘଟିଲେ ମଧ୍ୟ, ଦାନ ଗ୍ରହଣ-କାରିବ୍ୟକ୍ତିଙ୍କୁ ପାଦ ପ୍ରକ୍ଷାଳନାର୍ଥ ଜଳ ଓ ମିଷ୍ଟ ସମ୍ଭାଷଣ ପ୍ରଭୃତି ସତ୍କାର ନ ଦେଇ ଯେଉଁ ଦାନ ଦିଆ ଯାଏ, ଅଥବା ତାହାଙ୍କୁ ତିରସ୍କାର କି ଅନାଦର କରି ଯେଉଁ ଦାନ ଦିଆ ଯାଏ, ତାହାକୁ ମଧ୍ୟ, ତାମସ ଦାନ ବୋଲାଯାଏ । ୨୨ ।

## ଶ୍ଳୋକଃ ।

* ଓଁ ତତ୍ସଦିତି ନିର୍ଦ୍ଦେଶୋ, ବ୍ରହ୍ମଣସ୍ତ୍ରିବିଧଃ ସ୍ମୃତଃ ।
ବ୍ରାହ୍ମଣାସ୍ତେନ ବେଦାଶ୍ଚ, ଯଜ୍ଞାଶ୍ଚ ବିହିତାଃ ପୁରା । ୨୩ ।

## ଅନ୍ୱୟଃ ।

ଓଁ ତତ୍, ସତ୍ ଇତି ବ୍ରହ୍ମଣଃ ନିର୍ଦ୍ଦେଶଃ ତ୍ରିବିଧଃ ସ୍ମୃତଃ, ତେନ ବ୍ରାହ୍ମଣାଃ ଚ ବେଦାଃ, ଚ ଯଜ୍ଞାଃ, ପୁରା ବିହିତାଃ । ୨୩ ।

## ଟୀକା ।

ତଦେବଂ ଦର୍ଶ୍ୟମାନେ ସର୍ବମପି ଯଜ୍ଞତପୋଦାନାଦି ରାଜସ-ତାମସପ୍ରାୟମେବେତି ବ୍ୟର୍ଥୋ ଯଜ୍ଞାଦିପ୍ରୟାସ ଇତ୍ୟାଶଙ୍କ୍ୟ ତଥାବିଧସ୍ୟାପି ସାତ୍ତ୍ୱିକତ୍ୱୋପପାଦନପ୍ରକାରଂ ଦର୍ଶୟିତୁମାହ । ଓମିତି । ଓଁ ତତ୍ସଦିତି ତ୍ରିବିଧୋ ବ୍ରହ୍ମଣଃ ପରମାତ୍ମନୋ ନିର୍ଦ୍ଦେଶୋ ନାମ୍ନା ବ୍ୟପଦେଶଃ ସ୍ମୃତଃ ଶିଷ୍ଟୈଃ, ତତ୍ର ତାବଦୋମିତି ନିବୃଦ୍ବ୍ରହ୍ମେତ୍ୟାଦି ଶ୍ରୁତିପ୍ରସିଦ୍ଧେରୋମିତି ବ୍ରହ୍ମଣୋ ନାମ, ଜଗତ୍କାରଣତ୍ୱେନାତିପ୍ରସିଦ୍ଧତ୍ୱାତ୍ ବହୁଧା ଅପରୋକ୍ଷତ୍ୱାଚ୍ଚ ତତ୍ ଶବ୍ଦୋଽପି ବ୍ରହ୍ମଣୋ ନାମ, ପରମାର୍ଥସତ୍ତ୍ୱ ସାଧୁତ୍ୱ-ପ୍ରଶସ୍ତତ୍ୱାଦିଭିଃ ସତ୍ ଶବ୍ଦୋଽପି ବ୍ରହ୍ମଣୋ ନାମ । ସଦେବ ସୌମ୍ୟେଦମିଦମଗ୍ର ଆସୀଦିତ୍ୟାଦି ଶ୍ରୁତେଃ, ଅୟଂ ତ୍ରିବିଧୋଽପି ନାମନିର୍ଦ୍ଦେଶୋ ବିଗୁଣମପି ସଗୁଣଂ କର୍ତ୍ତୁଂ ସମର୍ଥ ଇତ୍ୟାଶୟେନ ସ୍ତୌତି, ତେନ ତ୍ରିବିଧେନ ବ୍ରହ୍ମଣୋ ନିର୍ଦ୍ଦେଶେନ ବ୍ରାହ୍ମଣାଶ୍ଚ ବେଦାଶ୍ଚ ଯଜ୍ଞାଶ୍ଚ ପୁରା ସୃଷ୍ଟ୍ୟାଦୌ ବିହିତା ବିଧାତ୍ରା ନିର୍ମିତାଃ ସଗୁଣୀକୃତା ଇତି ବା, ଯଦ୍ୱା ଯସ୍ୟାସ୍ୟ ତ୍ରିବିଧୋ-ନିର୍ଦ୍ଦେଶସ୍ୟେନ ପରମାତ୍ମନା ବ୍ରାହ୍ମଣାଦୟଃ ପବିତ୍ରତମାଃ ସୃଷ୍ଟାସ୍ତସ୍ମାଦସ୍ୟ ନିର୍ଦ୍ଦେଶୋଽତିପ୍ରଶସ୍ତ ଇତ୍ୟର୍ଥଃ । ୨୩ ।

## ପଦବ୍ୟାଖ୍ୟା ।

ଓଁ ତତ୍ ସତ୍ ଇତି ନିର୍ଦ୍ଦେଶଃ—ଓଁ ତତ୍, ସତ୍ ଏପରି ଯେଉଁ ନିର୍ଦ୍ଦେଶ ଅର୍ଥାତ୍ କଥନ, ବ୍ରହ୍ମଣଃ—ବ୍ରହ୍ମଙ୍କର, ତ୍ରିବିଧଃ ସ୍ମୃତଃ—ତିନି ପ୍ରକାର ହୁଏ, ବ୍ରାହ୍ମଣାଃ—ବ୍ରାହ୍ମଣମାନେ, ତେନ—ସେହି ଓଁ ତତ୍ ସତ୍ ଇତ୍ୟାଦି ନାମ ଉଚ୍ଚାରଣଦ୍ୱାରା, ବେଦାଶ୍ଚ—ଓ ବେଦମାନେ, ଯଜ୍ଞାଶ୍ଚ—ଅଶ୍ୱମେଧ ଓ ବାଜପେୟାଦି ଯଜ୍ଞ ସବୁ, ବିହିତାଃ ପୁରା—ସୃଷ୍ଟି କାଳରେ ନିର୍ମିତ ହୋଇଅଛନ୍ତି । ୨୩ ।

Digitized by PPRACHIN, SOA

## ଅନୁବାଦ ।

ବ୍ରହ୍ମଙ୍କର ଓଁ, ତତ୍ ଓ ସତ୍ ଏପରି ତ୍ରିବିଧ ନାମ ଉଚ୍ଚାରଣଦ୍ୱାରା ପୂର୍ବକାଳରେ ପ୍ରଜାପତି ବ୍ରହ୍ମା, ବ୍ରାହ୍ମଣ, ବେଦ ଓ ଯଜ୍ଞ ସବୁ ସୃଷ୍ଟି କରିଅଛନ୍ତି । ୨୩ ।

## ବିଶଦବ୍ୟାଖ୍ୟା ।

ଏହି ଅଧ୍ୟାୟର ୭ମ ଶ୍ଳୋକଠାରୁ ୨୨ଶ ଶ୍ଳୋକ ପର୍ଯ୍ୟନ୍ତ ୧୬ ଶ୍ଳୋକରେ ଆହାର, ତପ, ଯଜ୍ଞ ଓ ଦାନ ଇତ୍ୟାଦି କ୍ରିୟାର ପ୍ରତ୍ୟେକଟି, ଯେ ସାତ୍ତ୍ୱିକ, ରାଜସ ଓ ତାମସ ଭେଦରେ ତିନି ପ୍ରକାର ହୁଏ, ତାହା ବିସ୍ତୃତରୂପେ ବୁଝାଇ ଦିଆ ଯାଇଅଛି । ତାଦ୍ୱାରା ବୁଦ୍ଧିମାନ୍ ବ୍ୟକ୍ତି ଅବଶ୍ୟ ଏ କଥା ବୁଝି ପାରିଥିବେ, ଯେ ରାଜସ ଓ ତାମସ ଆହାରାଦି ଧର୍ମ କାର୍ଯ୍ୟର ଏବଂ ତାହାର ଫଳସ୍ୱରୂପ ସ୍ୱର୍ଗାଦି କାର୍ଯ୍ୟର ମଧ୍ୟ ପ୍ରତିବନ୍ଧକ । ସୁତରାଂ ରାଜସିକ ଓ ତାମସିକ ଆହାରାଦି ତ୍ୟାଗ କରି ସାତ୍ତ୍ୱିକ ଆହାରାଦି ଗ୍ରହଣ କରିବା ଉଚିତ । ମାତ୍ର ଆହାର, ଯଜ୍ଞ ଓ ତପ ଏବଂ ଦାନାଦି ବିଶୁଦ୍ଧ ଭାବରେ କରିବାକୁ ଯତ୍ନ କଲେ ସୁଦ୍ଧା, ମନୁଷ୍ୟର ଅସାବଧାନତାଦି ଦୋଷରେ କୌଣସିନା କୌଣସି ପ୍ରକାର ତ୍ରୁଟି ହୋଇ ଯିବାର ସମ୍ଭାବନା । ସେଥିପାଇଁ ଶ୍ରୀଭଗବାନ୍ ପ୍ରାୟଶ୍ଚିତ୍ତର ସଂକ୍ଷେପ ଅଥଚ ସାର ବିଧି ବ୍ୟାଖ୍ୟା କରୁଅଛନ୍ତି ।

ଓଁକାରରୂପୀ ପରବ୍ରହ୍ମଙ୍କର ଓଁ, ତତ୍ ଓ ସତ୍, ଏହି ଯେ ତିନିପ୍ରକାର ନାମ ଅଥବା ତିନି ଅବୟବଯୁକ୍ତ ନାମ, ତାହା ଉଚ୍ଚାରଣ କରି ପୂର୍ବକାଳରେ ଅର୍ଥାତ୍ ସୃଷ୍ଟିର ଆଦିକାଳରେ ପ୍ରଜାପତି ବ୍ରହ୍ମା ବ୍ରାହ୍ମଣ, ବେଦ ଓ ଯଜ୍ଞ ଏମାନଙ୍କ ସର୍ଜନା କରିଅଛନ୍ତି ।

ଫଳକଥା ଏହି କି 'ବ୍ରାହ୍ମଣ' ରୂପ କର୍ତ୍ତା, 'ବେଦ' ରୂପ କରଣ ଓ 'ଯଜ୍ଞ'ରୂପ କର୍ମକୁ ସୃଷ୍ଟି କଲାବେଳେ, ପ୍ରଜାପତି ବ୍ରହ୍ମା ଓଁ, ତତ୍ ଓ ସତ୍ ଏହି ନାମ ତ୍ରୟ ଅଥବା ଏହି ଅବୟବ ବିଶିଷ୍ଟ-ଯୁକ୍ତ ନାମକୁ ଉଚ୍ଚାରଣ କରିଥିଲେ । ତାଦ୍ୱାରା ତାଙ୍କର ସୃଷ୍ଟି କାର୍ଯ୍ୟ ନିର୍ବିଘ୍ନରେ ସମ୍ପାଦିତ ହେଲା । ଅତଏବ ଯେଉଁମାନେ ଆହାରାଦି କ୍ରିୟା ବିଶୁଦ୍ଧ ଭାବରେ କରିବାକୁ ଇଚ୍ଛା କରିବେ, ସେମାନେ ସେହି ତ୍ରିବିଧ ଅବୟବଯୁକ୍ତ ' ଓଁ ତତ୍ ସତ୍ ' ଏହି ନାମ ସ୍ମରଣ କରିବେ, ତାହା ହେଲେ, ତାଙ୍କର ଅସାବଧାନତାଦି ସମସ୍ତ ଦୋଷ ବିନଷ୍ଟ ହେବ । ଧର୍ମଶାସ୍ତ୍ରରେ ମଧ୍ୟ ପ୍ରମାଣ ଅଛି, ଯେ—

"ପ୍ରମାଦାତ୍ କୁର୍ବତାଂ କର୍ମ ପ୍ରଚ୍ୟବେତାଧ୍ୱରେଷୁ ଯତ୍ ।
ସ୍ମରଣାଦେବ ତଦ୍‌ବିଷ୍ଣୋଃ ସମ୍ପୂର୍ଣ୍ଣଂ ସ୍ୟାଦିତି ଶ୍ରୁତିଃ" ।

ଅର୍ଥାତ୍ ଯଜ୍ଞାଦି କର୍ମ କଲାବେଳେ, ଅସାବଧାନତାଦି ଦୋଷ ହେତୁରୁ ବା ମନ୍ତ୍ରୋଚ୍ଚାରଣାଦିର ବୈଗୁଣ୍ୟ ହେତୁରୁ ଯଦି କୌଣସି ଅଙ୍ଗ ହାନି ହୁଏ, ତାହା ବିଷ୍ଣୁଙ୍କର ନାମ ସ୍ମରଣ କଲେ ସମ୍ପୂର୍ଣ୍ଣ ହୁଏ ।

ଅତଏବ ସମସ୍ତଙ୍କର ଯଜ୍ଞାରମ୍ଭାଦି କାଳରେ 'ଓଁ ତତ୍ ସତ୍' ଏହି ନାମରୂପ ମନ୍ତ୍ର ଅବଶ୍ୟ ଉଚ୍ଚାରଣ କରିବା ଉଚିତ । ୨୩ ।

Digitized by PPRACHIN, SOA

ଶ୍ଳୋକଃ ।

* ତସ୍ମାଦୋମିତ୍ୟୁଦାହୃତ୍ୟ, ଯଜ୍ଞଦାନତପଃକ୍ରିୟାଃ ।
ପ୍ରବର୍ତ୍ତନ୍ତେ ବିଧାନୋକ୍ତାଃ, ସତତଂ ବ୍ରହ୍ମବାଦିନାଂ । ୨୪ ।

ଅନ୍ୱୟଃ ।

ତସ୍ମାତ୍ ଓଁ ଇତି ସତତଂ ଉଦାହୃତ୍ୟ ବ୍ରହ୍ମବାଦିନାଂ ବିଧାନୋକ୍ତାଃ ଯଜ୍ଞ-ଦାନ-ତପଃ-କ୍ରିୟାଃ ପ୍ରବର୍ତ୍ତନ୍ତେ । ୨୪ ।

ଟୀକା ।

ତଦାନାଂ ପ୍ରତ୍ୟେକମୋଙ୍କାରଶବ୍ଦାନାଂ ପ୍ରାଶସ୍ତ୍ୟଂ ଦର୍ଶୟିଷ୍ୟନ୍ ଓଁକାରସ୍ୟ ତାବଦାହ । ତସ୍ମାଦିତି । ଯସ୍ମାଦେବଂ ବ୍ରହ୍ମଣୋନିର୍ଦ୍ଦେଶଃ ପ୍ରଶସ୍ତସ୍ତସ୍ମାଦୋମିତ୍ୟୁଦାହୃତ୍ୟ ତଦୁଚ୍ଚାର୍ଯ୍ୟ କୃତା ବେଦବାଦିନାଂ ଯଜ୍ଞାଦ୍ୟାଃ ଶାସ୍ତ୍ରୋକ୍ତାସ୍ତୁ କ୍ରିୟାଃ ସତତଂ ସର୍ବଦା ଅଙ୍ଗବୈକଲ୍ୟେଽପି ପ୍ରକର୍ଷେଣ ବର୍ତ୍ତନ୍ତେ ସଗୁଣା ଭବନ୍ତୀତ୍ୟର୍ଥଃ । ୨୪ ।

ପଦବ୍ୟାଖ୍ୟା ।

ତସ୍ମାତ୍—ସେହି ହେତୁରୁ, ଓଁ ଇତି ଉଦାହୃତ୍ୟ—'ଓଁ' ଏହି ଅକ୍ଷର ଉଚ୍ଚାରଣ କରି, ଯଜ୍ଞ-ଦାନ-ତପଃକ୍ରିୟାଃ—ଯଜ୍ଞ, ଦାନ ଓ ତପସ୍ୟାଦି କ୍ରିୟା, ପ୍ରବର୍ତ୍ତନ୍ତେ—ପ୍ରବୃତ୍ତ ହୁଅନ୍ତି, ବିଧାନୋକ୍ତାଃ—ଶାସ୍ତ୍ର ବିଧିରେ କଥିତ, ସତତଂ—ନିରନ୍ତର, ବ୍ରହ୍ମବାଦିନାଂ—ବ୍ରହ୍ମନିଷ୍ଠ ବ୍ୟକ୍ତିମାନଙ୍କର । ୨୪ ।

ଅନୁବାଦ ।

ସେହି କାରଣରୁ ବ୍ରହ୍ମବାଦିମାନଙ୍କର ଯଜ୍ଞ ଦାନ ଓ ତପସ୍ୟାଦି ଶାସ୍ତ୍ରୋକ୍ତ କ୍ରିୟା ସବୁ ସର୍ବଦା ଓଁକାର ଉଚ୍ଚାରଣପୂର୍ବକ ଅନୁଷ୍ଠିତ ହୁଏ । ୨୪ ।

ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ ବୁଝାଇ ଦିଆଗଲା, ଯେ ପ୍ରଜାପତି ବ୍ରହ୍ମା ସୃଷ୍ଟିର ଆଦ୍ୟରେ ପରଂବ୍ରହ୍ମଙ୍କର 'ଓଁ, ତତ୍ ଓ ସତ୍' ଏହି ତିନି ନାମ ଉଚ୍ଚାରଣ କରି ବ୍ରାହ୍ମଣ, ବେଦ ଓ ଯଜ୍ଞ ସବୁ ସୃଷ୍ଟି କରିଥିଲେ । ସେହି ନାମ ତ୍ରୟର ପ୍ରଶଂସା କରିବାକୁ ଇଚ୍ଛା କରି ଶ୍ରୀଭଗବାନ୍ ପ୍ରଥମେ 'ଓଁ' ଏହି ନାମର ବିଷୟ ଉଲ୍ଲେଖ କରୁଅଛନ୍ତି ।

ପରଂବ୍ରହ୍ମଙ୍କର ନାମତ୍ରୟ ଉଚ୍ଚାରଣ କଲେ ଆରବ୍ଧ କାର୍ଯ୍ୟ ନିର୍ବିଘ୍ନରେ ସମାପ୍ତ ହୁଏ ବୋଲି ବ୍ରହ୍ମବାଦିମାନେ ଅର୍ଥାତ୍ ସର୍ବଦା ବ୍ରହ୍ମସ୍ମରଣକାରୀମାନେ ଶାସ୍ତ୍ରବିହିତ ଯଜ୍ଞ, ଦାନ ଓ ତପସ୍ୟାଦି କ୍ରିୟା କଲାବେଳେ ଓଁ ଏହି ନାମ ଉଚ୍ଚାରଣ କରନ୍ତି ଅର୍ଥାତ୍ ଓଁ ଏହି ନାମ ଉଚ୍ଚାରଣ କରି ଶାସ୍ତ୍ରୋକ୍ତ ଯଜ୍ଞାଦି କାର୍ଯ୍ୟ ସେମାନେ ନିର୍ବିଘ୍ନରେ ସମ୍ପନ୍ନ କରିପାରନ୍ତି । ୨୪ ।

ଶ୍ଳୋକଃ ।

ତଦିତ୍ୟନଭିସନ୍ଧାୟ, ଫଳଂ ଯଜ୍ଞତପଃକ୍ରିୟାଃ ।
ଦାନକ୍ରିୟାଶ୍ଚ ବିବିଧାଃ, କ୍ରିୟନ୍ତେ ମୋକ୍ଷକାଂକ୍ଷିଭିଃ । ୨୫ ।

ଅନ୍ୱୟଃ ।

ମୋକ୍ଷକାଂକ୍ଷିଭିଃ ଫଳଂ ଅନଭିସନ୍ଧାୟ, ତତ୍ ଇତି ( ଉଦାହୃତ୍ୟ ) ବିବିଧାଃ ଯଜ୍ଞ-ତପଃ-କ୍ରିୟାଃ ଚ ଦାନକ୍ରିୟାଃ କ୍ରିୟନ୍ତେ ।

Digitized by PPRACHIN, SOA

### ଟୀକା ।

ତ୍ରିତୟଂ ନାମ ପ୍ରୌଢ଼ । ତଦେତ । ଉଦାହୃତ୍ୟେତ ପୂର୍ବସ୍ୟାନୁଷଙ୍ଗଃ । ତଦଭ୍ୟୁଦାହୃତ୍ୟ ଉଚ୍ଚାର୍ଯ୍ୟ ଶୁଦ୍ଧଚିତ୍ତୈର୍ମୋକ୍ଷକାଂକ୍ଷିଭିଃ ପୁରୁଷୈଃ ଫଳାଭିସନ୍ଧିମକୃତ୍ୱା ଯଜ୍ଞାଦ୍ୟାଃ କ୍ରିୟାଃ କ୍ରିୟନ୍ତେ । ଅତଶ୍ଚିତ୍ତଶୋଧନଦ୍ୱାରା ଫଳସଙ୍କଳ୍ପତ୍ୟାଜକତ୍ୱେନ ମୁମୁକ୍ଷୁତ୍ୱସମ୍ପାଦକତ୍ୱାତ୍ ତଚ୍ଛବ୍ଦନିର୍ଦ୍ଦେଶଃ ପ୍ରଶସ୍ତ ଇତ୍ୟର୍ଥଃ । ୨୫ ।

### ପଦବ୍ୟାଖ୍ୟା ।

ତତ୍ ଇତି—'ତତ୍' ଏହି ପଦ ଉଚ୍ଚାରଣ କରି, ଅନଭିସନ୍ଧାୟ—ଇଚ୍ଛା ନ କରି ଫଳଂ—ଫଳ ( ପାଇବାକୁ ) ଯଜ୍ଞ-ତପଃ-କ୍ରିୟାଃ—ଯଜ୍ଞ ଓ ତପସ୍ୟାରୂପ କ୍ରିୟା, ଦାନକ୍ରିୟାଶ୍ଚ— ଓ ବିତରଣ କ୍ରିୟା, ବିବିଧାଃ—ନାନାପ୍ରକାର କ୍ରିୟନ୍ତେ—କରନ୍ତି, ମୋକ୍ଷକାଂକ୍ଷିଭିଃ—ମୋକ୍ଷାଭିଳାଷିମାନେ । ୨୫ ।

### ଅନୁବାଦ ।

**ମୋକ୍ଷାଭିଳାଷିମାନେ 'ତତ୍' ଏହି ପଦ ଉଚ୍ଚାରଣପୂର୍ବକ ଫଳକାମନା ନ କରି ନାନା ପ୍ରକାର ଯାଗ ତପସ୍ୟା ଓ ଦାନକାର୍ଯ୍ୟ କରନ୍ତି । ୨୫ ।**

### ବିଶଦବ୍ୟାଖ୍ୟା ।

"ତତ୍ତ୍ୱମସି" ଇତ୍ୟାଦି ମହାବାକ୍ୟରେ 'ତତ୍' ଶବ୍ଦ ବ୍ରହ୍ମବାଚକ, ମୋକ୍ଷାଭିଳାଷିମାନେ ସେହି 'ତତ୍' ଶବ୍ଦ ଉଚ୍ଚାରଣ କରି, ବିବିଧ ଯାଗ, ବିବିଧ ପ୍ରକାର ତପସ୍ୟା ଓ ନାନାପ୍ରକାର ଦାନାଦି କାର୍ଯ୍ୟ କରନ୍ତି । ମୋକ୍ଷାଭିଳାଷିମାନେ କେବଳ ଚିତ୍ତଶୁଦ୍ଧି ନିମିତ୍ତ ଫଳକାମନାବର୍ଜ୍ଜିତ ହୋଇ ଯାଗାଦି କ୍ରିୟା ଅନୁଷ୍ଠାନ କରନ୍ତି । 'ତତ୍' ଏହି ଶବ୍ଦର ଅଲୌକିକ ଶକ୍ତି ବଳରେ ତାଙ୍କର ସର୍ବପ୍ରକାର ବିଘ୍ନ ବିନଷ୍ଟ ହୋଇ ଯାଗାଦି କାର୍ଯ୍ୟ ସୁଚାରୁରୂପେ ସମ୍ପନ୍ନ ହୁଏ । ଅତଏବ 'ଓଁ' ଏହି ନାମ ପରି 'ତତ୍' ଏହି ନାମଟି ମଧ୍ୟ, ମୋକ୍ଷାଭିଳାଷିମାନଙ୍କ ପକ୍ଷରେ ପ୍ରଶସ୍ତ ଅଟେ । ୨୫ ।

### ଶ୍ଳୋକଃ ।

* ସଦ୍ଭାବେ ସାଧୁଭାବେ ଚ, ସଦିତ୍ୟେତତ୍ ପ୍ରଯୁଜ୍ୟତେ ।
ପ୍ରଶସ୍ତେ କର୍ମଣି ତଥା, ସଚ୍ଛବ୍ଦଃ ପାର୍ଥ ଯୁଜ୍ୟତେ ॥ ୨୬ ।

### ଅନ୍ୱୟଃ ।

ହେ ପାର୍ଥ । 'ସତ୍' ଇତି ଏତତ୍, ସଦ୍ଭାବେ ଚ ସାଧୁଭାବେ ପ୍ରଯୁଜ୍ୟତେ, ତଥା 'ସତ୍' ଶବ୍ଦଃ ପ୍ରଶସ୍ତେ କର୍ମଣି ଯୁଜ୍ୟତେ । ୨୬ ।

### ଟୀକା ।

ସଚ୍ଛବ୍ଦସ୍ୟ ପ୍ରାଶସ୍ତ୍ୟମାହ । ସଦ୍ଭାବ ଇତି ଦ୍ୱାଭ୍ୟାଂ । ସଦ୍ଭାବେ ଅସ୍ତିତ୍ୱେ ଦେବଦତ୍ତସ୍ୟ ପୁତ୍ରାଦିକମସ୍ତି, ଇତ୍ୟେବମର୍ଥେ ସାଧୁଭାବେ ଚ ସାଧୁତ୍ୱେ ଦେବଦତ୍ତସ୍ୟ ପୁତ୍ରାଦି ଶ୍ରେଷ୍ଠମିତ୍ୟେବମର୍ଥେ ସଦିତ୍ୟେତତ୍ ପଦଂ ପ୍ରଯୁଜ୍ୟତେ, ପ୍ରଶସ୍ତେ ମାଙ୍ଗଳେ ବିବାହାଦିକର୍ମଣି ଚ ସଦିଦଂ କର୍ମେତି ସଚ୍ଛବ୍ଦୋ ଯୁଜ୍ୟତେ ସଙ୍ଗଚ୍ଛତେ ଇତି ବା । ୨୬ ।

### ପଦବ୍ୟାଖ୍ୟା ।

ସଦ୍ଭାବେ—'ଅଛି' ଏହି ଅର୍ଥରେ, ସାଧୁଭାବେ ଚ—ଶ୍ରେଷ୍ଠ ଅର୍ଥରେ ମଧ୍ୟ, ସତ୍ ଇତି ଏତତ୍—'ସତ୍' ଏହି ଶବ୍ଦ, ପ୍ରଯୁଜ୍ୟତେ—ପ୍ରଯୁକ୍ତ ହୁଏ, ପ୍ରଶସ୍ତେ କର୍ମଣି—ବିବାହାଦି ମଙ୍ଗଳ କାର୍ଯ୍ୟରେ, ତଥା—ସେହିପରି, ସଚ୍ଛବ୍ଦଃ—ସତ୍ ଶବ୍ଦ, ପାର୍ଥ—ହେ ଅର୍ଜ୍ଜୁନ !, ଯୁଜ୍ୟତେ—ପ୍ରଯୁକ୍ତ ହୁଏ ବା ସଙ୍ଗତ ହୁଏ । ୨୬ ।

Digitized by PPRACHIN, SOA

ଅନୁବାଦ ।

ହେ ପାର୍ଥ ! 'ଅଛି' ଏହି ଅର୍ଥରେ ଓ ଶ୍ରେଷ୍ଠ ଅର୍ଥରେ 'ସତ୍' ଏହି ଶବ୍ଦ ପ୍ରୟୋଗ କରାଯାଏ । ସେହିପରି ବିବାହାଦି ମଙ୍ଗଳକାର୍ଯ୍ୟରେ ମଧ୍ୟ, ସତ୍ ଶବ୍ଦ ପ୍ରଯୁକ୍ତ ହୁଏ । ୨୬ ।

ବିଶଦବ୍ୟାଖ୍ୟା ।

"ସଦେବ ସୌମ୍ୟେଦମଗ୍ର ଆସୀତ୍" ଇତ୍ୟାଦି ଶ୍ରୁତି ବଚନରେ ସତ୍ ଶବ୍ଦ ବ୍ରହ୍ମବାଚକ । ସେହି 'ସତ୍' ଶବ୍ଦ 'ଅଛି' ଏହି ଅର୍ଥରେ ପ୍ରୟୋଗ କରାଯାଏ । ଯଥା;—ଆତ୍ମା ଅଛନ୍ତି, ଅତଏବ 'ସତ୍' ଅଟନ୍ତି; ପୁଣି ସେହି 'ସତ୍' ଶବ୍ଦ, ସାଧୁ ଅର୍ଥରେ ମଧ୍ୟ ପ୍ରୟୋଗ କରାଯାଏ । ଯଥା;—ଋଷିମାନେ ସାଧୁ ଓ ପବିତ୍ର ଅଟନ୍ତି ବୋଲି ସେମାନଙ୍କୁ 'ସତ୍' ଜନ ବୋଲାଯାଏ । ସେହିପରି ବିବାହାଦି ପ୍ରଶସ୍ତ ମଙ୍ଗଳକାର୍ଯ୍ୟରେ ସାଧୁଲୋକମାନେ 'ସତ୍' ଏହି ଶବ୍ଦର ଉଚ୍ଚାରଣ କରନ୍ତି । ସେହି ସତ୍ ଶବ୍ଦର ଅସାଧାରଣ ଶକ୍ତିବଳରେ ସେମାନେ ବିବାହାଦି କାର୍ଯ୍ୟ ନିର୍ବିଘ୍ନରେ ସମ୍ପନ୍ନ କରନ୍ତି । ଅତଏବ 'ସତ୍' ଏହି ଶବ୍ଦ ବା ନାମ ମଙ୍ଗଳକର୍ମରେ ପ୍ରଶସ୍ତ ଅଟେ ।
। ୨୬ ।

ଶ୍ଳୋକଃ ।

ଯଜ୍ଞେ ତପସି ଦାନେ ଚ, ସ୍ଥିତିଃ ସଦିତି ଚୋଚ୍ୟତେ ।
କର୍ମ ଚୈବ ତଦର୍ଥୀୟଂ ସଦିତ୍ୟେବାଭିଧୀୟତେ । ୨୭ ।

ଅନ୍ୱୟଃ ।

ଯଜ୍ଞେ ଚ ତପସି ଚ ଦାନେ ସ୍ଥିତିଃ ସତ୍ ଇତି ଉଚ୍ୟତେ, ଚ ତଦର୍ଥୀୟଂ କର୍ମ ଏବ ସତ୍ ଇତି ଏବ ଅଭିଧୀୟତେ
। ୨୭ ।

ଟୀକା ।

କିଞ୍ଚ ଯଜ୍ଞ ଇତି । ଯଜ୍ଞାଦିଷୁ ଯା ସ୍ଥିତିଃ ତାତ୍ପର୍ଯ୍ୟେଣାବସ୍ଥାନଂ ତଦପି ସଦିତ୍ୟୁଚ୍ୟତେ । ଯସ୍ୟ ଚେଦଂ ନାମତ୍ରୟଂ ସ ଏବ ପରମାତ୍ମା ଅର୍ଥଃ ଫଳଂ ଯସ୍ୟ ତତ୍ତଦର୍ଥଂ କର୍ମ ପୁଷ୍ପୋପହାର-ଗୃହାଙ୍ଗଣପରିମାର୍ଜନୋପଲେପନରଙ୍ଗ-ମାଙ୍ଗଳିକାଦି କ୍ରିୟା, ତତ୍ପରିବର୍ତ୍ତେ ଯଦନ୍ୟତ୍ କର୍ମ କ୍ରିୟତେ ଉଦ୍ୟାନ-କ୍ଷାଳକ୍ଷେତ୍ର-ଧନାର୍ଜନାଦିବିଷୟଂ ତତ୍ କର୍ମ ତଦର୍ଥୀୟଂ, ଭଗବଦ୍ଵ୍ୟବହିତମପି ସଦିତ୍ୟେବାଭିଧୀୟତେ । ଯସ୍ମାଦେବମତିପ୍ରଶସ୍ତମେତନ୍ନାମତ୍ରୟଂ ତସ୍ମାଦେତତ୍ ସର୍ବକର୍ମସାଦ୍ଗୁଣ୍ୟାର୍ଥଂ ସଂକୀର୍ତ୍ତୟେଦିତି ତାତ୍ପର୍ଯ୍ୟାର୍ଥଃ । ଅତ୍ର ଚ ଅର୍ଥବାଦାନୁପପତ୍ତ୍ୟା ବିଧିଃ କଳ୍ପ୍ୟତେ ବିଧେୟସ୍ତୁତ୍ୟର୍ଥତ୍ୱେନୈବୋପପନ୍ନତ୍ୱାତ୍ । ଅପରେ ତୁ ପ୍ରବର୍ତ୍ତନ୍ତେ ବିଧାନୋକ୍ତାଃ କ୍ରିୟନ୍ତେ, ମୋକ୍ଷକାଂକ୍ଷିଭିରିତ୍ୟାଦି ବର୍ତ୍ତମାନୋପଦେଶାଃ, ସମିଧୋଯଜତୀତ୍ୟାଦିବଦ୍ବିଧିତ୍ୱା ପରିଣମନୀୟା ଇତ୍ୟାହୁଃ, ତଚ୍ଚ ସଦ୍ଭାବେ ସାଧୁଭାବେ ଚେତ୍ୟାଦିଷୁ ପ୍ରାପ୍ତାର୍ଥତ୍ୱାନ୍ନ ସଙ୍ଗଚ୍ଛତ ଇତି ପୂର୍ବୋକ୍ତକ୍ରମେଣ ସ୍ତୁତିକଳ୍ପନୈବ ନ୍ୟାଯ୍ୟସୀ । ୨୭ ।

ପଦବ୍ୟାଖ୍ୟା ।

ଯଜ୍ଞେ—ଯଜ୍ଞରେ, ତପସି—ତପସ୍ୟାରେ, ଦାନେ ଚ—ଓ ଦାନରେ, ସ୍ଥିତିଃ—ଅବସ୍ଥାନ, ସଦିତି ଚ ଉଚ୍ୟତେ—ସତ୍ ବୋଲି କଥିତ ହୁଏ, କର୍ମ ଚ ଏବ ତଦର୍ଥୀୟଂ—ସେହି ଯଜ୍ଞ ତପ ଓ ଦାନ ସମ୍ବନ୍ଧୀୟ କର୍ମ, ସତ୍ ଇତି ଏବ ଅଭିଧୀୟତେ—ସତ୍ ଏହି ନାମରେ କଥିତ ହୁଏ, ଅଥବା, କର୍ମ ଚୈବ ତଦର୍ଥୀୟଂ—ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଯେଉଁ କର୍ମ କରାଯାଏ, ସତ୍ ଇତି ଏବ ଅଭିଧୀୟତେ—ତାହା ସତ୍ ଏହି ନାମରେ କଥିତ ହୁଏ । ୨୭ ।

Digitized by PPRACHIN, SOA

ଅନୁବାଦ ।

ଯଜ୍ଞ, ତପସ୍ୟା ଓ ଦାନରେ ଯେଉଁ ନିଷ୍ଠା, ତାକୁ ସତ୍ ବୋଲାଯାଏ ଏବଂ ତନ୍ନିମିତ୍ତରେ ଯେଉଁ କର୍ମ କରାଯାଏ, ତାହାମଧ୍ୟ, ସତ୍ ନାମରେ କଥିତ ହୁଏ । ୨୭ ।

ବିଶଦବ୍ୟାଖ୍ୟା ।

ଅଶ୍ୱମେଧାଦି ଯଜ୍ଞରେ, କୃଚ୍ଛ୍ରଚାନ୍ଦ୍ରାୟଣ ଓ ପଞ୍ଚାଗ୍ନି ପ୍ରଭୃତି ତପସ୍ୟାରେ ଏବଂ ନ୍ୟାୟ୍ୟ ଉପାର୍ଜ୍ଜିତ ସୁବର୍ଣ୍ଣ, ଗୋ, ଭୂମି ଓ ଅନ୍ନାଦିକୁ ସତ୍ପାତ୍ରରେ ଅର୍ପଣରୂପ ଦାନ କାର୍ଯ୍ୟରେ, ଯେଉଁ ନିଷ୍ଠା, ଅର୍ଥାତ୍ ଯେଉଁ ଆଗ୍ରହ, ତାକୁ 'ସତ୍' କୁହା ଯାଏ । ପୁଣି ସେହି ଯଜ୍ଞ, ତପସ୍ୟା ଓ ଦାନ ନିମିତ୍ତ, ଯେଉଁ ସବୁ ଅନ୍ୟାନ୍ୟ କର୍ମ କରାଯାଏ, ତାହା ତଦର୍ଥୀୟ କର୍ମ ହେତୁରୁ, ତାହାକୁ ମଧ୍ୟ, ସତ୍ ବୋଲାଯାଏ । ଅଥବା 'ତତ୍' ଅର୍ଥାତ୍ ପରମେଶ୍ୱରଙ୍କ ନିମିତ୍ତ, ପୂଜା, ଅର୍ଚ୍ଚନା ଓ ଧ୍ୟାନ ପ୍ରଭୃତି ଯେଉଁ କର୍ମ କରାଯାଏ, ତାହାକୁ ମଧ୍ୟ, 'ସତ୍' ବୋଲାଯାଏ । ଅର୍ଥାତ୍, ଯେଉଁ ବ୍ରହ୍ମଙ୍କର ଓଁ ତତ୍ ସତ୍ ଏହି ତିନି ପ୍ରକାର ନାମ କଳ୍ପିତ ହୋଇଅଛି, ସେହି ବ୍ରହ୍ମଙ୍କ ଉଦ୍ଦେଶ୍ୟରେ, ଯଦି ଯଜ୍ଞାଦି କର୍ମ ଅନୁଷ୍ଠିତ ହୁଏ, ତେବେ ତାହା 'ସତ୍' ଅଟେ, ନଚେତ୍ ତାହା ଅସତ୍ ଅଟେ । ଯେ ଯାହା ହେଉ, ଓଁ, ତତ୍ ଓ ସତ୍ ଏହି ନାମତ୍ରୟ ମଧ୍ୟରୁ ଗୋଟିଏ ଉଚ୍ଚାରଣ କଲେ, ତାହାର ଅଲୌକିକ ଶକ୍ତି ବଳରେ, ଯେତେବେଳେ ଗୋଟିଏ କାର୍ଯ୍ୟ ନିର୍ବିଘ୍ନରେ ସମ୍ପାଦିତ ହେଉ ଥିବାର ପ୍ରମାଣିତ ହେଲା, ସେତେବେଳେ 'ଓଁ, ତତ୍ ଓ ସତ୍' ଏହି ତିନି ନାମକୁ ଏକତ୍ରେ ଉଚ୍ଚାରଣ କଲେ, ତାହାର ଅଦ୍ଭୁତ କ୍ଷମତା ବଳରେ, ଯେ ଅଲୌକିକ କାର୍ଯ୍ୟମାନ ସାଧିତ ହେବ, ତହିଁରେ କି ଆଉ ସନ୍ଦେହ ଅଛି ?

ଏହି ଅଧ୍ୟାୟର ୨୪ଶ ଶ୍ଳୋକରେ ବ୍ରହ୍ମବାଦମାନଙ୍କର ଓଁକାର ଉଚ୍ଚାରଣ କରିବା କଥା କହିବାଦ୍ୱାରା ଶ୍ରୀଭଗବାନ୍ ସଂକ୍ଷେପରେ ଏହି କଥା ଜଣାଇଲେ, ଯେ ବ୍ରହ୍ମଜ୍ଞାନପ୍ରାପ୍ତ ଉତ୍ତମାଧିକାରୀଙ୍କ ପକ୍ଷରେ ଓଁ ଉଚ୍ଚାରଣ ପ୍ରଶସ୍ତ ଅଟେ । ପୁଣି ୨୫ଶ ଶ୍ଳୋକରେ ମୋକ୍ଷାଭିଳାଷିମାନେ 'ତତ୍' ଏହି ଶବ୍ଦ ଉଚ୍ଚାରଣ କରି ଯଜ୍ଞାଦି କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି, ଇତ୍ୟାଦି କଥା କହିବାର ତାତ୍ପର୍ଯ୍ୟ ଏହି ଯେ, ମୋକ୍ଷ ପାଇବାକୁ ଇଚ୍ଛୁକ, ଜିଜ୍ଞାସୁ ବା ମଧ୍ୟମାଧିକାରୀ ବ୍ୟକ୍ତିଙ୍କ ପକ୍ଷରେ 'ତତ୍' ଶବ୍ଦ ଉଚ୍ଚାରଣ ପ୍ରଶସ୍ତ ଅଟେ । ସେହିପରି ୨୬ଶ ଶ୍ଳୋକରେ 'ପ୍ରଶସ୍ତ କର୍ମରେ' ସତ୍ ଶବ୍ଦ ପ୍ରୟୋଗ କରାଯାଏ, ଏକଥା କହିବାଦ୍ୱାରା କର୍ମାଧିକାରୀ ଗୃହସ୍ଥଗଣଙ୍କ ପକ୍ଷରେ 'ସତ୍' ଶବ୍ଦ ଉଚ୍ଚାରଣ ପ୍ରଶସ୍ତ ଥିବାର ସଙ୍କେତ କଲେ । ୨୭ ।

ଶ୍ଳୋକଃ ।

ଅଶ୍ରଦ୍ଧୟା ହୁତଂ ଦତ୍ତଂ, ତପସ୍ତପ୍ତଂ କୃତଂ ଚ ଯତ୍ ।
ଅସଦିତ୍ୟୁଚ୍ୟତେ ପାର୍ଥ, ନ ଚ ତତ୍ ପ୍ରେତ୍ୟ ନୋ ଇହ । ୨୮ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍‌ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସମ୍ବାଦେ ଶ୍ରଦ୍ଧାତ୍ରୟବିଭାଗଯୋଗୋନାମ ସପ୍ତଦଶୋଽଧ୍ୟାୟଃ । ୧୭ ।

———*———

Digitized by PPRACHIN, SOA

### ଅନ୍ୱୟଃ ।

ହେ ପାର୍ଥ! ଅଶ୍ରଦ୍ଧୟା ଯତ୍ ହୁତଂ, ଦତ୍ତଂ, ତପଃ ତପ୍ତଂ ଚ କୃତଂ (ତତ୍) ଅସତ୍ ଇତି ଉଚ୍ୟତେ ଚ ତତ୍ ନ ପ୍ରେତ୍ୟ ନୋ ଇହ । ୨୮ ।

ଇତି ଶ୍ରୀଭଗବଦ୍ଗୀତାସୁ ଅନ୍ୱୟେ ସପ୍ତଦଶୋଽଧ୍ୟାୟଃ । ୧୭ ।

### ଟୀକା ।

ଇଦାନୀଂ ସର୍ବକର୍ମସୁ ଶ୍ରଦ୍ଧୈବ ପ୍ରବୃତ୍ତ୍ୟର୍ଥମଶ୍ରଦ୍ଧୟା କୃତଂ ସର୍ବଂ ନିନ୍ଦତି, ଅଶ୍ରଦ୍ଧୟେତି । ଅଶ୍ରଦ୍ଧୟା ହୁତଂ ହବନଂ ଦତ୍ତଂ ଦାନଂ ତପସ୍ତପ୍ତଂ ନିର୍ବର୍ତ୍ତିତଂ ଯଚ୍ଚାନ୍ୟଦପି କୃତଂ ତତ୍ ସର୍ବମସଦିତ୍ୟୁଚ୍ୟତେ, ଯତସ୍ତତ୍ ପ୍ରେତ୍ୟ ଲୋକାନ୍ତରେ ନ ଫଲତି ବିଗୁଣତ୍ୱାତ୍, ନୋ ଇହ ନାସ୍ମିନ୍ ଲୋକେ ଫଲତି ଅଯଶସ୍କରତ୍ୱାତ୍ ।

ରଜସ୍ତମୋମୟୀଂ ତ୍ୟକ୍ତ୍ୱା ଶ୍ରଦ୍ଧାଂ ସତ୍ତ୍ୱମୟୀଂ ଶ୍ରିତଃ ।
ତତ୍ତ୍ୱଜ୍ଞାନେଽଧିକାରୀ ସ୍ୟାଦିତି ସପ୍ତଦଶେ ସ୍ଥିତଂ । ୨୮ ।

ଇତି ଶ୍ରୀଭଗବଦ୍ଗୀତାସୁ ସ୍ୱାମିକୃତଟୀକାୟାଂ ସପ୍ତଦଶୋଽଧ୍ୟାୟଃ । ୧୭ ।

### ପଦବ୍ୟାଖ୍ୟା ।

ଅଶ୍ରଦ୍ଧୟା—ଶ୍ରଦ୍ଧାହୀନ ହୋଇ, ହୁତଂ—ଯାହା ହୋମ କରାଯାଏ, ଦତ୍ତଂ—ଯାହା ଦାନ କରାଯାଏ, ତପଃ ତପ୍ତଂ—ତପସ୍ୟା କରାଯାଏ, କୃତଂ ଚ ଯତ୍—ଆଉ ଯେତେ କର୍ମ କରାଯାଏ, ଅସତ୍ ଇତି ଉଚ୍ୟତେ—ତାହାକୁ ଅସତ୍ ବୋଲାଯାଏ, ପାର୍ଥ—ହେ ଅର୍ଜ୍ଜୁନ !, ନ ଚ ତତ୍ ପ୍ରେତ୍ୟ—ତାହା ପରଲୋକରେ ଫଳଦାୟକ ହୁଏ ନାହିଁ, ନୋ ଇହ—ଇହଲୋକରେ ମଧ୍ୟ ଫଳଦାୟକ ହୁଏ ନାହିଁ । ୨୮ ।

ଇତି ଶ୍ରୀଭଗବଦ୍ଗୀତା-ପଦବ୍ୟାଖ୍ୟାୟାଂ ସପ୍ତଦଶୋଽଧ୍ୟାୟଃ । ୧୭ ।

### ଅନୁବାଦ ।

ଅଶ୍ରଦ୍ଧାପୂର୍ବକ ଯେଉଁ ହୋମ, ଦାନ ଓ ତପ, ଅଥବା ଅନ୍ୟାନ୍ୟ କର୍ମ କରାଯାଏ, ତାହାକୁ ଅସତ୍ ବୋଲାଯାଏ ଓ ତାହା ଇହଲୋକରେ ବା ପରଲୋକରେ ଫଳଦାୟକ ହୁଏ ନାହିଁ । ୨୮ ।

ଇତି ଶ୍ରୀଭଗବଦ୍ଗୀତାର ଉତ୍କଳ ଅନୁବାଦରେ ସପ୍ତଦଶ ଅଧ୍ୟାୟ ସମାପ୍ତ । ୧୭ ।

### ବିଶଦବ୍ୟାଖ୍ୟା ।

'ଓଁ, ତତ୍, ସତ୍' ଏହି ତ୍ରିବିଧ ଅବୟବଯୁକ୍ତ ନାମର ବିଘ୍ନ ବିନାଶକ ଗୁଣ ଶୁଣି, କାଳେ ଅର୍ଜ୍ଜୁନ ମନେ କରିବେ, କି ଯେଉଁ ବ୍ୟକ୍ତିମାନେ ଆସୁରସ୍ୱଭାବଯୁକ୍ତ, ଅଥବା ଆଳସ୍ୟ ପ୍ରମାଦାଦି-ଯୁକ୍ତ, ସେମାନେ ଯଦି କେବଳ ଓଁ, ତତ୍, ସତ୍ ଏହି ଶବ୍ଦ ଉଚ୍ଚାରଣ କରି ଯଜ୍ଞାଦି କର୍ମର ଅନୁ-ଷ୍ଠାନ କରିବେ, ତେବେ କି ତାଙ୍କର ସବୁ ଦୋଷ ନଷ୍ଟ ହୋଇ ସିଦ୍ଧି ଲାଭ ହେବ ? ସେଥି-ପାଇଁ ଶ୍ରୀଭଗବାନ୍ କହିଲେ, ଯେ ଶ୍ରଦ୍ଧାହୀନ ହୋଇ ଯେଉଁମାନେ ଅଗ୍ନିହୋତ୍ର ଓ ଅଶ୍ୱ-ମେଧାଦି ଯଜ୍ଞ କରନ୍ତି, ଅଥବା ଗୋ, ଭୂମି ଓ ସୁବର୍ଣ୍ଣାଦି ଦ୍ରବ୍ୟ ପ୍ରାର୍ଥୀ ବ୍ୟକ୍ତିଙ୍କୁ ପ୍ରଦାନ କରନ୍ତି, କିମ୍ବା ଶାରୀରିକ, ମାନସିକ ଓ ବାଚନିକ ତପସ୍ୟା କରନ୍ତି, ଅଥବା ଅନ୍ୟାନ୍ୟ କର୍ମର ଅନୁଷ୍ଠାନ

Digitized by PPRACHIN, SOA

କରନ୍ତି, ସେ ସବୁ କର୍ମରେ ସେମାନେ ଓଁ ତତ୍ ସତ୍ ଇତ୍ୟାଦି ଉଚ୍ଚାରଣ କଲେସୁଦ୍ଧା, ତାହା ଅସତ୍ ବୋଲି କଥିତ ହୁଏ । କାରଣ, ଯେପରି ପାଷାଣାଦି କଠିନ ପଦାର୍ଥ ଉପରେ କୌଣସି ବୀଜ ପଡ଼ିଲେ ତାହାର ଅଙ୍କୁର ହୋଇ ପାରେ ନାହିଁ, ଅଥବା ଅଙ୍କୁର ହେଲେସୁଦ୍ଧା, ବୃକ୍ଷ ସତେଜ ହୁଏ ନାହିଁ ବା ଫଳବନ୍ତ ହୁଏ ନାହିଁ, ସେହିପରି ଅଶ୍ରଦ୍ଧାକୃତ କର୍ମାଦିରେ 'ଓଁ, ତତ୍ ଓ ସତ୍' ରୂପ ସତ୍ ବୀଜ ଇହଲୋକରେ ବା ପରଲୋକରେ ଫଳ ପ୍ରସବ କରି ପାରେ ନାହିଁ, ଅର୍ଥାତ୍ ଅଶ୍ରଦ୍ଧାକୃତ କର୍ମ ହେତୁରୁ ତାଙ୍କର ପରଲୋକରେ ସ୍ୱର୍ଗାଦି ଫଳ ହୁଏ ନାହିଁ ବା ଇହଲୋକରେ ପ୍ରଶଂସାଦି ଫଳ ହୁଏ ନାହିଁ । ଅତଏବ ଅଶ୍ରଦ୍ଧାପୂର୍ବକ କୌଣସି କର୍ମ ନ କରି ଶ୍ରଦ୍ଧାଯୁକ୍ତ ଚିତ୍ତରେ ଯଥାବିଧି ଅନୁଷ୍ଠାନ କରିବା ସମସ୍ତଙ୍କର ଉଚିତ ଅଟେ । ୨୮ ।

ଇତି ଶ୍ରୀଭଗବଦ୍ଗୀତାର ବିଶଦବ୍ୟାଖ୍ୟାରେ ସପ୍ତଦଶ ଅଧ୍ୟାୟ ସମାପ୍ତ । ୧୭ ।



# ଶ୍ରୀମଦ୍‌ଭଗବଦ୍‌ଗୀତା ।

## ଅଷ୍ଟାଦଶୋଽଧ୍ୟାୟଃ ।

### ମୋକ୍ଷ-ଯୋଗଃ ।

ଶ୍ଳୋକଃ ।

ଅର୍ଜ୍ଜୁନ ଉବାଚ ।

ସନ୍ନ୍ୟାସସ୍ୟ ମହାବାହୋ ତତ୍ତ୍ୱମିଚ୍ଛାମି ବେଦିତୁଂ ।
ତ୍ୟାଗସ୍ୟ ଚ ହୃଷୀକେଶ ପୃଥକ୍‌କେଶିନିସୂଦନ । ୧ ।

ଅନ୍ୱୟଃ ।

ଅର୍ଜ୍ଜୁନଃ ଉବାଚ । ହେ ମହାବାହୋ ! ହେ ହୃଷୀକେଶ ! ହେ କେଶିନିସୂଦନ ! ସନ୍ନ୍ୟାସସ୍ୟ ଚ ତ୍ୟାଗସ୍ୟ ତତ୍ତ୍ୱଂ ପୃଥକ୍ ବେଦିତୁଂ ଇଚ୍ଛାମି ।

ସ୍ୱାମିକୃତ ଟୀକା ।

ନ୍ୟାସତ୍ୟାଗବିଭାଗେନ ସର୍ବଗୀତାର୍ଥସଂଗ୍ରହଂ ।
ସ୍ପଷ୍ଟମଷ୍ଟାଦଶେ ପ୍ରାହ ପରମାର୍ଥବିନିର୍ଣ୍ଣୟେ ।

ଅଥ ଚ ସର୍ବକର୍ମାଣି ମନସା ସନ୍ନ୍ୟସ୍ୟାସ୍ତେ ସୁଖଂ ବଶୀ, ସନ୍ନ୍ୟାସଯୋଗଯୁକ୍ତାତ୍ମେତ୍ୟାଦିଷୁ କର୍ମସନ୍ନ୍ୟାସ ଉପଦିଷ୍ଟସ୍ତଥା ତ୍ୟକ୍ତ୍ୱା କର୍ମଫଲାସଙ୍ଗଂ ନିତ୍ୟତୃପ୍ତୋ ନିରାଶ୍ରୟଃ । ସର୍ବକର୍ମଫଲତ୍ୟାଗଂ ତତଃ କୁରୁ ଯତାତ୍ମବାନିତ୍ୟାଦିଷୁ ଚ ଫଲମାତ୍ରତ୍ୟାଗେନ କର୍ମାନୁଷ୍ଠାନମୁପଦିଷ୍ଟଂ, ନ ଚ ପରସ୍ପରବିରୁଦ୍ଧଂ ସର୍ବଜ୍ଞଃ ପରମକାରୁଣିକୋ ଭଗବାନୁପଦିଶେତ୍ ଅତଃ କର୍ମସନ୍ନ୍ୟାସସ୍ୟ ତଦନୁଷ୍ଠାନସ୍ୟ ଚ ଅବିରୋଧପ୍ରକାରଂ ବୁଭୁତ୍ସୁରର୍ଜ୍ଜୁନ ଉବାଚ । ସନ୍ନ୍ୟାସସ୍ୟେତି । ହେ ହୃଷୀକେଶ ସର୍ବେନ୍ଦ୍ରିୟନିୟାମକ ! ହେ କେଶିନିସୂଦନ—କେଶିନାମା ମହାନ୍ ଦୈତ୍ୟୋ ହୟରୂପଧାରୀ ଦେବାନ୍ ତ୍ରାସୟନ୍ ପୂର୍ବଂ ମୁଖଂ ବ୍ୟାଦାୟ ଭକ୍ଷୟିତୁମିଚ୍ଛୁଃ ତସ୍ୟ ମୁଖେ ବାମବାହୁଂ ପ୍ରବେଶ୍ୟ ତତ୍‌କ୍ଷଣମେବ ଦାରୁଣେନ ତେନୈବ ବାହୁନା କର୍କଟିକାଫଳବତ୍ ତଂ ଦାରୟିତ୍ୱା ନିସୂଦିତବାନ୍ ଅତଏବ ହେ ମହାବାହୋ ଇତି ସମ୍ବୋଧନଂ, ସନ୍ନ୍ୟାସସ୍ୟ ତ୍ୟାଗସ୍ୟ ଚ ତତ୍ତ୍ୱଂ ପୃଥକ୍ ବିବେକେନ ବେଦିତୁମିଚ୍ଛାମି । ୧ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ କହିଲେ, ସନ୍ନ୍ୟାସସ୍ୟ—ସନ୍ନ୍ୟାସର, ମହାବାହୋ—ହେ ଆଜାନୁଲମ୍ବିତଭୁଜ—ଅଥବା ସର୍ବସମର୍ଥ !, ତତ୍ତ୍ୱଂ—ପ୍ରକୃତ ତଥ୍ୟ, ଇଚ୍ଛାମି—ଇଚ୍ଛା କରୁଅଛି, ବେଦିତୁଂ—ଜାଣିବାକୁ, ତ୍ୟାଗସ୍ୟ ଚ—ତ୍ୟାଗର ମଧ୍ୟ, ହୃଷୀକେଶ—ହେ ଇନ୍ଦ୍ରିୟମାନଙ୍କର ପାଳକ ବା ପ୍ରଭୁ, ପୃଥକ୍—ଭିନ୍ନ ରୂପେ, କେଶିନିସୂଦନ—ହେ କେଶି ନାମକ ଦୈତ୍ୟ ବିନାଶକ । ୧ ।

ଅନୁବାଦ ।

ଅର୍ଜ୍ଜୁନ କହିଲେ, ହେ କେଶୀ-ନିସୂଦନ ! ହେ ମହାବାହୋ ! ହେ ହୃଷୀକେଶ । ସନ୍ନ୍ୟାସ ଓ ତ୍ୟାଗ ଏ ଦୁହିଙ୍କର ପ୍ରକୃତ ତଥ୍ୟ ( ମୁଁ ) ପୃଥକ୍‌ରୂପେ ଜାଣିବାକୁ ଇଚ୍ଛା କରୁଅଛି । ୧ ।

ବିଶଦବ୍ୟାଖ୍ୟା ।

ସପ୍ତଦଶ ଅଧ୍ୟାୟରେ ଶ୍ରଦ୍ଧା, ଆହାର, ଯଜ୍ଞ, ଦାନ ଓ ତପସ୍ୟାଦି କ୍ରିୟାର ଏବଂ କର୍ମକର୍ତ୍ତା ପୁରୁଷର ସାତ୍ତ୍ୱିକ, ରାଜସିକ ଓ ତାମସିକାଦି ଭେଦ କଥିତ ହୋଇଅଛି , ତଦ୍ୱାରା ସ୍ପଷ୍ଟରୂପେ ବୁଝାଇ ଦିଆ ଯାଇଅଛି, ଯେ ମୋକ୍ଷାଭିଳାଷୀ ବ୍ୟକ୍ତି ସାତ୍ତ୍ୱିକ ଶ୍ରଦ୍ଧା, ଆହାର, ଯଜ୍ଞ, ଦାନ ଓ ତପସ୍ୟାଦି କରିବେ ଏବଂ ରାଜସ ଓ ତାମସ ଶ୍ରଦ୍ଧାଦି ପରିତ୍ୟାଗ କରିବେ । ବର୍ତ୍ତମାନ କର୍ମତ୍ୟାଗ ବା ସନ୍ନ୍ୟାସର ସାତ୍ତ୍ୱିକାଦି ଭେଦ କହିବାକୁଁ ଅଷ୍ଟାଦଶ ଅଧ୍ୟାୟ ଆରମ୍ଭ କରାଗଲା ।

ସନ୍ନ୍ୟାସ ପ୍ରଧାନତଃ ଦୁଇ ପ୍ରକାର, ଗୁଣାତୀତ ଓ ସଗୁଣ । ଗୁଣାତୀତ ସନ୍ନ୍ୟାସ ପୁଣି ଦୁଇପ୍ରକାର । ଯଥା;—ବିଦ୍ୱତ୍ ସନ୍ନ୍ୟାସ ଓ ବିବିଦିଷା ସନ୍ନ୍ୟାସ । ତତ୍ତ୍ୱଜ୍ଞାନ ଜନ୍ମିଲା ଉତ୍ତାରୁ ଅର୍ଥାତ୍ ଆତ୍ମସାକ୍ଷାତ୍କାର ପରେ ସର୍ବକର୍ମ ପରିତ୍ୟାଗରୂପ ଯେଉଁ ସନ୍ନ୍ୟାସ, ତାକୁ ବିଦ୍ୱତ୍ ସନ୍ନ୍ୟାସ ବୋଲାଯାଏ, ଉକ୍ତ ପ୍ରକାର ସନ୍ନ୍ୟାସର ବିଶେଷ ବିବରଣ, ଏହି ଗୀତାର ଚତୁର୍ଦ୍ଦଶ ଅଧ୍ୟାୟରେ ଲୁହା ଯାଇଅଛି । ଆତ୍ମସାକ୍ଷାତ୍କାର ପୂର୍ବରୁ ଜ୍ଞାନାଭିଳାଷୀ ବ୍ୟକ୍ତି ବେଦାନ୍ତ ବାକ୍ୟାଦିର ବିଗ୍ରହ ନିମିତ୍ତ, କର୍ମର ଫଳ ପରିତ୍ୟାଗରୂପ, ଯେଉଁ ସନ୍ନ୍ୟାସ ଗ୍ରହଣ କରନ୍ତି, ତାହାଙ୍କୁ 'ବିବିଦିଷା' ସନ୍ନ୍ୟାସ ବୋଲାଯାଏ । "ତ୍ରୈଗୁଣ୍ୟବିଷୟା ବେଦା ନିସ୍ତ୍ରୈଗୁଣ୍ୟୋଭବାର୍ଜ୍ଜୁନ" ଇତ୍ୟାଦି ବଚନଦ୍ୱାରା ଦ୍ୱିତୀୟ ଅଧ୍ୟାୟରେ ଉକ୍ତ ପ୍ରକାର ସନ୍ନ୍ୟାସ କଥିତ ହୋଇଅଛି ।

ଉପରୋକ୍ତ ଦୁଇ (ବିଦ୍ୱତ୍ ଓ ବିବିଦିଷା) ସନ୍ନ୍ୟାସ, ଗୁଣାତୀତ ବୋଲି ତହିଁରେ ସାତ୍ତ୍ୱିକ, ରାଜସ ଓ ତାମସାଦି ଭେଦ ହୋଇ ନ ପାରେ । କେବଳ କର୍ମାଧିକାରୀ ପୁରୁଷ, ଯାହାର ଆତ୍ମସାକ୍ଷାତ୍କାର ହୋଇ ନାହିଁ କି ମୋକ୍ଷାଭିଳାଷ ଜନ୍ମିନାହିଁ, ଅର୍ଥାତ୍ ଯେ, 'ଜ୍ଞାନୀ' ନୁହେ ବା 'ଜିଜ୍ଞାସୁ' ନୁହେ, ତାହାର କର୍ମସନ୍ନ୍ୟାସ ସଗୁଣ ଅର୍ଥାତ୍ ସାତ୍ତ୍ୱିକାଦି ଗୁଣଯୁକ୍ତ । ଏହି ପ୍ରକାର ସନ୍ନ୍ୟାସର ବିଶେଷ ବିବରଣ ଜାଣିବାପାଇଁ ଅର୍ଜ୍ଜୁନ ଶ୍ରୀ ଭଗବାନଙ୍କ ନିକଟରେ ପ୍ରାର୍ଥନା କରି କହିଲେ, ହେ କେଶିନିସୂଦନ, ହେ ମହାବାହୋ, ହେ ହୃଷୀକେଶ ! ସନ୍ନ୍ୟାସ ଓ ତ୍ୟାଗ ଏ ଦୁହିଙ୍କର ପ୍ରକୃତ ତଥ୍ୟ ପୃଥକ୍‌ରୂପେ ଜାଣିବାକୁ ମୁଁ ଇଚ୍ଛା କରୁଅଛି, ମତେ କହିବା ହେଉନ୍ତୁ, ଅର୍ଥାତ୍ ସନ୍ନ୍ୟାସ ଓ ତ୍ୟାଗ ଏହାର ସାତ୍ତ୍ୱିକ, ରାଜସ ଓ ତାମସାଦି ଭେଦ ଏବଂ ଯେ ଦୁଇର ପାର୍ଥକ୍ୟ ମତେ ବିଶଦରୂପେ ବୁଝାଇ ଦେବା ହେଉନ୍ତୁ ।

Digitized by PPRACHIN, SOA

ଏ ଶ୍ଳୋକରେ କେଶିନିସୂଦନ ଓ ମହାବାହୋ ଏ ଦୁଇ ସମ୍ବୋଧନଦ୍ୱାରା ଶ୍ରୀଭଗବାନଙ୍କର ବାହ୍ୟ ଉପଦ୍ରବ ନିବୃତ୍ତି ବିଷୟରେ ଏବଂ ହୃଷୀକେଶ ଏ ସମ୍ବୋଧନଦ୍ୱାରା ଅନ୍ତରିନ୍ଦ୍ରିୟାଦିରୁ କାମ କ୍ରୋଧାଦି ରିପୁ ବିନାଶ ବିଷୟରେ ସାମର୍ଥ୍ୟ ସୂଚିତ ହେଉଅଛି ଏବଂ ଏ ଶ୍ଳୋକରେ ତିନିଟି ସମ୍ବୋଧନ ପଦ ବ୍ୟବହାର କରିବାଦ୍ୱାରା—ଅର୍ଜୁନଙ୍କର ଭଗବାନଙ୍କ ପ୍ରତି ପ୍ରୀତିର ବାହୁଲ୍ୟ ଓ ଅନ୍ତଃକରଣରେ ଅତିଶୟ ଉତ୍କଣ୍ଠା ଥିବାର ପ୍ରକାଶିତ ହେଉଅଛି । ୧ ।

ଶ୍ଳୋକଃ ।

ଶ୍ରୀଭଗବାନୁବାଚ ।—କାମ୍ୟାନାଂ କର୍ମଣାଂ ନ୍ୟାସଂ, ସନ୍ନ୍ୟାସଂ କବୟୋ ବିଦୁଃ ।
ସର୍ବକର୍ମଫଳତ୍ୟାଗଂ, ପ୍ରାହୁସ୍ତ୍ୟାଗଂ ବିଚକ୍ଷଣାଃ । ୨ ।

ଅନ୍ୱୟଃ ।

ଶ୍ରୀଭଗବାନ୍ ଉବାଚ । ବିଚକ୍ଷଣାଃ କବୟଃ କାମ୍ୟାନାଂ କର୍ମଣାଂ ନ୍ୟାସଂ ସନ୍ନ୍ୟାସଂ ବିଦୁଃ ସର୍ବକର୍ମଫଳତ୍ୟାଗଂ ତ୍ୟାଗଂ ପ୍ରାହୁଃ । ୨ ।

ଟୀକା ।

ଅତ୍ରୋତ୍ତରଂ ଶ୍ରୀଭଗବାନୁବାଚ । କାମ୍ୟାନାମିତି । କାମ୍ୟାନାଂ ପୁତ୍ରକାମୋଯଜେତ, ସ୍ୱର୍ଗକାମୋଯଜେତେତ୍ୟାଦି କାମୋପବନ୍ଧେନ ବିହିତାନାଂ କର୍ମଣାଂ ନ୍ୟାସ ପରିତ୍ୟାଗଂ ସନ୍ନ୍ୟାସ କବୟୋ ବିଦୁଃ । ସମ୍ୟକ୍ ଫଳୈଃ ସହ ସର୍ବକର୍ମଣାମପି ନ୍ୟାସ ସନ୍ନ୍ୟାସ ପଣ୍ଡିତା ବିଦୁଃ ଜାନନ୍ତୀତ୍ୟର୍ଥଃ । ସର୍ବେଷାଂ କାମ୍ୟାନାଂ ନିତ୍ୟନୈମିତ୍ତିକାନାଂ ଚ କର୍ମଣାଂ ଫଳମାତ୍ରତ୍ୟାଗଂ ପ୍ରାହୁଃ ତ୍ୟାଗଂ ବିଚକ୍ଷଣାଃ ନିପୁଣାଃ ନ ତୁ ସ୍ୱରୂପତଃ କର୍ମତ୍ୟାଗଂ, ନନୁ ନିତ୍ୟନୈମିତ୍ତିକାନାଂ ଫଲାଶ୍ରବଣାଦବିଦ୍ୟମାନସ୍ୟ ଫଳସ୍ୟ କଥଂ ତ୍ୟାଗଃ ସ୍ୟାତ୍ ନହି ବନ୍ଧ୍ୟାୟାଃ ପୁତ୍ରତ୍ୟାଗଃ ସମ୍ଭବତି, ଉଚ୍ୟତେ; ଯଦ୍ୟପି ସ୍ୱର୍ଗକାମଃ ପଶୁକାମ ଇତ୍ୟାଦିବତ୍ ଅହରହଃ ସନ୍ଧ୍ୟାମୁପାସୀତ ଯାବଜ୍ଜୀବମଗ୍ନିହୋତ୍ରଂ ଜୁହୋତୀତ୍ୟାଦିଷୁ ଫଳବିଶେଷୋ ନ ଶ୍ରୂୟତେ ତଥାପ୍ୟପୂର୍ବାର୍ଥେ ବ୍ୟାପାରେ ପ୍ରେକ୍ଷାବନ୍ତଂ ପ୍ରବର୍ତ୍ତୟିତୁମଶକ୍ନୁବନ୍ ବିଧିର୍ବିଶ୍ୱଜିତା ଯଜେତେତ୍ୟାଦିଷ୍ୱିବ ସାମାନ୍ୟତଃ କିମପି ଫଳମାକ୍ଷିପତ୍ୟେବ ନ ଚୈବ ଗୁରୁମତଶ୍ରଦ୍ଧୟା ସ୍ୱସିଦ୍ଧିରେବାସ୍ୟ ପ୍ରୟୋଜନମିତି ମନ୍ତବ୍ୟଂ, ପୁରୁଷପ୍ରବୃତ୍ତ୍ୟନୁପପତ୍ତେର୍ଦୁଷ୍ପରିହରତ୍ୱାତ୍ ଶ୍ରୂୟତେ ଚ ନିତ୍ୟାଦାବପି ଫଳଂ, ସର୍ବ ଏତେ ପୁଣ୍ୟଲୋକା ଭବନ୍ତୀତି, କର୍ମଣା ପିତୃଲୋକ ଇତି, ଧର୍ମେଣ ପାପମପନୁଦତୀତ୍ୟେବମାଦିଷୁ ତସ୍ମାଦ୍ଯୁକ୍ତମୁକ୍ତଂ ସର୍ବକର୍ମଫଳତ୍ୟାଗଂ ପ୍ରାହୁସ୍ତ୍ୟାଗଂ ବିଚକ୍ଷଣା ଇତି । ନନୁ ଫଳତ୍ୟାଗେନ ପୁନରପି ନିଷ୍ଫଲେଷୁ କର୍ମସୁପ୍ରବୃତ୍ତିରେବ ସ୍ୟାତ୍ତନ୍ନ । ସର୍ବେଷାମପି କର୍ମଣାଂ ସଂଯୋଗପୃଥକ୍ତ୍ୱେନ ବିବିଦିଷାର୍ଥତୟା ବିନିୟୋଗାତ୍ । ତଥାଚ ଶ୍ରୁତିଃ । ତମେତମାତ୍ମାନଂ ବେଦାନୁବଚନେନ ବ୍ରାହ୍ମଣା ବିବିଦିଷନ୍ତି ଯଜ୍ଞେନ ଦାନେନ ତପସାନାଶକେନେତି । ଅତଶ୍ଚ ଶ୍ରୁତପଦୋକ୍ତଂ ସର୍ବଂ ଫଳବନ୍ଧକତ୍ୱେନ ତ୍ୟକ୍ତ୍ୱା ବିବିଦିଷାର୍ଥଂ ସର୍ବକର୍ମାନୁଷ୍ଠାନଂ ତେଷୁ ତ ଏବ ବିବିଦିଷା ଚ ନିତ୍ୟାନିତ୍ୟବସ୍ତୁବିବେକେନ ନିବୃତ୍ତଦେହାଦ୍ୟଭିମାନସ୍ୟ ବୁଦ୍ଧେଃ ପ୍ରତ୍ୟକ୍ ପ୍ରବଣତା ତାବତ୍ପର୍ଯ୍ୟନ୍ତଂ ଚ ସତ୍ତ୍ୱଶୁଦ୍ଧ୍ୟର୍ଥଂ ଜ୍ଞାନାବଲମ୍ବନଂ ଯଥୋଚିତମାବଶ୍ୟକଂ କର୍ମ କୁର୍ବତସ୍ତତ୍ଫଳତ୍ୟାଗ ଏବ କର୍ମତ୍ୟାଗୋ ନାମ ନ ସ୍ୱରୂପେଣ, ତଥାଚ ଶ୍ରୁତିଃ, କୁର୍ବନ୍ନେବେହ କର୍ମାଣି ଜିଜୀବିଷେଚ୍ଛତଂ ସମା ଇତି, ତତଃ ପରନ୍ତୁ ସର୍ବକର୍ମନିବୃତ୍ତିଃ ସ୍ୱତ ଏବ ଭବେତ୍, ତଦୁକ୍ତଂ ନୈଷ୍କର୍ମ୍ୟସିଦ୍ଧୌ ପ୍ରତ୍ୟକ୍ ପ୍ରବଣତାଂ ବୁଦ୍ଧେଃ କର୍ମାଣ୍ୟୁତ୍ପାଦ୍ୟ ଶୁଦ୍ଧିତଃ । କୃତାର୍ଥାନ୍ୟସ୍ତମାୟାନ୍ତି ପ୍ରାବୃଡନ୍ତେ ଘନା ଇବେତି" । ଉକ୍ତଞ୍ଚ ଭଗବତା ଯସ୍ତ୍ୱାତ୍ମରତିରେବ ସ୍ୟାଦାତ୍ମତୃପ୍ତଶ୍ଚ ମାନବଃ । ଆତ୍ମନ୍ୟେବ ଚ ସନ୍ତୁଷ୍ଟସ୍ତସ୍ୟ କାର୍ଯ୍ୟଂ ନ ବିଦ୍ୟତ ଇତି । ବଶିଷ୍ଠେନ ଚୋକ୍ତଂ । ନ କର୍ମାଣି ତ୍ୟଜେଦ୍ୟୋଗୀ କର୍ମଭିସ୍ତ୍ୟଜ୍ୟତେ ହ୍ୟସୌ । କର୍ମଣୋ ମୂଳଭୂତସ୍ୟ ସଙ୍କଳ୍ପସ୍ୟୈବ ନାଶତ ଇତି । ଜ୍ଞାନନିଷ୍ଠା ବିକ୍ଷେପକତ୍ୱମାଲକ୍ଷ୍ୟ ତ୍ୟଜେଦ୍ବା । ତଦୁକ୍ତଂ ଶ୍ରୀଭାଗବତେ. ତାବତ୍ କର୍ମାଣି କୁର୍ବୀତ ନ ନିର୍ବିଦ୍ୟେତ ଯାବତା । ମତ୍କଥାଶ୍ରବଣାଦୌ ବା ଶ୍ରଦ୍ଧା ଯାବନ୍ନ ଜାୟତେ । ଜ୍ଞାନନିଷ୍ଠୋ ବିରକ୍ତୋ ବା ମଦ୍ଭକ୍ତୋ ବାନପେକ୍ଷକଃ । ସଲିଙ୍ଗାନାଶ୍ରମାଂସ୍ତ୍ୟକ୍ତ୍ୱା ଚରେଦବିଧିଗୋଚର ଇତ୍ୟାଦି । ଅଲମତିପ୍ରସଙ୍ଗେନ ପ୍ରକୃତମନୁସରାମଃ । ଅତଏବଃ ଫଳତ୍ୟାଗମାତ୍ରମେବ ତ୍ୟାଗଶବ୍ଦାର୍ଥୋ ନ କର୍ମତ୍ୟାଗ ଇତି । ୨ ।

ପଦବ୍ୟାଖ୍ୟା ।

ଶ୍ରୀଭଗବାନୁବାଚ—ଶ୍ରୀଭଗବାନ୍ କହିଲେ, କାମ୍ୟାନାଂ କର୍ମଣାଂ—ସକାମକର୍ମମାନଙ୍କର, ନ୍ୟାସ—ତ୍ୟାଗକୁ, ସନ୍ନ୍ୟାସ—ସନ୍ନ୍ୟାସ ବୋଲି, କବୟଃ—ପଣ୍ଡିତମାନେ, ବିଦୁଃ—ଜାଣନ୍ତି, ସର୍ବକର୍ମଫଳତ୍ୟାଗଂ—ସର୍ବପ୍ରକାର କର୍ମର ଫଳ ପରିତ୍ୟାଗକୁ, ପ୍ରାହୁଃ—କହନ୍ତି, ତ୍ୟାଗଂ—ତ୍ୟାଗ ବୋଲି, ବିଚକ୍ଷଣାଃ—ବିଜ୍ଞମାନେ । ୨ ।

ଅନୁବାଦ ।

ଶ୍ରୀଭଗବାନ୍ କହିଲେ, ବିଚକ୍ଷଣ ପଣ୍ଡିତମାନେ, କାମ୍ୟକର୍ମ ପରିତ୍ୟାଗକୁ 'ସନ୍ନ୍ୟାସ' ବୋଲି ଜାଣନ୍ତି ଓ ସର୍ବକର୍ମର ଫଳ ପରିତ୍ୟାଗକୁ 'ତ୍ୟାଗ' ବୋଲି କହନ୍ତି । ୨ ।

ବିଶଦବ୍ୟାଖ୍ୟା ।

"ସ୍ୱର୍ଗକାମୋଯଜେତ," "ପୁତ୍ରକାମୋଯଜେତ," "ପଶୁକାମୋଯଜେତ," ଇତ୍ୟାଦି ବେଦୋକ୍ତ ଇତ୍ୟ ପ୍ରକାର ବାକ୍ୟରେ ସ୍ୱର୍ଗ, ପୁତ୍ର ଓ ପଶୁ ପ୍ରଭୃତି ଲାଭ କରିବାପାଇଁ ଜ୍ୟୋତିଷ୍ଟୋମ ଓ ପୁତ୍ରେଷ୍ଟି ଆଦି ନାନା ପ୍ରକାର ଯଜ୍ଞାଦି କର୍ମ କରିବାର ବିଧି ଅଛି । ଉକ୍ତ ପ୍ରକାର କର୍ମକୁ କାମ୍ୟକର୍ମ ବୋଲିଯାଏ । ତାହାଦ୍ୱାରା ଯଜମାନର ଚିତ୍ତଶୁଦ୍ଧି ହୁଏ ନାହିଁ, ବରଂ ସଂସାରବନ୍ଧନ, ଦୃଢ଼ ଅପେକ୍ଷା ଦୃଢ଼ତର ହୁଏ ।·ଚିତ୍ତଶୁଦ୍ଧି ନ ହେଲେ, ତତ୍ତ୍ୱଜ୍ଞାନ, କିମ୍ବା ତତ୍ତ୍ୱଜ୍ଞାନରେ ଅଭିଳାଷ ଜାତ ହୁଏ ନାହିଁ । ସେଥିପାଇଁ ଚିତ୍ତଶୁଦ୍ଧିର ଅଭିଳାଷିମାନେ କାମ୍ୟକର୍ମ ପରିତ୍ୟାଗ କରନ୍ତି ଓ ସେହି ପରିତ୍ୟାଗକୁ ସୂକ୍ଷ୍ମଦର୍ଶୀ ପଣ୍ଡିତମାନେ 'ସନ୍ନ୍ୟାସ' ବୋଲି ଜାଣନ୍ତି ।

"ଏଥିରେ ଆପତ୍ତି ହୋଇପାରେ, ଯେ ତମେତଂ ବେଦାନୁବଚନେନ ବ୍ରାହ୍ମଣା ବିବିଦିଷନ୍ତି ଯଜ୍ଞେନ ଦାନେନ ତପସାନାଶକେନ" ଅର୍ଥାତ୍ ବ୍ରାହ୍ମଣମାନେ ବେଦବାକ୍ୟ ଯଜ୍ଞ ଓ ଦାନ ଏବଂ ତପସ୍ୟା ଓ ଅହିଂସାଦ୍ୱାରା ତତ୍ତ୍ୱଜ୍ଞାନ ଲାଭ କରିବାକୁ ଯତ୍ନ କରନ୍ତି ଇତ୍ୟାଦି ବଚନରେ 'ଯଜ୍ଞ' ଶବ୍ଦର ଉଲ୍ଲେଖ ଅଛି । ତେବେ ଜ୍ୟୋତିଷ୍ଟୋମାଦି ଯଜ୍ଞ, ଯେ ଜ୍ଞାନ ବା ଜ୍ଞାନାଭିଳାଷର ଉପଯୋଗୀ ନୁହେଁ, ତାହା କିପରି ସତ୍ୟ ହେବ ? ଏହାର ଉତ୍ତରରେ ଏହି କଥା ବୋଲିଯାଇପାରେ, ଯେ ଉପରୋକ୍ତ ଶ୍ରୁତି ବଚନରେ ଥିବା 'ବେଦାନୁବଚନ' ଶବ୍ଦଦ୍ୱାରା ବ୍ରହ୍ମଚର୍ଯ୍ୟଙ୍କ ଆଶ୍ରମ ବିହିତ ସମସ୍ତ ନିତ୍ୟକର୍ମପ୍ରତି ଲକ୍ଷ୍ୟ କରା ହୋଇଅଛି । ସେହିପରି 'ଯଜ୍ଞ ଓ ଦାନ' ଏହି ଦୁଇ ଶବ୍ଦଦ୍ୱାରା ଗୃହସ୍ଥର ସମସ୍ତ ନିତ୍ୟକର୍ମ ପ୍ରତି ଏବଂ 'ତପଃ ଓ ଅନାଶକ' (ଅର୍ଥାତ୍ ଅହିଂସା) ଏ ଦୁଇ ଶବ୍ଦଦ୍ୱାରା ବାନପ୍ରସ୍ଥର ସର୍ବ ନିତ୍ୟକର୍ମପ୍ରତି ଲକ୍ଷ୍ୟ କରା ହୋଇଅଛି । ପୁଣି "ଜ୍ଞାନମୁତ୍ପଦ୍ୟତେ ପୁଂସାଂ କ୍ଷୟାତ୍ ପାପସ୍ୟ କର୍ମଣଃ" ଅର୍ଥାତ୍ ପାପକର୍ମର କ୍ଷୟ ହେଲେ, ପୁରୁଷର ତତ୍ତ୍ୱଜ୍ଞାନ ଉତ୍ପନ୍ନ ହୁଏ, ଇତ୍ୟାଦି ବଚନରେ ନିତ୍ୟକର୍ମାନୁଷ୍ଠାନଦ୍ୱାରା ଜ୍ଞାନର ପ୍ରତିବନ୍ଧକସ୍ୱରୂପ 'ପାପ'ର ନିବୃତ୍ତି ହେଲେ, ତତ୍ତ୍ୱଜ୍ଞାନ ଲାଭ ହୁଏ ବୋଲି ଲେଖା ଅଛି ।

ଫଳକଥା ଏହି କି ଚିତ୍ତଶୁଦ୍ଧିପାଇଁ କେବଳ ଶାସ୍ତ୍ରମୋଦିତ ନିତ୍ୟକର୍ମ ପ୍ରୟୋଜନୀୟ ଅଟେ । କାମ୍ୟକର୍ମର କିଛି ମାତ୍ର ଉପଯୋଗିତା ନାହିଁ । ଅତଏବ ଚିତ୍ତଶୁଦ୍ଧିଦ୍ୱାରା ଆତ୍ମଜ୍ଞାନାଭିଳାଷ ଓ ତଦ୍ଦ୍ୱାରା ମୋକ୍ଷାଭିଳାଷ କରୁଥିବା ବ୍ୟକ୍ତି ନିତ୍ୟକର୍ମର ଅନୁଷ୍ଠାନ କରିବେ ଓ କାମ୍ୟକର୍ମ ପରିତ୍ୟାଗ କରିବେ, ଏହିରୂପ କଲେ, ତାକୁ (ସଗୁଣ) 'ସନ୍ନ୍ୟାସ' ବୋଲିଯାଏ ।

Digitized by PPRACHIN, SOA

ସର୍ବପ୍ରକାର କର୍ମ, ଅର୍ଥାତ୍ ନିତ୍ୟ, ନୈମିତ୍ତିକ ଓ କାମ୍ୟ ଆଦି ଯେତେ ପ୍ରକାର କର୍ମ ଅଛି, ସେ ସମସ୍ତ ବିଧିପୂର୍ବକ ଅନୁଷ୍ଠାନ କରି, ତାହାର ଫଳ ପରିତ୍ୟାଗ କରିବାକୁ 'ତ୍ୟାଗ' ବୋଲାଯାଏ । ଚିତ୍ତଶୁଦ୍ଧିଦ୍ୱାରା ଜ୍ଞାନ ଲାଭ କରିବାକୁ ଓ ଜ୍ଞାନାଭିଳାଷୀ ହେବାକୁ ଇଚ୍ଛୁକ ବ୍ୟକ୍ତି ନିତ୍ୟ ଓ କାମ୍ୟ ପ୍ରଭୃତି ସମସ୍ତ କର୍ମର ଅନୁଷ୍ଠାନ କରନ୍ତି, ମାତ୍ର ସେହି ସେହି କର୍ମଜନିତ ଫଳରେ ତାହାଙ୍କର କାମନା ନ ଥାଏ । ଯେହେତୁ କୌଣସି କର୍ମ ଆପଣାଛାଏଁ ନିତ୍ୟ ବା କାମ୍ୟ ହୁଏ ନାହିଁ । ଅନୁଷ୍ଠାନକାରୀର ଇଚ୍ଛା ଅନୁସାରେ ତାହା ନିତ୍ୟ ବା କାମ୍ୟ ହୁଏ । ଅର୍ଥାତ୍ ସ୍ୱର୍ଗାଦି କାମନାରେ ଅଗ୍ନିହୋତ୍ର ପ୍ରଭୃତି କର୍ମ କଲେ, ତାହା 'କାମ୍ୟ' କର୍ମ ହେବ ଓ ସ୍ୱର୍ଗାଦି ଫଳଇଚ୍ଛା ପରିତ୍ୟାଗ କରି ଉକ୍ତ କର୍ମ କଲେ, ତାହା ନିତ୍ୟକର୍ମ ନାମରେ ପରିଚିତ ହେବ । ପ୍ରଥମରେ ବୁଝାଇ ଦିଆ ଯାଇଅଛି, ଯେ ଜ୍ଞାନ ବା ଜ୍ଞାନାଭିଳାଷନିମିତ୍ତ ନିତ୍ୟକର୍ମ ଉପଯୋଗି ଅଟେ, କାମ୍ୟକର୍ମ ଉପଯୋଗି ନୁହେ ଓ କାମ୍ୟକର୍ମ ପରିତ୍ୟାଗକୁ ସନ୍ନ୍ୟାସ ବୋଲାଯାଏ । ବର୍ତ୍ତମାନ ବୁଝାଗଲା, ଯେ ଫଳଇଚ୍ଛା ରହିତ ହୋଇ କାମ୍ୟକର୍ମର ମଧ୍ୟ ଅନୁଷ୍ଠାନ କଲେ, ତାହା ନିତ୍ୟକର୍ମ ହେବ ଓ ନିତ୍ୟକର୍ମ ଜ୍ଞାନାଭିଳାଷିର ଉପଯୋଗି । ଅର୍ଥାତ୍ କେବଳ ନିତ୍ୟକର୍ମର ଅନୁଷ୍ଠାନ କରି କାମ୍ୟକର୍ମର ପରିତ୍ୟାଗକୁ ସନ୍ନ୍ୟାସ ବୋଲାଯାଏ ଓ ନିତ୍ୟ ଏବଂ କାମ୍ୟ ସମସ୍ତ କର୍ମ ଅନୁଷ୍ଠାନ କରି କେବଳ ଫଳଇଚ୍ଛା ପରିତ୍ୟାଗକୁ 'ତ୍ୟାଗ' ବୋଲାଯାଏ ।

ଫଳକଥା ଏହି କି ସନ୍ନ୍ୟାସିପକ୍ଷରେ କର୍ମାନୁଷ୍ଠାନର କ୍ଷେତ୍ର ସୀମାବଦ୍ଧ ଓ ତ୍ୟାଗି ପକ୍ଷରେ ତାହା ଅଧିକ ପ୍ରଶସ୍ତ ଅଟେ ।

ଏହା ଦ୍ୱାରା ସନ୍ନ୍ୟାସ ଓ ତ୍ୟାଗ ଏ ଦୁଇ ଶବ୍ଦ କାଷ୍ଠ ଓ ପାଷାଣ ଏ ଦୁଇ ଶବ୍ଦ ପରି ଭିନ୍ନ ଭିନ୍ନ ଜାତୀୟ ନ ଥାଇ ଏକ ଜାତୀୟ ଅଥଚ ସାନ ଓ ବଡ ଥିବାର ସ୍ପଷ୍ଟରୂପେ ପ୍ରମାଣିତ ହେଲା ।

ପ୍ରଥମ ଶ୍ଳୋକରେ ଅର୍ଜୁନଙ୍କର ଦୁଇଟି ପ୍ରଶ୍ନ ଥିଲା । ଯଥା;—(୧) ସନ୍ନ୍ୟାସ ଓ ତ୍ୟାଗ ଏ ଦୁଇର ସାତ୍ତ୍ୱିକାଦି ଭେଦ । (୨) ଉକ୍ତ ଦୁହିଙ୍କର ପରସ୍ପର ଭେଦ । ମାତ୍ର ପ୍ରଥମ ପ୍ରଶ୍ନର ଉତ୍ତର ଅର୍ଥାତ୍ ସନ୍ନ୍ୟାସ ଓ ତ୍ୟାଗ ଏ ଦୁଇର ସାତ୍ତ୍ୱିକାଦି ଭେଦ, ଅଳ୍ପ କଥାରେ କହି ହେବ ନାହିଁ ବୋଲି, ଭଗବାନ୍ ତାହାର ଉତ୍ତର ପଛକୁ ରଖି ସନ୍ନ୍ୟାସ ଓ ତ୍ୟାଗର ପ୍ରଭେଦ ଅଳ୍ପ କଥାରେ ଏ ଶ୍ଳୋକରେ ବୁଝାଇ ଦେଲେ । ଯେପରି ଜଣେ କମାରକୁ ଗୋଟିଏ ସୂଚି ଓ ଗୋଟାଏ କଟାହ (ହାଣ୍ଡି) ପ୍ରସ୍ତୁତ କରିବାକୁ କହିଲେ, ସେ ପ୍ରଥମରେ ବହୁ ପରିଶ୍ରମସାଧ୍ୟ 'ହାଣ୍ଡି' ପ୍ରସ୍ତୁତ ନ କରି ଅଳ୍ପ ଆୟାସସାଧ୍ୟ 'ସୂଚି' ପ୍ରସ୍ତୁତ କରେ । ଏହି ରୀତିକୁ 'ସୂଚିକଟାହ ନ୍ୟାୟ' ବୋଲାଯାଏ । ୨ ।

ଶ୍ଳୋକଃ ।

ତ୍ୟାଜ୍ୟଂ ଦୋଷବଦିତ୍ୟେକେ, କର୍ମ ପ୍ରାହୁର୍ମନୀଷିଣଃ ।
ଯଜ୍ଞଦାନତପଃକର୍ମ, ନ ତ୍ୟାଜ୍ୟମିତି ଚାପରେ । ୩ ।

Digitized by PPRACHIN, SOA

## ଅନ୍ୱୟଃ ।

ଏକେ ମନୀଷିଣଃ ଦୋଷବତ୍ କର୍ମ ତ୍ୟାଜ୍ୟଂ ଇତି, ଅପରେ ଚ ଯଜ୍ଞ-ଦାନ-ତପଃ-କର୍ମ ନ ତ୍ୟାଜ୍ୟଂ ଇତି ପ୍ରାହୁଃ । ୩ ।

## ଟୀକା ।

ଏତଦେବ ମତାନ୍ତରନିରସେନ ଦୃଢ଼ୀକର୍ତ୍ତୁଂ ମତଭେଦଂ ଦର୍ଶୟତି । ତ୍ୟାଜ୍ୟମିତି । ଦୋଷବଦ୍ଧିଂସାଦିଦୋଷବତ୍ତ୍ୱେନ ବନ୍ଧକମିତିହେତୋଃ ସର୍ବମପି କର୍ମ ତ୍ୟାଜ୍ୟମିତ୍ୟେକେ ସାଂଖ୍ୟାଃ ପ୍ରାହୁଃ, ମନୀଷିଣ ଇତ୍ୟସ୍ୟାୟଂ ଭାବଃ, ମାହିଂସ୍ୟାତ୍ ସର୍ବଭୂତାନୀତି ନିଷେଧଃ । ପୁରୁଷସ୍ୟାନର୍ଥହେତୁର୍ହିଂସେତ୍ୟାହ, ଅଗ୍ନିଷୋମୀୟଂ ପଶୁମାଲଭେତେତ୍ୟାଦି-ପ୍ରାକରଣିକୋବିଧିସ୍ତୁ ହିଂସାୟାଃ କ୍ରତୂପକାରକତ୍ୱମାହ । ଅତୋଭିନ୍ନବିଷୟତ୍ୱେନ ସାମାନ୍ୟବିଶେଷନ୍ୟାୟା ଗୋଚରତ୍ୱାତ୍ ଦ୍ୱାଭ୍ୟାଧ୍ୟେତୁ ସର୍ବେଷ୍ୱପି କର୍ମସୁ ହିଂସାଦେଃ ସମ୍ଭବାତ୍ ସର୍ବମପି କର୍ମ ତ୍ୟାଜ୍ୟମେବେତି, ଉକ୍ତଂ ଦୃଷ୍ଟବଦାନୁଶ୍ରବିକଃ ସହ୍ୟବିଶୁଦ୍ଧିକ୍ଷୟାତିଶୟଯୁକ୍ତଃ ଅସ୍ୟାର୍ଥଃ ଉପାୟୋଜ୍ୟୋତିଷ୍ଟୋମାଦିଃ ସୋଽପି ଦୃଷ୍ଟୋପାୟବତ୍ ଗୁରୁପାଠାର୍ଦ୍ଦନଶ୍ରୂୟତ ଇତ୍ୟାନୁଶ୍ରବୋବେଦସ୍ତତ୍ପ୍ରୋକ୍ତଃ ତତ୍ର ବିଶୁଦ୍ଧିର୍ହିଂସା ତୟା କ୍ଷୟୋବିନାଶଃ ଅଗ୍ନିହୋତ୍ରଜ୍ୟୋତିଷ୍ଟୋମାଦିଜନ୍ୟସ୍ୱର୍ଗେଷୁ ତାରତମ୍ୟଂ ଚ ବର୍ତ୍ତତେ ପରୋତ୍କର୍ଷସ୍ତୁ ସର୍ବାନ୍ ଦୁଃଖୀକରୋତି । ଅପରେ ତୁ ମୀମାଂସକାଃ ଯଜ୍ଞାଦିକଂ କର୍ମ ନ ତ୍ୟାଜ୍ୟମିତି ପ୍ରାହୁଃ, ଅୟଂ ଭାବଃ କ୍ରତ୍ୱର୍ଥାପି ସତୀଯଂ ହିଂସା ପୁରୁଷେଣୈବ କର୍ତ୍ତବ୍ୟା, ସାଚ ନ୍ୟୋଦ୍ଦେଶେନାପି କୃତା ପୁରୁଷସ୍ୟ ପ୍ରତ୍ୟବାୟହେତୁରେବ, ତଥାହି ବିଧିବିଷୟସ୍ୟ ଉଦ୍ଦେଶେନାନୁଷ୍ଠାନଂ ବିଧେଃ ତାଦର୍ଥ୍ୟଲକ୍ଷଣତ୍ୱାତ୍ ଉଦ୍ଦେଶସ୍ୟ, ନ ତ୍ୱେବଂ ନିଷେଧୋ ନିଷେଧସ୍ୟ ତାଦର୍ଥ୍ୟମପେକ୍ଷତେ ପ୍ରାପ୍ତିମାତ୍ରା ପେକ୍ଷିତତ୍ୱାତ୍, ଅନ୍ୟଥା ଅଜ୍ଞାନପ୍ରମାଦାଦିକୃତେ ଦୋଷାଭାବପ୍ରସଙ୍ଗାତ୍ ତଦେବସମାନବିଷୟତ୍ୱେନ ସାମାନ୍ୟଶାସ୍ତ୍ରସ୍ୟ ବିଶେଷଣବାଧାଭାବାତ୍ତି ଦୋଷବତ୍ତ୍ୱଂ ଅତୋନିତ୍ୟଂ ଯଜ୍ଞାଦିକର୍ମ ନ ତ୍ୟାଜ୍ୟମିତି । ୩ ।

## ପଦବ୍ୟାଖ୍ୟା ।

ତ୍ୟାଜ୍ୟଂ—ତ୍ୟାଗଯୋଗ୍ୟ, ଦୋଷବତ୍—ପାପପରି ବା ଦୋଷଯୁକ୍ତ, ଇତି—ଏହା, ଏକେ—କେହି (ସାଂଖ୍ୟବାଦମାନେ), କର୍ମ—କ୍ରିୟା, ପ୍ରାହୁଃ—କହନ୍ତି, ମନୀଷିଣଃ—ମନସ୍ୱୀ—ପଣ୍ଡିତମାନେ, ଯଜ୍ଞ-ଦାନ-ତପଃ-କର୍ମ—ଯଜ୍ଞ, ଦାନ ଓ ତପସ୍ୟାଦି କର୍ମ, ନ ତ୍ୟାଜ୍ୟଂ ଇତି—ତ୍ୟାଗ ଯୋଗ୍ୟ ନୁହେ ବୋଲି, ଚ ଅପରେ—ପୁଣି ଅନ୍ୟମାନେ । ୩ ।

## ଅନୁବାଦ ।

କେହି କେହି ବୁଦ୍ଧିମାନ୍ ବ୍ୟକ୍ତି କର୍ମକୁ ଦୋଷପରି ତ୍ୟାଗଯୋଗ୍ୟ ବୋଲି କହନ୍ତି ଓ କେହି କେହି ଯଜ୍ଞ, ଦାନ ଓ ତପସ୍ୟାଦି କର୍ମ, ପରିତ୍ୟାଗର ଯୋଗ୍ୟ ନୁହେ ବୋଲି କହନ୍ତି । ୩ ।

## ବିଶଦବ୍ୟାଖ୍ୟା ।

କେହି କେହି ସୂକ୍ଷ୍ମଦର୍ଶୀ (ସାଂଖ୍ୟବାଦୀ) ପଣ୍ଡିତ କହନ୍ତି, ଯଜ୍ଞଦାନାଦି କର୍ମ ସବୁ 'ଦୋଷବତ୍' ଅର୍ଥାତ୍ ପଶୁ ହିଂସାଦି ନାନା ପ୍ରକାର ଦୋଷଯୁକ୍ତ, ଅତଏବ, ତାହା ସର୍ବଥା ପରିତ୍ୟାଗର ଯୋଗ୍ୟ । ଅଥବା, କାମକ୍ରୋଧାଦି ଦୋଷ, ଯେପରି ତ୍ୟାଗଯୋଗ୍ୟ ଅଟେ, ଯଜ୍ଞ ଦାନାଦି କର୍ମ ସେହିପରି ତ୍ୟାଗର ଯୋଗ୍ୟ ଅଟେ । ଅର୍ଥାତ୍ ଯେଉଁମାନେ ଜ୍ଞାନୀ ନୁହନ୍ତି କି ଯେଉଁମାନଙ୍କର ଜ୍ଞାନାଭିଳାଷ ଜନ୍ମି ନାହିଁ, ସେମାନେ ଜ୍ଞାନାଭିଳାଷ ଓ ଜ୍ଞାନ ପାଇଁ ସଂସାରବନ୍ଧନର ହେତୁସ୍ୱରୂପ ଯଜ୍ଞାଦି କର୍ମମାନଙ୍କୁ କାମ କ୍ରୋଧାଦି ଦୋଷଗୁଡ଼ିକ ପରିତ୍ୟାଗ କରିବେ ।

ଅପର (ମୀମାଂସକ) ପଣ୍ଡିତମାନେ କହନ୍ତି, କି ଯେତେଦିନ ଯାଏ ଅନ୍ତଃକରଣ ବିଶୁଦ୍ଧି ହୋଇ ନାହିଁ, ସେତେଦିନ ଯାଏ ଯଜ୍ଞ, ଦାନ ଓ ତପସ୍ୟାରୂପ କର୍ମ ପରିତ୍ୟାଗର ଯୋଗ୍ୟ ନୁହେ, ଅର୍ଥାତ୍ କର୍ମାଧିକାରପୁରୁଷଙ୍କର ଅନ୍ତଃକରଣ ଶୁଦ୍ଧି ପାଇଁ ଯଜ୍ଞ, ଦାନ ଓ ତପସ୍ୟାଦି କର୍ମ ଅବଶ୍ୟ କର୍ତ୍ତବ୍ୟ ଅଟେ ।

Digitized by PPRACHIN, SOA

ଏହିପରି କର୍ମ ଅନୁଷ୍ଠାନ ବିଷୟରେ ମତଭେଦ ବର୍ଣ୍ଣନ କରି ଶ୍ରୀଭଗବାନ୍ ଆପଣାର ମତ ପରଶ୍ଳୋକରେ କହୁଅଛନ୍ତି । ୩ ।

### ଶ୍ଳୋକଃ ।

ନିଶ୍ଚୟଂ ଶୃଣୁ ମେ ତତ୍ର, ତ୍ୟାଗେ ଭରତସତ୍ତମ ।
ତ୍ୟାଗୋ ହି ପୁରୁଷବ୍ୟାଘ୍ର, ତ୍ରିବିଧଃ ସଂପ୍ରକୀର୍ତ୍ତିତଃ । ୪ ।

### ଅନ୍ୱୟଃ ।

ହେ ଭରତସତ୍ତମ ! ତତ୍ର ତ୍ୟାଗେ ମେ ନିଶ୍ଚୟଂ ଶୃଣୁ । ହେ ପୁରୁଷବ୍ୟାଘ୍ର ! ହି ତ୍ୟାଗଃ ତ୍ରିବିଧଃ ସଂପ୍ରକୀର୍ତ୍ତିତଃ । ୪ ।

### ଟୀକା ।

ଏବଂ ମତଭେଦମୁପନ୍ୟସ୍ୟ ସ୍ୱମତଂ କଥୟିତୁମାହ, ନିଶ୍ଚୟମିତି । ତତ୍ରୈବଂ ବିପ୍ରତିପନ୍ନେ ତ୍ୟାଗେ ନିଶ୍ଚୟଂ ମେ ବଚନାଚ୍ଛୃଣୁ ତ୍ୟାଗସ୍ୟ ଲୋକପ୍ରସିଦ୍ଧତ୍ୱାନ୍ମନ୍ଦଂ ଶ୍ରୋତବ୍ୟମିତି ମା ବମଂସ୍ଥାଃ ଇତ୍ୟାହ । ହେ ପୁରୁଷବ୍ୟାଘ୍ର—ପୁରୁଷଶ୍ରେଷ୍ଠ ! ତ୍ୟାଗୋଽୟଂ ଦୁର୍ବୋଧଃ ହି ଯସ୍ମାଦୟଂ କର୍ମତ୍ୟାଗସ୍ତତ୍ତ୍ୱବିଦ୍ଭିସ୍ତାମସାଦି-ଭେଦେନ ତ୍ରିବିଧଃ ସମ୍ୟକ୍ ବିବେକେନ ପ୍ରକୀର୍ତ୍ତିତଃ ତ୍ରୈବିଧ୍ୟଂ ଚ, ନିୟତସ୍ୟ ତୁ ସନ୍ନ୍ୟାସଃ କର୍ମଣୋ ନୋପପଦ୍ୟତେ ଇତ୍ୟାଦିନା ବକ୍ଷ୍ୟତି । ୪ ।

### ପଦବ୍ୟାଖ୍ୟା ।

ନିଶ୍ଚୟଂ—ସିଦ୍ଧାନ୍ତକୁ, ଶୃଣୁ—ଶୁଣ, ମେ—ଆମ୍ଭର, ତତ୍ର ତ୍ୟାଗେ—ସେହି ତ୍ୟାଗ ବିଷୟରେ, ଭରତସତ୍ତମ—ହେ ଭରତକୁଳଶ୍ରେଷ୍ଠ !, ତ୍ୟାଗୋ ହି—ଯେହେତୁ ତ୍ୟାଗ, ପୁରୁଷବ୍ୟାଘ୍ର—ହେ ପୁରୁଷଶ୍ରେଷ୍ଠ !, ତ୍ରିବିଧଃ—ତିନି ପ୍ରକାର, ସଂପ୍ରକୀର୍ତ୍ତିତଃ—କଥିତ ଅଛି । ୪ ।

### ଅନୁବାଦ ।

ହେ ଭରତକୁଳଶ୍ରେଷ୍ଠ ଅର୍ଜ୍ଜୁନ ! ସେହି ତ୍ୟାଗ ବିଷୟରେ ଆମ୍ଭର ସିଦ୍ଧାନ୍ତ ଶୁଣ । କାହିଁକି ନା ହେ ପୁରୁଷଶ୍ରେଷ୍ଠ ! ତ୍ୟାଗ ତିନି ପ୍ରକାର ବୋଲି କଥିତ ଅଛି । ୪ ।

### ବିଶଦବ୍ୟାଖ୍ୟା ।

ଶ୍ରୀ ଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ପୂର୍ବଶ୍ଳୋକରେ କର୍ମତ୍ୟାଗ ବିଷୟରେ ମତଭେଦ କହିଅଛୁଁ, ବର୍ତ୍ତମାନ ତ୍ୟାଗ ବିଷୟରେ ଆମ୍ଭର ସିଦ୍ଧାନ୍ତ ଶ୍ରବଣ କର । ଏଥିରେ କାଳେ, ଅର୍ଜ୍ଜୁନଙ୍କର ଏପରି ଆଶଙ୍କା ହେବ, ଯେ 'ତ୍ୟାଗ' କଥାଟାତ ଲୋକରେ ପ୍ରସିଦ୍ଧ ଅଛି, ପୁଣି 'ସର୍ବକର୍ମର ଫଳ ପରିତ୍ୟାଗକୁ 'ତ୍ୟାଗ' ବୋଲାଯାଏ,' ଏହାତ ଆପଣ ନିଜେ ୨ୟ ଶ୍ଳୋକରେ ବୁଝାଇ ଦେଇଅଛନ୍ତି, ତେବେ ତ୍ୟାଗ ବିଷୟରେ ଆପଣଙ୍କ ସିଦ୍ଧାନ୍ତ ଶୁଣିଲେ, କଣ ଲାଭ ହେବ ? ଏଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ତ୍ୟାଗ କଥାଟି ଅତ୍ୟନ୍ତ ଦୁର୍ବୋଧ୍ୟ, ତାହା ବୁଝିବା ସହଜ ନୁହେ । କାହିଁକି ନା ତାହା ସାତ୍ତ୍ୱିକ, ରାଜସ ଓ ତାମସ ଭେଦରେ ତିନି ପ୍ରକାର ଅଟେ ।

କୌଣସି୨ ଟୀକାକାର କର୍ମତ୍ୟାଗ ଓ କର୍ମସନ୍ନ୍ୟାସ ଏ ଦୁଇ ଶବ୍ଦର ଲକ୍ଷ୍ୟାର୍ଥ କର୍ମ ପରିତ୍ୟାଗକୁ ନିମ୍ନଲିଖିତମତେ ତିନି ପ୍ରକାର ବୋଲି ଅର୍ଥ କରିଅଛନ୍ତି । ଯଥା,—'ଫଳ-

Digitized by PPRACHIN, SOA

କାମନାବିଶିଷ୍ଟ କର୍ମ ତ୍ୟାଗ' ଏ ବାକ୍ୟଟିରେ 'ଫଳକାମନା'—ବିଶେଷଣ, 'କର୍ମ'—ବିଶେଷ୍ୟ ଓ 'ତ୍ୟାଗ'—ଅଭାବ (ପ୍ରଧ୍ୱଂସାଭାବ), ସୁତରାଂ 'ଫଳକାମନା'—ବିଶେଷଣଦ୍ୱାରା ବିଶିଷ୍ଟ (ଯୁକ୍ତ), ଯେ 'କର୍ମ,' ତାହାର ତ୍ୟାଗରୂପ, ଯେ ଅଭାବ, ତାକୁ ବିଶିଷ୍ଟାଭାବ ବୋଲାଯାଏ । ଏହି ବିଶିଷ୍ଟାଭାବ (୧) ବିଶେଷଣ ଅଭାବରେ (୨) ବିଶେଷ୍ୟ ଅଭାବରେ ଓ (୩) ବିଶେଷ୍ୟ ବିଶେଷଣ ଉଭୟ ଅଭାବରେ ତିନି ପ୍ରକାର ହୁଏ । ୧ ବିଶେଷଣ ଅଭାବରେ ଯଥା ;—ଫଳ କାମନା (ବିଶେଷଣ) ପରିତ୍ୟାଗ କରି କର୍ମ (ବିଶେଷ୍ୟ)ର ଅନୁଷ୍ଠାନ କରିବା; ଅର୍ଥାତ୍ ନିଷ୍କାମ କର୍ମର ଅନୁଷ୍ଠାନ । ଏପ୍ରକାର ତ୍ୟାଗକୁ ସାତ୍ତ୍ୱିକ ବୋଲାଯାଏ । ଚିତ୍ତଶୁଦ୍ଧି ଅଭିଳାଷୀ କର୍ମୀ-ଧିକାରୀପୁରୁଷଙ୍କର ଏପ୍ରକାର ତ୍ୟାଗ ଅବଶ୍ୟ କର୍ତ୍ତବ୍ୟ ଅଟେ, ଅର୍ଥାତ୍ ସେ ଫଳକାମନା ପରିତ୍ୟାଗ କରି ନିଷ୍କାମ ଭାବରେ କର୍ମାନୁଷ୍ଠାନ କଲେ, ଶୁଦ୍ଧଚିତ୍ତ ହୋଇ ଜ୍ଞାନାଭିଳାଷୀ ହେବେ ଓ ତତ୍ପରେ ସାଧନାଦିଦ୍ୱାରା ଜ୍ଞାନୀ ହୋଇ ପାରିବେ ।

୨ୟ, ବିଶେଷ୍ୟ ଅଭାବରେ ଯଥା,—

ଫଳକାମନା (ବିଶେଷଣ) ଥାଇ କର୍ମ (ବିଶେଷ୍ୟ) ପରିତ୍ୟାଗ କରିବା । ଏପରି ତ୍ୟାଗ ରାଜସ ଓ ତାମସ ଭେଦରେ ଦୁଇ ପ୍ରକାର ହୁଏ । କର୍ମ ଅନୁଷ୍ଠାନକୁ କ୍ଲେଶକର ମନେ କରି ପରିତ୍ୟାଗ କରିବା 'ରାଜସ ତ୍ୟାଗ' ଓ ଭ୍ରମବଶତଃ କର୍ମ ପରିତ୍ୟାଗ କରିବା 'ତାମସ ତ୍ୟାଗ' ବୋଲି କଥିତ ହୁଏ । ଏହି ଦୁଇ ପ୍ରକାର ତ୍ୟାଗ ଅର୍ଥାତ୍ (୧) କର୍ମାନୁଷ୍ଠାନ କରି ଫଳକାମନା ତ୍ୟାଗ, ଓ (୨) ଫଳକାମନା ଥାଇ କ୍ଲେଶ ବୋଧ ବା ଭ୍ରମାଦି ହେତୁ କର୍ମ-ତ୍ୟାଗ, ସଗୁଣ ଏବଂ ଅର୍ଜ୍ଜୁନଙ୍କ ପ୍ରଶ୍ନର ବିଷୟ ଅଟେ ।

୩ୟ ବିଶେଷ୍ୟ ଓ ବିଶେଷଣ ଉଭୟ ଅଭାବରେ ଯଥା,—

ଫଳକାମନା (ବିଶେଷଣ) ତ୍ୟାଗ ଓ ତାହା ସଙ୍ଗେ୨ କର୍ମ (ବିଶେଷ୍ୟ) ଅନୁଷ୍ଠାନ ତ୍ୟାଗ କରିବା । ଏପ୍ରକାର ତ୍ୟାଗକୁ ଗୁଣାତୀତ ତ୍ୟାଗ ବା ଗୁଣାତୀତ ସନ୍ନ୍ୟାସ ବୋଲାଯାଏ, ଏହା ଅର୍ଜ୍ଜୁନଙ୍କର ପ୍ରଶ୍ନର ବିଷୟ ନୁହେ । ଏହି ଗୁଣାତୀତ ତ୍ୟାଗ ପୁଣି ଦୁଇ ପ୍ରକାର ହୁଏ । ଯଥା,—୧ ସାଧନରୂପ ତ୍ୟାଗ ଓ ୨ ଫଳରୂପ ତ୍ୟାଗ । କର୍ମାନୁଷ୍ଠାନ ସାଧନ କରୁଁ୨ ଚିତ୍ତ-ଶୁଦ୍ଧି ହୋଇ ଆତ୍ମଜ୍ଞାନ ଜନ୍ମିଲେ, ଯେଉଁ କର୍ମତ୍ୟାଗ ହୁଏ, ତାହା ସାଧନରୂପ ତ୍ୟାଗ ଓ ତାହାକୁ ଶାସ୍ତ୍ରକାରମାନେ 'ବିବିଦିଷାସନ୍ନ୍ୟାସ' ବୋଲି କହନ୍ତି । ଉକ୍ତ ସନ୍ନ୍ୟାସ, ଏହି ଗୀତାର ୨ୟ ଅଧ୍ୟାୟରେ, "ତ୍ରୈଗୁଣ୍ୟବିଷୟା ବେଦା" (୪୫ ଶ୍ଳୋ) ଇତ୍ୟାଦି ବଚନରେ ବ୍ୟାଖ୍ୟା କରି ହୋଇଅଛି ।

ପୂର୍ବ୨ ଜନ୍ମର ସାଧନସିଦ୍ଧି ବଳରେ ମନୁଷ୍ୟର ପ୍ରଥମ ବୟସରୁ କର୍ମଫଳରେ ଓ କର୍ମାନୁଷ୍ଠାନରେ, ଯେଉଁ ବିରକ୍ତି ଜନ୍ମେ, ତାହାକୁ ଫଳରୂପ ତ୍ୟାଗ ବୋଲାଯାଏ । ଏହି ତ୍ୟାଗକୁ ଶାସ୍ତ୍ରକାରମାନେ 'ବିଦ୍ୱତ୍‌ସନ୍ନ୍ୟାସ' ବୋଲି କହିଅଛନ୍ତି । ଏହା, ଏହି ଗୀତାର ୩ୟ ଅଧ୍ୟାୟରେ (୧୭ ଶ୍ଳୋକ) "ଯସ୍ତ୍ୱାତ୍ମରତିରେବ ସ୍ୟାତ୍" ଇତ୍ୟାଦି ବଚନରେ ଓ ୨ୟ ଅଧ୍ୟାୟରେ ସ୍ଥିତପ୍ରଜ୍ଞ ପୁରୁଷର ଲକ୍ଷଣବର୍ଣ୍ଣନ ବେଳେ ଏବଂ ୧୪ଶ ଅଧ୍ୟାୟରେ ବସ୍ତୁତରୂପେ ବ୍ୟାଖ୍ୟା କରି ହୋଇ-ଅଛି ।

Digitized by PPRACHIN, SOA

ପ୍ରଥମ ଦୁଇ ପ୍ରକାରର ତ୍ୟାଗ (ଅର୍ଥାତ୍ ୧ ବିଶେଷଣ ଅଭାବରେ ତ୍ୟାଗ ଓ ୨ ବିଶେଷ୍ୟ ଅଭାବରେ ତ୍ୟାଗ,) ସଙ୍ଗତ ଥିବାରୁ ତାହାର ସାତ୍ତ୍ୱିକାଦି ଭେଦ ପରବର୍ତ୍ତୀ ଶ୍ଳୋକମାନଙ୍କରେ ବୁଝାଇ ଦିଆ ଯିବ ।

ଏ ଶ୍ଳୋକରେ ଅର୍ଜ୍ଜୁନଙ୍କୁ 'ଭରତସତ୍ତମ' ଓ 'ପୁରୁଷବ୍ୟାଘ୍ର' ଏହି ଦୁଇ ପଦଦ୍ୱାରା ସମ୍ବୋଧନ କରି ଶ୍ରୀଭଗବାନ୍ ସଙ୍କେତରେ ଏହି କଥା ଜଣାଇଲେ, ଯେ ତୁମ୍ଭେ ଉଚ୍ଚ କୁଳରେ ଜାତ ଓ ନିଜେ ଉଚ୍ଚ ଭାବାପନ୍ନ । ଅତଏବ ଦୁର୍ବୋଧ୍ୟ ତ୍ୟାଗତତ୍ତ୍ୱ ବୁଝିବାକୁ ଉପଯୁକ୍ତ ପାତ୍ର ଅଟ । ୪ ।

ଶ୍ଳୋକଃ ।

ଯଜ୍ଞଦାନତପଃକର୍ମ, ନ ତ୍ୟାଜ୍ୟଂ କାର୍ଯ୍ୟମେବ ତତ୍ ।
ଯଜ୍ଞୋଦାନଂ ତପଶ୍ଚୈବ, ପାବନାନି ମନୀଷିଣାଂ । ୫ ।

ଅନ୍ୱୟଃ ।

ଯଜ୍ଞ-ଦାନ-ତପଃ-କର୍ମ ନ ତ୍ୟାଜ୍ୟଂ, ତତ୍ କାର୍ଯ୍ୟଂ ଏବ, ଯଜ୍ଞଃ, ଦାନଂ ଚ ତପଃ ଏବ ମନୀଷିଣାଂ ପାବନାନି । ୫ ।

ଟୀକା ।

ପ୍ରଥମଂ ତାବନ୍ନିଶ୍ଚୟମାହ । ଯଜ୍ଞଦାନେତଦ୍ଦ୍ୱାଭ୍ୟାଂ । ମନୀଷିଣାଂ ବିବେକିନାଂ, ପାବନାନି ଚିତ୍ତଶୁଦ୍ଧିକରାଣି । ୫ ।

ପଦବ୍ୟାଖ୍ୟା ।

ଯଜ୍ଞଦାନତପଃକର୍ମ—ଯଜ୍ଞ, ଦାନ ଓ ତପସ୍ୟାରୂପ କର୍ମ, ନ ତ୍ୟାଜ୍ୟଂ—ତ୍ୟାଗର ଯୋଗ୍ୟ ନୁହେ, କାର୍ଯ୍ୟଂ ଏବ ତତ୍—ତାହା ନିଶ୍ଚୟ କର୍ତ୍ତବ୍ୟ, ଯଜ୍ଞଃ—ଅଶ୍ୱମେଧ, ଜ୍ୟୋତିଷ୍ଟୋମାଦି, ଦାନଂ—ଭୂମି, ଗୋ, ସୁବର୍ଣ୍ଣାଦି ସତ୍ପାତ୍ରରେ ଅର୍ପଣ, ତପଃ ଚ—ପୁଣି କୃଚ୍ଛ୍ରଚାନ୍ଦ୍ରାୟଣାଦି ତପସ୍ୟା, ଏବ—ନିଶ୍ଚୟ, ପାବନାନି—ଶୁଦ୍ଧିକର, ମନୀଷିଣାଂ—ବୁଦ୍ଧିମାନ୍ ପୁରୁଷମାନଙ୍କର । ୫ ।

ଅନୁବାଦ ।

ଯଜ୍ଞ, ଦାନ ଓ ତପସ୍ୟାଦି କର୍ମ ତ୍ୟାଗର ଯୋଗ୍ୟ ନୁହେ, ତାହା ଅବଶ୍ୟ କର୍ତ୍ତବ୍ୟ । (ଯେହେତୁ) ଯଜ୍ଞ, ଦାନ ଓ ତପସ୍ୟା ବିବେକି ଲୋକଙ୍କୁ ପବିତ୍ର କରେ । ୫ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ପୂର୍ବ ଶ୍ଳୋକରେ କହିଥିଲେ, ଯେ ହେ ଅର୍ଜ୍ଜୁନ ! ସେହି ତ୍ୟାଗ ବିଷୟରେ ଆମ୍ଭର ସିଦ୍ଧାନ୍ତ ଶ୍ରବଣ କର । ପ୍ରଥମରେ ସେହି ନିଜ ସିଦ୍ଧାନ୍ତ ଏ ଶ୍ଳୋକରେ ବୁଝାଉଅଛନ୍ତି ।

ଅଗ୍ନିହୋତ୍ରପ୍ରଭୃତି ଯଜ୍ଞ, ଉପଯୁକ୍ତ ସମୟରେ ଗୋ, ଭୂମି, ସୁବର୍ଣ୍ଣ ଓ ଅନ୍ନପ୍ରଭୃତି ଦ୍ରବ୍ୟକୁ ବ୍ରାହ୍ମଣ, ଅତିଥି ଓ ଦରିଦ୍ର ପ୍ରଭୃତି ସତ୍ପାତ୍ରରେ ଅର୍ପଣ ରୂପ ଦାନ ଏବଂ କୃଚ୍ଛ୍ରଚାନ୍ଦ୍ରାୟଣ ଓ ପଞ୍ଚାଗ୍ନି ପ୍ରଭୃତି ତପସ୍ୟାରୂପ କର୍ମ, କଦାପି ପରିତ୍ୟାଗର ଯୋଗ୍ୟ ନୁହେ । ବ୍ରହ୍ମଚାରୀ, ଗୃହସ୍ଥ ଓ ବାନପ୍ରସ୍ଥ ଏ ସମସ୍ତଙ୍କର ଉକ୍ତ କର୍ମମାନ ଅବଶ୍ୟ କର୍ତ୍ତବ୍ୟ । କାହିଁକି ନା ସେହି ସବୁ କର୍ମ ଫଳ କାମନାରହିତ ବ୍ୟକ୍ତିଙ୍କର ଜ୍ଞାନୋତ୍ପତ୍ତିର ପ୍ରତିବନ୍ଧକ ପାପ ସବୁ ନଷ୍ଟ କରି ଦେଇ ଜ୍ଞାନର

Digitized by PPRACHIN, SOA

ସାଧକ ସାଧୁ ପ୍ରବୃତ୍ତିର ଉଦ୍ରେକଜନକ ହୁଏ । ଅତଏବ କର୍ମାଧିକାରୀ ପୁରୁଷଙ୍କର ଫଳ କାମନାରହିତ ହୋଇ ଯଜ୍ଞ, ଦାନ ଓ ତପସ୍ୟାଦି କର୍ମ ଅନୁଷ୍ଠାନ କରିବା ଉଚିତ, ପରିତ୍ୟାଗ କରିବାକୁ ନୁହେ । ଏହାହିଁ ଆମ୍ଭର ସିଦ୍ଧାନ୍ତ ଅଟେ । ୫ ।

ଶ୍ଳୋକଃ ।

ଏତାନ୍ୟପି ତୁ କର୍ମାଣି, ସଙ୍ଗଂ ତ୍ୟକ୍ତ୍ୱା ଫଳାନି ଚ ।
କର୍ତ୍ତବ୍ୟାନୀତି ମେ ପାର୍ଥ, ନିଶ୍ଚିତଂ ମତମୁତ୍ତମଂ । ୬ ।

ଅନ୍ୱୟଃ ।

ହେ ପାର୍ଥ ! ତୁ ଏତାନି ଅପି କର୍ମାଣି ସଙ୍ଗଂ ଚ ଫଳାନି ତ୍ୟକ୍ତ୍ୱା କର୍ତ୍ତବ୍ୟାନି, ଇତି ମେ ନିଶ୍ଚିତଂ ଉତ୍ତମଂ ମତଂ । ୬ ।

ଟୀକା ।

ଯେନ ପ୍ରକାରେଣ କୃତାନ୍ୟେତାନି ପାବନାନି ଭବନ୍ତି ତଂ ପ୍ରକାରଂ ଦର୍ଶୟନ୍ନାହ । ଏତାନୀତି । ଯାନି ଯଜ୍ଞାଦିକର୍ମାଣି ମୟା ପାବନାନ୍ୟୁକ୍ତାନି ଏତାନ୍ୟେବ କର୍ତ୍ତବ୍ୟାନି କଥଂ ସଙ୍ଗଂ କର୍ତ୍ତୃତ୍ୱାଭିନିବେଶଂ ତ୍ୟକ୍ତ୍ୱା କେବଳମୀଶ୍ୱରାଧୀନତୟା କର୍ତ୍ତବ୍ୟାନି, ଫଳାନି ଚ ତ୍ୟକ୍ତ୍ୱା କର୍ତ୍ତବ୍ୟାନୀତ ଚ ମେ ମତଂ ନିଶ୍ଚିତଂ ଅତଏବୋତ୍ତମଂ । ୬ ।

ପଦବ୍ୟାଖ୍ୟା ।

ଏତାନି—ଏହି ସବୁ, ଅପି—ମଧ୍ୟ, ତୁ—ଇନ୍ତୁ, କର୍ମାଣି—କର୍ମମାନଙ୍କୁ, ସଙ୍ଗଂ ତ୍ୟକ୍ତ୍ୱା—ମୁଁ କର୍ତ୍ତା ଏରୂପ ଅଭିମାନ ତ୍ୟାଗ କରି, ଫଳାନି ଚ—କର୍ମର ଫଳମାନଙ୍କୁ ମଧ୍ୟ, କର୍ତ୍ତବ୍ୟାନି—ଅନୁଷ୍ଠାନ କରିବ, ଇତି—ଏହା, ମେ—ଆମ୍ଭର, ପାର୍ଥ—ହେ ଅର୍ଜ୍ଜୁନ !, ନିଶ୍ଚିତଂ—ନିଶ୍ଚୟ ସିଦ୍ଧାନ୍ତ, ମତଂ—ଅଭିମତ ଅଟେ, ଉତ୍ତମଂ—ଶ୍ରେଷ୍ଠ । ୬ ।

ଅନୁବାଦ ।

ହେ ପାର୍ଥ ! ଏହି ସବୁ (ଯଜ୍ଞ ଦାନାଦି) କର୍ମମାନଙ୍କୁ (ମୁଁ କର୍ତ୍ତା ଏପରି) ଅଭିମାନ ଓ (ସ୍ୱର୍ଗାଦି) ଫଳ କାମନା ତ୍ୟାଗ କରି ଅନୁଷ୍ଠାନ କରିବ, ଏହା ଆମ୍ଭର ମତ ଓ ଶ୍ରେଷ୍ଠ ସିଦ୍ଧାନ୍ତ ଅଟେ । ୬ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! କାମ୍ୟକର୍ମର ଅନୁଷ୍ଠାନରେ ମଧ୍ୟ, ଅନ୍ତଃକରଣ ଶୁଦ୍ଧି ହୁଏ ସତ, ମାତ୍ର ତହିଁରେ ସ୍ୱର୍ଗାଦି ଫଳ ଲାଭ ହେବାରୁ, ସେହି ଫଳ ଭୋଗ ପାଇଁ ଶରୀରଧାରଣ ଆବଶ୍ୟକ ହୁଏ । ସୁତରାଂ, ତାହା ଆତ୍ମଜ୍ଞାନ ଲାଭର ପ୍ରତିବନ୍ଧକ ହୁଏ । ଅତଏବ ନିଷ୍କାମ ଓ ନିରଭିମାନ ଭାବରେ ସେହି ପୂର୍ବୋକ୍ତ ଯଜ୍ଞ, ଦାନ ଓ ତପସ୍ୟାଦି କର୍ମ ଅବଶ୍ୟ କରିବାକୁ ହେବ, ଏହାହିଁ ଆମ୍ଭର ସ୍ଥିରସିଦ୍ଧାନ୍ତ ଓ ଏହା ସର୍ବଶ୍ରେଷ୍ଠ ମତ ଅଟେ । ୬ ।

ଶ୍ଳୋକଃ ।

ନିୟତସ୍ୟ ତୁ ସନ୍ନ୍ୟାସଃ, କର୍ମଣୋ ନୋପପଦ୍ୟତେ ।
ମୋହାତ୍ତସ୍ୟ ପରିତ୍ୟାଗ, ସ୍ତାମସଃ ପରିକୀର୍ତ୍ତିତଃ । ୭ ।

Digitized by PPRACHIN, SOA

## ଅନ୍ୱୟଃ ।

ତୁ ନିୟତସ୍ୟ କର୍ମଣଃ ସନ୍ନ୍ୟାସଃ ନ ଉପପଦ୍ୟତେ, ତସ୍ୟ ମୋହାତ୍ ପରିତ୍ୟାଗଃ ତାମସଃ ପରିକୀର୍ତ୍ତିତଃ । ୭ ।

## ଟୀକା ।

ପ୍ରତିଜ୍ଞାତଂ ତ୍ୟାଗସ୍ୟ ତ୍ରୈବିଧ୍ୟମିଦାନୀଂ ଦର୍ଶୟତି, ନିୟତସ୍ୟେତି ତ୍ରିଭିଃ । କାମ୍ୟସ୍ୟ କର୍ମଣୋବନ୍ଧକତ୍ୱାତ୍ ସନ୍ନ୍ୟାସୋ ଯୁକ୍ତଃ, ନିୟତସ୍ୟ ତୁ ନିତ୍ୟସ୍ୟ ପୁନଃ କର୍ମଣଃ ସନ୍ନ୍ୟାସସ୍ତ୍ୟାଗୋ ନୋପପଦ୍ୟତେ; ସତ୍ତ୍ୱଶୁଦ୍ଧିଦ୍ୱାରା ମୋକ୍ଷହେତୁତ୍ୱାତ୍; ଯତସ୍ତସ୍ୟ ପରିତ୍ୟାଗଃ ଉପାଦେୟତ୍ୱେଽପି ତ୍ୟାଜ୍ୟମିତ୍ୟେବଂ ଲକ୍ଷଣାନ୍ମୋହାଦେବ ଭବେତ୍ ସ ଚ ମୋହସ୍ୟ ତାମସତ୍ୱାତ୍ ତାମସଃ ପରିକୀର୍ତ୍ତିତଃ । ୭ ।

## ପଦବ୍ୟାଖ୍ୟା ।

ନିୟତସ୍ୟ—ନିତ୍ୟ, ତୁ—କିନ୍ତୁ, ସନ୍ନ୍ୟାସଃ—ପରିତ୍ୟାଗ, କର୍ମଣଃ—କର୍ମର, ନ ଉପପଦ୍ୟତେ—ଉଚିତ ନୁହେ, ମୋହାତ୍—ଭ୍ରମ ବା ଅଜ୍ଞାନ ହେତୁରୁ, ତସ୍ୟ—ସେହି ନିତ୍ୟକର୍ମର, ପରିତ୍ୟାଗଃ—ଅନୁଷ୍ଠାନ ନ କରିବା, ତାମସଃ ପରିକୀର୍ତ୍ତିତଃ—ତାମସ ନାମରେ କଥିତ ହୁଏ । ୭ ।

## ଅନୁବାଦ ।

କିନ୍ତୁ ନିତ୍ୟକର୍ମର ପରିତ୍ୟାଗ ଉଚିତ ନୁହେ । ମୋହ ହେତୁ ତାହା ତ୍ୟାଗ କରିବା ତାମସତ୍ୟାଗ ନାମରେ କଥିତ ହୁଏ । ୭ ।

## ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ଚତୁର୍ଥ ଶ୍ଲୋକରେ କହିଥିଲେ, ଯେ ତ୍ୟାଗ ସାତ୍ତ୍ୱିକ, ରାଜସ ଓ ତାମସ ଭେଦରେ ତିନ ପ୍ରକାର ହୁଏ । ବର୍ତ୍ତମାନ ସେ ତ୍ରିବିଧତ୍ୟାଗ ଏକେ ଏକେ ବର୍ଣ୍ଣନ କରିବାକୁ ଇଚ୍ଛା କରି ପ୍ରଥମରେ ତାମସ ତ୍ୟାଗର ଲକ୍ଷଣ କହୁଅଛନ୍ତି, ଯେ କାମ୍ୟକର୍ମ ସଂସାରବନ୍ଧନର ହେତୁ, ଅତଏବ ଜ୍ଞାନର ପ୍ରତିବନ୍ଧକ ବୋଲି ମୋକ୍ଷାଭିଳାଷୀ ତାହା ସର୍ବଥା ପରିତ୍ୟାଗ କରିବେ । କିନ୍ତୁ ନିତ୍ୟକର୍ମ, ନିର୍ଦ୍ଦୋଷ ଅଟେ ଓ ଚିତ୍ତଶୁଦ୍ଧି କରିବାଦ୍ୱାରା ଜ୍ଞାନଲାଭର ଉପାୟସ୍ୱରୂପ ହୁଏ ବୋଲି ମୋକ୍ଷାଭିଳାଷି ଓ ଜ୍ଞାନାଭିଳାଷିଙ୍କର ସର୍ବଥା ତାହା ଅନୁଷ୍ଠାନ କରିବା ଉଚିତ । ମୋହବଶତଃ ଅଥବା ଅଜ୍ଞାନ ହେତୁରୁ ନିତ୍ୟକର୍ମର ଅନୁଷ୍ଠାନ ତ୍ୟାଗ କରିବା ତାମସ ତ୍ୟାଗ ଅଟେ ।

କେହି କେହି (ସାଂଖ୍ୟବାଦମାନେ) ଏପରି ଆପତ୍ତି କରି ପାରନ୍ତି, ଯେ ନିତ୍ୟକର୍ମ, ଅର୍ଥାତ୍ ଅଗ୍ନିହୋତ୍ର, ଦର୍ଶପୌର୍ଣ୍ଣମାସ ଓ ଚାତୁର୍ମାସ୍ୟ ପ୍ରଭୃତି ଯଜ୍ଞାଦି କର୍ମରେ ଆବଶ୍ୟକୀୟ ଯବ ଓ ବ୍ରୀହି ଆଦି ପଦାର୍ଥ ଚୂର୍ଣ୍ଣ କରିବା, ହୋମ କରିବା ଓ ଯଜ୍ଞଶାଳା ମାର୍ଜନ କରିବାଦ୍ୱାରା ପ୍ରାଣି-ହିଂସା ହୁଏ,* ଏବଂ ଜୀବବଧ ଜନିତ ଦୋଷ ହୁଏ, ଅତଏବ ତାହା କାମ୍ୟକର୍ମ ପରି ଦୋଷ-ଯୁକ୍ତ ଓ ପରିତ୍ୟାଗର ଯୋଗ୍ୟ । କାହିଁକି ନା ବେଦରେ ପ୍ରମାଣ ଅଛି, ଯେ "ମା ହିଂସ୍ୟାତ୍ ସର୍ବ-ଭୂତାନି" ଅର୍ଥାତ୍ କୌଣସି ପ୍ରାଣୀଙ୍କୁ ହିଂସା କରିବ ନାହିଁ । ଅତଏବ ନିତ୍ୟକର୍ମ ମଧ୍ୟରୁ ଯଜ୍ଞାଦି

---

* ପଞ୍ଚଶୂନା ପାତକ ହୁଏ । ପଞ୍ଚଶୂନା ଯଥା;—ଚୁଲ୍ଲୀ, ଚକି, ଢିଙ୍କିଉଖୁଣ୍ଡି, ମାଠିଆ ରଖିବା ସ୍ଥାନ (ଢେଙ୍ଗଡ଼ା) ଓ ଝାଡ଼ୁଣୀ; ଏ ସବୁ ସ୍ଥାନରେ ଜୀବ ଥିବାରୁ ପ୍ରତିଦିନ ସେମାନଙ୍କର ବିନାଶ ହୁଏ ।

Digitized by PPRACHIN, SOA

କର୍ମ ତ୍ୟାଗ କରି କେବଳ ଜପପ୍ରଧାନ ସନ୍ନ୍ୟାସ ବଦନବାଦ କରବ । ଯେହେତୁ ଉପରେ ପ୍ରାଣି-ହିଂସାଦ କଛୁ ଦୋଷ ନାହିଁ । ମହାଭାରତରେ ପ୍ରମାଣ ଅଛି, ଯେ—

"ଜପସ୍ତୁ ସର୍ବଧର୍ମେଭ୍ୟଃ ପରମୋଧର୍ମ ଉଚ୍ୟତେ ।

ଅହିଂସୟା ହି ଭୂତାନାଂ ଜପଯଜ୍ଞଃ ପ୍ରବର୍ତ୍ତତେ ।"

ଅର୍ଥାତ୍ ଜପ, ସବ ଯଜ୍ଞ ଅପେକ୍ଷା ଶ୍ରେଷ୍ଠ, ଯେହେତୁ ପ୍ରାଣିମାନଙ୍କୁ ହିଂସା ନ କରିବା ଲାଗି ଜପଯଜ୍ଞ, ପ୍ରବର୍ତ୍ତିତ ହୋଇଅଛି ।

ପୁଣି ମନୁରେ ମଧ୍ୟ ପ୍ରମାଣ ଅଛି, ଯେ—"ଜାପ୍ୟେନୈବ ତୁ ସଂସିଦ୍ଧ୍ୟେତ୍ ବ୍ରାହ୍ମଣୋନାତ୍ର ସଂଶୟଃ । କୁର୍ଯ୍ୟାଦନ୍ୟନ୍ନ ବା କୁର୍ଯ୍ୟାତ୍ ମୈତ୍ରୋବ୍ରାହ୍ମଣ ଉଚ୍ୟତେ" । ଅର୍ଥାତ୍ ଜପଦ୍ୱାରା ବ୍ରାହ୍ମଣ ସିଦ୍ଧି ପ୍ରାପ୍ତ ହୁଅନ୍ତି, ଏଥିରେ କଛୁମାତ୍ର ସଂଶୟ ନାହିଁ । କିମ୍ବାଧିକାରୀ ବ୍ୟକ୍ତି, ଅନ୍ୟ କର୍ମ କରୁ ଅଥବା ନ କରୁ, ସେଥିରେ କ୍ଷତି ନାହିଁ, କରୁ ଅହିଂସାଦ୍ୱାରା 'ମୈତ୍ର' ଅର୍ଥାତ୍ ସବ ପ୍ରାଣିଙ୍କ-ଠାରେ ମିତ୍ର ଭାବାପନ୍ନ ହେଲେ, ସେ ପ୍ରକୃତ ବ୍ରାହ୍ମଣ ନାମର ଯୋଗ୍ୟ ହେବେ । ପୁଣି ଭଗ-ବାନ୍ ଦଶମ ଅଧ୍ୟାୟରେ ନିଜେ କହିଅଛନ୍ତି, ଯେ "ଯଜ୍ଞାନାଂ ଜପଯଜ୍ଞୋଽସ୍ମି" ଇତ୍ୟାଦ ।

ମାତ୍ର ଏ ଆପତ୍ତି ବଡାଲ୍ଭ ଭ୍ରମପୂର୍ଣ୍ଣ ଓ ଅସଙ୍ଗତ ଅଟେ । କାହିଁକି ନା "ମାହିଂସ୍ୟାତ୍ ସର୍ବ-ଭୂତାନି" ଏ ବେଦ ବଚନର ଅର୍ଥ ଏହି, କି ଯଜ୍ଞରେ ଓ ଯୁଦ୍ଧରେ ଏବଂ ଆତ୍ମରକ୍ଷା ପାଇଁ କୃତ, ଯେ ପ୍ରାଣିବଧ, ତାହା ଭିନ୍ନ, ଅନ୍ୟ ପ୍ରକାର ପ୍ରାଣିବଧ ଦୋଷାବହ ଅଟେ । ଏହା ଯଦି ଅର୍ଥ ହୋଇ ନ ଥାନ୍ତା, ତେବେ "ଅଗ୍ନିଷ୍ଟୋମୀୟଂ ପଶୁମାଲଭେତ" ଇତ୍ୟାଦ ବେଦ ବଚନ-ରେ ପଶୁ ହିଂସାର ବିଧି ନ ଥାନ୍ତା । ଯେଉଁ ଆପତ୍ତି ବେଦର ବିରୋଧୀ, ତାହା ଗ୍ରାହ୍ୟ ନୁହେ । ଅତ ଯୁଦ୍ଧପ୍ରଧାନ ମହାଭାରତରେ ଓ ସ୍ମୃତିନୀତିପ୍ରଧାନ ମନୁରେ ଜପଯଜ୍ଞର ଯେଉଁ ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି, ତାହା କେବଳ ଜପର ପ୍ରଶଂସାବାଚକ, ମାତ୍ର ଯୁଦ୍ଧାଦରେ ପ୍ରାଣିହିଂସାର ବିରୋଧୀ ନୁହେ, କାହିଁକି ନା ତାହା ହେଲେ, ସମ୍ମୁଖ ଯୁଦ୍ଧରେ ହତ ହେବା ବ୍ୟକ୍ତିର ସ୍ୱର୍ଗ ଲାଭ ଏବଂ ଆତତାୟି ବଧରେ ପାପ ନ ଥିବା ପ୍ରଭୃତି କଥା, ସେ ସବୁ ଗ୍ରନ୍ଥରେ ନ ଥାନ୍ତା, ପୁଣି ଗୃହସ୍ଥର ପଞ୍ଚଶୂନାପାତକ ଅନିବାର୍ଯ୍ୟ ଅଟେ । ଅତଏବ ପଶୁ ହିଂସାଦି ସ୍ଥଳେ ସୁଦ୍ଧା, ନିତ୍ୟକର୍ମ ଦୋଷଯୁକ୍ତ ନୁହେ, ବରଂ ଚିତ୍ତଶୁଦ୍ଧିର ହେତୁ ଓ ଜ୍ଞାନ ଲାଭର ସୋପାନ ଏବଂ ଧର୍ମସଙ୍ଗତ ବୋଲି ତାହା ଅନୁଷ୍ଠାନ କରିବା ସର୍ବତୋଭାବରେ ଉଚିତ । ମୋହତଃକ୍ଷତିଃ ଅର୍ଥାତ୍ ସାଂଖ୍ୟବାଦଙ୍କ ପରି ଅସଙ୍ଗତ ଯୁକ୍ତି ବଳରେ, ଯେଉଁମାନେ ନିତ୍ୟକର୍ମକୁ ଦୋଷାବହ ମନେ କରି ପରିତ୍ୟାଗ କରନ୍ତି, ସେମାନଙ୍କର ସେହି ତ୍ୟାଗ, 'ମୋହ' ଜନିତ ବୋଲି ତାମସ ଅଟେ । ଯେହେତୁ 'ମୋହ' ତମୋଗୁଣର ପ୍ରଧାନ ଲକ୍ଷଣ ଅଟେ । ୭ ।

ଶ୍ଲୋକଃ ।

ଦୁଃଖମିତ୍ୟେବ ଯତ୍ କର୍ମ, କାୟକ୍ଲେଶଭୟାତ୍ତ୍ୟଜେତ୍ ।

ସ କୃତ୍ୱା ରାଜସଂ ତ୍ୟାଗଂ, ନୈବ ତ୍ୟାଗଫଳଂ ଲଭେତ୍ । ୮ ।

Digitized by PPRACHIN, SOA

## ଅନ୍ୱୟଃ ।

(ଯଃ) ଦୁଃଖଂ ଏବ ଇତି, କାୟକ୍ଳେଶଭୟାତ୍ ଯତ୍ କର୍ମ ତ୍ୟଜେତ୍ ସଃ ରାଜସଂ ତ୍ୟାଗଂ କୃତ୍ୱା ତ୍ୟାଗଫଳଂ ନ ଏବ ଲଭେତ୍ । ୮ ।

## ଟୀକା ।

ରାଜସଂ ତ୍ୟାଗମାହ ଦୁଃଖମିତି । ଯଃ କର୍ତ୍ତୃତ୍ୱବୋଧଂ ବିନା କେବଳଂ ଦୁଃଖମିତ୍ୟେବଂ ଜ୍ଞାତ୍ୱା ଶରୀରାୟାସ-ଭୟାତ୍ ନିତ୍ୟଂ କର୍ମ ତ୍ୟଜେଦିତି ଯତ୍ତଦୃଶସ୍ତ୍ୟାଗୋରାଜସଃ ଦୁଃଖସ୍ୟ ରାଜସତ୍ୱାତ୍, ଅତସ୍ତଂ ରାଜସଂ ତ୍ୟାଗଂ କୃତ୍ୱା ରାଜସଃ ପୁରୁଷଃ ତ୍ୟାଗସ୍ୟ ଫଳଂ ଜ୍ଞାନନିଷ୍ଠାଲକ୍ଷଣଂ ନୈବ ଲଭତଇତ୍ୟର୍ଥଃ । ୮ ।

## ପଦବ୍ୟାଖ୍ୟା ।

ଦୁଃଖଂ ଇତି ଏବ—କେବଳ ଦୁଃଖଜନକ ବୋଲି, ଯତ୍କର୍ମ—ଯେଉଁ ନିତ୍ୟକର୍ମ, କାୟକ୍ଳେଶଭୟାତ୍—ଶାରୀରକ କଷ୍ଟ ଭୟରୁ, ତ୍ୟଜେତ୍—ତ୍ୟାଗ କରେ, ସଃ—ସେ, କୃତ୍ୱା—କରି, ରାଜସଂ ତ୍ୟାଗଂ—ରାଜସିକ ତ୍ୟାଗରୂ, ନୈବ—କଦାପି ନୁହେଁ ତ୍ୟାଗଫଳଂ—ତ୍ୟାଗର ଜ୍ଞାନନିଷ୍ଠାରୂପ ଫଳକୁ, ଲଭେତ୍—ପ୍ରାପ୍ତ ହୁଏ । ୮ ।

## ଅନୁବାଦ ।

କର୍ମ କେବଳ ଦୁଃଖଜନକ, ଏହା ମନେ କରି ଶାରୀରିକ କଷ୍ଟ ଭୟରେ ଯେଉଁ ତ୍ୟାଗ, ତାହା ରାଜସ ଅଟେ । ସେହି ରାଜସ ତ୍ୟାଗ କରିବା ବ୍ୟକ୍ତି କର୍ମତ୍ୟାଗର ଫଳ କଦାପି ପ୍ରାପ୍ତ ହୁଏ ନାହିଁ । ୮ ।

## ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ ସାଂଖ୍ୟବାଦୀଙ୍କର ଯେଉଁ ମୋହ ଅଥବା ଭ୍ରମ ଦେଖାଇ ଦିଆ ହୋଇଅଛି, ସେପରି ମୋହ ନ ଥିଲେସୁଦ୍ଧା, ଯେଉଁ କର୍ମାଧିକାରୀ ପୁରୁଷ, ଅଗ୍ନିହୋତ୍ର ଓ ସନ୍ଧ୍ୟା ବନ୍ଦନାଦି କର୍ମକୁ ଦୁଃଖଜନକ ମନେ କରି ଶାରୀରିକ କ୍ଳେଶ ଭୟରେ ପରିତ୍ୟାଗ କରେ, ଅର୍ଥାତ୍ ପରିଶ୍ରମ ଭୟରେ ନିତ୍ୟକର୍ମ ନ କରେ, ସେହି ବ୍ୟକ୍ତିର କର୍ମତ୍ୟାଗକୁ ରାଜସ ତ୍ୟାଗ ହୋଇଯାଏ । କାହିଁକି ନା ରଜୋଗୁଣର ପ୍ରଧାନ ଲକ୍ଷଣ ଦୁଃଖ, ସେହି ଦୁଃଖ ହେତୁରୁ ଯେଉଁ କର୍ମ ତ୍ୟାଗ, ତାହା ଅବଶ୍ୟ ରାଜସ ହେବ । ଏପ୍ରକାର ରାଜସ ତ୍ୟାଗ କରିବା ବ୍ୟକ୍ତି, କର୍ମ ତ୍ୟାଗର ଯେଉଁ ଫଳ, ଅର୍ଥାତ୍ ଜ୍ଞାନାଭିଳାଷ ବା ଜ୍ଞାନନିଷ୍ଠା, ତାହା ପ୍ରାପ୍ତ ହୁଏ ନାହିଁ । ଅତଏବ ତାମସ ତ୍ୟାଗ ପରି ରାଜସ ତ୍ୟାଗ ମଧ୍ୟ ଅବଲମ୍ବନୀୟ ନୁହେ । ୮ ।

## ଶ୍ଳୋକଃ ।

କାର୍ଯ୍ୟମିତ୍ୟେବ ଯତ୍କର୍ମ, ନିୟତଂ କ୍ରିୟତେଽର୍ଜ୍ଜୁନ ।
ସଙ୍ଗଂ ତ୍ୟକ୍ତ୍ୱା ଫଳଂ ଚୈବ, ସ ତ୍ୟାଗଃ ସାତ୍ତ୍ୱିକୋମତଃ । ୯ ।

## ଅନ୍ୱୟଃ ।

ହେ ଅର୍ଜ୍ଜୁନ ! କାର୍ଯ୍ୟଂ ଏବ ଇତି ଯତ୍ ନିୟତଂ କର୍ମ, ସଙ୍ଗଂ ଚ ଫଳଂ ଏବ ତ୍ୟକ୍ତ୍ୱା, କ୍ରିୟତେ ସଃ ତ୍ୟାଗଃ ସାତ୍ତ୍ୱିକଃ ମତଃ । ୯ ।

## ଟୀକା ।

ସାତ୍ତ୍ୱିକଂ ତ୍ୟାଗମାହ । କାର୍ଯ୍ୟମିତି । କାର୍ଯ୍ୟମିତ୍ୟେବଂ ବୁଦ୍ଧ୍ୱା ନିୟତମବଶ୍ୟଂ କର୍ତ୍ତବ୍ୟତୟା ବିହିତଂ କର୍ମସଙ୍ଗଂ ଫଳଂ ଚ ତ୍ୟକ୍ତ୍ୱା କ୍ରିୟତ ଇତିଯତ୍ ତାଦୃଶସ୍ତ୍ୟାଗଃ ସାତ୍ତ୍ୱିକୋମତଃ । ୯ ।

ପଦବ୍ୟାଖ୍ୟା ।

କାର୍ଯ୍ୟଂ ଇତି ଏବ—ଏ କର୍ମ ଅବଶ୍ୟ କର୍ତ୍ତବ୍ୟ, ଯତ୍କର୍ମ—ଯେଉଁ କର୍ମ, ନିୟତଂ—ନିତ୍ୟ, କ୍ରିୟତେ—କରାହୁଏ, ଅର୍ଜ୍ଜୁନ—ହେ ଅର୍ଜ୍ଜୁନ !, ସଙ୍ଗଂ ତ୍ୟକ୍ତ୍ୱା—କର୍ତ୍ତୃତ୍ୱ ଅଭିମାନ ତ୍ୟାଗ କରି, ଫଳଂ ଚ ଏବ—ଫଳ କାମନାକୁ ମଧ୍ୟ, ସ ତ୍ୟାଗଃ—ସେହି ତ୍ୟାଗ, ସାତ୍ତ୍ୱିକୋ ମତଃ—ସାତ୍ତ୍ୱିକ ବୋଲି କଥିତ ହୁଏ । ୯ ।

ଅନୁବାଦ ।

ହେ ଅର୍ଜ୍ଜୁନ ! କର୍ତ୍ତବ୍ୟବୁଦ୍ଧିରେ ନିତ୍ୟକର୍ମର ଅନୁଷ୍ଠାନ କରି ଅଭିମାନ ଓ ଫଳକାମନା ତ୍ୟାଗ କରିବାକୁ ସାତ୍ତ୍ୱିକ ତ୍ୟାଗ ବୋଲାଯାଏ । ୯ ।

ବିଶଦବ୍ୟାଖ୍ୟା ।

ପୂର୍ବ ଦୁଇ ଶ୍ଳୋକରେ ତାମସ ତ୍ୟାଗ ଓ ରାଜସ ତ୍ୟାଗର କଥା କୁହାଇ ଦିଆ ଯାଇଅଛି, ଏ ଶ୍ଳୋକରେ ସାତ୍ତ୍ୱିକ ତ୍ୟାଗର କଥା ବର୍ଣ୍ଣିତ କରା ଯାଉଅଛି ।

"ଅଗ୍ନିହୋତ୍ରଂ ଜୁହୋତି" ଓ "ଅହରହଃ ସନ୍ଧ୍ୟାମୁପାସୀତ" ଅର୍ଥାତ୍ 'ଅଗ୍ନିହୋତ୍ର କରିବ' ଓ 'ପ୍ରତିଦିନ ସନ୍ଧ୍ୟା ଉପାସନା କରିବ' ଇତ୍ୟାଦି ବେଦୋକ୍ତ କର୍ମକୁ ନିତ୍ୟକର୍ମ ବୋଲାଯାଏ । ତାହା ଅବଶ୍ୟ କରିବା ଉଚିତ, ଏପରି ବୁଦ୍ଧିରେ ନିତ୍ୟକର୍ମର ଅନୁଷ୍ଠାନ କରିବ, ଏବଂ 'ମୁଁ କରୁଅଛି' ଏପରି ଅଭିମାନ କରିବ ନାହିଁ, 'ଅମୁକ ଫଳ ମତେ ମିଳୁ' ଏପରି ଫଳକାମନା କରିବ ନାହିଁ । ଅର୍ଥାତ୍ କର୍ତ୍ତବ୍ୟବୁଦ୍ଧିରେ କର୍ମ ଅନୁଷ୍ଠାନ କରିବ, କିନ୍ତୁ ଅଭିମାନ ଓ ଫଳକାମନା ତ୍ୟାଗ କରିବ । ସେହି ତ୍ୟାଗକୁ ସାତ୍ତ୍ୱିକ ବୋଲାଯାଏ । ତାହା ଜ୍ଞାନର ଓ ଜ୍ଞାନାଭିଳାଷର ଅନୁକୂଳ ବୋଲି ମୋକ୍ଷାଭିଳାଷୀ ଓ ଜ୍ଞାନାଭିଳାଷୀଙ୍କର ସର୍ବଥା ଅବଲମ୍ବନୀୟ ଅଟେ ।

ଏସ୍ଥଳରେ କେହି୨ ଆପତ୍ତି କରି ପାରନ୍ତି, ଯେ ନିତ୍ୟକର୍ମରେ ଫଳ ନାହିଁ, କାହିଁକିନା ଫଳକାମନାଯୁକ୍ତ କର୍ମର ନାମ 'କାମ୍ୟକର୍ମ' ଓ ଫଳକାମନାରହିତ କର୍ମର ନାମ 'ନିତ୍ୟକର୍ମ' ବୋଲି ସର୍ବତ୍ର ପ୍ରସିଦ୍ଧ ଅଛି, ପୁଣି ନିତ୍ୟକର୍ମରେ କୌଣସି ଫଳର କଥା ବେଦାଦିରେ ଲେଖା ନାହିଁ, ଏପରି ସ୍ଥଳେ 'ଫଳକାମନା ତ୍ୟାଗ କରି ନିତ୍ୟ କର୍ମର ଅନୁଷ୍ଠାନ କରିବ' ଏହା କିପରି ହୋଇ ପାରେ ?

ଏହାର ଉତ୍ତର ଏହି, ଯେ —

(୧) ନିତ୍ୟକର୍ମରେ ଫଳ ନ ଥିଲେ, ଶ୍ରୀଭଗବାନ୍ ଏପରି କଥା କହି ନ ଥାନ୍ତେ ।

(୨) ଆପସ୍ତମ୍ବ ଋଷିଙ୍କ ମତରେ "ତଦ୍ୟଥାମ୍ରେ ଫଲାର୍ଥଂ ନିର୍ମିତେ ଛାୟାଗନ୍ଧ ଇତ୍ୟନୂତ୍ପଦ୍ୟେତେ ଏବ ଧର୍ମ ଚର୍ଯ୍ୟମାଣମର୍ଥା ଅନୂତ୍ପଦ୍ୟନ୍ତେ" ଅର୍ଥାତ୍ କେବଳ ଫଳନିମିତ୍ତ ଆମ୍ବତୋଟା ଲଗାଇଲେ, ଯେପରି ଛାୟା ଓ ସୁଗନ୍ଧ ଆନୁଷଙ୍ଗିକରୂପେ ମିଳେ, ସେହିପରି ଧର୍ମପାଇଁ ନିତ୍ୟକର୍ମର ଅନୁଷ୍ଠାନ କଲେ, ଅର୍ଥ (ଫଳ) ଆପଣା ଛାଏଁ ଆନୁଷଙ୍ଗିକରୂପେ ମିଳେ, ତେବେ ନିତ୍ୟକର୍ମରେ ଫଳ ଥିବାର ପ୍ରମାଣ ହେଲା ।

(୩) ନିତ୍ୟକର୍ମ ଅନୁଷ୍ଠାନ ନ କଲେ ପାପ ହୁଏ, ତାହାର ପ୍ରମାଣ ଯଥା,—

"ଅକୃତ୍ୱା ବୈଦିକଂ ନିତ୍ୟଂ ପ୍ରତ୍ୟବାୟୀ ଭବେନ୍ନରଃ" ଶ୍ରୁତିଃ । ଅର୍ଥାତ୍ ବେଦୋକ୍ତ

ନିତ୍ୟକର୍ମ ନ କଲେ, ମନୁଷ୍ୟ ପାପଭାଗୀ ହୁଏ । ପୁଣି "ଶ୍ରୌତଂ ଗୃହେ ତଥା ସ୍ମାର୍ତ୍ତଂ କର୍ମାଲମ୍ବ୍ୟ ବର୍ତ୍ତନ୍ତେ ଦ୍ୱିଜାଃ । ତତ୍ତ୍ୟାଗାତ୍ ପତନ୍ତ୍ୟେବ ହ୍ୟାଲମ୍ବରହିତାଶ୍ୱବତ୍" ସ୍ମୃତଃ । ଅର୍ଥାତ୍ ବୈଦିକ ଓ ସ୍ମାର୍ତ୍ତ କର୍ମକୁ ଅବଲମ୍ବନ କରି ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନେ ରହିବେ, କିନ୍ତୁ ତାହା ତ୍ୟାଗ କଲେ, ଆଶ୍ରୟଶୂନ୍ୟ ଅଶ୍ୱ ପରି (ନରକରୂପ ଗର୍ତ୍ତରେ) ପତିତ ହେବେ ।

ଅନ୍ୟତ୍ର—"ସାବିତ୍ରୀଂ ଜପମାନସ୍ତୁ, ସନ୍ଧ୍ୟାହ୍ନିକୋପାସନାନ୍ତରଂ,
ଦ୍ୱାଦଶାହମନଗ୍ନିସ୍ତୁ, ଶୂଦ୍ର ଏବ ନ ସଂଶୟଃ ;
ତସ୍ମାତ୍ ଉପକ୍ରମେତ୍ସନ୍ଧ୍ୟାଂ, ସାୟଂ ପ୍ରାତଃ ସମାହିତଃ,
ଲୋପୟେଦ୍ ଯୋ ମୋହାତ୍, ସ ଯାତି ନରକଂ ଧ୍ରୁବଂ"

ଅର୍ଥାତ୍ ଦ୍ୱିଜ ଏକ ଦିନମାତ୍ର ବ୍ରହ୍ମମନ୍ତ୍ର ଜପ ନ କଲେ, ତିନି ଦିନ ଯାଏ ସନ୍ଧ୍ୟା ନ କଲେ, ଅଥବା ବାର ଦିନ ଯାଏ ଅଗ୍ନିହୋତ୍ର ନ କଲେ, ଶୂଦ୍ରତ୍ୱ ପ୍ରାପ୍ତ ହୁଅନ୍ତି, ଅତଏବ ସାୟଂକାଳରେ ଓ ପ୍ରାତଃକାଳରେ ଏକାଗ୍ରମନା ହୋଇ ସନ୍ଧ୍ୟାଦ କରିବ, ତାହା ଲଙ୍ଘନ କରିବ ନାହିଁ, ମୋହବଶତଃ ଲଙ୍ଘନ କଲେ, ନିଶ୍ଚୟ ନରକରେ ପଡ଼ିବାକୁ ହେବ ।

ଅନ୍ୟାନ୍ୟ ଧର୍ମଦ୍ୱାରା ପାପରୁ ରକ୍ଷା ପାଇବାରୂପ ମହାଫଳ ପ୍ରାପ୍ତ ହୁଏ, ବେଦରେ ଅଛି, ଯେ —"ଧର୍ମେଣ ପାପମପନୁଦତି ତସ୍ମାଦ୍ଧର୍ମଂ ପରମଂ ବଦନ୍ତି" ଅର୍ଥାତ୍ କେବଳ ନିତ୍ୟକର୍ମାନୁଷ୍ଠାନରୂପ ଧର୍ମଦ୍ୱାରା ପ୍ରତ୍ୟବାୟକ ପାପର ନିବୃତ୍ତି ହୁଏ, ସେହି ହେତୁରୁ ଧର୍ମକୁ ସର୍ବଶ୍ରେଷ୍ଠ ବୋଲି ବେଦବେତ୍ତାମାନେ କହନ୍ତି । ତାହା ହେଲେ, ପାପ ନିବୃତ୍ତିରୂପ ଫଳ ନିତ୍ୟକର୍ମରେ ଥିବାର ପ୍ରମାଣ ହେଲା । ସେହି ଫଳକାମନା ତ୍ୟାଗ କରି କର୍ତ୍ତବ୍ୟବୋଧରେ କର୍ମାନୁଷ୍ଠାନ କରିବାର ଉପଦେଶ ଦେବା ଏ ଶ୍ଲୋକର ଉଦ୍ଦେଶ୍ୟ ଅଟେ । ପୁଣି ସ୍ଥାନାନ୍ତରରେ ଏହା ମଧ୍ୟ, ଲେଖାଅଛି, ଯେ —"ସନ୍ଧ୍ୟାମୁପାସତେ ଯେ ତୁ ସତତଂ ସଂଶିତବ୍ରତାଃ । ବିଧୂତପାପାସ୍ତେ ଯାନ୍ତି ବ୍ରହ୍ମଲୋକମନାମୟଂ ।" ଅର୍ଥାତ୍ ଯେଉଁମାନେ ଦୃଢ଼ବ୍ରତ ହୋଇ ସନ୍ଧ୍ୟା ଉପାସନା କରନ୍ତି, ସେମାନେ ନିଷ୍ପାପ ହୋଇ ଉପଦ୍ରବଶୂନ୍ୟ ବ୍ରହ୍ମଲୋକକୁ ଗମନ କରନ୍ତି ।

ଫଳକଥା ଏହି କି ନିତ୍ୟକର୍ମରେ ନାନା ପ୍ରକାର ଫଳ ଥିବାର ପ୍ରମାଣ ଥିଲେ ସୁଦ୍ଧା, ସାତ୍ତ୍ୱିକ ବ୍ୟକ୍ତି, ତା ପ୍ରାର୍ଥନା କରିବେ ନାହିଁ, କାହିଁକି ନା ବିନା ପ୍ରାର୍ଥନାରେ ଯାହା ମିଳିବ, ତାହା ପାଇଁ ପ୍ରାର୍ଥନା କରିବା ବୁଦ୍ଧିମାନ୍ ଲୋକର ଉଚିତ ନୁହେ । ୯ ।

ଶ୍ଲୋକଃ ।

ନ ଦ୍ୱେଷ୍ଟ୍ୟକୁଶଲଂ କର୍ମ, କୁଶଲେ ନାନୁଷଜ୍ଜତେ ।
ତ୍ୟାଗୀ ସତ୍ତ୍ୱସମାବିଷ୍ଟୋ, ମେଧାବୀ ଛିନ୍ନସଂଶୟଃ । ୧୦ ।

ଅନ୍ୱୟଃ ।

ସତ୍ତ୍ୱସମାବିଷ୍ଟଃ ତ୍ୟାଗୀ ମେଧାବୀ ଛିନ୍ନସଂଶୟଃ (ସନ୍) ଅକୁଶଲଂ କର୍ମ ନ ଦ୍ୱେଷ୍ଟି କୁଶଲେ ନ ଅନୁଷଜ୍ଜତେ । ୧୦ ।

ଟୀକା ।

ଏବମ୍ଭୂତଂ ସାତ୍ତ୍ୱିକତ୍ୟାଗପରିନିଷ୍ଠିତସ୍ୟ ଲକ୍ଷଣମାହ । ନ ଦ୍ୱେଷ୍ଟୀତ୍ୟାଦି । ସତ୍ତ୍ୱସମାବିଷ୍ଟଃ ସତ୍ତ୍ୱେନ ସଂବ୍ୟାପ୍ତଃ

Digitized by PPRACHIN, SOA

ସାତ୍ତ୍ୱିକତ୍ୟାଗୀ ଅକୁଶଳଂ ଦୁଃଖାବହଂ ଶିଶିରେ ପ୍ରାତଃସ୍ନାନାଦିକଂ କର୍ମ ନ ଦ୍ୱେଷ୍ଟି, କୁଶଳେ ଚ ସୁଖକରେ କର୍ମଣି ନିଦାଘେ ମଧ୍ୟାହ୍ନସ୍ନାନାଦୌ ନାନୁଷଜ୍ଜତେ, ପ୍ରୀତିଂ ନ କରୋତ, ତତ୍ର ହେତୁଃ, ମେଧାବୀ ସ୍ଥିରବୁଦ୍ଧିଃ, ଯତ୍ର ପରପରାଭବାଦ୍ ମହଦପି ଦୁଃଖଂ ସହତେ ସ୍ୱର୍ଗାଦି ସୁଖଂ ଚ ତ୍ୟଜତି ତତ୍ର କସ୍ତେତତ୍‌ଜ୍ଞାନକଂ ସୁଖଂ ଦୁଃଖଂ ଚେତ୍ୟେବମନୁସନ୍ଧାନବାନିତ୍ୟର୍ଥଃ, ଅତଏବ ଛିନ୍ନଃ ସଂଶୟୋଽମିଥ୍ୟାଜ୍ଞାନଂ ଦୈହିକସୁଖଦୁଃଖହେତୁରୂପାଦସ୍ଥାପରଲକ୍ଷଣଂ ଯସ୍ୟ ସଃ । ୧୦ ।

ପଦବ୍ୟାଖ୍ୟା ।

ନ ଦ୍ୱେଷ୍ଟି—ଦ୍ୱେଷ କରନ୍ତି ନାହିଁ, ଅକୁଶଳଂ କର୍ମ—ଦୁଃଖଜନକ କର୍ମକୁ, କୁଶଳେ—ସୁଖଜନକ କର୍ମରେ, ନ ଅନୁଷଜ୍ଜତେ—ପ୍ରୀତି କରନ୍ତି ନାହିଁ, ତ୍ୟାଗୀ—ତ୍ୟାଗିବ୍ୟକ୍ତି, ସତ୍ତ୍ୱସମାବିଷ୍ଟଃ—ସାତ୍ତ୍ୱିକ, ମେଧାବୀ—ବୁଦ୍ଧିମାନ୍, ଛିନ୍ନସଂଶୟଃ—ସନ୍ଦେହଶୂନ୍ୟ । ୧୦ ।

ଅନୁବାଦ ।

ସାତ୍ତ୍ୱିକତ୍ୟାଗୀ, ମେଧାବୀ ହେବାରୁ ସନ୍ଦେହଶୂନ୍ୟ ହୋଇ ଦୁଃଖଜନକ କର୍ମକୁ ଦ୍ୱେଷ କରନ୍ତି ନାହିଁ, କି ସୁଖଜନକ କର୍ମରେ ପ୍ରୀତି କରନ୍ତି ନାହିଁ । ୧୦ ।

ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ ସାତ୍ତ୍ୱିକତ୍ୟାଗର ଲକ୍ଷଣ କହି, ଶ୍ରୀଭଗବାନ୍ ଏ ଶ୍ଳୋକରେ ସାତ୍ତ୍ୱିକତ୍ୟାଗିର ଲକ୍ଷଣ କହୁଅଛନ୍ତି ।

ପୂର୍ବଶ୍ଳୋକଲିଖିତ କଥା ଅନୁସାରେ ଯେଉଁମାନେ ଅଭିମାନ ଓ ଫଳକାମନା ତ୍ୟାଗ କରି କର୍ତ୍ତବ୍ୟଜ୍ଞାନରେ ନିତ୍ୟକର୍ମର ଅନୁଷ୍ଠାନ କରନ୍ତି, ସେହି ତ୍ୟାଗୀ ପୁରୁଷ କ୍ରମେ 'ସତ୍ତ୍ୱସମାବିଷ୍ଟ' ହୁଅନ୍ତି ଅର୍ଥାତ୍ ତାହାଙ୍କର ରଜଃ ଓ ତମୋଗୁଣ ହ୍ରାସ ହୋଇ ସତ୍ତ୍ୱଗୁଣର ଆଧିକ୍ୟ ହୁଏ । ସତ୍ତ୍ୱଗୁଣର ଆଧିକ୍ୟ ହେବାରୁ ସେ ମେଧାବୀ ହୁଅନ୍ତି ଅର୍ଥାତ୍ ଆତ୍ମ ଓ ଅନାତ୍ମ ବସ୍ତୁରରେ ସକ୍ଷମ ଏବଂ ଜ୍ଞାନଧାରଣାର ଉପଯୁକ୍ତ ମେଧା (ବୁଦ୍ଧି) ତାହାଙ୍କର ପ୍ରକାଶିତ ହୁଏ । ସୁତରାଂ ସେ ଛିନ୍ନସଂଶୟ ହୁଅନ୍ତି, ଅର୍ଥାତ୍ ଫଳକାମନା ତ୍ୟାଗ କରି କର୍ମ ଅନୁଷ୍ଠାନ କରୁଥିଲେ ସୁଦ୍ଧା, କୌଣସି ପ୍ରକାର ସଞ୍ଚିତ ଓ କ୍ରିୟମାଣ କର୍ମର ଫଳଭୋଗ କରିବାକୁ ହେବ କି ନାହିଁ ? ଗୁରୁଙ୍କ ନିକଟରୁ ଯେଉଁ ବେଦାନ୍ତ ବାକ୍ୟର ଅର୍ଥ ଶୁଣନ୍ତି, ତାହା ପ୍ରକୃତ କି ନା ? ଏବଂ ଗୁରୁକଥିତ ପ୍ରଣାଳୀରେ ଶ୍ରବଣ, ମନନ ଓ ନିଦିଧ୍ୟାସନାଦି କଲେ, ବ୍ରହ୍ମସାକ୍ଷାତ୍କାର ସିଦ୍ଧି ଲାଭ ହେବ କି ନାହିଁ ? ଇତ୍ୟାଦି କୌଣସି ପ୍ରକାର ସନ୍ଦେହ ତାହାଙ୍କ ମନରେ ରହେ ନାହିଁ । ଏଣୁକରି ସେ, ଦୁଃଖଜନକ (ଅର୍ଥାତ୍ ଶୀତକାଳରେ ପ୍ରାତଃସ୍ନାନାଦି) କର୍ମକୁ ଦ୍ୱେଷ କରନ୍ତି ନାହିଁ, କି ସୁଖଜନକ (ଅର୍ଥାତ୍ ଗ୍ରୀଷ୍ମକାଳରେ ମଧ୍ୟାହ୍ନ ସ୍ନାନାଦି) କର୍ମରେ ପ୍ରୀତି କରନ୍ତି ନାହିଁ ।

ଫଳକଥା ଏହି କି କର୍ତ୍ତବ୍ୟଜ୍ଞାନରେ ଶାସ୍ତ୍ରସମ୍ମତ ନିତ୍ୟକର୍ମର ଅନୁଷ୍ଠାନ କରନ୍ତି, କାହିଁରେ ଦୁଃଖ ବା ସୁଖ ମଣନ୍ତି ନାହିଁ । ୧୦ ।

ଶ୍ଳୋକଃ ।

ନ ହି ଦେହଭୃତା ଶକ୍ୟଂ, ତ୍ୟକ୍ତୁଂ କର୍ମାଣ୍ୟଶେଷତଃ ।
ଯସ୍ତୁ କର୍ମଫଳତ୍ୟାଗୀ, ସ ତ୍ୟାଗୀତ୍ୟଭିଧୀୟତେ । ୧୧ ।

Digitized by PPRACHIN, SOA

### ଅନ୍ୱୟଃ ।

ନ ହି ଦେହଭୃତା କର୍ମାଣି ଅଶେଷତଃ ତ୍ୟକ୍ତୁଂ ଶକ୍ୟଂ, ତୁ ଯଃ କର୍ମଫଳତ୍ୟାଗୀ ସଃ ତ୍ୟାଗୀ ଇତି ଅଭିଧୀୟତେ । ୧୧ ।

### ଟୀକା ।

ନନ୍ୱେବମ୍ଭୂତାତ୍ କର୍ମଫଳତ୍ୟାଗାତ୍ ବରଂ ସର୍ବକର୍ମତ୍ୟାଗଃ ତଥାସତି କର୍ମବିକ୍ଷେପାଭାବେନ ଜ୍ଞାନନିଷ୍ଠାସୁଖଂ ସମ୍ପଦ୍ୟତେ, ତତ୍ରାହ ନ ହୀତି । ଦେହଭୃତା ଦେହାଭିମାନବତା ନିଃଶେଷେଣ ସର୍ବାଣି କର୍ମାଣି ତ୍ୟକ୍ତୁଂ ନ ହି ଶକ୍ୟାନି ତଦୁକ୍ତଂ ନ ହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମକୃଦିତ୍ୟାଦିନା ତସ୍ମାତ୍ତୁ କର୍ମାଣି କୁର୍ବନ୍ନପି କର୍ମଫଳତ୍ୟାଗୀ ସ ଏବ ମୁଖ୍ୟ-ସ୍ତ୍ୟାଗୀତ୍ୟଭିଧୀୟତେ । ୧୧ ।

### ପଦବ୍ୟାଖ୍ୟା ।

ନ ହି—ନାହିଁ, ଦେହଭୃତା—ଦେହରେ ଅଭିମାନୀ ବ୍ୟକ୍ତି, ଶକ୍ୟଂ—ସମର୍ଥ ହୁଏ, ତ୍ୟକ୍ତୁଂ—ତ୍ୟାଗ କରିବାକୁ, କର୍ମାଣି—କର୍ମମାନଙ୍କୁ, ଅଶେଷତଃ—ସମ୍ପୂର୍ଣ୍ଣରୂପେ, ଯସ୍ତୁ—କିନ୍ତୁ ଯେ, କର୍ମଫଳତ୍ୟାଗୀ—କର୍ମର ଫଳ ତ୍ୟାଗ କରି ପାରନ୍ତି, ସତ୍ୟାଗୀ ଇତି ଅଭିଧୀୟତେ—ତାହାଙ୍କୁ ତ୍ୟାଗୀ ବୋଲାଯାଏ । ୧୧ ।

### ଅନୁବାଦ ।

ଦେହାଭିମାନୀ ପୁରୁଷ ସମ୍ପୂର୍ଣ୍ଣରୂପେ କର୍ମ ତ୍ୟାଗ କରିବାକୁ ସମର୍ଥ ନୁହନ୍ତି । ଅତଏବ ଯେ, କର୍ମର ଫଳତ୍ୟାଗୀ, ତାହାଙ୍କୁ ତ୍ୟାଗୀ ବୋଲାଯାଏ । ୧୧ ।

### ବିଶଦବ୍ୟାଖ୍ୟା ।

ଯେତେବେଳେ ଯାଏ ପର୍ଯ୍ୟନ୍ତ ମୁଁ ମନୁଷ୍ୟ, ମୁଁ ବ୍ରାହ୍ମଣ, ମୁଁ ଗୃହସ୍ଥ ଓ ମୁଁ କର୍ମ କରୁଅଛି, ଇତ୍ୟାଦି ଅଭିମାନ ଥିବ, ସେତେ ଦିନଯାଏ କର୍ମାଧିକାରୀ ପୁରୁଷର ହୃଦୟ ରାଗଦ୍ୱେଷାଦି ଶୂନ୍ୟ ହେବ ନାହିଁ, ସୁତରାଂ ସେ କଦାପି ସମ୍ପୂର୍ଣ୍ଣରୂପେ କର୍ମ ତ୍ୟାଗ କରିବାକୁ ସମର୍ଥ ହେବ ନାହିଁ । ଦେହାଭିମାନୀ, ଯେ କଦାପି କର୍ମ ନ କରି ରହି ପାରେ ନାହିଁ ତାହା ପୂର୍ବେ "ନ ହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମକୃତ୍" ଇତ୍ୟାଦି ବଚନରେ (୩ଅ ୫ ଶ୍ଲୋ) କୁହାଯାଇ-ଅଛି । ଏପରି ସ୍ଥଳେ, ପ୍ରକୃତ କର୍ମତ୍ୟାଗୀ ମିଳିବା ସହଜ ନୁହେ । ତଥାପି, ଯେଉଁ ଦେହାଭିମାନୀ ବ୍ୟକ୍ତି ନିତ୍ୟକର୍ମର ଅନୁଷ୍ଠାନ କରି ତାହାର ଫଳ ତ୍ୟାଗ କରି ପାରନ୍ତି, ସେ କର୍ମ କରୁଥିଲେ ସୁଦ୍ଧା, ଫଳ ତ୍ୟାଗ କରିଥିବାରୁ 'ତ୍ୟାଗୀ' ନାମର ଯୋଗ୍ୟ ହୁଅନ୍ତି । ଶ୍ରୀଭଗବାନ୍ ମଧ୍ୟ, ଏହି ଅଧ୍ୟାୟର ୨ୟ ଶ୍ଲୋକରେ କହିଅଛନ୍ତି, ଯେ ସର୍ବକର୍ମର ଫଳ ପରିତ୍ୟାଗକୁ ତ୍ୟାଗ ବୋଲାଯାଏ । ସୁତରାଂ କର୍ମ କରୁଥିଲେ ସୁଦ୍ଧା, ଫଳ ପରିତ୍ୟାଗ କରିଥିବା ବ୍ୟକ୍ତିଙ୍କୁ ତ୍ୟାଗୀ ବୋଲାଯାଏ । ୧୧ ।

### ଶ୍ଲୋକଃ ।

ଅନିଷ୍ଟମିଷ୍ଟଂ ମିଶ୍ରଂ ଚ, ତ୍ରିବିଧଂ କର୍ମଣଃ ଫଳଂ ।
ଭବତ୍ୟତ୍ୟାଗିନାଂ ପ୍ରେତ୍ୟ, ନ ତୁ ସନ୍ନ୍ୟାସିନାଂ କ୍ୱଚିତ୍ । ୧୨ ।

### ଅନ୍ୱୟଃ ।

ଅତ୍ୟାଗିନାଂ କର୍ମଣଃ ଫଳଂ ପ୍ରେତ୍ୟ ଅନିଷ୍ଟଂ, ଇଷ୍ଟଂ ଚ ମିଶ୍ରଂ ତ୍ରିବିଧଂ ଭବତି, ତୁ ସନ୍ନ୍ୟାସିନାଂ କ୍ୱଚିତ୍ ନ । ୧୨ ।

Digitized by PPRACHIN, SOA

ଦେଖ କୃଷ୍ଣ ଜାଣି, ଏପରି କୁହାଗଲା କାହିଁକି ? ପୁଣି ଏହି ଅଧ୍ୟାୟର ୨ୟ ଶ୍ଳୋକରେ କାମ୍ୟକର୍ମ ପରିତ୍ୟାଗକୁ 'ସନ୍ନ୍ୟାସ' ବୋଲି କୁହା ଯାଇଥିବାରୁ କାମ୍ୟକର୍ମ ତ୍ୟାଗ କରିବା ବ୍ୟକ୍ତି ହିଁ ଅବଶ୍ୟ ସନ୍ନ୍ୟାସୀ ହୋଇଯିବ । ତାହା ହେଲେ, ତାହାର ଆଉ ପରକାଳରେ ଫଳ-ଭୋଗର ସମ୍ଭାବନା ଥିଲା କେଉଁଠାରେ, ଯେ ତାହାର ନିଷେଧ ଦଶ ଏ ଶ୍ଳୋକରେ ଲେଖା ଗଲା ? ଏହାର ଉତ୍ତରରେ ଏତିକି ବୋଲା ଯାଇ ପାରେ, ଯେ ଏଠାରେ ସନ୍ନ୍ୟାସୀ ଶବ୍ଦର ଅର୍ଥ କର୍ମଫଳତ୍ୟାଗୀ, କିନ୍ତୁ କର୍ମତ୍ୟାଗୀ ନୁହେ । ଯେହେତୁ ଏହି ଗୀତାର ୬ଷ୍ଠ ଅଧ୍ୟାୟ ୧ମ ଶ୍ଳୋକରେ 'ଯେ କର୍ମଫଳ ବାଞ୍ଛା ନ କରି କର୍ତ୍ତବ୍ୟକର୍ମ କରେ, ତାକୁ ସନ୍ନ୍ୟାସୀ ଓ ଯୋଗୀ ବୋଲାଯାଏ' ଇତ୍ୟାଦି ଲେଖା ଅଛି । ଅତଏବ ଫଳକାମନା ପରିତ୍ୟାଗ କରି କର୍ମାନୁଷ୍ଠାନ କଲେ, ଚିତ୍ତଶୁଦ୍ଧି ହୋଇ ଶୀଘ୍ର ଆତ୍ମଜ୍ଞାନକ୍ରମେ ମୁକ୍ତି ହୋଇ ପାରେ । ୧୨ ।

ଶ୍ଳୋକଃ ।

ପଞ୍ଚୈତାନି ମହାବାହୋ, କାରଣାନି ନିବୋଧ ମେ ।
ସାଂଖ୍ୟେ କୃତାନ୍ତେ ପ୍ରୋକ୍ତାନି, ସିଦ୍ଧୟେ ସର୍ବକର୍ମଣାମ୍ ॥ ୧୩ ॥

ଅନ୍ୱୟଃ ।

ହେ ମହାବାହୋ ! ସର୍ବକର୍ମଣାଂ ସିଦ୍ଧୟେ ସାଂଖ୍ୟେ କୃତାନ୍ତେ ପ୍ରୋକ୍ତାନି ଏତାନି ପଞ୍ଚ କାରଣାନି ମେ ନିବୋଧ । ୧୩ ।

ଟୀକା ।

ନନୁ କର୍ମ କୁର୍ବତଃ କର୍ମଫଳଂ କଥଂ ନ ଭବେଦିତ୍ୟାଶଙ୍କ୍ୟ ସଙ୍ଗତ୍ୟାଗିନୋ ନିରହଙ୍କାରସ୍ୟ କର୍ମଫଳେନାସମ୍ବନ୍ଧ ଇତ୍ୟୁପପାଦୟିତୁମାହ, ପଞ୍ଚୈତାନୀତି ପଞ୍ଚଭିଃ । ସର୍ବକର୍ମଣାଂ ସିଦ୍ଧୟେ ନିଷ୍ପତ୍ତୟେ ଇମାନି ବକ୍ଷ୍ୟମାଣାନି ପଞ୍ଚ କାରଣାନି ମେ ବଚନାନ୍ନିବୋଧ ଜାନୀହି. ଯଦ୍ୱା କର୍ତ୍ତୃତ୍ୱାଭିମାନନିବୃତ୍ତ୍ୟର୍ଥମବଶ୍ୟମେତାନି ଜ୍ଞାତବ୍ୟାନି ଇତ୍ୟେବଂ ତେଷାଂ ସ୍ତୁତ୍ୟର୍ଥମେବାହ, ସାଙ୍ଖ୍ୟେଇତି, ସମ୍ୟକ୍ ଖ୍ୟାୟତେ ଜ୍ଞାୟତେ ପରମାତ୍ମା ଅନେନେତି ସାଙ୍ଖ୍ୟଂ ତତ୍ତ୍ୱଜ୍ଞାନଂ ତସ୍ମିନ୍ ପ୍ରକାଶମାନ ଆତ୍ମବୋଧଃ ସାଙ୍ଖ୍ୟଃ ତସ୍ମିନ୍ କୃତଂ କର୍ମ ଅସ୍ୟାନ୍ତଃ ସମାପ୍ତିରସ୍ମିନ୍ନିତି କୃତାନ୍ତସ୍ତସ୍ମିନ୍ । ବେଦାନ୍ତ, ସିଦ୍ଧାନ୍ତ ଇତ୍ୟର୍ଥଃ । ଯଦ୍ୱା, ସାଙ୍ଖ୍ୟେ ଗଣ୍ୟନ୍ତେ ତତ୍ତ୍ୱାନୀତି ସାଙ୍ଖ୍ୟଂ, କୃତୋ ନିର୍ଣ୍ଣୀତୋଽର୍ଥୋ ଯସ୍ମିନ୍ନିତି କୃତାନ୍ତଂ ସାଙ୍ଖ୍ୟଶାସ୍ତ୍ରମେବ ତସ୍ମିନ୍ ପ୍ରୋକ୍ତାନି ଅତଃ ସମ୍ୟଗ୍ ବୋଦ୍ଧବ୍ୟାନୀତ୍ୟର୍ଥଃ । ୧୩ ।

ପଦବ୍ୟାଖ୍ୟା ।

ପଞ୍ଚୈତାନି—ଏହି ପାଞ୍ଚଗୋଟି, ମହାବାହୋ—ହେ ଅର୍ଜ୍ଜୁନ !, କାରଣାନି—ସମସ୍ତ କାରଣ, ନିବୋଧ ମେ—ଆମଠାରୁ ଶୁଣ, ସାଂଖ୍ୟେ—ସାଂଖ୍ୟ ଶାସ୍ତ୍ରରେ, କୃତାନ୍ତେ—ସିଦ୍ଧାନ୍ତ ଅର୍ଥାତ୍ ବେଦାନ୍ତ ଶାସ୍ତ୍ରରେ, ପ୍ରୋକ୍ତାନି—କଥିତ ଅଛି, ସିଦ୍ଧୟେ—ସିଦ୍ଧି ନିମିତ୍ତ ସର୍ବକର୍ମଣାଂ—ସବୁ କର୍ମମାନଙ୍କର । ୧୩ ।

ଅନୁବାଦ ।

ହେ ମହାବାହୋ ! ସର୍ବକର୍ମର ସିଦ୍ଧି ନିମିତ୍ତ, ଏହି ପାଞ୍ଚଗୋଟି କାରଣ ସାଂଖ୍ୟ ଓ ବେଦାନ୍ତରେ ଉକ୍ତ ଅଛି, (ତାହା) ଆମଠାରୁ ଶ୍ରବଣ କର । ୧୩ ।

Digitized by PPRACHIN, SOA

ତତ୍ତ୍ୱବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ମହାବାହୁ ଅର୍ଜ୍ଜୁନ ! ନିତ୍ୟ, ନୈମିତ୍ତିକ ଓ କାମ୍ୟ ପ୍ରଭୃତି ସକଳ ପ୍ରକାର କର୍ମର ସିଦ୍ଧିପାଇଁ, ଯେଉଁ ଅଧିଷ୍ଠାନାଦି ପାଞ୍ଚ ପ୍ରକାର କାରଣ ଅଛି, ତାହା ଆମ୍ଭଠାରୁ ଶୁଣ । ତାହା ବୁଝିବା ପକ୍ଷରେ ଅତ୍ୟନ୍ତ କଠିନ ନ ହେଲେ ହେଁ, ସାବଧାନ ହୋଇ ନ ଶୁଣିଲେ, ଭ୍ରମ ହେବାର ସମ୍ଭାବନା; ଅତଏବ 'ନିବୋଧ' ଅର୍ଥାତ୍ ସାବଧାନ ହୋଇ ଶୁଣ ।

କାଳେ ଅର୍ଜ୍ଜୁନ ମନେ କରିବେ, ଯେ ପଞ୍ଚ କାରଣର ବିଷୟ ଅନ୍ୟ କୌଣସି ପ୍ରମାଣ ଯୋଗ୍ୟ ଶାସ୍ତ୍ରରେ ଅଛି କି ନାହିଁ ? ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, କି ତାହା ସାଂଖ୍ୟ ଓ ବେଦାନ୍ତଶାସ୍ତ୍ରରେ କଥିତ ଅଛି । ଅର୍ଥାତ୍ (ସାଂଖ୍ୟ) ଚତୁର୍ବିଂଶତିତତ୍ତ୍ୱର ସଂଖ୍ୟା ଯେଉଁ ଶାସ୍ତ୍ରରେ ପ୍ରଥମରେ ଲେଖା ହୋଇଅଛି ଓ (କୃତାନ୍ତ)—ସେମାନଙ୍କର ବିବରଣ ଯହିଁରେ ନିର୍ଣ୍ଣୟ କରା ହୋଇଅଛି, ସେହି ସାଂଖ୍ୟ ଶାସ୍ତ୍ରରେ ଉକ୍ତ ପାଞ୍ଚ କାରଣର ବିଷୟ କଥିତ ଅଛି; ଅଥବା (ସାଂଖ୍ୟ) ତତ୍ତ୍ୱଜ୍ଞାନରେ (କୃତାନ୍ତ) କର୍ମ ସମାପ୍ତି ବା କର୍ମତ୍ୟାଗ, ଯେଉଁ ଶାସ୍ତ୍ରରେ ବର୍ଣ୍ଣିତ ଅଛି, ସେହି ବେଦାନ୍ତ ଶାସ୍ତ୍ରରେ ଏ ପାଞ୍ଚ କାରଣର କଥା ଲେଖା ଅଛି । ଅତଏବ ତାହା ଭ୍ରାନ୍ତିଶୂନ୍ୟ ଓ ନିଃସନ୍ଦେହ, ତାହା ଆମ୍ଭଠାରୁ ଶୁଣ । ୧୩ ।

ଶ୍ଳୋକଃ ।

ଅଧିଷ୍ଠାନଂ ତଥା କର୍ତ୍ତା, କରଣଂ ଚ ପୃଥଗ୍ବିଧଂ ।
ବିବିଧାଶ୍ଚ ପୃଥକ୍ ଚେଷ୍ଟା, ଦୈବଂ ଚୈବାତ୍ର ପଞ୍ଚମଂ ॥ ୧୪ ॥

ଅନ୍ୱୟଃ ।

ଅଧିଷ୍ଠାନଂ, କର୍ତ୍ତା, ଚ ପୃଥଗ୍ବିଧଂ କରଣଂ, ତଥା ଚ ବିବିଧାଃ ପୃଥକ୍ ଚେଷ୍ଟାଃ, ଅତ୍ର ଚ ଦୈବଂ ଏବ ପଞ୍ଚମଂ । ୧୪ ।

ଟୀକା ।

ତାନ୍ୟେବାହ, ଅଧିଷ୍ଠାନମିତି । ଅଧିଷ୍ଠାନଂ ଶରୀରଂ, କର୍ତ୍ତା ତଦଭିମାନୀ ଚିଦଚିଦ୍ଗ୍ରନ୍ଥିରହଙ୍କାରଃ, ପୃଥଗ୍ବିଧମନେକପ୍ରକାରଂ କରଣଂ ଚକ୍ଷୁଃଶ୍ରୋତ୍ରାଦି ବିବିଧାଃ, କାର୍ଯ୍ୟତଃ ସ୍ୱରୂପତଶ୍ଚ ପୃଥଗ୍ଭୂତାଶ୍ଚେଷ୍ଟାଃ ପ୍ରାଣାପାନାଦୀନାଂ ବ୍ୟାପାରାଃ, ଅତ୍ର ଚୈତେଷ୍ୱେବ ପଞ୍ଚମଂ ଦୈବଂ ଚକ୍ଷୁରାଦ୍ୟନୁଗ୍ରାହକମାଦିତ୍ୟାଦି ସର୍ବପ୍ରେରକୋଽନ୍ତର୍ଯ୍ୟାମୀ ବା । ୧୪ ।

ପଦବ୍ୟାଖ୍ୟା ।

ଅଧିଷ୍ଠାନଂ—ଶରୀର, ତଥା—ସେହିପରି, କର୍ତ୍ତା—ଜଡ଼ ଓ ଚୈତନ୍ୟ ସଂଯୋଗଜନିତ ଅହଙ୍କାର, କରଣଂ—ଓ ଇନ୍ଦ୍ରିୟମାନେ, ପୃଥଗ୍ବିଧଂ—ଭିନ୍ନ ଭିନ୍ନ ପ୍ରକାର, ବିବିଧାଃ ଚ—ନାନାପ୍ରକାର, ପୃଥକ୍—ଭିନ୍ନ ଭିନ୍ନ ପ୍ରକାରର, ଚେଷ୍ଟା—ପ୍ରାଣ ଓ ଅପାନାଦି ବାୟୁର କାର୍ଯ୍ୟ, ଦୈବଂ ଚ ଏବ—ପୁଣି ଦୈବମଧ୍ୟ, ଅତ୍ର—ଏମାନଙ୍କରେ, ପଞ୍ଚମଂ—ପଞ୍ଚମ ଅଟେ । ୧୪ ।

ଅନୁବାଦ ।

ଶରୀର, ଅହଙ୍କାର, ଭିନ୍ନ ଭିନ୍ନ ଇନ୍ଦ୍ରିୟ, ନାନାପ୍ରକାର ଚେଷ୍ଟା ଓ ଦୈବ ଏହି ପାଞ୍ଚଟି କର୍ମସିଦ୍ଧି ବିଷୟରେ (କାରଣ ଅଟନ୍ତି) । ୧୪ ।

Digitized by PPRACHIN, SOA

ଵଙ୍ଗଦବ୍ୟାଖ୍ୟା ।

* ପଞ୍ଚୀକୃତ ପଞ୍ଚମହାଭୂତର କାର୍ଯ୍ୟସ୍ୱରୂପ ଓ ଇଚ୍ଛା, ଦ୍ୱେଷ, ସୁଖ, ଦୁଃଖ, ଚେତନା ଇତ୍ୟାଦି ଧର୍ମ ପ୍ରକାଶର କ୍ଷେତ୍ରସ୍ୱରୂପ, ଯେ ସ୍ଥୂଳ ଶରୀର, ତାହାକୁ 'ଅଧିଷ୍ଠାନ' ବୋଲାଯାଏ । ଅପଞ୍ଚୀକୃତ ପଞ୍ଚମହାଭୂତର କାର୍ଯ୍ୟସ୍ୱରୂପ , ଜ୍ଞାନଶକ୍ତି ପ୍ରଧାନ ଓ 'ମୁଁ କର୍ତ୍ତା' ଇତ୍ୟାଦି ଅଭିମାନ ଯୁକ୍ତ, ଯେ ଅହଙ୍କାର, ତାକୁ ' କର୍ତ୍ତା ' ବୋଲି ଏ ସ୍ଥଳରେ ଲେଖା ଯାଇଅଛି । ସେହି ଅହଙ୍କାର ଅନ୍ତଃକରଣ, ବୁଦ୍ଧି ଓ ବିଜ୍ଞାନ ଇତ୍ୟାଦି ନାମରେ ମଧ୍ୟ, କଥିତ ହୁଏ । ଜୀବର ଭ୍ରମ ହେତୁରୁ ଆତ୍ମା ସହିତରେ ସେହି ଅହଙ୍କାରର ଏକତା ଧାରଣା ବୋଧ ହୁଏ । ସୁତରାଂ ଅହଙ୍କାରନିଷ୍ଠ କର୍ତ୍ତୃତ୍ୱାଦି ଧର୍ମ ମଧ୍ୟ, ଆତ୍ମାଠାରେ ଆରୋପିତ ହୁଏ ।

ଅଧିଷ୍ଠାନ ଓ କର୍ତ୍ତା ଏ ଦୁଇ ଶବ୍ଦ ମଧ୍ୟରେ ଥିବା 'ତଥା' ଶବ୍ଦଦ୍ୱାରା, କର୍ତ୍ତା ଯେ, ସେ ଅଧିଷ୍ଠାନ ପରି ଅନାତ୍ମ ପଦାର୍ଥ ଓ ସ୍ୱପ୍ନଦୃଷ୍ଟ ପଦାର୍ଥ ପରି ମାୟାକଳ୍ପିତ ବୋଲି ସୂଚିତ ହେଉଅଛି ।

ଅପଞ୍ଚୀକୃତ ପଞ୍ଚମହାଭୂତରୁ ଉତ୍ପନ୍ନ ଓ ଶବ୍ଦାଦି ବିଷୟ ବୋଧର ସାଧନସ୍ୱରୂପ ଶ୍ରୋତ୍ରାଦି-ଇନ୍ଦ୍ରିୟମାନଙ୍କୁ କରଣ ବୋଲାଯାଏ । ସେହି କରଣ ପଞ୍ଚକର୍ମେନ୍ଦ୍ରିୟ ଓ ପଞ୍ଚଜ୍ଞାନେନ୍ଦ୍ରିୟ ଏବଂ ମନ ଓ ବୁଦ୍ଧି ଏହି ଦ୍ୱାଦଶ ପ୍ରକାରରେ ଭିନ୍ନ ଭିନ୍ନ ହୁଏ । ମନ, ବୁଦ୍ଧି, ଚିତ୍ତ ଓ ଅହଙ୍କାର ଏମାନ ଏକ ଅନ୍ତଃକରଣର ନାମ ବୋଲି ଶାସ୍ତ୍ରରେ ଉକ୍ତ ଥିଲେ ହେଁ, କରଣ ମଧ୍ୟରେ ଗଣା ହୋଇ-ଥିବା ମନ ଓ ବୁଦ୍ଧି ଏହି ଦୁଇଟି, ଅନ୍ତଃକରଣସ୍ୱରୂପ ଅହଙ୍କାରର ବୃତ୍ତି ଅଟନ୍ତି । ଉକ୍ତ ବୃତ୍ତିବିଶିଷ୍ଟ, ଯେ ଅହଙ୍କାର, ସେ କେବଳ କର୍ତ୍ତା ଅଟେ, କରଣ ନୁହେଁ, କିନ୍ତୁ ଚେତନାର ଆଶ୍ରୟ ବସ୍ତୁ ସମାନ ଅଟେ । 'କରଣଂ ଚ' ଏହି ପଦର ଶେଷରେ ଥିବା ଚକାରଦ୍ୱାରା କରଣ ସମୁଦାୟ ମଧ୍ୟ, ସ୍ଥୂଳଶରୀର ଓ ଅହଙ୍କାର ପରି ଅନାତ୍ମ, ଭୌତିକ ଓ କଳ୍ପିତ ପଦାର୍ଥ ହିଁବାର ସୂଚିତ ହେଉଅଛି ।

ପ୍ରତ୍ୟେକ ମହାଭୂତକୁ ପ୍ରଥମରେ ସମାନ ଦୁଇଭାଗ କର । ତାହାର ଏକ ଭାଗକୁ ପୁଣି ଚାରି ସମାନ ଭାଗ କରି ଅପର ଚାରି ମହାଭୂତରେ ମିଶାଅ । ଏହିପରି ପଞ୍ଚମହାଭୂତକୁ ବିଭକ୍ତ ଓ ଯୁକ୍ତ କଲେ 'ପଞ୍ଚୀକୃତ' କରାହେଲା । ସେହି ପଞ୍ଚୀକୃତ ପଞ୍ଚ ମହାଭୂତଦ୍ୱାରା ଜଗତର ଯାବତୀୟ ପଦାର୍ଥ ନିର୍ମିତ ହୋଇଅଛି । ପଞ୍ଚୀକୃତ 'ଅକାଶ'ରେ ଅକାଶ ଭାଗ ଟ ୦ ୳, ବାୟୁ ଟ ୦ ୶, ଅଗ୍ନି ଟ ୦ ୶, ଜଳ ଟ ୦ ୶ ଓ ପୃଥିବୀ ଟ ୦ ୶ । ସେହିପରି ପଞ୍ଚୀକୃତ 'ବାୟୁରେ' ବାୟୁ ଟ ୦ ୳, ଅକାଶ ଟ ୦ ୶, ଅଗ୍ନି ଟ ୦ ୶, ଜଳ ଟ ୦ ୶ ଓ ପୃଥିବୀ ଟ ୦ ୶ । ପଞ୍ଚୀକୃତ 'ଅଗ୍ନିରେ' ଅଗ୍ନି ଟ ୦ ୳, ଜଳ ଟ ୦ ୶, ପୃଥିବୀ ଟ ୦ ୶, ଅକାଶ ଟ ୦ ୶ ଓ ବାୟୁ ଟ ୦ ୶ । ପଞ୍ଚୀକୃତ 'ଜଳରେ' ଜଳ ଟ ୦ ୳, ପୃଥିବୀ ଟ ୦ ୶, ଅକାଶ ଟ ୦ ୶, ବାୟୁ ଟ ୦ ୶ ଓ ଅଗ୍ନି ଟ ୦ ୶ । ସେହିପରି ପଞ୍ଚୀକୃତ 'ପୃଥିବୀରେ' ପୃଥିବୀ ଟ ୳, ଅକାଶ ଟ ୦ ୶, ବାୟୁ ଟ ୦ ୶, ଅଗ୍ନି ଟ ୦ ୶ ଓ ଜଳ ଟ ୦ ୶ ଅଛି ।

ଅପଞ୍ଚୀକୃତ ଅବସ୍ଥାରେ ପଞ୍ଚ ମହାଭୂତ ସୂକ୍ଷ୍ମ ଓ ଇନ୍ଦ୍ରିୟ ସ୍ୱରୂପରେ ଥାନ୍ତି ବୋଲି, ସବୁ ଇନ୍ଦ୍ରିୟରେ ସମସ୍ତେ ପ୍ରକାଶିତ ହୁଅନ୍ତି ନାହିଁ , ଅର୍ଥାତ୍ ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଟିଏ ଇନ୍ଦ୍ରିୟ, ନିଜ ନିଜ ଅଂଶରୁ ଉତ୍ପନ୍ନ ଇନ୍ଦ୍ରିୟଦ୍ୱାରା ପ୍ରକାଶିତ ହୁଅନ୍ତି ।

ଅକାଶର ସତ୍ତ୍ୱଗୁଣର ଭାଗ 'ଶ୍ରୋତ୍ର' ଓ ରଜୋଗୁଣର ଭାଗ 'ବାକ୍' ଇନ୍ଦ୍ରିୟ ଅଟେ । ଶ୍ରୋତ୍ରେନ୍ଦ୍ରିୟ ଶବ୍ଦକୁ ଶ୍ରବଣ କରେ ଓ ବାକ୍ ଇନ୍ଦ୍ରିୟ ଶବ୍ଦକୁ ପ୍ରକାଶ କରେ । ଶ୍ରୋତ୍ର ଜ୍ଞାନେନ୍ଦ୍ରିୟ ଓ ବାକ୍ କର୍ମେନ୍ଦ୍ରିୟ ଅଟେ । ଏ ଦୁହିଙ୍କର ମିତ୍ରତା ଅଛି ।

Digitized by PPRACHIN, SOA

କ୍ରିୟାଶକ୍ତି ପ୍ରଧାନ, ଅପଞ୍ଚୀକୃତ ପଞ୍ଚମହାଭୂତର କାର୍ଯ୍ୟସ୍ୱରୂପ ଓ ବାୟୁସ୍ୱରୂପରେ ଭଣିତ, ଯେ କ୍ରିୟାରୂପ ପ୍ରାଣାଦ, ତାହାର କାର୍ଯ୍ୟକୁ ଚେଷ୍ଟା ବୋଲାଯାଏ । ସେ ଚେଷ୍ଟା ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ ଏବଂ ନାଗ, କୂର୍ମ, କୃକର, ଦେବଦତ୍ତ ଓ ଧନଞ୍ଜୟ ଇତ୍ୟାଦ ପୃଥକ୍ କାର୍ଯ୍ୟଭେଦରେ ନାନା ପ୍ରକାର । ପଞ୍ଚଜ୍ଞାନେନ୍ଦ୍ରିୟ, ପଞ୍ଚକର୍ମେନ୍ଦ୍ରିୟ, ପଞ୍ଚପ୍ରାଣ ଓ ମନ ଏବଂ ବୁଦ୍ଧି ଏହି ସତରଟୀ ଅପଞ୍ଚୀକୃତ, ପଞ୍ଚମହାଭୂତର ତତ୍ତ୍ୱ ଅଟନ୍ତି ।

'ଦୈବଂଚୈବାତ୍ର' ପଦର ଶେଷରେ ଥିବା ଚକାରଦ୍ୱାରା ପୂର୍ବୋକ୍ତ ଅଧିଷ୍ଠାନ, କର୍ତ୍ତା ଓ କରଣ ପର ପ୍ରାଣାଦ ଚେଷ୍ଟା ମଧ୍ୟ ଅନାତ୍ମ, ଭୌତିକ ଓ କଳ୍ପିତ ବୋଲି ପ୍ରକାଶିତ ହେଲା ।

ଯେଉଁସବୁ ଦେବତାଙ୍କ ଅନୁଗ୍ରହରେ ପୂର୍ବୋକ୍ତ କାରଣମାନଙ୍କରୁ କାର୍ଯ୍ୟ ନିଷ୍ପତ୍ତି ହୁଏ, ସେହି ଦେବତାମାନଙ୍କର ଶକ୍ତିକୁ 'ଦୈବ' ବୋଲାଯାଏ । ତନ୍ମଧ୍ୟରେ ଶରୀରରୂପ ଅଧିଷ୍ଠାନର ଦେବତା, ପୃଥିବୀ ଓ କର୍ତ୍ତୃତ୍ୱାଭିମାନୀ କର୍ତ୍ତାରୂପ ଅହଂକାରର ଦେବତା ରୁଦ୍ର ଅଟନ୍ତି । ସେହିପରି ଶ୍ରୋତ୍ର, ତ୍ୱକ୍, ଚକ୍ଷୁ, ଜିହ୍ୱା ଓ ଘ୍ରାଣ ଏହି ପଞ୍ଚ ଜ୍ଞାନେନ୍ଦ୍ରିୟର ଦେବତା ଯଥାକ୍ରମେ ଦିଗ, ବାୟୁ, ସୂର୍ଯ୍ୟ, ବରୁଣ ଓ ଅଶ୍ୱିନୀକୁମାରଦ୍ୱୟ ଏବଂ ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ ଏହି ପଞ୍ଚ କର୍ମେନ୍ଦ୍ରିୟର ଦେବତା ଯଥାକ୍ରମେ ଅଗ୍ନି, ଇନ୍ଦ୍ର, ଉପେନ୍ଦ୍ର କିମ୍ବା ବାମନ, ମିତ୍ର ଅଥବା ଯମ ଓ ପ୍ରଜାପତି । ମନର ଦେବତା ଚନ୍ଦ୍ର ଓ ବୁଦ୍ଧିର ଦେବତା ବୃହସ୍ପତି କିମ୍ବା ବ୍ରହ୍ମା ଅଟନ୍ତି । ପୁଣି ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ ଏହି ପଞ୍ଚପ୍ରାଣର ଦେବତା ଯଥାକ୍ରମେ ସଦ୍ୟୋଜାତ, ବାମଦେବ, ଅଘୋର, ତତ୍ପୁରୁଷ ଓ ଈଶାନ ।

ନାଗ, କୂର୍ମ ପ୍ରଭୃତି ବାୟୁ, ପ୍ରାଣ, ଅପାନ ପ୍ରଭୃତିର ଅନ୍ତର୍ଗତ ବୋଲି, ତାଙ୍କର ସ୍ୱତନ୍ତ୍ର ଦେବତା ନାହାନ୍ତି; ସେହି ପୂର୍ବୋକ୍ତ ସଦ୍ୟୋଜାତ ଓ ବାମଦେବ ପ୍ରଭୃତହିଁ ତାଙ୍କର ଦେବତା ଅଟନ୍ତି ।

---

ବାୟୁର ସତ୍ତ୍ୱଗୁଣର ଭାଗ 'ତ୍ୱକ୍' ଇନ୍ଦ୍ରିୟ ଓ ରଜୋଗୁଣର ଭାଗ 'ହସ୍ତ' ଇନ୍ଦ୍ରିୟ ଅଟେ । ତ୍ୱକ୍‌ଦ୍ୱାରା ସ୍ପର୍ଶ ଓ ହସ୍ତଦ୍ୱାରା ଗ୍ରହଣ କରଯାଏ । ତ୍ୱକ୍ ଜ୍ଞାନେନ୍ଦ୍ରିୟ ଓ ହସ୍ତ କର୍ମେନ୍ଦ୍ରିୟ ଅଟେ । ଏ ଦୁହିଙ୍କର ମିତ୍ରତା ଅଛି ।

ତେଜର ସତ୍ତ୍ୱଗୁଣର ଭାଗ 'ଚକ୍ଷୁ' ଓ ରଜୋଗୁଣର ଭାଗ 'ପାଦ' ଅଟେ । ଚକ୍ଷୁ ରୂପ ଦର୍ଶନ କରେ ଓ ପାଦ ତାହା ନିକଟକୁ ଗମନ କରେ । ଚକ୍ଷୁ ଜ୍ଞାନେନ୍ଦ୍ରିୟ ଓ ପାଦ କର୍ମେନ୍ଦ୍ରିୟ ଅଟେ । ସେ ଦୁହିଙ୍କର ମିତ୍ରତା ଅଛି ।

ଜଳର ସତ୍ତ୍ୱଗୁଣର ଭାଗ 'ଜିହ୍ୱା' ଓ ରଜୋଗୁଣର ଭାଗ 'ଉପସ୍ଥ' ଅଟେ । ଜିହ୍ୱାଦ୍ୱାରା ରସ ଗ୍ରହଣ ହୁଏ ଓ ଉପସ୍ଥଦ୍ୱାରା ତ୍ୟାଗ ହୁଏ । ଜିହ୍ୱା ଜ୍ଞାନେନ୍ଦ୍ରିୟ ଓ ଉପସ୍ଥ କର୍ମେନ୍ଦ୍ରିୟ ଅଟେ । ଏ ଦୁହିଙ୍କର ମିତ୍ରତା ଅଛି ।

ପୃଥିବୀର ସତ୍ତ୍ୱଗୁଣର ଭାଗ 'ଘ୍ରାଣ' ଓ ରଜୋଗୁଣର ଭାଗ 'ଗୁଦ' ଅଟେ । ଘ୍ରାଣ ଗନ୍ଧ ଗ୍ରହଣ କରେ ଓ ଗୁଦ ଗନ୍ଧ ତ୍ୟାଗ କରେ । ଘ୍ରାଣ ଜ୍ଞାନେନ୍ଦ୍ରିୟ ଓ ଗୁଦ କର୍ମେନ୍ଦ୍ରିୟ ଅଟେ । ଏ ଦୁହିଙ୍କର ମିତ୍ରତା ଅଛି ।

ପୃଥିବ୍ୟାଦି ପଞ୍ଚଭୂତର ରଜୋଗୁଣର ଅଂଶ ମିଳିତହୋଇ ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ ଏହି ପଞ୍ଚ ପ୍ରାଣ ହୋଇଅଛନ୍ତି । ଏବଂ ସେହି ପୃଥିବ୍ୟାଦି ପଞ୍ଚଭୂତର ସତ୍ତ୍ୱଗୁଣ ମିଳିତ ହୋଇ ଅନ୍ତଃକରଣ ହୋଇଅଛି । ସେହି ଅନ୍ତଃକରଣ ମନ ଓ ବୁଦ୍ଧି ନାମରେ ଖ୍ୟାତ ଅଟେ । ଚିତ୍ତ ଓ ଅହଂକାର ଏ ଦୁଇଟି ମନ ଓ ବୁଦ୍ଧି ଏ ଦୁହିଙ୍କର ଅନ୍ତର୍ଗତ ଅଟନ୍ତି ।

ଏହିପରି ଅପଞ୍ଚୀକୃତ ପଞ୍ଚମହାଭୂତର କାର୍ଯ୍ୟ ସ୍ୱରୂପ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ଓ ମନ ଏବଂ ବୁଦ୍ଧି ଏହି ସପ୍ତଦଶତତ୍ତ୍ୱର ସଂକ୍ଷେପ-ବିବରଣ ଦିଆଗଲା ।

Digitized by PPRACHIN, SOA

"ଦୈବ ଚ" ପଦର ଚକାର ଦ୍ୱାରା ଦୈବଶକ୍ତି ଅନାମ୍ନ, ଓ କଳ୍ପିତ ଥିବାର ସୂଚିତ ହେଉଅଛି ।

କୌଣସି୨ ଟୀକାକାର ଧର୍ମ ଓ ଅଧର୍ମକୁ ଦୈବ ବୋଲି ଗ୍ରହଣ କରଅଛନ୍ତି । ୧୪ ।

ଶ୍ଳୋକଃ ।

ଶରୀରବାଙ୍ମନୋଭିର୍ଯତ୍, କର୍ମ ପ୍ରାରଭତେ ନରଃ ।
ନ୍ୟାଯ୍ୟଂ ବା ବିପରୀତଂ ବା, ପଞ୍ଚୈତେ ତସ୍ୟ ହେତବଃ । ୧୫ ।

ଅନ୍ୱୟଃ ।

ନରଃ ଶରୀରବାଙ୍ମନୋଭିଃ ନ୍ୟାଯ୍ୟଂ ବା ବିପରୀତଂ ବା ଯତ୍ କର୍ମ ପ୍ରାରଭତେ, ଏତେ ପଞ୍ଚ ତସ୍ୟ ହେତବଃ (ସ୍ୟୁଃ) । ୧୫ ।

ଟୀକା ।

ଏତେଷାମେବ ସର୍ବକର୍ମହେତୁତ୍ୱମାହ, ଶରୀରେତି, ଯଥୋକ୍ତୈଃ ପଞ୍ଚଭିଃ ପ୍ରାରଭ୍ୟମାଣଂ କର୍ମ ତ୍ରିତ୍ୱେବୋକ୍ତଶରୀରବାଙ୍ମନୋଭିରଭିବ୍ୟକ୍ତଂ ଶାରୀରଂ ବାଚିକଂ ମାନସଂ ଚ ତ୍ରିବିଧଂ କର୍ମେତି ପ୍ରସିଦ୍ଧଂ, ଶରୀରାଦିଭିର୍ଯତ୍ କର୍ମ ଧର୍ମ୍ୟମଧର୍ମ୍ୟଂ ବା କରୋତି ନରସ୍ତସ୍ୟ ସର୍ବସ୍ୟ କର୍ମଣ ଏତେ ପଞ୍ଚ ହେତବଃ । ୧୫ ।

ପଦବ୍ୟାଖ୍ୟା ।

ଶରୀରବାଙ୍ମନୋଭିଃ—ଦେହ, ବଚନ ଓ ମନ ଏମାନଙ୍କଦ୍ୱାରା, ଯତ୍ କର୍ମ—ଯେଉଁ୨ କର୍ମକୁ, ପ୍ରାରଭତେ—ଆରମ୍ଭ କରେ, ନରଃ—ମନୁଷ୍ୟ, ନ୍ୟାଯ୍ୟଂ ବା—ନ୍ୟାୟସଙ୍ଗତ ହେଉ, ବିପରୀତଂ ବା—ଅଥବା ଅନ୍ୟାୟସଙ୍ଗତ ହେଉ, ପଞ୍ଚ ଏତେ—ଏହି ଅଧିଷ୍ଠାନାଦି ପାଞ୍ଚ, ତସ୍ୟ—ସେହି କର୍ମର, ହେତବଃ—କାରଣ ଅଟନ୍ତି । ୧୫ ।

ଅନୁବାଦ ।

ଶରୀର, ବଚନ ଓ ମନ ଏମାନଙ୍କଦ୍ୱାରା ମନୁଷ୍ୟ ଧର୍ମସଙ୍ଗତ ଅଥବା ଅଧର୍ମସଙ୍ଗତ ଯେଉଁ୨ କର୍ମ ଆରମ୍ଭ କରେ, ଏହି (ଅଧିଷ୍ଠାନାଦି) ପାଞ୍ଚ, ତାହାର ହେତୁ ଅଟନ୍ତି । ୧୫ ।

ବିଶଦବ୍ୟାଖ୍ୟା ।

ଜଗତରେ ଯେତେ ପ୍ରକାର କର୍ମ ଅଛି, ତାହା, ଶାରୀରିକ ଓ ମାନସିକ ଏବଂ ବାଚନିକ ଏହି ତିନପ୍ରକାରରେ ପ୍ରସିଦ୍ଧ ଅଟେ । ତନ୍ମଧ୍ୟରୁ ଶରୀର ବା ଅଧିଷ୍ଠାନର ପ୍ରଧାନତା ଯେଉଁ କର୍ମରେ ଥାଏ, ତାହାକୁ ଶାରୀରିକ ଏବଂ ମନ ଓ ବଚନ ଅର୍ଥାତ୍ କରଣର ଆଧିକ୍ୟ, ଯହିଁରେ ଥାଏ, ତାହାକୁ ମାନସିକ ଓ ବାଚନିକ ବୋଲାଯାଏ, ପୁଣି ଶରୀର, ମନ,ଓ ବଚନଦ୍ୱାରା କୃତ ସମସ୍ତ କର୍ମ, ସତ୍ ଓ ଅସତ୍ ଅର୍ଥାତ୍ ନ୍ୟାଯ୍ୟ ଓ ବିପରୀତ ଏହି ଦୁଇ ପ୍ରକାରରେ ବିଭକ୍ତ; ସେଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ ଶରୀର, ମନ ଓ ବଚନଦ୍ୱାରା ମନୁଷ୍ୟ, ସତ୍ ବା ଅସତ୍ ଯେତେ କର୍ମ ଆରମ୍ଭ କରନ୍ତି, ସେ ସବୁ କର୍ମର ଏହି ପୂର୍ବୋକ୍ତ ଅଧିଷ୍ଠାନାଦି ପାଞ୍ଚହିଁ କାରଣ ଅଟନ୍ତି । କେହି୨ ଏପରି ଆପତ୍ତି କରନ୍ତି କି ସବୁକର୍ମର ହେତୁ ଯଦି ଅଧିଷ୍ଠାନାଦି ପାଞ୍ଚ ହେଲା, ତେବେ ଏ ଶ୍ଳୋକରେ ଶାରୀରିକ, ମାନସିକ ଓ ବାଚନିକ ଏ ତିନପ୍ରକାର କର୍ମ ଲେଖାଗଲା କାହିଁକି ? ତହିଁର ଉତ୍ତରରେ ଏକଥା କୁହାଯାଇ ପାରେ, ଯେ 'ଶରୀର'



Digitized by PPRACHIN, SOA

ଶବ୍ଦଦ୍ୱାରା ଅଧିଷ୍ଠାନ, 'ବାଙ୍ମନଃ' ଶବ୍ଦଦ୍ୱାରା କରଣ ଓ 'ପ୍ରାରଭତେ' ପଦଦ୍ୱାରା ଚେଷ୍ଟା, 'ନରଃ' ଶବ୍ଦଦ୍ୱାରା କର୍ତ୍ତା ଓ 'ନ୍ୟାଯ୍ୟଂ ବା ବିପରୀତଂ ବା' ଏହି ବାକ୍ୟଦ୍ୱାରା ଧର୍ମ ଓ ଅଧର୍ମରୂପ ଦୈବ ଏଠାରେ କାରଣରୂପେ ଗୃହୀତ ହୋଇଅଛନ୍ତି ।

ଫଳକଥା ଏହି କି ବେଦବିହିତ ଅଗ୍ନିହୋତ୍ରାଦି ଧର୍ମ ସଙ୍ଗତ କର୍ମ, ଓ ଶାସ୍ତ୍ର ନିଷିଦ୍ଧ ହିଂସାଦି ବିପରୀତ କର୍ମ ଓ ନିଃଶ୍ୱାସ ପ୍ରଶ୍ୱାସାଦି ସ୍ୱାଭାବିକ କର୍ମ, ଯାହାକିଛି ମନୁଷ୍ୟ ଆରମ୍ଭ କରୁଅଛନ୍ତି, ଅଧିଷ୍ଠାନ, କର୍ତ୍ତା, କରଣ ଓ ଚେଷ୍ଟା ଏବଂ ଦୈବ ଏହି ପାଞ୍ଚିଟିଦ୍ୱାରା ତାହା ନିଷ୍ପନ୍ନ ହୁଏ, ଏହି ପାଞ୍ଚଟିରୁ ଗୋଟିଏ ନ ଥିଲେ, କୌଣସି କର୍ମ ନିଷ୍ପନ୍ନ ହେବ ନାହିଁ । ୧୫ ।

ଶ୍ଳୋକଃ ।

ତତ୍ରୈବଂ ସତି କର୍ତ୍ତାରମାତ୍ମାନଂ କେବଳଂ ତୁ ଯଃ ।
ପଶ୍ୟତ୍ୟକୃତବୁଦ୍ଧିତ୍ୱାନ୍ନ ସ ପଶ୍ୟତି ଦୁର୍ମତିଃ । ୧୬ ।

ଅନ୍ୱୟଃ ।

ଏବଂ ସତି ତତ୍ର ଯଃ କେବଳଂ ଆତ୍ମାନଂ କର୍ତ୍ତାରଂ ପଶ୍ୟତି, ଅକୃତବୁଦ୍ଧିତ୍ୱାତ୍ ସଃ ଦୁର୍ମତିଃ ନ ପଶ୍ୟତି । ୧୬ ।

ଟୀକା ।

ତତଃ କିମତି ଆହ । ତତ୍ରେତି । ତତ୍ର ସର୍ବସ୍ମିନ୍ କର୍ମଣି ଏତେ ପଞ୍ଚ ହେତବ ଇତ୍ୟେବଂ ସତି କେବଳଂ ନିରୁପାଧି-ମସଙ୍ଗମାତ୍ମାନଂ ଯଃ କର୍ତ୍ତାରଂ ପଶ୍ୟତି, ଶାସ୍ତ୍ରାଚାର୍ଯ୍ୟୋପଦେଶାଭ୍ୟାମସଂସ୍କୃତବୁଦ୍ଧିତ୍ୱାତ୍ ଦୁର୍ମତିରସୌ ସମ୍ୟକ୍ ନ ପଶ୍ୟତି । ୧୬ ।

ପଦବ୍ୟାଖ୍ୟା ।

ତତ୍ର—ସେ ବିଷୟରେ, ଏବଂ ସତି—ଏପରି ପ୍ରମାଣ ହେବାଠାରେ । କର୍ତ୍ତାରଂ—କର୍ତ୍ତାରୂପରେ, ଆତ୍ମାନଂ-କେବଳଂ—ଆତ୍ମାକୁ କେବଳ, ତୁ—କିନ୍ତୁ, ଯଃ ପଶ୍ୟତି—ଯେ, ଅବଲୋକନ କରେ, ଅକୃତବୁଦ୍ଧିତ୍ୱାତ୍—ଶାସ୍ତ୍ର ଉପଦେଶ ଓ ଗୁରୁ ବାକ୍ୟଦ୍ୱାରା ତାହାର ବୁଦ୍ଧି ମାର୍ଜିତ ହୋଇ ନ ଥିବାରୁ, ନ ସଃ ପଶ୍ୟତି—ସମ୍ପୂର୍ଣ୍ଣରୂପେ ସେ, ଜାଣିପାରେ ନାହିଁ, ଦୁର୍ମତିଃ—ମୂଢ଼ । ୧୬ ।

ଅନୁବାଦ ।

କିନ୍ତୁ ସେ ବିଷୟରେ ଏପରି ପ୍ରମାଣ ଥିବା ସ୍ଥଳେ, ଯେଉଁ ବ୍ୟକ୍ତି କେବଳ ଆତ୍ମାକୁ କର୍ତ୍ତାରୂପରେ ଅବଲୋକନ କରେ, ସେହି ମୂଢ଼, ଅମାର୍ଜିତବୁଦ୍ଧି ହେତୁରୁ ସମ୍ପୂର୍ଣ୍ଣରୂପେ ଜାଣିପାରେ ନାହିଁ । ୧୬ ।

ବିଶଦବ୍ୟାଖ୍ୟା ।

ସର୍ବପ୍ରକାର କର୍ମର ହେତୁ, ଯେ ଅଧିଷ୍ଠାନାଦି ପାଞ୍ଚଟି, ତାହା ପୂର୍ବଶ୍ଳୋକରେ ବୁଝାଇ ଦିଆ ଯାଇଅଛି । ଏପରି ଉତ୍ତମ ପ୍ରମାଣ ଥିବା ସ୍ଥଳେ, ଯେଉଁ ବ୍ୟକ୍ତି ଆତ୍ମାକୁ କେବଳ କର୍ତ୍ତାରୂପରେ ଅବଲୋକନ କରନ୍ତି, ସେବ୍ୟକ୍ତି ତତ୍ତ୍ୱଦର୍ଶୀ ନୁହନ୍ତି । କାହିଁକି ନା ସେ, ଅକୃତ-ବୁଦ୍ଧି, ଅର୍ଥାତ୍ ଗୁରୁ ଉପଦେଶ ଓ ଶାସ୍ତ୍ର ଜ୍ଞାନଦ୍ୱାରା ତାହାଙ୍କର ବୁଦ୍ଧି ପରିମାର୍ଜିତ ହୋଇ ନ ଥାଏ । ତାହାଙ୍କର ଗୁରୁଙ୍କ ନିକଟକୁ ନ ଯିବା, କିମ୍ବା ବେଦାନ୍ତାଦି ଶାସ୍ତ୍ର ପାଠ ନ କରିବାର

Digitized by PPRACHIN, SOA

କାରଣ ଏହି, ଯେ ସେ 'ଦୁର୍ମତି', ଅର୍ଥାତ୍ ପାପକର୍ମ ହେତୁରୁ ତାହାଙ୍କର ବୁଦ୍ଧି ଅଜ୍ଞାନରୂପ ମଳଦ୍ୱାରା କଠିନଭାବରେ ଆବୃତ ହୋଇ ଥିବାରୁ ସେ, ଗୁରୁ ବାକ୍ୟରେ ବା ଶାସ୍ତ୍ରବଚନରେ ଶ୍ରଦ୍ଧା କରନ୍ତି ନାହିଁ, ସୁତରାଂ ଅମାର୍ଜିତବୁଦ୍ଧି ହୋଇ ନିଃସଙ୍ଗ ଓ ନିଷ୍କ୍ରିୟ ଆତ୍ମାଙ୍କୁ କର୍ତ୍ତୃରୂପରେ ଅବଲୋକନ କରନ୍ତି । ଯେପରି ଅଜ୍ଞଲୋକ ଜଳରେ ସୂର୍ଯ୍ୟପ୍ରତିବିମ୍ବ ଦେଖି ତାକୁ ପ୍ରକୃତ ସୂର୍ଯ୍ୟ ମନେ କରେ ଓ ଜଳର ଚଞ୍ଚଳତା ହେତୁ ପ୍ରତିବିମ୍ବର ଚଳନ ଦେଖି ସୂର୍ଯ୍ୟଙ୍କୁ ଚଞ୍ଚଳ ମନେ କରେ; ସେହିପରି ମୂଢ଼ ଓ ଅମାର୍ଜିତବୁଦ୍ଧି ବ୍ୟକ୍ତି ଆତ୍ମାର ସ୍ୱରୂପ ନ ଜାଣିବା ଯୋଗୁଁ, ଆତ୍ମାଙ୍କୁ ଅଧିଷ୍ଠାନାଦିର କର୍ତ୍ତୃରୂପରେ ଅବଲୋକନ କରେ । ସୁତରାଂ ତାହାର ପ୍ରକୃତ ଆତ୍ମଦର୍ଶନ ହୋଇ ପାରେ ନାହିଁ । ୧୬ ।

ଶ୍ଳୋକଃ ।

ଯସ୍ୟ ନାହଂକୃତୋ ଭାବୋ, ବୁଦ୍ଧିର୍ଯସ୍ୟ ନ ଲିପ୍ୟତେ ।
ହତ୍ୱାପି ସ ଇମାଂଲ୍ଲୋକାନ୍, ନ ହନ୍ତି ନ ନିବଧ୍ୟତେ । ୧୭ ।

ଅନ୍ୱୟଃ ।

ଯସ୍ୟ ଅହଂକୃତଃ ଭାବଃ ନ, ଯସ୍ୟ ବୁଦ୍ଧିଃ ନ ଲିପ୍ୟତେ, ସଃ ଇମାନ୍ ଲୋକାନ୍ ହତ୍ୱା ଅପି ନ ହନ୍ତି, ନ ନିବଧ୍ୟତେ ।୧୭

ଟୀକା ।

ତତ୍ରହି ସୁମତଃ, ଯସ୍ୟ କର୍ମଲେପୋ ନାସ୍ତୀତ୍ୟୁକ୍ତମିତ୍ୟପେକ୍ଷାୟାମାହ । ଯସ୍ୟେତି । ଅହମିତି କୃତୋଽହଂ କର୍ତ୍ତେତ୍ୟେବଂଲକ୍ଷଣୋ ଭାବୋଽଭିପ୍ରାୟୋ ଯସ୍ୟ ନାସ୍ତି ଯଦ୍ୱା ଅହଂକୃତୋଽହଂକାରସ୍ତସ୍ୟ ଭାବଃ ସ୍ୱଭାବଃ କର୍ତ୍ତୃତ୍ୱାଭିନିବେଶୋ ଯସ୍ୟ ନାସ୍ତି ଶରୀରାଦୀନାମେବ କର୍ମକର୍ତ୍ତୃତ୍ୱାଲୋଚନାଦିତ୍ୟର୍ଥଃ, ଅତ ଏବ ଯସ୍ୟ ବୁଦ୍ଧିର୍ନ ଲିପ୍ୟତେ ଇଷ୍ଟାନିଷ୍ଟବୁଦ୍ଧ୍ୟା କର୍ମସୁ ନ ସଜ୍ଜତେ ସ ଏବମ୍ଭୂତୋ ଦେହାଦିବ୍ୟତିରିକ୍ତାତ୍ମଦର୍ଶୀ ଇମାନ୍ ଲୋକାନ୍ ସର୍ବାନପି ପ୍ରାଣିନୋ ଲୋକଦୃଷ୍ଟ୍ୟା ହତ୍ୱାପି ତତ୍କର୍ମଣା ନ ହନ୍ତି, ନ ଚ ତତ୍ଫଲୈର୍ନିବଧ୍ୟତେ ବନ୍ଧଂ ନ ପ୍ରାପ୍ନୋତି କିଂ ପୁନଃ ସତ୍ତ୍ୱଶୁଦ୍ଧିଦ୍ୱାରା ପରୋକ୍ଷଜ୍ଞାନୋତ୍ପତ୍ତିହେତୁଭୂତଂ ଧର୍ମଭୂତସ୍ୟ ବନ୍ଧାଶଙ୍କେତ୍ୟର୍ଥଃ । ତଦୁକ୍ତଂ ବ୍ରହ୍ମଣ୍ୟାଧାୟ କର୍ମାଣି ସଙ୍ଗଂ ତ୍ୟକ୍ତ୍ୱା କରୋତି ଯଃ । ଲିପ୍ୟତେ ନ ସ ପାପେନ ପଦ୍ମପତ୍ରମିବାମ୍ଭସେତି, ଭଗବଦୁକ୍ତତ୍ୱାଦିତ୍ୟର୍ଥଃ । ୧୭ ।

ପଦବ୍ୟାଖ୍ୟା ।

ଯସ୍ୟ—ଯାହାଙ୍କର, ନାହଂକୃତୋଭାବଃ—କର୍ମ କରିବାର ଅଭିମାନ ନାହିଁ, ବୁଦ୍ଧିର୍ଯସ୍ୟ—ଯାହାଙ୍କର ବୁଦ୍ଧି, ନ ଲିପ୍ୟତେ—ପାପ ବା ପୁଣ୍ୟରେ ଲିପ୍ତ ହୁଏ ନାହିଁ, ହତ୍ୱାପି—ମାରିଲେ ମଧ୍ୟ, ସଃ—ସେହି ପୁରୁଷ, ଇମାନ୍ ଲୋକାନ୍—ଏହି ସମସ୍ତ ଲୋକଙ୍କୁ, ନ ହନ୍ତି—ମାରନ୍ତି ନାହିଁ, ନ ନିବଧ୍ୟତେ—ହତ୍ୟା ଜନିତ ପାପବନ୍ଧନରେ ପଡନ୍ତି ନାହିଁ । ୧୭ ।

ଅନୁବାଦ ।

ଯାହାଙ୍କର ଅହଂକାର ନାହିଁ, ଓ ଯାହାଙ୍କର ବୁଦ୍ଧି, କାର୍ଯ୍ୟରେ ଲିପ୍ତ ହୁଏ ନାହିଁ; ସେ, ଏହି ସମସ୍ତ ଲୋକ ବିନାଶ କଲେ ହେଁ, ହତ୍ୟା କରନ୍ତି ନାହିଁ, ବା ବନ୍ଧନରେ ପଡନ୍ତି ନାହିଁ । ୧୭ ।

ତତ୍ତ୍ୱବ୍ୟାଖ୍ୟା ।

ଯେଉଁ ବ୍ୟକ୍ତି ଗୁରୁ ବାକ୍ୟଅନୁସାରେ ସାଧନଦ୍ୱାରା ସିଦ୍ଧି ଲାଭ କରି ବ୍ରହ୍ମସାକ୍ଷାତ୍କାର

Digitized by PPRACHIN, SOA

ଲାଭ କରି ଥାଆନ୍ତି, ତାଙ୍କଙ୍କର ଦେହରେ ଆତ୍ମବୁଦ୍ଧି (ଅହଂକାର) କଦାପି ନ ଥାଏ । ସେ, ଆତ୍ମାଙ୍କୁ ଶୁଦ୍ଧବୁଦ୍ଧି, ସର୍ବଧର୍ମଶୂନ୍ୟ ଓ ଦ୍ୱୈତପ୍ରପଞ୍ଚବର୍ଜିତ ବୋଲି ଜାଣିଥିବାରୁ ଅଧି-ଷ୍ଠାନାଦି ପଞ୍ଚ କାରଣଦ୍ୱାରା ସମସ୍ତ 'କାର୍ଯ୍ୟ' ହେଉଥିବାର ଜାଣନ୍ତି, ସୁତରାଂ, ତାହାଙ୍କର ବୁଦ୍ଧି କାର୍ଯ୍ୟରେ ଲିପ୍ତ ହୁଏ ନାହିଁ । ସେ, ଆପଣାଙ୍କୁ ବ୍ରହ୍ମସ୍ୱରୂପ ଜାଣିବାରୁ ତାଙ୍କୁ ପାପ ପୁଣ୍ୟ କର୍ମର ଇଷ୍ଟ, ଅନିଷ୍ଟ ଓ ମିଶ୍ର ଫଳ ଭୋଗ କରିବାକୁ ହୁଏ ନାହିଁ, କି ବନ୍ଧନ-ଦଶା-ଗ୍ରସ୍ତ ହେବାକୁ ହୁଏ ନାହିଁ । ସେ, ଆପଣାଙ୍କୁ ଅକର୍ତ୍ତା ଓ ଅଭୋକ୍ତା ବୋଲି ଜାଣୁଥିବାରୁ କାହାକୁ ବଧ କଲେ ସୁଦ୍ଧା, ବଧଜନିତ ପାପରେ ଲିପ୍ତ ହୁଅନ୍ତି ନାହିଁ, ସୁତରାଂ, ସେ, ଅକର୍ତ୍ତା ଭାବରେ ଥାଇ ଏହି ଜଗତର ସକଳଲୋକଙ୍କୁ ବିନାଶ କଲେ ସୁଦ୍ଧା, କାହାରିକି ବିନାଶ କରନ୍ତି ନାହିଁ । କାହିଁକି ନା ଆତ୍ମା ଏକ ଓ ଅମର ଏବଂ ଅବଧ୍ୟ ଅଟନ୍ତି । "ନ ଜାୟତେ ମ୍ରିୟତେ ବା କଦାଚିତ୍" ଇତ୍ୟାଦି ଶ୍ଳୋକରେ ଦ୍ୱିତୀୟ ଅଧ୍ୟାୟରେ, ତାହା ବୁଝାଇ ଦିଆ ଯାଇଅଛି । ଅବିଦ୍ୟାକଳ୍ପିତ ସମସ୍ତ ଜଗତ୍ ବିନଷ୍ଟ ହେଲେ ସୁଦ୍ଧା, ଯେତେବେଳେ ଆତ୍ମାର ବିନାଶ ହୁଏ ନାହିଁ, ସେତେ-ବେଳେ, ସେ, ଅନ୍ୟ କାହାକୁ କିପରି ବଧ କଲେ, ସେ ତାଙ୍କର ପାପ ହେବ ? 'ମୁଁ ମାରିଲି,' 'ଅମୁକ ମଲା' ଇତ୍ୟାଦି ଦେହଜ୍ଞାନ ଥିଲେ, ଶରୀରବିନାଶରୂପ ହତ୍ୟା କର୍ମର ନରକାଦି ଅନିଷ୍ଟ ଫଳ ହୁଏ ; ମାତ୍ର ସାଧନସମ୍ପନ୍ନ ବ୍ୟକ୍ତିଙ୍କର ସେପରି ଦେହଜ୍ଞାନ ନ ଥିବାରୁ ହତ୍ୟା କର୍ମରେ ତାଙ୍କର ପାପ ହୁଏ ନାହିଁ । ୧୭ ।

ଶ୍ଳୋକଃ ।

ଜ୍ଞାନଂ ଜ୍ଞେୟଂ ପରିଜ୍ଞାତା, ତ୍ରିବିଧା କର୍ମଚୋଦନା ।
କରଣଂ କର୍ମ କର୍ତ୍ତେତି, ତ୍ରିବିଧଃ କର୍ମସଂଗ୍ରହଃ ॥ ୧୮ ॥

ଅନ୍ୱୟଃ ।

କର୍ମଚୋଦନା — ଜ୍ଞାନଂ, ଜ୍ଞେୟଂ, ପରିଜ୍ଞାତା, (ଇତି) ତ୍ରିବିଧା । କର୍ମସଂଗ୍ରହଃ — କରଣଂ, କର୍ମ, କର୍ତ୍ତା ଇତି ତ୍ରିବିଧଃ । ୧୮ ।

ଟୀକା ।

ହତ୍ୱାପି ନ ହନ୍ତି, ନ ନିବଧ୍ୟତେ, ଇତ୍ୟେତଦେବୋପପାଦୟିତୁଂ କର୍ମଚୋଦନାୟାଃ କର୍ମାଶ୍ରୟସ୍ୟ ଚ କର୍ମଫଲାନାଂ ଚ ତ୍ରିଗୁଣାତ୍ମକତ୍ୱାନ୍ନିର୍ଗୁଣସ୍ୟାତ୍ମନସ୍ତତ୍ସମ୍ବନ୍ଧୋ ନାସ୍ତୀତ୍ୟଭିପ୍ରାୟେଣ କର୍ମଚୋଦନାଂ କର୍ମାଶ୍ରୟଂ ଚାହ, ଜ୍ଞାନମିତି । ଜ୍ଞାନମିଷ୍ଟସାଧନମେତଦିତି ବୋଧଃ, ଜ୍ଞେୟମିଷ୍ଟସାଧନଂ କର୍ମ, ପରିଜ୍ଞାତା ଏତଜ୍ଜ୍ଞାନାଶ୍ରୟଃ, ଏବଂ ତ୍ରିବିଧା କର୍ମଚୋଦନା, ଚୋଦ୍ୟତେ ପ୍ରବର୍ତ୍ତ୍ୟତେ ଅନୟେତି ଚୋଦନା ଜ୍ଞାନାଦି ତ୍ରିତୟଂ କର୍ମପ୍ରବୃତ୍ତିହେତୁରିତ୍ୟର୍ଥଃ, ଯଦ୍ୱା ଚୋଦନେତି ବିଧିରୁଚ୍ୟତେ, ତଦୁକ୍ତଂ ଭଟ୍ଟୈଃ, ଚୋଦନା ଚୋପଦେଶଶ୍ଚ ବିଧିଶ୍ଚୈକାର୍ଥବାଚିନ ଇତି । ତତଶ୍ଚାୟମର୍ଥଃ ଉକ୍ତଲକ୍ଷଣଂ ତ୍ରିଗୁଣାତ୍ମକଂ ଜ୍ଞାନାଦିତ୍ରୟମବଲମ୍ବ୍ୟ କର୍ମବିଧିଃ ପ୍ରବର୍ତ୍ତତ ଇତି । ତଦୁକ୍ତଂ ତ୍ରୈଗୁଣ୍ୟବିଷୟା ବେଦା ଇତି । ତଥା ଚ କରଣଂ ସାଧକତମଂ, କର୍ମ ଚ କର୍ତ୍ତୁରୀପ୍ସିତତମଂ, କର୍ତ୍ତା କ୍ରିୟାନିର୍ବର୍ତ୍ତକଃ, କର୍ମ ସଂଗୃହ୍ୟତେ ଅସ୍ମିନ୍ନିତି କର୍ମସଂଗ୍ରହଃ, କରଣାଦି ତ୍ରିବିଧଂ, କାରକଂ କ୍ରିୟାଶ୍ରୟ ଇତ୍ୟର୍ଥଃ, ସମ୍ପ୍ରଦାନାଦି କାରକଦ୍ୱୟଂ ତୁ ପରମ୍ପରୟା କ୍ରିୟାନିର୍ବର୍ତ୍ତକମେବ କେବଳଂ ନ ତୁ ସାକ୍ଷାତ୍ କ୍ରିୟାୟା ଆଶ୍ରୟଃ, ଅତଃ କରଣାଦିତ୍ରୟମେବ ନିର୍ଦ୍ଦିଷ୍ଟମିତି ଦ୍ରଷ୍ଟବ୍ୟମ୍ । ୧୮ ।

Digitized by PPRACHIN, SOA

### ପଦବ୍ୟାଖ୍ୟା ।

ଜ୍ଞାନଂ—ଜାଣିବା ଶକ୍ତି, ଜ୍ଞେୟଂ—ଯାହା ଜାଣିବା ଯୋଗ୍ୟ, ପରିଜ୍ଞାତା—ଜାଣିବା ବ୍ୟକ୍ତି, ତ୍ରିବିଧା—ତିନିପ୍ରକାର, କର୍ମଚୋଦନା—କର୍ମପ୍ରେରଣା, କରଣଂ—ଇନ୍ଦ୍ରିୟମାନ, କର୍ମ—କ୍ରିୟା, କର୍ତ୍ତା—କର୍ମ କରିବା ବ୍ୟକ୍ତି, ତ୍ରିବିଧଃ—ଏହି ତିନି ପ୍ରକାର, କର୍ମସଂଗ୍ରହଃ—କ୍ରିୟା ସହିତ ସାକ୍ଷାତ୍‌ଭାବରେ ସମ୍ବନ୍ଧଯୁକ୍ତ, ଅର୍ଥାତ୍ କ୍ରିୟାର ଆଶ୍ରୟ ୧୮ ।

### ଅନୁବାଦ ।

ଜ୍ଞାନ, ଜ୍ଞେୟ ଓ ପରିଜ୍ଞାତା ଏହି ତିନୋଟି, କର୍ମର ପ୍ରବର୍ତ୍ତକ, ଆଉ କରଣ କର୍ମ ଓ କର୍ତ୍ତା ଏହି ତିନୋଟି, କର୍ମର ଆଶ୍ରୟ ଅଟନ୍ତି । ୧୮ ।

### ଭାବବ୍ୟାଖ୍ୟା ।

ହେ ଅର୍ଜ୍ଜୁନ ! ପଦାର୍ଥର ସ୍ୱରୂପ ଅବଗତ କରାଇବା କ୍ରିୟାକୁ 'ଜ୍ଞାନ' ବୋଲାଯାଏ । ସେହି ଜ୍ଞାନରୂପ କ୍ରିୟାର କର୍ମସ୍ୱରୂପ, ଯେ ଘଟ ପଟାଦି ପଦାର୍ଥ, ତାହାକୁ 'ଜ୍ଞେୟ' ବୋଲାଯାଏ । ପୁଣି ସେହି ଜ୍ଞାନରୂପ କ୍ରିୟାର ଆଶ୍ରୟ ଓ ଅନ୍ତଃକରଣରୂପ ଉପାଧିଦ୍ୱାରା ପରିକଳ୍ପିତ, ଯେ ଭୋକ୍ତା, ତାହାକୁ 'ପରିଜ୍ଞାତା' ବୋଲାଯାଏ । ଏହି ଜ୍ଞାନ, ଜ୍ଞେୟ ଓ ପରିଜ୍ଞାତା ଏକତ୍ର ନ ହେଲେ, କୌଣସି ପ୍ରକାର କର୍ମ ହୋଇ ପାରେ ନାହିଁ, ଅର୍ଥାତ୍ ଏଥିରୁ ଗୋଟିଏ କମି ହେଲେ, କର୍ମ ସମ୍ପନ୍ନ ହୋଇ ପାରିବ ନାହିଁ । ଅତଏବ ଏମାନେ କର୍ମର ପ୍ରବର୍ତ୍ତକ ଅଟନ୍ତି ।

କ୍ରିୟା ସାଧନ ପକ୍ଷରେ ଯାହାର ସାହାଯ୍ୟ ସର୍ବାପେକ୍ଷା ଅଧିକ ଆବଶ୍ୟକୀୟ, ତାହାକୁ କରଣ ବୋଲାଯାଏ । ସେହି କରଣ ବାହ୍ୟ ଓ ଅନ୍ତର ଭେଦରେ ଦୁଇ ପ୍ରକାର ଅଟେ । ଶ୍ରୋତ୍ର, ଚକ୍ଷୁଃ ପ୍ରଭୃତି ଇନ୍ଦ୍ରିୟମାନଙ୍କୁ ବାହ୍ୟକରଣ ଓ ମନଃ, ବୁଦ୍ଧି ପ୍ରଭୃତିଙ୍କୁ ଅନ୍ତର କରଣ ବୋଲାଯାଏ ।

କର୍ତ୍ତା, କ୍ରିୟାଦ୍ୱାରା ଯାହା ପ୍ରାପ୍ତ ହେବାକୁ ବା ସାଧନ କରିବାକୁ ଇଚ୍ଛୁକ, ତାହାକୁ କର୍ମ ବୋଲାଯାଏ । ସେହି କର୍ମ ଚତୁର୍ବିଧ । ଯଥା, ଉତ୍ପାଦ୍ୟ, ଆପ୍ୟ, ସଂସ୍କାର୍ଯ୍ୟ ଓ ବିକାର୍ଯ୍ୟ । ଯାହା ପୂର୍ବରେ ନ ଥିଲା, ବର୍ତ୍ତମାନ ଉତ୍ପାଦନ କରାଯିବ ତାହା ଉତ୍ପାଦ୍ୟକର୍ମ । ଯାହା ପୂର୍ବରୁ ଅଛି କେବଳ ପାଇବାକୁ ହେବ, ତାହାକୁ ଆପ୍ୟକର୍ମ ବୋଲାଯାଏ । ଯାହା ମଳାଦି ଅପକର୍ଷଯୁକ୍ତ ଓ ଯାହାର ସଂସ୍କାର ଅର୍ଥାତ୍ ମାର୍ଜ୍ଜନା କରିବାକୁ ହେବ, ତାହାକୁ ସଂସ୍କାର୍ଯ୍ୟ ବୋଲାଯାଏ । ଯେଉଁପରି ଯାହାର ଅବସ୍ଥା ପରିବର୍ତ୍ତନ ହୁଏ ତାହାକୁ ବିକାର୍ଯ୍ୟ ବୋଲାଯାଏ ।

ଯେ, ସମସ୍ତଙ୍କର ପ୍ରୟୋଜକ, ଅଥବା ଯେ, କ୍ରିୟାନିର୍ବାହକ, ତାହାକୁ କର୍ତ୍ତା ବୋଲାଯାଏ । ଜଡ଼ ଓ ଚେତନର ଗ୍ରନ୍ଥିସ୍ୱରୂପ, ଯେ ଅହଂକାର, ତାହାକୁ ଏଠାରେ 'କର୍ତ୍ତା' ବୋଲାଯାଇଅଛି । ଯେହେତୁ ସେ, ସର୍ବପ୍ରକାର କ୍ରିୟାର ନିର୍ବାହକ ।

ଏହି ପୂର୍ବୋକ୍ତ କରଣ, କର୍ମ ଓ କର୍ତ୍ତା ଏକତ୍ର 'କର୍ମସଂଗ୍ରହ' ବା କର୍ମର ଆଶ୍ରୟ ନାମରେ କଥିତ ହୁଅନ୍ତି ।

"କରଣଂ କର୍ମ କର୍ତ୍ତେତି" ଏହି ବାକ୍ୟ ମଧ୍ୟରେ ଥିବା 'ଇତି' ଶବ୍ଦଦ୍ୱାରା ସମ୍ପ୍ରଦାନ ଅପାଦାନ ଓ ଅଧିକରଣ ଏହି ଅବଶିଷ୍ଟ କାରକତ୍ରୟକୁ କର୍ମସଂଗ୍ରହ ମଧ୍ୟରେ କେହି୨ ଗ୍ରହଣ

କରନ୍ତି । ସେମାନଙ୍କ ମତରେ ଏହି ଅବଶିଷ୍ଟ କାରକତ୍ରୟ କର୍ତ୍ତା, କର୍ମ ଓ କରଣ ଏହି ତିନି କାରକର ଅନ୍ତର୍ଗତ ଅଟନ୍ତି । ମାତ୍ର ପ୍ରକୃତରେ ଯେ, ତିନି କାରକ ସାକ୍ଷାତ୍ ଭାବରେ କର୍ମର ଆଶ୍ରୟ ନୁହନ୍ତି ବୋଲି, କେବଳ କର୍ମ, କର୍ତ୍ତା ଓ କରଣ ଏହି ତିନିଗୋଟିକୁ ମୁଖ୍ୟରୂପରେ କର୍ମ-ସଂଗ୍ରହ ବୋଲାଯାଏ । ଅର୍ଥାତ୍ ଯେ ତିନୋଟିରୁ ଗୋଟିକର ଅଭାବ ହେଲେ କିଅଣ୍ଣ କର୍ମ ସମ୍ପନ୍ନ ହୋଇ ପାରିବ ନାହିଁ ।

ଏହାଦ୍ୱାରା ଏହାହିଁ ପ୍ରମାଣିତ ହେଲା, ଯେ କର୍ମରେ ପ୍ରବର୍ତ୍ତକ ଓ କର୍ମର ଆଶ୍ରୟ ସକଳ ପଦାର୍ଥ ତ୍ରିଗୁଣାତ୍ମକ ଅଟନ୍ତି । ମାତ୍ର ଆତ୍ମା 'କାରକ'ଭାବ ବର୍ଜିତ ଓ ଗୁଣାତୀତ ଅଟନ୍ତି । ସୁତରାଂ ସର୍ବପ୍ରକାର କର୍ମରୁ ସମ୍ପର୍କହୀନ ଅଟନ୍ତି । ୧୮ ।

ଶ୍ଳୋକଃ ।

ଜ୍ଞାନଂ କର୍ମ ଚ କର୍ତ୍ତା ଚ, ତ୍ରିଧୈବ ଗୁଣଭେଦତଃ ।
ପ୍ରୋଚ୍ୟତେ ଗୁଣସଂଖ୍ୟାନେ, ଯଥାବତ୍ ଶୃଣୁ ତାନ୍ୟପି । ୧୯ ।

ଅନ୍ୱୟଃ ।

ଜ୍ଞାନଂ ଚ କର୍ମ ଚ କର୍ତ୍ତା ଗୁଣଭେଦତଃ ଗୁଣସଂଖ୍ୟାନେ ତ୍ରିବିଧା ଏବ ଉଚ୍ୟତେ, ତାନି ଅପି ଯଥାବତ୍ ଶୃଣୁ । ୧୯ ।

ଟୀକା ।

ତତଃ କଥମତ ଆହ । ଜ୍ଞାନମିତି । ଗୁଣାଃ ସମ୍ୟକ୍ କାର୍ଯ୍ୟଭେଦେନ ଖ୍ୟାୟନ୍ତେ ପ୍ରତିପାଦ୍ୟନ୍ତେ ଅସ୍ମିନ୍ନିତି ଗୁଣସଂଖ୍ୟାନଂ ସାଂଖ୍ୟଶାସ୍ତ୍ରଂ ତସ୍ମିନ୍ ଜ୍ଞାନଂ ଚ କର୍ମ ଚ କର୍ତ୍ତା ଚ ପ୍ରତ୍ୟେକଂ ସତ୍ତ୍ୱାଦିଗୁଣଭେଦେନ ତ୍ରିଧୈବୋଚ୍ୟତେ ତାନ୍ୟପି ଜ୍ଞାନାଦୀନି ବକ୍ଷ୍ୟମାଣାନି ଯଥାବଚ୍ଛୃଣୁ, ତ୍ରିଧୈବେତ୍ୟେବକାରେଣ ଗୁଣତ୍ରୟୋପାଧି-ବ୍ୟତିରେକେଣାତ୍ମନଃ ସ୍ୱତଃ କର୍ତ୍ତୃତ୍ୱାଦି-ପ୍ରତିଷେଧାର୍ଥଃ ଚତୁର୍ଦ୍ଦଶୋଽଧ୍ୟାୟେ ତତ୍ର ସତ୍ତ୍ୱଂ ନିର୍ମଲତ୍ୱାଦିତ୍ୟାଦିନା ଗୁଣାନାଂ ବନ୍ଧକତ୍ୱପ୍ରକାରେଣ ନିରୂପିତଃ, ସପ୍ତଦଶେଽଧ୍ୟାୟେ ଯଜନ୍ତେ ସାତ୍ତ୍ୱିକା ଦେବାନିତ୍ୟାଦିନା ଗୁଣବୃତ୍ତିବୈଧ୍ୟତ୍ୱ-ନିରୂପଣେନ ରଜସ୍ତମସୀ ତ୍ୟକ୍ତ୍ୱା ପରିତ୍ୟଜ୍ୟ ସାତ୍ତ୍ୱିକାହାରାଦି-ସେବୟା ସାତ୍ତ୍ୱିକତ୍ୱଭାବଃ ସମ୍ପାଦନୀୟ ଇତ୍ୟୁକ୍ତଂ ଅତ୍ର ତୁ କ୍ରିୟାକାରକ-ଫଳାଦୀନାଂ ଅତ୍ମସମ୍ବୋଦ୍ଧାନ୍ତର୍ଦର୍ଶୟିତୁଂ ସର୍ବେଷାଂ ତ୍ରିଗୁଣାତ୍ମକତ୍ୱମୁଚ୍ୟତ ଇତି ବିଶେଷୋ ଜ୍ଞାତବ୍ୟଃ । ୧୯ ।

ପଦବ୍ୟାଖ୍ୟା ।

ଜ୍ଞାନଂ—ବସ୍ତୁର ଭାବ ଜାଣିବା, କର୍ମ ଚ—ଓ କର୍ମ, କର୍ତ୍ତା ଚ—ଓ କର୍ତ୍ତା, ତ୍ରିଧା ଏବ—ତିନିପ୍ରକାର କେବଳ, ଗୁଣଭେଦତଃ—ସତ୍ତ୍ୱ, ରଜଃ ଓ ତମୋଗୁଣ ଭେଦରେ, ପ୍ରୋଚ୍ୟତେ—କଥିତ ହୁଏ, ଗୁଣସଂଖ୍ୟାନେ—ସାଂଖ୍ୟଶାସ୍ତ୍ରରେ, ଯଥାବତ୍—ବିଧି ଅନୁସାରେ, ଶୃଣୁ—ଶୁଣ, ତାନି ଅପି—ସେମାନ ମଧ୍ୟ । ୧୯ ।

ଅନୁବାଦ ।

ସାଂଖ୍ୟଶାସ୍ତ୍ରରେ ଜ୍ଞାନ, କର୍ମ ଓ କର୍ତ୍ତା ଏମାନେ ପ୍ରତ୍ୟେକରେ ସତ୍ତ୍ୱାଦି ଗୁଣଭେଦରେ ତିନିପ୍ରକାର ହୁଅନ୍ତି ବୋଲି କଥିତ ଅଛି । ସେମାନଙ୍କର ବିବରଣ ଯଥାବିଧି ଶ୍ରବଣ କର । ୧୯ ।

ବିଶଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ଜ୍ଞାନ ଓ ଜ୍ଞେୟର ଲକ୍ଷଣ ବୁଝାଇ ଦିଆ ଯାଇଅଛି । ଜ୍ଞାନଦ୍ୱାରା, ଯାହା ଜଣାଯାଏ ତାହାକୁ 'ଜ୍ଞେୟ' ବୋଲାଯାଏ । ସୁତରାଂ 'ଜ୍ଞେୟ', ସେହି ଜ୍ଞାନର ଅନ୍ତର୍ଗତ ବୋଲି ଏ ଶ୍ଳୋକରେ କେବଳ 'ଜ୍ଞାନ' ର କଥା ଲେଖା ଯାଉଅଛି, ଅର୍ଥାତ୍ ଜ୍ଞାନର ସତ୍ତ୍ୱାଦି

Digitized by PPRACHIN, SOA

ଭେଦ ଜଣାଗଲେ, କ୍ଷେତ୍ରର ମଧ୍ୟ ସତ୍ତ୍ୱାଦି ଭେଦ ଜଣାଯିବ, ସେଥିପାଇଁ ଏ ଶ୍ଳୋକରେ କ୍ଷେତ୍ର କଥା ଆଉ ଲେଖାଗଲା ନାହିଁ ।

ଏ ଶ୍ଳୋକରେ କର୍ମର ଅର୍ଥ ଯଜ୍ଞାଦି କ୍ରିୟା । ପୂର୍ବଶ୍ଳୋକରେ "କରଣଂ କର୍ମ କର୍ତ୍ତା ଚ" ବାକ୍ୟର ଅନ୍ତର୍ଗତ, ଯେ କର୍ମ ଓ କରଣ, ସେହି ଦୁଇକାରକ ଏହି କ୍ରିୟାର ଅନ୍ତର୍ଗତ ଅଟେ । କାହିଁକି ନା ବାକ୍ୟସ୍ଥିତ କ୍ରିୟାପଦ ସହିତ ସମ୍ପର୍କଯୁକ୍ତ ହେଲେହିଁ କାରକ ନାମରେ ପରିଚିତ ହୁଏ । କ୍ରିୟାର ସମ୍ବନ୍ଧ ବ୍ୟତୀତ କାରକ ହୋଇ ନ ପାରେ ।

ପୂର୍ବ ଶ୍ଳୋକରେ କର୍ତ୍ତା ଶବ୍ଦର ଲକ୍ଷଣ ଲେଖା ଯାଇ ଅଛି । ଏ ଶ୍ଳୋକରେ 'କର୍ତ୍ତା ଚ' ଶବ୍ଦର ଶେଷ ସ୍ଥିତ ଚକାରଦ୍ୱାରା ପୂର୍ବ ଶ୍ଳୋକ ଲିଖିତ 'ପରିଜ୍ଞାତା' ମଧ୍ୟ, ଗୃହୀତ ହୋଇଅଛି । ଅର୍ଥାତ୍ 'ପରିଜ୍ଞାତା' କର୍ତ୍ତାର ଅନ୍ତର୍ଗତ ଅଟେ ।

କର୍ମ ଓ କରଣ ଯେପରି କ୍ରିୟାର ଅନ୍ତର୍ଗତ, କର୍ତ୍ତା ମଧ୍ୟ, ସେହିପରି କ୍ରିୟାର ଅନ୍ତର୍ଗତ, ତେବେ ଏ ଶ୍ଳୋକରେ କର୍ତ୍ତା ଶବ୍ଦ ପୁନର୍ବାର ଲେଖାଯିବାର ତାତ୍ପର୍ଯ୍ୟ ଏହି, ଯେ ତାହାର ସାତ୍ତ୍ୱିକାଦି ଭେଦ କଥିତ ହେବ । କାଳେ, କେହି ସେହି ଭେଦକୁ ଆତ୍ମାର ଭେଦ ବୋଲି ମନେ କରିବେ, ତାହା ନିବାରଣ ପାଇଁ ପୂର୍ବ ଶ୍ଳୋକରେ ଅନାତ୍ମ ଓ କଳ୍ପିତ ପଦାର୍ଥରୂପେ ବର୍ଣ୍ଣିତ ହୋଇଅଛି, ଯେ କର୍ତ୍ତା, ତାହାର ପୁନର୍ବାର ଏ ଶ୍ଳୋକରେ ଉଲ୍ଲେଖ କରା ହେଲା ।

ଏପ୍ରକାର ଜ୍ଞାନ, କର୍ମ ଓ କର୍ତ୍ତା, ସାତ୍ତ୍ୱିକ ରାଜସ ଓ ତାମସ ଭେଦରେ ତିନିପ୍ରକାର ବୋଲି ଗୁଣସଂଖ୍ୟାନ ଶାସ୍ତ୍ରରେ କଥିତ ଅଛି । ସତ୍ତ୍ୱ, ରଜଃ ଓ ତମଃ ଏହି ଗୁଣମାନ ଏବଂ ସେମାନଙ୍କର କାର୍ଯ୍ୟର ଭେଦ ଯେଉଁ ଶାସ୍ତ୍ରରେ ବର୍ଣ୍ଣିତ ଅଛି, ସେହି ଶାସ୍ତ୍ରର ନାମ 'ଗୁଣସଂଖ୍ୟାନ', ଅର୍ଥାତ୍ କପିଳମୁନିଙ୍କ କୃତ ସାଂଖ୍ୟଶାସ୍ତ୍ର ।

ସାଂଖ୍ୟଶାସ୍ତ୍ରରେ ଅନ୍ୟ ନାନାପ୍ରକାର ଅଧିକ ଲେଖା ଅଛି, ସେହି ହେତୁରୁ ତାହା ପରମାର୍ଥ ପଦାର୍ଥ ବ୍ରହ୍ମତତ୍ତ୍ୱରେ ପ୍ରାମାଣିକ ଗ୍ରନ୍ଥ ନୁହେଁ ସତ, କିନ୍ତୁ ଅନାତ୍ମ ବା ଜଡ଼-ପଦାର୍ଥର ଗୁଣ ଓ କାର୍ଯ୍ୟର ପ୍ରଭେଦ ବିଷୟରେ ତାହା ପ୍ରାମାଣିକ ଅଟେ । ଏସ୍ଥଳରେ ଅନାତ୍ମ ପଦାର୍ଥ ଜ୍ଞାନ, କର୍ମ ଓ କର୍ତ୍ତା ଇତ୍ୟାଦିର ଗୁଣଭେଦର କଥା ଲେଖା ଯାଉଥିବାରୁ ଶ୍ରୀ ଭଗବାନ୍ ଉକ୍ତ ସାଂଖ୍ୟଶାସ୍ତ୍ରର ପ୍ରମାଣ ଉଲ୍ଲେଖ କଲେ । ୧୯ ।

ଶ୍ଳୋକଃ ।

ସର୍ବଭୂତେଷୁ ଯେନୈକଂ, ଭାବମବ୍ୟୟମୀକ୍ଷତେ ।
ଅବିଭକ୍ତଂ ବିଭକ୍ତେଷୁ, ତଜ୍‌ଜ୍ଞାନଂ ବିଦ୍ଧି ସାତ୍ତ୍ୱିକଂ । ୨୦ ।

ଅନ୍ୱୟଃ ।

ଯେନ ବିଭକ୍ତେଷୁ ସର୍ବଭୂତେଷୁ ଏକଂ ଅବ୍ୟୟଂ ଅବିଭକ୍ତଂ ଭାବଂ ଈକ୍ଷତେ, ତତ୍ ଜ୍ଞାନଂ ସାତ୍ତ୍ୱିକଂ ବିଦ୍ଧି । ୨୦ ।

ଟୀକା ।

ତତ୍ର ଜ୍ଞାନସ୍ୟ ସାତ୍ତ୍ୱିକାଦିଭେଦମାହ । ସର୍ବଭୂତେଷ୍ୱିତି ତ୍ରିଭିଃ । ସର୍ବେଷୁ ଭୂତେଷୁ ବ୍ରହ୍ମାଦିସ୍ଥାବରାନ୍ତେଷୁ ବିଭକ୍ତେଷୁ ପରସ୍ପରଂ ବ୍ୟାବୃତ୍ତେଷୁ ଅବିଭକ୍ତମନୁସ୍ୟୂତଂ ଏକମବ୍ୟୟଂ ନିର୍ବିକାରଂ ଭାବଂ ପରମାତ୍ମତତ୍ତ୍ୱଂ ଯେନ ଜ୍ଞାନେନେକ୍ଷତେ ଅବଲୋକୟତି ତଜ୍ଜ୍ଞାନଂ ସାତ୍ତ୍ୱିକଂ ବିଦ୍ଧି । ୨୦ ।

### ପଦବ୍ୟାଖ୍ୟା ।

ସର୍ବଭୂତେଷୁ—ବ୍ରହ୍ମଠାରୁ ସ୍ଥାବର ପର୍ଯ୍ୟନ୍ତ ସକଳପ୍ରାଣିଙ୍କ ଠାରେ, ଯେନ—ଯେଉଁ ଜ୍ଞାନ, ଏକଂ ଭାବ—ଏକତା, ଅବ୍ୟୟଂ—ଅବିନାଶୀ—ଚିରସ୍ଥାୟୀ, ଈକ୍ଷତେ—ଦର୍ଶନ କରେ, ଅବିଭକ୍ତଂ—ଅଭିନ୍ନ—ବିଭାଗଶୂନ୍ୟ, ବିଭକ୍ତେଷୁ ଭିନ୍ନ, ତଜ୍‌ଜ୍ଞାନଂ—ସେହି ଜ୍ଞାନକୁ, ବିଦ୍ଧି—ଜାଣ, ସାତ୍ତ୍ୱିକଂ—ସାତ୍ତ୍ୱିକ ଜ୍ଞାନ ବୋଲି । ୨୦ ।

### ଅନୁବାଦ ।

ଯେଉଁ ଜ୍ଞାନଦ୍ୱାରା ପରସ୍ପର ବିଭକ୍ତ ସକଳ ପ୍ରାଣିଙ୍କଠାରେ ଏକ ଅବିନାଶୀ ଅଖଣ୍ଡ ସତ୍ତା ଥିବାର ଉପଲବ୍ଧି ହୁଏ, ସେହି ଜ୍ଞାନକୁ ସାତ୍ତ୍ୱିକ ଜ୍ଞାନ ବୋଲି ଜାଣ । ୨୦ ।

### ବିଶଦବ୍ୟାଖ୍ୟା ।

ଜୀବଗଣ ସ୍ଥୂଳ, ସୂକ୍ଷ୍ମ, ବ୍ୟଷ୍ଟି ଓ ସମଷ୍ଟି ଇତ୍ୟାଦି ନାନା ପ୍ରକାରେ ବିଭକ୍ତ ହୋଇ ଭିନ୍ନ ନାମ ଓ ରୂପ ଧାରଣ କରିଅଛନ୍ତି, ଅର୍ଥାତ୍ ସେମାନଙ୍କ ମଧ୍ୟରେ ନାନା ପ୍ରକାର ପ୍ରଭେଦ ଅଛି । ମାତ୍ର, ଯେଉଁ ଜ୍ଞାନ ଲାଭ ହେଲେ ମନୁଷ୍ୟ ସ୍ୱଜାତୀୟ, ବିଜାତୀୟ ଓ ସ୍ୱଗତାଦି* ଭେଦ ପରିତ୍ୟାଗ କରି ସର୍ବ ପ୍ରାଣିଙ୍କଠାରେ ଏକମାତ୍ର ଅଦ୍ୱିତୀୟ ପରମାତ୍ମସତ୍ତା ଥିବାର ଉପଲବ୍ଧି କରନ୍ତି, ଅର୍ଥାତ୍ ସର୍ବତ୍ର ସମଦୃଷ୍ଟି କରନ୍ତି, ସେହି ଜ୍ଞାନକୁ ସାତ୍ତ୍ୱିକ ଜ୍ଞାନ ବୋଲି ଜାଣ ।

ଫଳକଥା ଏହି କି, ସାତ୍ତ୍ୱିକଜ୍ଞାନ ଜନ୍ମିଲେ ମନୁଷ୍ୟର ଦ୍ୱୈତଦୃଷ୍ଟି ନିରସ୍ତ ହୋଇ ଅଦ୍ୱୈତ ଦୃଷ୍ଟି ପ୍ରବଳ ଓ ସ୍ଥିର ହୁଏ । ୨୦ ।

### ଶ୍ଲୋକଃ ।

ପୃଥକ୍‌ତ୍ୱେନ ତୁ ଯଜ୍‌ଜ୍ଞାନଂ, ନାନାଭାବାନ୍ ପୃଥଗ୍‌ବିଧାନ୍ ।
ବେତ୍ତି ସର୍ବେଷୁ ଭୂତେଷୁ, ତଜ୍‌ଜ୍ଞାନଂ ବିଦ୍ଧି ରାଜସଂ । ୨୧ ।

### ଅନ୍ୱୟଃ ।

ତୁ ଯତ୍ ଜ୍ଞାନଂ ସର୍ବେଷୁ ଭୂତେଷୁ ପୃଥଗ୍‌ବିଧାନ୍ ନାନା ଭାବାନ୍ ପୃଥକ୍‌ତ୍ୱେନ ବେତ୍ତି, ତତ୍ ଜ୍ଞାନଂ ରାଜସଂ ବିଦ୍ଧି । ୨୧ ।

### ଟୀକା ।

ରାଜସଂ ଜ୍ଞାନମାହ, ପୃଥକ୍‌ତ୍ୱେନେତି । ପୃଥକ୍‌ତ୍ୱେନ ତୁ ଯତ୍ ଜ୍ଞାନଂ ଉତ୍ପଦ୍ୟତେ ଏବ ବିବରଣଂ ସର୍ବେଷୁ ଭୂତେଷୁ ଦେହେଷୁ ନାନାଭାବାନ୍ ବସ୍ତୁତ ଏବାନେକାନ୍ କ୍ଷେତ୍ରଜ୍ଞାନ୍ ପୃଥଗ୍‌ବିଧାନ୍ ସୁଖୀ ଦୁଃଖୀତ୍ୟାଦିରୂପେଣ ବିଲକ୍ଷଣାନ୍ ଯେନ ଜ୍ଞାନେନ ବେତ୍ତି, ତତ୍ ଜ୍ଞାନଂ ରାଜସଂ ବିଦ୍ଧି । ୨୧ ।

### ପଦବ୍ୟାଖ୍ୟା ।

ପୃଥକ୍‌ତ୍ୱେନ—ଭିନ୍ନ ଭିନ୍ନ ଭାବରେ, ତୁ—କିନ୍ତୁ, ଯତ୍ ଜ୍ଞାନଂ—ଯେଉଁ ଜ୍ଞାନ, ନାନାଭାବାନ୍—ନାନା ଭାବମାନଙ୍କୁ, ପୃଥଗ୍‌ବିଧାନ୍—ଭିନ୍ନ ଭିନ୍ନ ପ୍ରକାର, ବେତ୍ତି—ଜାଣେ, ସର୍ବେଷୁ ଭୂତେଷୁ—ସର୍ବପ୍ରାଣିଙ୍କଠାରେ, ତତ୍ ଜ୍ଞାନଂ—ସେହି ଜ୍ଞାନକୁ, ବିଦ୍ଧି—ଜାଣ, ରାଜସଂ—ରାଜସ ବୋଲି । ୨୧ ।

---

* ସ୍ୱଜାତୀୟ, ବିଜାତୀୟ ଓ ସ୍ୱଗତ ଭେଦର ବିଶେଷ ବିବରଣ ୨ୟ ଅଧ୍ୟାୟ ୧୭ ଶ୍ଲୋକ ବିଶଦବ୍ୟାଖ୍ୟାରେ ଦେଖ ।

Digitized by PPRACHIN, SOA

### ଅନୁବାଦ ।

କିନ୍ତୁ, ଯେଉଁ ଜ୍ଞାନଦ୍ୱାରା ସର୍ବପ୍ରାଣିଙ୍କଠାରେ ଥିବା ଭିନ୍ନ ଭିନ୍ନ ପ୍ରକାରର ନାନାଭାବ ପୃଥକ୍ ରୂପରେ ଜଣାଯାଏ, ତାହାକୁ ରାଜସ ଜ୍ଞାନ ବୋଲି ଜାଣ । ୨୧ ।

### ବିଶଦବ୍ୟାଖ୍ୟା ।

ପ୍ରାଣିମାନଙ୍କ ମଧ୍ୟରେ ସ୍ଥୂଳ ଦୃଷ୍ଟିରେ ଦେଖାଯାଏ, ଯେ କେହି ସୁଖୀ, କେହି ଦୁଃଖୀ, କେହି ପଣ୍ଡିତ, କେହି ବା ମୂର୍ଖ, ଜଣେ ରୋଗୀ ଓ ଅପର ବ୍ୟକ୍ତି ସୁସ୍ଥ ଅଛି । ସେଥିପାଇଁ କେହି କେହି ସ୍ଥୂଳବୁଦ୍ଧି ବ୍ୟକ୍ତି କହନ୍ତି, ଯେତେବେଳେ ଭିନ୍ନ ଭିନ୍ନ ଦେହରେ ଭିନ୍ନ ଭିନ୍ନ ପ୍ରକାରର, ଅର୍ଥାତ୍ ମୂର୍ଖତା ଓ ପାଣ୍ଡିତ୍ୟ ଇତ୍ୟାଦି ନାନା ପ୍ରକାରର ଭାବ ଅଛି, ସେତେବେଳେ, ସେହି ସେହି ଦେହରେ ଥିବା ଆତ୍ମା ମଧ୍ୟ, ପୃଥକ୍ ପୃଥକ୍ ଅଟନ୍ତି । ତାହା ଯଦି ହୋଇ ନ ଥାନ୍ତା, ଅର୍ଥାତ୍ ଆତ୍ମା ଯଦି ଏକ ହୋଇଥାନ୍ତା, ତେବେ ଜଣକର ଦୁଃଖ ହେଲେ, ସମସ୍ତେ ସେ ଦୁଃଖ ଅନୁଭବ କରନ୍ତେ ଓ ଜଣକର ସୁଖ ହେଲେ, ସମସ୍ତେ ସୁଖୀ ହୁଅନ୍ତେ । ଯେଉଁ ଜ୍ଞାନଦ୍ୱାରା ଏପ୍ରକାର ଭେଦଭାବ ଜଣାଯାଏ, ସେହି ଜ୍ଞାନକୁ ରାଜସ ବୋଲାଯାଏ ।

ଫଳକଥା ଏହି କି, ୧ ରାଜସ ଜ୍ଞାନଦ୍ୱାରା ଆତ୍ମା ମଧ୍ୟରେ ପରସ୍ପର (ସ୍ୱଗତ) ଭେଦ, ୨ ଆତ୍ମା ଓ ଈଶ୍ୱର ମଧ୍ୟରେ (ସଜାତୀୟ) ଭେଦ, ୩ ଆତ୍ମା ଓ ଜଡ଼ ମଧ୍ୟରେ (ବିଜାତୀୟ) ଭେଦ; ୪ ଈଶ୍ୱର ଓ ଅଚେତନ ମଧ୍ୟରେ (ବିଜାତୀୟ) ଭେଦ ୫ ଜଡ଼ ମଧ୍ୟରେ ପରସ୍ପର (ସ୍ୱଗତ) ଭେଦ, ଏହି ପାଞ୍ଚ ପ୍ରକାର ଭେଦଜ୍ଞାନ ହୁଏ । ୨୧ ।

### ଶ୍ଳୋକଃ ।

ଯତ୍ତୁ କୃତ୍ସ୍ନବଦେକସ୍ମିନ୍, କାର୍ଯ୍ୟେ ସକ୍ତମହୈତୁକଂ ।
ଅତତ୍ତ୍ୱାର୍ଥବଦଳ୍ପଂ ଚ, ତତ୍ତାମସମୁଦାହୃତଂ । ୨୨ ।

### ଅନ୍ୱୟଃ ।

ଯତ୍ ତୁ ଏକସ୍ମିନ୍ କାର୍ଯ୍ୟେ କୃତ୍ସ୍ନବତ୍ ସକ୍ତଂ ଅହୈତୁକଂ, ଅତତ୍ତ୍ୱାର୍ଥବତ୍ ଚ ଅଳ୍ପଂ, ତତ୍ ତାମସଂ ଉଦାହୃତଂ । ୨୨ ।

### ଟୀକା ।

ତାମସଂ ଜ୍ଞାନମାହ । ଯତ୍ତ୍ୱିତି । ଏକସ୍ମିନ୍ କାର୍ଯ୍ୟେ ଦେହେ ପ୍ରତିମାଦୌ ବା କୃତ୍ସ୍ନବତ୍ ସମ୍ପୂର୍ଣ୍ଣବତ୍ ସକ୍ତଂ ଏତାବାନେବାତ୍ମା ଈଶ୍ୱରୋବେତ୍ୟଭିନିବେଶଯୁକ୍ତଂ ଅହୈତୁକଂ ନିରୁପପତ୍ତିକଂ ଅତତ୍ତ୍ୱାର୍ଥବତ୍ ପରମାର୍ଥାବଲମ୍ବନଶୂନ୍ୟଂ ଅତଏବାଳ୍ପଂ ତୁଚ୍ଛଂ ଅଳ୍ପବିଷୟତ୍ୱାତ୍ ଅଳ୍ପଫଳତ୍ୱାଚ । ଯଦେବମ୍ଭୂତଂ ଜ୍ଞାନଂ, ତତ୍ତାମସମୁଦାହୃତଂ । ୨୨ ।

### ପଦବ୍ୟାଖ୍ୟା ।

ଯତ୍ ତୁ—ଯାହା ପୁଣି, କୃତ୍ସ୍ନବତ୍—ପରିପୂର୍ଣ୍ଣ ସଦୃଶ, ଏକସ୍ମିନ କାର୍ଯ୍ୟେ—ଗୋଟିଏ ଶରୀର ବା ପ୍ରତିମାରେ, ସକ୍ତଂ—ଆସକ୍ତ—ଅଭିନିବେଶଯୁକ୍ତ, ଅହୈତୁକଂ—ପ୍ରମାଣଶୂନ୍ୟ, ଅତତ୍ତ୍ୱାର୍ଥବତ୍—ପରମାର୍ଥ ବିଷୟ ବର୍ଜିତ, ଅଳ୍ପଂ ଚ—ପୁଣି ତୁଚ୍ଛ—ସାମାନ୍ୟ, ତତ୍ ତାମସଂ ଉଦାହୃତଂ—ତାହାକୁ ତାମସ ବୋଲାଯାଏ । ୨୨ ।

Digitized by PPRACHIN, SOA

### ଅନୁବାଦ ।

ଆଉ ଯେଉଁ ଜ୍ଞାନଦ୍ୱାରା ଗୋଟିଏ ମାତ୍ର ପ୍ରତିମାରେ ବା ପଦାର୍ଥରେ ଆତ୍ମା ସମ୍ପୂର୍ଣ୍ଣ ଭାବରେ ଥିବାର ଜଣାଯାଏ ଓ ଯାହା ଅଯୌକ୍ତିକ, ଅଯଥାର୍ଥ ଏବଂ ତୁଚ୍ଛ, ସେହି ଜ୍ଞାନକୁ ତାମସ ବୋଲାଯାଏ । ୨୨ ।

### ବିଶଦବ୍ୟାଖ୍ୟା ।

ଜଗତରେ ଅସଂଖ୍ୟ ପ୍ରକାର କାର୍ଯ୍ୟ, ଦେହ ଓ ପ୍ରତିମାଦି ଅଛି । ତନ୍ମଧ୍ୟରୁ ଗୋଟିଏ ମାତ୍ର କାର୍ଯ୍ୟ, ଅର୍ଥାତ୍ ଗୋଟିଏ ଦେହ ବା ଗୋଟିଏ ପ୍ରତିମାରେ କେବଳ ଆତ୍ମା ବା ଈଶ୍ୱର ଅଛନ୍ତି, ତଦ୍ଭିନ୍ନ ଅନ୍ୟ କୌଣସି ଦେହ ବା ପ୍ରତିମାରେ ନାହାନ୍ତି, ଏପ୍ରକାର ଯେଉଁ ଜ୍ଞାନ, ତାହାକୁ ତାମସ ଜ୍ଞାନ ବୋଲାଯାଏ । ଯେଉଁମାନେ ଏପରି ଜ୍ଞାନ କରନ୍ତି, ସେମାନଙ୍କର ଉକ୍ତ ପ୍ରକାର ଜ୍ଞାନର କୌଣସି ଯୁକ୍ତି ବା ପ୍ରମାଣ ନାହିଁ ; ସୁତରାଂ, ତାହା ଅହେତୁକ ଅର୍ଥାତ୍ ଅଯୌକ୍ତିକ ଅଟେ । ଆଉ ସେପରି ଜ୍ଞାନରେ ପରମାର୍ଥ ତତ୍ତ୍ୱ ବା ଯଥାର୍ଥ ତତ୍ତ୍ୱ ବିଷୟ ନ ଥିବାରୁ ତାହା ଅତି ତୁଚ୍ଛ ବିଷୟ ଅଟେ । ଅତଏବ ତାହା ତ୍ୟାଗ କରିବା ସର୍ବତୋଭାବରେ ବିଧେୟ । ଯେହେତୁ ତାହା ଆତ୍ମାର ଅଦ୍ୱିତୀୟତା ଓ ବ୍ୟାପକତାର ବିରୋଧୀ । ୨୨ ।

### ଶ୍ଲୋକଃ ।

ନିୟତଂ ସଙ୍ଗରହିତ,ମରାଗଦ୍ୱେଷତଃ କୃତଂ ।
ଅଫଳପ୍ରେପ୍ସୁନା କର୍ମ,ଯତ୍ତତ୍ସାତ୍ତ୍ୱିକମୁଚ୍ୟତେ । ୨୩ ।

### ଅନ୍ୱୟଃ ।

ଯତ୍ ସଙ୍ଗରହିତଂ ନିୟତଂ କର୍ମ ଅଫଳପ୍ରେପ୍ସୁନା ଅରାଗଦ୍ୱେଷତଃ କୃତଂ, ତତ୍ ସାତ୍ତ୍ୱିକଂ ଉଚ୍ୟତେ । ୨୩ ।

### ଟୀକା ।

ଇଦାନୀଂ ତ୍ରିବିଧଂ କର୍ମାହ । ନିୟତମିତି ତ୍ରିଭିଃ । ନିୟତଂ ନିତ୍ୟତୟା ବିହିତଂ ସଙ୍ଗରହିତଂ ଅଭିନିବେଶଶୂନ୍ୟଂ ଅରାଗଦ୍ୱେଷତଃ ପୁତ୍ରାଦିପ୍ରୀତ୍ୟା ବା ଶତ୍ରୁଦ୍ୱେଷେଣ ବା ଯତ୍ କୃତଂ ନ ଭବତି, ଫଳଂ ପ୍ରାପ୍ତୁମିଚ୍ଛତୀତି ଫଳପ୍ରେପ୍ସୁସ୍ତଦ୍ୱିଲକ୍ଷଣେନ ନିଷ୍କାମେଣ କର୍ତ୍ତ୍ରା ଯତ୍ କୃତଂ କର୍ମ ତତ୍ ସାତ୍ତ୍ୱିକମୁଚ୍ୟତେ । ୨୩ ।

### ପଦବ୍ୟାଖ୍ୟା ।

ନିୟତଂ—ନିତ୍ୟ, ସଙ୍ଗରହିତଂ—ମୁଁ କରୁଅଛି ଏପରି ଅହଙ୍କାରବର୍ଜିତ, ଅରାଗଦ୍ୱେଷତଃ—ପ୍ରୀତି ଓ ବୈର ବ୍ୟତିରେକେ, କୃତଂ—କରା ହୁଏ, ଅଫଳପ୍ରେପ୍ସୁନା—ଫଳକାମନାରହିତ ବ୍ୟକ୍ତିଦ୍ୱାରା, କର୍ମ—କାର୍ଯ୍ୟ, ଯତ୍—ଯେଉଁ, ତତ୍—ତାହାକୁ, ସାତ୍ତ୍ୱିକଂ ଉଚ୍ୟତେ—ସାତ୍ତ୍ୱିକ ବୋଲାଯାଏ । ୨୩ ।

### ଅନୁବାଦ ।

ଫଳକାମନାରହିତ ବ୍ୟକ୍ତି, ଶ୍ରଦ୍ଧା ଓ ଶତ୍ରୁତା ବ୍ୟତିରେକେ ଅଭିମାନଶୂନ୍ୟ ହୋଇ ଯେଉଁ ନିତ୍ୟକର୍ମ କରନ୍ତି, ତାହାକୁ ସାତ୍ତ୍ୱିକ କର୍ମ ବୋଲାଯାଏ । ୨୩ ।

### ବିଶଦବ୍ୟାଖ୍ୟା ।

ଯେଉଁ ବ୍ୟକ୍ତି କୌଣସି କର୍ମ କଲାବେଳେ, ସ୍ୱର୍ଗପ୍ରାପ୍ତି, ପଶୁପ୍ରାପ୍ତି ବା ପୁତ୍ରପ୍ରାପ୍ତି

Digitized by PPRACHIN, SOA

ପ୍ରଭୃତି ଫଳକାମନା ନ କରନ୍ତି, ତାହାଙ୍କୁ 'ଅଫଳପ୍ରେପ୍ସୁ' ଅର୍ଥାତ୍ ଫଳକାମନାରହିତ ବୋଲ୍ଲଯାଏ । ସେହି ଫଳକାମନାରହିତ ବ୍ୟକ୍ତି, ଅଗ୍ନିହୋତ୍ର ଓ ସନ୍ଧ୍ୟାଉପାସନାଦି ନିତ୍ୟକର୍ମମାନଙ୍କୁ 'ମୁଁ କରୁଅଛି' 'ମୁଁ ବଡ ଧର୍ମିଷ୍ଠ' ଇତ୍ୟାଦି ଅଭିମାନ ବା ଗର୍ବ ପରିତ୍ୟାଗ କରି ଅନୁଷ୍ଠାନ କଲେ ଓ ଏ କର୍ମଦ୍ୱାରା ମୋହର ପୁତ୍ରାଦି ପ୍ରାପ୍ତ ହେବ ଏ ପ୍ରକାର (ରାଗ) ପ୍ରୀତି, ବା ଅମୁକ ଶତ୍ରୁ ପରାସ୍ତ ହେବ, ଏପରି (ଦ୍ୱେଷ) ଶତ୍ରୁତା ଯନ୍ତ୍ର ନ ହୋଇ କେବଳ କର୍ତ୍ତବ୍ୟଜ୍ଞାନରେ ଅନୁଷ୍ଠାନ କଲେ, ସେହି କର୍ମକୁ 'ସାତ୍ତ୍ୱିକ' କର୍ମ ବୋଲ୍ଲଯାଏ । ୨୩ ।

ଶ୍ଳୋକଃ ।

ଯତ୍ତୁ କାମେପ୍ସୁନା କର୍ମ, ସାହଙ୍କାରେଣ ବା ପୁନଃ ।
କ୍ରିୟତେ ବହୁଲାୟାସଂ, ତଦ୍ରାଜସମୁଦାହୃତଂ । ୨୪ ।

ଅନ୍ୱୟଃ ।

କାମେପ୍ସୁନା ବା ସାହଙ୍କାରେଣ ପୁନଃ ବହୁଲାୟାସଂ ଯତ୍ତୁ କର୍ମ କ୍ରିୟତେ, ତତ୍ ତୁ ରାଜସ ଉଦାହୃତଂ । ୨୪ ।

ଟୀକା ।

ରାଜସ କର୍ମାହ । ଯତ୍ତ୍ୱିତି । ଯତ୍ କର୍ମ କାମେପ୍ସୁନା ଫଳଂ ପ୍ରାପ୍ତୁମିଚ୍ଛତା ସାହଙ୍କାରେଣ ବା ମତ୍ସମଃ କୋଽନ୍ୟଃ ଶ୍ରୋତ୍ରିୟୋଽସ୍ତୀତ୍ୟେବ ନିରୂଢାହଙ୍କାରଯୁକ୍ତେନ ଚ କ୍ରିୟତେ, ଯଚ୍ଚ ପୁନର୍ବହୁଲାୟାସମତିକ୍ଲେଶଯୁକ୍ତଂ, ତତ୍ କର୍ମ ରାଜସମୁଦାହୃତଂ । ୨୪ ।

ପଦବ୍ୟାଖ୍ୟା ।

ଯତ୍ ତୁ—ପୁଣି ଯେଉଁ, କାମେପ୍ସୁନା—ଫଳକାମୀ ବ୍ୟକ୍ତି, କର୍ମ—କାର୍ଯ୍ୟକୁ, ସାହଙ୍କାରେଣ ବା—ଅଥବା—ଅହଙ୍କାରଯୁକ୍ତ ବ୍ୟକ୍ତି, ପୁନଃ—ପୁଣି, କ୍ରିୟତେ—କରନ୍ତି, ବହୁଲାୟାସ—ଅତିକ୍ଲେଶଯୁକ୍ତ, ତତ୍—ତାହାକୁ, ରାଜସ ଉଦାହୃତଂ—ରାଜସ କର୍ମ ବୋଲଯାଏ । ୨୪ ।

ଅନୁବାଦ ।

ଫଳକାମୀ ବା ଅହଙ୍କାରୀ ବ୍ୟକ୍ତି ବହୁ ପରିଶ୍ରମସାଧ୍ୟ, ଯେଉଁ (କାମ୍ୟ) କର୍ମ କରନ୍ତି, ତାହାକୁ ରାଜସ କର୍ମ ବୋଲ୍ଲଯାଏ । ୨୪ ।

ବିଷଦବ୍ୟାଖ୍ୟା ।

ଯେଉଁ ବ୍ୟକ୍ତି ସ୍ୱର୍ଗ, ପୁତ୍ର ଓ ପଶୁ ପ୍ରଭୃତି କାମନା କରନ୍ତି, ତାହାଙ୍କୁ 'କାମେପ୍ସୁ' ଅର୍ଥାତ୍ ଫଳକାମୀ ବୋଲ୍ଲଯାଏ ଏବଂ ଯେଉଁ ବ୍ୟକ୍ତି 'ମୁଁ ଅମୁକ କର୍ମ କରୁଅଛି,' 'ମୋପରି ଅତି କର୍ମିଷ୍ଠ ଲୋକ କେହି ନାହାନ୍ତି,' ଏପରି ଅହଙ୍କାର ( ଗର୍ବ ) କରନ୍ତି, ତାହାଙ୍କୁ 'ସାହଙ୍କାର' ଅର୍ଥାତ୍ ଅହଙ୍କାରୀ ବୋଲ୍ଲଯାଏ । ସେହି ଫଳକାମୀ ଅଥବା ଅହଙ୍କାରୀ ବ୍ୟକ୍ତି, ନିତ୍ୟକର୍ମ ନ କରି କେବଳ କାମ୍ୟକର୍ମର ଅନୁଷ୍ଠାନ କରନ୍ତି । ତାହାଙ୍କ ନା କର୍ମର ଫଳ ଓ କର୍ମ କରୁଥିବା ହେତୁ ଯଶଃ ପାଇବା ତାହାଙ୍କର ଏକମାତ୍ର ଲକ୍ଷ୍ୟ ଥାଏ । ଏହି ହେତୁରୁ ଯେ, ଯଥାସାଧ୍ୟ ବହୁ ପରିଶ୍ରମ କରି ଆଡମ୍ବରରେ, ଯେଉଁ କର୍ମ ଅନୁଷ୍ଠାନ କରନ୍ତି, ସେହି କର୍ମକୁ ରାଜସ କର୍ମ ବୋଲ୍ଲଯାଏ । ୨୪ ।

Digitized by PPRACHIN, SOA

ଶ୍ଳୋକଃ ।

ଅନୁବନ୍ଧଂ କ୍ଷୟଂ ହିଂସା,ମନପେକ୍ଷ୍ୟ ଚ ପୌରୁଷଂ ।
ମୋହାଦାରଭ୍ୟତେ କର୍ମ, ଯତ୍ତତ୍ତାମସମୁଚ୍ୟତେ । ୨୫ ।

ଅନ୍ୱୟଃ ।

ଅନୁବନ୍ଧଂ, କ୍ଷୟଂ, ହିଂସାଂ ଚ ପୌରୁଷଂ ଅନପେକ୍ଷ୍ୟ ମୋହାତ୍ ଯତ୍ କର୍ମ ଆରଭ୍ୟତେ, ତତ୍ ତାମସଂ ଉଚ୍ୟତେ । ୨୫ ।

ଟୀକା ।

ତାମସଂ କର୍ମାହ, ଅନୁବନ୍ଧମିତି । ଅନୁବଧ୍ନାତୀତ୍ୟନୁବନ୍ଧଂ ପଶ୍ଚାଦ୍ଭାବି ଶୁଭାଶୁଭଂ. କ୍ଷୟଂ ବିତ୍ତକ୍ଷୟଂ, ହିଂସା ପରପୀଡ଼ାଂ ପୌରୁଷଂ ଚ ସ୍ୱସାମର୍ଥ୍ୟମନପେକ୍ଷ୍ୟାପର୍ଯ୍ୟାଲୋଚ୍ୟ କେବଲଂ ମୋହାଦେବ ଯତ୍ କର୍ମାରଭ୍ୟତେ, ତତ୍ତାମସମୁଦାହୃତଂ । ୨୫ ।

ପଦବ୍ୟାଖ୍ୟା ।

ଅନୁବନ୍ଧଂ—ବନ୍ଧନର ହେତୁ (କର୍ମର ଫଳ) , କ୍ଷୟଂ—ଦ୍ରବ୍ୟାଦି ହାନି, ହିଂସା —ପରପୀଡ଼ା, ଅନପେକ୍ଷ୍ୟ—ନ ଦେଖି—ବିଚାର ନ କରି, ଚ ପୌରୁଷଂ—ନିଜର ଶକ୍ତି ବା ସାମର୍ଥ୍ୟକୁ ମଧ୍ୟ, ମୋହାତ୍—ମୋହ ଅର୍ଥାତ୍ ଭ୍ରମ ହେତୁରୁ, ଆରଭ୍ୟତେ—ଆରମ୍ଭ କରାଯାଏ, କର୍ମ—କାର୍ଯ୍ୟ, ଯତ୍—ଯେଉଁ, ତତ୍ ତାମସଂ ଉଚ୍ୟତେ—ତାହାକୁ ତାମସ ବୋଲାଯାଏ । ୨୫ ।

ଅନୁବାଦ ।

ଫଳ, ହାନି, ପରପୀଡ଼ା ଓ ନିଜ ସାମର୍ଥ୍ୟ, ଇତ୍ୟାଦି କଥା ବିବେଚନା ନ କରି କେବଳ ମୋହ (ଅବିବେକ) ହେତୁରୁ, ଯେଉଁ କର୍ମ ଆରମ୍ଭ କରାଯାଏ, ତାହାକୁ ତାମସ କର୍ମ ବୋଲାଯାଏ । ୨୫ ।

ବିଶଦବ୍ୟାଖ୍ୟା ।

ଏ କର୍ମଟି କଲେ, ତାହାର କି ଫଳ ହେବ, ଅର୍ଥାତ୍ ସେ ଫଳ ସଂସାର ବନ୍ଧନର ହେତୁ କି ସଂସାରରୁ ମୁକ୍ତି ପାଇବାର କାରଣ ? ଏ କର୍ମରେ ଦ୍ରବ୍ୟ, ପରିଶ୍ରମ ଓ ସମୟ ଯେତେ, ନଷ୍ଟ ହେବ, ତଦନୁସାରେ ତହିଁରେ ଫଳ ଅଛି କି ନା ? ଓ ଏଥିରେ କେଉଁ ପ୍ରକାରର କେତେଗୋଟି ପ୍ରାଣିର ହିଂସା କରାଯିବ, ଏବଂ ସେହି କାର୍ଯ୍ୟ-ସାଧନ କରିବାକୁ ନିଜର ଶକ୍ତି ବା ସାମର୍ଥ୍ୟ ଅଛି କି ନାହିଁ ? ପୁଣି ଏ କର୍ମରେ ଯେଉଁ ପଶୁ ପ୍ରଭୃତିର ହିଂସା କରିବାକୁ ହେବ, ତାହା ତୁଳନାରେ ଫଳ ଧର୍ମସଂଗତ କି ନା ? ଆଉ ଏ କର୍ମ ସମାପ୍ତ କରିବାକୁ ଯେତେ ଅର୍ଥବ୍ୟୟ ଓ କାୟକ୍ଲେଶ ହେବ, ତାହା ସହିବାକୁ ନିଜର ସାମର୍ଥ୍ୟ ଅଛି କି ନାହିଁ, ଇତ୍ୟାଦି ବିଷୟ ବିଚାର ନ କରି କେବଳ ମୋହ ଅର୍ଥାତ୍ ଅଜ୍ଞାନତା ବା ଭ୍ରମ ହେତୁରୁ ଯେଉଁ କର୍ମ ଆରମ୍ଭ କରାଯାଏ ତାହାକୁ ତାମସ କର୍ମ ବୋଲାଯାଏ । ୨୫ ।

ଶ୍ଳୋକଃ ।

ମୁକ୍ତସଙ୍ଗୋଽନହଂବାଦୀ, ଧୃତ୍ୟୁତ୍ସାହସମନ୍ୱିତଃ ।
ସିଦ୍ଧ୍ୟସିଦ୍ଧ୍ୟୋର୍ନିର୍ବିକାରଃ, କର୍ତ୍ତା ସାତ୍ତ୍ୱିକ ଉଚ୍ୟତେ । ୨୬ ।

Digitized by PPRACHIN, SOA

ଅନ୍ୱୟଃ ।

ମୁକ୍ତସଙ୍ଗଃ. ଅନହଂବାଦୀ ଧୃତ୍ୟୁତ୍ସାହସମନ୍ୱିତଃ, ସିଦ୍ଧ୍ୟସିଦ୍ଧ୍ୟୋଃ ନିର୍ବିକାରଃ କର୍ତ୍ତା ସାତ୍ତ୍ୱିକଃ ଉଚ୍ୟତେ । ୨୬ ।

ଟୀକା ।

କର୍ତ୍ତାରଂ ତ୍ରିବିଧମାହ, ମୁକ୍ତସଙ୍ଗ ଇତ ତ୍ରିଭିଃ, ମୁକ୍ତସଙ୍ଗସ୍ତ୍ୟକ୍ତାଭିନିବେଶଃ. ଅନହଂବାଦୀ ଗର୍ବୋକ୍ତିରହିତଃ ଧୃତର୍ଧୈର୍ଯ୍ୟଂ ଉତ୍ସାହ ଉଦ୍ୟମଃ ତାଭ୍ୟାଂ ସମନ୍ୱିତଃ ଯୁକ୍ତଃ, ଅରବ୍ଧସ୍ୟ କର୍ମଣଃ ସିଦ୍ଧାବସିଦ୍ଧୌ ଚ ନିର୍ବିକାରୋହର୍ଷ-ବିଷାଦଶୂନ୍ୟଃ, ସ ଏବମ୍ଭୂତଃ କର୍ତ୍ତା ସାତ୍ତ୍ୱିକ ଉଚ୍ୟତେ । ୨୬ ।

ପଦବ୍ୟାଖ୍ୟା ।

ମୁକ୍ତସଙ୍ଗଃ—ଅସକ୍ତିରହିତ, ଅନହଂବାଦୀ—ବିନୟଭାଷୀ, ଧୃତ୍ୟୁତ୍ସାହସମନ୍ୱିତଃ—ଧୈର୍ଯ୍ୟ ଓ ଉଦ୍ୟମଯୁକ୍ତ, ସିଦ୍ଧ୍ୟସିଦ୍ଧ୍ୟୋଃ—ଆରମ୍ଭ କରା ହୋଇଥିବା କର୍ମର ସିଦ୍ଧି ଓ ଅସିଦ୍ଧି ବିଷୟରେ, ନିର୍ବିକାରଃ—ହର୍ଷ ବିଷାଦଶୂନ୍ୟ, କର୍ତ୍ତା—କର୍ମ କରିବା ବ୍ୟକ୍ତିକୁ, ସାତ୍ତ୍ୱିକଃ ଉଚ୍ୟତେ—ସାତ୍ତ୍ୱିକ କର୍ତ୍ତା ବୋଲାଯାଏ । ୨୬ ।

ଅନୁବାଦ ।

ଆସକ୍ତିଶୂନ୍ୟ, ଗର୍ବିତବଚନ ବର୍ଜିତ, ଧୈର୍ଯ୍ୟ ଓ ଉଦ୍ୟମଯୁକ୍ତ ଏବଂ କର୍ମର ସିଦ୍ଧି ଓ ଅସିଦ୍ଧି ବିଷୟରେ ନିର୍ବିକାର, ଯେ କର୍ତ୍ତା, ତାଙ୍କୁ ସାତ୍ତ୍ୱିକ କର୍ତ୍ତା ବୋଲାଯାଏ । ୨୬ ।

ବିଶଦବ୍ୟାଖ୍ୟା ।

ପୂର୍ବ ଛଅ ଶ୍ଳୋକରେ କର୍ମର ସାତ୍ତ୍ୱିକାଦି ଭେଦ ବର୍ଣ୍ଣନା କରି ବର୍ତ୍ତମାନ କର୍ତ୍ତାର ସାତ୍ତ୍ୱିକାଦି ଭେଦ କହୁଅଛନ୍ତି । ଯେଉଁ ବ୍ୟକ୍ତି କର୍ମଫଳରେ ଆସକ୍ତିଶୂନ୍ୟ, ଅର୍ଥାତ୍ ଫଳକାମନା ପରିତ୍ୟାଗୀ, ଯେ 'ଅନହଂବାଦୀ' ଅର୍ଥାତ୍ ଯାହାଙ୍କର ପ୍ରଶଂସାର ଉପଯୁକ୍ତ ନାନା ପ୍ରକାର ଗୁଣ ଥିଲେ ସୁଦ୍ଧା, ସେଥିପାଇଁ କେବେ ଆତ୍ମପ୍ରଶଂସା ବା ଗର୍ବିତ ବଚନ ବ୍ୟବହାର କରନ୍ତି ନାହିଁ ଓ ଯେ, ଧୈର୍ଯ୍ୟ ଓ ଉଦ୍ୟମଯୁକ୍ତ, ଅର୍ଥାତ୍ ଆରବ୍ଧ କାର୍ଯ୍ୟରେ କୌଣସି ପ୍ରକାର ବିଘ୍ନ ହେଲେ, ଧୈର୍ଯ୍ୟ ହେତୁରୁ ଉଦ୍‌ବିଗ୍ନ ହୁଅନ୍ତି ନାହିଁ, ଅଥଚ ଆରବ୍ଧ କାର୍ଯ୍ୟକୁ ବିଧି ଅନୁ-ସାରେ ସମାପ୍ତ କରିବାକୁ ନାନା ପ୍ରକାର ଉଦ୍ୟମ କରନ୍ତି ଏବଂ ଯେ, କର୍ମର ସିଦ୍ଧି ଓ ଅସିଦ୍ଧି ବିଷୟରେ ନିର୍ବିକାର ଅର୍ଥାତ୍ କର୍ମ ସମାପ୍ତ ହେଲେ ଫଳଲାଭ ହେତୁରୁ ହର୍ଷପ୍ରାପ୍ତ, କିମ୍ବା କର୍ମ ସମାପ୍ତ ନ ହେଲେ, ଫଳନାଶ ହେତୁରୁ ବିଷାଦଗ୍ରସ୍ତ ନ ହୁଅନ୍ତି, ସେହି କର୍ତ୍ତାଙ୍କୁ ସାତ୍ତ୍ୱିକ କର୍ତ୍ତା ବୋଲାଯାଏ । ସାର କଥା ଏହି କି ଫଳକାମନା ଓ ଅହଂଭାବ ପରିତ୍ୟାଗପୂର୍ବକ ଧୈର୍ଯ୍ୟ ଓ ଉତ୍ସାହଯୁକ୍ତ ହୋଇ ଫଳର ପ୍ରାପ୍ତିରେ ହୃଷ୍ଟ ବା ଅପ୍ରାପ୍ତିରେ ରୁଷ୍ଟ ନ ହୋଇ ଯେଉଁ ବ୍ୟକ୍ତି, କର୍ତ୍ତବ୍ୟ ବୋଧରେ ଶାସ୍ତ୍ରୀୟ କର୍ମମାନ କରନ୍ତି, ତାହାଙ୍କୁ ସାତ୍ତ୍ୱିକ କର୍ତ୍ତା ବୋଲାଯାଏ । ୨୬ ।

ଶ୍ଳୋକଃ ।

ରାଗୀ କର୍ମଫଲପ୍ରେପ୍ସୁର୍ଲୁବ୍ଧୋ ହିଂସାତ୍ମକୋଽଶୁଚିଃ ।
ହର୍ଷଶୋକାନ୍ୱିତଃ କର୍ତ୍ତା ରାଜସଃ ପରିକୀର୍ତ୍ତିତଃ । ୨୭ ।

ଅନ୍ୱୟଃ ।

ରାଗୀ, କର୍ମଫଲପ୍ରେପ୍ସୁଃ, ଲୁବ୍ଧଃ, ହିଂସାତ୍ମକଃ ଅଶୁଚିଃ, ହର୍ଷଶୋକାନ୍ୱିତଃ, କର୍ତ୍ତା ରାଜସଃ ପରିକୀର୍ତ୍ତିତଃ । ୨୭ ।

Digitized by PPRACHIN, SOA

### ଟୀକା ।

ରାଜସ କର୍ତ୍ତାରମାହ ରାଗୀତି । ରାଗୀ ପୁତ୍ରାଦିପ୍ରୀତିମାନ୍, କର୍ମଫଳପ୍ରେପ୍ସୁଃ କର୍ମଫଳକାମୀ, ଲୁବ୍ଧଃ ପରଦ୍ରବ୍ୟାଭିଳାଷୀ, ହିଂସାତ୍ମକଃ ପରପୀଡାକରସ୍ୱଭାବଃ ଅଶୁଚିର୍ବହିରନ୍ତଃଶୌଚଶୂନ୍ୟଃ, ଲାଭାଲାଭୟୋର୍ହର୍ଷଶୋକାଭ୍ୟାଂ ସମନ୍ୱିତଃ କର୍ତ୍ତା ରାଜସଃ । ୨୭ ।

### ପଦବ୍ୟାଖ୍ୟା ।

ରାଗୀ—ପୁତ୍ର, ସ୍ତ୍ରୀ ଓ ଧନାଦିରେ ସ୍ନେହୀ, କର୍ମଫଳପ୍ରେପ୍ସୁଃ—କର୍ମଫଳାକାଂକ୍ଷୀ, ଲୁବ୍ଧଃ—ପରଧନାଭିଳାଷୀ, ହିଂସାତ୍ମକଃ—ପରର ଅନିଷ୍ଟ କରିବାକୁ ଇଚ୍ଛୁକ, ଅଶୁଚିଃ—ବାହ୍ୟ ଓ ଆଭ୍ୟନ୍ତର ଶୌଚବର୍ଜିତ; ହର୍ଷଶୋକାନ୍ୱିତଃ—ହର୍ଷ ଓ ଶୋକ ଯୁକ୍ତ, କର୍ତ୍ତା—କର୍ତ୍ତା ବ୍ୟକ୍ତିଙ୍କୁ ରାଜସଃ ପରିକୀର୍ତ୍ତିତଃ—ରାଜସ ବୋଲଯାଏ । ୨୭ ।

### ଅନୁବାଦ ।

ବିଷୟାନୁରାଗୀ, କର୍ମଫଳାକାଂକ୍ଷୀ, ଲୋଭୀ, ହିଂସାଳୁ, ଅଶୁଚି ଓ ହର୍ଷ ଶୋକ ଯୁକ୍ତ କର୍ତ୍ତାଙ୍କୁ ରାଜସ କର୍ତ୍ତା କୁହାଯାଏ । ୨୭ ।

### ଭାବବ୍ୟାଖ୍ୟା ।

ଧନ, ପୁତ୍ର ଓ ସ୍ତ୍ରୀ ଏବଂ ନାନାପ୍ରକାର ବିଷୟଭୋଗରେ ଯାହାଙ୍କର ଅନୁରାଗ, ବା ଶ୍ରଦ୍ଧା, ଆଉ ସ୍ୱର୍ଗ, ପଶୁ, ପୁତ୍ର, ଧନ ଓ ଯଶଃ ପ୍ରଭୃତି ଫଳ ପାଇବା ଇଚ୍ଛାରେ ଯେ, କର୍ମ କରନ୍ତି, ଯେ, ଆପଣାର ଧନ ଥିଲେ ସୁଦ୍ଧା, ପରର ଦ୍ରବ୍ୟ ଗ୍ରହଣ କରିବାକୁ ଇଚ୍ଛୁକ, ଯେ, ଆପଣାର ହିତ ପାଇଁ ପରର ଅନିଷ୍ଟ ସାଧନ କରିବାକୁ ତତ୍ପର, ଯେ, ଶାସ୍ତ୍ରୋକ୍ତ ଶୌଚବିଧି ବର୍ଜିତ ଓ ଯେ, ଅଭିଳଷିତ ଦ୍ରବ୍ୟ ପ୍ରାପ୍ତିରେ ହର୍ଷାନ୍ୱିତ ଏବଂ ଅନିଷ୍ଟ ପ୍ରାପ୍ତିରେ ଶୋକଗ୍ରସ୍ତ ହୁଅନ୍ତି, ସେହି କର୍ତ୍ତାଙ୍କୁ 'ରାଜସ କର୍ତ୍ତା' ବୋଲଯାଏ । ୨୭ ।

### ଶ୍ଳୋକଃ ।

ଅୟୁକ୍ତଃ ପ୍ରାକୃତଃ ସ୍ତବ୍ଧଃ, ଶଠୋ ନୈଷ୍କୃତିକୋଽଲସଃ ।
ବିଷାଦୀ ଦୀର୍ଘସୂତ୍ରୀ ଚ, କର୍ତ୍ତା ତାମସ ଉଚ୍ୟତେ । ୨୮ ।

### ଅନ୍ୱୟଃ ।

ଅୟୁକ୍ତଃ, ପ୍ରାକୃତଃ ସ୍ତବ୍ଧଃ, ଶଠଃ, ନୈଷ୍କୃତିକଃ ଅଳସଃ ବିଷାଦୀ ଚ ଦୀର୍ଘସୂତ୍ରୀ କର୍ତ୍ତା ତାମସ ଉଚ୍ୟତେ ।୨୮।

### ଟୀକା ।

ତାମସ କର୍ତ୍ତାରମାହ । ଅୟୁକ୍ତ ଇତି । ଅୟୁକ୍ତୋଽନବହିତଃ, ପ୍ରାକୃତୋ ବିବେକଶୂନ୍ୟଃ, ସ୍ତବ୍ଧୋଽନମ୍ରଃ, ଶଠଃ ଶକ୍ତିଗୂହନକାରୀ, ନୈଷ୍କୃତିକଃ ପରାବମାନୀ, ଅଳସଃ ଅନୁଦ୍ୟମଶୀଳଃ, ବିଷାଦୀ ଶୋକଶୀଳଃ, ଯଦଦ୍ୟ ବା ଶ୍ୱୋ ବା କାର୍ଯ୍ୟଂ ତନ୍ମାସେନାପି ନ ସମ୍ପାଦୟତି ଯଃ ସ ଦୀର୍ଘସୂତ୍ରୀ, ଏବମ୍ଭୂତଃ କର୍ତ୍ତା ତାମସଃ । କର୍ତ୍ତୃତ୍ରୈବିଧ୍ୟେନୈବ ଜ୍ଞାତୃରପି ତ୍ରୈବିଧ୍ୟମୁକ୍ତଂ, କର୍ମତ୍ରୈବିଧ୍ୟେନ ଚ ଜ୍ଞେୟସ୍ୟାପି ତ୍ରୈବିଧ୍ୟମୁକ୍ତଂ ବେଦିତବ୍ୟଂ ବୁଦ୍ଧେସ୍ତ୍ରୈବିଧ୍ୟେନ ଚ କରଣସ୍ୟାପ୍ୟୁକ୍ତଂ ଭବତି । ୨୮ ।

### ପଦବ୍ୟାଖ୍ୟା ।

ଅୟୁକ୍ତଃ—ଅସାବଧାନ, ପ୍ରାକୃତଃ—ବିବେକଶୂନ୍ୟ, ସ୍ତବ୍ଧଃ—ଅବିନୟୀ, ଶଠଃ—ଠକ, ନୈଷ୍କୃତିକଃ—ପରପ-ମାନକାରୀ, ଅଳସଃ—ଅଳସୁଆ, ବିଷାଦୀ—ଶୋକଗ୍ରସ୍ତ, ଦୀର୍ଘସୂତ୍ରୀ ଚ—ଯେ ଏକଦିନରେ ହେବା କାର୍ଯ୍ୟକୁ ଏକ

Digitized by PPRACHIN, SOA

ମାତ୍ରରେ ମଧ୍ୟ, ସଂକଳ୍ପ କରି ନ ପାରେ, ଅର୍ଥାତ୍ ଦୀର୍ଘସୂତ୍ରୀ, କର୍ତ୍ତା ତାମସଃ ଉଚ୍ୟତେ—ତାହାକୁ ତାମସ କର୍ତ୍ତା ବୋଲିଯାଏ । ୨୮ ।

## ଅନୁବାଦ ।

ଅସାବଧାନ, ବିବେକଶୂନ୍ୟ, ନମ୍ରତାରହିତ, ଶଠ, ପରାପମାନକାରୀ, ଅଳସୁଆ, ଦୀର୍ଘସୂତ୍ରୀ ଓ ଶୋକଯୁକ୍ତ କର୍ତ୍ତାଙ୍କୁ 'ତାମସ କର୍ତ୍ତା' ବୋଲାଯାଏ । ୨୮ ।

## ବିଶଦବ୍ୟାଖ୍ୟା ।

ମନ ନିଶ୍ଚଳ ନ ଥିବାରୁ ଯେ, କର୍ତ୍ତବ୍ୟ କର୍ମରେ ସାବଧାନ ହୋଇ ନ ପାରେ, ଯେ, ଶାସ୍ତ୍ର ପାଠାଦି କରି ନ ଥିବାରୁ ସତ୍ୟ ଅସତ୍ୟ ବିବେଚନାରେ ଅସମର୍ଥ, ଯେ ବ୍ୟକ୍ତି ଗୁରୁ, ଦେବତା ଓ ବ୍ରାହ୍ମଣାଦି ପୂଜ୍ୟ ବ୍ୟକ୍ତିଙ୍କ ନିକଟରେ ସୁଦ୍ଧା, ବିନମ୍ରଭାବ ଧାରଣ ନ କରି ସର୍ବଦା ଗର୍ବଯୁକ୍ତ ଥାଏ ଓ ବ୍ୟକ୍ତିବିଶେଷଙ୍କୁ ପ୍ରତାରଣା କରିବା ଅଭିଳାଷରେ ପ୍ରକୃତଘଟନା ଅନ୍ୟ ପ୍ରକାର କରି ବର୍ଣ୍ଣନ କରେ, ଯେ, ଆପଣାର ଉପକାରିବ୍ୟକ୍ତିର ମଧ୍ୟ, ଅପମାନ କରେ, ଯେ, ଅଳସୁଆ, ଯେ, ଆପଣାର ଇଷ୍ଟାନିଷ୍ଟରେ ସାମାନ୍ୟ ବାଧାହେଲେ, କିମ୍ବା ବାଧାହେବାର ଆଶଙ୍କା ହେଲେ, ଶୋକଗ୍ରସ୍ତ ହୁଏ, ପୁଣି ଯେ, ଦୀର୍ଘସୂତ୍ରୀ ଅର୍ଥାତ୍ ଦିନେ ବା ଦୁଇଦିନରେ ହୋଇ ପାରିବାଭଳି କାର୍ଯ୍ୟକୁ ଏକମାସ ବା ତତୋଧିକ ଦିନରେ ସୁଦ୍ଧା, ନିଷ୍ପନ୍ନ ନ କରେ, ସେହିପରି କର୍ତ୍ତାକୁ 'ତାମସ କର୍ତ୍ତା' ବୋଲାଯାଏ । ୨୮ ।

## ଶ୍ଳୋକଃ ।

ବୁଦ୍ଧେର୍ଭେଦଂ ଧୃତେଶ୍ଚୈବ, ଗୁଣତସ୍ତ୍ରିବିଧଂ ଶୃଣୁ ।
ପ୍ରୋଚ୍ୟମାନମଶେଷେଣ, ପୃଥକ୍ତ୍ୱେନ ଧନଞ୍ଜୟ । ୨୯ ।

## ଅନ୍ୱୟଃ ।

ହେ ଧନଞ୍ଜୟ ! ପୃଥକ୍ତ୍ୱେନ ଅଶେଷେଣ ପ୍ରୋଚ୍ୟମାନଂ ବୁଦ୍ଧେଃ ଚ ଧୃତେଃ ଏବ ଗୁଣତଃ ତ୍ରିବିଧଂ ଭେଦଂ ଶୃଣୁ । ୨୯ ।

## ଟୀକା ।

ଇଦାନୀଂ ବୁଦ୍ଧେର୍ଧୃତେଶ୍ଚାପି ତ୍ରୈବିଧ୍ୟଂ ପ୍ରତିଜାନୀତେ, ବୁଦ୍ଧେରିତି । ସ୍ପଷ୍ଟାର୍ଥଃ । ୨୯ ।

## ପଦବ୍ୟାଖ୍ୟା ।

ବୁଦ୍ଧେଃ—ବୁଦ୍ଧିର, ଭେଦଂ—ପ୍ରଭେଦକୁ, ଧୃତେଃ ଚ ଏବ—ଧୃତିର ମଧ୍ୟ, ଗୁଣତଃ—ଗୁଣ ହେତୁରୁ, ତ୍ରିବିଧଂ—ତିନପ୍ରକାର, ଶୃଣୁ—ଶୁଣ, ପ୍ରୋଚ୍ୟମାନଂ—କୁହା ହେଉଅଛି, ଅଶେଷେଣ—ସମ୍ପୂର୍ଣ୍ଣରୂପେ, ପୃଥକ୍ତ୍ୱେନ—ଭିନ୍ନ ଭାବରେ, ଧନଞ୍ଜୟ—ହେ ଅର୍ଜୁନ ! । ୨୯ ।

## ଅନୁବାଦ ।

ହେ ଧନଞ୍ଜୟ ! ଗୁଣଅନୁସାରେ ବୁଦ୍ଧିର ଓ ଧୃତିର ତିନପ୍ରକାର ଭେଦ ପୃଥକ୍ ୨ କରି ସମ୍ପୂର୍ଣ୍ଣରୂପେ କୁହା ଯାଉଅଛି, ଶ୍ରବଣକର । ୨୯ ।

Digitized by PPRACHIN, SOA

ବିଶଦବ୍ୟାଖ୍ୟା ।

ଏହି ଅଧ୍ୟାୟର ୧୯ ଶ୍ଳୋକରେ ଶ୍ରୀଭଗବାନ୍ ଜ୍ଞାନ, କର୍ମ ଓ କର୍ତ୍ତାର ତ୍ରିବିଧ ଭେଦ କହିବାକୁ ସ୍ୱୀକାର କରିଥିଲେ । ତଦନୁସାରେ ୨୦ ଠାରୁ ୨୮ ଶ୍ଳୋକ ପର୍ଯ୍ୟନ୍ତ ୯ ଶ୍ଳୋକରେ ସେ ସବୁ ବ୍ୟାଖ୍ୟା କଲେ । ତନ୍ମଧ୍ୟରେ ୨୬ ଶ୍ଳୋକରେ ସାତ୍ତ୍ୱିକ କର୍ତ୍ତାର ଲକ୍ଷଣ କହିଲାବେଳେ, 'ଧୃତ୍ୟୁତ୍ସାହସମନ୍ୱିତଃ' ଏହି ବାକ୍ୟରେ, ଯେଉଁ ଧୃତିଶବ୍ଦର ଉଲ୍ଲେଖ କରି ହୋଇ ଅଛି, ତାହା ବୁଦ୍ଧିର ଏକପ୍ରକାର ବୃତ୍ତି ଅଟେ । ସେହି ବୁଦ୍ଧିର ବିଷୟ ଉତ୍ତମରୂପେ ନ ଜାଣିଲେ, ଧୃତି ବିଷୟ ଜଣା ଯିବ ନାହିଁ ବୋଲି, ଏଶ୍ଳୋକରେ ବୁଦ୍ଧି ଓ ତାହାର ବୃତ୍ତିସ୍ୱରୂପ ଧୃତିର ସତ୍ତ୍ୱ, ରଜ ଓ ତମୋଗୁଣ ଅନୁସାରେ ତିନପ୍ରକାର ଭେଦକୁ ପୃଥକ୍ ପୃଥକ୍ କରି ସମ୍ପୂର୍ଣ୍ଣରୂପେ କହିବାକୁ ଭଗବାନ୍ ପ୍ରତିଜ୍ଞା କରୁଅଛନ୍ତି ।

ଯେଉଁ ବୃତ୍ତି ପ୍ରଭାବରେ ପଦାର୍ଥର ଓ ବିଷୟର ସ୍ୱରୂପ ନିଶ୍ଚୟ କରାଯାଏ, ସେହି ବୃତ୍ତିକୁ ବୁଦ୍ଧି ବୋଲାଯାଏ । ଏସ୍ଥଳରେ 'ବୁଦ୍ଧି' ଏ ଶବ୍ଦଦ୍ୱାରା ଜ୍ଞାନଶକ୍ତି ପ୍ରତି ଲକ୍ଷ୍ୟ କରି ହୋଇ ଅଛି ।

'ଧୃତି' ବୁଦ୍ଧିର ଏକ ପ୍ରକାର ବୃତ୍ତି ଅଟେ । ଏ ସ୍ଥଳରେ ଧୃତି ଶବ୍ଦଦ୍ୱାରା କ୍ରିୟାଶକ୍ତିକୁ ଲକ୍ଷ୍ୟ କରି ହୋଇଅଛି । ସେହି ବୁଦ୍ଧି ଓ ଧୃତି, ସତ୍ତ୍ୱ, ରଜ ଓ ତମୋଗୁଣ ଭେଦରେ ପ୍ରତ୍ୟେକରେ ତିନ ପ୍ରକାର ହୁଅନ୍ତି, ତାହା ସମ୍ପୂର୍ଣ୍ଣରୂପେ, ଅର୍ଥାତ୍ ତାହା ମଧ୍ୟରୁ କେଉଁ ପ୍ରକାର ବୁଦ୍ଧି ଓ ଧୃତି ଗ୍ରହଣର ଯୋଗ୍ୟ, ଏବଂ କେଉଁ ପ୍ରକାର ଗ୍ରହଣର ଯୋଗ୍ୟ ନୁହେ, ତାହା ପୃଥକ୍ ପୃଥକ୍ କରି ଶ୍ରୀଭଗବାନ୍ ବୁଝାଇବେ ବୋଲି ଅର୍ଜୁନଙ୍କୁ କହିଲେ । ୨୯ ।

ଶ୍ଳୋକଃ ।

ପ୍ରବୃତ୍ତିଂ ଚ ନିବୃତ୍ତିଂ ଚ, କାର୍ଯ୍ୟାକାର୍ଯ୍ୟେ ଭୟାଭୟେ ।
ବନ୍ଧଂ ମୋକ୍ଷଂ ଚ ଯା ବେତ୍ତି, ବୁଦ୍ଧିଃ ସା ପାର୍ଥ ସାତ୍ତ୍ୱିକୀ । ୩୦ ।

ଅନ୍ୱୟଃ ।

ହେ ପାର୍ଥ ! ଯା(ବୁଦ୍ଧିଃ)ପ୍ରବୃତ୍ତିଂ, ଚ ନିବୃତ୍ତିଂ, ଚ କାର୍ଯ୍ୟାକାର୍ଯ୍ୟେ, ଭୟାଭୟେ ବନ୍ଧଂ ଚ ମୋକ୍ଷଂ ବେତ୍ତି, ସା ବୁଦ୍ଧିଃ ସାତ୍ତ୍ୱିକୀ । ୩୦ ।

ତତ୍ର ବୁଦ୍ଧେସ୍ତ୍ରୈବିଧ୍ୟମାହ, ପ୍ରବୃତ୍ତିମିତି ତ୍ରିଭିଃ । ପ୍ରବୃତ୍ତିଂ ଧର୍ମେ, ନିବୃତ୍ତିମଧର୍ମେ ଯସ୍ମିନ୍ ଦେଶେ କାଲେ ଚ ଯତ୍ କାର୍ଯ୍ୟମକାର୍ଯ୍ୟଂ ଚ ଭୟାଭୟେ କାର୍ଯ୍ୟାକାର୍ଯ୍ୟନିମିତ୍ତୌ ଅର୍ଥାନର୍ଥୌ କଥଂ ବନ୍ଧଃ କଥଂ ବା ମୋକ୍ଷ ଇତ ଯା ବୁଦ୍ଧିରନ୍ତଃକରଣଂ ବେତ୍ତି, ସା ସାତ୍ତ୍ୱିକୀ ଯଯା ପୁମାନ୍ ବେଭୀତ ବକ୍ତବ୍ୟେ କରଣେ କର୍ତ୍ତୃତ୍ୱୋପଚାରଂ, କାଷ୍ଠାନ ପଚନ୍ତୀତିବତ୍ । ୩୦ ।

ପଦବ୍ୟାଖ୍ୟା ।

ପ୍ରବୃତ୍ତିଂ ଚ—ଧର୍ମରେ ଇଚ୍ଛା, ନିବୃତ୍ତିଂ ଚ—ଅଧର୍ମରେ ଅନିଚ୍ଛା, କାର୍ଯ୍ୟାକାର୍ଯ୍ୟେ—କର୍ତ୍ତବ୍ୟକର୍ମ ବା ପ୍ରବୃତ୍ତିମାର୍ଗ ଓ କର୍ମତ୍ୟାଗ ବା ନିବୃତ୍ତିମାର୍ଗ, ଭୟାଭୟେ—ଜନ୍ମମରଣରୂପ ସଂସାରବନ୍ଧନରୁ ଭୟ ଓ ମୁକ୍ତିପ୍ରାପ୍ତିରୂପ ଅଭୟ, ବନ୍ଧଂ—ଜୀବର ସଂସାର ବନ୍ଧନ ହୁଏ ତାହା, ମୋକ୍ଷଂ ଚ—ସଂସାରରୁ ମୁକ୍ତି, ଯା ବେତ୍ତି—ଯେଉଁ ବୁଦ୍ଧିଦ୍ୱାରା ଜଣାଯାଏ, ବୁଦ୍ଧିଃ ସା—ସେହି ବୁଦ୍ଧି, ପାର୍ଥ—ହେ ଅର୍ଜୁନ !, ସାତ୍ତ୍ୱିକୀ—ସାତ୍ତ୍ୱିକୀ ଅଟେ । ୩୦ ।

Digitized by PPRACHIN, SOA

### ଅନୁବାଦ ।

ହେ ପାର୍ଥ ! ଯେଉଁ ବୁଦ୍ଧିଦ୍ୱାରା ପ୍ରବୃତ୍ତି ଓ ନିବୃତ୍ତି, କାର୍ଯ୍ୟ ଓ ଅକାର୍ଯ୍ୟ, ଭୟ ଓ ଅଭୟ ଏବଂ ବନ୍ଧନ ଓ ମୁକ୍ତି ଜଣାଯାଏ, ତାହା ସାତ୍ତ୍ୱିକୀ ବୁଦ୍ଧି ଅଟେ । ୩୦ ।

### ବିଶଦବ୍ୟାଖ୍ୟା ।

କର୍ମକାଣ୍ଡକୁ ଅର୍ଥାତ୍ ନାନା ପ୍ରକାର ସକାମ, ନିଷ୍କାମ, ନୈମିତ୍ତିକ ଏବଂ ନିତ୍ୟ-କର୍ମାଦି ଅନୁଷ୍ଠାନକୁ ପ୍ରବୃତ୍ତି ମାର୍ଗ ବୋଲାଯାଏ । ଆଉ ନିଷ୍କାମଭାବରେ କେବଳ ନିତ୍ୟକର୍ମର ଅନୁଷ୍ଠାନକୁ, ଅଥବା ଫଳ ସହିତ ସମସ୍ତ କର୍ମର ପରିତ୍ୟାଗକୁ ନିବୃତ୍ତିମାର୍ଗ ବୋଲାଯାଏ । ପ୍ରବୃତ୍ତିମାର୍ଗବିହିତ କର୍ମର ନାମ କାର୍ଯ୍ୟ ଓ ନିବୃତ୍ତିମାର୍ଗବିହିତ କର୍ମ ପରିତ୍ୟାଗର ନାମ ଅକାର୍ଯ୍ୟ । ପ୍ରବୃତ୍ତିମାର୍ଗରେ ରହିଲେ, ଫଳଭୋଗ କରିବାପାଇଁ ବାରମ୍ବାର ଜନ୍ମଗ୍ରହଣ କରିବାକୁ ହେବ ଓ ସେଥିପାଇଁ ଗର୍ଭବାସର କଷ୍ଟ ଓ ପ୍ରସବକାଳର ଯନ୍ତ୍ରଣା ପ୍ରଭୃତିପାଇଁ ମନରେ ଯେଉଁ ଡର ହୁଏ, ତାହାକୁ ଭୟ ବୋଲାଯାଏ ଓ ନିବୃତ୍ତିମାର୍ଗରେ ରହିଲେ, ସେ ସବୁ ଦୁଃଖଭୋଗ କରିବାକୁ ହେବ ନାହିଁ ବୋଲି, ମନରେ ଯେଉଁ ଆଶ୍ୱାସନା ଜନ୍ମେ, ତାହା 'ଅଭୟ' ଅଟେ । ସେହିପରି ପ୍ରବୃତ୍ତିମାର୍ଗରେ ରହି ମିଥ୍ୟାଜ୍ଞାନ ହେତୁରୁ 'ମୁଁ କର୍ତ୍ତା' ଇତ୍ୟାଦି ଯେଉଁ ଅଭିମାନ, ତାହାର ନାମ 'ବନ୍ଧନ', ଆଉ ନିବୃତ୍ତିମାର୍ଗରେ ରହିଲେ, ତତ୍ତ୍ୱଜ୍ଞାନଦ୍ୱାରା ଅଜ୍ଞାନ ସମୂଳେ ବିନଷ୍ଟ ହେବାରୁ ଯେଉଁ ଅନିର୍ବଚନୀୟ ବ୍ରହ୍ମାନନ୍ଦ ସୁଖର ଉପଲବ୍ଧି ହୁଏ, ତାହାର ନାମ 'ମୋକ୍ଷ' ।

ଯେଉଁ ବୁଦ୍ଧିଦ୍ୱାରା ଉପରୋକ୍ତ ପ୍ରବୃତ୍ତି ଓ ନିବୃତ୍ତି ମାର୍ଗ, କାର୍ଯ୍ୟ ଓ ଅକାର୍ଯ୍ୟ ଭୟ ଓ ଅଭୟ ଏବଂ ବନ୍ଧନ ଓ ମୋକ୍ଷ ଜଣାଯାଏ, ସଂକ୍ଷେପରେ କହିଲେ, ଯାହାଦ୍ୱାରା ସତ୍ ଓ ଅସତ୍ ବୁଝା ଯାଏ, ସେହି ବୁଦ୍ଧିକୁ ସାତ୍ତ୍ୱିକୀ ବୁଦ୍ଧି ବୋଲାଯାଏ । ୩୦ ।

### ଶ୍ଲୋକଃ ।

ଯୟା ଧର୍ମମଧର୍ମଂ ଚ, କାର୍ଯ୍ୟଂ ଚାକାର୍ଯ୍ୟମେବ ଚ ।
ଅଯଥାବତ୍ ପ୍ରଜାନାତି, ବୁଦ୍ଧିଃ ସା ପାର୍ଥ ରାଜସୀ । ୩୧ ।

### ଅନ୍ୱୟଃ ।

ହେ ପାର୍ଥ !, ଯୟା ଧର୍ମଂ ଚ ଅଧର୍ମଂ ଚ କାର୍ଯ୍ୟଂ ଚ ଅକାର୍ଯ୍ୟଂ ଏବ ଅଯଥାବତ୍ ପ୍ରଜାନାତି, ସା ବୁଦ୍ଧିଃ ରାଜସୀ । ୩୧ ।

### ଟୀକା ।

ରାଜସୀଂ ବୁଦ୍ଧିମାହ । ଯୟେତି । ଅଯଥାବତ୍ ସନ୍ଦେହାସ୍ପଦତ୍ୱେନେତ୍ୟର୍ଥଃ । ସ୍ପଷ୍ଟମନ୍ୟତ୍ । ୩୧ ।

### ପଦବ୍ୟାଖ୍ୟା ।

ଯୟା—ଯେଉଁ ବୁଦ୍ଧିଦ୍ୱାରା, ଧର୍ମଂ—ଶାସ୍ତ୍ରବିହିତ କର୍ମାଦି, ଅଧର୍ମଂ ଚ—ଶାସ୍ତ୍ରନିଷିଦ୍ଧ କର୍ମାଦି ମଧ୍ୟ, କାର୍ଯ୍ୟଂ ଚ—ଓ କର୍ତ୍ତବ୍ୟ କର୍ମ ମଧ୍ୟ, ଅକାର୍ଯ୍ୟଂ ଏବ ଚ—ନିଷିଦ୍ଧ କର୍ମ, ଅଥବା—କାର୍ଯ୍ୟଂ ଚ—ପ୍ରବୃତ୍ତିମାର୍ଗବିହିତ କର୍ମ, ଅକାର୍ଯ୍ୟଂ ଏବ ଚ—ନିବୃତ୍ତିମାର୍ଗବିହିତ କର୍ମତ୍ୟାଗାଦି, ଅଯଥାବତ୍—ଅନୁଚିତରୂପେ—ସନ୍ଦେହଯୁକ୍ତ ଭାବରେ, ପ୍ରଜାନାତି—(ଲୋକେ) ଜାଣି ପାରନ୍ତି, ବୁଦ୍ଧିଃ ସା—ସେହି ବୁଦ୍ଧି, ପାର୍ଥ—ହେ ଅର୍ଜୁନ !, ରାଜସୀ—ରାଜସୀ ଅଟେ । ୩୧ ।

Digitized by PPRACHIN, SOA

### ଅନୁବାଦ ।

ହେ ପାର୍ଥ! ଯେଉଁ ବୁଦ୍ଧିଦ୍ୱାରା ଧର୍ମ ଓ ଅଧର୍ମ, କାର୍ଯ୍ୟ ଓ ଅକାର୍ଯ୍ୟ ଅଯଥାର୍ଥ ଭାବରେ ଅର୍ଥାତ୍ ସନ୍ଦେହଯୁକ୍ତ ଭାବରେ ଜଣାଯାଏ, ତାହାକୁ ରାଜସୀ ବୁଦ୍ଧି ବୋଲାଯାଏ । ୩୧ ।

### ବିଶଦବ୍ୟାଖ୍ୟା ।

ଶ୍ରୁତି ଓ ସ୍ମୃତିଶାସ୍ତ୍ରବିହିତ, ଅଗ୍ନିହୋତ୍ରାଦି କର୍ମକୁ ଧର୍ମ ବୋଲାଯାଏ ଓ ତହିଁରେ ନିଷିଦ୍ଧ ଥିବା ଅକାରଣ ପ୍ରାଣିହିଂସାଦିକୁ ଅଧର୍ମ ବୋଲାଯାଏ । ସେହି ଧର୍ମ ଓ ଅଧର୍ମର ଫଳ ଅଦୃଷ୍ଟ । କାର୍ଯ୍ୟ ଓ ଅକାର୍ଯ୍ୟର ଫଳ 'ଦୃଷ୍ଟ', ଅର୍ଥାତ୍ ପ୍ରତ୍ୟକ୍ଷସିଦ୍ଧ । ଯେଉଁ ବୁଦ୍ଧିଦ୍ୱାରା ଦୃଷ୍ଟ ଓ ଅଦୃଷ୍ଟ ଫଳପ୍ରଦ ଧର୍ମାଧର୍ମ ଓ କାର୍ଯ୍ୟାକାର୍ଯ୍ୟ ଯଥାର୍ଥରୂପେ ଜଣା ନ ଯାଏ, ଅର୍ଥାତ୍ ଯେଉଁ ବୁଦ୍ଧିଦ୍ୱାରା ସନ୍ଦେହ ସମ୍ପୂର୍ଣ୍ଣରୂପରେ ନିରସ୍ତ ନ ହୁଏ, ତାହାକୁ ରାଜସୀ ବୁଦ୍ଧି କହନ୍ତି । ୩୧ ।

### ଶ୍ଳୋକଃ ।

ଅଧର୍ମଂ ଧର୍ମମିତି ଯା, ମନ୍ୟତେ ତମସାବୃତା ।
ସର୍ବାର୍ଥାନ୍ ବିପରୀତାଂଶ୍ଚ, ବୁଦ୍ଧିଃ ସା ପାର୍ଥ ତାମସୀ । ୩୨ ।

### ଅନ୍ୱୟଃ ।

ହେ ପାର୍ଥ! ତମସା ଆବୃତା ଯା ବୁଦ୍ଧିଃ ଅଧର୍ମଂ ଧର୍ମଂ ଇତି ଚ ସର୍ବାର୍ଥାନ୍ ବିପରୀତାନ୍ ମନ୍ୟତେ ସା ତାମସୀ । ୩୨ ।

### ଟୀକା ।

ତାମସୀଂ ବୁଦ୍ଧିମାହ, ଅଧର୍ମମିତି । ବିପରୀତଗ୍ରାହିଣୀ ବୁଦ୍ଧିସ୍ତାମସୀତ୍ୟର୍ଥଃ, ବୁଦ୍ଧିରନ୍ତଃକରଣଂ, ପୂର୍ବୋକ୍ତଂ ଜ୍ଞାନଂ ତଦ୍ବୃତ୍ତିଃ, ଧୃତିରପି ତଦ୍ବୃତ୍ତିରେବ, ଯଦ୍ବା ଅନ୍ତଃକରଣସ୍ୟ ଧର୍ମିଣୋ ବୁଦ୍ଧିରଧ୍ୟବସାୟଲକ୍ଷଣା ବୃତ୍ତିରେବ, ଇଚ୍ଛାଦ୍ୱେଷାଦୀନାଂ ତଦ୍ବୃତ୍ତୀନାଂ ବହୁତ୍ୱେଽପି ଧର୍ମାଧର୍ମ-ଭୟାଭୟ-ସାଧନତ୍ୱେନ ପ୍ରାଧାନ୍ୟାଦେତାସାଂ ତ୍ରୈବିଧ୍ୟମୁକ୍ତଂ, ଉପଲକ୍ଷଣଂ ଚୈତଦନ୍ୟାସାଂ । ୩୨ ।

### ପଦବ୍ୟାଖ୍ୟା ।

ଅଧର୍ମଂ—ଶାସ୍ତ୍ରବିରୁଦ୍ଧ ବ୍ୟବହାରକୁ, ଧର୍ମଂ ଇତି—ଧର୍ମ ବୋଲି, ଯା—ଯେଉଁ, ମନ୍ୟତେ—ମଣେ, ତମସାବୃତା—ତମୋଗୁଣଦ୍ୱାରା ଆବୃତ, ସର୍ବାର୍ଥାନ୍—ସମସ୍ତ ଅର୍ଥମାନଙ୍କୁ, ବିପରୀତାନ୍ ଚ—ଓଲଟା, ବୁଦ୍ଧିଃ—ଜ୍ଞାନଶକ୍ତି, ସା—ସେହି ବୁଦ୍ଧି, ପାର୍ଥ—ଅର୍ଜ୍ଜୁନ!, ତାମସୀ—ତାମସୀ ଅଟେ । ୩୨ ।

### ଅନୁବାଦ ।

ହେ ପାର୍ଥ! ଯେଉଁ ବୁଦ୍ଧି ତମୋଗୁଣାବୃତ ହୋଇ ଅଧର୍ମକୁ ଧର୍ମ ଓ ସମସ୍ତ ଅର୍ଥକୁ ବିପରୀତ ବୋଲି ମଣେ, ତାହା ତାମସୀ ଅଟେ । ୩୨ ।

### ବିଶଦବ୍ୟାଖ୍ୟା ।

ତମୋଗୁଣରୂପ ମହାଦୋଷ ସୂକ୍ଷ୍ମ ଦର୍ଶନର ସମ୍ପୂର୍ଣ୍ଣ ବିରୋଧୀ । ମନୁଷ୍ୟର ବୁଦ୍ଧି, ସେହି ତମୋଗୁଣଦ୍ୱାରା ଆବୃତ ହେଲେ, ମନୁଷ୍ୟ ଅଧର୍ମକୁ ଧର୍ମ ବୋଲି ମଣେ, ଅର୍ଥାତ୍ ବର୍ଣ୍ଣାଶ୍ରମୋଚିତ ଧର୍ମ ତ୍ୟାଗ କରି, ମ୍ଳେଚ୍ଛସହବାସ, ଅଭକ୍ଷ୍ୟ ଭକ୍ଷଣ ଓ ଦେବତା, ବ୍ରାହ୍ମଣ ଓ ଗୁରୁଜନଙ୍କ ପ୍ରତି ଅଶ୍ରଦ୍ଧା ଇତ୍ୟାଦି ଅନୁଚିତ ମନ୍ଦକାର୍ଯ୍ୟକୁ ପରମପୁରୁଷାର୍ଥ ବୋଲି ମନେ କରେ । କେବଳ

Digitized by PPRACHIN, SOA

ଯେ ଧର୍ମ ଅଧର୍ମ ବିଷୟରେ ଏପରି ବ୍ୟତିକ୍ରମ ଘଟେ, ତାହା ନୁହେଁ, ସକଳ ପ୍ରକାର ଅର୍ଥରେ ବିପରୀତଭାବ ଜାତ ହୁଏ । ଯାହା ପ୍ରକୃତ ସୁଖଦାୟକ, ତାହାକୁ ଦୁଃଖଜନକ ମନେ କରେ ଓ ଯାହା ଅନନ୍ତ ଦୁଃଖର ହେତୁ, ତାହାକୁ ସୁଖକର ଜ୍ଞାନ କରେ । ତ୍ରିକାଳଜ୍ଞ ଓ ତତ୍ତ୍ୱଦର୍ଶୀ ଋଷି, ମୁନି ଓ ଯୋଗିମାନଙ୍କୁ ଭଣ୍ଡ ଓ ଅସଭ୍ୟ ମନେ କରି, ବିଷୟାନୁରାଗୀ, ମହାସ୍ୱାର୍ଥପର, ଶିଶ୍ନୋଦରତୁଷ୍ଟ, ପ୍ରବଞ୍ଚକଶିରୋମଣି, ବ୍ୟକ୍ତିଙ୍କୁ ଆଦର୍ଶପୁରୁଷ ଓ ସୁସଭ୍ୟ ବୋଲି ବିଶ୍ୱାସ କରେ । ସେହି ତାମସୀ ବୁଦ୍ଧି ପ୍ରଭାବରେ ଯାଗ, ଯଜ୍ଞ, ଦାନ, ତୀର୍ଥାଟନ ଓ ଦେବାର୍ଚ୍ଚନାଦି ସତ୍କାର୍ଯ୍ୟକୁ ମନ୍ଦ ଜ୍ଞାନରେ ପରିତ୍ୟାଗ କରେ, ଓ ଶାସ୍ତ୍ରବିହିତ ସଦାଚାର ଓ ପବିତ୍ର ଆହାରାଦି ପରିତ୍ୟାଗ କରି କୁତ୍ସିତ ଆହାର ବ୍ୟବହାରରେ ରତ ହୁଏ ।

ଫଳକଥା ଏହି କି ଯେଉଁ ବୁଦ୍ଧିବଳରେ ଶାସ୍ତ୍ରୀୟ ବିଧି ସବୁ ଲଙ୍ଘନ କରି ଲୋକେ ସ୍ୱକପୋଳକଳ୍ପିତ ଅଶାସ୍ତ୍ରୀୟ ବିଧିର ବଶବର୍ତ୍ତୀ ହୁଅନ୍ତି, ତାହାକୁ 'ତାମସୀବୁଦ୍ଧି' ବୋଲି ଯାଏ ।୩୨।

ଶ୍ଳୋକଃ ।

ଧୃତ୍ୟା ଯୟା ଧାରୟତେ, ମନଃପ୍ରାଣେନ୍ଦ୍ରିୟକ୍ରିୟାଃ ।
ଯୋଗେନାବ୍ୟଭିଚାରିଣ୍ୟା, ଧୃତିଃ ସା ପାର୍ଥ ସାତ୍ତ୍ୱିକୀ । ୩୩ ।

ଅନ୍ୱୟଃ ।

ହେ ପାର୍ଥ ! ଯୋଗେନ ଅବ୍ୟଭିଚାରିଣ୍ୟା ଯୟା ଧୃତ୍ୟା ମନଃପ୍ରାଣେନ୍ଦ୍ରିୟକ୍ରିୟାଃ ଧାରୟତେ, ସା ଧୃତିଃ ସାତ୍ତ୍ୱିକୀ ।୩୩

ଟୀକା ।

ଇଦାନୀଂ ଧୃତେସ୍ତ୍ରୈବିଧ୍ୟମାହ, ଧୃତ୍ୟେତି ତ୍ରିଭିଃ । ଯୋଗେନ ଚିତ୍ତୈକାଗ୍ର୍ୟେଣ ହେତୁନା ଅବ୍ୟଭିଚାରିଣ୍ୟା ବିଷୟାନ୍ତରମଧାରୟନ୍ତ୍ୟା ଯୟା ଧୃତ୍ୟା ମନସଃ ପ୍ରାଣସ୍ୟ ଇନ୍ଦ୍ରିୟାଣାଂ ଚ କ୍ରିୟା ଧାରୟତେ ନିୟଚ୍ଛତି, ସା ଧୃତିଃ ସାତ୍ତ୍ୱିକୀ । ୩୩

ପଦବ୍ୟାଖ୍ୟା ।

ଧୃତ୍ୟା—ଧାରଣାଶକ୍ତି ବା କ୍ରିୟାଶକ୍ତିଦ୍ୱାରା, ଯୟା—ଯେଉଁ, ଧାରୟତେ—ସ୍ଥିର କରନ୍ତି, ମନଃପ୍ରାଣେନ୍ଦ୍ରିୟକ୍ରିୟାଃ—ମନ ପ୍ରାଣ ଓ ଇନ୍ଦ୍ରିୟମାନଙ୍କର କ୍ରିୟାକୁ, ଯୋଗେନ—ସମାଧିଦ୍ୱାରା, ଅବ୍ୟଭିଚାରିଣ୍ୟା—ଅନନ୍ୟ—ଏକାନ୍ତ, ଧୃତିଃ ସା—ସେହି ଧାରଣାଶକ୍ତି, ପାର୍ଥ—ହେ ଅର୍ଜୁନ, ସାତ୍ତ୍ୱିକୀ—ସାତ୍ତ୍ୱିକୀ ଅଟେ । ୩୩ ।

ଅନୁବାଦ ।

ହେ ପାର୍ଥ ! ଯେଉଁ ଧୃତି, ଯୋଗ ହେତୁରୁ ଏକାଗ୍ର ହୋଇ ଅର୍ଥାତ୍ ଅନ୍ୟ ବିଷୟ ଧାରଣ ନ କରି ମନ ପ୍ରାଣ ଓ ଇନ୍ଦ୍ରିୟମାନଙ୍କର କ୍ରିୟାକୁ ନିୟମିତ କରେ, ସେହି ଧୃତି ସାତ୍ତ୍ୱିକୀ ଅଟେ । ୩୩ ।

ବିଶଦବ୍ୟାଖ୍ୟା ।

ଯୋଗରୂପ ଉପାୟଦ୍ୱାରା ଚିତ୍ତର ସମସ୍ତ ବୃତ୍ତିଗୁଡିକ ନିୟମିତ କରାଯାଏ । ମନଃ ପ୍ରାଣ ଓ ଇନ୍ଦ୍ରିୟାଦିଙ୍କର ଚେଷ୍ଟାରୂପ କ୍ରିୟା 'ଧୃତି' ନାମକ ବୃତ୍ତିଦ୍ୱାରା ସ୍ତମ୍ଭିତ ହୁଅନ୍ତି । ଧୃତି, ଯଦି ନିଜେ ନିୟମିତ ହୋଇ ନ ଥିବ, ତେବେ ମନଃ ପ୍ରାଣ ଓ ଇନ୍ଦ୍ରିୟାଦିଙ୍କର ଚେଷ୍ଟା ଶାସ୍ତ୍ରନିଷିଦ୍ଧ

Digitized by PPRACHIN, SOA

ପଥରେ ପ୍ରବୃତ୍ତ ହେଲେ, ତାହାଙ୍କୁ ସେ ନିୟମିତ କରି ପାରିବ ନାହିଁ । ସେଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ ଯେଉଁ ଧୃତି ଯୋଗରୂପ ଉପାୟଦ୍ୱାରା ଅବ୍ୟଭିଚାରିଣୀ କି ଏକାଗ୍ର ହୋଇ ଅର୍ଥାତ୍ ଶାସ୍ତ୍ରନିଷିଦ୍ଧ ବିଷୟାଦି ଗ୍ରହଣ ନ କରି ମନଃ ପ୍ରାଣ ଓ ଇନ୍ଦ୍ରିୟାଦିଙ୍କର ଚେଷ୍ଟାରୂପ କ୍ରିୟାକୁ ଧାରଣ କରେ, ଅର୍ଥାତ୍ ଶାସ୍ତ୍ରବିହିତ ମାର୍ଗରେ ଚାଳିତ କରେ, ତାହାକୁ ସାତ୍ତ୍ୱିକୀ ଧୃତି ବୋଲି ଯାଏ ।

ଫଳକଥା ଏହି କି ଯୋଗଦ୍ୱାରା, ଯେଉଁ ଧୃତି ନିଜେ ନିୟମିତ ହୋଇ ମନଃ ପ୍ରାଣ ଓ ଇନ୍ଦ୍ରିୟାଦିଙ୍କର କ୍ରିୟାକୁ ଶାସ୍ତ୍ରବିହିତ ମାର୍ଗରେ ଚାଳିତ କରେ, ତାହାକୁ ସାତ୍ତ୍ୱିକୀ ଧୃତି ବୋଲି-ଯାଏ । ୩୩ ।

ଶ୍ଳୋକଃ ।

ଯୟା ତୁ ଧର୍ମକାମାର୍ଥାନ୍, ଧୃତ୍ୟା ଧାରୟତେଽର୍ଜ୍ଜୁନ ।
ପ୍ରସଙ୍ଗେନ ଫଳାକାଂକ୍ଷୀ, ଧୃତିଃ ସା ପାର୍ଥ ରାଜସୀ । ୩୪ ।

ଅନ୍ୱୟଃ ।

ହେ ଅର୍ଜ୍ଜୁନ । ତୁ ପ୍ରସଙ୍ଗେନ ଫଳାକାଂକ୍ଷୀ ଯୟା ଧୃତ୍ୟା ଧର୍ମକାମାର୍ଥାନ୍ ଧାରୟତେ, ହେ ପାର୍ଥ ! ସା ଧୃତିଃ ରାଜସୀ । ୩୪ ।

ଟୀକା ।

ରାଜସୀଂ ଧୃତିମାହ ଯୟା ତ୍ୱିତି । ଯୟା ତୁ ଧୃତ୍ୟା ଧର୍ମାର୍ଥକାମାନ୍ ପ୍ରାଧାନ୍ୟେନ ଧାରୟତେ, ନ ବିମୁଞ୍ଚତି, ତତ୍-ପ୍ରସଙ୍ଗେନ ତତ୍‌ଫଳାକାଂକ୍ଷୀ ଚ ଭବତି, ସା ରାଜସୀ ଧୃତିଃ । ୩୪ ।

ପଦବ୍ୟାଖ୍ୟା ।

ଯୟା ତୁ—କିନ୍ତୁ ଯେଉଁ, ଧର୍ମକାମାର୍ଥାନ୍—ଧର୍ମ କାମ ଓ ଅର୍ଥମାନଙ୍କୁ, ଧୃତ୍ୟା—ଧାରଣାଶକ୍ତିଦ୍ୱାରା, ଧାରୟତେ—ଧାରଣ କରନ୍ତି—ତ୍ୟାଗ ନ କରନ୍ତି, ଅର୍ଜ୍ଜୁନ—ହେ ଅର୍ଜ୍ଜୁନ, ପ୍ରସଙ୍ଗେନ—ଆସକ୍ତି ହେତୁରୁ, ଫଳାକାଂକ୍ଷୀ—ଫଳ କାମୀ ହୁଅନ୍ତି, ଧୃତିଃ ସା—ସେହି ଧୃତି, ପାର୍ଥ—ହେ ଅର୍ଜ୍ଜୁନ !, ରାଜସୀ—ରାଜସୀ ଅଟେ । ୩୪ ।

ଅନୁବାଦ ।

'ମୁଁ କର୍ତ୍ତା' ଏପରି ଅଭିମାନପୂର୍ବକ ଫଳାକାଂକ୍ଷୀ ହୋଇ ଯେଉଁ ଧୃତିଦ୍ୱାରା (ମନୁଷ୍ୟ) ଧର୍ମ ଅର୍ଥ ଓ କାମ ଧାରଣ କରନ୍ତି, ତାହା 'ରାଜସୀ ଧୃତି' ଅଟେ । ୩୪ ।

ବିଶଦବ୍ୟାଖ୍ୟା ।

ମନୁଷ୍ୟ ଯେଉଁ ଧୃତିଯୁକ୍ତ ହୋଇ 'ମୁଁ କର୍ତ୍ତା', 'ମୁଁ ଏପରି କର୍ମ କରୁଅଛି' ଇତ୍ୟାଦି ଅଭି-ମାନଯୁକ୍ତ ହୁଅନ୍ତି ଓ ଯଜ୍ଞାଦି କର୍ମ ହେତୁରୁ ସ୍ୱର୍ଗାଦି ପ୍ରାପ୍ତିକାରକ 'ଧର୍ମ' ଓ ସ୍ୱର୍ଗରେ ଅପ୍ସରା ସମ୍ଭୋଗ ଓ ଅମୃତ ଭକ୍ଷଣାଦି 'କାମନା' ଏବଂ ଧନାଦିରୂପ 'ଅର୍ଥ' ଧାରଣ କରନ୍ତି, ଅର୍ଥାତ୍ ଧର୍ମ କାମ ଓ ଅର୍ଥ ଏହି ତ୍ରିବର୍ଗକୁ ତ୍ୟାଗ କରିପାରନ୍ତି ନାହିଁ, ସେହି ଧୃତିକୁ ରାଜସୀ ଧୃତି ବୋଲିଯାଏ । ରାଜସୀଧୃତିଯୁକ୍ତ ବ୍ୟକ୍ତି ଧର୍ମ ଅର୍ଥ ଓ କାମନାପରାୟଣ ହୋଇ କର୍ମ କରନ୍ତି, ମୋକ୍ଷ ବିଷୟରେ କଦାପି ଯତ୍ନ କରନ୍ତି ନାହିଁ ।

Digitized by PPRACHIN, SOA

ଫଳକଥା ଏହି କି ରାଜସୀ ଧୃତିଦ୍ୱାରା ତ୍ରିବର୍ଗ ସାଧିତ ହୁଏ, ମାତ୍ର ତାହା ମୁକ୍ତିର ବିରୋଧୀ ଅଟେ । ୩୪ ।

ଶ୍ଳୋକଃ ।

ଯୟା ସ୍ୱପ୍ନଂ ଭୟଂ ଶୋକଂ, ବିଷାଦଂ ମଦମେବ ଚ ।
ନ ବିମୁଞ୍ଚତି ଦୁର୍ମେଧା, ଧୃତିଃ ସା ପାର୍ଥ ତାମସୀ । ୩୫ ।

ଅନ୍ୱୟଃ ।

ହେ ପାର୍ଥ ! ଦୁର୍ମେଧାଃ ଯୟା ସ୍ୱପ୍ନଂ ଭୟଂ ଶୋକଂ ବିଷାଦଂ ଚ ମଦଂ ଏବ ନ ବିମୁଞ୍ଚତି, ସା ଧୃତିଃ ତାମସୀ । ୩୫

ଟୀକା ।

ତାମସୀଂ ଧୃତିମାହ । ଯୟେତି । ଦୁଷ୍ଟା ଅବିବେକବହୁଳା ମେଧା ଯସ୍ୟ ସ ଦୁର୍ମେଧାଃ ପୁରୁଷୋଯୟା ଧୃତ୍ୟା ସ୍ୱପ୍ନାଦୀ-ନ ମୁଞ୍ଚତି ପୁନଃପୁନରାବର୍ତ୍ତୟତି, ସ୍ୱପ୍ନୋଽତ୍ର ନିଦ୍ରା, ସା ଧୃତିସ୍ତାମସୀ । ୩୫ ।

ପଦବ୍ୟାଖ୍ୟା ।

ଯୟା—ଯେଉଁ ଧୃତିଦ୍ୱାରା, ସ୍ୱପ୍ନଂ—ନିଦ୍ରାକୁ, ଭୟଂ—ଡରକୁ, ଶୋକଂ—ସନ୍ତାପକୁ, ବିଷାଦଂ—ଅବସନ୍ନ ଭାବକୁ, ମଦଂ ଏବ ଚ—ଅହଙ୍କାର ଗର୍ବ ଅର୍ଥାତ୍ ଆପଣାକୁ ବଡ଼ ମନେ କରିବା ଭାବକୁ, ନ ବିମୁଞ୍ଚତି—ତ୍ୟାଗ ନ କରେ, ଦୁର୍ମେଧାଃ—ଦୁର୍ବୁଦ୍ଧି ବ୍ୟକ୍ତି, ଧୃତିଃ ସା—ସେହି ଧୃତି, ପାର୍ଥ—ହେ ଅର୍ଜୁନ!, ତାମସୀ—ତାମସୀ ଅଟେ । ୩୫।

ଅନୁବାଦ ।

ହେ ଅର୍ଜୁନ ! ଦୁର୍ବୁଦ୍ଧି ବ୍ୟକ୍ତି ଯେଉଁ ଧୃତିବଳରେ ନିଦ୍ରା, ଭୟ, ଶୋକ, ବିଷାଦ ଓ ଗର୍ବ ପରିତ୍ୟାଗ କରେ ନାହିଁ, ସେହି ଧୃତି ତାମସୀ ଅଟେ । ୩୫ ।

ବିଶଦବ୍ୟାଖ୍ୟା ।

ଏ ଶ୍ଳୋକରେ 'ସ୍ୱପ୍ନ' ଶବ୍ଦଦ୍ୱାରା ନିଦ୍ରାକୁ ଲକ୍ଷ୍ୟ କରାଯାଇଅଛି । ଆପଣା ବାସନାର ପ୍ରତିକୂଳ ବା ବିପରୀତ ଘଟଣା ଦେଖି ମନରେ ଯେଉଁ ତ୍ରାସ ଜନ୍ମେ, ତାହାକୁ ଏ ସ୍ଥଳରେ 'ଭୟ' ବୁଝା ଯାଇଅଛି । ଇଷ୍ଟ ଅର୍ଥାତ୍ ବାଞ୍ଛିତ ଦ୍ରବ୍ୟ ବିନାଶରେ ମନରେ ଯେଉଁ ସନ୍ତାପ ଜାତ ହୁଏ, ତାହାକୁ 'ଶୋକ' ବୋଲାଯାଏ । ମନର ଅବସନ୍ନତା ଅଥବା ସବୁ ବିଷୟରେ ଉଦ୍ୟମହୀନତାକୁ 'ବିଷାଦ' ବୋଲି ଏ ସ୍ଥଳରେ ଉଲ୍ଲେଖ କରାଯାଇଅଛି । ଆପଣାକୁ ସମସ୍ତଙ୍କ ଅପେକ୍ଷା ସବୁ ବିଷୟରେ ଶ୍ରେଷ୍ଠ ମନେ କରିବାରୂପ ଭାବକୁ 'ମଦ' ବୋଲାଯାଏ ।

ମନୁଷ୍ୟ, ଯେଉଁ ଧୃତିବଳରେ ଉପରୋକ୍ତ ଭାବଗୁଡ଼ିକ ତ୍ୟାଗ କରି ପାରେ ନାହିଁ, ଅର୍ଥାତ୍ ଯେଉଁ ଧୃତିବଳରେ ଉପରୋକ୍ତ ଭାବଗୁଡ଼ିକ ଉତ୍ତମ ବୋଲି ବିଦିତ ହୁଏ, ସେହି ଧୃତିକୁ 'ତାମସୀ ଧୃତି' ବୋଲାଯାଏ । ୩୫ ।

ଶ୍ଳୋକଃ ।

ସୁଖଂ ତ୍ୱିଦାନୀଂ ତ୍ରିବିଧଂ, ଶୃଣୁ ମେ ଭରତର୍ଷଭ ।
ଅଭ୍ୟାସାଦ୍ରମତେ ଯତ୍ର, ଦୁଃଖାନ୍ତଂ ଚ ନିଗଚ୍ଛତି । ୩୬ ।

Digitized by PPRACHIN, SOA

ଅନ୍ୱୟଃ ।

ହେ ଭରତର୍ଷଭ ! ଇଦାନୀଂ ତୁ ତ୍ରିବିଧଂ ସୁଖଂ ମେ ଶୃଣୁ । ଯତ୍ର ଅଭ୍ୟାସାତ୍ ରମତେ, ଚ ଦୁଃଖାନ୍ତଂ ନିଗଚ୍ଛତି । ୩୬ ।

ଟୀକା ।

ଇଦାନୀଂ ସୁଖସ୍ୟ ତ୍ରୈବିଧ୍ୟଂ ପ୍ରତିଜାନୀତେ । ସୁଖନ୍ତ୍ୱିତି । ସ୍ପଷ୍ଟୋଽର୍ଥଃ । ୩୬ ।

ପଦବ୍ୟାଖ୍ୟା ।

ସୁଖଂ ତୁ—ସୁଖକୁ ମଧ୍ୟ, ଇଦାନୀଂ—ବର୍ତ୍ତମାନ, ତ୍ରିବିଧଂ—ତିନିପ୍ରକାର, ଶୃଣୁ—ଶୁଣ, ମେ—ଆମ୍ଭଠାରୁ ଭରତର୍ଷଭ—ହେ ଭରତକୁଳଶ୍ରେଷ୍ଠ ଅର୍ଜ୍ଜୁନ, ଅଭ୍ୟାସାତ୍—ଅଭ୍ୟାସ ହେତୁରୁ, ରମତେ—କ୍ରୀଡ଼ା କରନ୍ତି—ପ୍ରୀତିଯୁକ୍ତ ହୁଅନ୍ତି, ଅର୍ଥାତ୍ ଆସକ୍ତ ହୁଅନ୍ତି, ଯତ୍ର—ଯେଉଁ ସୁଖରେ, ଦୁଃଖାନ୍ତଂ ଚ—ଦୁଃଖଶେଷକୁ, ନିଗଚ୍ଛତି—ପ୍ରାପ୍ତ ହୁଅନ୍ତି ।୩୬।

ଅନୁବାଦ ।

ହେ ଭରତକୁଳଶ୍ରେଷ୍ଠ ! ବର୍ତ୍ତମାନ ତିନିପ୍ରକାର ସୁଖକୁ ମଧ୍ୟ, ଆମ୍ଭଠାରୁ ଶୁଣ । (ମନୁଷ୍ୟ) ଅଭ୍ୟାସବଳରେ ଯହିଁରେ ପ୍ରୀତିଯୁକ୍ତ ହୁଅନ୍ତି ଓ ଦୁଃଖରୁ ପାର ପାଆନ୍ତି, ( ତାହାକୁ ସାତ୍ତ୍ୱିକସୁଖ ବୋଲିଯାଏ) ।୩୬।

ବିଶଦବ୍ୟାଖ୍ୟା ।

ପୂର୍ବ୨ ଶ୍ଳୋକମାନଙ୍କରେ କର୍ତ୍ତା, କର୍ମ, ବୁଦ୍ଧି ଓ ଧୃତି ଏମାନଙ୍କର ସାତ୍ତ୍ୱିକାଦି ଭେଦ କଥିତ ହୋଇଅଛି । ବର୍ତ୍ତମାନ ସେହି ଧୃତିରୂପ କ୍ରିୟା ଜନିତ ସୁଖର ସାତ୍ତ୍ୱିକ ରାଜସ, ଓ ତାମସ ତିନିପ୍ରକାର ଭେଦ କଥିତ ହେଉଅଛି ।

ଶ୍ରୀଭଗବାନ୍ କହିଲେ, ହେ ଭରତକୁଳପ୍ରବର ଅର୍ଜ୍ଜୁନ ! ବର୍ତ୍ତମାନ ସୁଖର ତିନିପ୍ରକାର ଭେଦ ଆମ୍ଭଠାରୁ ଶ୍ରବଣ କର, ଅର୍ଥାତ୍ ତିନିପ୍ରକାର ସୁଖ ମଧ୍ୟରୁ କେଉଁ ପ୍ରକାର ସୁଖ ଗ୍ରହଣୀୟ ଓ କେଉଁ ପ୍ରକାର ସୁଖ ତ୍ୟାଗର ଯୋଗ୍ୟ, ତାହା ଆମ୍ଭେ ବୁଝାଉଁ ଶ୍ରବଣ କର ।

ଏ ଶ୍ଳୋକରେ "ଅଭ୍ୟାସାଦ୍ରମତେ ଯତ୍ର" ଇତ୍ୟାଦି ବଚନଦ୍ୱାରା ସାତ୍ତ୍ୱିକ ସୁଖର ବିଷୟ ବର୍ଣ୍ଣିତ କରା ଯାଉଅଛି । ସାଧାରଣ ବିଷୟସୁଖରେ ଲୋକେ ସହଜରେ ଆସକ୍ତ ହୋଇ ପଡ଼ନ୍ତି ମାତ୍ର ସାତ୍ତ୍ୱିକ ସୁଖ ସେପରି ନୁହେଁ । ଯମ ନିୟମାଦି ସାଧନକୁ ଅଭ୍ୟାସ କଲେ, ଅର୍ଥାତ୍ ବାରମ୍ବାର ଅନୁଷ୍ଠାନ କଲେ, ଯେଉଁ ସୁଖରେ କ୍ରୀଡ଼ା କରାଯାଏ ବା ଆସକ୍ତି ଜନ୍ମେ ଏବଂ ଯେଉଁ ସୁଖ ପ୍ରାପ୍ତି ହେଲେ, ଦୁଃଖର ଅନ୍ତ (ଶେଷ) ହୁଏ, ତାହାକୁ ସାତ୍ତ୍ୱିକ ସୁଖ ବୋଲି ଯାଏ । ଅନ୍ୟାନ୍ୟ ସୁଖର ଶେଷରେ ପୁନର୍ବାର ଦୁଃଖ ଭୋଗ କରିବାକୁ ପଡ଼େ, ମାତ୍ର ସାତ୍ତ୍ୱିକ ସୁଖର ବିଶେଷ ଗୁଣ ଏହି, ଯେ ତାହା ଲାଭ ହେଲେ, ଆଉ ଦୁଃଖ ଭୋଗ କରିବାକୁ ହୁଏ ନାହିଁ । (ସାତ୍ତ୍ୱିକ ସୁଖର ଅବଶିଷ୍ଟ ଲକ୍ଷଣ ପର ଶ୍ଳୋକରେ ଦେଖ) । ୩୬ ।

ଶ୍ଳୋକଃ ।

ଯତ୍ତଦଗ୍ରେ ବିଷମିବ, ପରିଣାମେଽମୃତୋପମଂ ।
ତତ୍ ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତ,ମାତ୍ମବୁଦ୍ଧିପ୍ରସାଦଜଂ । ୩୭ ।

Digitized by PPRACHIN, SOA

### ଅନ୍ୱୟଃ ।

ଯତ୍ ତତ୍ ଅଗ୍ରେ ବିଷଂ ଇବ, ପରିଣାମେ ଅମୃତୋପମଂ, ଆତ୍ମବୁଦ୍ଧିପ୍ରସାଦଜଂ, ତତ୍ ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତଂ ।୩୭।

### ଟୀକା ।

ତଦ୍ ସାତ୍ତ୍ୱିକଂ ସୁଖମାହ, ଅଭ୍ୟାସାଦିତି ସାର୍ଦ୍ଧେନ । ଯତ୍ର ଯସ୍ମିନ୍ ସୁଖେ ଅଭ୍ୟାସାତ୍ ରମତେ, ନ ତୁ ବିଷୟସୁଖ ଇବ ସହସା ରତିଂ ପ୍ରାପ୍ନୋତି, ଯସ୍ମିଂଶ୍ଚ ରମମାଣସ୍ତୁ ଦୁଃଖସ୍ୟାନ୍ତମବସାନଂ ନିତରାଂ ଗଚ୍ଛତି ପ୍ରାପ୍ନୋତି, କୀଦୃଶଂ ଯତ୍ତତ୍ କିମପି ଅଗ୍ରେ ପ୍ରଥମଂ ବିଷମିବ ମନଃ ସଂଯମାଧୀନତ୍ୱାଦ୍ଦୁଃଖାବହମିବ ଭବତି, ପରିଣାମେ ଅମୃତସଦୃଶଂ, ଆତ୍ମବିଷୟା ବୁଦ୍ଧି-ରାତ୍ମବୁଦ୍ଧିସ୍ତସ୍ୟାଃ ପ୍ରସାଦୋ ରଜସ୍ତମୋମଲତ୍ୟାଗେନ ସ୍ୱଚ୍ଛତ୍ୱାବସ୍ଥାନଂ ତତୋ ଜାତଂ ଯତ୍ ସୁଖଂ, ତତ୍ ସାତ୍ତ୍ୱିକଂ ପ୍ରୋକ୍ତଂ ଯୋଗିଭିଃ । ୩୭ ।

### ପଦବ୍ୟାଖ୍ୟା ।

ଯତ୍ ତତ୍—ଯାହା କିଛି, ଅଗ୍ରେ—ପ୍ରଥମରେ, ବିଷଂ ଇବ—ବିଷତୁଲ୍ୟ, ପରିଣାମେ—ଅବଶେଷରେ, ଅର୍ଥାତ୍ ଅବସ୍ଥା ପରିପାକ ହେଲେ, ଅମୃତୋପମଂ—ଅମୃତତୁଲ୍ୟ ହୁଏ, ତତ୍ ସୁଖଂ—ସେହି ସୁଖକୁ ସାତ୍ତ୍ୱିକଂ ପ୍ରୋକ୍ତଂ—ସାତ୍ତ୍ୱିକ ବୋଲାଯାଏ, ଆତ୍ମବୁଦ୍ଧି ପ୍ରସାଦଜଂ—ନିର୍ମଳ ଆତ୍ମବିଷୟକ ବୁଦ୍ଧିରୁ ଜାତ । ୩୭ ।

### ଅନୁବାଦ ।

ଯାହା ପ୍ରଥମରେ ବିଷପରି ଓ ଶେଷରେ ଅମୃତ ତୁଲ୍ୟ, ସେହି ସୁଖକୁ ସାତ୍ତ୍ୱିକ ସୁଖ ବୋଲା ଯାଏ, ତାହା ନିର୍ମଳ ଆତ୍ମବୁଦ୍ଧିରୁ ଜାତ ହୁଏ । ୩୭ ।

### ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ ସାତ୍ତ୍ୱିକ ସୁଖର ବିଷୟ ଏତିକି କୁହା ଯାଇଅଛି, ଯେ 'ଯେଉଁ ସୁଖରେ ଅଭ୍ୟାସ ବଳରୁ କ୍ରୀଡ଼ା କରି ମନୁଷ୍ୟ ଦୁଃଖରୁ ପାରପାନ୍ତି', ଏଶ୍ଳୋକରେ ଅବଶିଷ୍ଟ ଅଂଶ କୁହାଗଲା କି 'ଯାହା ପ୍ରଥମରେ ବିଷପରି ଓ ଶେଷରେ ଅମୃତ ତୁଲ୍ୟ, ସେହି ସୁଖକୁ ସାତ୍ତ୍ୱିକ ସୁଖ ବୋଲାଯାଏ, ତାହା ନିର୍ମଳ ଆତ୍ମବୁଦ୍ଧିରୁ ଜାତ ହୁଏ' । ତାହାହେଲେ, ସାତ୍ତ୍ୱିକ ସୁଖର ସମ୍ପୂର୍ଣ୍ଣ ଲକ୍ଷଣ ଏହି ହେଲା, ଯେ 'ଅଭ୍ୟାସ ବଳରୁ ଯେଉଁ ସୁଖରେ କ୍ରୀଡ଼ା କରି ମନୁଷ୍ୟ ଦୁଃଖରୁ ପରିତ୍ରାଣ ପାନ୍ତି ଓ ଯାହା ପ୍ରଥମରେ ବିଷପରି ଏବଂ ଶେଷରେ ଅମୃତତୁଲ୍ୟ, ସେହି ସୁଖକୁ 'ସାତ୍ତ୍ୱିକ ସୁଖ' ବୋଲାଯାଏ, ତାହା ନିର୍ମଳ ଆତ୍ମବୁଦ୍ଧିରୁ ଜାତ ହୁଏ' ।

ସାତ୍ତ୍ୱିକ ସୁଖ ଲାଭ କରିବାକୁ ପ୍ରଥମରେ ଯମ ନିୟମାଦି ଅଭ୍ୟାସ ଆବଶ୍ୟକ, ପୁଣି ବିଷୟବାସନା ତ୍ୟାଗ ନ କଲେ, ଯମ ନିୟମାଦି, ଅଥବା ଧ୍ୟାନାଦିରେ ସିଦ୍ଧି ହୁଏ ନାହିଁ । ବିଷୟାସକ୍ତ ମନୁଷ୍ୟ ପକ୍ଷରେ ବିଷୟ ତ୍ୟାଗ, ଯେ ବିଷପରି ଅଟେ, ତାହା କାହାରିକି ଅବିଦିତ ନାହିଁ, ଅତଏବ ସାତ୍ତ୍ୱିକ ସୁଖ ପ୍ରଥମରେ ବିଷ ତୁଲ୍ୟ ଅଟେ । ସାତ୍ତ୍ୱିକ ସୁଖରେ ଅଭ୍ୟାସ ହେଲେ, ଅନିତ୍ୟ ବିଷୟତୃଷ୍ଣା ନିବୃତ୍ତ ହୋଇଯାଏ, ସୁତରାଂ ନିତ୍ୟସୁଖ ଅର୍ଥାତ୍ ବ୍ରହ୍ମାନନ୍ଦ ସୁଖ ଅନୁଭୂତ ହୁଏ; ତାହା, ଯେ ଅମୃତତୁଲ୍ୟ, ତହିଁରେ କି ଆଉ ସନ୍ଦେହ ଅଛି ?

ସେହି ସୁଖ ରାଜସ ସୁଖ ପରି ଇନ୍ଦ୍ରିୟମାନଙ୍କର ବିଷୟ ସଂଯୋଗରୁ ଜାତ ନୁହେ କିମ୍ବା ତାମସ ସୁଖ ପରି ନିଦ୍ରା ଆଳସ୍ୟାଦିରୁ ଉତ୍ପନ୍ନ ନୁହେ । ତାହା ରଜଃ ଓ ତମୋଗୁଣହୀନ ନିର୍ମଳ ଆତ୍ମବୁଦ୍ଧିରୁ ଉତ୍ପନ୍ନ ଅଟେ, ଅତଏବ ସେହି ସାତ୍ତ୍ୱିକ ସୁଖ ଅତ୍ୟନ୍ତ ବାଞ୍ଛନୀୟ । ୩୭ ।

Digitized by PPRACHIN, SOA

ଶ୍ଳୋକଃ ।

* ବିଷୟେନ୍ଦ୍ରିୟସଂଯୋଗାତ୍, ଯତ୍ତଦଗ୍ରେଽମୃତୋପମଂ ।
ପରିଣାମେ ବିଷମିବ, ତତ୍ ସୁଖଂ ରାଜସଂ ସ୍ମୃତଂ । ୩୮ ।

ଅନ୍ୱୟଃ ।

ଯତ୍ ତତ୍ ବିଷୟେନ୍ଦ୍ରିୟସଂଯୋଗାତ୍ ଅଗ୍ରେ ଅମୃତୋପମଂ ପରିଣାମେ ବିଷଂ ଇବ, ତତ୍ ସୁଖଂ ରାଜସଂ ସ୍ମୃତଂ ।୩୮।

ଟୀକା ।

ରାଜସଂ ସୁଖମାହ । ବିଷୟେତି । ବିଷୟାଣାମିନ୍ଦ୍ରିୟାଣାଂ ଚ ସଂଯୋଗାତ୍ ଯତ୍ତତ୍ ପ୍ରସିଦ୍ଧଂ ସ୍ତ୍ରୀସଂସର୍ଗାଦି ସୁଖଂ ଅମୃତମୁପମା ଯସ୍ୟ, ତାଦୃଶଂ ଭବତି ଅଗ୍ରେ ପ୍ରଥମଂ, ପରିଣାମେ ତ ବିଷତୁଲ୍ୟଂ ଇହାମୁତ୍ର ଚ ଦୁଃଖହେତୁତ୍ୱାତ୍, ତତ୍ ସୁଖଂ ରାଜସଂ ସ୍ମୃତଂ । ୩୮ ।

ପଦବ୍ୟାଖ୍ୟା ।

ବିଷୟେନ୍ଦ୍ରିୟସଂଯୋଗାତ୍—ବିଷୟମାନଙ୍କ ସହିତ ଇନ୍ଦ୍ରିୟ ସଂଯୋଗରୁ (ଜାତ), ଯତ୍ତତ୍—ଯାହା କିଛି, ଅଗ୍ରେ—ପ୍ରଥମରେ, ଅମୃତୋପମଂ—ଅମୃତତୁଲ୍ୟ ହୁଏ, ପରିଣାମେ—ଶେଷରେ, ବିଷଂ ଇବ—ବିଷପରି, ତତ୍ ସୁଖଂ—ସେହି ସୁଖ, ରାଜସଂ ସ୍ମୃତଂ—ରାଜସ ଅଟେ । ୩୮ ।

ଅନୁବାଦ ।

ଇନ୍ଦ୍ରିୟ ସହିତ ବିଷୟମାନଙ୍କର ସଂଯୋଗ ହେଲେ, ଯେଉଁ ସୁଖ ହୁଏ ଓ ଯାହା ପ୍ରଥମରେ ଅମୃତତୁଲ୍ୟ ଏବଂ ଶେଷରେ ବିଷପରି, ସେହି ସୁଖକୁ ରାଜସ ସୁଖ ବୋଲାଯାଏ । ୩୮ ।

ବିଶଦବ୍ୟାଖ୍ୟା ।

ଶବ୍ଦାଦି ବିଷୟମାନଙ୍କର ଶ୍ରୋତ୍ରାଦି ଇନ୍ଦ୍ରିୟ ସହିତ ସଂଯୋଗ ହେଲେ ଅର୍ଥାତ୍ ମଧୁର ସଙ୍ଗୀତ ଶ୍ରବଣରେ, ସୁନ୍ଦରରୂପ ଦର୍ଶନରେ, ସୁସ୍ୱାଦୁଦ୍ରବ୍ୟ ଭକ୍ଷଣରେ, ମନୋହର ଗନ୍ଧ ଆଘ୍ରାଣରେ, କୋମଳସ୍ପର୍ଶ ଅର୍ଥାତ୍ ସ୍ତ୍ରୀ ସହବାସାଦିରେ ଯେଉଁ ସୁଖ ଜାତ ହୁଏ, ତାହା ରାଜସ ଅଟେ । ସେ ସୁଖ ପାଇବା ପୂର୍ବରୁ ମନ ଓ ଇନ୍ଦ୍ରିୟମାନଙ୍କୁ ଦମନ କରିବାର କିଛି ମାତ୍ର ଆବଶ୍ୟକ ହୁଏ ନାହିଁ, ବରଂ ତାହା ଇନ୍ଦ୍ରିୟସୁଖଜନକହେତୁରୁ ପ୍ରଥମରେ ଅମୃତତୁଲ୍ୟ ଜଣାଯାଏ, ମାତ୍ର ସେହି ସୁଖର ଅବସାନ କାଳରେ ସୁଖଭୋଗକାରୀକୁ ଇହଲୋକରେ ଓ ପରଲୋକରେ ନାନାପ୍ରକାର ଦୁଃଖଭୋଗ କରିବାକୁ ହୁଏ, ଏଣୁକରି ତେତେବେଳେ ତାହା ବିଷପରି ବୋଧ ହୁଏ । ଏପରି ବୈଷୟିକ ସୁଖକୁ ସାଧୁମାନେ ରାଜସସୁଖ କହନ୍ତି ଓ ତାହା ପରିତ୍ୟାଗର ଯୋଗ୍ୟ ଅଟେ । ୩୮ ।

ଶ୍ଳୋକଃ ।

* ଯଦଗ୍ରେ ଚାନୁବନ୍ଧେ ଚ, ସୁଖଂ ମୋହନମାତ୍ମନଃ ।
ନିଦ୍ରାଲସ୍ୟପ୍ରମାଦୋତ୍ଥଂ, ତତ୍ତାମସମୁଦାହୃତଂ । ୩୯ ।

## ଅନ୍ୱୟଃ ।

ଯତ୍ ସୁଖଂ ଅଗ୍ରେ ଚ ଅନୁବନ୍ଧେ ଚ ଆତ୍ମନଃ ମୋହନଂ ନିଦ୍ରାଲସ୍ୟପ୍ରମାଦୋତ୍ଥଂ, ତତ୍ ତାମସଂ ଉଦାହୃତଂ ।୩୯।

## ଟୀକା ।

ତାମସଂ ସୁଖମାହ । ଯଦିତି । ଅଗ୍ରେ ଚ ପ୍ରଥମକ୍ଷଣେ ଅନୁବନ୍ଧେ ଚ ପଶ୍ଚାଦପି ଯତ୍ ସୁଖମାତ୍ମନୋମୋହକରଂ ତଦେବାହ, ନିଦ୍ରା ଚ ଆଲସ୍ୟଂ ଚ ପ୍ରମାଦଶ୍ଚ କର୍ତ୍ତବ୍ୟାବଧାରଣରାହିତ୍ୟେନ ମନୋରାଜ୍ୟମେତେଭ୍ୟ ଉତ୍ତିଷ୍ଠତ ଯତ୍ ସୁଖଂ, ତତ୍ତାମସମୁଦାହୃତଂ । ୩୯ ।

## ପଦବ୍ୟାଖ୍ୟା ।

ଯତ୍—ଯେଉଁ, ଅଗ୍ରେ ଚ—ପ୍ରଥମରେ, ଅନୁବନ୍ଧେ ଚ—ଶେଷରେ ମଧ୍ୟ, ସୁଖଂ—ସୁଖ, ମୋହନଂ ଆତ୍ମନଃ—ଆତ୍ମାର (ବୁଦ୍ଧିର) ମୋହଜନକ, ନିଦ୍ରାଲସ୍ୟପ୍ରମାଦୋତ୍ଥଂ—ନିଦ୍ରା, ଆଲସ୍ୟ ଓ ପ୍ରମାଦରୁ ଉତ୍ପନ୍ନ, ତତ୍—ସେହି ସୁଖକୁ ତାମସ ଉଦାହୃତଂ—ତାମସ ବୋଲିଯାଏ । ୩୯ ।

## ଅନୁବାଦ ।

ଯେଉଁ ସୁଖ, ନିଦ୍ରା ଆଳସ୍ୟ ଏବଂ ଅସାବଧାନତାରୁ ଜାତ ହୋଇ ଆଦ୍ୟରେ ଓ ଶେଷରେ ବୁଦ୍ଧିକୁ ମୋହିତ କରେ, ତାହାକୁ ତାମସ ସୁଖ ବୋଲିଯାଏ । ୩୯ ।

## ବିଶଦବ୍ୟାଖ୍ୟା ।

ଯେଉଁ ସୁଖ ସାତ୍ତ୍ୱିକସୁଖ ପରି ଆତ୍ମଜ୍ଞାନରୁ ଉତ୍ପନ୍ନ ନୁହେ, ଅଥବା ରାଜସସୁଖ ପରି ବିଷୟମାନଙ୍କର ଇନ୍ଦ୍ରିୟ ସହିତ ସଂଯୋଗରୁ ଜାତ ନୁହେ, କେବଳ ନିଦ୍ରା, ଆଲସ୍ୟ ଓ ଅସାବଧାନତାରୁ ଉତ୍ପନ୍ନ ହୋଇ ଆଦ୍ୟରେ ଓ ଶେଷରେ ସର୍ବଦା ବୁଦ୍ଧିକୁ ମୋହିତ କରେ, ଅର୍ଥାତ୍ ଯେଉଁ ସୁଖ ପାଇଲେ ମନୁଷ୍ୟ ଭଲ ମନ୍ଦ କିଛି ବୁଝି ପାରେ ନାହିଁ, ସେହି ସୁଖକୁ ସାଧୁମାନେ ତାମସସୁଖ ବୋଲି କହିଅଛନ୍ତି ।

ତାମସ ସୁଖର, ସାତ୍ତ୍ୱିକ ଓ ରାଜସସୁଖ ସହିତ ପ୍ରଭେଦ ଏହି, ଯେ ଯମ ନିୟମ ଓ ସମାଧି ପ୍ରଭୃତିରେ ଅତ୍ୟନ୍ତ ଅଭ୍ୟାସରେ ସାତ୍ତ୍ୱିକସୁଖ ଉତ୍ପନ୍ନ ହୁଏ, ଅର୍ଥାତ୍ ଦୀର୍ଘକାଳ ପରେ ଅନୁଭବ କରାଯାଏ । ରାଜସସୁଖ ବିଷୟ ସହିତ ଇନ୍ଦ୍ରିୟର ସଂଯୋଗରୁ ଉତ୍ପନ୍ନ ହୁଏ, ଅର୍ଥାତ୍ ସେହି ସୁଖ ପାଇବାକୁ ଇନ୍ଦ୍ରିୟମାନଙ୍କ ସହିତ ବିଷୟବର୍ଗର ସଂଯୋଗ ଆବଶ୍ୟକ ହୁଏ । ତାହା ନ ହେଲେ, ରାଜସସୁଖ ହୋଇ ପାରେ ନାହିଁ । ଫଳକଥା ଏହିକି ସାତ୍ତ୍ୱିକସୁଖ ଅପେକ୍ଷା ରାଜସ ସୁଖ ଅଳ୍ପ ପରିଶ୍ରମସାଧ୍ୟ । ମାତ୍ର ତାମସ ସୁଖରେ କିଛି ମାତ୍ର ଶ୍ରମର ପ୍ରୟୋଜନ ହୁଏ ନାହିଁ । ତାହା ନିଦ୍ରା, ଆଲସ୍ୟ ଏବଂ ପ୍ରମାଦରୁ ଜାତ ହୁଏ । ନିଦ୍ରା ଓ ଆଲସ୍ୟଜନିତ ସୁଖ ପ୍ରାୟ ସମସ୍ତେ ଅନୁଭବ କରିଅଛନ୍ତି । ପ୍ରମାଦଜନିତ ସୁଖ ଟିକିଏ ଅଦ୍ଭୁତ ପ୍ରକାରର ଅଟେ । କୌଣସି କର୍ମ କରିବାର କ୍ଷମତା ନାହିଁ ଓ କର୍ମ ସିଦ୍ଧି ହେବାର ସମ୍ଭାବନା ନାହିଁ, ଅଥଚ ମୁଁ ରାଜା ହେବି—ଘୋଡ଼ା ହାତୀ ଚଢ଼ିବି ଇତ୍ୟାଦି କାଳ୍ପନିକ ସୁଖ, ପ୍ରମାଦଜନିତ ସୁଖର ଉଦାହରଣ ଅଟେ । ଏପ୍ରକାର ତାମସ ସୁଖ ସମସ୍ତଙ୍କର ପରିତ୍ୟାଗ କରିବା ଉଚିତ ଅଟେ । ୩୯ ।

ଶ୍ଲୋକଃ ।

ନ ତଦସ୍ତି ପୃଥିବ୍ୟାଂ ବା, ଦିବି ଦେବେଷୁ ବା ପୁନଃ ।
ସତ୍ତ୍ୱଂ ପ୍ରକୃତିଜୈର୍ମୁକ୍ତଂ, ଯଦେଭିଃ ସ୍ୟାତ୍ତ୍ରିଭିର୍ଗୁଣୈଃ । ୪୦ ।

ଅନ୍ୱୟଃ ।

ଯତ୍ ସତ୍ତ୍ୱଂ ପ୍ରକୃତିଜୈଃ ଏଭିଃ ତ୍ରିଭିଃ ଗୁଣୈଃ ମୁକ୍ତଂ ସ୍ୟାତ୍, ତତ୍ ପୃଥିବ୍ୟାଂ ବା ଦିବି ବା ପୁନଃ ଦେବେଷୁ ନ ଅସ୍ତି । ୪୦ ।

ଟୀକା ।

ଅନୁକ୍ତମପି ସଂଗୃହ୍ନନ୍ ପ୍ରକରଣାର୍ଥମୁପସଂହରତି । ନ ତଦସ୍ତି ଇତି । ଏଭିଃ ପ୍ରକୃତିସମ୍ଭବୈଃ ସତ୍ତ୍ୱାଦିଭିର୍ଗୁଣୈଃ ମୁକ୍ତଂ ହୀନଂ ସତ୍ତ୍ୱଂ ପ୍ରାଣିଜାତଂ ଅନ୍ୟଦ୍ୱା ଯତ୍ ସ୍ୟାତ୍, ତତ୍ ପୃଥିବ୍ୟାଂ ମନୁଷ୍ୟାଦିଷୁ ଦିବି ଦେବେଷୁ ଚ କ୍ୱାପି ନାସ୍ତୀତ୍ୟର୍ଥଃ । ୪୦ ।

ପଦବ୍ୟାଖ୍ୟା ।

ନ ତତ୍ ଅସ୍ତି—ତାହା ନାହିଁ, ପୃଥିବ୍ୟାଂ—ଭୂଲୋକରେ, ବା ଦିବି—ଅଥବା ସ୍ୱର୍ଗରେ, ଦେବେଷୁ ବା—ଅଥବା ଦେବତାମାନଙ୍କ ମଧ୍ୟରେ, ପୁନଃ—ପୁଣି, ସତ୍ତ୍ୱଂ—ପ୍ରାଣୀ ବା ପଦାର୍ଥ, ପ୍ରକୃତିଜୈଃ— ପ୍ରକୃତିରୁ ଉତ୍ପନ୍ନ, ମୁକ୍ତଂ—ଅବଶୀଭୂତ, ଯତ୍—ଯାହା, ଏଭିଃ—ଏହିସବୁ, ସ୍ୟାତ୍—ଅଟେ, ତ୍ରିଭିଃ ଗୁଣୈଃ—ତିନି ଗୁଣଦ୍ୱାରା । ୪୦ ।

ଅନୁବାଦ ।

ପୃଥିବୀରେ, ବା ସ୍ୱର୍ଗରେ, ଅଥବା ଦେବତାମାନଙ୍କ ମଧ୍ୟରେ, ଏପରି କୌଣସି ପ୍ରାଣୀ ବା ପଦାର୍ଥ ନାହିଁ, ଯେ କି ଏହି ପ୍ରକୃତିଜାତ ତିନି ଗୁଣରୁ ମୁକ୍ତ ଅଟେ । ୪୦ ।

ବିଶଦବ୍ୟାଖ୍ୟା ।

ସତ୍ତ୍ୱ, ରଜଃ ଓ ତମଃ ଏହି ଗୁଣତ୍ରୟର ସାମ୍ୟାବସ୍ଥାକୁ ପ୍ରକୃତି ବୋଲାଯାଏ । ସେହି ପ୍ରକୃତିରୁ ବୈଷମ୍ୟ ହେଲା ମାତ୍ରକେ, ଗୁଣତ୍ରୟର ସ୍ୱତନ୍ତ୍ର ପ୍ରକାଶ ହୁଏ । ସେହି ହେତୁରୁ ସତ୍ତ୍ୱ, ରଜଃ ଓ ତମଃ ଏହି ଗୁଣତ୍ରୟକୁ ପ୍ରକୃତିଜାତ ବୋଲାଯାଏ । ଦେବଲୋକରେ, ସ୍ୱର୍ଗରେ, ଅଥବା ପୃଥିବୀରେ ଏପରି କୌଣସି ପ୍ରାଣୀ ବା ପଦାର୍ଥ ନାହିଁ, ଯେ କି ଏହି ପ୍ରକୃତିଜାତ ସତ୍ତ୍ୱାଦି ଗୁଣତ୍ରୟ ଯୁକ୍ତ ନୁହେ, ଅର୍ଥାତ୍ ସାମାନ୍ୟ ତୃଣଠାରୁ ଆରମ୍ଭ କରି ଇନ୍ଦ୍ରାଦି ଦେବତା ପର୍ଯ୍ୟନ୍ତ ସମସ୍ତ ପ୍ରାଣୀ ଓ ପଦାର୍ଥ ଗୁଣଯୁକ୍ତ ଅଟନ୍ତି ।

କେହି୨ ପ୍ରକୃତିକୁ ମାୟା ବୋଲି ଅର୍ଥ କରିଅଛନ୍ତି, କାହାର୨ ମତରେ ପୂର୍ବଜନ୍ମାର୍ଜ୍ଜିତ ଧର୍ମାଧର୍ମରୁ ଉତ୍ପନ୍ନ ଯେ ସଂସ୍କାର, ତାହାହିଁ ପ୍ରକୃତି ଅଟେ ; ମାତ୍ର ଯେ ଯାହା କହନ୍ତୁ ପଛକେ ପରମାତ୍ମା ବ୍ୟତୀତ କୌଣସି ଅଭିମାନୀ ଜୀବ, ଅଥବା କୌଣସି ପଦାର୍ଥ, ନିର୍ଗୁଣ ନୁହେ । ୪୦ ।

ଶ୍ଲୋକଃ ।

* ବ୍ରାହ୍ମଣକ୍ଷତ୍ରିୟବିଶାଂ, ଶୂଦ୍ରାଣାଂ ଚ ପରନ୍ତପ ।
କର୍ମାଣି ପ୍ରବିଭକ୍ତାନି ସ୍ୱଭାବପ୍ରଭବୈର୍ଗୁଣୈଃ । ୪୧ ।

Digitized by PPRACHIN, SOA

## ଅନ୍ୱୟଃ ।

ହେ ପରନ୍ତପ ! ବ୍ରାହ୍ମଣକ୍ଷତ୍ରିୟବିଶାଂ ଚ ଶୂଦ୍ରାଣାଂ କର୍ମାଣି ସ୍ୱଭାବପ୍ରଭବୈଃ ଗୁଣୈଃ ପ୍ରବିଭକ୍ତାନି । ୪୧ ।

## ଟୀକା ।

ନନୁ ଯଦ୍ୟେବଂ, ସର୍ବମପି କ୍ରିୟାକାରକଫଳାଦିକଂ ପ୍ରାଣିଜାତଞ୍ଚ ତ୍ରିଗୁଣାତ୍ମକମେବ ତର୍ହି କଥମସ୍ୟ ମୋକ୍ଷ ଇତ୍ୟପେକ୍ଷାୟାଂ ସ୍ୱସ୍ୱାଧିକାରେଣ ବିହିତୈଃ କର୍ମଭିଃ ପରମେଶ୍ୱରାରାଧନାତ୍ତତ୍ପ୍ରସାଦଲବ୍ଧଜ୍ଞାନେନୈବେତ୍ୟେବଂ ସର୍ବଗୀତାର୍ଥସାରଂ ସଂଗୃହ୍ୟ ଦର୍ଶୟିତୁଂ ପ୍ରକରଣାନ୍ତରମାରଭତେ ବ୍ରାହ୍ମଣେତ୍ୟାଦି ଯାବଦଧ୍ୟାୟସମାପ୍ତି । ହେ ପରନ୍ତପ ! ହେ ଶତ୍ରୁତାପନ ! ବ୍ରାହ୍ମଣାନାଂ କ୍ଷତ୍ରିୟାଣାଂ ବୈଶ୍ୟାନାଂ ଶୂଦ୍ରାଣାଂ ଚ କର୍ମାଣି ପ୍ରବିଭକ୍ତାନି ପ୍ରକର୍ଷେଣ ବିଭାଗତୋ ବିହିତାନି ଶୂଦ୍ରାଣାଂ ଅସମାସାଦି ପୃଥକ୍କରଣଂ ଦ୍ୱିଜତ୍ୱାଭାବେନ ବୈଲକ୍ଷଣ୍ୟାତ୍, ବଚାଗୋପଲକ୍ଷଣମାହ । ସ୍ୱଭାବଃ ସାତ୍ତ୍ୱିକାଦିର୍ନୈସର୍ଗିକଃ ପ୍ରଭବତ ପ୍ରାଦୁର୍ଭବତ ଯେଭ୍ୟସ୍ତୈର୍ଗୁଣୈରୁପଲକ୍ଷଣଭୂତୈଃ । ଯଦ୍ୱା ସ୍ୱଭାବପ୍ରଭବୈଃ ପୂର୍ବଜନ୍ମସଂସ୍କାରପ୍ରାଦୁର୍ଭୂତୈରିତ୍ୟର୍ଥଃ । ତତ୍ର ସତ୍ତ୍ୱପ୍ରଧାନା ବ୍ରାହ୍ମଣାଃ, ସତ୍ତ୍ୱୋପସର୍ଜନ-ରଜଃପ୍ରଧାନାଃ କ୍ଷତ୍ରିୟାଃ, ତମ ଉପସର୍ଜନରଜଃପ୍ରଧାନା ବୈଶ୍ୟାଃ ରଜ, ଉପସର୍ଜନତମଃପ୍ରଧାନାଃ ଶୂଦ୍ରାଃ । ୪୧ ।

## ପଦବ୍ୟାଖ୍ୟା ।

ବ୍ରାହ୍ମଣକ୍ଷତ୍ରିୟବିଶାଂ—ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏମାନଙ୍କର, ଶୂଦ୍ରାଣାଂ ଚ—ଶୂଦ୍ରମାନଙ୍କର ମଧ, ପରନ୍ତପ—ହେ ଶତ୍ରୁତାପନ ଅର୍ଜୁନ ! କର୍ମାଣି—କର୍ମସବୁ, ପ୍ରବିଭକ୍ତାନି—ପୃଥକ୍‌ରୂପେ ନିରୂପିତ ହୋଇଅଛି, ସ୍ୱଭାବପ୍ରଭବୈର୍ଗୁଣୈଃ—ପ୍ରକୃତିଜାତ ଗୁଣମାନଙ୍କଦ୍ୱାରା । ୪୧ ।

## ଅନୁବାଦ ।

ହେ ପରନ୍ତପ ! ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏମାନଙ୍କର କର୍ମସବୁ ସ୍ୱଭାବଜାତ ଗୁଣଦ୍ୱାରା ଭିନ୍ନ ଭିନ୍ନ ରୂପେ ନିରୂପିତ ହୋଇଅଛି । ୪୧ ।

## ବିଶଦବ୍ୟାଖ୍ୟା ।

ଏ ଅଧ୍ୟାୟରେ ପ୍ରଥମରୁ କର୍ତ୍ତା, କର୍ମ, କ୍ରିୟା, ଫଳ, ବୁଦ୍ଧି ଓ ସୁଖ, ଏ ସମସ୍ତଙ୍କର ସତ୍ତ୍ୱାଦି ଭେଦ କହି ଶ୍ରୀଭଗବାନ ପୂର୍ବଶ୍ଳୋକରେ କହିଲେ, ଯେ ଏ ଜଗତରେ ଏପରି କୌଣସି ପ୍ରାଣୀ ବା ପଦାର୍ଥ ନାହିଁ, ଯାହା କି ତ୍ରିଗୁଣରୁ ମୁକ୍ତ ଅଟେ ; ଅର୍ଥାତ୍ ଜଗତର ସମସ୍ତ ପ୍ରାଣୀ ଓ ପଦାର୍ଥ, ତ୍ରିଗୁଣଯୁକ୍ତ ଅଟନ୍ତି, ଏଥିରେ କାଳେ ଅର୍ଜୁନଙ୍କର ଏପରି ଆଶଙ୍କା ହେବ, ଯେ ସମସ୍ତେ ଯଦି ତ୍ରିଗୁଣଯୁକ୍ତ ଅଟନ୍ତି, ତେବେ ଲୋକଙ୍କର ମୋକ୍ଷ ହେବ କିପରି ? ସେଥିପାଇଁ ପରମପୁରୁଷାର୍ଥରୂପରେ ବର୍ଣ୍ଣିତ ହୋଇଥିବା ଆଶ୍ରମଧର୍ମକୁ ବିଧି ଅନୁସାରେ ପାଳନ କଲେ, ପରମେଶ୍ୱର ସନ୍ତୁଷ୍ଟ ହୋଇ ଅନୁଷ୍ଠାନକାରୀକୁ 'ଅସଙ୍ଗ' (ବୈରାଗ୍ୟ) ନାମକ ଦୃଢ଼ ଅସ୍ତ୍ର ପାଇବାର ଅଧିକାରୀ କରନ୍ତି, ଗୀତାର ଏହି ସାରକଥା ପୂର୍ବେ ବୁଝାଇ ଏଠାରେ ଉପସଂହାର କରିବା ଇଚ୍ଛାରେ ଶ୍ରୀଭଗବାନ୍ ବର୍ଣ୍ଣାଶ୍ରମ ଧର୍ମର ବ୍ୟାଖ୍ୟା ଆରମ୍ଭ କରୁଅଛନ୍ତି ।

ଶ୍ରୀଭଗବାନ୍ କହିଲେ, ହେ ପରନ୍ତପ ଅର୍ଜୁନ ! ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନି ବର୍ଣ୍ଣ ଏବଂ ଶୂଦ୍ର, ଏମାନଙ୍କର କର୍ମ ସବୁ ପରସ୍ପର ଭିନ୍ନ ଭିନ୍ନ ହୋଇ ନିରୂପିତ ହୋଇଅଛି । ଏ ଶ୍ଳୋକରେ "ବ୍ରାହ୍ମଣକ୍ଷତ୍ରିୟବିଶାଂ" ଅର୍ଥାତ୍ 'ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ' ଏପରି ତିନି ବର୍ଣ୍ଣର ଏକତ୍ର ସମାସ କରି 'ଶୂଦ୍ରାଣାଂ ଚ' ପଦଦ୍ୱାରା ଶୂଦ୍ରଜାତିକୁ ପୃଥକ୍‌ରୂପେ ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ଏହି, ଯେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନିବର୍ଣ୍ଣ ଦ୍ୱିଜାତି ଏବଂ ବେଦାଧ୍ୟୟନରେ ଓ ଅଗ୍ନି-

Digitized by PPRACHIN, SOA

ହୋତ୍ରାଦି କର୍ମରେ ଅଧିକାରୀ ଅଟନ୍ତି; ମାତ୍ର ଶୂଦ୍ର ଏକଜାତି ବା ଏକଜନ୍ମା ଓ ବେଦାଧ୍ୟୟନରେ ଅଧିକାରୀ ନୁହନ୍ତି । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏମାନେ ଦ୍ୱିଜାତି ବା ଦ୍ୱିଜନ୍ମା, କାହିଁକି, ନା ସେମାନେ ଲୋକପ୍ରସିଦ୍ଧ ମାତା ପିତାଙ୍କଠାରୁ ଥରେ ଜାତ ହୋଇଥାନ୍ତି, ପୁଣି ମୌଞ୍ଜୀବନ୍ଧନ ବା ଉପନୟନ ସମୟରେ ତାଙ୍କର ଆଉ ଥରେ ଜାତକର୍ମ ହୁଏ । ଉକ୍ତ ଜାତକର୍ମରେ ସାବିତ୍ରୀ ସେମାନଙ୍କର ମାତା ଓ ଆଚାର୍ଯ୍ୟ ଅର୍ଥାତ୍ ଉପଦେଶକ ସେମାନଙ୍କର ପିତାସ୍ୱରୂପ ହୁଅନ୍ତି, ମାତ୍ର ଶୂଦ୍ରମାନଙ୍କର ଜାତକର୍ମ ନ ଥିବାରୁ ସେମାନେ ଏକଜାତି ବା ଏକଜନ୍ମା ଅଟନ୍ତି । ଏକଥା ମହାତ୍ମା ବଶିଷ୍ଠ ମଧ୍ୟ କହି ଅଛନ୍ତି, ଯଥା —"ଚତ୍ୱାରୋବର୍ଣ୍ଣା ବ୍ରାହ୍ମଣକ୍ଷତ୍ରିୟବୈଶ୍ୟ-ଶୂଦ୍ରାସ୍ତେଷାଂ ତ୍ରୟୋବର୍ଣ୍ଣା ଦ୍ୱିଜାତୟୋ ବ୍ରାହ୍ମଣକ୍ଷତ୍ରିୟବୈଶ୍ୟାସ୍ତେଷାଂ ମାତୁରଗ୍ରେ ଦ୍ୱିଜନନଂ ଦ୍ୱିତୀୟଂ ମୌଞ୍ଜୀବନ୍ଧନେ । ଅତ୍ରାସ୍ୟ ମାତା ସାବିତ୍ରୀ ପିତା ତ୍ୱାଚାର୍ଯ୍ୟ ଉଚ୍ୟତ ଇତି" । ପୁଣି ଉତ୍ପତ୍ତିସ୍ଥାନ ଅନୁସାରେ ବର୍ଣ୍ଣବିଭାଗ ଶ୍ରୁତିରେ ମଧ୍ୟ, ପ୍ରମାଣିତ ଅଛି, ଯଥା —"ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ବାହୂରାଜନ୍ୟକୃତଃ ଊରୂ ତଦସ୍ୟ ଯଦ୍ୱୈଶ୍ୟ ପଦ୍ଭ୍ୟାଂ ଶୂଦ୍ରୋଅଜାୟତ" ଇତି । ଅର୍ଥାତ୍ ପରମେଶ୍ୱରଙ୍କ ମୁଖରୁ ବ୍ରାହ୍ମଣ, ବାହୁଦ୍ୱୟରୁ କ୍ଷତ୍ରିୟ, ଉରୁଦ୍ୱୟରୁ ବୈଶ୍ୟ ଓ ପାଦଦ୍ୱୟରୁ ଶୂଦ୍ର ଉତ୍ପନ୍ନ ହୋଇଅଛନ୍ତି ଇତ୍ୟାଦି । ପୁଣି ଅନ୍ୟ ଶ୍ରୁତିରେ ମଧ୍ୟ, ବର୍ଣ୍ଣବିଭାଗର ପ୍ରମାଣ ଅଛି, ଯଥା—"ଗାୟତ୍ର୍ୟା ବ୍ରାହ୍ମଣମସୃଜତ ତ୍ରିଷ୍ଟୁଭା ରାଜନ୍ୟଂ ଜଗତ୍ୟା ବୈଶ୍ୟଂ ନ କେନ ଚ ଛନ୍ଦସା ଶୂଦ୍ରଂ ଇତି" । ଅର୍ଥାତ୍ ପରମେଶ୍ୱର ଗାୟତ୍ରୀ ନାମକ ଚତୁର୍ବିଂଶତି ଅକ୍ଷରର ଛନ୍ଦଦ୍ୱାରା ବ୍ରାହ୍ମଣଙ୍କୁ, ଅଷ୍ଟାବିଂଶତି (୨୮) ଅକ୍ଷରର ତ୍ରିଷ୍ଟୁପ୍ ନାମକ ଛନ୍ଦଦ୍ୱାରା କ୍ଷତ୍ରିୟଙ୍କୁ ଏବଂ ଦ୍ୱାତ୍ରିଂଶତ୍ (୩୨) ଅକ୍ଷରର ଜଗତୀ ନାମକ ଛନ୍ଦଦ୍ୱାରା ବୈଶ୍ୟମାନଙ୍କୁ ସୃଷ୍ଟି କଲେ । ମାତ୍ର ଶୂଦ୍ରମାନଙ୍କୁ କୌଣସି ଛନ୍ଦଦ୍ୱାରା ସୃଷ୍ଟି କରି ନାହାନ୍ତି, ଅତଏବ ସେମାନେ ବେଦର ଅଧିକାରୀ ନୁହନ୍ତି ଇତ୍ୟାଦି । ଫଳକଥା ଏହି ଯେ ଚତୁର୍ବର୍ଣ୍ଣର ବିଭାଗ ଅନାଦିସିଦ୍ଧ ଅଟେ, ତାହା ସ୍ୱାର୍ଥପର ବ୍ରାହ୍ମଣମାନଙ୍କ କପୋଳକଳ୍ପିତ ନୁହେ । ସେହି ବ୍ରାହ୍ମଣାଦି ଚତୁର୍ବର୍ଣ୍ଣର କର୍ମକୁ ପରସ୍ପର ଭିନ୍ନ୨ ଭାବରେ ବ୍ୟବସ୍ଥା କରି ହୋଇଅଛି । କାଳେ ଅର୍ଜୁନ ପଚାରିବେ, ଯେ ବ୍ୟବସ୍ଥାକର୍ତ୍ତା କିଏ ? ସେଥିପାଇଁ ଶ୍ରୀଭଗବାନ୍ କହିଲେ, ଯେ "ସ୍ୱଭାବପ୍ରଭବୈଃ ଗୁଣୈଃ" ଅର୍ଥାତ୍ ସ୍ୱଭାବର ପ୍ରଭବ ବା ହେତୁ, ଯେ ସତ୍ତ୍ୱାଦି ଗୁଣ ସବୁ, ସେହିମାନେ ଏହି ବ୍ୟବସ୍ଥା କରିଅଛନ୍ତି । ଅର୍ଥାତ୍ ବ୍ରାହ୍ମଣମାନଙ୍କର ସ୍ୱଭାବ ପ୍ରଶାନ୍ତ ବୋଲି ସତ୍ତ୍ୱଗୁଣ, ତାହାର ହେତୁ ଅଟେ । କ୍ଷତ୍ରିୟମାନଙ୍କର ସ୍ୱଭାବ ଐଶ୍ୱର୍ଯ୍ୟଯୁକ୍ତ ବୋଲି ସତ୍ତ୍ୱଗୁଣର ଗୌଣଭାବଯୁକ୍ତ ରଜୋଗୁଣ, ତାହାର ହେତୁ ଅଟେ । ସେହିପରି ବୈଶ୍ୟମାନଙ୍କର ସ୍ୱଭାବ କାମନାବିଶିଷ୍ଟ ବୋଲି ତମୋଗୁଣର ଗୌଣଭାବଯୁକ୍ତ ରଜୋଗୁଣ, ତାହାର ହେତୁ ଓ ଶୂଦ୍ରମାନଙ୍କର ସ୍ୱଭାବ ମୂଢ଼ତାଯୁକ୍ତ ଥିବାରୁ ରଜୋଗୁଣର ଗୌଣଭାବଯୁକ୍ତ ତମୋଗୁଣ, ତହିଁର ହେତୁ ଅଟେ । ଅଥବା (ସ୍ୱଭାବପ୍ରଭବୈର୍ଗୁଣୈଃ) ମାୟାର ନାମ ସ୍ୱଭାବ । ସେହି ମାୟାରୂପ ସ୍ୱଭାବରୁ 'ପ୍ରଭବ' ଅର୍ଥାତ୍ ଉତ୍ପତ୍ତି ଯେଉଁମାନଙ୍କର, ଏପରି ସତ୍ତ୍ୱାଦି ଗୁଣସମୂହଦ୍ୱାରା ଭିନ୍ନ୨ ବର୍ଣ୍ଣର ଭିନ୍ନ୨ କର୍ମ ନିରୂପିତ ହୋଇଅଛି । ଅଥବା ପୂର୍ବଜନ୍ମକୃତ ଧର୍ମାଧର୍ମରୁ ଜାତ, ଯେ ସଂସ୍କାର, ତାହାକୁ ସ୍ୱଭାବ ବୋଲାଯାଏ, ସେହି

Digitized by PPRACHIN, SOA

ସ୍ୱଭାବ (ନିମିତ୍ତ ଯାହାରେ) 'ପ୍ରଭବ' ଅର୍ଥାତ୍ ଉତ୍ପତ୍ତିର କାରଣ ଅଟେ, ଯେଉଁମାନଙ୍କର, ଏପରି ଯେ ସ୍ୱଭାବଗୁଣସମୂହ, ତାହାଦ୍ୱାରା ଭିନ୍ନ ଭିନ୍ନ ବର୍ଣ୍ଣର ଭିନ୍ନ ଭିନ୍ନ କର୍ମ ନିରୂପିତ ହୋଇଅଛି । ଫଳକଥା ଏହି କି ବ୍ରାହ୍ମଣାଦି ବର୍ଣ୍ଣମାନଙ୍କର, ଯେ ଭିନ୍ନ ଭିନ୍ନ କର୍ମ ନିର୍ଦ୍ଦିଷ୍ଟ ହୋଇଅଛି, ତାହାର କାରଣ, କେବଳ ସ୍ୱଭାବ ଗୁଣତ୍ରୟ ଅଟେ । ସେ ବିଷୟରେ ଅନ୍ୟ କିଛି କାରଣ ନାହିଁ ।

ଶ୍ଳୋକଃ ।

* ଶମୋଦମସ୍ତପଃ ଶୌଚଂ, କ୍ଷାନ୍ତିରାର୍ଜ୍ଜବମେବ ଚ ।

ଜ୍ଞାନଂ ବିଜ୍ଞାନମାସ୍ତିକ୍ୟଂ, ବ୍ରହ୍ମକର୍ମ ସ୍ୱଭାବଜଂ । ୪୨ ।

ଅନ୍ୱୟଃ ।

ଶମଃ, ଦମଃ, ତପଃ, ଶୌଚଂ, କ୍ଷାନ୍ତିଃ, ଚ ଆର୍ଜ୍ଜବ, ଜ୍ଞାନଂ, ବିଜ୍ଞାନଂ, ଆସ୍ତିକ୍ୟଂ, ଇତି ସ୍ୱଭାବଜଂ ବ୍ରହ୍ମକର୍ମ ଏବ । ୪୨ ।

ଟୀକା ।

ତତ୍ର ବ୍ରାହ୍ମଣସ୍ୟ ସ୍ୱାଭାବିକାନି କର୍ମାଣ୍ୟାହ, ଶମ ଇତି । ଶମଶ୍ଚିତ୍ତୋପରମଃ, ଦମୋବାହ୍ୟେନ୍ଦ୍ରିୟୋପରମଃ, ତପଃ ପୂର୍ବୋକ୍ତଂ ଶାରୀରାଦି, ଶୌଚଂ ବାହ୍ୟାଭ୍ୟନ୍ତରଂ, କ୍ଷାନ୍ତିଃ କ୍ଷମା, ଆର୍ଜ୍ଜବମବକ୍ରତା, ଜ୍ଞାନଂ ଶାସ୍ତ୍ରୀୟଂ, ବିଜ୍ଞାନମନୁଭବଃ, ଆସ୍ତିକ୍ୟମସ୍ତି ପରଲୋକ ଇତି ନିଶ୍ଚୟଃ, ଏତତ୍ ଶମାଦି ବ୍ରାହ୍ମଣସ୍ୟ ସ୍ୱଭାବାଜ୍ଜାତଂ କର୍ମ । ୪୨ ।

ପଦବ୍ୟାଖ୍ୟା ।

ଶମଃ—ଏକାଗ୍ରତାଦ୍ୱାରା ଚିତ୍ତର ନିବୃତ୍ତି, ଦମଃ—ବାହ୍ୟଇନ୍ଦ୍ରିୟସଂଯମ, ତପଃ—ପୂର୍ବୋକ୍ତ ଶାରୀରିକ, ମାନସିକ ଓ ବାଚନିକ ତପସ୍ୟା, ଶୌଚଂ—ବାହ୍ୟ ଓ ଅଭ୍ୟନ୍ତର ଶୁଦ୍ଧି, କ୍ଷାନ୍ତିଃ—କ୍ଷମା, ଆର୍ଜ୍ଜବ—ସରଳତା, ଏବ ଚ—ଅଟଇ, ଜ୍ଞାନଂ—ଶାସ୍ତ୍ରପାଠଜନିତ ବୋଧ, ବିଜ୍ଞାନଂ—ଈଶ୍ୱର ଅନୁଭବରୂପ ଅଧ୍ୟାତ୍ମଜ୍ଞାନ, ଆସ୍ତିକ୍ୟଂ—ପରଲୋକରେ ବିଶ୍ୱାସ, ବ୍ରହ୍ମକର୍ମ—ବ୍ରାହ୍ମଣର କର୍ମ, ସ୍ୱଭାବଜଂ— ସ୍ୱଭାବ ଅନୁସାରେ ଉତ୍ପନ୍ନ । ୪୨ ।

ଅନୁବାଦ ।

ଅନ୍ତରିନ୍ଦ୍ରିୟ ସଂଯମ, ବାହ୍ୟେନ୍ଦ୍ରିୟ ଦମନ, ତପସ୍ୟା, ଶୌଚ, କ୍ଷମା, ସରଳତା, ଜ୍ଞାନ, ଅନୁଭବ ଓ ଆସ୍ତିକତା, ଏମାନ ବ୍ରାହ୍ମଣଙ୍କର ସ୍ୱାଭାବିକ କର୍ମ ଅଟେ । ୪୨ ।

ବିଶଦବ୍ୟାଖ୍ୟା ।

ଅନ୍ତଃକରଣରୁ କାମ କ୍ରୋଧାଦି ବୃତ୍ତିସମୂହକୁ ନିବୃତ୍ତ କରିବାର ନାମ 'ଶମ', ଓ ବାହ୍ୟେନ୍ଦ୍ରିୟ ସଂଯତ କରିବାର ନାମ 'ଦମ' ଅଟେ । କୃଚ୍ଛ୍ରଚାନ୍ଦ୍ରାୟଣାଦି ଶରୀରଶୁଷ୍କକର କ୍ରିୟାକୁ 'ତପଃ' ବୋଲାଯାଏ । ଶୌଚ ଦୁଇପ୍ରକାର, ବାହ୍ୟ ଓ ଅଭ୍ୟନ୍ତର । ମୃତ୍ତିକା ଓ ଜଳାଦିଦ୍ୱାରା ବାହ୍ୟ ଶୁଦ୍ଧି, ଏବଂ ଅହିଂସା ଓ ବିବେକାଦିଦ୍ୱାରା ଅନ୍ତଃକରଣ ଶୁଦ୍ଧି କରିବାକୁ କୁହାଏ । କାହାଠାରୁ ଅକାରଣରେ ଦଣ୍ଡ ବା ତିରସ୍କାର ପାଇଲେ, ତାହାର ପ୍ରତୀକାର କରିବାର, ଅଥବା ପ୍ରତିଶୋଧ ନେବାର କ୍ଷମତା ଥିଲେ ସୁଦ୍ଧା, ତହିଁରୁ ବିରତ ହେବା, ଅଥବା ଶୀତ ଗ୍ରୀଷ୍ମ ଓ ସୁଖ ଦୁଃଖାଦି ଦ୍ୱନ୍ଦ୍ୱ ସହିଷ୍ଣୁ ହେବାକୁ 'କ୍ଷମା' ବୋଲାଯାଏ । ସର୍ବଦା ସରଳ ବ୍ୟବହାର କରିବା, ଅର୍ଥାତ୍ କୌଣସି ପ୍ରକାର କୁଟିଳତା ଅବଲମ୍ବନ ନ କରିବା, ଅଥବା ନମ୍ରତାଯୁକ୍ତ ହେବାର

Digitized by PPRACHIN, SOA

ନାମ 'ଆର୍ଜ୍ଜବ' ଅର୍ଥାତ୍ ସରଳତା । ଶାସ୍ତ୍ରାଦି ପାଠଦ୍ୱାରା ଈଶ୍ୱର ସମ୍ବନ୍ଧରେ ଯେଉଁ ପ୍ରତୀତି ହୁଏ, ତାହା 'ଜ୍ଞାନ', ଓ ଅନ୍ତରରେ ତାହା ଅନୁଭବ କରିବା 'ବିଜ୍ଞାନ' ଅଟେ । ପରକାଳ ଓ ପରଲୋକ ଏବଂ ପାପ ପୁଣ୍ୟର ଦଣ୍ଡ ଓ ପୁରସ୍କାରଦାତା ପରମେଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସ କରିବା ଅର୍ଥାତ୍ ପରକାଳ, ପରଲୋକ ଓ ପରମେଶ୍ୱର ଅଛନ୍ତି, ଏପରି ବିଶ୍ୱାସ କରିବାର ନାମ 'ଆସ୍ତିକ୍ୟ' ବା ଆସ୍ତିକତା । ଉପରୋକ୍ତ କର୍ମଗୁଡ଼ିକ ବ୍ରାହ୍ମଣମାନଙ୍କର ସ୍ୱାଭାବିକ ଅଟେ । ଅର୍ଥାତ୍ ସତ୍ତ୍ୱଗୁଣ ପ୍ରଧାନ ବ୍ରାହ୍ମଣଙ୍କୁ କେହି ଶିଖାଇ ନ ଦେଲେ ସୁଦ୍ଧା, ଉପରୋକ୍ତ କର୍ମମାନ ଆପଣାଛାଏଁ ତାଙ୍କର ଉଦୟ ହୁଏ । ଆଜି କାଲି ଯଜ୍ଞସୂତ୍ର ମାତ୍ର ଧାରଣ କରିଥିବା ଅନେକ ବ୍ରାହ୍ମଣଙ୍କର ଉପରୋକ୍ତ କର୍ମସମୂହତ ଦୂରର କଥା, ଗୋଟିଏ ବା ଦିଓଟି କର୍ମ ଥିବାର ସୁଦ୍ଧା ଦେଖାଯାଏ ନାହିଁ, ବରଂ ତଦ୍ୱିପରୀତ ଇନ୍ଦ୍ରିୟାସକ୍ତି, ମିଥ୍ୟା, କପଟତା ଓ ମୂର୍ଖତା ଏବଂ ନାସ୍ତିକତା ପ୍ରଭୃତି ପୂର୍ଣ୍ଣମାତ୍ରାରେ ବିରାଜିତ, ଏପରି ସ୍ଥଳେ, ଭଗବାନଙ୍କ କଥାରେ ଲୋକଙ୍କର ଅବିଶ୍ୱାସ ହୋଇ ପାରେ ସତ, ମାତ୍ର ଭଗବାନଙ୍କ ଏ ଉକ୍ତି, କେବଳ ସତ୍ତ୍ୱଗୁଣପ୍ରଧାନ ବ୍ରାହ୍ମଣଙ୍କ ପ୍ରତି ଥିବାରୁ ତହିଁରେ ସନ୍ଦେହ କରିବାର କୌଣସି କାରଣ ନାହିଁ, ସତ୍ତ୍ୱଗୁଣର ନ୍ୟୂନତା ଓ ଅନ୍ୟାନ୍ୟ ଗୁଣର ମିଶ୍ରଣଦ୍ୱାରା ବ୍ରାହ୍ମଣ ଜାତି ଦଶଭାଗରେ ବିଭକ୍ତ, ଯଥା, "ଦେବୋମୁନିର୍ଦ୍ୱିଜୋରାଜା, ବୈଶ୍ୟଃ ଶୂଦ୍ରୋନିଷାଦକଃ । ପଶୁର୍ମ୍ଲେଚ୍ଛୋଽପି ଚଣ୍ଡାଲୋ-ବିପ୍ରା ଦଶବିଧାଃ ସ୍ମୃତାଃ" । ଅର୍ଥାତ୍ ବ୍ରାହ୍ମଣମାନେ ଦେବ, ମୁନି, ଦ୍ୱିଜ, ରାଜା, ବୈଶ୍ୟ, ଶୂଦ୍ର, ନିଷାଦ, ପଶୁ, ମ୍ଲେଚ୍ଛ ଓ ଚଣ୍ଡାଳ ଏହି ଦଶଶ୍ରେଣୀରେ ବିଭକ୍ତ । (ଏମାନଙ୍କର ବିଶେଷ ବିବରଣ ଅତ୍ରିସଂହିତାରେ ଲେଖା ଅଛି ଦେଖ) । ୪୨ ।

ଶ୍ଳୋକଃ ।

ଶୌର୍ଯ୍ୟଂ ତେଜୋଧୃତିର୍ଦାକ୍ଷ୍ୟଂ, ଯୁଦ୍ଧେ ଚାପ୍ୟପଲାୟନଂ ।
ଦାନମୀଶ୍ୱରଭାବଶ୍ଚ, କ୍ଷାତ୍ରଂ କର୍ମ ସ୍ୱଭାବଜଂ । ୪୩ ।

ଅନ୍ୱୟଃ ।

ଶୌର୍ଯ୍ୟଂ, ତେଜଃ, ଧୃତିଃ, ଦାକ୍ଷ୍ୟଂ, ଚ ଯୁଦ୍ଧେ ଅପି ଅପଲାୟନଂ, ଦାନଂ, ଚ ଈଶ୍ୱରଭାବଃ, (ଇତି) ସ୍ୱଭାବଜଂ କ୍ଷାତ୍ରଂ କର୍ମ । ୪୩ ।

ଟୀକା ।

କ୍ଷତ୍ରିୟସ୍ୟ ସ୍ୱାଭାବିକଂ କର୍ମାହ । ଶୌର୍ଯ୍ୟମିତି । ଶୌର୍ଯ୍ୟଂ ପରାକ୍ରମଃ, ତେଜଃ ପ୍ରାଗଲ୍ଭ୍ୟଂ, ଧୃତିର୍ଧୈର୍ଯ୍ୟଂ, ଦାକ୍ଷ୍ୟଂ କୌଶଳଂ, ଯୁଦ୍ଧେ ଚାପ୍ୟପଲାୟନଂ ଅପରାଙ୍ମୁଖତା, ଦାନମୌଦାର୍ଯ୍ୟଂ ଈଶ୍ୱରଭାବୋନିୟମନଶକ୍ତିଃ, ଏତତ୍ କ୍ଷତ୍ରିୟସ୍ୟ ସ୍ୱାଭାବିକଂ କର୍ମ । ୪୩ ।

ପଦବ୍ୟାଖ୍ୟା ।

ଶୌର୍ଯ୍ୟଂ—ପରାକ୍ରମ—ବିକ୍ରମ, ତେଜଃ—ପ୍ରଗଲ୍ଭତା, ଧୃତିଃ—ଧୈର୍ଯ୍ୟ, ଦାକ୍ଷ୍ୟଂ—କୌଶଳ, ଯୁଦ୍ଧେ ଚାପି—ପୁଣି ଯୁଦ୍ଧରେ ଅପଲାୟନଂ—ପରାଙ୍ମୁଖ ନ ହେବା—ବିମୁଖ ନ ହେବା, ଦାନଂ—ଉଦାରତା, ଅଥବା ସ୍ୱୋପାର୍ଜ୍ଜିତ ଧନ ସତ୍ପାତ୍ରରେ ଅର୍ପଣ, ଈଶ୍ୱରଭାବଃ ଚ—ଦୁଷ୍ଟାଦି ଦମନ କରିବା ଶକ୍ତି, କ୍ଷାତ୍ରଂ କର୍ମ—କ୍ଷତ୍ରିୟ ଜାତିର କାର୍ଯ୍ୟ, ସ୍ୱଭାବଜଂ—ପ୍ରକୃତିସିଦ୍ଧ । ୪୩ ।

Digitized by PPRACHIN, SOA

ଅନୁବାଦ ।

ଶୌର୍ଯ୍ୟ, ତେଜଃ, ଧୈର୍ଯ୍ୟ, କୌଶଳ, ଯୁଦ୍ଧରୁ ଅପଳାୟନ, ଦାନ ଓ ପ୍ରଭୁତ୍ୱ, ଏମାନ କ୍ଷତ୍ରିୟଙ୍କର ସ୍ୱଭାବସିଦ୍ଧ କର୍ମ ଅଟେ । ୪୩ ।

ବିସ୍ତାରବ୍ୟାଖ୍ୟା ।

ଆପଣା ଅପେକ୍ଷା ଅଧିକ ବଳବାନ୍ ଲୋକଙ୍କୁ ପରାଭବ କରିବା ବିଷୟରେ ଯେଉଁ ପ୍ରବୃତ୍ତି ହୁଏ, ତାହାକୁ 'ଶୌର୍ଯ୍ୟ' ବା ବିକ୍ରମ ବୋଲାଯାଏ । ଯେଉଁ ଗୁଣ ଥିବାରୁ ପରଠାରୁ ପ୍ରାପ୍ତ ନିନ୍ଦା ବା ଅବମାନନା ଅସହ୍ୟ ହୁଏ, ଅଥବା ଯେଉଁ ପ୍ରତାପ ଦେଖି ଶତ୍ରୁମାନେ ଭୟ ପ୍ରାପ୍ତ ହୁଅନ୍ତି, ସେହି ଗୁଣ ବା ପ୍ରତାପକୁ ତେଜଃ ବୋଲାଯାଏ । ମହା ବିପତ୍ତି ପଡ଼ିଲେ ସୁଦ୍ଧା, ଯେଉଁ ଶକ୍ତି ବଳରେ ଦେହ ଓ ଇନ୍ଦ୍ରିୟାଦିରେ ବ୍ୟାକୁଳତା ଜାତ ନ ହୁଏ, ସେହି ଶକ୍ତିର ନାମ ଧୃତି ବା ଧୈର୍ଯ୍ୟ । ହଠାତ୍ କୌଣସି କାର୍ଯ୍ୟ ଉପସ୍ଥିତ ହେଲେ, ନିଃଶଙ୍କଭାବରେ ଓ ନିର୍ବିଘ୍ନରେ ତାହା ସମ୍ପାଦନ କରିବାର ଯେଉଁ କ୍ଷମତା, ତାହାକୁ 'ଦାକ୍ଷ୍ୟ' ବା କୌଶଳ ବୋଲାଯାଏ । ବାରମ୍ବାର ବିପକ୍ଷର ଶସ୍ତ୍ରାଘାତ କ୍ଷତବିକ୍ଷତ ହୋଇ ସୁଦ୍ଧା, ଯୁଦ୍ଧରେ ବିମୁଖ ନ ହେବାକୁ 'ଅପଳାୟନ' ବୋଲାଯାଏ । ଗୋ, ସୁବର୍ଣ୍ଣ ଓ ଭୂମି ଏବଂ ଅନ୍ନ ପ୍ରଭୃତିକୁ ବ୍ରାହ୍ମଣାଦି ସତ୍ପାତ୍ରରେ ଅର୍ପଣ କରିବାକୁ 'ଦାନ' ବୋଲି ଜାଣିବ । ପ୍ରଜା ପାଳନ ନିମନ୍ତେ ଭୃତ୍ୟାଦିଙ୍କୁ ଓ ଦୁଷ୍ଟ ଲୋକଙ୍କୁ ଦମନ କରିବା ରୂପ ଶକ୍ତିକୁ ଈଶ୍ୱରଭାବ ବା ପ୍ରଭୁତ୍ୱ ବୋଲି ଶାସ୍ତ୍ରକାର-ମାନେ କହିଅଛନ୍ତି ।

ଉପରୋକ୍ତ କର୍ମଗୁଡ଼ାକ କ୍ଷତ୍ରିୟମାନଙ୍କର ସ୍ୱଭାବସିଦ୍ଧ ଅଟେ, ଅର୍ଥାତ୍ ସତ୍ତ୍ୱଗୁଣର ଗୌଣଭାବଯୁକ୍ତ ରଜୋଗୁଣପ୍ରଧାନ ପ୍ରକୃତ କ୍ଷତ୍ରିୟଙ୍କର ଉପରୋକ୍ତ କର୍ମମାନ ଆପଣାଛାଏଁ ଉଦ୍‌ଭୂତ ହୁଏ । ୪୩ ।

ଶ୍ଳୋକଃ ।

* କୃଷିଗୋରକ୍ଷ୍ୟବାଣିଜ୍ୟଂ, ବୈଶ୍ୟଂ କର୍ମ ସ୍ୱଭାବଜଂ ।

ପରିଚର୍ଯ୍ୟାତ୍ମକଂ କର୍ମ, ଶୂଦ୍ରସ୍ୟାପି ସ୍ୱଭାବଜଂ । ୪୪ ।

ଅନ୍ୱୟଃ ।

କୃଷି-ଗୋରକ୍ଷ୍ୟ-ବାଣିଜ୍ୟଂ, ସ୍ୱଭାବଜଂ ବୈଶ୍ୟଂ କର୍ମ । ଶୂଦ୍ରସ୍ୟ ଅପି ପରିଚର୍ଯ୍ୟାତ୍ମକଂ କର୍ମ ସ୍ୱଭାବଜଂ । ୪୪ ।

ଟୀକା ।

ବୈଶ୍ୟଶୂଦ୍ରୟୋଃ କର୍ମାହ । କୃଷୀତି । କୃଷିଃ-କର୍ଷଣଂ, ଗାଂ ରକ୍ଷତୀତି ଗୋରକ୍ଷସ୍ତସ୍ୟ ଭାବୋଗୋରକ୍ଷ୍ୟଂ ପାଶୁ-ପାଲ୍ୟମିତ୍ୟର୍ଥଃ । ବାଣିଜ୍ୟଂ କ୍ରୟବିକ୍ରୟାଦି, ଏତଦ୍ୱୈଶ୍ୟସ୍ୟ ସ୍ୱାଭାବିକଂ କର୍ମ । ତ୍ରୈବର୍ଣ୍ଣିକପରିଚର୍ଯ୍ୟାତ୍ମକଂ ଶୂଦ୍ରସ୍ୟାପି ସ୍ୱାଭାବିକଂ କର୍ମ । ୪୪ ।

ପଦବ୍ୟାଖ୍ୟା ।

କୃଷିଗୋରକ୍ଷ୍ୟବାଣିଜ୍ୟଂ—ଚାଷ, ପଶୁ ପାଳନ ଓ ବାଣିଜ୍ୟ, ବୈଶ୍ୟଂ କର୍ମ—ବୈଶ୍ୟ ଜାତିର କର୍ମ, ସ୍ୱଭାବଜଂ—ପ୍ରକୃତିସିଦ୍ଧ ଅଟେ, ପରିଚର୍ଯ୍ୟାତ୍ମକଂ କର୍ମ—ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ, ଏହି ତିନି ଜାତିର ସେବାରୂପ କର୍ମ, ଶୂଦ୍ରସ୍ୟ ଅପି—ଶୂଦ୍ରର ମଧ୍ୟ, ସ୍ୱଭାବଜଂ—ପ୍ରକୃତିସିଦ୍ଧ ଅଟେ । ୪୪ ।

Digitized by PPRACHIN, SOA

## ଅନୁବାଦ ।

କୃଷି, ପଶୁପାଳନ ଓ ବାଣିଜ୍ୟ, ବୈଶ୍ୟର ସ୍ୱାଭାବିକ କର୍ମ ଅଟେ, ଏବଂ (ବ୍ରାହ୍ମଣାଦି ବର୍ଣ୍ଣ-ତ୍ରୟର) ସେବାରୂପ କର୍ମ, ଶୂଦ୍ରର ମଧ୍ୟ, ସ୍ୱାଭାବିକ ଅଟେ । ୪୪ ।

## ବିଶଦବ୍ୟାଖ୍ୟା ।

ଧାନ୍ୟ, ବ୍ରୀହି ଓ ଯବାଦି ଶସ୍ୟ ଉତ୍ପାଦନ କରିବାପାଇଁ ଭୂମି କର୍ଷଣକୁ କୃଷି କୁହାଯାଏ । ଗୋ, ମହିଷ, ଅଶ୍ୱ ଓ ଛାଗାଦି ପଶୁ ପାଳନ କରିବାର ନାମ ଗୋରକ୍ଷ୍ୟ । ସେହିପରି ଧାନ୍ୟାଦି ଶସ୍ୟ ଓ ଗୋ ମହିଷାଦି ପଶୁ, ଏମାନଙ୍କ କ୍ରୟବିକ୍ରୟରୂପ କର୍ମକୁ ବାଣିଜ୍ୟ ବୋଲାଯାଏ । ବୃଦ୍ଧି ଇଚ୍ଛାରେ ଧନାଦି ପ୍ରୟୋଗ କରି କୁସୀଦ (ସୁଧ) ଗ୍ରହଣ କରିବା, ବାଣିଜ୍ୟର ଅନ୍ତର୍ଗତ, ଓ ଖଣିରୁ ସ୍ୱର୍ଣ୍ଣ ରୌପ୍ୟାଦି ଧାତୁ ଓ ହୀରକାଦି ପ୍ରସ୍ତର ଉତ୍ତୋଳନ କରିବା କୃଷିର ଅନ୍ତର୍ଗତ ଅଟେ । ସେହିପରି ଗବାଦି ପଶୁଙ୍କଠାରୁ ଦୁଗ୍ଧାଦି ଦୋହନ କରି ଧନଲାଭ କରିବା— ଗୋରକ୍ଷ୍ୟର ଅନ୍ତର୍ଗତ ବୋଲି ଜାଣିବାକୁ ହେବ । ଏହି ସବୁ କର୍ମ ବୈଶ୍ୟ ଜାତିର ପ୍ରକୃତି ସିଦ୍ଧ ଅଟେ, ଅର୍ଥାତ୍ ତମୋଗୁଣର ଅଳ୍ପତା ଓ ରଜୋଗୁଣର ଆଧିକ୍ୟଯୁକ୍ତ, ଯେ ପ୍ରକୃତ ବୈଶ୍ୟ, ସେମାନଙ୍କର ଆପଣାଛଏଁ ଉପରୋକ୍ତ କର୍ମମାନଙ୍କ ଉଦିତ ହୁଏ ।

ଅତି ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ, ଏହି ତିନି ଜାତିଙ୍କର ସେବା କାର୍ଯ୍ୟରେ ନିଯୁକ୍ତ ହେବାହିଁ ଶୂଦ୍ରର ସ୍ୱାଭାବିକ କର୍ମ ଅଟେ, ଅର୍ଥାତ୍ ରଜୋଗୁଣର ଅଳ୍ପତା ଓ ତମୋଗୁଣର ପ୍ରାଧାନ୍ୟଯୁକ୍ତ ଶୂଦ୍ରଜାତି, ସେବା ଭିନ୍ନ, ଅନ୍ୟ କାର୍ଯ୍ୟ ସହଜରେ କରିବାକୁ ପ୍ରବୃତ୍ତ ହୁଅନ୍ତି ନାହିଁ । ୪୪ ।

## ଶ୍ଳୋକଃ ।

ସ୍ୱେ ସ୍ୱେ କର୍ମଣ୍ୟଭିରତଃ, ସଂସିଦ୍ଧିଂ ଲଭତେ ନରଃ ।
ସ୍ୱକର୍ମନିରତଃ ସିଦ୍ଧିଂ, ଯଥା ବିନ୍ଦତି ତତ୍ ଶୃଣୁ । ୪୫ ।

## ଅନ୍ୱୟଃ ।

ସ୍ୱେ ସ୍ୱେ କର୍ମଣି ଅଭିରତଃ ନରଃ ସଂସିଦ୍ଧିଂ ଲଭତେ, ସ୍ୱକର୍ମନିରତଃ ଯଥା ସିଦ୍ଧିଂ ବିନ୍ଦତି ତତ୍ ଶୃଣୁ । ୪୫ ।

## ଟୀକା ।

ଏବମ୍ଭୂତସ୍ୟାପି ବ୍ରାହ୍ମଣାଦିକର୍ମଣୋଜ୍ଞାନହେତୁତ୍ୱମାହ, ସ୍ୱେ ସ୍ୱେ ଇତି, ସ୍ୱସ୍ୱାଧିକାରବିହିତେ କର୍ମଣ୍ୟଭିରତଃ ପରିନିଷ୍ଠିତୋ ନରଃ ସଂସିଦ୍ଧିଂ ଜ୍ଞାନଯୋଗ୍ୟତାଂ ଲଭତେ । କର୍ମଣା ଜ୍ଞାନପ୍ରାପ୍ତିପ୍ରକାରମାହ । ସ୍ୱକର୍ମେତି ସାର୍ଦ୍ଧେନ । ସ୍ୱକର୍ମପରିନିଷ୍ଠିତୋଯଥା ଯେନ ପ୍ରକାରେଣ ତତ୍ତ୍ୱଜ୍ଞାନଂ ଲଭତେ, ତଂ ପ୍ରକାରଂ ଶୃଣୁ । ୪୫ ।

## ପଦବ୍ୟାଖ୍ୟା ।

ସ୍ୱେ ସ୍ୱେ—ନିଜ ନିଜ, କର୍ମଣି—କର୍ମରେ, ଅଭିରତଃ—ନିଯୁକ୍ତ, ସଂସିଦ୍ଧିଂ—ଆତ୍ମଜ୍ଞାନ ବିଷୟରେ ଯୋଗ୍ୟତାକୁ ଲଭତେ—ପ୍ରାପ୍ତ ହୁଅନ୍ତି, ନରଃ—ମନୁଷ୍ୟ, ସ୍ୱକର୍ମନିରତଃ—ନିଜର ବର୍ଣ୍ଣାଶ୍ରମୋଚିତ କର୍ମରେ ନିଯୁକ୍ତ ବ୍ୟକ୍ତି, ସିଦ୍ଧିଂ—ଯୋଗ୍ୟତାକୁ, ଯଥା—ଯେପରି, ବିନ୍ଦତି—ଲାଭ କରନ୍ତି, ତତ୍ ଶୃଣୁ—ତାହା ଶ୍ରବଣ କର । ୪୫ ।

Digitized by PPRACHIN, SOA

ଅନୁବାଦ ।

ମନୁଷ୍ୟ ନିଜ ନିଜ କର୍ମରେ ରତ ହେଲେ, ସମ୍ପୂର୍ଣ୍ଣ ସିଦ୍ଧିଲାଭ କରନ୍ତି । ସ୍ୱକର୍ମରେ ରତ ହେବା ବ୍ୟକ୍ତି, ଯେପରି ସିଦ୍ଧିଲାଭ କରନ୍ତି, ତାହା ଶ୍ରବଣ କର । ୪୫ ।

ବିଶଦବ୍ୟାଖ୍ୟା ।

ଏହି ଅଧ୍ୟାୟର ୪୨ ଶଠାରୁ ୪୪ଶ ପର୍ଯ୍ୟନ୍ତ ତିନି ଶ୍ଳୋକରେ ବ୍ରାହ୍ମଣାଦି ଚାରି ବର୍ଣ୍ଣର ଯେଉଁ କର୍ମ ଲେଖା ହୋଇଅଛି, ତାହା ସତ୍ତ୍ୱାଦି ଗୁଣର ବିଭାଗ ଅନୁସାରେ ହୁଏ ବୋଲି, ଗୌଣଧର୍ମ ନାମରେ ବିଖ୍ୟାତ । ମାତ୍ର ଭବିଷ୍ୟ ପୁରାଣରେ କର୍ମାଧିକାରୀମାନଙ୍କର ପାଞ୍ଚ ପ୍ରକାର ଧର୍ମ ନିର୍ଦ୍ଦିଷ୍ଟ ହୋଇଅଛି । ଯଥା—

"ଧର୍ମଃ ଶ୍ରେୟଃସମୁଦ୍ଦିଷ୍ଟଂ, ଶ୍ରେୟୋଽଭ୍ୟୁଦୟଲକ୍ଷଣଂ ।
ସ ତୁ ପଞ୍ଚବିଧଃ ପ୍ରୋକ୍ତୋ, ବେଦମୂଳଃ ସନାତନଃ । ୧ ।
ବର୍ଣ୍ଣଧର୍ମଃ ସ୍ମୃତସ୍ତ୍ୱେକ, ଆଶ୍ରମାଣାମତଃ ପରଂ ।
ବର୍ଣ୍ଣାଶ୍ରମସ୍ତୃତୀୟସ୍ତୁ, ଗୌଣୋନୈମିତ୍ତିକସ୍ତଥା । ୨ ।
ବର୍ଣ୍ଣତ୍ୱମେକମାଶ୍ରିତ୍ୟ, ଯୋଧର୍ମଃ ସମ୍ପ୍ରବର୍ତ୍ତତେ ।
ବର୍ଣ୍ଣଧର୍ମଃ ସ ଉକ୍ତସ୍ତୁ, ଯଥୋପନୟନଂ ନୃପ । ୩ ।
ଯସ୍ତ୍ୱାଶ୍ରମଂ ସମାଶ୍ରିତ୍ୟ, ଅଧିକାରଃ ପ୍ରବର୍ତ୍ତତେ ।
ସ ଖଲ୍ୱାଶ୍ରମଧର୍ମଃ ସ୍ୟାଦ୍‌ଭିକ୍ଷାଦଣ୍ଡାଦିକୋଯଥା । ୪ ।
ବର୍ଣ୍ଣତ୍ୱମାଶ୍ରମତ୍ୱଂ ଚ, ଯୋଽଧିକୃତ୍ୟ ପ୍ରବର୍ତ୍ତତେ ।
ସ ବର୍ଣ୍ଣାଶ୍ରମଧର୍ମସ୍ତୁ ମୌଞ୍ଜ୍ୟାଦ୍ୟା ମେଖଳା ଯଥା । ୫ ।
ଯୋଗୁଣେନ ପ୍ରବର୍ତ୍ତେତ, ଗୌଣଧର୍ମଃ ସ ଉଚ୍ୟତେ ।
ଯଥା ମୂର୍ଦ୍ଧାଭିଷିକ୍ତସ୍ୟ, ପ୍ରଜାନାଂ ପରିପାଳନଂ । ୬ ।
ନିମିତ୍ତମେକମାଶ୍ରିତ୍ୟ, ଯୋଧର୍ମଃ ସଂପ୍ରବର୍ତ୍ତତେ ।
ନୈମିତ୍ତିକଃ ସ ବିଜ୍ଞେୟଃ ପ୍ରାୟଶ୍ଚିତ୍ତବିଧିର୍ଯଥା" । ୭ ॥

ଅର୍ଥାତ୍ ଯଦ୍ଦ୍ୱାରେ ଜୀବର ଅଭ୍ୟୁଦୟ ବା ଉନ୍ନତି ହୁଏ, ତାହାକୁ ଶ୍ରେୟଃ ବୋଲି-ଯାଏ । ବେଦାଦି ଶାସ୍ତ୍ରବିହିତ ଧର୍ମ ସବୁ ସେହି ଶ୍ରେୟଃ ସାଧନ ଉଦ୍ଦେଶ୍ୟରେ ନିର୍ଦ୍ଦିଷ୍ଟ ହୋଇ ଅଛି । ସେହି ଧର୍ମ ପାଞ୍ଚ ପ୍ରକାର ଅଟେ ଓ ତାହା ବେଦମୂଳକ ବୋଲି ସନାତନ ଅଟେ । ପାଞ୍ଚ ପ୍ରକାର ଯଥା—୧ ବର୍ଣ୍ଣଧର୍ମ, ୨ ଆଶ୍ରମଧର୍ମ, ୩ ବର୍ଣ୍ଣାଶ୍ରମଧର୍ମ, ୪ ଗୌଣଧର୍ମ, ୫ ନୈ-ମିତ୍ତିକଧର୍ମ ।

ଯେଉଁ ଧର୍ମ କେବଳ ବର୍ଣ୍ଣ (ଜାତି)କୁ ଆଶ୍ରୟ କରି ପ୍ରବର୍ତ୍ତିତ ହୁଏ, ତାହାକୁ ବର୍ଣ୍ଣଧର୍ମ ବୋଲିଯାଏ । ଯେପରି ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ, ଏମାନଙ୍କର ଉପନୟନ ଅବଶ୍ୟ କର୍ତ୍ତବ୍ୟ ; କାହିଁକି ନା ସେମାନେ ଦ୍ୱିଜାତି ।

ବ୍ରହ୍ମଚର୍ଯ୍ୟ, ଗୃହସ୍ଥ ଓ ବାନପ୍ରସ୍ଥ ଏବଂ ଭିକ୍ଷୁ ଏହି ଚାରି ଆଶ୍ରମକୁ ଅବଲମ୍ବନ କରି ଯେଉଁ ଧର୍ମ ପ୍ରବର୍ତ୍ତିତ ଅଛି, ସେମାନଙ୍କୁ ଆଶ୍ରମଧର୍ମ ବୋଲିଯାଏ । ଯେପରି ବ୍ରହ୍ମଚାରୀର ଦଣ୍ଡ

Digitized by PPRACHIN, SOA

ଗ୍ରହଣ, ଗୃହସ୍ଥର 'ଅତିଥି ପୂଜା, ବାନପ୍ରସ୍ଥାଶ୍ରମୀର ଶିଳୋଞ୍ଛବୃତ୍ତି* ଓ ଭିକ୍ଷୁ ଅର୍ଥାତ୍ ସନ୍ନ୍ୟାସିର ଭିକ୍ଷାବୃତ୍ତି । ଯେଉଁ ଧର୍ମ ବର୍ଣ୍ଣ ଓ ଆଶ୍ରମ ଉଭୟଙ୍କୁ ଆଶ୍ରୟ କରି ପ୍ରବର୍ତ୍ତିତ, ତାହା ବର୍ଣ୍ଣାଶ୍ରମ ଧର୍ମ ଅଟେ । ଯେପରି ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନି ଜାତିଙ୍କୁ ଉପନୟନ ପରେ ବ୍ରହ୍ମଚର୍ଯ୍ୟ 'ଆଶ୍ରମ'ରେ ରହିବାପାଇଁ ମେଖଳାବନ୍ଧନ କରିବାକୁ ହୁଏ । ମାତ୍ର ବ୍ରାହ୍ମଣ ଜାତି (ବର୍ଣ୍ଣ)ର ମେଖଳା 'ମୁଞ୍ଜ' ନାମକ ତୃଣଦ୍ୱାରା ପ୍ରସ୍ତୁତ ବୋଲି, ତାକୁ 'ମୌଞ୍ଜୀ' ବୋଲାଯାଏ । କ୍ଷତ୍ରିୟ ଜାତିର ମେଖଳା ମୂର୍ବାନିର୍ମିତ ଓ ବୈଶ୍ୟ ଜାତିର ମେଖଳା ଶଣତନ୍ତୁ ନିର୍ମିତ ଅଟେ । ଏଠାରେ ଆଶ୍ରମଧର୍ମ ଅନୁସାରେ ବ୍ରହ୍ମଚର୍ଯ୍ୟ ଆଶ୍ରମପାଇଁ ମେଖଳା ସମସ୍ତଙ୍କର ଆବଶ୍ୟକ ହେଲେ ସୁଦ୍ଧା, ବର୍ଣ୍ଣଧର୍ମାନୁସାରେ ତାହା ଭିନ୍ନ୨ ପଦାର୍ଥରେ ପ୍ରସ୍ତୁତ ହୁଏ । କେବଳ ସତ୍ତ୍ୱାଦି ଗୁଣତ୍ରୟକୁ ଆଶ୍ରୟ କରି ଯେଉଁ ଧର୍ମ ପ୍ରବର୍ତ୍ତିତ, ତାକୁ ଗୌଣଧର୍ମ ବୋଲାଯାଏ । ଯେପରି କ୍ଷତ୍ରିୟ ଜାତିର ପ୍ରଜାପାଳନ ଧର୍ମ ଅଟେ । ଆଉ ଯେଉଁ ଧର୍ମ ବିଶେଷ୨ ନିମିତ୍ତ ଅବଲମ୍ବନ କରି ପ୍ରବର୍ତ୍ତିତ ହୁଏ, ତାହା ନୈମିତ୍ତିକ ଧର୍ମ । ଯେପରି ଭିନ୍ନ୨ ପାପ ନିବାରଣପାଇଁ ଭିନ୍ନ୨ ପ୍ରାୟଶ୍ଚିତ୍ତର ଓ ପୁତ୍ରାଦି ଜାତ ପରେ ପୁତ୍ରେଷ୍ଟି ପ୍ରଭୃତି ଯଜ୍ଞର ବିଧି ଅଛି, ଇତ୍ୟାଦି ।

ପୁଣି ଭଗବାନ୍ କୃଷ୍ଣ† ଧର୍ମକୁ 'ସାମାନ୍ୟ' ଓ 'ଅସାମାନ୍ୟ' ଏହି ଦୁଇ ଭାଗରେ ବିଭକ୍ତ କରିଅଛନ୍ତି । ତନ୍ମଧ୍ୟରୁ ବର୍ଣ୍ଣଧର୍ମ ଓ ଆଶ୍ରମଧର୍ମ ଏବଂ ବର୍ଣ୍ଣାଶ୍ରମ ଧର୍ମ ଗୁଡ଼ିକ 'ଅସାମାନ୍ୟ' ବା ସୀମାବଦ୍ଧ, ଅର୍ଥାତ୍ ତାହା ଏକ୨ ବର୍ଣ୍ଣ ବା ଆଶ୍ରମର ଅବଲମ୍ବନୀୟ, ମାତ୍ର 'ସାମାନ୍ୟ' ଧର୍ମ ସର୍ବ ବର୍ଣ୍ଣ ଓ ସର୍ବ ଆଶ୍ରମର ଅବଲମ୍ବନୀୟ ଅଟେ । ସେହି ସାମାନ୍ୟ ବା ସାଧାରଣ ଧର୍ମର ଲକ୍ଷଣ ଯଥା,—

"କ୍ଷମା ସତ୍ୟଂ ଦମଃ ଶୌଚଂ, ଦାନମିନ୍ଦ୍ରିୟସଂଯମଃ । ଅହିଂସା ଗୁରୁଶୁଶ୍ରୂଷା, ତୀର୍ଥାନୁସରଣଂ ଦୟା । ଆର୍ଜବଂ ଲୋଭଶୂନ୍ୟତ୍ୱଂ, ଦେବବ୍ରାହ୍ମଣପୂଜନଂ । ଅନଭ୍ୟସୂୟା ଚ ତଥା, ଧର୍ମଃ ସାମାନ୍ୟ ଉଚ୍ୟତେ ।" ଅର୍ଥାତ୍ କ୍ଷମା, ସତ୍ୟ, ବାହ୍ୟେନ୍ଦ୍ରିୟ ସଂଯମ, ଶୌଚ, ଦାନ, ଅନ୍ତରିନ୍ଦ୍ରିୟ ଦମନ, ଅହିଂସା, ଗୁରୁସେବା, ତୀର୍ଥଯାତ୍ରା, ଦୟା, ସରଳତା, ନିର୍ଲୋଭିତା, ଦେବତା ଓ ବ୍ରାହ୍ମଣର ପୂଜା ଓ ଦ୍ୱେଷଶୂନ୍ୟତା, ଏମାନ ସର୍ବ ବର୍ଣ୍ଣର ଓ ସର୍ବ ଆଶ୍ରମର ସାଧାରଣ ଧର୍ମ ଅଟେ । ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏବଂ ଶୂଦ୍ର ସମସ୍ତ ବର୍ଣ୍ଣ ଓ ବ୍ରହ୍ମଚାରୀ, ଗୃହସ୍ଥ, ବାନପ୍ରସ୍ଥ ଏବଂ ସନ୍ନ୍ୟାସ, ଏ ଚାରି ଆଶ୍ରମର ବ୍ୟକ୍ତିମାନେ ଏଥିରେ ସମାନ ଅଧିକାରୀ ଅଟନ୍ତି ।

---

* ମୁଷ୍ଟିପର୍ଯ୍ୟାପ୍ତବାନେକଧାନ୍ୟୋଚ୍ଚୟନଂ ଶିଳଃ, ଏକୈକଧାନ୍ୟାଦିଗ୍ରହଣୋଚ୍ଚୟନମୁଞ୍ଛଃ, 'କୁଲ୍ଲୁକଭଟ୍ଟଃ' ।
ତାହା ଏଠାକୁ ପ୍ରତ୍ୟହ ନ କରି କ୍ଷେତ୍ରସ୍ୱାମୀ କ୍ଷେତ୍ରରୁ ଧାନ୍ୟ ନେବା ଉତ୍ତାରୁ କ୍ଷେତ୍ରରେ ପଡ଼ିଥିବା 'ଶସ୍ୟକାଣ୍ଡ' ଗୋଟାଇ ନେବାଦ୍ୱାରା ଖାଦ୍ୟସଂଗ୍ରହ କରିବାକୁ ଶିଳବୃତ୍ତି ବୋଲାଯାଏ । ଉକ୍ତ ପ୍ରକାର ଶସ୍ୟକ୍ଷେତ୍ରରୁ ଗୋଟି୨ କରି ଧାନ୍ୟାଦି ଗୋଟାଇ ନେବାଦ୍ୱାରା ଖାଦ୍ୟସଂଗ୍ରହକୁ ଉଞ୍ଛବୃତ୍ତି ବୋଲାଯାଏ । ବାନପ୍ରସ୍ଥାଶ୍ରମରେ ଏହି ଉଭୟ ବୃତ୍ତି ପାଳନୀୟ ବୋଲି 'ଶିଳୋଞ୍ଛବୃତ୍ତି' ବାନପ୍ରସ୍ଥାଶ୍ରମିର ଧର୍ମ, ଏହା ଲେଖା ହୋଇଅଛି ।

† ସଂହାରକାର ଋଷିବିଶେଷ ।

ବୃହସ୍ପତି ମଧ୍ୟ, ସାଧାରଣ ଧର୍ମର ଲକ୍ଷଣ ଏହିପରି କରିଅଛନ୍ତି । ଯଥା,—

"ଦୟା କ୍ଷମାନସୂୟା ଚ, ଶୌଚନାୟାସମଙ୍ଗଳଂ ।
ଅକାର୍ପଣ୍ୟମସ୍ପୃହତ୍ୱଂ, ସର୍ବସାଧାରଣାନି ଚ" ।

ଅର୍ଥାତ୍ ଦୟା, କ୍ଷମା, ଦ୍ୱେଷଶୂନ୍ୟତା, ଶୌଚ, ଅନାୟାସ, ଅର୍ଥାତ୍ ବୃଥା ପରିଶ୍ରମ ତ୍ୟାଗ, ବା ଆତ୍ମରକ୍ଷା, ମଙ୍ଗଳ, ଅର୍ଥାତ୍ ଅଶାସ୍ତ୍ରୀୟ କର୍ମତ୍ୟାଗପୂର୍ବକ ଶାସ୍ତ୍ରବିହିତ ବିଧି ପାଳନ, ଅକାର୍ପଣ୍ୟ ଅର୍ଥାତ୍ ଦାନ ଓ ଅସ୍ପୃହତ୍ୱ ବା ଲୋଭଶୂନ୍ୟତା, ଏମାନେ ସମସ୍ତ ବର୍ଣ୍ଣ ଓ ସମସ୍ତ ଆଶ୍ରମର ସାଧାରଣ ଧର୍ମ ଅଟେ ।

ମହାଭାରତରେ, ସାଧାରଣ ଧର୍ମର ବିଷୟ ଏହିପରି ଲେଖାଅଛି । ଯଥା,—

ସତ୍ୟଂ ଦମସ୍ତପଃ ଶୌଚଂ, ସନ୍ତୋଷୋହ୍ରୀଃ କ୍ଷମାର୍ଜ୍ଜବଂ ।
ଜ୍ଞାନଂ ଶମୋଦୟା ଧ୍ୟାନମେଷ ଧର୍ମଃ ସନାତନଃ । ୧ ।

ଅର୍ଥାତ୍ ସତ୍ୟ, ଦମ, ତପଃ, ଶୌଚ, ସନ୍ତୋଷ, ହ୍ରୀ ଅର୍ଥାତ୍ ଲଜ୍ଜା, କ୍ଷମା, ଆର୍ଜ୍ଜବ, ଜ୍ଞାନ, ଶମ, ଦୟା ଓ ଧ୍ୟାନ, ଏମାନେ ସାଧାରଣ ଧର୍ମ ଅଟେ ।

ଏ ଶ୍ଳୋକରେ ମନୁଷ୍ୟ ନିଜ ନିଜ ଧର୍ମ ପାଳନ କଲେ, ସିଦ୍ଧିଲାଭ କରନ୍ତି ବୋଲି ଲେଖାଅଛି, ତାହାର ଅର୍ଥ ଏହି, ଯେ ଆପଣାର ବର୍ଣ୍ଣଧର୍ମ ଓ ଆଶ୍ରମଧର୍ମ ଏବଂ ବର୍ଣ୍ଣାଶ୍ରମଧର୍ମ ଏମାନେ ଶାସ୍ତ୍ରବିହିତ ପ୍ରଣାଳୀରେ ସାଧନ କଲେ, ମାନବ ସିଦ୍ଧିଲାଭ କରନ୍ତି, ଅର୍ଥାତ୍ ସାଧାରଣ ଧର୍ମର ଅଧିକାରୀ ହୁଅନ୍ତି, ତପୃରେ ସାଧାରଣ ଧର୍ମରେ ସିଦ୍ଧିଲାଭ କଲେ, ପ୍ରକୃତ ଜ୍ଞାନ ଲାଭ କରି ମୁକ୍ତି ପ୍ରାପ୍ତ ହୁଅନ୍ତି, ଅତଏବ ନିଜ ନିଜ ବର୍ଣ୍ଣ, ଆଶ୍ରମ ଓ ବର୍ଣ୍ଣାଶ୍ରମାଦି ଧର୍ମ ପାଳନ କରିବା ସମସ୍ତଙ୍କର ଉଚିତ । ୪୫ ।

ଶ୍ଳୋକଃ ।

ଯତଃ ପ୍ରବୃତ୍ତିର୍ଭୂତାନାଂ, ଯେନ ସର୍ବମିଦଂ ତତଂ ।
ସ୍ୱକର୍ମଣା ତମଭ୍ୟର୍ଚ୍ଚ୍ୟ, ସିଦ୍ଧିଂ ବିନ୍ଦତି ମାନବଃ । ୪୬ ।

ଅନ୍ୱୟଃ ।

ଯତଃ ଭୂତାନାଂ ପ୍ରବୃତ୍ତିଃ, ଯେନ ଇଦଂ ସର୍ବଂ ତତଂ, ମାନବଃ ସ୍ୱକର୍ମଣା ତଂ ଅଭ୍ୟର୍ଚ୍ଚ୍ୟ ସିଦ୍ଧିଂ ବିନ୍ଦତି । ୪୬ ।

ଟୀକା ।

ତମେବାହ, ଯତ ଇତି । ଯତୋଽନ୍ତର୍ଯ୍ୟାମିଣଃ ପରମେଶ୍ୱରାଦ୍ଭୂତାନାଂ ପ୍ରାଣିନାଂ ପ୍ରବୃତ୍ତିଶ୍ଚେଷ୍ଟା ଭବତି, ଯେନାତ୍ମନା ସର୍ବମିଦଂ ବିଶ୍ୱଂ ତତଂ ବ୍ୟାପ୍ତଂ ତମୀଶ୍ୱରଂ ସ୍ୱକର୍ମଣାଭ୍ୟର୍ଚ୍ଚ୍ୟ ପୂଜୟିତ୍ୱା ସିଦ୍ଧିଂ ଲଭତେ ମନୁଷ୍ୟଃ । ୪୬ ।

ପଦବ୍ୟାଖ୍ୟା ।

ଯତଃ—ଯାହାଙ୍କଠାରୁ, ପ୍ରବୃତ୍ତିଃ—ଉତ୍ପତ୍ତି ଅଥବା ଚେଷ୍ଟା, ଭୂତାନାଂ—ପ୍ରାଣିମାନଙ୍କର, ଯେନ—ଯେ, ସର୍ବଂ ଇଦଂ—ଏ ସମୁଦାୟ ଜଗତକୁ, ତତଂ—ବ୍ୟାପିଅଛନ୍ତି, ସ୍ୱକର୍ମଣା—ନିଜ କର୍ମଦ୍ୱାରା, ତଂ ଅଭ୍ୟର୍ଚ୍ଚ୍ୟ—ତାହାଙ୍କୁ ଅର୍ଚ୍ଚନା କରି, ସିଦ୍ଧିଂ ବିନ୍ଦତି—ସିଦ୍ଧିଲାଭ କରନ୍ତି, ମାନବଃ—ମନୁଷ୍ୟମାନେ । ୪୬ ।

Digitized by PPRACHIN, SOA

## ଅନୁବାଦ ।

ଯାହାଙ୍କଠାରୁ ଭୂତସମୂହର ଉତ୍ପତ୍ତି, ଓ ଯେ, ସମସ୍ତ ଜଗତକୁ ବ୍ୟାପି ରହିଅଛନ୍ତି, ମନୁଷ୍ୟମାନେ ନିଜ୨ ବର୍ଣ୍ଣାଶ୍ରମାଦି କର୍ମଦ୍ୱାରା ତାହାଙ୍କୁ ଅର୍ଚ୍ଚନା କରି ସିଦ୍ଧିଲାଭ କରନ୍ତି ।୪୬।

## ବିଶଦବ୍ୟାଖ୍ୟା ।

ମାୟୋପାଧିକ ଚୈତନ୍ୟ ସର୍ବଜ୍ଞ, ସର୍ବଶକ୍ତିମାନ୍ ଈଶ୍ୱର; ତାଙ୍କଠାରୁ ଏହି ଆକାଶାଦି ଭୂତସମୂହର ଉତ୍ପତ୍ତି ହୋଇଅଛି । କାହିଁକି ନା ସେ ଈଶ୍ୱର ଏ ଜଗତର ନିମିତ୍ତ ଓ ଉପାଦାନ କାରଣ* ଅଟନ୍ତି । ପୁଣି ଶ୍ରୁତିରେ ମଧ୍ୟ, ପ୍ରମାଣ ଅଛି, ଯେ—

"ଯତୋବା ଇମାନି ଭୂତାନି ଜାୟନ୍ତେ" ଇତ୍ୟାଦି । ଅର୍ଥାତ୍ ଯାହାଙ୍କଠାରୁ ଏହି ଆକାଶାଦି ଭୂତସମୂହ ଜାତ ହୁଅନ୍ତି, ଇତ୍ୟାଦି । ପୁଣି ସେହି ସତ୍ସ୍ୱରୂପ ଏକମାତ୍ର ପରମେଶ୍ୱର ସତ୍ତାରୂପରେ ସର୍ବଦା ଏହି ଜଗତକୁ ବ୍ୟାପି ରହିଅଛନ୍ତି, ଅର୍ଥାତ୍ ଜଗତର ସର୍ବତ୍ର ବିଦ୍ୟମାନ ରହିଅଛନ୍ତି, ବସ୍ତୁତଃ ପରମେଶ୍ୱର ଏକମାତ୍ର ସତ୍ସ୍ୱରୂପ, ମାୟାଦ୍ୱାରା ତାଙ୍କଠାରେ ଏ ଜଗତ୍ କଳ୍ପିତ ହୋଇଅଛି, ଯେପରି ପ୍ରକୃତ ରଜ୍ଜୁରେ, ଭ୍ରମବଶତଃ ସର୍ପଜ୍ଞାନ ହେଲେ ସୁଦ୍ଧା, ସେହି କଳ୍ପିତ ସର୍ପଟି ପ୍ରକୃତରେ ରଜ୍ଜୁ ଅଟେ, ସେହିପରି ଈଶ୍ୱରଙ୍କଠାରେ ମାୟାଦ୍ୱାରା ଜଗତ୍ କଳ୍ପିତ ହୋଇଥିଲେ ସୁଦ୍ଧା, ତାହା ପ୍ରକୃତରେ ଈଶ୍ୱରସତ୍ତା ଅଟେ, ଅର୍ଥାତ୍ ମାୟାଦ୍ୱାରା ଆମ୍ଭେମାନେ ଈଶ୍ୱରସତ୍ତାକୁ 'ଜଗତ୍' ବୋଲି ମନେ କରୁଅଛୁଁ । ଆଉ ଶ୍ରୁତିରେ ମଧ୍ୟ, ପ୍ରମାଣ ଅଛି, ଯେ "ମାୟାନ୍ତୁ ପ୍ରକୃତିଂ ବିଦ୍ୟାନ୍ମାୟିନନ୍ତୁ ମହେଶ୍ୱରଂ" । ଅର୍ଥାତ୍ ମାୟାକୁ ପ୍ରକୃତି ଓ ମାୟାବନ୍ତ ପୁରୁଷଙ୍କୁ (ମାୟୋପହିତ ଚୈତନ୍ୟଙ୍କୁ) ମହେଶ୍ୱର ବୋଲି ଜାଣିବ, ଇତ୍ୟାଦି ।

ସେହି ପରମେଶ୍ୱରଙ୍କୁ, ଅର୍ଥାତ୍ ଯାହାଙ୍କଠାରୁ ଭୂତବର୍ଗର ଉତ୍ପତ୍ତି, ଓ ଯେ, ସମସ୍ତ ଜଗତକୁ ବ୍ୟାପି ରହିଅଛନ୍ତି, ତାଙ୍କୁ ମାନବ ଯଦି ନିଜ କର୍ମଦ୍ୱାରା ଅର୍ଚ୍ଚନା କରନ୍ତି, ଅର୍ଥାତ୍ ନିଜର ଆଶ୍ରମ, ବର୍ଣ୍ଣ ଓ ବର୍ଣ୍ଣାଶ୍ରମାଦି ବିହିତ କର୍ମଦ୍ୱାରା ପୂଜା କରନ୍ତି, ତେବେ ତାଙ୍କର ଅନୁଗ୍ରହରେ ସେ, ସର୍ବାତ୍ମଦୃଷ୍ଟି ଲାଭ ବିଷୟରେ ଅର୍ଥାତ୍ ଆତ୍ମଜ୍ଞାନ ପ୍ରାପ୍ତି ବିଷୟରେ ସିଦ୍ଧିଲାଭ କରନ୍ତି ।

ଫଳକଥା ଏହି କି ଆତ୍ମଜ୍ଞାନ ଲାଭପାଇଁ ପରମେଶ୍ୱରଙ୍କ ସନ୍ତୋଷ ଓ ଅନୁଗ୍ରହ ଲାଭ ଆବଶ୍ୟକ, ଏବଂ ନିଜ୨ ବର୍ଣ୍ଣାଶ୍ରମାଦି ଧର୍ମ ପାଳନ କରିବା ଈଶ୍ୱରାନୁଗ୍ରହଲାଭର ସରଳ ଉପାୟ ଅଟେ । ୪୬ ।

## ଶ୍ଳୋକଃ ।

* ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ, ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।
ସ୍ୱଭାବନିୟତଂ କର୍ମ, କୁର୍ବନ୍ନାପ୍ନୋତି କିଲ୍ବିଷଂ । ୪୭ ।

---

* ମାକଡ଼ସା ସୂତା ପକ୍ଷରେ ମାକଡ଼ସା ନିଜେ ଚୈତନ୍ୟ ଅଂଶରେ ନିମିତ୍ତ କାରଣ ଓ ତାହାର ଶରୀର ଉପାଦାନ କାରଣ ଅଟେ । ସେହିପରି ଜଗତ୍ ପକ୍ଷରେ ଈଶ୍ୱର ଚୈତନ୍ୟାଂଶରେ ନିମିତ୍ତ ଓ ମାୟା ଅଂଶରେ ଉପାଦାନ କାରଣ ଅଟନ୍ତି ।

Digitized by PPRACHIN, SOA

ଅନ୍ୱୟଃ ।

ସ୍ୱନୁଷ୍ଠିତାତ୍ ପରଧର୍ମାତ୍ ବିଗୁଣଃ ସ୍ୱଧର୍ମଃ ଶ୍ରେୟାନ୍, ସ୍ୱଭାବନିୟତଂ କର୍ମ କୁର୍ବନ୍ କିଲ୍ବିଷଂ ନ ଆପ୍ନୋତି । ୪୭ ।

ଟୀକା ।

ସ୍ୱକର୍ମଣେତ ବିଶେଷଣସ୍ୟ ଫଳମାହ, ଶ୍ରେୟାନିତି । ବିଗୁଣୋଽପି ସ୍ୱଧର୍ମଃ ସମ୍ୟଗନୁଷ୍ଠିତାଦପି ପରଧର୍ମାତ୍ ଶ୍ରେୟାନ୍ । ନ ଚ ବନ୍ଧୁବଧାଦ୍ୟୁକ୍ତାଦ୍ଯୁଦ୍ଧାଦେଃ ସ୍ୱଧର୍ମାଦ୍ଭିକ୍ଷାଟନାଦିଃ ପରଧର୍ମଃ ଶ୍ରେଷ୍ଠ ଇତି ମନ୍ତବ୍ୟଂ, ଯତଃ ସ୍ୱଭାବେନ ପୂର୍ବୋକ୍ତେନ ନିୟତଂ ନିୟମେନୋକ୍ତଂ କର୍ମ କୁର୍ବନ୍ କିଲ୍ବିଷଂ ନାପ୍ନୋତି । ୪୭ ।

ପଦବ୍ୟାଖ୍ୟା ।

ଶ୍ରେୟାନ୍—ଶ୍ରେଷ୍ଠ, ସ୍ୱଧର୍ମଃ—ନିଜର ଧର୍ମ, ବିଗୁଣଃ—ଅଙ୍ଗହୀନ ହେଲେ ସୁଦ୍ଧା, ପରଧର୍ମାତ୍—ପରର ଧର୍ମଠାରୁ, ସ୍ୱନୁଷ୍ଠିତାତ୍—ଉତ୍ତମରୂପେ ଅନୁଷ୍ଠିତ; ସ୍ୱଭାବନିୟତଂ କର୍ମ—ପ୍ରକୃତିଦ୍ୱାରା ନିୟମିତ କର୍ମ, ଅର୍ଥାତ୍ ସତ୍ତ୍ୱାଦି ଗୁଣଭେଦରୁ ଯାହାପ୍ରତି ଯେଉଁ ଧର୍ମ ଉକ୍ତ ହୋଇଅଛି, କୁର୍ବନ୍—ଆଚରଣ କଲେ, ନ ଆପ୍ନୋତି—ପ୍ରାପ୍ତ ହୁଅନ୍ତି ନାହିଁ, କିଲ୍ବିଷଂ—ପାପରୁ । ୪୭ ।

ଅନୁବାଦ ।

ଉତ୍ତମରୂପେ ଅନୁଷ୍ଠିତ ପରଧର୍ମ ଅପେକ୍ଷା ଅଙ୍ଗହୀନ ନିଜଧର୍ମ ଶ୍ରେଷ୍ଠ ଅଟେ । ଯେହେତୁ ସ୍ୱଭାବବିହିତ କର୍ମର ଅନୁଷ୍ଠାନ କଲେ, ପାପ ସ୍ପର୍ଶେ ନାହିଁ । ୪୭ ।

ବିଶଦବ୍ୟାଖ୍ୟା ।

ଯେଉଁ ବ୍ୟକ୍ତି ନିଜ ବର୍ଣ୍ଣର ଓ ନିଜ ଆଶ୍ରମର ଯାହା ଧର୍ମ, ତାହା ନ କରି ଅନ୍ୟ ବର୍ଣ୍ଣର ବା ଅନ୍ୟ ଆଶ୍ରମର ଧର୍ମ ଆଚରଣ କରେ, ସେହି ଧର୍ମ ତାହାର 'ପରଧର୍ମ' ଅଟେ । ସେହି ବ୍ୟକ୍ତି ପରଧର୍ମ ଉତ୍ତମରୂପେ ଅନୁଷ୍ଠାନ କଲେ, ତହିଁରେ ତାହାର ଯେତେ ମଙ୍ଗଳ ହେବ, ତାହା ଅପେକ୍ଷା ନିଜର ଧର୍ମ ଅଙ୍ଗହୀନ ଭାବରେ କଲେ ସୁଦ୍ଧା, ଅଧିକ ଫଳ ପ୍ରାପ୍ତ ହେବ । ଶ୍ରୀଭଗବାନ୍ କହୁଅଛନ୍ତି, ହେ ଅର୍ଜୁନ ! ତୁମ୍ଭେ ଜଣେ ଗୃହସ୍ଥ କ୍ଷତ୍ରିୟ, ତୁମ୍ଭେ ଯଦି ଯୁଦ୍ଧାଦି ନିଜଧର୍ମ ତ୍ୟାଗ କରି, ବ୍ରାହ୍ମଣଜାତୀୟ ସନ୍ନ୍ୟାସଧର୍ମ ଗ୍ରହଣପୂର୍ବକ ବୈରାଗ୍ୟ ଓ ଭିକ୍ଷାଟନାଦି ସମସ୍ତ କର୍ମ ଉତ୍ତମରୂପେ ଅନୁଷ୍ଠାନ କର, ସେଥିରେ ତୁମ୍ଭର ଯେତେ ପୁଣ୍ୟ ବା ଫଳ, ତାହା ଅପେକ୍ଷା ତୁମ୍ଭେ ଆପଣାର ଧର୍ମ ଯୁଦ୍ଧାଦି କାର୍ଯ୍ୟ, ଅଙ୍ଗହୀନ ଭାବରେ କଲେ ସୁଦ୍ଧା, ଅଧିକ ଫଳ ହେବ । କାହିଁକି ନା ଯେଉଁ ଜାତିର ଯାହା ସ୍ୱଭାବ ଅଟେ, ସେହି ଅନୁସାରେ ତାଙ୍କର କର୍ମ ନିରୂପିତ ହୋଇଅଛି । ତହିଁରେ ତାଙ୍କର କୌଣସି ପ୍ରକାର ପାପ ହେବ ନାହିଁ । ତୁମ୍ଭେ କ୍ଷତ୍ରିୟ, ଯୁଦ୍ଧାଦି ତୁମ୍ଭର ସ୍ୱଭାବୋଚିତ ଧର୍ମ, ତାହା ପାଳନ କଲେ, ବନ୍ଧୁବଧାଦିଜନିତ ପାପ ତୁମ୍ଭର ହେବ ନାହିଁ ।

ଏ କଥା ଭଗବାନ୍ ୩ୟ ଅଃ ୩୫ଶ୍ଳୋକରେ କହିଥିଲେ, ପୁନର୍ବାର ଏ ଶ୍ଳୋକରେ କହିବାଦ୍ୱାରା ଉପକ୍ରମ ଓ ଉପସଂହାରର ଏକତା ଦେଖା ହେଲା । ୪୭ ।

ଶ୍ଳୋକଃ ।

ସହଜଂ କର୍ମ କୌନ୍ତେୟ, ସଦୋଷମପି ନ ତ୍ୟଜେତ୍ ।
ସର୍ବାରମ୍ଭା ହି ଦୋଷେଣ, ଧୂମେନାଗ୍ନିରିବାବୃତାଃ । ୪୮ ।

Digitized by PPRACHIN, SOA

### ଅନ୍ୱୟଃ ।

ହେ କୌନ୍ତେୟ ! ସଦୋଷଂ ଅପି ସହଜଂ କର୍ମ ନ ତ୍ୟଜେତ୍ । ହି ସର୍ବାରମ୍ଭାଃ ଧୂମେନ ଅଗ୍ନିଃ ଇବ ଦୋଷେଣ ଆବୃତାଃ । ୪୮ ।

### ଟୀକା ।

ଯଦ୍ ପୁନଃ ସାଂଖ୍ୟଦୃଷ୍ଟ୍ୟା ସ୍ୱଧର୍ମେ ହିଂସାଲକ୍ଷଣଂ ଦୋଷଂ ମତ୍ୱା ପରଧର୍ମଂ ଶ୍ରେୟଃ ମନ୍ୟସେ, ତର୍ହି ସଦୋଷତ୍ୱଂ ପରଧର୍ମେଽପି ତୁଲ୍ୟମିତ୍ୟାଶୟେନାହ । ସହଜମିତି । ସହଜଂ ସ୍ୱଭାବବିହିତଂ କର୍ମ ସଦୋଷମପି ନ ତ୍ୟଜେତ୍ ହି ଯସ୍ମାତ୍ ସର୍ବେଽପ୍ୟାରମ୍ଭା ଦୃଷ୍ଟାଦୃଷ୍ଟାର୍ଥ ସର୍ବାଣ୍ୟପି କର୍ମାଣି ଦୋଷେଣ କେନଚିଦାବୃତା ବ୍ୟାପ୍ତା ଏବ, ଯଥା ସହଜେନ ଧୂମେନାଗ୍ନି-ରାବୃତସ୍ତଦ୍ୱତ୍ । ଅତୋ ଯଥାଗ୍ନେର୍ଧୂମରୂପଂ ଦୋଷମପାକୃତ୍ୟ ପ୍ରତାପ ଏବ ତମଃଶୀତାଦିନିବୃତ୍ତୟେ ସେବ୍ୟତେ ତଥା କର୍ମଣୋଽପି ଦୋଷାଂଶଂ ବିହାୟ ଗୁଣାଂଶ ଏବ ଶୁଦ୍ଧୟେ ସେବ୍ୟତ ଇତ୍ୟର୍ଥଃ । ୪୮ ।

### ପଦବ୍ୟାଖ୍ୟା ।

ସହଜଂ କର୍ମ—ସ୍ୱାଭାବିକ କର୍ମ, କୌନ୍ତେୟ—ହେ କୁନ୍ତୀପୁତ୍ର ଅର୍ଜୁନ !, ସଦୋଷଂ ଅପି—ଦୋଷଯୁକ୍ତ ହେଲେ ସୁଦ୍ଧା, ନ ତ୍ୟଜେତ୍—ତ୍ୟାଗ କରିବ ନାହିଁ, ସର୍ବାରମ୍ଭାଃ—ସମସ୍ତ କର୍ମ, ହି—ଯେହେତୁ, ଦୋଷେଣ—କୌଣସି ନା କୌଣସି ଦୋଷରେ, ଧୂମେନ ଅଗ୍ନିଃ ଇବ—ଧୂମଦ୍ୱାରା ଅଗ୍ନି ପରି, ଆବୃତାଃ—ଆଚ୍ଛାଦିତ । ୪୮ ।

### ଅନୁବାଦ ।

ହେ କୌନ୍ତେୟ ! ସ୍ୱଭାବବିହିତ କର୍ମ ଦୋଷଯୁକ୍ତ ହେଲେ ସୁଦ୍ଧା, ତ୍ୟାଗ କରିବ ନାହିଁ, କାହିଁକି ନା ଧୂମଦ୍ୱାରା ଅଗ୍ନି ଆବୃତ ହେଲାପରି ସମସ୍ତ-କର୍ମ କୌଣସି ନା କୌଣସି ଦୋଷଯୁକ୍ତ ଅଟେ । ୪୮ ।

### ବିଶଦବ୍ୟାଖ୍ୟା ।

ହେ କୌନ୍ତେୟ ! ଆତ୍ମଜ୍ଞାନ ବର୍ଜିତ କୌଣସି ବ୍ୟକ୍ତି, କର୍ମ ପରିତ୍ୟାଗ କରି ପାରିବ ନାହିଁ । ତାହାକୁ କୌଣସି ନା କୌଣସି କର୍ମ କରିବାକୁ ହେବ । ଏପରି ସ୍ଥଳେ, ତାହାର ସ୍ୱଭାବବିହିତ, ଯେ କର୍ମ, ଅର୍ଥାତ୍ ତାହାର ବର୍ଣ୍ଣ ଓ ଆଶ୍ରମର ଉପଯୋଗୀ, ଯେ ଶାସ୍ତ୍ର-ବିହିତ କର୍ମ, ତାହା ଦୋଷଯୁକ୍ତ ହେଲେ ସୁଦ୍ଧା, ପରିତ୍ୟାଗ କରିବା ଉଚିତ ନୁହେ । କାହିଁକି ନା ଏ ଜଗତରେ ଯେତେ ପ୍ରକାର କର୍ମ ଅଛି, ତାହା ତ୍ରିଗୁଣାତ୍ମକ ବୋଲି କୌଣସି ନା କୌଣସି ପ୍ରକାର ଦୋଷଯୁକ୍ତ ଅଟେ । ସୁତରାଂ କର୍ମାଧିକାରୀ ପୁରୁଷ ସ୍ୱଧର୍ମକୁ ଦୋଷଯୁକ୍ତ ମନେ କରି ଯେଉଁ ପରଧର୍ମର ଅନୁଷ୍ଠାନ କରିବେ, ତାହା ମଧ୍ୟ, କୌଣସି ନା କୌଣସି ଦୋଷଯୁକ୍ତ ହୋଇଥିବ । ଯଦି ସବୁ କର୍ମହିଁ ଦୋଷଯୁକ୍ତ ଅଟେ, ତେବେ ନିଜର ବର୍ଣ୍ଣାଶ୍ରମ ଧର୍ମକୁ ତ୍ୟାଗ କରି ଅନ୍ୟ ଧର୍ମକୁ ଯିବାର ଆବଶ୍ୟକ କଣ ? ଅଗ୍ନି ପ୍ରଜ୍ୱଳିତ କଲେ, ସେଥିରେ ଅବଶ୍ୟ ଧୂମ ଥାଏ । ତଥାପି ଲୋକେ ଯେପରି ତାହାର ଧୂମ ପରିତ୍ୟାଗ କରି, ଶୀତ ଓ ଅନ୍ଧକାର ନିବାରଣ ପାଇଁ ତାପ ଓ ଆଲୋକ ଗ୍ରହଣ କରନ୍ତି, ସେହିପରି କର୍ମାଧିକାରୀ ପୁରୁଷର ଉଚିତ, ଯେ ସେ, ସ୍ୱଧର୍ମର ଦୋଷାଂଶ ପରିତ୍ୟାଗ କରି ଗୁଣଭାଗ ଗ୍ରହଣ କରିବେ । ପୁଣି ପୂର୍ବଶ୍ଳୋକରେ ବୁଝାଇ ଦିଆଯାଇଅଛି, ଯେ ସ୍ୱଧର୍ମ ଅନୁଷ୍ଠାନ କରିବା ବ୍ୟକ୍ତି ସ୍ୱଧର୍ମର ଅଙ୍ଗୀଭୂତ କୌଣସି ଦୋଷଯୁକ୍ତ କର୍ମ (ଯେପରି କ୍ଷତ୍ରିୟଧର୍ମରେ ନରପ୍ରାଣିହତ୍ୟା ଇତ୍ୟାଦି) ଅନୁଷ୍ଠାନ କଲେ ସୁଦ୍ଧା, ତହିଁରେ ତାହାର ପାପ ହୁଏ ନାହିଁ । ଏଥିରୁ ଉପଲବ୍ଧ ହେଉଛି, [illegible]

Digitized by PPRACHIN, SOA

ଲାଭ କରେ, ଅନ୍ୟ ସ୍ଥାନରେ ସେପରି ପାରେ ନାହିଁ, ବରଂ ବସ୍ତ୍ର ତ୍ୟାଗ କଲେ, ତାହାର ମୃତ୍ୟୁ ପର୍ଯ୍ୟନ୍ତ ହୋଇପାରେ । ସେହିପରି ଯାହାର ଯାହା ସ୍ୱାଭାବିକ ଧର୍ମ ବୋଲି ଶାସ୍ତ୍ରରେ ବିଧି ଅଛି, ସେ, ତାହା ତ୍ୟାଗ କଲେ, ତାହାର ଉନ୍ନତି ହେବ ନାହିଁ, ବରଂ ସ୍ୱଧର୍ମତ୍ୟାଗଜନିତ ପାପରେ ଭାଗୀ ହେବ । ଅତଏବ ନିଜର ବର୍ଣ୍ଣାଶ୍ରମ ଧର୍ମ ଯେତେ ନିକୃଷ୍ଟ ହେଉ ପଛକେ, ତାହା ପରିତ୍ୟାଗ କରିବା ଉଚିତ ନୁହେ । ୪୮ ।

ଶ୍ଳୋକଃ ।

ଅସକ୍ତବୁଦ୍ଧିଃ ସର୍ବତ୍ର, ଜିତାତ୍ମା ବିଗତସ୍ପୃହଃ ।
ନୈଷ୍କର୍ମ୍ମ୍ୟସିଦ୍ଧିଂ ପରମାଂ, ସନ୍ନ୍ୟାସେନାଧିଗଚ୍ଛତି । ୪୯ ।

ଅନ୍ୱୟଃ ।

ସର୍ବତ୍ର ଅସକ୍ତବୁଦ୍ଧିଃ ବିଗତସ୍ପୃହଃ ଜିତାତ୍ମା ସନ୍ନ୍ୟାସେନ ପରମାଂ ନୈଷ୍କର୍ମ୍ମ୍ୟସିଦ୍ଧିଂ ଅଧିଗଚ୍ଛତି । ୪୯ ।

ଟୀକା ।

ନନୁ କର୍ମଣି କ୍ରିୟମାଣେ ତର୍ହି କଥଂ ଦୋଷାଂଶପ୍ରହାଣେନ ଗୁଣାଂଶ ଏବ ସମ୍ପଦ୍ୟତ ଇତ୍ୟପେକ୍ଷାୟାମାହ । ଅସକ୍ତବୁଦ୍ଧିରିତି । ଅସକ୍ତା ସଙ୍ଗଶୂନ୍ୟା ବୁଦ୍ଧିର୍ୟସ୍ୟ, ଜିତାତ୍ମା ନିରହଙ୍କାରଃ ବିଗତା ସ୍ପୃହା ଫଳବିଷୟା ଯସ୍ମାତ୍ ସ ଏବମ୍ଭୂତଃ ସଙ୍ଗଂ ତ୍ୟକ୍ତ୍ୱା ଫଳଂ ଚୈବ ସ ତ୍ୟାଗଃ ସାତ୍ତ୍ୱିକୋ ମତଃ ଇତ୍ୟେବ ପୂର୍ବୋକ୍ତେନ କର୍ମାସକ୍ତିଫଳୟୋସ୍ତ୍ୟାଗଲକ୍ଷଣେନ ସନ୍ନ୍ୟାସେନ ନୈଷ୍କର୍ମ୍ମ୍ୟସିଦ୍ଧିଂ ସର୍ବକର୍ମନିବୃତ୍ତିଲକ୍ଷଣାଂ ସତ୍ତ୍ୱଶୁଦ୍ଧିମଧିଗଚ୍ଛତି, ଯଦ୍ୟପି ସଙ୍ଗଫଳୟୋସ୍ତ୍ୟାଗେନ କର୍ମାନୁଷ୍ଠାନମପି ନୈଷ୍କର୍ମ୍ମ୍ୟମେବ କର୍ତ୍ତୃତ୍ୱାଭିନିବେଶାଭାବାତ୍ ତଦୁକ୍ତଂ ନୈବ କିଞ୍ଚିତ୍ କରୋମୀତି ଯୁକ୍ତୋ ମନ୍ୟେତ ତତ୍ତ୍ୱବିଦିତ୍ୟାଦି ଶ୍ଳୋକଚତୁଷ୍ଟୟେନ ତଥାପ୍ୟନେନୋକ୍ତଲକ୍ଷଣେନ ସନ୍ନ୍ୟାସେନ ପରମାଂ ନୈଷ୍କର୍ମ୍ମ୍ୟସିଦ୍ଧିଂ ସର୍ବକର୍ମାଣି ମନସା ସନ୍ନ୍ୟସ୍ୟାସ୍ତେ ସୁଖଂ ବଶୀତ୍ୟେବଂଲକ୍ଷଣାଂ ପାରମହଂସ୍ୟଚର୍ଯ୍ୟାମାପ୍ନୋତି । ୪୯ ।

ପଦବ୍ୟାଖ୍ୟା ।

ଅସକ୍ତବୁଦ୍ଧିଃ—ଆସକ୍ତିହୀନ, ସର୍ବତ୍ର—ସବୁସ୍ଥାନରେ, ଜିତାତ୍ମା—ଅହଂକାରଶୂନ୍ୟ, ବିଗତସ୍ପୃହଃ—ଫଳକାମନାରହିତ, ନୈଷ୍କର୍ମ୍ମ୍ୟସିଦ୍ଧିଂ—ସର୍ବକର୍ମରୁ ନିବୃତ୍ତିରୂପ ସତ୍ତ୍ୱଶୁଦ୍ଧି, ପରମାଂ—ଉତ୍କୃଷ୍ଟ, ସନ୍ନ୍ୟାସେନ—ସନ୍ନ୍ୟାସଦ୍ୱାରା, ଅଧିଗଚ୍ଛତି—ପ୍ରାପ୍ତ ହୁଅନ୍ତି । ୪୯ ।

ଅନୁବାଦ ।

ସର୍ବତ୍ର ଆସକ୍ତିରହିତ, ଅହଙ୍କାରବର୍ଜ୍ଜିତ ଓ ଫଳକାମନାଶୂନ୍ୟ ବ୍ୟକ୍ତି, ସନ୍ନ୍ୟାସଦ୍ୱାରା ସର୍ବକର୍ମରୁ ନିବୃତ୍ତିରୂପ ଉତ୍କୃଷ୍ଟ ସତ୍ତ୍ୱଶୁଦ୍ଧି ଲାଭ କରନ୍ତି । ୪୯ ।

ବିଶଦବ୍ୟାଖ୍ୟା ।

ଯେଉଁ ବ୍ୟକ୍ତିଙ୍କର ସ୍ତ୍ରୀ, ପୁତ୍ର, ଧନ ଓ ପଶୁ ପ୍ରଭୃତି କୌଣସି ଦ୍ରବ୍ୟରେ ଅଥବା ସ୍ୱର୍ଗାଦି କୌଣସି ସ୍ଥାନରେ ଆସକ୍ତି ନାହିଁ, ଓ ଯେ, ପୂର୍ବରୁ ଜନ୍ମାନ୍ତରରେ କର୍ମମାନ କରିଥିବାରୁ 'ମୁଁ କରୁଅଛି' ଏପରି ଅହଙ୍କାର ବର୍ଜ୍ଜିତ ଅଟନ୍ତି, ପୁଣି ଯାହାଙ୍କର କର୍ମରେ ବା କର୍ମଫଳରେ ଆଉ ସ୍ପୃହା ନାହିଁ, ଅର୍ଥାତ୍ ଯାହାଙ୍କର ଚିତ୍ତ ବିଷୟରୁ ନିବୃତ୍ତ ହୋଇ ସର୍ବଦା ପରମାତ୍ମଚିନ୍ତାରେ ନିବିଷ୍ଟ ହୋଇ ଅଛି, ଏମନ୍ତ କି ଶରୀରଯାତ୍ରା ନିର୍ବାହ ପାଇଁ ଆବଶ୍ୟକ, ଯେ ଅନ୍ନ ପାନାଦି, ତହିଁରେ ଦୋଷ ଦର୍ଶନ କରି ତାହା ସଂଗ୍ରହ କରିବା ପାଇଁ ସ୍ପୃହା, ଯେ ବିମୁଖ, କେବଳ ସେହି ମହାତ୍ମା

Digitized by PPRACHIN, SOA

ଶିକ୍ଷା ଓ ପୂଜାଦି ତ୍ୟାଗରୂପ ସନ୍ନ୍ୟାସଦ୍ୱାରା ଉତ୍କୃଷ୍ଟ 'ନୈଷ୍କର୍ମ୍ୟସିଦ୍ଧି' ପାରମହଂସଚର୍ଯ୍ୟାରୂପ ସତ୍ତ୍ୱଶୁଦ୍ଧି ଲାଭକରନ୍ତି, ଅର୍ଥାତ୍ ସେମାନଙ୍କର ଅନ୍ତଃକରଣ ଏପରି ଶୁଦ୍ଧ ହୁଏ, ଯେ ସେମାନେ ବ୍ରହ୍ମ ସାକ୍ଷାତ୍କାରବଶବର୍ତ୍ତିଣୀ ଯୋଗ୍ୟତା ଲାଭ କରିବାର ଉପଯୁକ୍ତ ଅଧିକାରୀ ହୁଅନ୍ତି । ଫଳକଥା ଏହି ଯେ ନିଷ୍କାମଭାବରେ କର୍ମ କରି ଚିତ୍ତଶୁଦ୍ଧି ଲାଭ କରିବା ବ୍ୟକ୍ତି, ଯଦି ସବୁଠାରୁ ଆସକ୍ତି ଶୂନ୍ୟ ହୋଇ 'ମୁଁ କର୍ତ୍ତା' ଏପରି ଅହଂକାର ତ୍ୟାଗ ଓ କର୍ମରୁ ଏବଂ କର୍ମଫଳରୁ ସ୍ପୃହା ପରିତ୍ୟାଗ କରି ପାରନ୍ତି, ତେବେ ସେହି ବ୍ୟକ୍ତି ସର୍ବକର୍ମ ପରିତ୍ୟାଗରୂପ ସନ୍ନ୍ୟାସ ଗ୍ରହଣ କରି ନୈଷ୍କର୍ମ୍ୟ ସିଦ୍ଧି ଲାଭ କରନ୍ତି, କିନ୍ତୁ ବିଷୟାସକ୍ତିଯୁକ୍ତ କୌଣସି ବ୍ୟକ୍ତି ସନ୍ନ୍ୟାସର ଅଧିକାରୀ ହୋଇ ପାରନ୍ତି ନାହିଁ । ୪୯ ।

## ଶ୍ଳୋକଃ ।

ସିଦ୍ଧିଂ ପ୍ରାପ୍ତୋ ଯଥା ବ୍ରହ୍ମ, ତଥାପ୍ନୋତି ନିବୋଧ ମେ ।
ସମାସେନୈବ କୌନ୍ତେୟ, ନିଷ୍ଠା ଜ୍ଞାନସ୍ୟ ଯା ପରା । ୫୦ ।

## ଅନ୍ୱୟଃ ।

ହେ କୌନ୍ତେୟ ! ସିଦ୍ଧିଂ ପ୍ରାପ୍ତଃ ଯଥା ବ୍ରହ୍ମ ଆପ୍ନୋତି, ତଥା ମେ ସମାସେନ ଏବ ନିବୋଧ । ଯା, ଜ୍ଞାନସ୍ୟ ପରା ନିଷ୍ଠା । ୫୦ ।

## ଟୀକା ।

ଏବମ୍ଭୂତସ୍ୟ ପାରମହଂସ୍ୟଜ୍ଞାନନିଷ୍ଠସ୍ୟ ବ୍ରହ୍ମଭାବପ୍ରକାରମାହ । ସିଦ୍ଧିଂ ପ୍ରାପ୍ତ ଇତି ଷଡ୍ଭିଃ । ନୈଷ୍କର୍ମ୍ୟସିଦ୍ଧିଂ ପ୍ରାପ୍ତଃସନ୍ ଯଥା ଯେନ ପ୍ରକାରେଣ ବ୍ରହ୍ମ ପ୍ରାପ୍ନୋତି ତଥା ତଂ ପ୍ରକାରଂ ସଂକ୍ଷେପେଣୈବ ମେ ବଚନାନ୍ନିବୋଧ । ପ୍ରକର୍ଷିତା ଯା ବ୍ରହ୍ମପ୍ରାପ୍ତିସ୍ତାମିମାଂ ତଥା ଦର୍ଶୟିତୁମାହ । ନିଷ୍ଠା ଜ୍ଞାନସ୍ୟ ଯା ପରେତି । ନିଷ୍ଠା ପର୍ଯ୍ୟବସାନଂ ପରିସମାପ୍ତିରିତ୍ୟର୍ଥଃ । ୫୦ ।

## ପଦାନ୍ୱୟାଖ୍ୟା ।

ସିଦ୍ଧିଂ ପ୍ରାପ୍ତଃ—ସିଦ୍ଧି ପ୍ରାପ୍ତ ହୋଇଥିବା ବ୍ୟକ୍ତି, ଯଥା—ଯେପରି; ବ୍ରହ୍ମ—ବ୍ରହ୍ମକୁ, ତଥା—ସେହିପରି, ଆପ୍ନୋତି—ପ୍ରାପ୍ତ ହୁଅନ୍ତି, ନିବୋଧ ମେ—ଆମ୍ଭଠାରୁ ବୁଝ, ସମାସେନ ଏବ—କେବଳ ସଂକ୍ଷେପରେ, କୌନ୍ତେୟ—ହେ କୁନ୍ତୀପୁତ୍ର ଅର୍ଜୁନ ! , ନିଷ୍ଠା—ଅବସାନ—ଶେଷ, ଜ୍ଞାନସ୍ୟ—ଜ୍ଞାନର, ଯା—ଯାହା, ପରା—ଉତ୍କୃଷ୍ଟ । ୫୦ ।

## ଅନୁବାଦ ।

ହେ କୌନ୍ତେୟ ! (ଏପ୍ରକାର) ସିଦ୍ଧି ପ୍ରାପ୍ତ ବ୍ୟକ୍ତି, ଯେପରି ବ୍ରହ୍ମ ପ୍ରାପ୍ତ ହୁଅନ୍ତି ଓ ଯାହା ଜ୍ଞାନର ଶେଷ ସୀମା ଅଟେ, ତାହା ସଂକ୍ଷେପରେ ଆମ୍ଭଠାରୁ ଶ୍ରବଣ କର । ୫୦ ।

## ତାତ୍ପର୍ଯ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଅଛନ୍ତି, ହେ କୁନ୍ତୀପୁତ୍ର ଅର୍ଜୁନ ! ବର୍ଣ୍ଣାଶ୍ରମ ଧର୍ମକୁ ଆସକ୍ତି, ଅହଂକାର ଓ କାମନା ବର୍ଜିତଭାବରେ ଅନୁଷ୍ଠାନ କରି ଈଶ୍ୱରଙ୍କଠାରେ ଅର୍ପଣ କରୁଥିବା ବ୍ୟକ୍ତି, ଯେପରି ବ୍ରହ୍ମ ଲାଭ କରନ୍ତି, ତାହା ଆମ୍ଭଠାରୁ ନିଷ୍ଠାରୂପେ ବୁଝ । ସେ ବିଷୟ ବିସ୍ତୃତରୂପେ ବୁଝାଇବାକୁ ଗଲେ, ଏତେ ବେଶୀ କହିବାକୁ ହେବ, ଯେ ତାହା ଧାରଣା କରିବା ଦୁଷ୍କର

ରେ କଠିନ ହେବ, ଅତଏବ ସଂକ୍ଷେପରେ ତାହା ଶୁଣ । ସେହି ବ୍ରହ୍ମଲାଭହିଁ ଜ୍ଞାନର ପରା ନିଷ୍ଠା ବା ଶେଷସୀମା । ବାହ୍ୟ ଜ୍ଞାନ ବେଦାନ୍ତବାକ୍ୟର ଶ୍ରବଣ ମନନାଦିରୁ ଜାତ, ସେ ଜ୍ଞାନ, ତାହାର 'ଅମାନିତ୍ୱ' ପ୍ରଭୃତି ଯେତେପ୍ରକାର ସାଧନ ଅଛି, ତାହା କେବଳ ବ୍ରହ୍ମସାକ୍ଷାତ୍କାର ଉଦ୍ଦେଶରେ ଅନୁଷ୍ଠିତ ହୁଏ । ବ୍ରହ୍ମସାକ୍ଷାତ୍କାର ପରେ ଜ୍ଞାନର ଆଉ କୌଣସି ପ୍ରକାର ସାଧନ ଆବଶ୍ୟକ ହୁଏ ନାହିଁ । ଅତଏବ ବ୍ରହ୍ମତ୍ୱ, ଯେ ଜ୍ଞାନର ଶେଷସୀମା, ସେଥିରେ ତ ଆଉ ସନ୍ଦେହ ଅଛି ? ନିଷ୍କାମ ଭାବରେ କର୍ମ କରୁଥିବା ବ୍ୟକ୍ତି ବ୍ରହ୍ମଚର୍ଯ୍ୟ ପ୍ରଭୃତି ଏକ ଏକ ଆଶ୍ରମରେ ରହି କ୍ରମେ ଅଗ୍ରସର ହୋଇ ଜ୍ଞାନର ଶେଷସୀମାରୂପ ବ୍ରହ୍ମସାକ୍ଷାତ୍କାର ଯେପରି ଲାଭ କରନ୍ତି, ତାହା ସଂକ୍ଷେପରେ ଆମ୍ଭଠାରୁ ଶୁଣି ନିଶ୍ଚୟ କର । ୫୦ ।

### ଶ୍ଳୋକଃ ।

ବୁଦ୍ଧ୍ୟା ବିଶୁଦ୍ଧୟା ଯୁକ୍ତୋ, ଧୃତ୍ୟାତ୍ମାନଂ ନିୟମ୍ୟ ଚ ।
ଶବ୍ଦାଦୀନ୍ ବିଷୟାଂସ୍ତ୍ୟକ୍ତ୍ୱା, ରାଗଦ୍ୱେଷୌ ବ୍ୟୁଦସ୍ୟ ଚ । ୫୧ ।

### ଅନ୍ୱୟଃ ।

ବିଶୁଦ୍ଧୟା ବୁଦ୍ଧ୍ୟା ଯୁକ୍ତଃ ଚ ଧୃତ୍ୟା ଆତ୍ମାନଂ ନିୟମ୍ୟ ଚ ଶବ୍ଦାଦୀନ୍ ବିଷୟାନ୍ ତ୍ୟକ୍ତ୍ୱା ଚ ରାଗଦ୍ୱେଷୌ ବ୍ୟୁଦସ୍ୟ (ବ୍ରହ୍ମଭୂୟାୟ କଳ୍ପତେ) । ୫୧ ।

### ଟୀକା ।

ତଦେବାହ । ବୁଦ୍ଧ୍ୟେତି । ଉକ୍ତେନ ପ୍ରକାରେଣ ବିଶୁଦ୍ଧୟା ପୂର୍ବୋକ୍ତୟା ସାତ୍ତ୍ୱିକୟା ବୁଦ୍ଧ୍ୟା ଯୁକ୍ତଃ, ଧୃତ୍ୟା ସାତ୍ତ୍ୱିକ୍ୟା ଯତ୍ନାନଂ ତାମେବ ବୁଦ୍ଧିଂ ନିୟମ୍ୟ ନିଶ୍ଚଳାଂ କୃତ୍ୱା ଶବ୍ଦାଦୀନ୍ ବିଷୟାଂସ୍ତ୍ୟକ୍ତ୍ୱା ତଦ୍ୱିଷୟୌ ରାଗଦ୍ୱେଷୌ ବ୍ୟୁଦସ୍ୟ; ବୁଦ୍ଧ୍ୟା ବିଶୁଦ୍ଧୟା ଇତ୍ୟାଦୀନାଂ ବ୍ରହ୍ମଭୂୟାୟ କଳ୍ପତ ଇତି ତୃତୀୟେନାନ୍ୱୟଃ । ୫୧ ।

### ପଦବ୍ୟାଖ୍ୟା ।

ବୁଦ୍ଧ୍ୟା ବିଶୁଦ୍ଧୟା—ବିଶୁଦ୍ଧବୁଦ୍ଧି ଅର୍ଥାତ୍ ସାତ୍ତ୍ୱିକ ବୁଦ୍ଧିଦ୍ୱାରା, ଯୁକ୍ତଃ—ମିଳିତ, ଧୃତ୍ୟା—ସାତ୍ତ୍ୱିକ ଧାରଣାଦ୍ୱାରା ଆତ୍ମାନଂ ନିୟମ୍ୟ ଚ—ଇନ୍ଦ୍ରିୟ ସହିତ ଶରୀରକୁ ସଂଯତକରି, ଶବ୍ଦାଦୀନ୍ ବିଷୟାନ୍—ଶବ୍ଦାଦି ବିଷୟମାନଙ୍କୁ, ତ୍ୟକ୍ତ୍ୱା—ତ୍ୟାଗକରି, ରାଗଦ୍ୱେଷୌ—ସ୍ପୃହା ଓ ଶତ୍ରୁଭାବ, ବ୍ୟୁଦସ୍ୟ—ଦୂରକରି । ୫୧ ।

### ଅନୁବାଦ ।

ବିଶୁଦ୍ଧ ବୁଦ୍ଧିଯୁକ୍ତ ହୋଇ ଓ ଧୈର୍ଯ୍ୟଦ୍ୱାରା ଇନ୍ଦ୍ରିୟ ସହିତ ଶରୀରକୁ ସଂଯତ କରି ଶବ୍ଦାଦି ବିଷୟମାନଙ୍କୁ ପରିତ୍ୟାଗପୂର୍ବକ ରାଗଦ୍ୱେଷ ଦୂର କଲେ,(ବ୍ରହ୍ମଭୂପ୍ରାପ୍ତିର ଯୋଗ୍ୟ ହୁଅନ୍ତି)।୫୧।

### ବିଶଦବ୍ୟାଖ୍ୟା ।

ଏହି ଅଧ୍ୟାୟର ୩୦ ଶ୍ଳୋକରେ ସାତ୍ତ୍ୱିକୀ ବୁଦ୍ଧିର ଏବଂ ୩୩ଶ ଶ୍ଳୋକରେ ସାତ୍ତ୍ୱିକୀ ଧୃତିର କଥା ବୁଝାଇ ଦିଆ ଯାଇଅଛି । କର୍ମାଧିକାରୀ ବ୍ୟକ୍ତି ବ୍ରହ୍ମଚର୍ଯ୍ୟ ଆଶ୍ରମରେ ରହି ସେହି ସାତ୍ତ୍ୱିକୀ ବୁଦ୍ଧି ଲାଭ କରିବେ । ତତ୍ପରେ ସାତ୍ତ୍ୱିକୀ ଧୃତିଦ୍ୱାରା ଆପଣାର ମନ, ପ୍ରାଣ ଓ ଇନ୍ଦ୍ରିୟାଦିକୁ ସଂଯତ କରିବେ, ଅର୍ଥାତ୍ ନିଜ ବଶରେ ରଖିବେ । ବିଶୁଦ୍ଧ ବୁଦ୍ଧିର କାର୍ଯ୍ୟ, ସତ୍ ଓ ଅସତ୍, ନିତ୍ୟ ଓ ଅନିତ୍ୟ ଏବଂ ମୁକ୍ତି ଓ ବନ୍ଧନ ଜଣାଇ ଦେବା । ମନ ଓ ଇନ୍ଦ୍ରିୟ ପ୍ରଭୃତି

Digitized by PPRACHIN, SOA

ସଯତ ହେଲେ, ଅପତ୍ୟ, ଅନତ୍ୟ ଓ ବନ୍ଧୁବାନ୍ଧବଙ୍କ କାର୍ଯ୍ୟରେ ଆସକ୍ତି ରହିବ ନାହିଁ । ସୁତରାଂ, କର୍ମାଧିକାରୀ ପୁରୁଷ ଗୃହସ୍ଥାଶ୍ରମର ଅଧିକାରୀ ହେବେ । ଗୃହସ୍ଥାଶ୍ରମରେ ରହି ବିଷୟ ଭୋଗାଦି କରୁଥିଲେ ସୁଦ୍ଧା, ବ୍ରହ୍ମଚର୍ଯ୍ୟ ଆଶ୍ରମରୁ ତାଙ୍କର ମନ ଓ ଇନ୍ଦ୍ରିୟାଦି ସଯତ ହୋଇ-ଥିବାରୁ ତାହାର ବଳରେ ସେ, ଶବ୍ଦାଦି ବିଷୟରେ ଆସକ୍ତ ହେବେ ନାହିଁ । ବରଂ କ୍ରମେ ଶବ୍ଦାଦି ବିଷୟ ଗ୍ରହଣରୁ ବିରତ ହେବେ । ତାହା ହେଲେ, ତାଙ୍କର ଆଉ ଶ୍ରଦ୍ଧା ଓ ଶତ୍ରୁତା (ରାଗଦ୍ୱେଷୌ) ରହିବ ନାହିଁ । କାରଣ ଇନ୍ଦ୍ରିୟମାନଙ୍କର ଅନୁକୂଳ ବିଷୟରେ ଶ୍ରଦ୍ଧା ଓ ପ୍ରତି-କୂଳ ବିଷୟରେ ଶତ୍ରୁତା ଜାତ ହୁଏ, ମାତ୍ର ସେ, ଯେତେବେଳେ ଶବ୍ଦାଦି ବିଷୟ ଗ୍ରହଣ ତ୍ୟାଗ କରନ୍ତି, ଅର୍ଥାତ୍ ତହିଁରେ ଆସକ୍ତ ହୁଅନ୍ତି ନାହିଁ, ସେତେବେଳେ ତାଙ୍କର ଆଉ ଶ୍ରଦ୍ଧା ଓ ଶତ୍ରୁତା କେଉଁଠାରୁ ହେବ ? ଏପରି ଅବସ୍ଥା ହେଲେ, ଅର୍ଥାତ୍ ସଂସାରର କୌଣସି ପଦାର୍ଥ ବା ବ୍ୟକ୍ତିପ୍ରତି ତାଙ୍କର ଶ୍ରଦ୍ଧା ବା ଶତ୍ରୁତା କିଛି ନ ରହିଲେ, ସେ, ବାନପ୍ରସ୍ଥାଶ୍ରମର ଉପ-ଯୁକ୍ତ ହେବେ । ଏହିପରି ଉପାୟରେ ସେ, କ୍ରମେ ବ୍ରହ୍ମ ପ୍ରାପ୍ତିର ଯୋଗ୍ୟ ହେବେ । ୫୧ ।

ଶ୍ଳୋକଃ ।

* ବିବିକ୍ତସେବୀ ଲଘ୍ୱାଶୀ, ଯତବାକ୍କାୟମାନସଃ ;

ଧ୍ୟାନଯୋଗପରୋ ନିତ୍ୟଂ, ବୈରାଗ୍ୟଂ ସମୁପାଶ୍ରିତଃ । ୫୨ ।

ଅନ୍ୱୟଃ ।

ବିବିକ୍ତସେବୀ, ଲଘ୍ୱାଶୀ, ଯତବାକ୍କାୟମାନସଃ, ଧ୍ୟାନଯୋଗପରଃ, ବୈରାଗ୍ୟଂ ସମୁପାଶ୍ରିତଃ (ବ୍ରହ୍ମଭୂୟାୟ କଳ୍ପତେ) । ୫୨ ।

ଟୀକା ।

କିଂ ଚ ବିବିକ୍ତେତି । ବିବିକ୍ତସେବୀ ଶୁଚିଦେଶାବସ୍ଥାୟୀ, ଲଘ୍ୱାଶୀ ମିତଭୋଜୀ, ଏତୈରୁପାୟୈର୍ଯତବାକ୍କାୟମାନସଃ ସଂଯତବାକ୍‌ଦେହଚିତ୍ତୋ ଭୂତ୍ୱା ନିତ୍ୟଂ ସର୍ବଦା ଧ୍ୟାନେନ ଯୋ ଯୋଗୋ ବ୍ରହ୍ମସଂସ୍ପର୍ଶସ୍ତତ୍ପରଃ ସନ୍ ଧ୍ୟାନାବିଚ୍ଛେଦାର୍ଥଂ ପୁନଃ ପୁନର୍ଦୃଢ଼ଂ ବୈରାଗ୍ୟଂ ସମ୍ୟଗାଶ୍ରିତୋ ଭୂତ୍ୱା । ୫୨ ।

ପଦବ୍ୟାଖ୍ୟା ।

ବିବିକ୍ତସେବୀ—ନିର୍ଜନସ୍ଥାନ ଅଥବା ତୀର୍ଥାଦି ପବିତ୍ରସ୍ଥାନରେ ନିବାସକାରୀ, ଲଘ୍ୱାଶୀ—ପରିମିତାହାରୀ, ଯତବାକ୍କାୟମାନସଃ—ବଚନ ଦେହ ଓ ମନ ଏମାନଙ୍କୁ ସଂଯତ କରିଥିବା ବ୍ୟକ୍ତି, ଧ୍ୟାନଯୋଗପରଃ—ପରମାତ୍ମଧ୍ୟାନ-ରେ ନିଯୁକ୍ତ, ନିତ୍ୟଂ—ସର୍ବଦା, ବୈରାଗ୍ୟଂ—ଆସକ୍ତିଶୂନ୍ୟତାକୁ, ସମୁପାଶ୍ରିତଃ—ସମ୍ପୂର୍ଣ୍ଣରୂପେ ଆଶ୍ରୟ କରି । ୫୨ ।

ଅନୁବାଦ ।

ନିର୍ଜନ ବା ପବିତ୍ରସ୍ଥାନବାସୀ, ପରିମିତାହାରୀ, ବାକ୍ୟ, ଦେହ ଓ ମନୋଜୟକାରୀ, ସର୍ବଦା ଧ୍ୟାନଯୋଗପରାୟଣ ଓ ବୈରାଗ୍ୟାଶ୍ରିତବ୍ୟକ୍ତି (ବ୍ରହ୍ମତ୍ୱ ପ୍ରାପ୍ତିର ଯୋଗ୍ୟ ହୁଅନ୍ତି) । ୫୨ ।

ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ କୁହାଗଲା ଯେ, କର୍ମାଧିକାରୀ, ବ୍ରହ୍ମଚର୍ଯ୍ୟ ଆଶ୍ରମରେ ରହି ବିଶୁଦ୍ଧ-

ଭୁକ୍ତି ଗ୍ରହଣ କରିବେ ଓ ବଶୀକୃତ ଦ୍ୱାରା ଆପଣାର ମନ ଓ ଇନ୍ଦ୍ରିୟାଦିକୁ ସଂଯତ କରିବେ । ଏଙ୍କ ବୃତ୍ତିଗ୍ରହଣରେ ରହି ଶରୀରାଦି ବିଷୟରେ ଆସକ୍ତ ହେବେ ନାହିଁ ଓ କାହାପ୍ରତି ଶତ୍ରୁତା ଓ ମିତ୍ରତା କରିବେ ନାହିଁ । ଏ ଶ୍ଳୋକରେ ବାନପ୍ରସ୍ଥ ଆଶ୍ରମରେ ତାଙ୍କର ଅବଶିଷ୍ଟ ଯେଉଁ ୨ ସାଧନ କରିବାକୁ ହେବ, ତାହା କୁହାଯାଉଅଛି ।

ଉକ୍ତ ସାଧକ ସମସ୍ତ ବିଷୟରୁ ଶତ୍ରୁ ଓ ମିତ୍ରଭାବରହିତ ହେଲେ, ତାଙ୍କର ଆଉ ସମାଜ-ବନ୍ଧନ ଆବଶ୍ୟକ ହେବ ନାହିଁ । କାହିଁକି ନା ଆପଣା ୨ ର ଅର୍ଜିତ ଓ ସଞ୍ଚିତ ଧନାଦିକୁ ଏବଂ ଅନୁଗତ ସ୍ତ୍ରୀ ପୁତ୍ରାଦିଙ୍କୁ ଅନ୍ୟର ଆକ୍ରମଣରୁ ରକ୍ଷା କରିବା ନିମିତ୍ତ ବଳସଞ୍ଚୟ କରିବାହିଁ ସମାଜବନ୍ଧନର ଉଦ୍ଦେଶ୍ୟ । ମାତ୍ର ପୂର୍ବୋକ୍ତ ସାଧକ, କୌଣସି ବିଷୟ, ବା କୌଣସି ପଦାର୍ଥ, ଅଥବା କୌଣସି ବ୍ୟକ୍ତି ପ୍ରତି ସ୍ନେହ ବା ଶତ୍ରୁତା କରୁ ନ ଥିବାରୁ ତାଙ୍କ ପକ୍ଷରେ ସମାଜର କିଛି ମାତ୍ର ଉପଯୋଗିତା ରହେ ନାହିଁ । ସୁତରାଂ ସେ, 'ବିବିକ୍ତ' ସ୍ଥାନ ଅର୍ଥାତ୍ ପର୍ବତଗୁହା ପ୍ରଭୃତି ନିର୍ଜନ ଅଥବା ନଦୀତଟାଦି ପବିତ୍ର ସ୍ଥାନରେ ବାସ କରିବେ, ଅର୍ଥାତ୍ ବାନପ୍ରସ୍ଥାଶ୍ରମ ଗ୍ରହଣ କରିବେ । ବାନପ୍ରସ୍ଥାଶ୍ରମରେ ରହି ପରିମିତ * ଆହାର କରିବେ, ଅର୍ଥାତ୍ ଯେତିକି ଆହାର କଲେ ତାଙ୍କର ଶରୀର ରକ୍ଷା ହେବ, ଅଥଚ ନିଦ୍ରା ଆଳସ୍ୟ ଅଥବା ଅଜୀର୍ଣ୍ଣାଦି ରୋଗ ଜାତ ନ ହେବ, ସେତିକି ମାତ୍ର ଆହାର କରିବେ । ନିର୍ଜନ ସ୍ଥାନରେ ରହୁଥିବାରୁ ତାହାଙ୍କର ବଚନ ସଂଯତ ହେବ, ଅର୍ଥାତ୍ ଈଶ୍ୱରାଦି ଉଚ୍ଚାରଣ ଭିନ୍ନ, ଅନ୍ୟ କୌଣସି ପ୍ରକାର ବାକ୍ୟବିନ୍ୟାସ କରିବାକୁ ପଡ଼ିବ ନାହିଁ । ପରିମିତ ଆହାର କରୁଥିବାରୁ ଶରୀର ମଧ୍ୟ ସଂଯତ ହେବ, ଅର୍ଥାତ୍ ନିଦ୍ରା, ଆଳସ୍ୟ ଓ ରୋଗାଦିରେ ଅଭିଭୂତ ହେବ ନାହିଁ । ବଚନ ଓ ଶରୀର ସଂଯତ ହେଲେ, କ୍ରମେ ୨ ମନ ଆପଣାଛାଏଁ ସଂଯତ ହୋଇ ପଡ଼ିବ । କାହିଁକି ନା ମନ ଇନ୍ଦ୍ରିୟମାନଙ୍କର ରାଜା, ଇନ୍ଦ୍ରିୟମାନେ ସମସ୍ତେ ସଂଯତ ହେଲେ, ମନ ଆଉ କାହାକୁ ନେଇ ଅସଂଯତ ହେବ ? ଏ ସ୍ଥଳରେ 'ବାକ୍' ଏହି ଶବ୍ଦଦ୍ୱାରା ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ ଏହି ପାଞ୍ଚ ଇନ୍ଦ୍ରିୟ ଏବଂ 'କାୟ' ଶବ୍ଦଦ୍ୱାରା ଶରୀରସ୍ଥିତ ଶ୍ରୋତ୍ରାଦି ପଞ୍ଚ ଜ୍ଞାନେନ୍ଦ୍ରିୟ ବୁଝିବାକୁ ହେବ ।

ଫଳକଥା ଏହି କି ସାଧକ ନିର୍ଜନସ୍ଥାନରେ ରହି ପରିମିତାହାର କରିବାଦ୍ୱାରା ଆପଣାର ସମସ୍ତ ଇନ୍ଦ୍ରିୟ ଓ ମନ ଏମାନଙ୍କୁ ସଂଯତ କରିବେ । ତାହାହେଲେ, ଅର୍ଥାତ୍ ମନ ତାଙ୍କର ବଶୀଭୂତ ହେଲେ, ତାକୁ ପରମେଶ୍ୱରଙ୍କ ଧ୍ୟାନରେ ଏପରି ନିଯୁକ୍ତ କରିବେ, ଯେ ମନ ଯେପରି ପରମେଶ୍ୱରଙ୍କ ଭିନ୍ନ, ଅନ୍ୟ କୌଣସି ପ୍ରକାର ବାହ୍ୟ ବିଷୟରେ ପୁନର୍ବାର ପ୍ରବୃତ୍ତ ହେବ ନାହିଁ । ଏପରି ହେଲେ, ତାଙ୍କର ପ୍ରକୃତ ବୈରାଗ୍ୟ ଜାତ ହେବ ।

ବାନପ୍ରସ୍ଥାଶ୍ରମରେ ରହି ବ୍ରହ୍ମପ୍ରାପ୍ତି ବିଷୟରେ ଯେଉଁ ୨ ସାଧନ ଆବଶ୍ୟକ, ତାହା ଏ ଶ୍ଳୋକରେ ଏହିପରି ସଂକ୍ଷେପରେ ବର୍ଣ୍ଣିତ ହେଲା । ୫୨ ।

---

* ଶିଳୋଞ୍ଛ ବୃତ୍ତିଦ୍ୱାରା ଲବ୍ଧ ସ୍ୱଳ୍ପାନ୍ନ ଗ୍ରହଣ କରିବେ (ଶିଳୋଞ୍ଛ ବୃତ୍ତିର ବିବରଣ ଏହି ଅଧ୍ୟାୟର ୪୪ ଶ୍ଳୋକ ବ୍ୟାଖ୍ୟାର ନୋଟ ଦେଖ) ।

Digitized by PPRACHIN, SOA

### ଶ୍ଳୋକଃ ।

ଅହଙ୍କାରଂ ବଳଂ ଦର୍ପଂ, କାମଂ କ୍ରୋଧଂ ପରିଗ୍ରହଂ ।
ବିମୁଚ୍ୟ ନିର୍ମ୍ମମଃ ଶାନ୍ତୋ, ବ୍ରହ୍ମଭୂୟାୟ କଳ୍ପତେ । ୫୩ ।

### ଅନ୍ୱୟଃ ।

ଅହଙ୍କାରଂ, ବଳଂ, ଦର୍ପଂ, କାମଂ, କ୍ରୋଧଂ, ପରିଗ୍ରହଂ ବିମୁଚ୍ୟ ନିର୍ମ୍ମମଃ, ଶାନ୍ତଃ ( ସନ୍ ) ବ୍ରହ୍ମଭୂୟାୟ କଳ୍ପତେ ।୫୩।

### ଟୀକା ।

ତତଶ୍ଚ ଅହଙ୍କାରମିତି । ବରକ୍ତୋଽହମିତ୍ୟାଦ୍ୟହଙ୍କାରଂ ବଳଂ ଦୁରାଗ୍ରହଂ ଦର୍ପଂ ଯୋଗବଳାଦୁନ୍ମାର୍ଗପ୍ରବୃତ୍ତିଲକ୍ଷଣଂ ପ୍ରାରବ୍ଧବଶାତ୍ ଅପ୍ରାପ୍ୟମାନେଷ୍ୱପି ବିଷୟେଷୁ କାମଂ କ୍ରୋଧଂ ପରିଗ୍ରହଂ ଚ ବିମୁଚ୍ୟ ବିଶେଷେଣ ତ୍ୟକ୍ତ୍ୱା ତଳାଦ୍ୟପ-ଲେଷ୍ୱ ନିର୍ମ୍ମମଃ ସନ୍ ଶାନ୍ତଃ ପରମୋପଶାନ୍ତିଂ ପ୍ରାପ୍ତୋବ୍ରହ୍ମଭୂୟାୟ ବ୍ରହ୍ମାହମିତି ନୈଷ୍ଠଲ୍ୟେନାବସ୍ଥାନାୟ କଳ୍ପତେ ଯୋଗ୍ୟୋଭବତି । ୫୩ ।

### ପଦବ୍ୟାଖ୍ୟା ।

ଅହଙ୍କାରଂ—ଆମ୍ଭର ବୈରାଗ୍ୟ ହୋଇଅଛି ଏପରି ଅଭିମାନକୁ, ବଳଂ—ଦୁରାଗ୍ରହ, ଦର୍ପଂ—ଯୋଗବଳରେ ଅଦ୍ଭୁତ କାର୍ଯ୍ୟ ଦେଖାଇବା ପ୍ରବୃତ୍ତ ଗର୍ବ, କାମଂ—ଫଳକାମନା, କ୍ରୋଧଂ—କ୍ରୋଧ, ପରିଗ୍ରହଂ—ଦାନାଦି ଗ୍ରହଣ ବା ସମ୍ବଳଦ୍ରବ୍ୟାଦି ସଂଗ୍ରହ, ବିମୁଚ୍ୟ—ବିଶେଷରୂପେ ତ୍ୟାଗ କରି, ନିର୍ମ୍ମମଃ—ମମତାଶୂନ୍ୟ, ଶାନ୍ତଃ—ଶାନ୍ତିପ୍ରାପ୍ତ, ବ୍ରହ୍ମଭୂୟାୟ କଳ୍ପତେ—ବ୍ରହ୍ମତ୍ୱ ପ୍ରାପ୍ତିର ଯୋଗ୍ୟ ହୁଅନ୍ତି । ୫୩ ।

### ଅନୁବାଦ ।

ଅହଙ୍କାର, ବଳ, ଦର୍ପ, କାମ, କ୍ରୋଧ ଓ ପରିଗ୍ରହ, ଏମାନ ସମ୍ପୂର୍ଣ୍ଣରୂପେ ତ୍ୟାଗ କରି, ମମତାଶୂନ୍ୟ ଓ ଶାନ୍ତ ହୋଇ ବ୍ରହ୍ମତ୍ୱପ୍ରାପ୍ତିର ଯୋଗ୍ୟ ହୁଅନ୍ତି । ୫୩ ।

### ବିଷଦବ୍ୟାଖ୍ୟା ।

ପୂର୍ବଶ୍ଳୋକରେ ବାନପ୍ରସ୍ଥାଶ୍ରମରେ ରହି ସାଧକ, ବ୍ରହ୍ମତ୍ୱ ପ୍ରାପ୍ତି ବିଷୟରେ ଯେଉଁ ସାଧନ କରିବେ, ତାହା ବୁଝାଇ ଦିଆ ଯାଇଅଛି । ଏ ଶ୍ଳୋକରେ ସନ୍ନ୍ୟାସାଶ୍ରମର କଥା ସଂକ୍ଷେପରେ ଲେଖା ଯାଉଅଛି ।

ବାନପ୍ରସ୍ଥାଶ୍ରମରେ ରହି, ପ୍ରକୃତ ବୈରାଗ୍ୟ ଲାଭ ହେଲେ, ସାଧକ, ଅହଙ୍କାର ତ୍ୟାଗ କରିବେ, ଅର୍ଥାତ୍ 'ମୋହର ବୈରାଗ୍ୟ ଜନ୍ମିଅଛି', 'ମୁଁ ଉତ୍ତମ କୁଳରେ ଜନ୍ମ ହୋଇଅଛି', ଅଥବା 'ମୁଁ ମହାପୁରୁଷଙ୍କ ଶିଷ୍ୟ', ଏପରି ଅଭିମାନ ପରିତ୍ୟାଗ କରିବେ । ଶାସ୍ତ୍ରନିଷିଦ୍ଧ ଅସତ୍ ବିଷୟରେ ଆଗ୍ରହକୁ ଏଠାରେ ବଳ ବୋଲି ଯାଇଅଛି; ତାହା ସାଧକ ତ୍ୟାଗ କରିବେ, ଅର୍ଥାତ୍ କୌଣସି ଅସତ୍ ଆଶା କରିବେ ନାହିଁ । ପୁଣି 'ମୋହର ଅସତ୍ ଆଶା ନାହିଁ' ଅଥବା 'ମୁଁ ଅସତ୍ ଆଶା ପରିତ୍ୟାଗ କରିଅଛି' ଏହା ଭାବି ଆନନ୍ଦରେ ଉନ୍ମତ୍ତ ହୋଇ 'ଦର୍ପ' ଅର୍ଥାତ୍ ଗର୍ବ କରିବେ ନାହିଁ । ଅଥବା ଅଭ୍ୟସ୍ତ ଯୋଗଦ୍ୱାରା ପ୍ରାପ୍ତ ସିଦ୍ଧି ବଳରେ ଐନ୍ଦ୍ରଜାଲିକାଦି କ୍ରୀଡ଼ା ଦେଖାଇ ଦର୍ପ କରିବାଦ୍ୱାରା ପ୍ରକୃତ ଯୋଗପଥରୁ ଭ୍ରଷ୍ଟ ହେବେ ନାହିଁ । କାହିଁକି ନା

ଯୋଗ ଅଭ୍ୟାସ କଲାବେଳେ ନାନାପ୍ରକାର ଅଦ୍ଭୁତ ବିଷୟରେ ଶକ୍ତି ଲାଭ ହୁଏ ସତ, ମାତ୍ର ତାହା ପ୍ରକୃତ ସମାଧିର ବିଘ୍ନକାରକ ହୁଏ *, ଅତଏବ ତାହା ସର୍ବତୋଭାବରେ ବର୍ଜନ କରିବେ ।

ଇନ୍ଦ୍ରିୟାଶ୍ଚଳ୍ୟ ହେଲେ ସମାଧିଭ୍ରଷ୍ଟ ହେବାର ପ୍ରଧାନ କାରଣ କାମନା । କାହିଁକି ନା ଇହଲୋକରେ ବା ସ୍ୱର୍ଗାଦି ପରଲୋକରେ ଧନ, ପୁତ୍ର ଓ ସୁଖାଦି ପାଇବା ଇଚ୍ଛାରେ ଲୋକେ ଅଦ୍ଭୁତ କ୍ଷମତା ଦେଖାଇବାରେ ପ୍ରବୃତ୍ତ ହୁଅନ୍ତି । ଅତଏବ ସେହି କାମନାକୁ ଉତ୍ତମରୂପେ ଅନ୍ତଃକରଣରୁ ଦୂର କରିବେ । କାମନା ଥିଲେ ସିନା ଅଭିଲଷିତ ଦ୍ରବ୍ୟ ପ୍ରାପ୍ତ ନ ହେଲେ ବା ତହିଁରେ କୌଣସି ପ୍ରକାର ବାଧା ହେଲେ, ତାହା କ୍ରୋଧରୂପରେ ପରିଣତ ହୁଅନ୍ତା; କାମନା ତ୍ୟାଗ କରିବାଦ୍ୱାରା ପରେ 'କ୍ରୋଧ'ର ପରିତ୍ୟାଗ ମଧ୍ୟ, ସାଧିତ ହେବ । ପୁଣି ତାଙ୍କର ଇହ ବା ପରଲୋକରେ କୌଣସି ପଦାର୍ଥପ୍ରତି ବା କୌଣସି ସୁଖପ୍ରତି କାମନା ନ ଥିବାରୁ କୌଣସି ଦ୍ରବ୍ୟ ସଂଗ୍ରହ କରିବା, ଅଥବା କାହାଠାରୁ କୌଣସି ଦାନ ଗ୍ରହଣ କରିବା ରୂପ 'ପରିଗ୍ରହ'ର ଆବଶ୍ୟକ ହେବ ନାହିଁ, ଅର୍ଥାତ୍ ତାଙ୍କର ପରିଗ୍ରହ ତ୍ୟାଗ ମଧ୍ୟ, ଆପଣାଛାଏଁ ଘଟିବ, ଏପ୍ରକାର ହେବାରୁ ତାଙ୍କର କୌଣସି ପଦାର୍ଥରେ ବା ବିଷୟରେ 'ମମତା' ରହିବ ନାହିଁ, ଅର୍ଥାତ୍ ସେ, ପ୍ରକୃତ ସନ୍ନ୍ୟାସାଶ୍ରମର ଅଧିକାରୀ ହେବେ । ସନ୍ନ୍ୟାସାଶ୍ରମରେ ତାଙ୍କର ଚିତ୍ତରେ କୌଣସି ପ୍ରକାର ଚଞ୍ଚଳତା ନ ଥିବାରୁ ସେ, ଅଖଣ୍ଡ ଶାନ୍ତିସୁଖ ଉପଭୋଗ କରି ବ୍ରହ୍ମତ୍ୱ ପ୍ରାପ୍ତିର ଯୋଗ୍ୟ ହେବେ । ୫୩ ।

ଶ୍ଲୋକଃ ।

ବ୍ରହ୍ମଭୂତଃ ପ୍ରସନ୍ନାତ୍ମା, ନ ଶୋଚତି ନ କାଂକ୍ଷତି ।
ସମଃ ସର୍ବେଷୁ ଭୂତେଷୁ, ମଦ୍ଭକ୍ତିଂ ଲଭତେ ପରାଂ । ୫୪ ।

ଅନ୍ୱୟଃ ।

ପ୍ରସନ୍ନାତ୍ମା ବ୍ରହ୍ମଭୂତଃ (ସନ୍) ନ ଶୋଚତି ନ କାଂକ୍ଷତି, ସର୍ବଭୂତେଷୁ ସମଃ (ଭୂତ୍ୱା) ପରାଂ ମଦ୍ଭକ୍ତିଂ ଲଭତେ । ୫୪ ।

ଟୀକା ।

ବ୍ରହ୍ମାହମିତି ନୈଷ୍କର୍ମ୍ୟଲକ୍ଷଣାବସ୍ଥାନସ୍ୟ ଫଳମାହ, ବ୍ରହ୍ମେତି । ବ୍ରହ୍ମଭୂତୋବ୍ରହ୍ମଣ୍ୟବସ୍ଥିତଃ ପ୍ରସନ୍ନଚିତ୍ତଃ ନଷ୍ଟଂ ନ ଶୋଚତି ନପ୍ରାପ୍ତଂ କାଂକ୍ଷତି ଦେହାଦ୍ୟଭିମାନାଭାବାତ୍, ଅତଏବ ସର୍ବେଷ୍ୱପି ଭୂତେଷୁ ସମଃ ସନ୍ ରାଗଦ୍ୱେଷାଦିକୃତ-ବିକ୍ଷେପାଭାବାତ୍ ସର୍ବଭୂତେଷୁ ମଦ୍ଭାବନାଲକ୍ଷଣାଂ ପରାଂ ମଦ୍ଭକ୍ତିଂ ଲଭତେ । ୫୪ ।

ପଦବ୍ୟାଖ୍ୟା ।

ବ୍ରହ୍ମଭୂତଃ—'ମୁଁ ବ୍ରହ୍ମ, ଏପରି ନିଶ୍ଚୟ ଥିବା, ପ୍ରସନ୍ନାତ୍ମା—ନିର୍ମଳଚିତ୍ତ, ନ ଶୋଚତି—ନଷ୍ଟ ହୋଇଥିବା କୌଣସି ପଦାର୍ଥ ପାଇଁ ଶୋଚନା କରନ୍ତି ନାହିଁ, ନ କାଂକ୍ଷତି—ଅପ୍ରାପ୍ତ ପଦାର୍ଥ ବାଞ୍ଛା କରନ୍ତି ନାହିଁ, ସମଃ—ସମାନ, ସର୍ବେଷୁ ଭୂତେଷୁ—ସମସ୍ତ ପ୍ରାଣିମାନଙ୍କଠାରେ, ମଦ୍ଭକ୍ତିଂ—ଆମ୍ଭର ଭକ୍ତିକୁ, ଲଭତେ—ପ୍ରାପ୍ତ ହୁଅନ୍ତି, ପରାଂ—ଉତ୍କୃଷ୍ଟ । ୫୪ ।

* ତେ ସମାଧାବୁପସର୍ଗା ବ୍ୟୁତ୍ଥାନେ ସିଦ୍ଧୟଃ । ପାତଞ୍ଜଳ, ବିଃ ପାଃ ୫ ୭

## ଅନୁବାଦ ।

(ସାଧକ) ବ୍ରହ୍ମଭାବରେ ନିଷ୍ଠିତ ହେବାରୁ ପ୍ରସନ୍ନଚିତ୍ତ ହୋଇ କୌଣସି ବିଷୟରେ ଶୋକ କିମ୍ବା ଅଭିଳାଷ କରନ୍ତି ନାହିଁ । ସେ ସକଳ ପ୍ରାଣୀଙ୍କ ପ୍ରତି ସମଭାବଯୁକ୍ତ ହେବାରୁ ଆମ୍ଭଠାରେ ଉତ୍କୃଷ୍ଟ ଭକ୍ତି ଲାଭ କରନ୍ତି । ୫୪ ।

## ବିଶଦବ୍ୟାଖ୍ୟା ।

ସନ୍ନ୍ୟାସାଶ୍ରମରେ ରହି ବେଦାନ୍ତବାକ୍ୟର ଶ୍ରବଣ ମନନାଦିଦ୍ୱାରା ସାଧକ ଆପଣାକୁ ବ୍ରହ୍ମରୁ ଅଭିନ୍ନ ବୋଲି ଜାଣନ୍ତି, ଅର୍ଥାତ୍ ଆତ୍ମା ଓ ପରମାତ୍ମାର ଏକତା ବୁଝି ପାରନ୍ତି । ସୁତରାଂ ସେ, ପ୍ରସନ୍ନଚିତ୍ତ ହୁଅନ୍ତି, ଅର୍ଥାତ୍ ଏତେଦିନ ମାୟାଜାଲରେ ରହିବାରୁ, ତାଙ୍କର ଦେହାଦିରେ ଯେଉଁ ଆତ୍ମଭାବ ହୋଇଥିଲା ଓ ଯାହାଲାଗି ସେ ଆପଣାକୁ ସୁଖୀ ଓ ଦୁଃଖୀ ବୋଲି ମଣୁଥିଲେ, ତାହା ଭ୍ରମ ଥିବାର ବୁଝି ପାରିବାରୁ ତାଙ୍କର ମନରେ ଏକ ନୂତନ ପ୍ରକାରର ପ୍ରସନ୍ନତା ଜନ୍ମେ । ସେହି ହେତୁରୁ ଶରୀରାଦି କୌଣସି ପଦାର୍ଥ ନଷ୍ଟ ହୋଇଗଲେ, ତହିଁପାଇଁ ଶୋକ କରନ୍ତି ନାହିଁ, କିମ୍ବା ଅନାତ୍ମ ପଦାର୍ଥ, ଯେ ଇନ୍ଦ୍ରିୟାଦି, ତାହାର ଭୋଗପାଇଁ କୌଣସି ଦ୍ରବ୍ୟର ଅଭିଳାଷ କରନ୍ତି ନାହିଁ । ପୃଥିବୀର ଯାବତୀୟ ପ୍ରାଣୀବର୍ଗଙ୍କୁ ସେହି ପରମାତ୍ମା ସହିତ ଅଭେଦଭାବରେ ଦେଖୁଥିବାରୁ ସେ, ଜାତି, ଧର୍ମ ଓ ଗୁଣାଗୁଣର ପ୍ରଭେଦ ନ ମାନି ସମସ୍ତଙ୍କୁ ସମାନଭାବରେ ଅର୍ଥାତ୍ ପରମାତ୍ମଦୃଷ୍ଟିରେ ଦେଖନ୍ତି । ତାଙ୍କର ଏପରି ଯେଉଁ ସର୍ବାତ୍ମଦୃଷ୍ଟି, ତାହାହିଁ ଆମ୍ଭଠାରେ ଶ୍ରେଷ୍ଠଭକ୍ତି ଅଟେ । ସାଧକ ସେହି ସର୍ବାତ୍ମଦୃଷ୍ଟିରୂପ ଶ୍ରେଷ୍ଠଭକ୍ତି ଅର୍ଥାତ୍ ଉତ୍କୃଷ୍ଟପ୍ରୀତି-ଲାଭ କରନ୍ତି ।

ସାଧାରଣତଃ ଲୋକେ ବିଷ୍ଣୁ, ଶିବ ଓ କାଳୀ ପ୍ରଭୃତି ବିଶେଷ ୨ ଦେବତାଙ୍କଠାରେ ଯେଉଁ ଭକ୍ତି କରନ୍ତି, ତାହା ଗୌଣଭକ୍ତି ଅଟେ । ମାତ୍ର ସର୍ବତ୍ର ପରମାତ୍ମାଙ୍କ ସତ୍ତା ଅନୁଭବ କରିବାହିଁ ଉତ୍କୃଷ୍ଟ ଭକ୍ତି ଅଟେ ।

ଏ ଶ୍ଳୋକର ପ୍ରଥମାର୍ଦ୍ଧ ବିଦ୍ୱତ୍ ସନ୍ନ୍ୟାସର ଓ ଶେଷାର୍ଦ୍ଧ ବିବିଦିଷା ସନ୍ନ୍ୟାସର ଲକ୍ଷଣ ଅଟେ । ୫୪ ।

## ଶ୍ଳୋକଃ ।

ଭକ୍ତ୍ୟା ମାମଭିଜାନାତି, ଯାବାନ୍ ଯଶ୍ଚାସ୍ମି ତତ୍ତ୍ୱତଃ ।
ତତୋ ମାଂ ତତ୍ତ୍ୱତୋ ଜ୍ଞାତ୍ୱା, ବିଶତେ ତଦନନ୍ତରଂ । ୫୫ ।

## ଅନ୍ୱୟଃ ।

ତତଃ ଭକ୍ତ୍ୟା (ଅହଂ) ଯାବାନ୍ ଯଃ ଚ ଅସ୍ମି (ଇତି) ତତ୍ତ୍ୱତଃ ମାଂ ଅଭିଜାନାତି, ତତ୍ତ୍ୱତଃ ଜ୍ଞାତ୍ୱା ତଦନନ୍ତରଂ ମାଂ ବିଶତେ । ୫୫ ।

## ଟୀକା ।

ତତଶ୍ଚ ଭକ୍ତୈତି । ତୟା ଚ ପରୟା ଭକ୍ତ୍ୟା ତତ୍ତ୍ୱତୋମାମଭିଜାନାତି । କଥମ୍ଭୂତଂ ଯାବାନ୍ ସର୍ବବ୍ୟାପୀ ଯଶ୍ଚାସ୍ମି ସଚ୍ଚିଦାନନ୍ଦଘନଃ ତଥାଭୂତଂ ତତଶ୍ଚ ମାମେବଂ ତତ୍ତ୍ୱତୋଜ୍ଞାତ୍ୱା ତଦନନ୍ତରଂ ତସ୍ୟଜ୍ଞାନସ୍ୟୋପରମେ ସତି ମାଂ ବିଶତେ ପରମାନନ୍ଦରୂପୋଭବତୀତ୍ୟର୍ଥଃ । ୫୫ ।

Digitized by PPRACHIN, SOA

## ପଦବ୍ୟାଖ୍ୟା ।

ଭକ୍ତ୍ୟା— ସେହି ଉତ୍କୃଷ୍ଟ ଭକ୍ତିଦ୍ୱାରା, ମାଂ ଅଭିଜାନାତି—ଆମ୍ଭକୁ ସମ୍ପୂର୍ଣ୍ଣରୂପେ ଜାଣି ପାରନ୍ତି, ଯାବାନ୍—ଆମ୍ଭେ ଯେପରି, ଯଃ ଚ ଅସ୍ମି—ଓ ଆମ୍ଭେ ଯେଉଁ ସ୍ୱରୂପ ଅଟୁଁ, ତତ୍ତ୍ୱତଃ ଜ୍ଞାତ୍ୱା—ପ୍ରକୃତରୂପେ ଜାଣିଲେ, ବିଶତେ ମାଂ—ଆମ୍ଭଠାରେ ଲୀନ ହୁଅନ୍ତି, ତଦନନ୍ତରଂ—ଦେହତ୍ୟାଗ ଉତ୍ତାରୁ । ୫୫ ।

## ଅନୁବାଦ ।

ଭକ୍ତିଉତ୍ତାରୁ ସାଧକ ସେହି ଭକ୍ତିଦ୍ୱାରା ଆମ୍ଭେ ଯେପରି ଓ ଯାହା ଅଟୁଁ, ତାହା ପ୍ରକୃତରୂପେ ଜାଣି ପାରନ୍ତି । ଆମ୍ଭଙ୍କୁ ପ୍ରକୃତରୂପେ ଜାଣିଲେ, ଦେହ ତ୍ୟାଗ ପରେ ଆମ୍ଭଠାରେ ଲୀନ ହୁଅନ୍ତି । ୫୫ ।

## ବିଶଦବ୍ୟାଖ୍ୟା ।

ସାଧକ ସନ୍ନ୍ୟାସାଶ୍ରମରେ ରହି ଗୁରୁ ଉପଦେଶ ଓ ବେଦାନ୍ତ ବଚନର ଶ୍ରବଣ ମନନଦ୍ୱାରା ସର୍ବଭୂତରେ ଈଶ୍ୱରସତ୍ତା ଅନୁଭବ କରିବାରୂପ ଶ୍ରେଷ୍ଠଭକ୍ତି ଯେପରି ଲାଭ କରନ୍ତି, ତାହା ପୂର୍ବଶ୍ଳୋକରେ ବୁଝାଇ ଦିଆ ଯାଇଅଛି । ସେହି ପରାଭକ୍ତିକୁ ନିଦିଧ୍ୟାସନ ଅର୍ଥାତ୍ ଚିତ୍ତର ଏକାଗ୍ରତା ବୋଲଯାଏ । ନିଦିଧ୍ୟାସନରୂପିଣୀ ସେହି ଶ୍ରେଷ୍ଠଭକ୍ତିଦ୍ୱାରା ଆମ୍ଭର ପ୍ରକୃତସ୍ୱରୂପ, ଅର୍ଥାତ୍ ଆମ୍ଭେ ଯେପରି ଓ ଯାହା ଅଟୁଁ, ତାହା ଅବଗତ ହୁଅନ୍ତି, ଅର୍ଥାତ୍ ଆମ୍ଭେ ଯେ ଅଖଣ୍ଡ, ଏକରସ, ଅଦ୍ୱିତୀୟ, ଅଜର, ଅମର, ଅଭୟ ଓ ଅଶୋକ ଅଟୁଁ, ତାହା ଯଥାର୍ଥରୂପେ ଜାଣି ପାରନ୍ତି । ଏପରି ଜାଣିଲେ, ସେ ଜୀବନ୍ମୁକ୍ତି ଅବସ୍ଥା ଲାଭ କରନ୍ତି । 'ତଦନନ୍ତର' ପଦର ଏଠାରେ ଏହି ଅର୍ଥ, ଯେ ବଳବାନ୍ ପ୍ରାରବ୍ଧକର୍ମଜନିତ ଦେହର ପତନ ଉତ୍ତାରୁ ସେ, ଆମ୍ଭ ଦେହରେ ଲୀନ ହୁଅନ୍ତି । ଏହାହିଁ ଜ୍ଞାନର ଶେଷ କାର୍ଯ୍ୟ ଅଟେ । ଏଠାରେ ତାହାଙ୍କର ସମସ୍ତ କର୍ମ ଅର୍ଥାତ୍ ପ୍ରାରବ୍ଧ, ସଞ୍ଚିତ ଓ କ୍ରିୟମାଣ ଇତ୍ୟାଦି ସମସ୍ତ କର୍ମ ଶେଷ ହୁଏ ।

କେହି କେହି ଟୀକାକାର 'ତଦନନ୍ତରଂ' ଏ ପଦର 'ତତ୍ତ୍ୱଜ୍ଞାନ ଉତ୍ପତ୍ତି ପରେ' ଏପରି ଅର୍ଥ କରିଅଛନ୍ତି, ମାତ୍ର ତାହା ସୁସଙ୍ଗତ ନୁହେ । କାହିଁକି ନା "ମାଂ ତତ୍ତ୍ୱତଃ ଜ୍ଞାତ୍ୱା" ଅର୍ଥାତ୍ ଆମ୍ଭଙ୍କୁ 'ଯଥାର୍ଥରୂପେ ଜାଣିଲେ' ଏହି ବାକ୍ୟସ୍ଥିତ 'ଜାଣିଲେ' ଏହି ଅସମାପିକା କ୍ରିୟାଦ୍ୱାରା 'ଅନନ୍ତର' ଶବ୍ଦ ବୁଝା ଯାଉଅଛି, ଆଉ ଥରେ "ତଦନନ୍ତରଂ" ଏପରି ପଦ ବ୍ୟବହାର କରିବାର କିଛି ଆବଶ୍ୟକ ନ ଥିଲା । ଏହି କାରଣରୁ "ତଦନନ୍ତରଂ" ଏ ପଦର 'ଦେହପାତ ପରେ' ଏପରି ଅର୍ଥ ସୁସଙ୍ଗତ ହେଉଅଛି । ପୁଣି ଏ ବିଷୟରେ ଶ୍ରୁତିରେ ମଧ୍ୟ ପ୍ରମାଣ ଅଛି, ଯେ "ତସ୍ୟ ତାବଦେବ ଚିରଂ ଯାବନ୍ନ ବିମୋକ୍ଷ୍ୟେଽଥ ସଂପତ୍ସ୍ୟେ" ଅର୍ଥାତ୍ ସେହି ତତ୍ତ୍ୱଜ୍ଞାନୀ ମୁମୁକ୍ଷୁଙ୍କର ବିଦେହମୁକ୍ତି ପାଇବା ବିଷୟରେ ସେତେକାଳ ପର୍ଯ୍ୟନ୍ତ ବିଳମ୍ବ ହେବ, ଯେତେଦିନ ଯାଏ ପ୍ରାରବ୍ଧକର୍ମ ଭୋଗ ହୋଇ ତାହାଙ୍କର ଦେହ ପତନ ନ ହେବ । ଫଳକଥା

ଏହି କ ପ୍ରାରବ୍ଧକର୍ମର ଫଳଭୋଗ ପାଇଁ ନିର୍ମିତ, ଯେ ସ୍ଥୂଳଦେହ, ତାହାର ପତନ ନ ହେବା ଯାଏ, ପୁରୁଷର ତତ୍ତ୍ୱଜ୍ଞାନ ଉଦୟ ହୋଇଥିଲେ ସୁଦ୍ଧା, ବିଦେହ ମୁକ୍ତି ହୋଇ ପାରିବ ନାହିଁ ।

ତତ୍ତ୍ୱଜ୍ଞାନ ଜନ୍ମିବା ଦିନଠାରୁ ଦେହପାତ ପର୍ଯ୍ୟନ୍ତ ସମୟମଧ୍ୟରେ ବିଦେହମୁକ୍ତି ପ୍ରାପ୍ତ ନ ହେବାର କାରଣ ପ୍ରାରବ୍ଧକର୍ମ । ପ୍ରାରବ୍ଧକର୍ମକୁ ଯେବେ ବିଦେହମୁକ୍ତିର ପ୍ରତିବନ୍ଧକ ବୋଲି ସ୍ୱୀକାର କରା ନ ଯାଏ, ଅର୍ଥାତ୍ ତତ୍ତ୍ୱଜ୍ଞାନ ଉଦୟ ହେବା ସଙ୍ଗେ ସଙ୍ଗେ ଅଜ୍ଞାନର ନିବୃତ୍ତି ହୁଏ ଓ ଅଜ୍ଞାନର କାର୍ଯ୍ୟସ୍ୱରୂପ, ଯେ ଦେହ, ତାହାର ମଧ୍ୟ ପତନ ହୁଏ, ଏପରି ମାନିବାକୁ ହୁଏ, ତାହା ହେଲେ ନିମ୍ନଲିଖିତ ଆପତ୍ତିମାନ ହୋଇ ପାରେ । ଯଥା,—

୧ମ । ବ୍ରହ୍ମବିଦ୍ୟାର ସମ୍ପ୍ରଦାୟ ରହି ପାରନ୍ତା ନାହିଁ, ଅର୍ଥାତ୍ ତତ୍ତ୍ୱଜ୍ଞାନ ଉଦୟ ସଙ୍ଗେ ସଙ୍ଗେ ଶରୀର ପାତ ହେଲେ, କେହି କାହାରିକୁ ତତ୍ତ୍ୱଜ୍ଞାନର ଉପଦେଶ ଦେଇ ପାରନ୍ତେ ନାହିଁ, ସୁତରାଂ ସମ୍ପ୍ରଦାୟ ରହନ୍ତା କିପରି ? ଶ୍ରୀଭଗବାନ୍ ଏହି ଗୀତାର ୪ର୍ଥ ଅଧ୍ୟାୟ ୩୪ ଶ୍ଲୋକରେ କହିଅଛନ୍ତି, ଯେ "ଉପଦେକ୍ଷ୍ୟନ୍ତି ତେ ଜ୍ଞାନଂ ଜ୍ଞାନିନଃ ତତ୍ତ୍ୱଦର୍ଶିନଃ" ଅର୍ଥାତ୍ ତତ୍ତ୍ୱଦର୍ଶୀ ଜ୍ଞାନିମାନେ ତୁମ୍ଭଙ୍କୁ ତତ୍ତ୍ୱଜ୍ଞାନର ଉପଦେଶ ଦେବେ । ମାତ୍ର ଯଦି ଜ୍ଞାନ ଜାତ ସଙ୍ଗେ ସଙ୍ଗେ ଦେହପାତ ସ୍ୱୀକାର କରଯାଏ, ତେବେ ତତ୍ତ୍ୱଜ୍ଞାନିଙ୍କର ଅସ୍ତିତ୍ୱ ରହିବ କେଉଁଠି, ଯେ ସେ ଉପଦେଶ ଦେବେ ?

୨ୟ । ଜୀବନ୍ମୁକ୍ତିପ୍ରତିପାଦକ ଶ୍ରୁତିବାକ୍ୟମାନ ମିଥ୍ୟା ବା ଅସଙ୍ଗତ ହେବ । ସେ ଶ୍ରୁତିବାକ୍ୟମାନ ଯଥା,—"ବିମୁକ୍ତଶ୍ଚ ବିମୁଚ୍ୟତେ" ଅର୍ଥାତ୍ ତତ୍ତ୍ୱଜ୍ଞାନ ହେତୁରୁ ସାଧକ ମୁକ୍ତ ହୋଇଥିଲେ ସୁଦ୍ଧା, ପ୍ରାରବ୍ଧକର୍ମର ଫଳସ୍ୱରୂପ, ଯେ ଦେହ, ତାହାର ପତନ ପରେ ସେ, ବିଶେଷରୂପେ ମୁକ୍ତ ହୁଅନ୍ତି । ପୁଣି "ଭୂୟଶ୍ଚାନ୍ତେ ବିଶ୍ୱମାୟାନିବୃତ୍ତିଃ" ଅର୍ଥାତ୍ ସାଧକର ଅଜ୍ଞାନରୂପିଣୀ ମାୟା ତତ୍ତ୍ୱଜ୍ଞାନଦ୍ୱାରା ନିବୃତ୍ତ ହୋଇଥାଏ ସତ, ମାତ୍ର ସଂସ୍କାରରୂପରେ ରହିଥାଏ । ଦେହପାତ ପରେ ତାହା ସମ୍ପୂର୍ଣ୍ଣରୂପେ ନିବୃତ୍ତ ହୋଇଯାଏ, ଇତ୍ୟାଦି ।

ଉପରୋକ୍ତ ଶ୍ରୁତିବଚନମାନଙ୍କରୁ ସ୍ପଷ୍ଟ ଜଣା ଯାଉଅଛି, ଯେ ତତ୍ତ୍ୱଜ୍ଞାନ ଉଦୟ ଦିନଠାରୁ ଦେହପାତ ପର୍ଯ୍ୟନ୍ତ ସମୟକୁ "ଜୀବନ୍ମୁକ୍ତି" ଅବସ୍ଥା ବୋଲିଯାଏ । ତତ୍ତ୍ୱଜ୍ଞାନ ଜନ୍ମିଲା ମାତ୍ରକେ ଦେହପାତ ହୁଏ, ଏପରି ସ୍ୱୀକାର କଲେ, ଉକ୍ତ ଶ୍ରୁତିବାକ୍ୟର ଶ୍ରେଷ୍ଠତା ରହି ପାରିବ ନାହିଁ । ଏହି ସବୁ କାରଣରୁ ଅବଶ୍ୟ ସ୍ୱୀକାର କରିବାକୁ ହେବ, ଯେ ତତ୍ତ୍ୱଜ୍ଞାନ ଜନ୍ମିଲେ, ସାଧକ ଜୀବନ୍ମୁକ୍ତାବସ୍ଥା ଲାଭ କରନ୍ତି । ଅତଏବ "ତଦନନ୍ତରଂ" ଏହି ପଦର ଏଠାରେ 'ଦେହପାତ ଉତ୍ତାରୁ' ଏହି ଅର୍ଥ ଗ୍ରହଣ କରିବାକୁ ହେବ । ୫୫ ।

ଶ୍ଲୋକଃ ।

ସର୍ବକର୍ମାଣ୍ୟପି ସଦା, କୁର୍ବାଣୋ ମଦ୍‌ବ୍ୟପାଶ୍ରୟଃ ।
ମତ୍‌ପ୍ରସାଦାଦବାପ୍ନୋତି, ଶାଶ୍ୱତଂ ପଦମବ୍ୟୟଂ । ୫୬ ।

ଅନ୍ୱୟଃ ।

ସର୍ବକର୍ମାଣି ସଦା କୁର୍ବାଣଃ ଅପି ମଦ୍‌ବ୍ୟପାଶ୍ରୟଃ ମତ୍‌ପ୍ରସାଦାତ୍ ଶାଶ୍ୱତଂ ଅବ୍ୟୟଂ ପଦଂ ଅବାପ୍ନୋତି । ୫୬ ।

Digitized by PPRACHIN, SOA

### ଟୀକା ।

ସ୍ୱକର୍ମଭିଃ ପରମେଶ୍ୱରାରାଧନାଦୁକ୍ତଂ ମୋକ୍ଷପ୍ରକାରମୁପସଂହରତି, ସର୍ବକର୍ମାଣୀତି । ସର୍ବାଣି ନିତ୍ୟାନି ନୈମିତ୍ତିକାନି ଚ କର୍ମାଣି ପୂର୍ବୋକ୍ତେନ କ୍ରମେଣ ସର୍ବଦା କୁର୍ବାଣଃ ମଦ୍ୱ୍ୟପାଶ୍ରୟଃ ଅହମେବ ବ୍ୟପାଶ୍ରୟ ଆଶ୍ରୟଣୀୟୋ ନ ତୁ ସ୍ୱର୍ଗାଦି ଫଳଂ ଯସ୍ୟ ସ ମତ୍ପ୍ରସାଦାତ୍ ଶାଶ୍ୱତମନାଦି ଅବ୍ୟୟଂ ନିତ୍ୟଂ ସର୍ବୋତ୍କୃଷ୍ଟଂ ପଦଂ ପ୍ରାପ୍ନୋତି । ୫୬ ।

### ପଦବ୍ୟାଖ୍ୟା ।

ସର୍ବକର୍ମାଣି—ସମସ୍ତ କର୍ମମାନଙ୍କ, ଅପି—ମଧ୍ୟ, ସଦା—ସବୁ ସମୟରେ, କୁର୍ବାଣଃ—କଲେ, ମଦ୍ୱ୍ୟପାଶ୍ରୟଃ—କେବଳ ଆମ୍ଭଙ୍କୁ ଆଶ୍ରୟ କରି, ମତ୍ପ୍ରସାଦାତ୍—ଆମ୍ଭର ଅନୁଗ୍ରହରୁ, ଅବାପ୍ନୋତି—ପ୍ରାପ୍ତ ହୁଅନ୍ତି, ଶାଶ୍ୱତଂ—ଅନାଦି, ଅବ୍ୟୟଂ—ଅବିନାଶି, ପଦଂ—ଧାମ ବା ସ୍ଥାନକୁ । ୫୬ ।

### ଅନୁବାଦ ।

ଆମ୍ଭଙ୍କୁ ଆଶ୍ରୟ କରିଥିବା ବ୍ୟକ୍ତି, ସର୍ବଦା ସର୍ବକର୍ମ କରୁଥିଲେ ସୁଦ୍ଧା, ଆମ୍ଭ ଅନୁଗ୍ରହରୁ ଅନାଦି ଓ ଅବିନାଶି ମୋକ୍ଷପଦକୁ ପ୍ରାପ୍ତ ହୁଅନ୍ତି । ୫୬ ।

### ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନଙ୍କଠାରୁ ଗୀତାର ଉପଦେଶ ଶ୍ରବଣ କରି ଅର୍ଜୁନ ଏହା ବୁଝି ପାରିଲେ, ଯେ ଯେଉଁ ବ୍ୟକ୍ତି ଆତ୍ମତତ୍ତ୍ୱ ଅବଗତ ହୋଇ ନାହାନ୍ତି, ବା ଯାହାଙ୍କର ଅନ୍ତଃକରଣ-ଶୁଦ୍ଧି ହୋଇ ନାହିଁ, ତାହାଙ୍କ ପକ୍ଷରେ କର୍ମତ୍ୟାଗ ବିଧି ନୁହେ, ଅର୍ଥାତ୍ ସେ, କଦାପି କର୍ମତ୍ୟାଗ କରିବେ ନାହିଁ । ଆଉ ଯାହାଙ୍କର ଅନ୍ତଃକରଣ ବିଶୁଦ୍ଧ ହୋଇଅଛି, ସେ ସର୍ବକର୍ମ ପରିତ୍ୟାଗ-ରୂପ ସନ୍ନ୍ୟାସ ଅବଲମ୍ବନ କରି ଆତ୍ମଜ୍ଞାନ ଲାଭ କରିବେ । କର୍ମସନ୍ନ୍ୟାସରେ କେବଳ ଶୁଦ୍ଧା-ନ୍ତଃକରଣ ବ୍ରାହ୍ମଣ ଅଧିକାରୀ ଅଟନ୍ତି । କ୍ଷତ୍ରିୟ ଓ ବୈଶ୍ୟ ଏମାନେ କର୍ମତ୍ୟାଗର ଅଧିକାରୀ ନୁହନ୍ତି । ଏକଥା ଭଗବାନ୍ "କର୍ମଣୈବ ହି ସଂସିଦ୍ଧିମାସ୍ଥିତା ଜନକାଦୟଃ ।" ଇତ୍ୟାଦି ବଚନ-ରେ ୩ ଅଧ୍ୟାୟ ୨୦ ଶ୍ଳୋକରେ କହିଅଛନ୍ତି ।

ଏତେବେଳେ ଅର୍ଜୁନଙ୍କ ମନରେ ଏହି ସନ୍ଦେହ ହେଲା, ଯେ ଯେଉଁ କ୍ଷତ୍ରିୟ ଓ ବୈଶ୍ୟଙ୍କର ଅନ୍ତଃକରଣଶୁଦ୍ଧି ହୋଇଥିବ, ସେମାନେ କର୍ମ ଅନୁଷ୍ଠାନ କରିବେ ନା କର୍ମ-ତ୍ୟାଗରୂପ ସନ୍ନ୍ୟାସ ଅବଲମ୍ବନ କରିବେ? ଯେବେ କହ, ସେମାନଙ୍କର କର୍ମ ଅନୁଷ୍ଠାନ କରିବା ଉଚିତ, ତେବେ ତାହା ସଙ୍ଗତ ନୁହେ, କାହିଁକି ନା "ଆରୁରୁକ୍ଷୋର୍ମୁନେର୍ଯୋଗଂ କର୍ମ କାରଣମୁଚ୍ୟତେ । ଯୋଗାରୂଢସ୍ୟ ତସ୍ୟୈବ ଶମଃ କାରଣମୁଚ୍ୟତେ ।" ଇତ୍ୟାଦି ବଚନରେ (୬ ଅଧ୍ୟାୟ ୩ ଶ୍ଳୋକରେ) ବିଶୁଦ୍ଧାନ୍ତଃକରଣ ଯୋଗାରୂଢ଼ ବ୍ୟକ୍ତିଙ୍କ ପକ୍ଷରେ କର୍ମତ୍ୟାଗ ବିଧି ବୋଲି ଭଗବାନ୍ କହିଅଛନ୍ତି ।

ଯେବେ କହ, ଯେ ଶୁଦ୍ଧାନ୍ତଃକରଣ କ୍ଷତ୍ରିୟ ଓ ବୈଶ୍ୟଙ୍କର କର୍ମସନ୍ନ୍ୟାସହିଁ ଅବଲ-ମ୍ବନୀୟ, ତାହା ମଧ୍ୟ ଅସଙ୍ଗତ ହେବ, କାହିଁକି ନା "ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋଭୟା-ବହଃ ।" ଇତ୍ୟାଦି ବଚନରେ (୩ ଅଧ୍ୟାୟ ୩୫ ଶ୍ଳୋକ) କ୍ଷତ୍ରିୟ ଓ ବୈଶ୍ୟଙ୍କ ପକ୍ଷରେ କର୍ମସନ୍ନ୍ୟାସରୂପ ପରଧର୍ମ ନିଷେଧ କରା ହୋଇଅଛି । ପୁଣି କର୍ମାନୁଷ୍ଠାନ ଓ କର୍ମତ୍ୟାଗ ଏ ଦୁଇରୁ ପୃଥକ୍ ଅନ୍ୟ କୌଣସି ପ୍ରକାର ବିଧି ନାହିଁ, ଯାହା କି ଶୁଦ୍ଧାନ୍ତଃକରଣ କ୍ଷତ୍ରିୟ ଓ

Digitized by PPRACHIN, SOA

ବୈଷ୍ଣବମାନେ ପାଳନ କରନ୍ତି । ସୁତରାଂ କର୍ମ ଅନୁଷ୍ଠାନ ଓ କର୍ମତ୍ୟାଗ ଏ ଦୁଇଟିଯାକ ନିହିତ ଥିଲେ ମଧ୍ୟ, ଏଥିମଧ୍ୟରୁ ଗୋଟିକୁ ଅବଶ୍ୟ ଅବଲମ୍ବନ କରିବାକୁ ହେବ । ଏ ଦୁଇଟି ମଧ୍ୟରୁ କେଉଁଟି ଅବଲମ୍ବନ କରିବାକୁ ହେବ ? ଅର୍ଜୁନ ମନେ ମନେ ସ୍ଥିର କଲେ, ଯେ "କର୍ମଣା ବଧ୍ୟତେ ଜନ୍ତୁଃ" ଅର୍ଥାତ୍ କର୍ମାନୁଷ୍ଠାନ ସଂସାରବନ୍ଧନର ହେତୁ ଥିବାରୁ କର୍ମତ୍ୟାଗହିଁ ଅବଲମ୍ବନ କରିବା ଉଚିତ, ଅତଏବ ଯୁଦ୍ଧାଦି କର୍ମରେ ପ୍ରବୃତ୍ତି ହେବାର ଆବଶ୍ୟକ ନାହିଁ । ଅର୍ଜୁନଙ୍କର ଏହି ଅଭିପ୍ରାୟ ବୁଝି ପାରି ସର୍ବାନ୍ତର୍ଯ୍ୟାମୀ ଶ୍ରୀଭଗବାନ୍ କହୁଅଛନ୍ତି, ହେ ଅର୍ଜୁନ! ଯେଉଁ ବ୍ୟକ୍ତି ଆମ୍ଭଙ୍କୁ ଆଶ୍ରୟ କରିଥାନ୍ତି, ଆମ୍ଭ ଭିନ୍ନ ଅନ୍ୟ କୌଣସି ଦେବତା ବା ସ୍ୱର୍ଗାଦି ଫଳ ବାଞ୍ଛା ନ କରନ୍ତି, ସେ ସର୍ବଦା ନିତ୍ୟ ଓ ନୈମିତ୍ତିକାଦି କର୍ମର ଅନୁଷ୍ଠାନ କଲେ ସୁଦ୍ଧା, ଆମ୍ଭ ଅନୁଗ୍ରହରୁ ମୋକ୍ଷପଦ ଲାଭ କରନ୍ତି । ସେ ମୋକ୍ଷପଦ ଶାଶ୍ୱତ ଅଟେ, ଅର୍ଥାତ୍ ତାହାର ଆଦି ବା ଅନ୍ତ ନାହିଁ, ପୁଣି ତାହା 'ଅବ୍ୟୟ' ଅର୍ଥାତ୍ ବୃଦ୍ଧି, କ୍ଷୟ ଓ ପରିଣାମ ପ୍ରଭୃତି କୌଣସି ବିକାର ତହିଁରେ ନାହିଁ ଅତଏବ ତାହା ସର୍ବଶ୍ରେଷ୍ଠ ଅଟେ ଓ ଶ୍ରୁତିରେ ତାହା "ତଦ୍ୱିଷ୍ଣୋଃ ପରମଂ ପଦଂ" ଇତ୍ୟାଦି ରୂପରେ ବର୍ଣ୍ଣିତ ହୋଇଅଛି ।

ଫଳକଥା ଏହି କି କେବଳ ଭଗବାନଙ୍କ ଆଶ୍ରୟରେ କର୍ମ କରି ଅନ୍ୟ କୌଣସି ପ୍ରକାର ଫଳକାମନା ନ କରି ସମସ୍ତ କର୍ମ ସେହି ଭଗବାନଙ୍କଠାରେ ଅର୍ପଣ କଲେ, ତାହା ବନ୍ଧନର ହେତୁ ନୁହେଁ, ବରଂ ତହିଁରେ ଭଗବାନ୍ ସନ୍ତୁଷ୍ଟ ହୋଇ ଅନୁଷ୍ଠାନକାରୀକୁ ଶୀଘ୍ର ମୋକ୍ଷ ପ୍ରଦାନ କରନ୍ତି । କର୍ମସନ୍ନ୍ୟାସ ଅର୍ଥାତ୍ କର୍ମତ୍ୟାଗ କରିବା ବ୍ୟକ୍ତି ସନ୍ନ୍ୟାସଧର୍ମର କୌଣସି ପ୍ରକାର ଅଙ୍ଗହାନି କଲେ, ତାଙ୍କର ସେହି ପରମପଦ ମୋକ୍ଷ ଲାଭରେ ବିଲମ୍ବ ବା ସନ୍ଦେହ ହୋଇ ପାରେ, ମାତ୍ର ଭଗବତ୍ ଆଶ୍ରୟରେ ରହି କର୍ମ ଅନୁଷ୍ଠାନ ଓ ତାଙ୍କଠାରେ ଅର୍ପଣ କରୁଥିବା ବ୍ୟକ୍ତିଙ୍କର ସେହି ଭଗବତ୍‌ପ୍ରସାଦରୁ କୌଣସି ପ୍ରକାର ବାଧା ବିଘ୍ନ ଘଟେ ନାହିଁ । ଅତଏବ ହେ ଅର୍ଜୁନ! ଭଗବତ୍ ଅଧୀନରେ ରହି କର୍ମାନୁଷ୍ଠାନ କରିବା ତୁମ୍ଭ ପକ୍ଷରେ ବିଧେୟ ଅଟେ । ୫୬ ।

ଶ୍ଳୋକଃ ।

* ଚେତସା ସର୍ବକର୍ମାଣି, ମୟି ସନ୍ନ୍ୟସ୍ୟ ମତ୍ପରଃ ।

ବୁଦ୍ଧିଯୋଗମୁପାଶ୍ରିତ୍ୟ, ମଚ୍ଚିତ୍ତଃ ସତତଂ ଭବ । ୫୭ ।

ଅନ୍ୱୟଃ ।

ମତ୍ପରଃ (ସନ୍) ଚେତସା ସର୍ବକର୍ମାଣି ମୟି ସନ୍ନ୍ୟସ୍ୟ ବୁଦ୍ଧିଯୋଗଂ ଉପାଶ୍ରିତ୍ୟ ସତତଂ ମଚ୍ଚିତ୍ତଃ ଭବ । ୫୭ ।

ଟୀକା ।

ଯସ୍ମାଦେବଂ ତସ୍ମାତ୍ ଚେତସେତି । ସର୍ବାଣି କର୍ମାଣି ଚେତସା ମୟି ସନ୍ନ୍ୟସ୍ୟ ସମର୍ପ୍ୟ ମତ୍ପରଃ ଅହମେବ ପରଃ ପ୍ରାପ୍ୟଃ ପୁରୁଷାର୍ଥୋ ଯସ୍ୟ ସ ବ୍ୟବସାୟାତ୍ମିକୟା ବୁଦ୍ଧ୍ୟା ଯୋଗମୁପାଶ୍ରିତ୍ୟ ସତତଂ କର୍ମାନୁଷ୍ଠାନକାଲେଽପି ବ୍ରହ୍ମାର୍ପଣଂ ବ୍ରହ୍ମହବିରିତ୍ୟାଦିନ୍ୟାୟେନ ମୟ୍ୟେବ ଚିତ୍ତଂ ଯସ୍ୟ ତଥାଭୂତୋ ଭବ । ୫୭ ।

Digitized by PPRACHIN, SOA

ପଦବ୍ୟାଖ୍ୟା ।

ଚେତସା—ମନଦ୍ୱାରା, ସର୍ବକର୍ମାଣି—ସମସ୍ତ କର୍ମମାନଙ୍କୁ, ମୟି ସନ୍ନ୍ୟସ୍ୟ—ଅମ୍ଭଠାରେ ଅର୍ପଣ କରି, ମତ୍ପରଃ—ଅମ୍ଭଙ୍କୁ ପରମପୁରୁଷାର୍ଥ ଜ୍ଞାନ କରି, ବୁଦ୍ଧିଯୋଗଂ—ନିଶ୍ଚୟାତ୍ମିକା ବୁଦ୍ଧିଦ୍ୱାରା କର୍ମଯୋଗକୁ, ଉପାଶ୍ରିତ୍ୟ—ଅବଲମ୍ବନ କରି, ମଚ୍ଚିତ୍ତଃ—ଅମ୍ଭଠାରେ ନିବଦ୍ଧମନା, ସତତଂ ଭବ—ସର୍ବଦା ହୁଅ । ୫୭ ।

ଅନୁବାଦ ।

ଅମ୍ଭଙ୍କୁ ପରମ ପୁରୁଷାର୍ଥ ଜ୍ଞାନ କରି ମନଦ୍ୱାରା ସମସ୍ତ କର୍ମ ଅମ୍ଭଠାରେ ଅର୍ପଣ କର ଓ ବୁଦ୍ଧିଦ୍ୱାରା କର୍ମଯୋଗ ଅବଲମ୍ବନପୂର୍ବକ ସର୍ବଦା ଅମ୍ଭଠାରେ ମନୋନିବେଶ କର । ୫୭ ।

ତତ୍ତ୍ୱବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ ଶ୍ରୀଭଗବାନ୍ ଅର୍ଜୁନଙ୍କୁ ବୁଝାଇ ଦେଲେ, ଯେ ଏକମାତ୍ର ଶ୍ରୀପରମେଶ୍ୱରଙ୍କଠାରେ ଶରଣ ପଶିବାହିଁ ମୋକ୍ଷପ୍ରାପ୍ତିର ଉପାୟ, କର୍ମତ୍ୟାଗ ବା କର୍ମାନୁଷ୍ଠାନ ମୋକ୍ଷର କାରଣ ନୁହେ । ଏ ଶ୍ଳୋକରେ କହୁଅଛନ୍ତି, ହେ ଅର୍ଜୁନ! ତୁମ୍ଭେ 'ମତ୍ପର' ହୁଅ ଅର୍ଥାତ୍ କେବଳ ଅମ୍ଭଙ୍କୁ ପରମପୁରୁଷାର୍ଥ ବା ସର୍ବୋତ୍ତମ ପ୍ରାପ୍ୟ ବୋଲି ଜ୍ଞାନ କର । ଫଳତଥା ଏହି ଯେ, ତୁମ୍ଭେ ଯେଉଁ କର୍ମ କରିବ, ତାହା କେବଳ ଅମ୍ଭଙ୍କୁ ପାଇବା ଉଦ୍ଦେଶ୍ୟରେ ଅନୁଷ୍ଠାନ କର, ଅନ୍ୟ କୌଣସି ଫଳକାମନା କର ନାହିଁ । ବିବେକବୁଦ୍ଧିଦ୍ୱାରା ସମସ୍ତ କର୍ମ ଅର୍ଥାତ୍ ନିତ୍ୟ, ନୈମିତ୍ତିକ ଓ କାମ୍ୟାଦି ଯାବତୀୟ କର୍ମ, ଯାହା ତୁମ୍ଭେ ଅନୁଷ୍ଠାନ କରିବ, ତାହା "ବ୍ରହ୍ମାର୍ପଣଂ ବ୍ରହ୍ମହବିର୍ବ୍ରହ୍ମାଗ୍ନୌ ବ୍ରହ୍ମଣାହୁତଂ" ଇତ୍ୟାଦି ବଚନ ଅନୁସାରେ ଅମ୍ଭଠାରେ ଅର୍ପଣ କର । ପୁଣି ଏହି ଅଧ୍ୟାୟର ୫୪ ଶ୍ଳୋକରେ ଯେଉଁ ସମଭାବ ବା ସର୍ବାତ୍ମଦୃଷ୍ଟିରୂପ ବୁଦ୍ଧିଯୋଗର କଥା ଲେଖା ହୋଇଅଛି, ସେହି ବୁଦ୍ଧିଯୋଗ ଆଶ୍ରୟ କର, ଏବଂ ରାଜ୍ୟରେ ବା ଧନାଦିରେ ଅଥବା ସ୍ତ୍ରୀ ପୁତ୍ରାଦିରେ କିମ୍ବା ସ୍ୱର୍ଗାଦିରେ ଚିତ୍ତ ନ ରଖି ସର୍ବଦା ଅର୍ଥାତ୍ କର୍ମ ଅନୁଷ୍ଠାନ କଲାବେଳେ ଓ କର୍ମ ନ କରୁଥିବା ସମୟରେ ମଧ୍ୟ, କେବଳ ଅମ୍ଭରଠାରେ ଚିତ୍ତ ରଖ, ଅର୍ଥାତ୍ ମନରେ ସର୍ବଦା ଅମ୍ଭଙ୍କୁ ସ୍ମରଣ କର । ତାହା ହେଲେ, ତୁମ୍ଭେ, ଯେଉଁ କର୍ମକୁ ସଂସାରବନ୍ଧନର ହେତୁ ବୋଲି ମନେ କରି ତ୍ୟାଗ କରିବାକୁ ଇଚ୍ଛା କରୁଅଛ, ସେହି କର୍ମ ତୁମ୍ଭର ମୋକ୍ଷପ୍ରାପ୍ତିର ଅନୁକୂଳ ହେବ । ଅତଏବ ତୁମ୍ଭର ସ୍ୱଧର୍ମ ଅନୁଷ୍ଠାନ କରିବାହିଁ ଉଚିତ ଅଟେ ।

ଶ୍ରୀଭଗବାନ୍ ୨ୟ ଅଧ୍ୟାୟର ୩୯ ଶ୍ଳୋକରେ "ଏଷା ତେଽଭିହିତା ସାଂଖ୍ୟେ ବୁଦ୍ଧିର୍ଯୋଗେ ତ୍ୱିମାଂ ଶୃଣୁ" ଇତ୍ୟାଦି ବଚନରେ ଯେଉଁ ବୁଦ୍ଧିର ଉପକ୍ରମ କରିଥିଲେ, ଏ ଶ୍ଳୋକରେ ସେହି ବୁଦ୍ଧିର ଉପସଂହାର କଲେ । ୫୭ ।

ଶ୍ଳୋକଃ ।

* ମଚ୍ଚିତ୍ତଃ ସର୍ବଦୁର୍ଗାଣି, ମତ୍ପ୍ରସାଦାତ୍ତରିଷ୍ୟସି ।
ଅଥ ଚେତ୍ତ୍ୱମହଙ୍କାରା,ନ୍ନ ଶ୍ରୋଷ୍ୟସି ବିନଙ୍କ୍ଷ୍ୟସି । ୫୮ ।

Digitized by PPRACHIN, SOA

### ଅନ୍ୱୟଃ ।

ମଚ୍ଚିତ୍ତଃ ମତ୍ପ୍ରସାଦାତ୍ ସର୍ବଦୁର୍ଗାଣି ତରିଷ୍ୟସି, ଅଥ ତ୍ୱଂ ଅହଂକାରାତ୍ ନ ଶ୍ରୋଷ୍ୟସି ଚେତ୍ ବିନଂକ୍ଷ୍ୟସି । ୫୮ ।

### ଟୀକା ।

ତତୋ ଯଦ୍ଭବିଷ୍ୟତି ତଦ୍ଦର୍ଶୟନ୍ ମଚ୍ଚିତ୍ତ ଇତି । ମଚ୍ଚିତ୍ତଃ ସନ୍ ମତ୍ପ୍ରସାଦାତ୍ ସର୍ବାଣ୍ୟପି ଦୁର୍ଗାଣି ଦୁସ୍ତରାଣି ସାଂସାରିକଦୁଃଖାନି ତରିଷ୍ୟସି, ବିପକ୍ଷେ ଦୋଷମାହ । ଅଥ ଚେତ୍ ଯଦି ତ୍ୱମହଂକାରାତ୍ ଜ୍ଞାତୃତ୍ୱାଭିମାନାତ୍ ମଦୁକ୍ତମେବଂ ନ ଶ୍ରୋଷ୍ୟସି ତର୍ହି ବିନଂକ୍ଷ୍ୟସି ପୁରୁଷାର୍ଥାଦ୍ଭ୍ରଷ୍ଟୋ ଭବିଷ୍ୟସି । ୫୮ ।

### ପଦବ୍ୟାଖ୍ୟା ।

ମଚ୍ଚିତ୍ତଃ—ଆମ୍ଭଠାରେ ଚିତ୍ତ ସମର୍ପଣ କଲେ, ସର୍ବଦୁର୍ଗାଣି—ସକଳ ପ୍ରକାର ସାଂସାରିକ ଦୁଃଖକୁ, ମତ୍ପ୍ରସାଦାତ୍—ଆମ୍ଭ ଅନୁଗ୍ରହରୁ, ତରିଷ୍ୟସି—ଉତ୍ତୀର୍ଣ୍ଣ ହେବ, ଅଥ—ପୁଣି, ଚେତ୍—ଯେବେ, ତ୍ୱଂ—ତୁମ୍ଭେ, ଅହଂକାରାତ୍ 'ମୁଁ ଜ୍ଞାନୀ' ଏପରି ଅଭିମାନରୁ, ନ ଶ୍ରୋଷ୍ୟସି—ନ ଶୁଣିବ, ବିନଂକ୍ଷ୍ୟସି—ବିନଷ୍ଟ ହେବ ଅର୍ଥାତ୍ ପୁରୁଷାର୍ଥଭ୍ରଷ୍ଟ ହେବ । ୫୮ ।

### ଅନୁବାଦ ।

ଆମ୍ଭଠାରେ ଚିତ୍ତ ସମର୍ପଣ କଲେ, ଆମ୍ଭ ଅନୁଗ୍ରହରୁ ସବୁ ଦୁଃଖରୁ ପାର ହେବ । ଆଉ ଯେବେ ଅହଂକାର ହେତୁରୁ (ଆମ୍ଭ କଥା) ନ ଶୁଣିବ, (ତେବେ) ତୁମ୍ଭେ ନଷ୍ଟ ହେବ । ୫୮ ।

### ବିଷଦବ୍ୟାଖ୍ୟା ।

ହେ ଅର୍ଜ୍ଜୁନ ! ପୂର୍ବ ଶ୍ଳୋକରେ ଆମ୍ଭଠାରେ ଚିତ୍ତ ସମର୍ପଣ କରିବାର ଯେଉଁ ପ୍ରଣାଳୀ ଆମ୍ଭେ କହିଅଛୁଁ, ତୁମ୍ଭେ ଯଦି ସେହି ଅନୁସାରେ ଆମ୍ଭଠାରେ ଚିତ୍ତ ସମର୍ପଣ କରିବ, ତାହା ହେଲେ, ଆମ୍ଭ ଅନୁଗ୍ରହରେ ସଂସାରର ଦୁର୍ବାରବାର ଦୁସ୍ତର ଦୁଃଖରୁ ଅର୍ଥାତ୍ ସାଂସାରିକ ଦୁଃଖପ୍ରାପ୍ତିର ହେତୁସ୍ୱରୂପ, ଯେ କାମ, କ୍ରୋଧ, ମଦ, ମୋହ, ଲୋଭ ଓ ଦ୍ୱେଷାଦି ଶତ୍ରୁମାନେ ଅଛନ୍ତି, ତାଙ୍କ ହସ୍ତରୁ ପରିତ୍ରାଣ ପାଇବ । ଆଉ ଯଦି ତୁମ୍ଭେ ଆପଣାକୁ ଜ୍ଞାନୀ ଓ ପଣ୍ଡିତ ମଣି ଆମ୍ଭ କଥାରେ ଅବହେଳା କରିବ, ଅର୍ଥାତ୍ ତୁମ୍ଭର ଅବଶ୍ୟ କର୍ତ୍ତବ୍ୟ ଯେ ଯୁଦ୍ଧାଦି ସ୍ୱଧର୍ମ, ତାହା ତ୍ୟାଗ କରି ସନ୍ନ୍ୟାସାଦି ପରଧର୍ମ ଅବଲମ୍ବନ କରିବ, ତାହା ହେଲେ, ତୁମ୍ଭେ ବିନଷ୍ଟ ହେବ, ଅର୍ଥାତ୍ ତୁମ୍ଭର ପୁରୁଷାର୍ଥ ପ୍ରାପ୍ତି ହେବ ନାହିଁ, ବରଂ ଅଧୋଗତି ହେବ । ଶ୍ରୀଭଗବାନ୍ ୨ୟ ଅଧ୍ୟାୟର ୩୩ ଶ୍ଳୋକରେ "ଅଥ ଚେତ୍ତ୍ୱମିମଂ ଧର୍ମ୍ମ୍ୟଂ ସଂଗ୍ରାମଂ ନ କରିଷ୍ୟସି" ଇତ୍ୟାଦି ବଚନରେ ଯେଉଁ ସ୍ୱଧର୍ମ ପାଳନ କଥାର ଉପକ୍ରମ କରିଥିଲେ, ଏ ଶ୍ଳୋକରେ ତାହାର ଉପସଂହାର କଲେ । ୫୮ ।

### ଶ୍ଳୋକଃ ।

ଯଦହଂକାରମାଶ୍ରିତ୍ୟ, ନ ଯୋତ୍ସ୍ୟ ଇତି ମନ୍ୟସେ ।
ମିଥ୍ୟୈବ ବ୍ୟବସାୟସ୍ତେ, ପ୍ରକୃତିସ୍ତ୍ୱାଂ ନିୟୋକ୍ଷ୍ୟତି । ୫୯ ।

Digitized by PPRACHIN, SOA

ଅନ୍ୱୟଃ ।

ଅହଂକାରଂ ଆଶ୍ରିତ୍ୟ ନ ଯୋତ୍ସ୍ୟେ ଇତି ଯତ୍ ମନ୍ୟସେ, ତେ (ଏଷଃ) ବ୍ୟବସାୟଃ ମିଥ୍ୟା ଏବ, ପ୍ରକୃତିଃ ତ୍ୱାଂ ନିୟୋକ୍ଷ୍ୟତି । ୫୯ ।

ଟୀକା ।

ତ୍ୱାନଂ ବନଂଖ୍ୟାମି, କିଂ ତୁ ବଳିପୂର୍ବକଂ ତତ୍‌ଷ୍ୟାମୀତି ଚେତ୍ ତତ୍ରାହ । ଯଦହଂକାରମିତି । ମଦୁକ୍ତମନାଦୃତ୍ୟ କେବଳମହଂକାରମବଲମ୍ବ୍ୟ ଯୁଦ୍ଧଂ ନ କରିଷ୍ୟାମୀତି ଯନ୍ମନ୍ୟସେ ତ୍ୱମଧ୍ୟବସ୍ୟସି । ଏଷ ତବ ବ୍ୟବସାୟୋ ମିଥ୍ୟୈବାସ୍ୱତନ୍ତ୍ରତ୍ୱାତ୍ । ତଦେବାହ ପ୍ରକୃତିସ୍ତ୍ୱାଂ ରଜୋଗୁଣରୂପେଣ ପରିଣତା ସତୀ ନିୟୋକ୍ଷ୍ୟତି ଯୁଦ୍ଧେ ପ୍ରବର୍ତ୍ତୟିଷ୍ୟତ୍ୟେବ । ୫୯ ।

ପଦବ୍ୟାଖ୍ୟା ।

ଯତ୍—ଯାହା, ଅହଂକାରଂ—ଗର୍ବକୁ, ଆଶ୍ରିତ୍ୟ—ଆଶ୍ରୟ କରି, ନ ଯୋତ୍ସ୍ୟେ ଇତି—ଯୁଦ୍ଧ କରିବି ନାହିଁ ବୋଲି, ମନ୍ୟସେ—ମନେ କରୁଅଛ, ମିଥ୍ୟା—ମିଛ—ବୃଥା, ଏବ—ନିଶ୍ଚୟ, ବ୍ୟବସାୟଃ—ମନେ କରିବାରୂପ ପରିଶ୍ରମ, ତେ—ତୁମ୍ଭର, ପ୍ରକୃତିଃ—ସ୍ୱଭାବ, ତ୍ୱାଂ—ତୁମ୍ଭକୁ, ନିୟୋକ୍ଷ୍ୟତି—ନିଯୁକ୍ତ କରିବ । ୫୯ ।

ଅନୁବାଦ ।

ତୁମ୍ଭେ ଅହଂକାର ଆଶ୍ରୟ କରି "ମୁଁ ଯୁଦ୍ଧ କରିବି ନାହିଁ" ବୋଲି ଯାହା ମନେ କରୁଅଛ, ତୁମ୍ଭର ଏ ବ୍ୟବସାୟ ବୃଥା । (କାହିଁକି ନା) କ୍ଷତ୍ରିୟସ୍ୱଭାବ ତୁମ୍ଭକୁ (ବଳପୂର୍ବକ ଯୁଦ୍ଧରେ) ନିଯୁକ୍ତ କରିବ । ୫୯ ।

ସରଳବ୍ୟାଖ୍ୟା ।

ଯାକେ ଅର୍ଜ୍ଜୁନ ମନେ କରନ୍ତି, ଯେ ମୁଁ ପୁରୁଷାର୍ଥଭ୍ରଷ୍ଟ ହେଲେ ହେବି ପଛକେ, ବନ୍ଧୁବଧାଦିରୂପ ନିଷ୍ଠୁର ଯୁଦ୍ଧକାର୍ଯ୍ୟ କରିବି ନାହିଁ, ସେଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ହେ ଅର୍ଜ୍ଜୁନ । ତୁମ୍ଭେ ଆପଣାକୁ ପଣ୍ଡିତ ଓ ଧର୍ମ୍ମାତ୍ମା ଜାଣି, ଯେ ବୃଥାଭିମାନ କରୁଅଛ ଓ ନିଷ୍ଠୁର କାର୍ଯ୍ୟ, ଯେ ଯୁଦ୍ଧାଦି ତାହା କରିବି ନାହିଁ ବୋଲି ମନେ କରୁଅଛ, ତୁମ୍ଭର ସେହି ବ୍ୟବସାୟ ଅର୍ଥାତ୍ ନିଶ୍ଚୟବୁଦ୍ଧି ବୃଥା ହେବ । ଅର୍ଥାତ୍ ସେହି ନିଶ୍ଚୟବୁଦ୍ଧି ତୁମ୍ଭର ରହି ପାରିବ ନାହିଁ । ଯେଉଁ ରଜୋଗୁଣର ଆଧିକ୍ୟ ହେତୁ କ୍ଷତ୍ରିୟଜାତିର ଉତ୍ପତ୍ତି, ସେହି ରଜୋଗୁଣୀ ସ୍ୱଭାବ ତୁମ୍ଭକୁ ଯୁଦ୍ଧରେ ପ୍ରବୃତ୍ତ କରାଇବ, ଅର୍ଥାତ୍ ଯୁଦ୍ଧସ୍ଥଳରେ ବିପକ୍ଷଦଳର ଅସ୍ତ୍ରଶସ୍ତ୍ରଦ୍ୱାରା ତୁମ୍ଭର ନିଜ ପକ୍ଷର କେହି ହତ ବା ଆହତ ହେଲେ, ତୁମ୍ଭେ ଅପମାନ ସହ୍ୟ କରି ନ ପାରି କ୍ଷତ୍ରିୟସ୍ୱଭାବବଳରେ ଆପଣାର ଧାର୍ମିକତା ଭୁଲି ଯାଇ ଯୁଦ୍ଧରେ ପ୍ରବୃତ୍ତ ହେବ । ୫୯ ।

ଶ୍ଳୋକଃ ।

ସ୍ୱଭାବଜେନ କୌନ୍ତେୟ, ନିବଦ୍ଧଃ ସ୍ୱେନ କର୍ମଣା ।
କର୍ତ୍ତୁଂ ନେଚ୍ଛସି ଯନ୍ମୋହାତ୍, କରିଷ୍ୟସ୍ୟବଶୋଽପି ତତ୍ । ୬୦।

ଅନ୍ୱୟଃ ।

ହେ କୌନ୍ତେୟ । ମୋହାତ୍ ଯତ୍ କର୍ତ୍ତୁଂ ନ ଇଚ୍ଛସି ସ୍ୱଭାବଜେନ ସ୍ୱେନ କର୍ମଣା ନିବଦ୍ଧଃ ଅବଶଃ (ସନ୍) ତତ୍ ଅପି କରିଷ୍ୟସି । ୬୦ ।

## ଟୀକା ।

ସ୍ୱଭାବେନ । ସ୍ୱଭାବଃ କ୍ଷତ୍ରିୟତ୍ୱହେତୁଃ ପୂର୍ବସଂସ୍କାରଃ ତସ୍ମାତ୍ ଜାତେନ ସ୍ୱୀୟେନ କର୍ମଣା ଶୌର୍ଯ୍ୟାଦିନା ପୂର୍ବୋକ୍ତେନ ନିବଦ୍ଧୋ ଯନ୍ତ୍ରିତଃ ତ୍ୱଂ ମୋହାତ୍ ଯତ୍ କର୍ମ ଯୁଦ୍ଧଲକ୍ଷଣଂ କର୍ତ୍ତୁଂ ନେଚ୍ଛସି ଅବଶଃ ସଂସ୍ତତ୍ କର୍ମ କରିଷ୍ୟସ୍ୟେବ । ୬୦ ।

## ପଦବ୍ୟାଖ୍ୟା ।

ସ୍ୱଭାବଜେନ—ସ୍ୱାଭାବିକ—ସହଜ, କୌନ୍ତେୟ—ହେ କୁନ୍ତୀପୁତ୍ର ଅର୍ଜୁନ !, ନିବଦ୍ଧଃ—ଆବଦ୍ଧ, ସ୍ୱେନ କର୍ମଣା—ସ୍ୱକୀୟ କର୍ମଦ୍ୱାରା, କର୍ତ୍ତୁଂ ନେଚ୍ଛସି—କରିବାକୁ ଇଚ୍ଛା କରୁ ନାହିଁ, ଯତ୍—ଯେଉଁ କର୍ମ, ମୋହାତ୍—ମୋହହେତୁରୁ, କରିଷ୍ୟସି—କରିବ, ଅବଶଃ—ଅନାୟତ୍ତ ହୋଇ, ଅପି—ମଧ, ତତ୍—ତାହା । ୬୦ ।

## ଅନୁବାଦ ।

ହେ କୌନ୍ତେୟ ! ମୋହ ହେତୁରୁ (ବର୍ତ୍ତମାନ) ତୁମ୍ଭେ ଯେଉଁ କର୍ମ କରିବାକୁ ଅନିଚ୍ଛୁକ ହେଉଅଛ, ଶେଷରେ ନିଜର ସ୍ୱାଭାବିକ ଗୁଣର ବଶୀଭୂତ ହୋଇ ସେହି କର୍ମ ଅବଶ୍ୟ କରିବ । ୬୦ ।

## ବିଶଦବ୍ୟାଖ୍ୟା ।

ହେ କୁନ୍ତୀପୁତ୍ର ଅର୍ଜୁନ । ତୁମ୍ଭେ ଯେ ଆପଣାକୁ ସ୍ୱାଧୀନ ବୋଲି ମନେ କରୁଅଛ ଏବଂ ସେହି ସ୍ୱାଧୀନତା ବଳରେ ତୁମ୍ଭେ ଯାହା ଇଚ୍ଛା କରିବ, ତାହା ସମ୍ପାଦନ କରି ପାରିବ ବୋଲି ଭରସା ରଖିଅଛ, ସେଥିରୁ ତୁମ୍ଭର ମୋହ ଅଛି । ସେହି ମୋହ ହେତୁରୁ ବନ୍ଧୁବଧାଦିର କାରଣସ୍ୱରୂପ ଏ ଯୁଦ୍ଧକାର୍ଯ୍ୟ ତୁମ୍ଭେ କରିବ ନାହିଁ ବୋଲି ସ୍ଥିର କରିଅଛ, ମାତ୍ର ତୁମ୍ଭେତ ସ୍ୱାଧୀନ ନୁହ, ତୁମ୍ଭେ କ୍ଷତ୍ରିୟସ୍ୱଭାବରୁ ଉତ୍ପନ୍ନ ଶୌର୍ଯ୍ୟାଦି ଗୁଣମାନଙ୍କର ଅଧୀନ ଅଛ । ଅତଏବ ତୁମ୍ଭେ ଯୁଦ୍ଧ କରିବାକୁ ଇଚ୍ଛା ନ କରୁଥିଲେ ସୁଦ୍ଧା, ସେହି କ୍ଷତ୍ରିୟପ୍ରକୃତିଜାତ ଶୌର୍ଯ୍ୟାଦି ଗୁଣଦ୍ୱାରା ଅବଶ ଅର୍ଥାତ୍ ବାଧ୍ୟ ହୋଇ ଅବଶ୍ୟ ଯୁଦ୍ଧକାର୍ଯ୍ୟ କରିବ । ଏହି ଗୀତାର ୩ୟ ଅଧ୍ୟାୟ ୫ମ ଶ୍ଳୋକରେ "କାର୍ଯ୍ୟତେ ହ୍ୟବଶଃ କର୍ମ ସର୍ବଃ ପ୍ରକୃତିଜୈର୍ଗୁଣୈଃ" ଇତ୍ୟାଦି ବଚନରେ ଯେଉଁ ପ୍ରକୃତିର ପ୍ରବଳତାର ଉପକ୍ରମ କରା ଯାଇଥିଲା, ଏ ଶ୍ଳୋକରେ ସେହି ପ୍ରକୃତିପ୍ରବଳତାର ଉପସଂହାର କରାଗଲା । ୬୦ ।

## ଶ୍ଳୋକଃ ।

* ଈଶ୍ୱରଃ ସର୍ବଭୂତାନାଂ, ହୃଦ୍ଦେଶେଽର୍ଜୁନ ତିଷ୍ଠତି ।
ଭ୍ରାମୟନ୍ ସର୍ବଭୂତାନି, ଯନ୍ତ୍ରାରୂଢାନି ମାୟୟା । ୬୧ ।

## ଅନ୍ୱୟଃ ।

ହେ ଅର୍ଜୁନ ! ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେ ତିଷ୍ଠତି (କିଂ କୁର୍ବନ୍ ?) ଯନ୍ତ୍ରାରୂଢାନି ସର୍ବଭୂତାନି ମାୟୟା ଭ୍ରାମୟନ୍ । ୬୧ ।

## ଟୀକା ।

ତଦେବ ଶ୍ଳୋକଦ୍ୱୟେନ ବ୍ୟାଖ୍ୟାଦମଦେନ ପ୍ରକୃତିପାରତନ୍ତ୍ର୍ୟଂ ସ୍ୱଭାବପାରତନ୍ତ୍ର୍ୟଂ ପ୍ରୋକ୍ତଂ ଇଦାନୀଂ ପ୍ରମତନାତ୍ ।

Digitized by PPRACHIN, SOA

ଈଶ୍ୱର ଇତି ତାଭ୍ୟାଂ । ସର୍ବଭୂତାନାଂ ହୃଦ୍ଦେଶେ ଈଶ୍ୱରୋଽନ୍ତର୍ଯ୍ୟାମୀ ତିଷ୍ଠତି, କିଂ କୁର୍ବନ୍ ସର୍ବାଣି ଭୂତାନି ମାୟୟା ନିଜଶକ୍ତ୍ୟା ଭ୍ରାମୟନ୍ ତତ୍ତତ୍କର୍ମସୁ ପ୍ରବର୍ତ୍ତୟନ୍, ଯଥା ଦାରୁଯନ୍ତ୍ରମାରୂଢ଼ାନି କୃତ୍ରିମାଣି ଭୂତାନି ସୂତ୍ରଧାରୋ ଲୋକେ ଭ୍ରାମୟତି ତଦ୍ୱଦିତ୍ୟର୍ଥଃ । ୬୧ ।

ପଦବ୍ୟାଖ୍ୟା ।

ଈଶ୍ୱରଃ—ପରମେଶ୍ୱର, ସର୍ବଭୂତାନାଂ—ସମସ୍ତ ପ୍ରାଣିଙ୍କର, ହୃଦ୍ଦେଶେ—ଅନ୍ତଃକରଣରେ, ଅର୍ଜ୍ଜୁନ—ହେ ଅର୍ଜ୍ଜୁନ !, ତିଷ୍ଠତି—ଅବସ୍ଥିତ ହୋଇଅଛନ୍ତି, ଭ୍ରାମୟନ୍—ଭ୍ରମଣ କରାଇ, ସର୍ବଭୂତାନି—ସମସ୍ତ ପ୍ରାଣିମାନଙ୍କୁ, ଯନ୍ତ୍ରାରୂଢ଼ାନି—ଯନ୍ତ୍ରସ୍ଥିତ ପିତୁଳା ପରି, ମାୟୟା—ଆପଣାର ମାୟା ନାମ୍ନୀ ଶକ୍ତି ଦ୍ୱାରା । ୬୧ ।

ଅନୁବାଦ ।

ହେ ଅର୍ଜ୍ଜୁନ ! ଈଶ୍ୱର ସମସ୍ତ ପ୍ରାଣିମାନଙ୍କ ହୃଦୟରେ ଅବସ୍ଥାନ କରି, ସେମାନଙ୍କୁ ଯନ୍ତ୍ରାରୂଢ଼ ପିତୁଳା ପରି ମାୟାଦ୍ୱାରା ଭ୍ରମଣ କରାଉଅଛନ୍ତି । ୬୧ ।

ବିଶଦବ୍ୟାଖ୍ୟା ।

ହେ ଅର୍ଜ୍ଜୁନ ! ପରମେଶ୍ୱର ସମସ୍ତ ପ୍ରାଣିଙ୍କ ଅନ୍ତଃକରଣରେ ସ୍ଥିତ ହୋଇଅଛନ୍ତି । ଯେପରି ସୂର୍ଯ୍ୟ ସମସ୍ତ ପଦାର୍ଥର ପ୍ରକାଶକ ହେଲେ ସୁଦ୍ଧା, ଦର୍ପଣାଦି ସ୍ୱଚ୍ଛପଦାର୍ଥରେ ତାଙ୍କର କିରଣ ଅଧିକ ପ୍ରତିବିମ୍ବିତ ହୁଏ, ସେହିପରି ପରମେଶ୍ୱର ସର୍ବବ୍ୟାପକ ହେଲେ ମଧ୍ୟ, ପ୍ରାଣିମାନଙ୍କର ଅନ୍ତଃକରଣରେ ବିଶେଷରୂପେ ପ୍ରକାଶିତ ହୁଅନ୍ତି ।

ଯେପରି ସୂତ୍ରଧର ଅର୍ଥାତ୍ ଯନ୍ତ୍ରନିର୍ମାଣକାରୀ କାଷ୍ଠାଦିରେ ମନୁଷ୍ୟ, ବ୍ୟାଘ୍ର ଓ ହରିଣାଦି ପିତୁଳାମାନ ପ୍ରସ୍ତୁତ କରି ସେମାନଙ୍କୁ ଯନ୍ତ୍ର (କଳ)ରେ ଲଗାଇ ବୁଲାଏ, ସେହିପରି ପରମେଶ୍ୱର ସମସ୍ତ ଦେହାଭିମାନୀ ପ୍ରାଣିମାନଙ୍କୁ ମାୟାରୂପ ଯନ୍ତ୍ରରେ ସଂସ୍ଥାପିତ (ଲଗାଇ) କରି ଶୁଭାଶୁଭ କର୍ମାନୁସାରେ ଉତ୍ତମ ବା ଅଧମ ଯୋନିରେ ଭ୍ରମଣ କରାଉଅଛନ୍ତି । ଯେପରି ଘଟିକାଯନ୍ତ୍ର (କଳଘଡ଼ୀ)ରେ ଘଣ୍ଟା ମିନିଟ୍ ଓ ସେକଣ୍ଡ ଦେଖାଇବାକୁ ଭିନ୍ନ ଭିନ୍ନ କଣ୍ଟା ଅଛି ବୋଲି ସେମାନେ ଭିନ୍ନ ଭିନ୍ନ ଚକଦ୍ୱାରା ଚାଳିତ ହେଉଅଛନ୍ତି, ସେହି ଘଟିକାଯନ୍ତ୍ରରେ 'ଦମ' ଦେଲେ 'ସ୍ପ୍ରିଂ'ର ସଙ୍କୋଚନ ଓ ପ୍ରସାରଣ ଅନୁସାରେ ସମସ୍ତ କଣ୍ଟା ଗୁଡ଼ିକ ନିଜ ନିଜ କର୍ମ୍ମ (ଚକ୍ର) ଅନୁସାରେ ଚାଳିତ ହୁଏ । ସେହିପରି ଜଗତ୍‌କୁ ଗୋଟିଏ 'ଘଡ଼ୀ' ବୋଲି କଳ୍ପନା କଲେ, ଈଶ୍ୱରସତ୍ତା ତହିଁରେ 'ଦମ' ସ୍ୱରୂପ ଓ ମାୟା 'ସ୍ପ୍ରିଂ' ସଦୃଶ ଅଟେ । ଦେହାଭିମାନୀ ପ୍ରାଣିମାନେ ସମୟନିରୂପକ କଣ୍ଟା ତୁଲ୍ୟ ଏବଂ ସେମାନଙ୍କ ପୂର୍ବକୃତ କର୍ମ କଣ୍ଟାସବୁଗୁଡ଼ିକର ଚକ୍ର ସମାନ ଅଟେ । କଳ୍ପନାକୁ ଆଉ କିଛି ଦୂର ଅଗ୍ରଗାମିନୀ କଲେ ଘଟିକାଯନ୍ତ୍ରରୁ ଜୀବଜଗତ୍ ସମ୍ବନ୍ଧରେ ଅଦ୍ଭୁତ ଉପମା ସଂଗ୍ରହ କରି ଯାଇପାରେ । ଯଥା—ସେକଣ୍ଡ କଣ୍ଟା ଅତି ଅସ୍ଥିର ଅଟେ, ଅର୍ଥାତ୍ କୌଣସି ଏକ ସ୍ଥାନରେ ସ୍ଥିର ରହି ପାରେ ନାହିଁ । ତାହା ତମୋଗୁଣୀ ଜୀବର ଉଦାହରଣ । କାହିଁକି ନା ତମୋଗୁଣୀ ଜୀବ ସ୍ୱଭାବର ନିତାନ୍ତ ଅଧୀନ ଅଟେ, ତାହାର ନିଜ ମତରେ ସ୍ଥିର ରହିବାର କ୍ଷମତା ନ ଥାଏ । ମିନିଟ କଣ୍ଟା, ସେକଣ୍ଡ କଣ୍ଟା ଅପେକ୍ଷା ସ୍ଥିରତର ଓ ଘଣ୍ଟା କଣ୍ଟା ଅପେକ୍ଷା ଅଧିକ ଚଞ୍ଚଳ । ତାହା ରଜୋଗୁଣୀ ଜୀବର ଉଦାହରଣ । କାହିଁକି ନା ରଜୋଗୁଣୀ ବ୍ୟକ୍ତି ସ୍ୱଭାବଦ୍ୱାରା ଚାଳିତ ହେଉଥିଲେ ସୁଦ୍ଧା, ତମୋଗୁଣୀ ବ୍ୟକ୍ତି ଅପେକ୍ଷା ଅଧିକ ପରିମାଣରେ

ନାନା ମତ ରକ୍ଷା କରିପାରେ । ଘଣ୍ଟା କଣ୍ଟା ସର୍ବାପେକ୍ଷା ଅଧିକ ଧୀରଗାମିନୀ । ତାହା ସତ୍ତ୍ୱଗୁଣୀ ଜୀବର ଉପମା ହୋଇପାରେ । କାହିଁକି ନା ସତ୍ତ୍ୱଗୁଣୀମାନେ ପ୍ରକୃତିର ଅଧୀନ ଅଟନ୍ତି ସତ, କିନ୍ତୁ ବିବେକଦ୍ୱାରା ଅନେକ ସମୟରେ ପ୍ରକୃତିକାର୍ଯ୍ୟରୁ ଆପଣାକୁ ସ୍ଥିର ରଖି ପାରନ୍ତି, ଇତ୍ୟାଦି ।

ଏହିପରି ଚିନ୍ତା କଲେ, ଅନେକ ଉପମା ଦିଆ ଯାଇ ପାରେ । ପାଠକମାନଙ୍କ ଚିନ୍ତାଶକ୍ତି ଉପରେ ସେ ଭାର ରହିଲା ।

ଫଳକଥା ଏହି କି ଯନ୍ତ୍ରାରୂଢ଼ ପିତୁଳାମାନଙ୍କର ଯେପରି କିଛି ମାତ୍ର ସ୍ୱାଧୀନତା ନ ଥାଏ, କେବଳ ଯନ୍ତ୍ରନିର୍ମାଣକାରୀର କୌଶଳ ଅନୁସାରେ ଚାଳିତ ହୁଅନ୍ତି, ସେହିପରି ଦେହାଭିମାନୀ ପ୍ରାଣୀମାନଙ୍କର କିଛି ମାତ୍ର ସ୍ୱାଧୀନତା ନାହିଁ, କେବଳ ପରମେଶ୍ୱରଙ୍କ ମାୟା ନାମକ ଅଲକ୍ଷିତ ଶକ୍ତି ବଳରେ ସେମାନେ ଶୁଭ ଓ ଅଶୁଭ କାର୍ଯ୍ୟରେ ନିଯୁକ୍ତ ହେଉଅଛନ୍ତି । ଅତଏବ ହେ ଅର୍ଜ୍ଜୁନ ! ତୁମ୍ଭେ, ଯେ ଯୁଦ୍ଧ କରିବ ନାହିଁ ବୋଲି କହୁଅଛ, ତାହା କିପରି ଘଟିବ ? ପରମେଶ୍ୱରଙ୍କ ମାୟାଶକ୍ତି ବଳରେ ତୁମ୍ଭେ ବାଧ୍ୟ ହୋଇ ଯୁଦ୍ଧକାର୍ଯ୍ୟରେ ନିଯୁକ୍ତ ହେବ ।

୬୧ ।

ଶ୍ଲୋକଃ ୨

ତମେବ ଶରଣଂ ଗଚ୍ଛ, ସର୍ବଭାବେନ ଭାରତ ।
ତତ୍ପ୍ରସାଦାତ୍ ପରାଂ ଶାନ୍ତିଂ, ସ୍ଥାନଂ ପ୍ରାପ୍ସ୍ୟସି ଶାଶ୍ୱତଂ । ୬୨ ।

ଅନ୍ୱୟଃ ।

ହେ ଭାରତ ! ତଂ ଏବ ସର୍ବଭାବେନ ଶରଣଂ ଗଚ୍ଛ, ତତ୍ପ୍ରସାଦାତ୍ ପରାଂ ଶାନ୍ତିଂ, ଶାଶ୍ୱତଂ ସ୍ଥାନଂ (ଚ) ପ୍ରାପ୍ସ୍ୟସି । ୬୨ ।

ଟୀକା ।

ତମିତି । ଯସ୍ମାଦେବ ସର୍ବେ ଜୀବାଃ ପରମେଶ୍ୱରପରତନ୍ତ୍ରାସ୍ତସ୍ମାଦହଙ୍କାରଂ ପରିତ୍ୟଜ୍ୟ ସର୍ବଭାବେନ ସର୍ବାତ୍ମନା ତମୀଶ୍ୱରମେବ ଶରଣଂ ଗଚ୍ଛ ତତସ୍ତସ୍ୟୈବ ପ୍ରସାଦାତ୍ ପରାମୁପଶାନ୍ତିଂ ସ୍ଥାନଞ୍ଚ ପାରମେଶ୍ୱରଂ ଶାଶ୍ୱତଂ ନିତ୍ୟଂ ପ୍ରାପ୍ସ୍ୟସି । ୬୨ ।

ପଦବ୍ୟାଖ୍ୟା ।

ତଂ ଏବ ଶରଣଂ ଗଚ୍ଛ—କେବଳ ତାହାଙ୍କଠାରେ ଶରଣ ପଶ, ସର୍ବଭାବେନ—ସର୍ବପ୍ରକାରରେ, ଭାରତ—ହେ ଭରତବଂଶୀୟ, ଅଥବା ଭରତବଂଶୋଦ୍ଭବ ଅର୍ଜ୍ଜୁନ, ତତ୍ପ୍ରସାଦାତ୍—ତାହାଙ୍କ ଅନୁଗ୍ରହରୁ, ପରାଂ ଶାନ୍ତିଂ—ଉତ୍କୃଷ୍ଟ ଶାନ୍ତିମୟ, ସ୍ଥାନଂ—ପଦକୁ, ପ୍ରାପ୍ସ୍ୟସି—ପ୍ରାପ୍ତ ହେବ, ଶାଶ୍ୱତଂ—ଅନାଦି ଓ ଅନନ୍ତ । ୬୨ ।

ଅନୁବାଦ ।

ହେ ଭାରତ ! ତୁମ୍ଭେ ସର୍ବତୋଭାବରେ ସେହି ପରମେଶ୍ୱରଙ୍କଠାରେ ଶରଣ ପଶ । ତାହାଙ୍କ ଅନୁଗ୍ରହରୁ ତୁମ୍ଭେ ପରମ ଶାନ୍ତି ଓ ନିତ୍ୟଧାମ ପ୍ରାପ୍ତ ହେବ । ୬୨ ।

Digitized by PPRACHIN, SOA

ତତ୍ପଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ ବୁଝାଇ ଦିଆ ଯାଇଅଛି, ଯେ ଦେହାଭିମାନୀ ପୁରୁଷର କିଞ୍ଚିନ୍ମାତ୍ର ସ୍ୱାଧୀନତା ନାହିଁ, ଈଶ୍ୱରଙ୍କ ମାୟାଶକ୍ତି ଦ୍ୱାରା ସେମାନେ କର୍ମାନୁରୂପ ଶୁଭ ବା ଅଶୁଭ ଯୋନିରେ ଜନ୍ମ ହୁଅନ୍ତି ଏବଂ ପୂର୍ବବାସନା ବା ସଂସ୍କାର ଅନୁସାରେ ସେମାନେ ଶୁଭ ବା ଅଶୁଭ କର୍ମରେ ନିଯୁକ୍ତ ହୁଅନ୍ତି । ଏଥିରେ ଏପରି ଆପତ୍ତି ହୋଇ ପାରେ, ଯେ ତେବେ ଶାସ୍ତ୍ରରେ ଅମୁକ କାର୍ଯ୍ୟ ବିଧି ଓ ଅମୁକ କାର୍ଯ୍ୟ ନିଷେଧ ଏପରି ଯେଉଁ ନିୟମ କରି ଯାଇଅଛି, ତାହାର ଆଉ ସଫଳତା ରହିଲା କେଉଁଠି ? ଅର୍ଥାତ୍ ପରମେଶ୍ୱରଙ୍କ ମାୟାଶକ୍ତି ଶୁଭାଶୁଭ କର୍ମର ପ୍ରବର୍ତ୍ତିକା ଓ ସେହି କର୍ମର ଫଳସ୍ୱରୂପ ଶୁଭ ବା ଅଶୁଭ ଯୋନିରେ ଜନ୍ମପ୍ରଦାୟିନୀ, ତେବେ ଆଉ ଜୀବର ପୁରୁଷାର୍ଥ ରହିଲା କେଉଁଠି, ଯେ ସେ, ଶାସ୍ତ୍ରର ବିଧି ଓ ନିଷେଧ ମାନି ଚଳି ପାରିବ ? ଏଥିପାଇଁ ଶ୍ରୀଭଗବାନ୍ କହୁଅଛନ୍ତି, ଯେ ହେ ଅର୍ଜୁନ ! ଯେଉଁ ପରମେଶ୍ୱରଙ୍କ ଅଲକ୍ଷିତ ଶକ୍ତି ବଳରେ ଜୀବ ଯନ୍ତ୍ରାରୂଢ଼ ପିତୁଳା ପରି ଶୁଭାଶୁଭ କର୍ମରେ ପ୍ରବୃତ୍ତ ହେଉଅଛି, ସେହି ପରମେଶ୍ୱରଙ୍କଠାରେ ତୁମ୍ଭେ ସର୍ବତୋଭାବରେ, ଅର୍ଥାତ୍ କାୟ ମନ ଓ ବଚନଦ୍ୱାରା ଶରଣ ପଶ, ତାହାହେଲେ, ସେହି ପରମେଶ୍ୱର ତୁମ୍ଭଙ୍କୁ ଅନୁଗ୍ରହ କରିବେ । ତାଙ୍କର ଅନୁଗ୍ରହରୁ ତୁମ୍ଭର ତତ୍ତ୍ୱଜ୍ଞାନ ଜନ୍ମିବ ଓ ତତ୍ତ୍ୱଜ୍ଞାନ ଜନ୍ମିଲେ, ଅବିଦ୍ୟା ଆପଣାର କାର୍ଯ୍ୟ ସହିତ ସମ୍ପୂର୍ଣ୍ଣରୂପେ ନିବୃତ୍ତ ହୋଇ ଯିବ । ସୁତରାଂ ତୁମ୍ଭେ ପରମଶାନ୍ତି ଅର୍ଥାତ୍ ପରମାନନ୍ଦ ପ୍ରାପ୍ତିରୂପ ଶାନ୍ତିସୁଖ ଭୋଗ କରିବ ଓ ଉତ୍ପତ୍ତିବିନାଶରହିତ ନିତ୍ୟସ୍ଥାନ ବା ପରମପଦ ମୋକ୍ଷ ପ୍ରାପ୍ତ ହେବ ।

କୌଣସି ୨ ଟୀକାକାରଙ୍କ ମତରେ ଈଶ୍ୱରଙ୍କଠାରେ ସର୍ବତୋଭାବରେ ଶରଣ ପଶିଲେ, ତୁମ୍ଭେ ପରା ଶାନ୍ତି ଅର୍ଥାତ୍ ସମାଧି ଅବସ୍ଥା ପ୍ରାପ୍ତ ହେବ ଓ ତଦନନ୍ତର ମୋକ୍ଷ ଲାଭ କରିବ । ମହାତ୍ମା ପତଞ୍ଜଳି ମଧ୍ୟ, ଆପଣାରଚିତ ଗ୍ରନ୍ଥରେ ସମାଧି ପ୍ରାପ୍ତି ବିଷୟରେ ଲେଖିଅଛନ୍ତି, ଯେ "ଈଶ୍ୱରପ୍ରଣିଧାନାଦ୍ୱା" ଅର୍ଥାତ୍ ସର୍ବଦା ଈଶ୍ୱରଙ୍କ ନାମ ସ୍ମରଣ, ଓ ବ୍ରହ୍ମାର୍ଥ ଭାବନରୂପ ଈଶ୍ୱର ପ୍ରଣିଧାନ କଲେ, ଅର୍ଥାତ୍ ତାହାଙ୍କଠାରେ ସର୍ବତୋଭାବରେ ଶରଣ ପଶିଲେ, ସମାଧିଲାଭ ହୁଏ । ୬୨ ।

ଶ୍ଳୋକଃ ।

ଇତି ତେ ଜ୍ଞାନମାଖ୍ୟାତଂ, ଗୁହ୍ୟାଦ୍ଗୁହ୍ୟତରଂ ମୟା ।
ବିମୃଶ୍ୟୈତଦଶେଷେଣ, ଯଥେଚ୍ଛସି ତଥା କୁରୁ । ୬୩ ।

ଅନ୍ୱୟଃ ।

ଇତି ଗୁହ୍ୟାତ୍ ଗୁହ୍ୟତରଂ ଜ୍ଞାନଂ ମୟା ତେ ଆଖ୍ୟାତଂ, ଏତତ୍ ଅଶେଷେଣ ବିମୃଶ୍ୟ ଯଥା ଇଚ୍ଛସି ତଥା କୁରୁ ।୬୩ ।

ଟୀକା ।

ସର୍ବଗୀତାର୍ଥମୁପସଂହରନ୍ନାହ । ଇତୀତି । ଇତ୍ୟନେନ ପ୍ରକାରେଣ ତେ ତୁଭ୍ୟଂ ସର୍ବଜ୍ଞେନ ପରମକାରୁଣିକେନ ମୟା ଜ୍ଞାନମାଖ୍ୟାତମୁପଦିଷ୍ଟଂ କଥମ୍ଭୂତଂ ଗୁହ୍ୟାତ୍ ଗୋପ୍ୟାତ୍ ରହସ୍ୟମନ୍ତ୍ରଯୋଗାଦିଜ୍ଞାନାଦପି ଗୁହ୍ୟତରଂ ଏତନ୍ମୟୋପଦିଷ୍ଟଂ ଗୀତାଶାସ୍ତ୍ରମଶେଷତୋବିମୃଶ୍ୟ ପର୍ଯ୍ୟାଲୋଚ୍ୟ ପଶ୍ଚାଦ୍ୟଥେଚ୍ଛସି ତଥା କୁରୁ । ଏତସ୍ମିନ୍ ପର୍ଯ୍ୟାଲୋଚିତେ ସତି ତବ ମୋହୋ ନିବର୍ତ୍ସ୍ୟତ ଇତି ଭାବଃ । ୬୩ ।

Digitized by PPRACHIN, SOA

### ପଦବ୍ୟାଖ୍ୟା ।

ଇତି—ଏହି ପ୍ରକାର, ତେ—ତୁମ୍ଭଙ୍କୁ, ଜ୍ଞାନଂ—ଆତ୍ମଜ୍ଞାନକୁ, ଆଖ୍ୟାତଂ—କହିଲୁଁ, ଗୁହ୍ୟାତ୍‌ଗୁହ୍ୟତରଂ—ଗୋପନୀୟ ଅପେକ୍ଷା ମଧ୍ୟ ଅତି ଗୋପନୀୟ, ମୟା—ଆମ୍ଭେ, ବିମୃଶ୍ୟ—ବିଚାର କରି, ଏତତ୍—ଏହା, ଅଶେଷେଣ—ସମ୍ପୂର୍ଣ୍ଣରୂପରେ, ଯଥା ଇଚ୍ଛସି—ଯେପରି ଇଚ୍ଛା ହୁଏ, ତଥା କୁରୁ—ସେପରି କର । ୭୩ ।

### ଅନୁବାଦ ।

ଏହି ପ୍ରକାରେ ଅତି ଗୋପନୀୟ ଜ୍ଞାନ ଆମ୍ଭେ ତୁମ୍ଭଙ୍କୁ କହିଲୁଁ । ଏହାକୁ ସମ୍ପୂର୍ଣ୍ଣରୂପେ ବିଚାର କରି ତୁମ୍ଭର ଯାହା ଇଚ୍ଛା ହୁଏ ତାହା କର । ୭୩ ।

### ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ତୁମ୍ଭେ ଆମ୍ଭର ଅତ୍ୟନ୍ତ ପ୍ରିୟ ଓ ଭକ୍ତ ଅଟ । ଏଥିପାଇଁ ଆମ୍ଭେ ଏହି ପ୍ରକାରେ ଅର୍ଥାତ୍ ଉପଦେଶ ଛଳରେ ଅତ୍ୟନ୍ତ ଗୋପନୀୟ, ଯେ ଆତ୍ମଜ୍ଞାନ, ତାହା ତୁମ୍ଭଙ୍କୁ ବୁଝାଇ କହିଲୁଁ । କର୍ମଯୋଗ, ଭକ୍ତିଯୋଗ ଓ ସନ୍ନ୍ୟାସଯୋଗ ଏ ସମସ୍ତହିଁ ଆତ୍ମଜ୍ଞାନ ଲାଭର ଉପାୟ । ଆମ୍ଭେ କର୍ମଯୋଗଠାରୁ ସନ୍ନ୍ୟାସଯୋଗ ପର୍ଯ୍ୟନ୍ତ ସମସ୍ତ କଥା କେତେକ ତୁମ୍ଭ ପ୍ରଶ୍ନ ଅନୁସାରେ, କେତେକ ଅବା ଆପଣାଛାଏଁ ବିସ୍ତୃତରୂପେ ତୁମ୍ଭଙ୍କୁ କହିଅଛୁଁ, ଏବେ ତୁମ୍ଭେ ପ୍ରଥମଠାରୁ ଏପର୍ଯ୍ୟନ୍ତ ସମସ୍ତ ଅଂଶକୁ ଉତ୍ତମରୂପେ ବିଚାର କର, ତତ୍ପରେ ତୁମ୍ଭର ଯାହା ଇଚ୍ଛା ହୁଏ, ଅର୍ଥାତ୍ ତୁମ୍ଭର ଯାହା କର୍ତ୍ତବ୍ୟ ବୋଲି ବୋଧ ହୁଏ ତାହା କର ।

ଶ୍ରୀଭଗବାନ୍ ଗୀତାରେ ଯେଉଁ ଉପଦେଶମାନ ପ୍ରଦାନ କଲେ, ତାହା ପର୍ଯ୍ୟାଲୋଚନା କଲେ ସ୍ପଷ୍ଟ ଜଣାଯିବ, ଯେ ମୋକ୍ଷାଭିଳାଷୀ ବ୍ୟକ୍ତି ଚିତ୍ତଶୁଦ୍ଧି ପର୍ଯ୍ୟନ୍ତ ଆତ୍ମଜ୍ଞାନର ପ୍ରତିବନ୍ଧକ ପାପ କ୍ଷୟପାଇଁ ଫଳକାମନା ବର୍ଜ୍ଜିତ ହୋଇ ଭଗବତ୍ ଅର୍ପଣପୂର୍ବକ ବର୍ଣ୍ଣାଶ୍ରମ ଧର୍ମର ଅନୁଷ୍ଠାନ କରିବେ, ତହିଁ ଉତ୍ତାରୁ ତାଙ୍କର ଚିତ୍ତ ଶୁଦ୍ଧି ହେଲେ, ଚିତ୍ତର ବିକ୍ଷେପାଦି ଦୋଷ ନିବାରଣ ପାଇଁ ଭକ୍ତିଯୋଗ ଅବଲମ୍ବନ କରିବେ । ତଦନନ୍ତର ବିବିଦିଷା ସନ୍ନ୍ୟାସ ଗ୍ରହଣ କରି ବ୍ରହ୍ମନିଷ୍ଠ ଗୁରୁଙ୍କ ନିକଟରେ ଉପସ୍ଥିତ ହୋଇ ଜ୍ଞାନସାଧନର ଉପାୟସ୍ୱରୂପ ବେଦାନ୍ତବାକ୍ୟର ବିଚାର କରିବେ । ସେଠାରେ ଏକମାତ୍ର ଭଗବାନଙ୍କଠାରେ ଶରଣାଗତ ହୋଇ ନିର୍ଜ୍ଜନସ୍ଥାନରେ ବାସ କରିବା ପ୍ରଭୃତି ଯେଉଁ ୨ ଉପାୟମାନ ପୂର୍ବରୁ କୁହା ଯାଇଅଛି, ସେହି ଉପାୟ ଦ୍ୱାରା ଆତ୍ମସାକ୍ଷାତ୍କାର ଲାଭ କରିବେ ଓ ତଦନନ୍ତର ବିଦ୍ୱତ୍‌ସନ୍ନ୍ୟାସ ଅବଲମ୍ବନପୂର୍ବକ ପୂର୍ଣ୍ଣ ପରମାନନ୍ଦ ସୁଖ ଅନୁଭବ କରି ଦେହତ୍ୟାଗ ପରେ ବିଦେହକୈବଲ୍ୟ ଲାଭ କରିବେ । ଆଉ ଯଦି ସେ ସନ୍ନ୍ୟାସର ଅନଧିକାରୀ କ୍ଷତ୍ରିୟ ବା ବୈଶ୍ୟ ହୋଇଥାନ୍ତି, ତେବେ ଚିତ୍ତଶୁଦ୍ଧି ଉତ୍ତାରୁ ମଧ୍ୟ, ଭଗବତ୍ ଆଜ୍ଞା ପାଳନ ପାଇଁ, ଅଥବା ଲୋକଶିକ୍ଷା ନିମିତ୍ତ, ଯେ କୌଣସି ପ୍ରକାର ନିଷ୍କାମକର୍ମର ଅନୁଷ୍ଠାନ କରୁଥିବେ । ଏହିପରି କର୍ମ କରୁଁ ୨ ଶ୍ରୀଭଗବାନଙ୍କଠାରେ ଏକାନ୍ତ ଭକ୍ତି ହେଲେ, ଅଷ୍ଟମ ଅଧ୍ୟାୟୋକ୍ତ ଅର୍ଚ୍ଚିରାଦି ମାର୍ଗରେ ଅମାନବପୁରୁଷଦ୍ୱାରା ହିରଣ୍ୟଗର୍ଭଲୋକକୁ ଯାଇ ସେଠାରୁ ମୋକ୍ଷ ପ୍ରାପ୍ତ ହେବେ । ଅଥବା ଭଗବାନଙ୍କଠାରେ ଏକାନ୍ତଭାବରେ ଶରଣ ପଶିଲେ, ତାହାଙ୍କ ଅନୁଗ୍ରହରୁ ଇହଜନ୍ମରେ ତତ୍ତ୍ୱଜ୍ଞାନ ଲାଭ କରି ପରଜନ୍ମରେ ବ୍ରାହ୍ମଣ

କୁଳରେ ଜାତ ହୋଇ ଯଥାକ୍ରମେ ବ୍ରହ୍ମଚର୍ଯ୍ୟ ଓ ଗୃହସ୍ଥାଦି ଆଶ୍ରମ ଅବଲମ୍ବନପୂର୍ବକ ଆତ୍ମଜ୍ଞାନ ଲାଭ କରି ମୋକ୍ଷ ପ୍ରାପ୍ତ ହେବେ । ଭଗବାନଙ୍କର ଉପଦେଶର ସାରକଥା ଏହାପରି ବିଚାର କଲେ, ଅର୍ଜୁନ ସନ୍ନ୍ୟାସର ଅନଧିକାରୀ ବୋଲି ବର୍ଣ୍ଣାଶ୍ରମ ଧର୍ମ ପାଳନହିଁ ତାଙ୍କର କର୍ତ୍ତବ୍ୟ, ଏହା ସେ ଜାଣି ପାରିବେ, ତାହାହେଲେ ସେ, ଯୁଦ୍ଧାଦି କାର୍ଯ୍ୟ କରିବେ । ଏହାହିଁ ସମସ୍ତ ଗୀତାର ସାର ଉପଦେଶ ଅଟେ । ୬୩ ।

ଶ୍ଳୋକଃ ।

ସର୍ବଗୁହ୍ୟତମଂ ଭୂୟଃ, ଶୃଣୁ ମେ ପରମଂ ବଚଃ ।
ଇଷ୍ଟୋଽସି ମେ ଦୃଢମିତି, ତତୋ ବକ୍ଷ୍ୟାମି ତେ ହିତଂ । ୬୪ ।

ଅନ୍ୱୟଃ ।

ସର୍ବଗୁହ୍ୟତମଂ ମେ ପରମଂ ବଚଃ ଭୂୟଃ ଶୃଣୁ । ମେ ଦୃଢ଼ଂ ଇଷ୍ଟଃ ଅସି, ତତଃ ଇତି ତେ ହିତଂ ବକ୍ଷ୍ୟାମି ।୬୪।

ଟୀକା ।

ଅତଗମ୍ଭୀରଂ ଗୀତାଶାସ୍ତ୍ରମଶେଷତଃ ପର୍ଯ୍ୟାଲୋଚୟିତୁମଶକ୍ତବତଃ କୃପୟା ସ୍ୱୟମେବ ତସ୍ୟ ସାରଂ ସଂଗୃହ୍ୟ କଥୟତି । ସର୍ବଗୁହ୍ୟତମମିତି ଦ୍ୱିଭିଃ । ସର୍ବେଭ୍ୟୋଽପି ଗୁହ୍ୟେଭ୍ୟୋ ଗୁହ୍ୟତମଂ ମେ ବଚସ୍ତତ୍ର ତତ୍ରୋକ୍ତମପି ଭୂୟଃ ପୁନରପି ବକ୍ଷ୍ୟମାଣଂ ଶୃଣୁ । ପୁନଃପୁନଃ କଥନ ହେତୁମାହ । ଦୃଢମତ୍ୟନ୍ତ ମିଷ୍ଟଃ ପ୍ରିୟୋଽସୀତି ମତ୍ୱା ତତ ଏବ ହେତୋଃ ତେ ହିତଂ ବକ୍ଷ୍ୟାମି । ଯଦ୍ୱା ମମ ତ୍ୱମିଷ୍ଟୋଽସି ମତ୍ୱା ବକ୍ଷ୍ୟମାଣଂ ଦୃଢ଼ଂ ସର୍ବପ୍ରମାଣୋପେତମିତି ନିଶ୍ଚିତ୍ୟ ତତସ୍ତେ ବକ୍ଷ୍ୟାମୀତ୍ୟର୍ଥଃ ଦୃଢମତିରିତି କ୍ୱଚିତ୍ ପାଠଃ । ୬୪ ।

ପଦବ୍ୟାଖ୍ୟା ।

ସର୍ବଗୁହ୍ୟତମଂ—ସର୍ବାପେକ୍ଷା ଅଧିକ ଗୋପନୀୟ, ଭୂୟଃ—ପୁନର୍ବାର, ଶୃଣୁ—ଶୁଣ, ମେ—ଆମ୍ଭଠାରୁ, ପରମଂ—ଉତ୍କୃଷ୍ଟ, ବଚଃ—ବଚନକୁ, ଇଷ୍ଟୋଽସି—ପ୍ରିୟ ଅଟ, ମେ—ଆମ୍ଭର, ଦୃଢ଼ଂ—ଅତ୍ୟନ୍ତ, ଇତି—ଏହି, ତତଃ—ସେହି ହେତୁରୁ, ବକ୍ଷ୍ୟାମି—କହିବା, ତେ ହିତଂ—ତୁମ୍ଭର ମଙ୍ଗଳଦାୟକ । ୬୪ ।

ଅନୁବାଦ ।

(ହେ ଅର୍ଜୁନ !) ଅତି ଗୋପନୀୟ ଆମ୍ଭର ଉତ୍କୃଷ୍ଟ ବଚନ ପୁନର୍ବାର ଶୁଣ । ତୁମ୍ଭେ ଆମ୍ଭର ଅତ୍ୟନ୍ତ ପ୍ରିୟ ଅଟ । ସେହି ହେତୁରୁ ତୁମ୍ଭର ମଙ୍ଗଳଦାୟକ ଏହି କଥା ଆମ୍ଭେ କହୁଁ । ୬୪ ।

ବିଶଦବ୍ୟାଖ୍ୟା ।

ପୂର୍ବ ଶ୍ଳୋକରେ ଶ୍ରୀଭଗବାନ୍ ଅର୍ଜୁନଙ୍କୁ କହିଲେ, ଯେ ଆମ୍ଭେ ଏତେବେଳଯାଏ ଯେଉଁ ଗୀତାଶାସ୍ତ୍ରର ଉପଦେଶ ଦେଲୁଁ, ତାହା ତୁମ୍ଭେ ସମସ୍ତ ପର୍ଯ୍ୟାଲୋଚନା କରି ଯାହା ଭଲ ବୋଧ ହୁଏ ତାହା କର । ପୁଣି ସର୍ବାନ୍ତର୍ଯ୍ୟାମୀ ଶ୍ରୀଭଗବାନ୍ ଦେଖିଲେ, ଯେ ଗୀତା-ଶାସ୍ତ୍ର ଅତ୍ୟନ୍ତ କଠିନ କଥା । ତହିଁରେ ପୁଣି ଅର୍ଜୁନଙ୍କ ପ୍ରଶ୍ନ ଅନୁସାରେ କେତେବେଳେ କର୍ମ-ଯୋଗ, କେତେବେଳେ ଭକ୍ତିଯୋଗ ଏବଂ କେତେବେଳେ ଅବା ଜ୍ଞାନଯୋଗର କଥା କୁହା ଯାଇଅଛି । ସେ ସବୁକୁ ଏକତ୍ର ସମାଲୋଚନା କରିବା ଅଳ୍ପସମୟ ଓ ଅଳ୍ପବୁଦ୍ଧିର

Digitized by PPRACHIN, SOA

କାର୍ଯ୍ୟ ନୁହେଁ । ଅର୍ଜ୍ଜୁନ ବର୍ତ୍ତମାନ ଯୁଦ୍ଧକ୍ଷେତ୍ରମଧ୍ୟରେ ଶତ୍ରୁବେଷ୍ଟିତ ହୋଇ ଦଣ୍ଡାୟମାନ ଅଛନ୍ତି । ଏପରି ସ୍ଥଳେ, ପ୍ରକୃତରୂପେ ସମାଲୋଚନା ସମୀଚୀନ ହେବା ସମ୍ଭବ ନୁହେ । ଅତଏବ ନନ୍ଦେ ଅନୁଗ୍ରହ କରି ଗୀତାର ସାରକଥା ଅର୍ଜ୍ଜୁନଙ୍କୁ ବୁଝାଉଅଛନ୍ତି ।

ଅର୍ଜ୍ଜୁନ ତାହାଙ୍କର ଅତ୍ୟନ୍ତ ପ୍ରିୟ ବୋଲି ଯହିଁରେ ତାଙ୍କର ହିତ ହେବ, ଅର୍ଥାତ୍ ଗୀତା ପର୍ଯ୍ୟାଲୋଚନା କରିବାରେ ତ୍ରୁଟିଜନିତ କୌଣସି ଭ୍ରମ ତାଙ୍କର ନ ହେବ, ସେଥିପାଇଁ ସେ ନନ୍ଦେ, ଅନୁଗ୍ରହ କରି ଅତି ଗୋପନୀୟ ଗୀତାର ସାରକଥା ବୁଝାଇବାକୁ ପ୍ରବୃତ୍ତ ହେଲେ । ୬୪ ।

## ଶ୍ଳୋକଃ ।

ମନ୍ମନା ଭବ ମଦ୍ଭକ୍ତୋ, ମଦ୍ଯାଜୀ ମାଂ ନମସ୍କୁରୁ ।
ମାମେବୈଷ୍ୟସି ସତ୍ୟଂ ତେ, ପ୍ରତିଜାନେ ପ୍ରିୟୋଽସି ମେ । ୬୫ ।

## ଅନ୍ୱୟଃ ।

ମନ୍ମନାଃ ମଦ୍ଭକ୍ତଃ ମଦ୍ଯାଜୀ ଭବ । ମାଂ ନମସ୍କୁରୁ । (ତତଃ) ମାଂ ଏବ ଏଷ୍ୟସି (ଇତି) ତେ ସତ୍ୟଂ ପ୍ରତିଜାନେ (ଯତଃ) ମେ ପ୍ରିୟଃ ଅସି । ୬୫ ।

## ଟୀକା ।

ତଦେବାହ । ମନ୍ମନା ମଚ୍ଚିତ୍ତୋଭବ, ମଦ୍ଭକ୍ତୋମଦ୍ଭଜନଶୀଲୋଭବ । ମଦ୍ଯାଜୀ ମଦ୍ଯଜନଶୀଳୋଭବ । ମାମେବ ନମସ୍କୁରୁ । ଏବ ପ୍ରବର୍ତ୍ତମାନସ୍ତ୍ୱଂ ମତ୍ପ୍ରସାଦଲବ୍ଧଜ୍ଞାନେନମାମେବୈଷ୍ୟସି ପ୍ରାପ୍ସ୍ୟସି ଅତ୍ର ଚ ସଂଶୟଂ ମାକାର୍ଷୀଃ ତ୍ୱଂ ହି ମେ ପ୍ରିୟୋଽସି ଅତଃ ସତ୍ୟଂ ଯଥା ଭବତ୍ୟେବଂ ତୁଭ୍ୟମହଂ ପ୍ରତିଜାନେ ପ୍ରତିଜ୍ଞାଂ କରୋମି । ୬୫ ।

## ପଦବ୍ୟାଖ୍ୟା ।

ମନ୍ମନା—ଆମ୍ଭଠାରେ ନିବିଷ୍ଟଚିତ୍ତ, ଭବ—ହୁଅ, ମଦ୍ଭକ୍ତଃ—ଆମ୍ଭର ଭକ୍ତ, ମଦ୍ଯାଜୀ—ଆମ୍ଭ ଉଦ୍ଦେଶ୍ୟରେ ଯାଗାଦ କର, ମାଂ ନମସ୍କୁରୁ—ଆମ୍ଭଙ୍କୁ ନମସ୍କାର କର, ମାଂ ଏବ ଏଷ୍ୟସି—(ତାହା ହେଲେ) ନିଶ୍ଚୟ ଆମ୍ଭଙ୍କୁ ପ୍ରାପ୍ତ ହେବ, ସତ୍ୟଂ—ଏହା ସତ୍ୟ ଅଟେ, ତେ—ତୁମ୍ଭଙ୍କୁ, ପ୍ରତିଜାନେ—ପ୍ରତିଜ୍ଞା କରି କହୁଅଛୁଁ, ପ୍ରିୟୋଽସି ମେ—ତୁମ୍ଭେ ଆମ୍ଭର ପ୍ରିୟ ଅଟ । ୬୫ ।

## ଅନୁବାଦ ।

ହେ ଅର୍ଜ୍ଜୁନ ! ତୁମ୍ଭେ ଆମ୍ଭଠାରେ ମନୋନିବେଶ କର, ଆମ୍ଭର ଭକ୍ତ ହୁଅ, ଆମ୍ଭର ଉଦ୍ଦେଶ୍ୟରେ ଯାଗାଦ ଅନୁଷ୍ଠାନ କର ଓ ଆମ୍ଭଙ୍କୁ ନମସ୍କାର କର । ତାହା ହେଲେ, ସତ୍ୟ-ପ୍ରତିଜ୍ଞା କରି କହୁଅଛୁଁ, ତୁମ୍ଭେ ନିଶ୍ଚୟ ଆମ୍ଭଙ୍କୁ ପ୍ରାପ୍ତ ହେବ । କାହିଁକି ନା ତୁମ୍ଭେ ଆମ୍ଭର ପ୍ରିୟ ଅଟ । ୬୫ ।

## ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜ୍ଜୁନ ! ଗୀତାର ସାରକଥା ଏହି, ଯେ ଆମ୍ଭଙ୍କୁ ଲାଭ କରିବା ବିଷୟରେ ତିନିଗୋଟି ଉପାୟ ଅଛି । ତାହା ଗୀତାର ତିନି ଷଟ୍କରେ ଭିନ୍ନ ଓ ବିସ୍ତୃତ-ରୂପେ ବୁଝାଇ ଦିଆ ଯାଇଅଛି । ଯଥା,—୧ମ ଉତ୍ତମାଧିକାରୀଙ୍କ ପାଇଁ ଧ୍ୟାନଯୋଗ, ଅର୍ଥାତ୍

ବେଦାନ୍ତବାକ୍ୟର ଶ୍ରବଣ ମନନ ପରେ "ନିଦିଧ୍ୟାସନ" ବା ଏକାନ୍ତ ମନରେ ବ୍ରହ୍ମଚିନ୍ତନରୂପ ଯୋଗ ପ୍ରଶସ୍ତ ଅଟେ । ଏପରି ବ୍ରହ୍ମଚିନ୍ତାଦ୍ୱାରା ମନ ବ୍ରହ୍ମରେ ଲୀନ ହୁଏ ଓ ଆତ୍ମା ଏବଂ ପରମାତ୍ମାଙ୍କ ମଧ୍ୟରେ ଭେଦଜ୍ଞାନ ନଷ୍ଟ ହୋଇ ଅଦ୍ୱୈତଜ୍ଞାନ ସ୍ଥିର ହୁଏ । ଏହି ବିଷୟ ତୃତୀୟ ଷଟ୍କରେ ଅର୍ଥାତ୍ ତ୍ରୟୋଦଶଠାରୁ ଅଷ୍ଟାଦଶ ପର୍ଯ୍ୟନ୍ତ ଅଧ୍ୟାୟମାନଙ୍କରେ ନାନା ସ୍ଥଳରେ ନାନା ପ୍ରକାର ବ୍ୟାଖ୍ୟା କରାଯାଇଅଛି । ତୁମ୍ଭେ ଯଦି ଆପଣାକୁ ଉତ୍ତମାଧିକାରୀ ବୋଲି ମନେ କର, ତେବେ "ମନ୍ମନା" ହୁଅ ବା ଆମ୍ଭଠାରେ ଅର୍ଥାତ୍ ପରବ୍ରହ୍ମରେ ଏକାଗ୍ରଭାବରେ ମନ ସମର୍ପଣ କର । ଆଉ ତୁମ୍ଭେ ଯଦି ଉତ୍ତମାଧିକାରୀ ନ ହୋଇ ମଧ୍ୟମାଧିକାରୀ ହୋଇଥାଅ, ତେବେ "ମଦ୍ଭକ୍ତଃ ଭବ" ଅର୍ଥାତ୍ ଆମ୍ଭର ଭକ୍ତ ହୁଅ । ଏହି ଗୀତାର ୨ୟ ଷଟ୍କରେ ଅର୍ଥାତ୍ ସପ୍ତମଠାରୁ ଦ୍ୱାଦଶ ପର୍ଯ୍ୟନ୍ତ ୬ ଅଧ୍ୟାୟରେ ଆମ୍ଭେ ଅନ୍ୟାନ୍ୟ କଥାର ସହିତ ଭକ୍ତିର ଯେଉଁ ସବୁ ଉପାୟ କହିଅଛୁଁ, ସେହି ଉପାୟଦ୍ୱାରା ଆମ୍ଭର ଭଜନ କର । ତାହା ଯଦି ନ ପାର, ଅର୍ଥାତ୍ ତୁମ୍ଭେ ଯଦି ମଧ୍ୟମାଧିକାରର ଉପଯୁକ୍ତ ହୋଇ ନ ଥାଅ, ବା ତୁମ୍ଭର ଚିତ୍ତଶୁଦ୍ଧି ହୋଇ ନ ଥାଏ, ତେବେ "ମଦ୍ୟାଜୀ ଭବ" ଅର୍ଥାତ୍ ଆମ୍ଭର ଉଦ୍ଦେଶ୍ୟରେ ନିଷ୍କାମଭାବରେ ଯାଗାଦି ସର୍ବପ୍ରକାର ଶାସ୍ତ୍ରୋକ୍ତ କର୍ମ ଅନୁଷ୍ଠାନ କର । ସେହି ନିଷ୍କାମ କର୍ମଯୋଗର ବିସ୍ତୃତ ବିବରଣ ଆମ୍ଭେ ଗୀତାର ପ୍ରଥମ ଷଟ୍କରେ ଦେଇଅଛୁଁ । ଏହି ଉପାୟମାନଙ୍କ ମଧ୍ୟରୁ ଯଦି କୌଣସି ଉପାୟ ଅବଲମ୍ବନ କରି ନ ପାର, ଅର୍ଥାତ୍ ମନ ତୁମ୍ଭର ବଶୀଭୂତ ହୋଇ ନ ଥିବାରୁ ତୁମ୍ଭେ ଯଦି ପ୍ରଥମ ଉପାୟ ଅର୍ଥାତ୍ ବ୍ରହ୍ମରେ ମନୋନିବେଶ କରି ନ ପାର, ଆଉ ଅନ୍ତଃକରଣ ଶୁଦ୍ଧି ହୋଇ ନ ଥିବାରୁ ୨ୟ ଉପାୟ ଅର୍ଥାତ୍ ଭକ୍ତି କରିବାକୁ ଅପାରଗ ହୁଅ, ଏବଂ ଆୟୋଜନର ବାହୁଲ୍ୟ ଭୟରେ ୩ୟ ଉପାୟ ଅର୍ଥାତ୍ ଶାସ୍ତ୍ରବିହିତ ଯାଗାଦି କର୍ମ ନିଷ୍କାମଭାବରେ ଅନୁଷ୍ଠାନ କରିବାକୁ କୁଣ୍ଠିତ ହୁଅ, ତେବେ "ମାଂ ନମସ୍କୁରୁ" ଅର୍ଥାତ୍ ଆମ୍ଭଙ୍କୁ ନମସ୍କାର କର । ଫଳକଥା ଏହି ଯେ ଆମ୍ଭଠାରେ ଶରଣ ପଶ । ତାହା ହେଲେ ଅର୍ଥାତ୍ ଏହି ଚାରି ପ୍ରକାର ଉପାୟ ମଧ୍ୟରୁ ଯେ କୌଣସି ଉପାୟ ଯଥାମତେ ଅବଲମ୍ବନ କଲେ, ଆମ୍ଭଙ୍କୁ ନିଶ୍ଚୟ ପ୍ରାପ୍ତ ହେବ, ଅର୍ଥାତ୍ ତୁମ୍ଭେ ସଂସାରବନ୍ଧନରୁ ମୁକ୍ତ ହେବ, ଏଥିରେ ସନ୍ଦେହ ନାହିଁ । ଏହି କଥା ଆମ୍ଭେ ସତ୍ୟପ୍ରତିଜ୍ଞା କରି ତୁମ୍ଭଙ୍କୁ କହୁଅଛୁଁ । ଏହି ପରମଗୋପନୀୟ ତତ୍ତ୍ୱ ଆମ୍ଭେ ଆଉ କାହାରିକୁ କହି ନାହୁଁ । କେବଳ ତୁମ୍ଭେ ଆମ୍ଭର ପ୍ରିୟ ବୋଲି, ତୁମ୍ଭଙ୍କୁ କହିଲୁଁ ।୬୫ ।

ଶ୍ଲୋକଃ ।

* ସର୍ବଧର୍ମାନ୍ ପରିତ୍ୟଜ୍ୟ, ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱାଂ ସର୍ବପାପେଭ୍ୟୋ, ମୋକ୍ଷୟିଷ୍ୟାମି ମା ଶୁଚଃ । ୬୬ ।

ଅନ୍ୱୟଃ ।

(ତ୍ୱଂ) ସର୍ବଧର୍ମାନ୍ ପରିତ୍ୟଜ୍ୟ ଏକଂ ମାଂ ଶରଣଂ ବ୍ରଜ, ଅହଂ ତ୍ୱାଂ ସର୍ବପାପେଭ୍ୟଃ ମୋକ୍ଷୟିଷ୍ୟାମି ମା (ତ୍ୱଂ) ଶୁଚଃ । ୬୬ ।

Digitized by PPRACHIN, SOA

କାର୍ଯ୍ୟ ନୁହେ । ଅର୍ଜୁନ ବର୍ତ୍ତମାନ ଯୁଦ୍ଧକ୍ଷେତ୍ରମଧ୍ୟରେ ଶତ୍ରୁବେଷ୍ଟିତ ହୋଇ ଦଣ୍ଡାୟମାନ ଅଛନ୍ତି । ଏପରି ସ୍ଥଳେ, ପ୍ରକୃତରୂପେ ସମାଲୋଚନା ସମୀଚୀନ ହେବା ସମ୍ଭବ ନୁହେ । ଅତଏବ ସେ ଅନୁଗ୍ରହ କରି ଗୀତାର ସାରକଥା ଅର୍ଜୁନଙ୍କୁ ବୁଝାଉଅଛନ୍ତି ।

ଅର୍ଜୁନ ତାହାଙ୍କର ଅତ୍ୟନ୍ତ ପ୍ରିୟ ବୋଲି ଯହିଁରେ ତାଙ୍କର ହିତ ହେବ, ଅର୍ଥାତ୍ ଗୀତା ପର୍ଯ୍ୟାଲୋଚନା କରିବାରେ ତ୍ରୁଟିଜନିତ କୌଣସି ଭ୍ରମ ତାଙ୍କର ନ ହେବ, ସେଥିପାଇଁ ସେ ନିଜେ, ଅନୁଗ୍ରହ କରି ଅତି ଗୋପନୀୟ ଗୀତାର ସାରକଥା ବୁଝାଇବାକୁ ପ୍ରବୃତ୍ତ ହେଲେ । ୬୪ ।

ଶ୍ଲୋକଃ ।

ମନ୍ମନା ଭବ ମଦ୍ଭକ୍ତୋ, ମଦ୍ୟାଜୀ ମାଂ ନମସ୍କୁରୁ ।
ମାମେବୈଷ୍ୟସି ସତ୍ୟଂ ତେ, ପ୍ରତିଜାନେ ପ୍ରିୟୋଽସି ମେ । ୬୫ ।

ଅନ୍ୱୟଃ ।

ମନ୍ମନାଃ ମଦ୍ଭକ୍ତଃ ମଦ୍ୟାଜୀ ଭବ । ମାଂ ନମସ୍କୁରୁ । (ତତଃ) ମାଂ ଏବ ଏଷ୍ୟସି (ଇତି) ତେ ସତ୍ୟଂ ପ୍ରତିଜାନେ (ଯତଃ) ମେ ପ୍ରିୟଃ ଅସି । ୬୫ ।

ଟୀକା ।

ତଦେବାହ । ମନ୍ମନା ମଚ୍ଚିତ୍ତୋଭବ,ମଦ୍ଭକ୍ତୋମଦ୍ଭଜନଶୀଲୋଭବ । ମଦ୍ୟାଜୀ ମଦ୍ୟଜନଶୀଳୋଭବ । ମାମେବ ନମସ୍କୁରୁ । ଏବ ପ୍ରବର୍ତ୍ତମାନସ୍ତ୍ୱଂ ମତ୍ପ୍ରସାଦଲବ୍ଧଜ୍ଞାନେନମାମେବୈଷ୍ୟସି ପ୍ରାପ୍ସ୍ୟସି ଅତ୍ର ଚ ସଂଶୟଂ ମାକାର୍ଷୀଃ ତ୍ୱଂ ହି ମେ ପ୍ରିୟୋଽସି ଅତଃ ସତ୍ୟଂ ଯଥା ଭବତ୍ୟେବଂ ଭୂଭ୍ୟମହଂ ପ୍ରତିଜାନେ ପ୍ରତିଜ୍ଞାଂ କରୋମି । ୬୫ ।

ପଦବ୍ୟାଖ୍ୟା ।

ମନ୍ମନା—ଅମ୍ଭଠାରେ ନିବିଷ୍ଟଚିତ୍ତ, ଭବ—ହୁଅ, ମଦ୍ଭକ୍ତଃ—ଅମ୍ଭର ଭକ୍ତ, ମଦ୍ୟାଜୀ—ଅମ୍ଭ ଉଦ୍ଦେଶ୍ୟରେ ଯାଗାଦି କର, ମାଂ ନମସ୍କୁରୁ—ଅମ୍ଭକୁ ନମସ୍କାର କର, ମାଂ ଏବ ଏଷ୍ୟସି—(ତାହା ହେଲେ) ନିଶ୍ଚେ ଅମ୍ଭଙ୍କୁ ପ୍ରାପ୍ତ ହେବ, ସତ୍ୟଂ—ଏହା ସତ୍ୟ ଅଟେ, ତେ—ତୁମ୍ଭଙ୍କୁ, ପ୍ରତିଜାନେ—ପ୍ରତିଜ୍ଞା କରି କହୁଅଛୁଁ, ପ୍ରିୟୋଽସି ମେ—ତୁମ୍ଭେ ଅମ୍ଭର ପ୍ରିୟ ଅଟ । ୬୫ ।

ଅନୁବାଦ ।

ହେ ଅର୍ଜୁନ ! ତୁମ୍ଭେ ଅମ୍ଭଠାରେ ମନୋନିବେଶ କର, ଅମ୍ଭର ଭକ୍ତ ହୁଅ, ଅମ୍ଭର ଉଦ୍ଦେଶ୍ୟରେ ଯାଗାଦି ଅନୁଷ୍ଠାନ କର ଓ ଅମ୍ଭଙ୍କୁ ନମସ୍କାର କର । ତାହା ହେଲେ, ସତ୍ୟ-ପ୍ରତିଜ୍ଞା କରି କହୁଅଛୁଁ, ତୁମ୍ଭେ ନିଶ୍ଚୟ ଅମ୍ଭଙ୍କୁ ପ୍ରାପ୍ତ ହେବ । କାହିଁକି ନା ତୁମ୍ଭେ ଅମ୍ଭର ପ୍ରିୟ ଅଟ । ୬୫ ।

ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହୁଲେ, ହେ ଅର୍ଜୁନ ! ଗୀତାର ସାରକଥା ଏହି, ଯେ ଅମ୍ଭଙ୍କୁ ଲାଭ କରିବା ବିଷୟରେ ତିନିଗୋଟି ଉପାୟ ଅଛି । ତାହା ଗୀତାର ତିନି ଷଟ୍କରେ ଭିନ୍ନ ଭିନ୍ନ ରୂପେ ବୁଝାଇ ଦିଆ ଯାଇଅଛି । ଯଥା,—୧ମ ଉତ୍ତମାଧିକାରୀଙ୍କ ପାଇଁ ଧ୍ୟାନଯୋଗ, ଅର୍ଥାତ୍

ବେଦାନ୍ତବାକ୍ୟର ଶ୍ରବଣ ମନନ ପରେ "ନିଦିଧ୍ୟାସନ" ବା ଏକାଗ୍ର ମନରେ ବ୍ରହ୍ମଚିନ୍ତନରୂପ ଯୋଗ ପ୍ରଶସ୍ତ ଅଟେ । ଏପରି ବ୍ରହ୍ମଚିନ୍ତାଦ୍ୱାରା ମନ ବ୍ରହ୍ମରେ ଲୀନ ହୁଏ ଓ ଆତ୍ମା ଏବଂ ପରମାତ୍ମାଙ୍କ ମଧ୍ୟରେ ଭେଦଜ୍ଞାନ ନଷ୍ଟ ହୋଇ ଅଦ୍ୱୈତଜ୍ଞାନ ସ୍ଥିର ହୁଏ । ଏହି ବିଷୟ ତୃତୀୟ ଷଟ୍କରେ ଅର୍ଥାତ୍ ତ୍ରୟୋଦଶଠାରୁ ଅଷ୍ଟାଦଶ ପର୍ଯ୍ୟନ୍ତ ଅଧ୍ୟାୟମାନଙ୍କରେ ନାନା ସ୍ଥଳରେ ନାନା ପ୍ରକାର ବ୍ୟାଖ୍ୟା କରି ଯାଇଅଛି । ତୁମ୍ଭେ ଯଦି ଆପଣାକୁ ଉତ୍ତମାଧିକାରୀ ବୋଲି ମନେ କର, ତେବେ "ମନ୍ମନା" ହୁଅ ବା ଆମ୍ଭଠାରେ ଅର୍ଥାତ୍ ପରବ୍ରହ୍ମରେ ଏକାଗ୍ରଭାବରେ ମନ ସମର୍ପଣ କର । ଆଉ ତୁମ୍ଭେ ଯଦି ଉତ୍ତମାଧିକାରୀ ନ ହୋଇ ମଧ୍ୟମାଧିକାରୀ ହୋଇଥାଅ, ତେବେ "ମଦ୍ଭକ୍ତଃ ଭବ" ଅର୍ଥାତ୍ ଆମ୍ଭର ଭକ୍ତ ହୁଅ । ଏହି ଗୀତାର ୨ୟ ଷଟ୍କରେ ଅର୍ଥାତ୍ ସପ୍ତମଠାରୁ ଦ୍ୱାଦଶ ପର୍ଯ୍ୟନ୍ତ ୬ ଅଧ୍ୟାୟରେ ଆମ୍ଭେ ଅନନ୍ୟା କଥାର ସହିତ ଭକ୍ତିର ଯେଉଁ ସବୁ ଉପାୟ କହିଅଛୁଁ, ସେହି ଉପାୟଦ୍ୱାରା ଆମ୍ଭର ଭଜନ କର । ତାହା ଯଦି ନ ପାର, ଅର୍ଥାତ୍ ତୁମ୍ଭେ ଯଦି ମଧ୍ୟମାଧିକାରର ଉପଯୁକ୍ତ ହୋଇ ନ ଥାଅ, ବା ତୁମ୍ଭର ଚିତ୍ତଶୁଦ୍ଧି ହୋଇ ନ ଥାଏ, ତେବେ "ମଦ୍ୟାଜୀ ଭବ" ଅର୍ଥାତ୍ ଆମ୍ଭର ଉଦ୍ଦେଶ୍ୟରେ ନିଷ୍କାମଭାବରେ ଯାଗାଦି ସର୍ବପ୍ରକାର ଶାସ୍ତ୍ରୋକ୍ତ କର୍ମ ଅନୁଷ୍ଠାନ କର । ସେହି ନିଷ୍କାମ କର୍ମଯୋଗର ବିସ୍ତୃତ ବିବରଣ ଆମ୍ଭେ ଗୀତାର ପ୍ରଥମ ଷଟ୍କରେ ଦେଇଅଛୁଁ । ଏହି ଉପାୟମାନଙ୍କ ମଧ୍ୟରୁ ଯଦି କୌଣସି ଉପାୟ ଅବଲମ୍ବନ କରି ନ ପାର, ଅର୍ଥାତ୍ ମନ ତୁମ୍ଭର ବଶୀଭୂତ ହୋଇ ନ ଥିବାରୁ ତୁମ୍ଭେ ଯଦି ପ୍ରଥମ ଉପାୟ ଅର୍ଥାତ୍ ବ୍ରହ୍ମରେ ମନୋନିବେଶ କରି ନ ପାର, ଆଉ ଅନ୍ତଃକରଣ ଶୁଦ୍ଧି ହୋଇ ନ ଥିବାରୁ ୨ୟ ଉପାୟ ଅର୍ଥାତ୍ ଭକ୍ତି କରିବାକୁ ଅପାରଗ ହୁଅ, ଏବଂ ଆୟୋଜନର ବାହୁଲ୍ୟ ଭୟରେ ୩ୟ ଉପାୟ ଅର୍ଥାତ୍ ଶାସ୍ତ୍ରବିହିତ ଯାଗାଦି କର୍ମ ନିଷ୍କାମଭାବରେ ଅନୁଷ୍ଠାନ କରିବାକୁ କୁଣ୍ଠିତ ହୁଅ, ତେବେ "ମାଂ ନମସ୍କୁରୁ" ଅର୍ଥାତ୍ ଆମ୍ଭଙ୍କୁ ନମସ୍କାର କର । ଫଳକଥା ଏହି ଯେ ଆମ୍ଭଠାରେ ଶରଣ ପଶ । ତାହା ହେଲେ ଅର୍ଥାତ୍ ଏହି ଚତୁର୍ବିଧ ପ୍ରକାର ଉପାୟ ମଧ୍ୟରୁ ଯେ କୌଣସି ଉପାୟ ଯଥାମତେ ଅବଲମ୍ବନ କଲେ, ଆମ୍ଭଙ୍କୁ ନିଶ୍ଚୟ ପ୍ରାପ୍ତ ହେବ, ଅର୍ଥାତ୍ ତୁମ୍ଭେ ସଂସାରବନ୍ଧନରୁ ମୁକ୍ତ ହେବ, ଏଥିରେ ସନ୍ଦେହ ନାହିଁ । ଏହି କଥା ଆମ୍ଭେ ସତ୍ୟପ୍ରତିଜ୍ଞା କରି ତୁମ୍ଭଙ୍କୁ କହୁଅଛୁଁ । ଏହି ପରମଗୋପନୀୟ ତତ୍ତ୍ୱ ଆମ୍ଭେ ଆଉ କାହାରିକୁ କହି ନାହୁଁ । କେବଳ ତୁମ୍ଭେ ଆମ୍ଭର ପ୍ରିୟ ବୋଲି, ତୁମ୍ଭଙ୍କୁ କହିଲୁଁ ।୬୫ ।

ଶ୍ଳୋକଃ ।

* ସର୍ବଧର୍ମାନ୍ ପରିତ୍ୟଜ୍ୟ, ମାମେକଂ ଶରଣଂ ବ୍ରଜ ।

ଅହଂ ତ୍ୱାଂ ସର୍ବପାପେଭ୍ୟୋ, ମୋକ୍ଷୟିଷ୍ୟାମି ମା ଶୁଚଃ । ୬୬ ।

ଅନ୍ୱୟଃ ।

(ତ୍ୱଂ) ସର୍ବଧର୍ମାନ୍ ପରିତ୍ୟଜ୍ୟ ଏକଂ ମାଂ ଶରଣଂ ବ୍ରଜ, ଅହଂ ତ୍ୱାଂ ସର୍ବପାପେଭ୍ୟଃ ମୋକ୍ଷୟିଷ୍ୟାମି ମା (ତ୍ୱଂ) ଶୁଚଃ । ୬୬ ।

Digitized by PPRACHIN, SOA

## ଟୀକା ।

ତତୋଽପି ଗୁହ୍ୟତମମାହ । ସର୍ବେତି । ମଦ୍ଭକ୍ତ୍ୟୈବ ସର୍ବଂ ଭବିଷ୍ୟତୀତି ଦୃଢ଼ବିଶ୍ୱାସେନ ବିଧିକୈଙ୍କର୍ଯ୍ୟଂ ତ୍ୟକ୍ତ୍ୱା ମଦେକଶରଣୋଭବ । ଏବଂ ବର୍ତ୍ତମାନଃ କର୍ମତ୍ୟାଗନିମିତ୍ତଂ ପାପଂ ସ୍ୟାଦିତି ମାଶୁଚଃ ଶୋକଂ ମାକାର୍ଷୀଃ ଅତସ୍ତ୍ୱାଂ ମଦେକଶରଣଂ ସର୍ବପାପେଭ୍ୟୋଽହଂ ମୋକ୍ଷୟିଷ୍ୟାମି । ୬୬ ।

## ପଦବ୍ୟାଖ୍ୟା ।

ସର୍ବଧର୍ମାନ୍—ସମସ୍ତ ଧର୍ମମାନଙ୍କୁ, ପରିତ୍ୟଜ୍ୟ—ପରିତ୍ୟାଗ କରି, ମାଂ ଏକଂ—କେବଳ ଆମ୍ଭଙ୍କୁ, ଶରଣଂ ବ୍ରଜ—ଶରଣ ପ୍ରାପ୍ତ ହୁଅ, ଅହଂ—ଅମ୍ଭେ ତ୍ୱାଂ—ତୁମ୍ଭଙ୍କୁ, ସର୍ବପାପେଭ୍ୟଃ—ସମସ୍ତ ପାପରୁ, ମୋକ୍ଷୟିଷ୍ୟାମି—ମୁକ୍ତ କରିବୁଁ, ମା (ସ୍ମ) ଶୁଚଃ—ଶୋକ କର ନାହିଁ । ୬୬ ।

## ଅନୁବାଦ ।

ତୁମ୍ଭେ ସକଳ ପ୍ରକାର ଧର୍ମ ପରିତ୍ୟାଗ କରି କେବଳ ଆମ୍ଭରଠାରେ ଶରଣ ପଶ । ଅମ୍ଭେ ତୁମ୍ଭଙ୍କୁ ସମସ୍ତ ପାପରୁ ମୁକ୍ତ କରିବୁଁ, ତୁମ୍ଭେ ଶୋକ କର ନା । ୬୬ ।

## ବିଶଦବ୍ୟାଖ୍ୟା ।

ବର୍ଣ୍ଣଧର୍ମ, ଆଶ୍ରମଧର୍ମ, ବର୍ଣ୍ଣାଶ୍ରମଧର୍ମ, ଗୌଣଧର୍ମ ଓ ନୈମିତ୍ତିକଧର୍ମ ଏବଂ ସାମାନ୍ୟ ବା ସାଧାରଣ ଧର୍ମ ଇତ୍ୟାଦି ଭେଦରେ ଧର୍ମ ନାନା ପ୍ରକାର ଅଟେ । ଶ୍ରୀଭଗବାନ୍ କହୁଅଛନ୍ତି, ଯେ ହେ ଅର୍ଜ୍ଜୁନ ! ସେହି ସର୍ବପ୍ରକାର ଧର୍ମକୁ ପରିତ୍ୟାଗ କରି ତୁମ୍ଭେ କେବଳ ଆମ୍ଭଠାରେ ଶରଣ ପଶ । ଯେହେତୁ ଅମ୍ଭେ ସର୍ବଧର୍ମର ଆଶ୍ରୟ ଅଟୁଁ । ବର୍ଣ୍ଣାଶ୍ରମାଦି ଧର୍ମ ସବୁ କେବଳ ଚିତ୍ତଶୁଦ୍ଧିପାଇଁ ଆବଶ୍ୟକ । ତହିଁରେ ଆସକ୍ତ ହେଲେ, ଅର୍ଥାତ୍ ସେ ସମସ୍ତର ଶରଣ ନେଲେ, ତୁମ୍ଭର କଦାପି ମୋକ୍ଷଲାଭ ହେବ ନାହିଁ । କେବଳ ଆମ୍ଭର ଅନୁଗ୍ରହବଳରେ ତୁମ୍ଭେ ମୋକ୍ଷପ୍ରାପ୍ତ ହେବ; ଅତଏବ ଆମ୍ଭଠାରେ ଶରଣାଗତ ହୁଅ । ବର୍ଣ୍ଣାଶ୍ରମାଦି ଧର୍ମ ପାଳନ କଲେ ତାହାଦ୍ୱାରା ଅମ୍ଭେ ସନ୍ତୁଷ୍ଟ ହେବୁଁ ଓ ଆମ୍ଭ ଅନୁଗ୍ରହରେ ତୁମ୍ଭର ପରମପଦ ଲାଭ ହେବ । ସୁତରାଂ ବର୍ଣ୍ଣାଶ୍ରମାଦି ଧର୍ମ ନିଜେ ମୋକ୍ଷ ପ୍ରଦାନ କରି ନ ପାରି ଆମ୍ଭର ଅନୁଗ୍ରହକୁ ଅପେକ୍ଷା କରୁଅଛି । ମାତ୍ର ଆମ୍ଭଠାରେ ଶରଣାଗତ ହେଲେ, ମୋକ୍ଷପ୍ରାପ୍ତି ବିଷୟରେ ଆଉ କାହାରିକି ଅପେକ୍ଷା କରିବାକୁ ହେବ ନାହିଁ । ଅତଏବ ତୁମ୍ଭେ ସର୍ବପ୍ରକାର ଧର୍ମର ଶରଣ ନ ନେଇ କେବଳ ଆମ୍ଭରଠାରେ ଶରଣାଗତ ହୁଅ । ଆମ୍ଭଠାରେ ଏକାନ୍ତଭାବରେ ଶରଣାଗତ ହେଲେ, ଯଦି ତୁମ୍ଭର ବର୍ଣ୍ଣାଶ୍ରମାଦି ଧର୍ମ ପାଳନରେ କୌଣସି ପ୍ରକାର ତ୍ରୁଟି, ଏବଂ ସେଥିଲାଗି ତୁମ୍ଭର ପାପ ହୁଏ, ଅଥବା କ୍ଷତ୍ରିୟର ବର୍ଣ୍ଣାଶ୍ରମଧର୍ମ ପାଳନରେ ନରହତ୍ୟାଦି ପାତକ ହୁଏ, ତେବେ ସେ ସବୁ ପାପରୁ ଅମ୍ଭେ ତୁମ୍ଭଙ୍କୁ ପରିତ୍ରାଣ କରିବୁଁ, ଅତଏବ ତୁମ୍ଭେ ଶୋକ କର ନା ।

ଏ ଶ୍ଳୋକରେ "ସର୍ବଧର୍ମାନ୍" ଏ ପଦକୁ ଭିନ୍ନ ଭିନ୍ନ ଟୀକାକାରମାନେ ଭିନ୍ନ ଭିନ୍ନ ଅର୍ଥ କରିଅଛନ୍ତି । ମାତ୍ର ଗୀତାର ଆଦ୍ୟରୁ ଶେଷ ପର୍ଯ୍ୟନ୍ତ ଆଲୋଚନା କଲେ, ଏବଂ ଗୀତାର ଉପଦେଶ ଶୁଣିବା ପରେ ଅର୍ଜ୍ଜୁନଙ୍କର ଉକ୍ତି ଓ ଆଚରଣପ୍ରତି ଲକ୍ଷ୍ୟ କଲେ, ଜଣାଯିବ, ଯେ ଏହି ବ୍ୟାଖ୍ୟାରେ ଯେଉଁ ମତ ଦିଆଗଲା, ତାହାହିଁ ସୁସଙ୍ଗତ ଅଟେ । ସ୍ୱାମୀ ଶ୍ରୀ ମଧୁସୂଦନ ସରସ୍ୱତୀ

Digitized by PPRACHIN, SOA

ଆପଣା ଟୀକାରେ ଏହି ମତ ସ୍ଥିର କରି ଅପର ମତମାନ ବହୁତ ଓ ବିସ୍ତୃତରୂପେ ଖଣ୍ଡନ କରି-ଅଛନ୍ତି ।

ଏ ଶ୍ଲୋକରେ "ମାମେକଂ ଶରଣଂ ବ୍ରଜ" ଅର୍ଥାତ୍ 'ଏକମାତ୍ର ଆମ୍ଭଠାରେ ଶରଣ ପଶ' ବୋଲି ଶ୍ରୀଭଗବାନ୍ କହିଲେ । ଭଗବାନଙ୍କଠାରେ 'ଶରଣ' ତିନି ପ୍ରକାର ହୁଏ । ଯଥା,—ତସ୍ୟୈବାହଂ ମମୈବାସୌ ସଏବାହମିତି ତ୍ରିଧା । ଭଗବଚ୍ଛରଣତ୍ୱଂ ସ୍ୟାତ୍ସାଧନା-ଭ୍ୟାସପାକତଃ ।' ଅର୍ଥାତ୍ ପରମେଶ୍ୱରଙ୍କର ମୁଁ, ମୋର ପରମେଶ୍ୱର ଓ ମୁଁ ପରମେଶ୍ୱର, ଏହି ତିନି ପ୍ରକାରେ ଭଗବତ୍ ଶରଣତ୍ୱ ହୁଏ । ତାହା ସାଧକର ଯଥାକ୍ରମେ ସାଧନ, ଅଭ୍ୟାସ ଓ ପରିପାକଦ୍ୱାରା ସିଦ୍ଧ ହୁଏ । ଅର୍ଥାତ୍ ସାଧକର ସାଧନାଦ୍ୱାରା ପ୍ରଥମ ପ୍ରକାର ଭଗବଚ୍ଛରଣତ୍ୱ ବା 'ମୁଁ ପରମେଶ୍ୱରଙ୍କର' ଏପରି ଜ୍ଞାନ ହୁଏ । ତାହାକୁ ମୃଦୁଶରଣତ୍ୱ ବୋଲାଯାଏ । ଯଥା,— "ସତ୍ୟପି ଭେଦାପଗମେ ନାଥ ତବାହଂ ନ ମାମକୀନସ୍ତ୍ୱଂ । ସାମୁଦ୍ରୋହି ତରଙ୍ଗଃ, କ୍ୱଚନ ସମୁଦ୍ରୋ-ନ ତାରଙ୍ଗଃ" । ଅର୍ଥାତ୍ ହେ ନାଥ ! ତୁମ୍ଭ ଓ ମୋ ମଧ୍ୟରେ ପ୍ରଭେଦ ନ ଥିଲେ ସୁଦ୍ଧା, ମୁଁ ତୁମ୍ଭର ଅଟେ, ତୁମ୍ଭେ ମୋହର ନୁହ । ଯେପରି ସମୁଦ୍ର ଓ ତରଙ୍ଗ ମଧ୍ୟରେ ଭେଦ ନ ଥିଲେ ସୁଦ୍ଧା, 'ସମୁଦ୍ରର ତରଙ୍ଗ' ବୋଲାଯାଏ, 'ତରଙ୍ଗର ସମୁଦ୍ର' ଏହା କେହି କହନ୍ତି ନାହିଁ ।

ଉକ୍ତପ୍ରକାର ଭଗବତ୍ ଶରଣତାର ବୃଦ୍ଧି 'ଅଭ୍ୟାସ' ହେଲେ, ୨ୟ ପ୍ରକାର, ଅର୍ଥାତ୍ 'ମୋହର ପରମେଶ୍ୱର' ଏପରି ଜ୍ଞାନ ହୁଏ ଓ ତାହାକୁ 'ମଧ୍ୟମଶରଣତ୍ୱ' ବୋଲାଯାଏ । ଯଥା—"ହସ୍ତମୁତ୍କ୍ଷିପ୍ୟ ଯାତୋଽସି, ବଳାତ୍ କୃଷ୍ଣ କିମଦ୍ଭୁତଂ । ହୃଦୟାଦ୍ୟଦି ନିର୍ଯାସି ପୌରୁଷଂ ଗଣୟାମି ତେ" । ଅର୍ଥାତ୍ ହେ କୃଷ୍ଣ ! ତୁମ୍ଭେ ମୋହର ହାତ ଝୋପାଡ଼ି ଦେଇ ବଳପୂର୍ବକ ଚାଲି ଯାଉଅଛ, ଏଥିରେ ଆଶ୍ଚର୍ଯ୍ୟ କଣ ? କିନ୍ତୁ ତୁମ୍ଭେ ଯଦି ମୋହର ହୃଦୟରୁ ବାହାରି ଯାଇ ପାରିବ, ତେବେ ତୁମ୍ଭର ପୌରୁଷ ଜଣାଯିବ ।

ଏହି ଭାବରେ ହିନ୍ଦୀଭାଷାର ପ୍ରସିଦ୍ଧ କବି ସୂରଦାସଙ୍କର ଗୋଟିଏ କବିତା ଅଛି, ଯଥା— 'ହାଥ ଛୁଡ଼ାଏ ଯାତହୋ ଦୁର୍ବଲଯାନେ ମୋଏ । ହୃଦୟ ସେ ଯବ୍ ନିକସ୍ ଯାଓଗେ ପୁରୁଷ ବଖାନୋ ତୋଏ । ଇତ୍ୟାଦି ।

ଶ୍ରୀକୃଷ୍ଣଙ୍କର ପ୍ରତି ଗୋପାଙ୍ଗନାଙ୍କର ଏହି ଉକ୍ତିରୁ ଏହା ଜଣା ଯାଉଅଛି, ଯେ ଶ୍ରୀକୃଷ୍ଣ ସେହି ଗୋପୀଙ୍କର ଯେପରି ହୃଦୟର ଧନ ଥିଲେ, ଆଉ କାହାର ନ ଥିଲେ । ଏହା ମଧ୍ୟମଶରଣତାର ଉଦାହରଣ ।

ଏପ୍ରକାର ଭଗବତ୍ ଶରଣତାର ପରିପାକ ହେଲେ "ଅହଂ ବ୍ରହ୍ମାସ୍ମି", "ସର୍ବଂ ଖଲ୍ୱିଦଂ ବ୍ରହ୍ମ" ଇତ୍ୟାଦି ମହାବାକ୍ୟଘଟିତ ଯେଉଁ ଜ୍ଞାନ ଜାତ ହୁଏ, ତାହା ତୃତୀୟ ପ୍ରକାର ଭଗବତ୍ଶରଣତା ଅଟେ ଓ ତାହାକୁ 'ଅଧିମାତ୍ର ଶରଣତା' ବୋଲାଯାଏ । "ସକଳମିଦମହଂ ଚ ବାସୁଦେବଃ ପରମଃ ପୁମାନ୍ ପରମେଶ୍ୱରଃ ସ ଏକଃ । ଇତି ମତିରଚଳା ଭବତ୍ୟନନ୍ତେ ହୃଦୟ-ଗତେ ବ୍ରଜ ତାନ୍ ବିହାୟ ଦୂରାତ୍" । ଅର୍ଥାତ୍ ଦୃଶ୍ୟମାନ ଏହି ଜଗତ୍ ଓ ମୁଁ, ସମସ୍ତ ବାସୁଦେବ-ସ୍ୱରୂପ, ସେହି ବାସୁଦେବ ପରମପୁରୁଷ ଓ ପରମେଶ୍ୱର ଅର୍ଥାତ୍ ଅଦ୍ୱିତୀୟ ଅଟନ୍ତି । ଏହିପରି ନିଶ୍ଚଳଭାବ ଯାହାଙ୍କର ହୃଦୟରେ ନିରନ୍ତର ବଦ୍ଧମାନ, ସେମାନଙ୍କୁ ଦୂରରୁ ପରିତ୍ୟାଗ କରି

Digitized by PPRACHIN, SOA

ଗମନ କର । ତୃତଙ୍କ ପ୍ରତି ଯମରାଜଙ୍କର ଏହି ଉକ୍ତିରେ ଅତିମାତ୍ର ଶରଣତା ପ୍ରାପ୍ତ ଭଗବତ୍ ଭକ୍ତଙ୍କ ପ୍ରତି ଲକ୍ଷ କରା ହୋଇଅଛି ।

ଶ୍ରୀମଦ୍‌ଭଗବଦ୍‌ଗୀତାରେ କର୍ମଯୋଗ, ଭକ୍ତିଯୋଗ ଓ ଜ୍ଞାନଯୋଗ, ଏପରି ତିନି ପ୍ରକାର ନିଷ୍ଠାର କଥା ବସ୍ତୁତରୂପେ ବୁଝାଇ ଦିଆ ଯାଇଅଛି, ତନ୍ମଧ୍ୟରୁ ଭକ୍ତି କର୍ମଯୋଗର ଓ ଜ୍ଞାନଯୋଗର ସାଧନସ୍ୱରୂପ ଅଟେ । ଅର୍ଥାତ୍ ବିନାଭକ୍ତିରେ କର୍ମଯୋଗ ବା ଜ୍ଞାନଯୋଗ ସିଦ୍ଧି ହୋଇପାରେ ନାହିଁ ।

ଏହି ଶେଷ ଅଷ୍ଟାଦଶ ଅଧ୍ୟାୟ ସମସ୍ତ ଗୀତାର ଉପସଂହାରସ୍ୱରୂପ । କର୍ମାନୁଷ୍ଠାନଠାରୁ ଫଳ ସହିତ ସର୍ବକର୍ମର ସନ୍ନ୍ୟାସ ପର୍ଯ୍ୟନ୍ତ ବିଷୟମାନ କର୍ମଯୋଗର ଅନ୍ତର୍ଗତ ଅଟେ । ତାହା ପ୍ରଥମ ଷଟ୍କରେ ବସ୍ତୁତରୂପେ ଓ ପ୍ରସଙ୍ଗକ୍ରମରେ ଅନ୍ୟାନ୍ୟ ଷଟ୍କରେ କୁହା ଯାଇଥିଲା । ଏ ଅଧ୍ୟାୟରେ "ସ୍ୱକର୍ମଣା ତମଭ୍ୟର୍ଚ୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ" ଇତ୍ୟାଦି ବଚନରେ (୪୬ ଶ୍ଳୋକରେ) ସେହି କର୍ମଯୋଗର ଉପସଂହାର କରା ଯାଇଅଛି ।

ତୃତୀୟ ଷଟ୍କରେ ବସ୍ତୁତରୂପେ ଓ ଅନ୍ୟାନ୍ୟ ଷଟ୍କରେ ପ୍ରସଙ୍ଗକ୍ରମେ ଯେଉଁ ଜ୍ଞାନନିଷ୍ଠା କଥାର ଉଲ୍ଲେଖ ହୋଇଅଛି, ତାହାର ଉପସଂହାର ଏହି ଅଧ୍ୟାୟର ୫୫ ଶ୍ଳୋକରେ "ତତୋ ମାଂ ତତ୍ତ୍ୱତୋ ଜ୍ଞାତ୍ୱା ବିଶତେ ତଦନନ୍ତରଂ" ଇତ୍ୟାଦି ବଚନରେ କରା ହୋଇଅଛି ।

କର୍ମଯୋଗର ଓ ଜ୍ଞାନଯୋଗର ସାଧନସ୍ୱରୂପ, ଯେ ଭକ୍ତିଯୋଗ, ତାହାର ବସ୍ତୁତ ବିବରଣ ଏହି ଗୀତାର ୨ୟ ଷଟ୍କରେ ଓ ପ୍ରସଙ୍ଗକ୍ରମେ ଅନ୍ୟାନ୍ୟ ଷଟ୍କରେ ଦିଆ ଯାଇଅଛି । ଏହି ଅଧ୍ୟାୟର ଏହି ଶ୍ଳୋକରେ "ସର୍ବଧର୍ମାନ୍ ପରିତ୍ୟଜ୍ୟ, ମାମେକଂ ଶରଣଂ ବ୍ରଜ" ଇତ୍ୟାଦି ବଚନରେ ସେହି ଭକ୍ତିଯୋଗର ଉପସଂହାର କରିଗଲେ ।

ଏହି ପର୍ଯ୍ୟନ୍ତ ଗୀତାର ଉପଦେଶ ଶେଷ ହେଲା । ଏଣିକି ଗୀତାପାଠରେ ଅଧିକାରୀ-ସମ୍ପ୍ରଦାୟ ନିର୍ଣ୍ଣୟ କରା ଯାଉଅଛି । ୬୬ ।

ଶ୍ଳୋକଃ ।

* ଇଦଂ ତେ ନାତପସ୍କାୟ, ନାଭକ୍ତାୟ କଦାଚନ ।
ନ ଚାଶୁଶ୍ରୂଷବେ ବାଚ୍ୟଂ, ନ ଚ ମାଂ ଯୋଽଭ୍ୟସୂୟତି । ୬୭ ।

ଅନ୍ୱୟଃ ।

ତେ ଇଦଂ ଅତପସ୍କାୟ ନ ବାଚ୍ୟଂ, ଅଭକ୍ତାୟ କଦାଚନ ନ, ଚ ଅଶୁଶ୍ରୂଷବେ ନ, ଚ ମାଂ ଯଃ ଅଭ୍ୟସୂୟତି (ତସ୍ମୈ) ନ (ବାଚ୍ୟଂ) । ୬୭ ।

ଟୀକା ।

ଏବଂ ଗୀତାର୍ଥତତ୍ତ୍ୱମୁପଦିଶ୍ୟ ତତ୍ସମ୍ପ୍ରଦାୟପ୍ରବର୍ତ୍ତନେ ନିୟମମାହ । ଇଦମିତି । ଇଦଂ ଗୀତାର୍ଥତତ୍ତ୍ୱଂ ତେ ତ୍ୱୟା ଅତପସ୍କାୟ ଧର୍ମାନୁଷ୍ଠାନହୀନାୟ ନ ବାଚ୍ୟଂ ନ ଚ ଅଭକ୍ତାୟ ଗୁରୌ ଈଶ୍ୱରେ ଚ ଭକ୍ତିଶୂନ୍ୟାୟ କଦାଚିଦପି ନ ବାଚ୍ୟଂ, ନଚ ଅଶୁଶ୍ରୂଷବେ ପରିଚର୍ଯ୍ୟାମକୁର୍ବତେ ବାଚ୍ୟଂ, ମାଂ ପରମେଶ୍ୱରଂ ଯୋଽଭ୍ୟସୂୟତି ମନୁଷ୍ୟଦୃଷ୍ଟ୍ୟା ଦୋଷାରୋପେଣ ନିନ୍ଦତି ତସ୍ମୈ ଚ ନ ବାଚ୍ୟଂ । ୬୭ ।

Digitized by PPRACHIN, SOA

### ପଦବ୍ୟାଖ୍ୟା ।

ଇଦଂ—ଏହି ଗୀତାର ଗୁପ୍ତରହସ୍ୟ, ତେ—ତୁମ୍ଭେ, ନ—ନାହିଁ, ଅତପସ୍କାୟ—ଧର୍ମାନୁଷ୍ଠାନରହିତ ବ୍ୟକ୍ତିକୁ, ନ ଅଭକ୍ତାୟ—ଭକ୍ତିହୀନ ଲୋକକୁ କହିବ ନାହିଁ, କଦାଚନ—କେବେହେଁ, ନ ଚ ଅଶୁଶ୍ରୂଷବେ ବାଚ୍ୟଂ—ଗୁରୁସେବାବିମୁଖ ବ୍ୟକ୍ତିକୁ ମଧ୍ୟ, କହିବ ନାହିଁ, ନ ଚ—କହିବ ନାହିଁ, ମାଂ ଯଃ ଅଭ୍ୟସୂୟତି—ଯେ ଆମ୍ଭଙ୍କୁ ନିନ୍ଦା କରେ । ୬୭ ।

### ଅନୁବାଦ ।

(ହେ ଅର୍ଜୁନ !) ତୁମ୍ଭେ ତପସ୍ୟାହୀନ, ଭକ୍ତିଶୂନ୍ୟ, ଗୁରୁସେବାବିମୁଖ ଓ ଆମ୍ଭର ନିନ୍ଦୁକ ବ୍ୟକ୍ତିଙ୍କୁ ଏହି ଗୀତାତତ୍ତ୍ୱ କଦାପି କହିବ ନାହିଁ । ୬୭ ।

### ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜୁନ ! ତୁମ୍ଭେ ଆମ୍ଭର ଭକ୍ତ ଓ ଶରଣାପନ୍ନ ଶିଷ୍ୟ ବୋଲି, ତୁମ୍ଭର ଜନ୍ମମରଣରୂପ ବନ୍ଧନ ମୋଚନ ନିମିତ୍ତ, ଆମ୍ଭେ ସର୍ବଶାସ୍ତ୍ରର ସାର ଓ ଅତି ଗୋପନୀୟ ଏହି ପରମତତ୍ତ୍ୱ ତୁମ୍ଭ ଆଗରେ ବ୍ୟାଖ୍ୟା କଲୁଁ । ମାତ୍ର ତୁମ୍ଭେ ଏହାକୁ ଅତି ଗୋପନରେ ରଖିବ । ଯଦି ଲୋକଙ୍କ ପ୍ରତି ନିତାନ୍ତ କୃପାପରବଶ ହୋଇ ଏହା ଗୋପନ ରଖି ନ ପାର, ତେବେ ଅନ୍ତତଃ ଯେଉଁ ବ୍ୟକ୍ତି 'ଅତପସ୍କ'—ତପସ୍ୟାବିହୀନ, ଅର୍ଥାତ୍ ଇନ୍ଦ୍ରିୟ-ସମୂହକୁ ସଂଯମ କରି ପାରେ ନାହିଁ, ତାହାକୁ ଏ ଗୀତାରହସ୍ୟ କଦାପି କହିବ ନାହିଁ । ଆଉ ଯେଉଁ ବ୍ୟକ୍ତି ଗୁରୁଙ୍କଠାରେ ଓ ଈଶ୍ୱରଙ୍କଠାରେ ଭକ୍ତିଶୂନ୍ୟ, ତାହାକୁ ମଧ୍ୟ, ଏ ପରମ ରହସ୍ୟ କଦାପି କହିବ ନାହିଁ । ପୁଣି ଯେଉଁ ବ୍ୟକ୍ତି ବ୍ରହ୍ମନିଷ୍ଠ ଗୁରୁଙ୍କର ପାଦପ୍ରକ୍ଷାଳନାଦି-ଦ୍ୱାରା ଶୁଶ୍ରୂଷା ଅର୍ଥାତ୍ ସେବା ନ କରନ୍ତି, ସେ ବ୍ୟକ୍ତି ଏହି ଗୋପନୀୟ ତତ୍ତ୍ୱ ଶ୍ରବଣର ଅନ-ଧିକାରୀ; ଅତଏବ ତାହାଙ୍କୁ ମଧ୍ୟ, ଏହା କଦାପି ଶୁଣାଇବ ନାହିଁ । ସେହିପରି ଯେଉଁ ବ୍ୟକ୍ତି ଆମ୍ଭଙ୍କୁ ଅର୍ଥାତ୍ ପରମେଶ୍ୱରଙ୍କୁ ଅସୂୟା—ନିନ୍ଦା ଦ୍ୱେଷ କରନ୍ତି, ସେ ବ୍ୟକ୍ତିଙ୍କ ମଧ୍ୟ, କଦାପି ଏହି ରହସ୍ୟ ପ୍ରଦାନ କରିବ ନାହିଁ ।

ଫଳକଥା ଏହି କି ଯେଉଁ ବ୍ୟକ୍ତି ଜିତେନ୍ଦ୍ରିୟ, ଗୁରୁ ଓ ଈଶ୍ୱରଭକ୍ତିପରାୟଣ, ଗୁରୁ-ସେବାକାରୀ ଓ ପରମେଶ୍ୱରଙ୍କଠାରେ ଅନୁରାଗଯୁକ୍ତ, କେବଳ ସେହି ବ୍ୟକ୍ତି ଏ ଗୀତାରହସ୍ୟ ଜ୍ଞାନର ଅଧିକାରୀ, ତଦ୍‌ଭିନ୍ନ ଅନ୍ୟ କେହି ଏହାର ଅଧିକାରୀ ନୁହନ୍ତି । ଏମନ୍ତ କି ଜିତେନ୍ଦ୍ରିୟତା, ଭକ୍ତି, ଗୁରୁସେବା ଓ ଈଶ୍ୱରାନୁରାଗ ଏ ଚାରିଟି ମଧ୍ୟରୁ ଗୋଟିଏ ଗୁଣର ଅଭାବ ଥିଲେ, କୌଣସି ବ୍ୟକ୍ତି ଏହାର ପ୍ରକୃତ ଅଧିକାରୀ ହୋଇ ପାରିବେ ନାହିଁ, ଅତଏବ ସେପରି ଲୋକଙ୍କୁ ଏହା କଦାପି ପ୍ରଦାନ କରିବ ନାହିଁ । ଏ ବିଷୟରେ ଶ୍ରୁତିରେ ମଧ୍ୟ ପ୍ରମାଣ ଅଛି, ଯେ "ବିଦ୍ୟା ହ ବୈ ବ୍ରାହ୍ମଣମାଜଗାମ ଗୋପାୟ ମାଂ ଶେବଧିଷ୍ଟେଽହମସ୍ମି । ଅସୂୟକାୟାନୃଜବେଽୟତାୟ ନ ମା ବ୍ରୂୟା ଅବୀର୍ଯ୍ୟବତୀ ତଥା ସ୍ୟାଂ ।" ଅର୍ଥାତ୍ ଏକ ସମୟରେ ବ୍ରହ୍ମବିଦ୍ୟା ବ୍ରାହ୍ମଣଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, ଯେ ହେ ବ୍ରାହ୍ମଣଗଣ ! ତୁମ୍ଭର ମୁଁ ନିଧିସ୍ୱରୂପ, ତୁମ୍ଭେମାନେ ମୋତେ ଗୋପନରେ ରଖିବ । ନିନ୍ଦୁକ, କପଟୀ, ଓ ଅଜିତେନ୍ଦ୍ରିୟ ବ୍ୟକ୍ତିଙ୍କ ହସ୍ତରେ ମତେ ସମର୍ପଣ କରିବ ନାହିଁ । ଯଦି କର, ତେବେ ମୁଁ ଶୁଭଫଳ ପ୍ରସବ କରି ପାରିବି

ନାହିଁ, ଇତ୍ୟାଦି । ପୁଣି ଏହା ମଧ୍ୟ, ଲେଖା ଅଛି, ଯେ,—"ଯସ୍ୟ ଦେବେ ପରା ଭକ୍ତିର୍ଯଥା ଦେବେ ତଥା ଗୁରୌ । ତସ୍ୟୈତେ କଥିତା ହ୍ୟର୍ଥାଃ ପ୍ରକାଶନ୍ତେ ମହାତ୍ମନଃ । ଅର୍ଥାତ୍ ଯେଉଁ ମହାତ୍ମାଙ୍କର ପରମାତ୍ମା ଦେବଙ୍କଠାରେ ଶ୍ରେଷ୍ଠଭକ୍ତି ଥିବ ଓ ଦେବତାଙ୍କଠାରେ ଯେପରି ଗୁରୁଙ୍କଠାରେ ମଧ୍ୟ, ସେହିପରି ଭକ୍ତି ଥିବ, ସେହି ମହାତ୍ମାଙ୍କ ନିକଟରେ କେବଳ ଏହା କଥିତ ହେଲେ, ଏଥିର ଅର୍ଥ ପ୍ରକାଶିତ ହେବ । ଅର୍ଥାତ୍ କେବଳ ସେହି ମହାତ୍ମା ଏହାର ପ୍ରକୃତ-ତତ୍ତ୍ୱ ଗ୍ରହଣ ଓ ଧାରଣ କରି ପାରିବେ । ୬୭ ।

## ଶ୍ଳୋକଃ ।

* ଯ ଇମଂ ପରମଂ ଗୁହ୍ୟଂ, ମଦ୍ଭକ୍ତେଷ୍ୱଭିଧାସ୍ୟତି ।
ଭକ୍ତିଂ ମୟି ପରାଂ କୃତ୍ୱା, ମାମେବୈଷ୍ୟତ୍ୟସଂଶୟଃ । ୬୮ ।

## ଅନ୍ୱୟଃ ।

ଯଃ ମୟି ପରାଂ ଭକ୍ତିଂ କୃତ୍ୱା ଇଦଂ ପରମଂ ଗୁହ୍ୟଂ ମଦ୍ଭକ୍ତେଷୁ ଅଭିଧାସ୍ୟତି (ସଃ) ମାଂ ଅସଂଶୟଃ ଏବ ଏଷ୍ୟତି । ୬୮ ।

## ଟୀକା ।

ଏତୈର୍ଦୋଷୈ ରହିତେଭ୍ୟୋ ଗୀତାଶାସ୍ତ୍ରୋପଦେଷ୍ଟୁଃ ଫଳମାହ । ଯ ଇମମିତି । ମଦ୍ଭକ୍ତେଭ୍ୟୋଽଭିଧାସ୍ୟତି ମଦ୍ଭକ୍ତେଭ୍ୟୋ ବକ୍ଷ୍ୟତି ସ ମୟି ପରାଂ ଭକ୍ତିଂ କରୋତି ତତୋଽସଂଶୟଃ ସନ୍ ମାମେବ ପ୍ରାପ୍ନୋତୀତ୍ୟର୍ଥଃ । ୬୮ ।

## ପଦବ୍ୟାଖ୍ୟା ।

ଯଃ—ଯେଉଁ ବ୍ୟକ୍ତି, ଇମଂ ପରମଂ ଗୁହ୍ୟଂ—ଏହି ଅତି ଗୋପନୀୟ ଗୀତା ରହସ୍ୟକୁ, ମଦ୍ଭକ୍ତେଷୁ—ଆମ୍ଭର ଭକ୍ତମାନଙ୍କ ମଧ୍ୟରେ, ଅଭିଧାସ୍ୟତି—କହିବେ, ଭକ୍ତିଂ ମୟି ପରାଂ କୃତ୍ୱା—ଆମ୍ଭଠାରେ ଉତ୍କୃଷ୍ଟ ଭକ୍ତି କରି, ମାଂ ଏବ ଏଷ୍ୟତି—ଆମ୍ଭଙ୍କୁହିଁ ପ୍ରାପ୍ତ ହେବେ, ଅସଂଶୟଃ—ଏଥିରେ ସନ୍ଦେହ ନାହିଁ । ୬୮ ।

## ଅନୁବାଦ ।

ଯେଉଁ ବ୍ୟକ୍ତି ଆମ୍ଭଠାରେ ଏକାନ୍ତ ଭକ୍ତିକରି ଏହି ଅତି ଗୋପନୀୟ ଗୀତାରହସ୍ୟକୁ ଆମ୍ଭର ଭକ୍ତମାନଙ୍କ ମଧ୍ୟରେ ବ୍ୟାଖ୍ୟା କରିବେ, ସେ ଆମ୍ଭଙ୍କୁହିଁ ପ୍ରାପ୍ତ ହେବେ, ଏଥିରେ ସନ୍ଦେହ ନାହିଁ । ୬୮ ।

## ବିଶଦବ୍ୟାଖ୍ୟା ।

ଏହି ଗୀତାରେ ସକଳ ଶାସ୍ତ୍ରର ତତ୍ତ୍ୱ କଥା କେତେକ ମୁଖ୍ୟ, କେତେକ ଅବା ଗୌଣ-ରୂପରେ ବ୍ୟାଖ୍ୟା କରାହୋଇ ଅଛି, ଏଣୁକରି ଏହା ପରମଗୁହ୍ୟ ବା ଅତି ଗୋପନୀୟ ଅର୍ଥାତ୍ ଅଧିକାରୀ ପୁରୁଷ ଭିନ୍ନ, ଅନ୍ୟ ନିକଟରେ ପ୍ରକାଶର ଅଯୋଗ୍ୟ । ଯେଉଁ ବ୍ୟକ୍ତି ଆମ୍ଭଠାରେ ଏକାନ୍ତ ଭକ୍ତି କରି ଏହି ଗୋପନୀୟ ତତ୍ତ୍ୱକୁ ଆମ୍ଭର ଭକ୍ତମାନଙ୍କ ନିକଟରେ ବ୍ୟାଖ୍ୟା କରିବେ, ସେ ଆମ୍ଭଙ୍କୁ ପ୍ରାପ୍ତ ହେବେ, ଏଥିରେ ସନ୍ଦେହ ନାହିଁ ।

ଫଳକଥା ଏହି କି ବକ୍ତା ଓ ଶ୍ରୋତା ଉଭୟହିଁ ଆମ୍ଭଠାରେ ଭକ୍ତି କରି ଗୀତାର

ବ୍ୟାଖ୍ୟାନ ଓ ଶ୍ରବଣ କରିବେ । ତାହାହେଲେ, ସେମାନଙ୍କର ମୋକ୍ଷ ପ୍ରାପ୍ତି ହେବ, ଏଥିରେ ସନ୍ଦେହ ନାହିଁ ।

ଦେବନ୍ଦ୍ର ଟୀକାକାର ଏପରି ଅର୍ଥ କରନ୍ତି, ଯେ ଯେଉଁ ବ୍ୟକ୍ତି ଭକ୍ତ ନ ହୋଇ କେବଳ ପାଣ୍ଡିତ୍ୟ ସମ୍ମାନ ଓ ଖ୍ୟାତିଲାଭର ଆଶାରେ ଏହି ଗୋପନୀୟ ରହସ୍ୟ ଆମ୍ଭର ଭକ୍ତମାନଙ୍କୁ ଶୁଣାଇବେ, ସେ, ଭଗବାନଙ୍କ ସମ୍ପର୍କଶୂନ୍ୟ ହୋଇ ପରିଶେଷରେ ଆମ୍ଭଠାରେ ଏକାନ୍ତ ଭକ୍ତିଲାଭ କରି ଆମ୍ଭକୁ ଲାଭ କରିବେ, ଏଥିରେ ସନ୍ଦେହ ନାହିଁ । ୬୮ ।

ଶ୍ଳୋକଃ ।

ନ ଚ ତସ୍ମାନ୍ମନୁଷ୍ୟେଷୁ, କଶ୍ଚିନ୍ମେ ପ୍ରିୟକୃତ୍ତମଃ ।
ଭବିତା ନ ଚ ମେ ତସ୍ମା, ଦନ୍ୟଃ ପ୍ରିୟତରୋ ଭୁବି । ୬୯ ।

ଅନ୍ୱୟଃ ।

ମନୁଷ୍ୟେଷୁ ତସ୍ମାତ୍ ମେ କଶ୍ଚିତ୍ ପ୍ରିୟକୃତ୍ତମଃ ନ, ଚ (ନ) ଭବିତା, ତସ୍ମାତ୍ ଚ ମେ ଅନ୍ୟଃ ପ୍ରିୟତରଃ ଭୁବି ନ (ଅନ୍ୟୋ ବା ନ ଭବିତା) । ୬୯ ।

ଟୀକା ।

କିଂ ଚ ନ ଚେତି । ତସ୍ମାନ୍ମଦ୍ଭକ୍ତେଭ୍ୟୋଗୀତାଶାସ୍ତ୍ରବ୍ୟାଖ୍ୟାତୁଃ ସକାଶାଦନ୍ୟୋମନୁଷ୍ୟେଷୁ ମଧ୍ୟେ କଶ୍ଚିଦପି ମମ ପ୍ରିୟକୃତ୍ତମୋଽତ୍ୟନ୍ତଂ ପରିତୋଷକର୍ତ୍ତା ନାସ୍ତି, ନ ଚ କାଳାନ୍ତରେ ଭବିଷ୍ୟତି, ମମାପି ତସ୍ମାଦନ୍ୟଃ ପ୍ରିୟତରୋଽଧିକୋ ଭୁବି ନାସ୍ତି ନଚ କାଳାନ୍ତରେଽପି ଭବିଷ୍ୟତୀତ୍ୟର୍ଥଃ । ୬୯ ।

ପଦବ୍ୟାଖ୍ୟା ।

ନ ଚ—ନାହିଁ, ତସ୍ମାତ୍—ଅମ୍ଭ ଭକ୍ତଙ୍କ ନିକଟରେ ଗୀତାଶାସ୍ତ୍ର ବ୍ୟାଖ୍ୟା କରିବା ବ୍ୟକ୍ତି ଅପେକ୍ଷା, ମନୁଷ୍ୟେଷୁ—ମନୁଷ୍ୟମାନଙ୍କ ମଧ୍ୟରେ, କଶ୍ଚିତ୍—କେହି, ମେ—ଆମ୍ଭର, ପ୍ରିୟକୃତ୍ତମଃ—ଅତିପ୍ରିୟକାରୀ, ଭବିତା—ହେବ, ନ ଚ—ନାହିଁ, ମେ—ଆମ୍ଭର, ତସ୍ମାତ୍ ଅନ୍ୟଃ—ତାଙ୍କଠାରୁ ଅପର ବ୍ୟକ୍ତି, ପ୍ରିୟତରଃ—ଅଧିକ ପ୍ରିୟ, ଭୁବି—ପୃଥିବୀରେ । ୬୯ ।

ଅନୁବାଦ ।

ମନୁଷ୍ୟମାନଙ୍କ ମଧ୍ୟରେ ତାହାଙ୍କ (ଭକ୍ତ ନିକଟରେ ଗୀତା ବ୍ୟାଖ୍ୟାକାରଙ୍କ) ଅପେକ୍ଷା ଆମ୍ଭର ଅତି ପ୍ରିୟକାରୀ ଆଉ କେହି ନାହିଁ, ନ ହେବ ନାହିଁ, ଓ ତାହାଙ୍କ ଭିନ୍ନ, ଆମ୍ଭର ଅଧିକ ପ୍ରିୟଲୋକ ପୃଥିବୀରେ କେହି ନାହିଁ କି ହେବ ନାହିଁ । ୬୯ ।

ତଷଦବ୍ୟାଖ୍ୟା ।

ଯେଉଁ ବ୍ୟକ୍ତି ଅମ୍ଭର ଭକ୍ତ ନିକଟରେ ଏହି ପରମଗୁହ୍ୟ ଗୀତାଶାସ୍ତ୍ର ବ୍ୟାଖ୍ୟା କରିବେ, ତାହାଙ୍କ ଅପେକ୍ଷା, ଏହି ପୃଥିବୀସ୍ଥ ସମସ୍ତ ମନୁଷ୍ୟ ମଧ୍ୟରେ, ଅମ୍ଭର ଅଧିକ ସନ୍ତୋଷ ଜନ୍ମାଇବା ବ୍ୟକ୍ତି ଆଉ କେହି ନାହିଁ ଓ କାଳାନ୍ତରେ ହେବ ନାହିଁ । ଅର୍ଥାତ୍ ପୃଥିବୀରେ ଯେତେ ମନୁଷ୍ୟ ଜନ୍ମିଅଛନ୍ତି, ଜନ୍ମୁଅଛନ୍ତି ଓ ଜନ୍ମ ହେବେ, ସେମାନଙ୍କ ମଧ୍ୟରେ, ଆମ୍ଭ ଭକ୍ତଙ୍କୁ ଗୀତାରହସ୍ୟ ଶୁଣାଇବା ବ୍ୟକ୍ତି ସର୍ବାପେକ୍ଷା ଆମ୍ଭର ଅଧିକ ପ୍ରିୟକର ଅଟନ୍ତି, ତାଙ୍କ ଅପେକ୍ଷା

Digitized by PPRACHIN, SOA

ଆମ୍ଭର ଅଧିକ ପ୍ରିୟକର ଆଉ କେହି ନାହିଁ, ଭବିଷ୍ୟତରେ ହେବେ ନାହିଁ, ଅଭ୍ର ତାଙ୍କ ତୁଳନାରେ ପୃଥିବୀରେ ଆମ୍ଭର ଅଧିକ ପ୍ରିୟ କେହି ନାହିଁ ଓ ଭବିଷ୍ୟତରେ, ଯେ କେହି ଅଧିକ ପ୍ରିୟ ହେବ, ତାହାମଧ୍ୟ ନୁହେ ।

ଏହି ଅଧ୍ୟାୟର ୬୮ ଓ ୬୯ ଶ୍ଳୋକଦ୍ୱୟରେ ଏହିପରି ଗୀତାଶାସ୍ତ୍ରବ୍ୟାଖ୍ୟାକାରୀଙ୍କର ଫଳ ଓ ପ୍ରଶଂସା କୁହାଗଲା, ଏଣିକି ଗୀତାଶାସ୍ତ୍ର ପାଠ କରିବା ବ୍ୟକ୍ତିଙ୍କର ଫଳ କୁହାଯାଉ-ଅଛି । ୬୯ ।

### ଶ୍ଳୋକଃ ।

ଅଧ୍ୟେଷ୍ୟତେ ଚ ଯ ଇମଂ, ଧର୍ମ୍ୟଂ ସମ୍ବାଦମାବୟୋଃ ।
ଜ୍ଞାନଯଜ୍ଞେନ ତେନାହ, ମିଷ୍ଟଃ ସ୍ୟାମିତି ମେ ମତିଃ । ୭୦ ।

### ଅନ୍ୱୟଃ ।

ଯଃ ଚ ଆବୟୋଃ ଇମଂ ଧର୍ମ୍ୟଂ ସମ୍ବାଦଂ ଅଧ୍ୟେଷ୍ୟତେ ତେନ ଜ୍ଞାନଯଜ୍ଞେନ ଅହଂ ଇଷ୍ଟଃ ସ୍ୟାଂ ଇତି ମେ ମତିଃ । ୭୦ ।

### ଟୀକା ।

ପଠତଃ ଫଳମାହ । ଅଧ୍ୟେଷ୍ୟତ ଇତି । ଆବୟୋଃ ଶ୍ରୀକୃଷ୍ଣାର୍ଜୁନୟୋରିମଂ ଧର୍ମ୍ୟଂ ଧର୍ମାଦନପେତଂ ସମ୍ବାଦଂ ଯୋଽଧ୍ୟେଷ୍ୟତେ ଜପରୂପେଣ ପଠିଷ୍ୟତି ତେନ ପୁଂସା ସର୍ବଯଜ୍ଞେଭ୍ୟଃ ଶ୍ରେଷ୍ଠେନ ଜ୍ଞାନଯଜ୍ଞେନାହମିଷ୍ଟଃ ସ୍ୟାଂ ଭବେୟଂ ଇତି ମେ ମତିଃ । ଯଦ୍ୟପ୍ୟସୌ ଗୀତାର୍ଥମବୁଧ୍ୟମାନ ଏବ କେବଳଂ ଜପତି, ତଥାପି ମମ ତତ୍ ଶୃଣ୍ୱତୋ ମାମେବାସୌ ପ୍ରକାଶୟତୀତି ବୁଦ୍ଧିର୍ଭବତି, ଯଥା ଲୋକେ ଯଦୃଚ୍ଛୟାପି ଯଦା କଶ୍ଚିତ୍ କସ୍ୟଚିତ୍ ନାମ ଗୃହ୍ଣାତି ତଦାସୌ ମାମାହୂୟତି ମତ୍ୱା ତତ୍ପାର୍ଶ୍ୱମାଗଚ୍ଛତି ତଥାହମପି ତସ୍ୟ ସନ୍ନିହିତୋ ଭବେୟଂ ଅତୋ ଯଥା ଅଜାମିଳ—କ୍ଷତ୍ରବନ୍ଧୁ-ପ୍ରମୁଖାଣାଂ କଥଞ୍ଚିନ୍ନାମୋଚ୍ଚାରଣମାତ୍ରେଣ ପ୍ରସନ୍ନୋଽସ୍ମି ତଥୈବ ତସ୍ୟାପି ପ୍ରସନ୍ନୋ ଭବେୟମିତି ଭାବଃ । ୭୦ ।

### ପଦବ୍ୟାଖ୍ୟା ।

ଅଧ୍ୟେଷ୍ୟତେ ଚ—ପୁଣି ଅଧ୍ୟୟନ କରିବେ, ଯଃ ଇମଂ—ଯେ ଏହି, ଧର୍ମ୍ୟଂ—ଧର୍ମସଙ୍ଗତ, ସମ୍ବାଦଂ ଆବୟୋଃ—ତୁମ୍ଭର ଓ ଆମ୍ଭର କଥୋପକଥନକୁ, ଜ୍ଞାନଯଜ୍ଞେନ—ଜ୍ଞାନଯଜ୍ଞଦ୍ୱାରା, ତେନ—ସେ, ଅହଂ—ଆମ୍ଭକୁ, ଇଷ୍ଟଃସ୍ୟାଂ—ପୂଜାକରିବେ, ଇତି ମେ ମତିଃ—ଏହା ଆମ୍ଭର ନିଶ୍ଚୟ । ୭୦ ।

### ଅନୁବାଦ ।

ପୁଣି ଯେ, ଆମ୍ଭ ଦୁହିଙ୍କର ଏହି ଧର୍ମସଙ୍ଗତ ସମ୍ବାଦକୁ ଅଧ୍ୟୟନ କରିବେ, ସେ, ଆମ୍ଭ ମତରେ, ଆମ୍ଭର ଜ୍ଞାନ ଯଜ୍ଞଦ୍ୱାରା ପୂଜା କରିବା ପରି ହେବ । ୭୦ ।

### ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ କହିଲେ, ହେ ଅର୍ଜୁନ ! ଚତୁର୍ଥ ଅଧ୍ୟାୟରେ ଆମ୍ଭେ ଯେଉଁ ଦ୍ୱାଦଶପ୍ରକାର ଯଜ୍ଞ କଥା କହିଅଛୁଁ, ତନ୍ମଧ୍ୟରେ ଜ୍ଞାନ ଯଜ୍ଞ, ଯେ ସର୍ବଶ୍ରେଷ୍ଠ, ତାହା ବୁଝାଇ ଦେଇଅଛୁଁ । ଯେଉଁମାନେ ଶ୍ରଦ୍ଧାଯୁକ୍ତ ହୋଇ ତୁମ୍ଭର ଓ ଆମ୍ଭର ସମ୍ବାଦ ବା ଉକ୍ତି ପ୍ରତ୍ୟୁକ୍ତି ସ୍ୱରୂପ ଏହି ଗୀତାଶାସ୍ତ୍ର ଅଧ୍ୟୟନ କରିବେ, ସେମାନେ, ସେହି ଜ୍ଞାନ ଯଜ୍ଞର ଫଳ ଭାଗୀ ହେବେ । ଯେପରି କୌଣସି ବ୍ୟକ୍ତି ଅପର ବ୍ୟକ୍ତିକୁ ନ ଡାକି କରି ମଧ୍ୟ, ତାହାର ନାମଧରି ଡାକିଲେ, ସେହି

ଅପର ବ୍ୟକ୍ତି ଉଚ୍ଚାର କରନ୍ତି, ବା ଉଚ୍ଚାରିତ ଶ୍ଳୋକ ଅତଃ ହେଲେ ଶୁଣି, ତାହା ଜାଣନ୍ତି ଅଥବା, ସେହିପରି ଏହି ଗୀତାଶାସ୍ତ୍ର ପ୍ରେମରେ ପାଠକରୁଥିବା ବ୍ୟକ୍ତି ଏହାର ଅର୍ଥ ବୁଝନ୍ତୁ, ବା ନ ବୁଝନ୍ତୁ, ଏହା ପାଠକରିବା ମାତ୍ରକେ ଅମ୍ଭେ ତାହାଙ୍କର ନିକଟବର୍ତ୍ତୀ ହେଉଁ ଏବଂ ଅମ୍ଭର ସନ୍ନିଧାନ ହେତୁରୁ ଯେପରି ମାତ୍ରାର ଜଗତ୍ର ପ୍ରସବିନୀ ଶକ୍ତି ଜାତ ହୁଏ, ସେହିପରି ଅମ୍ଭେ ନିକଟବର୍ତ୍ତୀ ହେବାରୁ ଗୀତାପାଠକର ଅନ୍ତଃକରଣରେ ଭକ୍ତି ଜାତ ହୁଏ, ଓ ତାହାଦ୍ୱାରା ସେ ଅମ୍ଭର ସ୍ୱରୂପ ଅବଗତ ହୋଇ ଅମ୍ଭର ବିଧିପୂର୍ବକ ଉପାସନା କରନ୍ତି । ସୁତରାଂ ଗୀତାର ପାଠକ, ଜ୍ଞାନ ଯଜ୍ଞଦ୍ୱାରା ଅମ୍ଭର ଉପାସନା କରନ୍ତି, ଏକଥାରେ କୌଣସି ସନ୍ଦେହ ନାହିଁ, ଏହା ନିଶ୍ଚୟ କଥା । ଅତଏବ କଲ୍ୟାଣ ବାଞ୍ଛା କରୁଥିବା ବ୍ୟକ୍ତି ମାତ୍ରର କର୍ତ୍ତବ୍ୟ, ଯେ ସେ, ଏହି ଗୀତାର ଅର୍ଥ ସମ୍ପୂର୍ଣ୍ଣରୂପେ ହୃଦୟଙ୍ଗମ କରି ନ ପାରିଲେ ସୁଦ୍ଧା, ନିତ୍ୟମିତରୂପେ ଏହା ପାଠ କରିବେ । ୭୦ ।

## ଶ୍ଳୋକଃ ।

ଶ୍ରଦ୍ଧାବାନନସୂୟଶ୍ଚ, ଶୃଣୁୟାଦପି ଯୋ ନରଃ ।
ସୋଽପି ମୁକ୍ତଃ ଶୁଭାଁଲ୍ଲୋକାନ୍, ପ୍ରାପ୍ନୁୟାତ୍ପୁଣ୍ୟକର୍ମଣାମ୍ । ୭୧ ।

## ଅନ୍ୱୟଃ ।

ଅପି ଚ ଯଃ ନରଃ ଶ୍ରଦ୍ଧାବାନ୍ ଅନସୂୟଃ (ଭୂତ୍ୱା) ଶୃଣୁୟାତ୍ ସଃ ଅପି ମୁକ୍ତଃ (ସନ୍) ପୁଣ୍ୟକର୍ମଣାଂ ଶୁଭାନ୍ ଲୋକାନ୍ ପ୍ରାପ୍ନୁୟାତ୍ । ୧୭ ।

## ଟୀକା ।

ଅନ୍ୟସ୍ୟ ଜପତୋ ଯୋଽନ୍ୟଃ କଶ୍ଚିଚ୍ଛୃଣୋତି, ତସ୍ୟାପି ଫଳମାହ । ଶ୍ରଦ୍ଧାବାନିତି । ଯୋ ନରଃ ଶ୍ରଦ୍ଧାଯୁକ୍ତଃ କେବଳଂ ଶୃଣୁୟାଦପି ଶ୍ରଦ୍ଧାବାନପି ଯଃ କଶ୍ଚିତ୍ କମର୍ଥମସ୍ମୁଚ୍ଚୈର୍ଜପତ ଉପହସଂ ବା ଜପତାଂ ଦୋଷଦୃଷ୍ଟିଂ କରୋତି ତଦ୍ବ୍ୟାବୃତ୍ୟର୍ଥମାହ ଅନସୂୟସ୍ତ୍ୱସୂୟାରହିତୋ ଯଃ ଶୃଣୁୟାତ୍ ସୋଽପି ସର୍ବୈଃ ପାପୈର୍ମୁକ୍ତଃ ସନ୍ନଶ୍ୱମେଧାଦି-ପୁଣ୍ୟକୃତାଂ ଲୋକାନ୍ ପ୍ରାପ୍ନୁୟାତ୍ । ୭୧ ।

## ପଦବ୍ୟାଖ୍ୟା ।

ଶ୍ରଦ୍ଧାବାନ୍—ଶ୍ରଦ୍ଧାଯୁକ୍ତ, ଅନସୂୟଃ ଚ—ଏବଂ ଦ୍ୱେଷବୁଦ୍ଧି ବା ନିନ୍ଦାବୃତ୍ତି ଶୂନ୍ୟ, ଶୃଣୁୟାତ୍—ଶ୍ରବଣ କରନ୍ତି, ଅପି—ଆହୁରି, ଯଃ ନରଃ—ଯେଉଁ ପୁରୁଷ, ସୋଽପି ମୁକ୍ତଃ—ସେମଧ୍ୟ ମୁକ୍ତ ହୋଇ, ଶୁଭାନ୍ ଲୋକାନ୍—ଉତ୍ତମଲୋକକୁ ପ୍ରାପ୍ନୁୟାତ୍—ପ୍ରାପ୍ତ ହୁଅନ୍ତି, ପୁଣ୍ୟକର୍ମଣାଂ—ଅଶ୍ୱମେଧଯଜ୍ଞାଦି କରୁଥିବା ବ୍ୟକ୍ତିଙ୍କର । ୭୧ ।

## ଅନୁବାଦ ।

ଆହୁରି ଯେଉଁ ବ୍ୟକ୍ତି ଶ୍ରଦ୍ଧାବାନ୍ ଓ ଅସୂୟା ଶୂନ୍ୟ ହୋଇ (ଏହି ଗୀତାଶାସ୍ତ୍ର) ଶ୍ରବଣ କରିବେ, ସେ ମଧ୍ୟ, ସମସ୍ତ ପାପରୁ ବିମୁକ୍ତ ହୋଇ ପୁଣ୍ୟକର୍ମୀ ମାନଙ୍କ (ପ୍ରାପ୍ୟ) ଉତ୍ତମ ଲୋକ ପ୍ରାପ୍ତ ହେବେ । ୭୧ ।

## ବିଶଦବ୍ୟାଖ୍ୟା ।

ଗୀତାଶାସ୍ତ୍ର ପଢ଼ାଇବା ଓ ପଢ଼ିବା ଲୋକର ଯେଉଁ ମହାଫଳ ଲାଭ ହୁଏ, ତାହା ପୂର୍ବ

Digitized by PPRACHIN, SOA

ଶ୍ଳୋକମାନଙ୍କରେ ବ୍ୟାଖ୍ୟା କରୁଯାଇ ଅଛି, ଏଶ୍ଳୋକରେ ଗୀତାଶାସ୍ତ୍ର ଶୁଣିବା ଲୋକର ଫଳ କୁହାଯାଉଅଛି ।

ଯଦି କୌଣସି ବ୍ୟକ୍ତି, ଅନ୍ୟ ବ୍ୟକ୍ତି ଉଚ୍ଚୈଃସ୍ୱରରେ ଗୀତାପାଠ କରୁଥିବା ବେଳେ, ତାହାଙ୍କର ପାଠ ଦୋଷ ବା ଅଉପ୍ରାପ୍ତପ୍ରଭ ଅସୂୟା ଅର୍ଥାତ୍ ଦ୍ୱେଷ ବୁଦ୍ଧି ନ କରି ଶ୍ରଦ୍ଧାଯୁକ୍ତ ହୋଇ ଶ୍ରବଣ କରିବେ, ତେବେ, ସେ ମଧ୍ୟ, ସକଳ ପାପରୁ ମୁକ୍ତ ହେବେ ଓ ଅଶ୍ୱମେଧାଦି ଯଜ୍ଞ କରିଥିବା ବ୍ୟକ୍ତିମାନେ, ଯେଉଁ ସ୍ୱର୍ଗାଦି ଲୋକ ପ୍ରାପ୍ତ ହୁଅନ୍ତି, ସେହି ପୁଣ୍ୟସ୍ଥାନକୁ ମଧ୍ୟ, ପ୍ରାପ୍ତ ହେବେ ।

ଏ ଶ୍ଳୋକରେ "ଶୃଣୁୟାଦପି" ଏହି ବାକ୍ୟରେ ଥିବା "ଅପି" ଶବ୍ଦଦ୍ୱାରା ଏହାହିଁ ସୂଚିତ ହେଉଅଛି, ଯେ ଶ୍ରୋତା ଏ ଗୀତାର ଅର୍ଥ ବୁଝି ନ ଥିଲେ ସୁଦ୍ଧା, କେବଳ ଶ୍ରଦ୍ଧାଯୁକ୍ତ ଓ ଅସୂୟା ରହିତ ହୋଇ ଶୁଣିଲେ, ପାପରୁ ମୁକ୍ତ ହୋଇ ପୁଣ୍ୟକର୍ମାନୁଷ୍ଠାନକାରଙ୍କ ପ୍ରାପ୍ୟ ସ୍ୱର୍ଗାଦି ଲୋକ ପ୍ରାପ୍ତ ହେବେ । ତେବେ, ଯେଉଁ ବ୍ୟକ୍ତି ଗୀତାର ଅର୍ଥ ବୁଝି ଶ୍ରଦ୍ଧାଯୁକ୍ତ ହୋଇ ଶ୍ରବଣ କରିବେ, ତାଙ୍କର, ଯେ ଏହା ଅପେକ୍ଷା ଅଧିକ ଫଳ ହେବ, ଏ କଥାରେ କି ସନ୍ଦେହ ଅଛି ।

ଶ୍ରୀ ଭାଗବତରେ ମଧ୍ୟ ଲେଖାଅଛି, ଯେ—

ବାସୁଦେବକଥାପ୍ରଶ୍ନଃ ପୁରୁଷାନ୍ ତ୍ରୀନ୍ ପୁନାତି ହି ।
ବକ୍ତାରଂ ପ୍ରଚ୍ଛକଂ ଶ୍ରୋତୃଂ ସ୍ତତ୍ପାଦସଲିଲଂ ଯଥା ।

ଅର୍ଥାତ୍ ଭଗବାନ୍ ବାସୁଦେବଙ୍କ କଥା ପ୍ରସଙ୍ଗର ପ୍ରଶ୍ନକର୍ତ୍ତା, ଉତ୍ତରଦାତା ଓ ଶ୍ରୋତା ଏହି ତିନି ଜଣଙ୍କୁ ପବିତ୍ର କରେ, ଯେପରି କି ତାହାଙ୍କ ପାଦରୁ ସମ୍ଭୂତା ଗଙ୍ଗା ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତ୍ରିଲୋକକୁ ପବିତ୍ର କରୁଅଛି । ୭୧ ।

ଶ୍ଳୋକଃ ।

କଚ୍ଚିଦେତଚ୍ଛ୍ରୁତଂ ପାର୍ଥ, ତ୍ୱୟୈକାଗ୍ରେଣ ଚେତସା ।
କଚ୍ଚିଦଜ୍ଞାନସମ୍ମୋହଃ, ପ୍ରନଷ୍ଟସ୍ତେ ଧନଞ୍ଜୟ । ୭୨ ।

ଅନ୍ୱୟଃ ।

ହେ ପାର୍ଥ! ତ୍ୱୟା ଏକାଗ୍ରେଣ ଚେତସା ଏତତ୍ ଶ୍ରୁତଂ କଚ୍ଚିତ୍, ହେ ଧନଞ୍ଜୟ! ତେ ଅଜ୍ଞାନସମ୍ମୋହଃ ପ୍ରନଷ୍ଟଃ କଚ୍ଚିତ୍ । ୭୨ ।

ଟୀକା ।

ସମ୍ୟଗ୍‌ବୋଧାନୁପପତ୍ତୌ ପୁନରୁପଦେକ୍ଷ୍ୟାମୀତ୍ୟାଶୟେନାହ । କଚ୍ଚିଦିତି । କଚ୍ଚିଦିତି ପ୍ରଶ୍ନାର୍ଥେ । ଅଜ୍ଞାନସମ୍ମୋହଂ ସ୍ତତ୍‌ଜ୍ଞାନକୃତୋବିପର୍ଯ୍ୟୟଃ । ସ୍ପଷ୍ଟମନ୍ୟତ୍ । ୭୨ ।

ପଦବ୍ୟାଖ୍ୟା ।

କଚ୍ଚିତ୍ ଏତତ୍ ଶ୍ରୁତଂ—ଏହା ଶୁଣିଲତ? ପାର୍ଥ—ହେ ଅର୍ଜ୍ଜୁନ!, ତ୍ୱୟା—ତୁମ୍ଭେ, ଏକାଗ୍ରେଣ ଚେତସା—ଏକାଗ୍ରମନରେ, କଚ୍ଚିତ୍ ଅଜ୍ଞାନସମ୍ମୋହଃ ପ୍ରନଷ୍ଟଃ—ଅଜ୍ଞାନଜନିତ ଭ୍ରମ ବିନଷ୍ଟ ହେଲତ?, ତେ— ତୁମ୍ଭର, ଧନଞ୍ଜୟ—ହେ ଅର୍ଜ୍ଜୁନ! । ୭୨ ।

Digitized by PPRACHIN, SOA

### ଅନୁବାଦ ।

ହେ ପାର୍ଥ! ତୁମ୍ଭେ ଏକାଗ୍ରମନରେ ଏହି ଗୀତାଶାସ୍ତ୍ର ଶୁଣିଲତ? ହେ ଧନଞ୍ଜୟ! ତୁମ୍ଭର ଅଜ୍ଞାନଜନିତ ଭ୍ରମ ନଷ୍ଟ ହେଲାତ? । ୭୨ ।

### ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନ୍ ଅର୍ଜୁନଙ୍କ ପ୍ରଶ୍ନ ଅନୁସାରେ ଓ ଅନେକ ସ୍ଥଳରେ କୃପା କରି ଅନେକ ପ୍ରକାର ଯୁକ୍ତି ଦେଖାଇ ଜ୍ଞାନ ଓ ବର୍ଣ୍ଣାଶ୍ରମାଦି ଧର୍ମର ନିଗୂଢ଼ତତ୍ତ୍ୱ ବ୍ୟାଖ୍ୟା କଲେ । ମାତ୍ର ଅର୍ଜୁନଙ୍କର ଭ୍ରମ ସେଥିରେ ଦୂର ହେଲା କି ନାହିଁ, ଏବଂ ସେ, ସମସ୍ତ ଉପଦେଶଗୁଡ଼ିକ ମନ ଦେଇ ଶୁଣିଅଛନ୍ତି କି ନାହିଁ, ଏହା ଜାଣିବାକୁ ପ୍ରଶ୍ନ କଲେ, କି ହେ ପାର୍ଥ! ଆମ୍ଭେ ଗୀତା ଅଠର ଅଧ୍ୟାୟରେ ନାନାପ୍ରକାର ଯୁକ୍ତି ଦେଖାଇ ଯେଉଁ ଧର୍ମତତ୍ତ୍ୱ ଓ ଜ୍ଞାନତତ୍ତ୍ୱ କହିଲୁଁ, ତୁମ୍ଭେ ତାହା ସ୍ଥିରମନରେ ଶୁଣିଛ ତ? ସ୍ଥିରମନରେ ଶୁଣିଲେ, ନିଶ୍ଚେ ଅଜ୍ଞାନଜନିତ ଭ୍ରମ ନଷ୍ଟ ହୁଏ । ତୁମ୍ଭେ ଯଦି ସ୍ଥିରମନରେ ଶୁଣିଅଛ, ତେବେ ତୁମ୍ଭର ଭ୍ରମ ନଷ୍ଟ ହୋଇଅଛି କି ନା? ଦେହାଦି ଅନାତ୍ମ ପଦାର୍ଥରେ ତୁମ୍ଭର ଯେଉଁ ଆତ୍ମବୁଦ୍ଧି ହୋଇଥିଲା, ଅର୍ଥାତ୍ ଯୁଦ୍ଧରେ ଦେହ ବିନଷ୍ଟ ହେଲେ, ଭୀଷ୍ମ, ଦ୍ରୋଣାଦି ବିନଷ୍ଟ ହେବେ, ଇତ୍ୟାଦି ତୁମ୍ଭର ଯେଉଁ ଶୋକ ଜନ୍ମିଥିଲା, ଏବଂ କ୍ଷତ୍ରିୟର ବର୍ଣ୍ଣଧର୍ମ ଯୁଦ୍ଧାଦି ନ କରି ବ୍ରାହ୍ମଣର ବର୍ଣ୍ଣାଶ୍ରମଧର୍ମ ସନ୍ନ୍ୟାସ ଗ୍ରହଣ କରିବାକୁ ତୁମ୍ଭର ଯେଉଁ ଅଭିଳାଷ ଜନ୍ମିଥିଲା, ତାହା ଅଜ୍ଞାନଜନିତ ସମ୍ମୋହ, ଅର୍ଥାତ୍ ଭ୍ରମ ଅଟେ । ସେ ଭ୍ରମ ତୁମ୍ଭର ବିନଷ୍ଟ ହେଲାତ?

ଫଳକଥା ଏହି କି ଯଦି ତୁମ୍ଭେ ଉତ୍ତମ ମନୋଯୋଗ କରି ଆମ୍ଭର ଉପଦେଶ ଶୁଣି ନ ଥାଅ, ଏବଂ ସେହି ହେତୁରୁ ସଂଶୟ ନଷ୍ଟ ହୋଇ ନ ଥାଏ, ତେବେ ତାହା ଆମ୍ଭଙ୍କୁ ଜଣାଇଲେ, ଆମ୍ଭେ ପୁନର୍ବାର ତୁମ୍ଭଙ୍କୁ ଉପଦେଶ ପ୍ରଦାନ କରିବୁଁ, ଅତଏବ କହ, ଯେ ତୁମ୍ଭର ଭ୍ରମ ବିନଷ୍ଟ ହେଲା କି ନାହିଁ? । ୭୨ ।

### ଶ୍ଳୋକଃ ।

ଅର୍ଜୁନ ଉବାଚ ।—ନଷ୍ଟୋ ମୋହଃ ସ୍ମୃତିର୍ଲବ୍ଧା, ତ୍ୱତ୍ପ୍ରସାଦାନ୍ମୟାଚ୍ୟୁତ ।
ସ୍ଥିତୋଽସ୍ମି ଗତସନ୍ଦେହଃ, କରିଷ୍ୟେ ବଚନଂ ତବ । ୭୩ ।

### ଅନ୍ୱୟଃ ।

ଅର୍ଜୁନଃ ଉବାଚ ।—ହେ ଅଚ୍ୟୁତ । ତ୍ୱତ୍ପ୍ରସାଦାତ୍ (ମମ) ମୋହଃ ନଷ୍ଟଃ, ମୟା ସ୍ମୃତିଃ ଲବ୍ଧା, ଗତସନ୍ଦେହଃ (ସନ୍) ସ୍ଥିତଃ ଅସ୍ମି, ତବ ବଚନଂ କରିଷ୍ୟେ । ୭୩ ।

### ଟୀକା ।

କୃତାର୍ଥଃ ସନ୍ନର୍ଜୁନ ଉବାଚ । ନଷ୍ଟୋ ମୋହ ଇତି । ଆତ୍ମବିଷୟୋ ମୋହୋ ନଷ୍ଟଃ, ଯତୋଽହମସ୍ମୀତି ସ୍ୱରୂପାନୁସନ୍ଧାନରୂପା ସ୍ମୃତିସ୍ତ୍ୱତ୍ପ୍ରସାଦାନ୍ମୟା ଲବ୍ଧା ଅତଃ ସ୍ଥିତୋଽସ୍ମି, ଗତୋ ଧର୍ମବିଷୟଃ ସନ୍ଦେହୋ ଯସ୍ୟ ସୋଽହଂ ତବାଜ୍ଞାଂ କରିଷ୍ୟାମୀତି । ୭୩ ।

Digitized by PPRACHIN, SOA

## ପଦବ୍ୟାଖ୍ୟା ।

ଅର୍ଜ୍ଜୁନ ଉବାଚ—ଅର୍ଜ୍ଜୁନ କହିଲେ, ନଷ୍ଟୋମୋହଃ—ଭ୍ରମ ଦୂର ହେଲା, ସ୍ମୃତିଃ ଲବ୍ଧା—ଆତ୍ମଜ୍ଞାନ ଅନୁସନ୍ଧାନରୂପ ସ୍ମରଣ ଲାଭ କଲି, ତ୍ୱତ୍ପ୍ରସାଦାତ୍—ଆପଣଙ୍କ ଅନୁଗ୍ରହରୁ, ମୟା—ମୁଁ, ଅଚ୍ୟୁତ—ହେ ଅବିନାଶୀ ଓ ନିର୍ବିକାର ଶ୍ରୀକୃଷ୍ଣ !, ସ୍ଥିତଃ ଅସ୍ମି—ପ୍ରସ୍ତୁତ ଅଛି, ଗତସନ୍ଦେହଃ—ଧର୍ମାଧର୍ମବିଷୟକ ସନ୍ଦେହଶୂନ୍ୟ ହୋଇଅଛି, କରିଷ୍ୟେ ବଚନଂ ତବ—ଆପଣଙ୍କ ଆଜ୍ଞା ପାଳନ କରିବି । ୭୩ ।

## ଅନୁବାଦ ।

ଅର୍ଜ୍ଜୁନ କହିଲେ, ହେ ଅଚ୍ୟୁତ ! ଆପଣଙ୍କ ଅନୁଗ୍ରହରୁ ମୋହର ଭ୍ରମ ଦୂର ହେଲା, ଓ ମୁଁ ଆତ୍ମଜ୍ଞାନବିଷୟକ ସ୍ମୃତି ଲାଭ କଲି । ଏବେ, ସମସ୍ତ ସନ୍ଦେହଶୂନ୍ୟ ହୋଇ ଆପଣଙ୍କ ବଚନ ପାଳନ କରିବାକୁ ପ୍ରସ୍ତୁତ ଅଛି । ୭୩ ।

## ବିଶଦବ୍ୟାଖ୍ୟା ।

ଶ୍ରୀଭଗବାନଙ୍କ ପ୍ରଶ୍ନ ଶୁଣି ଅର୍ଜ୍ଜୁନ କହିଲେ, ହେ ଅଚ୍ୟୁତ ! ଆପଣଙ୍କ ଅନୁଗ୍ରହରୁ ମୋହର 'ମୋହ' ଅର୍ଥାତ୍ ରଜୋଗୁଣମୟୀ କ୍ଷତ୍ରିୟ ପ୍ରକୃତିରେ କୁରୁକ୍ଷେତ୍ର ସ୍ଥାନପ୍ରଭାବରୁ ସାତ୍ତ୍ୱିକ ଗୁଣର ଉଦୟ ହୋଇ ଗୁଣବିପର୍ଯ୍ୟୟ ହେତୁରୁ, ଯେଉଁ ଭ୍ରମ ଜାତ ହୋଇଥିଲା, ତାହା ନଷ୍ଟ ହେଲା ଓ ଆତ୍ମଜ୍ଞାନବିଷୟକ ସ୍ମୃତି ମୋହର ଉଦୟ ହେଲା । ଅର୍ଥାତ୍ ଆପଣ ଅନୁଗ୍ରହ କରି ଯେଉଁ ତତ୍ତ୍ୱଜ୍ଞାନର ଉପଦେଶ ଦେଲେ, ତାହାଦ୍ୱାରା ମୋହର ଜ୍ଞାନ ଓ ସ୍ମୃତି ଉଦୟ ହେବାରୁ ସତ୍ତ୍ୱ ଓ ରଜୋଗୁଣର ବିଷମତାରୁ ଜାତ, ଯେ ଭ୍ରମ, ତାହା ଦୂର ହେଲା । ସୁତରାଂ କ୍ଷତ୍ରିୟ ପକ୍ଷରେ ଯୁଦ୍ଧାଦି କାର୍ଯ୍ୟ ଭଲ କି ଭିକ୍ଷାଟନାଦି ସନ୍ନ୍ୟାସଧର୍ମ ଭଲ, ସେ ବିଷୟରେ ଏବଂ ଯୁଦ୍ଧରେ ବନ୍ଧୁ ବଧାଦି କଲେ ପାପ ହେବ କି ନାହିଁ, ଇତ୍ୟାଦି ବିଷୟରେ ଯେଉଁ ସନ୍ଦେହ ଥିଲା, ତାହା ଦୂରୀଭୂତ ହେଲା । ଯେହେତୁ ଶ୍ରୁତିରେ ପ୍ରମାଣ ଅଛି, ଯେ "ସ୍ମୃତିଲମ୍ଭେ ସର୍ବଗ୍ରନ୍ଥୀନାଂ ବିମୋକ୍ଷଃ" ଅର୍ଥାତ୍ ଆତ୍ମଜ୍ଞାନର ସ୍ମୃତି ଲାଭ ହେଲେ, ସର୍ବପ୍ରକାର ସନ୍ଦେହଗ୍ରନ୍ଥି ଛିନ୍ନ ହୁଏ । ଏବେ ଆପଣଙ୍କ ଆଦେଶ ପାଳନ କରିବାକୁ ପ୍ରସ୍ତୁତ ଅଛି, ଅର୍ଥାତ୍ ଯୁଦ୍ଧ କରିବାକୁ ମୋହର କୌଣସି ଆପତ୍ତି ନାହିଁ, କେବଳ ଯେ ଯୁଦ୍ଧ କରିବି, ତାହା ନୁହେ, ମୋହର ଜୀବନ ଥିବା ଯାଏ ମୁଁ ଆପଣଙ୍କ ଆଦେଶ ଅନୁସାରେ କର୍ମ କରିବି, ଏଥିରେ ଆଉ କିଛି ସନ୍ଦେହ ନାହିଁ । ୭୩ ।

## ଶ୍ଳୋକଃ ।

ସଞ୍ଜୟ ଉବାଚ ।—ଇତ୍ୟହଂ ବାସୁଦେବସ୍ୟ, ପାର୍ଥସ୍ୟ ଚ ମହାତ୍ମନଃ ।
ସମ୍ବାଦମିମମଶ୍ରୌଷ,ମଦ୍ଭୁତଂ ଲୋମହର୍ଷଣଂ । ୭୪ ।

## ଅନ୍ୱୟଃ ।

ସଞ୍ଜୟଃ ଉବାଚ । ମହାତ୍ମନଃ ବାସୁଦେବସ୍ୟ ଚ ପାର୍ଥସ୍ୟ ଇତି ଲୋମହର୍ଷଣଂ ଅଦ୍ଭୁତଂ ଇମଂ ସମ୍ବାଦଂ ଅହଂ ଅଶ୍ରୌଷଂ । ୭୪

Digitized by PPRACHIN, SOA

## ଟୀକା ।

ଇତ୍ୟେବଂ ଧୃତରାଷ୍ଟ୍ରଂ ପ୍ରତି ଶ୍ରୀକୃଷ୍ଣାର୍ଜ୍ଜୁନସମ୍ବାଦଂ କଥୟିତ୍ୱା ପ୍ରସ୍ତୁତାଂ କଥାମନୁସନ୍ଦଧାନଃ ସଞ୍ଜୟ ଉବାଚ । ଇତ୍ୟହମିତି । ରୋମହର୍ଷଣଂ ରୋମାଞ୍ଚକରଂ ସମ୍ବାଦମଶ୍ରୌଷଂ ଶ୍ରୁତବାନହଂ । ସ୍ପଷ୍ଟମନ୍ୟତ୍ । ୭୪ ।

## ପଦବ୍ୟାଖ୍ୟା ।

ଇତି—ଏହିପ୍ରକାର, ଅହଂ—ଆମ୍ଭେ, ବାସୁଦେବସ୍ୟ—ଶ୍ରୀଭଗବାନ୍ ବାସୁଦେବଙ୍କର, ପାର୍ଥସ୍ୟ ଚ—ଓ ଅର୍ଜ୍ଜୁନଂକର, ମହାତ୍ମନଃ—ମହାପୁରୁଷ, ସମ୍ବାଦଂ—କଥୋପକଥନକୁ, ଇମଂ—ଏହି, ଅଶ୍ରୌଷଂ—ଶୁଣିଲୁଁ, ଅଦ୍ଭୁତଂ—ଆଶ୍ଚର୍ଯ୍ୟ, ରୋମହର୍ଷଣଂ—ରୋମାଞ୍ଚକର । ୭୪ ।

## ଅନୁବାଦ ।

ସଞ୍ଜୟ କହିଲେ (ହେ ଧୃତରାଷ୍ଟ୍ର ।) ମହାତ୍ମା ବାସୁଦେବ ଓ ଅର୍ଜ୍ଜୁନଙ୍କର ଏହି ରୋମାଞ୍ଚଜନକ ଆଶ୍ଚର୍ଯ୍ୟ କଥୋପକଥନ ଆମ୍ଭେ ଶୁଣିଲୁଁ । ୭୪ ।

## ବିଶଦବ୍ୟାଖ୍ୟା ।

ପ୍ରଥମ ଅଧ୍ୟାୟର ପ୍ରଥମ ଶ୍ଳୋକରେ ଧୃତରାଷ୍ଟ୍ର ସଞ୍ଜୟଙ୍କୁ ପଚାରିଥିଲେ, ଯେ ଧର୍ମକ୍ଷେତ୍ରରୂପ କୁରୁକ୍ଷେତ୍ରରେ ଆମ୍ଭର ଓ ପାଣ୍ଡୁଙ୍କର ପୁତ୍ରମାନେ ଯୁଦ୍ଧ କରିବା ଇଚ୍ଛାରେ ସମବେତ ହୋଇ କଣ କଲେ ? ତାହାର ଉତ୍ତରରେ ସମୁଦାୟ ଯୁଦ୍ଧଘଟନା ବର୍ଣ୍ଣନା କରିବାକୁ ସଞ୍ଜୟ ପ୍ରବୃତ୍ତ ହୋଇଅଛନ୍ତି । ମାତ୍ର ଏପର୍ଯ୍ୟନ୍ତ ଗୀତାଶାସ୍ତ୍ରର ଉପଦେଶ ଶେଷ ହେବାରୁ ତାହା ଧୃତରାଷ୍ଟ୍ରଙ୍କୁ ସ୍ମରଣ କରାଇ ଦେଇ କହୁଅଛନ୍ତି, କି ହେ ରାଜନ୍ ! ମହାତ୍ମା ବାସୁଦେବ ଓ ଅର୍ଜ୍ଜୁନ ଏ ଦୁହେଁ ଏହିପରି ଅଠର ଅଧ୍ୟାୟରେ ବର୍ଣ୍ଣିତ ଯେଉଁ କଥାବାର୍ତ୍ତା କଲେ, ତାହା ଅତି ଅଦ୍ଭୁତ, ଅର୍ଥାତ୍ ସେଥିରେ ଅନେକ ପ୍ରକାର ଗୋପନୀୟ ତତ୍ତ୍ୱ ସବୁ କୁହା ଯାଇଥିବାରୁ ତାହା ଆଶ୍ଚର୍ଯ୍ୟଜନକ ଅଟେ । ତାହା ଶୁଣିଲେ, ମନରେ ଏକପ୍ରକାର ଅଭିନବଭାବ ଜାତ ହୋଇ ଦେହ ପୁଲକିତ ହୁଏ, ଏଣୁକରି ତାହା ରୋମହର୍ଷଣ ଅଟେ । ସେହି ଅଦ୍ଭୁତ ରୋମହର୍ଷଣ ସମ୍ବାଦ ଏହିପରି, ଅର୍ଥାତ୍ ଆମ୍ଭେ ଯେପରି ବର୍ଣ୍ଣନ କଲୁଁ, ସେହିପରି ଶୁଣିଅଛୁଁ । ୭୪ ।

## ଶ୍ଳୋକଃ ।

ବ୍ୟାସପ୍ରସାଦାତ୍ ଶ୍ରୁତବାନିମଂ ଗୁହ୍ୟମହଂ ପରଂ ।
ଯୋଗଂ ଯୋଗେଶ୍ୱରାତ୍ କୃଷ୍ଣାତ୍, ସାକ୍ଷାତ୍ କଥୟତଃ ସ୍ୱୟଂ । ୭୫ ।

## ଅନ୍ୱୟଃ ।

ସ୍ୱୟଂ ସାକ୍ଷାତ୍ କଥୟତଃ ଯୋଗେଶ୍ୱରାତ୍ କୃଷ୍ଣାତ୍ ଇମଂ ପରଂ ଗୁହ୍ୟଂ ଯୋଗଂ ବ୍ୟାସପ୍ରସାଦାତ୍ ଅହଂ ଶ୍ରୁତବାନ୍ । ୭୫ ।

## ଟୀକା ।

ଅତ୍ୟନ୍ତସ୍ୟ ଶ୍ରବଣେ ସମ୍ଭାବନାମାହ । ବ୍ୟାସପ୍ରସାଦାଦିତି । ଭଗବତା ବ୍ୟାସେନ ଦତ୍ତଂ ଚକ୍ଷୁଃ ଶ୍ରୋତ୍ରାଦି ମହ୍ୟଂ ତତ୍, ଇତୋ ବ୍ୟାସସ୍ୟ ପ୍ରସାଦାଦେତତ୍ ଶ୍ରୁତବାନସ୍ମି, କିଂ ତଦତ୍ୟପେକ୍ଷାୟାମାହ । ପରଂ ଯୋଗଂ, ପରବ୍ରହ୍ମାଙ୍ଗତ୍ୱେନ, ଯୋଗେଶ୍ୱରାତ୍ ଶ୍ରୀକୃଷ୍ଣାତ୍ ସ୍ୱୟମେବ ସାକ୍ଷାତ୍ କଥୟତଃ ଶ୍ରୁତବାନିତି । ୭୫ ।

ପଦବ୍ୟାଖ୍ୟା ।

ବ୍ୟାସପ୍ରସାଦାତ୍—ବ୍ୟାସଦେବଙ୍କ ଅନୁଗ୍ରହରୁ, ଶ୍ରୁତବାନ୍—ଶୁଣିଅଛୁଁ, ଇମଂ—ଏହି, ଗୁହ୍ୟଂ—ଗୋପନୀୟ, ଅହଂ—ଅମ୍ଭେ, ପରଂ—ଅତଶୟ, ଯୋଗଂ—ଜ୍ଞାନଯୋଗକୁ, ଯୋଗେଶ୍ୱରାତ୍ କୃଷ୍ଣାତ୍—ଯୋଗେଶ୍ୱର ଶ୍ରୀକୃଷ୍ଣଙ୍କଠାରୁ, ସାକ୍ଷାତ୍—ଆମ୍ଭର ପ୍ରତ୍ୟକ୍ଷରେ, କଥୟତଃ—ବର୍ଣ୍ଣନ କରୁଥିଲେ, ସ୍ୱୟଂ—ନିଜେ । ୭୫

ଅନୁବାଦ ।

ଯୋଗେଶ୍ୱର ଶ୍ରୀକୃଷ୍ଣ ନିଜେ ସାକ୍ଷାତ୍ ବର୍ଣ୍ଣନ କରୁଥିବା ବେଳେ, ଅମ୍ଭେ ବ୍ୟାସଦେବଙ୍କ ଅନୁଗ୍ରହରୁ ଏହି ଅତିଗୋପନୀୟ ଅଧ୍ୟାତ୍ମଯୋଗ ଶୁଣିଅଛୁଁ । ୭୫ ।

ବିଶଦବ୍ୟାଖ୍ୟା ।

କାଳେ ଧୃତରାଷ୍ଟ୍ରଙ୍କ ମନରେ ଏପରି ଆଶଙ୍କା ହେବ, ଯେ ଯୁଦ୍ଧତ କୁରୁକ୍ଷେତ୍ରରେ ହେଉଅଛି, ସଞ୍ଜୟତ ଆମ୍ଭ ନିକଟରେ ହସ୍ତିନାରେ ଉପସ୍ଥିତ ଅଛନ୍ତି, କୃଷ୍ଣ ଅର୍ଜ୍ଜୁନଙ୍କର ଏତେ କଥୋପକଥନ ଏ କିପରି ଶୁଣିଲେ ? ସେଥିପାଇଁ ସଞ୍ଜୟ କହୁଅଛନ୍ତି, ହେ ଧୃତରାଷ୍ଟ୍ର ! ମହାତ୍ମା ବ୍ୟାସଦେବ, ଅମ୍ଭଙ୍କୁ ଦିବ୍ୟଚକ୍ଷୁଃ ଓ ଦିବ୍ୟଶ୍ରବଣେନ୍ଦ୍ରିୟ ପ୍ରଦାନ କରିଅଛନ୍ତି, ତାହାଙ୍କର ସେହି ଦିବ୍ୟ ଚକ୍ଷୁଃକର୍ଣ୍ଣପ୍ରଦାନରୂପ ଅନୁଗ୍ରହରୁ ଅମ୍ଭେ ଏହି ଯୋଗକୁ ସାକ୍ଷାତ୍ ଯୋଗେଶ୍ୱର ଶ୍ରୀକୃଷ୍ଣ ବର୍ଣ୍ଣନ କରୁଥିବାର ଶୁଣିଅଛୁଁ । ଅର୍ଥାତ୍ ପରମ୍ପରା ଭାବରେ ନ ଶୁଣି ଦିବ୍ୟଚକ୍ଷୁଃ ଓ ଦିବ୍ୟଶ୍ରବଣ ବଳରେ ଯୁଦ୍ଧକ୍ଷେତ୍ରରୁ ଏତେ ଦୂରରେ ରହି ସୁଦ୍ଧା, ସ୍ୱୟଂ ଯୋଗେଶ୍ୱର ଶ୍ରୀକୃଷ୍ଣ ଯେଉଁ ଅତି ଗୋପନୀୟ ଜ୍ଞାନଯୋଗର କଥା କହୁଅଛନ୍ତି, ତାହା ଅମ୍ଭେ ନିଜେ ଶୁଣୁଅଛୁଁ । ୭୫ ।

ଶ୍ଳୋକଃ ।

ରାଜନ୍ ସଂସ୍ମୃତ୍ୟ ସଂସ୍ମୃତ୍ୟ, ସମ୍ବାଦମିମମଦ୍ଭୁତଂ ।
କେଶବାର୍ଜ୍ଜୁନୟୋଃ ପୁଣ୍ୟଂ, ହୃଷ୍ୟାମି ଚ ମୁହୁର୍ମୁହୁଃ । ୭୬ ।

ଅନ୍ୱୟଃ ।

ହେ ରାଜନ୍ ! କେଶବାର୍ଜ୍ଜୁନୟୋଃ ଇମଂ ପୁଣ୍ୟଂ ଚ ଅଦ୍ଭୁତଂ ସମ୍ବାଦଂ ସଂସ୍ମୃତ୍ୟ ସଂସ୍ମୃତ୍ୟ ମୁହୁଃ ମୁହୁଃ ହୃଷ୍ୟାମି । ୭୬ ।

ଟୀକା ।

ତଃ ରାଜନ୍ନିତି । ହୃଷ୍ୟାମି ରୋମାଞ୍ଚିତୋଭବାମି ହର୍ଷଂ ପ୍ରାପ୍ନୋମୀତି ବା, ସ୍ପଷ୍ଟମନ୍ୟତ୍ । ୭୬ ।

ପଦବ୍ୟାଖ୍ୟା ।

ରାଜନ୍—ହେ ଧୃତରାଷ୍ଟ୍ର ! ସଂସ୍ମୃତ୍ୟ ସଂସ୍ମୃତ୍ୟ—ସ୍ମରଣ କରି, ସମ୍ବାଦଂ—କଥୋପକଥନକୁ, ଇମଂ—ଏହି, ଅଦ୍ଭୁତଂ—ଆଶ୍ଚର୍ଯ୍ୟଜନକ, କେଶବାର୍ଜ୍ଜୁନୟୋଃ—ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନଙ୍କର, ପୁଣ୍ୟଂ—ପବିତ୍ର, ହୃଷ୍ୟାମି ଚ—ହର୍ଷପ୍ରାପ୍ତ ହେଉଅଛୁଁ, ବା ରୋମାଞ୍ଚିତ ହେଉଅଛୁଁ, ମୁହୁଃ ମୁହୁଃ—ବାରମ୍ବାର । ୭୬ ।

Digitized by PPRACHIN, SOA

### ଅନୁବାଦ ।

ହେ ରାଜନ୍ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନଙ୍କର ଏହି ପବିତ୍ର ଓ ଅଦ୍ଭୁତ ସମ୍ବାଦ ସ୍ମରଣ କରି, ଆମ୍ଭେ ବାରମ୍ବାର ହର୍ଷପ୍ରାପ୍ତ ହେଉଅଛୁଁ । ୭୬ ।

### ବିଶଦବ୍ୟାଖ୍ୟା ।

ସଞ୍ଜୟ କହିଲେ, ହେ ରାଜନ୍ ଧୃତରାଷ୍ଟ୍ର ! ଭଗବାନ୍ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନଙ୍କର କଥୋପକଥନରୂପ ଏହି ଆଶ୍ଚର୍ଯ୍ୟଜନକ ଓ ପବିତ୍ର ସମ୍ବାଦ ଆମ୍ଭେ, ଯେ କେବଳ ଶୁଣିଅଛୁଁ, ତାହା ନୁହେ । ସେହି ସମ୍ବାଦ କଥା ସ୍ମରଣ ହେଲେ, ଆମ୍ଭର ବାରମ୍ବାର ମହାହର୍ଷ ହେଉଅଛି—ଅଥବା ଆମ୍ଭର ଶରୀର ରୋମାଞ୍ଚିତ ହେଉଅଛି । ସେ ସମ୍ବାଦ ଅତି ଅଦ୍ଭୁତ, ଏଣୁକରି ରୋମାଞ୍ଚ ହେଉଅଛି—ପୁଣି ତାହା ଅତି ପବିତ୍ର, ଅତଏବ ତହିଁ ଶ୍ରବଣରେ ମହାହର୍ଷ ହେଉଅଛି । ଅର୍ଥାତ୍ ପୂର୍ବଜନ୍ମରେ ନ ଜାଣି ଆମ୍ଭେ କେତେ ତପସ୍ୟା, କେତେ ସତ୍କର୍ମାନୁଷ୍ଠାନ ଓ ଦାନାଦି କରିଥିଲୁଁ, ଯାହା ବଳରେ କି ଏପରି ଅଦ୍ଭୁତ ଅଥଚ ପବିତ୍ର ସମ୍ବାଦ ଶ୍ରବଣ କଲୁଁ । ୭୬ ।

### ଶ୍ଳୋକଃ ।

ତଚ୍ଚ ସଂସ୍ମୃତ୍ୟ ସଂସ୍ମୃତ୍ୟ, ରୂପମତ୍ୟଦ୍ଭୁତଂ ହରେଃ ।
ବିସ୍ମୟୋ ମେ ମହାନ୍ ରାଜନ୍, ହୃଷ୍ୟାମି ଚ ପୁନଃ ପୁନଃ । ୭୭ ।

### ଅନ୍ୱୟଃ ।

ହେ ରାଜନ୍ ! ହରେଃ ତତ୍ ଅତ୍ୟଦ୍ଭୁତଂ ରୂପଂ ସଂସ୍ମୃତ୍ୟ ସଂସ୍ମୃତ୍ୟ ମେ ମହାନ୍ ବିସ୍ମୟଃ (ଜାତଃ) ଚ ପୁନଃପୁନଃ ହୃଷ୍ୟାମି । ୭୭ ।

### ଟୀକା ।

ତଚ୍ଚେତି । ବିଶ୍ୱରୂପଂ ନିର୍ଦ୍ଦିଶତି । ସ୍ପଷ୍ଟମନ୍ୟତ୍ । ୭୭ ।

### ପଦବ୍ୟାଖ୍ୟା ।

ତତ୍ ଚ—ପୁଣି ସେହି, ସଂସ୍ମୃତ୍ୟ ସଂସ୍ମୃତ୍ୟ—ସ୍ମରଣ କରି, ରୂପଂ—ବିଶ୍ୱରୂପକୁ, ଅତ୍ୟଦ୍ଭୁତଂ—ଅତି ଆଶ୍ଚର୍ଯ୍ୟଜନକ, ହରେଃ—ଶ୍ରୀକୃଷ୍ଣଙ୍କର, ବିସ୍ମୟଃ—ଆଶ୍ଚର୍ଯ୍ୟ, ମେ—ଆମ୍ଭର, ମହାନ୍—ବଡ଼, ରାଜନ୍—ହେ ଧୃତରାଷ୍ଟ୍ର ! ହୃଷ୍ୟାମି ଚ—ହର୍ଷପ୍ରାପ୍ତ ବା ରୋମାଞ୍ଚିତ ହେଉଅଛୁଁ, ପୁନଃପୁନଃ—ବାରମ୍ବାର । ୭୭ ।

### ଅନୁବାଦ ।

ହେ ରାଜନ୍ ! ଭଗବାନ୍ ଶ୍ରୀକୃଷ୍ଣଙ୍କର ସେହି ଅତି ଅଦ୍ଭୁତ ବିଶ୍ୱରୂପ ସ୍ମରଣ କରି, ଆମ୍ଭର ମହାବିସ୍ମୟ ଜାତ ହେଉଅଛି, ମଧ୍ୟ ଆମ୍ଭେ ବାରମ୍ବାର ହର୍ଷପ୍ରାପ୍ତ ହେଉଅଛୁଁ । ୭୭ ।

### ବିଶଦବ୍ୟାଖ୍ୟା ।

ସଞ୍ଜୟ କହିଲେ, ହେ ଧୃତରାଷ୍ଟ୍ର ! ଭଗବାନ୍ ଓ ଅର୍ଜ୍ଜୁନଙ୍କର କଥୋପକଥନରୂପ ସମ୍ବାଦକୁ, ଯେ କେବଳ ଆମ୍ଭେ ଶ୍ରବଣ କରିଥିଲୁଁ, ତାହା ନୁହେ । ଭଗବାନ୍ ଅର୍ଜ୍ଜୁନଙ୍କୁ ଯେଉଁ ବିଶ୍ୱରୂପ ଦେଖାଇଥିଲେ, ବ୍ୟାସଦେବଙ୍କ ପ୍ରଦତ୍ତ ଦିବ୍ୟଚକ୍ଷୁ ବଳରେ ତାହା ମଧ୍ୟ, ଆମ୍ଭେ

ଦେଖିଥିଲୁଁ । ଶ୍ରୀଭଗବାନଙ୍କର ସେହି ଅଦ୍ଭୁତରୂପ କଥା ସ୍ମରଣ ହେବାରୁ, ଆମ୍ଭର ମହାବିସ୍ମୟ ଜାତ ହେଉଅଛି ଓ ତହିଁରେ ଶରୀର ବାରମ୍ବାର ରୋମାଞ୍ଚିତ ହେଉଅଛି, ଆମ୍ଭେ ଆପଣାର ଭାଗ୍ୟର ଆଧିକ୍ୟ ଅନୁଭବ କରି ବାରମ୍ବାର ହର୍ଷପ୍ରାପ୍ତ ହେଉଅଛୁଁ । ୭୭ ।

ଶ୍ଳୋକଃ ।

ଯତ୍ର ଯୋଗେଶ୍ୱରଃ କୃଷ୍ଣୋ, ଯତ୍ର ପାର୍ଥୋ ଧନୁର୍ଦ୍ଧରଃ ।
ତତ୍ର ଶ୍ରୀର୍ବିଜୟୋ ଭୂତି, ର୍ଧ୍ରୁବା ନୀତିର୍ମତିର୍ମମ । ୭୮ ।

ଇତି ଶ୍ରୀମହାଭାରତେ ଶତସାହସ୍ର୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଭୀଷ୍ମପର୍ବଣି ଶ୍ରୀଭଗବଦ୍ଗୀତାସୂପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନସମ୍ବାଦେ ମୋକ୍ଷଯୋଗୋନାମ ଅଷ୍ଟାଦଶୋଽଧ୍ୟାୟଃ । ୧୮ ।

---

ଅନ୍ୱୟଃ ।

କୃଷ୍ଣଃ ଯତ୍ର ଯୋଗେଶ୍ୱରଃ, ପାର୍ଥଃ ଯତ୍ର ଧନୁର୍ଦ୍ଧରଃ, ତତ୍ର ଶ୍ରୀଃ, ବିଜୟଃ, ଭୂତିଃ, ଧ୍ରୁବା ନୀତିଃ, (ଇତି) ମମ ମତିଃ । ୭୮ ।

ଇତି ଶ୍ରୀଭଗବଦ୍ଗୀତାୟାଂ ଅନ୍ୱୟେ ଅଷ୍ଟାଦଶୋଽଧ୍ୟାୟଃ । ୧୮ ।

---

ଟୀକା ।

ଅତସ୍ତ୍ୱଂ ପୁତ୍ରାଣାଂ ଜୟାଦିଶଙ୍କାଂ ପରିତ୍ୟଜେତ୍ୟାଶୟେନାହ, ଯତ୍ରେତି । ଯତ୍ର ଯେଷାଂ ପକ୍ଷେ, ଯୋଗାନାମୀଶ୍ୱରଃ ଶ୍ରୀକୃଷ୍ଣୋ ବର୍ତ୍ତତେ, ଯତ୍ର ଚ ପାର୍ଥୋ ଗାଣ୍ଡୀବଧନୁର୍ଦ୍ଧରଃ, ତତ୍ରୈବ ଶ୍ରୀଃ ରାଜ୍ୟଲକ୍ଷ୍ମୀଃ ତତ୍ରୈବ ଚ ବିଜୟସ୍ତତ୍ରୈବ ଚ ଭୂତିରୁତ୍ତରୋତ୍ତରମଭିବୃଦ୍ଧିଃ ଅଚଳ୍ୟା ନୀତିରପି ତତ୍ରୈବ ଧ୍ରୁବା ନିତ୍ୟଃ ମମ ମତିର୍ନିଶ୍ଚୟଃ ଅତଃ ଇଦାନୀମପି ତାବତ୍ ସପୁତ୍ରସ୍ତ୍ୱଂ ଶ୍ରୀକୃଷ୍ଣଂ ଶରଣମୁପେତ୍ୟ ପାଣ୍ଡବାନ୍ ପ୍ରସାଦ୍ୟ ସର୍ବସ୍ୱଂ ତେଭ୍ୟୋ ନିବେଦ୍ୟ ପୁତ୍ରପ୍ରାଣରକ୍ଷାଂ କୁରୁ ଇତି ଭାବଃ ।

ଭଗବଦ୍ଭକ୍ତିଯୁକ୍ତସ୍ୟ ତତ୍ପ୍ରସାଦାତ୍ମବୋଧତଃ ।
ସୁଖଂ ବନ୍ଧବିମୁକ୍ତିଃ ସ୍ୟାଦିତି ଗୀତାର୍ଥସଂଗ୍ରହଃ ।

ତଥାହି ସ୍ୱଭକ୍ତସ୍ୟ ପାର୍ଥ ଭକ୍ତ୍ୟା ଲଭ୍ୟସ୍ତ୍ୱନନ୍ୟୟା, ଭକ୍ତ୍ୟା ତ୍ୱନନ୍ୟୟା ଶକ୍ୟସ୍ତ୍ୱହମେବମ୍ବିଧୋଽର୍ଜ୍ଜୁନ ଇତ୍ୟାଦୌ ଭଗବଦ୍ଭକ୍ତେର୍ମୋକ୍ଷଂ ପ୍ରତି ସାଧନତ୍ୱଶ୍ରବଣାଦ୍ଭକ୍ତାନ୍ତରଙ୍ଗଭକ୍ତେରେବ ମତ୍ପ୍ରସାଦୋତ୍ଥଜ୍ଞାନାବାନ୍ତରବ୍ୟାପାରପୂର୍ବ୍ବା ମୋକ୍ଷହେତୁତ୍ୱଂ ପ୍ରତୀୟତେ । ଜ୍ଞାନସ୍ୟ ଚ ଭକ୍ତ୍ୟବାନ୍ତରବ୍ୟାପାରତ୍ୱମେବ, ତେଷାଂ ସତତଯୁକ୍ତାନାଂ ଭଜତାଂ ପ୍ରୀତିପୂର୍ବ୍ବକଂ, ଦଦାମି ବୁଦ୍ଧିଯୋଗଂ ତଂ ଯେନ ମାମୁପଯାନ୍ତି ତେ । ମଦ୍ଭକ୍ତ ଏତଦ୍ବିଜ୍ଞାୟ ମଦ୍ଭାବାୟୋପପଦ୍ୟତେ ଇତ୍ୟାଦି ବଚନାତ୍ତ । ନ ଚ ଜ୍ଞାନମେବ ଭକ୍ତିରିତି ବାଚ୍ୟଂ । ସମଃ ସର୍ବ୍ବେଷୁ ଭୂତେଷୁ ମଦ୍ଭକ୍ତିଂ ଲଭତେ ପରାଂ । ଭକ୍ତ୍ୟା ମାମଭିଜାନାତି ଯାବାନ୍ ଯଶ୍ଚାସ୍ମି ତତ୍ତ୍ୱତଃ । ଇତ୍ୟାଦୌ ଭେଦଦର୍ଶନାତ୍ । ନ ଚୈତଦ୍ୱାକ୍ୟ ତମେବ ବିଦିତ୍ୱା ଅତିମୃତ୍ୟୁମେତି ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ଇତି ଶ୍ରୁତିବିରୋଧଃ ଶଙ୍କନୀୟଃ । ଭକ୍ତ୍ୟବାନ୍ତରବ୍ୟାପାରତ୍ୱାତ୍ ଜ୍ଞାନସ୍ୟ । ନହି କାଷ୍ଠୈଃ ପଚତୀତ୍ୟୁକ୍ତେ ଜ୍ୱାଳାନାମସାଧନତ୍ୱମୁକ୍ତଂ ଭବତି । ଯସ୍ୟ ଦେବେ ପରାଭକ୍ତିର୍ଯଥା ଦେବେ ତଥା ଗୁରୌ । ତସ୍ୟୈତେ କଥିତାହ୍ୟର୍ଥାଃ ପ୍ରକାଶନ୍ତେ ମହାତ୍ମନଃ । ଦେହାନ୍ତେ ଦେବଃ ପରଂ ବ୍ରହ୍ମ ତାରକଂ ବ୍ୟାଚଷ୍ଟେ ଯମେବୈଷ ବୃଣୁତେ ତେନ ଲଭ୍ୟ ଇତ୍ୟାଦି ଶ୍ରୁତିସ୍ମୃତିପୁରାଣବଚନାନ୍ୟେବଂ ସତି ସମଞ୍ଜସାନି ଭବନ୍ତି । ତସ୍ମାଦ୍ଭଗବଦ୍ଭକ୍ତେରେବ ମୋକ୍ଷହେତୁରିତି ସିଦ୍ଧଂ ।

ତେନୈବ ରଚିତା ଧୀମତ୍ୟା ତଦ୍ଗୀତାଟୀକୟା କୃତା ।
ସ ଏବ ପରମାନନ୍ଦସ୍ତୟା ପ୍ରୀଣାତୁ ମାଧବଃ ।

Digitized by PPRACHIN, SOA

ପରମାନନ୍ଦଶ୍ରୀପାଦରଜଃଶ୍ରୀଧାରଣାଧିକା ।
ଶ୍ରୀଧରସ୍ୱାମିଯତିନା କୃତା ଗୀତାସୁବୋଧିନୀ ।
ସ୍ୱପ୍ରାଗଲ୍ଭ୍ୟବଲାଦ୍ଧି ଲେଖ୍ୟ ଭଗବଦ୍ଗୀତାଂ ତଦନ୍ତର୍ଗତଂ,
ତତ୍ତ୍ୱଂ ପ୍ରେପ୍ସୁ ରୁପୈତି ବଂ ସୁବୃକ୍ତପାପୀୟୁତଦୃଷ୍ଟିଂ ବହ୍ନା ।
ଅମ୍ଭ ସ୍ୱାନ୍ତଭଜା ନରସ୍ୟ ଜଲଧେସ୍ତଦସ୍ତ ରନ୍ତର୍ମଣୀ-
ହାବର୍ତ୍ତେଷୁ ନ କଂ ନମନ୍ତ ଜନଂ ସନ୍ତୁଷ୍ଟଧାରଂ ଭଜା ? । ୭୮ ।

ଇତି ଶ୍ରୀଧରସ୍ୱାମି ଯତିକୃତାୟାଂ ଶ୍ରୀଭଗବଦ୍ଗୀତା ଟୀକାୟାଂ ସୁବୋଧିନ୍ୟାଂ
ପରମାର୍ଥନିର୍ଣ୍ଣୟୋନାମାଷ୍ଟାଦଶୋଽଧ୍ୟାୟଃ । ୧୮ ।

---

## ପଦବ୍ୟାଖ୍ୟା ।

ଯତ୍ର— ଯେଉଁ ପକ୍ଷରେ, ଯୋଗେଶ୍ୱରଃ କୃଷ୍ଣଃ—ଭଗବାନ୍ ଶ୍ରୀକୃଷ୍ଣ ଯୋଗେଶ୍ୱର-ଅର୍ଥାତ୍ ମନ୍ତ୍ରଣାଦାତା ଅଛନ୍ତି; ଯତ୍ର—ଯେଉଁ ପକ୍ଷରେ, ପାର୍ଥଃ ଧନୁର୍ଦ୍ଧରଃ—ପୃଥାପୁତ୍ର ମହାବୀର ଅର୍ଜୁନ ସେନାପତି ହୋଇଅଛନ୍ତି, ତତ୍ର—ସେହି ପକ୍ଷରେ, ଶ୍ରୀଃ—ରାଜ୍ୟଲକ୍ଷ୍ମୀ, ବିଜୟଃ—ଜୟ, ଭୂତିଃ—ଉତ୍ତରୋତ୍ତର ଅଭିବୃଦ୍ଧି, ଧ୍ରୁବା ନୀତିଃ—ଅଚଳ ନ୍ୟାୟ, ମତିଃ ମମ—ଏହା ଆମ୍ଭର ସମ୍ମତ । ୭୮ ।

ଇତି ଶ୍ରୀଭଗବଦ୍ଗୀତା-ପଦବ୍ୟାଖ୍ୟାୟାଂ ଅଷ୍ଟାଦଶୋଽଧ୍ୟାୟଃ । ୧୮ ।

---

## ଅନୁବାଦ ।

( ହେ ରାଜନ୍ ! ) ଯେଉଁ ପକ୍ଷରେ ଶ୍ରୀକୃଷ୍ଣ ଯୋଗେଶ୍ୱର ଓ ମହାବୀର ଅର୍ଜୁନ ସେନାପତି ଅଛନ୍ତି, ସେ ପକ୍ଷରେ ରାଜ୍ୟଲକ୍ଷ୍ମୀ, ବିଜୟ, ସମ୍ପତ୍ତି ଓ ଅବିଚଳିତ ନୀତି ହେବ, ଏହା ଆମ୍ଭର ନିଶ୍ଚୟ ବୋଧ ହୁଏ । ୭୮ ।

ଇତି ଶ୍ରୀଭଗବଦ୍ଗୀତାର ଉତ୍କଳ ଅନୁବାଦରେ ଅଷ୍ଟାଦଶ ଅଧ୍ୟାୟ ସମାପ୍ତ । ୧୮ ।

---

## ବିଶଦବ୍ୟାଖ୍ୟା ।

ସଞ୍ଜୟ ଶ୍ରୀକୃଷ୍ଣଙ୍କଠାରୁ ଗୀତାର ଉପଦେଶ ଯେପରି ଶୁଣିଥିଲେ, ଓ ବିଶ୍ୱରୂପ ଯେପରି ଦର୍ଶନ କରିଥିଲେ, ଏବଂ ସେ କଥା ସ୍ମରଣ ହେବାରୁ ତାଙ୍କର ଯେପରି ଆନନ୍ଦ ଓ ରୋମାଞ୍ଚ ହେଉଅଛି, ତାହା ପୂର୍ବଶ୍ଳୋକମାନଙ୍କରେ ବ୍ୟାଖ୍ୟା କରି, ଯୁଦ୍ଧରେ କେଉଁ ପକ୍ଷର ଜୟ ହେବ, ସେ ବିଷୟରେ ଆପଣାର ମତ ପ୍ରଦାନ କରୁଅଛନ୍ତି, କି ହେ ରାଜନ୍ ଧୃତରାଷ୍ଟ୍ର ! ଯେଉଁ ପକ୍ଷରେ ଭଗବାନ୍ ଶ୍ରୀକୃଷ୍ଣ 'ଯୋଗେଶ୍ୱର' ଅର୍ଥାତ୍ ଯୋଗାଡ଼କର୍ତ୍ତା ବା ଉପଦେଶଦାତା ଅଛନ୍ତି, ପୁଣି ବୀର ଅର୍ଜୁନ ଯେଉଁ ପକ୍ଷରେ 'ଧନୁର୍ଦ୍ଧର' ଅର୍ଥାତ୍ ସେନାପତି ହୋଇଅଛନ୍ତି, ସେହି ପକ୍ଷରେ ଅର୍ଥାତ୍ ଯୁଧିଷ୍ଠିରଙ୍କ ପକ୍ଷରେ, ରାଜ୍ୟଲକ୍ଷ୍ମୀ, ଯୁଦ୍ଧରେ ବିଜୟ, ଓ ଉତ୍ତରୋତ୍ତର ସମ୍ପତ୍ତି ବୃଦ୍ଧି ହେବ ଏବଂ ରାଜନୀତି ଅବିଚଳିତ ରହିବ, ଏହା ଆମ୍ଭର ନିଶ୍ଚୟ

Digitized by PPRACHIN, SOA

ବୋଧ ହୁଏ, ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ଅତଏବ ଏତେବେଳେ ମଧ୍ୟ, ତୁମ୍ଭେ ଯଦି ଆପଣାର ପୁତ୍ରମାନଙ୍କୁ ରକ୍ଷା କରିବାର ଇଚ୍ଛା କର, ତେବେ ରାଜ୍ୟାଦି ସମସ୍ତ ସମ୍ପତ୍ତି, ପାଣ୍ଡବମାନଙ୍କୁ ପ୍ରଦାନ କର ଓ ପୁତ୍ରାଦି ସହିତରେ ସେହି ସର୍ବଶକ୍ତିମାନ୍ ଭଗବାନ୍ ଶ୍ରୀକୃଷ୍ଣଙ୍କଠାରେ ଶରଣାଗତ ହୁଅ, ତାହା ନ ହେଲେ, ଦୁର୍ଯ୍ୟୋଧନାଦିଙ୍କର ବିନାଶ ଓ ରାଜ୍ୟନାଶ ନିଶ୍ଚୟ ଘଟିବ ।

ଯସ୍ୟ ପ୍ରେରଣୟା ପାର୍ଥଃ, ପ୍ରବୃତ୍ତୋଽପ୍ୟନ୍ଧକର୍ମଣି ।
ତ୍ୟକ୍ତ୍ୱା ସକଳସନ୍ଦେହଂ ତଂ ବନ୍ଦେ ପରମେଶ୍ୱରଂ ॥
ତଦଭକ୍ତ୍ୟୈବ ମତ୍ୟାହଂ, ଟୀକାସ୍ତୁ ବହୁଧାସ୍ତଥା ।
ସ୍ୱପ୍ୟମାଲୋଚ୍ୟ କୃତବାନ୍, ବ୍ୟାଖ୍ୟାଂ ବିଶଦପୂର୍ବିକାଂ ॥ ୭୮ ॥

ଇତି ଶ୍ରୀଭଗବଦ୍ଗୀତାର ବିଶଦବ୍ୟାଖ୍ୟାରେ ଅଷ୍ଟାଦଶ ଅଧ୍ୟାୟ ସମାପ୍ତ ॥ ୧୮ ॥

ଓଁ ତତ୍ସତ୍ ।

---

ସ୍ୱସ୍ତି ପ୍ରଜାଭ୍ୟଃ ପରିପାଲୟନ୍ତାଂ, ନ୍ୟାଯ୍ୟେନ ମାର୍ଗେଣ ମହୀଂ ମହୀଶାଃ ।
ଗୋବ୍ରାହ୍ମଣେଭ୍ୟଃ ଶୁଭମସ୍ତୁ ନିତ୍ୟଂ, ଲୋକାଃ ସମସ୍ତାଃ ସୁଖିନୋ ଭବନ୍ତୁ ॥
କାଲେ ବର୍ଷନ୍ତୁ ପର୍ଜନ୍ୟଃ ପୃଥିବୀ ଶସ୍ୟଶାଳିନୀ ।
ଦେଶୋଽୟଂ କ୍ଷୋଭରହିତୋ, ବ୍ରାହ୍ମଣାଃ ସନ୍ତୁ ନିର୍ଭୟାଃ ॥

---

ଗୀତା ସୁଗୀତା କର୍ତ୍ତବ୍ୟା, କିମନ୍ୟୈଃ ଶାସ୍ତ୍ରବିସ୍ତରୈଃ ।
ଯା ସ୍ୱୟଂ ପଦ୍ମନାଭସ୍ୟ, ମୁଖପଦ୍ମାଦ୍ୱିନିଃସୃତା ॥ ୧ ॥
ସର୍ବୋପନିଷଦୋ ଗାବୋ, ଦୋଗ୍ଧା ଗୋପାଳନନ୍ଦନଃ ।
ପାର୍ଥୋ ବତ୍ସଃ ସୁଧୀର୍ଭୋକ୍ତା, ଦୁଗ୍ଧଂ ଗୀତାମୃତଂ ମହତ୍ ॥ ୨ ॥
ପାର୍ଥାୟ ପ୍ରତିବୋଧିତାଂ ଭଗବତା ନାରାୟଣେନ ସ୍ୱୟଂ
ବ୍ୟାସେନ ଗ୍ରଥିତାଂ ପୁରାଣମୁନିନା ମଧ୍ୟେ ମହାଭାରତେ ।
ଅଦ୍ୱୈତାମୃତବର୍ଷିଣୀଂ ଭଗବତୀମଷ୍ଟାଦଶାଧ୍ୟାୟିନୀ-
ମମ୍ବ ତ୍ୱାମନୁସନ୍ଦଧାମି ଭଗବଦ୍ଗୀତେ ଭବଦ୍ୱେଷିଣୀଂ ॥ ୩ ॥

ମୁଦ୍ରାକର—ଶ୍ରୀ ଧର୍ମେଶ୍ୱର ସାହୁ, ବିଶ୍ୱବିଦ୍ୟା ପ୍ରେସ,
ଅଲିସା ବଜାର, କଟକ-୨

Digitized by PPRACHIN, SOA

